




# ଆଦ୍ୟକାଳୀନ ଭାରତ ଇତିହାସ

## (ପ୍ରାରମ୍ଭରୁ ୧୩୦୦ ମସିହା ପର୍ଯ୍ୟନ୍ତ)

ରୋମିଲା ଥାପର

ଓଡ଼ିଆ ଭାଷାନ୍ତର :
ପ୍ରୀତୀଶ ଆଚାର୍ଯ୍ୟ

Odia Translation of Romila Thapar's
Penguin History of Early India
(From the Origins to 1300 AD)



# ଆଦ୍ୟକାଳୀନ ଭାରତ ଇତିହାସ

(ପ୍ରାରମ୍ଭରୁ ୧୩୦୦ ମସିହା ପର୍ଯ୍ୟନ୍ତ)

# ଆଦ୍ୟକାଳୀନ ଭାରତ ଇତିହାସ

(ପ୍ରାରମ୍ଭରୁ ୧୩୦୦ ମସିହା ପର୍ଯ୍ୟନ୍ତ)

ରୋମିଲା ଥାପର

The Penguin History of

## Early India

FROM THE ORIGINS TO AD 1300

Romila Thapar

ଓଡ଼ିଆ ଭାଷାନ୍ତର :

ପ୍ରୀତୀଶ ଆଚାର୍ଯ୍ୟ




ଏ. କେ. ମିଶ୍ର

ପବ୍ଲିଶର୍ସ ପ୍ରାଇଭେଟ୍ ଲିମିଟେଡ୍

*Adyakaalina Bharat Itihaasa* *(Praarambharu 1300 masiha paryanta)*

Odia Translation of
**The Penguin History of Early India**
**From Origins to AD 1300**
By **Romila Thapar**

First Published under the Title by **Penguin Books India 2003**

**ଆଦ୍ୟକାଳୀନ ଭାରତ ଇତିହାସ** (ପ୍ରାରମ୍ଭରୁ ୧୩୦୦ ମସିହା ପର୍ଯ୍ୟନ୍ତ)

ଓଡ଼ିଆ ଭାଷାନ୍ତର : ପ୍ରୀତୀଶ ଆଚାର୍ଯ୍ୟ


*This translation is published in collaboration with*
**National Translation Mission**
Central Institute of Indian Languages
Manasgangotri, Mysore-570006
www.ntm.org.in

By
**A.K. Mishra Publishers Pvt. Ltd.**
'Satyabhama'
Roxy Lane, Badambadi
Cuttack-753009
Phone : (0671) 2322266
Fax : (0671) 2322288

ପ୍ରକାଶକ :
ଏ.କେ. ମିଶ୍ର ପବ୍ଲିଶର୍ସ ପ୍ରାଇଭେଟ୍ ଲିମିଟେଡ୍
'ସତ୍ୟଭାମା'
ରକ୍ସି ଲେନ୍, ବାଦାମବାଡ଼ି
କଟକ - ୭୫୩୦୦୯
ଫୋନ୍ : (୦୬୭୧) ୨୩୨୨୨୬୬
ଫ୍ୟାକ୍ସ : (୦୬୭୧) ୨୩୨୨୨୮୮



ISBN : 978-93-82550-43-3

ମୁଦ୍ରଣ : ଶୁଭମ୍ ପ୍ରିଣ୍ଟର୍ସ, କଟକ

## ଉତ୍ସର୍ଗ

ସର୍ଗେଇ ପାଇଁ :
କୌଶଲ୍ୟା ଓ ଦୟାରାମ
ଏବଂ ଆମର ଦୀର୍ଘ ବର୍ଷର ବନ୍ଧୁତାକୁ
ସ୍ମରଣ କରି...

ଅନୁବାଦ ଦ୍ୱାରା ଦେଶର ସବୁ ଭାଷାଭାଷୀ ଲୋକଙ୍କ ମଧ୍ୟରେ ଜ୍ଞାନର ପ୍ରସାର ଏବଂ ଗଣତାନ୍ତ୍ରିକୀକରଣ କରିବା ରାଷ୍ଟ୍ରୀୟ ଅନୁବାଦ ମିଶନ୍‌ର ଏକ ଲକ୍ଷ୍ୟ ଅଟେ । ଏହା ବୁଝାପଡ଼େ ଯେ, ଅନୁବାଦ ଭାଷା ପ୍ରତିବନ୍ଧକକୁ ଏଡ଼ାଇବା ପାଇଁ ଏବଂ ଇଂରାଜୀ ବା ଅନ୍ୟ ଭାଷାରେ ଥିବା ଜ୍ଞାନକୁ ନିଜ ଭାଷାରେ ଲାଘବ କରିବାପାଇଁ ବ୍ୟକ୍ତିବିଶେଷଙ୍କୁ ସହାୟତା କରେ । ଏହି ଲକ୍ଷ୍ୟ ସାଧନ ପାଇଁ ଏବେ ଏନ୍‌ଟିଏମ୍ ବିଭିନ୍ନ ମହାବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ଅନ୍ତର୍ଗତ ମୁଖ୍ୟ ପାଠ୍ୟପୁସ୍ତକ ଏବଂ ଉପାଦେୟ ସନ୍ଦର୍ଭ ପୁସ୍ତକଗୁଡ଼ିକୁ ସମ୍ବିଧାନ ସ୍ୱୀକୃତ ୨୨ଟି ଭାଷାରେ ଅନୁବାଦ ଆରମ୍ଭ କରିଛି ।

ଏଗୁଡ଼ିକ ହେଉଛି ଅନୁବାଦ ସିରିଜ୍‌ର ପ୍ରଥମ ପ୍ରକାଶନ । ଆମ୍ଭେ ଆଶା କରୁଁ ଯେ ଏହି ଅନୁବାଦଗୁଡ଼ିକ ଲୋକପ୍ରିୟ ହେବା ସହ ବୃହତ୍ ସଂଖ୍ୟାରେ ଛାତ୍ର ଏବଂ ଶିକ୍ଷକମାନଙ୍କ ପାଇଁ ଉପାଦେୟ ହେବ । ଏହା ମିଶନ୍‌ର ଦେଶରେ ଅନୁବାଦ ଶିଳ୍ପ ଗଠନ କରିବାର ଉଦ୍ଦେଶ୍ୟରେ ସହାୟକ ହେବ ।

**ପ୍ରଫେସର ଅଦିତି ମୁଖାର୍ଜୀ**
ପ୍ରକଳ୍ପ ନିର୍ଦ୍ଦେଶକ
ରାଷ୍ଟ୍ରୀୟ ଅନୁବାଦ ମିଶନ

# ମୁଖବନ୍ଧ

ଚାରି ଦଶନ୍ଧି ତଳେ ଏହି ପୁସ୍ତକର ପ୍ରଥମ ସଂସ୍କରଣ ପ୍ରକାଶ ପାଇଥିଲା । ଏ ମଧ୍ୟରେ ଭାରତ ଇତିହାସର ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ଅନେକ ନୂଆ କଥା ହୋଇସାରିଛି । ନୂଆ ତଥ୍ୟ ମିଳିଛି । ପୁଣି ଉପଲବ୍ଧ ତଥ୍ୟକୁ ନୂଆ କରି ବ୍ୟାଖ୍ୟା କରାଯାଇଛି । ଏହାର ଫଳସ୍ୱରୂପ ଗବେଷଣା ଓ ଅଧ୍ୟୟନରେ ପରିବର୍ତ୍ତନମାନ ସମ୍ଭବ ହୋଇଛି । ପୁସ୍ତକଟିକୁ ପୁନଃସଂସ୍କରଣ ପାଇଁ ପ୍ରସ୍ତୁତ କଲାବେଳେ ମୁଁ ନୂତନ ତଥ୍ୟ ଓ ବ୍ୟାଖ୍ୟାଗୁଡ଼ିକର ମୌଳିକ ତତ୍ତ୍ୱକୁ ସାମିଲ କରିବାକୁ ପ୍ରୟାସ କରିଛି । ତା' ସହିତ ପ୍ରାସଙ୍ଗିକତା ରହିଥିବା ପୁରୁଣା ତର୍କ-ଯୁକ୍ତିଗୁଡ଼ିକୁ ମଧ୍ୟ ବାଦ୍ ଦେଇ ନାହିଁ ।

ନୂତନ ସଂସ୍କରଣର ଏକ ବଡ଼ ପରିବର୍ତ୍ତନ ହେଲା ଏହାର କ୍ରମାବଧି (chronological span) । ଏହି ପୁସ୍ତକରେ ତାହା 1526 ପରିବର୍ତ୍ତେ 1300 ମସିହାରେ ଶେଷ ହୋଇଛି । ଅନେକ ବର୍ଷର ପ୍ରୟାସ ପରେ ମୁଁ ପ୍ରକାଶକ 'ପେଙ୍ଗୁଇନ୍ ଇଣ୍ଡିଆ'କୁ ଭାରତ ଇତିହାସକୁ ଦୁଇ ଖଣ୍ଡରେ ସୀମିତ ନ ରଖି ତିନି ଖଣ୍ଡ ଯାଏଁ ବିସ୍ତାର କରିବାକୁ ସମ୍ମତ କରାଇପାରିଛି । ଆଗରୁ ଯେଉଁ କାଳ ବିଭାଜନ ରହିଥିଲା, ତାହା 1300 ମସିହାରୁ 1800 ମସିହା ପର୍ଯ୍ୟନ୍ତ ବ୍ୟାପ୍ତ ଗୁରୁତ୍ୱପୂର୍ଣ୍ଣ କାଳାଂଶଟିକୁ ଯଥୋଚିତ ମହତ୍ତ୍ୱ ଦେଇପାରୁ ନ ଥିଲା । ଏବେ ସମଗ୍ର ଭାରତ ଇତିହାସକୁ ତିନି ଖଣ୍ଡରେ ପ୍ରକାଶିତ କଲା ପରେ ସେହି ଅସୁବିଧା ଦୂର ହେବ ବୋଲି ଆଶା କରାଯାଏ । ତୃତୀୟ ଖଣ୍ଡଟି ସମସାମୟିକ ଯୁଗକୁ ମଧ୍ୟ ସାମିଲ କରିବ । ଏହି ପରିବର୍ତ୍ତନ ଫଳରେ ପ୍ରତି ଖଣ୍ଡ ପାଇଁ କିଛି ଅଧିକ ସ୍ଥାନ ମିଳିବ । ଭାରତର ପ୍ରାଗ୍-ଐତିହାସିକ ଏବଂ ପ୍ରୋଟୋ-ଐତିହାସିକକାଳୀନ ଉପକ୍ରମଣିକା ଆମ ପାଖରେ ମହଜୁଦ ଅଛି । ତାହା ଏଫ୍.ଆର୍. ଏବଂ ବି. ଆଲଚିନ ଦ୍ୱାରା ଲିଖିତ 'ଦ ବାର୍ଥ ଅଫ୍ ଇଣ୍ଡିଆନ୍ ସିଭିଲାଇଜେସନ୍' ପୁସ୍ତକରେ ବିସ୍ତୃତଭାବେ ଆଲୋଚିତ ହୋଇଛି । ପୁସ୍ତକଟିର 1993 ରେ ନୂଆ ସଂସ୍କରଣ ମଧ୍ୟ ପ୍ରକାଶିତ ହୋଇଛି । ପେଙ୍ଗୁଇନ୍ ଏହାର ପ୍ରକାଶକ । 1997 ରେ ଉପରୋକ୍ତ ଲେଖକଦ୍ୱୟଙ୍କ ଅନ୍ୟ ଏକ ପୁସ୍ତକ 'ଦ ଓରିଜିନ ଅଫ୍ ଏ ସିଭିଲାଇଜେସନ୍' (ଏକ ସଭ୍ୟତାର ଆରମ୍ଭ)ରେ ମଧ୍ୟ ତାକୁ ଲକ୍ଷ୍ୟ କରିହେବ । ଏହି ପୁସ୍ତକଟିକୁ 'ଭାଇକିଂ' ପ୍ରକାଶନ 1997 ରେ ଓ 'ପେଙ୍ଗୁଇନ୍' ପ୍ରକାଶନ 1998 ରେ ପ୍ରକାଶିତ କରିଛନ୍ତି । ସେଥିପାଇଁ ପ୍ରାଗ୍-ଇତିହାସ ଓ ପ୍ରୋଟୋ-ଇତିହାସ ସମ୍ବନ୍ଧରେ ଆଉ ବିସ୍ତାରରେ ଆଲୋଚନା ନ କରି ଏଠାରେ ସଂକ୍ଷେପରେ କିଛି କହିବାକୁ ମୁଁ ପ୍ରୟାସ କରିଛି ।

ପୁସ୍ତକଟିର ରଚନା କଲାବେଳେ ବିଭିନ୍ନ ଅଧ୍ୟାୟର ପାଣ୍ଡୁଲିପିକୁ ଅନେକ ବନ୍ଧୁଙ୍କୁ ପାଠ କରିବାକୁ ଦେଇ ସେମାନଙ୍କଠାରୁ ମୁଁ ମତାମତ ଲୋଡ଼ିଛି ଏବଂ ପାଇଛି ମଧ୍ୟ । ତନ୍ମଧ୍ୟରେ ଅଛନ୍ତି ଆର୍. ଚମ୍ପକଲକ୍ଷ୍ମୀ, ମାଧବ ଗାଡ଼ଗିଲ, ଡେନିସ ହଡ଼ସନ୍, ଜିନରୁ ଲିଉ, ମାଇକେଲ ମେଇଷ୍ଟର, ବିବେକ ନନ୍ଦା ଏବଂ କେ.ଏନ୍. ପାନିକର । ମୁଁ ବିଶେଷ ଧନ୍ୟବାଦ ଦେବି ସୁସାନ ରିନୋଲ୍ଡଙ୍କୁ । ସେ କେବଳ କେତୋଟି ନିର୍ଦ୍ଦିଷ୍ଟ ପରିଚ୍ଛେଦ ଉପରେ ମତାମତ ଦେଇ ନାହାନ୍ତି, ତା' ସହିତ ମୋଟ ପୁସ୍ତକଟି ସମ୍ବନ୍ଧରେ ଅନେକଥର ମୋ ସହିତ ଆଲୋଚନା କରିଛନ୍ତି । ରବି ଦୟାଲ ପ୍ରସ୍ତାବ ଦେଲେ ଯେ ସେ ପୁସ୍ତକଟିର ପାଣ୍ଡୁଲିପିଟିକୁ ଆମୂଳଚୂଳ ପାଠ କରିବେ । ଏହି ପ୍ରସ୍ତାବ ଶୁଣି ମୁଁ ଆନନ୍ଦରେ ଆତ୍ମହରା ହୋଇଉଠିଲି । ତାଙ୍କର ମତାମତର ସାହାଯ୍ୟ ନେଇ ମତେ ପାଣ୍ଡୁଲିପିଟିକୁ ଆହୁରି କର୍ଷଣ କରିବାକୁ ଅବସର ମିଳିଲା । ନୈନା ଯେତେବେଳେ ଲେଖେ, 'ସ୍ପଷ୍ଟ ହେଲାନି', ମୁଁ କଥାଟିକୁ ଆହୁରି ସରଳ ସାବଲୀଳ କରିବାକୁ ଚେଷ୍ଟା କରେ । ଲୁସି ପେକ ସବୁ ମାନଚିତ୍ରର ରଫ୍ ବାହାର କରନ୍ତି । ଫଳରେ ମତେ ପ୍ରତ୍ୟେକ ଅଧ୍ୟାୟରେ ମାନଚିତ୍ର ସ୍ଥାନିତ କରିବାକୁ ସୁଯୋଗ ମିଳିଛି । ଏହି ଅବସରରେ ମତେ ସିନିଅର ଫେଲୋସିପ ପ୍ରଦାନ କରିଥିବା ହୋମିଭାବା ଫେଲୋସିପ୍ସ କାଉନ୍‌ସିଲକୁ ମୁଁ ଧନ୍ୟବାଦ ଦେବାକୁ ଚାହିଁବି । ସେହି ଫେଲୋସିପ ସମୟରେ ଯେଉଁ ଗବେଷଣା ମୁଁ କରିଥିଲି, ତାହା ଏହି ପୁସ୍ତକର ପ୍ରଥମ ଭାଗକୁ ଏକ ସ୍ପଷ୍ଟ ରୂପ ଦେବାରେ ସାହାଯ୍ୟ କଲା । ମୁଁ ଡେଭିଡ ଲୁଡେନଙ୍କୁ ମଧ୍ୟ ଅଶେଷ ଧନ୍ୟବାଦ ଦେବି, କାରଣ ସେ ପେନସିଲଭେନିଆ ବିଶ୍ୱବିଦ୍ୟାଳୟରେ ମୋର ଏକ ବକ୍ତୃତାମାଳା ଆୟୋଜନ କରିବାରେ ବିଶେଷ ସହଯୋଗ କରିଛନ୍ତି । ମୋଟାମୋଟି ଭାବେ ସେହି ବକ୍ତୃତା ଏହି ପୁସ୍ତକର ବିଷୟବସ୍ତୁ ଉପରେ ପର୍ଯ୍ୟବସିତ ଥିଲା ।

ଜିନ ସ୍ମିଥ୍ ଖୁବ୍ ଉଦାରତାର ସହିତ ଅକ୍ଲାନ୍ତ ପରିଶ୍ରମ କରି ପୂର୍ବ ସଂସ୍କରଣର ପାଠ ସବୁକୁ ଡିସ୍କରେ ରଖିଦେଲେ, ଯାହାକୁ ପଢ଼ି ପୁନର୍ଲିଖନ କରିବା ମୋ ପାଇଁ ସହଜ ହେଲା । ଗିରୀଶ ଏବଂ ଗୌତମ ପଟେଲ ଏବଂ କ୍ରିସ୍ ଗୋମ୍ସଙ୍କ ଆଗରେ ଯେତେବେଳେ 'ମୋର କମ୍ପ୍ୟୁଟର କଥା ମାନୁନି' ବୋଲି ମୁଁ ପାଟି କରେ, ସେମାନେ ଧୈର୍ଯ୍ୟର ସହିତ ତାକୁ ସଜ କରନ୍ତି । ବିବେକ ଶର୍ମା ବି ଧୈର୍ଯ୍ୟର ସହିତ ମତେ ମନାଇ ନିଅନ୍ତି । ରଜନୀ କେତେ ବର୍ଷ ହେଲା ପ୍ରଥମ ସଂସ୍କରଣଟିକୁ ପୁନଃସଂସ୍କରଣ କରିବାକୁ ଜିଦ୍ ଧରିଥିଲା । ଶେଷରେ ଯାହାହେଉ ତା'ର ଜିଦ୍ ଫଳବତୀ ହେଲା ।

ରୋମିଲା ଥାପର

# ଅନୁବାଦକୀୟ

ଐତିହାସିକ ରୂପେ ଯେମିତି ରୋମିଲା ଥାପର, ଏକ ମୌଳିକ ଐତିହାସିକ କୃତି ଭାବରେ ସେମିତି ତାଙ୍କ ରଚିତ "ଆଦ୍ୟକାଳୀନ ଭାରତ" (Early India) ଇତିହାସ ଛାତ୍ର, ଶିକ୍ଷକ, ଗବେଷକ ଓ ସାଧାରଣ ପାଠକ ମହଲରେ ସମଗ୍ର ବିଶ୍ୱରେ ବହୁ ଆଦୃତ । ଏକ ସର୍ବେକ୍ଷଣ ଅନୁଯାୟୀ, ଦେଶର ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କରେ ଯେଉଁ କେତୋଟି ପୁସ୍ତକ ସର୍ବାଧିକ ଉଦ୍ଧୃତ, ତନ୍ମଧ୍ୟରେ ପ୍ରଫେସର ରୋମିଲା ଥାପରଙ୍କ "ଆଦ୍ୟକାଳୀନ ଭାରତ" ଅନ୍ୟତମ । ନିଜ ଇତିହାସ ଅଧ୍ୟାପନାର ପ୍ରାରମ୍ଭ କାଳରେ (1960) ପ୍ରଫେସର ଥାପର ପାଣ୍ଡୁଲିପିଟିକୁ ପ୍ରସ୍ତୁତ କରିଥିଲେ । ଦୀର୍ଘ ଚାଳିଶ ବର୍ଷ ଧରି ଏହା ପାଠକୀୟ ଆଦର ଲାଭ କଲା ପରେ ଲେଖକ ତା'ର ପୁନଃସଂସ୍କରଣ କଲେ । ଅନ୍ତରାଳର ଅବଧିରେ (1960–2000) ଇତିହାସତତ୍ତ୍ୱ ବିଷୟକ ଯାହା ସବୁ ତତ୍ତ୍ୱ ଓ ତଥ୍ୟ ଗବେଷଣାରେ ମହତ୍ତ୍ୱ ପାଇଛି, ତାକୁ ନୂଆ ସଂସ୍କରଣରେ ସ୍ଥାନିତ କରିଛନ୍ତି ସେ । ଫଳରେ ପାଣ୍ଡୁଲିପିଟି ଏକ 'ନୂତନ ପ୍ରକାଶନ'ର ପ୍ରାରୂପ ପାଇଲା । ଏଭଳି ଏକ ବହୁ ଆଦୃତ ମୌଳିକ ଇତିହାସକୃତିକୁ 'ରାଷ୍ଟ୍ରୀୟ ଅନୁବାଦ ମିଶନ' (National Translation Mission ବା NTM) ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରିବାକୁ ନିଷ୍ପତ୍ତି ନେଇଛନ୍ତି, ଏହା ଖୁବ୍ ଆନନ୍ଦର ବିଷୟ । ଏଭଳି ଜ୍ଞାନପାଠମାନ ଓଡ଼ିଆ ସମେତ ଅନ୍ୟାନ୍ୟ ଭାରତୀୟ ଭାଷାରେ ଉପଲବ୍ଧ ହେଲେ ଜ୍ଞାନର ବିସ୍ତାର ସମ୍ଭବ ହେବ ଓ ଭାଷା-ସାହିତ୍ୟ ସୁଦୃଢ଼ ହେବ – ଏକଥା ସହଜରେ ଅନୁମାନ କରିହୁଏ ।

ଡିଗ୍ରୀ ଓ ଉପର ସ୍ତରରେ ଓଡ଼ିଆ ମାଧ୍ୟମକୁ ଆଜିକାଲି ଯଥେଷ୍ଟ ମହତ୍ତ୍ୱ ମିଳୁଛି । ଯେଉଁ ଛାତ୍ର ଓ ପାଠକବର୍ଗ ଓଡ଼ିଆ, ଅଥଚ ବିଭିନ୍ନ କାରଣରୁ ତାଙ୍କୁ ଇଂରାଜୀରେ ଲିଖିତ ଇତିହାସ ପୁସ୍ତକ ଉପରେ ଆଶ୍ରା କରିବାକୁ ପଡ଼େ, ସେମାନେ ସମସ୍ତେ ଏହି ପୁସ୍ତକଟି ଦ୍ୱାରା ଲାଭାନ୍ୱିତ ହୋଇପାରିବେ ।

ଅନୁବାଦରେ କେତୋଟି ଦିଗ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଛି । ଶାସ୍ତ୍ରୀୟ ଭାଷା ବଦଳରେ ଯଥାସମ୍ଭବ ବ୍ୟବହାରିକ ଭାଷାର ବ୍ୟବହାର କରାଯାଇଛି; ସରଳ ବାକ୍ୟ ଗଠନ ହୋଇଛି; ଟେକ୍ନିକାଲ ଶବ୍ଦର ପ୍ରୟୋଗବେଳେ ବନ୍ଧନୀ ମଧ୍ୟରେ ଇଂରାଜୀ ଶବ୍ଦକୁ ସ୍ଥାନିତ କରାଯାଇଛି; ତଥା ଆବଶ୍ୟକସ୍ଥଳେ ନୂତନ ଶବ୍ଦ ଗଠନ କରାଯାଇଛି । ଓଡ଼ିଆ ଭାଷାରେ

ଯେହେତୁ ଯଥୋଚିତ ପରିମାଣରେ ଇତିହାସ ସମ୍ବନ୍ଧୀୟ ଜ୍ଞାନ ପାଠ (Knowledge Text) ନାହିଁ, ନୂତନ ଶବ୍ଦ ଗଠନ ଏକରକମର ଆବଶ୍ୟକତା ହୋଇପଡ଼ିଛି । ଏଥିପାଇଁ ଅଯଥା ଇଂରାଜୀ ଆଶ୍ରିତ ନ ହୋଇ ସଚେତ ମନରେ ହିନ୍ଦୀ ଓ ବଙ୍ଗଳା ଆଦି ଅନ୍ୟ ଭାରତୀୟ ଭାଷାର ଶବ୍ଦଭଣ୍ଡାରରୁ ଶବ୍ଦ ଆହରଣ କରାଯାଇଛି । ଅନେକ ଗାଉଁଲି ଶବ୍ଦର ମଧ୍ୟ ପ୍ରୟୋଗ ହୋଇଛି । ପୁଣି କେବେ କେବେ ଓଡ଼ିଆରେ ବ୍ୟବହାରକୁ ଆସି ସାରିଥିବା ଇଂରାଜୀ ଶବ୍ଦର 'ଆକ୍ଷରିକ ଓଡ଼ିଆକରଣ' ନ କରିବାକୁ ଚେଷ୍ଟା କରାଯାଇଛି । ଏସବୁ ମୂଳରେ ଉଦ୍ଦେଶ୍ୟ ହେଲା ପାଠକୁ ସରଳ, ତରଳ କରିବାପାଇଁ ପ୍ରୟାସ କରିବା । ଏତେ ପ୍ରୟାସ ସତ୍ତ୍ୱେ ବି ବିଜ୍ଞ ପାଠକ ଦୃଷ୍ଟିରେ କାହିଁ କେଉଁଠି ଉଚିତ ବିକଳ୍ପ ଶବ୍ଦ ଓ ପ୍ରୟୋଗ ରହିଥାଇପାରେ । ମୁଦ୍ରଣ ତ୍ରୁଟି ନଜରକୁ ଆସିପାରେ । ସେସବୁ ଆମ କାନକୁ ଆସିଲେ ଅନୁବାଦର ପରବର୍ତ୍ତୀ ସଂସ୍କରଣବେଳେ ତାକୁ ସାମିଲ କରିବାକୁ ଆମେ ଯତ୍ନବାନ ହେବୁ ।

କେତେକ ବନ୍ଧୁ ପ୍ରତ୍ୟକ୍ଷ ରୂପେ ପୁସ୍ତକଟିର କିଛି କିଛି ଅଂଶ ଅନୁବାଦ କରି ମତେ ଅଶେଷ ସହଯୋଗ କରିଛନ୍ତି । ସେମାନେ ହେଲେ ଶଶାଙ୍କ ତ୍ରିପାଠୀ (ପୃଷ୍ଠା-125ରୁ 150), ପବିତ୍ର ମୋହନ ଦାଶ (ନବମ, ଦଶମ ଓ ଏକାଦଶ ଅଧ୍ୟାୟ) ଓ ମଞ୍ଜୁଳା ଆଚାର୍ଯ୍ୟ (ଦ୍ୱାଦଶ ଅଧ୍ୟାୟ) । ସେମାନଙ୍କ ଶ୍ରମ ଓ ସହଯୋଗ ପାଁଇଁ ମୁଁ ବହୁ କୃତଜ୍ଞ । ପୁସ୍ତକଟି ଯେହେତୁ ଅତି ଦୀର୍ଘ, ଏହି ବନ୍ଧୁମାନେ କିଛି କିଛି ଅଂଶ ଅନୁବାଦ କରିବାକୁ ପ୍ରତିଶ୍ରୁତି ଦେଇ ନ ଥାନ୍ତେ, ହୁଏତ ମୁଁ ଅନୁବାଦ ନିମିତ୍ତ ସାହସ କରି ନ ଥାନ୍ତି, ସମ୍ମତି ଦେଇ ନ ଥାନ୍ତି । ଇତିହାସ ଅଧ୍ୟାପକ ହେମନ୍ତ କୁମାର ପରିଡ଼ା, ତପନ ପତି ଓ ପ୍ରଫେସର ସଦାଶିବ ପ୍ରଧାନ ଅନୁବାଦର ଗୁଣାତ୍ମକ ମାନ ନିରୀକ୍ଷଣ କରି ଆବଶ୍ୟକସ୍ଥଳେ ପରାମର୍ଶ ଦେଇଛନ୍ତି । ଏହି ଅବସରରେ NTM ର ନିର୍ଦ୍ଦେଶକ ପ୍ରଫେସର ଆଦିତି ମୁଖର୍ଜୀ ଓ ତାଙ୍କ ସହଯୋଗୀ ଆଦିତ୍ୟ ପଣ୍ଡା ଓ ଝୁନି ମଲ୍ଲିକଙ୍କର ସହଯୋଗକୁ ଓ ପ୍ରକାଶକ ଏ.କେ. ମିଶ୍ର ପବ୍ଲିଶର୍ସ ପ୍ରାଇଭେଟ୍ ଲିମିଟେଡ଼ର ନିର୍ଦ୍ଦେଶକ ଅଜୟ କୁମାର ମିଶ୍ର ଓ ତାଙ୍କ ସହଯୋଗୀ ପ୍ରକାଶ ସ୍ୱାଇଁଙ୍କର ନିଷ୍ଠାପୂର୍ଣ୍ଣ ସହଯୋଗକୁ ସ୍ମରଣ କରୁଛି । ସେମାନଙ୍କ ନିଷ୍ଠାପର ଉଦ୍ୟମ ବିନା ''ଆଦ୍ୟକାଳୀନ ଭାରତ''ର ପ୍ରକାଶନ ସହଜ ହୋଇ ନ ଥାନ୍ତା । କହିବା ବାହୁଲ୍ୟ ଯେ, ମୂଳ ପୁସ୍ତକ "Early India" ପରି ଓଡ଼ିଆରେ ତା'ର ଅନୁବାଦ ଲୋକାଦୃତ ହେଲେ ମୋ ଭଳି ଏମାନେ ସମସ୍ତେ ଆନନ୍ଦିତ ହେବେ ।

**ପ୍ରୀତୀଶ ଆଚାର୍ଯ୍ୟ**

# କୃତଜ୍ଞତା ଜ୍ଞାପନ

ପ୍ରକାଶକଙ୍କ ପକ୍ଷରୁ ସ୍ୱତ୍ୱାଧିକାରୀମାନଙ୍କୁ ଯୋଗାଯୋଗ କରିବାକୁ ସମସ୍ତ ଉଦ୍ୟମ କରାଯାଇଛି । ତା' ସତ୍ତ୍ୱେ ଯଦି ଦୋଷତ୍ରୁଟି ଥିବ, ତାକୁ ଦୃଷ୍ଟିକୁ ଆଣିଲେ ପରବର୍ତ୍ତୀ ସଂସ୍କରଣ ବେଳେ ପ୍ରକାଶକ ତାକୁ ସୁଧାରିନେବେ । ଏହି ପୁସ୍ତକରେ ବ୍ୟବହୃତ ହୋଇଥିବା ସ୍ୱତ୍ୱାଧିକାର ଅନ୍ତର୍ଗତ ସାମଗ୍ରୀ ପାଇଁ ଯେଉଁମାନେ ଅନୁମତି ପ୍ରଦାନ କରିଛନ୍ତି ଲେଖକ ସେମାନଙ୍କୁ ଧନ୍ୟବାଦ ଜ୍ଞାପନ କରନ୍ତି । ସେମାନେ ହେଲେ :

ଜର୍ଜ ଇଫ୍ରା – ଦ ୟୁନିଭର୍ସଲ ହିଷ୍ଟ୍ରି ଅଫ୍ ନମ୍ବର୍ସ, ପ୍ରକାଶକ ହାର୍ଭିଲ ପ୍ରେସ । ଏଥିପାଇଁ ଅନୁମତି ଦେଇଛନ୍ତି ରେଣ୍ଡମ ହାଉସ୍ ଗ୍ରୁପ୍ ଲିମିଟେଡ୍ । ଆର୍. ପାର୍ଥସାରଥୀ ଦ୍ୱାରା ଅନୂଦିତ 'ଦ ଟେଲ୍ ଅଫ୍ ଏନ୍ ଏଂକଲେଟ' ପାଇଁ ଅନୁମତି ଦେଇଛନ୍ତି କଲମ୍ବିଆ ୟୁନିଭର୍ସିଟି ପ୍ରେସ୍ । ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ 'ଦ ପ୍ରିନ୍ସିପୁଲ ଅଫ୍ ଉପନିଷଦ'ର କିଛି ଅଂଶ ପାଇଁ ଅନୁମତି ମିଳିଛି ହାର୍ପର-କଲିନ୍ସ ପବ୍ଲିଶର୍ସ ପାଖରୁ; ନୀଳକଣ୍ଠ ଶାସ୍ତ୍ରୀଙ୍କର 'ଦ ଚୋଳସ୍'ର ଓ ରୋମିଲା ଥାପରଙ୍କ 'ଦ ଅଶୋକ ଏଣ୍ଡ୍ ଦି ଡିକ୍ଲାଇନ୍ ଅଫ୍ ଦ ମୌର୍ଯ୍ୟସ୍'ର କିଛି ଅଂଶ ବ୍ୟବହାର କରିବା ପାଇଁ ଅନୁମତି ଦେଇଛନ୍ତି ଅକ୍ସଫୋର୍ଡ଼ ୟୁନିଭର୍ସିଟି ପ୍ରେସ୍, ନୂଆଦିଲ୍ଲୀ; ରୋନାଲ୍ଡ ଲଥାମଙ୍କ 'ଦ ଟ୍ରାଭେଲ୍ସ ଅଫ୍ ମାର୍କୋ ପୋଲୋ'ର ଅନୁବାଦ ପାଇଁ ଅନୁମତି ଦେଇଛନ୍ତି ପେଙ୍ଗୁଇନ ବୁକ୍ ଲିମିଟେଡ଼; ଏ.କେ. ରାମାନୁଜମଙ୍କ 'ହାଏମ୍ସ ଫର୍ ଦ ଡ୍ରୋନିଙ୍ଗ୍'ର ଅନୁବାଦ ପାଇଁ ଅନୁମତି ଦେଇଛନ୍ତି ପ୍ରିନ୍ସଟନ୍ ୟୁନିଭର୍ସିଟି ପ୍ରେସ୍; ଏ.ଏଲ୍. ବାସମଙ୍କ 'ଦ ୱାଣ୍ଡର ଦେଟ୍ ୱାଜ୍ ଇଣ୍ଡିଆ' ପାଇଁ ମେକମିଲାନ ପବ୍ଲିଶର୍ସ; ଇନ୍ଦିରା ଭି. ପିଟର୍ସନଙ୍କ 'ପୋଏମ୍ସ ଟୁ ଶିବ : ଦି ହାଏମ୍ସ ଅଫ୍ ଦ ତାମିଲ ସେଣ୍ଟସ୍'ର କିଛି ଅଂଶ ପାଇଁ ଲେଖକ ନିଜେ ଅନୁମତି ପ୍ରଦାନ କରିଛନ୍ତି; ଏବଂ ନଗର ଶୈଳୀର ମନ୍ଦିରର ଚିତ୍ର ପାଇଁ ମାଇକେଲ ମେଇଷ୍ଟର, ବୃତ୍ତାକାର ଦେବୀ ମନ୍ଦିରର ନକ୍ସା ପାଇଁ ବିଦ୍ୟା ଦେହେଜିଆ, ନୀଳକଣ୍ଠ ଶାସ୍ତ୍ରୀ ଏବଂ ଏ.କେ. ରାମାନୁଜମ ଅନୁମତି ପ୍ରଦାନ କରିଛନ୍ତି ।

# ପୁସ୍ତକସୂଚୀ ସମ୍ବନ୍ଧରେ ପଦଟିଏ

ପୁସ୍ତକ ଶେଷରେ ଏକ ସାଧାରଣ ପୁସ୍ତକସୂଚୀ ସଂଲଗ୍ନ କରାଯାଇଛି । ଉପକ୍ରମଣିକାରୁ ଆରମ୍ଭ କରି ବିଷୟର ପ୍ରତ୍ୟେକ ମହତ୍ତ୍ୱପୂର୍ଣ୍ଣ ଦିଗ ଉପରେ ରହିଥିବା ପୁସ୍ତକର ସୂଚୀ ତହିଁରେ ରହିଛି । ତା' ବାହାରେ ପ୍ରତ୍ୟେକ ଅଧ୍ୟାୟ ପାଇଁ ଅଧିକ ଅଧ୍ୟୟନ ନିମନ୍ତେ ଆବଶ୍ୟକ ବିଶେଷ ଗ୍ରନ୍ଥସୂଚୀ ମଧ୍ୟ ଦିଆଯାଇଛି । ଯେହେତୁ ପତ୍ରିକାରେ ପ୍ରକାଶିତ ନିବନ୍ଧ ତୁଳନାରେ ପୁସ୍ତକଗୁଡ଼ିକୁ ପ୍ରାପ୍ତ କରିବା ଅଧିକ ସହଜ, ପୁସ୍ତକସୂଚୀକୁ ପୁସ୍ତକ ଯାଏଁ ସୀମାବଦ୍ଧ କରାଯାଇଛି । ମାତ୍ର ନୂତନ ଗବେଷଣାମାନ ପ୍ରାୟତଃ ପତ୍ରିକାରେ ପ୍ରକାଶିତ ନିବନ୍ଧଗୁଡ଼ିକରେ ରହିଥାଏ । ତେଣୁ ସେହି ଧରଣର ପତ୍ରିକାଗୁଡ଼ିକୁ ମଧ୍ୟ ପୁସ୍ତକସୂଚୀରୁ ବାଦ୍ ଦିଆଯାଇ ନାହିଁ ।

# ସୂଚୀପତ୍ର

# ମାନଚିତ୍ର ଓ ଅନ୍ୟ ଚିତ୍ରର ସୂଚୀ

## ନକ୍ସା



## ମାନଚିତ୍ର

(ମାନଚିତ୍ରରେ ଦର୍ଶାଯାଇଥିବା ଭାରତର ବହିଃସୀମାନ୍ତ ପ୍ରକୃତ କିମ୍ବା ନିର୍ଭୁଲ ସୀମାରେଖା ନୁହେଁ ।)

# କାଳାନୁକ୍ରମ

## (1000 ଖ୍ରୀ.ପୂ. – 1300 ଖ୍ରୀଷ୍ଟାବ୍ଦ)

ଚୀନ୍ ଓ ଭୂମଧ୍ୟ ବିଶ୍ୱ ତୁଳନାରେ ଭାରତ ଇତିହାସର ପୂର୍ବ ଅଂଶର କାଳାନୁକ୍ରମ ଏକଦା ଖୁବ୍ ଅନିଶ୍ଚିତ ହୋଇ ରହିଥିଲା । ସାହିତ୍ୟିକ ସୂତ୍ରସାମଗ୍ରୀ (sources) କୌଣସି ନିର୍ଦ୍ଦିଷ୍ଟ ତାରିଖ ବଦଳରେ ଏକ ବ୍ୟାପକ ଅବଧିର ଅଙ୍ଗ ହେବା ଉଚିତ । ମାତ୍ର ଶିଳାଲେଖଗୁଡ଼ିକର ପ୍ରାପ୍ତି ଫଳରେ ସେହି ଅନିଶ୍ଚିତତା ଦୂର ହେବାର ସମ୍ଭାବନା ରହିଛି, କାରଣ ଏକ ନିର୍ଦ୍ଦିଷ୍ଟ ଯୁଗରେ ଶିଳାଲେଖର ସ୍ପଷ୍ଟ ତାରିଖ ରହିଛି । ପ୍ରାଚୀନ ଯୁଗର ଅଧିକାଂଶ ମହତ୍ତ୍ୱପୂର୍ଣ୍ଣ ରାଜବଂଶ ନିଜ ନିଜର ଅବ୍ଦ ପ୍ରଚଳନ କରିଥିଲେ । ଫଳରେ ଅନେକ ଅବ୍ଦ ରହିଛି, ଯଦିଓ ସେଗୁଡ଼ିକ ମଧ୍ୟରେ ଯୋଗସୂତ୍ର ନାହିଁ । ଅଧିକ ବ୍ୟବହୃତ ଅବ୍ଦ ମଧ୍ୟରେ ରହିଛି ବିକ୍ରମାବ୍ଦ ଓ ଶକାବ୍ଦ । ବିକ୍ରମାବ୍ଦ ଖ୍ରୀଷ୍ଟପୂର୍ବ 57-58 ରେ ଏବଂ ଶକାବ୍ଦ 78 ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । ପ୍ରଥମେ ବିକ୍ରମାବ୍ଦକୁ କ୍ରିତାବ୍ଦ ବା ମାଳବାବ୍ଦ ବୋଲି କୁହାଯାଉଥିଲା । ଅନ୍ୟ ଅବ୍ଦଗୁଡ଼ିକ ମଧ୍ୟରେ ଗୁପ୍ତାବ୍ଦ (319-320 ମସିହାରେ ଆରମ୍ଭ), ହର୍ଷାବ୍ଦ (606 ଖ୍ରୀଷ୍ଟାବ୍ଦରେ ଆରମ୍ଭ) ଏବଂ ବିକ୍ରମ-ଚାଲୁକାବ୍ଦ (1075 ଖ୍ରୀଷ୍ଟାବ୍ଦରେ ଆରମ୍ଭ) ତଥା ଆଉ ଅନେକ କିସମର ଅବ୍ଦ ରହିଥିଲା । ବୌଦ୍ଧ ସୂତ୍ରସାମଗ୍ରୀରେ ବୁଦ୍ଧଙ୍କର ଦେହାନ୍ତ ବର୍ଷରୁ କାଳର ଗଣନା ଆରମ୍ଭ କରାଯାଏ । ମାତ୍ର ଏପର୍ଯ୍ୟନ୍ତ ସେହି ଦେହାନ୍ତର ଏକ ନିର୍ଦ୍ଦିଷ୍ଟ ତାରିଖ ଗଣନା କରାଯାଇପାରି ନାହିଁ; ତା' ପାଇଁ ତିନୋଟି ଭିନ୍ନ ଭିନ୍ନ ତାରିଖ ରହିଛି । ସେଗୁଡ଼ିକ ହେଲା : ଖ୍ରୀଷ୍ଟପୂର୍ବ 544, 486 ଏବଂ 483 । ଶେଷ ଦୁଇଟି ବର୍ଷକୁ ବ୍ୟବହାର କରିବା ଯୁକ୍ତିସଙ୍ଗତ ମନେହୁଏ । ପ୍ରଥମଟି ସଂଶୟ ଭିତରେ ରହିଯାଏ । ଆଜିକାଲି ବୁଦ୍ଧଙ୍କର ସମୟକାଳକୁ ନେଇ ନାନା ଆଲୋଚନା ହେଉଛି । ସେହି ଆଲୋଚନା ଅନୁସାରେ ବୁଦ୍ଧଙ୍କର ସମୟକାଳ 100 ବର୍ଷ ପଛକୁ ଚାଲିଆସେ । ସାଧାରଣତଃ ଏହି ନୂତନ କାଳକୁ ଗ୍ରହଣ ନ କରି ସେହି ପ୍ରଚଳିତ କାଳକୁ ଇତିହାସରେ ଗ୍ରହଣ କରାଯାଏ ।

**ଖ୍ରୀଷ୍ଟପୂର୍ବ :**

| | |
|---|---|
| 2600–1700 ପ୍ରାୟ : | ହରପ୍ପାର ନଗରୀକରଣ : ପରିପକ୍ୱ ଓ ଶେଷ କାଳ |
| 1500–500 ପ୍ରାୟ | ବୈଦିକ ସାହିତ୍ୟର ରଚନା ଓ ସଂଗ୍ରହ, ନୂତନ ପ୍ରସ୍ତର ଯୁଗ ଓ ତାମ୍ର ପ୍ରସ୍ତର ଯୁଗ ସଭ୍ୟତା ଓ ଭାରତ ଉପମହାଦେଶରେ ତା'ର ବିସ୍ତାର, ଦକ୍ଷିଣ ଭାରତରେ ମହାପାଷାଣିକ ବା ମେଗାଲିଥିକ ସମାଧି ଅଞ୍ଚଳ |

| | |
|---|---|
| 1000 ପ୍ରାୟ | ଲୌହ ନିର୍ମିତ ସାମଗ୍ରୀ ମିଳିଲା । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ପରଠାରୁ ଲୌହ ନିର୍ମିତ ସାମଗ୍ରୀ ବ୍ୟବହାର ହୋଇଥିବା କ୍ଷେତ୍ରର ଅଭିବୃଦ୍ଧି |
| ଷଷ୍ଠ ଶତାବ୍ଦୀ ପ୍ରାୟ | ଗାଙ୍ଗେୟ କ୍ଷେତ୍ରରେ ନଗରୀକରଣ, ଆଦ୍ୟକାଳୀନ ରାଜ୍ୟ ଗଠନ, ମଗଧର ଉତ୍‌ଥାନ, ମହାବୀର, ଗୌତମବୁଦ୍ଧ |
| 519 | ପାରସ୍ୟର ଏକେମେନିଡ୍‌ ସମ୍ରାଟ୍ ସାଇରସଙ୍କର ଭାରତର ଉତ୍ତର-ପଶ୍ଚିମାଞ୍ଚଳର କେତେକ ଅଂଶ ଉପରେ ଜୟଲାଭ |
| 493 ପ୍ରାୟ | ଅଜାତଶତ୍ରୁଙ୍କର ସିଂହାସନ ଆରୋହଣ |
| 486 ପ୍ରାୟ | ବୁଦ୍ଧଙ୍କର ଦେହାନ୍ତ ବା ପରିନିର୍ବାଣ |
| 362–321 ପ୍ରାୟ | ନନ୍ଦ ବଂଶ |
| 327–325 | ଭାରତରେ ମାସିଡୋନର ଆଲେକ୍‌ଜାଣ୍ଡାର୍ |
| 321 | ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ସିଂହାସନ ଆରୋହଣ |
| 268–231 | ଅଶୋକଙ୍କ ଶାସନକାଳ |
| 250 ପ୍ରାୟ | ପାଟଳିପୁତ୍ରଠାରେ ତୃତୀୟ ବୌଦ୍ଧ ସମ୍ମିଳନୀ |
| 185 | ମୌର୍ଯ୍ୟ ଶାସନର ପରିସମାପ୍ତି ଓ ଶୁଙ୍ଗ ରାଜାଙ୍କର ସିଂହାସନ ଆରୋହଣ |
| 180–165 | ଡିମେଟ୍ରିଅସଙ୍କ ଅଧୀନରେ ଉତ୍ତର-ପଶ୍ଚିମାଞ୍ଚଳରେ ଇଣ୍ଡୋ-ଗ୍ରୀକ୍ ଶାସନ |
| 166–150 ପ୍ରାୟ | ସର୍ବୋତ୍ତମ ଇଣ୍ଡୋ-ଗ୍ରୀକ୍ ଶାସକ ମେନାନ୍ଦର |
| 94 ପ୍ରାୟ | ଉତ୍ତର-ପଶ୍ଚିମ ଭାରତରେ ଶକ ରାଜା ମାଉଏସ |
| 58 | ବିକ୍ରମାବ୍ଦର ସମ୍ଭାବ୍ୟ ସ୍ଥାପକ ପ୍ରଥମ ଅଜେସ |
| 50 ପ୍ରାୟ | ଦାକ୍ଷିଣାତ୍ୟରେ ସାତବାହନ ଶକ୍ତିର ଉତ୍‌ଥାନ |
| 50 ପ୍ରାୟ | କଳିଙ୍ଗ ରାଜା ଖାରବେଳ |
| **ଖ୍ରୀଷ୍ଟାବ୍ଦ :** | |
| ପ୍ରାୟ 50 ଖ୍ରୀ.ପୂ. – 50 ମସିହା | ଭାରତ ସହିତ ରୋମାନ୍ ବାଣିଜ୍ୟର ଉତ୍କର୍ଷ କାଳ |

| | |
|---|---|
| ପ୍ରଥମ ଶତାବ୍ଦୀ | କୁଶାଣ ଶକ୍ତିର ପ୍ରତିଷ୍ଠା |
| 78 (?) ପ୍ରାୟ | ଉତ୍ତର-ପଶ୍ଚିମରେ କୁଶାଣ ରାଜା କନିଷ୍କଙ୍କର ସିଂହାସନ ଆରୋହଣ, ଶକାବ୍ଦର ସ୍ଥାପନ |
| 125 ପ୍ରାୟ | ଗୌତମୀପୁତ୍ର ଏବଂ ପରେ ବଶିଷ୍ଠପୁତ୍ରଙ୍କର ସାତବାହନ ରାଜ୍ୟରେ ଶାସନ |
| 150 ପ୍ରାୟ | ଶକ କ୍ଷତ୍ରପ ରାଜା ରୁଦ୍ରଦମନଙ୍କର ପଶ୍ଚିମ ଭାରତରେ ଶାସନ |
| 319–20 | ଗୁପ୍ତ ରାଜବଂଶର ପ୍ରତିଷ୍ଠାତା ପ୍ରଥମ ଚନ୍ଦ୍ରଗୁପ୍ତଙ୍କର ସିଂହାସନ ଆରୋହଣ |
| 335 | ସମୁଦ୍ରଗୁପ୍ତଙ୍କର ସିଂହାସନ ଆରୋହଣ |
| 375–415 | ଦ୍ୱିତୀୟ ଚନ୍ଦ୍ରଗୁପ୍ତ |
| 405–411 | ଫାଇହାନଙ୍କ ଭାରତ ପରିଭ୍ରମଣ |
| 455 ପ୍ରାୟ | ସ୍କନ୍ଦଗୁପ୍ତଙ୍କ ଶାସନ କାଳରେ ହୂନ୍‌ମାନଙ୍କର ଉତ୍ତର ଭାରତ ଆକ୍ରମଣ |
| 476 | ଜ୍ୟୋତିଷ ଶାସ୍ତ୍ରଜ୍ଞ ଆର୍ଯ୍ୟଭଟ୍ଟ |
| 505 | ଜ୍ୟୋତିଷ ଶାସ୍ତ୍ରଜ୍ଞ ବରାହମିହିର |
| 543–66 | ପ୍ରଥମ ପୁଲକେଶୀ ଓ ବାଦାମିର ଚାଲୁକ୍ୟ ବଂଶର ଉତ୍ଥାନ |
| 574–60 | ସିଂହ ବିଷ୍ଣୁଙ୍କ କର୍ତ୍ତୃତ୍ୱରେ କାଞ୍ଚିରେ ପଲ୍ଲବମାନଙ୍କର ଉତ୍ଥାନ |
| 606–47 | କନୌଜର ରାଜା ହର୍ଷବର୍ଦ୍ଧନ |
| 630–643 | ଭାରତରେ ହୁଏନ୍‌ସାଂ |
| 600–630 | ମହେନ୍ଦ୍ରବର୍ମାଙ୍କ କର୍ତ୍ତୃତ୍ୱରେ ପଲ୍ଲବ ରାଜଶକ୍ତିର ପ୍ରତିଷ୍ଠା |
| 609–42 | ଦ୍ୱିତୀୟ ପୁଲକେଶୀଙ୍କ କର୍ତ୍ତୃତ୍ୱରେ ଚାଲୁକ୍ୟ ରାଜଶକ୍ତିର ପ୍ରତିଷ୍ଠା, ପଲ୍ଲବ ଓ ଚାଲୁକ୍ୟ ମଧ୍ୟରେ କଳହ ଆରମ୍ଭ |
| 712 | ଆରବମାନଙ୍କର ସିନ୍ଧୁ ଅଧିକାର |
| 736 | ଦିଲ୍ଲୀର ପ୍ରଥମ ନଗର ଦିଲ୍ଲିକାର ପ୍ରତିଷ୍ଠା |
| 752 ପ୍ରାୟ | ଚାଲୁକ୍ୟମାନଙ୍କ ଉପରେ ରାଷ୍ଟ୍ରକୂଟମାନଙ୍କର ବିଜୟ |
| 770 ପ୍ରାୟ | ପୂର୍ବ ଭାରତରେ ଗୋପାଳଙ୍କ ଦ୍ୱାରା ପାଳ ରାଜବଂଶର ସ୍ଥାପନା |
| 780 ପ୍ରାୟ | ଗୁର୍ଜର ପ୍ରତିହାରମାନଙ୍କର ଉତ୍‌ଥାନ |

| | | |
|---|---|---|
| 788–820 ପ୍ରାୟ | | ଶଙ୍କରାଚାର୍ଯ୍ୟ |
| ୪14–80 | : | ରାଷ୍ଟ୍ରକୂଟ ରାଜା ଅମୋଘବର୍ଷଙ୍କର ଶାସନ |
| 840 ପ୍ରାୟ | | ରାଜା ଭୋଜଙ୍କ କର୍ତ୍ତୃତ୍ୱରେ ପ୍ରତିହାର ରାଜବଂଶର ପ୍ରତିଷ୍ଠା |
| 907 ପ୍ରାୟ | : | ଦକ୍ଷିଣ ଭାରତରେ ପ୍ରଥମ ପରାନ୍ତକଙ୍କ କର୍ତ୍ତୃତ୍ୱରେ ଚୋଳ ରାଜଶକ୍ତିର ଅଭିବୃଦ୍ଧି |
| 973 ପ୍ରାୟ | | କଲ୍ୟାଣୀର ଚାଲୁକ୍ୟମାନଙ୍କ ହାତରେ ରାଷ୍ଟ୍ରକୂଟମାନଙ୍କର ପରାଜୟ |
| 985–1014 | | ପ୍ରଥମ ରାଜରାଜଙ୍କ ନେତୃତ୍ୱରେ ଚୋଳ ଶକ୍ତିର ଅଭିବୃଦ୍ଧି |
| 1000–1026 | | ମାମୁଦ ଗଜନୀଙ୍କର ଉତ୍ତର-ପଶ୍ଚିମ ଭାରତ ଲୁଣ୍ଠନ |
| 1023 | | ରାଜେନ୍ଦ୍ର ଚୋଳଙ୍କ ଉତ୍ତର ଅଭିମୁଖେ ଅଭିଯାନ |
| 1025 | | ଚୋଳମାନଙ୍କର ନୌ ଅଭିଯାନ |
| 1030 | | ଭାରତରେ ଆଲ୍‌ବେରୁନି |
| 1075 ପ୍ରାୟ | | ରାମାନୁଜ |
| 1077–1147 | | ଗଙ୍ଗ ରାଜବଂଶର ପ୍ରତିଷ୍ଠା |
| 1077 | | ଚୀନ୍‌କୁ ଚୋଳମାନଙ୍କର ବାଣିଜ୍ୟ ଦୂତ ପ୍ରେରଣ |
| 1077–1120 | | ରାମପାଳଙ୍କ ନେତୃତ୍ୱରେ ପାଳ ରାଜବଂଶର ପୁନରୁତ୍‌ଥାନ |
| 1110 | | ବିଷ୍ଣୁବର୍ଦ୍ଧନ ଓ ହୟଶାଳ ରାଜଶକ୍ତିର ଉତ୍‌ଥାନ |
| 1144–71 | | ଚାଲୁକ୍ୟ ଓ ସୋଲାଙ୍କି ରାଜା କୁମାରପାଳ |
| 1148 | | କଲ୍‌ହଣଙ୍କ 'ରାଜତରଙ୍ଗିଣୀ' ରଚନା |
| 1192 | | ତିରୋରୀ ଯୁଦ୍ଧରେ ପୃଥ୍ୱୀରାଜ ଚୌହାନଙ୍କର ମହମ୍ମଦ ଘୋରୀଙ୍କ ହାତରେ ପରାଜୟ |
| 1206 | | କୁତବୁଦ୍ଦିନ ଆଇବାକଙ୍କ ନେତୃତ୍ୱରେ ଦିଲ୍ଲୀ ସୁଲତାନୀ ଶାସନର ପ୍ରତିଷ୍ଠା |
| 1250 ପ୍ରାୟ | | କୋଣାର୍କର ସୂର୍ଯ୍ୟ ମନ୍ଦିର |
| 1246–79 | | ଶେଷ ଚୋଳ ରାଜା ତୃତୀୟ ରାଜେନ୍ଦ୍ର |

# ଉପକ୍ରମଣିକା

ମୋର ଇତିହାସ ଅଧ୍ୟାପନା ଓ ଗବେଷଣା ବୃତ୍ତି ଆରମ୍ଭ କଲାବେଳେ ଯେଉଁ ପୁସ୍ତକଟିକୁ ମୂଳତଃ ଲେଖାଯାଇଥିଲା, ଜୀବନର ସାୟଂକାଳରେ ଏବେ ତା'ର ପୁନଃସଂସ୍କରଣ କରାଯାଉଛି । ତେଣୁ ଏଥିରେ କିଛି ଆତ୍ମଜୀବନୀର ଛିଟା ରହିବା ସ୍ୱାଭାବିକ । ପ୍ରଥମ ମୁଦ୍ରଣର ଚାଳିଶ ବର୍ଷ ପରେ ପାଣ୍ଡୁଲିପିକୁ ଦେଖିଲାବେଳେ ଆଦ୍ୟକାଳୀନ ଭାରତ ଇତିହାସ ଅଧ୍ୟୟନ କ୍ଷେତ୍ରରେ ସୃଷ୍ଟି ହୋଇଥିବା ପରିବର୍ତ୍ତନଯାକ ମୋର ସ୍ମୃତିକୁ ଆସୁଛି । ତନ୍ମଧ୍ୟରୁ କେତେକ ପରିବର୍ତ୍ତନ ସମ୍ଭବ ହୋଇଛି ନୂତନ ତଥ୍ୟ-ପ୍ରମାଣର ଆବିଷ୍କାର ଯୋଗୁଁ । ମାତ୍ର ତା'ଠାରୁ ଅଧିକ ପରିବର୍ତ୍ତନ ସମ୍ଭବ ହୋଇଛି ପ୍ରଚଳିତ ତଥ୍ୟ-ପ୍ରମାଣର ନୂତନ ବ୍ୟାଖ୍ୟା ଯୋଗୁଁ । ଏହିସବୁ ଅଧ୍ୟୟନକୁ ନେଇ ବିଶଦ ଚର୍ଚ୍ଚାମାନ ହୋଇଛି ଏବଂ ତହିଁରେ ମୋର ଯୋଗଦାନ ଯୋଗୁଁ ଆଦ୍ୟକାଳୀନ ଇତିହାସ ଉପରେ ମୋର ଅବଧାରଣା ସଠିକ୍ ରୂପ ପାଇଛି । ଏଥିରେ ସେହିସବୁ ଆବଶ୍ୟକୀୟ ଅଧ୍ୟୟନଗୁଡ଼ିକୁ ସାମିଲ କରିବାକୁ ଉଦ୍ୟମ କରାଯାଇଛି । ମୋ ବିଚାରରେ ତା' ପାଇଁ ଆଉ ଏକ ସମ୍ପୂର୍ଣ୍ଣ ପୃଥକ ବହି ରଚନା କରିବାର ଆବଶ୍ୟକତା ନାହିଁ । ଫଳସ୍ୱରୂପ, ଏହି ପୁସ୍ତକରେ ଏମିତି ଅନେକ କିଛି ରହିଛି, ଯାହା ଅନ୍ୟଠାରୁ ପୃଥକ । ପ୍ରଥମ ସଂସ୍କରଣରେ ଅନେକ ବିଚାର, ଯାହାକୁ କେବଳ ସ୍ପର୍ଶ କରାଯାଇଥିଲା, ତା'ର ଏଥିରେ ବିସ୍ତୃତ ଆଲୋଚନା କରାଯାଇଛି । ସେତେବେଳେ ଅବଶ୍ୟ ଜଣାପଡୁ ନ ଥିଲା, ମାତ୍ର ପ୍ରଥମ ସଂସ୍କରଣଟିକୁ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ପ୍ରସ୍ତୁତ କରାଯାଇଥିଲା । ସେତେବେଳେ ଇଣ୍ଡୋଲୋଜିରେ ଆଗ୍ରହ ଯୋଗୁଁ ଆଦ୍ୟକାଳୀନ ଭାରତ ଇତିହାସର ରଚନା ଆରମ୍ଭ ହୋଇଥିଲା । କାଳକ୍ରମେ ଏହା ମାନବିକୀ ବିଜ୍ଞାନର ଅଙ୍ଗ ହେଲା । ଏହି ପରିବର୍ତ୍ତନକୁ ମୁଁ ଇତିହାସ ତତ୍ତ୍ୱ ସମ୍ପର୍କିତ ପ୍ରଥମ ଅଧ୍ୟାୟରେ ଦର୍ଶାଇବାକୁ ପ୍ରୟାସ କରିଛି । ପ୍ରାୟତଃ ମୁଁ ପ୍ରଥମ ସଂସ୍କରଣର କ୍ରମାବଧି ମଧ୍ୟରେ ଏହାକୁ ସୀମିତ ରଖିଛି, କାରଣ ମୋର ମନେହେଲା ତାହାହିଁ ଯଥୋଚିତ ହେବ; ପାଣ୍ଡୁଲିପିରେ ଅନେକ ପରିବର୍ତ୍ତନର ଆବଶ୍ୟକତା ନାହିଁ । ଅଧ୍ୟାୟଗୁଡ଼ିକୁ ନୂଆ ବାଗରେ ରଖାଯାଇଛି, ଯାହାଫଳରେ ତହିଁରେ ନୂତନ ତଥ୍ୟ ସାମଗ୍ରୀଗୁଡ଼ିକୁ ସ୍ଥାନିତ କରିହେବ । ପୁଣି ଅନେକ ଅଧ୍ୟାୟରେ ନୂତନ ବ୍ୟାଖ୍ୟାକୁ ମହତ୍ତ୍ୱ ଦିଆଯାଇଛି । ବିଗତ ଚାରି ଦଶନ୍ଧି ଭିତରେ ଆଦ୍ୟକାଳୀନ ଭାରତ ଇତିହାସର ଅଧ୍ୟୟନରେ ବ୍ୟାପକ ପରିବର୍ତ୍ତନମାନ ଦେଖିବାକୁ ମିଳିଛି । ସେସବୁକୁ ମୋର ଏହି ରଚନାରେ ସମ୍ମିଳିତ କରି ରଖିବାକୁ ମୁଁ ଉଦ୍ୟମ ମାତ୍ର କରିଛି ।

ନାନା ଧରଣର ନିରନ୍ତର ଐତିହାସିକ ମୂଲ୍ୟାଙ୍କନ ଯୋଗୁଁ ଏହିସବୁ ନୂତନ ଅଧ୍ୟୟନ ସମ୍ଭବପର ହୋଇପାରିଛି । କେତେକ ଅଧ୍ୟୟନରେ ଅତୀତ ଭାରତର ଔପନିବେଶିକ ବ୍ୟାଖ୍ୟା ରହିଛି । ସ୍ୱାଧୀନତୋତ୍ତର ଭାରତରେ ରହିଥିବା ସଂସ୍କୃତିକୁ ବିରୋଧ କରି ତାହା ବିକଶିତ ହୋଇଛି । ୟୁରୋପରେ ପ୍ରଚଳିତ ଲୌକିକ କଳ୍ପନାରେ ଭାରତ ହେଲା ଏକ ଅମାପ ଧନସମ୍ପଦଭରା ଦେଶ । ଏଠାରେ ନାନା ରହସ୍ୟମୟ ଘଟଣା ପରିଘଟିତ ହୁଏ । ଏଠାକାର ଅନେକ ତତ୍ତ୍ୱ-ବିଚାର ସାଂସାରିକ ଅନୁଭବ ବାହାରେ । ପିମ୍ପୁଡ଼ିମାନେ ଏଠି ସୁନା ଖନନ କରନ୍ତି; ଦାର୍ଶନିକମାନେ ଉଲଗ୍ନ ଶରୀରରେ ବଣଜଙ୍ଗଲରେ ବାସ କରନ୍ତି ଏବଂ ଜୀବନାନ୍ତରେ ଆତ୍ମାର ଧ୍ୟାନ କରନ୍ତି । ପ୍ରାଚୀନ ଗ୍ରୀକ୍‌ମାନେ ଭାରତର ଏଭଳି ଏକ ବିଚିତ୍ର ଚିତ୍ର ଆଙ୍କି ଦେଇଛନ୍ତି । ୟୁରୋପରେ ଭାରତକୁ ନେଇ ଏହି ଧରଣର ଚିତ୍ର ନିକଟ ଅତୀତରେ ମଧ୍ୟ ଦେଖିବାକୁ ମିଳୁଥିଲା । ମାତ୍ର ବାସ୍ତବିକତା ହେଲା ଯେ, ଅନ୍ୟାନ୍ୟ ପ୍ରାଚୀନ ସଂସ୍କୃତି ଭଳି, ଭାରତରେ ମଧ୍ୟ ହାତଗଣନ୍ତା କେତେକଙ୍କ ପାଖରେ ଧନସମ୍ପଦ ଗଚ୍ଛିତ ଥିଲା । ଠିକ୍ ସେହିଭଳି ରଶି ଉପରେ ଚାଲିବାର ଖେଳ ଖେଳୁଥିଲେ ମାତ୍ର କିଛି ଲୋକ । ଅବଶ୍ୟ ଏକଥା ସତ ଯେ ହତଚକିତ କଲାଭଳି ଏହି ସବୁ କିମ୍ଭୂତକିମାକାର ଧାରଣାମାନ ଭାରତସାରା ଖୁବ୍ ଶୀଘ୍ର ବ୍ୟାପିଯାଏ । ଆଉ କେଉଁ ସଂସ୍କୃତିରେ ହୋଇଥିଲେ ରଶି ଖେଳକୁ ସଇତାନ ସାଙ୍ଗରେ ଯୋଡ଼ି, ସେ ସମ୍ପର୍କିତ ସୂତ୍ରସାମଗ୍ରୀଗୁଡ଼ିକୁ ଚପେଇ ଦିଆଯାଇଥାନ୍ତା । ଲୋକ ସେକଥା ଜାଣିପାରି ନ ଥାନ୍ତେ । ମାତ୍ର ଭାରତରେ ତାକୁ ବିଶ୍ୱାସ ଓ ଅବିଶ୍ୱାସର ଏକ ମିଶ୍ରଣ ରୂପରେ ଗ୍ରହଣ କରିନିଆଯାଏ । ଭାରତୀୟ ସଂସ୍କୃତିର ଏକ ମୌଳିକ ସତ୍ୟ ଦିଗ ହେଲା ଏଠି ସାଟାନ ବା ସଇତାନର କଳ୍ପନା ନାହିଁ ।

ଭାରତର ସଂସ୍କୃତିକୁ ନେଇ ରହିଥିବା ଆଦ୍ୟ ଔପନିବେଶିକ ମତ ଓ ରାଷ୍ଟ୍ରବାଦୀ ମତକୁ ବିରୋଧ କରି ବ୍ୟାପିଥିବା ପ୍ରତିକ୍ରିୟା ଥିଲା ସାମାନ୍ୟ ଭିନ୍ନ ଧରଣର । ଗୋଟିଏ ପ୍ରତିକ୍ରିୟା ଥିଲା ଖୁବ୍ ସରଳ ଧରଣର । ଭାରତୀୟ ସଭ୍ୟତା ସମ୍ପର୍କରେ ଯାହାସବୁ ନକାରାତ୍ମକ କଥ୍ୟ ରହିଛି, ତାକୁ ଏହା ଖଣ୍ଡନ କରେ ଅଥବା ଓଲଟାଇ ଦେବାକୁ ଚେଷ୍ଟା କରେ । ତା' ସହିତ ସକାରାତ୍ମକ କଥ୍ୟଗୁଡ଼ିକୁ ଏହା ଅତିରଞ୍ଜନ କରି ବଖାଣେ । ଭାରତର କିଛି ଲୌକିକ କଳ୍ପନାରେ ଏହି ପ୍ରତିକ୍ରିୟା ଆଜିକାଲି ମଧ୍ୟ ବେଶ୍ ଚେର ଧରିଛି । ଇତିହାସ ପରିପ୍ରେକ୍ଷୀରେ ଏହାର ଏକ ମହତ୍ତ୍ୱପୂର୍ଣ୍ଣ ଦିଗ ହେଲା ଯେ, ଇତିହାସକୁ ଏକ ସ୍ୱତନ୍ତ୍ର ପାଠ୍ୟ ବିଷୟ ରୂପେ ଏହା ଗ୍ରହଣ କରେ । ଇତିହାସ ଅଧ୍ୟୟନର ଏକ ବିଶେଷ ପଦ୍ଧତି ରହିଛି । ଅତୀତକୁ ବୁଝିବାକୁ ହେଲେ ନାନା ବୈକଳ୍ପିକ ଦୃଷ୍ଟିକୋଣ ଓ ଅଧ୍ୟୟନର ଆବଶ୍ୟକତା ରହିଛି । ଆମର ଏହି ପୁସ୍ତକରେ ସେହି ଦୃଷ୍ଟିକୋଣ ଓ ଅଧ୍ୟୟନକୁ ବିଶେଷ ମହତ୍ତ୍ୱ ଦିଆଯାଇଛି ।

ସେତେବେଳେ ପ୍ରଥମେ ପ୍ରଶ୍ନ ହେଉଥିଲା : ଭାରତରେ ଇତିହାସ(୧) ଲେଖା କେମିତି ଆରମ୍ଭ ହେଲା ? କିଏ ଥିଲେ ସେହି ଐତିହାସିକମାନେ ? କାହିଁକି ଲେଖୁଥିଲେ ସେମାନେ ଇତିହାସ ? କେଉଁସବୁ ବୌଦ୍ଧିକ ଏବଂ ବୈଚାରିକ ପ୍ରଭାବ ସେମାନଙ୍କ ଲେଖା ଇତିହାସକୁ ସ୍ୱରୂପ ଦେଉଥିଲା ? ସଂକ୍ଷେପରେ ଏହିସବୁ ପ୍ରଶ୍ନ ସମ୍ମିଳିତ ବିଷୟକୁ ଆମେ ଇତିହାସତତ୍ତ୍ୱ ନାମରେ ନାମିତ କରିଥାଉଁ । ଇତିହାସ କଦାଚିତ ସୂଚନା ନୁହେଁ, ଯାହା ଅକ୍ଷତ ଅବସ୍ଥାରେ ପିଢ଼ିରୁ ପିଢ଼ିକୁ ହସ୍ତାନ୍ତରିତ ହେବ । ଇତିହାସରେ ଐତିହାସିକ ପୃଷ୍ଠଭୂମିକୁ ବୋଧଗମ୍ୟ କରିବାକୁ ହୁଏ; ସେ ପୁଣି ତଥ୍ୟ ଆଧାରରେ । ଏହା ଯୁକ୍ତିସିଦ୍ଧ ତର୍କରୁ ସାଧାରଣ ସତ୍ୟକୁ (generalizations) ଲାଭ କରିବାରେ ସାହାଯ୍ୟ କରେ । ନୂଆ ତଥ୍ୟ ମିଳିଲେ କିମ୍ବା ସ୍ଥାପିତ ତଥ୍ୟକୁ ନୂଆ କରି ବ୍ୟାଖ୍ୟା କରାଗଲେ ଅତୀତକୁ ନେଇ ଆମର ଧାରଣା ନୂତନ ସ୍ୱରୂପ ପାଏ । ମାତ୍ର ଏଥିରେ ଦ୍ୱିମତ ହେବାର ନାହିଁ ଯେ, ବ୍ୟାଖ୍ୟା ସର୍ବଦା ନିର୍ଭରଯୋଗ୍ୟ ତଥ୍ୟ, ପରୀକ୍ଷଣୀୟ ପଦ୍ଧତି ଏବଂ ତର୍କସମ୍ମତ ଯୁକ୍ତି ଉପରେ ଆଧାରିତ ହେବା କଥା । ଏତିକି ହୋଇପାରିଲେ ପୁରାତନ କାଳରେ ଲୋକ କେମିତି ଜୀବନଯାପନ କରୁଥିଲେ ଏବଂ ତାଙ୍କ ପ୍ରାଚୀନ ସମୟକୁ ସେମାନେ କେମିତି ଦେଖୁଥିଲେ ସେ ନେଇ ଏକ ସମ୍ବେଦନଶୀଳତା ସୃଷ୍ଟି ହେବ । ଏହିସବୁ କାରଣରୁ ଇତିହାସ ତତ୍ତ୍ୱ ଇତିହାସ ଅଧ୍ୟୟନ ନିମନ୍ତେ ଜ୍ଞାନ ରୂପର ଏକ ପ୍ରାରମ୍ଭିକ ସୋପାନ ସଦୃଶ ହୁଏ ।

ପ୍ରଚଳିତ ବୌଦ୍ଧିକ ପରମ୍ପରାରୁ ପ୍ରାୟତଃ ବ୍ୟାଖ୍ୟାର ନିର୍ମାଣ ହୁଏ । ଇତିହାସ ଅଧ୍ୟୟନ ସହିତ ଏଥିରେ ପରିବର୍ତ୍ତନ ଦେଖିବାକୁ ମିଳେ । ଇତିହାସ କେମିତି ଲେଖାଯାଏ – ତାକୁ ଦେଖିବା ଅର୍ଥ ବିଚାର୍ଯ୍ୟ ସମୟର ବୌଦ୍ଧିକ ଇତିହାସ ଖୋଜିବା । ଏଥିରେ ଖୁବ୍ ଅଧିକ ମାତ୍ରାରେ ବିଚାର ଓ ପର୍ଯ୍ୟାଲୋଚନା ରହିବାର ସମ୍ଭାବନା ଥାଏ । ତେଣୁ କୌଣସି ସମାଜରେ ଇତିହାସର ଆରମ୍ଭ ବିନ୍ଦୁ ହେବ ଇତିହାସତତ୍ତ୍ୱ ସହିତ ଆନ୍ତରିକତାର ସହ ପରିଚିତ ହେବା ଏବଂ ତା' ସହିତ ଐତିହାସିକ ବ୍ୟାଖ୍ୟା ଓ ବିଶ୍ଳେଷଣର ଇତିହାସକୁ ବୁଝିବା । ଏହାଦ୍ୱାରା ଘଟଣାବଳୀର କେବଳ ବର୍ଣ୍ଣନା ପରିବର୍ତ୍ତେ ଇତିହାସର ବୌଦ୍ଧିକ ପରିଦୃଶ୍ୟ ଅଧିକ ମହତ୍ତ୍ୱ ପାଏ । ପରିଦୃଶ୍ୟ ସହିତ ଅନ୍ତରଙ୍ଗ ହେଲେ ଅତୀତକୁ ସମ୍ବେଦନଶୀଳ ଦୃଷ୍ଟିରେ ବୁଝିହୁଏ । ଇତିହାସତତ୍ତ୍ୱ ସହିତ ଏହି ପରିଚିତି ଯୋଗୁଁ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଭାରତୀୟ ଇତିହାସକୁ ନେଇ ରହିଥିବା ଆମର ମୌଳିକ ଚେତନାରେ ବିକାଶ ସମ୍ଭବପର ହୋଇଛି ।

ଇତିହାସ ତତ୍ତ୍ୱଗତ ପରିବର୍ତ୍ତନରେ ନୂତନ ତଥ୍ୟ ଓ ସ୍ଥାପିତ ତଥ୍ୟକୁ ନୂତନ ଦୃଷ୍ଟିରେ ପର୍ଯ୍ୟାବଲୋକନ କରିବାର ପ୍ରକ୍ରିୟା ସାମିଲ ହୋଇ ରହିଛି । ସମାଜ, ଅର୍ଥନୀତି ଓ ଧର୍ମର

---

(୧) ଏହି ପୁସ୍ତକରେ ପ୍ରାକ୍-ଆଧୁନିକ ଦକ୍ଷିଣ ଏସିଆର ପ୍ରାରମ୍ଭିକ ସଂଭାଗକୁ ନିଆଯାଇଛି । 'ଭାରତ' ଏବଂ 'ଭାରତୀୟ' ଆଦି ପଦକୁ ସମଗ୍ର ଭାରତୀୟ ଉପମହାଦେଶ ଅର୍ଥରେ ବ୍ୟବହାର କରାଯାଇଛି । ଯେଉଁଠି ଆଧୁନିକ ଭାରତର ରାଜ୍ୟ-ରାଷ୍ଟ୍ର କଥା ରହିଛି, ତା'ର ସ୍ୱତନ୍ତ୍ର ଉଲ୍ଲେଖ କରାଯାଇଛି ।

ଅଧ୍ୟୟନ ଆଦି ମାନବିକୀ ବିଜ୍ଞାନର ଭିନ୍ନ ଭିନ୍ନ ଦୃଷ୍ଟିକୋଣକୁ ସାମିଲ କରାଯିବା ଦ୍ୱାରା ଇତିହାସର ବିଶ୍ଳେଷଣରେ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ସମ୍ଭବ ହୋଇଛି । ଯେଉଁ ପ୍ରଶ୍ନଗୁଡ଼ିକ ଆଗରୁ ପଚରାଯାଇ ନ ଥିଲା, ସେହି ପ୍ରଶ୍ନଗୁଡ଼ିକୁ ଅଧୁନା ପଚରାଯାଉଛି । ପୂର୍ବରୁ ଇତିହାସ ରଚନାରେ ମୁଖ୍ୟତଃ ରାଜନୀତିକୁ କେନ୍ଦ୍ର କରାଯାଉଥିଲା; ଏବେ ସମସ୍ତ ମନୁଷ୍ୟ କ୍ରିୟା ଏବଂ କ୍ରିୟାଗୁଡ଼ିକ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ଇତିହାସରେ ଅନ୍ତର୍ଭୁକ୍ତ କରାଯାଉଛି । ଏହା ସେହି ଯୁକ୍ତିକୁ ବଳ ଦିଏ, ଯାହା ବାସ୍ତବିକତାର କଳ୍ପନା ସର୍ବଦା ସାମାଜିକ ଓ ସାଂସ୍କୃତିକ ନିୟନ୍ତ୍ରଣର ଅଧୀନରେ ରହେ ବୋଲି ତଥା ପ୍ରତ୍ୟେକ କ୍ରିୟା ପଛରେ ଅନେକାନେକ କାରଣ ରହିଛି ବୋଲି ଦାବି କରେ : ଜ୍ଞାନର ବିକାଶ ଘଟିଲେ ଏହିସବୁ ଦୃଷ୍ଟିକୋଣରେ ନିଶ୍ଚିତରୂପେ ପରିବର୍ତ୍ତନ ଦେଖାଯିବ । ସେହି ଦୃଷ୍ଟିରୁ ଦେଖିଲେ, ଐତିହାସିକ ବିଶ୍ଳେଷଣ ଯୋଗୁଁ କେମିତି 'ଅତୀତ' ଆସି 'ବର୍ତ୍ତମାନ'କୁ ଏବଂ 'ବର୍ତ୍ତମାନ' ଯାଇ 'ଅତୀତ'କୁ ପ୍ରଭାବିତ କରେ, ତାହା ଆମେ ଜାଣିପାରନ୍ତି ।

ତଥ୍ୟ ପ୍ରମାଣର ନୂତନ ସୂତ୍ରସାମଗ୍ରୀ ମଧ୍ୟରେ ପ୍ରାଚୀନ ମୁଦ୍ରା, ଅଭିଲେଖ ଓ ସ୍ଥାପତ୍ୟ କଳା ତ ରହିଛି, ତା' ସାଙ୍ଗକୁ ରହିଛି ପୁରାତତ୍ତ୍ୱ ପ୍ରଦତ୍ତ ତଥ୍ୟ, ଇତିହାସ ଓ ପରିବେଶ ମଧ୍ୟରେ ରହିଥିବା ସମ୍ପର୍କରୁ ସୃଷ୍ଟ ତଥ୍ୟ ଏବଂ ଐତିହାସିକ ତଥା ସାମାଜିକ ଭାଷାବିଜ୍ଞାନ ପ୍ରଦତ୍ତ ଅନ୍ତର୍ଦୃଷ୍ଟି । ତୁଳନାତ୍ମକ ଢଙ୍ଗରେ ବ୍ୟବହାର କଲା ପରେ ମୌଖିକ ପରମ୍ପରା କିଭଳି ସୂଚନାକୁ ସଂରକ୍ଷଣ କରି ରଖିପାରେ, ତାହା ସୁସ୍ପଷ୍ଟ ହୁଏ । ଏହା ଉଭୟ ସାକ୍ଷରତାର ଊର୍ଦ୍ଧ୍ୱରେ ରହିଥିବା ସମାଜରେ ଏବଂ ଅକ୍ଷର ବଦଳରେ ମୌଖିକ ପରମ୍ପରାକୁ ବ୍ୟବହାର କରିବାକୁ ଆଗ୍ରହୀ ସମାଜରେ ଦେଖିବାକୁ ମିଳିଥାଏ । ପ୍ରାଚୀନ ସମାଜକୁ ଜାଣିବା ସକାଶେ ଏହି ମୌଖିକ ପରମ୍ପରାର ପଦ୍ଧତିକୁ ବ୍ୟବହାର କରାଗଲେ ଅନେକ ନୂଆ କଥା ଜଣାପଡ଼ିବାର ସମ୍ଭାବନା ରହିଛି ।

ଆଜିକାଲି ପୁରାତତ୍ତ୍ୱରୁ ପ୍ରାପ୍ତ ତଥ୍ୟ ଉପରେ ଭାରତର ଆଦ୍ୟକାଳୀନ ଇତିହାସ ଅଧିକାଧିକ ନିର୍ଭର କରୁଛି । ପୁରାତତ୍ତ୍ୱ ଯେଉଁ ବଳିଷ୍ଠ ତଥ୍ୟ ଦିଏ, ତାହା ହେଲା, ମଣିଷ ନିର୍ମିତ ଉପକରଣ ଓ ପ୍ରତ୍ନତାତ୍ତ୍ୱିକ ଅବଶେଷ । ସର୍ଭେ ଓ ପ୍ରତ୍ନତାତ୍ତ୍ୱିକ ଖନନ ମାଧ୍ୟମରେ ଏସବୁ ଅବଶେଷ ଆବିଷ୍କୃତ ହୋଇଥାଏ । ଲିଖିତ ଓ ପୁସ୍ତକଗତ ସୂତ୍ରସାମଗ୍ରୀର ସମର୍ଥନରେ ଏହାକୁ ଉପଯୋଗ କରାଯାଏ । ପ୍ରାଚୀନ ଭାରତ ସମ୍ବନ୍ଧରେ ଥିବା ମତବାଦର ପୁଷ୍ଟି ପାଇଁ ମଧ୍ୟ ତାକୁ ବ୍ୟବହାର କରାଯାଏ । ମାତ୍ର ପୁରାତାତ୍ତ୍ୱିକ ତଥ୍ୟ ସର୍ବଦା ଲିଖିତ ପ୍ରମାଣକୁ ସମର୍ଥନ କରି ନ ପାରେ । ଯେଉଁଠି ଏହା ସମର୍ଥନ ବା ପୁଷ୍ଟି କରେ ନାହିଁ, ସେଇଠି ବିକଳ୍ପ ମତ ପ୍ରଦାନ କରେ । ଅନେକ କ୍ଷେତ୍ରରେ ଲିଖିତ ପ୍ରମାଣ ନାହିଁ ବା ଲିଖିତ ପ୍ରମାଣକୁ ପାଠ କରାଯାଇପାରୁ ନାହିଁ । ସେତେବେଳେ ମନୁଷ୍ୟ ନିର୍ମିତ ସେକାଳର ଉପକରଣ ଅଧ୍ୟୟନ ପାଇଁ ଉପଯୋଗୀ ସିଦ୍ଧ ହୁଏ । ପ୍ରମାଣ ସର୍ବଦା ସଠିକ୍ ହୁଏ ନାହିଁ, କାରଣ ପୁରାତାତ୍ତ୍ୱିକ

ତଥ୍ୟ ବିଶେଷକରି ଉପକରଣର ଅବଶେଷ ରୂପରେ ରହିଥାଏ ଏବଂ ଅନ୍ୟପକ୍ଷରେ, ଆବିଷ୍କୃତ ଲିଖିତ ତଥ୍ୟ ସ୍ପଷ୍ଟ ଅର୍ଥ ଦେଇପାରେନା । ସେହି କ୍ଷେତ୍ରରେ ଐତିହାସିକର ହସ୍ତକ୍ଷେପ ଜରୁରି ହୁଏ, କାରଣ ସେ ତଥ୍ୟ-ପ୍ରମାଣଗୁଡ଼ିକୁ ବିଶ୍ଳେଷଣ କରିପାରେ । ପୁରାତାତ୍ତ୍ୱିକ ତଥ୍ୟ ଓ ଲିଖିତ ପ୍ରମାଣ ମଧ୍ୟରେ ଯେଉଁ ସମ୍ବନ୍ଧ, ତାହା ଖୁବ୍ ଜଟିଳ । ତାକୁ ବୁଝିବା ନିମନ୍ତେ ଉଭୟ କ୍ଷେତ୍ରରେ ପାରଙ୍ଗମ ହେବାକୁ ପଡ଼ିବ । ଲିଖିତ ପ୍ରମାଣର ପ୍ରାଦୁର୍ଭାବର ପ୍ରତିକ୍ରିୟାରେ ଆଜିକାଲି କେତେକ ପୁରାତତ୍ତ୍ୱବିଦ୍ ଏପରିକି ତୁଳନାତ୍ମକ ଢଙ୍ଗରେ ମଧ୍ୟ ଲିଖିତ ସାକ୍ଷ୍ୟ-ପ୍ରମାଣକୁ ବ୍ୟବହାର କରିବାକୁ ଚାହାନ୍ତି ନାହିଁ ।

ଆଜିକାଲି ପ୍ରତ୍ନତାତ୍ତ୍ୱିକ ଖନନ ଏବଂ ଖନନରୁ ପ୍ରାପ୍ତ ତଥ୍ୟ ପଠନ ପାଇଁ ଖୁବ୍ ଉନ୍ନତମାନର ପଦ୍ଧତି ସବୁ ବାହାରିଲାଣି । ଆଗଭଳି ପୁରାତତ୍ତ୍ୱବିଦ୍ ଆଉ ମାଟି ଖୋଳି ତଥ୍ୟ ଆବିଷ୍କାର କରୁ ନାହାନ୍ତି । ବିଜ୍ଞାନ ବଳରେ ନୂଆ ଟେକ୍‌ନିକ୍‌ମାନ ଉପଲବ୍ଧ ହେଲାଣି । ତାକୁ ବ୍ୟବହାର କରି ପୁରାତାତ୍ତ୍ୱିକ ତଥ୍ୟଗୁଡ଼ିକୁ ପରୀକ୍ଷା-ନିରୀକ୍ଷା କରାଯାଉଛି । ଜଳବାୟୁ, ପରିବେଶ, ଜନବସତି, ପ୍ରାଚୀନ ଶାରୀରିକ ଅବଶେଷର ପରୀକ୍ଷଣ (paleo pathology) ଓ ଗଛଲତାରୁ ଅନେକ ନୂଆ ସୂଚନା ଓ ତଥ୍ୟ ମିଳିବାର ସମ୍ଭାବନା ବୃଦ୍ଧି ପାଇଛି । ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ ଗଛଲତା, ମଞ୍ଜି ଆଦିକୁ ମଧ୍ୟ ଅଧ୍ୟୟନ କରାଯାଇପାରୁଛି । ପାଲିଓ-ବୋଟାନି ନାମରେ ଖ୍ୟାତ ଏହି ଅଧ୍ୟୟନ ସେକାଳର ଉଦ୍ଭିଦ ଓ ପରିବେଶର ସ୍ଥିତି ବିଷୟରେ ଜ୍ଞାନ ଦିଏ । ଫଳରେ ତତ୍‌କାଳୀନ ଜନବସତି ସମ୍ବନ୍ଧରେ ଆମ ଜ୍ଞାନର ପରିସୀମା ବୃଦ୍ଧି ପାଏ । ମିଳୁଥିବା ଏଭଳି କେତେକ ତଥ୍ୟକୁ ତର୍ଜମା କରିବାଲାଗି କିଛି ମାତ୍ରାରେ ପରିସଂଖ୍ୟାନ ପରୀକ୍ଷଣର ବି ଆବଶ୍ୟକତା ପଡ଼େ ।

ଭାରତରେ ଏବେ ମଧ୍ୟ ବହୁ କିସମର ମନୁଷ୍ୟ-ସମାଜ ରହିଛନ୍ତି । ତନ୍ମଧ୍ୟରୁ କେତେକ ପ୍ରସ୍ତରଯୁଗୀୟ ସ୍ଥିତିକୁ ଚିହ୍ନିତ କରନ୍ତି । ସେଥିପାଇଁ ଭାରତକୁ 'ଜୀବନ୍ତ ପ୍ରାଗ୍-ଇତିହାସ' (Living Pre-History) ବୋଲି କୁହାଯାଏ । ଏହାର ଅର୍ଥ ହେଲା, ଏବେ ମଧ୍ୟ ଅନେକ ପ୍ରାଚୀନ ସାଂସ୍କୃତିକ ଅବଶେଷ ଏଠି ରହିଛି । ଏଥନୋ-ଆର୍କିଓଲୋଜି (Ethno-Archaeology) ନାମରେ ଏକ ନୂଆ ବିଷୟ ବାହାରିଲାଣି, ଯାହା ନୃଜାତି ଅଧ୍ୟୟନ (Ethnographic Studies) ସହିତ ମାନବ ବସତିର ପ୍ରତ୍ନତାତ୍ତ୍ୱିକ ଖନନକୁ ସମନ୍ୱିତ କରି ବିଶେଷ ଅଧ୍ୟୟନମାନ କରିବାରେ ସମର୍ଥ ହେଉଛି । ଏହି ସମନ୍ୱୟକୁ ନେଇ କେତେକଙ୍କ ମନରେ ଅବଶ୍ୟ ସନ୍ଦେହ ଉପୁଜିପାରେ, ମାତ୍ର ଏହାରି ଯୋଗୁଁ ନୂଆ ନୂଆ ପ୍ରଶ୍ନମାନ ସୃଷ୍ଟି ହେଉଛି, ଯାହା ସେହି ଧରଣର ସମନ୍ୱୟର ଉପଯୋଗିତାକୁ ସିଦ୍ଧ କରେ । ଉଦାହରଣ ସ୍ୱରୂପ, ଏହାଦ୍ୱାରା ସାମାଜିକ ସଂଗଠନର ସ୍ୱରୂପ କିମ୍ବା ମାନବ ନିର୍ମିତ ଉପକରଣର ଉପଯୋଗ ସମ୍ବନ୍ଧରେ ଅନେକ ନୂଆ ପ୍ରଶ୍ନ ମନକୁ ଆସିପାରୁଛି । ଯେଉଁଠି କିଛି ସାଂସ୍କୃତିକ ଅବଶେଷ ବଞ୍ଚିରହିଛି, ସେଠାରେ 'ଫିଲ୍‌ଡୱାର୍କ' କରି ତାହାରି ସାହାଯ୍ୟରେ ପୋଥିଗତ

ଅଧ୍ୟୟନକୁ ବଳିଷ୍ଠ କରାଯାଇପାରିବ । ବିଶେଷକରି ଭାରତରେ ଧର୍ମଗୁଡ଼ିକର ଅଧ୍ୟୟନ ପାଇଁ ଏହା ଉପଯୋଗୀ ହେବ ବୋଲି ତର୍କ ଦିଆଯାଉଛି । ମୋ ମତରେ ଏହି ତର୍କ ନିରାଧାର ନୁହେଁ । ବ୍ୟାପକ ଫିଲ୍ଡଓ୍ୱାର୍କରୁ ଯେଉଁ ଦୃଷ୍ଟି ମିଳେ, ତହିଁରୁ ପାଠର ଅର୍ଥ ବୁଝିବା ସହଜ ହୁଏ । ଉଦାହରଣସ୍ୱରୂପ, ରୀତିନୀତି ଓ କର୍ମକାଣ୍ଡରେ ଦେଖାଯାଉଥିବା ପରିବର୍ତ୍ତନ ପଛରେ ଏକ ଐତିହାସିକ ଉପାଦାନ ରହିଥାଏ । ଯେଉଁ ସମାଜରେ ଧର୍ମତତ୍ତ୍ୱ ତୁଳନାରେ କର୍ମକାଣ୍ଡ ଅଧିକ ମହତ୍ତ୍ୱ ପାଏ, ସେଠାରେ ଏହା ବିଶେଷ ଭାବରେ ଅନୁଭୂତ ହୁଏ । ଧର୍ମର ପାଠଭିତ୍ତିକ ଅଧ୍ୟୟନକୁ ଅଧିକ ପ୍ରାମାଣିକ କରିବା ସକାଶେ ଆଜିକାଲି ଆଚରଣଭିତ୍ତିକ ତୁଳନାତ୍ମକ ଅଧ୍ୟୟନକୁ ମଧ୍ୟ ଉପଯୋଗ କରାଯାଉଛି ।

ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଅନେକ ପ୍ରତ୍ନତାତ୍ତ୍ୱିକ ଖନନ ହୋଇଛି । ସେଗୁଡ଼ିକ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଓ ପ୍ରଥମ ସହସ୍ରାବ୍ଦୀ ସମୟର ଜନବସତି । ତହିଁରୁ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଯଥେଷ୍ଟ ତଥ୍ୟ-ପ୍ରମାଣମାନ ପ୍ରାପ୍ତ ହୋଇଛି । ତାହାରି ମାଧ୍ୟମରେ ଉତ୍ତର-ପଶ୍ଚିମ ଭାରତରେ ପ୍ରଥମ ନଗର ସଭ୍ୟତାର ଅବକ୍ଷୟ ପରେ ସ୍ଥାପିତ ହୋଇଥିବା ଜନବସତିକୁ ଓ ତତ୍‌କାଳୀନ ସମୟକୁ ଚିହ୍ନିତ କରିବା ସମ୍ଭବପର ହୋଇଛି । ଅର୍ଥାତ୍ ସେହି ପୁରାତାତ୍ତ୍ୱିକ ତଥ୍ୟ ଭିତ୍ତିରେ କ୍ରମାନ୍ୱୟରେ ଗଢ଼ିଉଠିଥିବା ସଭ୍ୟତାଗୁଡ଼ିକୁ ଅଧ୍ୟୟନ କରିବା ସକାଶେ ଯତ୍‌କିଞ୍ଚିତ୍ ବାଟ ମିଳିଛି । ଏଥିରୁ ନୂଆ ଏକ ପ୍ରଶ୍ନ ମନକୁ ଆସେ – କ'ଣ ସଂସ୍କୃତିଗୁଡ଼ିକ ମଧ୍ୟରେ ନିରନ୍ତରତା ରହିଥିଲା ? ଠିକ୍ ସେହିଭଳି ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ହେଲା – ଉତ୍ତରାଧିକାରୀ ସଂସ୍କୃତିର ଚରିତ୍ର କ'ଣ ଥିଲା ? ଗାଙ୍ଗେୟ ସମତଳ କ୍ଷେତ୍ରରେ ତଥା ମଧ୍ୟଭାରତର ପାର୍ଶ୍ୱରେ ପୂର୍ବରୁ ମଧ୍ୟ ବସତି ରହିଥିବାର କିଛି ପ୍ରମାଣ ମିଳିଛି । ଏଥିରୁ ମନେହୁଏ ଯେ ହୁଏତ ଗାଙ୍ଗେୟ ସମତଳ କ୍ଷେତ୍ରରେ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ଦ୍ୱିତୀୟ ନଗରୀକରଣ ହୋଇଥିଲା । ମାତ୍ର ଏହିସବୁ ପ୍ରଶ୍ନର ସଠିକ୍ ଉତ୍ତର ପାଇବାକୁ ହେଲେ ଆମକୁ ପ୍ରମୁଖ ପୁରାତାତ୍ତ୍ୱିକ ସ୍ଥଳୀଗୁଡ଼ିକରେ ବ୍ୟାପକ ଭୂସମାନ୍ତର (horizontal) ଖନନ ହେବାପାଇଁ ଅପେକ୍ଷା କରିବାକୁ ହେବ । ଆବଶ୍ୟକତା ଥିବା ସତ୍ତ୍ୱେ ତାହା ଅବଶ୍ୟ ଆଜିପର୍ଯ୍ୟନ୍ତ ସମ୍ଭବପର ହୋଇପାରି ନାହିଁ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀର ଉତ୍ତରାର୍ଦ୍ଧ ସମୟର ନାନା କିସମର ମହାପାଷାଣିକ ବା ମେଗାଲିଥିକ ସମାଧି କ୍ଷେତ୍ର ଆବିଷ୍କୃତ ହୋଇଛି । ଏହି ସମାଧି କ୍ଷେତ୍ର ହେଲା ଭାରତର ଦକ୍ଷିଣଭାଗସ୍ଥିତ ଉପଦ୍ୱୀପର ଏକ ବଡ଼ ବୈଶିଷ୍ଟ୍ୟ । ସମାଧି କ୍ଷେତ୍ରର ଆରମ୍ଭ ତଥା ଜନବସତି ସହ ତା'ର ସମ୍ବନ୍ଧ ଏବେ ମଧ୍ୟ ରହସ୍ୟାବୃତ୍ତ । ମାତ୍ର ଏଥିରୁ ଅନ୍ତତଃ ବିଭିନ୍ନ ସାଂସ୍କୃତିକ ପର୍ଯ୍ୟାୟ ସମ୍ବନ୍ଧରେ ତଥ୍ୟ ମିଳେ । ଯେଉଁ କାଳ ପାଇଁ ଶିଳାଲେଖ, ମୁଦ୍ରା ଏବଂ ପ୍ରାଚୀନ ପୋଥିରୁ ସୂଚନା ଉପଲବ୍ଧ ହୁଏ ନାହିଁ, ସେହି କାଳଖଣ୍ଡ ସମ୍ପର୍କରେ ସୂଚନା ପାଇବା ଲାଗି ସମାଧି କ୍ଷେତ୍ର ଖୁବ୍ ଉପଯୋଗୀ ସାବ୍ୟସ୍ତ ହୁଏ ।

ଇତିହାସର ନିର୍ମାଣରେ ପରିବେଶର ମଧ୍ୟ ଏକ ଭୂମିକା ରହିଥାଏ । ଏହା ସଦ୍ୟତମ ପୁରାତାତ୍ତ୍ୱିକ ଅଧ୍ୟୟନର ପରିବେଶ ଅଧ୍ୟୟନ ପ୍ରତି ରହିଥିବା ଆଗ୍ରହରୁ ସୁସ୍ପଷ୍ଟ ହୁଏ । ପାରିବେଶିକ ପରିବର୍ତ୍ତନ ଯୋଗୁଁ ସିନ୍ଧୁ ଉପତ୍ୟକାର ନଗରଗୁଡ଼ିକ ଧ୍ୱଂସ ପାଇଲେ ନା ନାହିଁ – ଏହି ପ୍ରଶ୍ନକୁ ନେଇ ଯେଉଁ ଦୀର୍ଘ ବିତର୍କ ଆରମ୍ଭ ହେଲା, ତାହା ପରିବେଶ ପ୍ରତି ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କଲା । ଉତ୍ତର ଭାରତ ସ୍ଥିତ ଘର୍ଘରା ଓ ହାକ୍ରା ନଦୀ ଶୁଖିଯିବାର ପ୍ରମାଣ ଖୋଜିଲାବେଳେ ଏକଥା ଭଲଭାବେ ଜଣାପଡ଼ିଲା । ଜଳବାୟୁଗତ ପରିବର୍ତ୍ତନ ଏବଂ ତା'ର ଐତିହାସିକ ପରିଣାମ ଏହାକୁ ଅଧିକ ସୁସ୍ପଷ୍ଟ କଲା । ପୁରାତାତ୍ତ୍ୱିକ ତଥ୍ୟକୁ ବ୍ୟବହାର କରି ଗୁପ୍ତଯୁଗରେ ନଗରଗୁଡ଼ିକର ଅଧଃପତନ ହେଲା ବୋଲି କୁହାଯାଇଛି । ଫଳରେ ସେତେବେଳେ ନଗରର ସଂବୃଦ୍ଧି ଘଟିଥିଲା ବୋଲି ରହିଥିବା ଦାବି ଉପରେ ପ୍ରଶ୍ନବାଚୀ ସୃଷ୍ଟି ହେଲା । ମନୁଷ୍ୟ ନିର୍ମିତ ଉପକରଣର ଅବଶେଷକୁ ଅଧ୍ୟୟନ କରି ଟେକ୍ନୋଲୋଜିର ବିକାଶକୁ ତର୍ଜମା କରିହେବ । ଏହା ଇତିହାସ ପରିବର୍ତ୍ତନରେ ଟେକ୍ନୋଲୋଜିର ଭୂମିକାକୁ ଜାଣିବାରେ ସାହାଯ୍ୟ କରିବ । ଲୌହ ଟେକ୍ନୋଲୋଜିର ଭୂମିକାକୁ ନେଇ ବ୍ୟାପକ ଅଧ୍ୟୟନ ଆରମ୍ଭ ହୋଇଛି । ଉଦାହରଣସ୍ୱରୂପ, ଗାଙ୍ଗେୟ ସମତଳ କ୍ଷେତ୍ରରେ ସହରୀକରଣ ପ୍ରକ୍ରିୟାରେ ଜଙ୍ଗଲ ସଫା ହେବା ଏବଂ ଲୁହା ଲଙ୍ଗଳର ବ୍ୟବହାର ହେବା କେତେ ମାତ୍ରାରେ ମହତ୍ତ୍ୱପୂର୍ଣ୍ଣ ଥିଲା, ତାହା ଏଥିରୁ ଜଣାଯାଏ ।

ପୁରାତାତ୍ତ୍ୱିକ ତଥ୍ୟ-ପ୍ରମାଣ ଇତିହାସରେ ଭୂଗୋଳର ମହତ୍ତ୍ୱକୁ ଚିହ୍ନିତ କରାଏ । ବିଶେଷକରି ଜନବସତି ସ୍ଥାପନ, ଲୋକଙ୍କର ଗମନାଗମନ ଓ ରାଜ୍ୟ ଗଠନ ପ୍ରକ୍ରିୟାକୁ ବୁଝିବା ଲାଗି ଏସବୁ ତଥ୍ୟ-ପ୍ରମାଣର ଅନେକ ଆବଶ୍ୟକତା ରହିଛି । ଉତ୍ତର-ଗାଙ୍ଗେୟ ସମତଳ କ୍ଷେତ୍ରରେ ଅନେକ ବିଶାଳ ଐକିକ ରାଜ୍ୟ ଗଠନ ସହଜରେ ସମ୍ଭବ ହୋଇପାରିଥିଲା । ଭାରତ ଉପମହାଦେଶର ଦକ୍ଷିଣାଂଶ ବା ଉପଦ୍ୱୀପ ପ୍ରାୟତଃ ପାହାଡ଼, ମାଳଭୂମି (ଅଧିତ୍ୟକା) ଏବଂ ନଦୀ ଉପତ୍ୟକା ଯୋଗୁଁ ଛୋଟ ଛୋଟ ଅଞ୍ଚଳରେ ବିଭାଜିତ ହୋଇଥିଲା, ଅନ୍ୟଥା ସେହି ଅଞ୍ଚଳରେ ବିଶାଳ ରାଜ୍ୟର ପରିଚାଳନା ଖୁବ୍ ଖର୍ଚ୍ଚବହୁଳ ହୋଇଥାନ୍ତା । ଊନବିଂଶ ଶତାବ୍ଦୀ ହେଲା ବିଶାଳ ସାମ୍ରାଜ୍ୟର ଯୁଗ । ତେଣୁ ଐତିହାସିକମାନଙ୍କର ଦୃଷ୍ଟି ଉତ୍ତର ଭାରତର ବୃହଦ୍ ରାଜ୍ୟ ଆଡ଼କୁ ଗଲା । ଯେଉଁ କାଳଖଣ୍ଡରେ ସେହି ଧରଣର ବୃହଦ୍ ରାଜ୍ୟ ରହିଥିଲା, ତାକୁ 'ସୁବର୍ଣ୍ଣଯୁଗ' ବୋଲି ଚିହ୍ନିତ କରାଗଲା । ଯେଉଁ ଅଞ୍ଚଳରେ ସାନ ଏବଂ ସ୍ଥାନୀୟ ସ୍ତରରେ ରାଜ୍ୟ ରହିଥିଲା, ତାକୁ 'ଅନ୍ଧକାର ଯୁଗ' ବୋଲି କୁହାଗଲା । ଫଳରେ, ଦାକ୍ଷିଣାତ୍ୟକୁ ଐତିହାସିକମାନଙ୍କର ସମୁଚିତ ଦୃଷ୍ଟି ଗଲା ନାହିଁ । ଦାକ୍ଷିଣାତ୍ୟରେ ଯେଉଁ ସ୍ୱଳ୍ପସଂଖ୍ୟକ ବିଶାଳ ରାଜ୍ୟ ରହିଥିଲା ତାକୁ ବ୍ୟତିକ୍ରମ ଭାବରେ ଐତିହାସିକମାନେ ମହତ୍ତ୍ୱ ପ୍ରଦାନ କଲେ । ଉତ୍ତର ଭାରତ ତୁଳନାରେ ସେଠାରେ ରାଜନୀତି ତଥା ଅର୍ଥନୀତି ପୃଥକ୍ ଥିଲା । ତେଣୁ ଦକ୍ଷିଣର କେତେକ ରାଜ୍ୟ ନିଜର ଆର୍ଥିକ ଶ୍ରୀବୃଦ୍ଧି ନିମନ୍ତେ ନୌବାଣିଜ୍ୟକୁ ମହତ୍ତ୍ୱ ଦେଇଥିଲେ ।

ଐତିହାସିକ ଗବେଷଣା ସକାଶେ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ କ୍ଷେତ୍ର ସ୍ଥାୟୀ ଭାବରେ ମହତ୍ତ୍ୱପୂର୍ଣ୍ଣ ହୋଇ ରହେ ନାହିଁ । ପୂର୍ବରୁ ଏଭଳି ଅବଧାରଣା ନ ଥିଲା । ନୂଆକରି ଐତିହାସିକ ଅବଧାରଣାରେ ଏହି ପରିବର୍ତ୍ତନ ଦେଖିବାକୁ ମିଳିଲା । ଯେମିତି କୋଣରେ ରହିଥିବା ଭୌଗୋଳିକ କ୍ଷେତ୍ରଗୁଡ଼ିକରେ ପରିବର୍ତ୍ତନ ଦେଖାଯାଏ, ସେମିତି ଅବଧାରଣାରେ ମଧ୍ୟ ପରିବର୍ତ୍ତନ ପରିଲକ୍ଷିତ ହୁଏ । କେବେ କେବେ ଅନେକ କେନ୍ଦ୍ରାଞ୍ଚଳର ଇତିହାସରେ ସାମଞ୍ଜସ୍ୟ ଦେଖିବାକୁ ମିଳେ ଓ ଆଉ କେବେ ଗୋଟାଏ କେନ୍ଦ୍ରାଞ୍ଚଳରେ ବିବିଧ ଧରଣର ଇତିହାସ ରହିଥିବାର ଲକ୍ଷ୍ୟ କରାଯାଏ । କ୍ଷେତ୍ରଗୁଡ଼ିକରେ ଏଭଳି ପରିବର୍ତ୍ତନ ଆସେ କାହିଁକି ଏବଂ ତାହା କେମିତି ଐତିହାସିକ ମୂଲ୍ୟାଙ୍କନକୁ ପ୍ରଭାବିତ କରେ – ଏହା ଏକ ତର୍କମାଯୋଗ୍ୟ ବିଷୟ । ଭୂପୃଷ୍ଠର ପରିବର୍ତ୍ତନ ଓ ପରିବେଶ ସହିତ କ୍ଷେତ୍ରର ସମ୍ବନ୍ଧକୁ ଅଧ୍ୟୟନ କରିବାରେ ଐତିହାସିକମାନଙ୍କର ଆଜିକାଲି ଆଗ୍ରହ ବୃଦ୍ଧି ପାଉଥିବାର ଦେଖାଯାଉଛି । ମାତ୍ର ଭାରତୀୟ ଉପମହାଦେଶରେ କୌଣସି ଆଞ୍ଚଳିକ କ୍ଷେତ୍ର ଐତିହାସିକ ଦୃଷ୍ଟିରୁ ସର୍ବାଦୌ ପୃଥକ୍ ରହି ନ ପାରେ । ତେଣୁ ଆଞ୍ଚଳିକ ଇତିହାସର ସର୍ବଦା ବ୍ୟାପକ ସାମଗ୍ରିକ ଇତିହାସ ସହିତ ଯୋଡ଼ି ହେବା ସ୍ୱାଭାବିକ । ଆଞ୍ଚଳିକ କ୍ଷେତ୍ରର ଟିକିନିଖି ଅଧ୍ୟୟନ ହେବା ଫଳରେ ଭୂଭାଗର ଦୃଶ୍ୟକୁ ତଥା ତହିଁରେ ଘଟୁଥିବା ପରିବର୍ତ୍ତନ ପ୍ରକ୍ରିୟାକୁ ଜାଣିବା ଲାଗି ଆଗ୍ରହ ସୃଷ୍ଟି ହୋଇଛି । ଏହି ପରିବର୍ତ୍ତନ ପଛରେ ଭୂତତ୍ତ୍ୱ, ଭୂଆକାରତତ୍ତ୍ୱ (geomorphology) ଏବଂ ମନୁଷ୍ୟର ଗତିବିଧି ପ୍ରମୁଖ କାରଣ ହୁଏ । ମାତ୍ର ଯାହାକୁ ଅଧିକ ଗଭୀରଭାବେ ଅଧ୍ୟୟନ କରାଯିବା କଥା, ତାହା ହେଲା ଇତିହାସରେ ଭୂଦୃଶ୍ୟ (landscape)ର ପରିବର୍ତ୍ତନଜନିତ ପ୍ରଭାବ । ଉଦାହରଣସ୍ୱରୂପ, ନଦୀପଥରେ ପରିବର୍ତ୍ତନ ଏବଂ ନିର୍ବନୀକରଣ (deforestation) କେଉଁଭଳି ଭାବେ ଇତିହାସକୁ ପ୍ରଭାବିତ କରେ ତାହା ଦେଖାଯିବା କଥା । ବେଳେବେଳେ ଆମେ ଭାବୁ, ଅତୀତ ଓ ବର୍ତ୍ତମାନର ଭୂଦୃଶ୍ୟ (landscape) ଏକା ଭଳି । ଏଭଳି ଧାରଣା ଭ୍ରମାତ୍ମକ ।

ଫିଲ୍ଡୱାର୍କରେ ପ୍ରାୟତଃ ମୌଖିକ ପରମ୍ପରାର ଅଧ୍ୟୟନ ପ୍ରସଙ୍ଗ ଯୋଡ଼ି ହୋଇ ରହିଥାଏ । ଏଭଳି ଅଧ୍ୟୟନ କରି ନୃତତ୍ତ୍ୱବିତ୍‌ମାନେ କିମ୍ବଦନ୍ତୀ ଓ କୁଳସମ୍ବନ୍ଧର ଧାରା (kinship pattern)କୁ ବିଶ୍ଳେଷଣ କରିପାରୁଛନ୍ତି । କିମ୍ବଦନ୍ତୀ ଅବଶ୍ୟ ଅତି ପ୍ରାଚୀନ ହୋଇଥାଇ ନ ପାରେ । ମାତ୍ର ପ୍ରାଚୀନ ବିଚାରକୁ ତାହା ଅନେକ ସମୟରେ ଧାରଣ କରିବାର ସାମର୍ଥ୍ୟ ରଖେ । ତା' ସହିତ ଏକଥା ମଧ୍ୟ ସତ୍ୟ ଯେ, କିମ୍ବଦନ୍ତୀର ନିର୍ଦ୍ଦିଷ୍ଟ ସମୟକ୍ରମ ନ ଥାଏ ଏବଂ ତହିଁରେ ଥିବା ତଥ୍ୟ ସତ୍ୟ ଆଧାରିତ ନୁହେଁ । ତେଣୁ ତାକୁ ସୀମିତ ଅର୍ଥରେ ବ୍ୟବହାର କରାଯାଇପାରେ । ଇତିହାସ ଓ କିମ୍ବଦନ୍ତୀକୁ ପରସ୍ପର ବିରୋଧୀ ଭାବରେ ଦେଖାଯାଏ, କାରଣ କିମ୍ବଦନ୍ତୀ ସମ୍ପୂର୍ଣ୍ଣତଃ ତଥ୍ୟ ଆଧାରିତ ନୁହେଁ । ତା' ସତ୍ତ୍ୱେ କିମ୍ବଦନ୍ତୀରେ ସାମାଜିକ ଅବଧାରଣାକୁ ମହତ୍ତ୍ୱ ଦିଆଯାଇଥାଏ, ଯାହାକି କେତେକ ଇତିହାସର

ପୁନଃରଚନାରେ ସହାୟକ ସିଦ୍ଧ ହୁଏ । ଯଦି କିମ୍ବଦନ୍ତୀକୁ ଯଥୋଚିତ ଭାବରେ ବିଶ୍ଳେଷଣ କରାଯାଏ, ତେବେ ତା'ର ସ୍ରଷ୍ଟାର କଳ୍ପନା ଏବଂ ଅବଚେତନ ମନର ବିଶ୍ୱାସକୁ ଜାଣିହୁଏ । ଏକ ନିର୍ଦ୍ଦିଷ୍ଟ ସମାଜରେ ରହିଥିବା ଅନ୍ତଃସମ୍ବନ୍ଧ ଓ ଅନ୍ତର୍ବିରୋଧକୁ ସେହି ସମାଜରେ ବିଦ୍ୟମାନ କିମ୍ବଦନ୍ତୀ ବୁଝିବାରେ ସାହାଯ୍ୟ କରେ । ଇତିହାସ ଏକାଧିକ ସାମାଜିକ ସ୍ତରକୁ ପ୍ରତିଫଳିତ କରେ । ତେଣୁ ରାଜଦରବାର ବାହାରେ ମିଳୁଥିବା ସୂତ୍ରସାମଗ୍ରୀକୁ, ଯଥା : ଲୌକିକ ଓ ମୌଖିକ ପରମ୍ପରାରୁ ପ୍ରାପ୍ତ ସାମଗ୍ରୀକୁ, ଆଜିକାଲି ଆଉ ଅଦରକାରୀ କିମ୍ବା ହେୟ ମନେକରାଯାଉ ନାହିଁ । ଅବଶ୍ୟ ମୌଖିକ ପରମ୍ପରା ଆଧୁନିକ କାଳଖଣ୍ଡର ସୃଷ୍ଟି । ମାତ୍ର ତା' ସହିତ ପରିଚିତ ହେବା, ତା'ର ମୂଲ୍ୟାଙ୍କନ ପଦ୍ଧତିକୁ ଜାଣିବା ଦ୍ୱାରା ପ୍ରାଚୀନ ମୌଖିକ ପରମ୍ପରାରୁ ଜନ୍ମ ନେଇଥିବା ପୁରାଣ ପୋଥିଗୁଡ଼ିକୁ ପୁନର୍ମୂଲ୍ୟାୟନ କରିବା ସୁବିଧାଜନକ ହୁଏ । ମୌଖିକ ସ୍ରୋତ ସାମଗ୍ରୀକୁ ଏତେ ଭଲଭାବେ ସ୍ମୃତିରେ କେବେ କେବେ ସାଇତି ରଖାଯାଇଥାଏ ଯେ ତାହା ପୋଥି ଭଳି ଅତୁଟ ହୋଇ ରହିଯାଏ । ଏହାର ଜ୍ୱଳନ୍ତ ଉଦାହରଣ ହେବ କେତେକ ବୈଦିକ ସଂରଚନା । ଅବଶ୍ୟ ପୁରାଣ କାବ୍ୟ 'ମହାଭାରତ'ର ସଂରଚନା ସମୟରେ ଏହି ସ୍ମୃତି ଏତେ ଅଧିକ ଅତୁଟ ନ ଥିଲା; ଖୋଲାମେଲା ଥିଲା । ଫଳରେ ତା'ର ନାନା କିସମ ଦେଖିବାକୁ ମିଳିଥିଲା । ମୌଖିକ ପରମ୍ପରା ଭିନ୍ନ ଭିନ୍ନ ରୂପରେ କାର୍ଯ୍ୟ କରେ, ତାକୁ ବିଶ୍ଳେଷଣ କଲେ ଆମକୁ ନାନାବିଧ ଦୃଷ୍ଟିକୋଣ ମିଳିଥିଲା ।

ଆଦ୍ୟକାଳୀନ ଭାରତର ଐତିହାସିକମାନଙ୍କ ପାଇଁ ଭାଷାବିଜ୍ଞାନ ବିଷୟ ଖୁବ୍ ଉପଯୋଗୀ ସିଦ୍ଧ ହେବାରେ ଲାଗିଛି । ଏକ ନିର୍ଦ୍ଦିଷ୍ଟ ଶବ୍ଦକୁ ବିଶ୍ଳେଷଣ କଲେ ତହିଁରୁ ବିଶେଷ ଅର୍ଥ ବାହାରେ । ଯଦି ତାକୁ ଏକ ଐତିହାସିକ ପୃଷ୍ଠଭୂମିରେ ପରଖାଯାଏ, ତେବେ ତାହା ଆମକୁ ବ୍ୟାପକ ଅର୍ଥ ପ୍ରଦାନ କରେ । ଉଦାହରଣସ୍ୱରୂପ, 'ରାଜା' ଶବ୍ଦର ପ୍ରଥମେ ଅର୍ଥ ହେଲା 'ମୁଖିଆ'; ପରେ ତାକୁ ରାଜ୍ୟାଧ୍ୟକ୍ଷ ଅର୍ଥରେ ବ୍ୟବହାର କରାଗଲା । ଇଂରାଜୀରେ ତା'ର ସମାର୍ଥବୋଧକ ଶବ୍ଦ ହେଲା 'କିଙ୍ଗ' (king) । ଏହା ଏକ ଐତିହାସିକ ପ୍ରକ୍ରିୟାକୁ ଦର୍ଶାଏ । ଅର୍ଥାତ୍ ଶବ୍ଦଗୁଡ଼ିକର ଐତିହାସିକ ମହତ୍ତ୍ୱ ରହିଥାଏ । ସାମାଜିକ ଭାଷାବିଜ୍ଞାନରୁ ସିଦ୍ଧ ହୁଏ ଯେ, ଯେଉଁଭଳି ଭାବେ ଶବ୍ଦର ବ୍ୟବହାର ହୁଏ, ତାହା ଏକ ସାମାଜିକ ସମ୍ପର୍କକୁ ଚିହ୍ନିତ କରେ । ଭାଷା ଏବଂ ତଥ୍ୟ ମଧ୍ୟରେ ରହିଥିବା ସମ୍ବନ୍ଧକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ବିଭିନ୍ନ ଭାଷାଭାଷୀର ଲୋକଙ୍କ ମଧ୍ୟରେ ଭାଷାରେ ପରିବର୍ତ୍ତନ ଆସେ । ଅନ୍ୟାନ୍ୟ ଐତିହାସିକ ତଥ୍ୟ ଭଳି ଏହାର ଯଥେଷ୍ଟ ମହତ୍ତ୍ୱ ରହିଛି । ଭାଷାବିଜ୍ଞାନ ଦୃଷ୍ଟିରୁ କୌଣସି ଭାଷାର ଅଧ୍ୟୟନ କଦାପି ଧ୍ୱନି କିମ୍ବା ଅର୍ଥ ମଧ୍ୟରେ ରହିଥିବା ସାମଞ୍ଜସ୍ୟକୁ ଦେଖିବାରେ ସୀମିତ ରହେ ନାହିଁ । ବରଂ ଏହା ବ୍ୟାକରଣ, ରୂପତତ୍ତ୍ୱ ଏବଂ ଧ୍ୱନିବିଜ୍ଞାନ ଆଦି ଭାଷାର ମୌଳିକ ଗଠନ ବିଧାନକୁ ମଧ୍ୟ ବୁଝାଏ । କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାରେ କେବଳ ପଠନ-ପାଠନର ସାମର୍ଥ୍ୟ ଲାଭ କରିବା ତୁଳନାରେ ଏହାର ଅଧିକ ଆବଶ୍ୟକତା ରହିଛି ।

ଆଦ୍ୟକାଳରୁ ଭାରତ ଭୂଖଣ୍ଡରେ ଭାଷାଗତ ବିବିଧତା ରହିଆସିଛି । ସିନ୍ଧୁ (ସଭ୍ୟତା) ଲିପିକୁ ପଢ଼ିବାକୁ ପ୍ରୟାସ କଲାବେଳେ ଜାତ ହେଉଥିବା ସମସ୍ୟା ପଛରେ ଏହି ବିବିଧତା ଏକ ପ୍ରମୁଖ କାରଣ । ଉଦାହରଣସ୍ୱରୂପ, ଭାରତରେ ପ୍ରଚଳିତ ଭାଷାଗୁଡ଼ିକ ମଧ୍ୟରେ ତିବ୍ବତ-ବର୍ମୀୟ ଭାଷା (Tibbeto-Burman) ଉତ୍ତର-ପୂର୍ବାଞ୍ଚଳ ଓ ହିମାଳୟର ପାଦଦେଶରେ ବ୍ୟବହୃତ ହୁଏ । ସେହିଭଳି ଅଷ୍ଟ୍ରୋ-ଏସିଆଟିକ ଭାଷାଗୁଡ଼ିକ, ବିଶେଷକରି ମୁଣ୍ଡା ଭାଷା, ମଧ୍ୟ-ଭାରତ ଏବଂ ପୂର୍ବ-ଭାରତର କେତେକ ଅଞ୍ଚଳରେ ବ୍ୟବହୃତ ହୁଏ । ଏହି ଭାଷାଭାଷୀ ଲୋକଙ୍କ କିମ୍ବଦନ୍ତୀକୁ ଦେଖିଲେ ମନେହୁଏ, ଭାଷାଟି ଅଧିକ ବିସ୍ତୃତ କ୍ଷେତ୍ରରେ ପ୍ରଚଳିତ ହେବା କଥା । ସେହି କାରଣରୁ ପ୍ରାଚୀନ ଇଣ୍ଡୋ-ଆର୍ଯ୍ୟ (ବା ଭାରତାର୍ଯ୍ୟ) ରଚନାରେ ଉକ୍ତ ଭାଷାଗୁଡ଼ିକର କେତେକ ଉପାଦାନ ରହିଥିବାର ପ୍ରମାଣ ମିଳେ । ଦ୍ରାବିଡ଼ ଭାଷା ଆଜି ଯେତିକି ଅଞ୍ଚଳରେ ପ୍ରଚଳିତ, ତା'ଠାରୁ ଢେର ଅଧିକ ବିସ୍ତୃତ କ୍ଷେତ୍ରରେ ଏହା ପୂର୍ବେ ପ୍ରଚଳିତ ଥିବାର ଅନୁମାନ କରିହୁଏ । ଏହି ଭାଷାଭାଷୀ କିଛି ଲୋକ ମଧ୍ୟଭାରତରେ ଅଛନ୍ତି । ପୁଣି ଦକ୍ଷିଣଭାରତର ଚାରୋଟିଯାକ ପ୍ରମୁଖ ଭାଷା ଏଥିରୁ ଜନ୍ମ ନେଇଛନ୍ତି । ଏହାଛଡ଼ା ଉତ୍ତର-ପଶ୍ଚିମାଞ୍ଚଳର କେତୋଟି ସୀମିତ କ୍ଷେତ୍ରରେ ଦ୍ରାବିଡ଼ ଭାଷାରୁ ଉତ୍ପନ୍ନ ବ୍ରାହୁଇ ଭାଷାର ପ୍ରଚଳନ ରହିଛି । ଗୋଟାଏ ଭାଷା ବୃଦ୍ଧିଲାଭ କରେ କାହିଁକି ଓ କେମିତି ? ପୁଣି ଆଉ ଏକ ଭାଷା କାହିଁକି ଓ କେମିତି ସଂକୁଚିତ ହୁଏ ? ଏସବୁର ଐତିହାସିକ ବିଶ୍ଳେଷଣ ରହିଛି ।

ଅଷ୍ଟ୍ରୋ-ଏସିଆଟିକ ଏବଂ ଦ୍ରାବିଡ଼ ଭାଷାର କେତେକ ଉପାଦାନ ନେଇ ଇଣ୍ଡୋ-ଆର୍ଯ୍ୟ ଭାଷା କାଳକ୍ରମେ ଉତ୍ତରଭାରତରେ ବ୍ୟାପିବାକୁ ଲାଗିଲା । ଏକଥା ଦୋହରା ଯାଇପାରେ ଯେ, ପ୍ରକୃତରେ 'ଇଣ୍ଡୋ-ଆର୍ଯ୍ୟ' (ଭାରତାର୍ଯ୍ୟ) ହେଉଛି ଏକ ଭାଷାଗତ ସ୍ୱରୂପ । ଇଣ୍ଡୋ-ୟୁରୋପୀୟ (ଭାରୋପୀୟ) ଭାଷା ପରିବାରର ଏକ ଭାଷା କହୁଥିବା ଗୋଟାଏ ଗୋଷ୍ଠୀକୁ ଏହା ଚିହ୍ନିତ କରେ । ଏହା କୌଣସି ପ୍ରଜାତି (racial) ଭିତ୍ତିକ ପଦ ନୁହେଁ । ତେଣୁ 'ଆର୍ଯ୍ୟ'କୁ ଏକ ଜାତି ବା ପ୍ରଜାତି ରୂପରେ ଉଲ୍ଲେଖ କରିବା ନିଶ୍ଚିତରୂପେ ଭ୍ରମାତ୍ମକ ହେବ । ଇଣ୍ଡୋ-ଆର୍ଯ୍ୟ ଭାଷା ବ୍ୟବହାର କରୁଥିବା ଜନଗୋଷ୍ଠୀର ପ୍ରଜାତି ସମ୍ବନ୍ଧିତ ସଠିକ୍ ସୂଚନା ଏପର୍ଯ୍ୟନ୍ତ ହସ୍ତଗତ ହୋଇ ନାହିଁ । ପୋଥିମାନଙ୍କରେ ଯେତେବେଳେ ଆର୍ଯ୍ୟର ଉଲ୍ଲେଖ ଆସେ, ସେତେବେଳେ ଭାଷା, ସାମାଜିକ ସ୍ତର ଏବଂ ତା' ସହିତ ରହିଥିବା ରୀତିନୀତି ଓ ପରମ୍ପରାକୁ ଭିତ୍ତିକରି ଏକଥା କୁହାଯାଏ । ଏହି ପୁସ୍ତକରେ 'ଆର୍ଯ୍ୟ'ର ସେହି ଅର୍ଥରେ ହିଁ ଉଲ୍ଲେଖ ରହିଛି ।

ପୁରାତାତ୍ତ୍ୱିକ ତଥ୍ୟ ବ୍ୟତୀତ ଅନ୍ୟ କୌଣସି ପ୍ରମୁଖ ନୂତନ ସୂତ୍ରସାମଗ୍ରୀ ନାହିଁ, ଯାହା ସେ ଯୁଗର ଆମ ଅବଧାରଣାରେ ବ୍ୟାପକ ପରିବର୍ତ୍ତନ ଆଣିଦେବ । ନିକଟରେ

ଆବିଷ୍କୃତ ହୋଇଥିବା କେତେକ ମହତ୍ତ୍ୱପୂର୍ଣ୍ଣ ଶିଳାଲେଖ ଏବଂ ପ୍ରାଚୀନ ମୁଦ୍ରା ଅବଶ୍ୟ ଜଟିଳତାକୁ କିଛି ମାତ୍ରାରେ ଲାଘବ କରିବାରେ ସାହାଯ୍ୟ କରିଛି । ପୋଥିଗତ ତଥ୍ୟ ମିଳିବା ଯୋଗୁଁ ଐତିହାସିକ ମହତ୍ତ୍ୱ ଥିବା ପାଠ୍ୟସାମଗ୍ରୀରୁ ପ୍ରମାଣ ସଂଗ୍ରହ ପ୍ରକ୍ରିୟା ସହଜ ହୋଇଛି । ମାତ୍ର ସଂସ୍କୃତ କ୍ଷେତ୍ରରେ ଏହା ସମ୍ଭବପର ହୋଇ ନାହିଁ । ସମ୍ଭବତଃ ପୋଥିଗତ ସୂତ୍ରସାମଗ୍ରୀ କ୍ଷେତ୍ରରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ହେଲା ଯେ, ସେ ଆଦେଶାତ୍ମକ ପୋଥି ହେଉ ବା ଉପଦେଶାତ୍ମକ ପୋଥି ହେଉ ବା କାବ୍ୟ ହେଉ, ସେଗୁଡ଼ିକ ନିର୍ଦ୍ଦିଷ୍ଟ ଗୋଟାଏ ସମୟରେ ରଚନା ହୋଇ ନାହିଁ ବୋଲି ଆମ ମନରେ ଅବଧାରଣା ସୃଷ୍ଟି ହୋଇଛି । କାଳକ୍ରମରେ ପ୍ରତ୍ୟେକଟି ପୋଥି ସମ୍ପାଦିତ ହୋଇଛି; ତହିଁରେ ନୂଆ ରଚନା ସଂଯୋଜିତ ହୋଇଛି । କାବ୍ୟଟିର ରଚୟିତା ଏକା ଜଣେ ବୋଲି କେହି ଗବେଷକ ଦାବି କରୁ ନାହାନ୍ତି । ପ୍ରାଚୀନ କାଳରେ ପୋଥି ରଚନା ଏବଂ ପୋଥିର ବ୍ୟବହାର ପରମ୍ପରା ଆଜି ତୁଳନାରେ ଭିନ୍ନ ଥିଲା । ଏକା ଧରଣର ଅଧ୍ୟବସାୟ ଥିବା ଅନେକ ରଚୟିତା ଗୋଟାଏ କାବ୍ୟକୁ ସମ୍ପାଦନା କରିପାରିବେ ବୋଲି ସେତେବେଳେ ମନେ କରାଯାଉଥିଲା । ସେଥିପାଇଁ ଆଜିକାଲି ତଥ୍ୟ ସଂଗ୍ରହଣ ସମୟରେ ଗୋଟାଏ ନିର୍ଦ୍ଦିଷ୍ଟ ପୋଥିର ରଚନା ପଛରେ ରହିଥିବା ଉଦ୍ଦେଶ୍ୟ, ତା'ର ଗ୍ରହୀତା ଏବଂ ରଚୟିତା ସମ୍ବନ୍ଧରେ ଜାଣିବାପାଇଁ ମଧ୍ୟ ଗବେଷକମାନେ ଯଥେଷ୍ଟ ଧ୍ୟାନ ଦେଉଛନ୍ତି ।

ଏହିସବୁ ପୋଥିଗୁଡ଼ିକର ରଚନାକାଳ ନିରୂପଣ କରିବା ଏବେ ମଧ୍ୟ ଆଗଭଳି ସମସ୍ୟାବହୁଳ ହୋଇ ରହିଛି । ସୃଜନାତ୍ମକ ସାହିତ୍ୟ ଭଳି ଅନ୍ୟାନ୍ୟ ବିଭାବର ଅନେକ ରଚନାର ରଚୟିତା ଜଣେ ବ୍ୟକ୍ତି ବୋଲି ମନେକରାଯାଏ । ଅବଶ୍ୟ ସେସବୁର ରଚନାକାଳ ମଧ୍ୟ ଅନେକ ସମୟରେ ନିଶ୍ଚିତ ନୁହେଁ । ସେସବୁ ହେଲା ତୁଳନାତ୍ମକ ଭାଷାତାତ୍ତ୍ୱିକ ଅଧ୍ୟୟନର ବିଷୟ । କୌଣସି ରଚନାର ଇତିହାସ ତଥା କାଳ ନିରୂପଣ କରିବା ନିମନ୍ତେ ଭାଷାଗତ ଶୈଳୀ ଓ ବ୍ୟବହାରରେ ପରିଦୃଷ୍ଟ ହେଉଥିବା ପରିବର୍ତ୍ତନକୁ ଅଧ୍ୟୟନ କରିବାପାଇଁ ଅନେକ କିଛି ପରୀକ୍ଷଣ ହୋଇଛି । କମ୍ପ୍ୟୁଟରର ପ୍ରୟୋଗ ଯୋଗୁଁ ଏହି ପରୀକ୍ଷଣ କେତେକାଂଶରେ ସୁବିଧାଜନକ ପ୍ରତୀତ ହୋଇଛି, ଯଦିଓ ତହିଁରେ ଅସୁବିଧାର ମାତ୍ରା ବି କିଛି କମ୍ ନୁହେଁ ।

ଭାରତ ଇତିହାସର ଆରମ୍ଭକୁ ନେଇ ଚାଲିଥିବା କେତୋଟି ସଦ୍ୟତମ ବିତର୍କରେ ଉଭୟ ପୁରାତତ୍ତ୍ୱ ଓ ଭାଷାଶାସ୍ତ୍ରତତ୍ତ୍ୱକୁ ସନ୍ନିବେଶିତ କରାଯାଇଛି । ଏହି ବିତର୍କରେ ଦେଶୀୟ ଲୋକ ଏବଂ ବାହାର ଲୋକଙ୍କ ମଧ୍ୟରେ ପାର୍ଥକ୍ୟ ଦେଖିବାକୁ ଉଦ୍ୟମ ହୋଇଛି । ମାତ୍ର ଇତିହାସରୁ ସିଦ୍ଧ ହୁଏ ଯେ ଜନ ସଂପ୍ରଦାୟ ଓ ତା'ର ଅସ୍ମିତା ନା ସ୍ଥାୟୀ ହୋଇ ରହେ, ନା ଜଡ଼ ହୋଇ ରହେ । ନୂଆ ଲୋକଙ୍କର ପ୍ରବେଶ ଫଳରେ ସର୍ବଦା ତା'ର ସ୍ୱରୂପ ବଦଳେ । ଏହା ବ୍ୟତୀତ ନୂଆ ଟେକ୍ନୋଲୋଜିର ପ୍ରଚଳନ ହେଲେ କିମ୍ବା ସ୍ଥାନୀୟ ସ୍ତରରେ ଅଥଚ ଦୀର୍ଘକାଳୀନ ଭିତ୍ତିରେ ଐତିହାସିକ ପରିବର୍ତ୍ତନ ଦେଖାଗଲେ ମଧ୍ୟ ଅସ୍ମିତାର ରୂପ ବଦଳିଯାଏ ।

କେତେକ ଅଞ୍ଚଳ ପରିବର୍ତ୍ତନ ପାଇଁ ଖୁବ୍ ଅନୁକୂଳ ସିଦ୍ଧ ହୁଅନ୍ତି । ଉଦାହରଣସ୍ୱରୂପ, ସୀମାନ୍ତ ଅଞ୍ଚଳ, ଗିରିପଥ କ୍ଷେତ୍ର ଓ ଉର୍ବର ସମତଳ ଅଞ୍ଚଳ ଆଦି । ଅନ୍ୟପକ୍ଷରେ, ଘଞ୍ଚ ଅରଣ୍ୟାଞ୍ଚଳ କିମ୍ବା ମରୁଭୂମି ଅଞ୍ଚଳ ଅଧିକ କାଳ ଧରି ସ୍ୱ ସ୍ୱ ନିରୋଳାପଣ ବଜାୟ ରଖନ୍ତି । ସେଠାକାର ସମ୍ପଦା ଆହରଣ ପାଇଁ ଯେତେବେଳେ ଆବଶ୍ୟକତା ବୃଦ୍ଧି ପାଏ, ସେତେବେଳେ ସେଠାରେ ମଧ୍ୟ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇପଡ଼େ । ଅର୍ଥାତ୍ କିଛି ଲୋକଙ୍କୁ ସ୍ଥାନୀୟ ବା ଦେଶୀୟ କହି ଅନ୍ୟମାନଙ୍କୁ ବାହାରର ବୋଲି ଯୁକ୍ତି କରିବା, ଭାରତ ଭୂଖଣ୍ଡର ମୂଳ ଅଧିବାସୀ ବୋଲି କାହାକୁ କାହାକୁ ଚିହ୍ନିତ କରିବା କିମ୍ବା ଦେଶୀ-ବିଦେଶୀର ବିତର୍କର ମୂଳକୁ ଅତୀତରେ ଖୋଜିବାକୁ ପ୍ରୟାସ କରିବା ହେବ ଏକ ନିହାତି ଅସମ୍ଭବ ବ୍ୟାପାର । ଲୋକଙ୍କ ମଧ୍ୟରେ ଅନ୍ତର୍ମିଶ୍ରଣ ହେଲେ ତଥା ବିଚାର କ୍ଷେତ୍ରରେ ବ୍ୟାପକ ଆଦାନ ପ୍ରଦାନ ହେଲେ ସଂସ୍କୃତିର ଉଦ୍‌ଭବ ଦେଖାଯାଏ । ବିଶେଷାଧିକାର ଓ କ୍ଷମତାରୁ ସୃଷ୍ଟ ଏହି କନ୍ଦଳ ହେଉଛି ପୂର୍ଣ୍ଣତଃ ଆଧୁନିକକାଳୀନ; ଇତିହାସ ଅଧ୍ୟୟନରେ ତାକୁ କୌଣସି ମହତ୍ତ୍ୱ ମିଳିବା କଥା ନୁହେଁ ।

ସମୟକ୍ରମେ କେବଳ ଭୂ-ପରିଦୃଶ୍ୟରେ ପରିବର୍ତ୍ତନ ହୁଏ ନାହିଁ । ତା' ସହିତ ସୁସ୍ପଷ୍ଟ ରୂପରେ ସମାଜରେ ମଧ୍ୟ ପରିବର୍ତ୍ତନ ସଂଘଟିତ ହୋଇଥାଏ । ମାତ୍ର ଉପନିବେଶବାଦୀ ଦୃଷ୍ଟିକୋଣରେ ଏହି ସ୍ୱାଭାବିକ ସତ୍ୟକୁ ସ୍ୱୀକାର କରାଯାଏ ନାହିଁ । ଉପନିବେଶବାଦୀ ମତରେ ଭାରତର ଇତିହାସ ଓ ସମାଜ ହେଲା ଅପରିବର୍ତ୍ତନୀୟ । ପ୍ରାରମ୍ଭିକକାଳୀନ ଉପନିବେଶବାଦୀ ଅଧ୍ୟୟନରେ ରାଜବଂଶର ଇତିହାସକୁ ଅଧିକ ମହତ୍ତ୍ୱ ଦିଆଯାଉଥିଲା, କାରଣ ଧରିନିଆଯାଇଥିଲା ଯେ 'ପ୍ରାଚ୍ୟ'ର ସମାଜମାନଙ୍କରେ ଦୈନନ୍ଦିନ ଶାସନ ପରିଚାଳନା କ୍ଷେତ୍ରରେ ମଧ୍ୟ ଶାସକର ଅଖଣ୍ଡ କ୍ଷମତା ରହିଥାଏ । ମାତ୍ର ଭାରତୀୟ ରାଜନୈତିକ ବ୍ୟବସ୍ଥାରେ ଦୈନନ୍ଦିନ କାର୍ଯ୍ୟକ୍ଷମତା କଦାଚିତ କେନ୍ଦ୍ରୀଭୂତ ହୋଇ ରହୁ ନ ଥିଲା । ସୈଦ୍ଧାନ୍ତିକ ରୂପରେ ଯାହାକୁ 'ପ୍ରାଚ୍ୟ ନିରଙ୍କୁଶବାଦ' (Oriental Despotism) ବୋଲି ନାମିତ କରାଯାଏ, ତହିଁରେ ଅସଲରେ କ୍ଷମତା ଜାତି ଏବଂ ଅନ୍ୟାନ୍ୟ ସଂଗଠନ ମାଧ୍ୟମରେ ସ୍ଥାନୀୟ ସ୍ତରରେ କେନ୍ଦ୍ରୀଭୂତ ହୋଇ ରହୁଥିଲା । ଭାରତରେ ରାଜନୈତିକ କ୍ଷମତାର ସୂତ୍ରକୁ ବୁଝିବାକୁ ହେଲେ ଜାତି ସମ୍ବନ୍ଧକୁ ତଥା ଗ୍ରାମସଭା, ସହର ସମିତି ବା କାର୍ଯ୍ୟଶାଳା ବା ଗିଲ୍ଡ (guilds) ଆଦିକୁ ଅନୁଶୀଳନ କରିବାକୁ ହେବ । ଏଥିପାଇଁ କେବଳ ରାଜବଂଶଗୁଡ଼ିକୁ ସର୍ବେକ୍ଷଣ କରିବା ଯଥେଷ୍ଟ ହେବ ନାହିଁ । ପୂର୍ବରୁ ଇତିହାସ ଅଧ୍ୟୟନରେ ଅନୁଷ୍ଠାନ ଓ ସଂଗଠନଗୁଡ଼ିକୁ ଜାଣିବା ଉପରେ ଗୁରୁତ୍ୱ ଦିଆଯାଉ ନ ଥିଲା, କାରଣ ଅନୁଷ୍ଠାନରେ ବିଶେଷ ପରିବର୍ତ୍ତନ ଘଟେ ନାହିଁ ବୋଲି ଧାରଣା ରହିଥିଲା । ଏଭଳି ଧାରଣା ରହିବା ପଛରେ ପ୍ରମୁଖ କାରଣ ହେଲା ଯେ ଗବେଷକମାନେ ଭାବୁଥିଲେ, ଭାରତର ସଂସ୍କୃତି ହେଉଛି ଜଡ଼, ସ୍ଥିର ଓ ଅପରିବର୍ତ୍ତନୀୟ ! ଭାରତର ଲୋକ ହେଲେ ଆଳସ୍ୟପରାୟଣ, ବିଷାଦବାଦୀ ଏବଂ ଭାଗ୍ୟବାଦୀ ! ମାତ୍ର ଜାତିର ପରିଧି ମଧ୍ୟରେ ସଂଘଟିତ ହେଉଥିବା ସାମାଜିକ ସମ୍ବନ୍ଧଜନିତ

ପରିବର୍ତ୍ତନକୁ ସୁଦ୍ଧା ଯଦି ଉପରଠାଉରିଆ ଭାବେ ଅନୁଧ୍ୟାନ କରାଯାଇଥାନ୍ତା କିମ୍ବା ରାଜନୀତି ଏବଂ ଆର୍ଥିକ ବ୍ୟବସ୍ଥା ମଧ୍ୟରେ ରହିଥିବା ସମ୍ପର୍କକୁ ଦୃଷ୍ଟି ଦିଆଯାଇଥାନ୍ତା କିମ୍ବା ଶହ ଶହ ବର୍ଷ ଧରି ଭାରତୀୟମାନେ ବଞ୍ଚେଇ ରଖିଥିବା ବ୍ୟାପକ ଲାଭଜନକ ବାଣିଜ୍ୟକୁ ବିଶ୍ଳେଷଣ କରାଯାଇଥାନ୍ତା, ତେବେ ଭାରତୀୟ ସମାଜ ଜଡ଼ ନୁହେଁ, ଏହାର ସାମାଜିକ ଓ ଆର୍ଥିକ ବ୍ୟବସ୍ଥା ଗତିଶୀଳ ବୋଲି ସ୍ପଷ୍ଟ ହୋଇଥାନ୍ତା । କେତେକ କ୍ଷେତ୍ରରେ ଅବଶ୍ୟ ସାଂସ୍କୃତିକ ପରମ୍ପରାର ଏକାଧିକ ଉପାଦାନ ହଜାର ହଜାର ବର୍ଷ ଧରି ଚେର ମାଡ଼ି ରହିଆସିଛି । ମାତ୍ର ସଂସ୍କୃତିର ଏହି ନିରନ୍ତରତାକୁ କଦାପି ଜଡ଼ତା ବୋଲି ଆଖ୍ୟା ଦିଆଯାଇ ନ ପାରେ । ଗାୟତ୍ରୀ ମନ୍ତ୍ର ଋଗ୍‌ବେଦରୁ ଆନୀତ ଏବଂ ସୂର୍ଯ୍ୟଦେବଙ୍କ ପୂଜାର୍ଚ୍ଚନା ବେଳେ ତାକୁ ଉଚ୍ଚାରଣ କରାଯାଏ । ଏହା ତିନିହଜାର ବର୍ଷ ପ୍ରାଚୀନ । ଏଥିରେ ଆଜିପର୍ଯ୍ୟନ୍ତ କୌଣସି ଶବ୍ଦ ପରିବର୍ତ୍ତନ ହୋଇ ନାହିଁ । ଯେଉଁ ପୃଷ୍ଠଭୂମିରେ ତାକୁ ଉଚ୍ଚାରଣ କରାଯାଏ, ତହିଁରେ ବି ପରିବର୍ତ୍ତନ ହୋଇ ନାହିଁ । ଐତିହାସିକ ଅଧ୍ୟୟନ ପାଇଁ ମନ୍ତ୍ରର ଉଭୟ କଥାବସ୍ତୁ ଓ ପୃଷ୍ଠଭୂମି ସମପରିମାଣରେ ମହତ୍ତ୍ୱପୂର୍ଣ୍ଣ ।

ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଜ୍ଞାନର ପ୍ରତିଟି ବିଭାବରେ ସ୍ୱତନ୍ତ୍ର ଅଧ୍ୟୟନକୁ (specialization) ମହତ୍ତ୍ୱ ମିଳିଲା । ସ୍ୱତନ୍ତ୍ର ଅଧ୍ୟୟନ ବିନା କୌଣସି ପ୍ରସଙ୍ଗରେ ଗମ୍ଭୀର ମତ ଦେବା ଅସମ୍ଭବ ପ୍ରତୀତ ହେଲା । ବିଶେଷ ଜ୍ଞାନ ନିଶ୍ଚିତରୂପେ ଅଧ୍ୟୟନ ପ୍ରକ୍ରିୟାକୁ ଆମୋଦଦାୟୀ କରେ । ଏହା ଫଳରେ ବୁଝିବା ସହଜ ହୁଏ । କୌଣସି ପ୍ରାଚୀନ ପୋଥିକୁ ପାଠ କରିବାର ବା ମୁଦ୍ରାକୁ ବିଶ୍ଳେଷଣ କରିବାର ବା ଶିଳାଲେଖକୁ ବୁଝିବାର ସାମର୍ଥ୍ୟ ହାସଲ କରିବା ହେବ ଇତିହାସ ଅଧ୍ୟୟନ ନିମନ୍ତେ ନିମ୍ନତମ ଆବଶ୍ୟକତା । ମୁଦ୍ରାଧ୍ୟୟନ (numismatics)ର ଅଙ୍କ ବା ସଂକେତର ତତ୍ତ୍ୱ ଅଥବା ପୋଥିର ପୃଷ୍ଠଭୂମି ସହିତ ପରିଚିତ ଥିଲେ, ଇତିହାସର ପାଠ ବିଷୟ ଆଶାଜନକ ଭାବେ ଅଧିକ ସଂବୃଦ୍ଧ ହୋଇପାରିବ ବୋଲି ଆଶା କରାଯାଏ । କୌଣସି ପୋଥିର ବ୍ୟାଖ୍ୟା କରିବା ସମୟରେ ତା'ର ରଚୟିତା, ଲେଖନ ପଛର ଉଦ୍ଦେଶ୍ୟ, ଗ୍ରହୀତା, ଐତିହାସିକ ପୃଷ୍ଠଭୂମି ଏବଂ ସମକାଳୀନ ଅନ୍ୟାନ୍ୟ ରଚନା ସହିତ ତା'ର ସମ୍ବନ୍ଧକୁ ଉପେକ୍ଷା କରାଯାଇ ନ ପାରେ । ଏହି କାରଣରୁ ବୃତ୍ତିନିପୁଣ (professional) ଐତିହାସିକ ଏବଂ ସୌଖୀନ ଇତିହାସ ଲେଖା ମଧ୍ୟରେ ଅନ୍ତର ରହିଥାଏ । ସେତେବେଳେ ଇତିହାସର ଉଦ୍ଦେଶ୍ୟ ହେବ ଇତିହାସ ଗବେଷଣା କ୍ଷେତ୍ରରେ ଏକ ଅପୂର୍ବ ସ୍ୱାଦ ପରିବେଷଣ କରିବା ।

ଏହି ପୁସ୍ତକରେ ରାଜନୈତିକ ଇତିହାସକୁ ଏକ ଫ୍ରେମ ବା ଢାଞ୍ଚା ଭାବରେ ବ୍ୟବହାର କରି କାଳର ଅନୁକ୍ରମ ଦେବାକୁ ମୁଁ ପ୍ରୟାସ କରିଛି, ଯଦିଓ ନିଶ୍ଚିତ କାଳାନୁକ୍ରମ ସର୍ବଦା ସମ୍ଭବପର ନୁହେଁ । ଆଦ୍ୟକାଳୀନ ଭାରତ ଇତିହାସରେ ପରିଚିତ କେତୋଟି ଶାସକଙ୍କର ନାମକୁ ମଧ୍ୟ ଏଥିରେ ରଖାଯାଇଛି । ମାତ୍ର ପ୍ରତ୍ୟେକ ଅଧ୍ୟାୟରେ ତତ୍‌କାଳୀନ ରାଜନୈତିକ,

ଆର୍ଥିକ, ସାମାଜିକ ଏବଂ ଧାର୍ମିକ ଉପାଦାନଗୁଡ଼ିକ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ପ୍ରମୁଖତା ଦିଆଯାଇଛି । ଏହା ପଛରେ ଉଦ୍ଦେଶ୍ୟ ହେଲା କେଉଁଠି ଓ କାହିଁକି ପରିବର୍ତ୍ତନ ହେଲା, ତାକୁ ପ୍ରଦର୍ଶନ କରିବା ଏବଂ ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନର ପ୍ରଭାବ ପ୍ରକ୍ରିୟାକୁ ଚିହ୍ନିତ କରିବା । ଯେଉଁଠି ନିରନ୍ତରତା ରହିଛି, ସେଠାରେ ପ୍ରଭାବ ସୁସ୍ପଷ୍ଟ ହୁଏ । ଅଧ୍ୟାୟର ଅନୁଚ୍ଛେଦଗୁଡ଼ିକ ସ୍ୱତନ୍ତ୍ରତା ଦାବି କରନ୍ତି ନାହିଁ । ଉକ୍ତ କାଳଖଣ୍ଡର ମହତ୍ତ୍ୱପୂର୍ଣ୍ଣ ଦିଗକୁ କେବଳ ଚିହ୍ନିତ କରନ୍ତି । ପ୍ରଥମ ଅଧ୍ୟାୟରେ କାଳ ବିଭାଜନ (periodization) ପାଇଁ ଯେଉଁ ପ୍ରସ୍ତାବ ଦିଆଯାଇଛି, ତା' ସହିତ ଅଧ୍ୟାୟଗୁଡ଼ିକର କଥାବସ୍ତୁର ପୂରାପୂରି ମେଳ ରହି ନ ପାରେ । ତା' ସତ୍ତ୍ୱେ ପୁସ୍ତକଟି ପ୍ରସ୍ତାବିତ ନକ୍ସାରେ ହିଁ ରହିଛି ।

ଆପେକ୍ଷିକ ଅର୍ଥରେ କମ୍ ଜଟିଳ କ୍ଷୁଦ୍ର ସମାଜ ଓ ସାନ ରାଜ୍ୟରୁ ପରିବର୍ତ୍ତନ ଅଧିକ ଜଟିଳ ସମାଜକୁ ବିସ୍ତାରିତ ହୋଇଛି । ଅଧିକାଂଶ ସମୟରେ ଏହି ଅଧିକ ଜଟିଳ ସମାଜଗୁଡ଼ିକ ହେଲେ ବୃହଦ୍ ରାଜ୍ୟ, ଯାହାର ଆବଶ୍ୟକତାର ମାତ୍ରା ଅନେକ ବେଶି । ମୋଟ କଥା ହେଲା, ବୃହଦ୍ ରାଜ୍ୟର ବହୁବିଧ ଦିଗ ରହିଥାଏ । ତହିଁରେ ଏକ ବ୍ୟାପକ କ୍ଷେତ୍ରକୁ ଶାସନ କରିବାର ଆବଶ୍ୟକତା ରହିଥାଏ । ତାକୁ ବାସ୍ତବିକତା ଆଧାରରେ କାର୍ଯ୍ୟ କରିବାକୁ ପଡ଼ିଥାଏ; ତହିଁରେ ନାନା କିସମର କୃଷି ଓ ବାଣିଜ୍ୟିକ ଗତିବିଧି ରହିଥାଏ; ଜାତି ଭଳି ବହୁବିଧ ସାମାଜିକ ଅନୁଷ୍ଠାନ ରହିଥାଏ; କିସମ କିସମର ଜ୍ଞାନ ଏବଂ ସମାଜ ଓ ସଂସ୍କୃତି ସହ ଜ୍ଞାନର ସୈଦ୍ଧାନ୍ତିକ ସମନ୍ୱୟ କଥା ରହିଥାଏ; ସାମାଜିକ ଦାବି ଉପସ୍ଥାପନ କରିବା ଲାଗି ନାନା ଧାର୍ମିକ ସଂପ୍ରଦାୟ ରହିଥାନ୍ତି; ଧାର୍ମିକ ଅନୁଷ୍ଠାନମାନେ ପୁରାଣରୁ ଆରମ୍ଭ କରି ଦର୍ଶନତତ୍ତ୍ୱ ଯାଏଁ ସବୁପ୍ରକାର ସିଦ୍ଧାନ୍ତକୁ ଆହରଣ କରି ନୂଆ ବିଚାର ପ୍ରଦାନ କରୁଥାନ୍ତି; ବିଭିନ୍ନ ଧରଣର ସୃଜନାତ୍ମକ ସାହିତ୍ୟ ରହିଥାଏ ଏବଂ ଧାର୍ମିକ ସଂପ୍ରଦାୟ ଓ ସେମାନଙ୍କ ପୂଜାପାର୍ବଣକୁ ମୂର୍ତ୍ତରୂପ ଦେଉଥିବା ନାନା କିସମର ଧର୍ମପୀଠ ଓ ପୂଜାସ୍ଥଳୀ ରହିଥାଏ । ଏହିସବୁ ଉପାଦାନଗୁଡ଼ିକ ମଧ୍ୟରେ ସମ୍ପର୍କ ରହିଥାଏ, ଯାହାର ସ୍ୱରୂପ ହୁଏତ ପ୍ରଭାବଶାଳୀ ହୁଏ ଅଥବା ବିଲୋପ ପାଏ । ସେହି ସମ୍ପର୍କ ଏବଂ ତଜ୍ଜନିତ ପ୍ରଭାବକୁ ପର୍ଯ୍ୟାଲୋଚନା କଲେ କଥ୍ୟ ସବୁ ଲୋକଲୋଚନକୁ ଆସିବ ବୋଲି ଆଶା କରାଯାଏ । ଅନ୍ୟ ଶବ୍ଦରେ କହିଲେ, ଏହାହିଁ ହେବ ଐତିହାସିକ ପରିବର୍ତ୍ତନର ପ୍ରକୃତ ତର୍ଜମା ।

ଆମର ଏକ ଧାରଣା ରହିଛି ଯେ ଏଠାରେ ଆଲୋଚିତ ଇତିହାସର ଅଧିକାଂଶ ଭାଗ ରାଜ୍ୟ ଗଠନ ପରବର୍ତ୍ତୀ କାଳର । ଅନ୍ତତଃ ରାଜନୈତିକ ସଂସ୍ଥାକୁ ସ୍ୱୀକୃତି ମିଳିବା ପର ସମୟର ଘଟଣାମାନ ଏସବୁ । ରାଜ୍ୟ ଗଠନ ହେଲା ଏକ ସ୍ୱୀକୃତ ଐତିହାସିକ ପ୍ରକ୍ରିୟା । ଜନବସତି ସ୍ଥାପନ ବିନା ଏହା ସମ୍ଭବପର ହୋଇ ନ ଥାନ୍ତା । ଜନବସତି କାଳକ୍ରମେ ସହରରେ ପରିଣତ ହେଲା; ଯେଉଁ ସମାଜରେ ରାଜ୍ୟ ଗଠନ ହୋଇସାରିଥିଲା, ସେଠାରେ ରାଜ୍ୟ ଗଠନ ହୋଇ ନ ଥିବା ସମାଜ ତୁଳନାରେ ଜଟିଳତା ଅଧିକ । ଏଥିରୁ ଗୋଟାଏ

ଧାରଣା ମନକୁ ଆସେ ଯେ ପ୍ରାଚୀନ ଇତିହାସରେ ବିଭିନ୍ନ କିସମର ରାଜ୍ୟ ଗଠିତ ହୋଇଥାଇ-ପାରନ୍ତି । ରାଜ୍ୟର ବିଭିନ୍ନ ଉପାଦାନ ଉପରେ ନିର୍ଭର କରେ ସେଠାରେ ରାଜ୍ୟର ସ୍ୱରୂପ କ'ଣ ହେବ । କୌଣସି ନିର୍ଦ୍ଦିଷ୍ଟ ସମାଜରେ ରାଜ୍ୟର ସ୍ୱରୂପ କ'ଣ ଥିଲା, ତାହା କେଉଁଭଳି ଭାବରେ କାର୍ଯ୍ୟ କରୁଥିଲା, ତାହା ଅନୁଶୀଳନ କରିବା ମଧ୍ୟ ଇତିହାସ ଅଧ୍ୟୟନର ଅଙ୍ଗ ଅଟେ । ସବୁ ଅଞ୍ଚଳରେ ଏକା ସାଙ୍ଗରେ ଓ ଏକା ସମୟରେ ରାଜ୍ୟ ଗଠନ ପ୍ରକ୍ରିୟା ଆରମ୍ଭ ହୋଇଥାଇ ନ ପାରେ । ଏହି ପ୍ରକ୍ରିୟା ଭିନ୍ନ ଭିନ୍ନ ସମୟ ଓ ସ୍ଥାନରେ ଆରମ୍ଭ ହୋଇଥାଇ-ପାରେ । ସେଥିପାଇଁ କାଳ ବିଭାଜନ (periodization) କଲାବେଳେ ଏକ ବ୍ୟାପକ କ୍ଷେତ୍ରରେ ସଂଘଟିତ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନକୁ ଆଲୋଚନାକୁ ଆଣିବାକୁ ହୋଇଥାଏ । ମାତ୍ର ପୂର୍ବ କାଳଖଣ୍ଡରେ ପ୍ରତ୍ୟେକ ଅଞ୍ଚଳରେ ଏହିଭଳିଭାବେ କାଳ ବିଭାଜନ ହୋଇ ବି ନ ଥାଇପାରେ । ଅର୍ଥାତ୍ ପରିବର୍ତ୍ତନ କ୍ରମଶଃ ଅଧିକରୁ ଅଧିକ ସମତ୍ୱ ଲାଭ କରେ ।

ସରକାର କେଉଁଭଳି ଭାବେ କାର୍ଯ୍ୟ କରିବ ? ରାଜ୍ୟର ଚରିତ୍ର କ'ଣ ହେବ ? ପ୍ରାରମ୍ଭିକ ସ୍ତରରେ ଏହା ପ୍ରଶାସନର ଗଠନ ପ୍ରଣାଳୀରୁ ସ୍ଥିର ହେଉଥିଲା । ଉଦାହରଣସ୍ୱରୂପ, ଦଳପତି ବା ସର୍ଦ୍ଦାର ରାଜ୍ୟର ମୁଖ୍ୟ ହେବେ ନା ରାଜା ମୁଖ୍ୟ ହେବେ – ଏହା ପ୍ରଶାସନିକ ଢାଞ୍ଚାରୁ ସ୍ୱରୂପ ପାଉଥିଲା । ଧୀରେ ଧୀରେ ଶାସନ ପ୍ରଣାଳୀ ଜଟିଳ ଓ ଜଟିଳତର ହେଲା, କାରଣ ତାକୁ ପରିବେଶ ସହିତ ଖାପ ଖୁଆଇବାକୁ ପଡୁଥିଲା । ଅର୍ଥାତ୍ ବଣଜଙ୍ଗଲ, ଚାରଣଭୂମି, ମରୁଭୂମି, କ୍ଷେତବିଲ, ପାହାଡ଼, ପର୍ବତ ତଥା ସମୁଦ୍ର ସହିତ ତାକୁ ମେଳ ରଖିବାକୁ ପଡ଼େ । ରାଜ୍ୟର ଆକାର ଯଦି ବିଶାଳ, ତେବେ ପରିବେଶ ବହୁବିଧ ହେବାର ସମ୍ଭାବନା ରହିଥାଏ । ପୁଣି, ପରିବେଶ ବହୁବିଧ ହେଲେ, ସମଧରଣର ସରଳ ପ୍ରଶାସନ ପ୍ରଚଳନ କରିବା କଷ୍ଟକର ହୁଏ । ସେଥିପାଇଁ ସ୍ଥାନୀୟ ଆବଶ୍ୟକତାକୁ ଦୃଷ୍ଟିରେ ରଖି ପ୍ରଶାସନିକ ଅବଧାରଣାକୁ ବଦଳେଇବାକୁ ପଡ଼େ । କ୍ଷମତାର କେନ୍ଦ୍ରୀକରଣ ଓ ବିକେନ୍ଦ୍ରୀକରଣ ମଧ୍ୟରେ କେତେ ମାତ୍ରାରେ ତାଳମେଳ ରହିବ, ତହିଁରୁ ପ୍ରଶାସନର ସ୍ୱରୂପ ନିର୍ଦ୍ଧାରିତ ହେଉଥିଲା । ଠିକ୍ ସେହିଭଳି ରାଜ୍ୟର ସମ୍ପଦା ଉପରେ କାହାର ନିୟନ୍ତ୍ରଣ ରହିବ ତହିଁରୁ ମଧ୍ୟ ପ୍ରଶାସନର ସ୍ୱରୂପ ନିର୍ଦ୍ଧାରିତ ହେଉଥିଲା । ଶାସନର ସିଦ୍ଧାନ୍ତ ଓ ପ୍ରଶାସନର ସ୍ୱରୂପ ପରସ୍ପରକୁ ଯେମିତି ପ୍ରଭାବିତ କରୁଥିଲେ, ସେମିତି ପରସ୍ପର ଦ୍ୱାରା ପ୍ରଭାବିତ ମଧ୍ୟ ହେଉଥିଲେ । ସାମରିକ ଅଭିଯାନ ଦ୍ୱାରା ରାଜ୍ୟର କ୍ଷେତ୍ର ନିର୍ଦ୍ଧାରଣ ହେଉଥିଲା । ସାମରିକ ଅଭିଯାନ ସଫଳ ହେଲେ କ୍ଷେତ୍ରଫଳ ଯେମିତି ବୃଦ୍ଧି ପାଉଥିଲା, ଅଭିଯାନ ବିଫଳ ହେଲେ ସେମିତି ତାହା ହ୍ରାସ ମଧ୍ୟ ପାଉଥିଲା । କ୍ଷେତ୍ର ନିର୍ଦ୍ଧାରଣ ପଛରେ ଯଦିଓ ପ୍ରାୟତଃ ରାଜନୀତି ପ୍ରମୁଖ କାରଣ ହେଉଥିଲା, କଦାଚିତ ଭୌଗୋଳିକ କାରଣ ତହିଁରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଥିଲା ।

ରାଜ୍ୟର ପେଟେଣ୍ଟ ବା ନମୁନା ଏବଂ କ୍ଷମତା ଅନୁସାରେ ଅର୍ଥନୀତି ସ୍ଥିର ହେଉଥିଲା । ତତ୍‌କାଳୀନ କୃଷି ଆଧାରିତ ଅର୍ଥନୀତି ବିଶେଷତଃ ପରିବେଶ, ଶସ୍ୟର ପେଟେଣ୍ଟ, ଜଳସେଚନର ବ୍ୟବସ୍ଥା ଏବଂ ଚାଷଜମିର ମାଲିକାନା ଉପରେ ନିର୍ଭର କରୁଥିଲା । ଆରମ୍ଭରେ କ୍ଷମତାର ସ୍ଥାନୀୟ କିସମମାନ ରହିଥିଲା । ମାତ୍ର ଧୀରେ ଧୀରେ ଏକ ବ୍ୟାପକ କ୍ଷେତ୍ରରେ କ୍ଷମତାର ସ୍ୱରୂପ ସମାନ କିସମର ହେବାକୁ ଲାଗିଲା । ଯେଉଁ ଉପାଦାନଗୁଡ଼ିକୁ ଭିତ୍ତିକରି କ୍ଷମତାର ପ୍ରତିଷ୍ଠା ହେଲା ତନ୍ମଧ୍ୟରେ ରହିଥିଲା କ୍ଷମତାର ଉତ୍ସ, ସମ୍ପଦ ଏବଂ ଅନ୍ୟର ଶ୍ରମକୁ ଆହରଣ ଓ ନିୟନ୍ତ୍ରଣ କରିବାର ବହୁବିଧ ମାଧ୍ୟମ । ସହରଗୁଡ଼ିକର ଉତ୍‌ଥାନ ମଧ୍ୟ କ୍ରମବର୍ଦ୍ଧିଷ୍ଣୁ ବାଣିଜ୍ୟକୁ ଇଙ୍ଗିତ କରେ । କେତେକ ଅଞ୍ଚଳରେ ଅର୍ଥନୀତିର ପ୍ରମୁଖ ଅଙ୍ଗ ଥିଲା ବାଣିଜ୍ୟ । ଭାରତ ଯେହେତୁ ଭୂମିବେଷ୍ଟିତ, ସୁଦୂର ଅତୀତରେ ଇତିହାସ ଗବେଷଣା ନୌବାଣିଜ୍ୟକୁ ବିଶେଷ ମହତ୍ତ୍ୱ ଦେଇ ନ ଥିଲା । ମାତ୍ର ଆଜିକାଲି ନୌବାଣିଜ୍ୟକୁ ନେଇ ଖୁବ୍ ଗବେଷଣା ହେବାରେ ଲାଗିଛି । ଏହା ଅନସ୍ୱୀକାର୍ଯ୍ୟ ଯେ ନୌବାଣିଜ୍ୟ ଯୋଗୁଁ ଭାରତର ଅର୍ଥନୀତିରେ ଉନ୍ନତି ପରିଲକ୍ଷିତ ହୋଇଛି । ତା' ସହିତ ନୌବାଣିଜ୍ୟ ଯୋଗୁଁ ଅନେକ ବଣିକ ଆସି ଭାରତରେ ବସତି ସ୍ଥାପନ କରିବାରୁ ଅନେକ ନୂଆ ସାମାଜିକ ବର୍ଗ ସୃଷ୍ଟି ହୋଇଛନ୍ତି ।

ଭାରତ ଭୂଖଣ୍ଡରେ ଜାତିକୁ ଗୋଟାଏ କିସମର ସାମାଜିକ ଅନୁଷ୍ଠାନ ଭାବରେ ଦେଖିବାର ପ୍ରବୃତ୍ତି ରହିଛି, ମାତ୍ର ଜାତିରେ ସମତ୍ୱ ନ ଥାଏ । ଅର୍ଥାତ୍ ଗୋଟାଏ ନିର୍ଦ୍ଦିଷ୍ଟ ଜାତିକୁ ସବୁଠି ଏକା ଧରଣର ସାମାଜିକ ସ୍ତରରେ ରଖାଯାଏନା । କେଉଁଠି ଜମିର ମାଲିକାନା ରଖିଥିବା ଗୋଷ୍ଠୀ ସ୍ଥାନୀୟ ସମାଜରେ କର୍ତ୍ତୃତ୍ୱ ଜାହିର କରନ୍ତି ତ ଆଉ କେଉଁ ସ୍ଥାନୀୟ ସମାଜରେ ବ୍ୟବସାୟୀବର୍ଗ କର୍ତ୍ତୃତ୍ୱ ହାସଲ କରିଥାନ୍ତି । ସମାଜର ସବୁଠି ସମାନ କିସମର ଅନୁକ୍ରମିକ ବିଭାଜନ (hierarchical ordering) ରହିଥିଲା । ମାତ୍ର ଆନୁକ୍ରମିକ ବିଭାଜନକୁ ଉପଯୋଗ କରିବା ଲାଗି ରହିଥିବା ମାଧ୍ୟମ ଆଞ୍ଚଳିକତା ଦ୍ୱାରା ଖୁବ୍ ପ୍ରଭାବିତ ଥିଲା । ଉଭୟ କୃଷି ଓ ବାଣିଜ୍ୟ ଜାତିକୁ ଭିନ୍ନ କିସମର ସ୍ୱାଧୀନତା ଦେଉଥିଲେ, ପୁଣି ଅନ୍ୟପକ୍ଷରେ ତାକୁ ନିୟନ୍ତ୍ରଣ ମଧ୍ୟ କରି ରଖୁଥିଲେ । ଏଥିରୁ ପ୍ରଶ୍ନ ଉଠେ, କେତେକ ସ୍ଥିତିରେ ଜାତି ବଦଳରେ ଅର୍ଥ-ସମ୍ପତ୍ତି କ'ଣ କ୍ଷମତା ଓ ପୃଷ୍ଠପୋଷକତା ପାଇଁ ଅଧିକ ଉପଯୋଗୀ ପ୍ରମାଣିତ ହୋଇ ନ ଥିଲା ? ଭାରତୀୟ ସମାଜର ପରିଚାଳନା ପ୍ରକ୍ରିୟାକୁ ଅନୁଶୀଳନ କରିବାଲାଗି ବର୍ତ୍ତମାନ ଜାତି ଗଠନକୁ ଦେଖାଯାଉଛି । ଆରମ୍ଭରେ ଜାତିର ଜନ୍ମ କେଉଁଭଳି ଭାବେ ହେଲା, ସେ ନେଇ ଗବେଷକମାନେ ଭିନ୍ନ ଭିନ୍ନ ସମ୍ଭାବନାକୁ ଦର୍ଶାଉଛନ୍ତି । ଅରଣ୍ୟବାସୀମାନଙ୍କ କୁଳ (clan)ରୁ ଜାତିର ଜନ୍ମ କି ? ବୃତ୍ତିନିପୁଣ (professional) ଗୋଷ୍ଠୀ କିମ୍ବା ଧାର୍ମିକ ସଂପ୍ରଦାୟରୁ ଜାତି ଜନ୍ମ ନେଇ ନାହିଁ ତ ? ଗବେଷକମାନେ ଏଭଳି ଅନେକ ସମ୍ଭାବନାକୁ ମନରେ ରଖି ଇତିହାସ ଅଧ୍ୟୟନ କରୁଛନ୍ତି । ସେହି କାରଣରୁ ଆଗ ତୁଳନାରେ ଆଜିର

ଗବେଷକ ଜାତିକୁ ଅପେକ୍ଷାକୃତ ଏକ କମ୍ ଅନୁଦାର, ଏକ କମ୍ ଜଡ଼ ବ୍ୟବସ୍ଥା ବୋଲି ମନେକରୁଛନ୍ତି । ତା' ସହିତ ଏହା ସାମାଜିକ ଇତିହାସକାରମାନଙ୍କ ଆଗରେ ଅନେକ ନୂଆ ପ୍ରଶ୍ନ ସୃଷ୍ଟି କରିଛି ।

ଅତୀତ ଭାରତରେ ବିବିଧ ଢଙ୍ଗରେ ଜ୍ଞାନକୁ ଅଭିବ୍ୟକ୍ତ କରାଯାଉଥିଲା । ଏହାକୁ ଏକ ଦାର୍ଶନିକ ଅବଧାରଣା ରୂପେ ଚିହ୍ନିତ କରାଯାଇଥିଲା । ଅବଶ୍ୟ ଏଥିରେ ସତ୍ୟତା ବି ରହିଛି । ମାତ୍ର ସବୁ କିସମର ଜ୍ଞାନ ଦର୍ଶନଭିତ୍ତିକ ନ ଥିଲା । ଅନେକ ଜ୍ଞାନ ପ୍ରଯୁକ୍ତିର ବ୍ୟବହାର ଓ ପୋଥିରୁ ବିଚ୍ଛିନ୍ନ ହୋଇ ନ ଥିଲା । ଜ୍ଞାନକୁ କେଉଁ ଉପାୟରେ ସଂରକ୍ଷଣ କରାଯିବ ଏବଂ କେଉଁ ମାଧ୍ୟମରେ ତାକୁ ବିକଶିତ କରାଯିବ, ସେ ନେଇ ବହୁବିଧ ବ୍ୟବସ୍ଥା ରହିଥିଲା । ମୌଖିକ ପରମ୍ପରାରୁ ଆରମ୍ଭ କରି ଲିଖିତ ପରମ୍ପରା ଯାଏଁ ଏବଂ ପ୍ରଯୁକ୍ତିରୁ ଆରମ୍ଭ କରି ସିଦ୍ଧାନ୍ତ ଯାଏଁ ଅନେକ ପଦ୍ଧତି ବିଦ୍ୟମାନ ଥିଲା । ସମପରିମାଣରେ ଗୁରୁତ୍ୱପୂର୍ଣ୍ଣ ଥିଲା ରଢ଼ିବାଦୀ ଏବଂ ରଢ଼ିବାଦ ବିରୋଧୀ ଗୋଷ୍ଠୀ ମଧ୍ୟରେ ଚାଲିଥିବା ବୌଦ୍ଧିକ ତର୍କବିତର୍କ । ଠିକ୍ ସେହିଭଳି ଉଭୟ ଆସ୍ଥା ଓ ସଂଶୟର ପ୍ରକୃତି ମଧ୍ୟରେ ନିରନ୍ତର ତର୍କବିତର୍କ ଲାଗି ରହିଥିଲା ।

ଇତିହାସର ପ୍ରତ୍ୟେକ କାଳଖଣ୍ଡରେ ସୃଜନାତ୍ମକ ସାହିତ୍ୟର ବୈଶିଷ୍ଟ୍ୟ ରହିଥାଏ । ମାତ୍ର ସବୁ ଯୁଗରେ ଏକ ନିର୍ଦ୍ଦିଷ୍ଟ ସାହିତ୍ୟିକ ବିଭାବକୁ ସର୍ବଦା ପ୍ରମୁଖତା ପ୍ରାପ୍ତ ହୋଇ ନ ଥାଏ । ଯେଉଁ ବିଭାବ ଯେତେବେଳେ ପ୍ରମୁଖତା ପାଇପାରିଲା ! ଏହାର ଅର୍ଥ ହେବ ସମାଜରେ ବହୁବିଧ ସାହିତ୍ୟିକ ବିଭାବ ଗଚ୍ଛିତ ହୋଇ ରହିଥାଏ । ମହାକାବ୍ୟ ଭଳି ମହାନ୍ ମୌଖିକ ରଚନାମାନ ପ୍ରାଚୀନ କାଳରେ ଜନ୍ମ ନେଇଥିଲେ । ପ୍ରାରମ୍ଭିକ ଶତାବ୍ଦୀରେ ଶିକ୍ଷିତ ସମ୍ଭ୍ରାନ୍ତ ବର୍ଗର ଦରବାରୀ ସାହିତ୍ୟ ବା ରାଜସଭା ସାହିତ୍ୟ ବେଶି ପରିଚିତି ପାଇଲା । ଯଦିଓ ରାଜସଭାମାନଙ୍କରେ ପଦ୍ୟ ଏବଂ ଉଚ୍ଚମାନର ନାଟକକୁ ଖୁବ୍ ପୃଷ୍ଠପୋଷକତା ଦିଆଯାଉଥିଲା, ମହାକାବ୍ୟଗୁଡ଼ିକର ଲୋକପ୍ରିୟତାରେ ମଧ୍ୟ ନିରନ୍ତରତା ରହିଥିଲା । ଏହି ଲୋକପ୍ରିୟତା ବେଳେବେଳେ ରାଜସଭା ସାହିତ୍ୟ ପାଇଁ ବିଷୟ ମନୋନୟନ କରୁଥିଲା । ବିଷୟଗୁଡ଼ିକୁ ସାଧାରଣତଃ ଲୌକିକ ସାହିତ୍ୟରୁ ମନୋନୀତ କରାଯାଉଥିଲା, ଯଦିଓ ତା'ର ଚର୍ଚ୍ଚା ଭିନ୍ନ ଭିନ୍ନ ଭାବେ ହେଉଥିଲା ।

ଠିକ୍ ସେହିଭଳି କର୍ମକାଣ୍ଡୀ ସାହିତ୍ୟରୁ ଆରମ୍ଭ କରି ଧାର୍ମିକ କବିମାନଙ୍କର ରଚନା ଯାଏଁ ଏବଂ ଲୋକପ୍ରିୟତା ଅର୍ଜନ କରିଥିବା ଗୁରୁଙ୍କ ଉପଦେଶଠାରୁ ଆରମ୍ଭ କରି ଜଟିଳ ଦାର୍ଶନିକ ବ୍ୟାଖ୍ୟାନ ଯାଏଁ – ସବୁଗୁଡ଼ିକୁ ଧାର୍ମିକ ସାହିତ୍ୟରେ ଅନ୍ତର୍ଭୁକ୍ତ କରାଯାଉଥିଲା । ପ୍ରାୟତଃ ସୂତ୍ରସାମଗ୍ରୀ ସବୁ ସମ୍ଭ୍ରାନ୍ତ ବର୍ଗରୁ ମିଳିଥାଏ । ତେଣୁ ସାଧାରଣ ଲୋକଙ୍କର ଧର୍ମ ସମ୍ବନ୍ଧରେ ତହିଁରୁ ବିଶେଷ କିଛି ସୂଚନା ମିଳେ ନାହିଁ । ସାଧାରଣ ବର୍ଗର ଧର୍ମ ସମ୍ବନ୍ଧରେ ଯେଉଁ ସ୍ୱଳ୍ପ ସୂଚନା ଆମେ ପାଉ, ତାହା ସିଧା ସିଧା ସାଧାରଣ ବର୍ଗ ପାଖରୁ ମିଳି ନ ଥାଏ ।

ସମ୍ଭବତଃ, ଭବିଷ୍ୟତ୍‌ରେ ପ୍ରାଚୀନ ଜନବସତିଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଖନନ କରାଗଲେ, ଲୌକିକ ଧର୍ମର ସଂଜ୍ଞା ଓ ସ୍ୱରୂପ ସମ୍ବନ୍ଧରେ ନୂଆ ତଥ୍ୟ ପ୍ରାପ୍ତ ହେବ । ମାତ୍ର ଯେଉଁସବୁ ତଥ୍ୟ ମିଳିଛି, ତାହାରି ଆଧାରରେ କହିହେବ ଯେ ଲୌକିକ ସ୍ତରରେ ଧାର୍ମିକ ଅନୁଷ୍ଠାନଗୁଡ଼ିକରେ ଏକପ୍ରକାର ନିରନ୍ତରତା ରହିଥିଲା । ଉଦାହରଣସ୍ୱରୂପ, ସ୍ଥାନୀୟ ଦେବଦେବୀଙ୍କର ପୂଜାର୍ଚ୍ଚନା କଥା ସବୁଠାରେ ଏବଂ ସବୁ ସମୟରେ ଆଶା ମୁତାବକ ରହିଥିଲା ।

ଆରମ୍ଭରେ ଭାରତରେ ପ୍ରଚଳିତ ଧର୍ମଗୁଡ଼ିକର ଅଧ୍ୟୟନ ଲିଖିତ ସାମଗ୍ରୀ ଆଧାରିତ ଥିଲା । ପରବର୍ତ୍ତୀ ସମୟରେ ଧର୍ମର ଇତିହାସ ଜାଣିବାପାଇଁ ସଂପ୍ରଦାୟଗୁଡ଼ିକୁ ଅନୁଶୀଳନ କରାଗଲା । କର୍ମକାଣ୍ଡ ଏବଂ ବିଶ୍ୱାସ ସମ୍ପର୍କିତ ସୂଚନା ତଥା ନିର୍ଦ୍ଦିଷ୍ଟ ସାମାଜିକ ବର୍ଗର ପୂଜାବିଧିକୁ ମଧ୍ୟ ଅଧ୍ୟୟନରେ ସାମିଲ କରାଗଲା । ବୈଦିକ ସାହିତ୍ୟରୁ ଅସ୍ମିତା ଲାଭ କରିଥିବା ବୈଦିକ ବ୍ରାହ୍ମଣବାଦ ଏକ ଧର୍ମ ବୋଲି ପ୍ରଥମେ ଯୁକ୍ତି ଦର୍ଶାଯାଉଥିଲା । ସମାଜର ପ୍ରଭୁତ୍ୱଧାରୀ ବର୍ଗ ଏହାର ଅନୁଗାମୀ । ସେମାନେ ଯେଉଁ ବିଶ୍ୱାସ ଓ ପରମ୍ପରାକୁ ସମର୍ଥନ କରୁଥିଲେ, ତାକୁ ରଢ଼ିବାଦୀ ବୋଲି ଚିହ୍ନିତ କରାଗଲା । ଏହି ବୈଦିକ ବ୍ରାହ୍ମଣବାଦରୁ ଦୂରରେ ଥିବା ସାମାଜିକ ଆନ୍ଦୋଳନଗୁଡ଼ିକ ମଧ୍ୟ ଅଧ୍ୟୟନର ବିଷୟବସ୍ତୁ ହେଲେ । ବୌଦ୍ଧଧର୍ମ, ଜୈନଧର୍ମ ଓ ବିଭିନ୍ନ ରଢ଼ିବାଦ ବିରୋଧୀ ସଂପ୍ରଦାୟ ଭଳି ଶ୍ରମଣ ସମାଜକୁ ଉକ୍ତ ସାମାଜିକ ଆନ୍ଦୋଳନର ଅଙ୍ଗରୂପେ ଦୃଷ୍ଟାନ୍ତ ଦିଆଯାଇପାରେ । ଆଜିକାଲି ଧର୍ମ ଇତିହାସର କେତେକ ଗବେଷକ ହିନ୍ଦୁ ପରମ୍ପରା ମଧ୍ୟରେ ଅସ୍ମିତା ଲାଭ କରିଥିବା ଆହୁରି ଅନେକ ସଂପ୍ରଦାୟକୁ ପୌରାଣିକ ହିନ୍ଦୁ ବା ପୌରାଣିକ ଧର୍ମର ଆଖ୍ୟା ଦେଉଛନ୍ତି । ଏହି ସଂପ୍ରଦାୟଗୁଡ଼ିକୁ 'ଅଗମ' ଓ 'ପୁରାଣ'ର ରଚନାବଳୀରୁ ଅସ୍ମିତା ପ୍ରାପ୍ତ ହୋଇଥାଏ । ଦ୍ୱିତୀୟତଃ, ସେମାନେ ନାନା ଢଙ୍ଗରେ ହୁଏତ ରଢ଼ିବାଦରୁ ଦୂରରେ ରହିଥିଲେ ଅଥବା ରଢ଼ିବାଦ ସହିତ ଜଡ଼ିତ ଥିଲେ । ସେମାନଙ୍କର ବୈଶିଷ୍ଟ୍ୟ ହେଲା ବୈଦିକ ବ୍ରାହ୍ମଣବାଦର ବିଶ୍ୱାସ ଓ କର୍ମକାଣ୍ଡକୁ ନେଇ ରହିଥିବା ସେମାନଙ୍କର ମତଭେଦ । ଏହି ସଂପ୍ରଦାୟଗୁଡ଼ିକର ଇତିହାସରୁ ଜଣାପଡ଼େ ଯେ ଏକ ସାମାଜିକ ପ୍ରକ୍ରିୟାରେ ସେମାନେ ହୁଏତ ବୈଦିକ ବ୍ରାହ୍ମଣବାଦରୁ ପୃଥକ୍ ରହିଥିଲେ ଅଥବା ବୈଦିକ ବ୍ରାହ୍ମଣବାଦର ଅଙ୍ଗ ହେବାକୁ ପ୍ରୟାସ କରୁଥିଲେ । ସବୁଠାରୁ ବଡ଼ କଥା ଯେ, ଏହି ଉଭୟ ପ୍ରକ୍ରିୟାକୁ ସମାନ ବୋଲି ଐତିହାସିକମାନେ କହୁ ନାହାନ୍ତି ।

ଭାରତର ଧର୍ମରେ ଜାତି ଓ ଧାର୍ମିକ ସଂପ୍ରଦାୟ ମଧ୍ୟରେ ଏକ ନିବିଡ଼ ସମ୍ପର୍କ ଦେଖିବାକୁ ମିଳେ । ଅନେକ ସଂପ୍ରଦାୟର ସ୍ୱତନ୍ତ୍ର ସତ୍ତାକୁ ଅନୁଶୀଳନ କଲା ପରେ ଗବେଷକମାନେ ମତ ଦିଅନ୍ତି ଯେ ହିନ୍ଦୁ ଧର୍ମ ଥିଲା ବହୁବିଧ । ଦ୍ୱିତୀୟ ସହସ୍ରାବ୍ଦୀରେ ଯାଇ ଏକ ଧାର୍ମିକ ସତ୍ତା ଅର୍ଥରେ 'ହିନ୍ଦୁ' ଶବ୍ଦର ବ୍ୟବହାର ଦେଖିବାକୁ ମିଳିଲା । ତା' ପୂର୍ବରୁ ତା' ପାଇଁ ସାଂପ୍ରଦାୟିକ

ସତ୍ତାର ଉଲ୍ଲେଖ ରହୁଥିଲା, କାରଣ ବ୍ୟାପକ ଅର୍ଥରେ ଧର୍ମ ପବିତ୍ର ଆଚରଣକୁ ଏବଂ ତା' ସହିତ ନାନା କିସମର ସାମାଜିକ ରୀତିନୀତିକୁ ବୁଝାଉଥିଲା । ମୁଖ୍ୟ ଧାର୍ମିକ ସ୍ରୋତରୁ ସର୍ବଦା ପୃଥକ୍ ହୋଇ ବା ତାକୁ ଭାଗ ଭାଗ କରି ଏହି ସଂପ୍ରଦାୟଗୁଡ଼ିକ ସର୍ବଦା ଜନ୍ମ ନେଉଥିଲେ ବୋଲି କହିବା ଠିକ୍ ହେବ ନାହିଁ । କେବେ କେବେ ନାନାପ୍ରକାର ବିଶ୍ୱାସ, ପୂଜାବିଧି ଏବଂ ପୌରାଣିକ ଗ୍ରନ୍ଥର ସମାବେଶ ଯୋଗୁଁ ନୂଆ ସଂପ୍ରଦାୟର ଉତ୍ପତ୍ତି ହେଉଥିଲା । ଧାର୍ମିକ ସଂପ୍ରଦାୟକୁ ଜାତି ସାଙ୍ଗରେ ଯୋଡ଼ି ସାମାଜିକ ବର୍ଗକୁ ଅନୁଶୀଳନ କଲେ ଧାର୍ମିକ ଆବେଗ ଓ ଜାତି ଆବେଗ କିଭଳି ପରସ୍ପରକୁ ପ୍ରଭାବିତ ଓ ଆଚ୍ଛାଦିତ କରନ୍ତି, ତାହା ସ୍ପଷ୍ଟ ଦେଖିହୁଏ । ବିଶେଷ କୌତୂହଳର ବିଷୟ ହେଲା ଯେ, ଧର୍ମର କେତେଗୁଡ଼ିଏ ଲୌକିକ ପ୍ରତିଫଳନ ମଧ୍ୟ ସମ୍ଭ୍ରାନ୍ତ ବର୍ଗର ଧାର୍ମିକ ଗତିବିଧିରେ ପ୍ରତିଷ୍ଠା ପାଏ ।

ଏଠାରେ କଳା ଇତିହାସ ସମ୍ପର୍କରେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନକୁ ଉତ୍‌ଥାପନ କରିବାର ଆବଶ୍ୟକତା ରହିଛି । ମନେହୁଏ, କଳା ଇତିହାସକୁ ପୂର୍ଣ୍ଣତଃ ଇତିହାସରେ ଅନ୍ତର୍ଭୁକ୍ତ କରାଯିବା କଥା । କଳା ଇତିହାସ ଆଜିକାଲି ଆଉ ସଂଗ୍ରହାଳୟରେ ନିରୋଳାରେ ଠିଆ ହୋଇଥିବା କେତେକ ମୂର୍ତ୍ତିର ଆଲୋଚନାକୁ ନେଇ ସୀମାବଦ୍ଧ ହୋଇ ରହି ନାହିଁ; ଏହାର ସ୍ୱତନ୍ତ୍ର ନିର୍ମାଣ ଯାଏ ମଧ୍ୟ କଳା ଇତିହାସ ସୀମିତ ନୁହେଁ । ପ୍ରତ୍ୟେକ କଳାର ଇତିହାସ ଏକ ବୃହତ୍ ଇତିହାସର ଅଙ୍ଗସଦୃଶ ଅଟେ । ଉଦାହରଣସ୍ୱରୂପ, ସ୍ଥାପତ୍ୟକୁ ଏକ ଅନୁଷ୍ଠାନର ପ୍ରତିନିଧି ରୂପରେ ଦେଖିବା ଉଚିତ ହେବ । ଉଭୟ ଆନୁଷ୍ଠାନିକ ଆବଶ୍ୟକତା ଏବଂ ସୌନ୍ଦର୍ଯ୍ୟବୋଧ-ଜନିତ ଆବଶ୍ୟକତା ମିଶି ସ୍ଥାପତ୍ୟର ସ୍ୱରୂପ ନିର୍ଦ୍ଧାରଣ କରନ୍ତି । ବୁଦ୍ଧଙ୍କର ଜୀବନ କାହାଣୀକୁ ନେଇ ହେଉ ବା ଦେବଦେବୀଙ୍କର ପୌରାଣିକି ଗୀତିଗାଥା ହେଉ, କଳା ଏକ ସେତୁ ସଦୃଶ କାର୍ଯ୍ୟ କରେ । ଗୋଟାଏ ସ୍ତରରେ ସବୁ କଳା ହେଲା ବାସ୍ତବିକତାର ପ୍ରତୀକ । ମାତ୍ର ଏତିକିରେ କଳାର ଭୂମିକା ଶେଷ ହୋଇଯାଏନା । ତେଣୁ ତା'ର ବିଶଦ ଅର୍ଥକୁ ମଧ୍ୟ ଅଧ୍ୟୟନ କରିବାକୁ ହେବ । ଠିକ୍ ସେହିଭଳି ଆଉ ଏକ ଚିରାଚରିତ ପ୍ରଶ୍ନ ହେଲା : ଦେବୀ ପ୍ରତିମା କ'ଣ କେବଳ ସୌନ୍ଦର୍ଯ୍ୟର ଏକ ପ୍ରତୀକ, ନା ଧର୍ମର ପ୍ରତିନିଧି, ନା ଉଭୟ, ନା ଏସବୁରୁ ଅଧିକ କିଛି ? କଳା ଇତିହାସକାରମାନେ ଆଉ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ପଚାରନ୍ତି : କେତେବେଳେ ଗୋଟାଏ ପ୍ରତିମା ଏକ ବନ୍ଧମୂଳ ସ୍ୱରୂପ ଲାଭ କରେ ? ଏହା ଚିତ୍ରକାର ଓ ସ୍ଥପତିର ପରିଚୟ ପ୍ରଶ୍ନ ସହ ଜଡ଼ିତ । ପ୍ରାରମ୍ଭିକ କାଳର କେତୋଟି ଉଦାହରଣକୁ ବାଦ୍‌ଦେଲେ, ଅନ୍ୟ କଳାକୃତିଗୁଡ଼ିକରେ ଶିଳ୍ପୀର ନାଁ 'ଅଜ୍ଞାତ' ରହୁଥିଲା । ପରବର୍ତ୍ତୀ କାଳରେ ଶିଳ୍ପୀର ନାମକୁ ଉଲ୍ଲେଖ କରାଗଲା, ଯାହାଫଳରେ କି ଶିଳ୍ପୀ ସମ୍ବନ୍ଧରେ କିଛି ଜାଣିହେବ । ମାତ୍ର ଶିଳ୍ପୀ ସମ୍ବନ୍ଧରେ ବିଶେଷ ସୂଚନା ନ ଥିଲା । ବରଂ ତା'ର ପୃଷ୍ଠପୋଷକ ସମ୍ବନ୍ଧରେ ଅଧିକ ସୂଚନା ପ୍ରାପ୍ତ ହେଲା । ସମସାମୟିକ ଯୁଗରେ ସୌନ୍ଦର୍ଯ୍ୟବୋଧଜନିତ ଆମର ଆଗ୍ରହ ଖୁବ୍

ପ୍ରମୁଖତା ପାଏ । ପ୍ରାଚୀନ ଯୁଗରେ ଥିବା ଆଗ୍ରହ ଏଥିରୁ ପୃଥକ୍ ଥିଲା । ତତ୍‌କାଳୀନ ସମୟ ଶିଳ୍ପୀକୁ କେତେ ମାତ୍ରାରେ ପ୍ରେରଣା ଦିଏ ଏବଂ କେତେ ମାତ୍ରାରେ ଶିଳ୍ପୀ କେବଳ ପୃଷ୍ଠପୋଷକର ନିର୍ଦ୍ଦେଶ ପାଳନ କରି କାର୍ଯ୍ୟ ସମ୍ପାଦନ କରେ – ତାକୁ ଐତିହାସିକମାନଙ୍କୁ ବିଶ୍ଳେଷଣ କରିବାକୁ ପଡ଼ିବ । ଏହାର ଅର୍ଥ ହେଲା, ଐତିହାସିକକୁ ସେହି ସମୟର ଦୃଷ୍ଟିରେ କଳାକୁ ଅନୁଶୀଳନ କରିବାକୁ ହୋଇଥାଏ ।

ଅତୀତର କଳାକୃତିର ତାଲିକା, ତା'ର ବର୍ଣ୍ଣନା ଏବଂ ଆଲୋଚନା ହେଲା କଳା ଇତିହାସର ବିଷୟବସ୍ତୁ । ଏହି ପରିପ୍ରେକ୍ଷୀରେ ଭାରତରେ ଇତିହାସ କେମିତି ଗତିଶୀଳ ହୁଏ ଏବଂ ସମାଜରେ କେମିତି ପରିବର୍ତ୍ତନ ଆସେ, ତାକୁ ଉପସ୍ଥାପିତ କରିବାକୁ ମୁଁ ପ୍ରସ୍ତୁତ ପୁସ୍ତକରେ ପ୍ରୟାସ କରିଛି । ଆଜିକାଲି ପ୍ରାଚୀନ ଇତିହାସର ଲେଖନ ଏବଂ ଇତିହାସ ତତ୍ତ୍ୱର ବୌଦ୍ଧିକ ଦିଗକୁ ନେଇ ଐତିହାସିକମାନେ ଅଧିକ ଚିନ୍ତାଶୀଳ । ଚାରି ଦଶନ୍ଧି ପୂର୍ବେ ଯାହା କେବଳ ଅନୁସନ୍ଧାନରେ ସୀମାବଦ୍ଧ ଥିଲା, ଆଜି ତାହା ଐତିହାସିକ ଆଗ୍ରହର ପ୍ରମୁଖ ବିଷୟବସ୍ତୁ ହୋଇଛି । ଫଳରେ, ଇତିହାସତତ୍ତ୍ୱର ମାନଚିତ୍ରରେ ଐତିହାସିକମାନେ ନିଜ ଅବସ୍ଥାନକୁ ନେଇ ଅଧିକ ସଚେତନ ହୋଇଛନ୍ତି । ଆଜି ଆଗ ତୁଳନାରେ ଐତିହାସିକ ଯୁକ୍ତି ଅଧିକ ଟାଣ, ଅଧିକ ଆଶାବାଦୀ । ଇତିହାସ ଗବେଷଣାରେ ବିଶ୍ଳେଷଣର ତତ୍ତ୍ୱକୁ ପ୍ରମୁଖତା ମିଳିଛି । ଯେଉଁ ତଥ୍ୟ ଉପଲବ୍ଧ, ସେଠାରେ ଅତୀତର ବ୍ୟକ୍ତିବିଶେଷ, ସେମାନଙ୍କ କାର୍ଯ୍ୟକଳାପ ଏବଂ ଯେଉଁ ପରିପ୍ରେକ୍ଷୀରେ ସେମାନେ ଇତିହାସର ପାତ୍ର ହେଲେ ବା କରାଗଲେ – ଏସବୁ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ଉପସ୍ଥାପନ କରିବାକୁ ଇତିହାସ ପ୍ରମୁଖତା ଦେଉଛି । ମାତ୍ର କେତୋଟି ବ୍ୟତିକ୍ରମକୁ ବାଦ୍ ଦେଲେ, ପ୍ରାୟତଃ ଐତିହାସିକ ପରିପ୍ରେକ୍ଷୀରେ ମହତ୍ତ୍ୱ ଅତୁଟ ରହିଛି । ଗବେଷଣାର ଗୋଷ୍ଠୀ ପ୍ରତି ସୃଷ୍ଟି ହୋଇଥିବା ଧ୍ୟାନକୁ ଏହା ଚିହ୍ନିତ କରେ । ଇତିହାସରେ ଚରିତ୍ରମାନଙ୍କର ସଂଖ୍ୟା ବୃଦ୍ଧି ହୋଇଛି; ପୂର୍ବରୁ ମହତ୍ତ୍ୱହୀନ ମନେକରାଯାଉଥିବା ଗୋଷ୍ଠୀ ପ୍ରତି ଧ୍ୟାନ ଆକର୍ଷିତ ହୋଇଛି । ଠିକ୍ ସେହିଭଳି ଯେଉଁ ସାମାଜିକ ଗତିବିଧିର କୌଣସି ମହତ୍ତ୍ୱ ନାହିଁ ଏବଂ ତାହା ଉପେକ୍ଷାଯୋଗ୍ୟ ବୋଲି ଆଗରୁ ମନେକରାଯାଉଥିଲା, ଏବେ ତା' ପ୍ରତି ଗବେଷଣା ଅଧିକ ଧ୍ୟାନ ଦେଉଛି । ଇତିହାସ ଗବେଷଣାରେ ଦେଖାଯାଉଥିବା ଏହି ପରିବର୍ତ୍ତନ ପଛରେ ଉଦ୍ଦେଶ୍ୟ ହେଲା ଏକ ଜଟିଳ ସମାଜର ସମନ୍ୱିତ ଅଧ୍ୟୟନ । ଅନ୍ୟ ଶବ୍ଦରେ କହିଲେ, ସମାଜର ବିଭିନ୍ନ ଦିଗ, ସମାଜର ସୃଜନଶୀଳତା ଏବଂ ସଭ୍ୟତାର ବିକାଶ ନିମନ୍ତେ ସମାଜର ସାମଗ୍ରିକ ଯୋଗଦାନକୁ ଅଧ୍ୟୟନ କରିବା ହେଉଛି ଆଜି ଇତିହାସ ଗବେଷଣାର ପ୍ରମୁଖ ବିଷୟବସ୍ତୁ ।

# 1

# ଅତୀତର ଅବଧାରଣା

## ଉପନିବେଶବାଦୀ ପ୍ରସ୍ତୁତି :
## ପ୍ରାଚ୍ୟବାଦୀ ରଚନାବଳୀ

ପ୍ରଥମେ ଉପନିବେଶବାଦୀ ଅବଧାରଣାରୁ ଅତୀତ ଭାରତକୁ ନେଇ ଆଧୁନିକ ରଚନା ଆରମ୍ଭ ହେଲା । ଏହି ରଚନାର ବିଶ୍ଳେଷଣ ପରବର୍ତ୍ତୀ ସମୟରେ ଯୁଗାନ୍ତକାରୀ ପ୍ରତିପାଦିତ ହେଲା । ଅଷ୍ଟାଦଶ ଶତାବ୍ଦୀରୁ ଭାରତ ଭୂଖଣ୍ଡର ବିଭିନ୍ନ ଭାଗରେ ଯେତେବେଳେ ଉପନିବେଶବାଦୀ ଶାସନ ସତ୍ତାସୀନ ହେଲା, ସେତେବେଳେ ଏସବୁ ରଚନା ଠୋସ ସ୍ୱରୂପ ପାଇଲା । ଭାରତରେ ୟୁରୋପର ବିଦ୍ୱାନ୍‌ମାନେ ଆସି ଯେତେବେଳେ ଏଠାକାର ଇତିହାସ ଖୋଜିଲେ, ସେମାନଙ୍କୁ ଯାହା ମିଳିଲା, ତାକୁ ୟୁରୋପୀୟ ମତାନୁସାରେ ଇତିହାସର ଆଖ୍ୟା ଦିଆଯାଇ ନ ପାରେ ବୋଲି ସେମାନଙ୍କର ଅନୁଭବ ହେଲା । ସେଠାକାର ଇତିହାସ ରଚନାକୁ ୟୁରୋପୀୟ ବିଜ୍ଞାବସ୍ଥା (European Enlightenment) ପ୍ରବଳ ଭାବରେ ପ୍ରଭାବିତ କରିଥିଲା । ସେହି ବିଜ୍ଞାବସ୍ଥାର ଚିନ୍ତନ ଆଧାରରେ ସେମାନେ ଭାରତରେ ଇତିହାସ ରଚନା ଖୋଜୁଥିଲେ । ଏକ ବ୍ୟତିକ୍ରମ ଭାବରେ ସେମାନେ କେବଳ କଲ୍‌ହଣ ବିରଚିତ 'ରାଜତରଙ୍ଗିଣୀ'କୁ ଗ୍ରହଣ କଲେ, ଯାହା ଥିଲା ଦ୍ୱାଦଶ ଶତାବ୍ଦୀରେ ରଚିତ କାଶ୍ମୀରର ଇତିହାସ । ପାଶ୍ଚାତ୍ୟର ଏହି ବିଦ୍ୱାନ୍‌ମାନେ ଭାରତକୁ କେବଳ ଏକ ହିନ୍ଦୁ ଏବଂ ସଂସ୍କୃତ ସଭ୍ୟତା ରୂପରେ ଦେଖୁଥିଲେ । ତୁର୍କ, ଆଫଗାନ ଓ ମୋଗଲ ଶାସକମାନଙ୍କର ଦରବାରୀ କବି ଓ ବିବରଣୀକାରମାନେ ପାର୍ସୀ ଭାଷାରେ ଲେଖିଯାଇଥିବା ବିବରଣୀକୁ ସେମାନେ ଅନୁଧାନ କରି ନ ଥିଲେ । ଏଭଳି ବିବରଣୀ ଓ କୃତିକୁ ଉପନିବେଶବାଦୀ ଐତିହାସିକ ଧାରାରେ ଭାରତର ସଭ୍ୟତାରୁ ପୃଥକ୍ ମନେକରାଗଲା, ଯଦିଓ ତହିଁରେ ଥିବା ବିଷୟବସ୍ତୁ ଥିଲା ଭାରତୀୟ ସମାଜ ଓ ରାଜନୀତି ସମ୍ପର୍କିତ; ତହିଁରେ ଆଲୋଚନାର ପରିସରକୁ ଆସିଥିବା

ଲୋକମାନେ ଭାରତୀୟ ସମାଜରେ ସାମିଲ ହେବା ଉଦ୍ଦେଶ୍ୟରେ ଭାରତରେ ବସତି ସ୍ଥାପନ କରିଥିଲେ । ଏହା ବ୍ୟତୀତ ଆହୁରି ଅନେକ ରଚନାବଳୀ ଥିଲା, ଯାହା ସଂସ୍କୃତଠାରୁ ଅଲଗା ଥିଲା ବୋଲି ଉପରୋକ୍ତ ବିଦ୍ୱାନ୍‌ମାନଙ୍କର ଧ୍ୟାନ ଆକର୍ଷଣ କରି ନ ଥିଲା । ଉଦାହରଣସ୍ୱରୂପ, ବିଭିନ୍ନ ଆଞ୍ଚଳିକ ଶାସକଙ୍କ ଦ୍ୱାରା ଶିଳାରଚିତ ଦୀର୍ଘ ଅନୁଶାସନମାନ, ଯାହା ରାଜବଂଶାବଳୀର ବିବରଣୀ ପ୍ରଦାନ କରୁଥିଲା, ଅଥଚ ବିଦ୍ୱାନ୍‌ମାନଙ୍କର ଦୃଷ୍ଟିକୁ ଆସି ନ ଥିଲା ।

ପାଶ୍ଚାତ୍ୟ ବିଦ୍ୱାନ୍‌ମାନେ ହିନ୍ଦୁ ଓ ସଂସ୍କୃତକୁ ଭାରତର ବିଶ୍ୱ ଇତିହାସକୁ ଦାନ ବୋଲି ଗଣନା କରୁଥିଲେ । ସେମାନେ ଭାରତୀୟ ସଭ୍ୟତାର ପ୍ରତିଷ୍ଠାରେ ବୌଦ୍ଧ, ଜୈନ ଏବଂ ଏପରିକି ଇସଲାମ ଆଦି ଧାର୍ମିକ ଓ ଭାଷାଭିତ୍ତିକ ସଂସ୍କୃତିର ଯୋଗଦାନକୁ ବିଶେଷ ମହତ୍ତ୍ୱ ପ୍ରଦାନ କରି ନ ଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ବୌଦ୍ଧଧର୍ମ ଓ ସଂସ୍କୃତିକୁ ଆବଶ୍ୟକୀୟ ସ୍ୱୀକୃତି ପ୍ରାପ୍ତ ହେଲା । ଆରମ୍ଭରେ ଇସଲାମ ପ୍ରତି ୟୁରୋପର ବିରୋଧ ପଛରେ ଐତିହାସିକ କାରଣ ରହିଥିଲା, ଯାହାର ଆରମ୍ଭ ହୋଇଥିଲା ଧର୍ମଯୁଦ୍ଧ (crusade) ସମୟରୁ । ଇସଲାମର ଯେଉଁ ସାମାନ୍ୟ ଭୂମିକାକୁ ବିଦ୍ୱାନ୍‌ମାନେ ସ୍ୱୀକାର କଲେ, ତାହା ଥିଲା ପୂର୍ଣ୍ଣତଃ ନକାରାତ୍ମକ । ଏଭଳି ବିଚାର ପଛରେ କୌଣସି ତଥ୍ୟାତ୍ମକ ଭିତ୍ତି ନ ଥିଲା, କାରଣ ସେତେବେଳଯାଏଁ ସେମାନେ ଭାରତରେ ଇସଲାମର ଇତିହାସକୁ ଅନୁଧ୍ୟାନ ସୁଦ୍ଧା କରି ନ ଥିଲେ ।

ଅତୀତକୁ ଅନ୍ୟ ପ୍ରକାରେ ମଧ୍ୟ ଦେଖାଯାଇପାରେ କିମ୍ବା ଭାରତୀୟମାନେ ନିଜ ଇତିହାସକୁ ଆଉ କେଉଁ ପ୍ରକାରେ ମଧ୍ୟ ଦେଖୁଥାଇପାରନ୍ତି – ଏକଥା ପାଶ୍ଚାତ୍ୟ ବିଦ୍ୱାନ୍‌ମାନେ ବିଚାରକୁ ନେଇ ନ ଥିଲେ । ସେମାନେ ସମସ୍ତ ସମାଜକୁ ଦୁଇ ଭାଗରେ ବିଭକ୍ତ କରିଥିଲେ । ପ୍ରଥମ ଭାଗରେ ଥିଲେ ସେହି ସମାଜମାନେ, ଯେଉଁମାନଙ୍କର କଥିତ ରୂପରେ ଇତିହାସବୋଧ ରହିଥିଲା ଏବଂ ଦ୍ୱିତୀୟ ଭାଗର ସମାଜମାନଙ୍କରେ କୁଆଡ଼େ ଇତିହାସବୋଧର ଅଭାବ ରହିଥିଲା । ସେମାନଙ୍କ ପରିଭାଷାରେ ଭାରତୀୟ ସଭ୍ୟତା ଦ୍ୱିତୀୟ ଭାଗର ଅନ୍ତର୍ଭୁକ୍ତ ଥିଲା । ଅର୍ଥାତ୍ ଏହା ଏକ ଇତିହାସବୋଧ ରହିତ (a-historical) ସମାଜ ଥିଲା । ସେମାନଙ୍କ ମତରେ ଭାରତରେ ଇତିହାସ ନ ଥିଲା ଏବଂ ତା' ପଛରେ କାରଣ ହେଲା ଯେ ଏଠାକାର ଲୋକେ ସମୟର ଗତିକୁ ଚକ୍ରାକାରରେ ଦେଖୁଥିଲେ । ଅର୍ଥାତ୍ ଭାରତରେ 'ସମୟଚକ୍ର'ର ଅବଧାରଣା ରହିଥିଲା । ତେଣୁ ମନୁଷ୍ୟର ସମସ୍ତ କାର୍ଯ୍ୟକଳାପ ଚକ୍ରବଦ୍ଧ ପରିବର୍ତ୍ତନ ହୁଅନ୍ତି ବୋଲି ଲୋକ ବିଶ୍ୱାସ କରୁଥିଲେ । ଏହା ଇତିହାସର ଦୃଷ୍ଟିକୋଣ ସହିତ ଖାପ ଖାଏ ନାହିଁ, କାରଣ ଇତିହାସର ଅବଧାରଣାରେ ପ୍ରତ୍ୟେକ ଘଟଣା ହେଲା ସ୍ୱତନ୍ତ୍ର । ଅର୍ଥାତ୍ ଥରେ ତାହା ସଂଘଟିତ ହେଲା ପରେ ପୁଣିଥରେ ପ୍ରତିଘଟିତ ହୁଏ ନାହିଁ । ସମୟ ଚକ୍ରବଦ୍ଧ ପରିବର୍ତ୍ତନ ନ ହୋଇ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସରଳରେଖାରେ ଗତିଶୀଳ ହୁଏ । ଅର୍ଥାତ୍ 'ସମୟ-

ପ୍ରବାହ' ହୋଇଥାଏ । ବଂଶାବଳୀ, ବିବରଣୀ ଏବଂ ବାର୍ଷିକ କାର୍ଯ୍ୟନିର୍ଘଣ୍ଟ ରୂପରେ ରହିଥିବା ଅତୀତ ଭାରତ ସମ୍ବନ୍ଧୀୟ ନାନା ଧାରଣାକୁ ବିଦ୍ୱାନ୍‌ମାନେ ଅବଶ୍ୟ ରାଜବଂଶାବଳୀ ପ୍ରସ୍ତୁତି ନିମନ୍ତେ ଅଧ୍ୟୟନ କଲେ, ମାତ୍ର ସେଗୁଡ଼ିକର ରୈଖିକ ଦିଗ (linear dimension)କୁ ଆବଶ୍ୟକୀୟ ମହତ୍ତ୍ୱ ପ୍ରଦାନ କଲେ ନାହିଁ । ପ୍ରାଚୀନ ଭାରତରେ ଉଭୟ ରୈଖିକ ସମୟ (linear time) ବା 'ସମୟ ପ୍ରବାହ' ଓ ବୃତ୍ତାକାର ସମୟ ବା 'ସମୟ-ଚକ୍ର' (cyclic time)କୁ ନେଇ ଯେ ଧାରଣା ରହିଥିଲା – ଏହା ବିଦ୍ୱାନ୍‌ମାନେ ବିଚାର କରିପାରିଲେ ନାହିଁ । ଉଭୟ ଧାରଣା ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧ ଏବଂ ସମନ୍ୱୟ ଭାବକୁ ଅନୁଶୀଳନ କରିପାରିଲେ ଦୃଷ୍ଟି ଯେ ପ୍ରକୃତରେ ଅନ୍ତର୍ମୁଖୀ ହୋଇପାରିବ – ଏଭଳି ଏକ ବିଚାର ସେମାନଙ୍କ ମନକୁ ଆସି ନ ଥିଲା ।

ପ୍ରାଚୀନ କାଳରୁ ଆରମ୍ଭ କରି ସମସାମୟିକ କାଳଖଣ୍ଡ ପର୍ଯ୍ୟନ୍ତ ଭାରତରେ ଘଟିଥିବା ଘଟଣାଗୁଡ଼ିକର କ୍ରମିକ ବର୍ଣ୍ଣନା ଆମ ପାଖରେ ନ ଥିଲା । ତେଣୁ ଆରମ୍ଭରେ ୟୁରୋପୀୟମାନେ ଯେଉଁ ଅନୁସନ୍ଧାନ ଆରମ୍ଭ କରିଥିଲେ, ତହିଁରୁ ଇତିହାସର ଆଧୁନିକ ରଚନା ଆରମ୍ଭ ହେଲା । ସେଥିପାଇଁ ଅତୀତ ଭାରତର 'ଆବିଷ୍କାର' ଓ 'ପୁନରାବିଷ୍କାର' କଥା ଉଠିଥିଲା । ସେତେବେଳେ ୟୁରୋପରେ ଇତିହାସ ଏକ ସ୍ୱତନ୍ତ୍ର ବିଷୟ ରୂପେ ବିକାଶ ଲାଭ କରୁଥିଲା ଏବଂ ତାକୁ ନାନା କିସମର ବିଦ୍ୱାନ୍‌ମାନେ ନିଜ ନିଜ ଢଙ୍ଗରେ ଗଢ଼ିବାକୁ ପ୍ରୟାସ କରୁଥିଲେ । ୟୁରୋପୀୟ ବିଜ୍ଞାବସ୍ଥା ଯେଉଁ ବିଚାରକୁ ପୃଷ୍ଟପୋଷକତା ପ୍ରଦାନ କରୁଥିଲା, ସେହି ବିଚାରକୁ ଆଧାର କରି ଅତୀତ ସମ୍ବନ୍ଧୀୟ ଅବବୋଧ ଉନ୍ମେଷ ଲାଭ କଲା ଓ ଇତିହାସ ରଚନା ଠୋସ ସ୍ୱରୂପ ପାଇଲା । ଅନେକ ପ୍ରଭାବୋଦ୍ଦୀପକ ଐତିହାସିକ ରଚନା ମଧ୍ୟ ଏହି ସ୍ୱରୂପ ଦେବାରେ ଉପଯୋଗୀ ସିଦ୍ଧ ହେଲେ । ଏଡ଼୍‌ୱାର୍ଡ଼ ଗିବନଙ୍କ ଲିଖିତ ରୋମ ସାମ୍ରାଜ୍ୟର କାହାଣୀ ଥିଲା ସେହି ଧରଣର ଏକ ପ୍ରଭାବୋଦ୍ଦୀପକ ରଚନା । ଏହିସବୁ ପ୍ରାରମ୍ଭିକ ପୁନଃପ୍ରସ୍ତୁତି ୟୁରୋପୀୟମାନଙ୍କ ମନରେ ଭାରତର ଛବିକୁ ସୁଦୃଢ଼ କରିଦେଲା । ମାତ୍ର ଆଧୁନିକ ସମୟରେ ସେହିସବୁ ରଚନାକୁ ନେଇ ଯେତେବେଳେ ପ୍ରଶ୍ନବାଚୀ ଉଠିଲା, ଉପରୋକ୍ତ ଭାରତୀୟ ଛବି ଧୀରେ ଧୀରେ ଅବଲୁପ୍ତ ହେଲା ।

ପ୍ରଥମେ ଭାରତୀୟ ସଭ୍ୟତା ସମ୍ପର୍କରେ ଦୁଇ କିସମର ୟୁରୋପୀୟ ମତ ରହିଥିଲା । ଗୋଟାଏ ମତ ପ୍ରାଚ୍ୟବାଦୀ (orientalist) ଏବଂ ଆଉ ଗୋଟାଏ ମତ ଉପଯୋଗବାଦୀ (utilitarian) ନାମରେ ପରିଚିତ ଥିଲା । ଇଂରେଜ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନରେ ନିଯୁକ୍ତ ଇଂରେଜ ଅଧିକାରୀମାନେ ଥିଲେ ଉଭୟ ମତର ପ୍ରତିଷ୍ଠାତା । ସେମାନେ ଭାରତରେ କମ୍ପାନୀର ବାଣିଜ୍ୟ କାରବାରରେ ସଂପୃକ୍ତ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଭାରତରେ ରହି କାର୍ଯ୍ୟ କରୁଥିଲେ; ଆଉ କେତେକଙ୍କର ଅଫିସ ଇଂଲଣ୍ଡରେ ରହିଥିଲା । ଇଷ୍ଟ ଇଣ୍ଡିଆ

କମ୍ପାନୀର ପ୍ରଶାସନିକ ଆବଶ୍ୟକତା ଅନୁଯାୟୀ ଅଧିକାରୀମାନଙ୍କୁ ଭାରତୀୟ ରୀତିନୀତି, ଚାଲିଚଳଣି ଆଦି ସମ୍ପର୍କରେ ଜାଣିବାକୁ ପଡୁଥିଲା । ବିଶେଷକରି ଯେତେବେଳେ ଭାରତର କେତେକ ଅଞ୍ଚଳରେ କମ୍ପାନୀ ଶାସନର ପ୍ରଚଳନ ହେଲା ଏବଂ ଭାରତ ପରିଶେଷରେ ଇଂଲଣ୍ଡର ଏକ ଉପନିବେଶରେ ପରିଣତ ହେଲା, ଭାରତ ସମ୍ପର୍କରେ ଜାଣିବା ଅତ୍ୟାବଶ୍ୟକ ହୋଇପଡ଼ିଲା । ଫଳରେ ଅନେକ ଅଫିସରଙ୍କୁ ସଂସ୍କୃତ, ପାର୍ସୀ, ବଙ୍ଗଳା, ତାମିଲ ଏବଂ ଅନ୍ୟ ଭାରତୀୟ ଭାଷାଗୁଡ଼ିକୁ ଅଧ୍ୟୟନ କରିବାକୁ ପଡ଼ିଲା । ସେମାନେ ଇଂରାଜୀରେ ଉକ୍ତ ଭାଷାଗୁଡ଼ିକର ବ୍ୟାକରଣ ଲେଖିଲେ, ଯାହା ଭାରତ ବିଦ୍ୟାଧ୍ୟୟନ ପାଇଁ ଏକ ଅତି ଆବଶ୍ୟକ ମାଧ୍ୟମ ହେଲା । 'ଧର୍ମଶାସ୍ତ୍ର' ପରି ପୁସ୍ତକଗୁଡ଼ିକୁ ବିଧିସଂହିତା ଆଖ୍ୟା ଦେଇ ଅନୁବାଦ କରାଗଲା । ପ୍ରକୃତରେ ଏହି ପୁସ୍ତକଗୁଡ଼ିକ ବିଧିସଂହିତା (codes of law) ନ ଥିଲା । ସାମାଜିକ ରୀତିନୀତି, ଚାଲିଚଳଣି ଏବଂ ପୂଜାପାର୍ବଣକୁ ନେଇ ରହିଥିବା ପରମ୍ପରାମାନଙ୍କର ଏଥିରେ କେବଳ ଉଲ୍ଲେଖ ରହିଥିଲା ।

ଭାରତ ବିଦ୍ୟାକୁ ପୃଷ୍ଠପୋଷକତା ମିଳିବା ପଛରେ କାରଣ ହେଲା ଯେ, ଉପନିବେଶ ସମ୍ବନ୍ଧରେ ଜ୍ଞାନ ବୃଦ୍ଧି ହେଲେ ଉପନିବେଶ ଉପରେ ସେମାନଙ୍କର (ଇଂରେଜମାନଙ୍କର) ଅଧିକ ନିୟନ୍ତ୍ରଣ ରହିବ । ଫଳରେ ଉପନିବେଶବାଦୀ ଯେଉଁ କର୍ତ୍ତୃତ୍ୱ ଜାହିର କରୁଥିଲେ, ତାକୁ ସୁଦୃଢ଼ ଭିତ୍ତି ମିଳିପାରିବ । ଏହାକୁ 'ସାମ୍ରାଜ୍ୟର ଆବଶ୍ୟକ ଉପକରଣ' ବୋଲି କୁହାଯାଉଥିଲା । ତେଣୁ ଏହି ଜ୍ଞାନର ଆହରଣ ସାଙ୍ଗକୁ ପୁନଃସ୍ଥାପନ ମଧ୍ୟ ଜରୁରି ଥିଲା । ଜ୍ଞାନର ଅନୁସନ୍ଧାନ ପ୍ରକ୍ରିୟାରେ ଯାହା ମିଳିଲା, ତାକୁ ହିନ୍ଦୁଧର୍ମ ବୋଲି ନାମିତ କରାଗଲା । ହିନ୍ଦୁଧର୍ମ ସହିତ ତା'ର ବିଶ୍ୱାସ, ରୀତିନୀତି ଓ କର୍ମକାଣ୍ଡ ପ୍ରତି ବିଦ୍ୱାନ୍‌ମାନଙ୍କର ଧ୍ୟାନ ଆକର୍ଷିତ ହେଲା । ବିଦ୍ୱାନ୍‌ମାନେ ଅନୁଭବ କଲେ ଯେ ହିନ୍ଦୁଧର୍ମ ସେମାନଙ୍କ ଖ୍ରୀଷ୍ଟଧର୍ମଠାରୁ ସମ୍ପୂର୍ଣ୍ଣ ଅଲଗା; ହିନ୍ଦୁଧର୍ମ ଏକେଶ୍ୱରବାଦୀ ନୁହେଁ; ଏହାର କେହି ପ୍ରତିଷ୍ଠାତା ନାହାନ୍ତି; ଏହାର ଧର୍ମଗ୍ରନ୍ଥ ଗୋଟାକରେ ସୀମିତ ନୁହେଁ; ଏଥିରେ ରୁଢ଼ି ଏବଂ ଧାର୍ମିକ ଆଚରଣ ମଧ୍ୟ ଏକାଧିକ । ଏସବୁ କଥା ୟୁରୋପୀୟ ବିଦ୍ୱାନ୍‌ମାନଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଚକିତ କଲା । ସବୁଠାରୁ ବଡ଼ କଥା, ହିନ୍ଦୁଧର୍ମ ଜାତି ପ୍ରଶ୍ନ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ବିଦ୍ୱାନ୍‌ମାନେ ହିନ୍ଦୁଧର୍ମକୁ ସେମାନେ ପରିଚିତ ଥିବା ଧର୍ମଗୁଡ଼ିକର ନକ୍ସାରେ ପକାଇ ଅଧ୍ୟୟନ କରିବାକୁ ପ୍ରୟାସ କଲେ, ଯଦ୍ୱାରା କି ଅନ୍ୟମାନେ ସହଜରେ ଏହାକୁ ବୁଝିପାରିବେ । କେତେକ ବିଦ୍ୱାନ୍‌ଙ୍କ ମତରେ, ହିନ୍ଦୁଧର୍ମକୁ ଆଜି ଯେଉଁ ଢଙ୍ଗରେ ସଂରଚନା ତଥା ଅନୁଶୀଳନ କରାଯାଉଛି, ତାହା ପୂର୍ବ ତୁଳନାରେ ସମ୍ପୂର୍ଣ୍ଣ ଭିନ୍ନ । ଏମିତି ହେବା ପଛରେ ପ୍ରମୁଖ କାରଣ ହେଲା ଭିନ୍ନ ଭିନ୍ନ ରୂପରେ ହିନ୍ଦୁଧର୍ମର ପୁନଃସଂରଚନା । ଭାରତରେ ନାନା କିସମର ଧର୍ମର ପ୍ରଚଳନ ରହିଛି । ଏକାଧିକ ଧର୍ମକୁ ଏଠାରେ ରାଜପୃଷ୍ଠପୋଷକତା ମିଳିଛି । ୟୁରୋପୀୟ ଅନୁଭବ ତୁଳନାରେ ଏହା ଥିଲା ଏକ

ସମ୍ପୂର୍ଣ୍ଣ ଭିନ୍ନ ସ୍ଥିତି । ୟୁରୋପରେ ଖ୍ରୀଷ୍ଟଧର୍ମ ହେଲା ଲୋକଙ୍କର ଗୋଟାଏ ମାତ୍ର ଧର୍ମ । ପ୍ରତିବାଦୀ ଧର୍ମ ସଂସ୍କାର ଆନ୍ଦୋଳନ (Protestant Reformation Movement) ପରେ ଏହା ଦୁଇ ଭାଗରେ ବିଭାଜିତ ହେଲା । ଗୋଟାଏ କେଥୋଲିକ୍ ଧର୍ମ, ଅନ୍ୟଟି ପ୍ରୋଟେଷ୍ଟାଣ୍ଟ ଧର୍ମ । ଉଭୟ ଧର୍ମ ମଧ୍ୟରୁ କୌଣସି ଗୋଟାକୁ ସେଠାରେ ରାଜପୃଷ୍ଟପୋଷକତା ପ୍ରଦାନ କରାଯାଉଥିଲା । ଏହାର ବିପରୀତ, ଭାରତରେ ଏକାଧିକ ଧର୍ମକୁ ରାଜପୃଷ୍ଟପୋଷକତା ଦିଆଯାଉଥିଲା । ଏହା ବିଦ୍ୱାନ୍‌ମାନଙ୍କୁ ହିନ୍ଦୁଧର୍ମର ବିସ୍ତୃତ ଅଧ୍ୟୟନ କରିବାକୁ ଆଗ୍ରହୀ କଲା ।

ଏହିସବୁ ମନନ-ଚିନ୍ତନ ଯୋଗୁଁ ଯାହା ଦେଖିବାକୁ ମିଳିଲା, ତାହା ପ୍ରାଚ୍ୟବିଦ୍ୟା (Indology) ନାମରେ ପରିଚିତି ପାଇଲା । ପ୍ରାରମ୍ଭିକ ପର୍ଯ୍ୟାୟରେ ଯେଉଁ ପ୍ରଖ୍ୟାତ ଇଂରେଜ ବିଦ୍ୱାନ୍‌ମାନେ ଏଥିରେ ସାମିଲ ଥିଲେ, ତନ୍ମଧ୍ୟରେ ୱିଲିଅମ୍ ଜୋନ୍‌ସ, ହେନରି କୋନବୃକ, ନାଥାନିଏଲ ହଲହେଡ୍, ଚାର୍ଲ୍‌ସ ୱିଲ୍‌କିନ୍ସ ଏବଂ ହୋରାସ ହିମାନ ୱିଲସନ ଥିଲେ ଅନ୍ୟତମ । ସେମାନଙ୍କର କେତେକ ପ୍ରାରମ୍ଭିକ ଗବେଷଣା ଏବଂ ଦିଗନ୍ତକାରୀ ନିବନ୍ଧ 'ଏସିଆଟିକ ରିସାର୍ଚ୍ଚସ୍' (Asiatic Researches) ନାମକ ପିରିଓଡ଼ିକାଲରେ ପ୍ରକାଶିତ ହୋଇଥିଲା । 1784 ରେ ସ୍ଥାପିତ ଏସିଆଟିକ ସୋସାଇଟି ଅଫ୍ ବେଙ୍ଗଲ (Asiatic Society of Bengal)ର ଆନୁକୂଲ୍ୟରେ ଏହି ପିରିଓଡ଼ିକାଲ ପ୍ରକାଶିତ ହେଉଥିଲା । କଲିକତାରେ ଏସିଆଟିକ ସୋସାଇଟିର ବୈଠକମାନଙ୍କରେ ଭାଷାର ଆରମ୍ଭ ଓ ସଂରଚନାକୁ ନେଇ ତଥା ଧର୍ମ ଓ ପରମ୍ପରା ସମ୍ପର୍କରେ ଅନେକ ଆଲୋଚନା ହେଉଥିଲା । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଅନେକ ବର୍ଷ ଧରି ଭାରତୀୟମାନଙ୍କୁ ସୋସାଇଟିର ସଭ୍ୟ କରାଯାଉ ନ ଥିଲା, ଯଦିଓ ତହିଁରେ ଭାଗ ନେଉଥିବା ବିଦ୍ୱାନ୍‌ମାନଙ୍କୁ ତାଲିମ ଦେଉଥିଲେ ଭାରତୀୟମାନେ ।

ପୂର୍ବରୁ ଭାରତ ଭ୍ରମଣରେ ଆସୁଥିବା ୟୁରୋପର ପରିବ୍ରାଜକ ଏବଂ ମିସନାରୀମାନେ ସଂସ୍କୃତ ଏବଂ କେତେକ ୟୁରୋପୀୟ ଭାଷା ମଧ୍ୟରେ ସାମଞ୍ଜସ୍ୟ ରହିଛି ବୋଲି କହିଥିଲେ । ଏବେ ୱିଲିଅମ୍ ଜୋନ୍‌ସ ସେହି ସମ୍ବନ୍ଧକୁ ଏକ ବ୍ୟବସ୍ଥିତ ଢଙ୍ଗରେ ରଖିଲେ । ସେ ଏକଥା ମଧ୍ୟ ଯୁକ୍ତି କଲେ ଯେ ଏସବୁ ଧର୍ମ ହେଲେ ଏକମୂଳ । ଅର୍ଥାତ୍ ସେମାନଙ୍କର ଗୋଟିଏ ମୂଳରୁ ସୃଷ୍ଟି । ବ୍ୟାକରଣ ଓ ସଂସ୍କୃତର ଅନୁଶୀଳନ ଯୋଗୁଁ ସଂସ୍କୃତ, ଗ୍ରୀକ୍ ଓ ଲାଟିନ୍ ମଧ୍ୟରେ ରହିଥିବା ସମ୍ବନ୍ଧ କଥା ସୁସ୍ପଷ୍ଟ ହେଲା । ଏହା ତୁଳନାତ୍ମକ ଭାଷାବିଜ୍ଞାନ ନାମରେ ଏକ ନୂଆ ବିଷୟକୁ ଜନ୍ମ ଦେଲା । ବାଇବେଲର କାଳକ୍ରମ ସହିତ ଯୋଡ଼ି ପୁରାଣ ଆଦି ପ୍ରାଚୀନ ଗ୍ରନ୍ଥଗୁଡ଼ିକର କାଳକ୍ରମ ନିର୍ଦ୍ଧାରଣ କରିବାକୁ କେତେକ ବିଦ୍ୱାନ୍ ଉଦ୍ୟମ କଲେ । ମାତ୍ର ଏହି ଉଦ୍ୟମ ସଫଳ ହେଲା ନାହିଁ । ଆଦିପିତା ହେଲେ ନୋଆ । ତାଙ୍କର ଜଣେ ସନ୍ତାନ ଜନବସତି ସ୍ଥାପନ କରିବାକୁ ଭାରତ ଆସିଥିଲେ ବୋଲି କେତେକ ବିଦ୍ୱାନ୍ ମତପ୍ରକାଶ

କଲେ । ମାତ୍ର ଉକ୍ତ ମତକୁ ସିଦ୍ଧ କରିବାପାଇଁ ତଥ୍ୟର ଅଭାବ ପରିଲକ୍ଷିତ ହେଲା । ଫଳରେ ଏହି ମତକୁ ବଳ ମିଳିଲା ନାହିଁ । ଆରମ୍ଭରେ ପ୍ରାଚ୍ୟବିଦ୍‌ମାନେ ଗ୍ରୀକ୍-ରୋମାନ୍ ଓ ଭାରତର ଦେବଦେବୀଙ୍କ ମଧ୍ୟରେ ତୁଳନାତ୍ମକ ଅଧ୍ୟୟନମାନ କଲେ । ଏହାକୁ ଧର୍ମର ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ପ୍ରାରମ୍ଭିକ ପ୍ରୟାସ କୁହାଯିବ । ଭାରତର କିମ୍ବଦନ୍ତୀଗୁଡ଼ିକ ମଧ୍ୟ ୟୁରୋପର ରୋମାଣ୍ଟିକ୍ କଳ୍ପନାକୁ ସତେଜ କଲା ।

ପ୍ରାଚ୍ୟ ବିଦ୍ୟାର ଅଧ୍ୟୟନଗୁଡ଼ିକରେ ଭାରତର ଅତୀତକୁ ନେଇ ଯେଉଁସବୁ ବ୍ୟାଖ୍ୟା ଦିଆଗଲା ତାହା ସ୍ୱାଭାବିକ ଭାବରେ ଔପନିବେଶିକ ଚିନ୍ତା ଓ ସ୍ୱାର୍ଥ ଦ୍ୱାରା ପ୍ରଭାବିତ ଥିଲା । ଏହାବ୍ୟତୀତ ଇତିହାସ, ସଭ୍ୟତା ଓ ପ୍ରାଚ୍ୟକୁ ନେଇ ୟୁରୋପରେ ଯେଉଁ ବିଚାରର ପ୍ରଚଳନ ଥିଲା, ତା' ଦ୍ୱାରା ମଧ୍ୟ ଏହା ପ୍ରଭାବିତ ଥିଲା । ପ୍ରାଚ୍ୟବାଦୀ ବିଦ୍ୱାନ୍‌ମାନେ ସୀମିତସଂଖ୍ୟକ ଭାରତୀୟ ବିଦ୍ୱାନ୍‌ମାନଙ୍କ ସହିତ ମିଶି ଭାଷା ଓ ପ୍ରାଚୀନ ପୋଥିପୁରାଣଗୁଡ଼ିକୁ ଅଧ୍ୟୟନ କରୁଥିଲେ । ଯେଉଁମାନେ ସେମାନଙ୍କୁ ତାଲିମ ଦେଉଥିଲେ, ସେମାନଙ୍କ ଦୃଷ୍ଟିକୋଣକୁ ମଧ୍ୟ ବୁଝିବାକୁ ସେମାନେ ପ୍ରୟାସ କରୁ ନ ଥିଲେ । ଫଳରେ ପାରମ୍ପରିକ ଦୃଷ୍ଟିରେ ଭାରତର ଅତୀତକୁ ଯେମିତି ଦେଖାଯାଉଥିଲା, ତା' ସହିତ ଏମାନଙ୍କ ଅଧ୍ୟୟନ ଖାପ ଖାଇଲା ନାହିଁ । ଅଧ୍ୟୟନରେ ୟୁରୋପୀୟ ପୂର୍ବାଗ୍ରହ ଯେଉଁଭଳି ଭାବେ କ୍ରମଶଃ ଛାପ ଛାଡୁଥିଲା, ତା'ର ପ୍ରଭାବ ଭାରତୀୟମାନଙ୍କ ଉପରେ ପଡ଼ିଲା । ସେହି ଅନୁସାରେ ଭାରତୀୟମାନେ ନିଜ ସଂସ୍କୃତିର ମୂଲ୍ୟାଙ୍କନ କରିବାକୁ ଆରମ୍ଭ କଲେ । ଭାରତୀୟମାନଙ୍କର ନିଜର ଧାରଣାକୁ ମଧ୍ୟ ଏହା ପ୍ରଭାବିତ କଲା ।

ୟୁରୋପର ରୋମାଣ୍ଟିକ୍ ମତବାଦ ଯେଉଁ ଦିବାସ୍ୱପ୍ନ ଓ ସ୍ୱାଧୀନତାର କଳ୍ପନା କରୁଥିଲା, ତାକୁ ପ୍ରାଚ୍ୟବାଦ ଯେମିତି ଇନ୍ଧନ ଯୋଗାଇଲା । ବିଶେଷକରି ରୋମାଣ୍ଟିକ୍ ମତବାଦ ନବ୍ୟ-କ୍ଲାସିସିଜ୍‌ମକୁ ବିରୋଧ କରିବାପାଇଁ ଏଣିକି ପ୍ରୋତ୍ସାହନ ପାଇଲା; ଏସିଆର ସଂସ୍କୃତିକୁ ଏକ ନୂତନ ରୋମାଣ୍ଟିକ୍ କଳ୍ପରୂପର ବାର୍ତ୍ତାବହ ଭାବରେ ଦେଖାଗଲା । ଲୋକଙ୍କୁ ଲାଗିଲା, ପ୍ରାଚ୍ୟ ସହିତ ୟୁରୋପର ପରିଚିତି ବୃଦ୍ଧି ପାଇଲେ ଦ୍ୱିତୀୟ ନବଜାଗରଣ ସୃଷ୍ଟି ହେବ । ଲୋକଙ୍କର ଆଶା ଯେ, ଏହା ପୂର୍ବର ଗ୍ରୀକ୍ ନବଜାଗରଣଠାରୁ ପୃଥକ୍ ହେବ । ପୂର୍ବର ବିଜ୍ଞାବସ୍ଥା (Enlightenment) ଯୋଗୁଁ ଶୃଙ୍ଖଳା ଓ ହେତୁବାଦିତାର ୟୁରୋପୀୟ ସାହିତ୍ୟ ଓ ବିଚାର ଉପରେ ଯେଉଁ କର୍ତ୍ତୃତ୍ୱ ବୃଦ୍ଧି ପାଇଛି, ତାହା ପ୍ରାଚ୍ୟବାଦୀ ନବଜାଗରଣ (Oriental Renaissance)ର ଆଗମନ ଉତ୍ତାରୁ ମହତ୍ତ୍ୱ ହରାଇବ । ଏହି କାରଣରୁ ଜର୍ମାନ ଲେଖକ ହର୍ଡ଼ର (Herder), ୱିଲହେମ୍ ସ୍କ୍ଲେଜେଲ (Wilhelm Schlegel) ଏବଂ ଅଗଷ୍ଟେ ସ୍କ୍ଲେଜେଲ (Auguste Schlegel) ଏବଂ ନୋଭାଲିସ (Novalis) ଆଦିଙ୍କ ଭାରତ ସମ୍ପର୍କିତ ରଚନା ପାଇଁ ୟୁରୋପରେ ଖୁବ୍ ଆଗ୍ରହ ସୃଷ୍ଟି ହେଲା । ଅନ୍ୟ କେତେକ ଲେଖକ, ଯଥା- ଇଂରାଜୀର

ପ୍ରଖ୍ୟାତ କବି ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ ଏବଂ କୋଲେରିଜ ଶିଳ୍ପୋଦ୍ୟୋଗଜନିତ ସାମାଜିକ ପରିବର୍ତ୍ତନକୁ ନେଇ ସଂଶୟଗ୍ରସ୍ତ ରହୁଥିଲେ । ତେଣୁ ସେମାନେ ପ୍ରକୃତି ଏବଂ ପ୍ରାଚ୍ୟକୁ ନେଇ ଆରମ୍ଭ ହୋଇଥିବା ଦିବାସ୍ୱପ୍ନକୁ ବିକଳ୍ପ ବୋଲି ମନେ କଲେ ।

ମାତ୍ର ଊନବିଂଶ ଶତାବ୍ଦୀରେ ଏହି ଆଗ୍ରହ କ୍ରମଶଃ ହ୍ରାସ ପାଇଲା, କାରଣ ସେତେବେଳକୁ ୟୁରୋପୀୟ ସଭ୍ୟତା ସତତ ମହତ୍ତର ବୋଲି ଲୋକଙ୍କ ମନରେ ଧାରଣା ସୃଷ୍ଟି ହୋଇସାରିଥିଲା । ପ୍ରାଚ୍ୟ ସଭ୍ୟତା ଏକଦା ମହାନ୍ ଥିଲା, ମାତ୍ର ବର୍ତ୍ତମାନ ଅଧୋଗତିର ଶିକାର ହୋଇଛି ବୋଲି ଯୁକ୍ତି ଦର୍ଶାଗଲା । ଭାରତର ଅତୀତକୁ ୟୁରୋପର ଚିନ୍ତନର ଏକ ନିର୍ଦ୍ଦିଷ୍ଟ ଖୋପରେ ରଖାଗଲା ଏବଂ ସେହି ଅନୁସାରେ ପ୍ରାଚ୍ୟବାଦର ବିଭିନ୍ନ ପର୍ଯ୍ୟାୟକୁ ମେଳ କରାଗଲା । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଭାରତରେ ବିକଶିତ ହେଉଥିବା ମଧ୍ୟବର୍ଗ ଯେତେବେଳେ ସ୍ୱ-ଅତୀତକୁ ଅବଲୋକନ କରିବାକୁ ପ୍ରସ୍ତୁତ ହେଲା, ତାକୁ ମଧ୍ୟ ଏହି ଚିନ୍ତନ ଯଥେଷ୍ଟ ମାତ୍ରାରେ ପ୍ରଭାବିତ କଲା । ଭାରତ ସଂସ୍କୃତିରେ ସମତ୍ୱ (uniformity) ରହିଛି, ବିବିଧତା ନାହିଁ ବୋଲି ଦର୍ଶାଗଲା । ଯେଉଁ ପୋଥିମାନଙ୍କରେ ସମତ୍ୱ କଥା କୁହାଯାଇଛି, ତାକୁ ବିଦ୍ୱାନ୍‌ମାନେ ପ୍ରମୁଖତା ଦେଲେ । ସଂସ୍କୃତର ଅଳ୍ପ କିଛି ମନୋନୀତ କାବ୍ୟକବିତାକୁ ଆଧାର କରି ସେମାନେ ଭାରତର ତଥାକଥିତ 'ଆବିଷ୍କାର' କଲେ । ଏହି ଧରଣର 'ଭାରତ ଆବିଷ୍କାରକାରୀ' ବିଶ୍ଳେଷଣ ଭାରତୀୟ ସଂସ୍କୃତିର ଅଣ-ଐତିହାସିକ ଦିଗକୁ ମହତ୍ତ୍ୱ ଦେଉଥିଲା । ଉଦାହରଣସ୍ୱରୂପ, ଉପରୋକ୍ତ ଅଣ-ଐତିହାସିକ ବ୍ୟାଖ୍ୟା ଅନୁଯାୟୀ ବିଗତ 3000 ବର୍ଷ ଧରି ଭାରତର ସମାଜ ଓ ଧର୍ମ ଜଡ଼, ଅପରିବର୍ତ୍ତିତ ହୋଇ ରହିଛି ! ଭାରତୀୟ ଜୀବନ ଆଧିଭୌତିକ ଉପାଦାନ ଏବଂ ଧର୍ମର ସୂକ୍ଷ୍ମତମ ଦିଗ ସହିତ ଏତେ ମାତ୍ରାରେ ଓତପ୍ରୋତ ହୋଇ ରହେ ଯେ ଭୌତିକ ବିକାଶ ପ୍ରତି ତା'ର କୌଣସି ଆଗ୍ରହ ନ ଥାଏ !

ଜର୍ମାନୀରେ ବିକଶିତ ହୋଇଥିବା ରୋମାଣ୍ଟିକ୍‌ବାଦ ଭାରତର ଏଭଳି ଛବିକୁ ବଳିଷ୍ଠ ହେବାରେ ସହଯୋଗ କଲା । ଫଳରେ ଭାରତ ଅନେକ ୟୁରୋପୀୟମାନଙ୍କ ପାଇଁ ରହସ୍ୟ ଭୂମି ହୋଇ ରହିଲା । ଭାରତରେ ଘଟୁଥିବା ସାଧାରଣ କ୍ରିୟାକଳାପକୁ ମଧ୍ୟ ସେମାନେ ଏକ ଜଟିଳ ପ୍ରତୀକାତ୍ମକ ଢଙ୍ଗରେ ଦେଖିବାକୁ ଲାଗିଲେ । ଏଥିରୁ ଆରମ୍ଭ ହେଲା ଆଧ୍ୟାତ୍ମିକ ପ୍ରାଚ୍ୟର ଧାରଣା । ନିଜ ସମାଜରେ ଘଟୁଥିବା ପରିବର୍ତ୍ତନର ନକ୍ସାକୁ ଯେଉଁ ୟୁରୋପୀୟ ବୁଦ୍ଧିଜୀବୀମାନେ ସହଜରେ ଗ୍ରହଣ କରିପାରୁ ନ ଥିଲେ, ସେମାନଙ୍କ ପାଇଁ ମଧ୍ୟ ଭାରତ ଗବେଷଣାର ଏକ ପ୍ରମୁଖ ବିଷୟ ହେଲା । ଭାରତ ଏବଂ ୟୁରୋପର ମୂଲ୍ୟବୋଧ ମଧ୍ୟରେ ଏକ ଖାସ ବିରୋଧାଭାସ ଆବିଷ୍କାର କରାଗଲା । ଭାରତୀୟ ମୂଲ୍ୟବୋଧକୁ 'ଆଧ୍ୟାତ୍ମିକ' ଏବଂ ୟୁରୋପୀୟ ମୂଲ୍ୟବୋଧକୁ 'ଭୌତିକବାଦୀ' ବୋଲି ଚିହ୍ନିତ କରାଗଲା । ଭାରତର ସାମାଜିକ ବାସ୍ତବିକତା ଆଧାରରେ ତାକୁ ପରଖିବା ଲାଗି କୌଣସି ଉଦ୍ୟମ ଦେଖିବାକୁ

ମିଳିଲା ନାହିଁ । ଗତ ଶହେ ବର୍ଷ ମଧ୍ୟରେ ଏକ ଭାରତୀୟ ବୁଦ୍ଧିଜୀବୀ ଗୋଷ୍ଠୀ ଏହି କଥାକୁ ଅଧିକ ଦୃଢ଼ତାର ସହିତ ଉପସ୍ଥାପନ କଲେ । ଆମେ 'ଆଧ୍ୟାତ୍ମିକ' ଏବଂ ସେମାନେ 'ଭୌତିକବାଦୀ' ବୋଲି କହି ଭାରତୀୟ ବୌଦ୍ଧିକବର୍ଗ ଏକ ରକମର ସାନ୍ତ୍ୱନା ପାଇବାକୁ ପ୍ରୟାସ କରୁଥିଲେ । ୟୁରୋପର ଟେକ୍ନୋଲୋଜିଜନିତ 'ଉଚ୍ଚତା'କୁ ଛୁଇଁ ନ ପାରିବାର ଅସମର୍ଥତା ଯୋଗୁଁ ଯେମିତି ଭାରତକୁ ସାନ୍ତ୍ୱନାର ଆବଶ୍ୟକତା ରହିଥିଲା । ସେମାନଙ୍କ ବିଚାରରେ ଏହି 'ଉଚ୍ଚତା' ଯୋଗୁଁ ୟୁରୋପ ଆଜି ଏସିଆ ଓ ବିଶ୍ୱର ଅନ୍ୟାନ୍ୟ କ୍ଷେତ୍ରକୁ ନିଜ ଉପନିବେଶରେ ପରିଣତ କରିପାରିଛି । ଯେତେବେଳେ ଉପନିବେଶବାଦ ବିରୋଧୀ ରାଷ୍ଟ୍ରବାଦୀ କାଳାଂଶର ଚରମ ଅବସ୍ଥା ସେତେବେଳେ ଭାରତ ବ୍ରିଟେନର ଉପନିବେଶ ହେବା ଯେମିତି ଏହି ବିଚାର ପାଇଁ ଏକ ଉପଶମ ଭଳି କାର୍ଯ୍ୟ କଲା ।

## ଉପନିବେଶବାଦୀ ବ୍ୟାଖ୍ୟା : ଏକ ଉପଯୋଗବାଦୀ ସମୀକ୍ଷା

ଭାରତ ସମ୍ବନ୍ଧରେ ପ୍ରଚଳିତ ଦ୍ୱିତୀୟ ମତଟି ପ୍ରାକ୍‌କାଳୀନ ଭାରତୀୟ ସଂସ୍କୃତିର ସମାଲୋଚନା କରୁଥିଲା । ଏହାର ମୂଳାଧାର ଥିଲା ସେତେବେଳେ ବ୍ରିଟେନରେ ପ୍ରଚଳିତ ଥିବା ଉପଯୋଗବାଦୀ, ବିଧିବାଦୀ ଦର୍ଶନ (legalistic philosophy) । ବିଶେଷକରି ଯେଉଁ ବିଦ୍ୱାନ୍‌ମାନେ ବ୍ରିଟେନ୍‌ରେ ରହି ଭାରତ ସମ୍ବନ୍ଧରେ ପଢ଼ାଲେଖା କରୁଥିଲେ, ସେମାନେ ଥିଲେ ଏହି ବିଚାରଧାରାର ମୁଖ୍ୟ ପୃଷ୍ଠପୋଷକ । ଜେମ୍‌ସ ମିଲ୍ ଏବଂ ଥମାସ ମେକଲେଙ୍କ ମତାଦର୍ଶରେ ଏହା ଖୁବ୍ ଭଲଭାବେ ପ୍ରତିନିଧିତ୍ୱ ପାଇଛି । ଅନ୍ୟ ଏକ କାରଣରୁ ଇଭେନଜେଲିକଲ ଖ୍ରୀଷ୍ଟିଆନ ମିଶନାରୀମାନେ ମଧ୍ୟ ଥିଲେ ଏହି ବିଚାରର ବଡ଼ ପୃଷ୍ଠପୋଷକ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜେମ୍‌ସ ମିଲ୍ ତାଙ୍କ 'ହିଷ୍ଟ୍ରି ଅଫ୍ ବ୍ରିଟିଶ ଇଣ୍ଡିଆ'ରେ (ବ୍ରିଟିଶ ଭାରତର ଇତିହାସ) ପ୍ରଥମକରି ଭାରତ ଇତିହାସକୁ ବିଭିନ୍ନ ଯୁଗରେ ବିଭାଜିତ କଲେ । ଅତୀତ ଭାରତର କାଳଖଣ୍ଡକୁ ସେ ତିନିଖଣ୍ଡରେ ବିଭକ୍ତ କରିଥିଲେ : ହିନ୍ଦୁ ସଭ୍ୟତା, ମୁସଲିମ ସଭ୍ୟତା ଏବଂ ବ୍ରିଟିଶ ଭାରତ । ଏହି କାଳ ବିଭାଜନକୁ ଆମ ଚେତନାରେ ଯେମିତି ଖଞ୍ଜି ଦିଆଗଲା । ଆଜି ମଧ୍ୟ ଏହି କାଳ ବିଭାଜନ ଭାରତ ଅଧ୍ୟୟନରେ ଆଗ୍ରହୀ ଗବେଷକମାନଙ୍କ ମାନସପଟରୁ ଲିଭିଯାଇ ନାହିଁ । ବର୍ତ୍ତମାନ କାଳରେ ଧାର୍ମିକ ରାଷ୍ଟ୍ରୀୟତାର ବିଚାରଧାରା ଯେଉଁ ପରିମାଣରେ ଅଭିବୃଦ୍ଧି ଲାଭ କରୁଛି, ତା'ର ମୂଳରେ ରହିଛି ଏହି କାଳ ବିଭାଜନର ତତ୍ତ୍ୱ । ଅର୍ଥାତ୍ ଦକ୍ଷିଣ ଏସିଆର ରାଜନୀତିରେ ଏହି ବିଚାରଧାରାର ଭୂମିକା ଅଦ୍ୟାବଧି ଅବ୍ୟାହତ ରହିଛି । ଏହି କାରଣରୁ ଭାରତୀୟ ଇତିହାସର ଭ୍ରମାତ୍ମକ ଉପସ୍ଥାପନ

ହ୍ରାସ ପାଇ ନାହିଁ । କେବଳ ସେତିକି ନୁହେଁ, ବାରମ୍ବାର ଇତିହାସ ଗବେଷଣାକୁ ସନ୍ଦେହ ଦୃଷ୍ଟିରେ ଦେଖାଯାଉଛି ଏବଂ ଧର୍ମର ଉପରଠାଉରିଆ ମୂଲ୍ୟାଙ୍କନକୁ ମହତ୍ତ୍ୱ ଦିଆଯାଉଛି ।

ଉପଯୋଗବାଦୀଙ୍କର ଅଭିଯୋଗ, ୟୁରୋପର ପ୍ରଶଂସା ମୁତାବକ ଗୁଣ ଭାରତୀୟ ସଭ୍ୟତାରେ ନାହିଁ । ଉଦାହରଣସ୍ୱରୂପ, ହେତୁବାଦୀ ବିଚାର ଏବଂ ବ୍ୟକ୍ତିବାଦୀ ମୂଲ୍ୟବୋଧ ଭାରତରେ ଥିଲା ବୋଲି ଯେଉଁ ଅବଧାରଣା ଦିଆଯାଇଥିଲା, ତାହା କୁଆଡ଼େ ଭ୍ରମାତ୍ମକ ! ଭାରତର ସଂସ୍କୃତିକୁ ଉପଯୋଗବାଦୀମାନେ ଜଡ଼, ସ୍ଥିର ବୋଲି ବିଦ୍ରୁପ କଲେ । ଯାହା ଭାରତୀୟ, ସେସବୁର ତିତିକ୍ଷା କରି ମେକଲେ ଏହାର ଯଥେଷ୍ଟ ପ୍ରମାଣ ଦେଇଛନ୍ତି । ବିଶେଷକରି ଭାରତର ପାରମ୍ପରିକ ଶିକ୍ଷା ଓ ଅଧ୍ୟୟନ ବ୍ୟବସ୍ଥା ମେକଲେଙ୍କ ଉପେକ୍ଷାର ଶିକାର ହୋଇଛି । ଉପଯୋଗବାଦୀମାନେ ଭାରତର ରାଜନୈତିକ ଅନୁଷ୍ଠାନଗୁଡ଼ିକୁ କେବଳ ମହାରାଜା ଓ ସୁଲତାନମାନଙ୍କ ଶାସନ ଭାବରେ ଦେଖୁଥିଲେ । ଏହାର ଚରିତ୍ର ନିରଙ୍କୁଶ ଥିଲା ଏବଂ ଏଥିରେ ଲୋକସାଧାରଣଙ୍କ ମତର ସ୍ଥାନ ନ ଥିଲା ବୋଲି ସେମାନେ ଅଭିଯୋଗ କରୁଥିଲେ । ଏକ ଗଣତାନ୍ତ୍ରିକ ବିପ୍ଳବର ଯୁଗରେ ଏହାକୁ ଜଘନ୍ୟ ଅଭିଶାପ ରୂପରେ ଦେଖାଗଲା । ଜେମ୍ସ ମିଲ୍‌ଙ୍କ 'ହିଷ୍ଟ୍ରି ଅଫ୍ ବ୍ରିଟିଶ ଇଣ୍ଡିଆ' ଏହି ମତପୋଷଣ କରୁଥିଲା ଏବଂ ଉନବିଂଶ ଶତାବ୍ଦୀରେ ସେହି ପୁସ୍ତକର ଢେର ପ୍ରଭାବ ରହିଥିଲା । ଭାରତର ପ୍ରଶାସକ ଏବଂ ବ୍ୟାଖ୍ୟାକାରମାନଙ୍କ ଉପରେ ମିଲ୍‌ଙ୍କ ରଚନାର ଖୁବ୍ କର୍ତ୍ତୃତ୍ୱ ଦେଖିବାକୁ ମିଳିଲା । ମିଲ୍‌ଙ୍କ ରଚନାର ପ୍ରଭାବରେ ଇଂରେଜମାନଙ୍କ ଦ୍ୱାରା ଔପନିବେଶିକ ନୀତି, ଭାରତ ଅଧିକାର ଏବଂ ଭାରତୀୟ ଅର୍ଥବ୍ୟବସ୍ଥାର ପୁନଃସଂଗଠନ କରାଗଲା, ଯାହା ଔପନିବେଶିକ ଆବଶ୍ୟକତା ସହିତ ମେଳ ଖାଇଲା ।

ଉପଯୋଗବାଦୀ ମତାନୁସାରେ ଯଥୋଚିତ ଆଇନ୍ ପ୍ରଣୟନ କରି ଭାରତର ଅନଗ୍ରସରତାକୁ ଦୂର କରିହେବ । ବିଧେୟକକୁ ବ୍ୟବହାର କରି ଇଂରେଜମାନେ ଭାରତୀୟ ସମାଜର ଜଡ଼ ପ୍ରକୃତିକୁ ବଦଳେଇ ଦେଇପାରିବେ । ଏହି ଜଡ଼ ପ୍ରକୃତି ଯୋଗୁଁ ଭାରତରେ ବିକାଶ ବାଧିତ ହେଉଥିଲା ବୋଲି ସେମାନେ ଯୁକ୍ତି କରୁଥିଲେ । ମିଲ୍‌ଙ୍କ ବର୍ଣ୍ଣନାରେ ଭାରତର ନକାରାତ୍ମକ ଚରିତ୍ରଗୁଡ଼ିକୁ ପ୍ରମୁଖତା ମିଳିଥିଲା । ତାକୁ ଦର୍ଶାଇ ସେ ଭାରତରେ ପରିବର୍ତ୍ତନ ଆଣିବାକୁ ବ୍ରିଟେନ୍‌ରେ ପ୍ରଚାର କରୁଥିଲେ । ବ୍ରିଟେନ୍‌ରେ ସେତେବେଳେ ରାଜନୈତିକ ବ୍ୟବସ୍ଥାକୁ (political economy) ନେଇ ଯେଉଁ ବିଚାର ବିମର୍ଶ ଚାଲିଥିଲା, ତାକୁ ଅଧ୍ୟୟନ କଲେ ଭାରତର ଅବସ୍ଥାକୁ ନେଇ ଆରମ୍ଭ ହୋଇଥିବା ଅଧିକାଂଶ ଯୁକ୍ତିତର୍କକୁ ବୁଝିହେବ ।

ଏସିଆର ସଭ୍ୟତାଗୁଡ଼ିକୁ ନେଇ ରହିଥିବା ଉପଯୋଗବାଦୀ ମତର ଏକ ପ୍ରମୁଖ ସିଦ୍ଧାନ୍ତ ହେଲା ପ୍ରାଚ୍ୟ ନିରଙ୍କୁଶବାଦ । ଏହି ମତାନୁସାରେ ଏସୀୟ ସମାଜର ଏକ ବୈଶିଷ୍ଟ୍ୟ

ହେଲା ଯେ ଏହା ଏଭଳି ଏକ ପ୍ରଶାସନିକ ବ୍ୟବସ୍ଥା, ଯେଉଁଠି ଅଖଣ୍ଡ କ୍ଷମତାର ଅଧିକାରୀ ରୂପରେ ଜଣେ ନିରଙ୍କୁଶ ଶାସକ ରହିଥିଲେ । ସମାଜରେ ସ୍ୱାବଲମ୍ବୀ ଗ୍ରାମମାନ (self-sufficient village) ରହିଥିଲେ । ନିରୋଳାରେ ଗଢ଼ିଉଠିଥିବା ଏହି ସ୍ୱାବଲମ୍ବୀ ଗ୍ରାମମାନଙ୍କରୁ ବଳକା ଉତ୍ପାଦନର ସିଂହଭାଗ ନିରଙ୍କୁଶ ଶାସକ ଏବଂ ନିରଙ୍କୁଶ ଶାସକଙ୍କର ରାଜକୋଷକୁ ଚାଲିଯାଉଥିଲା । ଏକ ସ୍ୱେଚ୍ଛାଚାରୀ ଅମଲାତନ୍ତ୍ରର ସହାୟତାରେ ରାଜାଙ୍କର ଶାସନ ଓ ପ୍ରଶାସନ ଚାଲିଥିଲା । କୃଷି ପ୍ରାୟତଃ ଜଳ ସଂସାଧନର ପରିଚାଳନା ଉପରେ ନିର୍ଭରଶୀଳ ଥିଲା ଏବଂ ସେହି ପରିଚାଳନା ଭାର ଉପରେ ଅମଲାତନ୍ତ୍ରର ଦଖଲ ରହିଥିଲା । ଅମଲାତନ୍ତ୍ର ବଳକା ଉତ୍ପାଦନକୁ ମଧ୍ୟ ସଂଗ୍ରହ କରୁଥିଲା । ଉପଯୋଗବାଦୀଙ୍କ ମତରେ, ଏସିଆର ଅଧିକାଂଶ କୃଷି ଜମି ଥିଲା ଶୁଷ୍କ ଓ ମରୁଡ଼ିଗ୍ରସ୍ତ; ରାଜ୍ୟ (state) ଜଳସେଚନର ବ୍ୟବସ୍ଥା କରୁଥିଲା ଏବଂ ତା'ର ନିୟନ୍ତ୍ରଣ ରହିଥିଲା ଅମଲାତନ୍ତ୍ର ହାତରେ । ଏହି ନିୟନ୍ତ୍ରଣ ବଳରେ ଅମଲାତନ୍ତ୍ର ବଳକା କୃଷି ଉତ୍ପାଦନକୁ ଖଜଣା ଆକାରରେ ଅସୁଲ କରି ନିରଙ୍କୁଶ ଶାସକଙ୍କ କୋଠରେ ଜମା କରୁଥିଲା । କୃଷକ ସର୍ବଦା ଏକ ବନ୍ଧନ ଭିତରେ ଆବଦ୍ଧ ହୋଇ ରହିଥିଲା; ତା'ର ସ୍ୱାଧୀନତା ନ ଥିଲା; ସହରଗୁଡ଼ିକ ଥିଲେ ସାଧାରଣତଃ ପ୍ରଶାସନିକ କେନ୍ଦ୍ର; ସେଠି କୌଣସି ବ୍ୟାବସାୟିକ ଗତିବିଧି ସମ୍ପନ୍ନ ହେଉ ନ ଥିଲା; ରାଜାଙ୍କର ଦୈବ ଅଧିକାର ରହିଥିଲା ବୋଲି ଧାରଣା ଥିଲା; ଫଳରେ ଚଳନ୍ତି ପ୍ରତିମା ତୁଲ୍ୟ ସେ ଖୁବ୍ ସମ୍ମାନର ଅଧିକାରୀ ଥିଲେ । ଉପଯୋଗବାଦୀ ସିଦ୍ଧାନ୍ତ ଅନୁସାରେ, ଏସୀୟ ସାମ୍ରାଜ୍ୟଗୁଡ଼ିକର ରାଜନୈତିକ ବ୍ୟବସ୍ଥାକୁ ପ୍ରାଚ୍ୟ ନିରଙ୍କୁଶବାଦ ବାନ୍ଧି ରଖିଥିଲା ।

ଏହି କିସମର ମତର ମୂଳକୁ ଖୋଜିଲେ ଆଦ୍ୟକାଳୀନ ଗ୍ରୀକ୍ ସାହିତ୍ୟରେ ଦେଖିହେବ । ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ବିକଶିତ ହୋଇଥିବା ପାରସ୍ୟର ଆକେମେନିଡ ସାମ୍ରାଜ୍ୟକୁ ପ୍ରାଚୀନ ଗ୍ରୀକ୍ ସାହିତ୍ୟରେ ନିରଙ୍କୁଶ ବୋଲି ଦର୍ଶାଯାଇଥିଲା । ଗ୍ରୀକ୍‌ମାନେ ନିଜେ ନିରଙ୍କୁଶ ଆଚରଣକୁ ସର୍ବତଃ ଖରାପ ବୋଲି କହୁ ନ ଥିଲେ । ମାତ୍ର ଏସୀୟ ସମାଜକୁ ସାଂସ୍କୃତିକ ଦୃଷ୍ଟିରୁ ସେମାନଙ୍କ ସମାଜଠାରୁ ଅଲଗା ବୋଲି ଅଭିଯୋଗ କରୁଥିଲେ ଏବଂ ତଦନୁସାରେ ତା'ର ଏକ ଅତିରଞ୍ଜିତ ଚିତ୍ର ଆଙ୍କୁଥିଲେ । ପ୍ରାଚ୍ୟର ରାଜଦରବାର ବିଳାସପୂର୍ଣ୍ଣ ବୋଲି ସେମାନଙ୍କର ଧାରଣା ଥିଲା । ପ୍ରାଚୀନ କାଳରୁ ଗ୍ରୀକ୍‌ରେ ପ୍ରାଚ୍ୟରୁ ବିଳାସପୂର୍ଣ୍ଣ ସାମଗ୍ରୀର ବ୍ୟାବସାୟିକ ଆମଦାନୀ ବ୍ୟବସ୍ଥା ପ୍ରଚଳିତ ଥିଲା । ପୁଣି ଗ୍ରୀକ୍ ପରିବ୍ରାଜକମାନେ ପ୍ରାଚ୍ୟକୁ ଏକ କଳ୍ପନାଲୋକ ବୋଲି ନିଜ ନିଜ ଭ୍ରମଣକାହାଣୀମାନଙ୍କରେ ବର୍ଣ୍ଣନା କରିଥିଲେ । ସେମାନଙ୍କ ପ୍ରାଚ୍ୟ ସମ୍ବନ୍ଧୀୟ ଧାରଣାକୁ ଏହା ପରିପୁଷ୍ଟ କରୁଥିଲା । ଉଦାହରଣସ୍ୱରୂପ, ପାରସ୍ୟର ରାଜଦରବାରରେ କାର୍ଯ୍ୟ କରିଥିବା ଗ୍ରୀକ୍ ଚିକିତ୍ସକ ଟେସିଆସ ଯେତେବେଳେ ପ୍ରାଚ୍ୟର ବିଳାସବ୍ୟସନ, ରହସ୍ୟ ଏବଂ ଧନସମ୍ପଦ କଥା ଯାଇ

ବର୍ଣ୍ଣନା କଲେ ତାକୁ ଶୁଣି ସେଠାରେ ଲୋକ କୁଆଡ଼େ ଅଭିଭୂତ ହୋଇପଡ଼ିଥିଲେ । ଧର୍ମଯୁଦ୍ଧ ଏବଂ ତୁର୍କମାନଙ୍କ ସମ୍ବନ୍ଧରେ ଲିଖିତ ତା' ପରବର୍ତ୍ତୀ ରଚନାମାନ ପ୍ରାଚ୍ୟ ସମ୍ବନ୍ଧୀୟ ଧାରଣାକୁ ବଳ ଦେଲା । ଅନେକ ରଚନା ୟୁରୋପୀୟ ପାଠକକୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଅତିରଞ୍ଜନକୁ ମହତ୍ତ୍ୱ ଦେଉଥିଲା ।

ଅଷ୍ଟାଦଶ ଶତାବ୍ଦୀର ଫ୍ରାନ୍ସ ଓ ଇଂଲଣ୍ଡ ସମାଜରେ ମୁଖ୍ୟ ଚିନ୍ତା ଥିଲା ଜମିର ମାଲିକାନା । ଜମିର ମାଲିକ କିଏ ତାହା ଯଦି ଜଣାଯାଏ, ସେହି ସମାଜକୁ ବୁଝିବା ସହଜ ହେବ ବୋଲି ବିଦ୍ୱାନ୍‌ମାନେ ମନେକରୁଥିଲେ । ପ୍ରାଚ୍ୟ ନିରଙ୍କୁଶବାଦର ସିଦ୍ଧାନ୍ତ ଅନୁସାରେ ଏସିଆରେ ରାଜା ହେଲେ ସବୁ ଜମିର ମାଲିକ । ବ୍ୟକ୍ତିବିଶେଷଙ୍କ ହାତରେ କୃଷିଜମିର କର୍ତ୍ତୃତ୍ୱ ନ ଥାଏ । ସେତେବେଳେ ଦାର୍ଶନିକମାନଙ୍କ ମଧ୍ୟରେ ଏହି ପ୍ରଶ୍ନକୁ ନେଇ ଏକ ତୀବ୍ର ବିବାଦ ସୃଷ୍ଟି ହୋଇଥିଲା । ପ୍ରସିଦ୍ଧ ଦାର୍ଶନିକ ଭୋଲଟାୟରଙ୍କ ଯୁକ୍ତି ଅନୁଯାୟୀ ଏସିଆରେ ରାଜ୍ୟ ହାତରେ ଜମିର ମାଲିକାନା ନ ଥିଲା । ଭୋଲଟାୟରଙ୍କ ଯୁକ୍ତିର ଦୃଢ଼ ସମର୍ଥନ କରୁଥିଲେ ଅର୍ଥନୀତି ବିଶାରଦ ଫିଜିଓକ୍ରେଟ୍‌ମାନେ । ଏହାର ବିପରୀତ ମତପୋଷଣ କରୁଥିଲେ ଅନ୍ୟତମ ମହାନ୍ ଦାର୍ଶନିକ ମଣ୍ଟେସ୍କୁ । ରିଚାର୍ଡ଼ ଜୋନ୍ସଙ୍କ ଦ୍ୱାରା ଲିଖିତ ପୁସ୍ତକ ଥିଲା ସେତେବେଳର ଆଦର୍ଶ ଅର୍ଥନୀତି ବିଷୟକ ପାଠ୍ୟପୁସ୍ତକ । ଭାରତରେ ପ୍ରଶାସକ ଭାବେ କାର୍ଯ୍ୟ କରିବାକୁ ନିଯୁକ୍ତି ପାଇଥିବା ଯୁବକମାନେ ଇଂଲଣ୍ଡରେ ହେଲିବରି କଲେଜରେ ପ୍ରଶାସନିକ ତାଲିମ ନେବାବେଳେ ଏହି ପାଠ୍ୟପୁସ୍ତକଗୁଡ଼ିକୁ ପଠନ କରୁଥିଲେ । ଏଥିରେ ଜମିର ମାଲିକାନା ରାଜ୍ୟ ହାତରେ ବୋଲି ଯୁକ୍ତି ଦର୍ଶାଯାଇଥିଲା । ସେହିଭଳି ଜେମ୍‌ସ ମିଲ୍‌ଙ୍କ ଇତିହାସ ବହିକୁ ମାନ୍ୟତା ମିଳିଥିଲା । ଏହି ବହି ମଧ୍ୟ ଜମିର ମାଲିକାନା ବିଷୟକ ପ୍ରାଚ୍ୟବାଦୀ ସିଦ୍ଧାନ୍ତକୁ ବିରୋଧ କରୁ ନ ଥିଲା । ଭାରତରେ ପ୍ରଶାସନିକ ଦାୟିତ୍ୱ ନିର୍ବାହ କରିବା ଉଦ୍ଦେଶ୍ୟରେ ଯେଉଁମାନେ ଆସୁଥିଲେ, ସେମାନେ ସମସ୍ତେ ଏହି ସିଦ୍ଧାନ୍ତକୁ ଏକ ସତ୍ୟ ଭାବରେ ସ୍ୱୀକାର କରିନେଇଥିଲେ । ଭାରତର ଇତିହାସକୁ ନେଇ ଗବେଷଣା କରିଥିବା କେତେକ ଐତିହାସିକ ମଧ୍ୟ, ଯେଉଁମାନଙ୍କୁ ପରବର୍ତ୍ତୀ ସମୟରେ ଐତିହାସିକର ଖ୍ୟାତି ପ୍ରାପ୍ତ ହେଲା, ଏହି ପ୍ରଶାସକଙ୍କ ମଧ୍ୟରେ ରହିଥିଲେ ।

ଊନବିଂଶ ଶତାବ୍ଦୀରେ ଅତୀତ ଭାରତକୁ ନେଇ ଯେତେବେଳେ ଚର୍ଚ୍ଚା ଚାଲିଲା, ଉପରୋକ୍ତ ସିଦ୍ଧାନ୍ତ ଏକ ସ୍ୱୟଂସିଦ୍ଧ ସତ୍ୟର ମାନ୍ୟତା ପାଇସାରିଥିଲା । ବିଶେଷକରି କୃଷି ସମ୍ବନ୍ଧ ଏବଂ କୃଷକ ଉପରେ ରାଜ୍ୟର ଅଧିକାର ପ୍ରଶ୍ନ ପାଇଁ ଯେମିତି ଭିନ୍ନ ଉତ୍ତରର ଆବଶ୍ୟକତା ନ ଥିଲା । ଜମି ମାଲିକାନାର ଚରିତ୍ରକୁ ନେଇ ତର୍କବିତର୍କ ଚାଲିଲା । ସେହିଭଳି ଜମିର ମାଲିକାନା କାହା ହାତରେ, ରାଜା କିମ୍ବା ରାଜ୍ୟ ହାତରେ, ନା କୃଷକ ହାତରେ, ନା

ଗ୍ରାମ୍ୟ ସମାଜ ହାତରେ, ସେ ନେଇ ଚର୍ଚ୍ଚା ଚାଲିଲା । କେବେ ଗ୍ରାମ୍ୟ ସମାଜକୁ ଏକ ସ୍ୱୟଂଶାସିତ ସାଧାରଣତନ୍ତ୍ର ରୂପରେ ଚିତ୍ରିତ କରାଗଲା ତ ଆଉ କେବେ ତାକୁ ଗ୍ରାମବାସୀଙ୍କ ପାଖରୁ ଖଜଣା ସଂଗ୍ରହ କରି ରାଜକୋଷରେ ଜମା କରୁଥିବା ଏକ ଅନୁଷ୍ଠାନ ରୂପରେ ବର୍ଣ୍ଣନା କରାଗଲା । ପ୍ରଶାସକ ଓ ଐତିହାସିକ ହେନରୀ ମେନ୍, ବଡ଼େନ-ପାଓ୍ୱେଲ, ମୁନ୍‌ରୋ ଏବଂ ମଣ୍ଟଷ୍ଟୁଆର୍ଟ ଏଲଫିନଷ୍ଟୋନ ଆଦିଙ୍କ ରଚନାରେ ଏହି ତର୍କବିତର୍କକୁ ଦେଖିହେବ । ଏହିସବୁ ପ୍ରଶ୍ନର ଉତ୍ତର ଖୋଜିବା ପ୍ରକ୍ରିୟାରେ ପ୍ରାକ୍-ଔପନିବେଶିକ ଭାରତର ଅବସ୍ଥାକୁ ଅଧ୍ୟୟନରେ ମହତ୍ତ୍ୱ ମିଳିଲା । ଜମି ମାଲିକାନା ଏବଂ ରାଜ୍ୟ ଦ୍ୱାରା ରାଜସ୍ୱ ଆଦାୟ ପ୍ରଶ୍ନ ଇତିହାସ ଅଧ୍ୟୟନ ପାଇଁ ପ୍ରମୁଖ ବିଷୟପ୍ରସଙ୍ଗ ହେଲେ । ମାତ୍ର ପ୍ରଶ୍ନଟିର ଉତ୍ତର ଖୋଜିବା ବେଳକୁ ଐତିହାସିକ ଲେଖନ ପ୍ରକ୍ରିୟା ଅତୀତ ଭାରତକୁ ନେଇ ପ୍ରଚଳିତ ଥିବା ନାନାପ୍ରକାର ପୂର୍ବାଗ୍ରହ (pre-conceptions) ଦ୍ୱାରା ଢେର୍ ପରିମାଣରେ ପ୍ରଭାବିତ ହୋଇ ରହିଥିଲା ।

## 'ପର' ରୂପରେ ଭାରତ

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଉଭୟ ପ୍ରାଚ୍ୟବାଦୀ ଏବଂ ଉପଯୋଗବାଦୀ ଦୃଷ୍ଟିରେ ଏସିଆକୁ ଖୁବ୍ ଏକ ପୃଥକ୍ ସମାଜ, ୟୁରୋପ ଅପେକ୍ଷା ଭିନ୍ନ, ୟୁରୋପର 'ପର' ରୂପରେ ଦେଖାଯାଇଥିଲା । ପାଶ୍ଚାତ୍ୟ ବିଦ୍ୱାନ୍‌ମାନଙ୍କ ଅନୁସାରେ, ଏସିଆର ସବୁଠାରୁ ପ୍ରମୁଖ ସମସ୍ୟା ହେଲା, ତାହା ପୁଞ୍ଜିବାଦୀ ବ୍ୟବସ୍ଥାର ଅନ୍ତର୍ଗତ ନ ଥିଲା; ଭାରତର ଯେତେଯାକ ସମସ୍ୟା, ତା'ର ମୂଳ ହେଲା ଭାରତୀୟ ସମାଜ ଓ ଧର୍ମର ପ୍ରାକ୍-ଆଧୁନିକକାଳୀନ ଇତିହାସ । କାର୍ଲମାର୍କ୍ସଙ୍କ ବିଶ୍ଳେଷଣ ଅନୁଯାୟୀ, ନିରଙ୍କୁଶବାଦ ଏବଂ ଜଡ଼ତା ହେଲେ ଦୁଇଗୋଟି ମୁଖ୍ୟ ଲକ୍ଷଣ, ଯାହା ଯୋଗୁଁ ୟୁରୋପ ସହ ସମତାଳରେ ଏସିଆ ଅଗ୍ରଗତି କରିପାରିଲା ନାହିଁ । କାର୍ଲମାର୍କ୍ସ ଏହି କିସମର ଆର୍ଥିକ ସ୍ଥିତିକୁ 'ଏସିଆଟିକ୍ ମୋଡ୍ ଅଫ୍ ପ୍ରଡ଼କ୍ସନ୍' (ଏସୀୟ ପଦ୍ଧତିର ଉତ୍ପାଦନ) ବୋଲି ଚିହ୍ନିତ କରିଥିଲେ । ତାଙ୍କ ମତରେ, ଘରୋଇ ସମ୍ପତ୍ତି ନ ଥିଲା ବୋଲି ଭାରତରେ କୌଣସି ମଧ୍ୟମ ବର୍ଗର ଉନ୍ମେଷ ହୋଇ ନ ଥିଲା । ଦ୍ୱନ୍ଦାତ୍ମକ ପରିବର୍ତ୍ତନ (dialectical change) ଆଣିବା ଭଳି ବର୍ଗ ବା ବର୍ଗ ସଂଘର୍ଷର ମଧ୍ୟ ଭାରତରେ ଅଭାବ ରହିଥିଲା । ପୁଣି ବ୍ୟବସାୟ କେନ୍ଦ୍ର ନ ଥିଲା; ବଜାରକୁ ଯୋଗାଣ କରିବା ଯୋଗ୍ୟ ଉତ୍ପାଦନ କେନ୍ଦ୍ର ଭାବରେ ସହର ମଧ୍ୟ ନ ଥିଲା । ଅନ୍ତତଃ ଏସବୁ ଥିଲେ ଆର୍ଥିକ ପରିବର୍ତ୍ତନ ପାଇଁ ପ୍ରୋତ୍ସାହନ ମିଳିପାରିଥାନ୍ତା । ଏସୀୟ ପଦ୍ଧତିର ଉତ୍ପାଦନ (Asiatic Mode of Production) ସିଦ୍ଧାନ୍ତକୁ ନେଇ ବିଂଶ ଶତାବ୍ଦୀରେ ମଝିରେ ମଝିରେ ତର୍କ ହୋଇଛି । ତା' ପଛରେ କାରଣ ହେଲା ଯେ ପୁଞ୍ଜିବାଦୀ ବ୍ୟବସ୍ଥାକୁ ବିକଶିତ କରିବାରେ ଏସୀୟ ପଦ୍ଧତିର

ଅସଫଳତାକୁ ସାଂପ୍ରତିକ ରାଜନୀତି ତର୍ଜମା କରିପାରୁ ନାହିଁ । ପ୍ରାଚ୍ୟ ନିରଙ୍କୁଶବାଦର ବିଚାରକୁ ମାନିନେଇ କାର୍ଲ ୱିଟଫୋଗେଲ (Karl Wittfogel) ଯୁକ୍ତି କଲେ ଯେ, ଏସିଆରେ ଅମଲାତନ୍ତ୍ରର ଜଳସେଚନ ବ୍ୟବସ୍ଥା ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ରହିଥିଲା । ଏହା ଶାସକଙ୍କୁ ନିରଙ୍କୁଶ ସାଜିବାକୁ ଅବସର ପ୍ରଦାନ କରୁଥିଲା । ୱିଟଫୋଗେଲଙ୍କ ସିଦ୍ଧାନ୍ତକୁ ଏସୀୟ ମାକ୍ସବାଦୀ ଐତିହାସିକମାନେ ଆମୂଳଚୂଳ ଆଲୋଚନା କଲା ପରେ ଏହାର ଐତିହାସିକ ବୈଧତାକୁ ନେଇ ସନ୍ଦେହ ପ୍ରକାଶ କଲେ । ଜଳସେଚନ ପ୍ରଣାଳୀ ଏବଂ ଟେକ୍ନୋଲୋଜିର ଅତୀତ ଭାରତରେ ପ୍ରୟୋଗ ପ୍ରଶ୍ନକୁ ନେଇ ଯେଉଁସବୁ ପ୍ରଶ୍ନ ଉପୁଜିଲା, ତାହା ଖୁବ୍ ଜଟିଳ ମନେହେଲା । ତା' ତୁଳନାରେ ଜଳସେଚନରେ ଏବଂ ସମଗ୍ର ଅର୍ଥନୀତିରେ ଅମଲାତନ୍ତ୍ରର ପ୍ରଭୁତ୍ୱ ପ୍ରଶ୍ନ ଉପରଠାଉରିଆ ପ୍ରତୀତ ହେଲା ।

ଊନବିଂଶ ଶତାବ୍ଦୀରେ ଭାରତର ପ୍ରଶାସନ ସହ ଜଡ଼ିତ ଥିବା ଅଧିକାରୀମାନେ ଅନ୍ୟ ଯେଉଁ ଏକ ବିତର୍କର ସମ୍ମୁଖୀନ ହେଲେ, ତାହା ହେଲା ଜାତିର ମୂଳ । ଜାତିର ସମ୍ଭାବିତ ମୂଳ ଭାବରେ କୁଳସମ୍ବନ୍ଧର (kinship) ନିୟମ ଏବଂ ବିବାହ କିମ୍ବା ବୃତ୍ତି, ଧାର୍ମିକ ଅନୁଷ୍ଠାନ କିମ୍ବା ରାଜନୈତିକ ପଦପଦବୀକୁ ଗବେଷକମାନେ ଗ୍ରହଣ କରୁଥିଲେ । ଜାତିକୁ ସେମାନେ ଧର୍ମ ସାଙ୍ଗରେ ଯୋଡୁଥିଲେ ଏବଂ ଉଭୟ ଅନୁଷ୍ଠାନ ମଧ୍ୟରେ ରହିଥିବା ନିବିଡ଼ ସମ୍ବନ୍ଧ ଯୋଗୁଁ ଆର୍ଥିକ ପରିବର୍ତ୍ତନ ବାଧିତ ହୋଇଛି ବୋଲି ମତ ଦେଉଥିଲେ । ଏହା ମେକ୍ସ ୱେବରଙ୍କ ଭାରତର ଧର୍ମ ସମ୍ବନ୍ଧୀୟ ଅଧ୍ୟୟନରେ ବିସ୍ତୃତ ଭାବରେ ଆଲୋଚିତ ହୋଇଛି । ମେକ୍ସ ୱେବର ମୁଖ୍ୟତଃ ହିନ୍ଦୁଧର୍ମକୁ ଧ୍ୟାନରେ ରଖି ନିଜ ଅଧ୍ୟୟନ କରିଛନ୍ତି । ସେ ଜାତିଗୁଡ଼ିକୁ ଗୋଟାଏ ଗୋଟାଏ ସ୍ୱତନ୍ତ୍ର ଅନୁଷ୍ଠାନ ବୋଲି ଦର୍ଶାଇଛନ୍ତି । ଜାତିଗୁଡ଼ିକ ମଧ୍ୟରେ ପାରସ୍ପରିକ ସାମାଜିକ ଗତିବିଧି ନ ଥିଲା ବୋଲି ସେ ଉଲ୍ଲେଖ କରିଛନ୍ତି । ଭାରତରେ ପୁଞ୍ଜିବାଦର ବିକାଶ ନ ହେବା ପ୍ରଶ୍ନକୁ ନେଇ ମଧ୍ୟ ମେକ୍ସ ୱେବର ଚିନ୍ତା କରୁଥିଲେ । ମାତ୍ର ତାଙ୍କ ଦୃଷ୍ଟିକୋଣ କାର୍ଲ ମାର୍କ୍ସଙ୍କଠାରୁ ପୃଥକ୍ ଥିଲା । ସେ ବିଭିନ୍ନ କିସମର ଧାର୍ମିକ ସଂପ୍ରଦାୟକୁ ଏବଂ ସେଗୁଡ଼ିକର ସମାନ ଚରିତ୍ରକୁ ଅନୁଧ୍ୟାନ କରି ଧାର୍ମିକ ବିଶ୍ୱାସ ଏବଂ ଗତିବିଧିରେ ପ୍ୟୁରିଟାନ ନୈତିକତାର ଅଭାବକୁ ତା' ପାଇଁ କାରଣ ବୋଲି ଦର୍ଶାଇଥିଲେ । ତାଙ୍କ ମତରେ, ୟୁରୋପରେ ପୁଞ୍ଜିବାଦର ବିକାଶ ପଛରେ ଧାର୍ମିକ ବିଶ୍ୱାସ ଓ ପ୍ୟୁରିଟାନ ବିଚାର ଏକ ମହତ୍ତ୍ୱପୂର୍ଣ୍ଣ କାରଣ ଥିଲା । ପ୍ୟୁରିଟାନବାଦୀ ନୈତିକତା, ମିତବ୍ୟୟିତା, ଧନ ସଞ୍ଚୟ, ପୁଞ୍ଜି ବିନିଯୋଗ, ପେସାଦାର ମନୋଭାବ ତଥା ଆତ୍ମାର ମୁକ୍ତି ଚିନ୍ତାକୁ ବିଶେଷ ଭାବରେ ପ୍ରୋତ୍ସାହିତ କରିଥିଲା । ନୈତିକତା ସମ୍ପର୍କିତ ଧାର୍ମିକ ପଠନ-ପାଠନ ବେଳେ ମଧ୍ୟ ଖର୍ଚ୍ଚକୁ ଦୃଷ୍ଟି ଦିଆଗଲା । ଅର୍ଥାତ୍ ତହିଁରେ ବିଶେଷ ବ୍ୟୟବରାଦ ନ କରିବାକୁ ପ୍ରୟାସ କରାଗଲା । ମାତ୍ର ଭାରତରେ, ୱେବରଙ୍କ ମତରେ, ହିନ୍ଦୁ, ବୌଦ୍ଧ ଏବଂ ଜୈନ ସଂପ୍ରଦାୟମାନେ ଖର୍ଚ୍ଚ ମାମଲାରେ ବିଶେଷ

ଭୂମିକା ଗ୍ରହଣ କରି ନ ଥିଲେ । ଏପରିକି ମୁସଲମାନମାନଙ୍କ ମଧ୍ୟରେ ଯେଉଁ ସଂପ୍ରଦାୟ ବ୍ୟବସାୟ ପ୍ରବୀଣ ଏବଂ ଯେଉଁମାନଙ୍କର ଧାର୍ମିକ ଚିନ୍ତନରେ ସ୍ଥାନୀୟ କର୍ମକାଣ୍ଡର ମହତ୍ତ୍ୱ ରହିଥିଲା, ସେହି ସଂପ୍ରଦାୟଗୁଡ଼ିକୁ ପାଶ୍ଚାତ୍ୟ ତତ୍ତ୍ୱଜ୍ଞମାନେ ଅଧ୍ୟୟନରେ ସାମିଲ କଲେ ନାହିଁ । କାରଣ ସେମାନଙ୍କ ମତରେ, ଭାରତ ଥିଲା ଏକ ହିନ୍ଦୁ ସଭ୍ୟତା । ଅର୍ଥାତ୍ ମୁସଲମାନମାନଙ୍କ ଭୂମିକା ଏଠାରେ ଗୌଣ । କୌତୂହଳର କଥା ଯେ, ୟୁରୋପରେ ପୁଞ୍ଜିବାଦୀ ବିକାଶରେ ଉପନିବେଶବାଦର ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଥିଲା, ମାତ୍ର ତାକୁ ଅଧ୍ୟୟନରେ ବିଶେଷ ଗୁରୁତ୍ୱ ଦିଆଗଲା ନାହିଁ । ଉଦ୍ଦେଶ୍ୟ ଥିଲା, ୟୁରୋପଠାରୁ ସମ୍ପୂର୍ଣ୍ଣ ବିପରୀତ ସ୍ଥିତି ବୋଲି ଭାରତକୁ ଦର୍ଶାଇବା । ଏଥିପାଇଁ ଅତିରଞ୍ଜନ କରିବାକୁ ମଧ୍ୟ ଏହି ଲେଖକମାନେ ପଶ୍ଚାଦ୍‌ପଦ ହୋଇ ନ ଥିଲେ ।

ୱେବରଙ୍କ ଭାରତୀୟ ସମାଜର ଅଧ୍ୟୟନର ବୈଶିଷ୍ଟ୍ୟ ହେଲା ଯେ ଏହା ଜାତିର ବିଭିନ୍ନ ଉପାଦାନକୁ ଏବଂ ଜାତି ଓ ଧର୍ମ ମଧ୍ୟରେ ଥିବା ଯୋଗସୂତ୍ରକୁ ବିଶ୍ଳେଷଣ କରେ । କେବଳ ୱେବର କାହିଁକି ଆହୁରି ଅନେକ ଗବେଷକ ଏହି ଧରଣର ଅଧ୍ୟୟନ କରିଛନ୍ତି । ଊନବିଂଶ ଶତାବ୍ଦୀର ଶେଷ ଭାଗ ଏବଂ ବିଂଶ ଶତାବ୍ଦୀର ଆରମ୍ଭରେ ବହୁସଂଖ୍ୟକ ଭାଷାତତ୍ତ୍ୱବିତ୍, ସମାଜଶାସ୍ତ୍ରୀ ଏବଂ ଧର୍ମ ଅଧ୍ୟୟନ ବିଶେଷଜ୍ଞ ଭାରତର ଉଦାହରଣକୁ ୟୁରୋପ ସହିତ ପରିଚିତ ବିଦ୍ୱାନ୍‌ମାନଙ୍କ ପାଖରେ ଥିବା ଉଦାହରଣଠାରୁ ସମ୍ପୂର୍ଣ୍ଣ ପୃଥକ୍ ମନେକରି ଗବେଷଣା ଆରମ୍ଭ କଲେ । ଏମିଲ ଦୁର୍ଖେଇମଙ୍କ ଅଧ୍ୟୟନରୁ ଜଣାପଡ଼ିଲା ଯେ ପ୍ରାକ୍-କାଳୀନ ସମାଜର କିଛି କିଛି ଉପାଦାନ ପରବର୍ତ୍ତୀ କାଳର ରୀତିନୀତିରେ ଜୀବନ୍ତ ହୋଇ ରହିଥାଏ । ବିଶ୍ୱାସ ଓ କର୍ମକାଣ୍ଡ ମଧ୍ୟରେ ରହିଥିବା ପ୍ରାଚୀରକୁ ସେ ଚିହ୍ନିତ କରିଛନ୍ତି, ଯାହା ବୈଦିକ ସମାଜର ବଳି ବ୍ୟବସ୍ଥା ସମ୍ପର୍କିତ ପରବର୍ତ୍ତୀକାଳୀନ ଅଧ୍ୟୟନ ପାଇଁ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଅଟେ । ହିନ୍ଦୁଧର୍ମରେ ଦେବଦେବୀର ପ୍ରମୁଖତା ଥାଏ । ଅଥଚ ବୌଦ୍ଧଧର୍ମରେ ଦେବଦେବୀ ଆଦୌ ନ ଥାନ୍ତି । ଧର୍ମକୁ ବ୍ୟାଖ୍ୟା କଲାବେଳେ ଭାରତର ଧର୍ମଗୁଡ଼ିକ ମଧ୍ୟରେ ଥିବା ଏହି ପ୍ରଭେଦ ମଧ୍ୟ ତର୍କର ପ୍ରସଙ୍ଗ ହେଲା । ମାର୍ସେଲ ମସ ଏବଂ ଏଚ୍. ହବର୍ଟ ବଳି ସହିତ ଯୋଡ଼ି ହୋଇଥିବା କର୍ମକାଣ୍ଡକୁ ବିସ୍ତାରରେ ଅନୁଶୀଳନ କରିଛନ୍ତି । ବିଶେଷକରି ପବିତ୍ରତା ଓ ଅପବିତ୍ରତା ମଧ୍ୟରେ ଥିବା ପାର୍ଥକ୍ୟକୁ ସୁସ୍ପଷ୍ଟ କରିବାକୁ ଉଭୟେ ପ୍ରୟାସ କରିଛନ୍ତି । ସାମାଜିକ ଏବଂ ଧାର୍ମିକ ସମ୍ବନ୍ଧଗୁଡ଼ିକ ମଧ୍ୟରେ ରହିଥିବା ଯୋଗସୂତ୍ରକୁ ବୁଝିବା ଲାଗି ଉପହାର-ପ୍ରଦାନ ସମ୍ପର୍କିତ ମସଙ୍କର ଅଧ୍ୟୟନ ନୂଆ ମାର୍ଗ ପ୍ରଦର୍ଶନ କଲା । ଏହିସବୁ ଅଧ୍ୟୟନ ପାଇଁ ପ୍ରାଚୀନ ଭାରତର ପୋଥିପୁରାଣ ହେଲେ ମୂଳ ସାମଗ୍ରୀ । ସେଲେଷ୍ଟିନ୍ ବଗଲ ନିଜ ଅଧ୍ୟୟନରେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ଉତ୍‌ଥାପନ କଲେ : ଜାତି ବ୍ୟବସ୍ଥା କେବଳ ହିନ୍ଦୁ ସମାଜରେ ଦେଖିବାକୁ ମିଳେ ନା ଅନ୍ୟ ସମାଜରେ ମଧ୍ୟ ତାହା ରହିଛି ? ଏହି ଆଧାରରେ ସେ

ଇଂରାଜୀରେ ଯାହାକୁ 'କାଷ୍ଟ' (caste) ବୋଲି କୁହାଯାଏ, ତାକୁ ଜାତି ନାମରେ ଚିହ୍ନିତ କଲେ । ଏଥିରେ ପୁରୁଷାନୁକ୍ରମିକ ଭାବରେ ସାମାଜିକ ଗୋଷ୍ଠୀମାନ ତଳ-ଉପର ହୋଇ ଏକ ଅନୁକ୍ରମରେ ସଂଯୋଜିତ ହୋଇ ରହିଥାନ୍ତି । ସମସ୍ତେ ସମାନ ଅଧିକାର ଦାବି କରିପାରନ୍ତି ନାହିଁ । ସେମାନଙ୍କ ମଧ୍ୟରେ (ଜାତି-ଜାତି ମଧ୍ୟରେ) ବୈବାହିକ ସମ୍ବନ୍ଧ ସ୍ଥାପିତ ହୁଏ ନାହିଁ । ପରସ୍ପର ମଧ୍ୟରେ ଭୋଜନର ଆଦାନପ୍ରଦାନ ହୁଏ ନାହିଁ; ସେମାନଙ୍କ ରୀତିନୀତିରେ ମଧ୍ୟ ପାର୍ଥକ୍ୟ ରହିଥାଏ । ଜାତି-ଜାତି ମଧ୍ୟରେ ଏକତାକୁ ବାଞ୍ଛନୀୟ ମନେକରାଯାଏ ନାହିଁ । ଇଣ୍ଡୋଲୋଜିଷ୍ଟ ବା ଭାରତ-ବିଦ୍ୟା ବିଶେଷଜ୍ଞଙ୍କ ବିଶ୍ଳେଷଣଠାରୁ ଏହି ବିଶ୍ଳେଷଣ ଥିଲା ସମ୍ପୂର୍ଣ୍ଣ ପୃଥକ୍ । ଅନେକ ଇଣ୍ଡୋଲୋଜିଷ୍ଟ ଜାତିକୁ ବର୍ଣ୍ଣ କିମ୍ବା ପାରମ୍ପରିକ ପଦବୀ ମଧ୍ୟରେ ସୀମିତ ରଖି, ବ୍ରାହ୍ମଣ୍ୟ ସଂସ୍କୃତି ଆଧାରରେ ଦେଖନ୍ତି । ଜାତି ଓ ବର୍ଣ୍ଣ ପରସ୍ପରର ଅନିଷ୍ଟ ସାଧନ କରନ୍ତି ନାହିଁ । ମାତ୍ର ଉଭୟଙ୍କ ଉତ୍ପତ୍ତି ଓ କାର୍ଯ୍ୟଧାରା ମଧ୍ୟରେ ପାର୍ଥକ୍ୟ ରହିଛି ।

## ଅତୀତ ଭାରତର 'ଆବିଷ୍କାର'

ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଯେତେବେଳେ ୟୁରୋପୀୟ ବିଦ୍ୱାନ୍‌ମାନେ ଭାରତର ଅତୀତ ସମ୍ବନ୍ଧରେ ଜାଣିବା ପାଇଁ ଅନୁସନ୍ଧିତ୍ସୁ ହେଲେ, ସେତେବେଳେ ସେମାନେ ତଥ୍ୟ ପାଇଁ ବହୁମାତ୍ରାରେ ବ୍ରାହ୍ମଣମାନଙ୍କ ଉପରେ ଆଶ୍ରିତ ଥିଲେ । ବ୍ରାହ୍ମଣମାନେ କହୁଥିଲେ ଯେ, ଭାରତର ପ୍ରାଚୀନ ପରମ୍ପରାଯାକ ସଂସ୍କୃତ ପୋଥିରେ ନିବିଷ୍ଟ ହୋଇ ରହିଛି ଏବଂ କେବଳ ସେମାନେ ହିଁ ସଂସ୍କୃତ ଜ୍ଞାନର ଅଧିକାରୀ । ସେଥିପାଇଁ ଆଦ୍ୟକାଳୀନ ଭାରତ ଇତିହାସର ଅଧିକାଂଶ ଭାଗ ସଂସ୍କୃତ ପୋଥିକୁ ଆଧାର କରି ରଚିତ ହୋଇଥିଲା । ତହିଁରେ ମୂଳ ସଂସ୍କୃତ କବିମାନଙ୍କର ମତ ପ୍ରତିଫଳିତ ହୋଇଥିଲା । ଏହି ରଚନାଗୁଡ଼ିକ ମଧ୍ୟରେ ଅଧିକାଂଶ ଧର୍ମ ତଥା ରୀତି ପରମ୍ପରା ବିଷୟକ ଥିଲା । ତହିଁରେ ପ୍ରାଚୀନ ଭାରତୀୟ ସଂସ୍କୃତିର ବ୍ୟାଖ୍ୟାକୁ ମନୋରମ କରାଯାଇଥିଲା । ଅନ୍ୟ ବିଷୟକ ପୋଥିର ମଧ୍ୟ ରଚନାକାର ଓ ଟୀକାକାର ଥିଲେ ବ୍ରାହ୍ମଣମାନେ । ସ୍ୱାଭାବିକ ଭାବରେ ସେମାନେ ଶାସକବର୍ଗର ସମର୍ଥକ ଥିଲେ । ସାଧାରଣତଃ ସେମାନେ ସମାଜର ବ୍ରାହ୍ମଣବାଦୀ ସିଦ୍ଧାନ୍ତର ପୃଷ୍ଠପୋଷକତା କରୁଥିଲେ ଏବଂ ବ୍ୟାପକ ଐତିହାସିକ ପ୍ରୟୋଗର ଆବଶ୍ୟକତା ଥାଉ ବା ନ ଥାଉ, ସବୁଥିରେ ଉକ୍ତ ସିଦ୍ଧାନ୍ତକୁ ପ୍ରୟୋଗ କରୁଥିଲେ । ଉଦାହରଣସ୍ୱରୂପ, 'ଧର୍ମଶାସ୍ତ୍ର' ଭଳି ପୋଥିରେ ଜାତିକୁ ବର୍ଣ୍ଣ ରୂପରେ ପରିଭାଷିତ କରାଯାଇଛି । ଜାତି ପାରମ୍ପରିକ ପଦବୀରେ ରହି ସୀମିତ ଅର୍ଥରେ ସାମାଜିକ ବର୍ଗୀକରଣ କରେ ବୋଲି କୁହାଯାଇଛି । ପ୍ରାଚୀନ କାଳରୁ ଜାତି ବ୍ୟବସ୍ଥା ପ୍ରଚଳିତ ଏବଂ ଆରମ୍ଭରୁ ଆଜିପର୍ଯ୍ୟନ୍ତ ଅତୁଟ ରହିଛି ବୋଲି ଯୁକ୍ତି ଦର୍ଶାଯାଇଛି । ଏହାଛଡ଼ା,

ପୋଥିର ଲିପିକାରମାନେ ଯେହେତୁ ଉଚ୍ଚ ଜାତି ବ୍ରାହ୍ମଣ ବଂଶଜ, ପୋଥି 'ନିମ୍ନ ଜାତି'କୁ ଉଚ୍ଚ ଜାତିର ଦୃଷ୍ଟିରେ ଦେଖେ । ଅବଶ୍ୟ ଭାରତୀୟ ସମାଜରେ ଜାତିର ପ୍ରକୃତ ଗତିବିଧି ସର୍ବତ୍ର ଏକାରକମର ନ ଥିଲା । ସ୍ଥାନୀୟ ଅବସ୍ଥା ଓ ସ୍ଥିତିକୁ ଦେଖି ତହିଁରେ ପରିବର୍ତ୍ତନମାନ ରହିଥିଲା । ମାତ୍ର 'ଧର୍ମଶାସ୍ତ୍ର'ର ରଚୟିତାମାନେ ଏହାକୁ ସ୍ୱୀକାର କରି ନ ଥିଲେ ।

ଆଶ୍ଚର୍ଯ୍ୟର କଥା ଯେ 'ଇଣ୍ଡୋଲୋଜିଷ୍ଟ'ମାନେ ଅଧ୍ୟୟନ କରିଥିବା ପୋଥିପୁରାଣ ଓ ନୃଜାତି ବିଶେଷଜ୍ଞମାନେ ସଂଗ୍ରହ କରିଥିବା ତଥ୍ୟକୁ ସମନ୍ୱିତ କରିବାକୁ ଖୁବ୍ କମ୍ ଉଦ୍ୟମ କରାଯାଇଛି । ଭାରତୀୟ ସମାଜ ସମ୍ପର୍କରେ ଉଭୟ ବିଦ୍ୱାନ୍‌ଗୋଷ୍ଠୀ ମହତ୍ତ୍ୱପୂର୍ଣ୍ଣ, ଅଥଚ ପୃଥକ୍ ପୃଥକ୍ ସୂଚନା ସଂଗ୍ରହ କରିଥିଲେ । 'ସଭ୍ୟ' ଓ 'ଆଦିମ' ଲୋକ ମଧ୍ୟରେ ଯେଉଁ ପାର୍ଥକ୍ୟ, ସମ୍ଭବତଃ ତା'ର ପ୍ରଭାବ ଉଭୟ ଗୋଷ୍ଠୀ ସଂଗ୍ରହ କରିଥିବା ତଥ୍ୟକୁ ପ୍ରଭାବିତ କରୁଥିଲା । 'ଆଦିମ' ଲୋକ ସମାଜ ପାଖରେ ସାହିତ୍ୟ ନ ଥାଏ ବୋଲି ବିଦ୍ୱାନ୍‌ମାନଙ୍କ ମନରେ ଏକ ଧାରଣା ବଦ୍ଧମୂଳ ହୋଇ ରହିଯାଇଥିଲା । ଯେଉଁମାନେ ମୌଖିକ ବା ବାଚନିକ ପରମ୍ପରାକୁ (oral tradition) ଅଧ୍ୟୟନ କଲେ, ସେମାନଙ୍କୁ ଏକ ଭିନ୍ନ ଧରଣର ବିଦ୍ୱାନ୍ ବୋଲି ଚିହ୍ନିତ କରାଗଲା । ବିଦ୍ୱାନ୍‌ମାନଙ୍କର ଧାରଣା ଯେ ବାଚନିକ ପରମ୍ପରା କେବଳ ଚାରଣ କବି ଓ ଗାୟକ, ତଥାକଥିତ ତଳ ଜାତି ଏବଂ ଆଦିବାସୀ ଓ ଅରଣ୍ୟବାସୀ ଲୋକସମୂହଙ୍କ ମଧ୍ୟରେ ସୀମିତ । ତା'ଠାରୁ ବଡ଼ କଥା, ଏହି ପରମ୍ପରାରୁ ପ୍ରାପ୍ତ ତଥ୍ୟାବଳୀ ଉଚ୍ଚ ଜାତି ଏବଂ ସମ୍ଭ୍ରାନ୍ତ ବର୍ଗ ଦ୍ୱାରା ସୃଷ୍ଟ ପୋଥିପୁରାଣ ଅପେକ୍ଷା ଯଥେଷ୍ଟ କମ୍ ନିର୍ଭରଯୋଗ୍ୟ ! ମାତ୍ର ଏଭଳି ଧାରଣା ଭ୍ରମାତ୍ମକ ! ଉଭୟ ପରମ୍ପରାକୁ ଯଦି ଗୋଟାଏ ସମାଜର ଭିନ୍ନ ଭିନ୍ନ ଉପାଦାନ ଭାବରେ ସ୍ୱୀକାର କରାଯାଇଥାନ୍ତା, ତେବେ ଜାତିର କାର୍ଯ୍ୟବିଧିକୁ 'ଧର୍ମଶାସ୍ତ୍ର'ରେ ଉଲ୍ଲିଖିତ ପରିଭାଷାଠାରୁ ପୃଥକ୍ ବୋଲି ବୁଝି ହୋଇଥାନ୍ତା ।

ଭିନ୍ନ ଭିନ୍ନ ସୂତ୍ରରୁ ପ୍ରାପ୍ତ ତଥ୍ୟ-ପ୍ରମାଣଗୁଡ଼ିକୁ ଯେତେବେଳେ ପ୍ରକୃତରେ ଦେଖାଗଲା, ତାହା ପୋଥିପୁରାଣ ବର୍ଣ୍ଣିତ ତଥ୍ୟ-ପ୍ରମାଣକୁ ବିରୋଧ କରି ଅତୀତର ଏକ ଭିନ୍ନ ଚିତ୍ର ତୋଳିଲା । ମାତ୍ର ସବୁଗୁଡ଼ିକୁ ମିଶାଇ ଦେଖିଲେ ଅତୀତର ଏକ ଅଧିକ ସଠିକ୍ ଓ ବସ୍ତୁନିଷ୍ଠ ପରିଦୃଶ୍ୟ ମିଳିବାର ସମ୍ଭାବନା ରହିଲା । ଏହି କାରଣରୁ ଅନ୍ୟାନ୍ୟ ସୂତ୍ରରୁ ପ୍ରାପ୍ତ ତଥ୍ୟ-ପ୍ରମାଣର ମଧ୍ୟ ମହତ୍ତ୍ୱ ବୃଦ୍ଧି ପାଇଲା । ଉଦାହରଣସ୍ୱରୂପ, ତତ୍‌କାଳୀନ ଶିଳାଲେଖର କ୍ରମଶଃ ଗୁରୁତ୍ୱ ବଢ଼ିଲା । ସ୍ଥାନୀୟ ବିବରଣୀ ଏବଂ ରାଜବଂଶାବଳୀ ସମ୍ପର୍କରେ ମଧ୍ୟ କିଛି ବିଦ୍ୱାନ୍ ଆଗ୍ରହ ପ୍ରକାଶ କଲେ । ଜେମ୍‌ସ ଟଡ୍ ଚାରଣକବି ଏବଂ ଆଞ୍ଚଳିକ ବିବରଣୀଗୁଡ଼ିକରୁ ତଥ୍ୟ ସଂଗ୍ରହ କରି ବିଭିନ୍ନ ରାଜପୁତ୍ ବଂଶର ଇତିହାସ ଲେଖିଲେ । ମାତ୍ର ଏହା ସତ୍ତ୍ୱେ ବି ଚାରଣକବି ବା ଗ୍ରାମ୍ୟକବିର ରଚନାକୁ ସଂଗ୍ରହ କରିବାରେ କିମ୍ବା ଆଞ୍ଚଳିକ ଇତିହାସର ପ୍ରଣେତା ରୂପରେ ଗ୍ରାମ୍ୟକବିର ଭୂମିକାକୁ ସ୍ୱୀକୃତି ଦେବାରେ ବିଦ୍ୱାନ୍‌ମାନଙ୍କର ବିଶେଷ

ଆଗ୍ରହ ସୃଷ୍ଟି ହେଲା ନାହିଁ । ସ୍ୱୟଂ ଜେମ୍ସ ଟଡ୍ ମଧ୍ୟଯୁଗୀୟ ୟୁରୋପର ଇତିହାସରୁ ଯେଉଁ ଦୃଷ୍ଟିକୋଣ ପାଇଥିଲେ, ତାହାରି ଆଧାରରେ କିଛି ତଥ୍ୟକୁ ଛାଣି ରଖିଲେ ଏବଂ ଭାରତର ମଧ୍ୟକାଳ ୟୁରୋପର ସାମନ୍ତବାଦୀ ବ୍ୟବସ୍ଥା ସହିତ ତୁଳନୀୟ ବୋଲି ଦାବି କଲେ । ଅବଶ୍ୟ ଏହି ଦାବି ଖୁବ୍ ଉପରଠାଉରିଆ ଥିଲା । ଟଡ୍ ଯୁକ୍ତି କଲେ ଯେ, ରାଜପୁତ୍‌ମାନେ ହେଲେ ଭାରତର ପାରମ୍ପରିକ କୁଳୀନ ବର୍ଗ (aristocracy) । ସେମାନେ ମୁସଲମାନମାନଙ୍କୁ ପ୍ରତିରୋଧ କରିଥିଲେ । ମୁସଲମାନମାନଙ୍କ ସହିତ ରାଜପୁତ୍‌ମାନଙ୍କର ରାଜନୈତିକ ମିତ୍ରତା ଏବଂ ବୈବାହିକ ସମ୍ବନ୍ଧକୁ ଟଡ୍ ସମ୍ପୂର୍ଣ୍ଣରୂପେ ଅଣଦେଖା କରିଦେଇଥିଲେ । ଏଲ୍.ପି. ଟେସିଟୋରି ନାମକ ଆଉ ଜଣେ ବିଦ୍ୱାନ୍ ବିଭିନ୍ନ ବଂଶାବଳୀକୁ ସଂଗ୍ରହ କରି ଐତିହାସିକ ବିଶ୍ଳେଷଣ କରିବାକୁ ପ୍ରୟାସ କଲେ । ମାତ୍ର ଏହି ଧରଣର ବିଶ୍ଳେଷଣ ପ୍ରଚଳିତ ଇତିହାସ ପୁସ୍ତକମାନଙ୍କରେ ସ୍ଥାନ ପାଇଲା ନାହିଁ । ଟଡ୍‌ଙ୍କ ପରି ଟେସିଟୋରି ମଧ୍ୟ ଅଧ୍ୟୟନ ପାଇଁ ରାଜସ୍ଥାନର ଗ୍ରାମ୍ୟକବିମାନଙ୍କ ସହିତ ପରାମର୍ଶ କରୁଥିଲେ ତଥା ସେମାନଙ୍କଠାରୁ ରେକର୍ଡ଼ପତ୍ରମାନ ସଂଗ୍ରହ କରିଥିଲେ ।

ଭାଷା ଓ ସାହିତ୍ୟ, ନୃଜାତି ବିଦ୍ୟା ଏବଂ ଧର୍ମ ଅଧ୍ୟୟନ ମାଧ୍ୟମରେ ଭାରତର ଅତୀତକୁ ଅଧ୍ୟୟନ କରିବାରେ ଆଗ୍ରହୀ ବିଦ୍ୱାନ୍‌ମାନଙ୍କର କ୍ରମଶଃ ସଂଖ୍ୟାବୃଦ୍ଧି ହେଲା । ଊନବିଂଶ ଶତାବ୍ଦୀରେ ଭାରତ-ବିଦ୍ୟା ବା ଇଣ୍ଡୋଲୋଜିରେ ମହତ୍ତ୍ୱପୂର୍ଣ୍ଣ ଅଭିବୃଦ୍ଧି ଘଟିଲା । ଭାରତ-ବିଦ୍ୟାର ଅର୍ଥ ହେଲା ଅଣ-ଭାରତୀୟମାନଙ୍କ ଦ୍ୱାରା ଭାରତ ବିଷୟକ ଅଧ୍ୟୟନ । ଊନବିଂଶ ଶତାବ୍ଦୀରେ ୟୁରୋପୀୟ ବିଦ୍ୱାନ୍‌ମାନେ ଯେଉଁ ଗବେଷଣା ପଦ୍ଧତିକୁ ବିକଶିତ କରିଥିଲେ, ଏଥିରେ ତାକୁ ବ୍ୟବହାର କରାଯାଇ ଭାରତର ଅଧ୍ୟୟନ କରାଯାଏ । ଅତୀତକୁ 'ପୁନରାବିଷ୍କାର' କରିବା ସକାଶେ ଆଧୁନିକ ଟେକ୍‌ନିକ୍‌ଗୁଡ଼ିକୁ ଭାରତରେ ମଧ୍ୟ ପ୍ରୟୋଗ କରାଗଲା । ଏଥିରେ ବିଶେଷକରି ଜେମ୍ସ ପ୍ରିନ୍‌ସେପଙ୍କ ବ୍ରାହ୍ମୀ ଲିପିର ପଠନ ଅନ୍ତର୍ଭୁକ୍ତ ଥିଲା । ପ୍ରାଚୀନ ଅତୀତ ସମ୍ବନ୍ଧୀୟ ଅନେକ ଶିଳାଲେଖ ବ୍ରାହ୍ମୀ ଲିପିରେ ଉପଲବ୍ଧ ଥିଲା, ମାତ୍ର ସେହି ଲିପିକୁ କେମିତି ପାଠ କରାଯିବ, ସେହି ଜ୍ଞାନ ଆଉ କାହାକୁ ଜଣା ନ ଥିଲା । ଭାରତ ଇତିହାସର ବିବରଣୀ ମୁଖ୍ୟତଃ ଶିଳାଲେଖରେ ରହିଥିଲା । ତେଣୁ ପ୍ରାଚୀନ ଲିପିର ପଠନଶୈଳୀ ଆବିଷ୍କାର ହେଲା ଉତ୍ତାରୁ ଧାର୍ମିକ ଏବଂ ସାହିତ୍ୟିକ ସୂତ୍ରସାମଗ୍ରୀ ବାହାରେ ଅନ୍ୟ ସୂତ୍ରସାମଗ୍ରୀରୁ ଅତୀତ ସମ୍ବନ୍ଧରେ ଜାଣିବା ସହଜ ହେଲା । ଏହା ଅତୀତ ସମ୍ବନ୍ଧରେ ନୂଆ ଜ୍ଞାନ ପ୍ରଦାନ କଲା । ଲିପିବିଦ୍ୟା (epigraphy) ସୂତ୍ରରୁ ଯେଉଁ ନୂଆ ସାମଗ୍ରୀମାନ ମିଳିଲା, ତାହା ଐତିହାସିକମାନଙ୍କୁ ଏକ ନୂଆ ଦୃଷ୍ଟିକୋଣ ଦେଲା । ଏହି ସୂତ୍ରସାମଗ୍ରୀକୁ ଭବିଷ୍ୟତ୍‌ରେ ଆହୁରି ମଧ୍ୟ ବ୍ୟବହାର କରାଯାଇପାରିବ । ତାକୁ ସଠିକ୍ ଐତିହାସିକ କାଳ ନିରୂପଣ ପାଇଁ ଆରମ୍ଭରେ ବ୍ୟବହାର କରାଯାଇଥିଲା । ପରବର୍ତ୍ତୀ ସମୟରେ ସାମାଜିକ ଓ

ଆର୍ଥିକ ଇତିହାସ ଏବଂ ଧାର୍ମିକ ସଂପ୍ରଦାୟଗୁଡ଼ିକର ଇତିହାସ ଅଧ୍ୟୟନରେ ତା'ର ଉପଯୋଗିତାକୁ ଗବେଷକମାନେ ବୁଝିପାରିଲେ । ଦ୍ୱିଭାଷିକ ମୁଦ୍ରା-ପରମ୍ପରାର ପଠନରୁ ମୁଦ୍ରାବିଦ୍ୟା (Numismatics)ର ବିକାଶ ହେଲା । ଖ୍ରୀଷ୍ଟାବ୍ଦର ଆରମ୍ଭ କାଳରେ ମୁଦ୍ରିତ ଇଣ୍ଡୋ-ଗ୍ରୀକ୍ ମୁଦ୍ରାରେ ଉଭୟ ଗ୍ରୀକ୍ ଏବଂ ବ୍ରାହ୍ମୀ ଲିପିର ଉଲ୍ଲେଖ ଦେଖିବାକୁ ମିଳିଲା, ଯାହାକୁ ଭିତ୍ତିକରି ମୁଦ୍ରାବିଦ୍ୟା ଆରମ୍ଭ ହେଲା । କେତେକ ମୁଦ୍ରାରେ ଗ୍ରୀକ୍‌ରେ ଲିଖିତ ରାଜାଙ୍କ ନାମର ଏକ ସମାର୍ଥକ ଶବ୍ଦ ବ୍ରାହ୍ମୀରେ ଲେଖାଯାଇଥିଲା । ଏହା ବ୍ରାହ୍ମୀ ଲିପିର ପଠନ ପାଇଁ ବାଟ ଦେଖାଇଲା । ପୁରାତାତ୍ତ୍ୱିକ ଅବଶେଷ ଖୋଜିବା ପାଇଁ ଆଲେକ୍‌ଜାଣ୍ଡାର କନିଂହାମ୍ ଭାରତର ଗ୍ରାମାଞ୍ଚଳକୁ ସର୍ବେକ୍ଷଣ କଲେ । ସେ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂଙ୍କ ଲିଖିତ ବିବରଣୀକୁ ମାର୍ଗଦର୍ଶକ ଭାବରେ ବ୍ୟବହାର କରୁଥିଲେ । ହୁଏନ୍‌ସାଂ ଥିଲେ ଚୀନ୍‌ର ଜଣେ ବୌଦ୍ଧ ସନ୍ନ୍ୟାସୀ; ସିଏ ସପ୍ତମ ଶତାବ୍ଦୀରେ ଭାରତ ପରିଭ୍ରମଣ କରିଥିଲେ । କନିଂହାମ ତାଙ୍କ ଗବେଷଣାର ସାରାଂଶକୁ ନିଜ ପୁସ୍ତକ 'ଦ ଏନ୍‌ସିଏଣ୍ଟ ଜିଓଗ୍ରାଫି ଅଫ୍ ଇଣ୍ଡିଆ'ରେ (ଭାରତର ପ୍ରାଚୀନ ଭୂଗୋଳ) ପ୍ରକାଶିତ କଲେ । ବୃତ୍ତି ଦୃଷ୍ଟିରୁ ଦେଖିଲେ ଏମାନଙ୍କ ମଧ୍ୟରୁ ଅନେକ ବିଦ୍ୱାନ୍ ଥିଲେ ସର୍ବେକ୍ଷକ ଏବଂ ଇଞ୍ଜିନିୟର । ବିଭିନ୍ନ ଉଦ୍ଦେଶ୍ୟ ନେଇ ସେମାନେ ଭାରତକୁ ଅନୁଶୀଳନ କରୁଥିଲେ । ସଂସ୍କୃତ ପୋଥିରୁ ଆରମ୍ଭ ହୋଇଥିବା ପୋଥି ଅଧ୍ୟୟନ କ୍ରମଶଃ ବୌଦ୍ଧଧର୍ମ ସମ୍ପର୍କିତ ପାଲି ପୋଥି ଏବଂ ପରେ ଜୈନ ପରମ୍ପରାକୁ ଦର୍ଶାଉଥିବା ପ୍ରାକୃତ ପୋଥିକୁ ବିସ୍ତାରିତ ହେଲା । ଫଳରେ ଅତୀତ ଭାରତକୁ ନେଇ ରହିଥିବା ତଥ୍ୟର ମାନ, ଗୁଣ ଏବଂ ପରିମାଣ ବୃଦ୍ଧି ପାଇଲା । ମାତ୍ର ତା ସାଙ୍ଗରେ ଏକଥା ମଧ୍ୟ ସତ୍ୟ ଯେ, ଉପନିବେଶବାଦୀ ଦୃଷ୍ଟିକୋଣରୁ ଏସବୁ ସୂତ୍ରସାମଗ୍ରୀର ବିଶ୍ଳେଷଣ କରାଯାଇଥିଲା ।

ସୁଦୂର ଅତୀତରେ ଭାରତ ପରିଭ୍ରମଣରେ ଆସିଥିବା ଅନେକ ପରିବ୍ରାଜକ ବିଭିନ୍ନ ଉଦ୍ଦେଶ୍ୟରେ ନିଜ ନିଜ ବିବରଣୀମାନ ଲେଖିଥିଲେ । ତାହା ଗ୍ରୀକ୍, ଲାଟିନ୍, ଚୀନୀ ଏବଂ ଆରବିକ୍ ଭାଷାରେ ରହିଥିଲା । ତହିଁରୁ ଭାରତ ସମ୍ବନ୍ଧରେ ବିବିଧ ଦୃଷ୍ଟିକୋଣ ମିଳିଲା । ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ ଠୋସ ତଥ୍ୟ ପ୍ରମାଣଗୁଡ଼ିକୁ ଉପରୋକ୍ତ ବିବରଣୀ ସହିତ ଯୋଡ଼ି ଦେଖିଲେ ଅନେକ ନୂଆ ସାମଗ୍ରୀ ମିଳିଥାଏ । ଉଦାହରଣସ୍ୱରୂପ, ଶ୍ରୀଲଙ୍କାରୁ ପ୍ରାପ୍ତ ବିବରଣୀଗୁଡ଼ିକ ହସ୍ତଗତ ହେବା ପରେ ବୌଦ୍ଧ ସୂତ୍ରସାମଗ୍ରୀର ମୋଟ ପରିମାଣ ଖୁବ୍ ବ୍ୟାପକ ହେଲା । ଯାହା ବା ଅଭାବ ରହିଥିଲା ତାକୁ ଚୀନୀ ଏବଂ ମଧ୍ୟଏସିଆର ଭାଷାଗୁଡ଼ିକରେ ଅନୂଦିତ ବୌଦ୍ଧପୁରାଣ ଗ୍ରନ୍ଥମାନ ପୂରଣ କଲା । କେତେକ କ୍ଷେତ୍ରରେ ବିବିଧ ଚିନ୍ତନ ପାଇଁ ଏହା ଖୁବ୍ ମହତ୍ତ୍ୱପୂର୍ଣ୍ଣ ସିଦ୍ଧ ହେଲା । ଠିକ୍ ସେହିଭଳି, ଆରବିକ୍ ଓ ପାର୍ସୀରେ ଲିଖିତ ଭାରତ ଇତିହାସ ସମ୍ପର୍କିତ ପୁସ୍ତକକୁ ସ୍ୱତନ୍ତ୍ର ରୂପରେ ଅଧ୍ୟୟନ କରାଗଲା । ପଶ୍ଚିମ ଏସିଆରେ ଇସଲାମ୍ ସଂସ୍କୃତିର କେବଳ ସହାୟକ ଗ୍ରନ୍ଥ ଭାବରେ ସେଗୁଡ଼ିକୁ ଦେଖାଗଲା ନାହିଁ ।

ଆଶ୍ଚର୍ଯ୍ୟର କଥା, ଉପମହାଦେଶର ବାହାରକୁ ଯାଇଥିବା ଭାରତୀୟ ପରିବ୍ରାଜକମାନେ, ସେମାନଙ୍କର କୌଣସି ବିବରଣୀ ଲେଖି ନାହାନ୍ତି-ବୋଲି ମନେହୁଏ । କୁଆଡ଼େ ଯାଇଥିଲେ, କ'ଣ ସବୁ ଦେଖିଲେ, ତା'ର ବିବରଣୀ ସେମାନେ ଛାଡ଼ିଯାଇ ନାହାନ୍ତି । କେବଳ କେବେ କେବେ କାହାଣୀ ରୂପରେ ସୁଦୂର ଅଞ୍ଚଳର କଥା ଭାରତରେ ରହିଥିବାର ଜଣାଯାଏ ।

## ପ୍ରଜାତିକୁ ନେଇ ଅବଧାରଣା ଏବଂ ଭାରତ ବିଦ୍ୟା ଉପରେ ତା'ର ପ୍ରଭାବ

ଭାଷା ବିଜ୍ଞାନର ଅଧ୍ୟୟନ ୟୁରୋପରେ ତୁଳନାତ୍ମକ ଭାଷାବିଜ୍ଞାନ ନାମକ ଏକ ବିଷୟର ବିକାଶରେ ସାହାଯ୍ୟ କଲା । ବିଶେଷକରି ସଂସ୍କୃତ ବ୍ୟାକରଣର ଅଧ୍ୟୟନ ଯୋଗୁଁ ଏହା ସମ୍ଭବପର ହେଲା । ଏହାର ଫଳସ୍ୱରୂପ ଏସିଆର ପ୍ରାଚୀନ ଭାଷାଗୁଡ଼ିକର ଅଧ୍ୟୟନକୁ ପ୍ରୋତ୍ସାହନ ମିଳିଲା । ତା' ସହିତ ୟୁରେସିଆର (ୟୁରୋପ ଓ ଏସିଆର ମିଳିତ କ୍ଷେତ୍ର) ପ୍ରାଚୀନ ଇତିହାସକୁ ପୁନଃ ଅଧ୍ୟୟନ କରାଗଲା । ସଂସ୍କୃତର ଅଧ୍ୟୟନ ଏବଂ ଭାରତର ନୃଜାତି ତତ୍ତ୍ୱ (ethnography)ରୁ ମନୁଷ୍ୟ ସମାଜ ସମ୍ପର୍କରେ ଏକ ନୂଆ ବିଚାର ସୃଷ୍ଟି ହେଲା । ଏହାକୁ କୁହାଗଲା 'ପ୍ରଜାତି ବିଜ୍ଞାନ' (Race Science) । Race ବା ପ୍ରଜାତି ହେଲା ଏକ ୟୁରୋପୀୟ ଅବଧାରଣା । ନାନା କିସମର ସମସାମୟିକ ଅଧ୍ୟୟନ ଏବଂ ଅବସ୍ଥାରୁ ଏହାର ଜନ୍ମ । ଯେମିତି ଲିନେଅସ ନାମକ ଜଣେ ବିଦ୍ୱାନ୍ ଦ୍ୱାରା ତାରାଗୁଡ଼ିକୁ ବିଭିନ୍ନ କିସମରେ ବିଭକ୍ତ କରାଯାଇଥିଲା; ସାମାଜିକ ଡାରୱିନବାଦ ଯୁକ୍ତି କଲା ଯେ ସବୁଠାରୁ ଅଧିକ ସମର୍ଥ ବ୍ୟକ୍ତି କେବଳ ଜୀବନ୍ତ ରହିବ ଏବଂ ଅନ୍ୟମାନେ ବିଲୁପ୍ତ ହେବେ; ଠିକ୍ ସେହିଭଳି ସାମ୍ରାଜ୍ୟବାଦର ବିଜୟକୁ ଉଦାହରଣ ରୂପରେ ରଖି ବାକିମାନଙ୍କଠାରୁ ୟୁରୋପ ମହାନ୍ ବୋଲି ଦାବି କରାଗଲା । 'ପ୍ରଜାତି ବିଜ୍ଞାନ'କୁ ଜନ୍ମ ଦେବାରେ ଏସବୁ ଘଟଣା ସହଯୋଗ କଲା ।

ଇଂରେଜମାନେ ଭାରତରେ ଶାସନ କଲାବେଳେ ପ୍ରଜାତିଗତ ବାଛବିଚାରକୁ ମହତ୍ତ୍ୱ ଦେଲେ । ପାରମ୍ପରିକ ସମ୍ଭ୍ରାନ୍ତବଂଶଜଙ୍କୁ ସେମାନେ ପ୍ରଜାତିଗତ ଭାବେ ମହାନ୍ ବୋଲି ଗଣନା କଲେ ଏବଂ ନୂତନ ଔପନିବେଶିକ ଶାସନ ବ୍ୟବସ୍ଥାରେ ସେମାନେ (ସମ୍ଭ୍ରାନ୍ତ-ବଂଶଜମାନେ) ନିଜ ତରଫରୁ ସାମିଲ ହେବା ପୂର୍ବରୁ ସେମାନଙ୍କୁ ଉଚ୍ଚ ପଦପଦବୀମାନ ପ୍ରଦାନ କଲେ । ଏହାଦ୍ୱାରା ଔପନିବେଶିକର ମଧ୍ୟ ସାମାଜିକ ମାନ ବୃଦ୍ଧି ପାଇଲା । ଗୋଟାଏ କଷ୍ଟଲୋକର ଇତିହାସ ସୃଷ୍ଟି କରି ତଥା କର୍ତ୍ତୃତ୍ୱକୁ ଯଥୋଚିତ ସାବ୍ୟସ୍ତ କରି ନୂଆ ପରମ୍ପରାକୁ ଜନ୍ମ ଦିଆଗଲା । ଭାରତରେ ପ୍ରଜାତିର ତତ୍ତ୍ୱକୁ ଭର୍ତ୍ତି କରାଗଲା । ପ୍ରଜାତି ଆଧାରରେ କିଛି ଲୋକଙ୍କୁ ସଭ୍ୟତାର ଜନକ ବୋଲି ଆଖ୍ୟା ଦିଆଗଲା ।

ଏଫ୍. ମେକ୍ସ ମୁଲର (F. Max Muller) ହେଲେ ଏଭଳିଆ ଜଣେ ବିଦ୍ୱାନ୍ ଯିଏ ନିଜ ସଂସ୍କୃତ ଅଧ୍ୟୟନରେ ପ୍ରଜାତିର ତତ୍ତ୍ୱକୁ ପ୍ରକଟିତ କରିଛନ୍ତି । ବେଦକୁ ଅଧ୍ୟୟନ କରି ସେ ଯୁକ୍ତି କଲେ ଯେ ଭାରତରେ ଆର୍ଯ୍ୟମାନେ ପ୍ରାରମ୍ଭରୁ ରହିଆସିଛନ୍ତି । ଭାରତ ଇତିହାସରେ ତାଙ୍କର ଏହି ପୁନଃରଚନାକୁ ଇତିହାସ ବ୍ୟାଖ୍ୟା କ୍ଷେତ୍ରରେ ପ୍ରମୁଖ ଯୋଗଦାନ ବୋଲି ଗଣନା କରାଯାଏ । ଆର୍ଯ୍ୟମାନଙ୍କୁ ସେ କଦାଚିତ ପ୍ରଜାତି ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି । ଜେମ୍ସ ମିଲ୍‌ଙ୍କ ପରି ମେକ୍ସ ମୁଲର ମଧ୍ୟ ତାଙ୍କ ଅଧ୍ୟୟନ ପାଇଁ ଭାରତ ରହଣିକୁ ଆବଶ୍ୟକ ମଣି ନ ଥିଲେ, ଯଦିଓ ଭାରତୀୟ ସମାଜକୁ ସେ ୟୁରୋପର ପୂରା ଓଲଟା ବୋଲି ବିଚାର କରୁଥିଲେ । ତାଙ୍କ ରଚିତ ପୁସ୍ତକ ‘‘ଇଣ୍ଡିଆ ହ୍ୱାଟ୍ କେନ୍ ଇଟ୍ ଟିଚ୍ ଅସ୍ ?’’ (ଭାରତ ଆମକୁ କ’ଣ ଶିକ୍ଷା ଦେଇପାରେ ?) ଏବଂ ‘‘ବାୟୋଗ୍ରାଫି ଅଫ୍ ୱାର୍ଡ୍‌ସ୍ ଏଣ୍ଡ୍ ଦ ହୋମ୍ ଅଫ୍ ଦି ଆର୍ଯ୍ୟସ୍’ (ଶବ୍ଦର ଜୀବନୀ ଏବଂ ଆର୍ଯ୍ୟମାନଙ୍କର ନିବାସସ୍ଥଳୀ)ରେ ସେ ଏହାର ପ୍ରମାଣ ଦେଇଛନ୍ତି । ତାଙ୍କର ମନୋରମ ବର୍ଣ୍ଣନା ଅନୁଯାୟୀ ଭାରତୀୟମାନେ ହେଲେ ଏକ ଭଦ୍ର, ବିନମ୍ର ଜାତି; ଧ୍ୟାନଧାରଣାରେ ସେମାନଙ୍କର ସମୟ ଅତିବାହିତ ହୁଏ । ବୈଦିକ ସଂସ୍କୃତ ଏବଂ ଭାଷାବିଜ୍ଞାନକୁ ଅନୁଶୀଳନ କରି ସେ ଆର୍ଯ୍ୟମାନଙ୍କ ସମ୍ବନ୍ଧରେ ନିଜ ସିଦ୍ଧାନ୍ତ ନିର୍ମାଣ କଲେ । ସଂସ୍କୃତ, ଗ୍ରୀକ୍ ଏବଂ ଲାଟିନ୍ ଭାଷା ମଧ୍ୟରେ ସାମଞ୍ଜସ୍ୟ ଦେଖାଇ ୱିଲିଅମ୍ ଜୋନ୍‌ସ କହିଥିଲେ ଯେ, ଏହିସବୁ ଭାଷା ହେଲେ ଏକମୂଳ; ସେଗୁଡ଼ିକର ଉତ୍ପତ୍ତି ଗୋଟାଏ ମୂଳ ଭାଷାରୁ ହୋଇଛି । ଏଣିକି ଇଣ୍ଡୋ-ୟୁରୋପିଆନ୍‌କୁ ଏଭଳି ଏକ ଭାଷା ଭାବରେ ଦେଖାଗଲା, ଯେମିତି ଅନେକ ଭାଷାର ତାହା ହେଲା ଏକ ମୂଳ ଭାଷା । ତେଣୁ ଏକ ଭାଷାବୈଜ୍ଞାନିକ ନିୟମ ଅନୁସାରେ ଭାଷାଗୁଡ଼ିକ ପରସ୍ପର ସହିତ ସମ୍ପର୍କିତ । ମାତ୍ର ବାସ୍ତବିକତା ହେଲା ଯେ ସେହି ‘ଇଣ୍ଡୋ-ୟୁରୋପିଆନ୍’ ବା ଭାରୋପୀୟ ଭାଷା ଥିଲା ଏକ ଅନୁମାନର ଭାଷା । ଏହି ଯୁକ୍ତିକୁ ବିସ୍ତାରିତ କରି ଆନୁମାନିକ ଭାଷା ‘ଇଣ୍ଡୋ-ୟୁରୋପିଆନ୍’ କହୁଥିବା ଲୋକମାନେ ଆର୍ଯ୍ୟ ପ୍ରଜାତିର ବୋଲି ଦାବି କରାଗଲା, ଯାହାକି ଠିକ୍ କଥା ନୁହେଁ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରଜାତି ଭିତ୍ତିରେ ସାମାଜିକ ଅସମତା ସମ୍ବନ୍ଧରେ ବିଚାର ଆଲୋଚନାମାନ କରାଗଲା । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେବ ଗୋବିନୋଙ୍କ (Gobineau) ରଚନା ।

ମେକ୍ସ ମୁଲରଙ୍କ ମତାନୁସାରେ, ଆର୍ଯ୍ୟମାନଙ୍କର ଉତ୍ପତ୍ତି ମଧ୍ୟ-ଏସିଆରେ । ସେମାନଙ୍କର ଗୋଟାଏ ଶାଖା ୟୁରୋପ ଗଲେ ଏବଂ ଆଉ ଏକ ଶାଖା ଇରାନ୍‌ରେ ଅବସ୍ଥାନ କଲେ । ପରବର୍ତ୍ତୀ ସମୟରେ ଇରାନ୍ ଶାଖାର ଗୋଟାଏ ପ୍ରଶାଖା ଭାରତକୁ ଆସି ବସତି ସ୍ଥାପନ କଲେ । ସେ ଋକ୍‌ବେଦର ଲେଖନ ସମୟ ପ୍ରାୟ ଖ୍ରୀଷ୍ଟପୂର୍ବ 1200 ବୋଲି ଉଲ୍ଲେଖ କଲେ । ଋକ୍‌ବେଦ ହେଲା ଭାରତରେ ଅବସ୍ଥାନ କରିଥିବା ଆର୍ଯ୍ୟମାନଙ୍କ ଦ୍ୱାରା ସୃଷ୍ଟ

ପ୍ରଥମ ଗ୍ରନ୍ଥ । ମେକ୍ସ ମୁଲରଙ୍କ ତର୍କ ଅନୁଯାୟୀ, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀ ବେଳକୁ ଆର୍ଯ୍ୟମାନେ ବହୁସଂଖ୍ୟାରେ ଉତ୍ତର-ଭାରତ ଉପରେ ଆକ୍ରମଣ କଲେ ଏବଂ ସ୍ଥାନୀୟ ଅଧିବାସୀମାନଙ୍କୁ ନିଜ କର୍ତ୍ତୃତ୍ୱାଧୀନ କଲେ । ସେମାନେ ଭାରତରେ ଇଣ୍ଡୋ-ଆର୍ଯ୍ୟ ବା ଭାରତାର୍ଯ୍ୟ ଭାଷାର ପ୍ରଚଳନ କଲେ । ଏହା ଥିଲା ବିଜୟୀର ଭାଷା । ସେମାନେ ଏକ ମହତ୍ତର ସଭ୍ୟତାର ପ୍ରତିନିଧିତ୍ୱ କରୁଛନ୍ତି ବୋଲି ବିଜୟୀ ଆର୍ଯ୍ୟମାନେ ଦାବି କରୁଥିଲେ । ଏହି ସଭ୍ୟତା ହେଲା ବୈଦିକ ସଂସ୍କୃତି, ଯାହା ଭାରତୀୟ ସଂସ୍କୃତିକୁ ଭିତ୍ତି ପ୍ରଦାନ କଲା । ଶାସକ ଓ ଶାସିତ ମଧ୍ୟରେ ପ୍ରଭେଦ ରଖିବାକୁ ଆର୍ଯ୍ୟମାନେ ଚାହୁଁଥିଲେ । ଫଳସ୍ୱରୂପ, ସମାଜକୁ କେତୋଟି ସ୍ୱତନ୍ତ୍ର ଜାତିରେ ଭାଗ ଭାଗ କରିଦିଆଗଲା । ସାମାଜିକ ଦୃଷ୍ଟିରୁ ପ୍ରତ୍ୟେକ ଜାତି ଥିଲେ ସ୍ୱୟଂପୂର୍ଣ୍ଣ । ଅର୍ଥାତ୍ ଜାତି ମଧ୍ୟରେ ବିବାହ, ଖାଦ୍ୟପେୟ ଓ ପୂଜା-ପାଠ ଆଦି ସୀମିତ ରହିବ । ଆର୍ଯ୍ୟ ଓ ଦାସ ନାମରେ ଦୁଇଟି ବର୍ଗ ସୃଷ୍ଟି କରି ଧାରଣା ଦିଆଗଲା ଯେ ଉଭୟ ଗୋଷ୍ଠୀ ପରସ୍ପର ବିରୋଧୀ । ଆର୍ଯ୍ୟ ଓ ଦାସର ଧାରଣାରେ ପ୍ରଜାତିର ଛାପ ଛାଡ଼ି ଦିଆଗଲା । ଏହାକୁ ଯୁକ୍ତିନିଷ୍ଠ କରିବାପାଇଁ ମେକ୍ସ ମୁଲର ମତ ଦେଲେ, ଋଗ୍‌ବେଦରେ ଶାରୀରିକ ଦୃଷ୍ଟିରୁ ଆର୍ଯ୍ୟମାନେ ଦାସମାନଙ୍କଠାରୁ ପୃଥକ୍ ବୋଲି ବର୍ଣ୍ଣନା ରହିଛି । ବିଶେଷକରି ଶରୀରର ରଙ୍ଗ ଦୃଷ୍ଟିରୁ ଉଭୟେ ପରସ୍ପରଠାରୁ ଭିନ୍ନ । ଆର୍ଯ୍ୟ ଓ ଦାସ ଦୁଇଟି ଭିନ୍ନ ଭିନ୍ନ ପ୍ରଜାତିର ପ୍ରତିନିଧିତ୍ୱ କରନ୍ତି ବୋଲି ବ୍ୟାଖ୍ୟା କରାଗଲା । ଜାତି (caste) ପାଇଁ ପ୍ରଜାତି (race)କୁ ବିଜ୍ଞାନସମ୍ମତ ବିଶ୍ଳେଷଣ ବୋଲି ତର୍କ ଦିଆଗଲା । ସେ ଅନୁଯାୟୀ ଚାରୋଟି ପ୍ରମୁଖ ଜାତି ବା ବର୍ଣ୍ଣ ଚାରିଗୋଟି ପ୍ରମୁଖ ପ୍ରଜାତିର ପ୍ରତିନିଧିତ୍ୱ କରନ୍ତି ବୋଲି କୁହାଗଲା । ନିଜ ନିଜ ପ୍ରଜାତିର ଅସ୍ମିତାକୁ ବଜାୟ ରଖିବା ପାଇଁ ଜାତି ବ୍ୟବସ୍ଥାରେ ଅନ୍ତର୍ଜାତୀୟ ବିବାହକୁ ଦୃଢ଼ ଭାବେ ମନା କରାଯାଇଛି ବୋଲି ମତ ଦିଆଗଲା ।

ପ୍ରଜାତି ଏବଂ ଭାଷା ମଧ୍ୟରେ ସମାନତା ଦେଖିବାଟା ତ୍ରୁଟିପୂର୍ଣ୍ଣ ହେବ ବୋଲି ମେକ୍ସ ମୁଲର ମଧ୍ୟ ସ୍ୱୀକାର କରିଛନ୍ତି । ମାତ୍ର ତାକୁ ବ୍ୟବହାର କରାଯାଏ, କାରଣ ସାମାଜିକ ବ୍ୟବଧାନକୁ ସୁସ୍ପଷ୍ଟ କରିବାପାଇଁ ତା'ର ବ୍ୟବହାର ସହଜ ହୁଏ । ପରବର୍ତ୍ତୀକାଳୀନ ରଚନାରେ ମେକ୍ସ ମୁଲର ଏହି ତ୍ରୁଟି କଥା ଦର୍ଶାଇଥିଲେ । ମାତ୍ର ସେତେବେଳକୁ ଏକଥା ସ୍ଥାପିତ ହୋଇ ସାରିଥିଲା । ଆର୍ଯ୍ୟମାନଙ୍କୁ ପ୍ରଜାତି ଆଧାରରେ ଦେଖାଯିବା ଖୁବ୍ ଭ୍ରମାତ୍ମକ, କାରଣ ପ୍ରାଚୀନ ଗ୍ରନ୍ଥରେ ସଂସ୍କୃତ କହୁଥିବା ଏବଂ ଜାତି ନିୟମ ପାଳନ କରୁଥିବା ବ୍ୟକ୍ତିକୁ ଆର୍ଯ୍ୟ ବୋଲି ବ୍ୟାଖ୍ୟା କରାଯାଇଛି । ଭାଷା ଓ ପ୍ରଜାତି ମଧ୍ୟରେ ସମାନତା ଦେଖିବାର ଯେଉଁ ମନୋଭାବ, ତା'ର ଏଣିକି ବ୍ୟାପକ ପରିଣାମ ଦେଖିବାକୁ ମିଳିଲା । ଏହାର ପ୍ରଭାବରେ ଦ୍ରାବିଡ଼ ଭାଷା ଅଧ୍ୟୟନ କରୁଥିବା କେତେକ ବିଦ୍ୱାନ୍ କହିଲେ, ଆର୍ଯ୍ୟମାନଙ୍କର ଭାରତ ଆଗମନ ପୂର୍ବରୁ ଦ୍ରାବିଡ଼ ନାମରେ ଏକ ସ୍ୱତନ୍ତ୍ର ପ୍ରଜାତି ଏଠି ଅବସ୍ଥାନ କରୁଥିଲେ । ସେମାନଙ୍କ ମତରେ,

ଇଣ୍ଡୋ-ଆର୍ଯ୍ୟ ବା ଭାରତାର୍ଯ୍ୟ ଭାଷା ହେଲା ଏକ ବକ୍ର ବା inflected ଭାଷା ଏବଂ ଦ୍ରାବିଡ଼ ଭାଷାଗୁଡ଼ିକଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଦ୍ରାବିଡ଼ ଭାଷାଗୁଡ଼ିକ ପରସ୍ପର ମଧ୍ୟରେ ଯୋଡ଼ି ହୋଇପାରନ୍ତି, ମାତ୍ର ଆର୍ଯ୍ୟଭାଷାଠାରୁ ପୃଥକ୍ ରହନ୍ତି । ପରବର୍ତ୍ତୀ ସମୟରେ ପ୍ରୋଟୋ-ଦ୍ରାବିଡ଼ ଭାଷାକୁ ମୂଳ ଭାଷା ରୂପେ ଚିହ୍ନିତ କରାଗଲା; ତାମିଲ ସହିତ ଏହା ସମାନ ବୋଲି କୁହାଗଲା । ଏହା ଐତିହାସିକ ଦୃଷ୍ଟିରୁ କିମ୍ବା ଭାଷାବିଜ୍ଞାନ ଦୃଷ୍ଟିରୁ ଭ୍ରାନ୍ତିକର କଥା । ତାମିଲ ଓ ପ୍ରୋଟୋ-ଦ୍ରାବିଡ଼ ଭାଷା କଦାପି ଏକ ହୋଇ ନ ପାରନ୍ତି । ଯେମିତି ଇଣ୍ଡୋ-ୟୁରୋପିଆନ ବା ଭାରୋପୀୟ, ସେମିତି ପ୍ରୋଟୋ-ଦ୍ରାବିଡ଼ ହେଲା ଏକ ଅନୁମାନର ଭାଷା । ବାସ୍ତବିକତାରେ ଏହା ନାହିଁ । ଦ୍ରାବିଡ଼ ଭାଷାକୁ ନେଇ ଏହାକୁ ଅନୁମାନ କରାଯାଏ । ତାମିଲ ଓ ଦକ୍ଷିଣର ଅନ୍ୟାନ୍ୟ ଭାଷାଗୁଡ଼ିକର ଆଧାରରେ ଦ୍ରାବିଡ଼ ଭାଷାଗୁଡ଼ିକୁ ପୁନର୍ନିର୍ମାଣ କରାଗଲା । ସମ୍ଭବତଃ ତାମିଲର ଉତ୍ପତ୍ତି ହେଲା ଏକ ପରବର୍ତ୍ତୀକାଳୀନ ଭାଷା ରୂପରେ । ଆର୍ଯ୍ୟମାନଙ୍କର ଭାରତରେ ପ୍ରବେଶ ପୂର୍ବରୁ ଦ୍ରାବିଡ଼ ସଭ୍ୟତାର ପ୍ରଚଳନ ଥିଲା ବୋଲି ସିଦ୍ଧାନ୍ତ ବାହାରିଲା । ଖ୍ରୀଷ୍ଟପୂର୍ବ ତୃତୀୟ ସହସ୍ରାବ୍ଦୀ ବେଳର ସିନ୍ଧୁ ସଭ୍ୟତାର ଓ ସେଠାକାର ମହେଞ୍ଜୋଦାରୋ ଓ ହରପ୍ପା ସହରର ୧୨୨୦ ଦଶକରେ ଯେତେବେଳେ ଆବିଷ୍କାର ହେଲା, ଉପରୋକ୍ତ ଦାବି ଅଧିକ ଦୃଢ଼ୀଭୂତ ହେଲା ।

ଆର୍ଯ୍ୟ ପ୍ରଜାତି ସିଦ୍ଧାନ୍ତକୁ ନେଇ ଭାରତରେ ବ୍ୟାପକ ପ୍ରତିକ୍ରିୟା ଦେଖିବାକୁ ମିଳିଲା । ଏପରିକି ଯେଉଁମାନେ ଐତିହାସିକ ନୁହନ୍ତି, ସେମାନେ ଏ ନେଇ ପ୍ରତିକ୍ରିୟା ପ୍ରକାଶ କଲେ । ବିଭିନ୍ନ ଦଳ ମଧ୍ୟରେ ଚାଲିଥିବା ରାଜନୈତିକ ବିବାଦ ବେଳେ ଏହାକୁ ବ୍ୟବହାର କରାଗଲା । ଏବେ ମଧ୍ୟ ସେହି ବ୍ୟବହାର ଊଣା ହୋଇ ନାହିଁ । ଦୁଇଟି ସମ୍ପୂର୍ଣ୍ଣ ବିପରୀତଧର୍ମୀ ଉଦାହରଣରୁ ଏକଥା ସ୍ପଷ୍ଟ ହେବ । ଊନବିଂଶ ଶତାବ୍ଦୀରେ ଦଳିତ ବିଷୟର ବିଶାରଦ ସମାଜ ସଂସ୍କାରକ ଜ୍ୟୋତିବା ରାଓ ଫୁଲେ ଯୁକ୍ତି କଲେ ଯେ, ଆର୍ଯ୍ୟମାନେ ଭାରତ ବାହାରର ଲୋକ ଏବଂ ସଂସ୍କୃତ କହୁଥିବା ବ୍ରାହ୍ମଣମାନେ ହେଲେ ସେମାନଙ୍କର ଉତ୍ତରାଧିକାରୀ । ତେଣୁ ତଳ ଜାତିର ସ୍ଥାନୀୟ ଲୋକ ହେଲେ ଭାରତଭୂମିର ପ୍ରକୃତ ଉତ୍ତରାଧିକାରୀ । ଏହି ଯୁକ୍ତି ଯୋଗୁଁ ପ୍ରଭାବଶାଳୀ ଉଚ୍ଚ ଜାତି ଏବଂ ବିଜିତ ଓ ଶୋଷିତ ତଳ ଜାତି ମଧ୍ୟରେ ବିବାଦ ସୃଷ୍ଟି ହେଲା । ଏହା ଜାତି ସଂଘର୍ଷକୁ ଭିତ୍ତି ପ୍ରଦାନ କଲା । ତା' ସହିତ ଜାତି ବିଭାଜନକୁ ବୁଝିବା ପାଇଁ ବିଶ୍ଳେଷଣ ଦେଲା । ମୁଖ୍ୟତଃ ଦକ୍ଷିଣ ଭାରତରେ ପରବର୍ତ୍ତୀ ସମୟରେ ଯେତେ ଯାହା ଅ-ବ୍ରାହ୍ମଣବାଦୀ ଏବଂ ବ୍ରାହ୍ମଣ ବିରୋଧୀ ରାଜନୈତିକ ଆନ୍ଦୋଳନ ହେଲା, ତାହା ଏହି ତର୍କକୁ ଆଧାର କଲା ।

ଏହାର ଠିକ୍ ବିପରୀତ, ଆଜିକାଲି କେତେକ ଲୋକ ହିନ୍ଦୁ ରାଷ୍ଟ୍ରୀୟତା ଆଧାରରେ ଭାରତୀୟ ଇତିହାସର ବ୍ୟାଖ୍ୟା କରୁଛନ୍ତି । ଏହାକୁ ହିନ୍ଦୁତ୍ୱ ବିଚାର (Hindu Ideology)

ବୋଲି କୁହାଯାଉଛି । ବିଂଶ ଶତାବ୍ଦୀର ଆରମ୍ଭରୁ ଏହି ମତ ଆର୍ଯ୍ୟ ଆକ୍ରମଣ ସିଦ୍ଧାନ୍ତକୁ ସମର୍ଥନ କରୁ ନାହିଁ । ବର୍ତ୍ତମାନ ଏହାର ଦାବି ହେଲା ଯେ, ଆର୍ଯ୍ୟମାନେ ଭାରତର ସ୍ଥାନୀୟ ମୂଳ ଅଧିବାସୀ ଏବଂ ସେମାନଙ୍କର ଭାଷା ସଂସ୍କୃତ ହେଉଛି ଏଠିକାର ଭାଷା । ଏହି ପରିବର୍ତ୍ତିତ ମତ ଅନୁଯାୟୀ, ଯେଉଁମାନଙ୍କର ପୂର୍ବଜ ଭାରତର ମୂଳ ବାସିନ୍ଦା ନୁହନ୍ତି ଏବଂ ଯେଉଁମାନଙ୍କର ଧର୍ମ ଭାରତରେ ଉତ୍ପତ୍ତି ଲାଭ କରି ନାହିଁ, ସେମାନେ ସମସ୍ତେ ହେଲେ ବାହାର ଲୋକ, ବିଦେଶୀ । ଏହା ମୂଳ ଅଧିବାସୀ ଏବଂ ବିଦେଶୀର ସଂଜ୍ଞା ଆଡ଼କୁ ବିତର୍କକୁ ଟାଣିନେଇଛି । ଜାତିରୁ ଯାଇ ଧ୍ୟାନ ଏବେ ଧର୍ମରେ । ବିଦେଶୀମାନେ ଉଚ୍ଚ ଜାତିର ନୁହନ୍ତି ! ସେମାନେ ହେଲେ ମୁସଲମାନ ଏବଂ ଖ୍ରୀଷ୍ଟିଆନ୍ ଏବଂ ସେମାନଙ୍କର ଧର୍ମ ପଶ୍ଚିମ ଏସିଆରେ ଜନ୍ମିତ । କମ୍ୟୁନିଷ୍ଟମାନଙ୍କୁ ମଧ୍ୟ ଏହି ବିଦେଶୀ ଗୋଷ୍ଠୀରେ ରଖାଯାଉଛି । ହିନ୍ଦୁତ୍ୱ ବିଚାର ଅନୁଯାୟୀ ଆର୍ଯ୍ୟମାନଙ୍କର ପ୍ରତ୍ୟକ୍ଷ ଉତ୍ତରାଧିକାରୀ ହେଲେ ହିନ୍ଦୁ ଏବଂ କେବଳ ସେମାନଙ୍କୁ ଭାରତର ମୂଳ ବାସିନ୍ଦା ବୋଲି କୁହାଯିବ । ଯେହେତୁ ସେମାନେ ମୂଳ ବାସିନ୍ଦା, କେବଳ ସେମାନେ ହେଲେ ଏହି ଭୂମିର ସ୍ୱତ୍ୱାଧିକାରୀ । ଏପରିକି ଇସଲାମ୍ ଓ ଖ୍ରୀଷ୍ଟ ଧର୍ମକୁ ଧର୍ମାନ୍ତର କରିଥିବା ଏଠିକାର ଲୋକ ବି ସେହି ସ୍ୱତ୍ୱାଧିକାରରୁ ବଞ୍ଚିତ ବୋଲି ଧାରଣା ଦିଆଯାଉଛି ।

ଆରମ୍ଭ ବେଳର ମୁଖ୍ୟ ଐତିହାସିକମାନେ ମଧ୍ୟ ଏହି ଉଭୟ କିସମର ବ୍ୟାଖ୍ୟା ସହ ଅମତ ହୋଇଛନ୍ତି । ବିଶେଷକରି ଦ୍ୱିତୀୟ ମତକୁ ସେମାନେ ପୂର୍ଣ୍ଣତଃ ବିରୋଧ କରନ୍ତି । ସେମାନେ ଆର୍ଯ୍ୟ ଆକ୍ରମଣ ସିଦ୍ଧାନ୍ତକୁ ସମର୍ଥନ କରିଥିଲେ । ସେମାନଙ୍କ ମତରେ, ଇଣ୍ଡୋ-ଆର୍ଯ୍ୟ ଭାଷା ଏବଂ ତାକୁ ବ୍ୟବହାର କରୁଥିବା ଲୋକମାନେ ହିଁ ଭାରତ ଇତିହାସର ମୂଳ । ଏହା ଉଚ୍ଚ ଜାତିର ଲୋକଙ୍କୁ ଆକୃଷ୍ଟ କଲା, କାରଣ ସେମାନେ ଏକ ମହତ୍ତର ପ୍ରଜାତି, ଅର୍ଥାତ୍ ଆର୍ଯ୍ୟ ପ୍ରଜାତିର ବଂଶଧର ଭାବରେ ନିଜକୁ ଚିହ୍ନିତ କରୁଥିଲେ । କେତେକ ଉଚ୍ଚ ଜାତିର ଲୋକ ଆର୍ଯ୍ୟ ପ୍ରଜାତିର ହେବା ଅର୍ଥ ଇଂରେଜମାନଙ୍କ ସହିତ କୁଳସମ୍ବନ୍ଧ ଯୋଡ଼ିବା ବୋଲି ଗର୍ବ ଅନୁଭବ କରୁଥିଲେ । ଏହି ସିଦ୍ଧାନ୍ତ ହିନ୍ଦୁ ଜାତିର ପ୍ରଲମ୍ବିତ ଏବଂ ଅତୁଟ ଇତିହାସ ରହିଥିବା କଥା ଦାବି କଲା । ମାତ୍ର 1920 ଦଶକରେ ଯେତେବେଳେ ସିନ୍ଧୁ ସଭ୍ୟତାର ଅବଶେଷମାନ ଆବିଷ୍କୃତ ହେଲା ଏବଂ ସେହି ସଭ୍ୟତାରେ ନଗର ସଂସ୍କୃତି ରହିଥିବା କଥା ସିଦ୍ଧ ହେଲା, ଏହି ସିଦ୍ଧାନ୍ତକୁ ଅନ୍ତର୍ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଲା । ବୈଦିକ ସାହିତ୍ୟ ରଚନାକାଳ ପୂର୍ବରୁ ସିନ୍ଧୁ ସଭ୍ୟତାର ନଗର ସଂସ୍କୃତି ବିକାଶ ଲାଭ କରିଥିଲା । ଅର୍ଥାତ୍ ଇଣ୍ଡୋ-ଆର୍ଯ୍ୟ ଭାଷାଭାଷୀ ଲୋକଙ୍କର ସାହିତ୍ୟର ବିକାଶ ପୂର୍ବରୁ ଭାରତରେ ଏକ ସଂସ୍କୃତି ପ୍ରଚଳିତ ଥିଲା ଏବଂ ତା'ଠାରୁ ବଡ଼ କଥା, ଉଭୟ ସଂସ୍କୃତି ମଧ୍ୟରେ କୌଣସି ସାମଞ୍ଜସ୍ୟ ନ ଥିଲା । ଫଳରେ ବୈଦିକ ସଂସ୍କୃତିକୁ ଏବେ ପଛକୁ ନିଆଯାଇ ସିନ୍ଧୁ ସଭ୍ୟତା ସହିତ ଯୋଡ଼ିବାକୁ କେତେକ ଲୋକ ପ୍ରୟାସ କରୁଛନ୍ତି, ଯାହାଫଳରେ କି ହିନ୍ଦୁମାନଙ୍କର

ଏକ ପ୍ରଲମ୍ବିତ ଇତିହାସ ସଂରଚନା କରାଯାଇପାରିବ । ବର୍ତ୍ତମାନ ପ୍ରମୁଖ ଇତିହାସକାରମାନେ ଭାରତାର୍ଯ୍ୟ ବା ଇଣ୍ଡୋ-ଆର୍ଯ୍ୟ ଭାଷାକୁ ଇଣ୍ଡୋ-ୟୁରୋପୀୟ ବା ଭାରୋପୀୟ ଭାଷା ପରିବାରର ବୋଲି ସିଦ୍ଧ କରିବାକୁ ଭାଷାବୈଜ୍ଞାନିକ ତଥ୍ୟ-ପ୍ରମାଣମାନ ଦିଅନ୍ତି । ସେମାନଙ୍କ ମତରେ, ଭାରତ-ଇରାନ୍ ସୀମାନ୍ତରୁ ଉତ୍ତର-ଭାରତକୁ ସମ୍ଭବତଃ ସାନ ସାନ ଗୋଷ୍ଠୀରେ ଲୋକ ଆସି ଜନବସତିମାନ ସ୍ଥାପନ କରିଥିଲେ । ଅର୍ଥାତ୍ ଭାରତରେ ପୂର୍ବରୁ ପ୍ରତିଷ୍ଠିତ ହୋଇ ରହିଥିବା ସଂସ୍କୃତିକୁ ବ୍ୟାପକ ଆର୍ଯ୍ୟ ଆକ୍ରମଣ ଦ୍ୱାରା ଧ୍ୱଂସ କରାଯାଇ ନ ଥିଲା । ଏଭଳି ଆକ୍ରମଣ ସପକ୍ଷରେ ପୁରାତାତ୍ତ୍ୱିକ ପ୍ରମାଣ ମଧ୍ୟ ନାହିଁ ।

'ଆର୍ଯ୍ୟ' ପ୍ରସଙ୍ଗକୁ ନେଇ ବର୍ତ୍ତମାନର ହିନ୍ଦୁତ୍ୱ ବିଚାର ଏବଂ ଊନବିଂଶ ଶତାବ୍ଦୀର ଉପନିବେଶବାଦୀ ଚିନ୍ତାଧାରା ମଧ୍ୟରେ ନିଗୂଢ଼ ସମ୍ବନ୍ଧ ଦେଖିବାକୁ ମିଳିଥାଏ । ବିଶେଷକରି ଥିଓସୋଫିଷ୍ଟମାନଙ୍କ ବିଚାର ଓ ହିନ୍ଦୁତ୍ୱବାଦୀ ବିଚାର ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । ଉଦାହରଣସ୍ୱରୂପ, ଜଣେ ଆଦ୍ୟ ଥିଓସୋଫିଷ୍ଟ କର୍ଣ୍ଣେଲ ଓଲକଟଙ୍କ ମତରେ, ଇଣ୍ଡୋ-ଆର୍ଯ୍ୟ ଭାଷା ପରି ଆର୍ଯ୍ୟମାନେ ହେଲେ ଭାରତର ମୂଳ ବାସିନ୍ଦା ଏବଂ ଆର୍ଯ୍ୟ ସଂସ୍କୃତି ହେଲା ବିଶ୍ୱ ସଭ୍ୟତାର ପାଳନଭୂମି; ଭାରତରୁ ହିଁ ସଂସ୍କୃତି ୟୁରୋପକୁ ପ୍ରସାରିତ ହୋଇଛି; ଏବଂ ଆର୍ଯ୍ୟ ସାହିତ୍ୟ ବା ବୈଦିକ ସାହିତ୍ୟ ହେଲା ଜ୍ଞାନର ଆଦିମୂଳ । ଏହି ଧରଣର ଥିଓସୋଫିବାଦୀ ମତ ଊନବିଂଶ ଶତାବ୍ଦୀର ସମାଜ ସଂସ୍କାର ଆନ୍ଦୋଳନକୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ଏଭଳି ମତର ପ୍ରଭାବରେ ଆର୍ଯ୍ୟ ସମାଜ ପ୍ରଭାବିତ ହୋଇ ଆର୍ଯ୍ୟମାନେ ଶ୍ରେଷ୍ଠ ଜାତି ବୋଲି ଦାବି କରୁଥିଲା । ଅନେକ ଇଂରେଜ ଏବଂ ଅନ୍ୟ ୟୁରୋପୀୟ ଭାରତରେ ଥିଓସୋଫି ଆନ୍ଦୋଳନର ପ୍ରମୁଖ କାର୍ଯ୍ୟକର୍ତ୍ତା ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଭାରତୀୟ ରାଷ୍ଟ୍ରୀୟତା ପ୍ରତି ନିଜ ସହାନୁଭୂତି ପ୍ରଦର୍ଶନ କରିବା ଲାଗି ଏହି ଧରଣର ମତକୁ ସମର୍ଥନ କରୁଥିଲେ । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଏବଂ ବିଂଶ ଶତାବ୍ଦୀର ଆରମ୍ଭରେ ପ୍ରଜାତିର ସିଦ୍ଧାନ୍ତ, ଆର୍ଯ୍ୟକୁ ନେଇ ବିଚାର, ଥିଓସୋଫିର ବିଚାର ଏବଂ ରାଷ୍ଟ୍ରୀୟତାର ଚିନ୍ତାଧାରା ମଧ୍ୟରେ କିସମ କିସମର ସମ୍ପର୍କ ଦେଖିବାକୁ ମିଳୁଥିଲା । ବିଚାରର ସେହି ମନ୍ଥନ ପ୍ରକ୍ରିୟାରେ ଆର୍ଯ୍ୟ ବିଷୟକ ସିଦ୍ଧାନ୍ତ ଗବେଷଣାରେ ପ୍ରାଧାନ୍ୟ ପାଇଲା ।

ଭାଷା ଓ ପ୍ରଜାତି ଏକ ବୋଲି ଆଗରୁ ସୃଷ୍ଟି ହୋଇଥିବା ଧାରଣା ବିଂଶ ଶତାବ୍ଦୀର ମଧ୍ୟଭାଗରେ ସ୍ୱୀକୃତି ହରାଇଲା । ପ୍ରକୃତରେ ଦେଖିଲେ, ଗୋଟାଏ ପ୍ରଜାତିକୁ ନେଇ ସାମାଜିକ ସଂରଚନା ହୋଇପାରେ ବୋଲି ଦାବି କରୁଥିବା ବିଚାରକୁ ଲୋକ ସନ୍ଦେହ ଦୃଷ୍ଟିରେ ଦେଖିଲେ । ଫଳରେ ଆର୍ଯ୍ୟ ପ୍ରଜାତିର ଧାରଣା ମାଡ଼ ଖାଇଲା । ଅସଲରେ ପ୍ରଜାତି ହେଲା ଏକ ସାମାଜିକ ସଂରଚନା । ଏହାର ଶରୀରତତ୍ତ୍ୱ ସହିତ କୌଣସି ସମ୍ବନ୍ଧ ନାହିଁ । ଆଗରୁ ଏହାର ଶରୀରତତ୍ତ୍ୱ

ସହିତ ସମ୍ବନ୍ଧ ରହିଛି ବୋଲି ଦାବି କରାଯାଉଥିଲା, ଯାହାକୁ ଆଜିକାଲି ଆରମ୍ଭ ହୋଇଥିବା ଜିନ ଅଧ୍ୟୟନ ସିଦ୍ଧାନ୍ତ ଖାରଜ କଲା । ତେଣୁ 'ଆର୍ଯ୍ୟ' ପ୍ରଜାତି ନ କହି 'ଇଣ୍ଡୋ-ଆର୍ଯ୍ୟ ଭାଷାଭାଷୀସମୂହ' ବୋଲି କହିବା ଅଧିକ ସଠିକ୍ ହେବ । ଅବଶ୍ୟ ଏକ ସଂକ୍ଷିପ୍ତ ଶବ୍ଦ ରୂପରେ 'ଆର୍ଯ୍ୟ' ମଧ୍ୟ ଅଗ୍ରହଣୀୟ ହୋଇ ନ ପାରେ । ମାତ୍ର ସେତେବେଳେ ସ୍ପଷ୍ଟ ହେବା ଉଚିତ ଯେ ଏହି ଶବ୍ଦ ଏକ ଭାଷାଭାଷୀସମୂହକୁ ଚିହ୍ନିତ କରେ; ପ୍ରଜାତିକୁ ନୁହେଁ ଏବଂ ଭାଷାଭାଷୀସମୂହରେ ନାନା କିସମର ଲୋକ ରହିପାରନ୍ତି ।

## ଇତିହାସ ଏବଂ ରାଷ୍ଟ୍ରୀୟତା

ଭାରତ ସହିତ ଊନବିଂଶ ଶତାବ୍ଦୀରେ ଯେଉଁ ବର୍ଗ ଅଧିକ ସଂଶ୍ଳିଷ୍ଟ ଥିଲେ, ସେମାନେ ହେଲେ ବ୍ରିଟିଶ ପ୍ରଶାସକମାନେ । ସେମାନଙ୍କ ମଧ୍ୟରୁ ଅନେକ ଭାରତର ଇତିହାସ ରଚନା କଲେ । ଏହି ଇତିହାସକୁ 'ପ୍ରଶାସକର ଇତିହାସ' ବୋଲି କହିବା ଯଥାର୍ଥ ହେବ, କାରଣ ଶାସନର ସମସ୍ୟା କଥା, ଯଥା : ସାମ୍ରାଜ୍ୟ ଓ ରାଜବଂଶର ଉତ୍‌ଥାନ-ପତନ ଏହାର ମୁଖ୍ୟ ପ୍ରସଙ୍ଗ ଥିଲା । ଅସଲରେ, ସେତେବେଳେ ୟୁରୋପରେ ମଧ୍ୟ ରାଜବଂଶ ଓ ସାମ୍ରାଜ୍ୟ କଥାକୁ ଇତିହାସର ପ୍ରମୁଖ ବିଷୟ ମନେ କରାଯାଉଥିଲା । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ବ୍ରିଟିଶ ସାମ୍ରାଜ୍ୟର ପରିଚାଳନା ଦାୟିତ୍ୱ ମୁଣ୍ଡେଇଥିବା ବର୍ଗ ଏବଂ ଐତିହାସିକ ବର୍ଗ, ଉଭୟେ ରୋମ ସାମ୍ରାଜ୍ୟର ପ୍ରଶଂସାରେ ଶତମୁଖ ଥିଲେ । ସେଭଳି ଜଣେ ଐତିହାସିକ ହେଲେ ଭିନ୍‌ସେଣ୍ଟ ସ୍ମିଥ୍ । ଏହି ଐତିହାସିକମାନଙ୍କ ଦୃଷ୍ଟିରେ ରୋମ ସାମ୍ରାଜ୍ୟ ଥିଲା ଇଂରେଜ ସାମ୍ରାଜ୍ୟ ପାଇଁ ଆଦର୍ଶ । ଇତିହାସର ମୁଖ୍ୟ ପାତ୍ର ଥିଲେ ରାଜା-ମହାରାଜାମାନେ; ସେମାନଙ୍କ ଚାରିପାଖର ଘଟଣାକୁ କେନ୍ଦ୍ରକରି ଇତିହାସର ସଂରଚନା ହେଉଥିଲା । ଭାରତର ରାଜା ସେମାନଙ୍କ ଦୃଷ୍ଟିରେ ସ୍ୱେଚ୍ଛାଚାରୀ ହୋଇଥିବେ, ଅତ୍ୟାଚାରୀ ହୋଇଥିବେ ଏବଂ ପ୍ରଜାମାନଙ୍କର ମଙ୍ଗଳ କଥା କେବେ ଚିନ୍ତା କରୁ ନ ଥିବେ । ସୁଶାସକ ଅଶୋକ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଏବଂ ଆକବରଙ୍କୁ ନିପାତନସିଦ୍ଧ ଭାବରେ ନିଆଯାଉଥିଲା । ପ୍ରକୃତ ଶାସନ ଦୃଷ୍ଟିରୁ ଧରିନିଆଯାଇଥିଲା ଯେ, ବ୍ରିଟିଶ ପ୍ରଶାସନ ହେଉଛି ମହତ୍ତର ଏବଂ ସର୍ବୋତ୍ତମ ପ୍ରଶାସନର ଅର୍ଥ ଅମଲାତନ୍ତ୍ରର କେନ୍ଦ୍ରୀକରଣ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଯେତେବେଳେ ଭାରତୀୟମାନେ ଇତିହାସ ରଚନାରେ ହାତ ଦେଲେ, ସେମାନେ ସେହି ରାଜନୈତିକ ଏବଂ ପ୍ରଶାସନିକ ଇତିହାସର ଆଦର୍ଶକୁ ଅନୁସରଣ କଲେ ଏବଂ ଶାସକମାନଙ୍କର ମହତ୍ତ୍ୱ ଦର୍ଶାଇ ରାଜବଂଶୀୟ ଇତିହାସ (dynastic histories) ରଚନା କଲେ । ମାତ୍ର ଭାରତର ଅତୀତକୁ ଉପନିବେଶବାଦୀମାନେ

ଯେଉଁଭଳି ଭାବେ ବ୍ୟାଖ୍ୟା କରୁଥିଲେ, ତାହା ଭାରତୀୟ ଐତିହାସିକମାନେ ସ୍ୱୀକାର କରିପାରୁ ନ ଥିଲେ । ଉଭୟ ଗୋଷ୍ଠୀ ମଧ୍ୟରେ ବର୍ଦ୍ଧିଷ୍ଣୁ ରାଜନୈତିକ ପ୍ରତିଦ୍ୱନ୍ଦ୍ୱିତାରୁ ଐତିହାସିକ ବିଚାରଧାରାର ସୃଷ୍ଟି । କାଳକ୍ରମେ ଯେତେବେଳେ କ୍ଷମତା ଏବଂ ଜ୍ଞାନ ମଧ୍ୟରେ ରହିଥିବା ନିବିଡ଼ ସମ୍ବନ୍ଧକୁ ପରୋକ୍ଷରେ ଚିହ୍ନିତ କରାଗଲା, ଏକଥା ସୁସ୍ପଷ୍ଟ ହେଲା । ଇଂରାଜୀ ଭାଷା ସହିତ ପରିଚିତ ଏକ ମଧ୍ୟବର୍ଗ ଦେଶରେ ଉନ୍ମେଷ ଲାଭ କଲା ପରେ ଔପନିବେଶିକ ଏବଂ ଉପନିବେଶିତଙ୍କ (colonizcr and colonized) ମଧ୍ୟରେ ଯୋଗାଯୋଗରେ ଅଭିବୃଦ୍ଧି ଘଟିଲା ।

ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଯେଉଁ ଭାରତୀୟମାନେ ଇତିହାସ ରଚନା କରୁଥିଲେ, ତନ୍ମଧ୍ୟରେ ଅଧିକାଂଶ ହୁଏତ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ, ନୋହିଲେ ସଂଗ୍ରାମ ଦ୍ୱାରା ଅତିମାତ୍ରାରେ ପ୍ରଭାବିତ ଥିଲେ । ଏହି ସମୟର ପ୍ରମୁଖ ଐତିହାସିକ ଥିଲେ ଆର୍. ମିତ୍ର, ଆର୍.ଜି. ଭଣ୍ଡାରକର, ଆର୍.ସି. ଦତ୍ତ, ଏ.ଏସ୍. ଆଲଟେକର, ୟୁ.ଏନ୍. ଘୋଷାଲ, କେ.ପି. ଜୟସ୍ୱାଲ, ଏଚ୍.ସି. ରାୟଚୌଧୁରୀ, ଆର୍.କେ. ମୁଖର୍ଜୀ, ଆର୍.ସି. ମଜୁମଦାର, କେ.ଏ. ନୀଳକଣ୍ଠ ଶାସ୍ତ୍ରୀ ଏବଂ ଏଚ୍.ସି. ଓଝା । ଏମାନେ ସମସ୍ତେ ଜାତୀୟତା ଆନ୍ଦୋଳନର ପ୍ରଭାବରେ ଖୁବ୍ ପ୍ରଭାବିତ ଥିଲେ । ପ୍ରଚଳିତ ଐତିହାସିକ ଦୃଷ୍ଟିକୋଣକୁ ଭିତ୍ତିକରି ସେମାନେ ଐତିହାସିକ ବ୍ୟାଖ୍ୟା କରୁଥିଲେ ସତ, ମାତ୍ର ବ୍ୟାଖ୍ୟାକୁ ନିଜ ଢଙ୍ଗରେ ବାଗେଉଥିଲେ, ଯାହାକୁ ଆମେ କହିବା ଯଥାର୍ଥ ଜାତୀୟବାଦୀ ବ୍ୟାଖ୍ୟା । ପ୍ରାଚୀନ ଅତୀତକୁ ନେଇ ଯାହାସବୁ ଉପନିବେଶବାଦୀ ଅଧ୍ୟୟନ ହୋଇଥିଲା, ତହିଁରୁ ରାଷ୍ଟ୍ର ସପକ୍ଷରେ ଯାଉଥିବା ମତକୁ ଜାତୀୟବାଦୀ ଐତିହାସିକମାନେ ସମର୍ଥନ କରୁଥିଲେ ଏବଂ ବିପକ୍ଷରେ ଯାଉଥିବା ମତକୁ ସମାଲୋଚନା କରୁଥିଲେ । ତେଣୁ ଗଣତନ୍ତ୍ର, ସାମ୍ବିଧାନିକ ରାଜତନ୍ତ୍ର ଆଦି ସଂସ୍ଥା ଅତୀତରେ ଥିଲା ବୋଲି ସେମାନେ ଦୃଢ଼ ମତ ଦେଲେ । ଭାରତ ଇତିହାସରେ ମନ୍ତ୍ରୀ ପରିଷଦର ଉଲ୍ଲେଖକୁ ସେମାନେ ବ୍ରିଟିଶ ପ୍ରିଭି କାଉନସିଲ ସହିତ ତୁଳନା କଲେ । ବିଶ୍ୱ ସଭ୍ୟତାକୁ ଭାରତ ଅହିଂସା ଦାନ କରିଛି ବୋଲି ସେମାନେ ପ୍ରଶଂସା କଲେ । ମାତ୍ର ଅନ୍ୟ ପକ୍ଷରେ, ଗୁପ୍ତ ରାଜା ସମୁଦ୍ରଗୁପ୍ତଙ୍କୁ ଭାରତର ନେପୋଲିଅନ ରୂପେ ବର୍ଣ୍ଣନା କରି ତାଙ୍କ ଦିଗ୍‌ବିଜୟକୁ ଭୂରି ଭୂରି ପ୍ରଶଂସା କଲେ । ଜାତୀୟବାଦୀ ଐତିହାସିକମାନେ ଜାତୀୟତାର ଆରମ୍ଭ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ବୋଲି ଯୁକ୍ତି କଲେ, କାରଣ ସେତେବେଳେ ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନକୁ ରାଜା ପୁରୁ ପ୍ରତିରୋଧ କରିଥିଲେ ଏବଂ ମୌର୍ଯ୍ୟ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇ ସମଗ୍ର ଭାରତ ଭୂଖଣ୍ଡକୁ ବିସ୍ତାରିତ ହୋଇଥିଲା । ଜାତୀୟବାଦୀ ଦୃଷ୍ଟିରେ, ବୈଦିକ ଆର୍ଯ୍ୟ ସଂସ୍କୃତି ହେଲା ଭାରତୀୟ ସଭ୍ୟତାର ମୁଖ୍ୟ ଆଧାର । ପୁଣି ଏହି ସଭ୍ୟତାର ପ୍ରାଚୀନତା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀ କାଳର । ଅତୀତର ଅନେକ ମହାନ୍

ଉପଲବ୍ଧିର ଉତ୍ପତ୍ତି ଭାରତରେ ହୋଇଥିଲା ବୋଲି ସେମାନେ ଧୀରେ ଧୀରେ ଯୁକ୍ତି ମଧ୍ଯ ଦେବାକୁ ଲାଗିଲେ । ଏଥିରେ କୌଣସି ଆଶ୍ଚର୍ଯ୍ୟ ହେବାର ନାହିଁ ଯେ ଜାତୀୟବାଦୀ ଭାରତୀୟ ଐତିହାସିକମାନେ ପ୍ରାଚ୍ୟ ନିରଙ୍କୁଶବାଦ ସିଦ୍ଧାନ୍ତକୁ ଗ୍ରହଣ କରି ନ ଥିଲେ, ମାତ୍ର ପ୍ରାଚୀନ କାଳକୁ ଯେତେବେଳେ 'ସୁବର୍ଣ୍ଣ ଯୁଗ' ବୋଲି ଉପନିବେଶବାଦୀ ବ୍ୟାଖ୍ୟାରେ ଉଲ୍ଲେଖ କରାଗଲା, ତାକୁ ସେମାନେ ପୂର୍ଣ୍ଣ ସମର୍ଥନ ଜ୍ଞାପନ କଲେ । ଜାଣି, ସଭ୍ୟ ବୋଲାଇବା ଲାଗି ଏଭଳି ଏକ ସ୍ୱର୍ଣ୍ଣିମ ଯୁଗର ଘୋର ଆବଶ୍ୟକତା ରହିଥିଲା ! ବିଂଶ ଶତାବ୍ଦୀର ଆରମ୍ଭରେ ଜାତୀୟବାଦୀ ଆକାଂକ୍ଷାର ପୁଷ୍ଟି ପାଇଁ ଏହି ମତ ଏକ ଯୋଗସୂତ୍ର ପରି କାର୍ଯ୍ୟ କଲା । ସେମାନଙ୍କ ମତରେ ସମଗ୍ର ହିନ୍ଦୁ ଯୁଗ ହେଲା ଇତିହାସର ସୁବର୍ଣ୍ଣ ଯୁଗ । ଏହି ଯୁଗରେ ସ୍ଥିରତା ରହିଥିଲା ଏବଂ ସର୍ବତ୍ର ସଂବୃଦ୍ଧି ପରିଲକ୍ଷିତ ହୋଇଥିଲା । ଗୁପ୍ତକାଳୀନ ଶାସନକୁ ମଧ୍ଯ ସୁବର୍ଣ୍ଣ ଯୁଗ ବୋଲି କୁହାଗଲା । ଉଭୟ ଭାରତୀୟ ଏବଂ ଇଂରେଜ ଐତିହାସିକମାନେ ଏହି ଯୁଗରେ ବ୍ରାହ୍ମଣ୍ୟ ଧର୍ମ ଓ ସଂସ୍କୃତିର ପୁନର୍ବିକାଶ ହୋଇଥିଲା ଏବଂ ଅନେକ ସକାରାତ୍ମକ ଘଟଣା ଘଟିଥିଲା ବୋଲି ଦର୍ଶାଇଥିଲେ ।

ଜାତୀୟବାଦୀ ଇତିହାସରେ ସାଂସ୍କୃତିକ ଉପଲବ୍ଧିକୁ କଳା, ସାହିତ୍ୟ ଏବଂ ଦର୍ଶନ ପରିପ୍ରେକ୍ଷୀରେ ମପାଗଲା । ଏଥିରେ ସାମାଜିକ ବାସ୍ତବିକତାର ବର୍ଣ୍ଣନକୁ ବିଶେଷ ଧ୍ୟାନ ଦିଆଯାଇ ନ ଥିଲା । ପାଲି, ପ୍ରାକୃତ ଏବଂ ଅନ୍ୟାନ୍ୟ ଭାଷାରେ ମିଳୁଥିବା ସୂତ୍ରସାମଗ୍ରୀ ତୁଳନାରେ ସଂସ୍କୃତର ତଥ୍ୟ ସାମଗ୍ରୀକୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ମନେକରାଗଲା । ସଂସ୍କୃତ ଥିଲା ରାଜଦରବାର ଏବଂ ହିନ୍ଦୁ ଉଚ୍ଚଜାତିର ଭାଷା । ଯେଉଁସବୁ ଭାଷାକୁ ତଳ ବୋଲି ଚିହ୍ନିତ କରାଗଲା, ସେହି ଭାଷାଭାଷୀ ଲୋକ ଊଣା ସମ୍ମାନର ଅଧିକାରୀ ବୋଲି ଧରିନିଆଗଲା । କୌଣସି ନିର୍ଦ୍ଦିଷ୍ଟ କଥାକୁ ନେଇ ଯଦି ଉଭୟ ସଂସ୍କୃତ ଏବଂ ଅନ୍ୟ ଭାଷାର ପୋଥି ଉପଲବ୍ଧ, ତେବେ ସଂସ୍କୃତ ପୋଥିକୁ ପ୍ରମୁଖତା ମିଳିଲା । ବିବିଧ ଭାଷାର ବର୍ଣ୍ଣନା ଓ କଥନକୁ ଐତିହାସିକ ଦୃଷ୍ଟିକୋଣରୁ ତୁଳନା କରାଗଲା ନାହିଁ । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେବ ରାମକଥା । ରାମଙ୍କର କାହାଣୀ ବିଭିନ୍ନ ଭାଷା ଓ କିମ୍ବଦନ୍ତୀରେ ଭିନ୍ନ ଭିନ୍ନ ରୂପରେ ବର୍ଣ୍ଣିତ ହୋଇଛି । ପାଲି ଭାଷାରେ ଜାତକ କଥାରେ ରାମଙ୍କୁ ନେଇ ବୌଦ୍ଧ କିମ୍ବଦନ୍ତୀ ରହିଛି । ଜୈନମାନେ ପ୍ରାକୃତ ଭାଷାରେ ରାମକଥା ଲେଖିଛନ୍ତି । ଜାତକ କଥା କିମ୍ବା ଜୈନ ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କରିବା ପ୍ରକ୍ରିୟାରେ ଏହାକୁ ଆଲୋଚନା କରାଗଲା । ମାତ୍ର ବାଲ୍ମୀକିଙ୍କର ରାମାୟଣ ପରି ସଂସ୍କୃତ କାବ୍ୟ ସହିତ ବୌଦ୍ଧ ଓ ଜୈନଗ୍ରନ୍ଥଗୁଡ଼ିକୁ ତୁଳନାତ୍ମକ ଢଙ୍ଗରେ ଆଲୋଚନା କରାଗଲା ନାହିଁ ।

ଏହା ସହିତ ଯୋଡ଼ିହୋଇ ଏକ ନ ହେଲା କଥା ହେଲା, ଯାହା ପ୍ରାଚୀନ ଭାରତ ଉପରେ ଥିବା ଆଦ୍ୟ ରଚନାକୁ କଳୁଷିତ କରିଦେଲା । ୟୁରୋପର ଐତିହାସିକମାନେ ଏହି

ସମୟରେ ସେଠାକାର ପ୍ରାଚୀନ ପରମ୍ପରାରେ ବଢ଼ିଥିଲେ । ପ୍ରାଚୀନ ଗ୍ରୀକ୍ ସଭ୍ୟତାକୁ ସେମାନେ ମନୁଷ୍ୟର ସର୍ବୋତ୍କୃଷ୍ଟ ଉପଲବ୍ଧି ବୋଲି ଜ୍ଞାନ କରୁଥିଲେ । ପରିଣାମସ୍ୱରୂପ, ନୂଆକରି ଆବିଷ୍କୃତ ହୋଇଥିବା ପ୍ରତ୍ୟେକ ସଂସ୍କୃତିକୁ ପ୍ରାଚୀନ ଗ୍ରୀସ୍‌ରେ ସ୍ଥାପିତ ମାନଦଣ୍ଡରେ ସେମାନେ ମାପିଲେ ଏବଂ ନୂତନ ସଂସ୍କୃତିକୁ ଊଣା ମନେକଲେ । ନୂତନ ସଂସ୍କୃତିର ଯଦି କୌଣସି ଚରିତ୍ର ପ୍ରଶଂସନୀୟ ମନେହେଲା, ତାକୁ ଗ୍ରୀକ୍ ସଂସ୍କୃତିରୁ ଆନୀତ ବୋଲି ଦାବି କରାଗଲା । ପ୍ରାଚୀନ ଭାରତ ଇତିହାସର ବଡ଼ ଐତିହାସିକ ଭାବରେ ଅନେକ ଦଶନ୍ଧି ଧରି ଭିନ୍‌ସେଣ୍ଟ ସ୍ମିଥ୍‌ଙ୍କୁ ଖ୍ୟାତି ମିଳିଥିଲା । ସ୍ମିଥ୍‌ଙ୍କଠାରେ ଏହି ପ୍ରବୃତ୍ତି ସ୍ପଷ୍ଟଭାବେ ଦେଖିବାକୁ ମିଳିଥାଏ । ପ୍ରସିଦ୍ଧ ବୌଦ୍ଧସ୍ଥଳୀ ଅଜନ୍ତାରେ ଏକ ଚିତ୍ର ରହିଛି, ଯେଉଁଥିରେ ପାରସ୍ୟର ସସାନ ରାଜାଙ୍କଠାରୁ ଆସିଥିବା ରାଜଦୂତକୁ ସ୍ୱାଗତ କରାଯାଉଛି । ଏହାର କଳାତ୍ମକତା ଦୃଷ୍ଟିରୁ କିମ୍ବା ଐତିହାସିକ ଦୃଷ୍ଟିରୁ ଗ୍ରୀସ୍ ସହିତ କୌଣସି ସମ୍ବନ୍ଧ ନାହିଁ । ମାତ୍ର ସ୍ମିଥ୍ ଅଜନ୍ତାର ଏହି ଚିତ୍ରକୁ ବର୍ଣ୍ଣନା କରିବା ଖବରରେ ଲେଖିଛନ୍ତି :

ପାରସ୍ୟ ଓ ଭାରତବର୍ଷ ମଧ୍ୟରେ ସେତେବେଳେ ଯେଉଁ ଅସାଧାରଣ ରାଜନୈତିକ ସମ୍ବନ୍ଧ ରହିଥିଲା, ତାକୁ ଦର୍ଶାଇବା ପାଇଁ ଯେଉଁ ଆଗ୍ରହ ରହିଥିଲା, ତା'ର ଏକ ରେକର୍ଡ଼ ରୂପରେ ଚିତ୍ରଟିକୁ ଦେଖିହେବ । ତା' ସହିତ କଳା ଇତିହାସର ଏହା ହେବ ଏକ ସର୍ବୋଚ୍ଚ କୃତି । ଏହା ଅଜନ୍ତାର ଅନେକ ଅଧିକ ଗୁରୁତ୍ୱପୂର୍ଣ୍ଣ ଚିତ୍ରର ସର୍ଜନାକାଳ ନିରୂପଣ କରେ । ଅନ୍ୟ ଚିତ୍ରଗୁଡ଼ିକର ସମୟ ନିରୂପଣ ପାଇଁ ମଧ୍ୟ ଏହା ମାନ ନିର୍ଦ୍ଧାରଣ କରେ । ସମ୍ଭବତଃ ଅଜନ୍ତାର ଚିତ୍ରକଳା ପାରସ୍ୟରୁ ଏବଂ ମୂଳତଃ ଗ୍ରୀସ୍‌ରୁ ଆସିଥିଲା ।

(Early History of India, Oxford, 1924, P.442)

ଭାରତର ଐତିହାସିକମାନେ ଏଭଳି ଦୃଢ଼ୋକ୍ତିର ତୀବ୍ର ସମାଲୋଚନା କରିଥିଲେ । ଭାରତ କଦାପି ଗ୍ରୀସ୍ ସଂସ୍କୃତିରୁ କିଛି ନେଇ ନାହିଁ ବୋଲି ଦର୍ଶାଇବାକୁ ସେମାନେ ପ୍ରୟାସ କଲେ । ଭାରତର ସଂସ୍କୃତି ଗ୍ରୀସ୍ ସଂସ୍କୃତିର ସମତୁଲ ବୋଲି ମଧ୍ୟ କେତେକ ଐତିହାସିକ ଯୁକ୍ତି ପ୍ରଦାନ କଲେ । ଅନ୍ୟ ସମସାମୟିକ ସଭ୍ୟତା ସହିତ ଭାବ ବିନିମୟ କରି ସର୍ବଦା ଏକ ସଭ୍ୟତା ବିକାଶ ଲାଭ କରେ । ତା' ସହିତ ପ୍ରତ୍ୟେକ ସଭ୍ୟତା ନିଜ ନିଜର ଚମତ୍କାର ଓ ବୈଶିଷ୍ଟ୍ୟ ମଧ୍ୟ ସୃଷ୍ଟି କରିଥାଏ । ଏହି ବାସ୍ତବିକତାକୁ ଉଭୟ ୟୁରୋପୀୟ ଓ ଭାରତୀୟ ଐତିହାସିକମାନେ ସେପର୍ଯ୍ୟନ୍ତ ଉପଲବ୍ଧି କରିପାରି ନ ଥିଲେ । ବିଭିନ୍ନ ସଂସ୍କୃତି ପରସ୍ପର ମିଳିମିଶି ଇତିହାସକୁ ଠୋସ ସ୍ୱରୂପ ଦିଅନ୍ତି – ଏହି ଧାରଣା ସେପର୍ଯ୍ୟନ୍ତ ଐତିହାସିକମାନଙ୍କ ମନକୁ ଆସି ନ ଥିଲା ।

ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ୟୁରୋପର ଐତିହାସିକମାନେ ବିବର୍ତ୍ତନ ଓ ପରିବର୍ତ୍ତନର ଧାରାକୁ ଆବିଷ୍କାର କରିବାକୁ ପ୍ରୟାସ କରୁଥିଲେ । ମାତ୍ର ଭାରତ କ୍ଷେତ୍ରରେ

ଏହି ଦୃଷ୍ଟିକୋଣକୁ ଆପଣେଇବାକୁ ସେମାନେ ଉଦ୍ୟମ କଲେ ନାହିଁ । ସେମାନେ ଧରିନେଲେ ଯେ ଭାରତ ହେଉଛି ଅନେକ ଉପଦ୍ୱୀପର ସମାହାର ଏବଂ ପ୍ରତ୍ୟେକ ଉପଦ୍ୱୀପ ଏକ ନିର୍ଦ୍ଦିଷ୍ଟ ରାଜବଂଶ ନାମରେ ନାମିତ । ଏହାର ଅର୍ଥ ନୁହେଁ ଯେ ଅନ୍ୟ ଦିଗଗୁଡ଼ିକ ଉପରେ ଅଧ୍ୟୟନ ହେଲା ନାହିଁ । ମାତ୍ର ସେହି ଅଧ୍ୟୟନକୁ ତତ୍‌କାଳୀନ ଇତିହାସରେ ସମନ୍ୱିତ କରି ଦେଖାଗଲା ନାହିଁ । ଭାରତର ସମାଜ ଓ ଧାର୍ମିକ ଆଚରଣ ସମ୍ବନ୍ଧରେ ନାନା ମୂଲ୍ୟବାନ୍ ଏବଂ ଆଗ୍ରହପୂର୍ଣ୍ଣ ସୂଚନାମାନ ଏକତ୍ରିତ କରାଗଲା । ମାତ୍ର ଉକ୍ତ ସୂଚନାକୁ କୌଣସି ଷ୍ଟାଣ୍ଡାର୍ଡ଼ ଐତିହାସିକ ପୁସ୍ତକରେ ସାମିଲ କରାଗଲା ନାହିଁ । ବରଂ କୌଣସି ନିର୍ଦ୍ଦିଷ୍ଟ ଜନଜାତି, ଜାତି ଓ ସଂପ୍ରଦାୟକୁ ଉଦ୍ଦେଶ୍ୟ କରି ଲିଖିତ ହୋଇଥିବା ପୁସ୍ତକରେ ତାକୁ ଅନୁକ୍ରମଣିକା (Index) ରୂପରେ ଯୋଡ଼ାଗଲା । ଏହି ପରିପ୍ରେକ୍ଷୀରେ ଏ.ଏଲ୍. ବାସମଙ୍କର ନାମୋଲ୍ଲେଖ ସମ୍ଭବତଃ ଉଚିତ ହେବ । ସେ ଥିଲେ ଜଣେ ଇଣ୍ଡୋଲୋଜିଷ୍ଟ, ଯିଏ ଏକ ଖୋଲା ମନୋଭାବ ନେଇ ଭାରତର ସଂସ୍କୃତିକୁ ଅନୁଶୀଳନ କରୁଥିଲେ । ନୂଆ କରି ପ୍ରାଚୀନ ଭାରତ ଇତିହାସର ଅଧ୍ୟୟନରେ ଯେଉଁ ପ୍ରଭାବମାନ ଅନୁଭୂତ ହେଉଥିଲା, ତହିଁରେ ସେ ଆଗ୍ରହ ରଖୁଥିଲେ । ତାଙ୍କର କ୍ଲାସିକ୍ ପୁସ୍ତକ 'ଦ ୱାଣ୍ଡର ଦେଟ୍ ୱାଜ୍ ଇଣ୍ଡିଆ' (The Wonder that was India)ରେ ବାସମଙ୍କ ସମ୍ବେଦନଶୀଳତା ଓ ସଚେତନତାର ପ୍ରମାଣ ମିଳେ । ଏହି ପୁସ୍ତକ ଭାରତର ସାଂସ୍କୃତିକ ଇତିହାସକୁ ଲିପିବଦ୍ଧ କରେ । ଇତିହାସର ବ୍ୟାପକ ମାନଦଣ୍ଡଗୁଡ଼ିକୁ ଉପଯୋଗ କରିବାକୁ ଏହି ପୁସ୍ତକରେ ପ୍ରାରମ୍ଭିକ ଉଦ୍ୟମମାନ ହୋଇଛି ।

ବଂଶ ଇତିହାସକୁ ମହତ୍ତ୍ୱ ମିଳିବା ଯୋଗୁଁ ଭାରତ ଇତିହାସକୁ କାଳର କ୍ରମ ଅନୁସାରେ ତିନିଗୋଟି ପ୍ରମୁଖ ଖଣ୍ଡରେ ବିଭକ୍ତ କରିବାପାଇଁ ସମର୍ଥନ ମିଳିଲା । ସେହି ତିନୋଟି କାଳଖଣ୍ଡ ହେଲେ ହିନ୍ଦୁ, ମୁସଲିମ୍ ଏବଂ ବ୍ରିଟିଶ ଯୁଗ । ପରବର୍ତ୍ତୀ ସମୟରେ ଖଣ୍ଡଗୁଡ଼ିକର ନାମ ପରିବର୍ତ୍ତନ ହୋଇ ହେଲା : ପ୍ରାଚୀନ, ମଧ୍ୟକାଳୀନ ଏବଂ ଆଧୁନିକ ଯୁଗ । ଆଜି ମଧ୍ୟ ଇତିହାସର ଏହି କାଳ ବିଭାଜନ ପ୍ରଚଳିତ ରହିଛି । ନାମ ପରିବର୍ତ୍ତନ ହେବା ଉତ୍ତାରୁ ମଧ୍ୟ ସେହି ପୂର୍ବର କାଳ ବିଭାଜନ ଅବ୍ୟାହତ ରହିଲା । ପ୍ରାଚୀନ ଯୁଗ ସିନ୍ଧୁ ସଭ୍ୟତାରୁ ଆରମ୍ଭ ହୁଏ । ଆଗର ଇତିହାସରେ ଏହା 'ଆର୍ଯ୍ୟ ଯୁଗ'ରୁ ଆରମ୍ଭ ହେଉଥିଲା । ଏକାଦଶ ଏବଂ ଦ୍ୱାଦଶ ଶତାବ୍ଦୀରେ ଉତ୍ତର ଭାରତ ଉପରେ ତୁର୍କମାନେ ଆକ୍ରମଣ କଲେ । ଦିଲ୍ଲୀରେ ସୁଲତାନ ଶାସନ ଆରମ୍ଭ ହୁଏ ଓ ପ୍ରାଚୀନ ଯୁଗ ସେହି ଆକ୍ରମଣର ପୂର୍ବାବସ୍ଥାରେ ଶେଷ ହୁଏ । ଦିଲ୍ଲୀ ସୁଲତାନର ପ୍ରତିଷ୍ଠା (ତ୍ରୟୋଦଶ ଶତାବ୍ଦୀ) ସହିତ ମଧ୍ୟକାଳୀନ ଯୁଗର ଶୁଭାରମ୍ଭ ହେଲା । ପ୍ରାଚୀନ ଯୁଗ ସହିତ ହିନ୍ଦୁ ଏବଂ ମଧ୍ୟକାଳୀନ ଯୁଗ ସହିତ ମୁସଲିମ୍‌କୁ ସମାନ ବୋଲି ବିବେଚନା କରିବା ପଛରେ ଆଧାର ହେଲା ଯେ ପ୍ରାଚୀନ ଯୁଗରେ ଅନେକ ରାଜବଂଶ ହିନ୍ଦୁ ଥିଲେ । ଠିକ୍ ସେହିଭଳି ମଧ୍ୟକାଳୀନ ଯୁଗରେ ଅଧିକାଂଶ ରାଜବଂଶ ଥିଲେ ମୁସଲିମ୍ ।

ମୁସଲିମ୍ ଯୁଗର କେତୋଟି ବୈଶିଷ୍ଟ୍ୟ ଥିଲା, ଯାହା ଏହି ଯୁଗକୁ ପ୍ରାଚୀନ ଯୁଗଠାରୁ ପୃଥକ୍ କରେ ବୋଲି ଧାରଣା ଦିଆଗଲା । ପ୍ରତି କ୍ଷେତ୍ରରେ ମୁସଲିମ୍ ଓ ହିନ୍ଦୁ ସଂସ୍କୃତି ମଧ୍ୟରେ ପାର୍ଥକ୍ୟ ରହିଛି ବୋଲି କିଛି ଐତିହାସିକ ଦାବି କଲେ । ନିଜ ସିଦ୍ଧାନ୍ତର ଯୁକ୍ତିଯୁକ୍ତତା ଦର୍ଶାଇବା ପାଇଁ ସେମାନେ ଧର୍ମଶାସ୍ତ୍ରୀମାନଙ୍କର ଲେଖା ଏବଂ ମୁସଲମାନ ଶାସକମାନଙ୍କର ରାଜବିବରଣୀକୁ ବ୍ୟବହାର କଲେ । ଅଧିକାଂଶ ସମୟରେ ରାଜସ୍ୱାର୍ଥ ଏବଂ ଲୋକଙ୍କର ସ୍ୱାର୍ଥ ମଧ୍ୟରେ ପାର୍ଥକ୍ୟ ରହିଥାଏ । ପୁଣି ଭାଟମାନଙ୍କ ପରି ରାଜବିବରଣୀକାର ଏବଂ ରାଜଐତିହାସିକମାନେ ଧର୍ମର ଜଣେ ଆଦର୍ଶ ପୃଷ୍ଠପୋଷକ ଭାବରେ ଶାସକଙ୍କୁ ସ୍ଥାପିତ କରିବାକୁ ତାଙ୍କର ଖୁବ୍ ପ୍ରଶଂସା କରୁଥିଲେ । ଏହି କାରଣରୁ କେବଳ ଭାରତରେ ନୁହେଁ, ସର୍ବତ୍ର ରାଜବିବରଣୀକୁ ଠିକ୍ ରୂପରେ ଅନୁଶୀଳନ କରି ପ୍ରକୃତ ଅର୍ଥ ଖୋଜିବାକୁ ହେବ । ତା'ର ବର୍ଣ୍ଣନାକୁ ସମ୍ପୂର୍ଣ୍ଣ ସତ୍ୟ ଭାବରେ ଗ୍ରହଣ କରାଯାଇ ନ ପାରେ । ସେ ଯାହା ହେଉ, ବିଂଶ ଶତାବ୍ଦୀର ଆଦ୍ୟରେ ଭାରତରେ ରହିଥିବା ରାଜନୈତିକ ସ୍ଥିତି ସ୍ୱତନ୍ତ୍ର ଧର୍ମୀୟ ଜାତୀୟତାକୁ ଯୁକ୍ତିଯୁକ୍ତ ସିଦ୍ଧ କଲା ଏବଂ ଅତୀତକୁ ହିନ୍ଦୁ ଓ ମୁସଲିମ୍ ଯୁଗ ଭାବରେ ଉଲ୍ଲେଖ କଲା । ଏହାକୁ ଅନେକ ଭାରତୀୟ ଏବଂ ଅଣଭାରତୀୟ ଐତିହାସିକ ସମର୍ଥନ କଲେ । ଅଳ୍ପ କେତେଜଣ ମାତ୍ର ଏହାର ବୈଧତାକୁ ନେଇ ପ୍ରଶ୍ନ କଲେ । ସେ ଯାହାହେଉ, ଭାରତ ଇତିହାସର ଏହି ଧରଣର କାଳ ନିରୂପଣ ହେଲା ସମ୍ପୂର୍ଣ୍ଣ ଭ୍ରମାତ୍ମକ । କାଳ ନିରୂପଣର ଧାରଣାକୁ ନେଇ ନାନା ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ରାଜାର ଧର୍ମ କଦାପି ଐତିହାସିକ ପରିବର୍ତ୍ତନର ପ୍ରମୁଖ କାରଣ ହୋଇ ନ ପାରେ । ଅତି ବେଶି ହେଲେ ଅନେକ କାରଣ ମଧ୍ୟରୁ ଏହା ଏକ ଅନ୍ୟତମ କାରଣ ହୋଇପାରେ ।

ୟୁରୋପୀୟ ଇତିହାସକାରମାନେ ସ୍ଥାପିତ କରିଯାଇଥିବା ଧାରାକୁ ପ୍ରଥମେ ଭାରତର ଇତିହାସକାରମାନେ ଅନୁସରଣ କରିବାକୁ ଲାଗିଲେ । ସେହି ପ୍ରକ୍ରିୟାରେ ସେମାନେ ମୁଖ୍ୟତଃ ରାଜବଂଶୀୟ ଇତିହାସ ଲେଖିଲେ । ମାତ୍ର ଜାତୀୟତାବାଦୀ ବିଚାରଧାରାର ବର୍ଦ୍ଧିଷ୍ଣୁ ପ୍ରଭାବରେ ସେମାନଙ୍କ ରଚନାରେ ଜାତୀୟବାଦୀ ବ୍ୟାଖ୍ୟାର ଗୁରୁତ୍ୱ ବୃଦ୍ଧି ପାଇଲା । ଏହାର ଯୁଗାନ୍ତକାରୀ ଉଦାହରଣ ହେବ ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ବିକଶିତ ହୋଇଥିବା ଉଦାରବାଦୀ ପରମ୍ପରା । ଏହା ରାଜା ରାମମୋହନ ରାୟଙ୍କ ଲେଖାରେ ଦେଖିବାକୁ ମିଳେ । ଯେମିତି ପ୍ରାଚ୍ୟ ନିରଙ୍କୁଶବାଦ ସିଦ୍ଧାନ୍ତରେ, ସେମିତି ଏଥିରେ ମଧ୍ୟ ଅତୀତ ଭାରତର ନକାରାତ୍ମକ ଲକ୍ଷଣଗୁଡ଼ିକୁ ସମାଲୋଚନା କରାଯାଏ । ରାଷ୍ଟ୍ରୀୟ ଅସ୍ମିତା ଏବଂ ସଂସ୍କୃତି ନିର୍ମାଣରେ ଇତିହାସ ଏକ ପ୍ରମୁଖ ସଂଭାଗ ହୁଏ । ଉପନିବେଶବାଦ ବିରୋଧୀ ଜାତୀୟତାବାଦୀ ଏବଂ ଉପନିବେଶବାଦ ସମର୍ଥକଙ୍କ ମଧ୍ୟରେ ତର୍କବିତର୍କ ନିମନ୍ତେ ଇତିହାସ ଏକ ପ୍ରମୁଖ ବିଷୟ ହୁଏ । ଅବଶ୍ୟ ପ୍ରାଚ୍ୟବାଦୀଙ୍କ ପରି କେତେକ ଉପନିବେଶବାଦୀ ବିଚାର ପ୍ରତି ଜାତୀୟବାଦୀ

ରଚନାରେ ସହାନୁଭୂତି ପ୍ରଦର୍ଶନ କରାଯାଉଥିଲା । ବୈଧତା ପ୍ରାପ୍ତି ପାଇଁ ଜାତୀୟତାବାଦ ଅତୀତ ଉପରେ ଆଶ୍ରା କରୁଥିଲା । ଏହି କାରଣରୁ ଇତିହାସ ସର୍ବଦା ଏକ ସମ୍ବେଦନଶୀଳ ବିଷୟ ହୋଇ ରହେ । ଯଦିଓ ଜାତୀୟତାବାଦୀ ଇତିହାସ ଅତୀତ ସମ୍ବନ୍ଧରେ କୌଣସି ନୂଆ ବିଶ୍ଳେଷଣ ପ୍ରଦାନ କରି ନ ଥିଲା, ତଥାପି ଅତୀତକୁ ନେଇ ଚାଲିଥିବା ବିତର୍କରେ ଏହା ଏକ ଶକ୍ତିଶାଳୀ ସ୍ୱର ଦେଲା ।

## ସାଂପ୍ରଦାୟିକ ଇତିହାସର ଉନ୍ମେଷ

ଭାରତର ଜାତୀୟବାଦୀ ଇତିହାସ ଔପନିବେଶିକ ଇତିହାସତତ୍ତ୍ୱର ବିଭିନ୍ନ ଉପାଦାନକୁ ବିରୋଧ କଲା ଏବଂ ସେହି ପ୍ରକ୍ରିୟାରେ ଦେଶର ଅତୀତ ପର୍ଯ୍ୟନ୍ତ ବ୍ୟାପିଥିବା ଅତ୍ୟଧିକ ନକାରାତ୍ମକ ଉପନିବେଶବାଦୀ ତତ୍ତ୍ୱଗୁଡ଼ିକ ଇତିହାସ ଲିଖନରେ ଯେମିତି ମହତ୍ତ୍ୱ ନ ପାଇବେ, ତା' ପାଇଁ ଉଦ୍ୟମ କଲା । ଅନ୍ୟ ପକ୍ଷରେ, ଭାରତର ଅତୀତ ସମ୍ବନ୍ଧରେ ସକାରାତ୍ମକ ଛବି ପ୍ରଦାନ କରୁଥିବା ତତ୍ତ୍ୱଗୁଡ଼ିକୁ ଏହା ସମର୍ଥନ କଲା । ସମର୍ଥନ ପାଉଥିବା ଛବିରେ ଏଭଳି ସବୁ ବ୍ୟାଖ୍ୟା ରହିଥିଲା, ଯାହା ଉପନିବେଶବାଦୀ ସିଦ୍ଧାନ୍ତରୁ ପୃଥକ୍ ନ ଥିଲା । ସେହି ବ୍ୟାଖ୍ୟାର ଯଥାର୍ଥ ପୁନଃମୂଲ୍ୟାଙ୍କନ ହେବା କଥା । ତା' ବଦଳରେ ଏହା ଏକ ଭିନ୍ନ ଧରଣର ଇତିହାସର ମୂଳଭିତ୍ତି ହେଲା । ପୁଣି ଭିନ୍ନ ଧରଣର ସେହି ଇତିହାସ ନିଜକୁ ଜାତୀୟବାଦୀ ବୋଲି ମଧ୍ୟ ଦାବି କଲା । ଏହି ଦ୍ୱିତୀୟ ଧରଣର ତଥାକଥିତ 'ଜାତୀୟବାଦୀ' ଇତିହାସକୁ କେବଳ ଧର୍ମ ଆଧାରରେ ପରିଭାଷିତ କରିହେବ । ଉଭୟ ମୁସଲିମ୍ ଏବଂ ହିନ୍ଦୁ ରାଷ୍ଟ୍ରବାଦ ବୈଧତା ଲାଭ କରିବା ସକାଶେ ଉପନିବେଶବାଦର ବିରୋଧ କରି ରାଷ୍ଟ୍ରବାଦୀ ବିଚାରଧାରାରୁ ସହଯୋଗ ନେଉଥିଲେ । ସେହି ପ୍ରକ୍ରିୟାରେ ସେମାନେ ଏଭଳି ଏକ ରାଷ୍ଟ୍ରବାଦରେ ରୂପାନ୍ତରିତ ହେଲେ ଯାହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ଇତିହାସକୁ ଏକ ଅଖଣ୍ଡ ବିବିଧତାଶୂନ୍ୟ (monolithic) ଧାର୍ମିକ ଅସ୍ମିତା ରୂପରେ ବ୍ୟାଖ୍ୟା କରିବା । ଅର୍ଥାତ୍ ରାଷ୍ଟ୍ରବାଦର ଏହି ଅଭିବ୍ୟକ୍ତି ବିବିଧତାକୁ ଅସ୍ୱୀକାର କଲା । ଏହିସବୁ ବିଚାରଧାରାର ମୂଳ ରହିଥିଲା ଇତିହାସ ରଚନାର ଜାତୀୟବାଦୀ ପର୍ଯ୍ୟାୟରେ । ଉପନିବେଶବାଦ ବିରୋଧୀ ଜାତୀୟତାକୁ ଯେତେବେଳେ ସଫଳତା ମିଳିଲା, ସେତେବେଳେ ଏମାନେ ଜନଜାଗରଣ ପାଇଁ ଖୁବ୍ ଉପଯୋଗୀ ପ୍ରମାଣିତ ହେଲେ । ମାତ୍ର ବାସ୍ତବିକତା ହେଲା ଯେ, ଯେହେତୁ ସେମାନେ ଭାବନା ଓ ଆସ୍ଥା ଭଳି ସମ୍ବେଦନଶୀଳ ଦିଗକୁ ସ୍ପର୍ଶ କରନ୍ତି, ଐତିହାସିକ ଆଲୋଚନାର ବୌଦ୍ଧିକ ଦିଗ ସେମାନଙ୍କ ଯୋଗୁଁ ଉପେକ୍ଷିତ ହୁଏ । ଉଭୟ ମୁସଲିମ୍ ଏବଂ ହିନ୍ଦୁ ରାଷ୍ଟ୍ରବାଦୀ ଇତିହାସ ରଚନା ପାଇଁ ଉଦ୍ୟମ ହେଲାବେଳେ ଏହି ଉପେକ୍ଷା ସୁସ୍ପଷ୍ଟ ହୋଇଛି । ଆଞ୍ଚଳିକ

ଇତିହାସ ରଚନା ସମୟରେ ମଧ୍ୟ ଅନେକ କ୍ଷେତ୍ରରେ ଯୁକ୍ତିନିଷ୍ଠା ଅଣଦେଖା ହୋଇ ରହିଯାଇଛି । ଯେତେବେଳେ ଏହି କିସମର ଇତିହାସ ଅତୀତର ଅନ୍ୟ କିସମର ବିଶ୍ଳେଷଣକୁ ସ୍ୱୀକାର କରେ ନାହିଁ, ଇତିହାସର ମତ ବିବାଦାସ୍ପଦ ହୁଏ ।

ଭାରତର ପ୍ରାକ୍-ଉପନିବେଶବାଦ କାଳରେ ଜାତି, ବୃତ୍ତି, ଭାଷା, ସଂପ୍ରଦାୟ, କ୍ଷେତ୍ର ଓ ସ୍ଥାନ ଆଦି ଉପରେ ଅସ୍ମିତା (identity) ନିର୍ଭର କରୁଥିଲା । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଧର୍ମ ଅପେକ୍ଷା ଜାତିକୁ ପ୍ରମୁଖତା ମିଳୁଥିଲା, ଯଦିଓ ଜାତି ଓ ଧାର୍ମିକ ଅସ୍ମିତା ପରସ୍ପରକୁ ଅତିକ୍ରମଣ କରି ରଖୁଥିଲେ । ମାତ୍ର ଭାରତୀୟ ସମାଜର ଉପନିବେଶବାଦୀ ସଂରଚନାରେ ଅସ୍ମିତାକୁ ଦର୍ଶାଇବା ପାଇଁ ଧର୍ମକୁ ମୂଳ ବୋଲି ଚିହ୍ନିତ କରାଗଲା । ଉପନିବେଶବାଦୀ ଐତିହାସିକମାନେ ଯୁକ୍ତି କଲେ ଯେ, ଇସଲାମ୍ ଧର୍ମାବଲମ୍ବୀ ଗୋଷ୍ଠୀଗୁଡ଼ିକର ପ୍ରବେଶ ଉତ୍ତାରୁ ହିନ୍ଦୁ ଓ ଇସଲାମ୍ ମଧ୍ୟରେ ସଂଘର୍ଷ ହେଲା, ଯାହା ଉଭୟ ହିନ୍ଦୁ ଓ ମୁସଲିମ୍ ସଂପ୍ରଦାୟକୁ ଠୋସ୍ ସ୍ୱରୂପ ନେବାକୁ ପ୍ରବର୍ତ୍ତାଇଲା । ଧାର୍ମିକ ଓ ରାଜନୈତିକ ସମ୍ପର୍କକୁ ଐତିହାସିକମାନେ ଧର୍ମ ଓ ସଂପ୍ରଦାୟ ପରିପ୍ରେକ୍ଷୀରେ ଦେଖିଲେ ଏବଂ ସେହି ଆଧାରରେ ଭାରତୀୟ ଇତିହାସର ବ୍ୟାଖ୍ୟା କଲେ । ପୁଣି ସେମାନେ ଆହୁରି ଯୁକ୍ତି କଲେ ଯେ ମୁସଲମାନମାନଙ୍କର ଭାରତରେ ପ୍ରବେଶ ଉତ୍ତାରୁ ହିନ୍ଦୁମାନଙ୍କ ମଧ୍ୟରେ ଜାତିଆଣ ଭାବ ଉଣା ହେଲା । ମୁସଲିମ୍ ସମାଜରେ ଜାତି ସତ୍ତା ନ ଥିଲା ବୋଲି ଉଲ୍ଲେଖ କରାଗଲା । ଏହି ଉଭୟ କିସମର ବ୍ୟାଖ୍ୟା ଉପରେ ଏବେ ପ୍ରଶ୍ନଚିହ୍ନ ଲାଗିଲାଣି । ସାଂପ୍ରଦାୟିକ ବା ଧାର୍ମିକ ସଂଘର୍ଷ ଆଧାରରେ ଦ୍ୱିତୀୟ ସହସ୍ରାବ୍ଦୀର ଭାରତ ଇତିହାସକୁ ଦେଖାଯାଇପାରିବ ନାହିଁ । ଦ୍ୱିତୀୟତଃ, ଧର୍ମ ପରି ଜାତି, ବୃତ୍ତି, ଭାଷା ଏବଂ କ୍ଷେତ୍ରଭିତ୍ତିକ ସାମାଜିକ ଅସ୍ମିତା କଦାପି ଇତିହାସରେ ଗୌଣ ହୋଇ ନାହିଁ ।

ସେ ଯାହାହେଉ, ଇତିହାସର ସାଂପ୍ରଦାୟିକ ବ୍ୟାଖ୍ୟା ବା ଧାର୍ମିକ ଜାତୀୟତାଭିତ୍ତିକ ଐତିହାସିକ ବ୍ୟାଖ୍ୟା ନିରନ୍ତର ଆଗକୁ ସଂକ୍ରମିତ ହେଲା । ଉପନିବେଶବାଦ ବିରୋଧୀ ଜାତୀୟବାଦୀ ଐତିହାସିକ ବ୍ୟାଖ୍ୟାଠାରୁ ଏହା ପୃଥକ୍ ଅଟେ, ଯଦିଓ କେବେ କେବେ ଉଭୟ ବ୍ୟାଖ୍ୟା ମଧ୍ୟରେ କାହିଁ କେଉଁଠି ସମନ୍ୱୟ ବି ଦୃଷ୍ଟିଗୋଚର ହୁଏ । ଜାତୀୟବାଦୀ ବା ରାଷ୍ଟ୍ରବାଦୀ ଦୃଷ୍ଟିକୋଣ ହେଲା ବହୁକୋଣିକ ଏବଂ ଅନ୍ତର୍ଭୁକ୍ତିକ (inclusive); ମାତ୍ର ଅନ୍ୟ ପକ୍ଷରେ, ସାଂପ୍ରଦାୟିକ ଐତିହାସିକ ରଚନା ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ମଧ୍ୟରେ ଇତିହାସକୁ ସୀମିତ କରିଦିଏ । ଗୋଟାଏ ଧର୍ମକୁ ଏହା ମହତ୍ତ୍ୱ ଦିଏ ଏବଂ ଅନ୍ୟଗୁଡ଼ିକୁ ବାଦ୍ ଦେଇଦିଏ । ମୁସଲିମ୍ ଜାତୀୟତା ଭାରତ ଇତିହାସକୁ ମୁସଲିମ୍ ସଂପ୍ରଦାୟର ଭୂମିକା ବନାମ ହିନ୍ଦୁ ପରିପ୍ରେକ୍ଷୀରେ ଦେଖେ । ଠିକ୍ ସେହିଭଳି, ହିନ୍ଦୁ ଜାତୀୟତା ହିନ୍ଦୁ ସଂପ୍ରଦାୟକୁ ସର୍ବଦା ମୁସଲମାନ ବିରୋଧରେ ସଂଘାତ କରୁଥିବା ଏକ ଗୋଷ୍ଠୀ ଭାବରେ ଚିତ୍ରିତ କରେ । କିନ୍ତୁ

ବାସ୍ତବିକତା ହେଲା ଯେ, ଅତୀତରେ ପ୍ରାୟ ଲୋକ ଅସ୍ମିତାକୁ ଏଭଳି ଭାବରେ ଦେଖୁ ନ ଥିଲେ । ସାଂପ୍ରଦାୟିକ ଇତିହାସ ସଂପ୍ରଦାୟଗୁଡ଼ିକର ଚରିତ୍ର ତଥା ପରିବର୍ତ୍ତନର ଇତିହାସକୁ ବିଶ୍ଳେଷଣ କରିବାକୁ ପ୍ରୟାସ କରେ ନାହିଁ । ପ୍ରତ୍ୟେକ ସଂପ୍ରଦାୟକୁ ଏହା ଏକ ଅଚ୍ଛେଦ୍ୟ, ଅଭେଦ୍ୟ, ବିବିଧତାଶୂନ୍ୟ, ଠୋସ ଧାର୍ମିକସମୂହ ରୂପରେ ଦେଖେ ଏବଂ ସଂପ୍ରଦାୟ ଭିତରେ ରହିଥିବା ବିବିଧତା ଓ ଅନୈକ୍ୟକୁ ଅସ୍ୱୀକାର କରେ ।

ଧାର୍ମିକ ରାଷ୍ଟ୍ରବାଦ ଭାରତ ଇତିହାସର ଉପନିବେଶବାଦୀ କାଳ ବିଭାଜନକୁ ସମ୍ମତି ଦିଏ । ଭାରତରେ ଦୁଇଟି ସଂପ୍ରଦାୟ ରହିଥିବା କଥାକୁ, ଯାହା ଉପନିବେଶବାଦୀ ବିଶ୍ଳେଷଣରେ ସ୍ଥାନିତ, ଏହା ମାନିନିଏ : ଗୋଟାଏ ସଂପ୍ରଦାୟ ହେଲେ ବହୁସଂଖ୍ୟକ ହିନ୍ଦୁ ଏବଂ ଅନ୍ୟଟି ଅଳ୍ପସଂଖ୍ୟକ ମୁସଲମାନ । ଅନ୍ୟ ଅଳ୍ପସଂଖ୍ୟକଙ୍କ ସଂପ୍ରଦାୟକୁ ଏହା ଗୌଣ ବିବେଚନା କରେ । ସାଂପ୍ରଦାୟିକ ବ୍ୟାଖ୍ୟା ଅନୁଯାୟୀ, ଐତିହାସିକ ଘଟଣା ପଛରେ ସର୍ବଦା ଧର୍ମ ପ୍ରମୁଖ ଭୂମିକା ନିର୍ବାହ କରେ ଏବଂ ଧର୍ମଗୁଡ଼ିକ ମଧ୍ୟରେ ନିରନ୍ତର ସଂଘାତ ଚାଲିଥାଏ । କେତେକ ସାଂପ୍ରଦାୟିକ ଐତିହାସିକଙ୍କ ମତରେ, 'ହିନ୍ଦୁ ଯୁଗ' ହେଲା ତ୍ରୁଟିଶୂନ୍ୟ 'ସୁବର୍ଣ୍ଣ ଯୁଗ' ଏବଂ 'ମୁସଲିମ୍ ଯୁଗ' ହେଲା ଇତିହାସର ଏକ 'ଅନ୍ଧକାର ଯୁଗ' । ଆଉ କେତେକ ସାଂପ୍ରଦାୟିକ ଐତିହାସିକ ଏହାର ସମ୍ପୂର୍ଣ୍ଣ ଓଲଟା କଥା କହନ୍ତି । ଅର୍ଥାତ୍ ସେମାନଙ୍କ ମତରେ 'ହିନ୍ଦୁ ଯୁଗ' ଅନ୍ଧକାରର ଯୁଗ ଏବଂ 'ମୁସଲିମ୍ ଯୁଗ' ହେଲା ସୁବର୍ଣ୍ଣ ଯୁଗ । ଦ୍ୱୈତ ରାଷ୍ଟ୍ର ସିଦ୍ଧାନ୍ତ (Two Nation Theory) ଯୋଗୁଁ 1947 ରେ ଭାରତର ବିଭାଜନ ହେଲା । ଏହି ସିଦ୍ଧାନ୍ତକୁ ସାଂପ୍ରଦାୟିକ ଐତିହାସିକ ବ୍ୟାଖ୍ୟାରେ ଯଥାର୍ଥ ବୋଲି କୁହାଯାଇଥିଲା । ଭାରତ ଇତିହାସର ଆରମ୍ଭରୁ ଉଭୟ ସଂପ୍ରଦାୟ ଦୁଇଟି ସ୍ୱତନ୍ତ୍ର, ପରସ୍ପର ବିରୋଧୀ ଗୋଷ୍ଠୀ ଭାବରେ ଯେହେତୁ ରହିଆସିଥିଲେ, ଗୋଟିଏ ହିନ୍ଦୁ ଏବଂ ଆଉ ଗୋଟାଏ ମୁସଲିମ୍ ରାଷ୍ଟ୍ରର ଗଠନ ହେବା ଅବଶ୍ୟମ୍ଭାବୀ ବୋଲି ଏହି ଐତିହାସିକମାନେ ଯୁକ୍ତି କରୁଥିଲେ ।

ତଥାକଥିତ 'ହିନ୍ଦୁ ଯୁଗ'କୁ ସୁବର୍ଣ୍ଣ ଯୁଗ ରୂପରେ ପରିଭାଷିତ କଲା ପରେ ତତ୍କାଳୀନ ଘଟଣା ଏବଂ ଲୋକସମୂହର ସମୀକ୍ଷାତ୍ମକ ମୂଲ୍ୟାଙ୍କନକୁ ସ୍ୱୀକାର କରିବା କାଠିକର ହୋଇପଡ଼େ । ତେଣୁ ପ୍ରାଚୀନ ପୋଥିପୁରାଣରେ ଉକ୍ତ ସମୟର ବର୍ଣ୍ଣନାକୁ ବିଶ୍ଳେଷଣ କରିବାକୁ ପ୍ରୟାସ ହୁଏ ନାହିଁ ଏବଂ ପ୍ରାଚୀନ ସମାଜକୁ ଏକ ଆଦର୍ଶ ସହାବସ୍ଥାନର ପ୍ରତୀକ ରୂପରେ ଗ୍ରହଣ କରାଯାଏ । ଉଦାହରଣସ୍ୱରୂପ, ଏକଥା ଜୋର୍ ଦେଇ କୁହାଯାଏ ଯେ ପ୍ରାକ୍-ଇସ୍‌ଲାମୀ ଭାରତ ଥିଲା ଏକ ସହନଶୀଳ ସମାଜ । ତେଣୁ ସେତେବେଳେ ଯେଉଁଠି ଧାର୍ମିକ ଏବଂ ସାମାଜିକ ଅସହିଷ୍ଣୁ ଭାବର ଉଲ୍ଲେଖ ମିଳେ, ତାକୁ ଭ୍ରମାତ୍ମକ ଅଧ୍ୟୟନ ବୋଲି କୁହାଯାଏ, ଅଥବା ଭୁଲ ତଥ୍ୟସମ୍ଭୂତ ବୋଲି କୁହାଯାଏ ।

ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଯେତେବେଳେ ପ୍ରଥମେ ଆଞ୍ଚଳିକ ଇତିହାସର ରଚନା ଆରମ୍ଭ ହେଲା, ତହିଁରେ ମଧ୍ୟ ରାଷ୍ଟ୍ରବାଦୀ ଇତିହାସର କେତେକ ଭୁଲ ତ୍ରୁଟି ଦେଖିବାକୁ ମିଳିଲା । ଉଦାହରଣସ୍ୱରୂପ, ଇତିହାସର ହିନ୍ଦୁ, ମୁସଲିମ୍ ଓ ବ୍ରିଟିଶ ଭାବରେ ତିନୋଟି କାଳ ବିଭାଜନକୁ ସର୍ବସମ୍ମତ ବୋଲି ଏଥିରେ ମାନି ନିଆଗଲା । ସମଗ୍ର ଭାରତରେ କାଳ ନିରୂପଣ ବେଳେ ସମାନତା ରଖାଗଲା ନାହିଁ । କେଉଁଠି ଅଷ୍ଟମ ଶତାବ୍ଦୀରୁ ମୁସଲିମ୍ ଯୁଗ ଆରମ୍ଭ ହୋଇଥିବାରୁ ସେଠାରେ ସେହି ସମୟରୁ ମଧ୍ୟକାଳୀନ ଇତିହାସ ଆରମ୍ଭ ବୋଲି କୁହାଗଲା । ପୁଣି ଆଉ କେତେକ ଅଞ୍ଚଳରେ ଅଷ୍ଟାଦଶ ଶତାବ୍ଦୀରୁ ମୁସଲିମ୍ ଯୁଗର ମୂଳ ଖୋଜାଗଲା । ଭାରତର ଇତିହାସକୁ ସୈନ୍ଧବ-ଗାଙ୍ଗେୟ ସମତଳ କ୍ଷେତ୍ର (Indo-Gangetic Plain)ର ପୃଷ୍ଠଭୂମିରେ ଦେଖାଯାଉଥିଲା ଏବଂ ତା'ର ପ୍ରତିକ୍ରିୟା ରୂପରେ ଆଞ୍ଚଳିକ ଇତିହାସ ଆରମ୍ଭ ହେଲା । 1947 ପରେ ଦେଶରେ ଅନେକ ନୂଆ ରାଜ୍ୟର ଗଠନ ହେଲା । ଏହା ଆଞ୍ଚଳିକ ଇତିହାସ ରଚନାକୁ ଏବଂ ତହିଁରେ ଆଞ୍ଚଳିକ ସୂତ୍ରସାମଗ୍ରୀର ବ୍ୟବହାରକୁ ଯଥେଷ୍ଟ ପ୍ରୋତ୍ସାହନ ଦେଲା । ଏଣିକି ପ୍ରତ୍ୟେକ ରାଜ୍ୟ ନିଜ ନିଜର ଇତିହାସ ଖୋଜିଲେ । ମାତ୍ର ବର୍ତ୍ତମାନର ପ୍ରଦେଶର ସୀମାକୁ ଆଧାର କରି ଅତୀତର ଆଞ୍ଚଳିକ କ୍ଷେତ୍ରର ପରିଭାଷା ତିଆରିବା ନିଶ୍ଚିତରୂପେ ଏକ ତ୍ରୁଟିପୂର୍ଣ୍ଣ ପ୍ରୟାସ ହେବ । ଭୂଗୋଳରେ ଯେଉଁଭଳି ଭାବେ ଅଞ୍ଚଳକୁ ପରିଭାଷିତ କରାଯାଏ, ତାକୁ ଆଧାର କରି ଆଞ୍ଚଳିକ ଇତିହାସର ଅଧ୍ୟୟନ କରିବା ବରଂ ଠିକ୍ ହେବ । ଏକ ରାଜନୈତିକ ନିଷ୍ପତ୍ତିର ଫଳସ୍ୱରୂପ ରାଜ୍ୟର ଯେଉଁ ସୀମା ନିର୍ଦ୍ଧାରିତ, ତାହା ପ୍ରାକୃତିକ କ୍ଷେତ୍ର ହେବ ବା କେମିତି ?

ଆଞ୍ଚଳିକ ସୂତ୍ରସାମଗ୍ରୀର ଅନ୍ୱେଷଣ ଆଜିକାଲି ବୃଦ୍ଧି ପାଇଛି । କେତେକ କ୍ଷେତ୍ରରେ ଆଞ୍ଚଳିକ ତଥ୍ୟ ପ୍ରମାଣ ମିଳିବା ପରେ ପୂର୍ବର ଐତିହାସିକ ଅବଧାରଣା ବଦଳିଛି । ପୁଣି ଐତିହାସିକ ପ୍ରଶ୍ନଗୁଡ଼ିକୁ ଅଧିକ ଗଭୀରତାର ସହିତ ବିଶ୍ଳେଷଣ କରିବାକୁ ଏହା ସାହାଯ୍ୟ କରୁଛି । ଉଦାହରଣସ୍ୱରୂପ, ବିଭିନ୍ନ ଅଞ୍ଚଳରେ ଜାତିର ଢାଞ୍ଚା ଭିନ୍ନ ଭିନ୍ନ ହୋଇପାରେ । ତେଣୁ ଚତୁର୍ବର୍ଣ୍ଣ ଆଧାରରେ ଜାତିକୁ ନ ଦେଖି ତା'ର ବିବିଧ ସ୍ୱରୂପକୁ ଖୋଜିବା ଇତିହାସ ଦୃଷ୍ଟିରୁ ଅଧିକ ଉପଯୋଗୀ ସିଦ୍ଧ ହେବ । ଠିକ୍ ସେହିଭଳି, ଅଞ୍ଚଳଗୁଡ଼ିକର ପରିବେଶ, ସମ୍ବଳ ଏବଂ ଅର୍ଥବ୍ୟବସ୍ଥା ମଧ୍ୟ ବିବିଧତାପୂର୍ଣ୍ଣ । ସେହି ବିବିଧତା ଆଞ୍ଚଳିକ ଇତିହାସର ବିଭିନ୍ନ ଦିଗକୁ ପରିଭାଷିତ କରିବା ଲାଗି ସାହାଯ୍ୟ କରିବ । ରାଷ୍ଟ୍ରବାଦୀ ଇତିହାସର ପ୍ରଭାବରେ ଆଞ୍ଚଳିକ ଇତିହାସ କ୍ଷେତ୍ରରେ ଏକ ନୂଆ ପ୍ରବୃତ୍ତି ଆଜିକାଲି ଦେଖିବାକୁ ମିଳୁଛି । ବର୍ତ୍ତମାନ ସମୟରେ ପ୍ରଭୁତ୍ୱ ହାସଲ କରିଥିବା ସାମାଜିକ ଗୋଷ୍ଠୀକୁ ଯୋଡ଼ି ଅଞ୍ଚଳର ଇତିହାସ ଖୋଜା ହେଉଛି, ଅର୍ଥାତ୍ ଆଜି ଯିଏ କ୍ଷମତାଧାରୀ ତାକୁ କେନ୍ଦ୍ରରେ ରଖି ଅତୀତକୁ ଅନ୍ୱେଷଣ କରାଯାଉଛି । ଏହା ଯେ ଆଞ୍ଚଳିକ ଇତିହାସର ସାମଗ୍ରିକ ରୂପକୁ ବିକୃତ କରିବ – ଏଥିରେ

ସନ୍ଦେହ ନାହିଁ । ଯଦି ଦେଖାଯାଏ, ଆଞ୍ଚଳିକ ଇତିହାସର ମହତ୍ତ୍ୱ ଗୋଟାଏ ନିର୍ଦ୍ଦିଷ୍ଟ କ୍ଷେତ୍ରରୁ କେବଳ ନୂଆ ତଥ୍ୟ ପ୍ରମାଣ ଖୋଜିବାରେ ନାହିଁ, ତା' ସହିତ ଐକ୍ୟ ଓ ଅନୈକ୍ୟକୁ ଚିହ୍ନିତ କରିବାରେ ମଧ୍ୟ ରହିଛି । ଏତିକି ହେଲେ ବ୍ୟାପକ ସ୍ତରରେ ସଂଘଟିତ ଐତିହାସିକ ପରିବର୍ତ୍ତନ ସମ୍ପର୍କରେ ଅଧିକ ସଠିକ୍ ଭାବରେ ଏବଂ ସଂକ୍ଷେପରେ ଏକ ସାଧାରଣ ସତ୍ୟ (generalization)ରେ ଉପନୀତ ହେବା ସମ୍ଭବ ହୋଇପାରିବ ।

## ମାର୍କ୍ସବାଦୀ ଇତିହାସ ଓ ତହିଁରୁ ସୃଷ୍ଟ ବିତର୍କ

1950 ଦଶକରୁ ଏକ ଐତିହାସିକ ବିତର୍କ ରୂପରେ ଭାରତରେ ମାର୍କ୍ସବାଦୀ ବ୍ୟାଖ୍ୟା ଆରମ୍ଭ ହେଲା । ଏହା ପରେ ଐତିହାସିକ ପରିବର୍ତ୍ତନକୁ ନେଇ ଯାହା ସବୁ ଚିନ୍ତନ ରହିଥିଲା ତା'ର କାୟାକଳ୍ପ ବଦଳିଗଲା । ଡି.ଡି. କୋସାମ୍ବୀଙ୍କ ରଚନାରୁ କାୟାକଳ୍ପର ପରିବର୍ତ୍ତନ କ୍ରମଶଃ ସ୍ପଷ୍ଟତର ହେବାକୁ ଲାଗିଲା । ଏହା ପୂର୍ବରୁ ରାଜବଂଶର ଇତିହାସ ବଦଳରେ ସାମାଜିକ ଏବଂ ଅର୍ଥନୈତିକ ଇତିହାସକୁ ନେଇ ଯେଉଁ ଆଗ୍ରହ ଜନ୍ମିଥିଲା, ଏଣିକି ତାହା ଢେର୍ ଅଧିକ ମାତ୍ରାରେ ବୃଦ୍ଧି ପାଇଲା । ଏହା ସାମାଜିକ ପରିବର୍ତ୍ତନକୁ ଦର୍ଶାଇବା ଲାଗି ଭିନ୍ନ କିସମର କାଳ ବିଭାଜନ ଉପରେ ଗୁରୁତ୍ୱ ଦେଲା । କାର୍ଲ ମାର୍କ୍ସ ଭାରତ ସମ୍ପର୍କରେ ଯେଉଁ ଅବଧାରଣା ଦେଇଥିଲେ, ତାକୁ ମଧ୍ୟ ମାର୍କ୍ସବାଦୀ ଐତିହାସିକମାନେ ପ୍ରଶ୍ନ କଲେ । ମାର୍କ୍ସ କହିଥିଲେ ଭାରତରେ 'ଏସିଆଟିକ୍ ମୋଡ଼ ଅଫ୍ ପ୍ରଡ଼କ୍ସନ' ବା ଏସୀୟ ଉତ୍ପାଦନ ବ୍ୟବସ୍ଥା କାର୍ଯ୍ୟ କରେ । ଅର୍ଥାତ୍ ଏଠାରେ ଏକ ସ୍ୱତନ୍ତ୍ର ଏସୀୟ ଢାଞ୍ଚାରେ ଉତ୍ପାଦନ କାର୍ଯ୍ୟ ଚାଲିଥିଲା । ମାର୍କ୍ସଙ୍କ ସିଦ୍ଧାନ୍ତକୁ ମାର୍କ୍ସବାଦୀମାନେ ଅସ୍ୱୀକାର କଲେ । କେତେକ ମାର୍କ୍ସବାଦୀ ଐତିହାସିକ ଏବଂ ସମାଜଶାସ୍ତ୍ରୀ ମତ ଦେଲେ, ହୁଏତ ଭାରତ ସମ୍ବନ୍ଧରେ ମାର୍କ୍ସଙ୍କ ସବୁତକ ବିଚାରକୁ ଗ୍ରହଣ କରାଯାଇ ନ ପାରେ, ମାତ୍ର ଏହି ସିଦ୍ଧାନ୍ତ ଅନେକ ଉପଯୋଗୀ ପ୍ରସଙ୍ଗକୁ ଆଗକୁ ଆଣିଛି । ଊନବିଂଶ ଶତାବ୍ଦୀର ଏସିଆକୁ ନେଇ ରହିଥିବା ଆଉ ସିଦ୍ଧାନ୍ତଗୁଡ଼ିକ ପରି ଏହା ମଧ୍ୟ ତ୍ରୁଟିମୁକ୍ତ ନ ଥିଲା । ତ୍ରୁଟି ପଛରେ ପ୍ରଧାନ କାରଣ ହେଲା ଯେ, ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଏସିଆର ଇତିହାସକୁ ଜାଣିବାପାଇଁ ଉପଲବ୍ଧ ସୂତ୍ରସାମଗ୍ରୀର ମୋଟ ପରିମାଣ ଯଥେଷ୍ଟ ନ ଥିଲା । ମାତ୍ର ତା'ଠାରୁ ବଡ଼ କଥା ହେଲା ଯେ, ଉପଲବ୍ଧ ସୂତ୍ରସାମଗ୍ରୀକୁ ଗଭୀର ଭାବରେ ସେପର୍ଯ୍ୟନ୍ତ ଅନୁଧ୍ୟାନ କରାଯାଇ ନ ଥିଲା ।

କୋସାମ୍ବୀ ତାଙ୍କର ବହୁଚର୍ଚ୍ଚିତ ପୁସ୍ତକ 'Introduction to the Study of Indian History' (ଭାରତ ଇତିହାସର ଅଧ୍ୟୟନ : ଏକ ଉପସ୍ଥାପନା)ରେ ରାଜବଂଶୀୟ ଇତିହାସରୁ ଊର୍ଦ୍ଧ୍ୱକୁ ଚାଲିଗଲେ । ଅତୀତ ଭାରତର ବିଭିନ୍ନ ପର୍ଯ୍ୟାୟର ଅର୍ଥନୀତି ଏବଂ ସମାଜକୁ

ଗାଣିତିକ ପଦ୍ଧତିରେ ଅଧ୍ୟୟନ କରାଯିବା କଥା ବୋଲି ସେ ମତ ଦେଲେ । ସେ 'ଜୀବନ୍ତ ପ୍ରାଗ୍ ଇତିହାସ'କୁ ଗୁରୁତ୍ୱ ଦେଉଥିଲେ । ତାଙ୍କର ଯୁକ୍ତି ହେଲା, ସାଂସ୍କୃତିକ ଅବଶେଷ ଆମକୁ ଅଧିକ ସହମର୍ମିତାର ସହ ପୁରାତାତ୍ତ୍ୱିକ ଏବଂ ଐତିହାସିକ ସଂସ୍କୃତିର ସଂରଚନା କରିବାକୁ ବଳ ଦିଏ । ସେ ମହାରାଷ୍ଟ୍ରର ଗ୍ରାମାଞ୍ଚଳ ସହିତ ଖୁବ୍ ପରିଚିତ ଥିଲେ, ଯାହା ତାଙ୍କୁ ସେଠାକାର ପ୍ରାଚୀନ ପୋଥିଗୁଡ଼ିକୁ ଅଧ୍ୟୟନ କରିବାକୁ ଅନ୍ତର୍ଦୃଷ୍ଟି ଦେଇଥିଲା । ସୁଦୂର ଅତୀତକୁ ଦେଖିବାକୁ ସେ ଏକ ନୂଆ ଦୃଷ୍ଟିକୋଣ ଦେଲେ । ତାଙ୍କ ପୁସ୍ତକ 'ମିଥ୍ ଏଣ୍ଡ ରିଏଲିଟି'ର (Myth and Reality) ନିବନ୍ଧଗୁଡ଼ିକ ସୈଦ୍ଧାନ୍ତିକ ଅବଧାରଣାର ସାମାଜିକ ଆଧାରକୁ ଅଧିକ ଅଭିନବ ଢଙ୍ଗରେ ଆବିଷ୍କାର କରିବାପାଇଁ ସହାୟକ ସିଦ୍ଧ ହେଲେ । ଏହାର ଫଳସ୍ୱରୂପ ମାତୃଦେବୀରୁ ଆରମ୍ଭ କରି ସ୍ଥାନୀୟ ଦେବଦେବୀ, ତୀର୍ଥଯାତ୍ରାର ପଥ ଏବଂ ଭଗବଦ୍‌ଗୀତା ଆଦି ନାନା ବିଷୟକୁ ସୃଜନଶୀଳ ଢଙ୍ଗରେ ଅନୁଶୀଳନ କରାଯାଇ-ପାରିଲା । ଯେଉଁସବୁ ପର୍ଯ୍ୟାୟ ଦେଇ ଭାରତର ସମାଜ ଅତିକ୍ରମ କରିଛି ବୋଲି ସେ ମନେକରୁଥିଲେ, ତାକୁ ଏବଂ ତା'ର କାରଣଗୁଡ଼ିକୁ ଚିହ୍ନିତ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଆଜି କୋସାମ୍ବୀଙ୍କ ଅଧ୍ୟୟନର ବହୁ ବର୍ଷ ପରେ ସେହି ପର୍ଯ୍ୟାୟଗୁଡ଼ିକୁ ନେଇ ବିତର୍କ ହୋଇପାରେ, କାରଣ ସାମାଜିକ ପରିବର୍ତ୍ତନ ସଂକ୍ରାନ୍ତରେ ଆଉ ଅନେକ ନୂଆ ସିଦ୍ଧାନ୍ତ ସବୁ ପ୍ରତିଷ୍ଠା ପାଇଲେଣି । ମାତ୍ର ସେହି ପରିବର୍ତ୍ତନର ଯେ ଏକ ନିର୍ଦ୍ଧାରିତ ଧାରା ରହିଥିଲା, ତାହା ଆଦୌ ଅସ୍ୱୀକାର୍ଯ୍ୟ ନୁହେଁ । ଆଜି ଉକ୍ତ ପରିବର୍ତ୍ତନକୁ ବିଶ୍ଳେଷଣ କରିବା ପାଇଁ ଯୁକ୍ତି ଓ ତଥ୍ୟର ମାତ୍ରା ବୃଦ୍ଧି ପାଇଛି, ନୂଆ ନୂଆ କାରଣ ସବୁ ଦୃଷ୍ଟିକୁ ଆସୁଛି । ଏସବୁକୁ କୋସାମ୍ବୀଙ୍କ ମାର୍କ୍ସବାଦୀ ଦୃଷ୍ଟିକୋଣ ବ୍ୟାପକ ଆଧାର ଦେଉଛି – ଏଥିରେ ସନ୍ଦେହ ନାହିଁ ।

ଏସୀୟ ଉତ୍ପାଦନ ବ୍ୟବସ୍ଥା (Asiatic Mode of Production) ନାମରେ ମାର୍କ୍ସ ଦେଇଥିବା ସିଦ୍ଧାନ୍ତକୁ ସମାଲୋଚନା କରାଗଲା ସତ, ମାତ୍ର ଏହାଦ୍ୱାରା ମାର୍କ୍ସବାଦୀ ଚିନ୍ତନ ଖାରଜ ହେଲା ନାହିଁ । ଦାସ ଉତ୍ପାଦନ ବ୍ୟବସ୍ଥା ଓ ସାମନ୍ତବାଦୀ ଉତ୍ପାଦନ ବ୍ୟବସ୍ଥା (Slave Mode of Production ଓ Feudal Mode of Production) ପରି ଅନ୍ୟ କେଉଁ ଉତ୍ପାଦନ ବ୍ୟବସ୍ଥା କାଳେ ଭାରତରେ ପ୍ରାକ୍-ଆଧୁନିକ ଯୁଗରେ ପ୍ରଚଳିତ ଥାଇପାରେ, ତାକୁ ଖୋଜିବାକୁ ମଧ୍ୟ ଗବେଷକମାନେ ଉଦ୍ୟମ କଲେ । ତନ୍ମଧ୍ୟରୁ ସାମନ୍ତବାଦୀ ଉତ୍ପାଦନ ବ୍ୟବସ୍ଥା ବା ସାମନ୍ତବାଦର ସମ୍ଭାବନାକୁ ନେଇ ବ୍ୟାପକ ବିତର୍କମାନ ହେଲା । ଏହା ରାଜ୍ୟର (state) ଚରିତ୍ର, ବିଭିନ୍ନ ସମୟରେ ବଦଳୁଥିବା ଅର୍ଥନୀତି ଏବଂ ଧର୍ମ ଓ ସାମାଜିକ ଗୋଷ୍ଠୀମାନଙ୍କ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ଦେଖିବାକୁ ନୂଆ ଦୃଷ୍ଟିକୋଣ ପ୍ରଦାନ କଲା ।

ପୂର୍ବରୁ କେତେକ ଧାରଣା ଆଧାରରେ ସାମନ୍ତବାଦୀ ୟୁରୋପ ସହିତ ଭାରତକୁ ତୁଳନା କରାଯାଇଥିଲା । ମାତ୍ର ଏହା ଭାରତରେ କ୍ରିୟାଶୀଳ ସମାଜଗୁଡ଼ିକୁ ବିଶ୍ଳେଷଣ କରିବାରେ ବିଶେଷ ଉପଯୋଗୀ ସିଦ୍ଧ ହୋଇ ନ ଥିଲା । ସେହି ଦୃଷ୍ଟିରୁ କୋସାମ୍ବୀଙ୍କର ବିଶ୍ଳେଷଣ ହେବ ପ୍ରଥମ ବ୍ୟବସ୍ଥିତ ଅଧ୍ୟୟନ । ଅନେକ ଛୋଟ ଛୋଟ ରାଜ୍ୟର କାଳଖଣ୍ଡ ଭାବରେ ନ ଦେଖି, କୋସାମ୍ବୀ ମଧ୍ୟଯୁଗକୁ ସାମନ୍ତବାଦୀ ଉତ୍ପାଦନ ବ୍ୟବସ୍ଥା ପ୍ରଚଳିତ ଥିବା ଏକ କାଳାଂଶ ରୂପରେ ଦେଖିଲେ । ମାର୍କ୍ସବାଦୀ ମଡେଲ (model)କୁ ମଧ୍ୟ ତାଙ୍କ ଯୁଗାନ୍ତକାରୀ ବିଚାର ବଦଳେଇ ଦେଲା । ସେ ଦୁଇ କିସମର ସାମନ୍ତବାଦ କଥା ଉଲ୍ଲେଖ କଲେ – ଉର୍ଦ୍ଧ୍ୱରୁ ନିର୍ଦ୍ଦେଶିତ ସାମନ୍ତବାଦ (Feudalism from Above) ଏବଂ ନିମ୍ନରେ ପ୍ରଚଳିତ ସାମନ୍ତବାଦ (Feudalism from Below) । ପ୍ରଥମଟିରେ ସାମନ୍ତମାନେ ପ୍ରତ୍ୟକ୍ଷ ଭାବରେ ରାଜାର ଅଧସ୍ତନ ଥିଲେ ଏବଂ ରାଜା ଓ ସାମନ୍ତ ମଧ୍ୟରେ ଅନ୍ୟ ମଧ୍ୟସ୍ଥି ନ ଥିଲେ । ଦ୍ୱିତୀୟ କିସମର ସାମନ୍ତବାଦରେ, ତାଙ୍କ ମତରେ, ରାଜା ଏବଂ ପ୍ରଜା ମଧ୍ୟରେ ବିଭିନ୍ନ ପର୍ଯ୍ୟାୟରେ ମଧ୍ୟସ୍ଥିମାନେ ଅବସ୍ଥାପିତ ଥିଲେ । ଏହି ଦୁଇ କିସମର ସାମନ୍ତବାଦର ବିଚାରକୁ ସାଧାରଣତଃ ଗବେଷଣାରେ ସ୍ୱୀକାର କରାଯାଇ ନାହିଁ । ମାତ୍ର ସାମନ୍ତବାଦ ସମ୍ବନ୍ଧରେ ସେ ଦେଇଥିବା ବ୍ୟାପକ ଯୁକ୍ତିଗୁଡ଼ିକ ଆଲୋଚନାର ପରିସରକୁ ଆସିଲା । ଗବେଷକମାନେ ମତ ଦେଲେ ଯେ ରାଜା ବିଭିନ୍ନ ଧାର୍ମିକ ବ୍ୟକ୍ତି ଓ ଅନୁଷ୍ଠାନକୁ ହିତାଧିକାର ତଥା ଅଧସ୍ତନ କର୍ମଚାରୀମାନଙ୍କୁ ଭୂମିଦାନ କରି ରାଜା କୃଷି ଅର୍ଥନୀତିକୁ ନିୟନ୍ତ୍ରଣ ଓ ପୁନର୍ନିର୍ମାଣ କରୁଥିଲେ । କେବେ କେବେ ଏହି ଭୂମିଦାନ ସହିତ ଆର୍ଥିକ ଏବଂ ବୈଧାନିକ ଅଧିକାର ମଧ୍ୟ ହିତାଧିକାରୀମାନଙ୍କୁ ରାଜାଙ୍କ ଦୟାରୁ ପ୍ରାପ୍ତ ହେଉଥିଲା । ଏହା ଯୋଗୁଁ ହିତାଧିକାରୀମାନେ ମଧ୍ୟସ୍ଥି ଜମିଦାର ଗୋଷ୍ଠୀରେ ରୂପାନ୍ତରିତ ହେଉଥିଲେ । ସେମାନଙ୍କ ହାତରେ ବିଭିନ୍ନ ପ୍ରଶାସନିକ ଅଧିକାର ରହିଥିଲା, ଯାହା କୃଷକର ଶ୍ରମକୁ ଶୋଷଣ କରିବାରେ ସାହାଯ୍ୟ କରୁଥିଲା । ଏହି ଶୋଷଣ ୟୁରୋପରେ 'ସାର୍ଫଡ଼ମ' ବା 'କୃଷିଦାସତନ୍ତ୍ର' (Serfdom) ବା ସାମନ୍ତବାଦୀ ବ୍ୟବସ୍ଥାରେ ରହିଥିବା ଶୋଷଣ ଭଳି ଥିଲା ନା ନାହିଁ – ସେ ନେଇ ବିତର୍କ ଏବେ ମଧ୍ୟ ଶେଷ ହୋଇ ନାହିଁ । ଯେଉଁ ରାଜପ୍ରଦତ୍ତ ଚାର୍ଟର (charter) ବା ରାଜାଦେଶକୁ ଆଗରୁ ବଂଶାବଳୀର ସୂଚନା, ରାଜାଙ୍କର ନାମ, ଗ୍ରାମ ଏବଂ ସମୟକାଳ ଜାଣିବା ଲାଗି ବ୍ୟବହାର କରାଯାଉଥିଲା, ଏବେ ସାମାଜିକ ଏବଂ ଆର୍ଥିକ ତଥ୍ୟ ପାଇବା ଲାଗି ସେଗୁଡ଼ିକୁ ତର୍ଜମା କରାଯାଉଛି । ଏହା ସହିତ ସାମନ୍ତବାଦୀ ବ୍ୟବସ୍ଥାର ସାଂସ୍କୃତିକ ଏବଂ ବୈଚାରିକ ତଥ୍ୟଗୁଡ଼ିକୁ ମଧ୍ୟ ଆଲୋଚନାର ପରିସର ଭିତରକୁ ଅଣାଯାଉଛି ।

ସର୍ବପ୍ରଥମେ ମାର୍କ୍ସବାଦୀମାନେ ସାମନ୍ତବାଦୀ ଉତ୍ପାଦନ ପଦ୍ଧତି ସମ୍ବନ୍ଧରେ ଆଲୋଚନା ଆରମ୍ଭ କରିଥିଲେ । ଭାରତରେ ସାମନ୍ତବାଦର ପ୍ରଚଳନ ରହିଥିଲା ନା ନାହିଁ – ସେ ନେଇ

ଖୁବ୍ ବିତର୍କ ହେଲା । ଉଭୟ ମାର୍କ୍ସବାଦୀ ଏବଂ ଅଣ-ମାର୍କ୍ସବାଦୀମାନେ ବିତର୍କ ପ୍ରତି ଆକୃଷ୍ଟ ହେଲେ । ରାଜଶକ୍ତିର ବିକେନ୍ଦ୍ରୀକରଣ, ସମ୍ପନ୍ଧ ଏବଂ ଶ୍ରମର ବ୍ୟବହାର ତଥା ଧାର୍ମିକ ଅଭିବ୍ୟକ୍ତି ଆଦି ବିତର୍କର ପ୍ରମୁଖ ପ୍ରସଙ୍ଗ ହେଲେ । ଯେଉଁ ଐତିହାସିକମାନେ ମଧ୍ୟଯୁଗକୁ ନେଇ ଗବେଷଣା କରୁଛନ୍ତି, ଆଜି ମଧ୍ୟ ସେମାନଙ୍କ ପାଇଁ ଏକ ଐତିହାସିକ ପ୍ରକ୍ରିୟା ଭାବରେ ସାମନ୍ତବାଦ ଏକ ଆଗ୍ରହପୂର୍ଣ୍ଣ ବିଷୟ । ବିଷୟଟିକୁ ପୁଙ୍ଖାନୁପୁଙ୍ଖ ବୁଝିବା ନିମିତ୍ତ ମାର୍କ୍ସବାଦୀମାନେ ଦେଇଥିବା ସାମନ୍ତବାଦୀ ଉତ୍ପାଦନ ବ୍ୟବସ୍ଥାର ବିଚାର ସର୍ବଦା ଆରମ୍ଭ ବିନ୍ଦୁ ହୁଏ । ଏହା ଜମିମାଲିକ ଏବଂ ପରିବାର କରି ରହୁଥିବା କୃଷକକୁ ଦୁଇଟି ଭିନ୍ନ ଭିନ୍ନ ସ୍ୱତନ୍ତ୍ର ସତ୍ତା ଭାବରେ ଦେଖିଥାଏ । ତା'ଛଡ଼ା ଉଭୟ ସତ୍ତା ବା ଗୋଷ୍ଠୀ ମଧ୍ୟରେ ଥିବା ସମ୍ପନ୍ଧକୁ ବଳପ୍ରୟୋଗ ବା ଭୟ ପ୍ରଦର୍ଶନ ଆଧାରରେ ଅନୁଶୀଳନ କରେ । ଅର୍ଥାତ୍ ଜମିମାଲିକ ବର୍ଗ ବଳ ପ୍ରୟୋଗପୂର୍ବକ କିମ୍ବା ଭୟ ପ୍ରଦର୍ଶନ କରି କୃଷକ ବର୍ଗକୁ ଶୋଷଣ କରନ୍ତି, ତା'ଠାରୁ ବଳକା ଉତ୍ପାଦନକୁ ନେଇଯାଆନ୍ତି ତଥା ବିନା ପାଉଣାରେ ତା'ଠାରୁ ଭିନ୍ନ ଭିନ୍ନ ଧରଣର କାମ ବା ବେଠି-ବେଗାରି ଦାବି କରନ୍ତି । ସମସ୍ୟା ହେଲା ଯେ, ସମାଜ ଦାସପ୍ରଥାରୁ ସାମନ୍ତପ୍ରଥାକୁ ରୂପାନ୍ତରିତ ହେବା ସମୟରେ ଭାରତରେ ଏହିପ୍ରକାର ଶୋଷଣ ଆରମ୍ଭ ହୋଇ ନ ଥିଲା । ଭାରତରେ ଦାସ ଥିଲେ, ମାତ୍ର ୟୁରୋପ ପରି ଏଠାରେ ଦାସ ଉତ୍ପାଦନ ବ୍ୟବସ୍ଥା ପ୍ରଚଳିତ ନ ଥିଲା । ପୁଣି ଭାରତରେ କୃଷିଦାସତନ୍ତ୍ର ବା ସାର୍ଫ (Serf); ସାମନ୍ତବାଦୀ ବ୍ୟବସ୍ଥାର କୃଷିଦାସତୁଲ୍ୟ ସାମାଜିକ ଗୋଷ୍ଠୀ ବ୍ୟବସ୍ଥା ରହିଥିଲା ନା ନାହିଁ – ସେ ନେଇ ଗବେଷକମାନଙ୍କ ମଧ୍ୟରେ ଏକମତ ନାହିଁ । ତେଣୁ ଭାରତରେ ଦାସରୁ ସାର୍ଫକୁ ରୂପାନ୍ତର ବଦଳରେ ଅନ୍ୟ କେଉଁ ସାମାଜିକ ପରିବର୍ତ୍ତନରେ ସାମନ୍ତବାଦର ଆରମ୍ଭ ଖୋଜିବାକୁ ପଡ଼ିବ ବୋଲି ପ୍ରାରମ୍ଭିକ ମାର୍କ୍ସବାଦୀ ଗବେଷକମାନେ ବିଚାର କଲେ ।

କେତେକ ଐତିହାସିକଙ୍କ ମତରେ ଭାରତରେ ସାମନ୍ତବାଦର କିସମ ୟୁରୋପଠାରୁ ପୃଥକ୍ ଥିଲା । ମଧ୍ୟଯୁଗୀୟ ୟୁରୋପର ବର୍ଣ୍ଣନାରେ ଫିପ (fief) ଏବଂ ଭସାଲ (vassal) ରହନ୍ତି; ମାତ୍ର ସବୁ 'ଭସାଲ' ଗୋଟାଏ କିସମର କିମ୍ବା ସବୁ 'ଫିପ' ଗୋଟାଏ ପ୍ରକାରର ନୁହନ୍ତି । ଠିକ୍ ସେହିଭଳି ଚାରିଆଡ଼େ ସାମନ୍ତବାଦର ସ୍ୱରୂପ ଏକା ହୋଇ ନ ପାରେ । ୟୁରୋପରେ ପ୍ରବର୍ତ୍ତିତ ସାମନ୍ତବାଦର ଅବିକଳ ନକଲ ଭାରତରେ ଖୋଜାଯାଇ ନ ପାରେ । ମାତ୍ର ଉଭୟ ବ୍ୟବସ୍ଥା ମଧ୍ୟରେ ଯାହାସବୁ ସମରୂପ ରହିଥିଲା, ତାହା ଏକ ରକମର ତୁଳନାତ୍ମକ ଅଧ୍ୟୟନକୁ ପ୍ରୋତ୍ସାହିତ କରିପାରିବ । ଅନେକ ମଧ୍ୟଯୁଗୀୟ ସମାଜରେ ପ୍ରଜା ଉପରେ ବଳ ପ୍ରୟୋଗ ହେଉଥିଲା । ଯେହେତୁ ସମସ୍ତ ସମ୍ପର୍କର ଆଧାର ଥିଲା କୃଷି ଜମି ଏବଂ କ୍ଷମତାର କେନ୍ଦ୍ରୀକରଣ ହୋଇ ନ ଥିଲା, ସେବାଧିକାର (service tenure) ମାଧ୍ୟମରେ ବଳପ୍ରୟୋଗ

ନିୟନ୍ତ୍ରଣାଧୀନ ରହୁଥିଲା । ଅର୍ଥାତ୍ ବଳପ୍ରୟୋଗ ମାତ୍ରାଧିକ ହେଲେ ପ୍ରଜା କୃଷି ଜମିରେ ସେବା ନ କରି ପଳାୟନ କରିପାରେ । ଏହି ଆଶଙ୍କା ଯୋଗୁଁ ପ୍ରଜା ଉପରେ ସାମନ୍ତ ପକ୍ଷରୁ ମାତ୍ରାଧିକ ବଳପ୍ରୟୋଗ ହେଉ ନ ଥିଲା । ଇଂରାଜୀରେ 'ଫ୍ୟୁଡାଲ' (ସାମନ୍ତ) ଶବ୍ଦକୁ ଏତେଗୁଡ଼ାଏ ପରିସ୍ଥିତିରେ ବୁଝିବା ଲାଗି ବ୍ୟବହାର କରାଯାଉଛି ଯେ, ତା'ର ଗୋଟାଏ ନିର୍ଦ୍ଦିଷ୍ଟ ପରିଭାଷା ଖୋଜିବା କଷ୍ଟ, ଯାହାକୁ ସବୁ ପରିସ୍ଥିତିରେ ବ୍ୟବହାର କରାଯାଇପାରିବ ।

ବିଭିନ୍ନ ସମାଜରେ ଉତ୍ପାଦନ ପ୍ରକ୍ରିୟା ଭିନ୍ନ ଭିନ୍ନ ହୋଇପାରେ । ସବୁଠାରେ ଗୋଟାଏ କିସମର ଉତ୍ପାଦନ ଧାରା ରହିଥିବ ବୋଲି କିଛି ମାନେ ନାହିଁ । ଇତିହାସରେ ଦ୍ୱନ୍ଦ୍ୱାତ୍ମକ ଯୁକ୍ତି ପଦ୍ଧତିର ପ୍ରୟୋଗ ହେଲା ପରେ ଏହି ବିଚାର ମନକୁ ଆସିଲା । ମାର୍କ୍ସ ଯେଉଁ ଧାରାର ବର୍ଣ୍ଣନା କରିଛନ୍ତି ସେହି ଧାରାକୁ ଅନୁସରଣ କରି ପାଞ୍ଚଟି ପର୍ଯ୍ୟାୟରେ ଗତି କରି ସମାଜ ସବୁଠାରେ ଏବଂ ସବୁ ସମୟରେ ପରିବର୍ତ୍ତନ ଦେଖିବ ବୋଲି କିଛି ମାନେ ନାହିଁ । ସେହି ପାଞ୍ଚଟି ପର୍ଯ୍ୟାୟ ମଧ୍ୟରେ ଆଦ୍ୟ ସାମ୍ୟବାଦ (primitive communism), ଦାସପ୍ରଥା (slavery) ଏବଂ ସାମନ୍ତବାଦ (feudalism) ହେଲେ ପ୍ରାକ୍-ଉପନିବେଶବାଦକାଳୀନ । ତେଣୁ ମାର୍କ୍ସବାଦକୁ ଆଧାର କରି ଉତ୍ପତ୍ତି ଲାଭ କରିଥିବା କେତେକ ସିଦ୍ଧାନ୍ତ ୟୁରୋପ ପାଇଁ ନିର୍ଦ୍ଧାରିତ ଉତ୍ପାଦନ ଧାରାର ଢାଞ୍ଚାରୁ ବାହାରି ଗଲେଣି ଏବଂ ଅନେକ ଅଭିନବ ଉତ୍ପାଦନ ଧାରା ଦ୍ୱାରା ପ୍ରଭାବିତ ହେଲେଣି । ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀରେ ଯେଉଁ ପ୍ରକ୍ରିୟାରେ ରାଜ୍ୟଗୁଡ଼ିକର ଗଠନ ପ୍ରକ୍ରିୟା ଆରମ୍ଭ ହେଲା, ବିଶେଷକରି ଯେଉଁ ଢଙ୍ଗରେ କୁଳ ଶାସକ ଏବଂ ସର୍ଦ୍ଦାର ବା ମୁଖିଆମାନେ ରାଜ୍ୟ ଏବଂ ରାଜା ଚରିତ୍ର ଲାଭ କଲେ, ତାହା ସେହି ଅଧ୍ୟୟନକୁ ଅନୁଶୀଳନ କଲେ ସୁସ୍ପଷ୍ଟ ହୁଏ । ପ୍ରାଚୀନ ରାଜ୍ୟର ନୃତାତ୍ତ୍ୱିକ ବିଶ୍ଳେଷଣ ସହିତ ଏହି ଆଲୋଚନାର ସମ୍ପର୍କ ଥିବା ଜଣାପଡ଼େ । ମାତ୍ର ଗବେଷଣାର ଏହିସବୁ ମଡେଲକୁ ବହୁଳ ଭାବରେ ଉପଯୋଗ କରାଯାଇ ନାହିଁ । ଜଳସେଚନ, ଶ୍ରମ, ସମ୍ବଳ ଏବଂ କୃଷି ଉପକରଣ ଉପରେ କାହାର ନିୟନ୍ତ୍ରଣ ରହିଥିଲା, ତାକୁ ଜାଣିବା ଲାଗି ନୃତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ଆଜିକାଲି ଖୁବ୍ ଆଗ୍ରହ ସୃଷ୍ଟି ହେଉଛି । ଏହି ସବୁ ପ୍ରସଙ୍ଗର ପ୍ରତିଫଳନ ରାଜ୍ୟ ସଂକ୍ରାନ୍ତୀୟ ପ୍ରାଥମିକ ଅବଧାରଣାରେ ଦେଖିବାକୁ ମିଳିଥାଏ ।

ରାଜ୍ୟ ଗଠନର ବିଭିନ୍ନ ଦିଗକୁ ନେଇ ଯେଉଁ ଆଲୋଚନା, ତହିଁରେ ଖ୍ରୀ.ପୂ. 500 ଶତାବ୍ଦୀ ପୂର୍ବରୁ ଉତ୍ତର ଭାରତରେ ସଂଘଟିତ ସମସ୍ତ ପରିବର୍ତ୍ତନକୁ ଏହି ପୁସ୍ତକରେ ସାମିଲ କରାଯାଇଛି । ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ଗାଙ୍ଗେୟ ସମତଳ ଅଞ୍ଚଳରେ ରାଜ୍ୟମାନ ଗଠିତ ହେଲେ । ତାକୁ ଉଦାହରଣ ଭାବରେ ନେଇ ସାଧାରଣତଃ ରାଜ୍ୟ ବ୍ୟବସ୍ଥା ଓ ସହରଗୁଡ଼ିକର ବିକାଶକୁ ବିଶ୍ଳେଷଣ କରାଯାଏ । ବିଶ୍ଳେଷଣରେ ଯେଉଁ

ଉପାଦାନଗୁଡ଼ିକ ଏହି ପରିବର୍ତ୍ତନ ପାଇଁ କାରଣ ହୋଇଥିଲେ, ସେଗୁଡ଼ିକୁ ମହତ୍ତ୍ୱ ଦିଆଯାଏ । ଉପାଦାନଗୁଡ଼ିକ ମଧ୍ୟରେ ଅଞ୍ଚଳ, ରାଜ୍ୟଜୟ ଓ କ୍ଷମତାର ଅବଧାରଣାକୁ ସହଯୋଗ କରିଥିବା ପରମ୍ପରା, ପ୍ରଶାସନିକ ନିୟନ୍ତ୍ରଣ ଏବଂ ସ୍ଥାପିତ ଟେକ୍ନୋଲୋଜିକୁ ବିରୋଧ କରି ଆରମ୍ଭ ହୋଇଥିବା ନୂଆ ଟେକ୍ନୋଲୋଜିକୁ ଏହି ପୁସ୍ତକରେ ଚିହ୍ନିତ କରାଯାଇଛି । ମୌର୍ଯ୍ୟ କାଳରେ ସାମ୍ରାଜ୍ୟର ଅଭ୍ୟୁଦୟ ପରେ ରାଜ୍ୟ ଓ ସାମ୍ରାଜ୍ୟ ମଧ୍ୟରେ ରହିଥିବା ପାର୍ଥକ୍ୟକୁ ଦେଖାଯାଇଛି । ଖାମଖିଆଲି ଭାବରେ ଆଉ 'ସାମ୍ରାଜ୍ୟ' ଶବ୍ଦର ବ୍ୟବହାର କରାଯାଉ ନାହିଁ । ସାମ୍ରାଜ୍ୟର ବୈଶିଷ୍ଟ୍ୟଗୁଡ଼ିକୁ ଦର୍ଶାଇବା ପାଇଁ ଗବେଷଣା ହୋଇଛି । ରାଜ୍ୟର ସଂଜ୍ଞା ନିରୂପଣ ବେଳେ ମଧ୍ୟ ଏହି ଗବେଷଣା ଉପଯୋଗୀ ସିଦ୍ଧ ହୋଇଛି ।

ଅଷ୍ଟମ ଶତାବ୍ଦୀ ପରବର୍ତ୍ତୀ ସମୟର ରାଜ୍ୟଗୁଡ଼ିକର ଗଠନ ସଂକ୍ରାନ୍ତରେ ଯେଉଁ ଅନ୍ୟ ସିଦ୍ଧାନ୍ତ ପ୍ରଚଳିତ, ସେଗୁଡ଼ିକ ମାର୍କ୍ସବାଦୀ ମଡେଲକୁ ଗ୍ରହଣ କରନ୍ତି ନାହିଁ । ମାର୍କ୍ସବାଦୀ ମଡେଲର ସେମାନେ ସମାଲୋଚନା କରନ୍ତି, ଯାହା ସେମାନଙ୍କ ଦିଆ ସୂତ୍ରର (formulation) ଆରମ୍ଭ ବିନ୍ଦୁ ହୁଏ । ତନ୍ମଧ୍ୟରୁ ଗୋଟାଏ ସିଦ୍ଧାନ୍ତ ଅନୁଯାୟୀ ଗୁପ୍ତଯୁଗ ପରବର୍ତ୍ତୀ ସମୟରେ ରାଜ୍ୟଗୁଡ଼ିକ ପୂର୍ବବର୍ତ୍ତୀ ଯୁଗର ରାଜ୍ୟଠାରୁ ଭିନ୍ନ ଥିଲେ, ମାତ୍ର ସାମନ୍ତବାଦୀ ରାଜ୍ୟ ନ ଥିଲେ । ନୂତନ ନାମରେ ଏବଂ ଶାସକ କୁଳର (Ruling Lineage) ନାମରେ କ୍ଷେତ୍ରଗୁଡ଼ିକର ଉତ୍‌ଥାନ ହେଲା; ତହିଁରେ ବଂଶର ନାମ ରହିଲା ନାହିଁ । ରାଜ୍ୟ ସ୍ଥାପନର ପୂର୍ବବର୍ତ୍ତୀ ସ୍ଥିତିରେ ପରିବର୍ତ୍ତନ ଘଟି ରାଜ୍ୟର ଅଭ୍ୟୁଦୟ ହେଲା ଏବଂ କ୍ଷମତାର କେନ୍ଦ୍ର ଗଠିତ ହେଲା । ଶାସକ ବଂଶର ଶାଖାକୁଳଗୁଡ଼ିକର ବସତିକୁ ଆଖପାଖରେ ସ୍ଥାପିତ କରି ନୂତନ କ୍ଷେତ୍ରଗୁଡ଼ିକୁ ରାଜ୍ୟମାନେ ଶାସନାଧିକାରରେ ରଖିଲେ । ଅର୍ଥାତ୍ ଭାରତରେ ବିକେନ୍ଦ୍ରିତ ସାମନ୍ତବାଦୀ ବ୍ୟବସ୍ଥାର ସୃଷ୍ଟି ହେଲା ନାହିଁ । ତା' ବଦଳରେ ରାଜତନ୍ତ୍ର ବ୍ୟବସ୍ଥା ରାଜ୍ୟ ନ ଥିବା ଅଞ୍ଚଳଗୁଡ଼ିକୁ ବିସ୍ତାରିତ ହେଲା । ଭାରତରେ ଏହା 'ସମନ୍ୱିତ ରାଜନୀତି'କୁ (Integrative Polity) ଜନ୍ମ ଦେଲା । ଏହି ରାଜ୍ୟ ଗଠନ ସିଦ୍ଧାନ୍ତକୁ ରାଜସ୍ଥାନ ପରିପ୍ରେକ୍ଷୀରେ ଉଲ୍ଲେଖ କରାଯାଏ । ମାତ୍ର ରାଜ୍ୟ ଗଠନର ଏହି ସମନ୍ୱିତ ରାଜନୀତି କେତେ ମାତ୍ରାରେ ଦେଶର ଚାରିଆଡ଼କୁ ବିସ୍ତାରିତ ହୋଇଥିଲା, ତାହା ସ୍ପଷ୍ଟ ହୋଇ ନାହିଁ । ଅବଶ୍ୟ ପ୍ରତ୍ୟେକ ରାଜନୀତି ନିଜ ନିଜ ଢଙ୍ଗରେ ସମନ୍ୱିତ ହୋଇ ରହିଥାନ୍ତି । ଯେଉଁ କ୍ଷେତ୍ରରେ ନୂଆ କରି ରାଜ୍ୟ ଗଠନ ହେଲା, ସେଠାରେ ଏହି ପ୍ରକ୍ରିୟାର ଯଥାର୍ଥତାକୁ ଦେଖାଯାଇପାରେ । ମାତ୍ର ଯେଉଁ କ୍ଷେତ୍ରରେ ପୂର୍ବରୁ ରାଜ୍ୟ ଗଠନ ହୋଇସାରିଛି, ସେଠାରେ ଏହାର ପ୍ରୟୋଗ ରହି ନ ପାରେ । ନୂତନ ଏବଂ ପୁରାତନ ରାଜ୍ୟରେ ଏହି ପ୍ରକ୍ରିୟାର ପ୍ରଭାବର ମାତ୍ରାକୁ ଅନୁଶୀଳନ କରିବା ମଧ୍ୟ ଐତିହାସିକ ଗବେଷଣାର ବିଷୟ ହୋଇପାରିବ ।

ରାଜ୍ୟ ଗଠନର ଅନ୍ୟ ଏକ ମଡେଲ ହେଲା 'ସେଗମେଣ୍ଟାରି ଷ୍ଟେଟ୍' (Segmentary State) । ଏହାକୁ 'ଖଣ୍ଡିତ ରାଜ୍ୟ' ବୋଲି କୁହାଯାଇପାରେ । ଆରମ୍ଭରେ କେବଳ ଆଫ୍ରିକାର ସମାଜରେ ଏପରି ରାଜ୍ୟ ଗଠିତ ହୋଇଥିଲା ବୋଲି କୁହାଯାଉଥିଲା, କାରଣ ସେଠାକାର ସମାଜ ଖଣ୍ଡିତ ଏବଂ ସେଠାରେ ସ୍ପଷ୍ଟ ରାଜ୍ୟ ବ୍ୟବସ୍ଥା ନ ଥିଲା । ଖଣ୍ଡିତ ସମାଜ ସେହି ବ୍ୟବସ୍ଥାରେ ଦେଖାଯାଏ, ଯେଉଁଠି ମୂଳ ବଂଶ ପରେ ସ୍ଥାପିତ ହୋଇଥିବା ଆନୁବଂଶିକ ଗୋଷ୍ଠୀର (Descent group) ସତ୍ତାକୁ ସ୍ୱୀକୃତି ମିଳେ । ତେଣୁ ଖଣ୍ଡିତ ରାଜ୍ୟ ହେଲା ଏକ ରକମର ଅନ୍ତର୍ବିରୋଧ । ପୂର୍ବ ଆଫ୍ରିକାର ଆଲୁର ହେଲା ସେହିଭଳି ଢଙ୍ଗରେ ବିକାଶ ଲାଭ କରିଥିବା ଏକ ରାଜ୍ୟ, ଯାହାର ମୂଳ ରହିଛି ଖଣ୍ଡିତ ସ୍ୱରୂପରେ । ରାଜ୍ୟ ଗଠନ ପ୍ରକ୍ରିୟାକୁ ଅନୁଶୀଳନ କରିବା ଲାଗି ବ୍ୟବହାର ହୋଇଥିବା ଏହି ସିଦ୍ଧାନ୍ତକୁ ଭାରତ ପରିପ୍ରେକ୍ଷୀରେ ମଧ୍ୟ ଦେଖାଗଲା । ବିଶେଷକରି ଦକ୍ଷିଣ ଭାରତର ରାଜ୍ୟଗୁଡ଼ିକରେ ଏହି ପ୍ରକ୍ରିୟାରେ ରାଜ୍ୟ ଗଠନ ହୋଇଥିଲା ବୋଲି କୁହାଗଲା । ଖଣ୍ଡିତ ରାଜ୍ୟରେ ରାଜନୈତିକ ସାର୍ବଭୌମତ୍ୱ ପ୍ରାୟତଃ ପାରମ୍ପରିକ କର୍ତ୍ତୃତ୍ୱଠାରୁ ପୃଥକ୍ ରହେ । ରାଜ୍ୟର ରାଜନୈତିକ ସାର୍ବଭୌମତ୍ୱ କେନ୍ଦ୍ରାଞ୍ଚଳ ବା ମୁଖ୍ୟ କ୍ଷେତ୍ରରେ ସୀମିତ ରହେ ଏବଂ ପାରମ୍ପରିକ କର୍ତ୍ତୃତ୍ୱ ପାର୍ଶ୍ୱକ୍ଷେତ୍ରରେ ସ୍ଥାପିତ ହୋଇ ରହେ । କେନ୍ଦ୍ରର ନିୟନ୍ତ୍ରଣ ମାଧ୍ୟମରେ ରାଜ୍ୟରେ ଏକତା ରକ୍ଷା କରାଯାଏ । ମାତ୍ର ଏଥିପାଇଁ ବିଶେଷତଃ ପାରମ୍ପରିକ ସମ୍ମତିର ସହଯୋଗ ନିଆଯାଏ । ଏହି ସିଦ୍ଧାନ୍ତ ରାଜନୈତିକ ବ୍ୟବସ୍ଥାର (Political Economy) ଧାରାକୁ ଭଲଭାବେ ବିଶ୍ଳେଷଣ କରିପାରେ ନାହିଁ । ତେଣୁ ତା'ର ପକ୍ଷଧର ବିଶେଷ ନାହାନ୍ତି । ମାତ୍ର ଆରମ୍ଭରେ ଏହି ସିଦ୍ଧାନ୍ତ ମଧ୍ୟ ଦକ୍ଷିଣ ଭାରତର ଇତିହାସ ସଂକ୍ରାନ୍ତରେ ଅନେକ ଉପଯୋଗୀ ବିଚାର ଲୋକଲୋଚନକୁ ଆଣିଥିଲା ।

ରାଜ୍ୟ ଗଠନ ସଂକ୍ରାନ୍ତୀୟ ଏହିସବୁ ସିଦ୍ଧାନ୍ତରୁ ଯେଉଁ ସବୁ ଯୁକ୍ତି, ତଥ୍ୟ ଏବଂ ସମୀକ୍ଷା ଉତ୍ଥାପିତ ହେଲା, ତହିଁରୁ ଗୋଟାଏ କଥା ସିଦ୍ଧ ହେଲା ଯେ, ଏମିତି କୌଣସି ନିର୍ଦ୍ଦିଷ୍ଟ ଢାଞ୍ଚା ନାହିଁ, ଯାହାକୁ ପ୍ରତିଟି ରାଜ୍ୟରେ ଦେଖାଯାଇପାରିବ । ତତ୍କାଳୀନ ଇତିହାସର ବିଭିନ୍ନ ଦିଗକୁ ଏହା ସୁସ୍ପଷ୍ଟ କରେ । ଉଦାହରଣସ୍ୱରୂପ, ଜାପାନ ଓ ଦକ୍ଷିଣ ଭାରତର ବିଦ୍ୱାନ୍‌ମାନେ କମ୍ପ୍ୟୁଟର ଆଧାରିତ ଅଭିଲେଖର ବିଶ୍ଳେଷଣ କରି ଯେଉଁ ଉଚ୍ଚମାନର ତଥ୍ୟାତ୍ମକ ଗବେଷଣା କରିଛନ୍ତି, ତାହା ଗବେଷଣାର ପଦ୍ଧତି ଏବଂ ସାଧାରଣ ସତ୍ୟକୁ ମାର୍ଜିତ କରିଛି । ଏହା କୃଷି ଓ ବ୍ୟାବସାୟିକ ବ୍ୟବସ୍ଥାର ସରକାରୀ କର୍ତ୍ତୃତ୍ୱ ଏବଂ ପ୍ରଶାସନିକ ବ୍ୟବସ୍ଥା ସହିତ ସମ୍ବନ୍ଧକୁ ଆଲୋଚନାର ମୁଖ୍ୟ ପ୍ରସଙ୍ଗ କରିଛି । ନୂତନ ଜାତି, ଧାର୍ମିକ ବିଶ୍ୱାସ ଏବଂ ଧାର୍ମିକ ପରମ୍ପରାର ସୃଷ୍ଟି ଆଦି ସାମାଜିକ ପ୍ରକ୍ରିୟା ମଧ୍ୟ ଗବେଷଣାର ଧ୍ୟାନ ଆକର୍ଷଣ କରିଛି । ଏହି

ପୁସ୍ତକର ଏକାଦଶ ଏବଂ ତ୍ରୟୋଦଶ ଅଧ୍ୟାୟରେ ଏ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି । ଏଠାରେ କେବଳ ଗବେଷଣାର ଦିଗକୁ ଚିହ୍ନିତ କରାଗଲା ।

## ଇତିହାସ : ଏକ ସାମାଜିକ ଏବଂ ମାନବିକ ବିଜ୍ଞାନ

ଭାରତର ଇତିହାସ ରଚନାଧାରାରେ ଯେତେବେଳେ ଅନ୍ୟ ଆଲୋଚନାମାନ ସଂଘଟିତ ହେଉଥିଲା, ସେତେବେଳେ ମାର୍କ୍ସବାଦୀ ଇତିହାସ ଲେଖନ ମଧ୍ୟ ଆରମ୍ଭ ହେଲା । ଏହା ପୂର୍ବୋକ୍ତ ଆଲୋଚନାରେ ଦର୍ଶାଯାଇଛି । 1950 ଏବଂ 1960 ଦଶକରୁ ଭାରତରେ ସାମାଜିକ ବିଜ୍ଞାନ ଏକ ପ୍ରତିଷ୍ଠିତ ବିଷୟ ରୂପରେ ସ୍ୱୀକୃତି ପାଇଲା । ଏହାର ପ୍ରତ୍ୟକ୍ଷ ସମ୍ବନ୍ଧ ରହିଥିଲା ସ୍ୱାଧୀନୋତ୍ତର ସମୟ ସହିତ, କାରଣ ଭାରତୀୟ ସମାଜର ପ୍ରକୃତ ମୂଲ୍ୟାଙ୍କନକୁ ସେତେବେଳେ ଏକ ଆବଶ୍ୟକତା ବୋଲି ମନେ କରାଗଲା । ଅନ୍ୟ ସହଯୋଗୀ ବିଷୟ, ଯଥା : ଅର୍ଥନୀତି, ଜନଗଣନା ବିଜ୍ଞାନ, ସାମାଜିକ ନୃତତ୍ତ୍ୱ, ସମାଜଶାସ୍ତ୍ର, ସାମାଜିକ ଭାଷାତତ୍ତ୍ୱ, ପ୍ରତ୍ନତତ୍ତ୍ୱ ଏବଂ ଇତିହାସ ଆଦି ସ୍ୱତନ୍ତ୍ର ଭାବରେ ବିକାଶ ଲାଭ କଲେ । ଏହା ସହିତ ଅନ୍ତର୍ବିଷୟ ଗବେଷଣା (inter-disciplinary research) ପ୍ରତି ଆଗ୍ରହ ବୃଦ୍ଧି ପାଇଲା । ଅର୍ଥାତ୍ ଗୋଟାଏ ନିର୍ଦ୍ଦିଷ୍ଟ ବିଷୟରେ ଚର୍ଚ୍ଚାକୁ ଆସିଥିବା ପ୍ରଶ୍ନକୁ ନେଇ ଅନ୍ୟ ବିଷୟର ଗବେଷକମାନେ ମଧ୍ୟ ଆଗ୍ରହ ପ୍ରକାଶ କଲେ ।

ଏସବୁ ବିଷୟ ମଧ୍ୟରେ ଇତିହାସ ରହିଲା କେନ୍ଦ୍ରରେ, କାରଣ ଅତୀତ ଓ ବର୍ତ୍ତମାନ ମଧ୍ୟରେ ଏକ ତୁଳନାତ୍ମକ ବିଚାର ପାଇଁ ସର୍ବଦା ଜିଜ୍ଞାସା ଲାଗି ରହିଥାଏ । ଐତିହାସିକମାନେ ପୂର୍ବରୁ ଆଲୋଚିତ ପ୍ରଶ୍ନରୁ ଅଲଗା ନୂଆ ପ୍ରଶ୍ନମାନ ଉତ୍ଥାପନ କରିବାକୁ ଆରମ୍ଭ କଲେ । ସମାଜ, ଅର୍ଥନୀତି, ସଂସ୍କୃତି ଏବଂ ଧର୍ମ ସମ୍ବନ୍ଧିତ ଇତିହାସ ରଚନା ପାଇଁ ସମ୍ଭାବନା ଖୋଜାଗଲା । ପୁଣି ଏସବୁ ବିଷୟଗୁଡ଼ିକ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ନେଇ ଆଗ୍ରହ ବୃଦ୍ଧି ପାଇଲା । ଇତିହାସର ଯେଉଁ ବିଭିନ୍ନ କିସମର ସୂତ୍ରସାମଗ୍ରୀ, ପ୍ରାଚୀନ ଉପକରଣରୁ ଆରମ୍ଭ କରି ପୁରାଣପୋଥି ପର୍ଯ୍ୟନ୍ତ, ସେସବୁକୁ ଆୟତ୍ତ କରିବା ଲାଗି ଗବେଷଣାରେ ଟେକନିକୀ (technical) ବା ପ୍ରଯୁକ୍ତି ଜ୍ଞାନର ଆବଶ୍ୟକତା ପଡ଼ିଲା । ସେହି ଜ୍ଞାନ ସହିତ ସୈଦ୍ଧାନ୍ତିକ ଧାରାକୁ ବିଶ୍ଳେଷଣ କରିବାର ସାମର୍ଥ୍ୟ ରହିବା ମଧ୍ୟ ଜରୁରି ବୋଲି ମନେହେଲା । ପୂର୍ବରୁ ଇତିହାସ ମାନେ ଥିଲା ସୂଚନା ଦେବା ଉଦ୍ଦେଶ୍ୟରେ ଅତୀତର ବର୍ଣ୍ଣନା କରିବା । ବର୍ତ୍ତମାନର ଇତିହାସ ଗବେଷଣା ପୂର୍ବଠାରୁ ସମ୍ପୂର୍ଣ୍ଣ ପୃଥକ୍ ହେଲା । ଇତିହାସର କଳ୍ପନା ଆଉ ଅତୀତର ସଂରଚନାରେ କେବଳ ସୀମିତ ରହିଲା ନାହିଁ । ଏହା ଏକ ସୃଜନାତ୍ମକ

ମନନର ରୂପ ନେଲା; ବିବିଧ କିସମର ପ୍ରଶ୍ନକୁ ଉତ୍ଥାପନ କରି ଏହା ଉତ୍ତର ଖୋଜିବାକୁ ପ୍ରୟାସ କଲା ।

ମାର୍କ୍ସବାଦୀ ବିଚାର ଐତିହାସିକ ଅଧ୍ୟୟନ କ୍ଷେତ୍ରରେ ଏକ ନୂଆ ଦୃଷ୍ଟିକୋଣ ପ୍ରଦାନ କଲା । ତା' ସହିତ ଏହା ଐତିହାସିକ ବିଶ୍ଳେଷଣ ପାଇଁ ନ୍ୟାଯ୍ୟ ମନେ ହେଉଥିବା ଅନେକ ପ୍ରସଙ୍ଗ ମଧ୍ୟ ପ୍ରସ୍ତୁତ କଲା । ଇତିହାସ ସମ୍ପର୍କିତ ଫରାସୀ 'ଆନାଲ୍ସ ସ୍କୁଲ' (Annales School)ର ପ୍ରଭାବଶାଳୀ ରଚନା ଏହି ପ୍ରସଙ୍ଗଗୁଡ଼ିକୁ ନେଇ ଚାଲିଥିବା ମନନ ଚିନ୍ତନ ସହିତ ଖାପ ଖାଇଲା । ଗତ କେତେ ଦଶନ୍ଧି ପୂର୍ବେ 'ଆନାଲ୍ସ ସ୍କୁଲ'ର ରଚନାବଳୀ ଇଂରାଜୀରେ ଉପଲବ୍ଧ ହେଲା । 'ଆନାଲ୍ସ ସ୍କୁଲ'ର ଐତିହାସିକମାନେ ସମାଜ, ଅର୍ଥନୀତି, ଜନସଂଖ୍ୟା, ପରିବେଶର ଅଧ୍ୟୟନକୁ ତଥା ଲୋକଙ୍କର ବିଚାର ଓ ପ୍ରବୃତ୍ତିକୁ ଇତିହାସର ଅନ୍ତର୍ଭୁକ୍ତ କଲେ, ଯାହା ଫଳରେ ଇତିହାସ ଅଧ୍ୟୟନ ଅଧିକ ବ୍ୟାପକ ହେଲା । ଏହାର ପରିଣାମସ୍ୱରୂପ, ଅନ୍ୟାନ୍ୟ ବିଷୟର ଗବେଷଣା ପଦ୍ଧତିକୁ ମଧ୍ୟ ଇତିହାସରେ ପ୍ରୟୋଗ କରାଗଲା । ସାମାଜିକ ଏବଂ ଆର୍ଥିକ ନୃତତ୍ତ୍ୱ ଜ୍ଞାନ, ଧର୍ମ ସଂକ୍ରାନ୍ତୀୟ ସମାଜଶାସ୍ତ୍ର, ଅର୍ଥନୀତି, ପରିବେଶ ବିଦ୍ୟା ଏବଂ ବୌଦ୍ଧିକ ଇତିହାସ ଆଦି ନୂଆ ବିଷୟଗୁଡ଼ିକ ଯୋଗୁଁ ପୂର୍ବରୁ ପାଖରେ ମହଜୁଦ ଥିବା ତଥ୍ୟକୁ ଭିତ୍ତି କରି ନୂତନ ପ୍ରଶ୍ନ ଉତ୍ଥାପନ କରିବାକୁ ତଥା ଉକ୍ତ ତଥ୍ୟକୁ ବିଶ୍ଳେଷଣ କରିବା ସକାଶେ ନୂଆ ବାଟ ଖୋଜିବାକୁ ପ୍ରୋତ୍ସାହନ ମିଳିଲା । ପୂର୍ବରୁ ଉପେକ୍ଷା କରାଯାଇଥିବା କିମ୍ବା ନିରୋଳା, ଅସମ୍ବନ୍ଧିତ ମନେକରାଯାଉଥିବା ଦିଗଗୁଡ଼ିକୁ ସାମିଲ କରି ଏବେ ସବୁଗୁଡ଼ିକ ମଧ୍ୟରେ ଅନ୍ତଃସମ୍ବନ୍ଧ ବାହାର କରାଗଲା ।

ଯାହା ଯୋଗୁଁ ଇତିହାସ ରଚନା କ୍ଷେତ୍ରରେ ଏତେସବୁ ପରିବର୍ତ୍ତନ ହେଲା, ତାହା ହେଲା ସାମାଜିକ ବିଜ୍ଞାନ ସମ୍ପର୍କିତ ଅବଧାରଣା । ଏହାକୁ ମାନବିକ ବିଜ୍ଞାନ (Human Science) ବୋଲି ମଧ୍ୟ କୁହାଯାଏ । ମାନବର ଅତୀତକୁ ଅନ୍ୱେଷଣ କରିବା ଲାଗି ଏହା ହେଉଛି ପ୍ରକୃଷ୍ଟ ମାଧ୍ୟମ । ଏଥିପାଇଁ କାହାକୁ ଐତିହାସିକ ତଥ୍ୟ କୁହାଯିବ, ତା'ର ବ୍ୟାପକ ଚିହ୍ନଟ କରିବା ହେଲା ପ୍ରଥମ ଆବଶ୍ୟକତା । ତଥ୍ୟରେ କେବଳ କାର୍ଯ୍ୟର ପ୍ରତିନିଧିତ୍ୱ ନ ଥାଏ, ତା' ସହିତ ଶବ୍ଦ, ବସ୍ତୁ କିମ୍ବା ଭୂ-ପରିଦୃଶ୍ୟ ମାଧ୍ୟମରେ କିଭଳି ତାହା ପ୍ରତିନିଧିତ୍ୱ ପାଇଛି, ତା'ର ବି ଉଲ୍ଲେଖ ରହିଥାଏ । ଫଳରେ ମନୁଷ୍ୟର ଉପସ୍ଥିତିକୁ ପ୍ରତିଫଳିତ କରୁଥିବା ସବୁ କିସମର ସାମଗ୍ରୀ ତଥ୍ୟ ରୂପରେ ଚିହ୍ନଟ ହେଲେ । ବାସ୍ତବିକତାର ସଂରଚନା ଅପେକ୍ଷା ଅତୀତକୁ ବୁଝିବାର ପ୍ରୟାସକୁ ଗବେଷଣାରେ ଅଧିକ ମହତ୍ତ୍ୱ ଦିଆଗଲା । ଏଥିପାଇଁ ଗୋଟାଏ ଘଟଣା ଏବଂ ଗୋଟାଏ ଅଭିବ୍ୟକ୍ତି ଭାବରେ ଇତିହାସକୁ ନ ଦେଖି ଏକ ବ୍ୟାପକ ମାନବିକ ଏବଂ ସାମାଜିକ ପରିପ୍ରେକ୍ଷୀରେ ଦେଖିବାର ଆବଶ୍ୟକତା ଅନୁଭବ ହେଲା । ଫଳତଃ

ସମାଜ, ଅର୍ଥନୀତି, ଧାର୍ମିକ ଅଭିବ୍ୟକ୍ତି, କଳା, ସାହିତ୍ୟ ଏବଂ ଜ୍ଞାନ ବ୍ୟବସ୍ଥାକୁ ଗୁରୁତ୍ୱ ମିଳିଲା । ଅଧ୍ୟୟନରେ ଅନେକ କାରଣର ଅନ୍ୱେଷଣ ଐତିହାସିକ ବିଶ୍ଳେଷଣକୁ ସାହାଯ୍ୟ କଲା । ସଂସ୍କୃତିର ସାମାଜିକ ଦିଗ ଅନେକ ନୂଆ ପ୍ରଶ୍ନକୁ ଉତ୍ଥାପନ କଲା : କିଏ ସଂସ୍କୃତିର ସ୍ରଷ୍ଟା ? ସଂସ୍କୃତିର କାର୍ଯ୍ୟ କ'ଣ ? କାହା ପାଇଁ ସଂସ୍କୃତି ? ସଂସ୍କୃତିର୍ ପ୍ରସାର କେଉଁ ଉପାୟରେ ହେଉଥିଲା ? ଏହି ଧରଣର ଏକ ଦୃଷ୍ଟିକୋଣ ଐତିହାସିକ ପୃଷ୍ଠଭୂମିକୁ କେବଳ ପରିବ୍ୟାପ୍ତ କଲା ନାହିଁ, ତା' ସହିତ ସମୟର ପ୍ରଲମ୍ବିତ ବର୍ଣ୍ଣନାକୁ (linear narrative) ବାଧିତ କଲା । ସମୟକୁ ନେଇ ରହିଥିବା ବିଭିନ୍ନ ଅବଧାରଣାର ସହାବସ୍ଥାନ ସମ୍ଭବ ମନେହେଲା । ଏହି ପରିପ୍ରେକ୍ଷୀରେ ଫର୍ଣ୍ଣାଡ୍ ବ୍ରଦେଲ ନାମକ ଜଣେ ଫରାସୀ ଐତିହାସିକଙ୍କର ନାମୋଲ୍ଲେଖ ଜରୁରି । ସେ ଘଟଣାର ଐତିହାସିକ ମୁହୂର୍ତ୍ତ, ସମୟର ବ୍ୟାପକ ସାମାଜିକ ଏବଂ ଅର୍ଥନୈତିକ ପରିପ୍ରେକ୍ଷୀ ମଧ୍ୟରେ ରହିଥିବା ଯୋଗସୂତ୍ର, ଭୂ-ପରିଦୃଶ୍ୟର ପ୍ରଲମ୍ବିତ ଅବଧି ଏବଂ ଯେଉଁ ସମୟରେ ଘଟଣାଟି ସଂଘଟିତ ହୋଇଥିଲା ସେହି କାଳାଂଶର ନୃତତ୍ତ୍ୱ ଆଦି ସମ୍ପର୍କରେ ନିଜ ଗବେଷଣାରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି ।

ଏହିସବୁ ଅଧ୍ୟୟନ ଭାରତ ଇତିହାସ ସଂକ୍ରାନ୍ତରେ ଏକ ତୁଳନାତ୍ମକ ଦୃଷ୍ଟିକୋଣ ପ୍ରଦାନ କରନ୍ତି । ଆଗରୁ ଯେମିତି ଗୋଟାଏ ସଂସ୍କୃତି ଆଧାରରେ ଅନ୍ୟକୁ ଦେଖିବାର, ତା'ରି ମାନଦଣ୍ଡରେ ଅନ୍ୟ ସଂସ୍କୃତି ସମ୍ପର୍କରେ ବିଚାର ପ୍ରକଟ କରିବାର ପରମ୍ପରା ରହିଥିଲା, ତାକୁ ବର୍ତ୍ତମାନ ପରିହାର କରାଗଲା । ଏକାଧିକ ସଂସ୍କୃତିର ସ୍ୱରୂପ ଏବଂ କାର୍ଯ୍ୟର ତୁଳନାତ୍ମକ ଅଧ୍ୟୟନ ଆରମ୍ଭ ହେଲା । ଏହା ବିଶ୍ୱର ଅନ୍ୟ କ୍ଷେତ୍ରଗୁଡ଼ିକର ଐତିହାସିକ ଅଧ୍ୟୟନକୁ ପ୍ରାଚୀନ ଭାରତ ଉପରେ ଚାଲିଥିବା ଗବେଷଣା ଉପଯୋଗୀ କରିଛି । ସେଭଳି କେତେକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ରଚନା ହେଲା : ମୋଜେସ ଫିନ୍‌ଲେ ଏବଂ ଆର୍ଣ୍ଣାଲ୍‌ଡୋ ମୋମିଗ୍ଲିଆନୋଙ୍କ ଗ୍ରେକୋ-ରୋମାନ ୱାର୍ଲଡ୍, ମାର୍କ ବ୍ଲକ୍‌ଙ୍କର ମଧ୍ୟକାଳୀନ ୟୁରୋପ, ଯୋସେଫ ନିଧାମଙ୍କର ଚୀନ୍‌ରେ ବୈଜ୍ଞାନିକ ବିଚାର ଏବଂ ପ୍ରୟୋଗର ଇତିହାସ, ନାଥାନ ୱାଚଟେଲଙ୍କ ସ୍ପେନ ବିଜୟର ପେରୁ ଅବଧାରଣାର ଅଧ୍ୟୟନ ଏବଂ ଜାନ ଭନସିନାଙ୍କ ମୌଖିକ ପରମ୍ପରା ସଂକ୍ରାନ୍ତୀୟ ଗବେଷଣା । ବିଭିନ୍ନ ସମାଜ ଓ ସଂସ୍କୃତିର ଐତିହାସିକମାନଙ୍କ ଗବେଷଣା ଯୋଗୁଁ ଆରମ୍ଭ ହୋଇଥିବା ବିତର୍କ ଭାରତ ଇତିହାସକୁ ବୁଝିବା ପାଇଁ ଏକ ତୁଳନାତ୍ମକ ବିକଳ୍ପ ପ୍ରଦାନ କରେ । ମାତ୍ର ଏସବୁ ସତ୍ତ୍ୱେ ଭାରତ ଇତିହାସର ବୈଶିଷ୍ଟ୍ୟ ହ୍ରାସ ପାଏ ନାହିଁ ।

ଭାରତ ଇତିହାସ ରଚନା ସଂକ୍ରାନ୍ତୀୟ ଏହି ପରିବର୍ତ୍ତିତ ଦୃଷ୍ଟିକୋଣକୁ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ନୁହେଁ ପୂର୍ବରୁ ସମ୍ପନ୍ନ ହୋଇଥିବା ରଚନାକୁ ଉପେକ୍ଷା କରିବା କିମ୍ବା

ନ୍ୟୁନ ମନେକରିବା । ସେସବୁ ରଚନାରେ ଯେଉଁ ଅଭାବ ତାକୁ ତତ୍‌କାଳୀନ ସମୟ ପରିପ୍ରେକ୍ଷୀରେ ଦେଖିବାକୁ ହେବ, କାରଣ ଐତିହାସିକମାନେ ସର୍ବଦା ନିଜ ସମୟ ସମ୍ପର୍କରେ ଯେତିକି ଗୋଚର ଥାଆନ୍ତି, ତହିଁରୁ ଅଧିକ ମାତ୍ରାରେ ତାକୁ ପ୍ରତିନିଧିତ୍ୱ କରନ୍ତି । ନାନା ଅଭାବ ସତ୍ତ୍ୱେ, ସେସବୁ ଅଧ୍ୟୟନ ଭାରତ ଇତିହାସ ରଚନା କ୍ଷେତ୍ରରେ ଭିତ୍ତି ପ୍ରତିଷ୍ଠା କଲା, ଇତିହାସର କାଳ ନିରୂପଣ କଲା ତଥା ନୂତନ ଧରଣର ବ୍ୟାଖ୍ୟା ପାଇଁ ଐତିହାସିକ କ୍ଷେତ୍ର ପ୍ରସ୍ତୁତ କଲା । ଏହା ଫଳରେ ଭାରତୀୟ ସଭ୍ୟତାର ବିଚାର ଓ ଅନୁଷ୍ଠାନଗୁଡ଼ିକୁ ଅନୁଶୀଳନ କରିବା ନିମିତ୍ତ ମହତ୍ତ୍ୱପୂର୍ଣ୍ଣ ଦୃଷ୍ଟିକୋଣ ଉପଲବ୍ଧ ହେଲା । ବର୍ତ୍ତମାନ ଇତିହାସ ସମାଜର କାଳକ୍ରମିକ ଏବଂ ବଂଶ ଆଧାରିତ ସଂରଚନା ଉପରେ ଅଧିକ ମହତ୍ତ୍ୱ ଦିଏ ନାହିଁ । ତା' ବଦଳରେ ଅତୀତ ସମାଜର ପର୍ଯ୍ୟାୟଭୁକ୍ତ ଚରିତ୍ରକୁ ଅନୁଶୀଳନ କରିବା ଉପରେ ଅଧିକ ମହତ୍ତ୍ୱ ଦିଏ ।

ଅତୀତ ଭାରତରେ ବିବିଧ କିସମର ସମାଜ ରହିଥିଲା । ତହିଁରେ କୁଳସମ୍ବନ୍ଧ (kinship) ଏବଂ ଲିଙ୍ଗଭିତ୍ତିକ ସମ୍ପର୍କର ସ୍ୱରୂପ ମଧ୍ୟ ଗୋଟାଏ କିସମର ନ ଥିଲା । ସେସବୁର ଅଧ୍ୟୟନକୁ ସାମାଜିକ ଇତିହାସ ନିଜ ଆଲୋଚନା ପରିସରକୁ ନେଇଛି । ନୃତାତ୍ତ୍ୱିକ ଅଧ୍ୟୟନ ଏବଂ ଲିଙ୍ଗଭିତ୍ତିକ ଐତିହାସିକ ଗବେଷଣାରୁ ଏହାକୁ ସହଯୋଗ ମିଳିଛି । ପୂର୍ବରୁ ମହିଳାମାନଙ୍କର ସ୍ଥିତିକୁ ନେଇ ଯାହା ସବୁ ଅଧ୍ୟୟନ ହେଉଥିଲା, ତହିଁରେ ମୁଖ୍ୟତଃ ସେମାନଙ୍କର ଜୀବନ ସଂକ୍ରାନ୍ତରେ ସୂଚନା ସଂଗ୍ରହକୁ ପ୍ରାଧାନ୍ୟ ଦିଆଯାଉଥିଲା । ଧର୍ମଶାସ୍ତ୍ର ଏବଂ ଅନ୍ୟାନ୍ୟ ରଚନାରେ ମହିଳାମାନଙ୍କ ସମ୍ବନ୍ଧରେ ଯାହା ସବୁ ବର୍ଣ୍ଣନା ଥିଲା, ସେମାନଙ୍କର ସାମାଜିକ ସ୍ଥିତିକୁ ଯେଉଁଭଳି ଭାବେ ସ୍ୱୀକୃତି ଦିଆଯାଇଥିଲା, ତାକୁ ଅନୁଶୀଳନ କରାଯାଉଥିଲା । ସେହି ଆଧାରରେ 'ସୁବର୍ଣ୍ଣ ଯୁଗ'ର ଅବଧାରଣା ସୃଷ୍ଟି ହୋଇଥିଲା । ମହିଳାକୁ ସୁଦୂର ଅତୀତରେ ସମ୍ମାନ ମିଳୁଥିଲା ବୋଲି ଯୁକ୍ତି କରି ସ୍ୱାଧୀନତା ସଂଗ୍ରାମରେ ଭାଗ ନେବାକୁ ଉତ୍ସାହିତ କରାଯାଉଥିଲା । ପରବର୍ତ୍ତୀ ସମୟରେ ସେମାନଙ୍କର ସ୍ଥିତି ଖରାପ ହେଲା ବୋଲି କୁହାଯାଉଥିଲା । ମାତ୍ର ବର୍ତ୍ତମାନ ସେ ନେଇ ଯାହା ଗବେଷଣା ହେଉଛି, ତାହା ଅଧିକ ମନନଶୀଳ । ବିଭିନ୍ନ ସମୟ, ବିଭିନ୍ନ କ୍ଷେତ୍ର ଏବଂ ବିଭିନ୍ନ ଜାତିରେ ମହିଳାମାନଙ୍କର ସ୍ଥିତିରେ ଯେଉଁ ବିବିଧତା, ତାକୁ ବିଶ୍ଳେଷଣ କରିବାକୁ ବର୍ତ୍ତମାନ ପ୍ରୟାସ କରାଯାଉଛି । ଐତିହାସିକ ପରିବର୍ତ୍ତନ ସହିତ ମହିଳାର ସ୍ଥିତିକୁ ଯୋଡ଼ି ଦେଖାଯାଉଛି । ସମ୍ପତ୍ତି ଅଧିକାର, ବୈବାହିକ ନୀତିନିୟମ ଏବଂ ଶ୍ରମିକ ରୂପରେ ନାରୀର ଉପଯୋଗ ଆଦି ସାମାଜିକ ଦିଗ ଇତିହାସରେ ମହିଳାର ସ୍ଥିତି ନିରୂପଣ କରନ୍ତି । ଏହି ବିଚାର ପୂର୍ବର ସକାରାତ୍ମକ ଅବଧାରଣାଠାରୁ ନିଶ୍ଚିତ ରୂପରେ ପୃଥକ୍ । ପିତୃକୈନ୍ଦ୍ରିକତା ପ୍ରାୟତଃ ଲିଙ୍ଗଗତ ସମ୍ପର୍କକୁ ନିର୍ଦ୍ଧାରଣ କରେ ।

ମାତ୍ର ସାମାଜିକ ନିୟମ, ଧାର୍ମିକ ବିଶ୍ୱାସ ଏବଂ ନାରୀର କାର୍ଯ୍ୟ ଏବଂ ସାମାଜିକ ଅବସ୍ଥା ମଧ୍ୟ ସେହି ସମ୍ପର୍କକୁ ନିର୍ଦ୍ଧାରଣ କରିବାରେ କମ୍ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି ନାହିଁ । ମହିଳାମାନେ ସ୍ୱତନ୍ତ୍ର ବା ପୃଥକ୍ ଗୋଷ୍ଠୀ ନୁହନ୍ତି, ବରଂ ସେମାନେ ହେଲେ ସାମାଜିକ ପ୍ରକ୍ରିୟାର ଏକ ଅଭିନ୍ନ ଅଙ୍ଗ । ତେଣୁ ସେମାନଙ୍କର ସ୍ଥିତି ସମାଜର ମୋଟ ଅବସ୍ଥିତିକୁ ଦର୍ଶାଏ ।

ତଥାକଥିତ ତଳ ଜାତି, ଉପେକ୍ଷିତ ଗୋଷ୍ଠୀ ଏବଂ ଅସ୍ପୃଶ୍ୟ ବର୍ଗ ବର୍ତ୍ତମାନର ଐତିହାସିକ ରଚନାରେ ଅନେକ ସମୟରେ ପ୍ରମୁଖ ପାତ୍ର ହୁଅନ୍ତି । ଉଦାହରଣସ୍ୱରୂପ, ସାମାଜିକ ପ୍ରଶ୍ନକୁ ନେଇ ସଂଘଟିତ ହୋଇଥିବା ଧାର୍ମିକ ଆନ୍ଦୋଳନରେ ସେମାନଙ୍କ ଭୂମିକା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଯେଉଁମାନେ ଶରୀର ଶ୍ରମ କରନ୍ତି, ସେମାନେ ଐତିହାସିକ ପରିବର୍ତ୍ତନରେ କୌଣସି ଭୂମିକା ନିର୍ବାହ କରନ୍ତି ନାହିଁ ବୋଲି ପୂର୍ବରୁ ମନେ କରାଯାଉଥିଲା, କାରଣ ଶରୀର ଶ୍ରମ କରୁ ନ ଥିବା ଗୋଷ୍ଠୀ ଲେଖାସାମଗ୍ରୀ ସବୁ ପ୍ରସ୍ତୁତ କରୁଥିଲେ ଏବଂ ସେହି ଲେଖାସାମଗ୍ରୀକୁ ଭିତ୍ତି କରି ଇତିହାସ ଗବେଷଣା ହେଉଥିଲା । ସେସବୁ ଲେଖାରେ କାହିଁ କେଉଁଠି ଛୋଟିଆ ଉଲ୍ଲେଖମାନ ରହିଥାଏ, ଯାହାକୁ ଅନୁଶୀଳନ କରି ଶ୍ରମ କରୁଥିବା ସାମାଜିକ ବର୍ଗର ଜୀବନ ସମ୍ବନ୍ଧରେ ଜାଣିହୁଏ । ମାତ୍ର କାର୍ଯ୍ୟର ମୂଳ ହେଲା ଶ୍ରମ; ଏହା ଅତୀତ କାଳରୁ ସର୍ବସ୍ୱୀକୃତ । ଐତିହାସିକମାନେ ସମାଜର ସାମଗ୍ରିକ ଚିତ୍ରକୁ ଉତ୍ତୋଳନ କରିବା ନିମିତ୍ତ ସର୍ବଦା ଏହିସବୁ ଉଲ୍ଲେଖକୁ ଆଗ୍ରହରେ ଅନୁଶୀଳନ କରନ୍ତି ।

ଭାରତର ଐତିହାସିକଙ୍କୁ ପୂର୍ବରୁ ମୂଳତଃ ପ୍ରାଚ୍ୟବାଦୀ କିମ୍ବା ଇଣ୍ଡୋଲୋଜିଷ୍ଟ (ଭାରତବିଦ୍ୟାବିତ୍) ଭାବରେ ଗଣାଯାଉଥିଲା । ସେତେବେଳେ ଏସିଆର ଭାଷା ଓ ସଂସ୍କୃତିକୁ ପ୍ରଶଂସା କରି ଅଧ୍ୟୟନମାନ ହେଉଥିଲା । ପ୍ରାଚ୍ୟବାଦୀ ଅଧ୍ୟୟନର ବିଚାର ଊନବିଂଶ ଶତାବ୍ଦୀରୁ ଉଭୟ ଭାରତ ଏବଂ ଭାରତ ବାହାରେ ରୂପ ଦେବା ଆରମ୍ଭ କରିଥିଲା । ମାତ୍ର ଆଜିର ଜଗତରେ ଅତୀତ ସମାଜର ଇତିହାସକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଦେଖାଯାଉଛି । ତାକୁ 'ଶାସ୍ତ୍ରୀୟ ସଂସ୍କୃତ'ରେ ସୀମିତ କରିଦିଆଯାଉ ନାହିଁ । ଐତିହାସିକ ବ୍ୟାଖ୍ୟାରେ ରାଜନୈତିକ ଇତିହାସ ଏବଂ ରାଜବଂଶର ଅଧ୍ୟୟନ ହେଲା ଏକ ମହତ୍ତ୍ୱପୂର୍ଣ୍ଣ ଦିଗ । ମାତ୍ର ତାକୁ ମଧ୍ୟ ସମାଜ ଓ ସଂସ୍କୃତି ନିର୍ମାଣ କରୁଥିବା ଅନ୍ୟ ଉପାଦାନଗୁଡ଼ିକର ପରିପ୍ରେକ୍ଷୀରେ ଅନୁଶୀଳନ କରାଯାଉଛି । ରାଜନୈତିକ ପରିବର୍ତ୍ତନକୁ ଆର୍ଥିକ ଧାରା ଏବଂ ସାମାଜିକ ସମ୍ବନ୍ଧରେ ସଂଘଟିତ ହେଉଥିବା ପରିବର୍ତ୍ତନ ସହିତ ଯୋଡ଼ି ଦେଖିବାର ପରମ୍ପରା ଆରମ୍ଭ ହୋଇଛି । ଯଦି କୌଣସି ଏକ ଧାର୍ମିକ ଆନ୍ଦୋଳନ ପ୍ରତି ଜନସମର୍ଥନ ବୃଦ୍ଧି ପାଇଛି, ତେବେ ତା'ର ଅର୍ଥ ହେଲା ସମର୍ଥକ ଗୋଷ୍ଠୀର ଲୋକ ତା' ପ୍ରତି ଆକୃଷ୍ଟ ହେଲାଭଳି ତହିଁରେ କିଛି ଉପଯୋଗିତା

ଖୋଜି ପାଇଛନ୍ତି । ନୂତନ ସାହିତ୍ୟ ବା ଭାଷାଟିଏ ସେତେବେଳେ ବିକଶିତ ହୁଏ, ଯେତେବେଳେ ସମାଜରେ ତା'ର ଆବଶ୍ୟକତା ରହିଛି ବୋଲି ଅନୁଭବ ହୁଏ । ଭାରତ ଇତିହାସର ପରିଧି ସୃଷ୍ଟି କରିଥିବା ଲୋକଙ୍କର ବିଚାରକୁ ଉପସ୍ଥାପନା କରିବା କେବଳ ଐତିହାସିକମାନଙ୍କ ପାଇଁ ଯଥେଷ୍ଟ ନୁହେଁ । ସେହି ବିଚାର ଭାରତୀୟ ସମାଜରେ କେମିତି ଚେର ପାଇଲା ଏବଂ କେମିତି ଏବଂ କେତେ ବ୍ୟାପକ ଭାବରେ ସ୍ୱୀକୃତି ଲାଭ କଲା, ତାକୁ ଜାଣିବା ଆଜି ଅଧିକ ଆବଶ୍ୟକ ।

## କାଳ ବିଭାଜନ : ଏକ ପୁନର୍ବିଚାର

ଦୁଇଟି କାରଣରୁ କାଳ ବିଭାଜନ (periodization)କୁ ନେଇ ପୁନର୍ବିଚାର ଆବଶ୍ୟକ ହୋଇପଡ଼ିଛି । ପ୍ରଥମ, ଐତିହାସିକ ପରିବର୍ତ୍ତନର ଚରିତ୍ରକୁ ନେଇ ଆରମ୍ଭ ହୋଇଥିବା ଆଲୋଚନା ଏବଂ ଦ୍ୱିତୀୟ, ବିଭିନ୍ନ ନୂତନ କିସମର ସୂତ୍ରସାମଗ୍ରୀର ଆବିଷ୍କାର । ଉଦାହରଣସ୍ୱରୂପ, ପୁରାତାତ୍ତ୍ୱିକ ତଥ୍ୟ ଯେଉଁ ଦୃଷ୍ଟିକୋଣରୁ ସମାଜର ସଂଜ୍ଞା ପ୍ରଦାନ କରେ, ତାହା ସାହିତ୍ୟିକ ସୂତ୍ରରୁ ମିଳୁଥିବା ସଂଜ୍ଞାରୁ ପୃଥକ୍ । ଅତୀତର ଏହିସବୁ ଅବତାରଣା ଭାରତ ଇତିହାସର ପ୍ରଚଳିତ କାଳ ବିଭାଜନକୁ ସୁହାଏ ନାହିଁ । 'ଅତୀତ', 'ମଧ୍ୟକାଳୀନ' ଏବଂ 'ଆଧୁନିକ' ସଂଜ୍ଞା ୟୁରୋପ ଇତିହାସରୁ ଆନୀତ ଏବଂ ଭାରତ ଇତିହାସର ତ୍ରିପାକ୍ଷିକ ବିଭାଜନ ପାଇଁ ବ୍ୟବହୃତ । ୟୁରୋପ ଇତିହାସ ପୁରାତନ ସଂସ୍କୃତିକୁ ଗ୍ରୀକ୍-ରୋମାନ୍ ସଭ୍ୟତା ଠାରୁ ଅଲଗା କଲା; ମଧ୍ୟକାଳ ଖ୍ରୀଷ୍ଟିଆନ-ୟୁରୋପର କାଳଖଣ୍ଡକୁ ଚିହ୍ନିତ କଲା । ଉଭୟ ଅତୀତ ଏବଂ ମଧ୍ୟକାଳର ୟୁରୋପ ଇତିହାସରେ ନିର୍ଦ୍ଦିଷ୍ଟ ଅର୍ଥ ରହିଥିଲା । ମାତ୍ର ଏହା ଭାରତ ଇତିହାସ କ୍ଷେତ୍ରରେ ପ୍ରଯୁଜ୍ୟ ହେବ ନାହିଁ ।

ଭାରତ ଇତିହାସରେ 'ପ୍ରାଚୀନ' ବା 'ପୁରାତନ' ହେଲା ଏକ ବ୍ୟାପକ ସଂଜ୍ଞା । 'ମଧ୍ୟକାଳ' ଅତୀତ ଓ ବର୍ତ୍ତମାନ ମଧ୍ୟରେ ରହିଥିବା କେବଳ ମଝିକାଳ ଖଣ୍ଡକୁ ଚିହ୍ନିତ କରେ । 'ପ୍ରାଚୀନ କାଳ' ଏକ ବିଶାଳ ଅବଧି ଏବଂ ତହିଁରେ ସଂଘଟିତ ପ୍ରମୁଖ ପରିବର୍ତ୍ତନଗୁଡ଼ିକୁ ଏହା ନିଜ ଭିତରେ ଅନ୍ତର୍ଭୁକ୍ତ କରେ । ଭାରତ ଭୂଖଣ୍ଡରେ ଘଟିତ ବିବିଧ ଧାରାର ସମସ୍ତ ଐତିହାସିକ ପରିବର୍ତ୍ତନକୁ ଏକ ନିର୍ଦ୍ଦିଷ୍ଟ ଢାଞ୍ଚାରେ ସଜାଇ ରଖିବା କଦାପି କମ୍ ସମସ୍ୟାପୂର୍ଣ୍ଣ ନୁହେଁ । ଆଜିକାଲି ଭାରତ ଇତିହାସରେ ମେଳ ଖୋଇବା ପାଇଁ ଏହି ତ୍ରିପାକ୍ଷିକ କାଳ ବିଭାଜନକୁ କିଛି ବଦଳେଇ ଦିଆଯାଉଛି । ପ୍ରଥମ କାଳଖଣ୍ଡକୁ ଆଦ୍ୟ ଐତିହାସିକ କାଳର ସଂଜ୍ଞା ଦେଇ ଅଷ୍ଟମ ଶତାବ୍ଦୀରେ ଶେଷ କରିଦିଆଯାଉଛି । ପରବର୍ତ୍ତୀ କାଳଖଣ୍ଡକୁ ଆଦ୍ୟ

ମଧ୍ୟକାଳ (Early Medieval) କୁହାଯାଉଛି, ଯାହାର ମୋଟ ଅବଧି ହେଲା ଅଷ୍ଟମରୁ ତ୍ରୟୋଦଶ ଶତାବ୍ଦୀ । ତୁର୍କ ଶାସନ ବା ଦିଲ୍ଲୀ ସୁଲତାନ ସମୟରୁ ମଧ୍ୟକାଳ ଆରମ୍ଭ ହୋଇ ମୋଗଲ ସାମ୍ରାଜ୍ୟର ପତନରେ ଶେଷ ହେଉଛି । ଚତୁର୍ଥ ଏବଂ ଶେଷ କାଳଖଣ୍ଡ ହେଲା ଆଧୁନିକ, ଯାହାର ଆରମ୍ଭ ବ୍ରିଟିଶ ରାଜତ୍ୱର ପ୍ରତିଷ୍ଠାରେ, ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀରେ ।

ତ୍ରିପାକ୍ଷିକ କାଳ ବିଭାଜନ ଅପେକ୍ଷା ଏହା ଅପେକ୍ଷାକୃତ ଅଧିକ ଯୁକ୍ତିସଙ୍ଗତ । ତା' ସତ୍ତ୍ୱେ ଏଥିରେ ଅସ୍ପଷ୍ଟତା ରହିଛି । ଖ୍ରୀଷ୍ଟପୂର୍ବ ପ୍ରାୟ 500 ଶତାବ୍ଦୀରେ ଗାଙ୍ଗେୟ ସମତଳ କ୍ଷେତ୍ରରେ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ହେଲା ଏବଂ ସହରଗୁଡ଼ିକ ଗଢ଼ିଉଠିଲା । ସେହି ସମୟରୁ ଆଦ୍ୟ ଐତିହାସିକ କାଳଖଣ୍ଡର ଆରମ୍ଭକୁ ଯୋଡ଼ି ଦେଖାଯାଏ, କାରଣ ଏହା ପୂର୍ବାପେକ୍ଷା ଏକ ବଡ଼ ପରିବର୍ତ୍ତନକୁ ଦର୍ଶାଏ । ମାତ୍ର ରାଜ୍ୟ ଗଠନ ଏବଂ ସହରୀ ବିକାଶର ଦୀର୍ଘ ପୂର୍ବାବସ୍ଥାକୁ ଏଥିରେ ଅନ୍ତର୍ଭୁକ୍ତ କରାଯାଏ ନାହିଁ । ଏହି ସମୟ ହେଲା ସିନ୍ଧୁ ସଭ୍ୟତାର ପତନ ପରବର୍ତ୍ତୀ କାଳଖଣ୍ଡ, ଯାହାକି ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ସଂଘଟିତ ପରିବର୍ତ୍ତନଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲା । କେବଳ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରୁ ଲିଖିତ ତଥ୍ୟାବଳୀମାନ ଆମର ହସ୍ତଗତ ହୋଇଛି । ଅର୍ଥାତ୍ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ପୂର୍ବାବସ୍ଥା ପାଇଁ ଯଥୋଚିତ କାଳଖଣ୍ଡ ଏଯାଏଁ ମିଳି ନାହିଁ । ଅଷ୍ଟମ ଶତାବ୍ଦୀ ବେଳକୁ ପରିବର୍ତ୍ତନ ସୁସ୍ପଷ୍ଟ ହେଲା । ସାମାଜିକ ଓ ଆର୍ଥିକ କ୍ଷେତ୍ରରେ ନୂଆ ପରିବର୍ତ୍ତନ ଦେଖାଗଲା । ପୁଣି ଧର୍ମ କ୍ଷେତ୍ରରେ ନୂଆ ପ୍ରଗତି ଦେଖିବାକୁ ମିଳିଲା । ମାତ୍ର ତାକୁ ଦର୍ଶାଇବା ପାଇଁ ଆଦ୍ୟ ମଧ୍ୟକାଳରେ ଚିହ୍ନିତ କରିବା ଯଥେଷ୍ଟ ହେବ ନା ନାହିଁ, ତା' ବି ଏକ ପ୍ରଶ୍ନ । ଇତିହାସରେ କାଳ ବିଭାଜନ କେବଳ ସମୟର ବିଭକ୍ତିକରଣରେ ସୀମିତ ହେବା କଥା ନୁହେଁ । ଏହା ସାମାଜିକ ଭାଗବଣ୍ଟାକୁ ନିର୍ଦ୍ଦେଶ କରିବା କଥା ଏବଂ ପୂର୍ବରୁ ଯାହା ଥିଲା ଏବଂ ପରେ ଯାହା ହେଲା ତା'ର କ୍ରମ ପରିବର୍ତ୍ତନକୁ ପ୍ରଦର୍ଶିତ କରିବା କଥା । ତେଣୁ ଐତିହାସିକ ଜ୍ଞାନରେ ପ୍ରଗତି ହେଲେ, କାଳ ବିଭାଜନକୁ ଅଦଳବଦଳ କରିବାକୁ ପଡ଼ିବ । ୟୁରୋପୀୟ ଇତିହାସ ପରିପ୍ରେକ୍ଷୀରେ 'ମଧ୍ୟକାଳ'ର ଅସ୍ପଷ୍ଟତାକୁ ନେଇ ବିତର୍କ ଆରମ୍ଭ ହୋଇଛି । ତେଣୁ ଏକ ଅଧିକ ସ୍ପଷ୍ଟ ସଂଜ୍ଞାର ପ୍ରଚଳନ ପାଇଁ ବିଚାର ହେବା କଥା ବୋଲି ଐତିହାସିକମାନେ ମନେକରୁଛନ୍ତି ।

ଏକ ସମ୍ଭାବ୍ୟ ବିକଳ୍ପ କାଳ ବିଭାଜନ ପାଇଁ ଏଠାରେ ପ୍ରସ୍ତାବ ଦିଆଯାଇଛି, ଯଦିଓ ତା' ପାଇଁ ବ୍ୟବହୃତ ସଂଜ୍ଞାଗୁଡ଼ିକ ସାମାନ୍ୟ ଅଧିକ ବିସ୍ତୃତ । ଏହା ସ୍ପଷ୍ଟ ଏବଂ ସହଜ ବ୍ୟବହାର୍ଯ୍ୟ ଅବଶ୍ୟ ନୁହେଁ । ମାତ୍ର ଐତିହାସିକ ପରିବର୍ତ୍ତନର ମୁଖ୍ୟ ବିନ୍ଦୁଗୁଡ଼ିକୁ ଏହା ନିର୍ଦ୍ଦେଶ କରେ । ନିମ୍ନରେ ପ୍ରସ୍ତାବିତ ପ୍ରତ୍ୟେକ ବିଭାଜନର ଦୈର୍ଘ୍ୟ ସମାନ ନୁହେଁ । ବ୍ୟାପକ

କାଳଖଣ୍ଡରେ ସେଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାପାଇଁ କେନ୍ଦ୍ରୀୟ ପ୍ରସଙ୍ଗରେ ଧ୍ୟାନ ଦେବାକୁ ପଡ଼ିବ । କେନ୍ଦ୍ରୀୟ ପ୍ରସଙ୍ଗ ଐତିହାସିକ କ୍ରିୟାସବୁକୁ ନିର୍ଦ୍ଦେଶିତ କରିବ କିମ୍ବା କେନ୍ଦ୍ରୀୟ ପ୍ରସଙ୍ଗରୁ କ୍ରିୟାସବୁ ପ୍ରଦର୍ଶିତ ଏବଂ ଦିଗ୍‌ଦର୍ଶିତ ହେବେ । ପ୍ରସ୍ତାବ ପଛରେ ଉଦ୍ଦେଶ୍ୟ ହେଲା ପରିବର୍ତ୍ତନ ପ୍ରକ୍ରିୟାକୁ ବ୍ୟାବହାରିକ ଦୃଷ୍ଟିରେ ଦେଖିବା ପାଇଁ କେତେକ ବିଚାର ପ୍ରକଟ କରିବା ଏବଂ ସେହି ବିଚାରର ଚରିତ୍ରକୁ ଚିହ୍ନଟ କରିବା ।

**ପ୍ରସ୍ତାବିତ କାଳ ବିଭାଜନ :**

1. ଶିକାରୀ – ଖାଦ୍ୟ ସଂଗ୍ରାହକ, ପଶୁପାଳକ ଏବଂ ଆଦ୍ୟ କୃଷକ ।
2. ପ୍ରଥମ ସହରୀକରଣ – ସିନ୍ଧୁ ସମତଳ ଏବଂ ଉତ୍ତର-ପଶ୍ଚିମ ଭାରତ ।
3. ଉପଦ୍ୱୀପର ମେଗାଲିଥିକ ଜନବସତି (ଏହି ତିନୋଟିଯାକ କାଳାଂଶର କେନ୍ଦ୍ରବିନ୍ଦୁ ହେଲା ସିନ୍ଧୁ ସହରୀକରଣ ଏବଂ ତା' ସହିତ ବିକଶିତ ସଂସ୍କୃତି । ସିନ୍ଧୁ ସଭ୍ୟତାର ପତନ ପରେ ଏହାର ଅନ୍ତ ହେଲା । ଏହି କାଳଖଣ୍ଡ ପାଇଁ ପୁରାତାତ୍ତ୍ୱିକ ତଥ୍ୟ ପ୍ରମାଣ ରହିଛି ।)
4. ସର୍ଦ୍ଦାର ଏବଂ ରାଜା – 1200-600 ଖ୍ରୀଷ୍ଟପୂର୍ବ ।
5. ଗାଙ୍ଗେୟ ସମତଳ କ୍ଷେତ୍ରରେ ଦ୍ୱିତୀୟ ସହରୀକରଣ ଏବଂ ରାଜ୍ୟ ଗଠନ – 400 ଖ୍ରୀ.ପୂ. (ଏଠାରେ କେନ୍ଦ୍ରବିନ୍ଦୁ ହେବ ଗାଙ୍ଗେୟ ସମତଳ କ୍ଷେତ୍ରରେ ରାଜ୍ୟ ଗଠନ ଓ ସହରୀକରଣ । ଚତୁର୍ଥ କାଳଖଣ୍ଡରୁ ଏହା ପଛରେ ରହିଥିବା କାରଣଗୁଡ଼ିକର ଅନୁଶୀଳନ ରହିବ । ଏଥିପାଇଁ ପୁରାତାତ୍ତ୍ୱିକ ତଥ୍ୟ ଏବଂ ପରେ ସଂଗୃହୀତ ମୌଖିକ ପରମ୍ପରା ସୃଷ୍ଟ ତଥ୍ୟରୁ ପ୍ରମାଣ ମିଳିବ । ପ୍ରଥମ ସହରୀକରଣଠାରୁ ଏହାର ଚରିତ୍ର କେଉଁଭଳି ଭାବେ ପୃଥକ୍ ଥିଲା, ତା' ଉପରେ ଧ୍ୟାନ ଦିଆଯିବ ।)
6. ମୌର୍ଯ୍ୟ କାଳ, ପ୍ରାୟ 400-200 ଖ୍ରୀଷ୍ଟପୂର୍ବ (ସାମ୍ରାଜ୍ୟ ସ୍ଥାପନ ପାଇଁ ପ୍ରାରମ୍ଭିକ ଉଦ୍ୟମ । ବହୁ କିସମର ତଥ୍ୟ ସାମଗ୍ରୀ ସହିତ ସମ୍ବନ୍ଧ ସ୍ଥାପନ ।)
7. ମର୍କେଣ୍ଟାଇଲ ବା ବାଣିଜ୍ୟିକ ସମୁଦାୟର ଉଦ୍ଭବ ଏବଂ ସାଂସ୍କୃତିକ ବିନିମୟ ପ୍ରାୟ 200 ଖ୍ରୀ.ପୂ. - 300 ଶତାବ୍ଦୀ (ଏହି କାଳରେ ବିଭିନ୍ନ କିସମର ରାଜ୍ୟର ଉଦ୍ଭବ ହେଲା ଏବଂ ନାନା ପ୍ରକାର ଆର୍ଥିକ ଏବଂ ଧାର୍ମିକ ନେଟୱାର୍କର ଆରମ୍ଭ ହେଲା । ଏଥିରେ ବାଣିଜ୍ୟିକ ସମୁଦାୟ ଏବଂ ବିଭିନ୍ନ ସଂସ୍କୃତି ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ମହତ୍ତ୍ୱ ପାଇଲା, ଯାହା ଏକ ଅନ୍ତର୍ମହାଦେଶୀୟ ସଂସ୍କୃତିର ବିକାଶରେ ସାହାଯ୍ୟ କଲା ।)

8. ସଂସ୍କୃତ ସଂସ୍କୃତିର ନିର୍ମାଣ, ପ୍ରାୟ 300-700 ଶତାବ୍ଦୀ (ଏହି କାଳଖଣ୍ଡରେ ଦରବାର ସଂସ୍କୃତିର ଅଭ୍ୟୁଦୟ ଘଟିଲା ଏବଂ ସେହି ମାଧ୍ୟମରେ ସାଂସ୍କୃତିକ ସମନ୍ୱୟ ସ୍ଥାପିତ ହେଲା । ଏହା ଦେଶର ବିଭିନ୍ନ ରାଜ୍ୟରେ ଦେଖିବାକୁ ମିଳିଲା । ନୂଆ ରାଜ୍ୟର ଉତ୍ପତ୍ତି ପାଇଁ ଏହା ସାମର୍ଥ୍ୟ ଯୋଗାଇଲା ।)

9. ରାଜନୈତିକ ଅର୍ଥବ୍ୟବସ୍ଥା (Political-economy) ଏବଂ ଆଞ୍ଚଳିକ ସଂସ୍କୃତିର ପରିବର୍ତ୍ତନ, ପ୍ରାୟ 700-1300 ଖ୍ରୀଷ୍ଟାବ୍ଦ (ସଂସ୍କୃତ ସଂସ୍କୃତିର ବ୍ୟାପକ ପ୍ରଭାବ ଯୋଗୁଁ ଅଞ୍ଚଳଗୁଡ଼ିକରେ ରାଜ୍ୟ ସଂଗଠନ ଏବଂ ସାଂସ୍କୃତିକ ସମ୍ବନ୍ଧ ସମରୂପ ଧାରଣ କରିବାକୁ ଲାଗିଲା । ଭୂମି ଅନୁଦାନ ରୂପରେ ପରିବର୍ତ୍ତିତ ଅର୍ଥବ୍ୟବସ୍ଥା (distributive economy) ସଂସ୍କୃତ ସଂସ୍କୃତି ସହିତ ଯୋଡ଼ିହେଲା । ଆଞ୍ଚଳିକ ସଂସ୍କୃତିର ଅଭ୍ୟୁଦୟକୁ ରାଜନୀତିକ ବିଭାଜନ ରୂପରେ ନ ନେଇ ରାଜନୀତି, ସମାଜ ଏବଂ ସଂସ୍କୃତିର ପୁନଃସୂତ୍ରୀକରଣ (reformulation) ରୂପରେ ଦେଖିବା ଉଚିତ ହେବ, ଯାହା ପୂର୍ବର ପ୍ରାକ୍-ଗୁପ୍ତଯୁଗରୁ ପୃଥକ୍ ଥିଲା ।)

10. ଆଞ୍ଚଳିକ ଅସ୍ମିତା, ପ୍ରାୟ 1300-1550 ଖ୍ରୀଷ୍ଟାବ୍ଦ (ରାଜନୈତିକ ଅର୍ଥବ୍ୟବସ୍ଥା ଏବଂ ସଂସ୍କୃତିରେ ଆଞ୍ଚଳିକ ଅସ୍ମିତା ସୁସ୍ପଷ୍ଟ ହେଲା । ମାତ୍ର ଏହି ଅସ୍ମିତା ଏକ ଶକ୍ତିଶାଳୀ ସାର୍ବଭୌମ ରାଷ୍ଟ୍ରର ପ୍ରତିଷ୍ଠା ପାଇଁ କୌଣସି ପ୍ରତିବନ୍ଧକ ସୃଷ୍ଟି କଲା ନାହିଁ ।)

11. ମୋଗଲ ରାଜ୍ୟ (ସାମ୍ରାଜ୍ୟ) ଏବଂ ପରବର୍ତ୍ତୀକାଳୀନ ଆଞ୍ଚଳିକ ରାଜ୍ୟସମୂହ, ପ୍ରାୟ 1550-1750 ଖ୍ରୀଷ୍ଟାବ୍ଦ ।

12. ବ୍ରିଟିଶ ଉପନିବେଶବାଦୀ ଶାସନ ଏବଂ ଭାରତୀୟ ରାଷ୍ଟ୍ରବାଦୀ ପ୍ରତିକ୍ରିୟା ।

ଇତିହାସରେ କାଳ ନିରୂପଣ କରିବା ଏବଂ କାଳଖଣ୍ଡର ସଂଜ୍ଞା ଦେବା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ମାତ୍ର ପରିବର୍ତ୍ତନର କାରଣ ନିର୍ଦ୍ଧାରଣ କରିବା ତତୋଽଧିକ ମାତ୍ରାରେ ମହତ୍ତ୍ୱପୂର୍ଣ୍ଣ । ପ୍ରଶ୍ନଟିକୁ କଦାଚିତ ଗୋଟାଏ କାଳଖଣ୍ଡରୁ ଅନ୍ୟ କାଳଖଣ୍ଡକୁ କ୍ରମପରିବର୍ତ୍ତନ (transition) ରୂପରେ ଉଲ୍ଲେଖ କରାଯାଏ । ନିର୍ଦ୍ଦିଷ୍ଟ କାରଣ ମଧ୍ୟ କେବେ କେବେ ଅତି ସାଧାରଣ ଭାବେ ଆରମ୍ଭ ହୁଏ । ମାତ୍ର କାରଣ ଯଦି ବାରମ୍ବାର ସଂଘଟିତ ହୁଏ, ତେବେ ସମାଜର ଗତିକୁ ତାହା ନୂଆ ଦିଗ୍‌ଦର୍ଶନ ଦେବାର ସାମର୍ଥ୍ୟ ରଖେ ଏବଂ ଐତିହାସିକ ପରିବର୍ତ୍ତନକୁ ସଂକ୍ଷିପ୍ତୀକରଣ କରେ । ତେଣୁ କ୍ରମପରିବର୍ତ୍ତନ (transition)ର ଚରିତ୍ର କାଳ ବିଭାଜନର ଏକ ପ୍ରମୁଖ ଉପାଦାନ ହୁଏ । ତତ୍‌କାଳୀନ ରାଜନୀତି, ଅର୍ଥନୀତି, ପ୍ରଯୁକ୍ତି (technology), ସମାଜ ଏବଂ ଧର୍ମର ଚରିତ୍ର ଦ୍ୱାରା କାଳଖଣ୍ଡଗୁଡ଼ିକର ବୈଶିଷ୍ଟ୍ୟ ନିର୍ଦ୍ଧାରିତ ହୁଏ । ବୈଶିଷ୍ଟ୍ୟକୁ

ଅନୁଶୀଳନ କରିବାପାଇଁ ଘଟଣାର କର୍ତ୍ତାର ବି ଯେଉଁଠି ଉପଲବ୍ଧ ନାମୋଲ୍ଲେଖ କରାଯାଏ । ପରିଣାମସ୍ୱରୂପ, ସମ୍ଭ୍ରାନ୍ତ ଗୋଷ୍ଠୀ ସମ୍ବନ୍ଧରେ ଅଧିକ ସୂଚନା ଓ ତଥ୍ୟ ମିଳେ, କାରଣ ସେମାନେ ହେଲେ ଉକ୍ତ ସମୟର ରଚୟିତା ଓ ପୃଷ୍ଠପୋଷକ । ପୁରାତାତ୍ତ୍ୱିକ ତଥ୍ୟରୁ ଯେତେବେଳେ ସାଧାରଣ ଲୋକଙ୍କର ବୈଷୟିକ ସଂସ୍କୃତି ସମ୍ବନ୍ଧରେ ଅଧିକ ପ୍ରମାଣ ମିଳେ, ଏହି ସ୍ଥିତିରେ ସଂଶୋଧନ ସମ୍ଭବ ହୁଏ ।

## ଭିନ୍ନ ଏକ ସାଂସ୍କୃତିକ ଇତିହାସ

ଏକ ବିଷୟ ଭାବରେ ଇତିହାସ ସର୍ବଦା ଭାଷାକୁ ମହତ୍ତ୍ୱ ଦେଇଥାଏ । ଏହାକୁ କୁହାଯାଏ ଇତିହାସର 'ସାହିତ୍ୟିକ ଆବର୍ତ୍ତନ' (literary turn) । ସୈଦ୍ଧାନ୍ତିକ ରୂପରେ ଇତିହାସର ଏହି ସାହିତ୍ୟିକ ଆବର୍ତ୍ତନକୁ ନେଇ ଯେଉଁ ସବୁ ପ୍ରଶ୍ନ ଉତ୍ଥାପନ କରାଯାଉଛି, ତା'ର ଅବତାରଣା ହେବା ଉଚିତ ହେବ । ଅନେକ ଯୁକ୍ତି କରନ୍ତି ଯେ ଜ୍ଞାନର ମାଧ୍ୟମ ହେଲା ଭାଷା; ଭାଷା ରୂପରେ ଯାହା ପ୍ରାପ୍ତ ହୁଏ, ତହିଁରୁ ପୋଥି ବା ପାଠ ହୁଏ; ଯେହେତୁ ଭାଷାକୁ ବ୍ୟକ୍ତି ବ୍ୟାଖ୍ୟା କରେ, ବ୍ୟକ୍ତିର ପଠନ ଅନୁସାରେ ପାଠର ଅର୍ଥ ବାହାରେ; ତେଣୁ ଯେତେଥର ପାଠକୁ ବା ପୋଥିକୁ ଭିନ୍ନ ଭିନ୍ନ ବ୍ୟକ୍ତି ପଠନ କରନ୍ତି, ସେତେ କିସମର ତା'ର ଅର୍ଥ ବାହାରେ । ଏହାର ସାରକଥା ହେଲା, ଗୋଟାଏ ନିର୍ଦ୍ଦିଷ୍ଟ ପାଠର ସଦାବେଳେ ସମାନ ଅର୍ଥ ବାହାରି ନ ପାରେ । ପ୍ରତି ପଠନରୁ ଯେହେତୁ ଅଲଗା ଅଲଗା ଅର୍ଥ ମିଳିବାର ସମ୍ଭାବନା ଅଛି, ବସ୍ତୁନିଷ୍ଠ ବ୍ୟାଖ୍ୟା କଥା ଇତିହାସରେ ଦାବି କରାଯାଇ ନ ପାରେ । ଏହି ମତ କିନ୍ତୁ ସର୍ବଗ୍ରାହ୍ୟ ନୁହେଁ । ଯେଉଁ ମତ ପ୍ରଚଳିତ, ତାହା ଅଧିକ ସୂକ୍ଷ୍ମ ।

ଅଧ୍ୟୟନର ଉଦ୍ଦେଶ୍ୟ ଅନେକ ସମୟରେ 'ଆଧିପତ୍ୟିକ' (hegemonic) ହୋଇଥାଇପାରେ । ହୁଏତ ଏହା ବିକଳ୍ପ ଅଧ୍ୟୟନକୁ ମର୍ଯ୍ୟାଦା ନ ଦେଇପାରେ । ମାତ୍ର ଅପରପକ୍ଷରେ ଉଦ୍ଦେଶ୍ୟବିହୀନ ଅଧ୍ୟୟନ ଜ୍ଞାନଲାଭ ଦିଗରେ କଦାପି ସହାୟକ ହୋଇ ନ ପାରେ । ତେଣୁ ଗ୍ରହଣୀୟ ଐତିହାସିକ ଯୁକ୍ତି ହେବ ଯେ ବିକଳ୍ପ ପୋଥିପାଠ ଏବଂ ବୈକଳ୍ପିକ ଅଧ୍ୟୟନ ତଥା ଭିନ୍ନ ଭିନ୍ନ ସ୍ୱରକୁ ଯଥୋଚିତ ଆଦର ଓ ମହତ୍ତ୍ୱ ପ୍ରଦାନ କରାଯିବା କଥା । ତା' ସହିତ ଏକଥା ମଧ୍ୟ ସତ ଯେ ଏହିସବୁ ପୋଥି, ଅଧ୍ୟୟନ ଏବଂ ସ୍ୱର ଐତିହାସିକ ବିଶ୍ଳେଷଣର ବୌଦ୍ଧିକ ଧାରାକୁ ପାଳନ କରିବା ଉଚିତ । ପୂର୍ବରୁ ଇତିହାସରେ ରାଜନୀତି ଏବଂ ଅର୍ଥନୀତିକୁ ଗୁରୁତ୍ୱ ଦିଆଯାଉଥିଲା । ଏବେ ସଂସ୍କୃତି, ଆସ୍ଥା ଏବଂ ବିଚାରଧାରାକୁ ମହତ୍ତ୍ୱ ମିଳିବା ପରେ ଇତିହାସ ଅଧିକ ସଂବୃଦ୍ଧ ହେଲା ବୋଲି ବୁଝିବାକୁ ହେବ । ମାତ୍ର

ଏତିକିରେ ଇତିହାସର ସ୍ୱରୂପ ନିର୍ଦ୍ଧାରଣ ହୋଇଗଲା ବୋଲି କୁହାଯାଇ ନ ପାରେ, କାରଣ ତା' ପାଇଁ ପୋଥିପାଠର ଅଧ୍ୟୟନ ଓ ପର୍ଯ୍ୟାୟଭୁକ୍ତ ଐତିହାସିକ ପରିପ୍ରେକ୍ଷୀ ମଧ୍ୟରେ ଯୋଗସୂତ୍ର ରହିବା କଥା । ପାଠ ଓ ଯେଉଁ ପରିପ୍ରେକ୍ଷୀରେ ତାହା ଲେଖାଯାଇଛି, ତାକୁ ହୃଦୟଙ୍ଗମ କରିପାରିଲେ ପ୍ରତ୍ୟକ୍ଷ ଭାବରେ ପାଠରେ ଯାହା କୁହାଯାଇଛି ଏବଂ କ'ଣ ତା'ର ଅର୍ଥ, ସେ ନେଇ ସ୍ୱଷ୍ଟ ଧାରଣା କରିବା ସହଜ ହେବ ।

ଏସବୁ ସହିତ ତାଳ ଦେଇ ଐତିହାସିକ ବିଶ୍ଳେଷଣ ସମ୍ପର୍କିତ ସିଦ୍ଧାନ୍ତଗୁଡ଼ିକ ସଂକ୍ରାନ୍ତରେ ମଧ୍ୟ ଆଲୋଚନା ଅବ୍ୟାହତ ରହିଥିବା କଥା । ଅନେକ ନୂଆ ସିଦ୍ଧାନ୍ତ ଆସିବେ, ବିକଶିତ ହେବେ, ପୁଣି ଆଉ କେତେକ ସିଦ୍ଧାନ୍ତ ମହତ୍ତ୍ୱ ହରାଇବେ । ଉଦାହରଣସ୍ୱରୂପ, ଆଗରୁ ମାର୍କ୍ସବାଦକୁ ଆର୍ଥିକ ନିର୍ଦ୍ଧାରଣବାଦ (economic determinism) ବୋଲି କୁହାଯାଉଥିଲା । ମାତ୍ର ଆଜିକାଲି ତାକୁ ଆଉ ସେହି ରୂପରେ ବିଶ୍ଳେଷଣ କରାଯାଉ ନାହିଁ । ବର୍ତ୍ତମାନ ସମୟରେ ମାନବବାଦ ବା ହ୍ୟୁମାନିଷ୍ଟ, ଅସ୍ତିତ୍ୱବାଦ ବା ଏକଜିଷ୍ଟେନସିଆଲିଷ୍ଟ ଏବଂ ସଂରଚନାବାଦ ବା ଷ୍ଟ୍ରକ୍‌ଚରାଲିଷ୍ଟ ଆଦି ମାଧ୍ୟମରେ ଆରମ୍ଭ ହୋଇଥିବା ବିତର୍କ ଯୋଗୁଁ ମାର୍କ୍ସବାଦ ସମ୍ପର୍କିତ ଅବଧାରଣା ବଦଳିଛି । ଉପନିବେଶବାଦୀ ଗବେଷଣା ସମୟରେ ଉତ୍ପତ୍ତି ଲାଭ କରିଥିବା ସିଦ୍ଧାନ୍ତଗୁଡ଼ିକ ସ୍ଥାନରେ ବର୍ତ୍ତମାନ ଅଧିକ ତଥ୍ୟାତ୍ମକ, ସମୀକ୍ଷାତ୍ମକ ଏବଂ ବିଶ୍ଳେଷଣାତ୍ମକ ଅଧ୍ୟୟନମାନ ଦେଖିବାକୁ ମିଳୁଛି । ରାଷ୍ଟ୍ରବାଦୀ ବ୍ୟାଖ୍ୟାକୁ ମଧ୍ୟ କଠୋର ନିରୀକ୍ଷଣର ସମ୍ମୁଖୀନ ହେବାକୁ ପଡୁଛି । ମନନ ଚିନ୍ତନର କାୟାକଳ୍ପ ବଦଳୁଛି । ଇତିହାସରେ ଏହି ପରିବର୍ତ୍ତନ ତଥ୍ୟ ଓ ଧାରଣା ପ୍ରଶ୍ନ ସହିତ ଗଭୀର ଭାବରେ ଜଡ଼ିତ । ପାରିପାର୍ଶ୍ୱିକ ଜଗତକୁ ନେଇ ରହିଥିବା ଚିନ୍ତା ଓ ତାକୁ ହୃଦୟଙ୍ଗମ କରିବାକୁ ପ୍ରୟାସ କରାଗଲେ ଐତିହାସିକ ପୁନର୍ବିଚାର ସମ୍ଭବ ହେବ ।

ସାଂସ୍କୃତିକ ଇତିହାସରେ ଆଗ୍ରହ ବୃଦ୍ଧି ପାଇବା ଯୋଗୁଁ ପୋଥିପାଠର ସମୀକ୍ଷାତ୍ମକ ଅଧ୍ୟୟନ ସମ୍ଭବ ହୋଇଛି । ଏହା କେବଳ ବିକଳ୍ପ କିମ୍ବା ବିବିଧତାପୂର୍ଣ୍ଣ ପଠନକୁ ଦର୍ଶାଉ ନାହିଁ, ବରଂ ପୋଥିପାଠକୁ ଅତୀତର ଅବଶେଷ ରୂପରେ ଦେଖିବାକୁ ନିର୍ଦ୍ଦେଶ କରୁଛି । ଏଥିପାଇଁ ବିଭିନ୍ନ ଭାଷା ଓ କ୍ଷେତ୍ରରେ ମିଳୁଥିବା ପୋଥିର ତୁଳନାତ୍ମକ ଅଧ୍ୟୟନର ଆବଶ୍ୟକତା ରହିଛି । ତାକୁ ପୁଣି ଠିକ୍ ପରିପ୍ରେକ୍ଷୀରେ ରଖିବାର ଆବଶ୍ୟକତା ରହିଛି । ରଚନା ପଛରେ ରଚୟିତାର ଉଦ୍ଦେଶ୍ୟ କ'ଣ ? ଯଦି କିଏ ରଚନାର ପୃଷ୍ଠପୋଷକ ଥାଆନ୍ତି, ତାଙ୍କର ଉଦ୍ଦେଶ୍ୟ କ'ଣ ? ଉଭୟ ସାହିତ୍ୟିକ ଏବଂ କଳା ଦୃଷ୍ଟିରୁ ପୃଷ୍ଠପୋଷକତା ଏବଂ ସଂସ୍କୃତି ମଧ୍ୟରେ ରହିଥିବା ଗଭୀର ସମ୍ପର୍କ ହେଲା ସାଂସ୍କୃତିକ ଇତିହାସର ଏକ ଅତି ଆବଶ୍ୟକ ଉପାଦାନ । ଏଥିରୁ ପୁଣି ପ୍ରଶ୍ନ ଉଠେ : ରଚିତ ପୋଥିର ସମ୍ଭାବ୍ୟ ଗ୍ରାହକ କିଏ ? ପାଠକ କିଏ ? କେଉଁ

ଉଦ୍ଦେଶ୍ୟରେ ରଚିତ ହୋଇଥିବ ପୋଥି ? ଏହିସବୁ ପ୍ରଶ୍ନ କଳା ଓ ସାହିତ୍ୟର ସ୍ୱରୂପ ନିର୍ଦ୍ଧାରଣ କରୁଥିବା ନିର୍ଦ୍ଦିଷ୍ଟ ଗ୍ରାହକଶ୍ରେଣୀ ପ୍ରତି ଐତିହାସିକକୁ ସମ୍ବେଦନଶୀଳ କରେ ।

ପୋଥିପାଠର ଗ୍ରାହକ କିଏ ଏବଂ ରଚନା ପଛର ଉଦ୍ଦେଶ୍ୟ କ'ଣ ? ତାହା ଜାଣିବା ପରେ ଅତୀତର କେଉଁ ଅବଧାରଣାକୁ ଅନ୍ତର୍ଭୁକ୍ତ କରିବା ପାଇଁ ପୋଥି ରଚିତ, ତାକୁ ବୁଝିବା ପାଇଁ ଉଦ୍ୟମ କରିହୁଏ । ଇତିହାସବୋଧ ସଂଯୁକ୍ତ ଏହି ଧରଣର ପୋଥି-ପାଠକୁ ଇତିହାସ-ପୁରାଣ ପରମ୍ପରା ବୋଲି କୁହାଯାଏ । ଇତିହାସର ଶାବ୍ଦିକ ଅର୍ଥ ହେଲା, "ତେଣୁ ଏହା ଥିଲା" ଏବଂ ପୁରାଣ ଅର୍ଥ ହେଲା "ଯାହା ପୁରାତନ, ପୁରୁଣା" । ଏଥିରୁ ଇତିହାସ ପୁରାଣର ଭିନ୍ନ ଭିନ୍ନ ସ୍ୱରୂପର ଉପୃତ୍ତି ହୁଏ । ଆଦ୍ୟ ପୁରାଣମାନଙ୍କରେ ଯେଉଁ ବଂଶାବଳୀ ରହିଛି ତହିଁରୁ କେତେକ ଖୁବ୍ ଅଦ୍ଭୁତ । ସମୟକ୍ରମେ ବଂଶାବଳୀ ଅଧିକ ବାସ୍ତବିକତାଯୁକ୍ତ ଏବଂ ଉତ୍ତରାଧିକାରୀମାନଙ୍କର ତାଲିକାଯୁକ୍ତ । ଏହାର ପରେ ଯେଉଁ ପୋଥି ରଚିତ ହେଲା, ତହିଁରେ ରାଜା ଏବଂ କେବେ କେବେ ମନ୍ତ୍ରୀମାନଙ୍କର ଜୀବନୀର ଉଲ୍ଲେଖ ଦେଖିବାକୁ ମିଳେ । ପ୍ରାୟତଃ ଏଗୁଡ଼ିକ ହେଲା ରାଜପ୍ରଶସ୍ତି । ତହିଁରେ ରାଜାଙ୍କର ପ୍ରଶଂସା ରହିଥାଏ । ମାତ୍ର ତା' ସହିତ ଐତିହାସିକ ଘଟଣାଗୁଡ଼ିକର ମଧ୍ୟ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଆଞ୍ଚଳିକ ଇତିହାସ ସମ୍ମିଳିତ ପୋଥିରେ ରାଜବିବରଣୀ ରହିଥାଏ । ଏହାର ସବୁଠାରୁ ପ୍ରକୃଷ୍ଟ ଉଦାହରଣ ହେବ କଲ୍ହଣଙ୍କର 'ରାଜତରଙ୍ଗିଣୀ' । ବୌଦ୍ଧବିହାରର କେତେକ ବିବରଣୀକୁ ମଧ୍ୟ ଐତିହାସିକ ବର୍ଣ୍ଣନା ରୂପରେ ଦେଖିହେବ । ରାଜଶାସନର ବିବରଣୀକୁ ଲେଖା ଆକାରରେ ରଖିବା କିମ୍ବା ରାଜବଂଶର ଇତିହାସକୁ ଶିଳାଲେଖ ମାଧ୍ୟମରେ ଅଭିବ୍ୟକ୍ତ କରିବାର ପରମ୍ପରା ଭାରତରେ ଖ୍ରୀଷ୍ଟାବ୍ଦ ଆରମ୍ଭର ସାମାନ୍ୟ ଆଗରୁ ସୃଷ୍ଟି ହୋଇଥିଲା । ଅଷ୍ଟମ ଶତାବ୍ଦୀ ପରେ ଏହା ଖୁବ୍ ଲୋକପ୍ରିୟ ହେଲା । ଆଦ୍ୟକାଳୀନ ଭାରତ ଇତିହାସ ରଚନା ପାଇଁ ଏହା ପଞ୍ଜିକାସଦୃଶ ହେଲା ।

ଏହିସବୁ ରଚନା ଆଧୁନିକ ଭାଷାରେ ଇତିହାସ ପଦବାଚ୍ୟ ନୁହେଁ ସତ, ମାତ୍ର ଅତୀତର ଏକ ନିର୍ଦ୍ଦିଷ୍ଟ ସ୍ୱରୂପକୁ ଚୋଳି ଧରିବା ପାଇଁ ତାକୁ ଏକ ଉଦ୍ୟମ ଭାବରେ ଅଭିହିତ କରାଯାଇପାରିବ । ଦ୍ୱିତୀୟ କଥା, ଏହିସବୁ ରଚନା ପଛରେ ଉଦ୍ଦେଶ୍ୟ ହେଲା, ପୃଷ୍ଠପୋଷକର୍ତ୍ତା ପ୍ରଦାନ କରୁଥିବା ରାଜାଙ୍କର ଦାବିକୁ ବୈଧତା ପ୍ରଦାନ କରିବା । ଏହିସବୁ ରଚନାକୁ ସମୟ ପ୍ରବାହ ବା ପ୍ରଲମ୍ବିତ ସମୟ (linear time)ର ପରିଧିରେ ସ୍ଥାପିତ କରାଯାଇଛି । ଏହି ରଚନାଗୁଡ଼ିକୁ ଦେଖିଲେ ମନେହୁଏ, ଯେମିତି ପୃଷ୍ଠପୋଷକଙ୍କ ନିର୍ଦ୍ଦେଶ ଅନୁସାରେ ଇତିହାସ ସଂଘଟିତ ହେଉଛି; ରଚୟିତା-ଐତିହାସିକ ସତ୍ୟଗୁଡ଼ିକୁ ଏକତ୍ରିତ କରୁଛନ୍ତି; ଏବଂ ଯେଉଁ

ବର୍ଗକୁ ଶ୍ରୋତା ମନେକରି ରଚନା କରାଯାଉଛି, ସେହି ବର୍ଗ ପାଠର ବିବରଣୀରେ ଯେମିତି ପୂର୍ଣ୍ଣସମ୍ମତ । ବର୍ଣ୍ଣନାର ଶୈଳୀ ଖାପଛଡ଼ା ମନେହୁଏ ନାହିଁ, କାରଣ ଅତୀତରୁ ଆହରଣ କରି, ଅତୀତର ଶୈଳୀ ସହିତ ଖାପ ଖୁଆଇ ରଚୟିତାମାନେ ତାକୁ ରଚନା କରିଥାନ୍ତି । ଇତିହାସ-ପୁରାଣ ପରମ୍ପରା ଘଟଣାଗୁଡ଼ିକର ବର୍ଣ୍ଣନା କରେ, ବିଶ୍ଳେଷଣ କରେ ଏବଂ ମୂଲ୍ୟାଙ୍କନ କରିବାକୁ ପ୍ରୟାସ କରେ । ଆଧୁନିକ ଇତିହାସ ଏହାକୁ ସମୀକ୍ଷା ଭାବରେ ସୁଦ୍ଧା ସ୍ୱୀକାର କରେ ନାହିଁ । ଏହି ଧାରାର ସାଧାରଣ ସତ୍ୟ (generalization)ରେ ଉପନୀତ ହେବା ମଧ୍ୟ ଆଧୁନିକ ଇତିହାସକୁ ସ୍ୱୀକାର୍ଯ୍ୟ ନୁହେଁ । ଏସବୁ ସତ୍ତ୍ୱେ, ପୁରାଣ-ଇତିହାସରୁ ଅତୀତର ଘଟଣାଗୁଡ଼ିକୁ କେଉଁଭଳି ଭାବେ ଅନେକ ଶତାବ୍ଦୀ ପୂର୍ବେ ଦେଖାଯାଉଥିଲା, ତାହା ଧାରଣା କରିହୁଏ ।

ଐତିହାସିକ ପରମ୍ପରା ସହିତ ଆଉ ଗୋଟାଏ କଥା ଯୋଡ଼ି ହୋଇଛି, ଯଦିଓ ତାକୁ ବର୍ଗୀକୃତ କରାଯାଇ ନାହିଁ । ହଜାର ହଜାର ସଂଖ୍ୟାରେ ଶିଳାଲେଖମାନ ରହିଛି । ପ୍ରଥମେ ତାକୁ ବ୍ୟବହାର କରି ବଂଶ ଇତିହାସଗୁଡ଼ିକର ପୁନଃରଚନା କରାଯାଉଥିଲା । ବର୍ତ୍ତମାନ ତାକୁ ଅତୀତ ବା ଇତିହାସର ବିଭିନ୍ନ ଦିଗକୁ ଜାଣିବା ଲାଗି ପୁନଃଅଧ୍ୟୟନ କରାଯାଉଛି । ପୋଥି ଏବଂ ପାଠ ହିସାବରେ ଏହା କେବେ କେବେ ଉପରକୁ ଜଣାପଡୁଥିବା ଆଦର୍ଶ ସାହିତ୍ୟିକ ଉକ୍ତିରୁ ଅଲଗା ବିକଳ୍ପ ଉକ୍ତି ପ୍ରଦାନ କରେ । ପ୍ରଥମ ସହସ୍ରାବ୍ଦୀର ମଧ୍ୟବର୍ତ୍ତୀକାଳୀନ ଇତିହାସ ବର୍ଣ୍ଣନା ବେଳେ ସାଧାରଣତଃ ମୁଖ୍ୟ କେନ୍ଦ୍ର ଏବଂ ଆଞ୍ଚଳିକ କ୍ଷେତ୍ରଗୁଡ଼ିକର ସଂସ୍କୃତି ପରସ୍ପର ସହିତ ମିଶିଯାଇଥିବା କଥା କୁହାଯାଏ । ମାତ୍ର ସେଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଅନୁଶୀଳନ କଲେ ଜଣାଯିବ ଯେ ଆଞ୍ଚଳିକ କ୍ଷେତ୍ରରୁ ଶୁଣାଯାଉଥିବା ସ୍ୱର ମୁଖ୍ୟ କେନ୍ଦ୍ରର ସ୍ୱରଠାରୁ ଭିନ୍ନ ।

ଐତିହାସିକ ଅଧ୍ୟୟନ ନିରୋଳାରେ ଥିବା କିମ୍ବା ନିଜ ନିଜ ଭିତରେ ସମ୍ପର୍କ ନ ଥିବା କେତୋଟି ଦ୍ୱୀପ ଭଳି ନୁହେଁ ବା ରାଜନୀତିକ, ପାରିବେଶିକ, ପ୍ରଯୁକ୍ତିକ, ଆର୍ଥିକ, ସାମାଜିକ, ଧାର୍ମିକ କିମ୍ବା ଅନ୍ୟାନ୍ୟ ଇତିହାସର ଖଣ୍ଡମାନ ନୁହେଁ । ଏହି ବିଭିନ୍ନ ଖଣ୍ଡଗୁଡ଼ିକୁ ଐତିହାସିକ ବିଶ୍ଳେଷଣ ଦ୍ୱାରା ଚିହ୍ନିତ କରାଯାଏ । ପୁଣି ସେଗୁଡ଼ିକୁ ସାମଗ୍ରିକ ଭାବରେ ଯୋଡ଼ି ତହିଁରୁ କାର୍ଯ୍ୟ ଓ କାର୍ଯ୍ୟ ପଛରେ ଥିବା କାରଣକୁ ନିର୍ଦ୍ଧାରଣ କରାଯାଏ ଏବଂ ସେ ନେଇ ବିଶ୍ଳେଷଣ ପ୍ରସ୍ତୁତ କରାଯାଏ । ପ୍ରତ୍ୟେକ ଉପାଦାନର ଜଟିଳତାକୁ ମାର୍ଜିତ କରିବା ଲାଗି ପୋଥି-ପାଠର ଅଧ୍ୟୟନକୁ ସଠିକ୍ ଧ୍ୟାନ ଦେବାକୁ ପଡ଼ିବ । ଏହା ଫଳରେ ଖୁବ୍ ପରିଚିତ ଦୃଷ୍ଟିକୋଣ ବ୍ୟତୀତ ଭିନ୍ନ ଉପାଦାନ ମଧ୍ୟ ସୁସ୍ପଷ୍ଟ ହେବ । ଏହା ହେଉଛି ଐତିହାସିକ ବିଶ୍ଳେଷଣର ମୌଳିକ ଆବଶ୍ୟକତା ।

ପରିବର୍ତ୍ତନ ଓ ଐତିହାସିକ ପରିବର୍ତ୍ତନ ସହିତ ଇତିହାସର ନିବିଡ଼ ସମ୍ବନ୍ଧ । ପୂର୍ବରୁ ଏହି ପରିବର୍ତ୍ତନ ନିର୍ଦ୍ଧାରିତ ହୋଇ ନ ଥାଏ । ମାତ୍ର ଏକଥା ବି ସତ ଯେ ଏହା ନା ଦିଗହୀନ, ନା ଉଦ୍ଦେଶ୍ୟବିହୀନ । ଗୋଟାଏ କ୍ଷେତ୍ରରେ ବିବିଧ ସମାଜର ସଂରଚନା କେମିତି ହେଲା – ତାହା ଐତିହାସିକ ବିଶ୍ଳେଷଣରୁ ସୁସ୍ପଷ୍ଟ ହୁଏ । ଐତିହାସିକ ତାଙ୍କୁ ଉପସ୍ଥାପିତ କରିବା ପ୍ରକ୍ରିୟାରେ ଘଟଣାର ଚରିତ୍ରମାନଙ୍କୁ ତଥା ଯେଉଁ ସ୍ଥିତିରେ ଘଟଣା ପରିଘଟିତ ହେଲା, ସେହି ସ୍ଥିତିକୁ ଉଲ୍ଲେଖ କରେ । ବିଶ୍ଳେଷଣାତ୍ମକ ସିଦ୍ଧାନ୍ତ ସ୍ଥିତିକୁ ବୁଝିବାରେ ସାହାଯ୍ୟ କରେ । ସିଦ୍ଧାନ୍ତଗୁଡ଼ିକ ପରସ୍ପର ମଧ୍ୟରେ ପାର୍ଥକ୍ୟ ଦେଖନ୍ତି । କେତେକ ସିଦ୍ଧାନ୍ତରେ ସମାଜରେ କ୍ଷମତା ସମ୍ବନ୍ଧ ହେଲା ସବୁଠାରୁ ଅଧିକ ମୌଳିକ ଉପାଦାନ; ଅନ୍ୟ କେତେକ ସିଦ୍ଧାନ୍ତ ଅନୁଯାୟୀ, ସମାଜରେ କିଏ ସମ୍ବଳ ଓ ଶ୍ରମକୁ ଅକ୍ତିଆର କରେ ଓ କିଏ ପରିଶ୍ରମ କରେ, ତାକୁ ଦର୍ଶାଇବା ପାଇଁ ଯେଉଁ ଦ୍ୱନ୍ଦ୍ୱାତ୍ମକ ଯୁକ୍ତି, ତାହା ହେଲା ମୁଖ୍ୟ । ପୁଣି ଆଉ କେତେକ କହନ୍ତି, ସାମାଜିକ-ଆର୍ଥିକ ଢାଞ୍ଚା ଏବଂ ତହିଁରୁ ଉତ୍ପନ୍ନ ସିଦ୍ଧାନ୍ତ ମଧ୍ୟରେ ରହିଥିବା ସମ୍ପର୍କ କିମ୍ବା ବିପରୀତ ସମ୍ପର୍କ ହେଲା ସାମାଜିକ ପରିବର୍ତ୍ତନର ପ୍ରମୁଖ ଉପାଦାନ । ଆଉ କେତେକ ଐତିହାସିକ ପୁଣି କହନ୍ତି ଯେ, ଏସବୁଗୁଡ଼ିକ ମଧ୍ୟରେ ପାରସ୍ପରିକ ସମ୍ପର୍କ ହେଲା ସମାଜର ମୁଖ୍ୟ ତତ୍ତ୍ୱ ।

ଏହି ଅଧ୍ୟାୟରେ ଯେଉଁସବୁ ସିଦ୍ଧାନ୍ତର ଅବତାରଣା କରାଯାଇଛି ତାକୁ କ୍ରମାନ୍ୱୟରେ ରଖାଯାଇ ନାହିଁ, ଯଦିଓ ସେଗୁଡ଼ିକ ମଧ୍ୟରେ କାରଣଗତ ସମ୍ପର୍କ ରହିଛି । ଐତିହାସିକ ସିଦ୍ଧାନ୍ତ ବା ତତ୍ତ୍ୱକୁ ଏକ ନିର୍ଦ୍ଦିଷ୍ଟ ସମୟ, ସ୍ଥାନ ଏବଂ ଘଟଣାର ଅଭିବ୍ୟକ୍ତି ରୂପରେ ଦେଖିହେବ । ଅର୍ଥାତ୍ ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱକୁ ନିରୋଳାରେ ଦେଖି ହେବ ନାହିଁ । ତତ୍ତ୍ୱର ନିଜସ୍ୱ ଇତିହାସ ଥାଏ । ଐତିହାସିକ ବିଚାରର ବିଭିନ୍ନ ଦିଗକୁ ନେଇ ଏହାର ସଂରଚନା ହୋଇଥାଏ । ନୂଆ ତତ୍ତ୍ୱର ଅର୍ଥ ନୁହେଁ କେବଳ ଅଧିକ ତଥ୍ୟ କିମ୍ବା ସ୍ଥାପିତ ତଥ୍ୟର ଓଲଟା ମତ । ବରଂ ତାକୁ ଜଟିଳ ସମସ୍ୟାର ବିଶ୍ଳେଷଣ ଲାଗି କରାଯାଇଥିବା ଉଦ୍ୟମ ଭାବରେ ଦେଖିବାକୁ ହେବ । ତତ୍ତ୍ୱ ବିବିଧ ରୂପରେ ରହିଥାଏ । କେତେକ ତତ୍ତ୍ୱ ସମୟକ୍ରମେ ମହତ୍ତ୍ୱ ହରାନ୍ତି କିମ୍ବା ଶେଷ ପାଇଯାଆନ୍ତି । ଅନ୍ୟ କେତେକ ତତ୍ତ୍ୱ ସାଧାରଣତଃ ପରିବର୍ତ୍ତିତ ରୂପରେ ପରେ ମଧ୍ୟ ରହିଥାନ୍ତି । ଯେଉଁ ତତ୍ତ୍ୱ ଐତିହାସିକ ବିଶ୍ଳେଷଣ ଅପେକ୍ଷା ରାଜନୈତିକ ବିଚାରଧାରାକୁ ଅଧିକ ଗୁରୁତ୍ୱ ଦିଏ, ତାକୁ ଅଧିକ ବିରୋଧର ସମ୍ମୁଖୀନ ହେବାକୁ ପଡ଼େ । ପୁଣି ଆଉ କେତେକ ତତ୍ତ୍ୱ ରହିଛନ୍ତି, ଯାହା ନୂଆ ତତ୍ତ୍ୱ ଓ ସିଦ୍ଧାନ୍ତକୁ ଜନ୍ମ ଦିଅନ୍ତି ଏବଂ ଐତିହାସିକ ଅନୁଶୀଳନର ପରିଧିକୁ ବିସ୍ତାରିତ କରନ୍ତି ।

ଏହି ପୁସ୍ତକରେ କେତେକ ନୂଆ ବିଷୟର ସମ୍ଭାବନା କଥା ଦର୍ଶାଯାଇଛି; ଅତୀତକୁ ବୁଝିବାରେ ମହତ୍ତ୍ୱପୂର୍ଣ୍ଣ ମନେ ହେଉଥିବା କେତେକ ପ୍ରଶ୍ନକୁ ଉତ୍‌ଥାପନ କରିବାକୁ ପ୍ରୟାସ

କରାଯାଇଛି; ପୁଣି ବିଭିନ୍ନ ସମୟରେ ଭାରତୀୟ ସମାଜକୁ ନିର୍ମାଣ କରିବାରେ ଭୂମିକା ନିର୍ବାହ କରିଥିବା ଲୋକ, ଘଟଣା ଏବଂ ସଂସ୍ଥାଗୁଡ଼ିକୁ ଚିହ୍ନିତ କରିବାକୁ ଉଦ୍ୟମ କରାଯାଇଛି । ମାତ୍ର ଭାରତର ଇତିହାସ ଓ ସଂସ୍କୃତିକୁ ଏକ ସ୍ୱୟଂସମ୍ଭୂତ ପ୍ରକ୍ରିୟା ରୂପରେ ମୂଲ୍ୟାଙ୍କନ କରିବାର ପ୍ରବୃତ୍ତିକୁ ଏଥିରେ (ପୁସ୍ତକରେ) ମହତ୍ତ୍ୱ ଦିଆଯାଇ ନାହିଁ । ଏହି ସଂକ୍ଷିପ୍ତ ଇତିହାସରେ ସେହି କିସମର ମୂଲ୍ୟାଙ୍କନ କରାଗଲେ କେବଳ ନୂତନତ୍ୱବିହୀନ ମନ୍ତବ୍ୟ ସୃଷ୍ଟି ହେବ, ଯାହାର କୌଣସି ଆବଶ୍ୟକତା ନାହିଁ । ଭାରତୀୟ ଜୀବନର ବିଭିନ୍ନ ଦିଗକୁ, ଯଥା : ପରିବେଶ ଏବଂ ଆର୍ଥିକ ସ୍ୱରୂପ, ପରିବର୍ତ୍ତିତ ସାମାଜିକ ସମ୍ପର୍କ, ଧାର୍ମିକ ଆନ୍ଦୋଳନର ଐତିହାସିକ ପୃଷ୍ଠଭୂମି, ଭାଷାର ଉତ୍ପତ୍ତି ଓ ବିକାଶ ଆଦି ଖୋଜିବା ଏବଂ ସେଗୁଡ଼ିକର ବିବର୍ତ୍ତନକୁ ଅନୁଶୀଳନ କରିବା ପ୍ରକ୍ରିୟାରେ ଏକାଧିକ ଧାରା ବା ପେଟର୍ନ (pattern) ପ୍ରାପ୍ତ ହୋଇଛି । ସେହିସବୁ ଧାରାକୁ ଏଥିରେ ବର୍ଣ୍ଣନା ଓ ବ୍ୟାଖ୍ୟା କରାଯାଇଛି । ମୋ ମତରେ ଯେଉଁ ତଥ୍ୟ ଓ ଯୁକ୍ତି ଗ୍ରହଣଯୋଗ୍ୟ, ତାକୁ ମୁଁ ଏଠାରେ ନେଇଛି । ଏଭଳି ଏକ ସର୍ବେକ୍ଷଣମୂଳକ ପୁସ୍ତକର ଉଦ୍ଦେଶ୍ୟ ହେଲା ବୁଝିବା ଭଳି ଶୈଳୀରେ ଅତୀତ ଭାରତର ଜଟିଳତାକୁ କ୍ଷୁଣ୍ଣ ନ କରି, ବିଭିନ୍ନ ଚରିତ୍ରକୁ ଉପସ୍ଥାପନ କରିବା । ଜଣେ ଐତିହାସିକ ଭାବରେ ମତେ ଜଣା, ନିଜେ ମୁଁ ମଧ୍ୟ ଐତିହାସିକ ପ୍ରକ୍ରିୟାର ବାହାରେ ନୁହେଁ । ଏକଥା ବି ମୁଁ ଜାଣେ ଯେ ଭବିଷ୍ୟତ୍‌ରେ ଇତିହାସକୁ ନେଇ ରୂପକଳ୍ପ (paradigm) ବଦଳିବ । ଆଜି ଇତିହାସକୁ ଆମେ ଯେଉଁ ପ୍ରକାରେ ଅନୁଶୀଳନ କରୁଛେ, ତହିଁରେ ପରିବର୍ତ୍ତନ ଆସିବ । ମାତ୍ର ସେହି ପରିବର୍ତ୍ତନ ମଧ୍ୟ ବର୍ତ୍ତମାନର ଦୃଷ୍ଟିକୋଣକୁ କଦାପି ଉପେକ୍ଷା କରିପାରିବ ନାହିଁ – ଏଥିରେ ସଂଶୟ ନାହିଁ ।

# 2

# ଭୂଦୃଶ୍ୟ ଓ ଲୋକମାନେ

## ସ୍ଥାନ ଓ କାଳ

ଆଳଂକାରିକ ଭାବରେ କହିଲେ ସ୍ଥାନ ଓ କାଳ ହେଲେ ଇତିହାସରୂପକ ହାତର ବାଙ୍କୁଲିବାଡ଼ି ଓ ବିବେକ ବାଣୀ । ସେମାନେ ଇତିହାସକୁ ବାଟ ଦେଖାନ୍ତି । ଭାରତରେ ସମୟକୁ ନେଇ ଅରୂପ ଅବଧାରଣାମାନ ରହିଛି । ଉଦାହରଣସ୍ୱରୂପ, ସମୟଚକ୍ର (cyclic time), ଯାହାକୁ ବିଶ୍ୱତତ୍ତ୍ୱର ଏକ ଐଶ୍ୱରିକ ଉପାଦାନ, ଏକ ସଂଭାଗ ରୂପରେ ଏବଂ ସମୟ-ପ୍ରବାହ ବା ପ୍ରଲମ୍ବିତ କାଳ (linear time)କୁ ମଣିଷକୃତ ଭାବରେ ନିଆଯାଏ । 'ମହାଭାରତ', 'ଧର୍ମଶାସ୍ତ୍ର' (ମନୁ ରଚିତ) ଏବଂ 'ବିଷ୍ଣୁ ପୁରାଣ' ଆଦି ବିଭିନ୍ନ ଗ୍ରନ୍ଥରେ ସମୟଚକ୍ର ବା ବୃତ୍ତାକାର କାଳର ଉଲ୍ଲେଖ ରହିଛି । ସମ୍ଭବତଃ ଖ୍ରୀ.ଅବ୍ଦର ଆରମ୍ଭ ସମୟରେ ବିଶ୍ୱତତ୍ତ୍ୱର ଏହି ଧରଣର ବ୍ୟାପକ ବ୍ୟାଖ୍ୟା କରାଯାଇଛି । ବିଷ୍ଣୁ ପୁରାଣରେ ଏକ ଅଧ୍ୟାୟରେ କୁଳ ଓ ବଂଶ ସମ୍ବନ୍ଧ ସମ୍ପର୍କରେ ଆଲୋଚନା ରହିଛି । ଏହା ସମୟପ୍ରବାହ ବା ପ୍ରଲମ୍ବିତ କାଳକୁ ସୂଚିତ କରୁଛି । ମାତ୍ର ସମୟ ସମ୍ପର୍କିତ ଆଧୁନିକ ଅଧ୍ୟୟନରେ ଏହି ତଥ୍ୟକୁ ଅଣଦେଖା କରାଯାଇଛି ଏବଂ ଭାରତୀୟ ସଭ୍ୟତା କେବଳ ସମୟଚକ୍ର ବା କାଳଚକ୍ର ସହିତ ପରିଚିତ ବୋଲି ଧାରଣା ଦିଆଯାଇଛି ।

ସମୟଚକ୍ର ବା କାଳଚକ୍ରର ମୋଟ ସମୟକୁ ମହାଯୁଗ ବୋଲି କୁହାଯାଏ । ଏହାର ଆନୁମାନିକ ଅବଧି ହେଲା 4,320,000 ବର୍ଷ । ଜ୍ୟୋତିର୍ବିଜ୍ଞାନରେ ଗଣନା ସୁବିଧାଜନକ ହେବ ବୋଲି ମହାଯୁଗର ମୋଟ ଅବଧିକୁ ଖୁବ୍ ବିଶାଳ କରିବାକୁ ପଡ଼ିଛି । ମହାଯୁଗରେ ଚାରୋଟି ଯୁଗ ରହିଛି ଏବଂ ପ୍ରତ୍ୟେକ ଯୁଗର ମୋଟ ଅବଧି କ୍ରମାନ୍ୱୟରେ ତଥା ଗାଣିତିକ ରୀତିରେ ହ୍ରାସ ପାଇଥାଏ । ସେହି ଚାରିଗୋଟି ଯୁଗ ହେଲା : କ୍ରିତା ବା ସତ୍ୟ ଯୁଗ, ତ୍ରେତା

ବା ତୃତୀୟ ଯୁଗ, ଦ୍ୱାପର ବା ଦ୍ୱିତୀୟ ଯୁଗ ଏବଂ କଳି ଯୁଗ । ବର୍ତ୍ତମାନ କଳି ଯୁଗ ଚାଲିଛି, ଯାହା ଖ୍ରୀଷ୍ଟପୂର୍ବ 3102 ରେ ଆରମ୍ଭ ହୋଇଛି ଏବଂ 4,32,000 ବର୍ଷ ପର୍ଯ୍ୟନ୍ତ ଚାଲିବ ବୋଲି ପଣ୍ଡିତମାନେ ଗଣନା କରି କହିଛନ୍ତି । କ୍ରମାନ୍ୱୟରେ କେବଳ ଯୁଗର ସମୟସୀମା ହ୍ରାସ ହୁଏ ନାହିଁ, ତା' ସହିତ ଜୀବନର ଗୁଣାତ୍ମକତା ମଧ୍ୟ ହ୍ରାସ ପାଏ । ମହାଯୁଗ ହେଉଛି ଏକ ଚାରିଗୋଡ଼ିଆ ଷଣ୍ଢ ସଦୃଶ, ଯିଏ ଆରମ୍ଭରେ ନିଜର ଚାରୋଟିଯାକ ଗୋଡ଼ରେ ଭରାଦେଇ ଠିଆ ହୋଇଥାଏ । ମାତ୍ର ପ୍ରତି ଯୁଗର ଅନ୍ତ ହେଲା ପରେ ଷଣ୍ଢ ଗୋଟାଏ ଗୋଡ଼ ହରାଏ । ଏହି କ୍ରମରେ କଳିଯୁଗରେ ଷଣ୍ଢଟି ଏକଗୋଡ଼ିଆ ହୋଇ ଠିଆ ହୋଇଛି । ପ୍ରଥମ ଯୁଗ ବା କ୍ରିତା ଯୁଗକୁ ବାଦ୍ ଦେଲେ, ଅନ୍ୟ ଯୁଗଗୁଡ଼ିକର ନାମରେ ପଶାଖେଳର ଅନିଶ୍ଚିତତାକୁ ଦେଖିହୁଏ, ଯାହା ସମୟର ଅବଧାରଣାରେ ଅନ୍ତର୍ଭୁକ୍ତ ହୋଇଥାଏ । ତେଣୁ କଳିଯୁଗର ଅର୍ଥ ହେଲା ଯେମିତି ପଶାଖେଳରେ ହାରିଯିବାର କାଳଖଣ୍ଡ ।

ପ୍ରଲମ୍ବିତ ସମୟ କାଳକୁ ମାନବ ଇତିହାସର ଆରମ୍ଭ ଓ ଶେଷର ମଧ୍ୟକାଳୀନ ଅବଧି ମଧ୍ୟରେ ସୀମିତ ରଖାଯାଏ । କୌଣସି ରାଜବଂଶ ବା କୁଳର ଏକ ଗଭୀର ଅବତରଣ ରୂପରେ ଏହା ପ୍ରତୀୟମାନ ହୋଇପାରେ; ଜୀବନକାଳର ମୋଟ ଅବଧି କିମ୍ବା ରାଜା ଓ ରାଜବଂଶର ପ୍ରଭୁତ୍ୱ ଦର୍ଶାଇବା ସକାଶେ ଲିଖିତ ଅସଂଖ୍ୟ ବିବରଣୀ ଏବଂ ତା' ସହିତ ଅନେକ ଅବ୍ଦର ପ୍ରଚଳନ ଆଦି ରୂପରେ ଏହା ପ୍ରଥମ ସହସ୍ରାବ୍ଦୀ ସମୟରୁ ଦେଖିବାକୁ ମିଳିଲା । ଇହୁଦୀ ଓ ଖ୍ରୀଷ୍ଟିଆନ ପରମ୍ପରାରେ କାଳର ଗୋଟାଏ ଆରମ୍ଭ ଅଛି ଏବଂ ଆଉ ଗୋଟାଏ ନିର୍ଦ୍ଦିଷ୍ଟ ଅନ୍ତର୍ବିନ୍ଦୁ ରହିଛି, ଯାହାକୁ କୁହାଯାଏ ବିଚାରର ଦିନ (Day of Judgement); ମାତ୍ର ଭାରତୀୟ ପରମ୍ପରାରେ ଏଭଳି ଯୁଗାନ୍ତ-ବିଜ୍ଞାନ (eschatology) ସେତେ ଦୃଢ଼ ନୁହେଁ । ସେ ଯାହାହେଉ, ପ୍ରଲମ୍ବିତ ସମୟର ଅବଧାରଣା ହିଁ ଅତୀତର ନିର୍ଭୁଲ ମାପକ ହୋଇପାରିବ । ରାଜା, ବୀରପୁରୁଷ ଏବଂ ଦରବାରରେ ବିବରଣୀର ପ୍ରସ୍ତୁତି ପାଇଁ ପ୍ରଲମ୍ବିତ ସମୟକାଳର ଅତ୍ୟନ୍ତ ଆବଶ୍ୟକତା ପଡ଼େ । ଯାହା ଜଣାପଡ଼େ, କାଳଚକ୍ର ଏବଂ କାଳପ୍ରବାହର ବିବିଧ କିସମର ଭୂମିକା ରହିଥିଲା । ଉଭୟଙ୍କ ମଧ୍ୟରେ ଯୋଗସୂତ୍ର ରହିଥିଲା; ଏହା ଭାରତୀୟ କାବ୍ୟଗ୍ରନ୍ଥମାନଙ୍କରେ ପ୍ରତିଫଳିତ ମଧ୍ୟ ହୋଇଥାଏ । କାଳଚକ୍ର ଓ କାଳପ୍ରବାହ ମଧ୍ୟରେ ରହିଥିବା ଯୋଗସୂତ୍ରକୁ ଆବିଷ୍କାର କରିବାର ବୌଦ୍ଧିକ ପ୍ରୟାସ ପ୍ରାରମ୍ଭିକ ସ୍ତରରେ ରହିଛି ।

ଯେଉଁ ଆଞ୍ଚଳିକ କ୍ଷେତ୍ରଗୁଡ଼ିକ ସ୍ୱତନ୍ତ୍ର, ଅର୍ଥାତ୍ ଅନ୍ୟ କ୍ଷେତ୍ରଠାରୁ ଭିନ୍ନ, ସେଗୁଡ଼ିକ ଐତିହାସିକ ଏବଂ ଭୌଗୋଳିକ ଦୃଷ୍ଟିକୋଣରୁ ଇତିହାସରେ ଏକ ସକ୍ରିୟ ଭୂମିକା ନିର୍ବାହ କରନ୍ତି । ସବୁ କ୍ଷେତ୍ର ସମାନ ନୁହନ୍ତି । ପୁଣି ଏକା ସମୟରେ ସେଗୁଡ଼ିକର ବିକାଶ ହୋଇ

ନାହିଁ । ଏହି କାରଣରୁ, କ୍ଷେତ୍ରଗୁଡ଼ିକର ବିକାଶଧାରା ଏକା ହୋଇ ନ ପାରେ । ଏକ ନିର୍ଦ୍ଦିଷ୍ଟ ଭୂଦୃଶ୍ୟ (landscape) ଓ ପରିବେଶ ରହିଥିବା ସ୍ଥାନ ମାନବିକ ଗତିବିଧି ଯୋଗୁଁ ନୂଆ ରୂପ ପ୍ରାପ୍ତ ହୁଏ । ସବୁଗୁଡ଼ିକ ମିଶି କ୍ଷେତ୍ରର ଚରିତ୍ର ନିର୍ଦ୍ଧାରଣ କରନ୍ତି । ଜଳବାୟୁ, ମାଟି, ଜଳସମ୍ପଦା, କୃଷି, ଅନାବୃଷ୍ଟି ଏବଂ ବନ୍ୟା ଆଦି ଭୌଗୋଳିକ ଅବସ୍ଥା ଯୋଗୁଁ କ୍ଷେତ୍ରଟିଏ ତା'ର ସ୍ୱରୂପ ପାଏ । ଏସବୁ ବ୍ୟତୀତ ପରିବେଶ ଏବଂ ଭୂଦୃଶ୍ୟ (landscape)କୁ ବଦଳେଇ ଦେଲାଭଳି ଟେକ୍ନୋଲୋଜି ରହିଛି, ଯାହାର ପ୍ରଭାବ କ୍ଷେତ୍ରର ସ୍ଥିତି ଉପରେ ପଡ଼ିଥାଏ ।

ଗଣ୍ଡୱାନାଲେଣ୍ଡର ମାଟିରୁ ଭାରତ ଭୂଖଣ୍ଡର ନିର୍ମାଣ ହେଲା ବୋଲି କୁହାଯାଏ । ସମୁଦ୍ରରେ ମାଟି ପରିପୂର୍ଣ୍ଣ ହେଲାରୁ ଉତ୍ତରାଞ୍ଚଳର ସମତଳ ଭୂମି ସୃଷ୍ଟି ହେଲା ବୋଲି ଆମେ ବିଶ୍ୱାସ କରୁ । ଭୌଗୋଳିକ ଦୃଷ୍ଟିରୁ ଭାରତ ଉପମହାଦେଶର ଉତ୍ପତ୍ତି ହେଲା ପରେ ଲକ୍ଷ ଲକ୍ଷ ବର୍ଷ ଧରି ଏହା ଅନ୍ୟ ଅଞ୍ଚଳରୁ ସ୍ୱତନ୍ତ୍ର ହୋଇ ରହିଥିଲା । ଅପେକ୍ଷାକୃତ ଏହି ନିକଟ ଅତୀତରେ ଉପମହାଦେଶକୁ ତା'ର ଐତିହାସିକ ସତ୍ତା ନିମିତ୍ତ ଯେଉଁ ନାମର ବ୍ୟବହାର ହେଲା, ତହିଁରେ ସ୍ଥାନର ବିଭିନ୍ନ ଅବଧାରଣାର ଉଲ୍ଲେଖ ରହିଲା । ଏହିସବୁ ନାମ ସଂକୀର୍ଣ୍ଣତାରୁ ବିଶାଳତା ଆଡ଼କୁ ତାକୁ (ଉପମହାଦେଶକୁ) ନେଇଗଲେ । ପୁଣି ଏହି ନାମଗୁଡ଼ିକ ସମଗ୍ର ଉପମହାଦେଶକୁ ଚିହ୍ନିତ ନ କରି କେବଳ ତା'ର ଉତ୍ତର-ପଶ୍ଚିମାଞ୍ଚଳ କ୍ଷେତ୍ରକୁ ଚିହ୍ନିତ କରୁଥିଲେ । ଏଭଳି କେତେକ ନାମ ମଧ୍ୟରେ ଥିଲା : ଋଗ୍‌ବେଦରେ ବ୍ୟବହୃତ 'ସପ୍ତସିନ୍ଧୁ', ଯାହାକୁ ଆଭେସ୍ତାରେ 'ହେପ୍ତହିନ୍ଦୁ' ବୋଲି ଉଲ୍ଲେଖ କରାଯାଇଥିଲା; ଇରାନ୍‌ର ଆକେମେନିଡ୍ ଶିଳାଲେଖରେ ଉତ୍ତର-ପଶ୍ଚିମ ଭାରତକୁ 'ହିନ୍ଦୁଶ' ବା 'ହିଦୁଶ' ବୋଲି କୁହାଯାଉଥିଲା; ଗାଙ୍ଗେୟ ସମତଳ ଭୂମି ଏବଂ ତା'ର ଆଖପାଖ ଅଞ୍ଚଳକୁ 'ଆର୍ଯ୍ୟାବର୍ତ୍ତ' ବୋଲି କୁହାଯାଉଥିଲା (ସମଗ୍ର ଉତ୍ତର-ଭାରତକୁ ମଧ୍ୟ ଆର୍ଯ୍ୟାବର୍ତ୍ତ କୁହାଯାଉଥିଲା); 'ହିନ୍ଦୁସ୍ତାନ' ସମଗ୍ର ଭାରତ ଉପମହାଦେଶକୁ ବୁଝାଉ ନ ଥିଲା, କେବଳ ଉତ୍ତର-ପଶ୍ଚିମାଞ୍ଚଳକୁ ବୁଝାଉଥିଲା (ତୃତୀୟ ଶତାବ୍ଦୀର ପ୍ରଥମ ଶାହପୁରର ଏକ 'ମିଡିଲ ପାର୍ସିଆନ ସସାନିଅନ' ଶିଳାଲେଖରେ); ଭାରତକୁ ଆରବୀୟ ବିବରଣୀରେ 'ଅଲ୍ ହିନ୍ଦ୍' (ସିନ୍ଧୁନଦୀ ଆରପାରିର କ୍ଷେତ୍ର) ବୋଲି ଉଲ୍ଲେଖ କରାଯାଇଥିଲା ।

କସମୋଲୋଜି ବା ବ୍ରହ୍ମାଣ୍ଡଶାସ୍ତ୍ରରେ ପୃଥିବୀ ହେଲା ଏକ ସମତଳ ଏବଂ ବୃତ୍ତାକାର ବସ୍ତୁ, ଯାହାର କେନ୍ଦ୍ରରେ ମେରୁ ପର୍ବତ ଅବସ୍ଥିତ । ମେରୁ ପର୍ବତକୁ ବେଢ଼ି ଚାରିଗୋଟି ଦ୍ୱୀପ ରହିଛି । ଏହି ଦ୍ୱୀପ ବା ମହାଦେଶଗୁଡ଼ିକ ସମୁଦ୍ର ଯୋଗୁଁ ଗୋଟାଏ ଅନ୍ୟରୁ ବିଚ୍ଛିନ୍ନ । ଦକ୍ଷିଣରେ ଅବସ୍ଥିତ ଦ୍ୱୀପ ହେଲା ଜମ୍ବୁଦ୍ୱୀପ (ଏହି ଦ୍ୱୀପରେ ଅନେକ ଜାମୁକୋଳି ଗଛ ରହିଛି ଏବଂ ମୌର୍ଯ୍ୟ ସମ୍ରାଟ୍ ଅଶୋକ ମଧ୍ୟ ତାଙ୍କ ଶିଳାଲେଖରେ ଦ୍ୱୀପଟିର ନାମ ଉଲ୍ଲେଖ

କରିଛନ୍ତି ।); ସେହି ଦ୍ୱୀପସ୍ଥିତ ହିମାଳୟର ଦକ୍ଷିଣରେ ଭାରତବର୍ଷ ବିଦ୍ୟମାନ । ରାଜା ଭରତଙ୍କ ନାମାନୁସାରେ ଏହି କ୍ଷେତ୍ରର ନାମ ଭାରତବର୍ଷ ।

ସ୍ଥାନ ସମ୍ବନ୍ଧରେ ଧାରଣା ତୀର୍ଥସ୍ଥାନଗୁଡ଼ିକର ତାଲିକାରୁ ମିଳିଥାଏ । ଏହି ତାଲିକା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଥିଲା । 'ଦିଗ୍‌ବିଜୟୀ' ନାମ ବହନ କରୁଥିବା ରାଜାମାନେ ନିଜ ବିବରଣୀରେ ବିଜିତ କ୍ଷେତ୍ରର ନାମ ଉଲ୍ଲେଖ କରୁଥିଲେ । ବିଶେଷକରି ଗୁପ୍ତଯୁଗ ପରେ ଏହି ପ୍ରବୃତ୍ତି ବୃଦ୍ଧି ପାଇବାକୁ ଲାଗିଲା । ସେମାନଙ୍କ ନାମରୁ ମଧ୍ୟ ସ୍ଥାନର ନାମ ଜଣାପଡ଼େ । କ୍ଷେତ୍ର ଏବଂ ବଡ଼ କ୍ଷେତ୍ର ମଧ୍ୟରେ ସମ୍ବନ୍ଧରେ ପରିବର୍ତ୍ତନ ପରିଲକ୍ଷିତ ହେଲା, କାରଣ ସୀମାନ୍ତ ଏବଂ ଅଜ୍ଞାତ କ୍ଷେତ୍ରଗୁଡ଼ିକ କ୍ରମଶଃ ମୁଖ୍ୟ ଭୂମିର ଅଂଶ ରୂପେ ଗଣା ହେଲେ । ଏହି କ୍ଷେତ୍ରଗୁଡ଼ିକୁ ପୁଣି ଆହୁରି ବିଶାଳ କ୍ଷେତ୍ରଗୁଡ଼ିକ ସହିତ ଯୋଡ଼ି ଦେଖାଗଲା । ଉଦାହରଣସ୍ୱରୂପ, ଉତ୍ତରରେ ମଧ୍ୟ-ଏସିଆ, ପଶ୍ଚିମ ତଟୀୟ କ୍ଷେତ୍ରକୁ ନେଇ ପଶ୍ଚିମ ଏସିଆ ଏବଂ ଦକ୍ଷିଣ-ପୂର୍ବ ଏସିଆ ସହିତ ଆଞ୍ଚଳିକ କ୍ଷେତ୍ରକୁ ଯୋଡ଼ି ଦେଖାଗଲା । ତେଣୁ କେତୋଟି କ୍ଷେତ୍ର ବା ଅଞ୍ଚଳ ଭାବରେ ଭାରତ ଉପମହାଦେଶକୁ ନ ଦେଖି, ତାକୁ ବହିଃକ୍ଷେତ୍ର ସହିତ ମଧ୍ୟ ଯୋଡ଼ି ଦେଖିବାକୁ ହେବ, ଯଦିଓ କେତୋଟି କ୍ଷେତ୍ରର ଏକ ନିର୍ଦ୍ଦିଷ୍ଟ ସମଷ୍ଟି କ୍ଷେତ୍ର ରୂପରେ ଦେଖିଲେ ଆମକୁ ଇତିହାସ ଦୃଷ୍ଟିରୁ ସୁବିଧା ହୁଅନ୍ତା ।

ମାଟି ଓ ମାନବ ମଧ୍ୟରେ ସମ୍ପର୍କ ଖୋଜିଲାବେଳେ ସାଧାରଣତଃ ଅଞ୍ଚଳଗୁଡ଼ିକୁ ଆକର୍ଷଣୀୟ କ୍ଷେତ୍ର ରୂପେ ବର୍ଣ୍ଣନା କରାଯାଏ । ସେଠାରେ ମାନବ ଭୂଦୃଶ୍ୟକୁ ଠିକଣା କରିବାକୁ ସଦା ଉଦ୍ୟମ କରୁଥାଏ ଅଥବା ତାକୁ ଏକାନ୍ତ କ୍ଷେତ୍ର ରୂପରେ ଚିହ୍ନିତ କରାଯାଏ, ଯେଉଁଠାରେ ମାନବର ଗତିବିଧି ଖୁବ୍ କମ୍ ଏବଂ ଭୂଦୃଶ୍ୟ ଅପରିବର୍ତ୍ତନୀୟ । ଏହି ବିରୋଧାଭାସକୁ ଆକ୍ଷରିକ ଅର୍ଥରେ ନିଆଯିବା କଥା ନୁହେଁ । ଅପେକ୍ଷାକୃତ ଏମିତି କେତେକ ଏକାନ୍ତ କ୍ଷେତ୍ର ମଧ୍ୟ ବର୍ଣ୍ଣନାକୁ ଆସେ, ଯାହାକୁ ରାଜ୍ୟ ସୀମାରେ ଅତି ଅଳ୍ପ କାଳ ମଧ୍ୟରେ ସାମିଲ କରିଦିଆଯାଏ । ଉଦାହରଣସ୍ୱରୂପ, ଗବେଷଣାରେ ଜଙ୍ଗଲ ଏବଂ ମରୁଭୂମିକୁ ଏକାନ୍ତ କ୍ଷେତ୍ର ଭାବରେ ବାଦ୍ ଦେଇ ଦିଆଯାଏ, ଯଦିଓ ଜଙ୍ଗଲରେ ଉପଲବ୍ଧ ଅନେକ ଜଙ୍ଗଲଜାତ ଦ୍ରବ୍ୟ, ଯଥା- ଗଛ, ହାତୀ, ମୂଲ୍ୟବାନ୍ ପଥରକୁ ପଡ଼ୋଶୀ ରାଜ୍ୟମାନେ ବ୍ୟବହାର କରନ୍ତି । ଠିକ୍ ସେହିଭଳି, ମରୁଭୂମି ମଧ୍ୟ ଦେଇ ଯାଇଥିବା ରାସ୍ତା ଗମନାଗମନ ପାଇଁ ସୁବିଧା ପ୍ରଦାନ କରେ । ଜଙ୍ଗଲ ଏବଂ ମରୁଭୂମି କ୍ଷେତ୍ରରେ ବାସ କରୁଥିବା ଜନସମୂହ ସହିତ ସମ୍ପର୍କ ସ୍ଥାପନ କରି ରାଜ୍ୟମାନେ ସେହି କ୍ଷେତ୍ରରୁ ଏସବୁ ସୁବିଧା ଲାଭ କରୁଥିଲେ । ତେଣୁ ସେଗୁଡ଼ିକ ଏକାନ୍ତ କ୍ଷେତ୍ର ବା ହେଲେ କେମିତି ?

## ଉତ୍ତରର ପାର୍ବତ୍ୟାଞ୍ଚଳ (The Northern Mountains)

ଭୂଗୋଳ ଦୃଷ୍ଟିରୁ ଭାରତ ଉପମହାଦେଶକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଏ : ଉତ୍ତର ପାର୍ବତ୍ୟାଞ୍ଚଳ, ସୈନ୍ଧବ-ଗାଙ୍ଗେୟ ସମତଳ ଅଞ୍ଚଳ ଏବଂ ଦକ୍ଷିଣରେ ସ୍ଥିତ ଉପଦ୍ୱୀପ । ଉତ୍ତର ପାର୍ବତ୍ୟାଞ୍ଚଳକୁ ଏମିତି ଏକ କ୍ଷେତ୍ର ଭାବରେ ଦେଖାଯାଏ, ଯାହା ଉତ୍ତର ଭାରତକୁ ବାକି ଏସିଆରୁ ଯୋଗାଯୋଗ ଦୃଷ୍ଟିରୁ ବିଚ୍ଛିନ୍ନ କରି ରଖୁଥିଲା । ମାତ୍ର ପ୍ରକୃତରେ ଦେଖିବାକୁ ଗଲେ, ଏହା କଦାପି ଯୋଗାଯୋଗ ପାଇଁ ବାଧକ ହୋଇ ନ ଥିଲା, କାରଣ ଭାରତର ଉତ୍ତର-ପଶ୍ଚିମ କ୍ଷେତ୍ର ଆରମ୍ଭରୁ ପଶ୍ଚିମ ଓ ମଧ୍ୟ-ଏସିଆର ଲୋକସମୂହ ଏବଂ କ୍ଷେତ୍ରଗୁଡ଼ିକ ସହିତ ସମ୍ବନ୍ଧ ରଖି ଆସିଥିଲା । ପ୍ରକୃତରେ ଉତ୍ତର ପାର୍ବତ୍ୟାଞ୍ଚଳ ଯୋଗୁଁ ଗିରିଦୁର୍ଗ ମଧ୍ୟ ଦେଇ ଚାଲିଥିବା ଯୋଗାଯୋଗକୁ ମହତ୍ତ୍ୱ ମିଳିଥିଲା । ତା' ସହିତ ସାଂସ୍କୃତିକ ଭାବ ବିନିମୟ ମଧ୍ୟ ଗିରିଦୁର୍ଗ ଦେଇ ବୃଦ୍ଧି ପାଇଥିଲା ।

ଉତ୍ତର ସମତଳ କ୍ଷେତ୍ର ଉତ୍ତର-ପଶ୍ଚିମରେ ହିନ୍ଦୁକୁଶ, ସୁଲେମାନ ଏବଂ କୀର୍ତ୍ତହର ପର୍ବତ ଦ୍ୱାରା ବେଷ୍ଟିତ । ଠିକ୍ ସେହିଭଳି ତା'ର ଉତ୍ତର ଏବଂ ଉତ୍ତର-ପୂର୍ବାଞ୍ଚଳରେ ହିମାଳୟ ବିଦ୍ୟମାନ । ହିନ୍ଦୁକୁଶ ହେଉଛି ଏକ ଉଚ୍ଚ ମାଳଭୂମି ଓ ଜଳ ବିଭାଜିକା, ଯାହା ଅକ୍ସସ୍ ଏବଂ ସିନ୍ଧୁ ଉପତ୍ୟକା ମଧ୍ୟରେ ଭୌଗୋଳିକ ଯୋଗସୂତ୍ର ରକ୍ଷା କରେ । ଏହିସବୁ ଦୃଷ୍ଟିରୁ ଦେଖିଲେ, ଉତ୍ତର ପାର୍ବତ୍ୟାଞ୍ଚଳ ମଧ୍ୟ-ଏସିଆ ସହିତ ଯୋଗାଯୋଗ ସ୍ଥାପନରେ ପ୍ରତିବନ୍ଧକ ସୃଷ୍ଟି କରେ ନାହିଁ । ମାତ୍ର ଏକଦା ତାକୁ ପ୍ରତିବନ୍ଧକ ମନେ କରାଯାଉଥିଲା ।

ଉତ୍ତର-ପଶ୍ଚିମର ପାର୍ବତ୍ୟାଞ୍ଚଳର ଗିରିପଥଗୁଡ଼ିକ ଶୁଷ୍କତା ସତ୍ତ୍ୱେ ଉପର ହିମାଳୟ କ୍ଷେତ୍ର ତୁଳନାରେ କମ୍ ବରଫାବୃତ୍ତ ରହନ୍ତି । ତେଣୁ ସେଗୁଡ଼ିକ ଖୁବ୍ ବ୍ୟବହାରରେ ଆସନ୍ତି । ଏହି ଗିରିପଥଗୁଡ଼ିକ ହେଲେ : ବୋଲାନ, ଗୋମଲ ଏବଂ ଖାଇବର ଗିରିପଥ । ହୁଂଜା ଏବଂ ଉପର ସିନ୍ଧୁ ଉପତ୍ୟକା ପରି ଉର୍ବର ସ୍ୱାତ ଉପତ୍ୟକା ଆଉ ଏକ ପଥ ପ୍ରଦାନ କରେ । ଯେତେବେଳେ ଇଂରେଜମାନେ ଆଫଗାନିସ୍ଥାନକୁ ନିୟନ୍ତ୍ରଣ କରିବାକୁ ଉଦ୍ୟମ କରୁଥିଲେ, ସେତେବେଳେ ଖାଇବର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ଊନବିଂଶ ଶତାବ୍ଦୀରେ ରୁଷକୁ ଅବରୋଧ କରିବାରେ ମଧ୍ୟ ଏହାର ଖୁବ୍ ଭୂମିକା ରହିଥିଲା । ତେଣୁ ସାହିତ୍ୟରେ ଖାଇବରର ରୋମାଞ୍ଚକାରୀ ବର୍ଣ୍ଣନାମାନ ରହିଛି । ଏଥିପାଇଁ ଇତିହାସର ମଧ୍ୟ ଏହା ଖୁବ୍ ଧ୍ୟାନ ଆକର୍ଷଣ କରିଥାଏ । ମାତ୍ର ପୂର୍ବକାଳରେ ବୋଲାନ ଗିରିପଥ ହୁଏତ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ବାଟ ଦେଇ ଆଫଗାନିସ୍ଥାନର ହେଲମଣ୍ଡ ଉପତ୍ୟକା ଏବଂ ସେଇସ୍ତାନ କ୍ଷେତ୍ରକୁ ଯାତାୟାତ କରିବା ସହଜ ହେଉଥିଲା । ସେଠୁ ଉତ୍ତର-ପୂର୍ବ ଇରାନ୍ ଏବଂ ମଧ୍ୟ-ଏସିଆକୁ ଯିବା କଠିନ ହେଉ ନ ଥିଲା । ମାସିଡୋନିଆର ଶାସକ ଆଲେକ୍ଜାଣ୍ଡାର

ଭାରତ ଅଭିଯାନରେ ଆସିଲାବେଳେ ସ୍ୱାତ ଉପତ୍ୟକା ମାର୍ଗ ଦେଇ ଆସିଥିଲେ । ତେଣୁ ସ୍ୱାତ ଉପତ୍ୟକା ମଧ୍ୟ ଆଧୁନିକ ଇତିହାସରେ ମହତ୍ତ୍ୱ ଲାଭ କଲା ।

ଆଫଗାନିସ୍ଥାନ ଏବଂ ଏପରିକି ମଧ୍ୟ-ଏସିଆରୁ ନିୟମିତ ଯିବାଆସିବା କରୁଥିବା ପଶୁପାଳକମାନେ ଏହିସବୁ ଗିରିପଥ ଏବଂ ଉପତ୍ୟକା ଦେଇ ଯାତ୍ରା କରୁଥିଲେ । ଏହା ଅନେକ ଯୁଗ ଧରି, ଏପରିକି ଭାରତ ବିଭାଜନ ପର୍ଯ୍ୟନ୍ତ ଚାଲିଥିଲା । ମଧ୍ୟ-ଏସିଆରୁ ଇରାନ୍ ଓ ଆଫଗାନିସ୍ଥାନରୁ ଲୋକ ଭାରତ ଆସୁଥିଲେ ଏବଂ ଭାରତରୁ ଲୋକ ବାଣିଜ୍ୟ ପାଇଁ ତଥା ବସତି ସ୍ଥାପନ ପାଇଁ ବାହାରକୁ ଯାଉଥିଲେ । ପାରସ୍ୟରୁ ଧର୍ମପ୍ରଚାରକମାନେ, ବଣିକମାନେ ତଥା ଆକ୍ରମଣକାରୀ ସେନା ଏହି ପଥ ଦେଇ ଭାରତରେ ପ୍ରବେଶ କରୁଥିଲେ । ଗିରିପଥର ଉଭୟ ପାର୍ଶ୍ୱରେ ସ୍ଥାପିତ ଜନବସତିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ମାର୍ଗର ନିୟନ୍ତ୍ରଣ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା । ପ୍ରାରମ୍ଭିକ ଅବସ୍ଥାରେ ତକ୍ଷଶିଳା ଏବଂ ବେଗ୍ରାମ ସହରର ଖାଇବର ପାସ୍ ଉପରେ ନିୟନ୍ତ୍ରଣ ରହିଥିଲା । ପରେ ପେଶାୱାର ଏବଂ କାବୁଲ ମଧ୍ୟ ଉକ୍ତ ମାର୍ଗ ଉପରେ ନିୟନ୍ତ୍ରଣ ସାବ୍ୟସ୍ତ କଲେ । ପାସ୍‌ର ରାସ୍ତା ଆସି ଯେଉଁଠି ସମତଳ ଅଞ୍ଚଳରେ ମିଳିତ ହେଉଥିଲା, ତାହା ସ୍ଥାନୀୟ କ୍ଷେତ୍ରର ରାଜନୀତି ଏବଂ ବାଣିଜ୍ୟ ପାଇଁ ଖୁବ୍ ସମ୍ବେଦନଶୀଳ ସିଦ୍ଧ ହେଉଥିଲା । ଏହି ପାସ୍‌ଗୁଡ଼ିକ ଏତେ ବହୁଳ ମାତ୍ରାରେ ବ୍ୟବହୃତ ହେଉଥିଲା ଯେ, ଉତ୍ତର-ପଶ୍ଚିମ ପାର୍ବତ୍ୟାଞ୍ଚଳକୁ ପ୍ରତିବନ୍ଧକ ରୂପରେ ଉପସ୍ଥାପିତ କରିବା ଠିକ୍ ହେବ ନାହିଁ । ଯୋଗାଯୋଗର ମାର୍ଗ ରୂପରେ ପାସ୍‌ଗୁଡ଼ିକ କାର୍ଯ୍ୟ କରୁଥିଲେ । ଯେଉଁ କ୍ଷେତ୍ରକୁ ଆଜି ମଧ୍ୟ-ଏସିଆ, ଇରାନ୍ ଏବଂ ଆଫଗାନିସ୍ଥାନ ବୋଲି ଅଭିହିତ କରାଯାଉଛି, ସେହି କ୍ଷେତ୍ର ସହିତ ଭାରତର ସମ୍ବନ୍ଧ ଖ୍ରୀଷ୍ଟପୂର୍ବ ତୃତୀୟ ସହସ୍ରାବ୍ଦୀରୁ ରହିଆସିଛି । ଅର୍ଥାତ୍ ସିନ୍ଧୁର ନଗରୀୟ ସଭ୍ୟତା କାଳରେ ମଧ୍ୟ ସମ୍ବନ୍ଧ ରହିଥିଲା । ସମ୍ଭବତଃ ତା' ପୂର୍ବରୁ ଏହି ସମ୍ବନ୍ଧ ସ୍ଥାପିତ ହୋଇସାରିଥିଲା । ଲୋକ ନିରନ୍ତର ଉତ୍ତର ଭାରତକୁ ବାହାରୁ ଆସୁଥିଲେ । ଇଣ୍ଡୋ-ଆର୍ଯ୍ୟ ଭାଷାଭାଷୀ ପ୍ରବାସୀମାନେ ଏହି ମାର୍ଗ ଦେଇ ଆସିଥିଲେ । ସେମାନେ ମାସିଡନ ରାଜ୍ୟର ଆଲେକ୍‌ଜାଣ୍ଡାରଙ୍କ ସେନା ସାଙ୍ଗରେ ଆସିଥିଲେ । ମାତ୍ର ଅଧିକ ନିୟମିତ ଭାବରେ ସେମାନେ ଇଣ୍ଡୋ-ଗ୍ରୀକ୍‌ମାନଙ୍କ ସହିତ ପାର୍ଥିଆନ, ଶକ, କୁଶାଣ, ହୁନ ଏବଂ ତୁର୍କମାନଙ୍କ ସହିତ ଆସୁଥିଲେ । ଏମାନଙ୍କୁ ବାଦ୍ ଦେଲେ ପଶୁପାଳକ ଏବଂ ବଣିକମାନେ ସବୁଠାରୁ ଅଧିକ ନିୟମିତ ରୂପରେ ଯାତାୟାତ କରୁଥିଲେ ।

ହିମାଳୟ ପର୍ବତର ଉତ୍ତରକୁ ଯେଉଁ ଅଂଶ, ତା' ମଧ୍ୟ ଦେଇ ଭାରତରୁ ବାହାରକୁ ବିଶେଷ ଗମନାଗମନ ହେଉ ନ ଥିଲା, ଯଦିଓ ତା' ବି ଯାତାୟାତ ପାଇଁ ଏମିତିରେ ବାଧକ ନ ଥିଲା । ତିବ୍ବତର ମାଳ ଅଞ୍ଚଳ ମଧ୍ୟ-ଏସିଆ ଏବଂ ଚୀନ୍‌ରୁ ପୃଥକ୍ ହୋଇ ରହିଥିଲା ।

ତା' ଦେଇ ଯାଇଥିବା ପଥ ଖୁବ୍ ଉର୍ଦ୍ଧ୍ୱରେ ଥିଲା । ପୁଣି ଶୀତଦିନେ ତାହା ବରଫାବୃତ ହେବା କାରଣରୁ ଅଗମ୍ୟ ରହୁଥିଲା । ଏସବୁ ସତ୍ତ୍ୱେ ସେହି ରାସ୍ତା ଦେଇ ମଧ୍ୟ ଲୋକ ଯାତାୟାତ ରହିଥିଲା ଏବଂ ବାଣିଜ୍ୟ କାରବାର ଚାଲିଥିଲା । ମଧ୍ୟ-ଏସିଆକୁ ଉତ୍ତରରେ ଯେଉଁ ମାର୍ଗଟି ସିଧା ଥିଲା ତାହା ହେଲା ନିକଟରେ ଆବିଷ୍କୃତ ହୋଇଥିବା କାରାକୋରମ ଗିରିପଥ । ଏହା ଗିଲଗିଟ, ଚିତ୍ରାଲ ଏବଂ ହୁଂଜା ଦେଇ ମଧ୍ୟ-ଏସିଆର ସିଲ୍କ ରୁଟ (Silk Route) ବା 'ରେଶମ ପଥ'କୁ ସଂଯୋଜିତ କରୁଥିଲା । ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ଯେତେବେଳେ ଇଂରେଜମାନେ ମଧ୍ୟ-ଏସିଆ ଏବଂ ତିବ୍ବତକୁ ଉନ୍ମୋଚିତ କରିବାକୁ ଉଦ୍ୟମ କଲେ ଏବଂ ସେହି ପ୍ରକ୍ରିୟାରେ ଏକ 'ବଡ଼ ଖେଳ' (Great Game) ଖେଳିଲେ, ଏହି କ୍ଷେତ୍ର ଲୋକଙ୍କର ଧ୍ୟାନ ଆକର୍ଷଣ କଲା ।

ପୂର୍ବରେ ତିବ୍ବତ ସହିତ ସମ୍ପର୍କ ପଶୁପାଳନ ଗୋଷ୍ଠୀ ମାଧ୍ୟମରେ ରହିଥିଲା । ପଶୁପାଳକ ଗୋଷ୍ଠୀ ଋତୁପ୍ରବାସ ସମୟରେ ଗ୍ରୀଷ୍ମ ଦିନେ ଚାରା ଅନ୍ୱେଷଣରେ ଏହି ମାର୍ଗଗୁଡ଼ିକ ମଧ୍ୟ ଦେଇ ଆସୁଥିଲେ । ଏହାର ଆହୁରି ପୂର୍ବକୁ, ଯାହା ଆଜି ଭାରତର ଉତ୍ତର-ପୂର୍ବାଞ୍ଚଳ ନାମରେ ଖ୍ୟାତ, ସେଠାରେ ବାହାର କ୍ଷେତ୍ରରୁ ଯାତାୟାତ ଖୁବ୍ କାଠିକର ଥିଲା । ଅର୍ଥାତ୍ ପଶ୍ଚିମରୁ ପୂର୍ବକୁ ଆସିବା ପାଇଁ ରହିଥିବା ଉତ୍ତର-ପୂର୍ବାଞ୍ଚଳର ବାଟ ବିଶେଷ ବ୍ୟବହାର ହେଉ ନ ଥିଲା । ଯେହେତୁ ଦେଶାନ୍ତରଣ ବା ସ୍ଥାନାନ୍ତରଣ (migration) ଏବଂ ବାଣିଜ୍ୟ କାରବାରର ମାତ୍ରା ସବୁ ଆଞ୍ଚଳିକ କ୍ଷେତ୍ରରେ ଏକା ନୁହେଁ; ଇତିହାସରେ ତା'ର ଭୂମିକା ମଧ୍ୟ କେବେ ଏକା ହୋଇ ନ ପାରେ ।

ଉତ୍ତର-ପୂର୍ବାଞ୍ଚଳ ଏବଂ ଉତ୍ତର-ପଶ୍ଚିମ କ୍ଷେତ୍ର ମଧ୍ୟରେ ଅନେକ ପର୍ବତମାଳା ରହିଛି । ଫଳରେ ଉଭୟ କ୍ଷେତ୍ର ମଧ୍ୟରେ ଦୂରତା ବୃଦ୍ଧି ପାଇଛି; ସାଂସ୍କୃତିକ ପାର୍ଥକ୍ୟ ଦେଖାଦେଇଛି । ସମତଳ ଓ ପାର୍ବତ୍ୟାଞ୍ଚଳ ମଧ୍ୟରେ ତଥା ହିମାଳୟ କ୍ଷେତ୍ର ନାମରେ ପରିଚିତ ଉତ୍ତର-ପଶ୍ଚିମ ପାର୍ବତ୍ୟାଞ୍ଚଳ ଏବଂ ଉତ୍ତର-ପୂର୍ବାଞ୍ଚଳ ମଧ୍ୟରେ ଖୁବ୍ ପ୍ରଭେଦ ଦେଖିବାକୁ ମିଳିଥାଏ । ଉତ୍ତର-ପଶ୍ଚିମ କ୍ଷେତ୍ରରେ ନିରନ୍ତର ନୂଆ ଲୋକ ପ୍ରବେଶ କରି ବସତି ସ୍ଥାପନ କରୁଥିଲେ । ସେଠାକାର ଜୀବନଶୈଳୀ ଏବଂ ଭାଷାରେ ଲୋକଙ୍କର ଅନୁପ୍ରବେଶର ପ୍ରଭାବ ଦେଖିବାକୁ ମିଳୁଥିଲା । ମାତ୍ର ହିମାଳୟ ଉପତ୍ୟକା ତା' ତୁଳନାରେ ବିଚ୍ଛିନ୍ନ ଜଣାପଡ଼େ । ଦୋଆବ କ୍ଷେତ୍ର ଏବଂ ଉତ୍ତରପଥ ସ୍ଥିତ ମଧ୍ୟ-ଗାଙ୍ଗେୟ ସମତଳ କ୍ଷେତ୍ର ମଧ୍ୟରେ ରହିଥିବା ସମ୍ପର୍କ ସତ୍ତ୍ୱେ ହିମାଳୟ ଉପତ୍ୟକାର ଏହି ବିଚ୍ଛିନ୍ନତା ରହିଥିଲା । ତରାଇ ନାମରେ ପରିଚିତ ହିମାଳୟର ପାଦଦେଶ ପର୍ଯ୍ୟନ୍ତ ଯାଇଥିବା ଉତ୍ତରର ମାର୍ଗକୁ ଉତ୍ତରପଥ ବୋଲି କୁହାଯାଉଥିଲା । ଜଳ ବିଭାଜିକାରୁ ଗାଙ୍ଗେୟ ସମତଳ କ୍ଷେତ୍ର ଆଡ଼କୁ ପୂର୍ବ ଦିଗରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଯେଉଁ ବିସ୍ତାର ହେଲା, ତହିଁରେ ରାସ୍ତା ବାହାର କରିବା, ଗାଙ୍ଗେୟ ସମତଳର ମୌସୁମୀ

ଜଙ୍ଗଲରେ ରାସ୍ତା କାଢ଼ିବା ଅପେକ୍ଷାକୃତ ଭାବେ ସହଜ ହେଲା । ପ୍ରଥମ ସହସ୍ରାବ୍ଦୀରେ ଉତ୍ତରାଞ୍ଚଳର ଉପତ୍ୟକାରେ ରାଜ୍ୟ ସ୍ଥାପନ ପାଇଁ ସମତଳ ଅଞ୍ଚଳରୁ ଯାଇ ଲୋକ ସେଠି ପହଞ୍ଚିଲେ । ଏହା ଫଳରେ ସମତଳ ଅଞ୍ଚଳର ରାଜ୍ୟ ଏବଂ ପାର୍ବତ୍ୟାଞ୍ଚଳ ମଧ୍ୟରେ ସମ୍ପର୍କ ବୃଦ୍ଧି ପାଇଲା । ମାତ୍ର ଉତ୍ତର-ପୂର୍ବାଞ୍ଚଳରେ ଅପେକ୍ଷାକୃତ ବିଛିନ୍ନତା ଲାଗି ରହିଲା । ରାଜନୈତିକ କ୍ଷମତାଧାରୀ କେତେକ ଗୋଷ୍ଠୀ ପାର୍ବତ୍ୟ ଅଞ୍ଚଳର ଆରପାରିରୁ ଆସି ସେଠି ନିଜ ପ୍ରଭୁତ୍ୱ ବିସ୍ତାର କଲେ ।

## ସୈନ୍ଧବ-ଗାଙ୍ଗେୟ ସମତଳ ଅଞ୍ଚଳ

ବରଫ ତରଳୁଥିବାରୁ ଉତ୍ତରର ନଦୀଗୁଡ଼ିକରେ ନିରନ୍ତର ଜଳ ପ୍ରବାହ ରହିଥାଏ । ଏହି କାରଣରୁ ଉତ୍ତର ପାର୍ବତ୍ୟାଞ୍ଚଳର ଭୂଦୃଶ୍ୟରେ ପରିବର୍ତ୍ତନ ସମ୍ଭବ ହୋଇଛି । ପର୍ବତରେ ଗଭୀର ଗର୍ତ୍ତମାନ ସୃଷ୍ଟି ହୋଇଛି ଏବଂ ମାଳଭୂମିର ପରିମାଣକୁ ଏହା ହ୍ରାସ କରିଛି । ଏହା ସହିତ ସମୁଦ୍ର ପତନରୁ ଉର୍ଦ୍ଧ୍ୱରେ ଆର୍ଦ୍ରଭୂମି ସୃଷ୍ଟି ହୋଇଛି । ଭୂତାତ୍ତ୍ୱିକ ଦୃଷ୍ଟିରୁ ସମୁଦ୍ରରେ ମାଟି ଭର୍ତ୍ତି ହେବାରୁ ବା ଫିଲିଂ ହେବାରୁ ଉତ୍ତର ସମତଳ କ୍ଷେତ୍ରର ନିର୍ମାଣ ହୋଇଛି ଏବଂ ଏଥିରେ ନଦୀଗୁଡ଼ିକର ଯଥେଷ୍ଟ ଭୂମିକା ରହିଛି । ଗୋଟାଏ ଦୃଷ୍ଟିରୁ ଦେଖିଲେ, କୃଷକ ପାଇଁ ଏହି ନଦୀଗୁଡ଼ିକ ମଧ୍ୟରୁ କେତେକ ହେଲେ ଏକ ବରଦାନ ସଦୃଶ, କାରଣ ଉର୍ବର ମୃତ୍ତିକାର ଏକ ଆସ୍ତରଣକୁ ସେମାନେ ବିଛେଇ ଦିଅନ୍ତି । ମାତ୍ର ଅନ୍ୟ କେତେକ ନଦୀ, ଯଥା- ସତଲେଜ, ତିସ୍ତା, କୋସୀ ଏବଂ ବ୍ରହ୍ମପୁତ୍ର ବାରମ୍ବାର ନିଜ ନିଜର ଗତିପଥ ବଦଳାନ୍ତି କିମ୍ବା ବ୍ୟାପକ ମାତ୍ରାରେ ବନ୍ୟା ସୃଷ୍ଟି କରନ୍ତି; ପ୍ରାକୃତିକ ଦୁର୍ବିପାକ ନେଇ ଆସନ୍ତି । ଉତ୍ତର ସମତଳ ଭୂମିର ଉତ୍ତୋଳନ (elevation) ସବୁ ସ୍ଥାନରେ ସମାନ ନୁହେଁ, କାରଣ ପଶ୍ଚିମରୁ ପୂର୍ବକୁ ସାମାନ୍ୟ ଢାଲୁ ବା ଗଡ଼ାଣି ରହିଛି । ଏହି ଗଡ଼ାଣି ପଞ୍ଜାବ ସମତଳ କ୍ଷେତ୍ରରୁ ଆରମ୍ଭ ହୋଇ ଗାଙ୍ଗେୟ ସମତଳ ଅଞ୍ଚଳ ଏବଂ ପୂର୍ବରେ ବ୍ରହ୍ମପୁତ୍ର ସମତଳ କ୍ଷେତ୍ର ଯାଏ ବ୍ୟାପି ଯାଇଛି ।

ଉତ୍ତର ସମତଳ କ୍ଷେତ୍ର ଦୁଇଟି ନଦୀ ବ୍ୟବସ୍ଥାରେ ବିଭାଜିତ ହୋଇଛି : ସିନ୍ଧୁନଦୀ ଏବଂ ଗଙ୍ଗାନଦୀ । ସିନ୍ଧୁନଦୀ ହିମାଳୟର ଆରପାରିରୁ ଉତ୍ପତ୍ତି ଲାଭ କରିଛି । ପର୍ବତ ମଧ୍ୟ ଦେଇ ଏକ ସିଆରରେ ଏହା ଉତ୍ତରକୁ ପ୍ରବାହିତ ହୋଇ ଶେଷରେ ସମତଳ ଅଞ୍ଚଳକୁ ପ୍ରବେଶ କରିଛି । ସମତଳରେ ଏହା ଦକ୍ଷିଣ-ପଶ୍ଚିମ ଦିଗକୁ ମୁହାଁଇଛି । ସିନ୍ଧୁର ମଧ୍ୟଭାଗରେ ଉତ୍ତର ହିମାଳୟରୁ ବାହାରିଥିବା ଏବଂ ପଞ୍ଜାବ ସମତଳରେ ପ୍ରବାହିତ ହୋଇଥିବା ଉପନଦୀ, ଯଥା : ଝେଲମ, ଚେନାବ, ରାବି, ସତଲେଜ ଏବଂ ବିପାସା ନଦୀ ଆସି ସିନ୍ଧୁ ସହିତ

ମିଶିଛନ୍ତି । ଏମାନଙ୍କ ମଧ୍ୟରୁ ସତଲେଜ ବାରମ୍ବାର ତା'ର ଗତିପଥ ବଦଳାଏ । ସମତଳରେ ଆସି ସିନ୍ଧୁ ତ୍ରିକୋଣଭୂମିରେ (Delta) ପରିଣତ ହୁଏ । ତା'ର ଜଳଧାର ପଟୁମାଟିରେ ଭରିଯିବା ଯୋଗୁଁ ସଂବହନ ଶକ୍ତି ହରାଏ । ପଶ୍ଚିମରେ ରହିଛି ଅଗମ୍ୟ ମକ୍ରାନ ତଟ । ଆଲେକ୍‌ଜାଣ୍ଡାରଙ୍କ ସେନା ବେବିଲୋନ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଏହି ମକ୍ରାନ ତଟୀୟ ମାର୍ଗକୁ ବ୍ୟବହାର କରି ନାହିଁ ନ ଥିବା ଅସୁବିଧାର ସମ୍ମୁଖୀନ ହୋଇଥିଲେ ।

ଏସବୁକୁ ବାଦ୍ ଦେଲେ, ଆଉ ଏକ ନଦୀର ଇତିହାସ ସିନ୍ଧୁ ସମତଳ କ୍ଷେତ୍ର ସହିତ ଯୋଡ଼ି ହୋଇ ରହିଛି । ତାହା ହେଲା ହାକ୍ରା ନଦୀ । ଏକଦା ହାକ୍ରାକୁ ଏକ ମହତ୍ତ୍ୱପୂର୍ଣ୍ଣ ନଦୀ ଭାବରେ ଗଣାଯାଉଥିଲା । ସତଲେଜ ଓ ନିମ୍ନ ଭାଗରୁ ସିନ୍ଧୁର ସମାନ୍ତରରେ ପ୍ରବାହିତ ହୋଇ ଏହା କଚ୍ଛ ଉପସାଗରରେ (Rann of Kutch) ବେଳାସଙ୍ଗମ ଲାଭ କରିଛି । ହାକ୍ରା ପୁଣି ଉପର ସ୍ତରରେ ସ୍ୱାଭାବିକ ଭାବରେ ଗତିପଥ ବଦଳାଇ ଘର୍ଘରା ନଦୀରେ ପରିଣତ ହୋଇଛି । ଯେଉଁ ନଦୀମାନେ ମୂଳରୁ ହାକ୍ରା ଆଡ଼କୁ ପ୍ରବାହିତ ହେଉଥିଲେ, ସେଗୁଡ଼ିକ ସିନ୍ଧୁର ଉପନଦୀ ପାଲଟିଛନ୍ତି ଏବଂ ବିପାସା ଓ ଯମୁନା ସହିତ ସଂଯୋଜିତ ହୋଇ ଗଙ୍ଗାରେ ଯାଇ ମିଶିଛନ୍ତି । ଫଳରେ ହାକ୍ରା କ୍ରମଶଃ ଶୁଖିଯାଇଛି ଏବଂ ବର୍ତ୍ତମାନର ଘର୍ଘରାର ଅସଂଯୋଜିତ ଧାରାରେ ପରିଣତ ହୋଇଛି । ହାକ୍ରାର ଶୁଖିଲା ନଦୀଶଯ୍ୟାରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀର ଶେଷ ପର୍ଯ୍ୟନ୍ତ ଜନବସତିମାନ ଥିବାର ଜଣାଯାଏ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ପୂର୍ବରୁ ଜଳସ୍ରୋତରେ ପରିବର୍ତ୍ତନ ହୋଇଥିବ । ସମ୍ଭବତଃ ଦ୍ୱିତୀୟ ସହସ୍ରାବ୍ଦୀ ବେଳକୁ ଏହି ପରିବର୍ତ୍ତନ ଦେଖାଦେଇଥିବ ବୋଲି ଅନୁମାନ କରାଯାଏ ।

ଋଗ୍‌ବେଦରେ ସରସ୍ୱତୀ ନଦୀର ଉଲ୍ଲେଖ ରହିଛି । ସରସ୍ୱତୀକୁ ଘର୍ଘରା ବୋଲି ଚିହ୍ନିତ କରିବା ବିବାଦାସ୍ପଦ ମନେହୁଏ । ପୁଣି ସରସ୍ୱତୀର ଆଦ୍ୟ ଉଲ୍ଲେଖ ଆଫଗାନିସ୍ଥାନର ହରାକ୍ଷବତୀ ସମତଳ ଅଞ୍ଚଳ ସହିତ କରାଯାଇଛି । ସରସ୍ୱତୀ ଉଚ୍ଚ ପାର୍ବତ୍ୟ କ୍ଷେତ୍ରରେ ଗତିପଥ ବଦଳାଇଥିଲା ବୋଲି ମନେକରାଯାଏ । ମାତ୍ର ଘର୍ଘରାର ଭୂଦୃଶ୍ୟ ସହିତ ଏହାର ମେଳ ଖାଉ ନାହିଁ । ଯଦିଓ ଋଗ୍‌ବେଦରେ ସରସ୍ୱତୀର ଖୁବ୍ ମନୋଜ୍ଞ ବର୍ଣ୍ଣନା ରହିଛି, ସତଲେଜ ଏବଂ ଯମୁନା ହେଲେ ଦୁଇଟି ସ୍ୱତନ୍ତ୍ର ନଦୀ ଏବଂ ଉଭୟ ନଦୀ ଘର୍ଘରାକୁ ପ୍ରବାହିତ ହୋଇ ନାହାନ୍ତି । ଏଥିରୁ ମନେହୁଏ ଯେ, ହାକ୍ରା ଓ ଘର୍ଘରାରେ ପରିବର୍ତ୍ତନ ଆସିଲା ପରେ ଋଗ୍‌ବେଦର ଶ୍ଳୋକ ରଚିତ ହୋଇଛି । ପୂର୍ବର ନଦୀଗୁଡ଼ିକୁ ମନେପକାଇ ସ୍ତୋତ୍ର ରଚନା ହେଲା ପରେ ଏବଂ ଏକ ନିର୍ଦ୍ଦିଷ୍ଟ ନଦୀର ନାମକୁ ପୌରାଣିକ ମାନ୍ୟତା ପ୍ରାପ୍ତ ହେଲା ପରେ ତା'ର ନାମ 'ସରସ୍ୱତୀ'କୁ ଅନ୍ୟାନ୍ୟ ନଦୀ ପାଇଁ ମଧ୍ୟ ବ୍ୟବହାର କରାଯିବା ବଡ଼ କଥା ନୁହେଁ । ଏହା ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ମଧ୍ୟ ଦେଖିବାକୁ ମିଳିଥାଏ ।

ପାର୍ବତ୍ୟ କ୍ଷେତ୍ରର ଊର୍ଦ୍ଧ୍ୱ ସୀମାରେ ସୈନ୍ଧବ-ଗାଙ୍ଗେୟ ଜଳବିଭାଜିକା ସିନ୍ଧୁ ନଦୀକୁ ଗଙ୍ଗା ନଦୀରୁ ପୃଥକ୍ କରିଛି । ଏହା ପରେ ସିନ୍ଧୁ ପଶ୍ଚିମକୁ ଏବଂ ଗଙ୍ଗା ପୂର୍ବ ଦିଗକୁ ପ୍ରବାହିତ ହୋଇଛି । ରାଜସ୍ଥାନର ଶୁଷ୍କଭୂମିରେ ଆରାବଳୀ ପର୍ବତମାଳା ପଶ୍ଚିମ ଗାଙ୍ଗେୟ ସମତଳ କ୍ଷେତ୍ରକୁ ପୃଥକ୍ କଲା ପରେ ନଦୀ ଦୁଇଟିର ବିଭାଜନ ଅଧିକ ସୁସ୍ପଷ୍ଟ ହୁଏ । ସୈନ୍ଧବ-ଗାଙ୍ଗେୟ ଜଳ ବିଭାଜିକା ଗାଙ୍ଗେୟ କ୍ଷେତ୍ରର ସୀମାନ୍ତ ଭଳି କାର୍ଯ୍ୟ କରିବା ସହିତ ଉତ୍ତର-ପଶ୍ଚିମ ପଟୁ ହେଉଥିବା ଆକ୍ରମଣ ପାଇଁ ମଧ୍ୟ ଏକ ପ୍ରତିବନ୍ଧକ ହୋଇଥିଲା । ହିମାଳୟରୁ ବାହାରି ଗଙ୍ଗା ଦକ୍ଷିଣକୁ ଏବଂ ତା'ପରେ ପୂର୍ବ ଆଡ଼କୁ ପ୍ରବାହିତ ହୁଏ । ତା'ର ଉପନଦୀଗୁଡ଼ିକ ବହୁଦିନ ପର୍ଯ୍ୟନ୍ତ ଜଳପଥ ରୂପେ ବ୍ୟବହୃତ ହେଉଥିଲା । ଗଙ୍ଗାର ପ୍ରାୟ ସମାନ୍ତରରେ ଯମୁନା ପ୍ରବାହିତ ହୋଇ ଶେଷରେ ଗଙ୍ଗା ସହିତ ମିଳିତ ହୁଏ । ଗଙ୍ଗା ଓ ଯମୁନା ମଧ୍ୟବର୍ତ୍ତୀ କ୍ଷେତ୍ରକୁ ଦୋଆବ କୁହାଯାଏ । ପୂର୍ବରେ ଗଙ୍ଗାର ପ୍ରଧାନ ଉପନଦୀଗୁଡ଼ିକ ହେଲେ : ଗୋମତୀ, ସରଯୁ, ଘାଘ୍ରା ଏବଂ ଗଣ୍ଡକ । ଏହି ନଦୀମାନେ ହିମାଳୟରୁ ବାହାରି ଦକ୍ଷିଣପଟକୁ ପ୍ରବାହିତ ହୁଅନ୍ତି । ବିନ୍ଧ୍ୟ ପର୍ବତରୁ ସୋନ, ବେତୱା (ବେତ୍ରବତୀ) ଏବଂ ଚମ୍ବଲ ନଦୀ (ଚମ୍ବଲ ଉପତ୍ୟକା ଡକାୟତି ପାଇଁ ଏକଦା ପ୍ରସିଦ୍ଧ ଥିଲା) ବାହାରି ଉତ୍ତର ଆଡ଼କୁ ପ୍ରବାହିତ ହୁଅନ୍ତି । ଆହୁରି ପୂର୍ବକୁ ଗଙ୍ଗାର ଦୁଇଟି ଧାରା ଭାଗୀରଥୀ ଏବଂ ପଦ୍ମା ନାମରେ ରହିଛନ୍ତି । ଭାଗୀରଥୀ ଦକ୍ଷିଣକୁ ପ୍ରବାହିତ ହୁଏ ଏବଂ ବାରମ୍ବାର ଗତିପଥ ବଦଳାଏ । ଭୂତତ୍ତ୍ୱରେ ଏହାକୁ ଯଥେଷ୍ଟ ମାନ୍ୟତା ମିଳିଛି, ଯାହାର ପ୍ରତିଫଳନ ପୁରାଣରେ ଦେଖିବାକୁ ମିଳେ । ପଦ୍ମା ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇ ଶେଷରେ ସମୁଦ୍ରରେ ମିଶିଯାଏ ।

ଗଙ୍ଗା ସମତଳ ଓ ବ୍ରହ୍ମପୁତ୍ର ସମତଳ କ୍ଷେତ୍ର ପୂର୍ବ ଦିଗରେ ମିଳିତ ହୁଅନ୍ତି । ବ୍ରହ୍ମପୁତ୍ର ହିମାଳୟର ଆରପଟରୁ ଉତ୍ପତ୍ତି ଲାଭ କରି ପ୍ରଥମେ ପଶ୍ଚିମ ଓ ତା'ପରେ ପୂର୍ବକୁ ପ୍ରବାହିତ ହୁଏ । ସାଙ୍ଗ ପୋ ନାମରେ ଏହା ତିବ୍ବତର ସୁଦୀର୍ଘ ପଥକୁ ଅତିକ୍ରମ କରେ । ତା'ପରେ ଏହା ଇଂରାଜୀ ଅକ୍ଷର 'U'ର ଆକାର ନିଏ ଏବଂ ପୂର୍ବରୁ ପଶ୍ଚିମମୁହାଁ ହୋଇ ଉତ୍ତର-ପୂର୍ବ ଭାରତର ସମତଳ କ୍ଷେତ୍ରରେ ପ୍ରବାହିତ ହୁଏ । ସମତଳ କ୍ଷେତ୍ରରେ ଏହା ଖୁବ୍ ପ୍ରଶସ୍ତ, ମାତ୍ର ମନ୍ଥରଗାମୀ । ଅନେକ ନଦୀଦ୍ୱୀପ ମଧ୍ୟ ବ୍ରହ୍ମପୁତ୍ରରେ ରହିଛନ୍ତି । ଉଭୟ ସିନ୍ଧୁ ଏବଂ ବ୍ରହ୍ମପୁତ୍ର ପରିଚିତ ଉତ୍ସରୁ ବାହାରିଛନ୍ତି । ମାତ୍ର ଦୁଇଟି ପୃଥକ୍ ଦିଗରେ ଉଭୟେ ସୁଦୂର ଦୀର୍ଘପଥ ଅତିକ୍ରମ କରିଛନ୍ତି । ବ୍ରହ୍ମପୁତ୍ରରେ ଅବସ୍ଥିତ ମାନସରୋବର ଏବଂ ତା ନିକଟରେ ଥିବା କୈଳାସ ପର୍ବତକୁ ପବିତ୍ର ବୋଲି ମନେକରାଯାଏ । ପୂର୍ବ ଦିଗରେ ବ୍ରହ୍ମପୁତ୍ର ପଦ୍ମା ସହିତ ମିଳିତ ହୁଏ; କିଛି ଦୂର ପରେ ମେଘନା ନଦୀକୁ ଏହା ସାଙ୍ଗରେ ନେଇ ପ୍ରବାହିତ ହୁଏ । ଫଳରେ ମୌସୁମୀ ଋତୁରେ ତହିଁରେ ଅତିଶୟ ଜଳ ପ୍ରବାହ ଘଟେ । ଏହିସବୁ

ପ୍ରାକୃତିକ କାରଣରୁ ଏହି କ୍ଷେତ୍ରର ନାବିକ ସ୍ଥାନୀୟ ଲୋକସାହିତ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ସାଂସ୍କୃତିକ ମର୍ଯ୍ୟାଦା ହାସଲ କରେ ।

ନଦୀ ଉପତ୍ୟକା ଏବଂ ନଦୀ ଓ ଉପନଦୀ ଦ୍ୱାରା ସୃଷ୍ଟ ସମତଳ କ୍ଷେତ୍ର ସହରର ବିକାଶ ନିମନ୍ତେ ଖୁବ୍ ପ୍ରକୃଷ୍ଟ ସ୍ଥାନ । ବିଶେଷକରି, ନଦୀ ସଙ୍ଗମ କ୍ଷେତ୍ରରେ ଏହି ଧରଣର ବିକାଶ ଦେଖିବାକୁ ମିଳିଥାଏ । ସିନ୍ଧୁ ବ୍ୟବସ୍ଥାର ନଗରୀୟ ସଭ୍ୟତା ହେଲା ଖ୍ରୀଷ୍ଟପୂର୍ବ ତୃତୀୟ ସହସ୍ରାବ୍ଦୀ ବେଳର । ମାତ୍ର ଗାଙ୍ଗେୟ ବ୍ୟବସ୍ଥା (Ganga system)ର ନଗର ସଭ୍ୟତା ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀକାଳୀନ । ବ୍ରହ୍ମପୁତ୍ରର ସମତଳ କ୍ଷେତ୍ରରେ ନଗର ସଭ୍ୟତା ବିକଶିତ ହେବାରେ କିଛି ବିଳମ୍ବ ଘଟିଲା । ସମ୍ଭବତଃ ସେଠାକାର ପରିବେଶ ଓ ଟେକ୍ନୋଲୋଜି ଜମି ସଫା କରି ଜନବସତି ସ୍ଥାପନ ପାଇଁ ଅନୁକୂଳ ହେଲା ନାହିଁ । ଉତ୍ତର-ପୂର୍ବ ଭାରତର ପାର୍ବତ୍ୟ ଅଞ୍ଚଳରେ ଅନେକ 'ଆଦିବାସୀ ସମାଜ' ଆରମ୍ଭରୁ ରହିଥିଲେ । ଏହି ସମାଜମାନ ଦୀର୍ଘକାଳ ଧରି ଅନ୍ୟ ସମାଜଠାରୁ ଅପେକ୍ଷାକୃତ ବିଚ୍ଛିନ୍ନ ହୋଇ ଏକାନ୍ତରେ ରହିଥିଲେ । ନଗର ସଭ୍ୟତାର ବିକାଶ ନ ହେବାରେ ଏହା ବି ଏକ କାରଣ । ଗାଙ୍ଗେୟ ତ୍ରିକୋଣଭୂମିର ପୂର୍ବ ଦିଗକୁ ମଧ୍ୟ ଜମି ସଫା ହେଲା ଏବଂ ଧୀରେ ଧୀରେ ସେଠାରେ ଜନବସତି ଆରମ୍ଭ ହେଲା, ଯାହାର ଆନୁମାନିକ ସମୟ ହେବ ଖ୍ରୀଷ୍ଟୀୟ ପ୍ରଥମ ସହସ୍ରାବ୍ଦୀ । ସିନ୍ଧୁ ସମତଳ କ୍ଷେତ୍ର ସମ୍ଭବତଃ ଗାଙ୍ଗେୟ କ୍ଷେତ୍ର ଅପେକ୍ଷା କମ୍ ବନାବୃତ୍ତ ଥିଲା, ଯଦିଓ ହରପ୍ପାର ସିଲ୍ ମୋହରରେ ବାଘ ଓ ଗଣ୍ଡାରର ଛବି ରହିଛି । ଏହି ଜୀବମାନେ ଘନ ଜଙ୍ଗଲରେ ଦେଖାଯାଆନ୍ତି । ପ୍ରଥମେ ଗାଙ୍ଗେୟ କ୍ଷେତ୍ର ମୌସୁମୀ ଜଙ୍ଗଲରେ ଘେରି ରହିଥିଲା ବୋଲି କୁହାଯାଇପାରେନା, ଯାହାକୁ ପରେ ପୂରାପୂରି ସଫା କରିଦିଆଗଲା । ଏହି କ୍ଷେତ୍ର ଦୁଇଟି, ବିଶେଷକରି ବନ୍ୟାପ୍ଲାବିତ ନଦୀ ଅବବାହିକା, ଏତେ ଅଧିକ ମାତ୍ରାରେ ଉର୍ବର ଥିଲା ଯେ, ବାରମ୍ବାର ବନ୍ୟା ସତ୍ତ୍ୱେ କୃଷିକର୍ମ ପାଇଁ ଲୋକ ସେଠି ଜନବସତି ସ୍ଥାପନ କରିବାକୁ ଆଗ୍ରହୀ ରହୁଥିଲେ ।

ମାତ୍ର ଉତ୍ତରର ସବୁଯାକ ସମତଳ କ୍ଷେତ୍ର ସମପରିମାଣରେ ଉର୍ବର ନ ଥିଲା । ରାଜସ୍ଥାନର ଥର୍ ମରୁଭୂମି ଏବଂ ତା'ର ପରିପାର୍ଶ୍ୱରେ ବେଢ଼ି ରହିଥିବା ପ୍ରାୟ ଶୁଷ୍କ କ୍ଷେତ୍ର ବିଶେଷ କୃଷି ଉପଯୋଗୀ ନ ଥିଲା । ମାତ୍ର ମରୁଭୂମିର ଯାହା ଚରିତ୍ର, ତହିଁରେ ବାଣିଜ୍ୟ ପାଇଁ ସାମଗ୍ରୀ ନେବାଆଣିବା ସହଜ ହେଉଥିଲା, କାରଣ ସେଠାରେ ଓଟକୁ ଭାରବାହୀ ପଶୁ ରୂପେ ବ୍ୟବହାର କରାଯାଉଥିଲା । ସେହି ମରୁପଥରେ ସ୍ଥାନେ ସ୍ଥାନେ ବ୍ୟାପାର କେନ୍ଦ୍ରମାନ ଗଢ଼ିଉଠିଲା । ତନ୍ମଧ୍ୟରୁ କେତେକ କେନ୍ଦ୍ର ସହରରେ ପରିଣତ ହେଲା । ଜଳସେଚନ ପ୍ରତି ମହତ୍ତ୍ୱ ଦିଆଯିବା ପରେ, ଏଭଳି କେତେକ ମରୁକ୍ଷେତ୍ରରେ କୃଷିର ବିକାଶ ମଧ୍ୟ ଦେଖିବାକୁ ମିଳିଲା ।

## ଉପଦ୍ୱୀପ (Peninsula)

ଭାରତ ଉପମହାଦେଶର ତୃତୀୟ ପ୍ରମୁଖ କ୍ଷେତ୍ର ହେଲା ଉପଦ୍ୱୀପ, ଯାହାକୁ ଇଂରାଜୀରେ Peninsula କୁହାଯାଏ । ଏହା ହେଲା ବିନ୍ଧ୍ୟ ପର୍ବତ, ସାତପୁରା ପର୍ବତଶ୍ରେଣୀ ଏବଂ ନର୍ମଦା ନଦୀର ଦକ୍ଷିଣରେ ଅବସ୍ଥିତ କ୍ଷେତ୍ର । ମୁଖ୍ୟତଃ ଏହା ହେଉଛି ଏକ ଅଧିତ୍ୟକା (Plateau) କ୍ଷେତ୍ର । ମାତ୍ର ଉପଦ୍ୱୀପରେ ପଶ୍ଚିମଘାଟ ଏବଂ ପୂର୍ବଘାଟ ଭଳି ପର୍ବତମାଳା ମଧ୍ୟ ରହିଛି । ଉପଦ୍ୱୀପର ଉତ୍ତରାଂଶ ଦାକ୍ଷିଣାତ୍ୟ (Deccan) ନାମରେ ପରିଚିତ । ଏହି ନାମଟି 'ଦକ୍ଷିଣ' ଶବ୍ଦରୁ ଆନୀତ ଏବଂ ଉତ୍ତର କ୍ଷେତ୍ର ଦ୍ୱାରା ଦିଆ ନାମ । ପ୍ରାଚୀନ ଗ୍ରନ୍ଥମାନଙ୍କରେ 'ଦକ୍ଷିଣ ପଥ' ଶବ୍ଦର ଅନେକ ଉଲ୍ଲେଖ ମିଳିଥାଏ । ଅଧିତ୍ୟକାର ପାହାଡ଼ଗୁଡ଼ିକ ଭଲ୍‌କାନିକ ରକ୍ ପୁଷ୍ଟ ହୋଇଥିବାରୁ ଉତ୍ତରର ପାର୍ବତ୍ୟାଞ୍ଚଳରୁ ପୃଥକ୍ । 'ଭଲ୍‌କାନିକ ରକ୍' (Volcanic rock) ବା ଆଗ୍ନେୟ ଶିଳାର ଅର୍ଥ ହେଲା ଯେଉଁ ପାହାଡ଼କୁ ସହଜରେ କାଟିହୁଏ ବା ଖୋଦନ କରିହୁଏ । ଏହି କାରଣରୁ ଦାକ୍ଷିଣାତ୍ୟରେ ଅନେକ ପର୍ବତ ଖୋଦିତ ବିହାର ଦେଖିବାକୁ ମିଳେ ।

ପଶ୍ଚିମଘାଟ ପର୍ବତମାଳା ତୀକ୍ଷ୍ଣ ଭାବରେ ଊର୍ଦ୍ଧ୍ୱକୁ ଉଠି ପଶ୍ଚିମତଟ ପାଖକୁ ଲମ୍ବିଯାଇଛି । ଅର୍ଥାତ୍ ପୂର୍ବ ଦିଗକୁ ଏହା ମାଡ଼ିଯାଇ ଉପଦ୍ୱୀପର ଅଧିତ୍ୟକା ଯାଏଁ ପହଞ୍ଚି ଯାଇଛି । ଫଳରେ ପଶ୍ଚିମତଟର ବନ୍ଦରଗୁଡ଼ିକରେ ବାଣିଜ୍ୟ ସାମଗ୍ରୀର ପହଞ୍ଚିବା ପାଇଁ ଗିରିପଥ ଖୋଦନର ଆବଶ୍ୟକତା ପଡ଼ିଛି । ଜୁନ୍ନାର, କହ୍ନେରି, କାର୍ଲେ ଏବଂ କରାଦ ହେଉଛି ସେହି ଧରଣର କେତୋଟି ଖୋଦିତ ଗିରିପଥ । ଏହି ଗିରିପଥରେ ସ୍ଥାନେ ସ୍ଥାନେ ବୌଦ୍ଧବିହାରଗୁଡ଼ିକୁ ଖୋଦନ କରି ନିର୍ମାଣ କରାଯାଇଥିଲା । ଦକ୍ଷିଣ ସୀମାନ୍ତସ୍ଥିତ ପାଲଘାଟ ଗେପ (Palghat Gap) ଥିଲା ଏହିଭଳି ଏକ ପଥ, ଯାହା ମଧ୍ୟ ଦେଇ ପଶ୍ଚିମତଟରୁ କାବେରୀ ଉପତ୍ୟକାକୁ ବାଣିଜ୍ୟ ସାମଗ୍ରୀ ପରିବହନ କରାଯାଉଥିଲା । ଭାରତ-ରୋମ୍ ବାଣିଜ୍ୟରେ ପାଲଘାଟ ଗେପ୍‌ର ଖୁବ୍ ଗୁରୁତ୍ୱ ରହିଥିଲା ।

ଘାଟ ପର୍ବତମାଳା ପୂର୍ବରେ କ୍ରମଶଃ ଅଧିତ୍ୟକାରେ ଏବଂ ତଟୀୟ ସମତଳ କ୍ଷେତ୍ରରେ ମିଶିଯାଇଛନ୍ତି । କେବଳ ମହାନଦୀକୁ ବାଦ୍ ଦେଇ ଉପଦ୍ୱୀପର ନଦୀଗୁଡ଼ିକ ପ୍ରାୟ ସମାନ୍ତରରେ ପ୍ରବାହିତ ହୁଅନ୍ତି । ତନ୍ମଧ୍ୟରେ ଉତ୍ତରରେ ଥିବା ନର୍ମଦା ଓ ତାପ୍ତି ନଦୀ ପୂର୍ବରୁ ପ୍ରବାହିତ ହୁଅନ୍ତି ଏବଂ ଦକ୍ଷିଣରେ ଥିବା ଗୋଦାବରୀ, କ୍ରିଷ୍ଣା, ତୁଙ୍ଗଭଦ୍ରା ଏବଂ କାବେରୀ ପଶ୍ଚିମରୁ ପୂର୍ବ ଆଡ଼କୁ ପ୍ରବାହିତ ହୁଅନ୍ତି । ଭାରତରେ ସାଧାରଣତଃ ନଦୀଗୁଡ଼ିକୁ ପବିତ୍ର ବୋଲି ମନେକରାଯାଏ । ସବୁ ନଦୀ ମଧ୍ୟରେ ପୁଣି ଗଙ୍ଗା ଭଳି କେତେକ ନଦୀକୁ ଅଧିକ ପବିତ୍ରର ମାନ୍ୟତା ଦିଆଯାଏ । ତୀର୍ଥସ୍ଥଳୀଗୁଡ଼ିକ ସାଧାରଣତଃ ନଦୀକୂଳରେ ସ୍ଥାପିତ । ନର୍ମଦା ନଦୀରେ

ତୀର୍ଥ କରିବା ଅର୍ଥ ନଦୀର ଉତ୍ପତ୍ତିସ୍ଥଳରୁ ଯାତ୍ରା ଆରମ୍ଭ କରି ନଦୀ କୂଳେ କୂଳେ ଚାଲିବା ଏବଂ ଗୋଟାଏ କୂଳରେ ନଦୀ ପାରିହୋଇ ପୁଣି ଉତ୍ପତ୍ତିସ୍ଥଳକୁ ଯିବା । ତୀର୍ଥଯାତ୍ରାର ଏଭଳି ପ୍ରାରୂପ (pattern) ଅନ୍ୟ ନଦୀଗୁଡ଼ିକ କ୍ଷେତ୍ରରେ ଦେଖିବାକୁ ମିଳେ ନାହିଁ ।

ଉପଦ୍ୱୀପରେ କୃଷି ଓ କୃଷି ଆଧାରିତ ରାଜ୍ୟ ଗଠନ ପ୍ରକ୍ରିୟା ଉତ୍ତର ସମତଳ ତୁଳନାରେ କଷ୍ଟସାଧ୍ୟ ଥିଲା । ଏଠାରେ ମୌର୍ଯ୍ୟ ଯୁଗର ଶେଷ ସମୟରେ, ଅର୍ଥାତ୍ ପ୍ରଥମ ସହସ୍ରାବ୍ଦୀର ଆରମ୍ଭ ବେଳକୁ ସହରୀକରଣର ଭିତ୍ତି ପଡ଼ିଲା । ମାତ୍ର ଉପଦ୍ୱୀପର ଅନେକ ସ୍ଥାନରେ ନାନା କିସମର ପ୍ରାକ୍-ନଗରୀୟ କାର୍ଯ୍ୟକଳାପ ଦୃଷ୍ଟିଗୋଚର ହୁଏ । ପ୍ରାୟଦ୍ୱୀପର ଉତ୍ତର କ୍ଷେତ୍ର ହୋଇଥିବା ଯୋଗୁଁ ଦାକ୍ଷିଣାତ୍ୟ ଭାରତ ଭୂଖଣ୍ଡର ଉତ୍ତର ଓ ଦକ୍ଷିଣ ମଧ୍ୟରେ ଯୋଗସୂତ୍ର ରକ୍ଷା କରିବାରେ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥାଏ । ଏହା ଉଭୟ ଭାଷା ଓ ସ୍ଥାପତ୍ୟ କ୍ଷେତ୍ରରେ ସାଧାରଣତଃ ପରିଲକ୍ଷିତ ହୋଇଥାଏ ।

ଅନେକ ଶତାବ୍ଦୀ ଧରି ଘଞ୍ଚ ଜଙ୍ଗଲ ଯୋଗୁଁ ମଧ୍ୟଭାରତର ପାର୍ବତ୍ୟାଞ୍ଚଳ ଏବଂ ଅଧିତ୍ୟକାମାନଙ୍କରେ ଜନବସତି ସ୍ଥାପନ ପାଇଁ ଅନୁପ୍ରବେଶକାରୀ ଏବଂ ପ୍ରବାସୀମାନେ ଆଗ୍ରହ ପ୍ରକାଶ କରୁ ନ ଥିଲେ । ସେମାନେ ଏହି କ୍ଷେତ୍ରକୁ ପାରି ହୋଇ ଦାକ୍ଷିଣାତ୍ୟରେ ଯାଇ ପହଞ୍ଚୁଥିଲେ । ଫଳରେ ଉତ୍ତର କ୍ଷେତ୍ରରୁ ଦାକ୍ଷିଣାତ୍ୟକୁ ଯାଇଥିବା ବହୁଳ ବ୍ୟବହୃତ ମାର୍ଗର କଡ଼େ କଡ଼େ ପ୍ରମୁଖ ଜନବସତିମାନ ଗଢ଼ିଉଠିଥିଲା । ଏହି ଜନବସତିମାନଙ୍କର ବିଶେଷ ପ୍ରଭାବ ବନବାସୀମାନଙ୍କ ଉପରେ ବହୁଦିନ ପର୍ଯ୍ୟନ୍ତ ପଡ଼ି ନ ଥିଲା । ପରେ ଯେତେବେଳେ କାଠ, ହାତୀ ଏବଂ କୃଷି ଉପଯୋଗୀ ଜମି ପାଇଁ ଜଙ୍ଗଲକୁ ସମତଳ ଲୋକ କବ୍‌ଜା କରିବାକୁ ଲାଗିଲେ ପ୍ରଭାବ ସୁସ୍ପଷ୍ଟ ହେଲା । ମଧ୍ୟଭାରତକୁ 'ଆଦିବାସୀ ସମାଜ' ଏବଂ ବନବାସୀ ଲୋକଙ୍କର ମୁଖ୍ୟ ବାସସ୍ଥଳୀ ବୋଲି ମନେକରାଯାଉଥିଲା; ଅବଶ୍ୟ ଆଦିବାସୀମାନେ ଭାରତର ଚାରିଆଡ଼େ ବସତି ସ୍ଥାପନ କରିଥିଲେ । ବର୍ତ୍ତମାନ ମଧ୍ୟ ନାନା ସ୍ଥାନରେ ସେମାନେ ଅବସ୍ଥାନ କରନ୍ତି । 'ଆଦିବାସୀ ସମାଜ' ବା ବନବାସୀମାନଙ୍କର ଜନସଂଖ୍ୟା ସବୁଆଡ଼େ ଏକାଭଳି ନୁହେଁ । ଉଦାହରଣସ୍ୱରୂପ, ଆଣ୍ଡାମାନ ଦ୍ୱୀପପୁଞ୍ଜର ଓଂଗେ ଜନଜାତିର ମୋଟ ସଂଖ୍ୟା ଆଜି ଶହେ ପ୍ରାୟ । ମାତ୍ର ମୁଣ୍ଡା, ଓରାମ, ଭିଲ, ଗୋଣ୍ଡ, ସାନ୍ତାଳ ଏବଂ ମିନା ଜନଜାତିର ମୋଟ ଜନସଂଖ୍ୟା ଦଶଲକ୍ଷରୁ ଊର୍ଦ୍ଧ୍ୱ ହେବ । ସେମାନେ ମୁଖ୍ୟତଃ ଶିକାର ଓ ଖାଦ୍ୟ ସଂଗ୍ରହ (hunting-gathering), ପୋଡୁଚାଷ ଏବଂ ପଶୁପାଳନ ତଥା କୃଷିରେ ନିର୍ଭର କରି ଜୀବିକା ନିର୍ବାହ କରନ୍ତି । ଜନଜାତି ଏବଂ ପଡ଼ୋଶୀ କୃଷକ ସମାଜ ମଧ୍ୟରେ ପ୍ରମୁଖ ପାର୍ଥକ୍ୟ ହେଲା ଯେ, ଜନଜାତିମାନେ ଚାଷରେ ହଳ ବ୍ୟବହାର କରନ୍ତି ନାହିଁ ଏବଂ ଅଣଆଦିବାସୀ କୃଷକ ନିଜ ନାମରେ ଜମିର ସ୍ୱତ୍ୱ ରଖିବାକୁ ପ୍ରୟାସ

କରନ୍ତି । ଆଦିବାସୀର ନାମରେ ଜମିର ସ୍ୱତ୍ୱ ନ ଥାଏ । ଅବଶ୍ୟ ସାଂପ୍ରତିକ ସମୟରେ ଆଦିବାସୀ କୃଷକ ମଧ ହଳର ବ୍ୟବହାର କରୁଛି ଏବଂ ଜମିର ସ୍ୱତ୍ୱ ନିଜ ନାମରେ ରଖୁଛି । ସେତେବେଳେ ପରିବେଶ ସ୍ପଷ୍ଟରୂପେ ନିର୍ଦ୍ଧାରଣ ହୋଇ ନ ଥିଲା । ଗୋଟାଏ କ୍ଷେତ୍ର ଆଉ ଗୋଟାଏ କ୍ଷେତ୍ର ଉପରେ ନିର୍ଭର କରୁଥିଲା । କ୍ଷେତ୍ରଗୁଡ଼ିକ ମଧ୍ୟରେ ପାରସ୍ପରିକ ନିର୍ଭରଶୀଳତା ରହୁଥିଲା । ଆଜି ତୁଳନାରେ ଅତୀତରେ ବଣଜଙ୍ଗଲ କ୍ଷେତ୍ର ଅଧିକ ବ୍ୟାପକ ଥିଲା । କେତେକ କ୍ଷେତ୍ରରେ ବନବାସୀମାନଙ୍କର ସଂଖ୍ୟା ଅଧିକ ଥିଲା । ଧୀରେ ଧୀରେ ସେଠି ଅଣଆଦିବାସୀ ଗ୍ରାମ୍ୟ ଲୋକମାନେ ଯାଇ ବସବାସ କଲେ । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଗୋଟାଏ ସହରରୁ ଅନ୍ୟ ସହରକୁ ଯିବା ମଝିରେ ଜଙ୍ଗଲ ପଡୁଥିବା କଥା ଉଲ୍ଲେଖ ରହିଛି । ଅର୍ଥାତ୍ ଜଙ୍ଗଲକୁ ଜନବସତିଶୂନ୍ୟ ଭାବରେ ଦର୍ଶାଯାଇଛି । ଚୋର-ଖଣ୍ଡମାନଙ୍କୁ ଜଙ୍ଗଲବାସୀ ବୋଲି ମନେକରାଯାଉଥିଲା; ସେମାନଙ୍କ ଭୟ ଯୋଗୁଁ ଦୀର୍ଘଯାତ୍ରାରେ ଲୋକ ଯିବାକୁ ଚାହୁଁ ନ ଥିଲେ ।

## ଉପକୂଳ ଅଞ୍ଚଳ

ଉପଦ୍ୱୀପର ସୁଦୀର୍ଘ ପଶ୍ଚିମ ଓ ପୂର୍ବତଟ ରହିଛି । ଫଳରେ ସେଠାରେ ନୌବାଣିଜ୍ୟର ଇତିହାସ ଖୁବ୍ ପ୍ରାଚୀନ । ଏହାକୁ ଯଥୋଚିତ ମାନ୍ୟତା ଦିଆଯାଇ ନାହିଁ, କାରଣ ଭାରତର ଐତିହାସିକ ଦୃଷ୍ଟିକୋଣ ପ୍ରାୟତଃ ଭୂମିକେନ୍ଦ୍ରିତ । ମୌସୁମୀବାୟୁ ପ୍ରବାହିତ ସମୟରୁ ମୌସୁମୀର ଭାରତରେ ବେଶ୍ କର୍ତ୍ତୃତ୍ୱ ଚାଲେ । ସେତେବେଳେ ଉଚିତ ସମୟରେ ଏବଂ ସଠିକ୍ ଟେକ୍ନୋଲୋଜି ଆଧାରରେ ଜାହାଜକୁ ସମୁଦ୍ରରେ ବାହି ନିଆଯାଉଥିଲା । ସମୁଦ୍ର ମଝିରେ ସୁଦୀର୍ଘ ପଥଗୁଡ଼ିକ ରହିଥିଲା, ଯାହାପାଇଁ ପବନର ଗତି ଏବଂ ସ୍ରୋତ ସମ୍ପର୍କିତ ଜ୍ଞାନ ଏକ ବଡ଼ ଆବଶ୍ୟକତା ଥିଲା । ତଟୀୟ ମାର୍ଗଗୁଡ଼ିକରେ ପ୍ରାୟ ବର୍ଷସାରା ବାଣିଜ୍ୟ ସାମଗ୍ରୀ ନେବାଆଣିବା ଚାଲିଥିଲା । ପ୍ରତ୍ୟେକ କ୍ଷେତ୍ରରେ ତଟର ନିଜସ୍ୱ ମାର୍ଗ ରହିଥିଲା । ମାର୍ଗ ସମୁଦ୍ରକୁ ଯୋଡୁଥିଲା । ତଟୀୟ କ୍ଷେତ୍ରର ଭୌଗୋଳିକ ପରିବର୍ତ୍ତନ, ନୌ-ଟେକ୍ନୋଲୋଜି ଏବଂ ନୌଯାତ୍ରା ଯୋଗୁଁ ଶହ ଶହ ବର୍ଷ ଧରି ବନ୍ଦର ଓ ପୋତାଶ୍ରୟଗୁଡ଼ିକ ତିଷ୍ଠି ରହିଆସିଥିଲେ । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେଲା କେରଳର ମୁଜିରିସ ବନ୍ଦର, ଯାହାକୁ କୋଡାଙ୍ଗଲୁର ବା କ୍ରେଙ୍ଗନୋର ବୋଲି ଚିହ୍ନିତ କରାଯାଏ । ଖ୍ରୀଷ୍ଟାବ୍ଦର ଆରମ୍ଭରୁ ପଞ୍ଚଦଶ ଶତାବ୍ଦୀରେ ପର୍ତ୍ତୁଗୀଜମାନଙ୍କ ଆଗମନ ପର୍ଯ୍ୟନ୍ତ ଏହା କାର୍ଯ୍ୟକ୍ଷମ ରହିଥିଲା ।

ନୌବାଣିଜ୍ୟ ଏବଂ ପୋତ ଓ ପୋତାଶ୍ରୟ ପରି ପଶ୍ଚିମ ଉପକୂଳରେ ଗୁଜରାଟରୁ କେରଳ ପର୍ଯ୍ୟନ୍ତ ସମଗ୍ର କ୍ଷେତ୍ରରେ ଜଳଦସ୍ୟୁମାନେ ଖୁବ୍ ସକ୍ରିୟ ରହିଥିଲେ । ପ୍ରାଚୀନ

ଗ୍ରନ୍ଥମାନଙ୍କରେ ଜଳଦସ୍ୟୁମାନଙ୍କର ଆତଙ୍କ କଥା ଉଲ୍ଲେଖ ରହିଛି ଏବଂ ସେମାନଙ୍କୁ ପ୍ରତିରୋଧ କରିଥିବା ବ୍ୟକ୍ତିକୁ ବିଜୟୀ ବୀରର ସମ୍ମାନ ଦିଆଯାଇଛି । ପ୍ରକୃତରେ ଗୋଟାଏ ଦୃଷ୍ଟିରୁ ଦେଖିଲେ ଚୋରି ଓ ଲୁଟ୍‌ତରାଜକୁ ଅର୍ଥର ଏକ ରକମର ପୁନର୍ବଣ୍ଟନ ରୂପେ ଅନୁଶୀଳନ କରିହେବ । ଭୟ ଏଥିପାଇଁ ଯେ, ଯଦି ଲୁଟ୍‌ତରାଜ ଓ ଚୋରି ଅନିୟନ୍ତ୍ରିତ ହୁଏ, ତେବେ ବାଣିଜ୍ୟ କାରବାର ବାଧିତ ହୋଇପଡ଼ିବ । ସ୍ଥଳପଥରେ ଯେମିତି ଡକାୟତ, ସମୁଦ୍ରରେ ସେମିତି ଜଳଦସ୍ୟୁମାନେ ସକ୍ରିୟ ଥିଲେ । ଆଦ୍ୟ ସମାଜମାନଙ୍କରେ ଏହି ଉଭୟ ସମସ୍ୟାକୁ ଲୋପ କରିବାକୁ ନିରନ୍ତର ଉଦ୍ୟମ ହେଉଥିଲା, ମାତ୍ର ତହିଁରୁ ନିବୃତ୍ତି ମିଳିପାରି ନ ଥିଲା ।

ଭାରତୀୟ ପ୍ରାୟଦ୍ୱୀପ ଭାରତ ମହାସାଗରକୁ ଦୁଇ ବୃତ୍ତାଂଶରେ ପରିଣତ କରିଛି : ଆରବ ସାଗର ଓ ଭାରତର ଦକ୍ଷିଣତଟୀୟ କ୍ଷେତ୍ର ଏବଂ ଦ୍ୱିତୀୟ ଅଂଶ ହେଲା ବଙ୍ଗୋପସାଗର ଏବଂ ପୂର୍ବତଟୀୟ କ୍ଷେତ୍ର । ପଶ୍ଚିମତଟୀୟ କ୍ଷେତ୍ରର ପ୍ରମୁଖ ଅଞ୍ଚଳମାନ ହେଲା : ସିନ୍ଧୁ ତ୍ରିକୋଣଭୂମି, ଗୁଜରାଟ ଏବଂ ସୌରାଷ୍ଟ୍ର, ଥାଣେ (ମୁମ୍ବାଇ ନିକଟରେ), କୋଙ୍କଣ ଓ ମାଲାବାର (କେରଳରେ), ପୂର୍ବତଟରେ ଥିବା ପ୍ରମୁଖ କ୍ଷେତ୍ରମାନ ହେଲା : ଗାଙ୍ଗେୟ ତ୍ରିକୋଣଭୂମି, କଳିଙ୍ଗ (ଓଡ଼ିଶାରେ), ଗୋଦାବରୀ ଓ କ୍ରିଷ୍ଣା ନଦୀର ତ୍ରିକୋଣଭୂମି (Delta) ଏବଂ ତାମିଲନାଡୁର କାବେରୀ ତ୍ରିକୋଣଭୂମି ଏବଂ କରମଣ୍ଡଳ ଉପକୂଳ । ଏହି ଅଞ୍ଚଳଗୁଡ଼ିକ ନୌବାଣିଜ୍ୟରେ ସମ୍ପନ୍ନତା ଲାଭ କରିବାପାଇଁ ଆକାଂକ୍ଷା ରଖିଥିବା ରାଜ୍ୟମାନଙ୍କର କେନ୍ଦ୍ରଭୂମି ରୂପେ କାର୍ଯ୍ୟ କରୁଥିଲେ ।

ଅତୀତରେ ସମୁଦ୍ର ପତ୍ତନର ଉତ୍ଥାନ ଓ ପତନ ଯୋଗୁଁ ତଟୀୟ କ୍ଷେତ୍ରରେ ପରିବର୍ତ୍ତନ ଦେଖାଦେଇଛି । ସମୁଦ୍ର ପତ୍ତନରେ ଉତ୍ଥାନ ଅର୍ଥ ପଶ୍ଚିମ ଭାରତର କଚ୍ଛ ଉପସାଗର ଭଳି କ୍ଷେତ୍ର ଅଗଭୀର ସମୁଦ୍ରର ଅଂଶ ଥିଲା । ସାନ ସାନ ଜାହାଜ ସେଠିକି ଆସିପାରୁଥିଲା । ସମୁଦ୍ର ପତ୍ତନର ପତନ ହେବା ଯୋଗୁଁ ଅନେକ ବନ୍ଦର ଶୁଖିଲା ଭୂମିରେ ପରିଣତ ହେଲା ଓ ଏହି ଭୂମି ମନୁଷ୍ୟ ଓ ପଶୁର ବ୍ୟବହାର ପାଇଁ ଖୁବ୍ ଉପଯୋଗୀ ହେଲା । ଏହି ପରିବର୍ତ୍ତନ ବିଶେଷକରି ତଟୀୟ କ୍ଷେତ୍ରର ଢାଲୁ ଜମିରେ ଦେଖିବାକୁ ମିଳେ । ଏହାର ପ୍ରକୃଷ୍ଟ ଉଦାହରଣ ହେବ ଗାଙ୍ଗେୟ ତ୍ରିକୋଣଭୂମି ସ୍ଥିତ ସୁନ୍ଦରବନ ଏବଂ ବାଂଲାଦେଶରେ ଥିବା ବେଳାସଙ୍ଗମ କ୍ଷେତ୍ର । ଏହି କ୍ଷେତ୍ରଗୁଡ଼ିକରେ ହୁଏତ ଜମି ଜଳମଗ୍ନ ହେଲା ଅଥବା ଉର୍ବର ପଟୁମାଟିରେ ପରିଣତ ହେଲା । ଏହି ପ୍ରକ୍ରିୟାରେ ନିରନ୍ତର ଭୂମିର ସ୍ୱରୂପ ପରିବର୍ତ୍ତନ ହୋଇ ଚାଲିଥିଲା ।

ପୂର୍ବ ଭାରତରେ ବୌଦ୍ଧଧର୍ମର ପ୍ରସାର କଥା ପୂର୍ବତଟରୁ ପ୍ରାପ୍ତ ପ୍ରମାଣରୁ ସିଦ୍ଧ ହୁଏ । ତା' ଅନୁଯାୟୀ, ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବୌଦ୍ଧଧର୍ମ ପୂର୍ବଉପକୂଳ ଦେଇ ଦକ୍ଷିଣ ଭାରତ ଏବଂ ଶ୍ରୀଲଙ୍କାରେ ଯାଇ ପହଞ୍ଚିଥିଲା ବୋଲି ଅନୁମାନ କରାଯାଏ । ପୂର୍ବତଟର

ବଣିକମାନେ ଦକ୍ଷିଣପୂର୍ବ ଏସିଆ ଏବଂ ଦକ୍ଷିଣ ଚୀନ୍ ସହିତ ବାଣିଜ୍ୟ କାରବାର ଆରମ୍ଭ କରିଥିଲେ । ପଶ୍ଚିମତଟୀୟ କ୍ଷେତ୍ର ଏବଂ ପଶ୍ଚିମ-ଏସିଆ ମଧ୍ୟରେ ନୌବାଣିଜ୍ୟ ଖ୍ରୀଷ୍ଟପୂର୍ବ ତୃତୀୟ ସହସ୍ରାବ୍ଦୀ ସମୟରୁ ଆରମ୍ଭ ହୋଇସାରିଥିଲା । ସେତେବେଳେ ସିନ୍ଧୁର ନଗରୀଗୁଡ଼ିକ ଏବଂ ମେସୋପୋଟାମିଆ ମଧ୍ୟରେ ସାମୁଦ୍ରିକ ବାଣିଜ୍ୟ କାରବାର ଚାଲିଥିଲା । ଗଲ୍ଫ କ୍ଷେତ୍ରରେ ଦକ୍ଷିଣ-ଏସିଆର ଉପସ୍ଥିତି ନିରନ୍ତର ରହିଥିଲା । ପରବର୍ତ୍ତୀ ସମୟରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ ରୋମ୍ ସାମ୍ରାଜ୍ୟର ମଧ୍ୟପ୍ରାଚ୍ୟ ରାଜ୍ୟଗୁଡ଼ିକ ସହିତ ଲୋହିତ ସାଗରର ବନ୍ଦରଗୁଡ଼ିକ ମାଧ୍ୟମରେ ବାଣିଜ୍ୟ ଖୁବ୍ ଲାଭଜନକ ସିଦ୍ଧ ହେଲା । ଏହି ବାଣିଜ୍ୟିକ ସଫଳତା ଯୋଗୁଁ ପ୍ରଥମ ସହସ୍ରାବ୍ଦୀ ବେଳକୁ ଆଫ୍ରିକାର ପୂର୍ବ ଉପକୂଳ ସହିତ ଭାରତର ବାଣିଜ୍ୟ କାରବାର ସ୍ଥାପିତ ହେଲା । ଭାରତର ପଶ୍ଚିମ ଉପକୂଳରେ ଅନେକ ବଣିକ ଗୋଷ୍ଠୀ କାରବାର କରୁଥିଲେ । ତନ୍ମଧ୍ୟରେ ଥିଲେ ଖ୍ରୀଷ୍ଟିଆନ, ପାର୍ସୀ, ଆରବ ଏବଂ ଇହୁଦୀମାନେ । ଅନ୍ୟ ଏକ ଭୌଗୋଳିକ ଖଣ୍ଡ ଥିଲା ଲାକ୍ଷାଦ୍ୱୀପ, ମିନିକୟ ଏବଂ ମାଲଦିଭ୍ସର କୋରାଲ ଦ୍ୱୀପପୁଞ୍ଜ । କେରଳ ଏବଂ ଶ୍ରୀଲଙ୍କାର ତଟ ନିକଟବର୍ତ୍ତୀ ଏହି ଦ୍ୱୀପପୁଞ୍ଜକୁ ପ୍ରଥମରୁ ବିଶେଷ ଐତିହାସିକ ମହତ୍ତ୍ୱ ଦିଆଯାଉ ନ ଥିଲା । ମାତ୍ର ଏହାର ମଧ୍ୟ ମହତ୍ତ୍ୱ କିଛି ଊଣା ନୁହେଁ । ମୌସୁମୀବାୟୁ ଭାରତ ପ୍ରବେଶ କଲାବେଳେ ଏଠି ତା'ର ପ୍ରକୋପ ଦେଖାଏ, ଯାହାକୁ ଉପଯୋଗ କରି ବଣିକମାନେ ଉଭୟ ଦିଗରେ ଜାହାଜ ମେଲି ଦେଉଥିଲେ । ତେଣୁ ଏଠାରେ ଏକ ରକମର ବାଣିଜ୍ୟ ଫାଣ୍ଡି ଗଢ଼ିଉଠିଥିଲା ।

ସୁଦୂର ପୂର୍ବରେ ରହିଛି ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ । ଭାରତ ଅପେକ୍ଷା ଏହା ଦକ୍ଷିଣ-ପୂର୍ବ ଏସିଆକୁ ପାଖ । ଭାରତ ମହାସାଗର ମଧ୍ୟ ଦେଇ ଯାଉଥିବା ବାଣିଜ୍ୟପୋତ ପାଇଁ ଏହା ରହଣିସ୍ଥଳ ହେବାର ସାମର୍ଥ୍ୟ ରଖେ । ମାତ୍ର ସେହି ରୂପରେ ତା'ର ବିଶେଷ ଉପଯୋଗ ହୋଇଥିଲା ଭଳି ଲାଗେ ନାହିଁ । ସମ୍ଭବତଃ ସେଠାକାର ଅଧିବାସୀ ଏଭଳି କାର୍ଯ୍ୟକୁ ବିଶେଷ ପସନ୍ଦ କରୁ ନ ଥିଲେ । ଗତ ଦୁଇ ଶତାବ୍ଦୀ ମଧ୍ୟରେ ଉପନିବେଶିକ ନୃତତ୍ତ୍ୱବିଦ୍‌ମାନେ 'ଆଦିମ' (primitive)ର ସଂଜ୍ଞା ଖୋଜିବାକୁ ଯାଇ ଦ୍ୱୀପପୁଞ୍ଜର ଲୋକଙ୍କ ସମ୍ବନ୍ଧରେ ନାନାପ୍ରକାର ଅଧ୍ୟୟନ କରିଛନ୍ତି; ଏହା ଖୁବ୍ ମହତ୍ତ୍ୱପୂର୍ଣ୍ଣ ସିଦ୍ଧ ହୋଇଛି ।

## ସୀମାନ୍ତ

କୁହାଯାଏ, ଅନେକ ସମୟରେ ଭୌଗୋଳିକ ବୈଶିଷ୍ଟ୍ୟ ରାଜ୍ୟର ପାଚେରି ତୁଲ୍ୟ କାମ କରେ । ରାଜ୍ୟର ପାଚେରି ବା ସୀମାକୁ ନେଇ ପୂର୍ବେ ଯେଉଁ ଅବଧାରଣା, ତାହା ଆଜିର ଧାରଣାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଆଗରୁ ମାନଚିତ୍ର ନ ଥିଲା; ସୀମାରେଖା ଦର୍ଶାଇବା

ପାଇଁ ମାନଚିତ୍ର ତିଆରି କଲା ମଧ୍ୟ ନ ଥିଲା । ଭୂଦୃଶ୍ୟର ବୈଶିଷ୍ଟ୍ୟ, ଯଥା : ପର୍ବତମାଳା, ଜଙ୍ଗଲ, ନଦୀ, ତଟ କିମ୍ବା ମରୁଭୂମି ଆଦି ରାଜ୍ୟର ସୀମାନ୍ତ କ୍ଷେତ୍ର ରୂପେ କାର୍ଯ୍ୟ କରୁଥିଲେ । ସୀମାନ୍ତ କ୍ଷେତ୍ର ସର୍ବଦା ସେଠାରେ ଏବଂ ଆଖପାଖରେ ରହୁଥିବା ଲୋକଙ୍କ ପାଇଁ ସମ୍ବନ୍ଧ କ୍ଷେତ୍ରର କାର୍ଯ୍ୟ କରୁଥିଲା । ଅନେକ ସମୟରେ ମନେହୁଏ ସୀମାନ୍ତକୁ ଚିହ୍ନିବା ପାଇଁ ଭାଷା ଓ ପରମ୍ପରାକୁ ଦେଖାଯାଉଥିଲା । ସୀମାନ୍ତରେ ଦୁଇ ରାଜ୍ୟର ଭାଷା ଓ ପରମ୍ପରାର ପ୍ରଚଳନ ରହୁଥିବାରୁ କୂଟନୀତି ପାଇଁ ତାହା ସାହାଯ୍ୟ କରୁଥିଲା । ଭାଷା ଓ ପରମ୍ପରା ଜ୍ଞାନ ରହିଥିଲେ ସୀମାନ୍ତ ପାରି ହୋଇ ଯାତ୍ରା କରିବା ଏକ ସ୍ୱାଭାବିକ କାମ ଥିଲା । ଉଭୟ ବଣିକ ଓ ବ୍ୟବସାୟୀମାନେ ଖୁବ୍ ଯାତ୍ରା କରୁଥିଲେ । ଧାତୁ କର୍ମକାର ଓ ପଶୁପାଳକମାନେ ମଧ୍ୟ ନିଜ ନିଜର କ୍ଷେତ୍ର ପ୍ରସ୍ତୁତ କରି ରଖିଥିଲେ । ରାଜ୍ୟର ରାଜନୈତିକ ସୀମାନ୍ତ ସହିତ ଏହି କ୍ଷେତ୍ରର ମେଳ ରହୁ ନ ଥିଲା । ପ୍ରଥମ ସହସ୍ରାବ୍ଦୀର ଉତ୍ତରାର୍ଦ୍ଧରେ କର୍ମ ଅନ୍ୱେଷଣରେ ବ୍ରାହ୍ମଣମାନେ ରାଜ୍ୟ ରାଜ୍ୟ ବୁଲିବା ପ୍ରକ୍ରିୟାରେ ଖୁବ୍ ଭ୍ରମଣଶୀଳ ହେଲେ । ତୀଥଯାତ୍ରୀମାନେ ବିଭିନ୍ନ ତୀର୍ଥସ୍ଥଳୀକୁ ଯାତ୍ରା କରିବାବେଳେ ରାଜ୍ୟ ସୀମାନ୍ତରେ ପ୍ରାୟତଃ ପ୍ରତିରୋଧର ସମ୍ମୁଖୀନ ହେଉ ନ ଥିଲେ, କାରଣ ମାନସିକ ପୂରଣ ପାଇଁ ସେମାନେ ଯାତ୍ରା କରୁଥିଲେ ।

କେତେକ ଭାଷା କେମିତି ପ୍ରସାର ଲାଭ କରନ୍ତି ଏବଂ ଆଉ କେତେକ ଭାଷା କେମିତି ଏକଲା ପଡ଼ିଯାଆନ୍ତି, ତାକୁ ଅନୁଶୀଳନ କରିବାପାଇଁ ସୀମାନ୍ତ ଖୁବ୍ ମନୋଜ୍ଞ ଅବସର ପ୍ରଦାନ କରେ । ସଂସ୍କୃତ ପରି ଇଣ୍ଡୋ-ଆର୍ଯ୍ୟ ଭାଷାର ସମ୍ଭ୍ରାନ୍ତ ମର୍ଯ୍ୟାଦା ଖୁବ୍ ସୀମିତ ଥିଲା । ଉତ୍ତର ଭାରତରେ ଅନେକ ରାଜବଂଶ ଯେତେବେଳେ ଲୌକିକ ସ୍ତରରେ ବ୍ୟବହୃତ ହେଉଥିବା ଜନପ୍ରିୟ ଭାଷା ପ୍ରାକୃତ ସ୍ଥାନରେ ସଂସ୍କୃତକୁ ରାଜଭାଷାର ମର୍ଯ୍ୟାଦା ଦେଲେ, ସଂସ୍କୃତ ସମଗ୍ର ଉତ୍ତର ଭାରତରେ ପ୍ରସାର ଲାଭ କଲା । ସଂସ୍କୃତି ମାର୍ଗ ବା ସଂସ୍କୃତ ବ୍ୟବହାର କରୁଥିବା ମୁଖ୍ୟ ସ୍ରୋତ (main stream) ଓ ଆଞ୍ଚଳିକ ଭାଷା ବ୍ୟବହାର କରୁଥିବା ଦେଶୀ ପରମ୍ପରା ମଧ୍ୟରେ ସଂସ୍କୃତି ତେଣିକି ବିଭାଜନ ରେଖା ଟାଣିଲା । ସଂସ୍କୃତ ହେଲା ରାଜସଭାର ଭାଷା, ପ୍ରାଚୀନ ଗ୍ରନ୍ଥ ସାହିତ୍ୟର ଭାଷା ଏବଂ ଦର୍ଶନ ତତ୍ତ୍ୱକୁ ଅଭିବ୍ୟକ୍ତ କରିବାର ଭାଷା । ସଂକ୍ଷେପରେ କହିଲେ, ଭାରତୀୟ ସମ୍ଭ୍ରାନ୍ତବର୍ଗର ଭାଷା ରୂପେ ସଂସ୍କୃତ ପରିଚିତି ଲାଭ କଲା । ଯେଉଁଠି ପ୍ରଶାସନିକ ବର୍ଗ ପାର୍ସୀ କିମ୍ବା ଆଞ୍ଚଳିକ ଭାଷାକୁ ବ୍ୟବହାର କଲେ, ସେଠାରେ ସଂସ୍କୃତ ଉପାନ୍ତକୁ ଠେଲି ହୋଇଗଲା । ଆଞ୍ଚଳିକ ଭାଷା ମଧ୍ୟରୁ କେତେକ ଭାଷା ଦ୍ରାବିଡ଼ ଭାଷାରୁ ଉତ୍ପତ୍ତି ଲାଭ କରିଥିଲେ, ଆଉ କେତେକ ଇଣ୍ଡୋ-ଆର୍ଯ୍ୟ ଭାଷାରୁ । ରାଜଭାଷାର ମାନ୍ୟତା ଲାଭ କଲା ପରେ ବି ଆଞ୍ଚଳିକ ଭାଷାର ମୋଟ କ୍ଷେତ୍ର ଆଞ୍ଚଳିକ ସୀମାରୁ ବାହାରେ ନ ଥିଲା । କେବଳ ଭାଷାବିଜ୍ଞାନ କାରଣରୁ ଭାଷାରେ ପରିବର୍ତ୍ତନ ସଂଘଟିତ ହେଉ ନ ଥିଲା । ଅନେକ ସମୟରେ କର୍ତ୍ତୃପକ୍ଷ ପରିବର୍ତ୍ତନ ଆଣିବା ପାଇଁ ବଳ ପ୍ରୟୋଗ

କରୁଥିଲେ । ପୁଣି ନିଜ ଅସ୍ମିତାକୁ ଜାହିର କରିବାପାଇଁ ମଧ୍ୟ କର୍ତ୍ତୃପକ୍ଷ ଏକ ନିର୍ଦ୍ଦିଷ୍ଟ ଭାଷାକୁ କେବଳ ପ୍ରୟୋଗ କରୁଥିଲେ ।

ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ଭୂଗୋଳ ଏବଂ ଭୂଦୃଶ୍ୟକୁ ଯଥୋଚିତ ମହତ୍ତ୍ୱ ମିଳିଲା । ସମଗ୍ର ଭାରତବର୍ଷରେ ତୀର୍ଥସ୍ଥଳୀମାନ ବିଛେଇ ହୋଇ ରହିଛି । ତୀର୍ଥସ୍ଥଳୀ ବା ଧର୍ମପୀଠକୁ 'ତୀର୍ଥ' ଓ 'ଜିଆରାତ' ବୋଲି କୁହାଯାଏ । ସୀମାନ୍ତ ପାରିହୋଇ ଲୋକ ତୀର୍ଥଭ୍ରମଣରେ ଯାଆନ୍ତି ଏବଂ ସାଙ୍ଗରେ ନିଜର ସାଂସ୍କୃତିକ ଚିହ୍ନ, ପରିଚୟଗୁଡ଼ିକୁ ନେଇଯାଆନ୍ତି । କେତେକ ତୀର୍ଥସ୍ଥଳୀ ଏକ ନିର୍ଦ୍ଦିଷ୍ଟ ଧର୍ମ ସହିତ ଯୋଡ଼ି ହୋଇଥାଏ ଏବଂ ଉକ୍ତ ଧର୍ମକୁ ପୃଷ୍ଠପୋଷକତା ମିଳୁଥିବାଯାକେ ମହତ୍ତ୍ୱ ଲାଭ କରୁଥାଏ । ମାତ୍ର ଅନ୍ୟ କେତେକ ସ୍ଥଳ ଏମିତିରେ ପବିତ୍ର ବୋଲି ଚିହ୍ନିତ ହୁଅନ୍ତି ଏବଂ ସେଠାରେ ନାନା ଧର୍ମର ସଂଯୋଗ ଘଟିଥାଏ । କଦାଚିତ ଏହି ପବିତ୍ରତା ତାକୁ କ୍ରମାନ୍ୱୟରେ ପ୍ରାପ୍ତ ହୁଏ । ପୁଣି ଆଉ କେବେ ଏକାସାଙ୍ଗରେ ଏହା ବିଭିନ୍ନ ଧର୍ମ ପାଇଁ ତୀର୍ଥସ୍ଥଳୀ ହୁଏ । ଗୁଜରାଟର ସୋମନାଥ ଏବଂ ତା'ର ପରିପାର୍ଶ୍ୱର ସ୍ଥାନ ହେଲା ଏହିଭଳି ଏକ ଧର୍ମ ସଙ୍ଗମସ୍ଥଳୀ । ସେଠାରେ ବୈଷ୍ଣବ, ବୌଦ୍ଧ, ଶୈବ, ଜୈନ ଏବଂ ମୁସଲିମମାନଙ୍କର ପୂଜାପୀଠ ରହିଥିଲା । ଧାର୍ମିକ ସହିଷ୍ଣୁତାର ସେତେବେଳେ ପରମ୍ପରା ରହିଥିଲା ବୋଲି କେବଳ କହି ତୀର୍ଥସ୍ଥଳୀର ଏହି ସଙ୍ଗମ ଧାରାକୁ ବିଶ୍ଳେଷଣ କରିହେବ ନାହିଁ, କାରଣ କେତେକ ସ୍ଥଳରେ ଧାର୍ମିକ ଅସହିଷ୍ଣୁତାର ମଧ୍ୟ ନଜିର ଦେଖିବାକୁ ମିଳେ । ଏହା ନିଃସନ୍ଦେହ ଯେ, ଏହି ସ୍ଥଳଗୁଡ଼ିକ ଆକର୍ଷଣୀୟ ହେବା ପଛରେ ଅନ୍ୟାନ୍ୟ ଦିଗମାନ ରହିଥିଲା । ଶକ୍ତିଶାଳୀ ଧର୍ମଗୁଡ଼ିକ ତୀର୍ଥସ୍ଥଳୀକୁ କେତେକ କ୍ଷେତ୍ରରେ ହସ୍ତଗତ କରିନେବାର ମଧ୍ୟ ଉଦାହରଣ ରହିଛି । ଅମରାବତୀରେ ଏକ ବୌଦ୍ଧସ୍ତୂପ ନିର୍ମାଣ ପାଇଁ ବୌଦ୍ଧମାନେ ଏକ ମେଗାଲିଥ ସ୍ଥଳୀକୁ ଅକ୍ତିଆର କରିନେଇଥିଲେ; ଚେଜାରଲାରେ ବୌଦ୍ଧ ଚୈତ୍ୟକୁ ହିନ୍ଦୁ ମନ୍ଦିରରେ ପରିଣତ କରାଯାଇଥିଲା; ଆଜମୀରରେ ଏକ ହିନ୍ଦୁ ମନ୍ଦିରକୁ ମସଜିଦ୍‌ରେ ରୂପାନ୍ତରିତ କରାଯାଇଥିଲା । ଏମିତି ଆହୁରି ଅନେକ ଉଦାହରଣ ରହିଛି । ସମ୍ଭବତଃ କେତେକ କ୍ଷେତ୍ରକୁ ସର୍ବଦା ପବିତ୍ର ବୋଲି ମନେ କରାଯାଉଥିଲା । ତେଣୁ ନୂଆ ଧର୍ମଗୁଡ଼ିକ ସେଠିକି ଆକୃଷ୍ଟ ହୋଇଆସୁଥିଲେ । ପୁଣି ଏକ ଧାର୍ମିକ କ୍ଷେତ୍ରକୁ ନିଜ ଅକ୍ତିଆରକୁ ନେବା ମାନେ କର୍ତ୍ତୃତ୍ୱ ପ୍ରଦର୍ଶନ କରିବା । ପବିତ୍ର ବୃକ୍ଷରାଜି, ପାହାଡ଼, ପାହାଡ଼ ଗୁମ୍ଫା, ଝରଣା ଏବଂ ଜଳଭଣ୍ଡାର ଆଦିକୁ ଲୌକିକ ସ୍ତରରେ ପୂଜା ଆରାଧନା କରାଯାଉଥିଲା । ଏହା ଭୂଦୃଶ୍ୟ ଓ ଧାର୍ମିକ ବିଶ୍ୱାସକୁ ସମନ୍ୱିତ କରୁଥିଲା । ଯେତେବେଳେ ଧନୀ ଓ ପ୍ରତିପତ୍ତିଶାଳୀ ଲୋକଙ୍କର ଧର୍ମପୀଠ ଉପରେ ନିୟନ୍ତ୍ରଣ ବୃଦ୍ଧି ପାଇଲା, ସେଠାରେ ମନ୍ଦିର, ମସଜିଦ୍ ଆଦି ସ୍ମାରକର ନିର୍ମାଣମାନ ଆରମ୍ଭ ହେଲା ।

# ପରିବହନ

ପ୍ରାଚୀନ କାଳରେ ସ୍ଥଳଭାଗରେ ବସ୍ତୁ ପରିବହନ ପାଇଁ ଉଭୟ ମଣିଷ ଓ ପଶୁଙ୍କର ବ୍ୟବହାର ହେଉଥିଲା । ପରିବେଶ ଅନୁସାରେ ଭାରବାହୀ ପଶୁଙ୍କର କିସମ ବଦଳୁଥିଲା । ବିଶେଷକରି ବଳଦ, ଖଚର, ଗଧ ଏବଂ କେତେକ ସ୍ଥାନୀୟ କିସମର ଘୋଡ଼ାକୁ ଭାରବାହୀ ପଶୁଭାବେ ବ୍ୟବହାର କରାଯାଉଥିଲା । ସ୍ଥାନୀୟ କିସମର ଘୋଡ଼ା ପଶ୍ଚିମ ଭାରତରେ ମିଳୁଥିଲେ । ଜଙ୍ଗଲରେ ହାତୀ ଏବଂ ମରୁଅଞ୍ଚଳରେ ଓଟ ଏବଂ ପାହାଡ଼ିଆ ଅଞ୍ଚଳରେ ମଇଁଷି, ଛେଳି, ୟାକ୍ ଏବଂ ଯ୍ଜୁ (dzo)ର ପରିବହନ ପାଇଁ ବ୍ୟବହାର ହେଉଥିଲା । ଜିନିଷପତ୍ର ଲଦି ଭାରବାହୀ ପଶୁର କାଫିଲା (caravan) ନିର୍ଦ୍ଧାରିତ ମାର୍ଗରେ ଯାତ୍ରା କରୁଥିଲା । ଶଗଡ଼ଗାଡ଼ି କିଛି ଭାର ନ ନେଇ ଖାଲିରେ ଯାତ୍ରା କରିପାରୁ ନ ଥିଲା । ତେଣୁ ଫେରିବା ବେଳେ ବି ତହିଁରେ ଜିନିଷ ଲଦି ଆଣିବାକୁ ପଡୁଥିଲା । ନଦୀରେ ଡଙ୍ଗା ସାହାଯ୍ୟରେ ଭାରବାହୀ ପଶୁମାନଙ୍କୁ ପାରି କରାଯାଉଥିଲା । ନବମ ଶତାବ୍ଦୀରୁ ପଥର ସେତୁର ନିର୍ମାଣ ହେବାକୁ ଲାଗିଲା । ସେତୁର ଦୁଇକଡ଼େ କାନ୍ଥ ଭଳି ପାଚେରି ରହୁଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସମ୍ରାଟ୍ ଅଶୋକ ରାଜପଥର ସ୍ଥାନେ ସ୍ଥାନେ ବିଶ୍ରାମଘର ନିର୍ମାଣ କରାଇଥିଲେ, କୂଅ ଖୋଳାଇଥିଲେ ତଥା ଛାୟାପ୍ରଦ ବୃକ୍ଷରୋପଣର ବ୍ୟବସ୍ଥା କରିଥିଲେ । ବର୍ଷର ଅଧିକାଂଶ ସମୟ ପରିବହନ କାମ ଚାଲୁଥିଲା । କେବଳ ବର୍ଷା ତିନିମାସ ଏହା ଖୁବ୍ ଅସୁବିଧାର ସମ୍ମୁଖୀନ ହେଉଥିଲା ।

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଗୁରୁ ପରିବହନ ପାଇଁ ନଦୀପଥ ଉପରେ ଅଧିକ ନିର୍ଭର କରାଯାଉଥିଲା । ବିଶେଷକରି ନଦୀର ନିମ୍ନ ସ୍ରୋତରେ ଅର୍ଥାତ୍ ସମତଳ କ୍ଷେତ୍ରରେ ଏହା ଦେଖିବାକୁ ମିଳୁଥିଲା । ସେଥିପାଇଁ ନଦୀର ଘାଟମାନ ଛକ ଜାଗାର କାମ କରୁଥିଲେ । ଉଦାହରଣସ୍ୱରୂପ, ଗଙ୍ଗା ଓ ଯମୁନାର ସଙ୍ଗମରେ ଜଳପଥର ଖୁବ୍ ମହତ୍ତ୍ୱ ରହିଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ମଧ୍ୟଭାଗରେ କୌଶାମ୍ବୀ ସହର ଏହି ସଙ୍ଗମ କ୍ଷେତ୍ରର ନିକଟରେ ଥିଲା ବୋଲି ଅନୁମାନ କରାଯାଏ । ନଦୀ ପାରିହେବା ପାଇଁ ସାଧାରଣତଃ ଚାପ ଡଙ୍ଗା, ଟୋକେଇ ଡଙ୍ଗା ଆଦି ବ୍ୟବହାର କରାଯାଉଥିଲା । ଭାରି ପରିବହନ ନିମନ୍ତେ କାଠତିଆରି ଡଙ୍ଗାର ନିୟମିତ ବ୍ୟବହାର ହେଉଥିଲା । ସ୍ଥାନୀୟ ଜଙ୍ଗଲରୁ ମିଳୁଥିବା କାଠ ନଦୀ ପାଇଁ ଉପଯୋଗୀ ହେବା ସହିତ ଜାହାଜ ନିର୍ମାଣ ପାଇଁ ମଧ୍ୟ ବ୍ୟବହାର ହେଉଥିଲା । ବିଶେଷକରି ଶାଳଗଛକୁ ଜାହାଜ ନିର୍ମାଣ ପାଇଁ ଖୁବ୍ ଉପଯୁକ୍ତ ମନେ କରାଯାଉଥିଲା । ନୌଯାତ୍ରାର ଆବଶ୍ୟକତାକୁ ଦେଖି ଜାହାଜର ଆକାର ସ୍ଥିର ହେଉଥିଲା । ଡଙ୍ଗାର ଆକାର ଏବଂ ସେଠାରେ ଉପଲବ୍ଧ ସ୍ଥାନ ଏକାରକମର ନ ଥିଲା । ଉପକୂଳରେ ବ୍ୟବହୃତ ହେଉଥିବା ଡଙ୍ଗା ଗଛକୁ

ଦୁଇଫାଳ କରି, ତହିଁରୁ କାଠ କତୁରି ନିର୍ମାଣ କରାଯାଉଥିଲା । ପଟାମାନଙ୍କୁ ଯୋଡ଼ି ଯୋଡ଼ି ବଡ଼ ଆକାରର ଡଙ୍ଗା ମଧ୍ୟ ତିଆରି ହେଉଥିଲା । ପ୍ରସିଦ୍ଧ କଟ୍ଟାମରମ ଡଙ୍ଗା ଥିଲା ଏହି ଧରଣର ଏକ ପଟାଯୋଡ଼ା ଡଙ୍ଗା । ସମୁଦ୍ରର ମଧ୍ୟଭାଗରେ ବ୍ୟବହୃତ ହେଉଥିବା ଡଙ୍ଗା ଥିଲା ଅତି ବିରାଟ ଆକାରର । ତାକୁ ସ୍ୱତନ୍ତ୍ର ଜାହାଜ ନିର୍ମାଣ କର୍ମଶାଳାରେ ତିଆରି କରାଯାଉଥିଲା । ଉଭୟ ପବନ ଓ ସ୍ରୋତ ସମ୍ବନ୍ଧରେ ଆବଶ୍ୟକ ଜ୍ଞାନ ବିନା ଜାହାଜ ଚାଳନା କଷ୍ଟକର ଥିଲା । ବିଶେଷକରି ଦକ୍ଷିଣ ପଶ୍ଚିମ ମୌସୁମୀବାୟୁ ଏବଂ ନକ୍ଷତ୍ରମାନଙ୍କର ଅବସ୍ଥାନକୁ ଅନୁଶୀଳନ କରି ନୌଯାତ୍ରା ଆରମ୍ଭ କରାଯାଉଥିଲା । ନୌବାଣିଜ୍ୟରେ ଅଭିବୃଦ୍ଧି ହେବା ଯୋଗୁଁ ଜ୍ୟୋତିର୍ବିଜ୍ଞାନରେ ମଧ୍ୟ ଜ୍ଞାନ ବୃଦ୍ଧି ପାଇଥିଲା ।

## ଜଳବାୟୁ ଏବଂ କୃଷି

ଭାରତରେ କୃଷି ଓ ଜଳବାୟୁର ଅବସ୍ଥା ମୌସୁମୀବାୟୁ ଉପରେ ନିର୍ଭର କରେ । ଜୁନ୍ ଓ ସେପ୍ଟେମ୍ବର ମଧ୍ୟରେ ଦକ୍ଷିଣ-ପଶ୍ଚିମ ମୌସୁମୀବାୟୁ ଆରବ ସାଗର ପାରିହୋଇ ଭାରତ ଉପର ଦେଇ ପ୍ରବାହିତ ହୋଇଥାଏ । ଡିସେମ୍ବରରୁ ଫେବୃଆରୀ ମାସ ମଧ୍ୟରେ ସ୍ୱଳ୍ପ ଅବଧି ପାଇଁ ଉତ୍ତର-ପୂର୍ବ ମୌସୁମୀ ବିପରୀତ ଦିଗରୁ ବହିଥାଏ, ଯାହାର ପ୍ରଭାବ ଉତ୍ତର-ପୂର୍ବାଞ୍ଚଳ ଓ ଉପଦ୍ୱୀପ ଉପରେ ଦେଖିବାକୁ ମିଳେ । ଏହି କାରଣରୁ ଉତ୍ତର-ପୂର୍ବାଞ୍ଚଳ, ବଙ୍ଗ, ଓଡ଼ିଶା ଏବଂ କେରଳରେ ଜଳବାୟୁରେ ଆର୍ଦ୍ରତା ରହେ; ଭୀଷଣ ବର୍ଷା ହୁଏ ଏବଂ ଘଞ୍ଚ ଜଙ୍ଗଲ ସୃଷ୍ଟି ହୁଏ । ଏହାର ବିପରୀତ, ଦାକ୍ଷିଣାତ୍ୟ ମାଳ ଅଞ୍ଚଳର କିଛି ଅଂଶ ଏବଂ ରାଜସ୍ଥାନ ବର୍ଷର ଅଧିକାଂଶ ସମୟ ଅର୍ଦ୍ଧ-ଶୁଷ୍କ ଅବସ୍ଥାରେ ରହିଥାଏ । ଜଳବାୟୁ ଓ ବୃଷ୍ଟିପାତ ଅନୁସାରେ ଆଞ୍ଚଳିକ ବିବିଧତା ଦେଖିବାକୁ ମିଳେ । ମଧ୍ୟ-ଏସିଆରୁ ପ୍ରବାହିତ ହେଉଥିବା ଭୀଷଣ ଶୀତଳହରୀ ହିମାଳୟ ପର୍ବତ ଯୋଗୁଁ ବାଧାପ୍ରାପ୍ତ ହୋଇ ଭାରତରେ ପ୍ରବେଶ କରିପାରେ ନାହିଁ । ହିମାଳୟ ଯୋଗୁଁ ମୌସୁମୀବାୟୁ ବାଧା ପାଇ ଫେରିଆସେ ।

ପାଣିପାଗର ପରିବର୍ତ୍ତନ କୃଷି ଉତ୍ପାଦନକୁ ଅନେକ ମାତ୍ରାରେ ପ୍ରଭାବିତ କରିଥାଏ । ମାତ୍ର ତଥ୍ୟଗତ ପ୍ରମାଣ ଅଭାବରୁ ଉକ୍ତ ପରିବର୍ତ୍ତନକୁ ନିର୍ଦ୍ଧାରଣ କରିବା ସମ୍ଭବ ହୋଇପାରି ନାହିଁ । ବୃକ୍ଷଲତାର ଅବଶେଷ ଓ ଖୋଦନରୁ ପ୍ରାପ୍ତ ମୃତ୍ତିକାକୁ ଅନୁଶୀଳନ କଲେ ଜଣାଯାଏ ଯେ, ହରପ୍ପା ପରବର୍ତ୍ତୀ କାଳରେ ଉତ୍ତର ପଶ୍ଚିମ ଭାରତରେ ଶୁଷ୍କତା ବୃଦ୍ଧି ପାଇଥିଲା । ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ଜଳବାୟୁରେ ମଧ୍ୟ ପରିବର୍ତ୍ତନ ହୋଇଥିବ ବୋଲି ଅନୁମାନ କରାଯାଏ ।

ଜଳବାୟୁ ଏବଂ ପରିବେଶଗତ ବିବିଧତା ଉପରେ ଜନବସତିର ଧାରା ଏବଂ ଗୃହୋପଯୋଗୀ ସ୍ଥାପତ୍ୟ ନିର୍ଭର କରେ । ଅନ୍ୟାନ୍ୟ ଧରଣର ସ୍ଥାପତ୍ୟର ସ୍ୱରୂପକୁ ମଧ୍ୟ ଏହା ପ୍ରଭାବିତ କରେ । ଗୋଟାଏ କିସମର ଗାଁ ବସେ, ଯେଉଁଠି ଘରଗୁଡ଼ିକ ଲଗାଲଗି ହୋଇ ରହିଥାଆନ୍ତି; ପଛକୁ କୃଷି ଜମି ଓ ତା' ପଛକୁ ଚାରଣଭୂମି ରହିଥାଏ । ଯେଉଁଠି ଜଳବାୟୁ ଶୁଷ୍କ, ସେହି କ୍ଷେତ୍ରରେ ପ୍ରାୟ ଏହି ଧରଣର ଜନବସତି ଗଢ଼ିଉଠିବାର ଦେଖାଯାଏ । ଯେଉଁଠି ଜଳବାୟୁ ଆର୍ଦ୍ର ଏବଂ ଧାନଚାଷ ପାଇଁ ଉପଯୁକ୍ତ, ସେଠାରେ ଘରଗୁଡ଼ିକ ଏମିତି ତିଆରି ହୋଇଥାଏ, ଯାହାଦ୍ୱାରା ଗାଁ ଲମ୍ବା ଜଣାପଡ଼େ । ଉଦାହରଣସ୍ୱରୂପ, ପୂର୍ବ ଓ ଦକ୍ଷିଣ ଭାରତ । ବାଉଁଶର ବିମ୍ ଦିଆଯାଏ ଏବଂ ଛଣ ପୁଆଳରେ ଘର ଛପର ହୁଏ କିମ୍ବା ଗଛର ଖମ୍ବ ପୋତି ଗୁଳ୍ମଲତା ଉପରେ ମାଟିର ଲେପ ଦିଆଯାଏ, ଯାହାକି ଘରର କାନ୍ଥ ହୁଏ । ସବୁଠାରୁ ସହଜିଆ କୁଡ଼ିଆ ଗୋଲାକାର, ଚତୁଷ୍କୋଣ କିମ୍ବା ବର୍ଗାକାରର ହୋଇଥାଏ । ଧୀରେ ଧୀରେ ସହରରେ ଘର ତିଆରିରେ ଝାଟିମାଟି ଏବଂ ବାଉଁଶ ପରିବର୍ତ୍ତେ ଗଛର ବ୍ୟବହାର ହେଲା । ସାମର୍ଥ୍ୟବାନ୍ ଲୋକ କଞ୍ଚା ଇଟାର ବ୍ୟବହାର କଲେ । ଅଧିକ ଧନୀ ଲୋକ କ୍ରମେ ପୋଡ଼ାଇଟା ବ୍ୟବହାର କଲେ । ଅନେକ ସମୟ ଧରି ଗୃହ ନିର୍ମାଣବେଳେ ବାରଣ୍ଡାର ଚାରିକଡ଼େ କୋଠରି କେତୋଟି ନିର୍ମାଣ ପାଇଁ ଯୋଜନା ରହୁଥିଲା । ଏହା ଥିଲା ସମତଳ କ୍ଷେତ୍ରର ମାନକ ସ୍ଥାପତ୍ୟ । ରାଜପ୍ରାସାଦ ଓ ମନ୍ଦିରଗୁଡ଼ିକ ଦୀର୍ଘସ୍ଥାୟୀ ହେବେ ବୋଲି ପଥରରେ ନିର୍ମିତ ହେଉଥିଲା । ଜଳବାୟୁ ଅନୁସାରେ ଘରର ଛାତ ମଧ୍ୟ ବଦଳି ଯାଉଥିଲା । ସମତଳ ଛାତରୁ ଯାଇ ଢାଲୁ ଛାତ ହେଲା; ଘାସ ପୁଆଳରୁ ଖପରର ବ୍ୟବହାର ହେଲା । ପୁଣି କାଠର ସିଲିଂ ତିଆରି କରାଗଲା । କ୍ରମେ କାହିଁ କେଉଁଠି ପଥରକୁ ଛାତରେ ବ୍ୟବହାର କରାଗଲା; ପୁଣି ଆସିଲା ସମତଳ ସିଲିଂ । ମନ୍ଦିର ପରି ବିଲ୍‌ଡିଂ ଯେଉଁଠି ନିର୍ମାଣର ଉଚ୍ଚତା ଅଧିକ ସେଠାରେ ଭାର ସମ୍ଭାଳିବା ପାଇଁ ପଥରର ଠେକ ଦିଆଗଲା ।

ଜଳବାୟୁ ଅନୁସାରେ ଭାରତରେ ଅସଂଖ୍ୟ ପ୍ରକାରର ଗଛଲତା ମଧ୍ୟ ଜନ୍ମ ନେଲେ । ଜଙ୍ଗଲ ମଧ୍ୟରେ ପାଇନ୍, ସବୁଜ ଝାଉଁଗଛର ଜଙ୍ଗଲ, ଉଷ୍ଣମଣ୍ଡଳୀୟ ଗଛର ଜଙ୍ଗଲ ଏବଂ କେତେକ ଆର୍ଦ୍ର ଅଞ୍ଚଳରେ ବ୍ୟାପକ ବର୍ଷାରଣ୍ୟ ଆଦି ପ୍ରଧାନ । ସିନ୍ଧୁ କ୍ଷେତ୍ରର ଝରାପତ୍ରର ଜଙ୍ଗଲ ଗାଙ୍ଗେୟ କ୍ଷେତ୍ରର ଘନ ଅରଣ୍ୟଠାରୁ ପୃଥକ୍ ଅଟେ । ଶାଳ କାଠ ତା'ର ମଜବୁତି ପାଇଁ, ଏବୋନି କାଠ ତା'ର ରଙ୍ଗ ପାଇଁ ଏବଂ ଚନ୍ଦନ କାଠ ତା'ର ସୁଗନ୍ଧ ପାଇଁ ପ୍ରସିଦ୍ଧ । ଶୁଖିଲା କ୍ଷେତ୍ରରେ ସବୁଜ ଘାସ, ଗୁଳ୍ମ ଏବଂ ମୋଟା ଘାସ ପ୍ରଚୁର ପରିମାଣରେ ଉପଲବ୍ଧ ହୋଇଥାଏ । ଯଦି ହିମାଳୟର ନିମ୍ନ ଭାଗରେ ଉଚ୍ଚ ଗଛର ଜଙ୍ଗଲ ଅଛି ତ ରାଜସ୍ଥାନରେ ରହିଛି ମରୁଭୂମି ଏବଂ ମଧ୍ୟ-ଅଧିତ୍ୟକାର ବିଶାଳ ପାହାଡ଼ିଆ କ୍ଷେତ୍ରରେ ବାଲୁକା ପାହାଡ଼

ରହିଛି । ସିନ୍ଧୁ, ଗଙ୍ଗା ଓ ମହାନଦୀର ନଦୀମୁହାଣରେ ଅନେକ ମେନଗ୍ରୋଭ ହେନ୍ତାଳବଣ ଦେଖିବାକୁ ମିଳେ । ଆଣ୍ଡାମାନ ଦ୍ୱୀପପୁଞ୍ଜରେ ବି ଖୁବ୍ ମେନଗ୍ରୋଭ ହେନ୍ତାଳବଣ ରହିଛି ।

ଜଳବାୟୁ ଅନୁସାରେ କୃଷିଜାତ ଉତ୍ପାଦନ ହୁଏ । ଏଥିପାଇଁ ବୀଜ ବୁଣା ଓ ଅମଳ କରିବାର ପ୍ରକୃଷ୍ଟ ସମୟ ସମ୍ବନ୍ଧରେ ଜ୍ଞାନର ଆବଶ୍ୟକ ପଡ଼େ । ସ୍ଥାନୀୟ ବ୍ରାହ୍ମଣମାନେ ଚନ୍ଦ୍ର ଓ ସୂର୍ଯ୍ୟର ସ୍ଥିତିକୁ ଅନୁମାନ କରି ବାର୍ଷିକ କ୍ୟାଲେଣ୍ଡର ବା ପଞ୍ଜିକା ପ୍ରସ୍ତୁତ କରନ୍ତି, ଯାହା ବୀଜବପନ, ଅମଳ ଆଦି ସମ୍ପର୍କରେ ବିସ୍ତୃତ ସୂଚନା ଦିଏ । କୃଷି କ୍ୟାଲେଣ୍ଡର ଓ ଚନ୍ଦ୍ର କ୍ୟାଲେଣ୍ଡରର ଆଧାରରେ ସ୍ଥାନୀୟ ପର୍ବପର୍ବାଣିର ଦିନ ଧାର୍ଯ୍ୟ ହୁଏ । ଆରମ୍ଭରେ ସମୟକୁ ସତାଇଶଟି ନକ୍ଷତ୍ରପୁଞ୍ଜ ସହିତ ଯୋଡ଼ି ତିଥିବାର ଧାର୍ଯ୍ୟ କରାଯାଉଥିଲା । ପରେ ଚାନ୍ଦ୍ରାୟଣ ଅନୁସାରେ ମାସର ଦିନଗୁଡ଼ିକ ସ୍ଥିର ହେଲା । ତା'ପରେ ଏହା ସହିତ ସୂର୍ଯ୍ୟାୟଣକୁ ଯୋଡ଼ି ସମଦିବାରାତ୍ରି ଦିନ ଏବଂ ଅୟନାନ୍ତ ଦିନ ଧାର୍ଯ୍ୟ କରାଗଲା । ଏସବୁ ସୂଚନାକୁ ସମନ୍ୱିତ କରାଯିବା ଦ୍ୱାରା କୃଷକକୁ କୃଷିରେ ସୁବିଧା ହେଲା । ଏହି କାରଣରୁ କେତେକ ମାତ୍ରାରେ ସେ ପଞ୍ଜିକା ପ୍ରସ୍ତୁତ କରୁଥିବା ବ୍ରାହ୍ମଣ ଉପରେ ନିର୍ଭରଶୀଳ ହେଲା । ତା'ଛଡ଼ା, ମାଟିର କିସମ, ବିହନ ଓ ଜଳସେଚନର ସୁବିଧା ଉପରେ ମଧ୍ୟ ସେ ନିର୍ଭର କରି ରହୁଥିଲା ।

ମୃତ୍ତିକାର ଗୁଣ ତା'ର ପ୍ରାକୃତିକ ଉପାଦାନ, ଜଳ ଧାରଣର କ୍ଷମତା ଏବଂ ହଳ କରିବା ଉପରେ ନିର୍ଭର କରୁଥିଲା । ସବୁ ଅଞ୍ଚଳରେ ମୃତ୍ତିକା ସମାନ ଧରଣର ନ ଥିଲା । ପଟୁମାଟି, କୃଷ୍ଣ-କାର୍ପାସ ମୃତ୍ତିକା, ଲୋହିତ ମୃତ୍ତିକା ଏବଂ ମସୃଣ ମୃତ୍ତିକା ଆଦି କିସମ କିସମର ମୃତ୍ତିକା ଭାରତରେ ଦେଖିବାକୁ ମିଳେ । କୃଷି ଇତିହାସ ସମ୍ବନ୍ଧରେ କୌଣସି ସାଧାରଣ ସତ୍ୟରେ ଉପନୀତ ହେବା ପୂର୍ବରୁ ଏହିସବୁ ବିବିଧତାକୁ ଅନୁଶୀଳନ କରିବାକୁ ହେବ । କୁହାଯାଏ, କୃଷି ଇତିହାସ ଗବେଷଣା ପାଇଁ ଅନ୍ୟାନ୍ୟ ସାମଗ୍ରୀ ମଧ୍ୟରେ ଗବେଷକ ନିମିତ୍ତ ଗ୍ରାମ୍ୟପଥରେ ଚାଲିବା ଯୋଗ୍ୟ ମଜବୁତ ଜୋତାର ଖୁବ୍ ଆବଶ୍ୟକ ରହିଥାଏ । ଅନେକ କ୍ଷେତ୍ରରେ ବନ୍ୟାଦ୍ୱାରା ଆନୀତ ପଟୁମାଟି ନଦୀ ପାଖରେ ଜମା ହୋଇ ରହିଯାଇଥାଏ । କୃଷିକାରୀ ସମୁଦାୟ କୃଷି ପାଇଁ ଏହି କ୍ଷେତ୍ରକୁ ପସନ୍ଦ କରନ୍ତି, ଯଦିଓ ସେଠାରେ ଅନ୍ୟାନ୍ୟ ଅସୁବିଧା ସବୁ ଥାଏ । ଯେଉଁ ଜନବସତି ଅଧିକ ସୁଦୃଢ଼, ତାହା ମାଳ ଅଞ୍ଚଳକୁ ବିସ୍ତାରିତ ହୋଇଯାଇଥାଏ । ଯେଉଁଠି ଉପର ମାଟି ତଳେ ଭଲ ମୃତ୍ତିକା ରହିଥାଏ, ତାକୁ ଗଭୀର କର୍ଷଣର ଆବଶ୍ୟକତା ପଡ଼େ । ଏହି ପ୍ରସଙ୍ଗକୁ ନେଇ ଐତିହାସିକମାନଙ୍କ ମଧ୍ୟରେ ଏକ ବିତର୍କ ଚାଲେ – ଲୁହା ଲଙ୍ଗଳର ବ୍ୟବହାର କେବେ ଆରମ୍ଭ ହେଲା, କେତେ ବ୍ୟାପକ ଥିଲା ତା'ର ବ୍ୟବହାର ଏବଂ କ'ଣ ହେଲା ତା'ର ଐତିହାସିକ ପରିଣତି । ଦକ୍ଷିଣ ଭାରତର ଅନେକ ଅଞ୍ଚଳରେ କାଷ୍ଠ ନିର୍ମିତ ଲଙ୍ଗଳ ଧାର ବା କଷନା ବ୍ୟବହୃତ ହେଉଥିଲା, ଯାହା ଏହି ବିତର୍କକୁ ଏକ ଉତ୍ସାହପ୍ରଦ ପ୍ରତିତର୍କ ପ୍ରଦାନ କରେ ।

ଉତ୍ତର-ପଶ୍ଚିମାଞ୍ଚଳରେ କୃଷି ଥିଲା ବର୍ଷାଜଳ ଆଶ୍ରିତ; ଗହମ ଓ ବାର୍ଲି ହେଲା ସେଠାକାର ମୁଖ୍ୟ ଫସଲ । ଯେଉଁ ଜମି ଶୁଷ୍କ, ଯେମିତି ଉପଦ୍ୱୀପର କେତେକ ଅଂଶ, ସେଠି ବିଭିନ୍ନ କିସମର ମାଣ୍ଡିଆ ଚାଷ କରାଯାଉଥିଲା । ଗାଙ୍ଗେୟ ସମତଳ କ୍ଷେତ୍ର ଏବଂ ପୂର୍ବ ଭାରତରେ ମୁଖ୍ୟତଃ ଧାନଚାଷ କରାଯାଉଥିଲା । ଉପଦ୍ୱୀପର ଉପତ୍ୟକା କ୍ଷେତ୍ରରେ ଏବଂ ଉପକୂଳ ଅଞ୍ଚଳରେ ମଧ୍ୟ ଧାନ ହେଲା ମୁଖ୍ୟ ଫସଲ । ଅନ୍ୟ ଫସଲ ଅପେକ୍ଷା ଧାନରେ ଉତ୍ପାଦନର ମାତ୍ରା ଅଧିକ । ଏକ ଜଟିଳ ସମାଜ ବ୍ୟବସ୍ଥାରେ ଅନେକ ବିନା କୃଷି କରି ଜୀବିକା ନିର୍ବାହ କରନ୍ତି । ସେମାନଙ୍କ ଚଳଣି ପାଇଁ ଧାନରୁ ଉତ୍ପାଦନ ଅଧିକ ହେଲେ ଦୀର୍ଘ ସମୟ ପର୍ଯ୍ୟନ୍ତ ସମାଜରେ ତିଷ୍ଠି ରହିବା ସମ୍ଭବପର ହୁଏ । ଶୁଷ୍କ ଅଞ୍ଚଳ ଗୋପାଳନ ପାଇଁ ଭାରି ଉପଯୋଗୀ ସିଦ୍ଧ ହୁଏ । ଆର୍ଦ୍ର ଅଞ୍ଚଳରେ ମଇଁଷି ପାଳନ ପ୍ରଗତି କଲା । କୃଷି ପ୍ରକ୍ରିୟା ଆରମ୍ଭ ହେଲା ପୋଡୁଚାଷରୁ । ତା'ପରେ ହଳରେ ଜମି କର୍ଷଣ କରାଗଲା । ପୋଡୁଚାଷ ବା ଝୁମିଂ କେତେକ ସ୍ଥାନରେ ମୂଳ ଜଙ୍ଗଲକୁ ଧ୍ୱଂସ କରିଦେଇଛି । ତା' ସ୍ଥାନରେ କେବଳ ମଧ୍ୟମ ସ୍ତରର ଜଙ୍ଗଲ ରହିଛି । ପୋଡୁଚାଷର ଉତ୍ପାଦନରୁ ଖାଇବା ପାଇଁ ଅନ୍ନ ଉପଲବ୍ଧ ହେବ । ମାତ୍ର ଉତ୍ପାଦନ ଯଥେଷ୍ଟ ହୋଇ ନ ଥିବାରୁ ତା ବାହାରେ କିଛି କରିବା ସମ୍ଭବ ହେବ ନାହିଁ । ପୋଡୁଚାଷରେ କୃଷି ଜମିକୁ ବଦଳ କରାଯାଏ; ଜନବସତି ବଦଳେ ନାହିଁ । ମାତ୍ର ପୋଡୁଚାଷରେ ନିର୍ଭରଶୀଳ ଲୋକ ସାଧାରଣତଃ ସ୍ଥାୟୀ ଜନବସତି ପ୍ରତିଷ୍ଠା କରିପାରନ୍ତି ନାହିଁ । ଏହାର ଏକ ବଡ଼ ଉଦାହରଣ ହେବ ଉତ୍ତର-ପୂର୍ବାଞ୍ଚଳରେ ପୋଡୁଚାଷ କ୍ଷେତ୍ର, ଯେଉଁଠି ଜନବସତି ଏବେ ମଧ୍ୟ ଅସ୍ଥାୟୀ । ଭାରତରେ ଜଙ୍ଗଲ ସଫାକରି ସ୍ଥାୟୀ କୃଷିଯୋଗ୍ୟ ଜମି ପ୍ରସ୍ତୁତ କରିବା ଏବଂ କୃଷିଜମିର ପରିମାଣକୁ ବୃଦ୍ଧି କରିବା ହେଲା ଏକ ନିରନ୍ତର ପ୍ରକ୍ରିୟା । ମାତ୍ର ମୌର୍ଯ୍ୟକାଳ ଏବଂ ଉତ୍ତର ମୌର୍ଯ୍ୟକାଳର ରାଜନୈତିକ ଅର୍ଥବ୍ୟବସ୍ଥା ସମ୍ବନ୍ଧରେ ଚର୍ଚ୍ଚା କରିଥିବା କୌଟିଲ୍ୟ ଲିଖିତ 'ଅର୍ଥଶାସ୍ତ୍ର' ଏହି କୃଷି ପ୍ରକ୍ରିୟା ଉପରେ ଅଧିକରୁ ଅଧିକ ନିୟନ୍ତ୍ରଣ ରଖିବାକୁ ରାଜ୍ୟକୁ ପରାମର୍ଶ ଦିଏ । କୃଷିରେ ଅଭିବୃଦ୍ଧି ଘଟିଲେ ଉତ୍ପାଦନ ବୃଦ୍ଧି ହେବ ଏବଂ କୃଷିକାର୍ଯ୍ୟ ପାଇଁ ଜମିର ଅଧିକ ଶୋଷଣ ହେବ । ସେହି ଉତ୍ପାଦନ ଉପରେ ରାଜ୍ୟର ନିୟନ୍ତ୍ରଣ ରହିବା କଥା ତଥା ଜମିର ମାତ୍ରାଧିକ ଶୋଷଣ ନ ହେବା କଥା ବୋଲି 'ଅର୍ଥଶାସ୍ତ୍ର' ପରାମର୍ଶ ଦିଏ । ଜନସଂଖ୍ୟା ଯେତେବେଳ ପର୍ଯ୍ୟନ୍ତ ଅଧିକ ନୁହେଁ ସେତେବେଳ ପର୍ଯ୍ୟନ୍ତ ଜଙ୍ଗଲର କ୍ଷୟକ୍ଷତିର ପରିମାଣ ଅସୀମ ହେବ ନାହିଁ । ମାତ୍ର ପରିତାପର ବିଷୟ ଯେ ନିରନ୍ତର ଏବଂ ବ୍ୟାପକ ନିର୍ବନୀକରଣ ଯୋଗୁଁ ଆଜିକାଲି ଅରଣ୍ୟର ପରିମାଣ ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛି ।

ଜଳସେଚନ ବ୍ୟବସ୍ଥା ସବୁଆଡ଼େ ଏକା ରକମର ନ ଥିଲା । ଏହା ପ୍ରକୃତି ଏବଂ ଜଳସେଚନ କାର୍ଯ୍ୟର ନିୟନ୍ତ୍ରଣ ଉପରେ ନିର୍ଭରଶୀଳ ଥିଲା । ବ୍ୟାପକ କୃଷି ପାଇଁ ନିୟମିତ

ଜଳଯୋଗାଣର ଆବଶ୍ୟକତା ରହୁଥିଲା । ତା'ର ପରିପୂରଣ ପାଇଁ ସରଳରୁ ଜଟିଳ ଯାଏଁ ସବୁ କିସମର ଜଳସେଚନ ବ୍ୟବସ୍ଥା ରହିଥିଲା । ନଦୀଜଳକୁ କେନାଲ ମାଧ୍ୟମରେ ଜଳସେଚନ ନିମିତ୍ତ ବ୍ୟବହାର କରାଯାଉଥିଲା; ଚକରେ ଜଳପାତ୍ରମାନ ସଂଲଗ୍ନ କରି କୂଅରୁ ପାଣି କଢ଼ାଯାଉଥିଲା; ଉଭୟ କୂଅ ଓ ନଦୀର ପାଣି କଢ଼ାହୋଇ ଜଳସେଚନ କରାଯାଉଥିଲା; ପାରସ୍ୟ-ଚକ ନାମକ ଏକ ପ୍ରଣାଳୀରେ ଗିଅର ଦ୍ୱାରା ବି ପାଣି ନିଆଯାଉଥିଲା; ପାର୍ବତ୍ୟ ଝରଣାରୁ କେନାଲରେ ପାଣି ନେଇ ମାଳ ଜମିରେ କୃଷି କରାଯାଉଥିଲା; ସାନ ଗାଡ଼ିଆ, ବନ୍ଧ, ଜଳଭଣ୍ଡାର, କେନାଲ, ଆନିକଟ ଆଦିକୁ ମଧ୍ୟ ଜଳସେଚନ ପାଇଁ ବ୍ୟବହାର କରାଯାଉଥିଲା । କେଉଁ ଜଳସେଚନ ବ୍ୟବସ୍ଥା କେଉଁ ନିର୍ଦ୍ଦିଷ୍ଟ ଜମିରେ ଉପଯୋଗୀ ହେବ ତାହା ସେଠାକାର ପ୍ରାକୃତିକ ପରିବେଶ, କୃଷିଜମିର ମୋଟ ପରିମାଣ ଏବଂ ବ୍ୟବସ୍ଥା ପ୍ରଦାନ କରିବାକୁ ଉଦ୍ୟମ କରୁଥିବା ବ୍ୟକ୍ତି ବା ଅନୁଷ୍ଠାନ ଉପରେ ନିର୍ଭର କରୁଥିଲା । ଗୋଟାଏ ମତ ଅନୁଯାୟୀ, ଜଳ ସଂସାଧନ ପାଇଁ ଆବଶ୍ୟକ ଯନ୍ତ୍ରପାତି ରାଜ୍ୟର ଅମଲାତନ୍ତ୍ରର ନିୟନ୍ତ୍ରଣରେ ଥିଲା । ଫଳରେ କୃଷକ ଜଳ ସଂସାଧନର ସୁବିଧା ପାଇବା ପାଇଁ ଅମଲାତନ୍ତ୍ରର ଦୟା ଉପରେ ନିର୍ଭରଶୀଳ ଥିଲା; ଏହି କାରଣରୁ ଭାରତରେ ନିରଙ୍କୁଶ ଶାସନର ବିକାଶ ଘଟିଥିଲା । ପ୍ରାକ୍ ଆଧୁନିକ ଭାରତର ଏହାକୁ ଏକ ବିଶିଷ୍ଟ ଲକ୍ଷଣ ବୋଲି ଦର୍ଶାଯାଏ । ମାତ୍ର ଏହି ମତ ତ୍ରୁଟିପୂର୍ଣ୍ଣ ବୋଲି ସିଦ୍ଧ ହୋଇସାରିଛି । ରାଜନିୟନ୍ତ୍ରଣାଧୀନ ଜଳସେଚନ ବ୍ୟବସ୍ଥା, ଯଥା- ବଡ଼ ବନ୍ଧ, ଡ୍ୟାମ୍ ବା ଆନିକଟ, ସଂଖ୍ୟାରେ ଥିଲା ଖୁବ୍ ସୀମିତ । ପୁଣି ଏଭଳି ବୃହଦ୍ ଜଳସେଚନ ବ୍ୟବସ୍ଥାଗୁଡ଼ିକ ମଧ୍ୟରେ ଦୂରତା ଥିଲା ଖୁବ୍ ଅଧିକ । ଅଧିକାଂଶ ଜଳସେଚନ ବ୍ୟବସ୍ଥା ଜମିମାଲିକ ଓ ଧନୀ କୃଷକମାନଙ୍କ ଉଦ୍ୟମରେ କିମ୍ବା ଗ୍ରାମ୍ୟସମାଜର ସହଯୋଗରେ କାର୍ଯ୍ୟକାରୀ ହୋଇପାରିଥିଲା । ମୌସୁମୀ ପ୍ରବାହ ଫେଲ୍ ମାରିଲେ ମରୁଡ଼ି ହେଉଥିଲା । ତେଣୁ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଦୁର୍ଭିକ୍ଷର ମଧ୍ୟ ଉଲ୍ଲେଖ ରହିଛି । ମାତ୍ର ତା'ଠାରୁ ବଡ଼ ପ୍ରାକୃତିକ ବିପଦ ଥିଲା ନଦୀମାନଙ୍କର ପଥ ପରିବର୍ତ୍ତନ ଓ ବନ୍ୟା । ଭୂମିକମ୍ପ କିମ୍ବା ଦୁର୍ଭିକ୍ଷଠାରୁ ଏହା କମ୍ ବିପଜ୍ଜନକ ନ ଥିଲା । ପ୍ରାକୃତିକ ଦୁର୍ବିପାକକୁ ସମ୍ମୁଖୀନ ହେବାପାଇଁ କୃଷକ କ୍ଷୁଦ୍ର ଜଳସେଚନ ବ୍ୟବସ୍ଥା କରିବାକୁ ଉଦ୍ୟମ କରୁଥିଲା ।

## ଜନସଂଖ୍ୟା

କେଉଁ କାମ ପାଇଁ କେତେସଂଖ୍ୟକ ଲୋକ କାର୍ଯ୍ୟ କରୁଥିଲେ ? ଅତୀତ ଭାରତରେ ଏଭଳି ଏକ ପ୍ରଶ୍ନର ଉତ୍ତର ଖୋଜିବା ଖୁବ୍ ପ୍ରହେଳିକାମୟ ମନେହୁଏ । ପ୍ରାକୃତିକ ପରିବେଶ, ଜଳବାୟୁ ଏବଂ ଫସଲର ଯେଉଁ ବିବିଧତା, ତା' ଯୋଗୁଁ ଏକ ସଠିକ୍ ସଂଖ୍ୟା ନିର୍ଦ୍ଧାରଣ

କରିବା ସମସ୍ୟା ହୋଇପଡ଼େ । ପରବର୍ତ୍ତୀ ସମୟରେ କାର୍ଯ୍ୟରେ ନିୟୋଜିତ ଲୋକଙ୍କର ମୋଟ ସଂଖ୍ୟା ଯେତେ, ତା'ଠାରୁ ପୂର୍ବବର୍ତ୍ତୀ ସମୟରେ ନିହାତି କମ୍‌ସଂଖ୍ୟକ ଲୋକ କାର୍ଯ୍ୟରେ ନିୟୋଜିତ ହୋଇଥିବେ । ପୁଣି ମହାମାରୀ, ଯୁଦ୍ଧ ଏବଂ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ଏହି ସଂଖ୍ୟାରେ ନିରନ୍ତର ପରିବର୍ତ୍ତନ ଘଟୁଥିବ । ପ୍ରତ୍ନତାତ୍ତ୍ୱିକ ଖନନ ଆଧାରରେ ଜନବସତି ଏବଂ ମୋଟ ଜନସଂଖ୍ୟା ଆଦି ପ୍ରଶ୍ନକୁ ନେଇ କେତେକ ସର୍ଭେ ହୋଇଛି, ମାତ୍ର ଗବେଷଣାର ଫଳ ନିର୍ଣ୍ଣାୟକ ହୋଇପାରି ନାହିଁ । ହରପ୍ପା ସଂସ୍କୃତିର ନଗରୀମାନଙ୍କରେ ନଗରୀର ଆକାର ଆଧାରରେ ମୋଟାମୋଟି ଜନସଂଖ୍ୟା ସମ୍ବନ୍ଧରେ ଅନୁମାନମାନ କରାଯାଇଛି । ହେଲେ, ମୋଟ ଜନସଂଖ୍ୟାକୁ ନେଇ ଐତିହାସିକମାନେ ଏକମତ ନୁହନ୍ତି । ମହେଞ୍ଜୋଦାରୋ ସହରର ତଳି ଅଞ୍ଚଳ ସମ୍ଭ୍ରାନ୍ତ ବସତି, 'ସିଟାଡେଲ' ବା ଗଡ଼ ଅଞ୍ଚଳ ତୁଳନାରେ ଅଧିକ ଜନବହୁଳ ଥିଲା । କେତେକଙ୍କ ମତରେ, ସେହି ସହରତଳି ଅଞ୍ଚଳରେ ପ୍ରାୟ 42,000 ଲୋକଙ୍କର ବସତି ଥିଲା । ମାତ୍ର ଅନ୍ୟମାନେ ଏହି ସଂଖ୍ୟାକୁ ପ୍ରକୃତ ସଂଖ୍ୟା ତୁଳନାରେ ଅତ୍ୟନ୍ତ କମ୍ ବୋଲି ମନେକରନ୍ତି ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଭାରତ ଉପମହାଦେଶର ମୋଟ ଜନସଂଖ୍ୟା ପ୍ରାୟ ୧୪ କୋଟି ଥିଲା ବୋଲି ଅନୁମାନ କରାଯାଇଛି । ମାତ୍ର ଏହି ସଂଖ୍ୟାକୁ ନିଶ୍ଚିତରୂପେ ଅତିଶୟୋକ୍ତି କୁହାଯିବ । ଗ୍ରୀକ୍ ସୂତ୍ରସାମଗ୍ରୀ ଆଧାରରେ ମୌର୍ଯ୍ୟ ସେନାର ମୋଟ ସଂଖ୍ୟାକୁ ଅନୁମାନ କରି ଏହି ଆନୁମାନିକ ଜନସଂଖ୍ୟା ବାହାର କରାଯାଇଛି । ମାତ୍ର ଗ୍ରୀକ୍ ବିବରଣୀ ହିଁ ଅତିରଞ୍ଜନରୁ ମୁକ୍ତ ନୁହେଁ, କାରଣ ବିବରଣୀର ଉଦ୍ଦେଶ୍ୟ ଥିଲା ଆଲେକ୍‌ଜାଣ୍ଡାରଙ୍କ ଶକ୍ତିକୁ ପରିଦର୍ଶିତ କରିବା । ଆଲେକ୍‌ଜାଣ୍ଡାର ଯୁଦ୍ଧ ଅଭିଯାନ ଯଦି ଅବ୍ୟାହତ ରଖିଥାନ୍ତେ, ତାଙ୍କୁ ଏକ ବିଶାଳ ସେନାକୁ ଗାଙ୍ଗେୟ ସମତଳ କ୍ଷେତ୍ରରେ ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା ବୋଲି ଏହି ବିବରଣୀ ସିଦ୍ଧ କରେ । ଏହି ନିକଟରେ ଦୁଇଟି ଜିଲ୍ଲାର ପୁରାତତ୍ତ୍ୱକୁ ଅନୁଶୀଳନ କରି ଜନସଂଖ୍ୟା ସମ୍ବନ୍ଧରେ ଏକ ଆକଳନ କରିବାକୁ ପ୍ରୟାସ କରାଯାଇଛି । ତନ୍ମଧ୍ୟରୁ ଗୋଟାଏ ଜିଲ୍ଲା ହେଲା ପଶ୍ଚିମ ଗାଙ୍ଗେୟ କ୍ଷେତ୍ରର ଏବଂ ଦ୍ୱିତୀୟଟି ହେଲା ଉତ୍ତର-ପଶ୍ଚିମ ମହାରାଷ୍ଟ୍ରର । ଏଥିରେ ଅନୁମାନ କରାଯାଇଥିବା ଜନସଂଖ୍ୟା ପୂର୍ବ ତୁଳନାରେ ଖୁବ୍ କମ୍ । ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗରେ ମୋଟ ଜନସଂଖ୍ୟା ଦୁଇକୋଟି ହୋଇଥିବ ବୋଲି ଅନୁମାନ କରାଯାଇଛି । ଏହି ସମୟରେ କୌଶାମ୍ବୀ ସହରର ଜନସଂଖ୍ୟା ହୋଇଥିବ 36,000 । ମହେଞ୍ଜୋଦାରୋ ସହର ସହିତ ଏହା ଏକ ଉତ୍କୃଷ୍ଟ ଧରଣର ତୁଳନା ହୋଇପାରିବ ବୋଲି ମନେହୁଏ ।

ପୁଣି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ମୋଟ ଜନସଂଖ୍ୟାର ସଂଖ୍ୟା ପରିବର୍ତ୍ତନ ହୋଇଥାଇପାରେ । ଅତୀତ ଭାରତ ଇତିହାସର ଯେଉଁ ଦିଗଟିକୁ ଅନୁଶୀଳନ କରାଯାଇ

ନାହିଁ, ତାହା ହେଲା ରୋଗ ଓ ମହାମାରୀର ପ୍ରକୋପ । ଗୋଟାଏ ମତ ଅନୁସାରେ, ମହେଞ୍ଜୋଦାରୋରେ ଖୁବ୍ ଅଧିକ ସଂଖ୍ୟାରେ ଲୋକ ମୃତ୍ୟୁବରଣ କରୁଥିଲେ ଏବଂ ମୃତ୍ୟୁର ଅନ୍ୟତମ କାରଣ ଥିଲା ମାତ୍ରାଧିକ ରକ୍ତହୀନତା । ବାରମ୍ବାର ବନ୍ୟା ଯୋଗୁଁ ମେଲେରିଆ ଆଦି ରୋଗ ଓ ମହାମାରୀ ବ୍ୟାପୁଥିଲା ବୋଲି ଅନୁମାନ କରାଯାଏ । ଏବେ କୁହାଯାଉଛି ଯେ, ଉଭୟ ଗୃହପାଳିତ ପଶୁ ଓ ମଣିଷ ଗୋଟାଏ ଘରେ ସେତେବେଳେ ରହୁଥିଲେ । ଅର୍ଥାତ୍ ପଶୁମାନଙ୍କ ପାଇଁ ସ୍ୱତନ୍ତ୍ର ଗୁହାଳ ଘରର ବ୍ୟବସ୍ଥା ନ ଥିଲା । ତେଣୁ ରୋଗ ଜୀବାଣୁ ବ୍ୟାପୁଥିଲା ଏବଂ ମହାମାରୀ ଦେଖାଯାଉଥିଲା । ସିନ୍ଧୁ ସଭ୍ୟତାର ପତନ କାଳରେ କେତେକ ସାନ ସହରରେ ଆବଶ୍ୟକତାଠାରୁ ଖୁବ୍ ଅଧିକ ସଂଖ୍ୟାରେ ଲୋକ ବସବାସ କରୁଥିଲେ । ବିଭିନ୍ନ ବିନାଶକାରୀ ରୋଗ ପଛରେ ଏହାକୁ ଏକ ପରିଚିତ କାରଣ ବୋଲି ଗ୍ରହଣ କରାଯାଏ ।

ସପ୍ତଦଶ ଶତାବ୍ଦୀର ଆଦ୍ୟ ଭାଗରେ ମୋଗଲ ସାମ୍ରାଜ୍ୟର ମୋଟ ଜନସଂଖ୍ୟା 15 କୋଟି ଥିଲା ବୋଲି ଅନୁମାନ କରାଯାଏ । 1881 ରେ ହୋଇଥିବା ପ୍ରଥମ ଜନଗଣନା ହିସାବରେ ଭାରତର ମୋଟ ଜନସଂଖ୍ୟା ଥିଲା 25 କୋଟି 30 ଲକ୍ଷ । ଏଥିରୁ ଅନୁମାନ ଯେ, ପ୍ରାୟ ଖ୍ରୀଷ୍ଟପୂର୍ବ 500ରୁ 1500 ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନସଂଖ୍ୟା ସ୍ଥିର ରହି ନ ଥିଲା । କେତେକ ଗବେଷଣାରେ ଜନସଂଖ୍ୟାରେ ସ୍ଥିରତା ରହିଥିବା କଥା ଯୁକ୍ତି କରାଯାଇଛି । ଜନସଂଖ୍ୟା ବୃଦ୍ଧି ଓ ଲୋକଙ୍କର କାର୍ଯ୍ୟକଳାପ ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ରହିଛି । ଆରମ୍ଭ କାଳରେ କମ୍‌ସଂଖ୍ୟକ ଲୋକ ସବୁ କାମରେ ନିୟୋଜିତ ଥାଇପାରନ୍ତି । ଧୀରେ ଧୀରେ ଅଧିକ କାମ ଓ ଅଧିକ ଜନସଂଖ୍ୟା ଯୋଗୁଁ କାର୍ଯ୍ୟକଳାପମାନ ଜଟିଳ ହେବାକୁ ବସିଲା ଏବଂ ଖାଦ୍ୟ ଉତ୍ପାଦନ ସହଜ ହେଲା ।

## ବିଭିନ୍ନ କିସମର ସମାଜ

ପ୍ରାରମ୍ଭରୁ ଭାରତ ନାନା କିସମର ସମାଜ ପାଇଁ ବସତିସ୍ଥଳ ହୋଇ ରହିଆସିଛି । ଏହି ସମାଜ ମଧ୍ୟରେ ଅପେକ୍ଷାକୃତ ସରଳ ସମାଜ ବି ରହିଛି, ଜଟିଳ ସମାଜ ବି ରହିଛି । ଫଳରେ ସେ ନେଇ କୌଣସି ଏକ ସାଧାରଣ ସତ୍ୟରେ ପହଞ୍ଚିବା କଠିନ । ଯେଉଁ ସମାଜ ଜଟିଳ, ତାହା ଅଧିକ କର୍ତ୍ତୃତ୍ୱଶାଳୀ । ଫଳରେ ଇତିହାସରେ ବି ତାହାର ଅଧିକ ମହତ୍ତ୍ୱ ଥାଏ । ଅନ୍ୟଗୁଡ଼ିକ ବାଧ୍ୟ ହୋଇ ମହତ୍ତ୍ୱହୀନ ହୋଇ ରହନ୍ତି, ଯଦିଓ ହଜିଯାଆନ୍ତି ନାହିଁ । ଏହିସବୁ ପରସ୍ପର ବିରୋଧୀ ସାମାଜିକ ସ୍ଥିତିକୁ ସମ୍ମୁଖୀନ ହୋଇ ଭାରତୀୟ ସଂସ୍କୃତିର ଧାରା ନିର୍ମାଣ ହୋଇଛି । ଏହିସବୁ ସମାଜ ହେଲେ ଭାରତର 'ଜୀବନ୍ତ ପ୍ରାକ୍ ଇତିହାସ';

ସମୟକ୍ରମେ ତହିଁରେ ପରିବର୍ତ୍ତନ ଆସିଛି । ତା' ସତ୍ତ୍ୱେ ଇତିହାସ ସେହିସବୁ ସମାଜର ଉପସ୍ଥିତିକୁ ଅଣଦେଖା କରି ନ ପାରେ ।

ପ୍ରାଚୀନ ସମାଜକୁ ବୁଝିବାପାଇଁ ପ୍ରାକ୍-ଆଧୁନିକ ସମାଜକୁ ଅଧ୍ୟୟନ କରୁଥିବା ନୃତତ୍ତ୍ୱବିତ୍‌ମାନେ ଏବଂ ପ୍ରାକ୍-ପୁଞ୍ଜିବାଦୀ ବ୍ୟବସ୍ଥାକୁ ଅନୁଶୀଳନ କରୁଥିବା ବିଦ୍ୱାନ୍‌ମାନେ ବିଶେଷ ସହଯୋଗ କରିଥାନ୍ତି । ଏହିସବୁ ଅଧ୍ୟୟନ ଅତୀତ ସମାଜ ଓ ବର୍ତ୍ତମାନ ମଧ୍ୟରେ ଥିବା ପାର୍ଥକ୍ୟକୁ କେବଳ ବିଶ୍ଳେଷଣ କରିବାକୁ ପ୍ରୟାସ କରେ ନାହିଁ । ତା' ସହିତ ଅତୀତର ସମାଜଗୁଡ଼ିକର ଚରିତ୍ର ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବାକୁ ଐତିହାସିକମାନଙ୍କୁ ପ୍ରୋତ୍ସାହିତ ମଧ୍ୟ କରିଥାଏ । ଅତୀତ ସମାଜର ଯେଉଁ କେତୋଟି କିସମ କଥା ଆଲୋଚନାକୁ ଆସେ, ତାକୁ ଅନୁଶୀଳନ କରିବା ଏବଂ ସେଗୁଡ଼ିକ ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଇବା ପାଇଁ ଆମେ ଏହି ପୁସ୍ତକରେ ଉଦ୍ୟମ କରିଛୁଁ । ସୁଦୂର ଅତୀତରୁ ଭାରତୀୟ ସମାଜର ଐତିହାସିକ ବିଶ୍ଳେଷଣ ନିମିତ୍ତ ଏହା ପ୍ରାକ୍-କଥନ ଭଳି ହେବ । ଏହି ସମାଜଗୁଡ଼ିକ ଆଜି ମଧ୍ୟ ଭାରତର ବିଭିନ୍ନ ପ୍ରାନ୍ତରେ ରହିଛନ୍ତି, ଯଦିଓ ସେମାନେ ଅତ୍ୟନ୍ତ କ୍ଷୀଣ ଅବସ୍ଥାରେ ରହିଛନ୍ତି । ସେଗୁଡ଼ିକୁ 'ସାଂସ୍କୃତିକ ଅବଶେଷ' (cultural survival)ର ଏକ ଅଂଶ ରୂପେ ଦେଖିବାକୁ ହେବ । ସେଥିପାଇଁ ବର୍ତ୍ତମାନ କାଳରେ (present tense) ସେଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରିବା ହୁଏତ ନ୍ୟାୟସଙ୍ଗତ ହୋଇଥାନ୍ତା । ମାତ୍ର ଆମେ ଅତୀତ ଇତିହାସରେ ଏହିସବୁ ସମାଜର ଭୂମିକାକୁ ରେଖାପାତ କରୁଛେ, ତେଣୁ ଅତୀତ କାଳରେ (past tense) ସେଗୁଡ଼ିକୁ ଚିହ୍ନିତ କରିବା ବୋଧହୁଏ ଉଚିତ ହେବ ।

ଆମ ସୁବିଧା ପାଇଁ ଆମେ ଉକ୍ତ ସମାଜଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରିବା : ଶିକାରୀ-ସଂଗ୍ରାହକ (hunter-gatherer), ପଶୁପାଳକ (pastoralists), କୃଷକ (peasants) ଏବଂ ସହର ବାସିନ୍ଦା (townsmen) । ସମଗ୍ର ଇତିହାସରେ ଉକ୍ତ ସମାଜଗୁଡ଼ିକ ପରସ୍ପର ମଧ୍ୟରେ ଭିନ୍ନତା ରଖିଥିଲେ ବୋଲି ଯୁକ୍ତି କରିବା ଏହି ବିଭାଗୀକରଣର ଅର୍ଥ ନୁହେଁ । ବିଭିନ୍ନ ପରିବେଶରେ ଏହି ସମାଜଗୁଡ଼ିକ ପ୍ରଭାବଶାଳୀ ହୋଇ ରହିଥିଲେ । ମାତ୍ର ଇତିହାସରେ ପରିବର୍ତ୍ତନ ଘଟିବା ସହିତ ଉକ୍ତ କ୍ଷେତ୍ରଗୁଡ଼ିକରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । ପୁଣି ଅନ୍ୟ ସାମାଜିକ ଗୋଷ୍ଠୀର ମଧ୍ୟ ପ୍ରଭାବଶାଳୀ ଗୋଷ୍ଠୀ ସହିତ ଉତ୍‌ଥାନ ହେଲା । ଏହି ବିଭାଗୀକରଣର ଏହା ବି ଅର୍ଥ ନୁହେଁ ଯେ ବିବର୍ତ୍ତନ ପ୍ରକ୍ରିୟାରେ ଉପରୋକ୍ତ ସମାଜଗୁଡ଼ିକ ଗୋଟାକ ପରେ ଗୋଟାଏ ଉଦୟ ହେଲେ ବୋଲି ଯୁକ୍ତି ବାଢ଼ିବା । ସେ ଯାହା ହେଉ, ଶିକାରୀ-ସଂଗ୍ରାହକ ସମାଜରେ ସଂଗଠନ ପ୍ରାୟ ନ ଥିଲା; ଅନ୍ୟପକ୍ଷରେ ସହରୀ ସମାଜ ଖୁବ୍ ଅଧିକ ଜଟିଳ ଥିଲା । ଯେତେବେଳେ ଏହି ସମାଜଗୁଡ଼ିକ ସମ୍ବନ୍ଧରେ ଐତିହାସିକ

ସୂତ୍ରସାମଗ୍ରୀରେ ଉଲ୍ଲେଖ ମିଳେ କିମ୍ବା ଐତିହାସିକ ଘଟଣା ରୂପରେ ସେଗୁଡ଼ିକ ସ୍ଥାନ ପାଆନ୍ତି, ସେମାନଙ୍କର ଗତିବିଧି ଏବଂ ପାରସ୍ପରିକ ସମ୍ବନ୍ଧ ସମ୍ପର୍କରେ ବିଶ୍ଳେଷଣର ଆବଶ୍ୟକତା ଥିବା ଜଣାପଡ଼େ । ସର୍ବଦା ଆତ୍ମସନ୍ତୁଷ୍ଟ ରହିବା ଏବଂ ସେହି ପ୍ରକ୍ରିୟାରେ ଅନ୍ୟ ସମାଜଠାରୁ ଏକାନ୍ତରେ ରହିବା ଏହି ସମାଜଗୁଡ଼ିକର ଚରିତ୍ର ନ ଥିଲା । ଉଦାହରଣସ୍ୱରୂପ, କୁଳସମ୍ବନ୍ଧ (kinship) ବ୍ୟବସ୍ଥାରେ ତଥା ପାରସ୍ପରିକ ନିର୍ଭରଶୀଳତା କ୍ଷେତ୍ରରେ ଉକ୍ତ ସମାଜଗୁଡ଼ିକରେ ପରସ୍ପରର ଚରିତ୍ର ଦେଖିବାକୁ ମିଳୁଥିଲା । ଯେଉଁ ଗ୍ରନ୍ଥଗୁଡ଼ିକରେ ଏକରୂପ ସମାଜ (homogenous society) କଥା କୁହାଯାଏ, ସେଥିରେ ମଧ୍ୟ ବୃତ୍ତି, ପିତୃତନ୍ତ୍ର (patriarchy), ମାତୃତନ୍ତ୍ର ବୈବାହିକ ସମ୍ବନ୍ଧ, ବିବାହ ଶୈଳୀ ଏବଂ ଉତ୍ତରାଧିକାର ନିୟମରେ ପାର୍ଥକ୍ୟ ରହିଥିବା କଥା ସ୍ୱୀକାର କରାଯାଏ । ଉପମହାଦେଶର ଅନେକ ସ୍ଥାନରେ ଏହି ନିକଟ ଅତୀତରେ ମଧ୍ୟ ଉକ୍ତ ସମାଜଗୁଡ଼ିକ ଏକା ସମୟରେ ବିଦ୍ୟମାନ ଥିଲେ, ଯଦିଓ ପ୍ରତ୍ୟେକ ଅଞ୍ଚଳରେ କୌଣସି ଗୋଟାଏ ସମାଜ ମୁଖ୍ୟ ଓ ଅନ୍ୟ ସମାଜଗୁଡ଼ିକ ଗୌଣ ହୁଅନ୍ତି । ଏଥିପାଇଁ ଇତିହାସରେ ଏହି ସାମାଜିକ କିସମଗୁଡ଼ିକର ମହତ୍ତ୍ୱକୁ ଲୋକ ଉପଲବ୍ଧି କରିପାରିଲେ । ସେମାନଙ୍କୁ ସ୍ୱୀକୃତି ମିଳିଲା ପରେ ଭାରତୀୟ ସଂସ୍କୃତିକୁ ସେଗୁଡ଼ିକର ଅବଦାନ ପ୍ରତି ଐତିହାସିକମାନଙ୍କର ଧ୍ୟାନ ଯିବା ଅତି ସ୍ୱାଭାବିକ କଥା ।

## ଶିକାରୀ-ସଂଗ୍ରାହକ (Hunter-gatherers)

ଶିକାରୀ-ସଂଗ୍ରାହକମାନେ ଖାଦ୍ୟ ପାଇଁ ଜଙ୍ଗଲରୁ ପଶୁ ଶିକାର କରୁଥିଲେ ଏବଂ ଖାଦ୍ୟ ଯୋଗ୍ୟ ଫଳମୂଳ ସଂଗ୍ରହ କରୁଥିଲେ । ନା ସେମାନେ ପଶୁପାଳନ କରୁଥିଲେ, ନା କୃଷିକର୍ମ କରୁଥିଲେ । ବରଂ କହିଲେ ଭଲ ହେବ, ପଶୁପାଳନ କିମ୍ବା କୃଷି ସେମାନଙ୍କ ଜୀବିକାର ଅଙ୍ଗ ନ ଥିଲା । ଏହି ଚରିତ୍ର ଯୋଗୁଁ ସେମାନେ ପଶୁପାଳକ ଏବଂ କୃଷକମାନଙ୍କଠାରୁ ଭିନ୍ନ ଥିଲେ । ଶିକାରୀ-ସଂଗ୍ରାହକମାନେ ଛୋଟ ଛୋଟ ଦଳରେ ରହୁଥିଲେ । କେବେ କେବେ ମାତ୍ର କେତେଗୋଟି ପରିବାର ମିଶି ଦଳ ଗଠନ କରୁଥିଲେ । ସେମାନଙ୍କ ଦଳ ଭିତରେ କୌଣସି ପଦପଦବୀ ନ ଥିଲା ଏବଂ ସାମାଜିକ ସଂଗଠନ ପରିବାର କିମ୍ବା ଅତି ବେଶି ହେଲେ କୁଳଯାଏଁ ସୀମିତ ଥିଲା । ଶିକାରୀ-ସଂଗ୍ରାହକମାନେ ଜଙ୍ଗଲ ଏବଂ ଲତାଗୁଳ୍ମ କ୍ଷେତ୍ରକୁ ନିଜ ଜୀବିକାର ଉତ୍ସ ମନେକରୁଥିଲେ । ସମ୍ଭବତଃ ମାନସିକ ସ୍ତରରେ ଶିକାର କ୍ଷେତ୍ରର ସୀମା ନିର୍ଦ୍ଧାରିତ ହୋଇଥିଲା । ମାତ୍ର ଜଙ୍ଗଲର ପରିମାଣ ଊଣା ନ ଥିଲା ଏବଂ ଏକାଧିକ ଦଳ ଗୋଟାଏ ଜଙ୍ଗଲ କ୍ଷେତ୍ରରେ ଜୀବିକା ନିର୍ବାହ କରିବାରେ ମଧ୍ୟ କୌଣସି

ଅସୁବିଧା ନ ଥିଲା । ଏହି କାରଣରୁ ଦଳମାନେ ଅନ୍ୟ ଦଳଠାରୁ ବିଛିନ୍ନ ହୋଇ ଏକାନ୍ତରେ ବସବାସ କରୁଥିଲେ । ଯେଉଁ କ୍ଷେତ୍ରରେ ରହି ଦଳ ଶିକାର କରୁଥିଲା, ଏହି ଦଳ ଉପରେ ଉକ୍ତ କ୍ଷେତ୍ରର କୌଣସି ଦାବି ରହୁ ନ ଥିଲା । ମାତ୍ର ଯେତେବେଳେ ଗାଁ ଲୋକ ମିଶି ଜଙ୍ଗଲ ଜମି ସଫା କଲେ କିମ୍ବା ପଡ଼ୋଶୀ ରାଜ୍ୟମାନ କୃଷିର ପ୍ରସାର ପାଇଁ ଜଙ୍ଗଲକୁ କାଟି କୃଷିଯୋଗ୍ୟ ଜମି ପ୍ରସ୍ତୁତ କଲେ, ସେତେବେଳେ ଶିକାରୀ-ସଂଗ୍ରାହକମାନଙ୍କର ସ୍ୱାର୍ଥ ହାନି ଘଟିଲା । ସେତେବେଳେ ସେମାନେ ଏହାର ତୀବ୍ର ବିରୋଧ କରି ନିଜ ଚିରାଚରିତ ଦାବିକୁ ଜାହିର କରିବାକୁ ପ୍ରୟାସ କରିଥିଲେ । ସମ୍ଭବତଃ ଜାତି ବ୍ୟବସ୍ଥା ବାହାରେ ଯେଉଁସବୁ ଗୋଷ୍ଠୀର ଉଲ୍ଲେଖ ମିଳେ, ଯଥା- ଶବର ଜାତି କିମ୍ବା ଜଙ୍ଗଲରେ ବସବାସ କରୁଥିବା ଅସୁର ଗୋଷ୍ଠୀ, ସେମାନେ ସମସ୍ତେ ଥିଲେ ଶିକାରୀ-ସଂଗ୍ରାହକ ଗୋଷ୍ଠୀର । ସେମାନଙ୍କୁ ଅନୁପ୍ରବେଶକାରୀ, କଦାକାର ରୂପରେ ଗ୍ରନ୍ଥମାନଙ୍କରେ ଅତିରଞ୍ଜିତ କରାଯାଇଛି । ରାକ୍ଷସମାନଙ୍କୁ ଅଲୌକିକ ଶକ୍ତିର ଅଧିକାରୀ ରୂପରେ ଏବଂ ଅଜ୍ଞାତ ଜଙ୍ଗଲବାସୀ ରୂପେ ବର୍ଣ୍ଣନା କରାଯାଏ । ବୋଧହୁଏ ଅରଣ୍ୟବାସୀ ଶିକାରୀ ସଂଗ୍ରାହକମାନଙ୍କୁ ରାକ୍ଷସ ବୋଲି ଚିହ୍ନିତ କରାଯାଉଥିଲା ।

ଜଙ୍ଗଲ ସଫା କରି କେଉଁଭଳି ଭାବେ ଜନବସତି ସ୍ଥାପନ କରାଯାଇଥିଲା, ତା'ର ଏକ ଉଲ୍ଲେଖ ରହିଛି 'ମହାଭାରତ'ର ଖାଣ୍ଡବ ବନ ଦହନର ବର୍ଣ୍ଣନାରେ । ଇନ୍ଦ୍ରପ୍ରସ୍ଥ ନଗରୀ ସ୍ଥାପନ ପାଇଁ ଜଙ୍ଗଲକୁ ଯେତେବେଳେ ସଫା କରାଗଲା, ତହିଁରେ ବହୁସଂଖ୍ୟାରେ ବଣ୍ୟ ଜୀବଜନ୍ତୁଙ୍କର ବିନାଶ ଘଟିଥିଲା । ତା' ସହିତ ସେଠାରେ ପୂର୍ବରୁ ବସତି ସ୍ଥାପନ କରି ରହିଥିବା ମନୁଷ୍ୟ ଏବଂ ରାକ୍ଷସକୁଳ ମଧ୍ୟ ନିଆଁରେ ଦଗ୍ଧ ହୋଇ ମରିଥିଲେ ବୋଲି ଉଲ୍ଲେଖ ରହିଛି । ବନବାସୀମାନଙ୍କୁ ରାକ୍ଷସ ଭାବରେ ଚିତ୍ରିତ କରିବା ପଛରେ ପ୍ରମୁଖ କାରଣ ହେଲା ଯେ ସେମାନେ ଜାତିବ୍ୟବସ୍ଥାର ବାହାରେ ରହିଥିଲେ । ଶବର, ପୁଲିନ୍ଦ ଏବଂ ନିଶାଦ ଆଦିର ଉଲ୍ଲେଖ ପ୍ରାଚୀନ ଗ୍ରନ୍ଥମାନଙ୍କରେ ରହିଛି । ଏମାନେ ସମସ୍ତେ ଥିଲେ ବନବାସୀ । ପ୍ରଚଳିତ ବର୍ଣ୍ଣନା ଅନୁସାରେ, ଏମାନେ ଦେଖିବାକୁ ବଡ଼; ରଙ୍ଗ କଳା, ରକ୍ତିମ ଆଖି ଏବଂ ସମ୍ପୂର୍ଣ୍ଣ ଭିନ୍ନ ଭାଷା ଆଦି ହେଲା ସେମାନଙ୍କର ଅନ୍ୟ କେତୋଟି ବୈଶିଷ୍ଟ୍ୟ । ସପ୍ତମ ଶତାବ୍ଦୀରେ ବାଣଭଟ୍ଟ ରଚିତ 'ହର୍ଷଚରିତ'ରେ ଏହି ବନବାସୀ ଦଳଗୁଡ଼ିକ ସମ୍ବନ୍ଧରେ ଉଲ୍ଲେଖ ରହିଛି । କାଳକ୍ରମେ କେତେକ ବନବାସୀ 'ସଂସ୍କୃତିସମ୍ପନ୍ନ' ହେଲେ ଏବଂ ସେମାନଙ୍କର କାର୍ଯ୍ୟକଳାପ ପଡ଼ୋଶୀ କୃଷକ ସମାଜ ପରି ହେଲା ।

ଉପରୋକ୍ତ ବର୍ଣ୍ଣନାରୁ ଜଣାପଡ଼େ ଯେ, ବନବାସୀମାନେ କେବଳ ଶିକାର ଓ ଫଳମୂଳ ସଂଗ୍ରହରେ ଆବଦ୍ଧ ହୋଇ ରହି ନ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ପୋଡୁଚାଷ କରୁଥିଲେ ତ ଆଉ କେତେକ ଉଦ୍ୟାନକୃଷି ବା ବାଡ଼ିବଗିଚା ମଧ୍ୟ କରୁଥିଲେ; ପୁଣି କିଛି

ବନବାସୀ ସ୍ଥାୟୀ କୃଷି କରି ମଧ୍ୟ ଜୀବିକା ନିର୍ବାହ କରୁଥିଲେ । ସେମାନଙ୍କ ସମାଜ କୁଳବର୍ଗ (clan) ଆଧାରରେ ସଂଗଠିତ ହୋଇଥିଲା । କେତୋଟି କ୍ଷୁଦ୍ର ଦଳ ପୁଣି ଏକ ସମାଜ ରୂପେ ଚିହ୍ନିତ ହେଉଥିଲା, ତାକୁ ଆଦିବାସୀ ଜନଜାତି କହିହେବ । ଶିକାରୀ-ସଂଗ୍ରାହକ ସମାଜକୁ କୃଷକ ସମାଜ ଏବଂ ଜାତି ଆଧାରିତ ସମାଜଠାରୁ ଭିନ୍ନ କରି ଦେଖିହେବ । ଏହି ସମାଜରେ ସାମାଜିକ ପଦମର୍ଯ୍ୟାଦା ପ୍ରତି ବିଶେଷ ଧ୍ୟାନ ଦିଆଯାଉ ନ ଥିଲା । ସାଧାରଣତଃ ଦଳର ମୁଖିଆକୁ ଉଚ୍ଚପଦ ଦିଆଯାଇ ବାକିମାନଙ୍କୁ ଏକ ସମାନ ସ୍ତରରେ ରଖାଯାଉଥିଲା । କୁଳବଂଶର ସମ୍ପର୍କ ଆଧାରରେ ସାମାଜିକ ସ୍ଥିତି ଓ ସମ୍ବନ୍ଧକୁ ସାଧାରଣତଃ ଦେଖାଯାଉଥିଲା । ଲୋକମାନେ ଜଙ୍ଗଲରେ ରହି ଜୀବିକାର୍ଜନ କରିବାକୁ ପସନ୍ଦ କରୁଥିଲେ ଏବଂ ସୀମିତ ମାତ୍ରାରେ ପ୍ରଯୁକ୍ତିବିଦ୍ୟାର ବ୍ୟବହାର କରୁଥିଲେ । ସେମାନଙ୍କର ଧର୍ମ ଥିଲା ପ୍ରାକୃତିକ ଜୀବବାଦୀ (animistic); ସେମାନଙ୍କର ପରମ୍ପରା ଓ ବିଶ୍ୱାସ ଆଦିକୁ ଗୁଣିଆ, ତାନ୍ତ୍ରିକମାନେ ସୃଷ୍ଟି କରିଥିଲେ । ଯେହେତୁ ସେମାନେ ଅନ୍ୟ ଦଳଠାରୁ ବିଚ୍ଛିନ୍ନ ହୋଇ ଏକାନ୍ତରେ ରହୁଥିଲେ, ସେମାନଙ୍କର ଭାଷା ଥିଲା ସ୍ୱତନ୍ତ୍ର ।

ପ୍ରାଚୀନ ସୂତ୍ରସାମଗ୍ରୀରୁ ଶିକାରୀ-ସଂଗ୍ରାହକ ସମାଜ ସମ୍ପର୍କରେ ଜଣାପଡ଼େ । ପ୍ରାକୃତିକ ପରିବେଶ ଏବଂ ମନୁଷ୍ୟର କାର୍ଯ୍ୟକଳାପ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ରହିଥିବା କଥା ଏଥିରୁ ଜଣାଯାଏ ନାହିଁ । ଗ୍ରାମ ଓ ଅରଣ୍ୟ କିମ୍ବା କୃଷିକ୍ଷେତ୍ର ଓ ବନ ମଧ୍ୟରେ ଯେଉଁ ସୀମା ନିର୍ଦ୍ଧାରଣ କରାଯାଏ, ତାହା ଗୋଟାକୁ ଅନ୍ୟର ବିରୋଧୀ ରୂପରେ ଚିହ୍ନିତ କରିବା ସକାଶେ ଉଦ୍ଦିଷ୍ଟ ହୁଏ । ପ୍ରକୃତରେ ଦେଖିବାକୁ ଗଲେ, ଉଭୟଙ୍କ ମଧ୍ୟରେ ଅନ୍ତର୍ବିରୋଧ ଖୁବ୍ ସୁସ୍ପଷ୍ଟ ନ ଥିଲା । ଅର୍ଥାତ୍ କହିବାକୁ ଗଲେ, ଜଙ୍ଗଲରେ ଗ୍ରାମ ଏବଂ ଗ୍ରାମରେ ଜଙ୍ଗଲ ସମନ୍ୱିତ ହୋଇ ରହିଥିଲା । କେବଳ ତତ୍ତ୍ୱରେ ପାରସ୍ପରିକ ଅନ୍ତର୍ବିରୋଧ ବଳବତ୍ତର ହୋଇ ରହିଲା । ଜଙ୍ଗଲ ହେଲା ଏକ ଅଜଣା, ଉଦ୍ଦାମ, ନାନୁମେୟ ଭୂମିଖଣ୍ଡ; ଅନ୍ୟ ପକ୍ଷରେ ଜନବସତି ଥିଲା ଏକ ଅନୁମେୟ କ୍ଷେତ୍ର, ଯେଉଁଠି ନିୟମକାନୁନ୍‌ମାନ ରହିଥିଲା । ଜଙ୍ଗଲର ଲୋକମାନଙ୍କ ସମ୍ବନ୍ଧରେ ଅଦ୍ଭୁତ କଳ୍ପନାମାନ କରାଯାଉଥିଲା, ସେମାନେ ଦିବ୍ୟ ଅପ୍‌ସରା ହୁଅନ୍ତୁ ବା ରାକ୍ଷସ । ଆଦ୍ୟକାଳୀନ ଗ୍ରନ୍ଥମାନଙ୍କରେ ସେମାନଙ୍କୁ ନେଇ ନାନା କିସମର ଉଲ୍ଲେଖ ରହିଛି ।

ମାତ୍ର ପରବର୍ତ୍ତୀ ସମୟରେ ଅରଣ୍ୟବାସୀଙ୍କୁ ନେଇ ରହିଥିବା ଅବଧାରଣାରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ପରିଲକ୍ଷିତ ହେଲା । ଆରମ୍ଭରେ ଜଙ୍ଗଲକୁ ସାମାଜିକ ପରିଧି ବାହାରେ ରହିଥିବା ସମାଜର ବସତିସ୍ଥଳ ବୋଲି ମନେକରାଗଲା । ପରେ ସାଧୁସନ୍ନ୍ୟାସୀମାନଙ୍କ ମଠଆଶ୍ରମକୁ ଜଙ୍ଗଲରେ ଠାବ କରାଗଲା । ସାଧୁସନ୍ଥମାନେ ଶାନ୍ତି ପାଇବା ପାଇଁ ଜଙ୍ଗଲକୁ ପସନ୍ଦ କରନ୍ତି ବୋଲି କଳ୍ପନା କରାଗଲା । ମାତ୍ର ଏହା ସହିତ

ଏକଥା ମଧ୍ୟ ସତ୍ୟ ଯେ, ରାଜ୍ୟ ଓ ରାଜ୍ୟର ଶାସକମାନେ ଅରଣ୍ୟର ଅଧିବାସୀମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ଅରଣ୍ୟର ମୁଖିଆମାନଙ୍କୁ ବିଶ୍ୱାସ ନ କରିବାକୁ ଓ ଶତ୍ରୁତୁଲ୍ୟ ବ୍ୟବହାର କରିବାକୁ ରାଜାମାନଙ୍କୁ ପରାମର୍ଶ ଦିଆଯାଇଛି । ପ୍ରଥମ ସହସ୍ରାବ୍ଦୀର ମଧ୍ୟ ବେଳକୁ ନୂତନ ରାଜ୍ୟ ସ୍ଥାପନ ପାଇଁ ଅରଣ୍ୟବାସୀମାନଙ୍କର ଉନ୍ମୂଳନ, ସେମାନଙ୍କ ଉପରେ ବିଜୟ ହାସଲ ତଥା ଦଖଲକୁ ଅତ୍ୟାବଶ୍ୟକ ବୋଲି ଉଲ୍ଲେଖମାନ ରହିଛି । ଏହା ନିଃସନ୍ଦେହ ଯେ, ଏହି ସମୟରୁ ଜଙ୍ଗଲ ଜମି ଅଧିକାର ପ୍ରକ୍ରିୟା ବୃଦ୍ଧି ପାଇଲା । ଉଦ୍ଦେଶ୍ୟ ଥିଲା ଜଙ୍ଗଲ ସଫାକରି କୃଷିଯୋଗ୍ୟ ଜମି ପ୍ରସ୍ତୁତ କରିବା ତଥା ଜଙ୍ଗଲ ମଧ୍ୟ ଦେଇ ରାସ୍ତା ନିର୍ମାଣ କରିବା । ଏସବୁ ବାଧାବିଘ୍ନ ସତ୍ତ୍ୱେ ଯଥୋଚିତ ମାତ୍ରାରେ ଶିକାରୀ-ସଂଗ୍ରାହକ ସମାଜର ଆଜିପର୍ଯ୍ୟନ୍ତ ତିଷ୍ଠି ରହିବା ପଛରେ କାରଣ ହେଲା ଯେ ଲୋକସମାଜ ରୂପରେ ସେମାନଙ୍କର ନମନୀୟତା ଏବଂ ସଂସ୍କୃତି ରୂପରେ ସେମାନଙ୍କ ସ୍ୱାତନ୍ତ୍ର୍ୟ ରହିଥିଲା ।

ଶିକାରୀ-ସଂଗ୍ରାହକମାନଙ୍କୁ ଆଦିବାସୀ ବା ଭାରତର ଆଦ୍ୟ ଅଧିବାସୀ ଭାବରେ ଗ୍ରହଣ କରିବା ଠିକ୍ ନା ନୁହେଁ – ସେ ନେଇ ଆଜିକାଲି ବିତର୍କ ସୃଷ୍ଟି ହୋଇଛି । ଆର୍ଯ୍ୟ, ଦ୍ରାବିଡ଼, ଅଷ୍ଟ୍ରେଲୀୟ-ଏସୀୟ (Austro-Asiatics) କିମ୍ବା ଆଉ କେଉଁ ଗୋଷ୍ଠୀ ପାଇଁ ଯୁକ୍ତି କରୁଥିବା ଗୋଷ୍ଠୀ ମଧ୍ୟରେ 'କିଏ ପ୍ରଥମେ ?' ନାମକ ଯେମିତି ଏକ ଖେଳ ଚାଲିଛି । ଏହା ଐତିହାସିକ ଦୃଷ୍ଟିରୁ ତର୍କସଙ୍ଗତ ନୁହେଁ । ଉଭୟ ଐତିହାସିକ ତଥା ପ୍ରାଚୀନତା ଦୃଷ୍ଟିରୁ ଏଭଳି ଦାବି ଆଦୌ ଗ୍ରହଣଯୋଗ୍ୟ ନୁହେଁ । ମାତ୍ର ତା'ଠାରୁ ବଡ଼ କଥା, ଆବଶ୍ୟକ ତଥ୍ୟ-ପ୍ରମାଣର ଅଭାବରୁ 'କିଏ ପ୍ରଥମେ', ତାହା ନିର୍ଦ୍ଧାରଣ କରିବା ଏବେ ସମ୍ଭବ ନୁହେଁ । ଆଦିବାସୀ ସମାଜ କଦାପି ଏକ ଜୀବାଶ୍ମୀଭୂତ (fossilized) ସମାଜ ନୁହେଁ । ଜଙ୍ଗଲୀ ଆଦିବାସୀ ଭାବରେ କୌଣସି ଏକ ଗୋଷ୍ଠୀକୁ ଐତିହାସିକ ବୈଧତା ପ୍ରଦାନ କରାଯିବ ନା ନାହିଁ, ତାହା ନିର୍ଦ୍ଧାରଣ କରିବା ସମୟରେ ଗୋଷ୍ଠୀର ଜୀବନଶୈଳୀକୁ ଅନୁଶୀଳନ କରିବାକୁ ହେବ ତଥା ପ୍ରାଚୀନ କାଳରୁ ଭାରତୀୟ ସଂସ୍କୃତିର ନିର୍ମାଣ ପାଇଁ ସେମାନେ କରିଥିବା ଯୋଗଦାନକୁ ବିଶ୍ଳେଷଣ କରିବାକୁ ହେବ । 'ଆଦିବାସୀ' ଶବ୍ଦର ସାର ଅର୍ଥକୁ ନେଇ ବିବାଦ ରହିଛି । ପୁଣି ଏହାକୁ ସବୁଠି ସମାନ ରୂପରେ ପରିଭାଷିତ କରାଯାଇ ନାହିଁ । ଏହି କାରଣରୁ ସେମାନଙ୍କର ସଠିକ୍ ଇତିହାସ ଖୋଜିବା ଅଧିକ କଷ୍ଟକର ହେଉଛି । ଯେତେବେଳେ ଅରଣ୍ୟବାସୀ ଏବଂ ଜଙ୍ଗଲରେ ଅନୁପ୍ରବେଶ କରିଥିବା କୃଷକ କିମ୍ବା ରାଜ୍ୟର ସେନା ମଧ୍ୟରେ ସଂଘର୍ଷ ହୁଏ ଏବଂ ଅରଣ୍ୟବାସୀ ପରାଜୟ ବରଣ କରନ୍ତି, ସେତେବେଳେ ଅରଣ୍ୟବାସୀ ଜାତି ସମାଜରେ ରୂପାନ୍ତରିତ ହୁଅନ୍ତି ।

## ପଶୁପାଳକ (Pastoralists)

ଭାରତ ଇତିହାସରେ ଐତିହାସିକମାନେ ଗବେଷଣା ପ୍ରକ୍ରିୟାରେ ମନୁଷ୍ୟ ଛାଡିର ଅନ୍ୟ ଯେଉଁ ଗୋଷ୍ଠୀ ସହିତ ବାରମ୍ବାର ସାକ୍ଷାତ୍ କରନ୍ତି, ତାହା ହେଲା ପଶୁପାଳକ ବା ପଶୁଚାରକ (pastoralists) । କେତେକ ପଶୁପାଳକ ଥିଲେ ଯାଯାବର । ସେମାନଙ୍କର ଯାତ୍ରାର କ୍ଷେତ୍ରସୀମା ସର୍ବଦା ସମାନ ନ ଥିଲା । ଅନ୍ୟ କେତେକ ପଶୁପାଳକ ଗୋଷ୍ଠୀ ହେଲେ ଅର୍ଦ୍ଧ-ସ୍ଥାୟୀ । ସେମାନେ ଅଳ୍ପ ଅଳ୍ପ କୃଷିକାର୍ଯ୍ୟ ମଧ୍ୟ କରୁଥିଲେ । ଅଧିକାଂଶ ପଶୁପାଳକ ଏକ ବିନିମୟ ବ୍ୟବସ୍ଥାର ଅଂଶ ଥିଲେ ଏବଂ କୃଷକ ତଥା ଅନ୍ୟମାନଙ୍କ ସହିତ ନିରନ୍ତର ସମ୍ପର୍କରେ ଆସୁଥିଲେ । ସେଥିପାଇଁ ପଶୁପାଳନ ପାଇଁ କୃଷି-ପଶୁପାଳନ ଶବ୍ଦର ବ୍ୟବହାର କରାଯାଉଛି, କାରଣ ପଶୁପାଳକ ସମାଜରେ ମଧ୍ୟ କୃଷିର ଉପସ୍ଥିତି ରହିଥାଏ । କେତେକ ପଶୁପାଳକ ଜିନିଷପତ୍ରର ସଂବାହକ ରୂପେ କାର୍ଯ୍ୟ କରୁଥିଲେ, ଯାହା ଫଳରେ ସେମାନଙ୍କ ସମ୍ପର୍କର ପରିସର ଖୁବ୍ ବ୍ୟାପକ ହୋଇଥିଲା । ପଶୁପାଳନ କ୍ଷେତ୍ର ମନୁଷ୍ୟର ବସତି ପରିବର୍ତ୍ତନକୁ ଉତ୍ସାହିତ କରୁଥିଲା ଏବଂ ନୂଆ ନୂଆ ଚାରଣଭୂମି ଖୋଜିବାକୁ ପ୍ରବର୍ତ୍ତାଉଥିଲା । ଫଳରେ ସେମାନଙ୍କର ଇତିହାସରେ ଯାତ୍ରାକୁ ଯଥେଷ୍ଟ ପ୍ରମୁଖତା ପ୍ରଦାନ କରାଯାଉଥିଲା ।

ପଶୁପାଳକ ସମାଜଗୁଡ଼ିକ ସାଧାରଣତଃ ଏକ ରୀତିଭିତ୍ତିକ ସଂଗଠନ ମଧ୍ୟରେ ରହିଥିଲେ । ସେମାନଙ୍କ ସଂଗଠନରେ କାହିଁ କେଉଁଠି ସାମାନ୍ୟ ପରିବର୍ତ୍ତନ ମାତ୍ର ଦେଖିବାକୁ ମିଳୁଥିଲା । ପରିବାର ହେଲା ସମାଜର କେନ୍ଦ୍ର; ପୁରୁଷକୁ ଉତ୍ତରାଧିକାର ମିଳୁଥିଲା; ଏବଂ ଜଣେ ନିର୍ଦ୍ଦିଷ୍ଟ ପୂର୍ବପୁରୁଷଙ୍କ ପାଖରୁ କୁଳ (kinship)ର ମୂଳ ନିର୍ଦ୍ଧାରଣ କରାଯାଉଥିଲା । କୁଳ ବାସ୍ତବ ହେଉ ବା କାଳ୍ପନିକ, ତାକୁ ଅସ୍ମିତା ଓ ଆନୁଗତ୍ୟ ପ୍ରଦର୍ଶନ କରିବା ଅତି ଆବଶ୍ୟକ ମନେକରାଯାଉଥିଲା । ପଶୁପାଳକ ସମାଜରେ ଆନୁଗତ୍ୟକୁ ଅଧିକ ମହତ୍ତ୍ୱ ଦିଆଯାଉଥିଲା । ଏହା କୁଳରେ ସମାନତା ରକ୍ଷା କରିବାରେ ସାହାଯ୍ୟ କରୁଥିଲା । କୁଳ ବୃଦ୍ଧି ହେଲେ ନିୟମିତ ଯାତ୍ରା କରୁଥିବାରୁ ବଂଶ (clan) ଭାଙ୍ଗିଯିବାର ଆଶଙ୍କା ରହୁଥିଲା । ମାତ୍ର କୁଳ ପରିଚୟ ଯୋଗୁଁ ନିରନ୍ତର ଯାତ୍ରା ସତ୍ତ୍ୱେ ବଂଶ ଅବିଭାଜ୍ୟ ହୋଇ ରହୁଥିଲା । ବଂଶ ଉପରେ ଆକ୍ରମଣ ହେଲେ ପ୍ରତିରକ୍ଷା ପାଇଁ ସମସ୍ତେ ଏକଜୁଟ ହୋଇଯାଉଥିଲେ । ବଂଶ ସମାନତା ଆଧାରରେ ସଂଗଠିତ ହୋଇଥିଲା । ଉତ୍ପାଦନକୁ ସମସ୍ତଙ୍କ ମଧ୍ୟରେ ବଣ୍ଟନ କରାଯାଉଥିଲା । ଅବଶ୍ୟ ଦଳର ମୁଖ୍ୟଙ୍କୁ ତହିଁରେ ସିଂହଭାଗ ମିଳୁଥିଲା । ଋଗ୍‌ବେଦରେ ଏହା ବର୍ଣ୍ଣିତ ଯେ, ଅନ୍ୟର ପଶୁପଲକୁ ଯଦି କୌଣସି ଗୋଷ୍ଠୀକୁ କବ୍‌ଜା କରିବାକୁ ହୁଏ, ତା' ପାଇଁ ବଂଶର ମୁଖିଆଙ୍କୁ ବଂଶ ମଧ୍ୟରେ ନିଜ ସମ୍ମାନକୁ ବଜାୟ ରଖିବା ନିମିତ୍ତ ସଫଳ

ଆକ୍ରମଣକାରୀ ହେବାକୁ ପଡ଼େ । କେତେକ ବଂଶ ମିଶି ଜନଜାତି (tribe) ଗଠନ କରୁଥିଲେ । ଅବଶ୍ୟ ଜନଜାତି ବା tribe ଶବ୍ଦକୁ ବିଭିନ୍ନ ସାମାଜିକ ଗୋଷ୍ଠୀକୁ ପରିଭାଷିତ କରିବାପାଇଁ ବ୍ୟବହାର କରାଯାଉଥିଲା । ପଶୁପାଳକଙ୍କ ମଧ୍ୟରେ ଯେଉଁମାନେ ଗୋଟାଏ ଚାରଣଭୂମି ବ୍ୟବହାର କରୁଥିଲେ, ଜଣେ ପୂର୍ବସୂରୀଙ୍କୁ ନିଜର ଆଦିପିତା ମନେକରୁଥିଲେ, ଗୋଟାଏ ସାଧାରଣ ଭାଷା ବ୍ୟବହାର କରୁଥିଲେ ତଥା ରୀତିପରମ୍ପରା ଯେଉଁମାନଙ୍କର ସମାନ ଥିଲା, ସେମାନେ ସମସ୍ତେ ଗୋଟାଏ ଜନଜାତିର ସଭ୍ୟ ବୋଲି ମନେକରାଯାଉଥିଲା । ନୂଆ ଚାରଣଭୂମିର ଯେତେବେଳେ ଦରକାର ପଡୁଥିଲା କିମ୍ବା ବସତି ସ୍ଥାପନ କରୁଥିବା ସମାଜ ଉପରେ ଆକ୍ରମଣ କରିବାକୁ ପଡୁଥିଲା, ସେତେବେଳେ ନୂଆ ଜନଜାତିର ଉତ୍ପତ୍ତି ହେଉଥିଲା । ଜନଜାତି ପରିବାରରେ ଭାଗ ଭାଗ ହୋଇ ରହୁଥିଲା ଏବଂ ବୃହତ୍ତର ପରିଚୟ ପାଇଁ କୌଣସି ଏକ କିମ୍ବଦନ୍ତୀ ପୁରୁଷଙ୍କୁ ନିଜର ପୂର୍ବଜ ବୋଲି ଚିହ୍ନିତ କରୁଥିଲା । ଯେଉଁଠି ପୂର୍ବଜ ଜଣେ ସେଠାରେ ପରିଚୟ ବେଳେ ସତ ହେଉ ବା କାଳ୍ପନିକ ହେଉ, କୁଳ ଉପରେ ଗୁରୁତ୍ୱ ଦିଆଯାଉଥିଲା ।

ଭାରତ ଇତିହାସରେ ବିଭିନ୍ନ ଚରଣରେ ମଧ୍ୟ-ଏସିଆରୁ ପଶୁପାଳକମାନେ ଆସି ହସ୍ତକ୍ଷେପ କରିଥିଲେ । ଏହା ପଛରେ ପ୍ରମୁଖ କାରଣ ହେଲା ମଧ୍ୟ-ଏସିଆରେ ଅଶାନ୍ତି ଓ ବିବାଦ । ଏହା ସେଠାକାର ଲୋକଙ୍କୁ ଦକ୍ଷିଣକୁ ଚାଲିଯିବାକୁ ବା ଦକ୍ଷିଣରେ ଯାଇ ଆକ୍ରମଣ କରିବାକୁ ବା ସାମରିକ ଅଭିଯାନ ଆରମ୍ଭ କରିବାକୁ ବାଧ୍ୟ କରୁଥିଲା । ଏହି ଅଶାନ୍ତି ଓ ଅସ୍ଥିରତା ଏକଦା ଇଣ୍ଡୋ-ଆର୍ଯ୍ୟ ଭାଷାଭାଷୀ ଲୋକଙ୍କୁ ତଥା ପାର୍ଥିଆନ, ଶକ, କୁଶାଣ, ହୁନ୍ ଏବଂ ତୁର୍କମାନଙ୍କୁ ଭାରତକୁ ଅନୁପ୍ରବେଶ କରିବାକୁ ପରୋକ୍ଷରେ ପ୍ରେରିତ କରିଥିଲା ବୋଲି ମନେକରାଯାଏ । ମାତ୍ର ଭାରତ ଭିତରେ ଥିବା ଅନ୍ୟ ପଶୁପାଳକମାନେ ମଧ୍ୟ ଖୁବ୍ ମହତ୍ତ୍ୱ ରଖୁଥିଲେ । ଉଦାହରଣସ୍ୱରୂପ, ଦକ୍ଷିଣ ଉପଦ୍ୱୀପର ଗୋପାଳକମାନେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲେ । କୃଷି ଓ ବସ୍ତୁ ଆଦାନ ପ୍ରଦାନ କରିବା ପ୍ରକ୍ରିୟାରେ ସେମାନେ ବିଭିନ୍ନ କୃଷକ ସମାଜର ମଧ୍ୟଭାଗରେ ଖାଲି ଥିବା କ୍ଷେତ୍ରକୁ ପୂରଣ କଲେ । ଅର୍ଥାତ୍ ଜନବସତି ନ ଥିବା ସ୍ଥାନରେ ଜନବସତି ସ୍ଥାପନ କଲେ । ଗୋପାଳକମାନେ ଗ୍ରାମର କୃଷକ ସମାଜକୁ ଦୁଗ୍ଧ ଓ ଦୁଗ୍ଧଜାତୀୟ ସାମଗ୍ରୀ ତଥା ଅନ୍ୟାନ୍ୟ ସାମଗ୍ରୀ ଯୋଗାଣ କଲେ ଏବଂ ପ୍ରତିବଦଳରେ ସ୍ଥାନୀୟ ଉତ୍ପାଦନକୁ ନେଇ ବାହାରକୁ ପ୍ରେରଣ କଲେ । ଏହି ଭୂମିକା ଆଜିଯାଏଁ 'ବଂଜାରାମାନେ' ନିର୍ବାହ କରୁଥିଲେ । ସ୍ଥାନୀୟ ବୀରପୁରୁଷମାନେ ଗୋ-ପଲକୁ ରକ୍ଷା କରିବାକୁ ଯାଇ ଯୁଦ୍ଧରେ ପ୍ରାଣବଳି ଦେଉଥିଲେ । ପଶ୍ଚିମ ଭାରତ ଏବଂ ଦକ୍ଷିଣ ଉପଦ୍ୱୀପରେ ଏଭଳି ବୀରପୁରୁଷଙ୍କୁ ନେଇ ଯେଉଁ ଅସଂଖ୍ୟ ସ୍ମାରକମାନ ରହିଛି, ତହିଁରୁ ପଶୁପାଳନର ଗୁରୁତ୍ୱକୁ ଚିହ୍ନିତ କରିହୁଏ ।

ପାହାଡ଼ୀ କ୍ଷେତ୍ରର ଉପରିଭାଗରେ କୃଷିକାର୍ଯ୍ୟ ବିଶେଷ ଭଲଭାବେ ସମ୍ଭବ ହେଉ ନ ଥିଲା; ଋତୁ ପରିବର୍ତ୍ତନ ଯୋଗୁଁ ଋତୁପ୍ରବାସ (transhumance) ଏକ ସ୍ୱାଭାବିକ କ୍ରିୟାରେ ପରିଣତ ହେଲା । ପୃଥିବୀର ବହୁ ସ୍ଥାନରେ ଏମିତି ହୋଇଥାଏ । ଗ୍ରୀଷ୍ମଋତୁରେ ପାଳିତ ପଶୁପଲକୁ ପାହାଡ଼ର ଉପରିଭାଗକୁ ଚାରଣ ପାଇଁ ନିଆଯାଏ ଏବଂ ଶରତ ଋତୁରେ ତଳଭାଗକୁ ଅଣାଯାଏ । ଏହି ଧରଣର ନିୟମିତ ଯିବାଆସିବା ପ୍ରକ୍ରିୟାରେ ପଶୁପାଳକମାନେ ଛୋଟମୋଟ ବ୍ୟବସାୟ ଆରମ୍ଭ କଲେ । ଉଦାହରଣସ୍ୱରୂପ, ହିମାଳୟ କ୍ଷେତ୍ରରେ ସେମାନେ ଭାରତଆଡୁ ଚାଉଳ ନେଇ ଯାଆନ୍ତି ଏବଂ ତିବ୍ବତରୁ ଚା' ନେଇ ଆସନ୍ତି । ଏହି କିସମର ବିନିମୟକୁ ଅନ୍ୟତ୍ର 'ଉର୍ଦ୍ଧ୍ୱଧାର ଅର୍ଥ ବ୍ୟବସ୍ଥା' (vertical economy) ବୋଲି କୁହାଯାଏ ।

ଋତୁପ୍ରବାସ ଯୋଗୁଁ ପଶୁପାଳକମାନଙ୍କୁ ଅଧିକ ଚାରଣଭୂମି ପ୍ରାପ୍ତ ହେଲା । ପାହାଡ଼ର ତଳଭାଗରେ ସେମାନେ ଘାସଜାତୀୟ କୃଷି କଲେ କିମ୍ବା ସ୍ଥାନୀୟ କୃଷକମାନଙ୍କ ସହାୟତାରେ ଘାସ ପ୍ରାପ୍ତ କଲେ । ପଶୁପାଳକ ଏବଂ କୃଷକମାନଙ୍କ ମଧ୍ୟରେ ଯଥେଷ୍ଟ ଭାବ ବିନିମୟ ହେଉଥିଲା । ଏହିପ୍ରକାର ଆଦାନପ୍ରଦାନ ଶିକାରୀ-ସଂଗ୍ରାହକ ଏବଂ ଅନ୍ୟମାନଙ୍କ ମଧ୍ୟରେ ସାଧାରଣତଃ ଦେଖିବାକୁ ମିଳୁ ନ ଥିଲା । ପଶୁପାଳକ ଓ କୃଷକ ଗୋଷ୍ଠୀ ମଧ୍ୟରେ ଏକ ପାରସ୍ପରିକ ସହଯୋଗର ସମ୍ବନ୍ଧ ରହିଥିଲା, ଯାହା ଆଜି ମଧ୍ୟ ଅବ୍ୟାହତ ରହିଛି । ଫସଲ ଅମଳ ହେଲା ପରେ ପଶୁପାଳକର ମେଣ୍ଢା, ଛେଳି ବା ଗାଈ ପଲକୁ କୃଷକର ବିଲରେ ଚରିବେ ବୋଲି ଛାଡ଼ି ଦିଆଯାଉଥିଲା । ପଶୁପଲ ବିଲରେ ଚରିବା ଯୋଗୁଁ ଜମିରେ ଗୋବର ପଡୁଥିଲା, ଯାହା ଜୈବିକ ସାରର କାମ କରୁଥିଲା । ଉଭୟ ପଶୁପାଳକ ଓ କୃଷକ ମଧ୍ୟରେ କେତେକ ଅତ୍ୟାବଶ୍ୟକ ବସ୍ତୁର ବିନିମୟ ମଧ୍ୟ ଦେଖିବାକୁ ମିଳୁଥିଲା । ଯେତେବେଳ ପର୍ଯ୍ୟନ୍ତ ଯାଯାବର ପଶୁପାଳକ ଗୋଷ୍ଠୀ ନିର୍ଦ୍ଧାରିତ ସମୟରେ ନିୟମିତ ଢଙ୍ଗରେ ଆସୁଥିଲେ, ଏହି ବ୍ୟବସ୍ଥା କାର୍ଯ୍ୟକ୍ଷମ ରହୁଥିଲା, କାରଣ ଫସଲ ଅମଳ କାର୍ଯ୍ୟ ସହିତ ସେମାନଙ୍କ ବାର୍ଷିକ ଯାତ୍ରା ଯୋଡ଼ିହୋଇ ରହିଥିଲା । ପଶୁପାଳକ ଏବଂ କୃଷକ ମଧ୍ୟରେ ରହିଥିବା ସମ୍ବନ୍ଧ ଲଗଭଗ ଚୁକ୍ତି ଆଧାରିତ ଥିଲା । କୃଷି-ପଶୁପାଳନ (Agro-pastoralism)ର ପାରସ୍ପରିକ ସମ୍ବନ୍ଧ ସମ୍ଭବତଃ ଖୁବ୍ ପ୍ରାଚୀନ ସମୟରୁ ରହିଆସିଥିଲା ।

ଯେଉଁ ପଶୁପାଳକ ସମାଜରେ ବଂଶ ସଂଗଠନ ଦୃଢ଼ କିମ୍ବା ଯେଉଁଠି କୁଳ ପରିଚୟ ପ୍ରଧାନ, ସେଠାରେ ପ୍ରାୟତଃ ସର୍ଦ୍ଦାରତନ୍ତ୍ର ବା ମୁଖିଆ ଶାସନ (chiefdom) ଦେଖିବାକୁ ମିଳୁଥିଲା । ମୁଖିଆ ଶାସନ ସାନ ଓ ସରଳ ହୋଇପାରେ କିମ୍ବା ବଡ଼ ପରିସଂଘ (confederacy) ବି ହୋଇପାରେ । କୁଳସମ୍ବନ୍ଧ ଆଧାରିତ ସମ୍ପର୍କ ଉପରେ ତହିଁରେ ମହତ୍ତ୍ୱ ଦିଆଯାଉଥିଲା । ବିଭିନ୍ନ ବଂଶ ମଧ୍ୟରେ ବି ସମ୍ପର୍କ ରହୁଥିଲା ଏବଂ ସେହି ସମ୍ପର୍କ

ଆଧାରରେ ବିବାହର ନୀତିନିୟମଗୁଡ଼ିକୁ ସ୍ଥିର କରାଯାଉଥିଲା । ଉତ୍ତରାଧିକାର ସମ୍ବନ୍ଧିତ ନିୟମକୁ ମଧ୍ୟ ବଂଶ ସ୍ତରରେ ମାନ୍ୟତା ମିଳୁଥିଲା । ଯେଉଁ ସମାଜ ଜଟିଳ, ସେଠାରେ ବଂଶର ସଦସ୍ୟ ନ ଥିବା ଲୋକକୁ ନିୟମ ବାହାରେ ରଖାଯାଉଥିଲା । ମାତ୍ର ତା' ସତ୍ତ୍ୱେ ଏପରି ଲୋକଙ୍କର ବଂଶ ସହିତ ଅନ୍ୟାନ୍ୟ ସମ୍ପର୍କ ରହିଥିଲା । ବଂଶର ସଦସ୍ୟତା ପାଇ ନ ଥିବା ଲୋକଙ୍କ ମଧ୍ୟରେ ପ୍ରାୟତଃ ତାନ୍ତ୍ରିକ, ଗୁଣିଆ ବା ଶ୍ରମିକ ରହିଥିଲେ । ବଂଶର ନୀତି, ନିୟମ, ପରମ୍ପରା ଆଦି ତାନ୍ତ୍ରିକ, ଗୁଣିଆ ଦ୍ୱାରା ନିର୍ଦ୍ଧାରିତ ହେଉଥିଲା । ଅନ୍ୟ ଗୋଷ୍ଠୀ ସହ ସଂଘର୍ଷବେଳେ ଧରାପଡ଼ିଥିବା ବ୍ୟକ୍ତିମାନଙ୍କୁ ଦାସ, ଶ୍ରମିକ ଭାବରେ ବ୍ୟବହାର କରାଯାଉଥିଲା । ସେମାନେ ଥିଲେ ଅନ୍ୟ ବଂଶର ଲୋକ । କାଳକ୍ରମେ ସର୍ଦ୍ଦାରତନ୍ତ୍ରରୁ ରାଜ୍ୟ (kingdom) ଶାସନ ପ୍ରତିଷ୍ଠା ପାଇଲା, ରାଜ୍ୟ ଗଠନ ହେଲା । ରାଜ୍ୟର ପ୍ରମୁଖ ଚରିତ୍ର ହେଲା ରାଜନୈତିକ ଶକ୍ତି ଉପରେ ଏକାଧିକାର, ପ୍ରାଥମିକ ସ୍ତରର ପ୍ରଶାସନ ଓ ରାଜସ୍ୱ ଆଦାୟ ଆଦି । କୃଷି ଉପରେ ସମାଜ ଯେତେବେଳେ ଅଧିକ ନିର୍ଭରଶୀଳ ହେଲା, ସେତେବେଳେ ଏହି ପରିବର୍ତ୍ତନ ଦେଖିବାକୁ ମିଳିଲା ।

## କୃଷକ

କୃଷକ ସମାଜ ଥିଲା ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ଐତିହାସିକମାନେ କୃଷକର ଖାଦ୍ୟ ଉତ୍ପାଦକ ଏବଂ ରାଜସ୍ୱଦାତା ଭୂମିକାକୁ ଭଲଭାବେ ଅନୁଶୀଳନ କରିଛନ୍ତି । ଶାସକ ଗୋଷ୍ଠୀ କୃଷକର କୃଷି ଉତ୍ପାଦନରୁ ଏକ ନିର୍ଦ୍ଦିଷ୍ଟ ଅଂଶ ଉପରେ ନିଜର ଦାବି ଉପସ୍ଥାପନ କରୁଥିଲେ, ଯାହାକୁ ରାଜସ୍ୱ ବୋଲି କୁହାଯାଏ । ଶିକାରୀ-ସଂଗ୍ରାହକରୁ ପଶୁପାଳନ ଏବଂ ତେଣିକି କୃଷି ରୂପରେ ଯେଉଁ କ୍ରମ ପରିବର୍ତ୍ତନ ଦେଖିବାକୁ ମିଳିଲା, ତା'ର ଏକ ବୈଶିଷ୍ଟ୍ୟ ହେଲା ଯେ ବ୍ୟବହୃତ ହେଉଥିବା ଜମିର ପରିମାଣ କ୍ରମାନ୍ୱୟରେ ହ୍ରାସ ପାଇବାରେ ଲାଗିଲା ଏବଂ କୃଷିଯୋଗ୍ୟ ଜମିକୁ ଗହନ ଉପଯୋଗ (intensive use) କରାଗଲା । ପ୍ରଥମ ଦୁଇଟି ଅବସ୍ଥାରେ ଭୂଦୃଶ୍ୟ (landscape) ମୋଟାମୋଟି ଭାବେ ଅକ୍ଷତ ହୋଇ ରହିଥିଲା । ମାତ୍ର କୃଷିକାର୍ଯ୍ୟ ଆରମ୍ଭ ହେବା ପରେ ଜଙ୍ଗଲକୁ ସଫା କରିବା ଏବଂ ମାଟି କର୍ଷଣ କରିବା ଜରୁରି ହେଲା । ଯଦି କୃଷି ପାଇଁ ପ୍ରସ୍ତୁତ କରାଯାଉଥିବା ଜମିର କିଛି ଅଂଶ ପଶୁପାଳକର ଚାରଣଭୂମି କିମ୍ବା ଶିକାରୀ-ସଂଗ୍ରାହକ ବ୍ୟବହାର କରୁଥିବା ଜଙ୍ଗଲଭୂମି ମଧ୍ୟରେ ପଡୁଥିଲା, ତେବେ ଉଭୟ ଗୋଷ୍ଠୀ ମଧ୍ୟରେ ସଂଘର୍ଷର ସୂତ୍ରପାତ ହେଉଥିଲା । ସାଧାରଣତଃ ମନେକରାଯାଏ ଯେ, କୃଷି ଯୋଗୁଁ ଜନସଂଖ୍ୟା ବୃଦ୍ଧି ପାଇଲା, କାରଣ କୃଷି ଉତ୍ପାଦନର ସାମ୍ଭାବ୍ୟ ପରିମାଣ ବଡ଼ ଜନସଂଖ୍ୟାକୁ ସମ୍ଭାଳିବାକୁ ସମର୍ଥ ଥିଲା । ବଳକା ଖାଦ୍ୟ କୃଷିକର୍ମରେ

ନିଯୁକ୍ତ ନ ଥିବା ବର୍ଗକୁ ବଞ୍ଚି ରହିବାପାଇଁ ଅବସର ପ୍ରଦାନ କଲା; ସମାଜରେ ସମ୍ଭ୍ରାନ୍ତବର୍ଗ, ପୁରୋହିତ, ସୈନିକ ଏବଂ ବଣିକବର୍ଗ ସୃଷ୍ଟି ହେଲେ । ପଶୁଜାତ ଦ୍ରବ୍ୟ, ଯଥା- ମାଂସ ଓ ଦୁଗ୍ଧ ଅଧିକ ଦିନ ପର୍ଯ୍ୟନ୍ତ ସୁରକ୍ଷିତ ରହେ ନାହିଁ । ନଷ୍ଟ ହୋଇଯାଏ । ଏହାର ବିପରୀତ, କୃଷିଜାତ ଦ୍ରବ୍ୟକୁ, ଯଥା- ଶସ୍ୟ, ଦୀର୍ଘଦିନ ପର୍ଯ୍ୟନ୍ତ ସାଇତି ରଖାଯାଇପାରେ ଏବଂ ବ୍ୟବହାର କରାଯାଇପାରେ । ଆହୁରି ମଧ୍ୟ ଯୁକ୍ତି କରାଯାଏ ଯେ, ଜନସଂଖ୍ୟା ବୃଦ୍ଧି ପାଇଲେ ଏବଂ ପାଖରେ ପଶୁମାନେ ରହିଲେ, ରୋଗ ଖୁବ୍ ଶୀଘ୍ର ବ୍ୟାପିଯାଏ । ଫଳରେ ମହାମାରୀର ସଂକ୍ରମଣ ଯୋଗୁଁ ଯଥେଷ୍ଟ ମାତ୍ରାରେ ଜନସଂଖ୍ୟା ବୃଦ୍ଧି ପାଇପାରୁ ନ ଥିଲା ।

ଅନ୍ୟମାନଙ୍କଠାରୁ କୃଷକମାନେ ଥିଲେ ପୃଥକ୍ । ସେମାନେ କୃଷି ଜମି ପାଖରେ ସ୍ଥାୟୀ ରୂପରେ ଜନବସତି ସ୍ଥାପନ କଲେ । ସେମାନେ କୃଷିକୁ ଛାଡ଼ି ଚାଲିଯାଉ ନ ଥିଲେ । ସମ୍ଭବତଃ ଏହି କାରଣରୁ ସେମାନେ ପଶୁପାଳକମାନଙ୍କ ଅପେକ୍ଷା କମ୍ ସ୍ୱତନ୍ତ୍ର ଥିଲେ । ଗୋଟାଏ ବିନ୍ଦୁ ପର୍ଯ୍ୟନ୍ତ ଏହା ସେମାନଙ୍କୁ ଗୋଟାଏ ସ୍ଥାନରେ ସ୍ଥିର ଭାବରେ ରଖିଦେଉଥିଲା । ସାଧାରଣତଃ କୃଷକମାନେ ସାମାଜିକ ସ୍ତରରେ କମ୍ ମାନ୍ୟତା ଲାଭ କରୁଥିଲେ । ସେମାନେ ରାଜ୍ୟ ବ୍ୟବସ୍ଥା ପ୍ରତି ଅସନ୍ତୁଷ୍ଟ ହେଲେ ଜନବସତି ତ୍ୟାଗକରି ନୂଆ ସ୍ଥାନକୁ ଚାଲିଯାଉଥିଲେ । ଯାହାକୁ କୃଷକ ବିଦ୍ରୋହ ବୋଲି କୁହାଯାଏ, ତା'ର ପ୍ରଥମ ଉଲ୍ଲେଖ ମିଳେ ଦ୍ୱିତୀୟ ସହସ୍ରାବ୍ଦୀର ଆଦ୍ୟଭାଗରେ । ଏହି ଦୃଷ୍ଟିରୁ ଦେଖିଲେ, ଚୀନ୍ କୃଷକଠାରୁ ଏଠାକାର ସ୍ଥିତି ଭିନ୍ନ ଥିଲା, କାରଣ ପ୍ରାଚୀନ ଚୀନ୍‌ରେ କୃଷକ ଅନେକ ବିଦ୍ରୋହ କରିଥିଲା । କୃଷକ ଜମି ଉପରେ ଅଧିକ ନିର୍ଭରଶୀଳ ଥିଲା । ଏହି ନିର୍ଭରଶୀଳତା ତା'ର ଦେବୀ ପୂଜାରେ ପ୍ରତିଫଳିତ ହେଉଥିଲା । ଦେବୀଙ୍କୁ ସେ ପୃଥିବୀ ଏବଂ ଜନନକ୍ଷମତାଧାରିଣୀର ପ୍ରତୀକ ରୂପେ ଆରାଧନା କରୁଥିଲା ।

କୃଷକକୁ ଜାତି ସହିତ ଅଧିକ ଚିହ୍ନିତ କରାଯାଉଥିଲା । ଜାତି, ଥିଲା ବଂଶଠାରୁ ପୃଥକ୍ । ଏହା ସାଧାରଣତଃ କୁଳ ସମ୍ବନ୍ଧିତ ନ ଥିଲା । ସମ୍ବଳ ବା ସମ୍ପଦା ଉପରେ ଜାତି ଲୋକଙ୍କ ସର୍ବଦା ସମାନ ଅଧିକାର ନ ଥିଲା । କୃଷକ ସମାଜ ନାନା କିସମର ଥିଲା । ଜମି ଉପରେ କୃଷକର ଅଧିକାର କିମ୍ବା ଜମିମାଲିକ ଓ ରାଜ୍ୟ ସହ ତା'ର ଅଧିକାରିକ ସମ୍ବନ୍ଧ ଆଧାରରେ ତା'ର ସାମାଜିକ ସ୍ଥିତି ନିର୍ଦ୍ଧାରିତ ହେଉଥିଲା । ସବୁଠାରୁ ସହଜ ବ୍ୟବସ୍ଥାରେ ନିଜ ଜମିକୁ ଚାଷ କରୁଥିବା କୃଷକ ରାଜ୍ୟକୁ କର ବା ରାଜଦେୟ ଦେଉଥିଲା । ଯେଉଁ କୃଷକ ଅନ୍ୟର ଜମିକୁ ଚାଷ କରୁଥିଲା, ସେ ମୂଳ ଜମିମାଲିକକୁ ପାଉଣା ଦେଉଥିଲା । ରାଜସ୍ୱ ରୂପରେ କୃଷକଠାରୁ କେତେ ପରିମାଣରେ ଶ୍ରମ ଆଦାୟ ହେଉଥିଲା ଏବଂ କେଉଁ ମାତ୍ରାରେ କୃଷକକୁ ଅଧୀନ କରି ରଖାଯାଉଥିଲା, ତା'ର ଐତିହାସିକ ମୂଲ୍ୟାଙ୍କନ କରାଯାଏ ।

ରାଜ୍ୟ ସ୍ଥାପନ ପାଇଁ ତଥା ସହରର ବିକାଶ ପାଇଁ କୃଷକ ଓ କୃଷି ଥିଲା ଏକ ମୂଳ ସର୍ତ୍ତ, କାରଣ କୃଷିରୁ ବଳକା ଉତ୍ପାଦନ ହେଲେ ପ୍ରତ୍ୟକ୍ଷ କୃଷିକର୍ମରେ ନିୟୋଜିତ ନ ଥିବା ବର୍ଗ ପାଇଁ ଖାଦ୍ୟ ଯୋଗାଣ ହୋଇପାରିବ ।

କୃଷକ ସମାଜ ନିବିଡ଼ ଭାବରେ ଉନ୍ମେଷ ଲାଭ କରୁଥିବା ରାଜ୍ୟ ସହ ଯୋଡ଼ିହୋଇ ରହିଥିଲା । ଅନେକ କ୍ଷେତ୍ରରେ ଏହି ରାଜ୍ୟ ପ୍ରାରମ୍ଭିକ ଅବସ୍ଥାରେ ଥିଲା । ପୁଣି କେତେକ କ୍ଷେତ୍ରରେ ଏହା ପୂର୍ବରୁ ସ୍ଥାପିତ ହୋଇଥିବା ଏକ ବିଶାଳ ରାଜ୍ୟରୁ ବିଚ୍ଛିନ୍ନ ହୋଇ ସ୍ୱାଧୀନ ଭାବରେ ଉନ୍ମେଷ ଲାଭ କରୁଥିଲା । ଏକ ନିର୍ଦ୍ଦିଷ୍ଟ କ୍ଷେତ୍ର ଉପରେ ନିଜର ଦାବି ଉପସ୍ଥାପନ କରିବା ସହିତ ରାଜ୍ୟ ସ୍ୱ କ୍ଷେତ୍ରରେ ରହିଥିବା ଜନସମୂହ ଏବଂ ସମ୍ପଦା (resources) ଉପରେ ବୈଧାନିକ କର୍ତ୍ତୃତ୍ୱ ଜାହିର କରିଥିଲା । ସେହି ପ୍ରକ୍ରିୟାରେ ଏହା ପ୍ରଶାସନିକ ସ୍ୱାଧୀନତା ଲାଭ କରିଥିଲା ଏବଂ ବିଭିନ୍ନ ପର୍ଯ୍ୟାୟର ପ୍ରଶାସନ ମାଧ୍ୟମରେ ନିଜ କ୍ଷମତାକୁ ବ୍ୟବହାର କରୁଥିଲା । ରାଜ୍ୟର ବିଭିନ୍ନ ଅନୁଷ୍ଠାନ, ଯଥା- ରାଜକୋଷ, ପ୍ରଶାସନିକ କାର୍ଯ୍ୟାଳୟ ଆଦି, ଯାହା ରାଜ୍ୟର ସେନା ଓ ଅନ୍ୟ ବଳପ୍ରୟୋଗ ବ୍ୟବସ୍ଥାରେ କେନ୍ଦ୍ରିତ ଥିଲା, ସେସବୁକୁ ରାଜଧାନୀରେ ଠୁଳ କରି ରଖାଯାଇଥିଲା । ରାଜ୍ୟର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସହରରେ ସାଧାରଣତଃ ରାଜଧାନୀ ସ୍ଥାପିତ ହୋଇ ରହିଥିଲା ।

## ସହର ବାସିନ୍ଦା (Townsmen)

ସହର ବା ନଗରର ଉତ୍ପତ୍ତି ସବୁ ସ୍ଥଳରେ ଏକା ଭଳି ନ ଥିଲା । କେତେକ ସହର ପ୍ରଶାସନିକ କେନ୍ଦ୍ର ରୂପରେ ଉତ୍ପତ୍ତି ଲାଭ କରିଥିଲେ । ସେଠାରେ ରାଜକୋଷ ରହିଥିଲା ଏବଂ ରାଜକୋଷରେ ରାଜଦେୟ (tribute) ଜମା ହେଉଥିଲା । କେତେକ ସହର ହସ୍ତଶିଳ୍ପ ଉତ୍ପାଦନ କେନ୍ଦ୍ର ରୂପରେ ବିକଶିତ ହୋଇଥିଲା । ଗ୍ରାମ୍ୟଶିଳ୍ପ ଅପେକ୍ଷା ଏହି ହସ୍ତଶିଳ୍ପ ଅଧିକ ସୁନିୟୋଜିତ ଥିଲା । କେତେକ ସହରର ବିକାଶ ତୀର୍ଥସ୍ଥଳୀ ରୂପରେ ସମ୍ଭବ ହୋଇଥିଲା । ପୁଣି ଆଉ କେତେକ ସହର ବସ୍ତୁ ବିନିମୟ କେନ୍ଦ୍ର ରୂପରେ ବିକାଶ ଲାଭ କରିଥିଲା । ପ୍ରାୟତଃ ସହରଗୁଡ଼ିକର ଏକ ନିର୍ଦ୍ଦିଷ୍ଟ ଗ୍ରାମୀଣ କ୍ଷେତ୍ର ରହିଥିଲା । ଗ୍ରାମୀଣ କ୍ଷେତ୍ର ଓ ମୁଖ୍ୟ ସହର ମଧ୍ୟରେ ସାନ ସାନ ସହର ମଧ୍ୟ ରହିଥିଲା । ସହରର ଯୋଜନାରେ ଏକ ପ୍ରତିରକ୍ଷା କବଚ (defence circuit) ରହିଥିଲା ଏବଂ ମଧ୍ୟ ଭାଗରେ କ୍ଷମତାସମ୍ପନ୍ନ ଅଧିକାରୀ ବର୍ଗ ରହୁଥିଲେ । ଉତ୍ପାଦନ ଓ ବିନିମୟ ମଧ୍ୟରେ ଥିବା ଆର୍ଥିକ ସୂତ୍ରକୁ ସହର ପ୍ରତିଫଳିତ କରୁଥିଲା । ସମ୍ପତ୍ତିର ଉପଭୋଗକୁ କେତେକ ସହରର ଚରିତ୍ର ବୋଲି ମଧ୍ୟ ମନେ

କରାଯାଉଥିଲା । ହସ୍ତଶିଳ୍ପରୁ ପ୍ରସ୍ତୁତ ସାମଗ୍ରୀର ଉତ୍ପାଦନ ଏବଂ ବିନିମୟରେ ସଂପୃକ୍ତ ଥିବା ଲୋକ ସହରରେ ରହୁଥିଲେ । ସେମାନଙ୍କୁ ହସ୍ତଶିଳ୍ପୀ ଏବଂ ବଣିକ ବୋଲି କୁହାଯାଉଥିଲା । ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଗ୍ରାମୀଣ କ୍ଷେତ୍ର ସହିତ ମଧ୍ୟ ସମ୍ପର୍କ ରଖିଥିଲେ । ଗାଁରୁ ସହରକୁ ସାମୟିକ ପ୍ରବାସରେ ଆସୁଥିବା ଗୋଷ୍ଠୀର ରହଣି ପାଇଁ ସହରରେ ବ୍ୟବସ୍ଥାମାନ ରହିଥିଲା । ଖାଦ୍ୟସାମଗ୍ରୀ ପାଇଁ ସହର ବାସିନ୍ଦା ଗ୍ରାମୀଣ କ୍ଷେତ୍ର ଉପରେ ନିର୍ଭରଶୀଳ ଥିଲେ । ଏହା ଗ୍ରାମ ଓ ସହର ମଧ୍ୟରେ ବିବିଧ କିସମର ଅସମ ସମ୍ପର୍କ ସ୍ଥାପନକୁ ପ୍ରୋତ୍ସାହିତ କରୁଥିଲା ।

ଗ୍ରାମ ତୁଳନାରେ ସହରରେ ବୃତ୍ତି ଆଦିର ବର୍ଗୀକରଣ ଅଧିକ ସୁସ୍ପଷ୍ଟ ଥିଲା । ହସ୍ତଶିଳ୍ପ ଉତ୍ପାଦନ ଏବଂ ବିନିମୟର କେନ୍ଦ୍ର ଭାବରେ ସହରରେ ଉତ୍ପାଦନର ମୋଟ ପରିମାଣକୁ ବୃଦ୍ଧି କରିବାପାଇଁ ମହତ୍ତ୍ୱ ଦିଆଯାଉଥିଲା । ଏହି ଉତ୍ପାଦନ ଅନେକ ଗ୍ରାମର ଆବଶ୍ୟକତାକୁ ପୂରଣ କରିବାପାଇଁ ଉଦ୍ଦିଷ୍ଟ ଥିଲା । ଯେହେତୁ ସହରରେ ଅନେକ ପୋଖତ ଶିଳ୍ପୀ ରହୁଥିଲେ ଏବଂ ଉତ୍ପାଦିତ ସାମଗ୍ରୀର ବ୍ୟାପକ ଆବଣ୍ଟନ ହୋଇପାରୁଥିଲା, ସାମଗ୍ରୀର ଗୁଣାତ୍ମକ ମାନ ଉପରେ ମଧ୍ୟ କମ୍ ମହତ୍ତ୍ୱ ଦିଆଯାଉ ନ ଥିଲା । ଉଭୟ ପରିମାଣ ଓ ଗୁଣର ଚାହିଦା ଥିବାରୁ ହସ୍ତଶିଳ୍ପୀମାନଙ୍କ ମଧ୍ୟରେ ଏକପ୍ରକାରର ସଂଗଠନ ବା ସଭା ଗଢ଼ିଉଠିଥିଲା । ଏହା ଖାସ୍‌କରି ସେହି ସହରରେ ଦେଖିବାକୁ ମିଳୁଥିଲା, ଯେଉଁଠି ହସ୍ତଶିଳ୍ପୀମାନେ ବୃତ୍ତିକୁ ପ୍ରାଧାନ୍ୟ ଦେଇଥିଲେ । ଏହାର ଫଳସ୍ୱରୂପ ବଣିକମାନଙ୍କ ମଧ୍ୟରେ ବି ସଂଗଠନ ଗଢ଼ିଉଠିଲା । ସେମାନଙ୍କର ବୃତ୍ତି ଥିଲା ଉତ୍ପାଦିତ ସାମଗ୍ରୀର ପରିବହନ ଓ ଆବଣ୍ଟନ କରିବା; ଗୋଟାଏ ସାମଗ୍ରୀ ଦେଇ ପ୍ରତିବଦଳରେ ଆଉ ଏକ ସାମଗ୍ରୀ ଆଣିବା । ଏଭଳି ସଂଗଠନ, ଯାହାକୁ ୟୁରୋପର ଗିଲ୍ଡ (guild) ସହିତ ତୁଳନା କରିହେବ, ସହରୀ ଜୀବନରେ ପ୍ରମୁଖ ସ୍ଥାନ ଗ୍ରହଣ କଲା । ସଂଗଠନର ସମ୍ବନ୍ଧ ପ୍ରଥମେ ବୃତ୍ତିଭିତ୍ତିକ ଥିଲା । ମାତ୍ର ପରେ ସଂଗଠନ ବ୍ୟାପକ ହେଲା ଏବଂ ସେହି ଆଧାରରେ ବୈବାହିକ ସମ୍ବନ୍ଧ ମଧ୍ୟ ସ୍ଥାପିତ ହେଲା । ଯେତେବେଳେ ସଂଗଠନ ପୁଞ୍ଜି ଲଗାଣ କଲା ଏବଂ ସମ୍ପତ୍ତି ଅଧିକାର କଲା, ତା'ର ସ୍ଥିତି ଅଧିକ ସୁଦୃଢ଼ ହେଲା । ବଣିକ ସଂଗଠନ ଓ କାରିଗର ସଂଗଠନମାନେ ଧାର୍ମିକ ସଂପ୍ରଦାୟକୁ ମଧ୍ୟ ପୃଷ୍ଠପୋଷକତା ପ୍ରଦାନ କଲେ । ଖାସ୍‌କରି ଧାର୍ମିକ ସ୍ଥଳମାନଙ୍କରେ ସେମାନେ ଆର୍ଥିକ ସାହାଯ୍ୟ, ସମ୍ପତ୍ତି ଆଦି ପ୍ରଦାନ କରିଥିବାର ଉଲ୍ଲେଖ ମଧ୍ୟ ମିଳିଥାଏ ।

ସାଧାରଣତଃ ସାମଗ୍ରୀ ଉପରେ ଦିଆନିଆ ବା ବିନିମୟର ସମ୍ପର୍କ ନିର୍ଭର କରୁଥିଲା । ପ୍ରତ୍ୟେକ ବସ୍ତୁର ମୂଲ୍ୟକୁ ଆକଳନ କରି ସିଧାସଳଖ ବସ୍ତୁ ବିନିମୟ ହେଉଥିଲା । ବସ୍ତୁର କିସମ ସୀମିତ ଥିବାରୁ ଆଞ୍ଚଳିକ ସ୍ତରରେ ବିନିମୟ କାର୍ଯ୍ୟ ସମ୍ପନ୍ନ ହେଉଥିଲା । ଯେଉଁଠାରେ

ବସ୍ତୁ ବିନିମୟ ହେଉଥିଲା, ତାହା ପ୍ରାରମ୍ଭିକ ସ୍ତରର ବଜାରରୂପେ କାର୍ଯ୍ୟ କରୁଥିଲା । ସେଠାରେ ବିଭିନ୍ନ କିସମର ସାମଗ୍ରୀ ବିନିମୟ ହେଉଥିଲା । ତହିଁରେ ମୂଲ୍ୟବାନ ସାମଗ୍ରୀ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । କେଉଁ ସାମଗ୍ରୀର ବିନିମୟ ହେବ, ତାହା ଆର୍ଥିକ ଆବଶ୍ୟକତାଠାରୁ ଅଧିକ ସାମାଜିକ ଆବଶ୍ୟକତା ଦ୍ୱାରା ନିର୍ଦ୍ଧାରିତ ହେଉଥିଲା । ତେଣୁ ମହାର୍ଘ ବସ୍ତୁଗୁଡ଼ିକ ବଜାରରେ ମିଳୁ ନ ଥିଲା । ସମ୍ଭ୍ରାନ୍ତ ବର୍ଗର ପ୍ରତୀକ ରୂପେ ଏଭଳି ମହାର୍ଘ ବସ୍ତୁ ଉପହାର ଅଥବା ପୃଷ୍ଠପୋଷକତାର ବସ୍ତୁ ଭାବରେ ଉଚ୍ଚ ସ୍ତରର ପରିବାରମାନଙ୍କରେ ଦିଆନିଆ ହେଉଥିଲେ । ବାଣିଜ୍ୟ ଯୋଗୁଁ ଏହି ବସ୍ତୁଗୁଡ଼ିକ ପଣ୍ୟବସ୍ତୁ ବା commodityରେ ପରିଣତ ହେଲେ ଏବଂ ସୁଦୂର ଅଞ୍ଚଳକୁ ନିଆ ହୋଇଗଲେ । ବିକ୍ରିରେ ସାଧାରଣତଃ ମୁଦ୍ରା ବିନିମୟ କଥା ଆସେ । ଧାତୁ ନିର୍ମିତ ମୁଦ୍ରାର ଆଗମନ ପରେ ବିନିମୟର ସ୍ୱଭାବ ଖୁବ୍ ଶୀଘ୍ର ପରିବର୍ତ୍ତନ ହେଲା । ସାମଗ୍ରୀଗୁଡ଼ିକର ଏକ ସାଧାରଣ ମାଧ୍ୟମରେ ମୂଲ୍ୟାଙ୍କନ କରାଗଲା । ସେହି ସାଧାରଣ ମାଧ୍ୟମ ହେଲା ମୁଦ୍ରା । ସାଧାରଣତଃ ବଣିକ ସଂଘ ବା ରାଜ୍ୟ ମୁଦ୍ରାକୁ ପ୍ରଚଳନ କରୁଥିଲେ । ଧାତୁର ମୂଲ୍ୟ ଏବଂ ପରିମାଣ ଆଧାରରେ ମୁଦ୍ରାର ମୂଲ୍ୟ ନିର୍ଦ୍ଧାରିତ ହେଉଥିଲା । ମୁଦ୍ରାକୁ ସହଜରେ ନିଆଯାଇପାରୁଥିବାରୁ ସୁଦୂର କ୍ଷେତ୍ର ସହିତ ମଧ୍ୟ ବିନିମୟ ସମ୍ଭବ ହେଲା । ମୁଦ୍ରା ସମ୍ପଳକୁ ଠୁଳ କରିବାରେ ତଥା ପୂର୍ବାନୁମାନରେ ସାହାଯ୍ୟ କଲା । ବିନିମୟର ଜଟିଳତା ବଜାରର ଅଭିବୃଦ୍ଧିରେ ସହାୟକ ହେଲା ।

ସହରୀ ଜୀବନକୁ ବିଷମତା ସର୍ବଦା ଗ୍ରାମ୍ୟ ଜୀବନଠାରୁ ପୃଥକ୍ କରୁଥିଲା । ସହରରେ ଜନବସତିମାନ ଖୁନ୍ଦାଖୁନ୍ଦି ହୋଇ ରହିଥିଲେ । ମୋଟ ଜନସଂଖ୍ୟା ମଧ୍ୟ ଗ୍ରାମଠାରୁ ଅଧିକ ଥିଲା । ସାମାଜିକ ଚାଲିଚଳଣି ଗ୍ରାମ ତୁଳନାରେ ସହରରେ କଠୋର ନ ଥିଲା । ସହରରେ ନାନା କିସମର ବିଚାର ଜନ୍ମ ନେଉଥିଲେ ଏବଂ ବିକାଶଲାଭ ମଧ୍ୟ କରୁଥିଲେ । ଆରମ୍ଭିକ ବ୍ରାହ୍ମଣ୍ୟ ଗ୍ରନ୍ଥପୁରାଣମାନଙ୍କରେ ସହରକୁ ସ୍ୱୀକାର କରାଯାଉ ନ ଥିଲା । ମାତ୍ର ପରବର୍ତ୍ତୀ ରଚନାମାନଙ୍କରେ ଏହି ମତରେ ପରିବର୍ତ୍ତନ ଦେଖିବାକୁ ମିଳିଥିଲା । ପରିଷ୍କୃତ ସଂସ୍କୃତି ଥିଲା ସହର ଆଧାରିତ । ଅନେକ କାବ୍ୟ ରଚନାରେ ସହର ମନୁଷ୍ୟ ଥିଲା ପ୍ରମୁଖ ଚରିତ୍ର । ସରଳ ଗ୍ରାମ୍ୟ ଚରିତ୍ରଠାରୁ ସେ ଥିଲା ସମ୍ପୂର୍ଣ୍ଣ ବିପରୀତ ।

## ଜାତିର ଉତ୍ପତ୍ତି

ଭାରତରେ ସାମାଜିକ ସଂଗଠନର ମୌଳିକ ପ୍ରକ୍ରିୟାକୁ ବୁଝିବାକୁ ହେଲେ ଜାତିର ଉଲ୍ଲେଖ ଅନିବାର୍ଯ୍ୟ । ଜାତି ହେଲା ଏକ ଗୋଷ୍ଠୀ ପରିଚୟ, ଯାହାର ପ୍ରଚଳନ ଆଗରୁ ଥିଲା ଏବଂ ଏବେ ମଧ୍ୟ ରହିଛି । 'ଜାତି' ଶବ୍ଦ (caste)ର ଆଧୁନିକ ୟୁରୋପୀୟ ଭାଷାମାନଙ୍କରେ

ଯେମିତି ବ୍ୟବହାର ହୁଏ ତା'ର ମୂଳ ଅର୍ଥ ହେଲା 'ଶୁଦ୍ଧ' । ଏହା 'ବର୍ଣ୍ଣ'ର ବ୍ୟବହାରକୁ ପ୍ରତିଫଳିତ କରେ । ଆଜିକାଲି 'ବର୍ଣ୍ଣ'କୁ 'କର୍ମକାଣ୍ଡ ଅବଧାରଣା' ବୋଲି ଅନୁବାଦ କରାଯାଉଛି । ଜାତି କ୍ରମରେ ସବୁଠାରୁ ଉଚ୍ଚ ଏବଂ ଶୁଦ୍ଧ ଜାତି ହେଲା ବ୍ରାହ୍ମଣ ଜାତି । କୌତୂହଳର କଥା ହେଲା ଯେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଗ୍ରୀସ୍‌ର ମେଘାସ୍ଥିନିସ ଭାରତୀୟ ସମାଜର ଏକ ବିବରଣୀ ଦେବାକୁ ଯାଇ ସାତଗୋଟି ଭାଗର ଉଲ୍ଲେଖ କରିଛନ୍ତି । ଦ୍ୱିତୀୟତଃ, ଏହି ସାମାଜିକ ବର୍ଗୀକରଣରେ ସେ ଶୁଦ୍ଧତାର ଅନୁପାତକୁ ଯୋଡ଼ି ନାହାନ୍ତି । ତାଙ୍କ ମତାନୁସାରେ, ଦାର୍ଶନିକମାନେ ଥିଲେ ସବୁଠାରୁ ଅଧିକ ସମ୍ମାନାସ୍ପଦ । ଦାର୍ଶନିକଙ୍କ ମଧ୍ୟରେ ସେ ବ୍ରାହ୍ମଣମାନଙ୍କ ସହିତ ଅନ୍ୟାନ୍ୟ ଗତାନୁଗତିକତା ବିରୋଧୀ ସମୁଦାୟର କେତେକ ଲୋକଙ୍କୁ ମଧ୍ୟ ସାମିଲ କରିଥିଲେ । ଉଦାହରଣସ୍ୱରୂପ, ଶ୍ରମଣକୁ ସେ ଦାର୍ଶନିକ ଗୋଷ୍ଠୀରେ ରଖିଥିଲେ । କିନ୍ତୁ ତା'ଠାରୁ ବଡ଼ କଥା ହେଲା ଯେ, ଶ୍ରମଣମାନେ କଦାପି ବ୍ରାହ୍ମଣମାନଙ୍କୁ ଉଚ୍ଚତମ ସୋପାନର ବୋଲି ସ୍ୱୀକାର କରୁ ନ ଥିଲେ । ଭାରତ ବାହାରେ କେତେକ ସମାଜରେ ମଧ୍ୟ ଜାତିର କେତୋଟି ଉପାଦାନ ରହିଥିବା କଥା ଲକ୍ଷ୍ୟ କରାଯାଏ, ମାତ୍ର ଭାରତରେ ଏହାର ଯେଉଁ ଢାଞ୍ଚା, ତାହା ଅନ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ ।

କର୍ମକାଣ୍ଡ, ରୀତିନୀତି ଅନୁସାରେ ଦେଖିଲେ ବ୍ରାହ୍ମଣମାନେ ହେବେ ସର୍ବୋଚ୍ଚ ସ୍ତରର, କାରଣ ରୀତିନୀତିରେ ସେମାନେ ଶୁଦ୍ଧତାର ପ୍ରତିନିଧିତ୍ୱ କରୁଥିଲେ । ଏହି ବିଚାରର ଉତ୍ପତ୍ତି ବୈଦିକ ରଚନାରେ ପ୍ରଥମେ ଦେଖିବାକୁ ମିଳିଥିଲା । ଯେହେତୁ ବୈଦିକ ରଚନାକୁ ଆଦ୍ୟତମ ସାହିତ୍ୟିକ ରଚନା ରୂପେ ଗଣନା କରାଯାଏ, ଜାତିର ଉତ୍ପତ୍ତି ବୈଦିକ କାଳରୁ ବୋଲି ମନେକରାଯାଏ । ମାତ୍ର ବୈଦିକ ସାହିତ୍ୟରେ ଜାତି ସମ୍ବନ୍ଧରେ ବ୍ରାହ୍ମଣ ମତ ହିଁ ପ୍ରତିଫଳିତ ହୋଇଥାଏ । ଏହି ମତ ଅନୁସାରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ବର୍ଣ୍ଣର ସୃଷ୍ଟି ହୋଇଥିଲା ଏବଂ ଆରମ୍ଭରୁ ଏହା ଅପରିବର୍ତ୍ତିତ ହୋଇ ରହିଛି । ବ୍ରାହ୍ମଣର ରୀତିନୀତି ଉପରେ ନିୟନ୍ତ୍ରଣ ଥିଲା, ଯାହା ବଳରେ ବର୍ଣ୍ଣର ବ୍ୟାଖ୍ୟା କରିବାକୁ ସେ କର୍ତ୍ତୃତ୍ୱ ଲାଭ କଲା ଓ ତହିଁରେ ଶୁଦ୍ଧତା ପ୍ରଶ୍ନକୁ ଯୋଡ଼ିଲା । ବର୍ଣ୍ଣ ଆଧାରିତ ସମାଜରେ ଶୁଦ୍ଧତା ଓ ଅଶୁଦ୍ଧତାର ଧାରଣା ହେଲା ମୁଖ୍ୟ । ସବୁ କାର୍ଯ୍ୟକଳାପ ସେହି ଅବଧାରଣାକୁ ଦୃଷ୍ଟିରେ ରଖି ସମ୍ପନ୍ନ ହୁଏ । ବର୍ଣ୍ଣ ଏକ ସୁବ୍ୟବସ୍ଥିତ ଏବଂ ଔପଚାରିକ ଢଙ୍ଗରେ ସମାଜକୁ ଚାରୋଟି ବିଭାଗରେ ସୋପାନ କ୍ରମରେ ବିଭକ୍ତ କରିଦେଇଛି । ସେହି ଚାରୋଟି ଭାଗ ହେଲା : ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର । ବ୍ରାହ୍ମଣ ହେଲା ପୂଜକ, କ୍ଷତ୍ରିୟ ହେଲା ଯୋଦ୍ଧା ଓ ସମ୍ଭ୍ରାନ୍ତ, ବୈଶ୍ୟ ହେଲା କୃଷିଜୀବୀ ଓ ବଣିକ ଏବଂ ଶୂଦ୍ର ହେଲା ଅନ୍ୟର କାର୍ଯ୍ୟ କରୁଥିବା ଶ୍ରମିକ । ଏହା ତଳକୁ ଯିବା ଶେଷ ସୋପାନରେ ରହିଥିଲେ ଅସ୍ପୃଶ୍ୟ, ଯାହାକୁ ବର୍ଣ୍ଣାଶ୍ରମରେ ଅନ୍ତର୍ଭୁକ୍ତ କରାଯାଇ ନ ଥିଲା ।

ଅନ୍ୟ ଏକ ଦୃଷ୍ଟିକୋଣରୁ ମଧ୍ୟ ଜାତିର ଉତ୍ପତ୍ତି ଓ କାର୍ଯ୍ୟକଳାପକୁ ଦେଖାଯାଇପାରେ । ଇଂରାଜରେ ଯାହାକୁ କାଷ୍ଟ (caste) ବୋଲି କୁହାଯାଏ, ତାକୁ 'ଜାତି' ଭାବରେ ମଧ୍ୟ ଦେଖାଯାଏ । ଏହି ଶବ୍ଦର ମୂଳ ହେଲା 'ଜାତ' ବା ଜନ୍ମ । ଜାତିଗୁଡ଼ିକୁ ସେଗୁଡ଼ିକର ନାମ ଅନୁସାରେ ତାଲିକା କରାଯାଏ । ଜାତିର ସଂଖ୍ୟା ଏତେ ଅଧିକ ଯେ ଗଣିବା କଷ୍ଟ । ବର୍ଣ୍ଣ ଭଳି ସମସ୍ତ ଜାତିକୁ ଏକ ସୋପାନ ପର୍ଯ୍ୟାୟରେ ତଳ ଉପର କରି ଚିହ୍ନିତ କରିବା ସୁବିଧାଜନକ ହୁଏ ନାହିଁ, ଯଦିଓ ଏହି ଜାତିଗୁଡ଼ିକ ମଧ୍ୟରେ ବି ଅନୁକ୍ରମ (hierarchy) ନାହିଁ ବୋଲି କହିହେବ ନାହିଁ । ଉଭୟ ଜାତି ଓ ବର୍ଣ୍ଣ କେତେକାଂଶରେ ପରସ୍ପର ସହିତ ଯୋଡ଼ି ହୋଇଯାଆନ୍ତି, ଯଦିଓ ଜାତି ଯାହା ଧର୍ମ ସେଇୟା ନୁହେଁ । ସେଥିପାଇଁ ପ୍ରଶ୍ନ ଉଠେ, ଜାତିଭିତ୍ତିକ ସମାଜର ବିକାଶ ହେଲା କେମିତି ? ଏବଂ ପ୍ରଥମେ ଜାତି ନା ପ୍ରଥମେ ବର୍ଣ୍ଣ ? କେତେକ ବିଦ୍ୱାନ୍‌ଙ୍କ ମତରେ ପ୍ରାରମ୍ଭିକ ଓ ମୌଳିକ ବିଭାଗ ହେଲା ବର୍ଣ୍ଣ । ଜାତି ତହିଁରୁ ସୃଷ୍ଟ । ଆଦ୍ୟ ସାହିତ୍ୟିକ ରଚନା ଭାବରେ ପରିଚିତ ବେଦରେ ବର୍ଣ୍ଣର ଉଲ୍ଲେଖ ରହିଛି; ଜାତିର ଉଲ୍ଲେଖ ନାହିଁ । ମାତ୍ର ଏକଥା ବି ଯୁକ୍ତି କରାଯାଇପାରେ ଯେ, ଜାତି ଓ ବର୍ଣ୍ଣ ହେଲେ ଦୁଇଟି ସ୍ୱତନ୍ତ୍ର ଅବଧାରଣା; ସେଗୁଡ଼ିକର ଉତ୍ପତ୍ତି ଅଲଗା ଅଲଗା; କାର୍ଯ୍ୟ ଭିନ୍ନ ଭିନ୍ନ । ଗୋଟାଏ ଐତିହାସିକ ପ୍ରକ୍ରିୟାରେ ବର୍ଣ୍ଣ ମଧ୍ୟରେ ଜାତିକୁ ଅନ୍ତର୍ଭୁକ୍ତ କରିଦିଆଯାଇଛି ।

ବୈଦିକ ରଚନାରୁ ଯାହା ଜଣାପଡ଼େ, ବର୍ଣ୍ଣର ଉତ୍ପତ୍ତି ସୁସ୍ପଷ୍ଟ । କିମ୍ବଦନ୍ତୀ ସୃଷ୍ଟିର ଆରମ୍ଭ କଥା କହେ । ସେହି ଅନୁସାରେ, ଯଜ୍ଞରୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରର ଉତ୍ପତ୍ତି ହେଲା । ପରେ ଏହା ଚାରୋଟି ବର୍ଣ୍ଣ ରୂପେ ପରିଚୟ ପାଇଲେ । ଆଦ୍ୟକାଳୀନ ରଚନାରେ ଜାତିର ଉଲ୍ଲେଖ ନାହିଁ । ଏଥିରେ କୌଣସି ଆଶ୍ଚର୍ଯ୍ୟ ହେବାର ନାହିଁ, କାରଣ ରଚନାଗୁଡ଼ିକ ହେଲା ମୁଖ୍ୟତଃ କର୍ମକାଣ୍ଡ ବିଧିବିଧାନର ସଂକଳନ । ଏସବୁ ସତ୍ତ୍ୱେ ଜାତିର ସୃଷ୍ଟି ବର୍ଣ୍ଣଠାରୁ ପ୍ରାଚୀନ ବି ହୋଇପାରେ । ବଂଶରେ ଜାତିର ମୂଳ ରହିଥାଇପାରେ । ପରେ ବଂଶ ଓ କୁଳରୁ ଜାତିର ଉଦ୍ଭବ ହୋଇଥାଇପାରେ ।

ଏକ ଜାତିଭିତ୍ତିକ ସମାଜରେ ପରିଣତ ହେବାପାଇଁ ସମାଜର ତିନୋଟି ଗୁଣ ରହିଥିବା କଥା : ସମାଜରେ ସାମାଜିକ ବିଷମତା ରହିଥିବା କଥା; ଆର୍ଥିକ ସମ୍ବଳ ଉପରେ ଭିନ୍ନ ଭିନ୍ନ ସାମାଜିକ ସମୁଦାୟର ସମାନ ଅଧିକାର ରହି ନ ଥିବା କଥା; ଏବଂ ସାମାଜିକ ଅସମତାକୁ ଯଥାର୍ଥ ବୋଲି ସିଦ୍ଧ କରିବାକୁ ଏକ ଅଲଂଘନୀୟ ତାତ୍ତ୍ୱିକ ଆଧାର ରହିଥିବା କଥା । ତା'ଛଡ଼ା, ଅନୁକ୍ରମ (hierarchy)କୁ ବିଧି ନିର୍ଦ୍ଦେଶ ବୋଲି ସିଦ୍ଧାନ୍ତ ରହିଥିବା କଥା । ଯେଉଁମାନେ ଧାର୍ମିକ ବିଚାରଧାରାକୁ ନିୟନ୍ତ୍ରଣ କରନ୍ତି, ସେମାନେ ଶୁଦ୍ଧତା ଓ ଅଶୁଦ୍ଧତାର ମାତ୍ରାକୁ ନିର୍ଦ୍ଧାରଣ କରି ସେହି ଆଧାରରେ ଗୋଟାଏ ସମୁଦାୟକୁ ଅନ୍ୟରୁ ପୃଥକ୍ କରନ୍ତି ଓ ଅସମତାକୁ

ଯଥାର୍ଥ ବୋଲି ସିଦ୍ଧ କରନ୍ତି । ପ୍ରଥମ ଦୁଇଟି ଚରିତ୍ର ଅଧିକାଂଶ ସମାଜରେ କମ୍ ବେଶି କରି ରହିଥାଏ । ସେ ଯାହା ହେଉ, ଏଗୁଡ଼ିକ ହେଲେ ଜାତିର ଆବଶ୍ୟକୀୟ ଚରିତ୍ର । ବଂଶ ସମୁଦାୟ (clan organisations)ରେ ମଧ୍ୟ ଈଷତ୍ ପରିମାଣରେ ଏହା ରହିଥାଇପାରେ । ସୈଦ୍ଧାନ୍ତିକ ଉପାଦାନ ବର୍ଣ୍ଣରୁ ଆନୀତ ଏବଂ ଏହା ହେଲା ହିନ୍ଦୁ ସମାଜର ବୈଶିଷ୍ଟ୍ୟ । ଗୋଟାଏ ସମୁଦାୟକୁ ପୂର୍ଣ୍ଣତଃ ଶୁଦ୍ଧ ବୋଲି ସିଦ୍ଧ କରିବାକୁ ହେଲେ ଆଉ ଏକ ସମୁଦାୟକୁ ସମାନ ପରିମାଣରେ ଅଶୁଦ୍ଧ ବୋଲି ଦର୍ଶାଇବା ଜରୁରି ହୋଇପଡ଼େ । ସେହି କ୍ଷେତ୍ରରେ ଆବଶ୍ୟକତା ପଡ଼େ ଅସ୍ପୃଶ୍ୟର । ତାକୁ ପୂର୍ଣ୍ଣତଃ ଅଶୁଦ୍ଧ ବୋଲି ସିଦ୍ଧ କରାଯାଏ ।

ବଂଶ (clan) ଓ ଜାତି ମଧ୍ୟରେ ଅନେକ ନିବିଡ଼ ସାଦୃଶ୍ୟ ଦେଖିବାକୁ ମିଳେ । 'ଜାତ' ଶବ୍ଦରୁ 'ଜାତି' ତା'ର ଅର୍ଥ ପାଏ; ସେହି 'ଜାତ' ବା ଜନ୍ମରୁ ଜାତିର ସଦସ୍ୟ ନିର୍ଦ୍ଧାରିତ ହୁଅନ୍ତି; ସାମାଜିକ ସ୍ଥିତି ମଧ୍ୟ ସେହି ଜନ୍ମରୁ ସ୍ଥିରୀକୃତ ହୋଇଯାଏ । କେଉଁ ସମୁଦାୟ ମଧ୍ୟରେ ବିବାହ ହେବ ବା କେଉଁ ସମୁଦାୟରେ ବିବାହ ହୋଇପାରିବ ନାହିଁ, ସମ୍ପତ୍ତିର ଉତ୍ତରାଧିକାର କେଉଁ ନିୟମ ଅନୁସାରେ ପ୍ରାପ୍ତ ହେବ, ଏସବୁ କଥା ସେହି ଜନ୍ମ ବେଳେ ହିଁ ଜାତି ସ୍ଥିର କରିଦିଏ । ଏହା ଜାତିକୁ ସ୍ୱତନ୍ତ୍ର ସତ୍ତା ଖୋଜିବା ପାଇଁ ବଳ ଦିଏ । କର୍ମକାଣ୍ଡ ଓ ପୂଜା ଆରାଧନାରେ ରହିଥିବା ପାର୍ଥକ୍ୟ ତଥା ଜାତି ମଧ୍ୟରେ ରହିଥିବା ଅନୁକ୍ରମ (hierarchy) ଯୋଗୁଁ ଜାତି ବିଭାଜନ ଦୃଢ଼ୀଭୂତ ହୁଏ । ଏହି ସତ୍ତାଗୁଡ଼ିକ କାଳକ୍ରମେ ନିଜର ସାଂସ୍କୃତିକ ଅସ୍ମିତାକୁ ବିକଶିତ କରନ୍ତି, କାରଣ ସେମାନଙ୍କର ଭାଷା, ରୀତିନୀତି ଏବଂ ଧାର୍ମିକ ଅନୁଷ୍ଠାନ ଅନ୍ୟଠାରୁ ପୃଥକ୍ । ବଂଶ (clan) ଓ ଜାତି ମଧ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଭେଦ ହେଲା ଯେ, ସମାଜରେ ବୃତ୍ତି ସାମାଜିକ ମର୍ଯ୍ୟାଦାର ପ୍ରତୀକ ହୁଏ, କାରଣ ବଂଶ ଆଧାରିତ ସମାଜ ତୁଳନାରେ ଜାତିଭିତ୍ତିକ ସମାଜରେ ବୃତ୍ତିର ପରିସର ବ୍ୟାପକ ହୁଏ । ଅନ୍ୟ ସମାଜଗୁଡ଼ିକ ସହିତ ସମ୍ପର୍କ ବୃଦ୍ଧି ପାଇଲେ ଏହି ଜାତି ପାର୍ଥକ୍ୟ ଅନେକ ମାତ୍ରାରେ ପ୍ରଭାବିତ ହୋଇଥାଏ ।

ସାମାଜିକ ସଂଗଠନର ବ୍ୟବସ୍ଥାକୁ ବିକଶିତ ହେବାକୁ ଅନେକ ସମୟ ଲାଗିଥିଲା । ପ୍ରାକ୍-ବୈଦିକ ସମାଜର ଚରିତ୍ରକୁ ଯଥୋଚିତ ମାତ୍ରାରେ ଅନୁଶୀଳନ କରାଯାଇପାରି ନାହିଁ, କାରଣ ତତ୍କାଳୀନ ତଥ୍ୟ-ପ୍ରମାଣଗୁଡ଼ିକ ହେଲା ପ୍ରତ୍ନତାତ୍ତ୍ୱିକ । ଦ୍ୱିତୀୟତଃ, ତାହା ସାମାଜିକ ବ୍ୟବସ୍ଥାକୁ ଅଧ୍ୟୟନ କରିବା ଦୃଷ୍ଟିରୁ ସହଜପାଠ୍ୟ ନୁହେଁ । ଫଳସ୍ୱରୂପ, ଏ ସମ୍ପର୍କରେ ଯେଉଁ ମତ ଦିଆଯାଏ, ତାହା କେବଳ ଅନୁମାନ ମାତ୍ର । କୁହାଯାଏ, ତାମ୍ରପାଷାଣ (chalcolithic) ସମାଜରେ ସର୍ଦ୍ଦାରର ରାଜୁତି (chiefship) ରହିଥିଲା, ଯାହାକୁ ଏକପ୍ରକାରର ବଂଶ ସଂଗଠନ (clan organization) ସହିତ ତୁଳନା କରିହେବ । ନଗରୀୟ ହରପ୍ପା ସଂସ୍କୃତି ସେତେବେଳେ ଏକ ଜଟିଳ ବ୍ୟବସ୍ଥା ଭାବରେ ସ୍ଥାପିତ ହୋଇ ରହିଥିବା କଥା ଜଣାଯାଏ ।

ସମ୍ଭବତଃ ସହରର ଉତ୍ପାଦନ ପ୍ରକ୍ରିୟା ଉପରେ ନିୟନ୍ତ୍ରଣ ରଖୁଥିବା କର୍ତ୍ତୃପକ୍ଷ ଏବଂ ସେମାନଙ୍କ ପାଇଁ ପରିଶ୍ରମ କରୁଥିବା ଗୋଷ୍ଠୀ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହିଥିଲା । ମାତ୍ର ଏହାକୁ ଯଥାର୍ଥ ବୋଲି ସ୍ଥାପିତ କରୁଥିବା ମତକୁ ପ୍ରତ୍ନତାତ୍ତ୍ୱିକ ଖୋଦନରୁ ପ୍ରାପ୍ତ ତଥ୍ୟ ଆଧାରରେ ବୁଝିବା ସହଜ ନୁହେଁ । ଅନ୍ୟ ପକ୍ଷରେ, ସେଠାରେ ରହିଥିବା ସାମାଜିକ ଅନୁକ୍ରମ ଖୁବ୍ ସୁସ୍ପଷ୍ଟ । କୃଷକ ଏବଂ ପଶୁପାଳକମାନେ ସହରଗୁଡ଼ିକୁ ଖାଦ୍ୟ ଯୋଗାଉଥିଲେ । ସହରଗୁଡ଼ିକର ନିର୍ମାଣ ଓ ପରିଚାଳନାରୁ ଜଣାଯାଏ ଯେ ତହିଁରେ ବିବିଧ କିସମର ଶ୍ରମର ଉପଯୋଗ ହୋଇଥିଲା । ବିନିମୟ ପାଇଁ ଯେଉଁ ସାମଗ୍ରୀ ମିଳୁଥିଲା, ତା'ର ଉତ୍ପାଦକ ଥିଲେ କାରିଗରମାନେ । ପ୍ରଶାସନିକ କ୍ଷମତାର ପରିବର୍ଦ୍ଧନ କରିବାକୁ ତଥା ତାକୁ ପ୍ରଦର୍ଶନ କରିବାକୁ ଏକ କର୍ତ୍ତୃପକ୍ଷ ବର୍ଗ ରହିଥିଲେ । ଏହି ଧରଣର ଏକ ସମାଜ ସମ୍ଭବତଃ ଜାତିଭିତ୍ତିକ, ଅର୍ଥାତ୍ ଅନୁକ୍ରମ (hierarchy) ଭିତ୍ତିକ ହୋଇଥିବ ବୋଲି ଅନୁମାନ କରାଯାଏ । ଉତ୍ପାଦନ କର୍ତ୍ତା ଏବଂ ଉତ୍ପାଦନ ଉପରେ ନିୟନ୍ତ୍ରଣ ରଖୁଥିବା କର୍ତ୍ତୃପକ୍ଷ ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଥିଲା, ତାକୁ ସମ୍ଭବତଃ ଧାର୍ମିକ ସିଦ୍ଧାନ୍ତ ଆଧାରରେ ଯଥାର୍ଥ ବୋଲି ଦର୍ଶାଯାଇଥିଲା । ସାମାଜିକ ଅନୁକ୍ରମକୁ ସ୍ୱୀକୃତି ଲାଭ କରିବା ଲାଗି ସୈଦ୍ଧାନ୍ତିକ ବୈଧତାର ଆବଶ୍ୟକତା ପଡ଼େ । ଯେତେବେଳେ ଏହି ନଗରୀୟ ବ୍ୟବସ୍ଥାର ପତନ ହେଲା, ସେତେବେଳେ ସେହି ବୈଧତା ମଧ୍ୟ ବୋଧହୁଏ ଉଡ଼ି ଉଭେଇଗଲା । ମାତ୍ର ତା'ପରେ ସୁଦ୍ଧା କେତେକ ବଂଶ ଆଧାରିତ ସାମାଜିକ ସଂଗଠନ ଏବଂ କେତେକ ସାମ୍ଭାବ୍ୟ ଓ ପ୍ରକୃତ ଜାତି ଭିନ୍ନ ଭିନ୍ନ ସ୍ୱରୂପରେ ରହିଯାଇଥିବେ ବୋଲି ଅନୁମାନ କରାଯାଏ ।

ବିଭକ୍ତିକରଣ (segmentation) ଏବଂ ଅନୁକ୍ରମ (hierarchy) ଯୋଗୁଁ ଏହି ଧରଣର ଏକ ସମାଜକୁ ନିୟନ୍ତ୍ରଣ କରିବା ସହଜ ହେଲା । ମାତ୍ର ନିୟନ୍ତ୍ରଣରେ ସ୍ଥାୟିତ୍ୱ ଆଣିବା ଲାଗି ଏକ ସୈଦ୍ଧାନ୍ତିକ ଆଧାରର ଆବଶ୍ୟକତା ପଡ଼ିଲା । ଅନୁକ୍ରମରେ ବୃତ୍ତିକୁ ମଧ୍ୟ ଯୋଡ଼ାଗଲା, କାରଣ ତା' ଦ୍ୱାରା ବ୍ୟବସ୍ଥା ଉପରେ ନିୟନ୍ତ୍ରଣ ରଖିବା ସହଜ ହେଲା । ଉଦାହରଣସ୍ୱରୂପ, ଶ୍ରମକୁ ଅନୁକ୍ରମର ସବା ତଳ ସୋପାନରେ ରଖାଗଲା, ଯଦ୍ୱାରା ନିରନ୍ତର ଶ୍ରମ ପ୍ରାପ୍ତ କରାଯାଇପାରିବ । ସେଥିପାଇଁ ମନେହୁଏ ହରପ୍ପା ଯୁଗ ପରେ ଯେତେବେଳେ ବୈଦିକ ସଂସ୍କୃତିର ବିକାଶ ଘଟିଲା, ସେହି ସୈଦ୍ଧାନ୍ତିକ ବୈଧତାକୁ ବର୍ଣ୍ଣ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ କରିଦିଆଗଲା, ଯାହା ସାମାଜିକ, ଅନୁକ୍ରମ, ବୃତ୍ତି ଏବଂ ଶୁଦ୍ଧତାକୁ ସୁସ୍ପଷ୍ଟ କଲା । ଏହା ପରେ ବର୍ଣ୍ଣସିଦ୍ଧାନ୍ତକୁ ଜାତିର ଅବଧାରଣା ସହିତ ପରିଚିତ ଥିବା ସମାଜଗୁଡ଼ିକ ଉପରେ ଲଦି ଦିଆଗଲା । ଶୁଦ୍ଧତା ଓ ଅଶୁଦ୍ଧତାର ବିଚାରକୁ ଧାର୍ମିକ ଅନୁମୋଦନ ପ୍ରାପ୍ତ ହେଲା ଏବଂ ଜାତି ବ୍ୟବସ୍ଥାରେ ଯୋଡ଼ି ଦିଆଗଲା । ଏହିସବୁ କାରଣରୁ ବ୍ୟବସ୍ଥାର ପରିବର୍ତ୍ତନ କାଠିକର ହୋଇପଡ଼ିଲା ।

କେତେକ ପ୍ରାରମ୍ଭିକ ଜାତିର ଗଠନ ପ୍ରକ୍ରିୟାକୁ ବୁଝିବାକୁ ହେଲେ ସ୍ଥାପିତ ହୋଇସାରିଥିବା ସମାଜ ଓ ଅନ୍ୟମାନଙ୍କ ମଧ୍ୟରେ ଥିବା ସମ୍ପର୍କକୁ ଅନୁଶୀଳନ କରିବାକୁ ହେବ । ଉଦାହରଣସ୍ୱରୂପ, ଅରଣ୍ୟବାସୀ ଏବଂ ଜାତିଭିତ୍ତିକ ସମାଜ ମଧ୍ୟରେ ପାର୍ଥକ୍ୟ ହେଲା ଯେ, ଅରଣ୍ୟବାସୀ ଜାତି ନିୟମକୁ ପାଳନ କରନ୍ତି ନାହିଁ । ଐତିହାସିକ ଚାପ ଯୋଗୁଁ ଉଭୟ ସମାଜ ମଧ୍ୟରେ ଯୋଗସୂତ୍ର ସ୍ଥାପନ ହୋଇଥିଲା । ସନ୍ନ୍ୟାସୀମାନେ ବଣରେ ଆଶ୍ରମ ପ୍ରତିଷ୍ଠା କଲେ; ରାଜାମାନେ ଜଙ୍ଗଲ ସମ୍ପଦା ଉପରେ ଅଧିକାର ସାବ୍ୟସ୍ତ କଲେ; ଜଙ୍ଗଲ ମଧ୍ୟ ଦେଇ ମାର୍ଗ ନିର୍ମାଣ ହେଲା ତଥା ସ୍ଥାନୀୟ ପ୍ରଶାସନ ବନଜାତ ଉତ୍ପାଦନ ଯୋଗାଣ କଲେ । ଜାତି ନିୟମ ଅନୁସାରେ, ଅରଣ୍ୟର ଅଧିବାସୀମାନଙ୍କୁ ମ୍ଳେଚ୍ଛ ବୋଲି ବିବେଚନା କରାଗଲା । ଅର୍ଥାତ୍ ସେମାନେ ହେଲେ ଜାତିଭିତ୍ତିକ ସମାଜର ପରିଧି ବହିର୍ଭୂତ । ଯଦି ସେମାନେ କୃଷକ ବା କାରିଗରରେ ପରିଣତ ହେଉଥିଲେ, ସେମାନଙ୍କୁ ଜାତି ମାନ୍ୟତା ପ୍ରଦାନ କରାଯାଉଥିଲା । ତା'ପରେ ସେମାନେ ସାମାଜିକ ଅନୁକ୍ରମରେ ସ୍ୱୀକୃତ ହେଉଥିଲେ । ମାତ୍ର ବଡ଼ କଥା ହେଲା ଯେ ଏହି ମାନ୍ୟତା ସେତେବେଳେ ପ୍ରଦାନ କରାଯାଉଥିଲା, ଯେତେବେଳେ ସାମାଜିକ ଆବଶ୍ୟକତା ପୂରଣ ଲାଗି ଅଧିକ ଶ୍ରମ କିମ୍ବା ବେଶି ପରିମାଣର କୃଷି ଉତ୍ପାଦନର ଲୋଡ଼ା ପଡୁଥିଲା । ଅର୍ଥାତ୍ ଯେତେବେଳେ ସମାଜ ଏକ ରାଜ୍ୟରୂପେ କାର୍ଯ୍ୟ କରିଥିଲା, ସେତେବେଳେ ତଥାକଥିତ ଅନେକ ମ୍ଳେଚ୍ଛ ସମାଜ ଜାତି ବ୍ୟବସ୍ଥା ଅନ୍ତର୍ଭୁକ୍ତ ହେଉଥିଲେ ।

ସାଧାରଣତଃ ଅରଣ୍ୟ ଅଧିବାସୀର କୌଣସି ବଂଶ (clan) ଯେତେବେଳେ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ର, ସମାନ କୁଳ ସମ୍ବନ୍ଧ, ସମଧରଣର ଭୌତିକ ସଂସ୍କୃତି ଏବଂ ପାଖାପାଖି ସମାନ ମର୍ଯ୍ୟାଦା ଓ ରୀତିନୀତିକୁ ଭୋଗଦଖଲ କରୁଥିଲେ, ସେତେବେଳେ ସେମାନେ ଗୋଟାଏ ସମୁଦାୟରେ ପରିଣତ ହେଉଥିଲେ । ଏହି ଧରଣର ଏକ ସମୁଦାୟର ସଭ୍ୟମାନେ ଯଦି ସମ୍ପଦାର ଅସମାନ ବିତରଣକୁ ମାନିନିଅନ୍ତି ଏବଂ ଅନୁକ୍ରମିକ ମାନ୍ୟତାକୁ ଜନ୍ମଜାତ ବୋଲି ଗ୍ରହଣ କରିନିଅନ୍ତି, ଜାତି ଉପାଦାନମାନ ମୁଣ୍ଡ ଟେକିବେ । ଏସବୁ କେବଳ ଆନୁମାନିକ ମତ । ସେ ଯାହାହେଉ, ସମ୍ବଳ ଏବଂ କର୍ତ୍ତୃତ୍ୱ ପ୍ରତି ଦୃଷ୍ଟିକୋଣ ଯୋଗୁଁ ତଥା ଜାତି ବିଭକ୍ତ ସମାଜ ସହିତ ଅବ୍ୟାହତ ରହିଥିବା ଗହନ ସମ୍ବନ୍ଧ ଯୋଗୁଁ ସାମାଜିକ ପରିବର୍ତ୍ତନ ତ୍ୱରାନ୍ୱିତ ହେଉଥିଲା । ଏହି ନୂତନ ସମୁଦାୟ ରୀତିନୀତି ଓ କର୍ମକାଣ୍ଡକୁ ପାଳନ କରିବାକୁ ସମ୍ମତ ହେଲା ପରେ, ସେମାନଙ୍କୁ ବର୍ଣ୍ଣ ମାନ୍ୟତା ପ୍ରଦାନ କରାଯାଉଥିଲା । ଉଦାହରଣସ୍ୱରୂପ, ସେମାନେ ଧର୍ମଶାସ୍ତ୍ରର ନିୟମଗୁଡ଼ିକ ପାଳନ କରିବା କଥା ଏବଂ ଜାତି ମଧ୍ୟରେ ଶୁଦ୍ଧ-ଅଶୁଦ୍ଧର ଅବଧାରଣାକୁ ସ୍ୱୀକାର କରିନେବା କଥା । ସର୍ଦ୍ଦାରଙ୍କର ପରିବାରବର୍ଗ ଓ ଜ୍ଞାତିକୁଟୁମ୍ବ

କ୍ଷତ୍ରିୟର ମର୍ଯ୍ୟାଦା ପାଇବାକୁ ଆଗ୍ରହୀ ହେଉଥିଲେ ଏବଂ ଅନ୍ୟମାନେ ନିମ୍ନସ୍ଥ ଶୂଦ୍ର ଜାତିରେ ସାମିଲ ହୋଇଯାଉଥିଲେ । ଯେତେବେଳେ ହିନ୍ଦୁଧର୍ମ ସ୍ଥାନୀୟ ଧାର୍ମିକ ପ୍ରବୃତ୍ତିକୁ ଗ୍ରହଣ କଲା, ସ୍ଥାନୀୟ ପୂଜକବର୍ଗକୁ ବ୍ରାହ୍ମଣର ମାନ୍ୟତା ମିଳିଲା । ଯଦି ସ୍ଥାନୀୟ ଧାର୍ମିକ ପରମ୍ପରା ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ଥିଲା, ତେବେ ପୂଜକକୁ ତଳ ଦରଜାର ବ୍ରାହ୍ମଣ ମନେକରାଯାଉଥିଲା ।

ସମାଜର ଜନଜାତି (tribe) ବା ବଂଶ (clan)ରୁ ଜାତିକୁ ଯେଉଁ କ୍ରମ ପରିବର୍ତ୍ତନ ହେଲା ଅର୍ଥାତ୍ ଯାହାକୁ କେବେ କେବେ କୁହାଯାଏ 'ଜନ', ତହିଁରୁ ଜାତିକୁ ଯେଉଁ ପରିବର୍ତ୍ତନ ହେଲା, ତାକୁ ଭାରତୀୟ ସାମାଜିକ ଇତିହାସର ଏକ ମୌଳିକ ଘୋଷଣାନାମା ବୋଲି କୁହାଯିବ । ଏହା ବୁଝାମଣା ମାଧ୍ୟମରେ ସମ୍ଭବ ହେଲା ନା ବଳପ୍ରୟୋଗ କରି ହେଲା ତାହା ସ୍ଥାନୀୟ ସ୍ଥିତି ଉପରେ ନିର୍ଭର କରିବ । ଜାତିରେ ପରିବର୍ତ୍ତନ ଆସିଲା ପରେ ଜୀବନର ସବୁ ଦିଗ ପ୍ରଭାବିତ ହେଲା । କେତେକ ଖାଦ୍ୟ, ଯଥା- ଗୋମାଂସ ଓ ମଦ୍ୟ, ଆଦିବାସୀ ସଂପ୍ରଦାୟର ସେହି ଲୋକମାନଙ୍କ ପାଇଁ ସମ୍ଭବତଃ ବାରଣ ହେଲା, ଯେଉଁମାନେ ଉଚ୍ଚ ଜାତିର ମାନ୍ୟତା ପାଇଥିଲେ । ବଂଶର ଏକ ବିଶେଷତ୍ୱ ହେଲା ପଂକ୍ତିଭୋଜନ । ମାତ୍ର ଜାତି ବ୍ୟବସ୍ଥାର ଉଦ୍ଭବ ପରେ ତାହା ନିଷେଧ ହେଲା । ଠିକ୍ ସେମିତି ମହିଳାମାନଙ୍କୁ ସମାଜର ସମାନ ଅଧିକାରପ୍ରାପ୍ତ ସଭ୍ୟ ଭାବରେ ଗ୍ରହଣ କରିବାର ପରମ୍ପରା ଉପରେ ମଧ୍ୟ ପ୍ରତିବନ୍ଧକ ଲାଗିଥିଲା । ସେମାନଙ୍କୁ ସମାଜର ଅଧସ୍ତନ ସ୍ତରକୁ ଆସିବାକୁ ବାଧ୍ୟ କରାଗଲା । ବୋଧହୁଏ ଜାତିର ଆଗମନ ପରେ କେତେକ ଅଜଣା ଏବଂ ନୂଆ ରୀତିନୀତିର ଆରମ୍ଭ ହୋଇଥିଲା; ନୂଆ ଦେବଦେବୀର ପୂଜା ଆରମ୍ଭ ହୋଇଥିଲା । ଅବଶ୍ୟ ଏହି ମାମଲାରେ ଜାତିବ୍ୟବସ୍ଥାକୁ ଅନେକ ରିହାତି ଦେବାକୁ ପଡ଼ିଥାଇପାରେ । ନୂତନ ଜାତିର ଅନେକ ପରମ୍ପରା ଓ ଦେବଦେବୀମାନଙ୍କୁ ହିନ୍ଦୁଧର୍ମର ପୌରାଣିକ ଢାଞ୍ଚା ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଥିଲା । ପୁଣି ଜମିର ମାଲିକାନା ଓ ରାଜସ୍ୱ ଆଦାୟ କଥା ଉଠିବା ପରେ କେତେକ ଲୋକଙ୍କୁ ଋଣ ବୋଝ ବୋହିବାକୁ ପଡ଼ିଥାଇପାରେ । ଜାତିରେ ଅନୁକ୍ରମର ଅବଧାରଣା ବଂଶର ସମାନତା ମନୋବୃତ୍ତିକୁ ବିରୋଧ କଲା । ନୂଆ ନୂଆ କାର୍ଯ୍ୟକଳାପଗୁଡ଼ିକ ପ୍ରଥମରୁ ରହିଥିବା କେତେକ ବଂଶକୁ ଭାଙ୍ଗିବାରେ ସାହାଯ୍ୟ କଲା ।

ଜାତିର ସୃଷ୍ଟି ପାଇଁ କେବଳ ବଂଶର ଜାତିରେ ପରିଣତ ହେବା ଏକମାତ୍ର ମାଧ୍ୟମ ନ ଥିଲା । ସେତେବେଳେ ଜାତି ପରିଚୟ ମିଳୁଥିଲା ବୃତ୍ତିରୁ । ବିଭିନ୍ନ ବୃତ୍ତିର ସମୁଦାୟମାନେ ଧୀରେ ଧୀରେ ଜାତିରେ ସମନ୍ୱିତ ହେଲେ । ବିଶେଷକରି ଏହା ଦେଖାଗଲା ସହରର କାରିଗରମାନଙ୍କଠାରେ । ସେମାନେ ଜାତିର ନୀତିନିୟମକୁ ପାଳନ କଲେ ତଥା ସାମାଜିକ ଅନୁକ୍ରମକୁ ସ୍ୱୀକାର କଲେ । ଏହା ବୈବାହିକ ସମ୍ବନ୍ଧ ଏବଂ ଉତ୍ତରାଧିକାରର ନିୟମକୁ

ସ୍ଥିରୀକୃତ କଲା । ଏହାଛଡ଼ା, ସେମାନେ କେତେକ ସାଧାରଣ ପରମ୍ପରାକୁ ମାନିଲେ ଏବଂ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ସହିତ ନିଜକୁ ଚିହ୍ନିତ କଲେ । ଧାର୍ମିକ ସଂପ୍ରଦାୟରୁ ମଧ୍ୟ ଏକପ୍ରକାରର ଜାତିର ଉତ୍ପତ୍ତି ହୋଇଥିଲା । ଆରମ୍ଭରେ ଏହି ସଂପ୍ରଦାୟ ବିଭିନ୍ନ ଜାତିକୁ ନେଇ ଗଠିତ ହୋଇଥିଲା । ମାତ୍ର ଏହାର ସଫଳତା ପୂର୍ବରୁ ସାମିଲ ଥିବା ଜାତିଗୁଡ଼ିକୁ ଏକ କରିଦେଇଥିଲା । ଅର୍ଥାତ୍ ସଂପ୍ରଦାୟର ନୀତି, ନିୟମ, ପୂଜା ପରମ୍ପରାକୁ ଜାତିମାନେ ଗ୍ରହଣ କରିନେଇଥିଲେ ଏବଂ ସେହି ପ୍ରକ୍ରିୟାରେ ଗୋଟାଏ ଜାତିରେ ପରିଣତ ହୋଇଥିଲେ । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେବ ଦକ୍ଷିଣର ଲିଂଗାୟତ ଜାତି ।

ଜାତି ନିର୍ମାଣର ପ୍ରକ୍ରିୟା ମୁଖ୍ୟତଃ ସାମାଜିକ ପରିଚୟରେ ପରିବର୍ତ୍ତନ ଏବଂ ସାମାଜିକ କାର୍ଯ୍ୟକଳାପର ମାର୍ଗକୁ ଦର୍ଶାଏ । ଏହି ପରିବର୍ତ୍ତନ ପରେ, ଜାତି ଏକ ଧାର୍ମିକ ପରିଚୟ ମଧ୍ୟରେ ସମାବିଷ୍ଟ ହୋଇ ରହିଲା । ଯେଉଁଠି ଧାର୍ମିକ ପରିଚୟ ବୈଦିକ ବ୍ରାହ୍ମଣବାଦ କିମ୍ବା ପରେ ପୌରାଣିକ ହିନ୍ଦୁଧର୍ମ ହୋଇ ରହିଲା, ସେଠାରେ ଜାତିଗୁଡ଼ିକ ଅନୁକ୍ରମ (hicrarchy)ଗୁଡ଼ିକରେ ସ୍ଥାନ ଖୋଜି ରହିଲେ ଏବଂ ବର୍ଣ୍ଣ ଅନୁକ୍ରମ ମଧ୍ୟରେ ରହିବାକୁ ନିର୍ଦ୍ଦେଶିତ ହେଲେ । ରୀତିନୀତିକୁ ମାନ୍ୟତା ଦେବା ଅର୍ଥ ଶୁଦ୍ଧତା ଏବଂ ଅଶୁଦ୍ଧତାର ନିୟମକୁ ପାଳନ କରିବା । ଏହି ବ୍ୟବସ୍ଥାରେ ବ୍ରାହ୍ମଣକୁ ଶୁଦ୍ଧତାର ପ୍ରତୀକ ମନେ କରାଯାଉଥିଲା ଏବଂ ସେହି ଅନୁକ୍ରମରେ ଅନ୍ୟମାନଙ୍କୁ ପର୍ଯ୍ୟାୟକ୍ରମେ ମାନ୍ୟତା ପ୍ରଦାନ କରାଯାଉଥିଲା । ସବୁଠାରୁ ଯିଏ ଅଧିକ ଅଶୁଦ୍ଧ, ତାକୁ ଅସ୍ପୃଶ୍ୟର ମାନ୍ୟତା ଦିଆଗଲା । ଆଶ୍ଚର୍ଯ୍ୟର କଥା ଯେ, କଦାଚିତ ଗୋଟାଏ ଗୋଷ୍ଠୀର ସଦସ୍ୟମାନଙ୍କୁ ଭିନ୍ନ ଭିନ୍ନ ବର୍ଣ୍ଣର ମାନ୍ୟତା ପ୍ରଦାନ କରାଗଲା । ଏହାର ଏକ ବଡ଼ ଉଦାହରଣ ହେବ ଅଭିର; କେତେକ ଅଭିରଙ୍କୁ ବ୍ରାହ୍ମଣ ଓ ଅନ୍ୟ କେତେକଙ୍କୁ ଶୂଦ୍ରର ମାନ୍ୟତା ମଳିଲା । ଏଥିରୁ ଜାତି ନିର୍ମାଣର ପ୍ରକ୍ରିୟା କଥା ସୁସ୍ପଷ୍ଟ ହୁଏ ।

ସ୍ଥାପିତ ବର୍ଣ୍ଣଗୁଡ଼ିକ ସର୍ବଦା ଜାତିରେ ବିଭକ୍ତ ହେଉ ନ ଥିଲେ । ବରଂ ବିଭିନ୍ନ ଜାତିକୁ ବର୍ଣ୍ଣର ମାନ୍ୟତା ପ୍ରଦାନ କରାଯାଉଥିଲା । ଏହି କାରଣରୁ ଭିନ୍ନ ଭିନ୍ନ ସ୍ଥାନରେ ଜାତିର ନାମ ବଦଳିବା ସତ୍ତ୍ୱେ ଭାରତରେ ସର୍ବତ୍ର ଜାତିକୁ ବ୍ୟାବହାରିକ ସାମାଜିକ ୟୁନିଟ ରୂପେ ଗ୍ରହଣ କରାଯାଏ । ମାତ୍ର କେବଳ ବ୍ରାହ୍ମଣ ଏବଂ ଅସ୍ପୃଶ୍ୟକୁ ବାଦ୍ ଦେଲେ, ଅନ୍ୟ କ୍ଷେତ୍ରରେ ବର୍ଣ୍ଣର ମାନ୍ୟତା ଏକାରକମର ନୁହେଁ । ମଝିରେ ରହିଥିବା ଜାତିମାନେ ଭିନ୍ନ ଭିନ୍ନ ଅନୁକ୍ରମରେ ସ୍ଥାନିତ ହୋଇ ରହିଛନ୍ତି । ତେଣୁ ଏକଦା ପଞ୍ଜାବର 'କ୍ଷତ୍ରି' ଜାତି ଏବଂ ତାମିଲନାଡୁର ଜମିମାଲିକ 'ବେଲାଳ' ଜାତି ଥିଲେ ଖୁବ୍ ପ୍ରଭାବଶାଳୀ । ଏହି ଦୃଷ୍ଟିରୁ ଦେଖିଲେ, ସାମାଜିକ ବାସ୍ତବିକତା ସମ୍ବନ୍ଧରେ ଜାତି ପରିଚୟ ଯେତେ ଟିକିନିଖି ସୂଚନା

ପ୍ରଦାନ କରେ, ବର୍ଣ୍ଣ ପରିଚୟ ସେତେ ପରିଚୟ ପ୍ରଦାନ କରେ ନାହିଁ । ଏସବୁ ସତ୍ତ୍ୱେ, ପ୍ରାଚୀନ ରଚନାମାନଙ୍କରେ ବର୍ଣ୍ଣର ସଂକ୍ଷିପ୍ତ ଉଲ୍ଲେଖ ସାମାଜିକ ଅସମତାକୁ ନିର୍ଦ୍ଦେଶ କରୁଥିଲା । ଯେହେତୁ ଉଚ୍ଚ ବର୍ଣ୍ଣର ମାନ୍ୟତାକୁ ସୁରକ୍ଷିତ ରଖାଯାଇଥିଲା, ଅଧିକାଂଶ ନୂତନ ଜାତି ଶୂଦ୍ରର ମାନ୍ୟତା ଲାଭ କରିଥିଲେ । ଫଳରେ ବିବିଧ କିସମର ବୃତ୍ତିଧାରୀ ଏଥିରେ ସାମିଲ ହେଲେ ଏବଂ ନୂତନ ଶୂଦ୍ର ବର୍ଣ୍ଣରେ କେତେକ ସ୍ଥାପିତ ରୀତିନୀତି ସ୍ଥାନ ପାଇଲେ ।

ଜାତିଭିତ୍ତିକ ସମାଜର ନିର୍ମାଣରେ ଜାତିର ଉତ୍ପତ୍ତି ପ୍ରଥମ ସୋପାନ ତୁଲ୍ୟ କାମ କଲା । ଏହାର ଅର୍ଥ ହେଲା, ଜାତିଗୁଡ଼ିକ ହିନ୍ଦୁଧର୍ମ ବାହାରେ ଅନ୍ୟ ଧର୍ମରେ ମଧ୍ୟ ରୂପାନ୍ତରିତ ହୋଇପାରିବେ । ଧର୍ମ ପରିପ୍ରେକ୍ଷୀରେ ଜାତିଭିତ୍ତିକ ସମାଜର ଏକ ଉଲ୍ଲେଖନୀୟ ଚରିତ୍ର ହେଲା ଯେ, ଶିକାରୀ-ସଂଗ୍ରାହକ (hunter-gatherer), ପୋଡୁଚାଷୀ (shifting cultivators) ଏବଂ ଅରଣ୍ୟ ଅଧିବାସୀଙ୍କୁ (forest dwellers), (ଯେଉଁମାନଙ୍କୁ ଆରମ୍ଭରୁ ଜାତି ପରିଧି ବାହାରେ ସ୍ଥାନିତ କରାଯାଇଥିଲା) ବାଦ୍‌ଦେଲେ ହିନ୍ଦୁଧର୍ମ ବହିର୍ଭୂତ ଅନେକ ଧାର୍ମିକ ସଂପ୍ରଦାୟ ମଧ୍ୟ ଜାତି ନିୟମ ଭଳି ନିୟମ ସବୁ ପାଳନ କରୁଥିଲେ । ଯେଉଁ ଧର୍ମଗୁଡ଼ିକ ଅନ୍ତତଃ ତାତ୍ତ୍ୱିକ ଆଧାରରେ ଜାତି ପରିଚୟକୁ ଅସ୍ୱୀକାର କରନ୍ତି, ସେହି ଧର୍ମଗୁଡ଼ିକରେ ମଧ୍ୟ ଧର୍ମାନ୍ତରଣ କରିଥିବା ଗୋଷ୍ଠୀକୁ ଜାତି ପରିଚୟ ମଧ୍ୟରେ ରଖାଯାଏ । ଏହାର ବଡ଼ ଉଦାହରଣ ହେବ ଇସଲାମ୍ ଓ ଖ୍ରୀଷ୍ଟିଆନ ଧର୍ମ । ଏହା ବିଶେଷକରି ସେହିଠାରେ ଦେଖିବାକୁ ମିଳିଲା, ଯେଉଁଠି ଗ୍ରାମ ବା ସହରର ଗୋଟାଏ ନିର୍ଦ୍ଦିଷ୍ଟ ଜାତିର ସମସ୍ତ ଜନ ବା ଅଧିକାଂଶ ଜନ ଧର୍ମାନ୍ତରଣ କଲେ । ଏଭଳି ଏକ ଜନଗୋଷ୍ଠୀର ଚଳଣି ପାଇଁ କୁଳସମ୍ବନ୍ଧ ଏବଂ ଉତ୍ତରାଧିକାର ନିୟମର ଦରକାର ପଡ଼ିଲା; ବୈବାହିକ ସମ୍ବନ୍ଧ ପାଇଁ ସମୁଦାୟର ଆବଶ୍ୟକତା ପଡ଼ିଲା, କାରଣ ଧର୍ମାନ୍ତରଣ ପରେ ମଧ୍ୟ ସମୁଦାୟ ମଧ୍ୟରେ ସାମାଜିକ ପରମ୍ପରାଗୁଡ଼ିକ ଅବ୍ୟାହତ ରହିଥିଲା ।

ଏଠାରେ ଧର୍ମାନ୍ତରଣର ପ୍ରସଙ୍ଗ ମଧ୍ୟ ଉଠିବା ସ୍ୱାଭାବିକ । ମନେହୁଏ ବ୍ୟକ୍ତିଗତ ସ୍ତରରେ କେହି ହିନ୍ଦୁଧର୍ମକୁ ଧର୍ମାନ୍ତରଣ କଲେ, ତାକୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ମାତ୍ର ଗୋଟାଏ ବଡ଼ ଗୋଷ୍ଠୀ ବା ସମୁଦାୟ ବା ବଂଶ ବା ଜାତି ଯଦି ଧର୍ମାନ୍ତରଣ କରନ୍ତି, ସେମାନଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟ ବର୍ଣ୍ଣରେ ସ୍ଥାନ ମିଳିଯାଉଥିଲା । ହିନ୍ଦୁଧର୍ମ ବାହାରେ ଅନ୍ୟ ଧର୍ମଗୁଡ଼ିକରେ, ଯଥା- ବୌଦ୍ଧଧର୍ମ, ଜୈନଧର୍ମ, ଖ୍ରୀଷ୍ଟଧର୍ମ ଏବଂ ଇସଲାମ୍ ଧର୍ମରେ ନମନୀୟତା ରହିଥିଲା ବୋଲି ତହିଁରେ ବ୍ୟକ୍ତିଗତ ସ୍ତରର ଧର୍ମାନ୍ତରଣକୁ ପ୍ରୋତ୍ସାହନ ମିଳିଥିଲା । ଏହାର ଅର୍ଥ ନୁହେଁ ଯେ ବ୍ୟକ୍ତିଗତ ସ୍ତରରେ କାହାରି ପାଇଁ ଧର୍ମାନ୍ତରଣ କରିବା ଅସମ୍ଭବ ଥିଲା । ଯେହେତୁ ହିନ୍ଦୁଧର୍ମରେ ଜାତି ଏବଂ ଧାର୍ମିକ ସଂପ୍ରଦାୟ ମଧ୍ୟରେ ଅନେକ ନୀତିନିୟମ ମିଶାମିଶି ହୋଇ ରହିଥିଲା, ବ୍ୟକ୍ତିଗତ ସ୍ତରରେ ଧର୍ମାନ୍ତରଣ ସମସ୍ୟାବହୁଳ ମନେହେଉଥିଲା ।

ଯେଉଁ କେତେକ ସାମାଜିକ ବର୍ଗ କଥା ଏଠାରେ ଆଲୋଚନା କରାଗଲା, ସାମାଜିକ ସ୍ୱରୂପରେ ରହିଥିବା ସବୁ କିସମର ମିଶାଣ-ଫେଡ଼ାଣ (permutation)କୁ ତାହା ଶେଷ କରି ନ ଥିଲା । ଏମାନଙ୍କ ମଧ୍ୟରୁ କେତେକ ବର୍ଗ ଜାତିରେ ରୂପାନ୍ତରିତ ହେବା ପରେ ସାମାଜିକ ଇତିହାସରେ ଏକ ନୂଆ ଦିଗ ଯୋଡ଼ିହେଲା । ମାତ୍ର କୌଣସି ନିର୍ଦ୍ଦିଷ୍ଟ ସମୟ ଏବଂ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସେମାନଙ୍କ ମଧ୍ୟରୁ କେତେକ ଜାତି ପ୍ରଭାବଶାଳୀ ହେବାର ସମ୍ଭାବନା ରହିଥିଲା । ତେଣୁ କାଳ ଓ ସ୍ଥାନର ଐତିହାସିକ ପ୍ରତିବିମ୍ବକୁ ଶାଣିତ କରୁଥିବା ସାମାଜିକ ସମ୍ବନ୍ଧର ଗଠନ ପ୍ରଣାଳୀକୁ ବିଶ୍ଳେଷଣ କରିବାର ଆବଶ୍ୟକତା ରହିଛି । କୌଣସି କ୍ଷେତ୍ର ବା ସମୟର ଐତିହାସିକ ପୁନର୍ନିର୍ମାଣ ସମୟରେ ସାଧାରଣତଃ ପ୍ରଭାବଶାଳୀ ଉପାଦାନକୁ ମହତ୍ତ୍ୱ ମିଳେ । ତା' ସତ୍ତ୍ୱେ କମ୍ ପ୍ରଭାବକାରୀ ଉପାଦାନଗୁଡ଼ିକର ମଧ୍ୟ ସମନ୍ୱୟ ଜରୁରି । ଭାରତରେ ସମାଜମାନଙ୍କର ଉଦ୍ଭବ ହୋଇଛି ଏବଂ ତହିଁରେ ପରିବର୍ତ୍ତନ ମଧ୍ୟ ସଂଘଟିତ ହୋଇଛି । ଏହି ଐତିହାସିକ ପ୍ରକ୍ରିୟାକୁ ବୁଝିବା ଅବସରରେ ସମନ୍ୱୟ ଓ ସଂଘାତ, ସହିଷ୍ଣୁତା ଓ ଅସହିଷ୍ଣୁତା, ସାମାଜିକ ସମାବେଶ ଏବଂ ପ୍ରତିଯୋଗିତା ଆଦିର ବିଭିନ୍ନ ସ୍ଥିତିକୁ ଅଣଦେଖା କରିବା କଥା ନୁହେଁ । ଇତିହାସର ବିଶ୍ଳେଷଣାତ୍ମକ ଅଧ୍ୟୟନ ନିମନ୍ତେ ପ୍ରତ୍ୟେକ ଉପାଦାନର ଆବଶ୍ୟକତା ରହିଛି । ଏଥିପାଇଁ ଅତୀତରୁ ଉପଲବ୍ଧ ତଥ୍ୟ-ପ୍ରମାଣ ସହିତ କେବଳ ପରିଚିତ ହେବା ଯଥେଷ୍ଟ ନୁହେଁ, ତା' ସହିତ ଉକ୍ତ ତଥ୍ୟ-ପ୍ରମାଣଗୁଡ଼ିକର ଯଥୋଚିତ ବିଶ୍ଳେଷଣ ଓ ସେ ନେଇ ଆବଶ୍ୟକ ଜ୍ଞାନ ରହିବା କଥା । ଏତିକି ହୋଇପାରିଲେ ପ୍ରାଚୀନ ସମାଜ ସମ୍ବନ୍ଧିତ ତଥ୍ୟାବଳୀକୁ ପ୍ରତ୍ନତାତ୍ତ୍ୱିକ ରେକର୍ଡ଼ର ଆଇନାରେ ଅନୁଶୀଳନ କରିବା ବିଶେଷ କାଠିକର ହେବ ନାହିଁ ।

# 3

# ପୂର୍ବ ଇତିହାସ

## ପ୍ରାଗୈତିହାସିକ ଆରମ୍ଭ

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଭାରତରେ ପୁରାତାତ୍ତ୍ୱିକ ଆଗ୍ରହର ଆରମ୍ଭ ହେଲା । ସେତେବେଳେ ଅତୀତର ଅଧ୍ୟୟନକୁ ସାହାଯ୍ୟ କରିବ ଏବଂ ବର୍ତ୍ତମାନକୁ ଉଦ୍ଭାସିତ କରିବ ବୋଲି ଐତିହାସିକ ଅବଶେଷକୁ ସଂଗ୍ରହ କରାଯିବା ଉପରେ ହିଁ ବିଶେଷ ଧ୍ୟାନ ଦିଆଯାଉଥିଲା । ବିଶ୍ୱର ଅନ୍ୟାନ୍ୟ ଅଞ୍ଚଳ ସହିତ ଭାରତର ତୁଳନାତ୍ମକ ଅଧ୍ୟୟନ ଆରମ୍ଭ ହେଲା ଉତ୍ତାରୁ, ପ୍ରାଗ୍-ଇତିହାସର ଅବଶେଷଗୁଡ଼ିକୁ ଖୋଜିବା ଲାଗି ପ୍ରୋତ୍ସାହନ ମିଳିଲା । ଏହା ସଂସ୍କୃତି-ସଂସ୍କୃତି ମଧ୍ୟରେ ଥିବା ପାର୍ଥକ୍ୟ ଓ ସାମଞ୍ଜସ୍ୟଗୁଡ଼ିକୁ ଚିହ୍ନିତ କରିବାରେ ସାହାଯ୍ୟ କଲା । ଆରମ୍ଭରେ, ଐତିହାସିକ କାଳଖଣ୍ଡର ପୁରାବଶେଷଗୁଡ଼ିକ ମଧ୍ୟରେ ପ୍ରମୁଖ ଥିଲେ ସେହି ସବୁ ବସ୍ତୁ, ଯାହାକୁ ପରେ କଳାବଶେଷ ବୋଲି କୁହାଗଲା । ବିଂଶ ଶତାବ୍ଦୀରେ ଏହିସବୁ ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ ତଥ୍ୟ-ପ୍ରମାଣଗୁଡ଼ିକର ବ୍ୟାଖ୍ୟାକୁ ମହତ୍ତ୍ୱ ମିଳିଲା ଏବଂ ସେହି ବ୍ୟାଖ୍ୟାରେ ମଝିରେ ମଝିରେ ପରିବର୍ତ୍ତନମାନ ମଧ୍ୟ ଦେଖିବାକୁ ମିଳିଲା ।

1920 ଏବଂ 1930 ଦଶକରେ ସିନ୍ଧୁ ସଭ୍ୟତାର ନଗରୀଗୁଡ଼ିକର ଖନନ ହେଲା । ଏହା ଭାରତୀୟ ପୁରାତତ୍ତ୍ୱକୁ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କଲା । ଆରମ୍ଭରେ କୁହାଯାଉଥିଲା, ଏହିସବୁ ପ୍ରାଚୀନ ନଗରୀ ଉପନିବେଶୀକରଣ ପ୍ରକ୍ରିୟାରେ ପଶ୍ଚିମ-ଏସୀୟ ସଭ୍ୟତାରୁ ଭାରତକୁ ଆସିଥିଲା । ପରେ ଯେତେବେଳେ ପ୍ରତ୍ନତାତ୍ତ୍ୱିକ ଖନନର ପଦ୍ଧତି ଏବଂ ଟେକ୍‌ନିକ୍ ବଦଳିଲା ଏବଂ ମୋର୍ଟିମର ହ୍ୱିଲରଙ୍କ ନେତୃତ୍ୱରେ ତାକୁ ଅଧିକ ନିପୁଣ

ଢଙ୍ଗରେ ସମ୍ପାଦନ କରାଗଲା, ସେତେବେଳେ ମଧ୍ୟ ସେହି ପୁରୁଣା ଅବଧାରଣାର ଛାଇ ସମ୍ପୂର୍ଣ୍ଣରୂପେ ଲିଭି ନ ଥିଲା । ଘଣ୍ଟାର ପେଣ୍ଡୁଲମ୍ ଏବେ ଆରପଟକୁ ଯାଇଛି । କେତେକ ପ୍ରତ୍ନତତ୍ତ୍ୱଜ୍ଞ ହରପ୍ପା ସଂସ୍କୃତି ବା ସିନ୍ଧୁ ସଭ୍ୟତାକୁ ସମ୍ପୂର୍ଣ୍ଣ ସ୍ୱଦେଶୀ ବୋଲି ଦାବି କରୁଛନ୍ତି ଏବଂ ପରବର୍ତ୍ତୀକାଳୀନ ସଂସ୍କୃତିର ପ୍ରତ୍ୟକ୍ଷ ପୂର୍ବଜ ବୋଲି ବ୍ୟାଖ୍ୟା କରୁଛନ୍ତି ।

ଉଭୟ କିସମର ବ୍ୟାଖ୍ୟା ମଝିରେ ଅର୍ଦ୍ଧଶତାବ୍ଦୀର କାଳାନ୍ତର ରହିଛି । ସେହି ସମୟରେ ପୁରାତାତ୍ତ୍ୱିକ ତଥ୍ୟକୁ ପରୀକ୍ଷା କରିବା ନିମିତ୍ତ ଅନ୍ୟ ପୁରାତତ୍ତ୍ୱଜ୍ଞମାନେ ନୂତନ ପଦ୍ଧତିର ଉପଯୋଗ କରିଥିଲେ । ଆଗରୁ ସଭ୍ୟତାକୁ ନେଇ ପ୍ରଶ୍ନ ହେଉଥିଲା, ତା'ର ଆରମ୍ଭ କାଳ କ'ଣ ? କେମିତି ଆରମ୍ଭ ହେଲା ? ଏବେ ପ୍ରଶ୍ନ ବଦଳିଛି । ବିଭିନ୍ନ ପୁରାତାତ୍ତ୍ୱିକ ସଂସ୍କୃତିର ଚରିତ୍ର ଏବଂ ତହିଁରେ କିମ୍ବା ଉତ୍ତରାଧିକାରୀ ସଂସ୍କୃତିରେ ଦେଖାଯାଇଥିବା ପରିବର୍ତ୍ତନକୁ ବୁଝିବାକୁ ଏବେ ପ୍ରୟାସ କରାଯାଉଛି । ଖନନରୁ ପ୍ରାପ୍ତ ଶିଳ୍ପ ତଥ୍ୟ ଅପେକ୍ଷା ଶିଳ୍ପ ତଥ୍ୟର ସନ୍ଦର୍ଭ ଅଧିକ ଧ୍ୟାନ ଆକର୍ଷଣ କରୁଛି । ପୁରାତତ୍ତ୍ୱକୁ ନେଇ ଏହି ଦୃଷ୍ଟିକୋଣ କେବଳ ସଂସ୍କୃତିର ଉନ୍ମେଷକୁ ଅନୁସନ୍ଧାନ ନ କରି ଅନ୍ୟ ଦିଗଗୁଡ଼ିକୁ ମଧ୍ୟ ଅନୁଶୀଳନ କରିବ ବୋଲି ଆଶା କରାଯାଏ । ଅବଶ୍ୟ ଏଥିପାଇଁ ଅଧିକ ତଥ୍ୟ-ପ୍ରମାଣର ଆବଶ୍ୟକତା ପଡ଼ିବ, ଯାହାକୁ ବିଭିନ୍ନ ପ୍ରକାର ସଂସ୍କୃତିରୁ ସଂଗ୍ରହ କରିବାକୁ ହେବ । ନିୟନ୍ତ୍ରିତ ସର୍ବେକ୍ଷଣ ଏବଂ ବ୍ୟବସ୍ଥିତ ପ୍ରତ୍ନତାତ୍ତ୍ୱିକ ଖନନ ଏବଂ ତା' ସହିତ ଭାରତର ଅତୀତକୁ ଗଢ଼ିଥିବା ବିବିଧ ପ୍ରକାରର ସମାଜକୁ ବ୍ୟାଖ୍ୟା କରିବାପାଇଁ ପ୍ରେରଣାଦାୟୀ ପ୍ରଶ୍ନର ମଧ୍ୟ ଏଥିପାଇଁ ଲୋଡ଼ା ପଡ଼ିବ ।

ଭାରତରେ ମାନବ ବସତିର ଇତିହାସ ଓ ପରିଚୟ ହେଲା ପ୍ରାଗ୍ ଇତିହାସକାଳୀନ । ସେତେବେଳେ ଆରମ୍ଭରେ ପାଷାଣ ଯୁଗୀୟ ବସତିମାନ କାଁଭାଁ ବସିଥିଲା । ପାଷାଣ ଯୁଗର ଶେଷ ପର୍ଯ୍ୟାୟରେ ଜନବସତି ଘନ ହେଲା । ପରେ ସମାଜଗୁଡ଼ିକ ଆହୁରି ଜଟିଳ ହେଲା । ଆଦ୍ୟ ବାସିନ୍ଦାର ପରିଚୟକୁ ବିବର୍ତ୍ତନ ଏବଂ ହୋମୋ ସେପିଆନଙ୍କ ପ୍ରାରମ୍ଭିକ ଇତିହାସରେ ଖୋଜିବାକୁ ପଡ଼ିବ । କୁହାଯାଏ, ଆଫ୍ରିକାରୁ ଆଦ୍ୟ ବାସିନ୍ଦା ଭାରତର ବିଭିନ୍ନ ସ୍ଥାନକୁ ଆସି ରହିଲା । ଏହାର ଅର୍ଥ ହେଲା, ସୁଦୂର ଅତୀତରେ ଭାରତ ଓ ପୂର୍ବ ଆଫ୍ରିକା ଭୂଖଣ୍ଡ ଯୋଡ଼ିହୋଇ ରହିଥିଲେ । ସେତେବେଳର ଭୌଗୋଳିକ ଅବସ୍ଥା ଏହି ଧରଣର ସଂଲଗ୍ନ ପାଇଁ ଅନୁକୂଳ ହୋଇଥିବ ବୋଲି ଅନୁମାନ କରାଯାଏ ।

ପ୍ରତ୍ନତତ୍ତ୍ୱ ଦ୍ୱାରା ଚିତ୍ରିତ ଭାରତୀୟ ସମାଜର ରୂପରେଖ ଓ ଏହାର ସମୀପବର୍ତ୍ତୀ କ୍ଷେତ୍ରଗୁଡ଼ିକ ମଧ୍ୟରେ ପ୍ରାୟତଃ ସାଦୃଶ୍ୟ ଦେଖିବାକୁ ମିଳିଲା । ହେଲେ କେତେକ ନିର୍ଦ୍ଦିଷ୍ଟ ପାରିବେଶିକ ସନ୍ଦର୍ଭରେ କିଛି କିଛି ଭିନ୍ନତା ମଧ୍ୟ ପରିଲକ୍ଷିତ ହୋଇଥାଏ । ପୁରାତନ ପାଷାଣ

ଯୁଗ, ମଧ୍ୟ ପାଷାଣ ଯୁଗ, ନୂତନ ପାଷାଣ ଯୁଗ, ତାମ୍ର ପାଷାଣ ଯୁଗ ଓ ଲୌହ ଯୁଗ ନାମରେ ଚିହ୍ନିତ ଏହିସବୁ ବସତି ଓ ସଂସ୍କୃତିରେ ସେହିସବୁ ବିନ୍ୟାସଗୁଡ଼ିକୁ ଦେଖିହେବ । ଏହିସବୁ ସମାଜ କ୍ରମାନୁସାରେ ବିକଶିତ ହୋଇ ନ ଥିଲେ କିମ୍ବା ସମସ୍ତ ଭୂଖଣ୍ଡରେ ଏକସମୟରେ ବିକାଶ ଲାଭ କରି ନ ଥିଲେ । ତଥାପି ପ୍ରାକ୍-ଇତିହାସ ଓ ପ୍ରୋଟୋ-ଇତିହାସ (ଆଦ୍ୟତମ ଇତିହାସ) କୁହାଯାଉଥିବା ଏହି କାଳଖଣ୍ଡର ଏକ ସଂକ୍ଷିପ୍ତ ସର୍ବେକ୍ଷଣ କରାଗଲେ ଆମେ ପୂର୍ବେତିହାସ ସମ୍ପର୍କରେ ଜାଣିପାରିବା ବୋଲି ଆଶା କରାଯାଏ ।

ପୁରାତାତ୍ତ୍ୱିକ ତଥ୍ୟସବୁ ବାସ୍ତବ ପାର୍ଥିବ ଅବଶେଷ ରୂପରେ ରହିଥାଏ । କାଳାନୁକ୍ରମ ନିର୍ଦ୍ଧାରଣ ନିମନ୍ତେ ଏହା ଆଧାର ହୁଏ । ବିଗତ ଅର୍ଦ୍ଧ-ଶତାବ୍ଦୀରେ କାଳ ନିର୍ଦ୍ଧାରଣ କରିବାର ପଦ୍ଧତିରେ ଅନେକ ବିକାଶ ଦେଖିବାକୁ ମିଳିଛି । କାଳ ନିର୍ଦ୍ଧାରଣ କରିବାର ପଦ୍ଧତିରେ ତଥା ପୁରାତତ୍ତ୍ୱର ଆହୁରି ଅନେକ ବିଭାବରେ ବିଭିନ୍ନ ବୈଜ୍ଞାନିକ ଟେକ୍‌ନିକ୍‌ର ବ୍ୟବହାର ହେଉଛି । ଅତି ସୁଦୂର ସମୟକୁ ନିର୍ଦ୍ଧାରଣ କରିବାପାଇଁ ସ୍ପେକ୍‌ଟ୍ରୋମେଟ୍ରିକ ଡେଟିଙ୍ଗ୍ ବା ପୋଟାସିଅମ୍ ମାପ ବା ରେଡ଼ିଓ ଏକ୍ଟିଭ ଅବକ୍ଷୟର ବ୍ୟବହାର କରାଯାଉଛି । ବିଗତ 10,000 ବର୍ଷ ମଧ୍ୟରେ ନିର୍ଦ୍ଦିଷ୍ଟ କାଳ ନିର୍ଦ୍ଧାରଣ ପାଇଁ ସାଧାରଣତଃ ତିନୋଟି ଟେକ୍‌ନିକ୍‌ର ବ୍ୟବହାର ହେଉଛି । ସେଗୁଡ଼ିକ ହେଲା : ରେଡ଼ିଓ-କାର୍ବନ ଡେଟିଙ୍ଗ୍ (କାର୍ବନ-14), ଡେଂଡ୍ରୋ ଟେକ୍‌ନୋଲୋଜି ଏବଂ TL ନାମରେ ପରିଚିତ ଥର୍ମୋଲ୍ୟୁମିନିସେନ୍‌ସ । କାର୍ବନ-14 ରେ ଜୈବିକ ପଦାର୍ଥର ଅଙ୍ଗାର କ୍ଷୟ ହାରକୁ ମାପି କାଳ ନିର୍ଦ୍ଧାରଣ କରାଯାଏ । ଦ୍ୱିତୀୟଟିରେ ବୃକ୍ଷର ବଳୟକୁ ଗଣି ତିଥି ନିର୍ଦ୍ଧାରଣ କରାଯାଏ । ତେଣୁ ଏହାକୁ 'ବୃକ୍ଷବଳୟ ତତ୍ତ୍ୱ' କୁହାଯାଇ ପାରିବ । TL ମାଧ୍ୟମରେ କଳାବଶେଷରେ ତିଥି ନିର୍ଦ୍ଧାରଣ କରାଯାଏ । ମାଟିପାତ୍ର ପରି ବସ୍ତୁ ଯାହାକୁ ନିଆଁରେ ପୋଡ଼ାଯାଇଛି, ତାକୁ ଏହି ପଦ୍ଧତିରେ ପରଖି, ତା'ର ନିର୍ମାଣ କାଳ ନିର୍ଦ୍ଧାରଣ କରାହୁଏ । ଅନେକଗୁଡ଼ିଏ ସମୟ ନିର୍ଦ୍ଧାରଣ ଟେକ୍‌ନିକ୍ ଉପଲବ୍ଧ ହେବା ଯୋଗୁଁ ନିର୍ଦ୍ଦିଷ୍ଟ ସମୟକ୍ରମ ଜାଣିବା ସମ୍ଭବ ହେଉଛି । କେତେ ଦଶନ୍ଧି ପୂର୍ବେ ଏଥିପାଇଁ କାର୍ବନ-14 ପଦ୍ଧତିର ଉପଯୋଗ ହୋଇପାରୁଥିଲା । ତେଣୁ ପୁରାତାତ୍ତ୍ୱିକ ଅବଶେଷର ନିର୍ଦ୍ଦିଷ୍ଟ କାଳ ନିର୍ଣ୍ଣୟ ସୁରକ୍ଷିତ ଓ ସଠିକ ଢଙ୍ଗରେ ଏବେ ହୋଇପାରୁଛି, ଯାହା ଏକ ବଡ଼ ଉପଲବ୍ଧି । ଅର୍ଥାତ୍ ପୁରାତାତ୍ତ୍ୱିକ ତଥ୍ୟ-ଉପଲବ୍ଧ ଥିଲେ ଐତିହାସିକ କାଳାନୁକ୍ରମ ସ୍ଥିର କରିବା ଆଉ କଠିନ ବ୍ୟାପାର ହୋଇ ରହି ନାହିଁ ।

ଯେତେବେଳେ ସଂସ୍କୃତି ଓ ସଭ୍ୟତା ଭଳି ଶବ୍ଦର ପୁରାତାତ୍ତ୍ୱିକ ସନ୍ଦର୍ଭରେ ବ୍ୟବହାର କରାଯାଏ, ସେତେବେଳେ ଅର୍ଥ ସାଧାରଣ ସମୟର ବ୍ୟବହାରିକ ଅର୍ଥଠାରୁ ଭିନ୍ନ ହୁଏ । ସଂସ୍କୃତିର ଅର୍ଥ ହେଲା କୌଣସି ସମାଜର ଜୀବନ-ପଦ୍ଧତି । ଏହି ଆଧାରରେ ସଂସ୍କୃତି ବିଭିନ୍ନ ପ୍ରକାରର ହୋଇଥାଏ । ଜୀବନ-ପଦ୍ଧତିରେ ସାମାଜିକ ସମ୍ବନ୍ଧ, ଭାଷା ଏବଂ ରୀତିନୀତି

ଆଦି ସମାବିଷ୍ଟ ହୋଇ ରହିଥାନ୍ତି । ପୂର୍ବେ ମନୁଷ୍ୟ ବ୍ୟବହାର କରୁଥିବା ଉପକରଣଗୁଡ଼ିକୁ ଭିତ୍ତିକରି ସଂସ୍କୃତିର ପ୍ରାରୂପ ନିର୍ଦ୍ଧାରଣ କରାଯାଉଥିଲା । ଏହି ଉପକରଣଗୁଡ଼ିକରୁ ଅଧିକାଂଶ ପଥରରୁ ପ୍ରସ୍ତୁତ । ପୁରାତନ ପାଷାଣ ଯୁଗର ଉପକରଣ ଥିଲା ବୃହତ୍ ଆକାରର । ମଧ୍ୟ ପାଷାଣ ଯୁଗରେ ତାହା କ୍ଷୁଦ୍ର ହେଲା । ନବପାଷାଣ ଯୁଗରେ ସେଗୁଡ଼ିକ ପୂର୍ବ ତୁଳନାରେ ତୀକ୍ଷ୍ଣ ହେଲା । ତାମ୍ର ପାଷାଣ ଯୁଗରେ ଉଭୟ ପ୍ରସ୍ତର ନିର୍ମିତ ଏବଂ ଧାତୁ ନିର୍ମିତ ଉପକରଣର ବ୍ୟବହାର ଦେଖିବାକୁ ମିଳିଲା । ମାଟିପାତ୍ରର ବ୍ୟବହାର ଆରମ୍ଭ ହେଲାପରେ, ଉପକରଣରେ ମାଟିପାତ୍ରକୁ ମଧ୍ୟ ଯୋଡ଼ି ଦିଆଯାଏ । ମାଟିପାତ୍ରରୁ ଜନବସତିର କିସମ ଓ ବିଶେଷତ୍ୱ ଜଣାପଡ଼େ । ମାଟିପାତ୍ରରେ ଚିହ୍ନ ଦିଆଯାଏ, ଯାହା ବ୍ୟବହାର କରିଥିବା ଲୋକସମୂହକୁ ଚିହ୍ନିତ କରେ । ଶିକାରୀ-ସଂଗ୍ରାହକ, ପଶୁପାଳକ ଏବଂ ଆଦ୍ୟ କୃଷିକାରୀ ଆଦି ଚିହ୍ନ ତହିଁରେ ଦିଆଯାଏ, କାରଣ ଏହି ଚିହ୍ନସବୁ ଅଧିକ ଭଲଭାବେ ମାଟିପାତ୍ରର ସମୟକୁ ବର୍ଣ୍ଣିତ କରେ । ଦୁଇଟି ସଂସ୍କୃତି ମଧ୍ୟରେ ସାମଞ୍ଜସ୍ୟକୁ ଦେଖି କଦାପି ମାନିନେବା ଉଚିତ ନୁହେଁ ଯେ ଏକା ଲୋକ ତା'ର ନିର୍ମାତା । ଚାଲିଚଳଣି ଏବଂ କଳାବଶେଷ ମଧ୍ୟ ନିର୍ମାତାମାନଙ୍କ ମଧ୍ୟରେ କୌଣସି ସମ୍ପର୍କ ନ ଥାଇ ସୁଦ୍ଧା ସମାନ ପ୍ରକାରର ହୋଇପାରନ୍ତି । ମାତ୍ର ଯେଉଁଠି ନିର୍ମାତାମାନଙ୍କ ମଧ୍ୟରେ ସମ୍ବନ୍ଧ ରହିଛି, ସେଠାରେ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଉପକରଣରେ ସମାନତାରୁ ଅନୁକରଣକୁ ପୃଥକ୍ କରିବାକୁ ପ୍ରୟାସ ହେବା କଥା ।

ସଭ୍ୟତା ଏକ ଅଧିକ ଜଟିଳ ଓ ମାର୍ଜିତ ଜୀବନଧାରାକୁ ବୁଝାଇଥାଏ । ସହରୀ ଜୀବନକୁ ଚିହ୍ନିତ କରୁଥିବା ସୌନ୍ଦର୍ଯ୍ୟବୋଧ, ପରିଷ୍କୃତ ଧାର୍ମିକ ବିଶ୍ୱାସ ଏବଂ ପାଠର ବ୍ୟବହାର ସଭ୍ୟତାରେ ଦେଖିବାକୁ ମିଳେ । ସହରୀ ସମାଜ ସୋପାନବଦ୍ଧ ହୋଇଥାଏ । ତା'ର ବୃହତ୍ତର ସନ୍ଦର୍ଭ ହୁଏ ରାଜ୍ୟ । ରାଜ୍ୟରେ ଅସମାନତା ଉପରେ ଆଧାରିତ ସାମାଜିକ ବିଭାଜନ ଦୃଷ୍ଟିଗୋଚର ହୋଇଥାଏ । ଶାସକବର୍ଗ ସର୍ବଦା ଜ୍ଞାତି ସମ୍ବନ୍ଧି ହୋଇ ନ ଥାନ୍ତି । ସଭ୍ୟତାର ପ୍ରସାର ଅଧିକ ବିସ୍ତୃତ ହୋଇଥାଏ । ଖନନରୁ ପ୍ରାପ୍ତ ଶିଳ୍ପ ତଥ୍ୟ ମଧ୍ୟରେ ରହିଥିବା ସମାନତା ଅଧାରରେ ସଭ୍ୟତାର ବିସ୍ତାରକୁ ଜାଣିହୁଏ । ସଭ୍ୟତାର ପ୍ରଣାଳୀ ବିଭିନ୍ନ ରୂପରେ ଲୋକଙ୍କୁ ପ୍ରଭାବିତ କରିଥାଏ । ଏହି ଲୋକମାନେ ଏକ ପାରସ୍ପରିକ ଅନ୍ତର୍ନିର୍ଭରଶୀଳତା ମଧ୍ୟରେ ରହିଥାନ୍ତି । ତାକୁ ନିରୀକ୍ଷଣ କରି ସଭ୍ୟତାର ପ୍ରସାରକୁ ଜାଣିହୁଏ ।

## ପୁରାତନ ପାଷାଣ ଏବଂ ମଧ୍ୟ ପାଷାଣ ସଂସ୍କୃତି

ଭାରତ ଉପମହାଦେଶର ବିଭିନ୍ନ ସ୍ଥାନରୁ ପୁରାତନ ପାଷାଣ ଯୁଗର ଶିକାରୀ-ସଂଗ୍ରାହକମାନଙ୍କ ସମ୍ବନ୍ଧରେ ତଥ୍ୟ-ପ୍ରମାଣ ସବୁ ପ୍ରାପ୍ତ ହୋଇଥାଏ । ପ୍ରଥମେ ଏହି ସମ୍ବନ୍ଧରେ

ଉତ୍ତର-ପଶ୍ଚିମ କ୍ଷେତ୍ରରେ ଅଧ୍ୟୟନ ଆରମ୍ଭ ହୋଇଥିଲା – ସୋନ ନଦୀର ଉପର ଅଂଶରେ ଏବଂ ପୋତଓ୍ୱାର ଅଧିତ୍ୟକାରେ । ତା'ପରେ ବିଭିନ୍ନ ସ୍ଥାନରେ ପୁରାତନ ପାଷାଣଯୁଗୀୟ ପ୍ରତ୍ନତାତ୍ତ୍ୱିକ କ୍ଷେତ୍ରମାନ ଉପଲବ୍ଧ ହୋଇଛି । ସାଧାରଣତଃ ମନୁଷ୍ୟର ନିବାସସ୍ଥଳୀ ପଥର ଚଟାଣର ଖୋଳରେ ରହୁଥିଲା । ଏହିଭଳି ଚଟାଣ ନିବାସସ୍ଥଳୀ ମୁଖ୍ୟତଃ ମଧ୍ୟପ୍ରଦେଶର ଭୀମବାଟିକାରେ ଏବଂ ଅନ୍ୟାନ୍ୟ ସ୍ଥାନରେ ତଥା ଦେଶର ଆହୁରି ଅନେକ ସ୍ଥାନରେ ଦେଖିବାକୁ ମିଳିଥାଏ । ଏହାବ୍ୟତୀତ ସେତେବେଳେ ଲୋକ ଗୁମ୍ଫାରେ ମଧ୍ୟ ରହୁଥିବାର ପ୍ରମାଣ ମିଳେ । ଯଥା- ଉତ୍ତର-ପଶ୍ଚିମ ପାକିସ୍ତାନର ସଂଘାଓ ଏବଂ ଆନ୍ଧ୍ରପ୍ରଦେଶର କର୍ଣ୍ଣୁଲ । ଏଭଳିକି ଖୋଲାରେ ମଧ୍ୟ ଲୋକ ରହୁଥିଲେ, ଯଦିଓ ଚଟାଣ ଓ ଗୁମ୍ଫା ବସତି ତୁଳନାରେ ଖୋଲା କ୍ୟାମ୍ପ ବସତିର ପ୍ରମାଣର ପରିମାଣ ଖୁବ୍ କମ୍ । ଖୋଲା ବସତିରେ ଘାସପତ୍ର ଆଦିର ବ୍ୟବହାର ହୋଇଥିବ, ଯାହାର ଅବଶେଷ ଏବେ ମିଳିବା କଠିନ । ମାତ୍ର ପଥର ଉପକରଣ ଏବଂ ବସତିର ଚିହ୍ନରୁ ଏହି ଧରଣର ବସତି ସମ୍ବନ୍ଧରେ ଜଣାପଡ଼େ । ବସତିଗୁଡ଼ିକ ସାଧାରଣତଃ ଜଳାଧାର ପାଖରେ ମିଳିଥାଏ । ସେଠାରେ ସହଜରେ ତରୁଲତା ମିଳୁଥିଲା । ପୁରାତନ ପାଷାଣ ଯୁଗ ସମ୍ବନ୍ଧରେ ଜାଣିବାପାଇଁ ଜୀବାଶ୍ମ ହେଲା ଅନ୍ୟ ଏକ ସ୍ରୋତ । ଜୀବଜନ୍ତୁଙ୍କର ଜୀବାଶ୍ମରୁ ଜଣାପଡ଼େ ଯେ ତନ୍ମଧ୍ୟରୁ ଅନେକ ପଶୁ, ପରେ ପରେ ଗୃହପାଳିତ ଶ୍ରେଣୀଭୁକ୍ତ ହୋଇଥିଲେ । ଗାଈ, ମେଣ୍ଢା, ଛେଳିର ଜୀବାଶ୍ମ ମିଳିଛି । ଆଉ କେତେକ ଜନ୍ତୁ, ଯଥା- ବିଲେଇ ପରିବାରର ପଶୁ ଏବଂ ହରିଣ, ଯାହା ବଣ୍ୟଜନ୍ତୁ ହୋଇ ରହିଗଲେ, ସେଗୁଡ଼ିକର ମଧ୍ୟ ଜୀବାଶ୍ମ ପ୍ରାପ୍ତ ହୋଇଛି । ପ୍ରାରମ୍ଭିକ ପର୍ଯ୍ୟାୟରେ, ମୁଖ୍ୟତଃ ଶିକାର ଏବଂ ଭୋଜ୍ୟ ତରୁଲତାରୁ ଭୋଜନପ୍ରାପ୍ତ କରାଯାଉଥିଲା । ସେଥିପାଇଁ ଗୁଳ୍ମ ଜଙ୍ଗଲ ଏବଂ ପାଣିଧାର ପାଖରେ ବସତିଗୁଡ଼ିକ ସ୍ଥାପିତ ହେଉଥିଲା । ହୁଂଗସି ଥିଲା ସେହି ଧରଣର ଏକ ବସତି । ବଡ଼ ପଶୁର ଶିକାର ପାଇଁ ଲୋକ ଦଳବଦ୍ଧ ହୋଇ ଯାଉଥିବେ ଏବଂ ସାନ ଜୀବର ଶିକାର ପାଇଁ ବ୍ୟକ୍ତି ଏକା ଏକା ଯାଉଥିବ ବୋଲି ଅନୁମାନ କରାଯାଏ ।

ଏହି ଖନନସ୍ଥଳୀଗୁଡ଼ିକ ପ୍ରାୟ ଖ୍ରୀ.ପୂ. 30,000 ଏବଂ 10,000 ଖ୍ରୀ.ପୂ. ମଧ୍ୟକାଳର । ପଥର ଉପକରଣ ମଧ୍ୟରେ ହସ୍ତାକୃତି ବାଲିଗରଡ଼ା ଅନ୍ୟତମ । ସୋନ ଘାଟୀ ତଥା ଉତ୍ତରରେ ସିବାଳିକ ପର୍ବତମାଳା ଭଳି ନଦୀର ଉପରମୁଣ୍ଡରେ ବଡ଼ ଆକାରର ବାଲିଗରଡ଼ାମାନ ମିଳିଥାଏ । ନର୍ମଦା ଉପତ୍ୟକାରୁ ମିଳିଥିବା ଏକ ଖପୁରୀରୁ କେତେକ ରୋଚକ ପ୍ରମାଣ ଉପଲବ୍ଧ ହେବାର ସମ୍ଭାବନା ରହିଛି । ତରୁଲତା ଏବଂ ପଶୁ ଅବଶେଷର ବିଶ୍ଳେଷଣରୁ ପରିବେଶ ଓ ଜଳବାୟୁ ସେତେବେଳେ କେମିତି ଥିବ, ତାହା ଅନୁମାନ କରିହୁଏ । ଶିକାରୀ-ସଂଗ୍ରାହକମାନଙ୍କର ଛୋଟ ଛୋଟ ଦଳଗୁଡ଼ିକ ସକାଶେ ଜଳବାୟୁଗତ ଭିନ୍ନତା ଖୁବ୍ ସମସ୍ୟା ସୃଷ୍ଟି କରୁଥିଲା । କ୍ରମଶଃ ସେମାନେ ପଶୁ ପାଳନ କଲେ, କେତେକ ତରୁଲତାର ଦେଖାରେଖା

କଲେ ଏବଂ ବିଭିନ୍ନ ଧରଣର ମୋଟା, ଅମାର୍ଜିତ ବାସନ ତିଆରି କଲେ । ଅନ୍ୟପାଖର ଜଗତ ସମ୍ବନ୍ଧରେ ସେମାନଙ୍କର କ'ଣ ସବୁ ଅବଧାରଣା ରହିଥିଲା, ତାହା ଜଣାପଡ଼େ ନାହିଁ । ସେମାନେ ପରସ୍ପର ସହିତ କେମିତି ବିଚାର ବିନିମୟ କରୁଥିଲେ, କେଉଁ ଭାଷା ବ୍ୟବହାର କରୁଥିଲେ – ସେ ନେଇ ମଧ୍ୟ ତଥ୍ୟ ନାହିଁ । ସେମାନଙ୍କ ଚିନ୍ତାଧାରା ସମ୍ବନ୍ଧରେ ବି ଆମକୁ କିଛି ଜଣାନାହିଁ । ଭୀମବାଟିକାର କେତେକ ପଥର ଚଟାଣରେ ଖୋଦିତ ଚିତ୍ରକୁ ପୁରାତନ ପାଷାଣଯୁଗୀୟ ବୋଲି ମନେକରାଯାଏ । ପରବର୍ତ୍ତୀ ସମୟର କେତେକ ଚିତ୍ର ସହିତ ତାହା ପ୍ରାପ୍ତ ହୋଇଛି । ଏହି ଚିତ୍ରଗୁଡ଼ିକରେ ଶିକାରରେ ସଫଳତା ଏବଂ ପ୍ରଜନନ ଶକ୍ତିକୁ ନେଇ ଉଦ୍‌ଗ୍ରୀବ ଭାବ ସବୁ ପ୍ରତିଫଳିତ ହୋଇଥିଲା । ମଧ୍ୟପ୍ରଦେଶସ୍ଥ ବାଘୋର ପ୍ରଥମରେ ମିଳିଥିବା ଏକ ପଥର ତ୍ରିକୋଣ ଆକାରରେ ଖୋଦିତ ହୋଇଛି, ଯାହାକୁ ନାରୀ ପ୍ରଜନନାଙ୍ଗର ପ୍ରତୀକ ରୂପେ ଚିହ୍ନିତ କରାଯାଏ । ଏହାର ସମାନ୍ତରରେ ଏକ ସେହି ଧରଣର ପଥରଖଣ୍ଡକୁ ଦେବୀ ରୂପରେ ବାଘୋର ନିକଟସ୍ଥ ଏକ ଗ୍ରାମରେ ପୂଜା କରାଯାଏ ।

ଖାଦ୍ୟ ସଂଗ୍ରହ କରିବାର ଉପାୟରେ ଅଧିକ ଉନ୍ନତି ହେବାରୁ ଏହି କାଳାଂଶରେ କେତେକ ଶିକାରୀ-ସଂଗ୍ରାହକଙ୍କୁ ସ୍ଥାୟୀ ବସତି ସ୍ଥାପନ ପାଇଁ ଅବସର ମିଳିଥିବ । ଏହି କାରଣରୁ ମଧ୍ୟ ପାଷାଣ ଯୁଗର ବସତି ସ୍ଥଳରେ ପୁରାତନ ପାଷାଣ ଯୁଗରୁ ଭିନ୍ନ ଉପକରଣ ବ୍ୟବହାର ହୋଇଥିବାର ପ୍ରମାଣ ମିଳେ । ପ୍ରାପ୍ତ ପଥର ଉପକରଣଗୁଡ଼ିକ ଆକାରରେ କ୍ଷୁଦ୍ର; ପାଞ୍ଚ ସେ.ମି.ରୁ ବଡ଼ ନୁହେଁ । ତେଣୁ ତାକୁ ମାଇକ୍ରୋଲିଥ (microlith) ବା କ୍ଷୁଦ୍ର ପାଷାଣାକୃତି ଭାବରେ ନାମିତ କରାଯାଏ । ଏଥିରେ ଛେଲା, ପାତି, ତୀକ୍ଷ୍ଣାକୃତି ପଥର, କୋରଣୀ, ଅର୍ଦ୍ଧଚକ୍ର ଏବଂ ବିଭିନ୍ନ ଜ୍ୟାମିତିକ ଆକାରର ଉପକରଣ ରହିଥିଲା । ଏକ ବଡ଼ ପଥରକୁ ଏକ ନିର୍ଦ୍ଦିଷ୍ଟ କୋଣରୁ କୋରି କିମ୍ବା ଚାଞ୍ଛି ଉପକରଣ ତିଆରି କରାଯାଉଥିଲା । ସାନ ପଥରଖଣ୍ଡକୁ ବଡ଼ ପଥରଖଣ୍ଡ ଅପେକ୍ଷା ଅଧିକ କିସମରେ ବ୍ୟବହାର କରାଯାଇ ପାରୁଥିଲା, କାରଣ ତହିଁରୁ ଭିନ୍ନ ଭିନ୍ନ ପ୍ରକାରର କାର୍ଯ୍ୟ ଉପଯୋଗୀ ଉପକରଣ ତିଆରି ହୋଇପାରୁଥିଲା । କାଟିବା ପାଇଁ ଚକୁ, ଦା' ଆଦି ଏହି ପଦ୍ଧତିରେ ତିଆରି ହେଉଥିଲା । ତୀରରେ ଲାଗୁଥିବା ଅନେକ ପାତି ମିଳିଛି, ଯାହା ଧନୁତୀରର ମୁନ ରୂପରେ ବ୍ୟବହାର ହେଉଥିବ ବୋଲି ସୂଚନା ଦିଏ । ଏହାର ଅର୍ଥ ହେଲା; ବଣ୍ୟଜୀବକୁ ବେଢ଼ିଯାଇ ମାରିବା ଅପେକ୍ଷା ଦୂରରୁ ଧନୁ-ତୀରରେ ଶିକାର କରିବାର ପଦ୍ଧତିର ଅଧିକ ପ୍ରଚଳନ ଥିଲା । ଏହାଫଳରେ ଶିକାରୀ ଉପରେ ବଣ୍ୟଜନ୍ତୁର ଆକ୍ରମଣର ଆଶଙ୍କା ଊଣା ହେଲା । କ୍ଷୁଦ୍ର ଉପକରଣ ତିଆରି ପାଇଁ କ୍ଷୁଦ୍ର ଆକାରର ଶଳକୀ-ପଥର ସ୍ଥାନରେ ସ୍ଫଟିକ ପଥର, ଚିକିମିକି ପଥର, ଗୋମେଦ (agate), ନୀଳାଭ ପଥର (chalcedony) ଇତ୍ୟାଦି ପଥରକୁ ବ୍ୟବହାର କରାଗଲା, କାରଣ ଏହି କିସମର ପଥରକୁ ଚାଞ୍ଛିବା ସହଜ । ଏହିପ୍ରକାର ପରିବର୍ତ୍ତନରୁ

ଜଣାପଡ଼େ ଯେ ମନୁଷ୍ୟର ପରିବେଶ ସହିତ ଜ୍ଞାନ ବଢୁଛି ଏବଂ ସେହି ଅନୁସାରେ ଟେକ୍‌ନୋଲୋଜିକୁ ନିୟନ୍ତ୍ରଣ କରିବାର ଆତ୍ମବିଶ୍ୱାସ ବୃଦ୍ଧି ପାଇଛି । ତା' ସହିତ ନୂତନ କଞ୍ଚାମାଲ ଉପଲବ୍ଧ ହେଉଥିବା ସ୍ଥାନର ସମୀପବର୍ତ୍ତୀ ସ୍ଥଳରେ ମନୁଷ୍ୟ ବସତି ସ୍ଥାପନ କରିଥିବାର ଜଣାଯାଏ । ନଦୀରୁ ମିଳୁଥିବା ପଥରଖଣ୍ଡର ବ୍ୟବହାର କ୍ରମଶଃ ଊଣା ହେଲା । ପାହାଡ଼ ଓ ଜଙ୍ଗଲରେ ମିଳୁଥିବା ପଥରର ଅଧିକ ଉପଯୋଗ ଦେଖିବାକୁ ମିଳିଲା । ଏହି ପରିବର୍ତ୍ତନ ହଠାତ୍ ନ ହୋଇ ଅତି ଧୀରେ ଧୀରେ ସଂଘଟିତ ହୋଇଥିଲା । ତା' ପାଇଁ ଶହ ଶହ ବର୍ଷର ଲୋଡ଼ା ପଡ଼ିଥିଲା । ନୂତନ ଟେକ୍‌ନୋଲୋଜି ଜୀବନ-ଯାପନ ପ୍ରଣାଳୀରେ ଏକ ପରିବର୍ତ୍ତନ ଆଣିଲା । ପ୍ରଥମେ ଶିକାର ଓ ଜଙ୍ଗଲରୁ ଫଳମୂଳ ସଂଗ୍ରହ ସାଙ୍ଗରେ ବର୍ଣ୍ୟ-ଶସ୍ୟ (wild grains)ର ବ୍ୟବହାର ହେଲା । ତଦ୍ଦ୍ୱାରା ପଶୁପାଳନ ଆରମ୍ଭ ହେଲା; କିଛି ପନିପରିବା ଚାଷ ହେଲା; ପୁରାତନ ଶୈଳୀରେ କୃଷିର ଆରମ୍ଭ ହେଲା । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଦୀର୍ଘସମୟ ଧରି ବସତି ସ୍ଥାପନ କରିବାର ପ୍ରବୃତ୍ତି ଏଥିରୁ ଜନ୍ମନେଲା । ପରବର୍ତ୍ତୀ ସମୟରେ ଶିକାର ଓ ଖାଦ୍ୟ ସଂଗ୍ରହ କାର୍ଯ୍ୟ କିଛି ଊଣା ହେଲା । ଭୋଜନ ପାଇଁ କେବଳ ଶିକାର ଓ ସଂଗ୍ରହ ଉପରେ ଆଶ୍ରିତ ରହିବାର ପ୍ରବୃତ୍ତି କ୍ରମଶଃ ହ୍ରାସ ପାଇଲା ।

ପୁରାତାତ୍ତ୍ୱିକ ଖନନସ୍ଥଳୀକୁ ଯଦି ସଂକେତ ଭାବରେ ନିଆଯାଏ ତେବେ ଜଣାଯିବ ଯେ ମଧ୍ୟ-ପାଷାଣକାଳୀନ ଗତିବିଧି ଘଞ୍ଚ ମୌସୁମୀ ଜଙ୍ଗଲଠାରୁ ଦୂରରେ ଅପେକ୍ଷାକୃତ ଶୁଷ୍କ ମାଳାଞ୍ଚଳରେ କେନ୍ଦ୍ରିତ ରହିଥିଲା । ଖ୍ରୀଷ୍ଟପୂର୍ବ ଦଶମ ଓ ପଞ୍ଚଦଶ ସହସ୍ରାବ୍ଦୀ ମଧ୍ୟରେ ଆର୍ଦ୍ର ଓ ଶୁଷ୍କ ଜଳବାୟୁର ଭିନ୍ନ ଭିନ୍ନ ଧାରା ଦେଖିବାକୁ ମିଳିଲା । ଅନେକ ଜନବସତି ପଥୁରିଆ ଚଟାଣରେ କିମ୍ବା ତା'ର ସୀମପବର୍ତ୍ତୀ ସ୍ଥାନରେ ରହିଥିଲା । ଏଭଳି ବସତି ମଧ୍ୟପ୍ରଦେଶରୁ ମିଳିଛି । ମାତ୍ର ଖମ୍ବ ପୋତିବାର ଗାତ ଓ ନିବାସର ଧାରାରୁ ଜଣାପଡ଼େ ଯେ କିଛି ଲୋକ ସାହସିକତାର ପରିଚୟ ଦେଇ ଗୁମ୍ଫା ଓ ଚଟାଣ ନିବାସରୁ ବାହାରିଯାଇ ଦୂରରେ ବସତି ସ୍ଥାପନ କଲେ । ଖମ୍ବ ପୋତିବାର ଗାତରୁ ଅନୁମାନ କରିହୁଏ ଯେ ସେତେବେଳେ କେତେ ବୃତ୍ତାକାର ପତ୍ରକୁଡ଼ିଆ ତିଆରି ହୋଇଥିଲା । ଗୁଜରାଟର ଲଂଘନଜ, ମଧ୍ୟପ୍ରଦେଶର ଆଜମଗଡ଼, ଉତ୍ତରପ୍ରଦେଶର ମହାଦେହ ଓ ସରାଇ ନହର ରାୟ, ରାଜସ୍ଥାନ ଓ ବିହାରରେ ଅନେକ ମଧ୍ୟ-ପାଷାଣିକ ଅବଶେଷ ମିଳିଥାଏ । କେତେକ ସ୍ଥାନରୁ ମିଳିଥିବା ଆଦିମ ଢଙ୍ଗର ଶିଳ ଓ ଶିଳପୁଆରୁ ସ୍ପଷ୍ଟହୁଏ ଯେ ବର୍ଣ୍ୟ-ଶସ୍ୟ ଏବଂ ଡରୁଲତାରୁ ଆଗ ଅପେକ୍ଷା ଅଧିକ ପ୍ରକାରର ଆହାର ଏଣିକି ପ୍ରସ୍ତୁତ କରାଯାଉଥିଲା । ଗୋଟାଏ ସ୍ଥାନରୁ ଏଭଳି କିଛି ବସ୍ତୁର ଅବଶେଷ ମିଳିଛି, ଯାହାକୁ ହାତତିଆରି ଅମାର୍ଜିତ ମାଟିପାତ୍ର ମନେକରାଯାଉଛି । ପୁଣି, ଏକ ଭଣ୍ଡାର ଭଳି କିଛି ମିଳିଛି । ଏହାକୁ ଆହାରର ଅଧିକ କିସମ ପାଇଁ ପ୍ରମାଣ ରୂପରେ ଦେଖାଯାଇପାରେ । ବସତି ସ୍ଥାନଗୁଡ଼ିକରୁ ଅନେକ କିସମର

ପଶୁ ଅସ୍ଥିର ଅବଶେଷ ମଧ୍ୟ ମିଳିଛି । ପଶୁଗୁଡ଼ିକ ମଧ୍ୟରେ ଅଛନ୍ତି ହରିଣ, ବରାହ ଏବଂ ବର୍ତ୍ତମାନ ବିଲୁପ୍ତ ହୋଇଯାଇଥିବା ଅଷ୍ଟ୍ରିଚ ଏବଂ ପରେ ଗୃହପାଳିତ ହୋଇଥିବା ଗୋରୁ, ମେଣ୍ଢା ଏବଂ ଛେଳି ଆଦି ।

କାହିଁ କେଉଁଠି ଶବାଗାରକୁ ନିବାସ କ୍ଷେତ୍ର ମଧ୍ୟରେ ସ୍ଥାନିତ କରାଯାଇଥାଏ । ସମାଧି ମଧ୍ୟରେ ସୂକ୍ଷ୍ମ ପ୍ରସ୍ତର, ଶଙ୍ଖ ଏବଂ ହାତୀଦାନ୍ତରୁ ନିର୍ମିତ ତାବିଜ ରଖାଯାଇଥାଏ । ଏହିସବୁ ସାମଗ୍ରୀର ଉପସ୍ଥିତିରୁ ତତ୍‌କାଳୀନ ମନୁଷ୍ୟର ମରଣୋପରାନ୍ତ ଜୀବନରେ ବିଶ୍ୱାସ ଥିବା କଥା ଜଣାଯାଏ । ନିବାସ କ୍ଷେତ୍ର ମଝିରେ ସମାଧିସ୍ଥଳ ରଖାଯିବା ପଛରେ ହୁଏତ ମୃତ ପ୍ରିୟଜନ ପ୍ରତି ସମ୍ବନ୍ଧରେ ନିବିଡ଼ତା କାରଣ ହୋଇଥିବ । ଅଥବା ମାଂସଭକ୍ଷୀ ପ୍ରାଣୀ କବଳରୁ ଶବକୁ ସୁରକ୍ଷିତ ରଖିବାକୁ ମଧ୍ୟ ଏପରି କରାଯାଇଥିବ । ଅବଶ୍ୟ ଏଭଳି ଉଦାହରଣ ବିରଳ, ତଥାପି କେତୋଟି ସମାଧିରେ ଦୁଇଜଣଙ୍କୁ ଏକାସାଙ୍ଗରେ ରଖାଯାଇଛି । କିନ୍ତୁ ଏହି ଦୁଇଜଣ ସମାଧିପ୍ରାପ୍ତ ବ୍ୟକ୍ତି ସର୍ବଦା ସ୍ତ୍ରୀ-ପୁରୁଷ ନୁହଁନ୍ତି । ପ୍ରାପ୍ତ କଙ୍କାଳରୁ ଜଣାପଡ଼େ ଯେ, ମୃତ ବ୍ୟକ୍ତିର ବୟସ ପ୍ରାୟତଃ ପନ୍ଦରରୁ ଚାଳିଶ ବର୍ଷ ମଧ୍ୟରେ ହୋଇଥିବ । ଏହି ଆଧାରରେ କୁହାଯାଇପାରେ ଯେ ସେତେବେଳେ ଏହା ହାରାହାରି ଜୀବନାବଧି ହୋଇଥାଇପାରେ । ହୁଏତ ଆଜି ତାହା ଅଳ୍ପାୟୁ ଭଳି ମନେହେଉଛି, ହେଲେ ସେତେବେଳେ ଏହା ମନୁଷ୍ୟର ସାମାନ୍ୟ ଆୟୁ ହୋଇଥିବ । କେତେକ କଙ୍କାଳରୁ ଜଣାପଡ଼େ ଯେ ମୃତବ୍ୟକ୍ତି ଗଣ୍ଠିବାତର ରୋଗୀ ଥିଲେ ।

ଏହି ଆଦିମ ସମାଜଗୁଡ଼ିକ ଦଳ ଆଧାରରେ ସଂଗଠିତ ହୋଇଥାଇ ପାରନ୍ତି । ତା' ଭିତରେ ପରିବାର ବି ରହିଥିଲା । ଖାଦ୍ୟ ଅନ୍ୱେଷଣରେ ବାରମ୍ବାର ସେମାନଙ୍କୁ ବସତି ପରିବର୍ତ୍ତନ କରିବାକୁ ପଡୁଥିଲା । ଏହା ପରିବାରର ସଭ୍ୟ ସଂଖ୍ୟାକୁ ସୀମିତ କରିଦେଉଥିଲା; ସାନ ବୟସର ପିଲା ଦୂରଦୂରକୁ ପାଦରେ ଚାଲିବାରେ ଥକିଯିବା ସ୍ୱାଭାବିକ । ସେହି ପ୍ରକ୍ରିୟାରେ ପରିବାରର ନିବାସ ପରିବର୍ତ୍ତନରେ ତାହା ବାଧା ସୃଷ୍ଟି କରୁଥିବ । ଯଦି ଦଳ ସାନ, ତେବେ କେବେ କେବେ ରୋଗ ପୂରା ଦଳକୁ ନିଶ୍ଚିହ୍ନ କରିଦେଉଥିବ ।

ଖୁବ୍ ସଯତ୍ନରେ ମଧ୍ୟପ୍ରଦେଶ ଓ ଅନ୍ୟାନ୍ୟ ସ୍ଥାନରେ ପ୍ରସ୍ତରାଶ୍ରୟ ଓ ଗୁମ୍ଫାଗୁଡ଼ିକୁ ଆବିଷ୍କାର କରାଯାଇଛି । ତହିଁରେ ପଥର ଓ ଗୁମ୍ଫାର ଚଟାଣ ଉପରେ ଖୋଦିତ ହୋଇଥିବା ଚିତ୍ର ଓ ମୂର୍ତ୍ତି ସବୁ ରହିଛି । ତନ୍ମଧ୍ୟରୁ କେତେକ ଚିତ୍ର ଓ ମୂର୍ତ୍ତି ହେଲେ ମଧ୍ୟ ପାଷାଣକାଳୀନ । ମାତ୍ର ଭୀମବାଟିକା ପରି ଅନ୍ୟ କେତେକ ବିସ୍ତୃତ ସ୍ଥଳୀର ଚିତ୍ରକଳା ହେଲା ଆଦିମକାଳରୁ ଆରମ୍ଭକରି ଐତିହାସିକ କାଳର । ପଟୁଆର ଓ ଯୁଦ୍ଧରେ ସାମିଲ ଘୋଡ଼ା ଓ ହାତୀର ଚିତ୍ରରୁ ଜଣାପଡ଼େ ଯେ ତାହା ଐତିହାସିକକାଳୀନ; ପ୍ରାଗ୍ ଐତିହାସିକକାଳୀନ ନୁହେଁ । ପ୍ରାରମ୍ଭିକ

ସମୟର କଳାର ବିଷୟବସ୍ତୁ ମୁଖ୍ୟତଃ ଶିକାରୀ ଓ ସଂଗ୍ରାହକମାନଙ୍କର ଜୀବନ ଉପରେ କେନ୍ଦ୍ରିତ ଥିଲା । ବିଭିନ୍ନ ଯୁଗରେ ପଶୁଶିକାର ଥିଲା ଏକ ପ୍ରମୁଖ ଉଦ୍ୟୋଗ । ଚିତ୍ରରେ ଉଭୟ ମନୁଷ୍ୟ ଓ ପଶୁକୁ ଏକ ଭାବାତ୍ମକ ଶୈଳୀରେ ଉପସ୍ଥାପିତ କରାଯାଉଥିଲା । ସମାନ୍ତରାଳ ଛକିଚିହ୍ନ ତଥା ଆଉ ଅନେକ ପ୍ରକାରେ ପଶୁମାନଙ୍କୁ ଚିହ୍ନିତ କରାଯାଉଥିଲା । ସମ୍ଭବତଃ ଶିକାରର ବିଧି ଅନୁଯାୟୀ ସଫଳ ଶିକାରର ବର୍ଣ୍ଣନାକୁ ଶୁଭଙ୍କର ମନେକରାଯାଉଥିଲା । ଚିତ୍ର ରୂପରେ ଶିକାରର ଶୈଳୀକୁ ଅଙ୍କନ କରାଗଲେ ତାହା ନିଶ୍ଚିତ ସଫଳତା ଦେବ ବୋଲି ଧାରଣା ରହିଥିଲା । ଏପରି ଚିତ୍ରଣ କୁହୁକବିଦ୍ୟାର ଅବ୍ୟର୍ଥତାରେ ରହିଥିବା ଆସ୍ଥାର ଏକ ଅଭିବ୍ୟକ୍ତି ସଦୃଶ ଥିଲା । ପ୍ରଜନନର ପ୍ରତୀକ ରୂପେ ପୁରୁଷ ଓ ସ୍ତ୍ରୀକୁ ମଧ୍ୟ ଚିତ୍ରର ପ୍ରସଙ୍ଗ କରାଯାଉଥିଲା । ଚିତ୍ର ଆଙ୍କିଥିବା ଏହି ସମୁଦାୟ ମଧ୍ୟ ଭାରତର ପାହାଡ଼ୀ କ୍ଷେତ୍ରରେ ବିକ୍ଷିପ୍ତ ଭାବରେ ରହିଥିଲେ । ସେମାନଙ୍କର ପୂଜା-ଉପାସନା ଏବଂ କର୍ମକାଣ୍ଡରେ ସମରୂପତା ରହିଥିଲା ନା ନାହିଁ, ତାହା ଅନୁଧାନ କରିବା ଆଜି ନିଶ୍ଚିତରୂପେ ଖୁବ୍ ରୁଚିକର ସିଦ୍ଧ ହେବ ।

ପ୍ରାଗୈତିହାସିକ ପ୍ରସ୍ତରକଳାର ଭୌଗୋଳିକ ବିସ୍ତୃତି ନିଶ୍ଚିତରୂପେ ପ୍ରଭାବଶାଳୀ ଥିଲା । ନୂତନ ପାଷାଣଯୁଗର ପର ପର୍ଯ୍ୟାୟଭୁକ୍ତ ବୋଲି ମନେକରାଯାଉଥିବା ପ୍ରସ୍ତର ଆକୃତି କେରଳର ପଶ୍ଚିମଘାଟସ୍ଥିତ ଏଡ଼କାଲ ଗୁମ୍ଫାରେ ମଧ୍ୟ ଦେଖିବାକୁ ମିଳେ । ଏଥିରେ ମାନବ ଗତିବିଧିକୁ ଏକ ଅଭିନବ ଶୈଳୀରେ ଖୋଦିତ କରାଯାଇଛି । ନିକଟରେ ସୁଦୂର ଉତ୍ତରରେ ସ୍ଥିତ ଗିଲଗିଟ ଏବଂ ବାଲଟିସ୍ତାନ ଅଞ୍ଚଳରେ ଖନନ କରାଯାଇଛି । ତହିଁରେ ପୁରୁଷ ଚିତ୍ର ଏବଂ ମୁଖାର ଚିତ୍ର ଖୋଦିତ ହୋଇଥିବାର ଦେଖିବାକୁ ମିଳିଛି । ମାତ୍ର ଅଧିକ ସଂଖ୍ୟକ ଚିତ୍ର ମିଳିଛି ବନ୍ୟ ଛାଗ (ibexes) ଓ ଅନ୍ୟାନ୍ୟ ସେହି ଧରଣର ଶିଙ୍ଘାରୀ ପଶୁର । ଚିତ୍ରର ଶିଙ୍ଘକୁ ଏକ ଖାସ୍ ଶୈଳୀରେ ଖୋଦନ କରାଯାଇଛି । ଚିତ୍ରର କେତେକ ବୈଶିଷ୍ଟ୍ୟକୁ ଆଧାର କରି ସେଗୁଡ଼ିକ ଖ୍ରୀ.ପୂ. ତୃତୀୟ ସହସ୍ରାବ୍ଦୀରେ ମଧ୍ୟଏସିଆ କ୍ଷେତ୍ର ଓ ଉପର ସୈନ୍ଧବ କ୍ଷେତ୍ର ମଧ୍ୟରେ ରହିଥିବା ସମ୍ବନ୍ଧକୁ ଅଧ୍ୟୟନ କରିବାରେ ସହାୟକ ହେବେ ବୋଲି ମନେକରାଯାଏ ।

## ନୂତନ ପାଷାଣ ସଂସ୍କୃତି

ପୁରାତତ୍ତ୍ୱବିତ୍ ଗୋର୍ଡ଼ନ ଚାଇଲ୍ଡ (Gorden Childe) ଏକଦା କୃଷି ଓ ପଶୁପାଳନକୁ ପ୍ରାଧାନ୍ୟ ଦେଇଥିବା ନୂତନ ପାଷାଣ ଯୁଗର ପରିବର୍ତ୍ତନ ଧାରାକୁ ବିପ୍ଲବ ରୂପେ ଅଭିହିତ କରିଥିଲେ । ଏହି ବିପ୍ଲବ ଆକସ୍ମିକ ନ ଥିଲା; ମୌଳିକ ପରିବର୍ତ୍ତନ ବି ନ ଥିଲା । ବରଂ

କୃଷି ଓ ପଶୁପାଳନର ଅନେକ ଉପାଦାନ ଆଗରୁ ଆରମ୍ଭ ହୋଇଯାଇଥିଲା । ଉଭୟ ପୁରୁଷ ଓ ନାରୀ ନିଜ ଜୀବନଶୈଳୀରେ ଉନ୍ନତି ଆଣିବାକୁ ପ୍ରୟାସ କରୁଥିଲେ । ପରିବେଶରେ ମଧ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଉଥିଲା । ଏହା ସେହି କଥିତ ବିପ୍ଳବକୁ ତ୍ୱରାନ୍ୱିତ କରିଥିଲା । ଖାଦ୍ୟ ସଂଗ୍ରହର ଧାରାରେ ପରିବର୍ତ୍ତନ ଆସିଲା; ମନୁଷ୍ୟ, ପଶୁ ଏବଂ ମାଟି ମଧ୍ୟରେ ଏକ ନୂଆ ଧରଣର ଅନ୍ତଃସମ୍ବନ୍ଧ ସ୍ଥାପିତ ହେଲା, ଯାହାକୁ ବୈପ୍ଳବିକ ପରିବର୍ତ୍ତନ ବୋଲି କୁହାଯିବ । ଜନସଂଖ୍ୟା ବୃଦ୍ଧି ହେବାଫଳରେ ଅଧିକ ଉତ୍ପାଦନର ଆବଶ୍ୟକତା ପଡ଼ିଥିବ । ଫଳରେ ଉତ୍ପାଦନ ଆଶାନୁରୂପ ବୃଦ୍ଧି ହେବା କଥା ବୋଲି ମନେହୋଇଥିବ । ଫଳରେ ଖାଦ୍ୟକୁ ରଖିବାପାଇଁ ବଡ଼ ପାତ୍ର ଓ ଭଣ୍ଡାରର ଲୋଡ଼ା ପଡ଼ିଥିବ । ଏହା ବଡ଼ ପାତ୍ର ନିର୍ମାଣ ପାଇଁ କାରଣ ହୋଇଥିବ । ଯେଉଁଠି କୃଷି କାର୍ଯ୍ୟ ଚାଲିଲା, ସେଠାରେ ଜନସଂଖ୍ୟା ବୃଦ୍ଧି ହେଲା ଏବଂ ଲୋକ ସ୍ଥାୟୀଭାବେ ବସତି ସ୍ଥାପନ କଲେ । ସ୍ଥାୟୀ କୃଷିକାର୍ଯ୍ୟ କରୁଥିବା ଲୋକ ଉତ୍ପାଦନ ବୃଦ୍ଧି ପାଇବା ଯୋଗୁଁ ଶିକାରୀ-ସଂଗ୍ରାହକ ଏବଂ ପୋଡୁଚାଷ କରୁଥିବା ଲୋକଙ୍କୁ ବିସ୍ମିତ କରିଥିବେ ବୋଲି ମନେକରାଯାଏ । ସ୍ଥାୟୀ ନିବାସ ସ୍ଥାପିତ ହେଲାପରେ ନିବାସ କ୍ଷେତ୍ରରେ ଜନସଂଖ୍ୟାର ଘନତ୍ୱ ବୃଦ୍ଧି ପାଇଲା । ଶେଷରେ ଏହା ସହରୀକରଣ ପାଇଁ ସହାୟକ ହେଲା । ଅବଶ୍ୟ କୃଷି ଏବଂ ସ୍ଥାୟୀ ବୃତ୍ତିର ପର୍ଯ୍ୟାପ୍ତ ଅନୁଭବ ପରେ ଯାଇ ସହରୀକରଣ ସମ୍ଭବ ହେଲା ।

ଭାରତ ଉପମହାଦେଶର ବିଭିନ୍ନ ସ୍ଥାନରେ ନୂତନ ପାଷାଣଯୁଗୀୟ ସ୍ଥଳ ଦେଖିବାକୁ ମିଳେ । ଯଥା- ସ୍ୱାତ ଉପତ୍ୟକାର ଗାଲିଘାଇରେ, ତା'ଠାରୁ ଦକ୍ଷିଣକୁ ସରାଇ ଖୋଲାରେ, କାଶ୍ମୀର ଘାଟିର ଲଏସ ଅଧିତ୍ୟକାରେ, ବିହାରର ଚିରାଂଦରେ ଏବଂ ଉତ୍ତରପ୍ରଦେଶସ୍ଥ ବେଲନ ଘାଟିର ଚୋପାନୀମାଣ୍ଡୋ ଏବଂ କୋଲଡିହବାରେ, ତା'ର ପୂର୍ବକୁ ପାଣ୍ଡୁରାଜାର ଢିବିରେ ଏବଂ ଆହୁରି ପୂର୍ବକୁ ଦାଓଜାଲି ହାଡ଼ିଙ୍ଗ ଏବଂ ସାରୁତାରୁରେ ଏବଂ ଦକ୍ଷିଣ ଉପଦ୍ୱୀପର ରାୟଚୁର ଦୋଆବ କ୍ଷେତ୍ରରୁ ଆରମ୍ଭ କରି ଗୋଦାବରୀ ଏବଂ କୃଷ୍ଣା ଘାଟି ମଧ୍ୟରେ ବ୍ୟାପ୍ତ ଓଟନୁର, ପିକଲୀହାଲ, ମସ୍କୀ, ଟେକ୍କାଲକୋଟା, ବ୍ରହ୍ମଗିରି, ହଲ୍ଲୁର, ପୈୟାମପଲ୍ଲୀ ଏବଂ ଟି. ନରସୀପୁର ଆଦି ସ୍ଥାନରେ । ଏଗୁଡ଼ିକ ମଧ୍ୟରୁ କେତେକ ସ୍ଥଳରେ ପରେ ମଧ୍ୟ ଜନବସତି ରହିଥିଲା । ଅଚ୍ଚ କେତେକ ସ୍ଥଳରେ ସହରୀକରଣ ପାଇଁ ଆବଶ୍ୟକ ଉପାଦାନ ବି ରହିଥିଲା ।

ସମ୍ଭବତଃ ପ୍ରାରମ୍ଭରେ ଚାଷକାର୍ଯ୍ୟରେ ନିୟୋଜିତ ସମୂହ ଗୋଟାଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିବେ । ପରେ ସଘନ କୃଷି ଯୋଗୁଁ ସେମାନଙ୍କୁ ଗୋଟାଏ ସ୍ଥାନରେ ସ୍ଥାୟୀଭାବେ ବସତି ସ୍ଥାପନ କରିବାକୁ ପଡ଼ିଥିବ । ହୁଏତ୍ ଏହି ସମୂହକୁ ଶିକାରୀ-ସଂଗ୍ରାହକ ଏବଂ ପୋଡୁଚାଷ କରୁଥିବା ଗୋଷ୍ଠୀ ସହ ସଂଘାତ ବି କରିବାକୁ ପଡ଼ିଥାଇପାରେ । ଯେଉଁମାନେ ନିକଟରେ ଶିକାରୀ-ସଂଗ୍ରାହକ ବୃତ୍ତିକୁ ଆପଣେଇଥିବେ, ସେମାନେ କୃଷିକୁ ଅଧିକ ମହତ୍ତ୍ୱ

ଦେବାକୁ ପ୍ରେରଣା ପାଇଥିବେ । ଶେଷରେ କୃଷିକୁ ହିଁ ପ୍ରାଧାନ୍ୟ ମିଳିଥିବ ଏବଂ ଶିକାର ଏବଂ ଅନ୍ନ ସଂଗ୍ରହ ପ୍ରତି ଆଗ୍ରହ ହ୍ରାସ ପାଇଥିବ । କୁହାଯାଏ, ପୁରୁଷମାନେ ଶିକାରକୁ ଗଲାବେଳେ ସ୍ତ୍ରୀମାନେ ଘରେ ରହୁଥିଲେ ବୋଲି କୃଷିର ଆରମ୍ଭ ସ୍ତ୍ରୀମାନଙ୍କ ଦ୍ୱାରା ସମ୍ଭବ ହୋଇଥିଲା । ଏହା ତର୍କସମ୍ମତ ମନେହୁଏ । ସ୍ତ୍ରୀମାନେ ବିହନ ବୁଣିଲେ ଏବଂ ତାରାର ରକ୍ଷଣାବେକ୍ଷଣ ବି କଲେ । ମାତ୍ର କୃଷିର ସଂପ୍ରସାରଣ ଲଙ୍ଗଳର ବ୍ୟବହାର ପରେ ସମ୍ଭବ ହେଲା ଏବଂ ଲଙ୍ଗଳ ଚାଳନା ହେଲା ମୁଖ୍ୟତଃ ପୁରୁଷର କାମ । କୃଷି ଯୋଗୁଁ ଖାଦ୍ୟ ଯୋଗାଣ କିଛି ପରିମାଣରେ ଆଶାନୁରୂପ ହେଲା । କୃଷି ସଂପ୍ରସାରଣ ପାଇଁ ସମାଜକୁ ସ୍ଥାୟୀ ଭାବରେ ସ୍ଥାପିତ ହୋଇ ରହିବାର ଆବଶ୍ୟକତା ପଡ଼ିଲା । ଯେତେବେଳେ କୃଷିକାର୍ଯ୍ୟରେ ବ୍ୟବହୃତ ଟେକ୍‌ନୋଲୋଜିର ବିକାଶ ହେଲା, ଆବଶ୍ୟକତାଠାରୁ ଅଧିକ ଉତ୍ପାଦନ ସମ୍ଭବ ହେଲା । ଏହି ବଳକା ଉତ୍ପାଦନ ପରବର୍ତ୍ତୀ ସମୟରେ ଯାହା ଦୃଷ୍ଟିଗୋଚର ହେଲା, ବିଭିନ୍ନ କିସମର ବିନିମୟ ପାଇଁ ଉପଯୋଗୀ ସିଦ୍ଧ ହେଲା । ଉଦାହରଣ ସ୍ୱରୂପ, ଅନ୍ୟ ବସ୍ତୁ ପାଇଁ କିମ୍ବା ମଜୁରୀ ଦେଇ ଶ୍ରମ ପାଇବା ଲାଗି ଏହାକୁ ଉପଯୋଗ କରିବା ନିମିତ୍ତ ସମ୍ଭାବନା ରହିଲା । କାଳକ୍ରମେ ବଳକା ଉତ୍ପାଦନ ଓ ଶସ୍ୟର ବ୍ୟବହାର ସମାଜରେ ସୋପାନୀକରଣ (stratification)କୁ ପ୍ରଶ୍ରୟ ଦେଲା । କିଛି ଲୋକ ଖାଦ୍ୟାନ୍ନକୁ ନିୟନ୍ତ୍ରଣ କଲେ ଏବଂ ତାକୁ ବିନିମୟରେ ବ୍ୟବହାର କଲେ ଏବଂ ଆଉ ମାନେ ଅଧିକ ଉତ୍ପାଦନ ପାଇଁ ନିରନ୍ତର କାର୍ଯ୍ୟ କରିବାକୁ ପରିଚାଳିତ ଓ ନିର୍ଦ୍ଦେଶିତ ହେଲେ ।

କାର୍ଯ୍ୟକୁଶଳତା ଦୃଷ୍ଟିରୁ ଦେଖିଲେ, ଉପକରଣଗୁଡ଼ିକରେ ଅନେକ ଉନ୍ନତି ପରିଲକ୍ଷିତ ହେଲା । ଏଣିକି ସେଗୁଡ଼ିକୁ ମାର୍ଜିତ ଓ ଚିକ୍କଣ କରାଗଲା । ପଥର କୁରାଢ଼ି ହେଲା ଏମିତି ଚିକ୍କଣ ଉପକରଣର ଏକ ଉଦାହରଣ । ମାର୍ଜିତ ଓ ଚିକ୍କଣ କୁରାଢ଼ି ପୂର୍ବର କୁରାଢ଼ି ଅପେକ୍ଷା ଅଧିକ ଉପଯୋଗୀ ସିଦ୍ଧ ହେଲା । କାଳକ୍ରମେ ଘାସପତ୍ରର କୁଡ଼ିଆ ସ୍ଥାନରେ ଲୋକ ଗଛର ବିଭିନ୍ନ ଖଣ୍ଡକୁ ବ୍ୟବହାର କରି ଘର ତିଆରି କଲେ ଏବଂ ତା'ର ଚାରିକଡ଼କୁ ଘାସପତ୍ରରେ ବେଢ଼ି ମାଟିକାଦୁଅର ପ୍ରଲେପ ଦେଲେ । ଘରେ କଞ୍ଚା ଇଟାର ବ୍ୟବହାର ହେଲା, ସାନ ଶସ୍ୟଭଣ୍ଡାର ନିର୍ମାଣ ହେଲା ଏବଂ ପାଣିକୁଣ୍ଡ ତିଆରି କରାଗଲା । ହାତତିଆରି ମାଟିପାତ୍ର ସ୍ଥାନରେ ଚକ (କୁମ୍ଭାରଚକ) ତିଆରି ପାତ୍ର ଆସିଲା ।

ଚକ ବ୍ୟବହାର କରି କେତେକ ଗହଣା ବି ପ୍ରସ୍ତୁତ ହେଲା । ମେହରଗଢ଼ ଆଦି କେତେକ ସ୍ଥଳରେ ପ୍ରାରମ୍ଭିକ କୃଷିରୁ ଆଦ୍ୟ କିସମର ସହରୀକରଣକୁ କେଉଁଭଳିଭାବେ କ୍ରମ ପରିବର୍ତ୍ତନ ହେଲା, ତା'ର ସ୍ପଷ୍ଟ ଉଦାହରଣ ଦେଖିବାକୁ ମିଳେ, କାରଣ ସେଠାରେ ବ୍ୟାପକ ଆନୁଭୂମିକ (horizontal) ଖନନ କରାଯାଇଥିଲା । କୁହାଯାଏ, କୃଷି ପଶ୍ଚିମ

ଏସିଆରୁ ଆରମ୍ଭ ହୋଇ ଉତ୍ତର-ପଶ୍ଚିମ ଭାରତ କ୍ଷେତ୍ରକୁ ସଂପ୍ରସାରିତ ହୋଇଥିଲା । ମାତ୍ର ଏହିସବୁ ଖନନରୁ ଜଣାପଡ଼େ ଯେ କୃଷିର ଆରମ୍ଭ ସ୍ଥାନୀୟ ସ୍ତରରେ ହୋଇଥିଲା ।

ବିଭିନ୍ନ ସ୍ଥାନ ଓ ଭିନ୍ନ ଭିନ୍ନ କାଳରେ ଗହମ, ଜବ, ଧାନ ଓ ବାଜରା ଚାଷ ହେଲା । ଧାନର ଉତ୍ପତ୍ତିସ୍ଥଳ ପୂର୍ବ ଭାରତରେ ବୋଲି ଅନୁମାନ କରାଯାଏ । କ୍ରମେ ଗୋରୁ, ମେଣ୍ଢା ଓ ଛେଳିକୁ ଗୃହପାଳିତ କରାଗଲା । ଫଳରେ ଦୁଗ୍ଧଜାତ ଦ୍ରବ୍ୟ ଓ ମାଂସ ଆବଶ୍ୟକୀୟ ପରିମାଣରେ ମାଂସ ଉପଲବ୍ଧ ହେଲା ଓ ପରିଣାମ ସ୍ୱରୂପ ଶିକାର ଉପରେ ନିର୍ଭରଶୀଳତା ହ୍ରାସ ପାଇଲା । ଏହି ସମୟରେ କୃଷି ଓ ଗୋଚାରଣ ପରସ୍ପର ନିର୍ଭରଶୀଳ ଥିଲେ । ମାତ୍ର ଉପରୋକ୍ତ ପରିବର୍ତ୍ତନ ଯୋଗୁଁ ତାହା ଦୁଇଭାଗରେ ବିଭକ୍ତ ହେବାର ସମ୍ଭାବନା ବୃଦ୍ଧି ପାଇଲା । ଚାଷର ଆରମ୍ଭ ହେଲାପରେ ଖାଦ୍ୟଜନିତ ପ୍ରତ୍ୟାଶିତ ଓ ନିୟନ୍ତ୍ରଣ ଭାବ ଦେଖିବାକୁ ମିଳିଲା । ହେଲେ ତହିଁରେ ଗୁଣାତ୍ମକ ପରିବର୍ତ୍ତନ ଆଣିବାକୁ ହେଲେ ବସତିକୁ ସ୍ଥାୟୀ ହେବାକୁ ପଡ଼ିବ । ପଶୁପାଳନ ଯୋଗୁଁ ସହଜରେ ଖାଦ୍ୟ ମିଳିପାରିଲା । ବଡ଼ ଆକାରର ପଶୁକୁ କର୍ଷଣ ଓ ଭାରବହନ କାର୍ଯ୍ୟରେ ବ୍ୟବହାର କରାଗଲା । ମାଟିପାତ୍ରର ବ୍ୟବହାର ବୃଦ୍ଧି ପାଇବାରୁ ଖାଦ୍ୟାନ୍ନର ସଂରକ୍ଷଣ ସହଜ ହେଲା । ଏହା କେବଳ ରନ୍ଧାବଢ଼ାରେ ସାହାଯ୍ୟ କଲା ନାହିଁ । ତା' ସହିତ ବିଭିନ୍ନ ଆକୃତିର ପାତ୍ର ନିର୍ମାଣକୁ ମଧ୍ୟ ପ୍ରୋତ୍ସାହିତ କଲା । ଏହି କିସମର ପାତ୍ରଗୁଡ଼ିକୁ ସମାଧିସ୍ଥଳରେ ଦେଖିବାକୁ ମିଳେ, କାରଣ ସମାଧିରେ ମୃତ ଶରୀର ସହିତ ନିୟମାନୁସାରେ ଅନ୍ୟ ଦ୍ରବ୍ୟଗୁଡ଼ିକୁ ମଧ୍ୟ ପାତ୍ରରେ ରଖାଯାଉଥିଲା । ବଡ଼ ବଡ଼ ମାଟିପାତ୍ରକୁ କଫିନ ରୂପରେ ବ୍ୟବହାର କରାଯାଉଥିଲା, ବିଶେଷକରି ମୃତକ ଯଦି ଶିଶୁ ହୋଇଥାଏ । ପ୍ରାରମ୍ଭିକ ସଂସ୍କୃତିରେ ଶିଶୁ ମୃତ୍ୟୁହାର ଖୁବ୍ ଅଧିକ ଥିବାର ପ୍ରମାଣ ମିଳେ ।

ନୂତନ ପାଷାଣ ସଂସ୍କୃତିରେ କୃଷିରେ ଅଧିକ ଧ୍ୟାନ ରହିଥିବାରୁ ସେହି ଧରଣର ସମାଜକୁ ଅଧ୍ୟୟନ କରୁଥିବା ନୃତତ୍ତ୍ୱବିତ୍‌ମାନଙ୍କର ନୂତନ ପାଷାଣ ସଂସ୍କୃତି ପ୍ରତି ଦୃଷ୍ଟି ଗଲା । କୃଷି ଯୋଗୁଁ ସର୍ଦ୍ଦାରତନ୍ତ୍ରର ସମ୍ଭାବନା ବୃଦ୍ଧି ପାଏ, କାରଣ ଆରମ୍ଭରେ କୃଷିରେ ପରିବାର ଓ କୁଟୁମ୍ବର ଲୋକ ଶ୍ରମ କରନ୍ତି । ଅନେକ ଆଦ୍ୟକାଳୀନ ସମାଜରେ ପରିବାର ଏକ ଏକକ ରୂପରେ ହେଉ ବା କୁଳକୁଟୁମ୍ବର ଅଂଶ ରୂପରେ ହେଉ ପଶୁଚାରଣ କରେ ଏବଂ କୃଷି କରେ । ଜ୍ୟେଷ୍ଠ ସଦସ୍ୟମାନଙ୍କ ସକାଶେ କନିଷ୍ଠ ସଦସ୍ୟମାନେ କାମ କରିଥାନ୍ତି । କୁଳସମ୍ବନ୍ଧ ଯୋଗୁଁ ଏହିପ୍ରକାରେ ଶ୍ରମ କରାଯାଏ । କୁଳସମ୍ବନ୍ଧ ବାହାରେ ଶ୍ରମର ବିନିମୟ ହେବାର ପୂର୍ବାବସ୍ଥାରେ ଏହା ହୋଇଥାଏ । କୁଳସମ୍ବନ୍ଧ ବାହାରର ଶ୍ରମର ନିୟୋଜନ ହେଲା ଏକ ମହତ୍ତ୍ୱପୂର୍ଣ୍ଣ ସାମାଜିକ ପରିବର୍ତ୍ତନ । ପରେ ଯେତେବେଳେ ସମାଜର ସୋପାନୀକରଣ ହେଲା, ସେତେବେଳେ ଏହିପ୍ରକାର ଶ୍ରମ କୃଷିର ବିକାଶ ପ୍ରକ୍ରିୟାରେ ଏକ ସମ୍ପଦ ହେଲା ।

କାଳକ୍ରମେ ସମାଜ ଅଧିକ ଜଟିଳ ହେଲା ଏବଂ ବ୍ୟବସ୍ଥାରେ ପରିବର୍ତ୍ତନ ଦେଖିବାକୁ ମିଳିଲା । ସେହି ସମୟରେ କୁଳସମ୍ବନ୍ଧ ବାହାରର ଶ୍ରମକୁ କୃଷିରେ ଯୋଡ଼ାଗଲା ଅଥବା ତାହା କୁଳସମ୍ବନ୍ଧରୁ ପ୍ରାପ୍ତ ଶ୍ରମ ବଦଳରେ ବ୍ୟବହୃତ ହେଲା । ଏହି ଶ୍ରମକାରୀମାନେ ଯାହାପାଇଁ ଶ୍ରମ କରୁଥିଲେ, ତା'ର କୁଳସମ୍ବନ୍ଧୀ ନ ଥିଲେ । ହୁଏତ ଶ୍ରମପାଇଁ ସେମାନେ ପାରିଶ୍ରମିକ ପାଇଲେ, ଅଥବା ବନ୍ଦୀ ଭାବରେ ବନ୍ଦୀ କରିଥିବା ବ୍ୟକ୍ତି ବା ଗୋଷ୍ଠୀ ପାଇଁ ଶ୍ରମ କରିବାକୁ ବାଧ୍ୟ ହେଲେ । କୁଳସମ୍ବନ୍ଧ ବାହାରର ଶ୍ରମର ବ୍ୟବହାର ଫଳରେ ଅଧିକ ଉତ୍ପାଦନର ସମ୍ଭାବନା ବୃଦ୍ଧି ପାଇଲା । ବର୍ଦ୍ଧିତ ଉତ୍ପାଦନକୁ କେମିତି ବଣ୍ଟନ କରାଯିବ – ଏଣିକି ତାହା ଏକ ପ୍ରଶ୍ନବାଚୀ ହେଲା । ଏହି ପରିସ୍ଥିତିରେ, ଶ୍ରମ କୁଳଗତ ହେଉ ବା ଅଣ-କୁଳଗତ, ତାକୁ ନିୟନ୍ତ୍ରଣ ଓ ପରିଚାଳନା କରିବା ଏକ ବଡ଼ ଶକ୍ତିର ପରିଚାୟକ ହେଲା । କୁଳମୁଖ୍ୟ ଏହି ଶକ୍ତିର ହେଲେ ଅଧିକାରୀ । ଉକ୍ତ ଶ୍ରମଶକ୍ତିକୁ ନିୟନ୍ତ୍ରଣ ଓ ପରିଚାଳନା କରିବା ହେଲା ତାଙ୍କର ଅନ୍ୟତମ ପ୍ରମୁଖ କାର୍ଯ୍ୟ ।

ନୂତନ ପାଷାଣ ସ୍ଥଳଗୁଡ଼ିକ ବିକ୍ଷିପ୍ତ ହୋଇ ବିଭିନ୍ନ ସ୍ଥାନରେ ରହିଛି । ଭିନ୍ନ ଭିନ୍ନ ସମୟରେ ଉକ୍ତ ସ୍ଥଳଗୁଡ଼ିକର ବିକାଶ ହୋଇଥିଲା । ବେଲୁଚିସ୍ତାନର କ୍ୱେଟା ନିକଟବର୍ତ୍ତୀ ମେହରଗଡ଼ ହେଉଛି ଏକ ଅନ୍ୟତମ ଆଦ୍ୟସ୍ଥଳୀ । ଅନେକ ଗ୍ରାମୀଣ ବସତିର ମଝାମଝି ଏହି ସ୍ଥଳଟି ରହିଛି । ଅନ୍ୟ ସ୍ଥଳଗୁଡ଼ିକ ଅପେକ୍ଷା ଏହା ଅଧିକ ଉଲ୍ଲେଖନୀୟ, କାରଣ ଏକାଧିକ ସହସ୍ରାବ୍ଦୀ ପର୍ଯ୍ୟନ୍ତ ଏଠାରେ ବସତିର ଧାରାବାହିକତା ଦେଖିବାକୁ ମିଳେ । ଦ୍ୱିତୀୟତଃ, ଏହା କୃଷିରୁ ସହରୀକରଣକୁ କ୍ରମିକ ବିବର୍ତ୍ତନର ସାକ୍ଷ୍ୟ ବହନ କରେ । ଉତ୍ତର-ପଶ୍ଚିମ କ୍ଷେତ୍ରର ଅନ୍ୟ କେତେକ ସ୍ଥଳରେ ମଧ୍ୟ ଅନୁରୂପ ସାକ୍ଷ୍ୟ ମିଳିଥାଏ । ଫଳରେ ସେଠାରେ ବିଚାର ଓ ଗତିବିଧିର ବିନିମୟ ହେଲା । ଜନବସତିଗୁଡ଼ିକ ନିରୋଳାରେ ସ୍ଥାପିତ ହୋଇ ନ ଥିଲେ; ସେଗୁଡ଼ିକ ମଧ୍ୟରେ ସମ୍ବନ୍ଧ ରହିଥିଲା; ତହିଁରେ ଉତ୍ପାଦିତ ସାମଗ୍ରୀ ଉନ୍ନତମାନର ନ ହେଲେ ସୁଦ୍ଧା, ବସତିଗୁଡ଼ିକ ମଧ୍ୟରେ ତା'ର ବିନିମୟ ହେଉଥିଲା । ବିନିମୟଯୋଗ୍ୟ ସାମଗ୍ରୀ ମଧ୍ୟରେ ଅନ୍ୟତମ ଥିଲା ମାଳି । ଚାରଣ ଚକ୍ର (pastoral circuits) ଓ ଦେଶାନ୍ତରଣ ମାଧ୍ୟମରେ ତଥା ବସତିଗୁଡ଼ିକ ମଧ୍ୟରେ ମୁକାବିଲା ପ୍ରକ୍ରିୟାରେ ସାମଗ୍ରୀଗୁଡ଼ିକର ଅନ୍ତର୍ବିନିମୟ ସମ୍ଭବ ହେଉଥିଲା । ନିୟମିତ ଭାବରେ ବସ୍ତୁ ବିନିମୟ ପାଇଁ ଏସବୁ ନିଶ୍ଚୟ ଏକ ନେଟୱାର୍କ ତିଆରି କରିଥିବ । ବିବାହ ସମ୍ବନ୍ଧ ଏବଂ ନୂତନ କର୍ମକାଣ୍ଡର ପ୍ରଚଳନ ଫଳରେ ଉକ୍ତ ନେଟୱାର୍କ ଆହୁରି ବଳିଷ୍ଠ ହୋଇଥିବ ବୋଲି ଅନୁମାନ କରାଯାଏ ।

ମେହରଗଡ଼ର ଆରମ୍ଭ ପ୍ରାୟ 7000 ଖ୍ରୀଷ୍ଟପୂର୍ବ ବୋଲି ଗଣନା କରାଯାଏ । ଖ୍ରୀ.ପୂ. ଷଷ୍ଠ ସହସ୍ରାବ୍ଦୀ ବେଳକୁ ସାଂସ୍କୃତିକ ଧାରାର କେତେକ ବିଭାବ ଅବଶ୍ୟ ସ୍ଥାପିତ

ହୋଇସାରିଥିଲା । ତନ୍ମଧ୍ୟରେ ଥିଲା ଗହମ ଓ ଯବ ଚାଷ; ଗୋରୁ, ମେଣ୍ଢା ଓ ଛେଳିର ପାଳନ; ଚୁଲିର ବ୍ୟବହାର ଓ କଞ୍ଚା ଇଟାରେ ନିର୍ମିତ ନିବାସ; ଏକ ସମ୍ଭାବିତ ଶସ୍ୟାଗାର; ବ୍ୟକ୍ତିଗତ ବ୍ୟବହାର୍ଯ୍ୟ ସାମଗ୍ରୀ ରଖାଯାଇଥିବା ସମାଧିସ୍ଥଳ; ନୀଳ ଓ ସବୁଜ ରଙ୍ଗର ରତ୍ନପଥରର ମାଳି ଏବଂ ବିବିଧ କିସମର କ୍ଷୁଦ୍ର ମାଟି ପ୍ରତିମା । ଖ୍ରୀ.ପୂ. ଚତୁର୍ଥ ସହସ୍ରାବ୍ଦୀ ସୁଦ୍ଧା ଚକ ତିଆରି ମୃଣ୍ମୟ ପାତ୍ରର ପ୍ରଚଳନ ଆରମ୍ଭ ହେଲା । ଖ୍ରୀ.ପୂ. ଷଷ୍ଠରୁ ଚତୁର୍ଥ ସହସ୍ରାବ୍ଦୀର କେତେକ ସ୍ଥଳ ହେଲା : କିଲେ ଗୁଲ ମହମ୍ମଦ, ରାନା ଘୁଣ୍ଡଇ, ଶେରୀ ଖାନ୍ ତରକଇ, ଗୁମଲା ଏବଂ ରହମନ ଢେରୀ । ଏଗୁଡ଼ିକ ମଧ୍ୟ ଉତ୍ତର-ପଶ୍ଚିମ କ୍ଷେତ୍ରରେ ଅବସ୍ଥିତ । ପଶୁଚାରଣ ଏବଂ କୃଷିର କେନ୍ଦ୍ର ରୂପରେ ଏସବୁ କ୍ଷେତ୍ରକୁ ଦେଖିହେବ । ପୁଣି ରାସ୍ତାର କଡ଼ରେ ଏହି ସ୍ଥଳଗୁଡ଼ିକ ରହିଥିଲେ । ବେଲୁଚିସ୍ତାନର ନାଲ ସଂସ୍କୃତି ଏବଂ ଏହାର ଦକ୍ଷିଣରେ ସ୍ଥିତ କୁଲ୍ଲୀ ସଂସ୍କୃତି ମଧ୍ୟ ଏହି ପରିଦୃଶ୍ୟର ଅଂଶ ଥିଲେ । ଏ ମଧ୍ୟରୁ କେତେକ ସ୍ଥଳ କୃଷି-ପଶୁଚାରଣରୁ କୃଷିକୁ ଏବଂ ତହିଁରୁ ପ୍ରାରମ୍ଭିକ କିସମର ସହରକୁ ରୂପାନ୍ତରିତ ହେଲେ । ସେହି ଆଧାରରେ ହରପ୍ପା ସଂସ୍କୃତିର ସହରୀକରଣର ପୂର୍ବସୂରୀ ରୂପେ ସେଗୁଡ଼ିକୁ ଦେଖିହେବ ।

ସମତଳ କ୍ଷେତ୍ରରେ ସିନ୍ଧୁ ନଦୀର ନିକଟବର୍ତ୍ତୀ ସ୍ଥଳୀ ଥିଲା କୋଟଦିଜି ଏବଂ ଅମରୀର ଜନବସତି । ସେଠାକାର କେତେକ ବିଶେଷତ୍ୱରେ ହରପ୍ପା ସଂସ୍କୃତିର ଅଭିଲକ୍ଷଣର ପୂର୍ବାଭାସ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, କୋଟଦିଜିରେ ପ୍ରାପ୍ତ ବାସନରେ ଚିତ୍ରିତ ଆକୃତିରେ ହରପ୍ପାର ବାସନରେ ଚିତ୍ରିତ ଆକୃତି ଭଳି ପିପ୍ପଳ ପତ୍ର ଓ ମାଛର ଚିତ୍ର ରହିଛି । ରାଜସ୍ଥାନର ସୋଥି କ୍ଷେତ୍ରରେ ପ୍ରାପ୍ତ ବାସନରେ ମଧ୍ୟ କୋଟଦିଜିର ବାସନର ବୈଶିଷ୍ଟ୍ୟ ଦେଖିବାକୁ ମିଳେ । ଏହି ସୋଥି କ୍ଷେତ୍ରରେ କାଲିବଙ୍ଗାନର ପ୍ରାକ୍-ହରପ୍ପା ବସତି ରହିଛି । ଆହୁରି ପୂର୍ବକୁ ଗଲେ ହରିଆଣାର ବନଓ୍ୱାଲି ଓ କୁନାଲ ସ୍ଥଳୀ । ଉଭୟ ସ୍ଥଳୀର ଶିଳ୍ପାବଶେଷରେ ଅନେକ ସାମଞ୍ଜସ୍ୟ ଅଛି । ବନଓ୍ୱାଲି ହେଲା ହରପ୍ପାକାଳୀନ ଏବଂ କୁନାଲ ହେଲା ପ୍ରାକ୍-ହରପ୍ପାକାଳୀନ । ଆରାବଳୀ ପାହାଡ଼ ହେଲା ତମ୍ବାର କ୍ଷେତ୍ର । ସେଠାକାର କେତେକ ସ୍ଥଳ, ଯଥା- ଗଣେଶ୍ୱର, ତମ୍ବା ଉତ୍ପାଦନର କ୍ଷେତ୍ର ଥିଲା । ହରପ୍ପାର ଏକ ବୈଶିଷ୍ଟ୍ୟ ହେଲା ମିଶ୍ରିତ ଧାତୁର ପ୍ରୟୋଗ । ତେଣୁ ହରପ୍ପାର ବିକାଶରେ ଆରାବଳୀର ଯୋଗଦାନ ରହିଥିଲା । ଆହୁରି ଦକ୍ଷିଣକୁ ଗଲେ ଗୁଜରାଟରେ ପ୍ରାକ୍-ହରପ୍ପା ବସତିର ସାକ୍ଷ୍ୟ ମିଳେ । ତନ୍ମଧ୍ୟରୁ କେତେକ ସ୍ଥଳକୁ ହରପ୍ପାର ମହତ୍ତ୍ୱପୂର୍ଣ୍ଣ ସହର ଧୋଲାବୀରାର ପୂର୍ବଦୂତ ରୂପେ ଦେଖିହେବ ।

ରାଜସ୍ଥାନ ଓ ପଞ୍ଜାବର ବସତିରେ ଦେଖିବାକୁ ମିଳିଥିବା କେତେକ ବିଶେଷତା ହାକ୍ରା ସମତଳ, ଖାସ୍‌କରି ବହାବଲପୁର ଏବଂ ଚୋଲିସ୍ତାନର ବିଶେଷତା ଭଳି ଥିଲା ।

ଏକଦା ହାକ୍ରା ନଦୀ ଖୁବ୍ ବିଶାଳ ଥିଲା । ମାତ୍ର କ୍ରମେ ଏହା ଶୁଷ୍କ ହୋଇଗଲା । କେବଳ ଉପର ଅଂଶରେ ନଦୀର କିଛି ଅଛି, ଯାହା ପଞ୍ଜାବର ଘର୍ଘରା ନଦୀ ରୂପରେ ପ୍ରବାହିତ ହେଉଛି । ପ୍ରଶ୍ନଉଠେ, ହରପ୍ପାର ଅଭ୍ୟୁଦୟ ପାଇଁ ହରପ୍ପାର ନଗରୀଗୁଡ଼ିକ ତୁଳନାରେ ସିନ୍ଧୁ-ହାକ୍ରା କ୍ଷେତ୍ର ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା କି ? କାରଣ, ବେଲୁଚିସ୍ତାନ ଏବଂ ଉତ୍ତର-ପଶ୍ଚିମ ଅଞ୍ଚଳ ଅପେକ୍ଷା ଏହି କ୍ଷେତ୍ରରେ ଘନ ଜନବସତି ରହିଥିଲା । ଯଦି ଏହି ତର୍କ ଗ୍ରହଣଯୋଗ୍ୟ, ତେବେ ହରପ୍ପା ସଭ୍ୟତାକୁ ସିନ୍ଧୁ-ସରସ୍ୱତୀ ସଭ୍ୟତା ନାମରେ ନାମିତ କରିବା କଥା । ମାତ୍ର ବସତିର ସଂଖ୍ୟାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ବସତିର ଚରିତ୍ର । ଏକ ପୁରାତାତ୍ତ୍ୱିକ ସ୍ଥଳର ଚରିତ୍ରକୁ ବିଚାର କଲାବେଳେ ଶିଳ୍ପାବଶେଷର ସୂଚୀ ପ୍ରସ୍ତୁତ କରିବାଠାରୁ ଅଧିକ ଜରୁରୀ ସ୍ଥଳର ଭୂମିକାକୁ ପରଖିବା । ପ୍ରାକ୍-ନଗରୀୟ ଗତିବିଧିକୁ ନଗରୀୟ କରିବାରେ ନିର୍ଦ୍ଦିଷ୍ଟ ସ୍ଥଳଟି କେତେ ଯୋଗଦାନ ଦେଇଛି, ତା'ର ମୂଲ୍ୟାଙ୍କନ କରିବାକୁ ପଡ଼ିବ । ଉତ୍ତର-ପଶ୍ଚିମ କ୍ଷେତ୍ରରେ ସହରୀକରଣ ଆଣିବାରେ ସାହାଯ୍ୟ କରିଥିବା ତଥ୍ୟ-ପ୍ରମାଣର ସୁବିସ୍ତୃତ ଓ ପୁରୁଣା ସୂଚୀ ରହିଛି । ସେହି ଆଧାରରେ କୁହାଯିବ ଯେ ସୈନ୍ଧବ ସମତଳ ଏବଂ ଉତ୍ତର-ପଶ୍ଚିମରେ ସହରୀକରଣକୁ ପ୍ରୋତ୍ସାହନ ମିଳିଥିବାର ସମ୍ଭାବନା ଅଧିକ । ହସ୍ତଶିଳ୍ପ ପାଇଁ ଆବଶ୍ୟକ କଞ୍ଚାମାଲ୍ ଓ ବାଣିଜ୍ୟର ନିୟନ୍ତ୍ରଣ ଦୃଷ୍ଟିରୁ ଯାହା ସହରୀକରଣକୁ ସାହାଯ୍ୟ କରେ, ଉତ୍ତର-ପଶ୍ଚିମ ଏବଂ ସୈନ୍ଧବ ସମତଳ କ୍ଷେତ୍ର ନିଶ୍ଚିତରୂପେ ଚୋଲିସ୍ତାନ ଅପେକ୍ଷା ଅଧିକ ଉପଯୋଗୀ ଥିଲେ । ଚୋଲିସ୍ତାନର ସ୍ଥଳଗୁଡ଼ିକ ତୁଳନାରେ ସେଗୁଡ଼ିକ ଅଧିକ ଗତିଶୀଳ ଥିଲେ ଏବଂ ସୀମାନ୍ତ ଅତିକ୍ରମ କରି ସମ୍ବନ୍ଧ ସ୍ଥାପିତ କରିବାର ସାମର୍ଥ୍ୟ ରଖୁଥିଲେ ।

ଉତ୍ତର-ପଶ୍ଚିମ କ୍ଷେତ୍ରରୁ ପ୍ରାପ୍ତ ତଥ୍ୟ-ପ୍ରମାଣ ସହରୀକରଣର ଆରମ୍ଭ ସମ୍ବନ୍ଧରେ ସୂଚନା ଦିଏ । ମାତ୍ର ଅନ୍ୟ ଅଞ୍ଚଳରେ, ଯେମିତି ଗୁଜରାଟ, ସହରୀକରଣ ଆକସ୍ମିକ ଭାବରେ ଘଟିଥିଲା ବୋଲି କୁହାଯାଏ । ସହର ବସତିର ବୃଦ୍ଧି ଯୋଗୁଁ ଏହା ହୋଇଥିଲା । ହରପ୍ପାର ଲୋକ ନୂତନ କ୍ଷେତ୍ରକୁ ବସତି ପାଇଁ ଗଲେ ଏବଂ ଉକ୍ତ କ୍ଷେତ୍ର ହରପ୍ପା ଶୈଳୀରେ ବିକଶିତ ହେଲା । ଫଳରେ ଆକସ୍ମିକ ଭାବରେ ସେଠାରେ ସହରୀକରଣ ଆରମ୍ଭ ହୋଇଥିବ । ଏହି କାରଣରୁ ସହରୀକରଣରେ ଏକପ୍ରକାର ସମରୂପତା ଦେଖିବାକୁ ମିଳେ, ଯଦିଓ ତହିଁରେ କିଛି କିଛି ସ୍ଥାନୀୟ ଚରିତ୍ର ବି ପରିଦୃଷ୍ଟ ହୁଏ । ହରପ୍ପାର ଭୌତିକ ସଂସ୍କୃତିର ପ୍ରସାର ଲାଗି ଏହା କ୍ଷେତ୍ର ପ୍ରସ୍ତୁତି କଲା । ଫଳସ୍ୱରୂପ, ହରପ୍ପା ହେଲା ତତ୍କାଳୀନ ସମୟର ସବୁଠାରୁ ବିସ୍ତୃତ ସଭ୍ୟତା ।

ଉତ୍ତର-ପଶ୍ଚିମ ଭାରତର ସହରଗୁଡ଼ିକର ବିବର୍ତ୍ତନକୁ କେବଳ ସ୍ଥାନିକ ସନ୍ଦର୍ଭରେ ଦେଖାଯାଇ ନ ପାରେ । ପ୍ରତ୍ନତାତ୍ତ୍ୱିକ ପରିବର୍ତ୍ତନ ଏବଂ ସୀମାବର୍ତ୍ତୀ କ୍ଷେତ୍ର ତଥା ତା' ବାହାରର

ଲୋକଙ୍କର ସଞ୍ଚରଣ ପରିପ୍ରେକ୍ଷୀରେ ମଧ୍ୟ ତାକୁ ଦେଖାଯିବା କଥା । ବସ୍ତୁତଃ ଉତ୍ତର-ପଶ୍ଚିମର ପ୍ରଦେଶଗୁଡ଼ିକ ସହିତ ସେହି ଲୋକମାନଙ୍କର ଆଗରୁ ସମ୍ପର୍କ ରହିଥିଲା । ମାତ୍ର ଏହାସହିତ କଚ୍ଛ, ତଟୀୟ ଗୁଜରାଟ କିମ୍ବା ଚୋଲିସ୍ତାନ ଆଦି କ୍ଷେତ୍ରରେ ବିଦ୍ୟମାନ ଥିବା ସହରୀକରଣର ସମ୍ଭାବନା ଶେଷ ହୋଇଯାଏ ନାହିଁ । ବରଂ ପ୍ରଥମ ସହରୀକରଣର (ହରପ୍ପା) ଧାରେ ଧାରେ ଉକ୍ତ କ୍ଷେତ୍ରରେ ମଧ୍ୟ ସହରୀକରଣ ଆରମ୍ଭ ହୋଇଥିବ । ଏବେ ମଧ୍ୟ ବହାବଲପୁରର ଗନ୍ୱେରୀବାଲା ସ୍ଥିତ ବିଶାଳ ସହରୀକ୍ଷେତ୍ରର ଖନନ ବାକି ଅଛି । ସେହି ଦିଗରେ ସହରୀକରଣର ଗତିକୁ ତେଣୁ ଠିକ୍‌କରି ଅଧ୍ୟୟନ କରାଯାଇପାରି ନାହିଁ । ଏହି କାରଣରୁ ଉକ୍ତ ସହରୀ ସଭ୍ୟତାକୁ ସିନ୍ଧୁ ସଭ୍ୟତା ବା ହରପ୍ପା ସଂସ୍କୃତି ନାମରେ ଚିହ୍ନିତ କରିବା ଠିକ୍ କଥା । ହରପ୍ପା ହେଲା ଖନନରୁ ପ୍ରାପ୍ତ ପ୍ରଥମ ସହର ଏବଂ ଉକ୍ତ ସଭ୍ୟତାର ଅନ୍ୟତମ ଆଦ୍ୟ ନଗରୀ । ତାରି ନାମ ଅନୁଯାୟୀ ସଭ୍ୟତାର ନାମକରଣ କରିବା ଖୁବ୍ ଯୁକ୍ତିଯୁକ୍ତ କଥା ।

## ତାମ୍ର ପାଷାଣ ସଂସ୍କୃତି

ତାମ୍ର ପାଷାଣ ସଂସ୍କୃତିର ନୂତନତ୍ୱ ହେଲା ତମ୍ବା ଓ ବ୍ରୋଞ୍ଜ୍‌ର ବ୍ୟବହାର । ଏଥିରୁ ଏକ ନୂଆ ଟେକ୍‌ନୋଲୋଜି ଆସିଲା । ଏହି ଟେକ୍‌ନୋଲୋଜିରେ ଧାତବ ପଥରକୁ ତରଳାଇ ତହିଁରୁ ଧାତୁ ହସ୍ତଶିଳ୍ପ ସାମଗ୍ରୀ ପ୍ରସ୍ତୁତ କରାଗଲା । କଞ୍ଚାମାଲ ପାଇଁ ଏଣିକି ଦୂରବର୍ତ୍ତୀ ଜାଗାକୁ ଯିବା ଆବଶ୍ୟକ ହେଲା । ଏହା ଧାତବ ପଦାର୍ଥର ଉତ୍ପାଦନକୁ ପ୍ରୋତ୍ସାହିତ କଲା । ଗମନାଗମନ ବୃଦ୍ଧି ପାଇବାରୁ ତାମ୍ରପାଷାଣ ସଂସ୍କୃତିର ନେଟୱାର୍କ ବିସ୍ତାରିତ ହେଲା । ଅବଶ୍ୟ ପଥର ଉପକରଣର ବ୍ୟବହାର ଏହାପରେ ଲୋପ ପାଇ ନ ଥିଲା । ବରଂ କେତେକ କ୍ଷୁଦ୍ର ପାଷାଣ କୃତିକୁ ଆବଶ୍ୟକ ଉପକରଣ ରୂପେ ବ୍ୟବହାର କରାଗଲା । ତମ୍ବା ଓ ବ୍ରୋଞ୍ଜ ଏକ ନୂଆ ବିକଶିତ ଟେକ୍‌ନୋଲୋଜିକୁ ଜନ୍ମଦେଲା । ସେହି ନୂତନ ଟେକ୍‌ନୋଲୋଜି ପୁଣି କେତେକ ଅଞ୍ଚଳରେ ହସ୍ତଶିଳ୍ପ କଳାକୁ ନିପୁଣ ହେବାରେ ସହଯୋଗ କଲା । ଯେଉଁ ଅଞ୍ଚଳରେ କଞ୍ଚାମାଲ୍ ସହଜରେ ଉପଲବ୍ଧ ହେଲା ଏବଂ ଶିଳ୍ପୀମାନେ ସହଜରେ ମିଳାମିଶା କରିପାରିଲେ, ସେଠାରେ ଏହି ଶିଳ୍ପ ନିପୁଣତା ସହଜରେ ସମ୍ଭବ ହେଲା । ଧାତୁ ଟେକ୍‌ନୋଲୋଜିର ଆସିବା ପରେ ଜୀବନ ପଦ୍ଧତିରେ କେତେକ ଜଟିଳତା ଦେଖିବାକୁ ମିଳିଲା । ଉଦାହରଣ ସ୍ୱରୂପ, ନୂତନ ଟେକ୍‌ନୋଲୋଜି କାହା ନିୟନ୍ତ୍ରଣରେ ରହିବ – ତାହା ନିର୍ଦ୍ଧାରଣ କରିବା ଏକ ଜଟିଳତାପୂର୍ଣ୍ଣ ପ୍ରଶ୍ନ ସିଦ୍ଧ ହେଲା । ଏହା ପଛରେ କାରଣ ହେଲା ଯେ ଯିଏ ଶିଳ୍ପସାମଗ୍ରୀର ଉତ୍ପାଦନକର୍ତ୍ତା, ସିଏ ସର୍ବଦା ସମାଜର କର୍ତ୍ତୃତ୍ୱଶାଳୀ ସମୂହ ହେବେ ବୋଲି କିଛି ମାନେ ନ ଥିଲା । ତାମ୍ରପାଷାଣ

ସଂସ୍କୃତିରେ ଯେଉଁଠି ଲିପିର ବ୍ୟବହାର ହୋଇଛି, ସେଠାରେ ଏହି ସଂସ୍କୃତିକୁ ଆଦ୍ୟୋତିହାସିକ (proto-historic) କୁହାଯାଇଛି ଏବଂ ପ୍ରାକ୍-ଐତିହାସିକ ସଂସ୍କୃତିରୁ ତାକୁ ଭିନ୍ନ କରି ଦେଖାଯାଇଛି । ସ୍ୱରୂପତଃ ପ୍ରାକ୍-ଇତିହାସ ଥିଲା ପୂର୍ବବର୍ତ୍ତୀ । ତହିଁରେ ଉଭୟ ଧାତୁ ଓ ଲିପିର ବ୍ୟବହାର ନ ଥିଲା । ବ୍ରୋଞ୍ଜର ବ୍ୟବହାର ଏହି ଆଦ୍ୟୋତିହାସିକ ସଂସ୍କୃତିରେ ବୃଦ୍ଧି ପାଇଥିଲା ବୋଲି ତାକୁ କେତେକ 'ବ୍ରୋଞ୍ଜ ଯୁଗ' ବୋଲି ମଧ୍ୟ କହିଥାନ୍ତି ।

## ପ୍ରଥମ ସହରୀକରଣ – ସିନ୍ଧୁ ସଭ୍ୟତାର ନଗର

ସିନ୍ଧୁ ସଭ୍ୟତାର ହରପ୍ପା (ପଞ୍ଜାବ) ଏବଂ ମହେଞ୍ଜୋଦାରୋ (ସିନ୍ଧ୍) ନଗରୀକୁ ସର୍ବପ୍ରଥମେ ଖନନ କରାଯାଇଥିଲା । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ନଗରୀ ଏବଂ ସିନ୍ଧୁ ସଭ୍ୟତାର ଅନ୍ୟ ସହରଠାରୁ ବିଶାଳ ନଗରୀ ରୂପେ ଉଭୟ ହରପ୍ପା ଓ ମହେଞ୍ଜୋଦାରୋ ଆଜି ମଧ୍ୟ ସୁପ୍ରସିଦ୍ଧ । ପରେ ଆହୁରି ଅନେକ ସାନ ବଡ଼ ସହରକୁ ଖନନ କରି ଆବିଷ୍କାର କରାଯାଇଛି । କେତେକ ସହରକୁ ଆଂଶିକ ଭାବରେ ଖନନ କରାଯାଇଛି । ଯେମିତି ସିନ୍ଧ ପ୍ରଦେଶର କୋଟଦିଜି, ରାଜସ୍ଥାନର କାଲିବଙ୍ଗାନ, ପଞ୍ଜାବର ରୋପଡ଼, ହରିଆଣାର ରାଖିଗାଡ଼ି, ବନୱାଲି, ମିଟାଥଲ ଏବଂ ଗୁଜରାଟର ଲୋଥାଲ ଓ ଧୋଲାବୀରା ବନ୍ଦର ଏବଂ ସୁର୍କୋଟଡ଼ା ।

ବଡ଼ ନଗରଗୁଡ଼ିକର ଆକାର ପ୍ରାୟ 100 ହେକ୍ଟର ପରିମିତ କ୍ଷେତ୍ର ଏବଂ ସାନ ସହରର ଆକାର ବଡ଼ର ପ୍ରାୟ ଅଧାଅଧି ହେବ । କୁହାଯାଏ, ନଗରୀର ସଂପ୍ରସାରଣକୁ ଯଦି ସାମିଲ କରାଯିବ, ମହେଞ୍ଜୋଦାରୋର ମୋଟ କ୍ଷେତ୍ରଫଳ 200 ହେକ୍ଟର ପ୍ରାୟ ହେବ ।

ଅତୀତରେ ହରପ୍ପା ସଭ୍ୟତାକୁ ସମୟକାଳ ଦୃଷ୍ଟିରୁ ତିନିଭାଗରେ ବିଭାଜିତ କରାଯାଉଥିଲା । ତାହା ହେଲା : ପ୍ରାକ୍-ହରପ୍ପା କାଳ (ଖ୍ରୀ.ପୂ. ଚତୁର୍ଥ ସହସ୍ରାବ୍ଦୀରୁ 2600 ଖ୍ରୀ.ପୂ.), ପରିପକ୍ୱ ହରପ୍ପା କାଳ (ପ୍ରାୟ 2600 ରୁ 1900 ଖ୍ରୀ.ପୂ.) ଏବଂ ଉତ୍ତର ହରପ୍ପା କାଳ (ପ୍ରାୟ 1750 ଖ୍ରୀ.ପୂ.) । କଦାଚିତ୍ ପ୍ରାକ୍-ହରପ୍ପା କାଳ ସ୍ଥାନରେ ଆଦ୍ୟ-ହରପ୍ପା କାଳ କହିବାକୁ କେତେକ ପସନ୍ଦ କରନ୍ତି, କାରଣ ଏହା ପରିପକ୍ୱ ହରପ୍ପା କାଳ ସହିତ ନିରନ୍ତରତାକୁ ଦର୍ଶାଏ । ଅନ୍ୟାନ୍ୟ ନାମର ମଧ୍ୟ ଆଜିକାଲି ଗବେଷକମାନେ ବ୍ୟବହାର କରୁଛନ୍ତି । ମାତ୍ର ତହିଁରେ ସର୍ବସମ୍ମତି ନାହିଁ । ପ୍ରାକ୍-ନଗରୀୟ ସଂସ୍କୃତିରୁ ପରିପକ୍ୱ ନଗରୀୟ ସଂସ୍କୃତିର ପରିବର୍ତ୍ତନରେ ବୋଲନ କ୍ଷେତ୍ରର ମେହରଗଡ଼, ପିରାକ ଏବଂ ନୌଶେରା ଆଦି ସ୍ଥଳ ଏବଂ ହରପ୍ପାର ବସତିରେ ପ୍ରାକ୍-ନଗରୀୟ କାଳରୁ ଆରମ୍ଭକରି ପରିପକ୍ୱ ନଗରୀୟ ଅବଧି ପର୍ଯ୍ୟନ୍ତ ଏବଂ ଶେଷରେ ପତନ ମଧ୍ୟରେ ନିରନ୍ତରତା ଦେଖିବାକୁ ମିଳିଥାଏ ।

ନଦୀତଟରେ ଗଢ଼ିଉଠିଥିବା ପ୍ରାଚୀନ ସଭ୍ୟତାଗୁଡ଼ିକ ମଧ୍ୟରେ ସବୁଠାରୁ ଅଧିକ ପରିବ୍ୟାପ୍ତ ଥିଲା ସିନ୍ଧୁ ସଭ୍ୟତା । ଉତ୍ତରରେ ପାମିର ପର୍ବତମାଳାର ସୋର୍ତୁଘଇରୁ ଆରମ୍ଭକରି ଦକ୍ଷିଣରେ ସମୁଦ୍ର ଅତିକ୍ରମ କରି ଆରବ ପ୍ରାୟଦ୍ୱୀପର ଓମାନ ପର୍ଯ୍ୟନ୍ତ ଏହା ପ୍ରସାରିତ ହୋଇଥିଲା । ଏଥିରେ ଉତ୍ତର-ପଶ୍ଚିମ ପାର୍ବତ୍ୟାଞ୍ଚଳ ଅନ୍ତର୍ଭୁକ୍ତ ଥିଲା; ପୂର୍ବରେ ଉପର ଦୋଆବ କ୍ଷେତ୍ର ଖୁବ୍ ସୀମିତ ହୋଇଥାଇପାରେ । ଦକ୍ଷିଣରେ ଏହାର ଗତିବିଧି ଆଧୁନିକ ଗୁଜରାଟ ଏବଂ କେତେକ ସ୍ଥଳରେ ଉତ୍ତର ମହାରାଷ୍ଟ୍ର ଯାଏଁ ସଂପ୍ରସାରିତ ହୋଇଥିଲା । ସିନ୍ଧୁ ସଭ୍ୟତାର ଉତ୍ତର ଏବଂ ଉତ୍ତର-ପଶ୍ଚିମ ଓ ପୂର୍ବ ଦିଗ ଆଡ଼କୁ ହୋଇଥିବା ବିସ୍ତାରକୁ ଯଦି ଦେଖାଯାଏ, ତେବେ ଏହା ନିଃସନ୍ଦେହ ଯେ, ତା'ର ଉଦ୍ୟମୀ ବଣିକମାନେ ମୂଲ୍ୟବାନ କଞ୍ଚାମାଲ୍‌ର ସନ୍ଧାନରେ ରହୁଥିଲେ । ପାମିର ପର୍ବତାଞ୍ଚଳରୁ ଏବଂ ପୂର୍ବ ଇରାନରୁ ପ୍ରାପ୍ତ ନୀଳ ରତ୍ନପଥର ମେସୋପୋଟାମିଆଁ ସହିତ ସ୍ଥାପିତ ବ୍ୟାପାର ପାଇଁ ଖୁବ୍ ମୂଲ୍ୟବାନ ଥିଲା । ହରପ୍ପାର ବଣିକ ଓମାନରୁ ତମ୍ବା ପଥର ଆଣୁଥିଲେ, କାରଣ ଆହୁରି ପଶ୍ଚିମକୁ ତମ୍ବାର ଖୁବ୍ ଚାହିଦା ଥିଲା । ହରପ୍ପାର ମେସୋପୋଟାମିଆଁ ସହିତ ବାଣିଜ୍ୟ ସମ୍ବନ୍ଧ ରହିଥିଲା । ଏହାର ପ୍ରମାଣ ମେସୋପୋଟାମିଆଁରୁ ପ୍ରାପ୍ତ କେତେକ ହରପ୍ପା ସିଲ୍‌ମୋହର, ମାଳି ଏବଂ ମାପ ଓଜନରେ ବ୍ୟବହୃତ ହେଉଥିବା ବଟକରାରୁ ମିଳିଥାଏ । ସେହିଭଳି ହରପ୍ପାର ବୋଲି ମନେକରାଯାଉଥିବା କେତେକ ବସ୍ତୁ ପାରସ୍ୟ ଉପସାଗରୀୟ ସ୍ଥଳରୁ ପ୍ରାପ୍ତ ହୋଇଛି । ମେସୋପୋଟାମିଆଁରେ ମେଲୁହ ଏବଂ ତା'ର ଲୋକଙ୍କର ଉଲ୍ଲେଖ ରହିଛି । ଏହାକୁ ସିନ୍ଧୁ ସଭ୍ୟତାର ଉଲ୍ଲେଖ ବୋଲି ମନେକରାଯାଏ । ମେଲୁହ ଅଞ୍ଚଳର ଉତ୍ପାଦିତ ସାମଗ୍ରୀ ଭାବରେ ହାତୀଦାନ୍ତର ଉପକରଣ, ଇନ୍ଦ୍ରନୀଳମଣି (carnelion), କାଠର ଉପକରଣ, ନୀଳରତ୍ନ ପଥର (lapis) ଓ ସୁନାର ଉଲ୍ଲେଖ ରହିଛି । ଏଗୁଡ଼ିକ ହେଲା ସିନ୍ଧୁ ସଭ୍ୟତାର ବସ୍ତୁ । ତେଣୁ ସିନ୍ଧୁ କ୍ଷେତ୍ରକୁ ମେଲୁହ କୁହାଯାଉଛି ବୋଲି ମନେକରାଯାଉଛି । ମେସୋପୋଟାମିଆଁ ସୂତ୍ରସାମଗ୍ରୀରେ ପୂର୍ବରୁ ଆଉ ଯେଉଁ ଅଞ୍ଚଳର ଉଲ୍ଲେଖ କରାଯାଇଛି, ସେଗୁଡ଼ିକ ହେଲା ଦିଲମୁନ ଏବଂ ମକାନ । ପଶ୍ଚିମ ଭାରତରୁ ପାରସ୍ୟ ଉପସାଗର ବାଟଦେଇ ଟାଇଗ୍ରିସ-ଇଉଫ୍ରେଟିସ ନଦୀ ମୁହାଣ ପର୍ଯ୍ୟନ୍ତ ଯାଉଥିବା ତଟୀୟ ଜାହାଜ ନିରନ୍ତର ଭାରତ ଓ ପାରସ୍ୟ ପ୍ରଦେଶଗୁଡ଼ିକ ମଧ୍ୟରେ ବ୍ୟାପାର ବିନିମୟରେ ନିୟୋଜିତ ଥିଲା । ଉତ୍ତର-ପଶ୍ଚିମ ପର୍ବତଶ୍ରେଣୀର ଗିରିପଥ, ବିଶେଷକରି ବୋଲନ ଉପତ୍ୟକା ଦେଇ ଆଫଗାନିସ୍ତାନ ଓ ଇରାନ ସହିତ ଭାରତର ସମ୍ବନ୍ଧ ବରାବର ରହିଆସୁଥିଲା । ସିନ୍ଧୁ ସଭ୍ୟତାର ଅନ୍ୟ ସମକାଳୀନ ସମାଜ ଥିଲେ ହରିଆଣା ଓ ରାଜସ୍ଥାନର ସୋଥି-ସିସୱାଲ ସଂସ୍କୃତି ଏବଂ ମଧ୍ୟଭାରତର କୟଥା ସଂସ୍କୃତି । ମନେହୁଏ, ବ୍ୟାପାର ପାଇଁ ଏଭଳି ସ୍ଥାନକୁ ନଗରୀ ରୂପରେ ବିକଶିତ କରାଯାଉଥିଲା, ଯେଉଁଠି ସଂସାଧନ ଉପଲବ୍ଧ ହେଉଥିଲା ଏବଂ ଯେଉଁ ସ୍ଥାନରୁ ନଦୀ ବା ସମୁଦ୍ରମାର୍ଗରେ ବସ୍ତୁ ନେବାଆଣିବା ପାଇଁ ସୁବିଧା ରହିଥିଲା ।

ହରପ୍ପାର ଶିଳ୍ପଜାତ ବସ୍ତୁ ବା ହରପ୍ପା ସଂସ୍କୃତି ଦ୍ୱାରା ପ୍ରଭାବିତ ଶିଳ୍ପଜାତ ବସ୍ତୁ ଅନେକ ଅଞ୍ଚଳରେ ମିଳିଛି । ଏହାର ଅର୍ଥ ନୁହେଁ ଯେ ଉକ୍ତ ଅଞ୍ଚଳଗୁଡ଼ିକରେ ଏକରକମର ସଂସ୍କୃତି ଏବଂ ଏକା କିସମର ଚାଲିଚଳଣି ରହିଥିଲା । ଯେଉଁ ପାର୍ଥକ୍ୟଗୁଡ଼ିକ ଦୃଷ୍ଟିକୁ ଆସିଛି, ତହିଁରୁ ମନେହୁଏ ଯେ ହରପ୍ପା ବ୍ୟବସ୍ଥା ସହିତ ତାଳଦେଇ ଉକ୍ତ ଅଞ୍ଚଳଗୁଡ଼ିକରେ ସ୍ଥାନୀୟ ସଂସ୍କୃତି ମଧ୍ୟ ଗତିମାନ ଥିଲା । ସ୍ଥାନୀୟ ସଂସ୍କୃତି ଏବଂ ବ୍ୟାପକ ସଂସ୍କୃତି ମଧ୍ୟରେ ରହିଥିବା ପାରସ୍ପରିକତାକୁ ଭାରତୀୟ ସାଂସ୍କୃତିକ ଜୀବନର ଏକ ଉପାଦାନ ଭାବରେ ସମଗ୍ର ଇତିହାସରେ ଦେଖାଯାଇ ପାରିବ ।

ଗ୍ରାମାଞ୍ଚଳର ବଳକା ଉତ୍ପାଦନରୁ ନଗରଗୁଡ଼ିକର ପ୍ରତିପାଳନ ହେଉଥିଲା । ପ୍ରତିପାଳନ ପାଇଁ ବିଭିନ୍ନ ଅଞ୍ଚଳରେ ଖଣିରୁ ପ୍ରାପ୍ତ ସମ୍ପଦ ଓ ସଂଗ୍ରହ କରାଯାଉଥିବା ଅନ୍ୟ ସମ୍ପଦକୁ ମଧ୍ୟ ବ୍ୟବହାର କରାଯାଉଥିଲା । କଞ୍ଚାମାଲ୍‌ର ସଂଗ୍ରହ, ତା'ର ଉପକରଣରେ ରୂପାନ୍ତରଣ ଏବଂ ବ୍ୟବସ୍ଥିତ ଢଙ୍ଗରେ ବିପଣନ କରାଯିବା ଫଳରେ ସମ୍ପଦାର ସୃଷ୍ଟି ହେଉଥିଲା । ନିକଟବର୍ତ୍ତୀ କ୍ଷେତ୍ରକୁ ନିରୀକ୍ଷଣ କଲେ ରାଜସ୍ଥାନ ଓ ବେଲୁଚିସ୍ତାନରେ ତମ୍ବା ପଥରକୁ ତରଳାଇ ତମ୍ବା ଉତ୍ପାଦନ କରାଯାଉଥିଲା । ପଶ୍ଚିମ ଭାରତରେ ବହୁଳ ପରିମାଣରେ ଉପରତ୍ନ (semi-precious stones) ମିଳୁଥିଲା । ଉଦାହରଣ ସ୍ୱରୂପ, ଚଗାଇ ପାହାଡ଼ରୁ ଓ ପାମିର ପାର୍ବତ୍ୟାଞ୍ଚଳରୁ ନୀଳ ରତ୍ନପଥର ପ୍ରାପ୍ତ ହେଉଥିଲା । ତାକୁ ବ୍ୟବହାର କରି ମାଳି ପ୍ରସ୍ତୁତ କରାଯାଉଥିଲା । କିଛି ପଥରକୁ କଞ୍ଚାମାଲ୍ ରୂପେ ବିନିମୟ କରାଯାଉଥିଲା । ଗୁଜରାଟରେ ଶାଗୁଆନ କାଠ ମିଳୁଥିଲା; ଶାମୁକା ଓ ଶଙ୍ଖ ମିଳୁଥିଲା ଉପକୂଳରୁ; ତାକୁ ଅଳଙ୍କାର ନିର୍ମାଣରେ ବ୍ୟବହାର କରାଯାଉଥିଲା । ଏହାବ୍ୟତୀତ ଆହୁରି ଅନେକ କିସମର ବସ୍ତୁ ରହିଥିଲା । ହରପ୍ପାର ମାଟିପାତ୍ର ଥିଲା ଖୁବ୍ ବୈଶିଷ୍ଟ୍ୟପୂର୍ଣ୍ଣ । ଲାଲ୍ କଳାରଙ୍ଗର ମାଟିପାତ୍ରରେ ତରୁଲତା, ପକ୍ଷୀ ଏବଂ ଅନେକ ଅମୂର୍ତ୍ତ ବସ୍ତୁର ଚିତ୍ର କରାଯାଉଥିଲା । ହରପ୍ପାର ସ୍ଥଳଗୁଡ଼ିକୁ ନିର୍ଣ୍ଣୟ କରିବାରେ ଏହିସବୁ ମାଟିପାତ୍ର ଖୁବ୍ ସହାୟକ ହୁଏ । ମାତ୍ର ଅନେକ ସ୍ଥାନୀୟ ଅଞ୍ଚଳରେ ମଧ୍ୟ ଏକ ଫେସନ ରୂପରେ ମାଟିପାତ୍ର ତିଆରି ହେଉଥିବ ବୋଲି ଅନୁମାନ କରାଯାଏ ।

କାରିଗରୀ ପଣ୍ୟବସ୍ତୁଗୁଡ଼ିକୁ ସହରରେ ତିଆରି କରାଯାଇ ଉଭୟ ସ୍ଥଳପଥ ଓ ସମୁଦ୍ରପଥରେ ବ୍ୟବସାୟ ପାଇଁ ପରିବହନ କରାଯାଉଥିଲା । ଏହିସବୁ କାରିଗରୀ ଶିଳ୍ପ ସାମଗ୍ରୀଗୁଡ଼ିକ କଦାପି ଅକୁଶଳ ଶିଳ୍ପୀ ଦ୍ୱାରା ପ୍ରସ୍ତୁତ ହୋଇ ନ ପାରେ । ତାକୁ ତିଆରି କରିବା ସକାଶେ କୁଶଳୀ କାରିଗର ଓ ବ୍ୟବସ୍ଥିତ ଉତ୍ପାଦନ ସଂସ୍ଥାର ଆବଶ୍ୟକତା ରହିଥିଲା । ସୁନା, ତମ୍ବା, ଶାମୁକା, ଉପରତ୍ନ, ଖଡ଼ିମାଟି, ପୋର୍ସଲେନ ଏବଂ ହାତୀଦାନ୍ତକୁ ବ୍ୟବହାର କରି ମାଳି ତିଆରି କରାଯାଉଥିଲା, ଯାହାକୁ ଏକ ବିସ୍ତୃତ ଶିଳ୍ପରୂପେ ଚିହ୍ନିତ କରାଯାଏ ।

ମୁଖ୍ୟତଃ ବ୍ରୋଞ୍ଜ ଏବଂ ପଥରର ଉପକରଣକୁ ବହୁଳଭାବେ ବ୍ୟବହାର କରାଯାଉଥିଲା । ମାତ୍ର ତନ୍ମଧ୍ୟରୁ କେତେକ ଉପକରଣ ବିନିମୟ ପାଇଁ ମଧ୍ୟ ଲୋଡ଼ା ପଡୁଥିଲେ । ମାଳି ଓ ଅନ୍ୟାନ୍ୟ ବସ୍ତୁର ତିଆରି ପାଇଁ ରହିଥିବା କାର୍ଯ୍ୟଶାଳାକୁ ହରପ୍ପାର ନଗରୀଗୁଡ଼ିକରେ ଚିହ୍ନିତ କରିହେବ । କ୍ରମେ ନୀଳ ରତ୍ନମଣି ହେଲା ହରପ୍ପାର ବିଶେଷତ୍ୱ । ତଆରି ସରି ନ ଥିବା ସାମଗ୍ରୀଗୁଡ଼ିକ ଜମା ହୋଇ ରହିଥିବାର ଦୃଶ୍ୟରୁ କାର୍ଯ୍ୟଶାଳା କଥା ଅନୁମାନ କରିହୁଏ । ହରପ୍ପାର ସ୍ଥଳୀମାନଙ୍କରୁ ଉଚ୍ଚମାନ ସମ୍ପନ୍ନ ଭିନ୍ନ ଭିନ୍ନ ଓଜନର ବଟକରା ମିଳିଛି । ଏହା ବିନିମୟ ବ୍ୟବସ୍ଥାର ଅବସ୍ଥିତିକୁ ସୂଚାଏ । ଲୋଥାଲରୁ ଏଭଳି ଏକ ସଂରଚନା ମିଳିଛି, ଯାହାକୁ ଡକିୟାର୍ଡ଼ (ପୋତ ମରାମତି ସ୍ଥଳୀ) ହୋଇଥିବ ବୋଲି କୁହାଯାଉଛି । ଅବଶ୍ୟ କେତେକ ଗବେଷକ ଏଥିରେ ସହମତ ନୁହନ୍ତି । ଏହାର ପାଖରେ ଏକ ପଣ୍ୟାଗାର ରହିଛି, ଯାହା ବିନିମୟ କେନ୍ଦ୍ର ରୂପେ କାର୍ଯ୍ୟ କରୁଥାଇପାରେ । ଏହି ସ୍ଥାନରେ କାରିଗରୀ କାର୍ଯ୍ୟଶାଳାରୁ ପ୍ରସ୍ତୁତ ସାମଗ୍ରୀଗୁଡ଼ିକୁ ଜମା କରାଯାଉଥିଲା, ରଖାଯାଉଥିଲା ଏବଂ ରପ୍ତାନି କରାଯାଉଥିଲା । ଏହା ନିଃସନ୍ଦେହ ଯେ, ବାଣିଜ୍ୟ ବ୍ୟବସାୟରୁ ପ୍ରାପ୍ତ ଲାଭ ସିନ୍ଧୁ ନଗରୀଗୁଡ଼ିକୁ ଆର୍ଥିକ ଦୃଷ୍ଟିରୁ ସୁଦୃଢ଼ କରି ରଖିଥିଲା । ବ୍ୟବସାୟ ଭାରତ ଉପମହାଦେଶର ଉତ୍ତର ଓ ଦକ୍ଷିଣ ପ୍ରଦେଶଗୁଡ଼ିକ ମଧ୍ୟରେ ତଥା ହରପ୍ପା ସଂସ୍କୃତି ଏବଂ ପାରସ୍ୟ ଉପସାଗରୀୟ ସଂସ୍କୃତିର ଓ ମେସୋପୋଟାମିଆଁ ସଂସ୍କୃତିର ଲୋକଙ୍କ ମଧ୍ୟରେ ଚାଲିଥିଲା ।

ହରପ୍ପାର ନଗରଗୁଡ଼ିକ ଏକ ରୁଚିବୋଧସମ୍ପନ୍ନ ଯୋଜନା ଓ ପରିଚାଳନାର ନିଦର୍ଶନ ଦିଅନ୍ତି । ଅଧିକାଂଶ କ୍ଷେତ୍ରରେ ନଗର ଦୁଇଭାଗରେ ବିଭକ୍ତ ହୋଇଥିଲା । ଗୋଟାଏ ହେଲା ଗଡ଼ (citadel) ଭାଗ ଏବଂ ଅନ୍ୟଟି ଆବାସୀୟ ଭାଗ । ଗଡ଼ଭାଗ ଆକାରରେ ସାନ; ପ୍ରାୟତଃ ଏହା ନଗରର ପଶ୍ଚିମ ଭାଗରେ ଅବସ୍ଥିତ ଥିଲା । ନାଗରିକ ଜୀବନର ଆବଶ୍ୟକ ସଂସ୍ଥାମାନ ଏହି ଭାଗରେ ରହିଥିଲା । ତା' ସହିତ ସାର୍ବଜନିକ ପୂଜାପାଠ ପାଇଁ ଏଠାରେ କିଛି ନିର୍ଦ୍ଦିଷ୍ଟ ସ୍ଥାନ ଥିଲା । ବିସ୍ତୃତ ଆବାସୀୟ ଭାଗ ପୂର୍ବଦିଗରେ ଅବସ୍ଥିତ ଥିଲା । ପରବର୍ତ୍ତୀ ଐତିହାସିକ କାଳର ନଗରୀୟ ଯୋଜନାରେ ଏହି କିସମର ବିଭାଜନ ଦେଖିବାକୁ ମିଳେନା । ଅବଶ୍ୟ ବୃତ୍ତି ଅନୁଯାୟୀ ଆବାସୀୟ ଭାଗକୁ ସ୍ଥିର କରିବାର ପ୍ରବୃତ୍ତି ଶେଷ ପର୍ଯ୍ୟନ୍ତ ହରପ୍ପା ସଭ୍ୟତାର ଏକ ବିଶେଷତ୍ୱ ହୋଇ ରହିଥିଲା । ହରପ୍ପାର ନଗରଗୁଡ଼ିକୁ ଦେଖିଲେ ଜଣାପଡ଼େ ଯେ ସେତେବେଳେ ସହରୀ ବ୍ୟବସ୍ଥାକୁ ଶୃଙ୍ଖଳିତ କରି ଜଳ, ଜମି ଓ ଶ୍ରମର ଉତ୍ତମ ପ୍ରବନ୍ଧନ ନିମନ୍ତେ ଏକ କୁଶଳ ଆର୍ଥିକ ବ୍ୟବସ୍ଥା ସ୍ଥାପିତ କରିବା ଉପରେ ବିଶେଷ ଧ୍ୟାନ ଦିଆଯାଇଥିଲା ।

ଇଟାରେ ନିର୍ମିତ ବୃହଦାକାର ପିଣ୍ଡି ଗଡ଼ (citadel) ମଧ୍ୟରେ ଥିବା ଅଟ୍ଟାଳିକାଗୁଡ଼ିକର ନିଅଁ ରୂପେ କାର୍ଯ୍ୟ କରୁଥିଲା । ନଗରୀଗୁଡ଼ିକ ନଦୀକୂଳରେ ଅବସ୍ଥିତ ଥିବାରୁ ସମ୍ଭବତଃ

ବନ୍ୟାଜନିତ କ୍ଷୟକ୍ଷତିରୁ ସେଗୁଡ଼ିକୁ ରକ୍ଷା କରିବା ସକାଶେ ତଥା ପରିବହନର ସୁବିଧା ସକାଶେ ଏପରି କରାଯାଇଥିଲା । ବୋଧହୁଏ ଏହି ନିର୍ମାଣଶୈଳୀ ସହର ଯୋଜନାକୁ ମଧ୍ୟ ପ୍ରଭାବିତ କରୁଥିଲା । ନଗର ଯୋଜନା ପ୍ରାୟତଃ ଏକ ଲୁହା ଜାଲି (grid)ର ଢାଞ୍ଚା ଭଳି ହୋଇଥିଲା । ରାସ୍ତାଗୁଡ଼ିକ ସହରର ମୁଖ୍ୟାଞ୍ଚଳ ଦିଗକୁ ଯାଇ ପୂର୍ବରୁ ପଶ୍ଚିମ ଓ ଉତ୍ତରରୁ ଦକ୍ଷିଣକୁ ପ୍ରାୟ ସମକୋଣରେ ଛେଦ କରୁଥିଲେ । ଏହା ନାଗରିକ ସୁବିଧାକୁ ସୁଲଭ କରିବାରେ ସୁବିଧାଜନକ ହେଉଥିଲା । ଘରର ନାଳିଗୁଡ଼ିକ ସଡ଼କର ନାଳିରେ ଯାଇ ପଡ଼ୁଥିଲେ । ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଘରର ମଝିରେ ଏକ ଖୋଲାଜାଗା ରହୁଥିଲା ଏବଂ ତା'ର ଚାରିକଡ଼େ ପ୍ରକୋଷ୍ଠଗୁଡ଼ିକ ରହିଥିଲେ । ପ୍ରକୋଷ୍ଠଗୁଡ଼ିକର ଦରଜା ମଝିରେ ଥିବା ଖୋଲାଜାଗା ଆଡ଼କୁ ଖୋଲୁଥିଲା । ଅଧିକାଂଶ ଘରେ କୂଅ, ଗାଧୁଆ ଜାଗା ଏବଂ ନାଳି ରହିଥିଲା । ନାଳି ଏବଂ ମହତ୍ତ୍ୱପୂର୍ଣ୍ଣ ବିଲ୍‌ଡିଂଗୁଡ଼ିକ ପୋଡ଼ାଇଟାରେ ତିଆରି ହୋଇଥିଲା ଏବଂ ଘରଗୁଡ଼ିକ କଞ୍ଚାଇଟାରେ ତିଆରି ହୋଇଥିଲା । ଇଟାର ନିର୍ମାଣରୁ ତତ୍‌କାଳୀନ ଅନୁଭବ ଓ ପାରଙ୍ଗମତା ପରିଦୃଷ୍ଟ ହେଉଥିଲା । ଧୋଲାବୀରାର ନଗର ଯୋଜନା ଅନେକାଂଶରେ ଅନ୍ୟ ନଗର ଯୋଜନାଠାରୁ ପୃଥକ୍ ଥିଲା । ସେଠାରେ ପଥରର ବ୍ୟବହାର ଅଧିକାର ଥିଲା । ନିର୍ମାଣରେ ବ୍ୟବହୃତ ପଥରଗୁଡ଼ିକୁ ଖୋଳିବା, ଚାଞ୍ଛିବା ଏବଂ ନିର୍ମାଣସ୍ଥଳକୁ ବୋହିବା ନିଶ୍ଚିତରୂପେ ଏକ ଶ୍ରମସାପେକ୍ଷ କାର୍ଯ୍ୟ ଥିଲା । ତେଣୁ ତାକୁ କାର୍ଯ୍ୟକାରୀ କରିବାପାଇଁ ସୁଦକ୍ଷ ପରିଚାଳନାର ଆବଶ୍ୟକତା ପଡ଼ୁଥିବ । ଖାଦ୍ୟାନ୍ନକୁ ସାଇତି ରଖିବାପାଇଁ ସେଠାରେ ଯେତେ ବ୍ୟବସ୍ଥା ଥିଲା, ତା'ଠାରୁ ଢେର୍ ଅଧିକ ବ୍ୟବସ୍ଥା ହୋଇଥିଲା ପାଣିକୁ ସଂଗ୍ରହ କରିବାପାଇଁ । ଗଡ଼ ଅଞ୍ଚଳରେ ବିରାଟ ଜଳାଶୟମାନ ନିର୍ମାଣ କରାଯାଇଥିଲା । ହରପ୍ପା ସଂସ୍କୃତିର ନଗରୀଗୁଡ଼ିକର ଯୋଜନା ପ୍ରସ୍ତୁତ କରିବାପାଇଁ ସର୍ଭେ ଏବଂ ଜ୍ୟାମିତି ଜ୍ଞାନର ଆବଶ୍ୟକତା ପଡ଼ିଥିବ । କୃଷିକର୍ମ ପାଇଁ ପଞ୍ଜିକାର ଲୋଡ଼ା ପଡ଼ିଥିବ ଏବଂ ତା' ପାଇଁ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧିତ କିଛି ଜ୍ଞାନ ରହିଥିବ ।

ଗଡ଼ ଅଞ୍ଚଳର ସୁରକ୍ଷା ପାଚେରି ଓ ବୁରୁଜ ଥିଲା; ପ୍ରବେଶ ମାର୍ଗ ପ୍ରଶସ୍ତ ଥିଲା ଏବଂ ତହିଁରେ ସୁରକ୍ଷା ପ୍ରହରୀର ମଧ୍ୟ ଉପଯୁକ୍ତ ବ୍ୟବସ୍ଥା ଥିଲା । କାହିଁ କେଉଁଠି ସମଗ୍ର ନଗରୀର ଚାରିପଟେ ସୁରକ୍ଷା ପାଚେରି ରହିଥିଲା । ପ୍ରଶ୍ନଉଠେ, କ'ଣ ଆଦ୍ୟ ନଗରୀକୁ ପାଖାପାଖି ଗ୍ରାମାଞ୍ଚଳରୁ ସୁରକ୍ଷିତ ରଖିବାକୁ ପ୍ରୟାସ କରାଯାଇଥିଲା କି ? ଏହି ପରିପ୍ରେକ୍ଷୀରେ ଏକ ନୂତନ ଦୃଶ୍ୟପଟ ଭାବରେ ସହରର ଧନସମ୍ପତ୍ତି ଧ୍ୟାନକୁ ଆସେ, ଯାହା ଗ୍ରାମର ଧନସମ୍ପତ୍ତି ତୁଳନାରେ ଭିନ୍ନ ଥିଲା । ସହରର ପରିଚାଳନା ମଧ୍ୟ ଗ୍ରାମଠାରୁ ଅଲଗା ଥିଲା । ସହରର ଜୀବନଶୈଳୀ ଅଣ-ନଗରୀୟ ସମାଜ ପାଇଁ ଅପରିଚିତ ଥିଲା । ତତ୍‌କାଳୀନ ଅନ୍ୟାନ୍ୟ ନଗରୀ ତୁଳନାରେ ହରପ୍ପାର ନଗରୀମାନଙ୍କରେ ଧନର ପ୍ରଦର୍ଶନ ଘରେ କିମ୍ବା ଶ୍ମଶାନରେ

କରାଯାଉ ନ ଥିଲା । ଏକ ହରପ୍ପା ସ୍ଥଳୀରୁ ନିକଟରେ କିଛି ସୁନା ଉପକରଣ ମିଳିଛି । ମାତ୍ର ମେସୋପୋଟାମିଆଁରୁ ମିଳିଥିବା ଅଳଙ୍କାର ତୁଳନାରେ ହରପ୍ପାରୁ ପ୍ରାପ୍ତ ଗହଣାର ପରିମାଣ ଯଥେଷ୍ଟ କମ୍ । ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ଥିବା ପ୍ରଭେଦ ମଧ୍ୟ ନଗରୀର ପରିଚାଳନା ବ୍ୟବସ୍ଥାକୁ ଦର୍ଶାଏ । କୃଷି ଉତ୍ପାଦନ, ଶ୍ରମ ଏବଂ କଞ୍ଚାମାଲ୍‌ର ନିୟନ୍ତ୍ରଣ ଯୋଗୁଁ କ'ଣ ଅଧିକାରୀ ଓ କର୍ତ୍ତୃପକ୍ଷଙ୍କୁ ସୁରକ୍ଷା ଦେବାକୁ ପଡୁଥିଲା ? କୁଳସମ୍ବନ୍ଧ ଓ ବଂଶଭକ୍ତି ଆଧାରିତ ନିୟନ୍ତ୍ରଣ ତୁଳନାରେ କ'ଣ ଏହି କିସମର ନିୟନ୍ତ୍ରଣ ଅଧିକ ସୁବିସ୍ତୃତ ଥିଲା ? କହିବାର ଅର୍ଥ ନୁହେଁ ଯେ ସହରବାସୀଙ୍କର ପରସ୍ପର ମଧ୍ୟରେ ଚିହ୍ନାପରିଚୟ ନ ଥିଲା । ମାତ୍ର ଆଗରୁ ସେଭଳି କର୍ତ୍ତୃତ୍ୱ କାହାରି ନ ଥିଲା । ସେହି ନୂଆ କର୍ତ୍ତୃତ୍ୱକୁ ସେମାନେ ପରିପ୍ରକାଶ କରୁଥିଲେ । କର୍ତ୍ତୃତ୍ୱର ଏହି ଅବବୋଧ ସହିତ ଗ୍ରାମଜୀବନ ଅପରିଚିତ ଥିଲା ।

ସହରୀ ଜନସଂଖ୍ୟାକୁ ଆବଶ୍ୟକ ପରିମାଣରେ ଖାଦ୍ୟାନ୍ନ ଯୋଗାଇବାର ଆବଶ୍ୟକତା ରହିଥିଲା । ତେଣୁ କୃଷିର ବିସ୍ତାର ପାଇଁ ଚତୁଃପାର୍ଶ୍ୱସ୍ଥ କ୍ରାନ୍ତିମଣ୍ଡଳୀୟ ସାଭାନ୍ନା ଜଙ୍ଗଲକୁ ସଫା କରିବାର ଆବଶ୍ୟକତା ପଡୁଥିଲା । ଏଥିପାଇଁ ବ୍ୟାପକ ନିର୍ବନୀକରଣ ହେଲା । କାଲିବଙ୍ଗାନସ୍ଥିତ ଏକ ସ୍ଥଳୀରେ ଏକ ହଳଲଗାଁଳ କରାଯାଇଥିବା କୃଷିଜମି ଦେଖିବାକୁ ମିଳିଛି । ଏହା ହେଉଛି ହରପ୍ପା ପୂର୍ବବର୍ତ୍ତୀକାଳୀନ । ସହରର ଉପକଣ୍ଠରେ କୃଷି ଜମିଟି ଅବସ୍ଥିତ । ତହିଁରୁ ଜଣାଯାଇଛି ଯେ, ଗହମ ଓ ବାର୍ଲି (ଜବ) ହେଲା ସେଠାକାର ଏବଂ ସେତେବେଳର ମୁଖ୍ୟ ଫସଲ, ଯଦିଓ ଧାନ ଓ ମିଲେଟ ମଧ୍ୟ ଚାଷ କରାଯାଉଥିଲା । ଫସଲର ସେଚନ ପାଇଁ ପାଣି ଧାର ଥିଲା, ଯାହା କେତେକ ସ୍ଥାନରେ ମାଟିତଳେ ଯାଇଥିଲା । ନଦୀରୁ ଅଣାହୋଇଥିବା କେତେକ କ୍ଷୁଦ୍ର କେନାଲ ମଧ୍ୟ ଜଳ ସଂସାଧନ ରୂପେ କାର୍ଯ୍ୟ କରୁଥିଲା । କେନାଲ ଓ ଅନ୍ୟାନ୍ୟ ପାଣିଧାରର ରକ୍ଷଣାବେକ୍ଷଣ ଏବଂ ପରିଚାଳନା ନିମନ୍ତେ ଆବଶ୍ୟକ ବ୍ୟବସ୍ଥାର ନିଶ୍ଚୟ ଲୋଡ଼ା ପଡ଼ିଥିବ ବୋଲି ଅନୁମାନ କରାଯାଏ ।

ଗଡ଼ ଅଞ୍ଚଳର ପ୍ରକାଣ୍ଡକାୟ ବିଲ୍‌ଡିଂକୁ ଭିନ୍ନ ଭିନ୍ନ ରୂପରେ ବ୍ୟାଖ୍ୟା କରାଯାଇଛି । ମହେଞ୍ଜୋଦାରୋର ବଡ଼ ବିଲ୍‌ଡିଂକୁ ଶସ୍ୟାଗାର, ପଣ୍ୟାଗାର, ଶିକ୍ଷାୟତନ ଓ ପୂଜାପାଠସ୍ଥଳୀ ହୋଇଥିବ ବୋଲି କୁହାଯାଏ । ସେଠାରେ ସ୍ନାନାଗାର ଭଳି କୁଣ୍ଡ ମଧ୍ୟ ରହିଥିଲା । ପିଣ୍ଡି ଓ ବିଲ୍‌ଡିଂର ନିର୍ମାଣ ପାଇଁ ଅନେକ ମାତ୍ରାରେ ଶ୍ରମର ଆବଶ୍ୟକତା ହୋଇଥିବ । ଶ୍ରମକୁ ସଂଗଠିତ ଢଙ୍ଗରେ ସଂଗ୍ରହ ଓ ନିୟନ୍ତ୍ରଣ କରିବା ସକାଶେ ଏକ ସୁବ୍ୟବସ୍ଥିତ ପରିଚାଳନା ପ୍ରଣାଳୀ ରହିଥିବ । ଶ୍ରମକୁ ଖଜଣା ବା ଭେଟି ଆକାରରେ ଯୋଗାଡ଼ ନ କରି ବୋଧହୁଏ ଏକ ନିୟମିତ ଶ୍ରମ ସେବା ପ୍ରଣାଳୀ ମାଧ୍ୟମରେ ଯୋଗାଡ଼ କରାଯାଉଥିଲା । କେଉଁ ହିସାବରେ ଶ୍ରମ ଆସୁଥିଲା, ତା'ର ସଠିକ ରୂପରେଖ ମିଳି ନ ଥିଲେ ସୁଦ୍ଧା ଏ ଦିଗରେ କର୍ତ୍ତୃତ୍ୱର

ବିନ୍ଦୁଗୁଡ଼ିକୁ ଚିହ୍ନଟ କରିବାପାଇଁ କିଛି କିଛି ପ୍ରୟାସ ହୋଇଛି । ପ୍ରଶାସନର ବିଭିନ୍ନ ବିନ୍ଦୁରେ ତଦାରଖ ଓ ନିୟନ୍ତ୍ରଣର ଆବଶ୍ୟକତା ରହୁଥିଲା : ସହର ବାସିନ୍ଦାଙ୍କ ଖାଦ୍ୟାନ୍ନ ପାଇଁ କୃଷି ବ୍ୟବସ୍ଥାରେ, ବାଣିଜ୍ୟ ଉପଯୋଗୀ ଉତ୍ପାଦନରେ (ଯେମିତି ତମ୍ବା ବସ୍ତୁ, ମାଳି); ସାମଗ୍ରୀଗୁଡ଼ିକୁ ପଞ୍ଜିକୃତ କରିବାପାଇଁ ସିଲ୍‌ମୋହର ମାରିବାରେ; ନଗରୀର ନିର୍ମାଣ ଓ ରକ୍ଷଣାବେକ୍ଷଣ ପାଇଁ ମଜୁରିଆ ବ୍ୟବସ୍ଥା କରିବାରେ ଏବଂ ସର୍ବୋପରି ବାଣିଜ୍ୟକୁ ସଂଗଠିତ କରିବାରେ ନିୟନ୍ତ୍ରଣ ଓ ପରିଚାଳନାର ଯଥେଷ୍ଟ ଆବଶ୍ୟକତା ପଡୁଥିଲା ।

ଶାସନ କର୍ତ୍ତୃପକ୍ଷର ରୂପରେଖ ଦେଲାବେଳେ ଆଗରୁ କୁହାଯାଉଥିଲା ଯେ ସିନ୍ଧୁ ସଭ୍ୟତାରେ ଏକ ଐକିକ ସାମ୍ରାଜ୍ୟ ବ୍ୟବସ୍ଥା ରହିଥିବ, ଯାହାର ଦୁଇଟି ରାଜଧାନୀ ରୂପେ ମହେଞ୍ଜୋଦାରୋ ଓ ହରପ୍ପାକୁ ଚିହ୍ନିତ କରାଯାଇଥିଲା । ମାତ୍ର ପରେ ଏହି ମତକୁ ଗ୍ରହଣ କରାଗଲା ନାହିଁ । ନିକଟରେ କୁହାଗଲା ଯେ ସିନ୍ଧୁ ସଭ୍ୟତାର ନଗରୀଗୁଡ଼ିକ ଥିଲେ 'ନଗର ରାଜ୍ୟ' (city-states) । ପରେ ଐତିହାସିକ କାଳରେ ଯେମିତି 'ସ୍ୱୟଂଶାସିତ' ନଗରୀମାନ ବିକଶିତ ହୋଇଥିଲେ, ତା'ର ପ୍ରତିରୂପ ଥିଲେ ଏହି ସିନ୍ଧୁ ନଗରୀଗୁଡ଼ିକ ! ମାତ୍ର ଆରମ୍ଭିକ ଓ ପରବର୍ତ୍ତୀକାଳୀନ ନଗରୀର ଯୋଜନା ଓ ଧାରଣା ମଧ୍ୟରେ ଯେତେସବୁ ମୌଳିକ ପାର୍ଥକ୍ୟ ଦେଖାଗଲା, ତାକୁ ଭିତ୍ତିକରି ଉପରୋକ୍ତ ମତ ଗ୍ରହଣଯୋଗ୍ୟ ହେଲା ନାହିଁ । ସମ୍ଭବତଃ ସେତେବେଳେ ନଗରୀଗୁଡ଼ିକ ମଧ୍ୟରେ ଏକ ରକମର ଖୋଲାମେଲା ସମ୍ବନ୍ଧ ରହିଥିଲା । ସେଗୁଡ଼ିକ ମଧ୍ୟରେ ଆକାରରେ ଏବଂ ପ୍ରଶାସନିକ ବ୍ୟବସ୍ଥାରେ ଅନେକ ପ୍ରଭେଦ ରହିଥିଲା । ଉଦାହରଣ ସ୍ୱରୂପ, କାଲିବଙ୍ଗାନର ନଗର ଯୋଜନାକୁ ଧୋଲାବୀରା ଅଥବା ହରପ୍ପାର ଯୋଜନା ସହିତ ତୁଳନା କଲେ ଏହି ପାର୍ଥକ୍ୟ ସୁସ୍ପଷ୍ଟ ହେବ । ପ୍ରଥମ ପର୍ଯ୍ୟାୟରେ ହୁଏତ ନଗରୀର ଶାସକ ଥିଲେ କୁଳମୁଖ୍ୟମାନେ । ମାତ୍ର ପରିପକ୍ୱ ନଗରୀୟ କାଳରେ ଏହି ବ୍ୟବସ୍ଥା ଯାଇ ତା' ସ୍ଥାନରେ ଏକ ଜଟିଳ ବ୍ୟବସ୍ଥା ସୃଷ୍ଟି ହୋଇଥିବ । ସେତେବେଳେ ନଗର କର୍ତ୍ତୃପକ୍ଷଙ୍କର ପ୍ରତିନିଧିମାନେ ସଭାରେ ସମ୍ମିଳିତ ହେଉଥିବେ ଏବଂ ନଗରୀୟ ଗତିବିଧିକୁ ସୁସଂଯୋଜିତ କରିବାପାଇଁ ତଥା ମାର୍ଜିତ ଢଙ୍ଗରେ ଶ୍ରମ ଯୋଗାଡ଼ କରିବା ପାଇଁ ବିକଳ୍ପ ଖୋଜୁଥିବେ । ମହେଞ୍ଜୋଦାରୋର ନିର୍ମାଣ ଏକ ଜଟିଳ ଶାସନ ବ୍ୟବସ୍ଥାକୁ ଇଙ୍ଗିତ କରେ । ନଗର କେନ୍ଦ୍ରଗୁଡ଼ିକ ସହିତ ସମ୍ପର୍କ ସ୍ଥାପନ କରି ହୁଏତ ଏକ କେନ୍ଦ୍ରୀୟ ପ୍ରଶାସନକୁ ବିଭିନ୍ନ ପ୍ରଦେଶରେ ଅନୁସରଣ କରାଗଲା, ଅନୁସୃଜନ ବି କରାଗଲା ।

ପଶ୍ଚିମ ଏସିଆର ପ୍ରାଚୀନ ରାଜ୍ୟଗୁଡ଼ିକ ସମ୍ବନ୍ଧରେ ଜାଣିବା ଲାଗି ଯେଉଁପ୍ରକାର ତଥ୍ୟ-ପ୍ରମାଣ ସବୁ ମିଳିଥାଏ, ସେହି ପ୍ରକାର ନଗରୀଗୁଡ଼ିକରେ ଅଟ୍ଟାଳିକା ସବୁ ଗୋଟାଏ ସ୍ଥାନରେ ପାଖାପାଖି ରହିଥିଲା । ମାତ୍ର ସ୍ମାରକୀୟ କବର କିମ୍ବା ସୁନିର୍ଦ୍ଧାରିତ ପୂଜାସ୍ଥଳି

ନ ଥିଲା । ଏପରିକି ରାଜପ୍ରାସାଦ ବି କାହିଁ କେଉଁଠି ଥିବାର ଜଣାପଡ଼େନି । ଅସ୍ତ୍ରଶସ୍ତ୍ରର ସଂଖ୍ୟା ମଧ୍ୟ ଖୁବ୍ ସୀମିତ ଥିବାର ମନେହୁଏ । ଯୁଦ୍ଧରେ ହତାହତ ହୋଇଥିବା ଗୋଷ୍ଠୀର କାହିଁ କେଉଁଠି ଅବସ୍ଥିତି ମିଳେନାହିଁ । ସଂଗଠିତ ପ୍ରଶାସନ ପାଇଁ ସାଧାରଣତଃ ଦରକାର ପଡୁଥିବା ପଦପଦବୀ, କୋଡ଼ (code) ଏବଂ ହିସାବପତ୍ର ଆଦି ଉପଲବ୍ଧ ହେଉନାହିଁ । ହରପ୍ପାର ଚିତ୍ରଲିପିକୁ ପାଠ କରିପାରିଲେ ହୁଏତ ପ୍ରଶାସନିକ ପଦପଦବୀ ଓ ଔପଚାରିକ ଅଧିକାରୀମାନଙ୍କ ସମ୍ବନ୍ଧରେ ସୂଚନା ମିଳିପାରନ୍ତା । ଅବଶ୍ୟ ଖନନରୁ ପ୍ରାପ୍ତ ସିଲ୍‌ମୋହର ସେହି ଧରଣର କର୍ତ୍ତୃପକ୍ଷଙ୍କର ପରିଚୟ ଦେଉଥିବ ।

ହରପ୍ପା ସଂସ୍କୃତିର ବିଭିନ୍ନ ଅବଶେଷ ମଧ୍ୟରେ ସବୁଠାରୁ ଅଧିକ ଅଡୁଆରେ ପକାଏ ସିଲ୍‌ମୋହର । ଏହା ଦେଖିବାକୁ ସାନ, ଚେପଟା ଓ ଚତୁର୍ଭୁଜ ଅଥବା ଆୟତାକାର । ସାଧାରଣତଃ ସିଲ୍‌ମୋହରଗୁଡ଼ିକ ଖଡ଼ିପଥରରେ (steatite) ନିର୍ମିତ । ତହିଁରେ ଚିତ୍ରର ଚିହ୍ନ ଥାଏ । ଚିତ୍ରଟି ହୁଏତ ମନୁଷ୍ୟ କିମ୍ବା ପଶୁର ଅଥବା ଉଭୟ ମନୁଷ୍ୟ ଓ ପଶୁର ହୋଇଥାଇପାରେ । ଚିତ୍ରରେ ଏକ ଅଭିଲେଖ ରହିଥାଏ, ଯାହା ଆଜିପର୍ଯ୍ୟନ୍ତ ପଠନ କରାଯାଇପାରି ନାହିଁ । ଯଦି ଲିପି ଅକ୍ଷର ବିଶିଷ୍ଟ ନ ହୋଇ ଚିତ୍ର ବା ଚିହ୍ନ ବିଶିଷ୍ଟ, ଯାହା ହରପ୍ପାରେ ହୋଇଛି, ତେବେ ତହିଁରେ ଏକାଧିକ ଭାଷାର ବ୍ୟବହାର ହୋଇଥିବାର ସମ୍ଭାବନା ଥାଏ । ଯେଉଁ ଭାଷାଗୁଡ଼ିକର ହରପ୍ପା ଲିପିରେ ବ୍ୟବହାର ହୋଇଥିବାର ସମ୍ଭାବନା ଦେଖାଯାଏ, ସେହି ଭାଷାଗୁଡ଼ିକ ହେଲା ଆଦ୍ୟ-ଦ୍ରାବିଡ଼ (Proto-Dravidian), ଇଣ୍ଡୋ-ସୁମେରିଆନ୍, ଏଲାମୋ-ଦ୍ରାବିଡ଼ିଆନ (Elamo-Dravidian), ଭାରତାର୍ଯ୍ୟ (Indo-Aryan) ଏବଂ ଅଷ୍ଟ୍ରୋ-ଏସିଆଟିକ (Austro-Asiatic) ଭାଷା । ହରପ୍ପାର ଲିପିକୁ ପଠନ କରିବା ସକାଶେ ଆଦ୍ୟ-ଦ୍ରାବିଡ଼ ଭାଷାକୁ ବ୍ୟବହାର କରିବାକୁ କିଛି ପ୍ରୟାସ ହୋଇଛି । ମାତ୍ର ସୁଫଳ ମିଳିନାହିଁ । ଭାରତାର୍ଯ୍ୟ ଭାଷା ରୂପେ ଏହାକୁ ପାଠ କରିବାର ଉଦ୍ୟମ ମଧ୍ୟ ବ୍ୟବସ୍ଥିତ ଢଙ୍ଗରେ ହୋଇପାରି ନାହିଁ । ଲିପିକୁ ଗୋଟାଏ କଥା ସୁନିଶ୍ଚିତ ଯେ, ଏହା ଦକ୍ଷିଣରୁ ବାମଆଡ଼କୁ ପାଠ କରାଯିବ । ସିଲ୍‌ମୋହରର ପିଠିରେ ରହିଥିବା ଛିଦ୍ରରେ ହାତଦେଇ ସିଲ୍‌ମୋହରକୁ ଉପଯୋଗ କରାଯାଏ । ମାଟି ଉପରେ ସିଲ୍‌ମୋହରର ଛାପକୁ ଦେଖି ମନେହୁଏ ସିଲ୍ ପେକିଂ କରିବାଲାଗି ମଧ୍ୟ ତା'ର ବ୍ୟବହାର ହେଉଥିଲା । ସେଥିପାଇଁ ସିଲ୍‌ର ନାଗରିକ ଅଧିକାରୀଙ୍କୁ ଚିହ୍ନିତ କରିବାରେ ଦୀର୍ଘଯାତ୍ରାର ଆବଶ୍ୟକ ପଡୁଥିବା ବ୍ୟାପାରରେ, ବଣିକମାନଙ୍କ ପାଇଁ, ନଗରୀକୁ କଞ୍ଚାମାଲ୍ ଆଣୁଥିବା ବ୍ୟକ୍ତି ପାଇଁ ତଥା କୁଳକୁ ଚିହ୍ନିତ କରିବାପାଇଁ ଉପଯୋଗ କରାଯାଉଥିବ । ବୃତ୍ତି, ଧାର୍ମିକ ସଂଘ ଏବଂ ସାମାଜିକ ସଂଗଠନର ପରିଚୟ ସଂକେତ ପାଇଁ ମଧ୍ୟ ସିଲ୍‌ମୋହରର ଦରକାର ପଡୁଥିବ । ସିଲ୍‌ମୋହର ବ୍ୟତୀତ କେବେ କେବେ ବାସନ, ଚୁଡ଼ି ଏବଂ ତମ୍ବା ତାବିଜ (ତେଉଁରିଆ) ଆଦିରେ ହରପ୍ପା ଲିପିର ବ୍ୟବହାର ହୋଇଥିଲା । ବଡ଼ ବଡ଼ ଅକ୍ଷର

ବା ସଂକେତରେ ଏକ କ୍ଷୁଦ୍ର ଅଭିଲେଖ ଧୋଲାବୀରାରେ ମିଳିଥିଲା, ଯାହାକୁ ସାଇନବୋର୍ଡ଼ ରୂପରେ ବ୍ୟବହାର କରାଯାଉଥିଲା ।

ଲିପି ପରି ଜଟିଳ ହେଲା ସିଲ୍‌ମୋହରରେ ଖୋଦିତ ଜୀବଜନ୍ତୁ ଏବଂ ଦୃଶ୍ୟର ଚିତ୍ର । ସବୁଠାରୁ ଅଧିକ ଦେଖାଯାଏ କିମ୍ବଦନ୍ତୀର ଏକଶିଂଘା ଜୀବ । ଅବଶ୍ୟ ମୌଳିକ ପରିଚୟ ଅନୁସାରେ ତାହା ହେଲା ଖାସ୍ ଶୈଳୀରେ ତିଆରି ଗଣ୍ଡାର । ପ୍ରାୟତଃ ଏହାକୁ ଆଉ ଏକ ଚିତ୍ର ସହିତ ରହିଥିବାର ଦେଖାଯାଏ । ସେହି ଚିତ୍ରଟିକୁ ପୂଜାବେଦୀ କିମ୍ବା ଅଗ୍ନିକୁଣ୍ଡ ହୋଇଥିବ ବୋଲି ଅନୁମାନ କରାଯାଏ । ଐକିକ ଜନ୍ତୁ ଭାବରେ ଷଣ୍ଢ ଓ ହାତୀ ଅଧିକ ପରିଚିତ ଥିଲେ । ଖୁବ୍ ଅଧିକ ସଂଖ୍ୟାରେ ବାଘର ଚିତ୍ର ଦେଖିବାକୁ ମିଳେ ନାହିଁ ଏବଂ ଯେତେବେଳେ ମିଳେ, ତାହା ବିଭିନ୍ନ ଜୀବଜନ୍ତୁଙ୍କ ଗହଣରେ ସ୍ଥାନିତ ହୋଇଥାଏ । ସିଲ୍‌ମୋହରରେ ଘୋଡ଼ାର ଚିତ୍ର ନାହିଁ । ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ସମୟର କେତୋଟି ହାଡ଼, ଯାହାକୁ ଘୋଡ଼ାର ହାଡ଼ ହୋଇଥିବ ବୋଲି ମନେକରାଯାଏ, ବେଲୁଚିସ୍ତାନର ପିରାକଠାରେ ପ୍ରାପ୍ତ ହୋଇଛି । ଏତଦ୍‌ବ୍ୟତୀତ ସେଠାରୁ କିଛି ସାନ ସାନ ମୃଣ୍ମୟ ମୂର୍ତ୍ତି ମଧ୍ୟ ଉପଲବ୍ଧ ହୋଇଛି । ସୁର୍କୋଟଡ଼ା ଏବଂ ଅନ୍ୟ କେତେକ ପ୍ରାଚୀନ ପର୍ଯ୍ୟାୟର ସ୍ଥଳୀରୁ ଘୋଡ଼ାର ହାଡ଼ ମିଳିଛି ବୋଲି ଦାବି କରାଯାଏ । ମାତ୍ର ଏହି ଦାବି ସର୍ବସମ୍ମତ ନୁହେଁ । ବରଂ ତାହା ଗଧ ବା ବଣ୍ୟ ଗଧର ବୋଲି ଚିହ୍ନିତ କରାଯାଏ । ଭାରତକୁ ଘୋଡ଼ା ପଛରେ ଆସିବା କଥା ବିଚିତ୍ର ନୁହେଁ, କାରଣ ଏହା ଭାରତର ନିଜସ୍ୱ ଜନ୍ତୁ ନୁହେଁ । ଏପରିକି ପଶ୍ଚିମ ଏସିଆରେ ମଧ୍ୟ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ପୂର୍ବରୁ ଘୋଡ଼ାର ଉପସ୍ଥିତି ନ ଥିଲା । ଉଭୟ କର୍ମକାଣ୍ଡ ପାଇଁ ତଥା ଉପଯୋଗ ଦୃଷ୍ଟିରୁ ସିନ୍ଧୁ ସଭ୍ୟତାରେ ଘୋଡ଼ାର ବିଶେଷ ଗୁରୁତ୍ୱ ନ ଥିଲା ।

ହରପ୍ପାର ନଗରୀ ଏବଂ ଅନ୍ୟ ପ୍ରାଚୀନ ସଭ୍ୟତାଗୁଡ଼ିକ ମଧ୍ୟରେ ଏକ ସ୍ପଷ୍ଟ ପ୍ରଭେଦ ହେଲା ଯେ, ହରପ୍ପାରେ ଧାର୍ମିକ ବିଲ୍‌ଡିଂ ଏବଂ ବିସ୍ତୃତ ସମାଧିସ୍ଥଳ ଦେଖିବାକୁ ମିଳେନାହିଁ । ଯଦି ମନ୍ଦିର ଥିଲା, ତେବେ ତାକୁ ଏବେ ଚିହ୍ନିବା କଠିନ, କାରଣ ସେଠାରେ ନା ଆରାଧ୍ୟ ଦେବତା, ନା ବର୍ଣ୍ଣାଢ଼୍ୟ ସଂରଚନାର କୌଣସି ଚିହ୍ନବର୍ଣ୍ଣ ଅଛି । ତେଣୁ ସାମାଜିକ ସମ୍ବନ୍ଧର କେନ୍ଦ୍ରରେ ମନ୍ଦିର ନ ଥିଲା ଭଳି ମନେହୁଏ । ପୂର୍ବଜ କର୍ମକାଣ୍ଡର ପରମ୍ପରା ମଧ୍ୟ ଦେଖିବାକୁ ମିଳେ ନାହିଁ, କାରଣ ଯେତେବେଳେ ସହରର ପତନ ହେଲା, ଲୋକ ସହର ଛାଡ଼ି ଦେଶାନ୍ତର ହେଲେ । ଏହି ଆଧାରରେ କୁହାଯାଏ ଯେ, ଧାର୍ମିକ ପୂଜାପାଠର କେନ୍ଦ୍ର ରୂପରେ ସେତେବେଳେ ସହରକୁ ଦେଖାଯାଉ ନ ଥିଲା । ପଶ୍ଚିମପଟର ସ୍ଥଳୀମାନଙ୍କରୁ ନାରୀମୂର୍ତ୍ତି କିଛି ମିଳିଛି । ଦେବୀ ଉପାସନାର ପରମ୍ପରା ରୂପରେ ସେଗୁଡ଼ିକ ପୂଜାପ୍ରତିମା ହୋଇଥିବେ ।

ପରେ ଭାରତ ଇତିହାସରେ ବିଭିନ୍ନ ଦେବୀଙ୍କର ଉପାସନା ଆରମ୍ଭ ହେଲା । ସେହି ଆଧାରରେ ସନ୍ଧୁ ସଭ୍ୟତାରେ ମଧ୍ୟ ଦେବୀ ଉପାସନାର ପରମ୍ପରା ରହିଥିବ ବୋଲି ସମ୍ଭାବନା ଦେଖାଯାଏ । ଉର୍ବରତା ଓ ଉତ୍ପାଦନ ସମ୍ବନ୍ଧୀୟ କର୍ମକାଣ୍ଡକୁ ମହତ୍ତ୍ୱ ଦିଆଯାଇଥିବାର ସ୍ପଷ୍ଟ ପ୍ରମାଣ ରହିଛି । ମାତ୍ର ଉକ୍ତ କର୍ମକାଣ୍ଡ କେତେ ବିସ୍ତୃତ ଆକାରରେ ପାଳିତ ହେଉଥିଲା, ସେ ନେଇ କୌଣସି ନିର୍ଦ୍ଦିଷ୍ଟ ଉତ୍ତର ନାହିଁ । ଭାରତ ଉପମହାଦେଶର ଅନ୍ୟ ତାମ୍ରପାଷାଣ ସଂସ୍କୃତିରେ ଉର୍ବରତା ଓ ଉତ୍ପାଦନ ସମ୍ବନ୍ଧୀୟ କର୍ମକାଣ୍ଡର ଚଳଣି ରହିଥିଲା । ସେହି ଆଧାରରେ ଦେଖିଲେ, ହରପ୍ପା ସଂସ୍କୃତିରେ ମଧ୍ୟ ଏହାର ଚଳଣି ଥିବ – ଏଥିରେ ଅସ୍ୱାଭାବିକତା କିଛି ନାହିଁ । କେତେକ ସାନ ସାନ ସଂରଚନାକୁ ଯଜ୍ଞକୁଣ୍ଡ ରୂପରେ ବର୍ଣ୍ଣନା କରାଯାଇଛି । ଏସବୁ ସଂରଚନାରେ ପାଉଁଶ ଲାଖି ରହିଥିଲା । ମାତ୍ର ସେଗୁଡ଼ିକ ଯଜ୍ଞକୁଣ୍ଡ ନ ହୋଇ ଘରର ଚୁଲି ବି ହୋଇଥାଇପାରେ । ହରପ୍ପାରେ ଏକ ତାନ୍ତ୍ରିକ ଗୁଣିଆ ଧର୍ମର ପ୍ରଚଳନ ଥିବାର କେତେକ ମତ ଦିଅନ୍ତି । ମାତ୍ର ସଭ୍ୟତାର ନଗରୀୟ ଚରିତ୍ରକୁ ଦେଖିଲେ ତାହା ତାନ୍ତ୍ରିକ-ଗୁଣିଆ ଧର୍ମର ଅନୁକୂଳ ମନେହୁଏ ନାହିଁ ।

ହରପ୍ପାକାଳୀନ କେତେକ ଆକୃତି ପରବର୍ତ୍ତୀ କାଳ ପର୍ଯ୍ୟନ୍ତ ମଧ୍ୟ ରହିଥିବାର ପ୍ରମାଣ ରହିଛି । ଯଥା- ପିପଳ ବୃକ୍ଷ । ମାଟିପାତ୍ରରେ ପିପଳ ପତ୍ରର ଚିତ୍ର ଏବଂ ସିଲ୍‌ମୋହରରେ ପିପଳ ଗଛର ଚିତ୍ର ରହିଥିଲା । ଅନେକ ପରବର୍ତ୍ତୀ ସଂପ୍ରଦାୟ ପିପଳ ବୃକ୍ଷକୁ ଉପାସନା କରିବାର ଉଦାହରଣ ରହିଛି । ଗୋଟାଏ ସିଲ୍‌ମୋହରରେ ଉପବିଷ୍ଟ ମୁଦ୍ରାରେ ଜଣେ ମନୁଷ୍ୟର ଚିତ୍ର ଅଛି । ତାକୁ ଆଦ୍ୟ-ଶିବ ବୋଲି କେତେକ ମତ ଦିଅନ୍ତି । ପ୍ରକୃତରେ ମୂର୍ତ୍ତିଟି କ'ଣ ତାହା ଅସ୍ପଷ୍ଟ । ଦ୍ୱିତୀୟତଃ, ତାକୁ ଶିବଙ୍କର ପ୍ରତିରୂପ ବୋଲି ଦର୍ଶାଉଥିବା ତଥ୍ୟ-ପ୍ରମାଣ ବଳିଷ୍ଠ ନୁହେଁ । କୌଣସି ପରବର୍ତ୍ତୀ ଆରାଧ୍ୟ ପ୍ରତିମାକୁ ପୂର୍ବବର୍ତ୍ତୀ କାଳ ଉପରେ ଲଦିଦେବାକୁ ପ୍ରୟାସ କରିବା ପରିବର୍ତ୍ତେ ଉକ୍ତ ପ୍ରତିମା ବହୁତ ପରେ ବିକଶିତ ହୋଇଥିବା ପ୍ରତିମା ସମୂହର ଉନ୍ମେଷରେ ଯୋଗଦାନ କରିଥିଲା ନା ନାହିଁ – ତାହା ଚର୍ଚ୍ଚା ହେବା କଥା । ବହୁତ ପରର କୌଣସି ଏକ ପ୍ରତିମାର ଅବଧାରଣାରୁ ଧାରରେ ନିଆଯାଇଥିବା ସଂକେତକୁ ଏହି ଧରଣର ଏକ ଆକୃତି ଉପରେ ଲଦି ଦିଆଯିବା ଅପେକ୍ଷା ଉକ୍ତ ଆକୃତିର ସନ୍ଦର୍ଭରେ ଆକୃତିଟିର ଅର୍ଥ ଖୋଜିବା ବୋଧହୁଏ ଅଧିକ ଠିକ୍ ହେବ । ଏହି ଆକୃତି ଯୌଗିକ ମୁଦ୍ରାରେ ତପସ୍ୟାରତ ବୋଲି ଯୁକ୍ତି କରିବା ଯାହା, ଗଛଡାଳରେ ଚିତ୍ରିତ ଏକ ନାରୀ ଆକୃତିକୁ ଅପ୍‌ସରା ବୋଲି ଯୁକ୍ତି କରିବା ତାହା, କାରଣ ଅପ୍‌ସରାମାନଙ୍କର ବୃକ୍ଷରେ ସମ୍ବନ୍ଧ ରହିଥାଏ ।

ପଥର ଏବଂ କଂସା ବା ବ୍ରୋଞ୍ଜର ମୂର୍ତ୍ତି ମିଳିଛି, ମାତ୍ର ସେଗୁଡ଼ିକର ସଂଖ୍ୟା ଖୁବ୍ କମ୍ । କୌଣସି ମନ୍ଦିରରେ ସେଗୁଡ଼ିକୁ ଗଚ୍ଛିତ କରାଯାଇଥିବା କଥା ଗ୍ରହଣୀୟ ମନେହୁଏ

ନାହିଁ । ଏହି ମୂର୍ତ୍ତିରେ ପରିଲକ୍ଷିତ ହୋଇଥିବା ନିର୍ମାଣ ଶୈଳୀ ଏବଂ ଧାରଣା ଆକର୍ଷଣୀୟ ଥିଲା । ବ୍ରୋଞ୍ଜର ଏକ ଲଘୁ ପ୍ରତିମାରେ ଜଣେ ଲାସ୍ୟମୟୀ ଯୁବତୀକୁ ଖୁବ୍ ଆକର୍ଷକ ମୁଦ୍ରାରେ ପ୍ରସ୍ତୁତ କରାଯାଇଥିଲା । ପ୍ରତିମାଟି ଆରାଧ୍ୟ ନୁହେଁ । ପ୍ରସ୍ତରରେ ନିର୍ମିତ ଆବକ୍ଷ ମୂର୍ତ୍ତିରେ ରହିଥିବା ବ୍ୟକ୍ତି ଜଣକ ମୁଣ୍ଡ ଆବୃତ କରିଛନ୍ତି; ଶାଲରେ ତାଙ୍କର ତିନିଭାଙ୍ଗର ଡିଜାଇନ୍ କରାଯାଇଛି ଏବଂ ଆଖି ଦୁଇଟି ଅର୍ଦ୍ଧନିମିଳିତ ମୁଦ୍ରାରେ ରହିଛି । ଲୌକିକ ବ୍ୟାଖ୍ୟାରେ ଏହା ହେଲା ଜଣେ ପୂଜକର ମୂର୍ତ୍ତି । ମାତ୍ର ଏକଥା ଏଯାଏଁ ପ୍ରମାଣିତ ହୋଇପାରି ନାହିଁ । ପିଲାଙ୍କ ଖେଳଣାରୁ ଆରମ୍ଭକରି ଜୀବଜନ୍ତୁ ପର୍ଯ୍ୟନ୍ତ ସଭିଙ୍କର ମୃଣ୍ମୟ ମୂର୍ତ୍ତି ରହିଛି । ଅନ୍ୟ ସଂସ୍କୃତି ପରି ହରପ୍ପା ସଂସ୍କୃତିରେ ମଧ୍ୟ କୌଣସି ଚମକଦାର ସ୍ୱୟମାକୃତି (self-representation) ଦେଖିବାକୁ ମିଳେ ନାହିଁ ।

ହରପ୍ପାର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ବିଶେଷତ୍ୱ ହେଲା ଏହାର ସମାଧିସ୍ଥଳ । ପଶ୍ଚିମର ଅନେକ ସଭ୍ୟତାରେ ଶାସକମାନଙ୍କର ସମାଧି ଯେଉଁ ଆଡ଼ମ୍ବରରେ ନିର୍ମିତ ହୋଇଥିଲା, ସେହି ଆଡ଼ମ୍ବରର ବିନ୍ଦୁବିସର୍ଗ ସୁଦ୍ଧା ହରପ୍ପାରେ ଦେଖିବାକୁ ମିଳେ ନାହିଁ । ସମାଧିସ୍ଥଳଗୁଡ଼ିକ ଖୁବ୍ ସାଧାସିଧା କିସମର ଥିଲା । ସମାଧିରେ ସାମିଲ ବସ୍ତୁଗୁଡ଼ିକ ମଧ୍ୟରେ ସାଧାରଣତଃ ନିତ୍ୟବ୍ୟବହାର୍ଯ୍ୟ ବାସନକୁସନ ରହିଥିଲା । ଏହାର ଅର୍ଥ ହେଲା, ହରପ୍ପାର ସମାଜ ମୃତକଠାରୁ ପରଲୌକିକ ଜୀବନରେ ବହୁତ କିଛି ଆଶା କରୁ ନ ଥିଲା । ଅନ୍ତିମ କ୍ରିୟାକୁ ପ୍ରତିଷ୍ଠାର ପ୍ରଦର୍ଶନ ପାଇଁ ଏକ ଅବସର ବୋଲି ମଧ୍ୟ ମନେକରାଯାଉ ନ ଥିଲା ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀର ଅନ୍ତିମ ପର୍ଯ୍ୟାୟର ଉତ୍ତର-ହରପ୍ପା ଶ୍ମଶାନ ପ୍ରାୟତଃ ହରପ୍ପା ଓ ପଞ୍ଜାବ ସମତଳରେ ଦେଖିବାକୁ ମିଳେ । ତହିଁରେ ମିଳିଥିବା ମାଟିପାତ୍ର ହରପ୍ପା ମାଟିପାତ୍ରରୁ ଭିନ୍ନ । ଏହି ଶ୍ମଶାନକୁ 'ସିମେଟେରୀ H' ସଂସ୍କୃତି କୁହାଯାଏ । ଅର୍ଥ ହେଲା, ପରବର୍ତ୍ତୀ କାଳର ଲୋକଙ୍କ ସଂସ୍କୃତି ପୂର୍ବବର୍ତ୍ତୀ ହରପ୍ପା ସଂସ୍କୃତିଠାରୁ ପୃଥକ୍ ହେଲେ ସୁଦ୍ଧା ମୃତକକୁ କବର ଦେବାର ରୀତି ଅବ୍ୟାହତ ରହିଥିଲା । ସମ୍ଭବତଃ ଏହି କ୍ଷେତ୍ରରେ ଖ୍ରୀ:ପୂ. ଦ୍ୱିତୀୟ ସହସ୍ରାବ୍ଦୀ ବେଳକୁ ନୂଆ ଲୋକ ଆସି ବସତି ସ୍ଥାପନ କରିସାରିଥିଲେ ଅଥବା ଏଠାକାର ସଂସ୍କୃତିରେ ନୂଆ ଲକ୍ଷଣର ଅଭ୍ୟୁଦୟ ହୋଇଥିଲା । ମିଳିଥିବା ଅଳ୍ପ କେତୋଟି ଉପାଦାନ ମାଧ୍ୟମରେ ପୂର୍ବର ସମୟରୁ ପରିବର୍ତ୍ତନର ଲକ୍ଷଣଗୁଡ଼ିକୁ ଚିହ୍ନିତ କରିହେବ, ଯଦିଓ ପ୍ରାପ୍ତ ଉପାଦାନ ବା ଶିଳ୍ପାବଶେଷ ସର୍ବଦା ଏକା ହୋଇ ନ ପାରେ । ଉଦାହରଣ ସ୍ୱରୂପ, ବୋଲାନ ଉପତ୍ୟକାରୁ ମିଳିଥିବା ଶିଳ୍ପାବଶେଷ ଓ ଇଣ୍ଡୋ-ଇରାନ ସୀମାନ୍ତରେ ଏବଂ ଆଫଗାନିସ୍ଥାନ ଓ ଇରାନରେ ମିଳିଥିବା ଶିଳ୍ପାବଶେଷ ମଧ୍ୟରେ ସମ୍ବନ୍ଧ ଖୋଜାଯାଏ ;

ଏହି ସମଗ୍ର କ୍ଷେତ୍ରକୁ 'ବେକ୍ଟ୍ରିଆ-ମାର୍ଜିଆନା ପୁରାତାତ୍ତ୍ୱିକ ଅଞ୍ଚଳ' (Bactria-Margiana Archaeological Complex) ନାମରେ ଆଖ୍ୟାୟିତ କରାଯାଇଛି ।

ଏକଦା କୁହାଯାଉଥିଲା ଯେ, ହରପ୍ପା ନଗରୀଗୁଡ଼ିକର ପତନ ଆର୍ଯ୍ୟ ଆକ୍ରମଣକାରୀଙ୍କ ଯୋଗୁଁ ସଂଘଟିତ ହେଲା । ମାତ୍ର ଏହି ତର୍କର ସମର୍ଥନରେ ବିଶେଷ ପୁରାତାତ୍ତ୍ୱିକ ପ୍ରମାଣ ନାହିଁ । କାରଣ, ଆକ୍ରମଣ ପ୍ରବଳ ଆକାରରେ ହୋଇଥିବ ଏବଂ ତା'ର ପରିଣାମ ସ୍ୱରୂପ ଏକ ସ୍ଥାପିତ ରାଜନୈତିକ ଏବଂ ଆର୍ଥିକ ବ୍ୟବସ୍ଥାର ପତନ ସଂଘଟିତ ହୋଇଥିବ । ପୁଣି ସେହି କିସମର ପତନ ଯୋଗୁଁ ଏକ ସଂସ୍କୃତି ସ୍ଥାନରେ ଅନ୍ୟ ଏକ ସଂସ୍କୃତି ସ୍ଥାପିତ ହୋଇଥିବ । ଏସବୁ ଅତିରଞ୍ଜନର କଥା । ଏହାର ଅର୍ଥ ନୁହେଁ ଯେ, ଦେଶାନ୍ତର କରି ଭାରତାର୍ଯ୍ୟ ଭାଷାଭାଷୀ ଲୋକ ଭାରତକୁ ଆସିଥିବାର ସମ୍ଭାବନାକୁ ଅସ୍ୱୀକାର କରିବା । ଯେଉଁ ତର୍କ ଆକ୍ରମଣ କଥାକୁ ସମର୍ଥନ କରେ, ପରବର୍ତ୍ତୀକାଳୀନ ବୈଦିକ ସଂସ୍କୃତିର ଭାଷାକୁ ଭିତ୍ତିକରି ସେହି ତର୍କ ଦିଆଯାଏ । ଏହି ଭାଷା ହେଲା ଇଣ୍ଡୋ-ଆର୍ଯ୍ୟ ବା ଭାରତାର୍ଯ୍ୟ ଭାଷା (Indo-Aryan), ଯାହାର ସାମଞ୍ଜସ୍ୟ ମଧ୍ୟଏସିଆର ଇଣ୍ଡୋ-ୟୁରୋପିଆନ ଭାଷା ବା ଭାରୋପୀୟ (Indo-European) ଭାଷା, ବିଶେଷକରି ପ୍ରାଚୀନ ଇରାନୀୟ ଭାଷା ସହିତ ରହିଛି । ଉତ୍ତର-ଭାରତରେ ଏହି ଭାରତାର୍ଯ୍ୟ ଭାଷା ପ୍ରତିଷ୍ଠା ପାଇଲା । ଭାରତାର୍ଯ୍ୟ ଭାଷାଭାଷୀ ଲୋକ ସ୍ଥାନୀୟ ଲୋକଙ୍କୁ ପରାଜିତ କରିବା ଯୋଗୁଁ ଏହି ପ୍ରତିଷ୍ଠା ପ୍ରାପ୍ତ ହେଲା ବୋଲି ଯୁକ୍ତି ଦିଆଯାଏ । ଆହୁରି କୁହାଯାଏ ଯେ, ଋଗ୍‌ବେଦରେ ଆର୍ଯ୍ୟମାନଙ୍କର ଦାସମାନଙ୍କ ପ୍ରତି ଶତ୍ରୁତା ଓ ସଂଘର୍ଷଭାବ ରହିଥିବାର ଉଲ୍ଲେଖ ରହିଛି । ଏହି ପରିପ୍ରେକ୍ଷୀରେ ଇନ୍ଦ୍ର, ପୁରଗୁଡ଼ିକ ଉପରେ ଆକ୍ରମଣ କରିଥିବାର ଉଲ୍ଲେଖକୁ ଦର୍ଶାଯାଏ । 'ପୁର' ହେଲା ଦାସମାନଙ୍କର ବସତି, ଯାହାକୁ ଭୁଲ୍‌ବଶତଃ ସିନ୍ଧୁ ସଭ୍ୟତାର 'ନଗରୀ' ବୋଲି କୁହାଯାଏ । ମାତ୍ର ସତ୍ୟତା ହେଲା ଯେ, ଭାରତରେ ଭାରତାର୍ଯ୍ୟ ଭାଷାର ପ୍ରତିଷ୍ଠା ଓ ଉତ୍ତର-ଭାରତରେ ତା'ର କ୍ରମବିସ୍ତାରକୁ ନେଇ ବିକଳ୍ପ ବିଶ୍ଳେଷଣମାନ ରହିଛି । ଏହି ବିଶ୍ଳେଷଣରେ ନଗରୀକରଣର କ୍ରମପତନକୁ ନେଇ ରହିଥିବା ଐତିହାସିକ ପୃଷ୍ଠଭୂମିକୁ ପ୍ରମୁଖତା ଦିଆଯାଏ । ଭିନ୍ନ ଭିନ୍ନ ଭାଷା-ସଂସ୍କୃତି ମଧ୍ୟରେ ସହାବସ୍ଥାନ ରହିଥିଲା ଏବଂ ଭାରତାର୍ଯ୍ୟଭାଷୀମାନେ ଏକାଦିକ୍ରମେ ବହୁସଂଖ୍ୟାରେ ନ ଆସି କମ୍ କମ୍ ସଂଖ୍ୟାରେ ଉତ୍ତର-ଭାରତକୁ ଦେଶାନ୍ତରଣ (magration) କରିଥିବେ ବୋଲି ଏହି ବିଶ୍ଳେଷଣରେ ଜୋର୍ ଦିଆଯାଏ । ଆକ୍ରମଣର ସରଳୀକୃତ ସିଦ୍ଧାନ୍ତକୁ ଏଥିରେ ଐତିହାସିକ ବିଶ୍ଳେଷଣର ମହତ୍ତ୍ୱ ପ୍ରଦାନ କରାଯାଏ ନାହିଁ । ଅନ୍ୟପକ୍ଷରେ, ଆଜିକାଲି ଯେଉଁ ଉଦ୍ୟମ ହେଉଛି, ଅର୍ଥାତ୍ ଭାରତାର୍ଯ୍ୟଭାଷୀ ଲୋକ ଭାରତର ଆଦ୍ୟ ଅଧିବାସୀ ବୋଲି ତର୍କ ଦିଆଯାଉଛି, ତାକୁ ମଧ୍ୟ ଏହି ବିଶ୍ଳେଷଣ ସ୍ୱୀକାର କରେ ନାହିଁ, କାରଣ ତଥ୍ୟ-ପ୍ରମାଣ ଅନୁସାରେ ଭାରତାର୍ଯ୍ୟଭାଷୀ ଏଠାକାର ଆଦ୍ୟ-ଅଧିବାସୀ ନ ଥିଲେ ।

ମହେଞ୍ଜୋଦାରୋର ଜନବସତି କ୍ଷେତ୍ରରେ କିଛି କଙ୍କାଳ ମିଳିଛି । ଆଗରୁ ତାକୁ ଯୁଦ୍ଧରେ ନିହତ ଲୋକଙ୍କର କଙ୍କାଳ ବୋଲି ତର୍କ ଦିଆଯାଉଥିଲା । ଏହା ଆର୍ଯ୍ୟ ଆକ୍ରମଣ ସିଦ୍ଧାନ୍ତକୁ ସମର୍ଥନ କରୁଥିଲା । ମାତ୍ର ପରେ ବିଶ୍ଳେଷଣ କରି ଜଣାଗଲା ଯେ କଙ୍କାଳ ହେଲା ରକ୍ତହୀନତା ଆଦି ରୋଗାକ୍ରାନ୍ତ ଲୋକଙ୍କର । ଏହା ନଗରୀକରଣର ପତନକୁ ନେଇ ଭିନ୍ନ କାରଣ ଖୋଜିବାକୁ ଗବେଷକମାନଙ୍କୁ ଅବସର ଦେଲା । ଏକ ନିର୍ଦ୍ଦିଷ୍ଟ ସୀମିତ ଅଞ୍ଚଳରେ ହିଂସାଜନିତ ମୃତ୍ୟୁର କାରଣ ଯେ ସର୍ବଦା ରଣାଙ୍ଗନ ହେବ – ଏହା ଗ୍ରହଣୀୟ ହୋଇ ନ ପାରେ । ସ୍ଥାନୀୟ ସ୍ତରର ବିଶୃଙ୍ଖଳା ମଧ୍ୟ ତା' ପାଇଁ କାରଣ ହୋଇପାରେ । ରୋଗ ମହାମାରୀ କିମ୍ବା ବ୍ୟାପକ ପାରିବେଶିକ ପରିବର୍ତ୍ତନ ହୁଏତ ଲୋକସଂଖ୍ୟା ହ୍ରାସର କାରଣ ହୋଇଥିବ । ମାତ୍ର ଅବଶୋଷର କଥା ଯେ, ଏହି ଦୃଷ୍ଟିକୋଣରୁ ଆଦ୍ୟ-ଭାରତ ଇତିହାସର ସନ୍ଦର୍ଭକୁ ଚିକିନିଖିଭାବେ ଅନୁଧ୍ୟାନ କରାଯାଇ ନାହିଁ ।

ହରପ୍ପାର ପତନକୁ ନେଇ ଦିଆଯାଉଥିବା ଅନ୍ୟ କାରଣଗୁଡ଼ିକ ମଧ୍ୟରେ ପାରିବେଶିକ ପରିବର୍ତ୍ତନକୁ ମଧ୍ୟ ମହତ୍ତ୍ୱ ଦିଆଯାଏ । କୁହାଯାଏ, ମହୋଞ୍ଜୋଦାରୋ କ୍ଷେତ୍ରରେ ଲଗାତର ସିନ୍ଧୀନଦୀର ବନ୍ୟା ଅନୁଭୂତ ହେଲା । ବେଳେବେଳେ ଦୀର୍ଘଦିନ ଧରି ବନ୍ୟା ମାଡ଼ିଚାଲିଲା । ପୁଣି ଜଳବାୟୁ ପରିବର୍ତ୍ତନ ଯୋଗୁ ଶୁଷ୍କତା ଦେଖାଗଲା ଓ ନିର୍ବନୀକରଣ ହେଲା । ଏହାସହିତ ବ୍ୟାପାର ଜନିତ ଆବଶ୍ୟକତା ପୂରଣ ନ ହେବାରୁ ତଥା ରାଜନୈତିକ ବିଶୃଙ୍ଖଳା ଦେଖାଯିବାରୁ ସହରଗୁଡ଼ିକର ପତନ ଏକ ସାଧାରଣ କଥା ହେଲା । ପର୍ଯ୍ୟାବରଣର ଅବକ୍ଷୟ ସହରର ଅଧୋପତନକୁ କେତେ ବ୍ୟାପକ ରୂପରେ ପ୍ରଭାବିତ କଲା, ତାହା ସୁସ୍ପଷ୍ଟ ନୁହେଁ । ସିନ୍ଧୁ ସଭ୍ୟତାର ସହରର ପତନକୁ କେବଳ ଗୋଟାଏ ମାତ୍ର କାରଣ ମାଧ୍ୟମରେ ବିଶ୍ଳେଷଣ କରିବା ଇତିହାସ ଅ-ସଂଗତ ହେବ । ତା' ପାଇଁ ବହୁବିଧ କାରଣ ଖୋଜିବା ଉଚିତ ହେବ । ଦ୍ୱିତୀୟରେ ଏହି କାରଣଗୁଡ଼ିକୁ ସମରୂପରେ ପ୍ରତ୍ୟେକ ଅଞ୍ଚଳରେ ପ୍ରଯୁଜ୍ୟ କରାଯାଇ ନ ପାରେ । ସିନ୍ଧୁ ସହରର ପତନର ଧାରା ବହୁବିଧ ଯାହା କାରଣର ବହୁବିଧତାକୁ ପୁଷ୍ଟି କରେ । ଗ୍ରାମାଞ୍ଚଳରୁ ଗ୍ରାମୀଣ ଲୋକ ଆସି ନିମ୍ନ ସୈନ୍ଧବ ସମତଳ ସ୍ଥିତ କେତେକ ସହରକୁ ଅଧିକାର କରିନେଲେ । ଏହାଫଳରେ ନଗରୀୟ ବ୍ୟବସ୍ଥାରେ ଏକରକମର ଗ୍ରାମ୍ୟକରଣ ଦେଖିବାକୁ ମିଳିଲା । ଅନ୍ୟ ପ୍ରଦେଶମାନଙ୍କରେ ହରପ୍ପା କେନ୍ଦ୍ରଗୁଡ଼ିକରୁ ଦେଶାନ୍ତରଣ ଆରମ୍ଭ ହେଲା । ହାକ୍ରା ସମତଳରୁ ଲୋକ ଗଙ୍ଗା-ଯମୁନା ଦୋଆବ କ୍ଷେତ୍ରକୁ ଦେଶାନ୍ତର କରି ଚାଲିଗଲେ; ଗୁଜରାଟରୁ ଗଲେ ଉତ୍ତର ମହାରାଷ୍ଟ୍ର । ଉତ୍ତର-ପଶ୍ଚିମ ଭାରତ ଓ ପଞ୍ଜାବ ଯେ ଲୁଣ୍ଠନ ଓ ଖଣ୍ଡଯୁଦ୍ଧର ଶିକାର ହୋଇ ନ ଥିବ – ଏହା କୁହାଯାଇ ନ ପାରେ । ସମ୍ଭବତଃ ଋଗ୍‌ବେଦର ବର୍ଣ୍ଣନା ଅନୁଯାୟୀ, ଉକ୍ତ ଅଞ୍ଚଳ ଆକ୍ରମଣର ଶିକାର ହୋଇଥିଲା । କୋଟଦିଜି ଆଦି କେତେକ ସ୍ଥଳୀରେ ସେହି କିସମର କିଛି ତଥ୍ୟ-ପ୍ରମାଣ ମଧ୍ୟ ଦେଖିବାକୁ ମିଳିଥାଏ ।

ସହରର ପତନ ସହିତ ହରପ୍ପା ସଂସ୍କୃତି ଅନ୍ତର୍ହିତ ହେଲା ବୋଲି କହିବା ଯଥାର୍ଥ ହେବ ନାହିଁ । ଅବଶ୍ୟ ଅନେକ ନଗରୀୟ ଗତିବିଧି ଓ ଲକ୍ଷଣ ବିଲୁପ୍ତ ହୋଇଥିବ । ମାତ୍ର ଗ୍ରାମାଞ୍ଚଳରେ ଲୋକ ନିଜ କାର୍ଯ୍ୟରେ ଯତ୍‌ସାମାନ୍ୟ ପରିବର୍ତ୍ତନ କରି ନିଜ ଗତିବିଧି ଅବ୍ୟାହତ ରଖିଥିବେ ବୋଲି ଅନୁମାନ କରାଯାଏ । ହରପ୍ପା ବ୍ୟବସ୍ଥା ନଗରକୁ ସର୍ବଦା ଗ୍ରାମ ସହିତ ଯୋଡୁଥିଲା । ସେହି ପ୍ରକ୍ରିୟାରେ କେତେକ ହରପ୍ପା ଲକ୍ଷଣର ଗ୍ରାମ୍ୟ ସ୍ତରକୁ ପ୍ରସାରିତ ହେବା ସ୍ୱାଭାବିକ । ଅବଶ୍ୟ ହରପ୍ପା ଭଳି ଏକ ସୁରକ୍ଷା ପ୍ରଦାନକାରୀ ବ୍ୟବସ୍ଥାର ପତନ ଉତ୍ତାରୁ ଗ୍ରାମାଞ୍ଚଳ ମଧ୍ୟ ପ୍ରଶାସନିକ ଓ ଆର୍ଥିକ ଦୃଷ୍ଟିରୁ ଖୁବ୍ କ୍ଷୟକ୍ଷତିର ସମ୍ମୁଖୀନ ହୋଇଥାଇପାରେ । କେତେକ ପୁରାତାତ୍ତ୍ୱିକ ସଂସ୍କୃତିରେ ଦେଶ ଏବଂ କାଳ ଦୃଷ୍ଟିରୁ ହରପ୍ପା ସଂସ୍କୃତିର ସାତତ୍ୟ ରହିଥିଲା; ଅନ୍ୟ କେତେକ ଅଞ୍ଚଳରେ ଉତ୍ତର-ହରପ୍ପା ଓ ପରବର୍ତ୍ତୀ ସଂସ୍କୃତି ମଧ୍ୟରେ ପାରସ୍ପରିକ ଅତିକ୍ରମଣ ରହିଥିଲା । ତେଣୁ ହରପ୍ପା ସଂସ୍କୃତିର ସାତତ୍ୟରେ (continuity) ଅପ୍ରତ୍ୟାଶିତ କିଛି ନାହିଁ । ମାତ୍ର ଉକ୍ତ ସାତତ୍ୟ ବା ନିରନ୍ତରତା ପୁରାଣ-କିମ୍ବଦନ୍ତୀ, କର୍ମକାଣ୍ଡ ଏବଂ ପରମ୍ପରାର ଅବଧାରଣା ମଧ୍ୟରେ ସୀମିତ ରହିବାର ସମ୍ଭାବନା ରହିଛି, କାରଣ ହରପ୍ପାର ଭୌତିକ ସଂସ୍କୃତିରେ ସାତତ୍ୟ ରହିପାରିଲା ନାହିଁ ।

ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀରେ ଭାରତ-ଇରାନ ସୀମାନ୍ତବର୍ତ୍ତୀ ପ୍ରଦେଶରେ ଗତିବିଧି ତୀବ୍ର ହେବାକୁ ଆରମ୍ଭ କଲା । ଉତ୍ତର-ପଶ୍ଚିମ ଭାରତକୁ ଏହି କାଳରେ ଘୋଡ଼ା ଏବଂ 'ସ୍ପୋକ' ଥିବା ଚକ ଲାଗିଥିବା ରଥର ଆଗମନ ହେଲା । ଭାରତ ଉପମହାଦେଶ ପାଇଁ ଉଭୟ ଘୋଡ଼ା ଓ 'ସ୍ପୋକ' ଥିଲା ନୂଆ ଅନୁଭବ । ଏହାଫଳରେ ସୀମାନ୍ତବର୍ତ୍ତୀ କ୍ଷେତ୍ରକୁ ଯିବା-ଆସିବାର ପ୍ରକ୍ରିୟା ସହଜ ଓ ତ୍ୱରାନ୍ୱିତ ହେଲା । ଉକ୍ତ ଧାରା ଏହି ନିକଟ ଅତୀତ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

## ଉତ୍ତର-ପଶ୍ଚିମାଞ୍ଚଳ ବାହାରେ ନୂତନ ପାଷାଣ ଓ ତାମ୍ରପାଷାଣ ସଂସ୍କୃତି

ଉତ୍ତର-ପଶ୍ଚିମାଞ୍ଚଳରେ ନଗରୀୟ ସଭ୍ୟତାର ଉଦ୍ଭବ ଯୋଗୁଁ ଅନ୍ୟ କେତେକ ପ୍ରାକ୍-ନଗରୀୟ ସମାଜ ନା ନଗରୀୟ ସଭ୍ୟତାରେ ସମାହିତ ହୋଇପାରିଲେ, ନା ଅନ୍ତର୍ହିତ ହେଲେ । ବରଂ ଉପକଣ୍ଠର ସମାଜଗୁଡ଼ିକ ହରପ୍ପା ବ୍ୟବସ୍ଥାର ଅଙ୍ଗ ହୋଇଗଲେ । ମାତ୍ର ଉପକଣ୍ଠର ସମାଜ ବାହାରେ ଆହୁରି ଅନେକ ଶିକାରୀ-ସଂଗ୍ରାହକ, ପଶୁଚାରଣ ଏବଂ କୃଷକ ଥିଲେ, ଯେଉଁମାନେ ଉତ୍ତର-ପଶ୍ଚିମ ଭାରତରେ ସଂଘଟିତ ହେଉଥିବା ପରିବର୍ତ୍ତନ ଦ୍ୱାରା ହୁଏତ ଆଦୌ ପ୍ରଭାବିତ ହୋଇ ନ ଥିଲେ ଅଥବା ଅତି ଅଳ୍ପ ମାତ୍ରାରେ ପ୍ରଭାବିତ ହୋଇଥିଲେ । ସେହି ସମାଜଗୁଡ଼ିକରେ ପରିବର୍ତ୍ତନ ଆଣିବାର ସାମର୍ଥ୍ୟ ରହିଥିଲା ତାମ୍ରପାଷାଣ

ସଂସ୍କୃତିର । ମୁଖ୍ୟତଃ ପଥର ଓ ଧାତୁ ମଧ୍ୟରେ ତମ୍ବା ତିଆରି ଶିଳ୍ପସାମଗ୍ରୀକୁ ବ୍ୟବହାର କରି ପରିବର୍ତ୍ତନ ଆରମ୍ଭ ହେଲା । ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ଆଦ୍ୟକାଳରେ ଲୁହାର ଉପଯୋଗ ଆରମ୍ଭ ହେବା ପର୍ଯ୍ୟନ୍ତ ଏହା ଅବ୍ୟାହତ ରହିଲା ।

ଖ୍ରୀ.ପୂ. ଦ୍ୱିତୀୟ ଓ ପ୍ରଥମ ସହସ୍ରାବ୍ଦୀରେ ଉପମହାଦେଶର ଅନେକ ସ୍ଥାନରେ ତାମ୍ରପାଷାଣ ସମାଜର ଅଭ୍ୟୁଦୟ ଦେଖିବାକୁ ମିଳିଥାଏ । କେବେ କେବେ ଏହି ସମାଜ ପୂର୍ବର ନୂତନ ପାଷାଣ ସମାଜକୁ ନିଜର ଅଙ୍ଗ କରିଦେଲା । ଖ୍ରୀ.ପୂ. ତୃତୀୟ ଓ ଦ୍ୱିତୀୟ ସହସ୍ରାବ୍ଦୀ ସମୟର ପୁରାତାତ୍ତ୍ୱିକ ସ୍ଥଳୀରେ, ଯେମିତି କାଶ୍ମୀରର ବୁର୍ଜାହମ ଏବଂ ଗୁଫକରାଲ, ଗାତ ଖୋଳି ନିବାସ କରାଯାଉଥିଲା । ଅଧିତ୍ୟକାର ନରମ ଖଡ଼ିପଥରର ମାଟିକୁ ଖୋଳି ଲୋକ ନିଜ ରହିବାପାଇଁ ଗର୍ତ୍ତ ତିଆରି କରୁଥିଲେ । ସେଠାରୁ କେତେକ ନୀଳରତ୍ନମଣି ପଥରମାଳି ଓ ଏକ ଶିଙ୍ଘା ପଶୁର ଚିତ୍ର ଥିବା ମାଟିପାତ୍ର ମିଳିଛି, ଯାହାକୁ ସିନ୍ଧୁ ସଭ୍ୟତା ସହିତ ଯୋଡ଼ାଯାଉଛି । ମାତ୍ର ଏଭଳିଆ ଶିଳ୍ପ ତଥ୍ୟ ବିନିମୟ ପ୍ରକ୍ରିୟାରେ ବାହାର କ୍ଷେତ୍ରରୁ ଆସି ପହଞ୍ଚିଥାନ୍ତି । ତେଣୁ ତାକୁ ଆଧାର କରି ଉଭୟ ସଂସ୍କୃତି ପ୍ରତ୍ୟକ୍ଷଭାବେ ପରସ୍ପର ସହିତ ସଂଯୋଜିତ ବୋଲି କୁହାଯାଇ ନ ପାରେ । ପଥରରେ ଖୋଦିତ ଏକ ଚିତ୍ରରେ ଶିକାରର ଦୃଶ୍ୟ ବର୍ଣ୍ଣିତ ଅଛି । ଶସ୍ୟ ଅମଳ କାର୍ଯ୍ୟରେ ବ୍ୟବହାର ହେଉଥିବା କେତେକ ପଥର ଉପକରଣ ଏବଂ ଦାଆ ଆକାରର କେତେକ ଉପକରଣର ମଧ୍ୟ-ଏସିଆର ସେହି ଧରଣର ଶସ୍ୟ ଅମଳକାରୀ ଉପକରଣ ସହିତ ସାମଞ୍ଜସ୍ୟ ଥିବା କୁହାଯାଏ । ମାତ୍ର ତା' ବାହାରେ ଆଉ କିଛି ମିଳିନି, ଯାହାକୁ ଆଧାର କରି ସମ୍ବନ୍ଧ ସ୍ଥାପିତ କରିହେବ । ଉପରୋକ୍ତ ଦୁଇଟିଯାକ ସ୍ଥଳୀରେ ଏବଂ ଭାରତର ଅନ୍ୟଆଡ଼େ ମଧ୍ୟ ସମାଧିସ୍ଥଳ ମିଳିଛି, ଯାହା କୁଡ଼ିଆ ବା ବସତିସ୍ଥଳ ପାଖରେ ଅବସ୍ଥିତ । ଦ୍ୱିତୀୟତଃ, କବରର ତଳେ କେତେକ କ୍ଷେତ୍ରରେ ମୃତବ୍ୟକ୍ତି ସହିତ ପଶୁଟିଏ – ଯେମିତି କୁକୁର ବି ରହିଛି । ବୁର୍ଜାହମରେ ସିଧା ଛିଡ଼ା ହୋଇଥିବା ଲମ୍ବା ବଡ଼ ପଥର ମଧ୍ୟ ରହିଛି । ତାକୁ କୁହାଯାଏ ସ୍ମାରକ ପଥର ବା ମେନହିର । ଉତ୍ତରାଖଣ୍ଡର ଆଲମୋଡ଼ାର ପାହାଡ଼ରେ ସ୍ଥିତ କେତେକ ସ୍ଥଳୀରେ ମଧ୍ୟ ସମାନତା ଦେଖିବାକୁ ମିଳେ । ଏହାର ଉତ୍ତରକୁ ସ୍ୱାତ ଘାଟୀରେ ଗାନ୍ଧାର କବର ସଂସ୍କୃତିର ବସ୍ତୀମାନଙ୍କରେ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଉତ୍ତରାର୍ଦ୍ଧରେ ଘୋଡ଼ାର ପ୍ରବେଶ ହୋଇସାରିଥିଲା । ସେଠାରେ ପ୍ରଥମ ସହସ୍ରାବ୍ଦୀର ଆଦ୍ୟ ଭାଗ ବେଳକୁ ଲୁହାରେ ତିଆରି ଅସ୍ତ୍ରଶସ୍ତ୍ରର ବ୍ୟବହାର ରହିଥିଲା ବୋଲି ପ୍ରମାଣ ମିଳେ । ଉତ୍ତର ପଶ୍ଚିମ ଭାରତକୁ ଆଫଗାନିସ୍ତାନ ଓ ମଧ୍ୟ-ଏସିଆ କ୍ଷେତ୍ର ସହିତ ସଂଯୋଗ କରୁଥିବା ମାର୍ଗଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା ସ୍ୱାତ ଘାଟୀ ମାର୍ଗ ।

ସ୍ୱାଭାବିକ ଭାବରେ ଆମେ ଜନବସତିର ଖୁବ୍ ପ୍ରସାର ହୋଇଥିବ ମନେକରି ଗାଙ୍ଗେୟ ସମତଳ ଆଡ଼େ ଦୃଷ୍ଟିନିକ୍ଷେପ କରୁ, କାରଣ ଏହା ଥିଲା ଦ୍ୱିତୀୟ ନଗରୀକରଣର

କ୍ଷେତ୍ର । ମାତ୍ର ପଶ୍ଚିମ ଓ ପୂର୍ବ ସମତଳ ଅଞ୍ଚଳର ସଂସ୍କୃତିରେ ଭିନ୍ନ ଭିନ୍ନ କ୍ରମ ଦେଖିବାକୁ ମିଳେ । ପଶ୍ଚିମ ସମତଳରେ ବିକଶିତ ହୋଇଥିବା ଆଦ୍ୟତମ ସଂସ୍କୃତି ହେଉଛି 'ଓକର କଲର ପଟେରୀ' (Ochre Colour Pottery ବା OCP) । ଅନୁବାଦରେ ଏହାକୁ ଗୈରିକ ମୃଦ୍‌ଭାଣ୍ଡ ସଂସ୍କୃତି କୁହାଯାଇପାରେ । ଏହା ଜଳବିଭାଜିକା କ୍ଷେତ୍ରରେ ମଧ୍ୟ ପ୍ରାପ୍ତ ହୋଇଛି । ଏହି ସଂସ୍କୃତିର ସାକ୍ଷ୍ୟ ଅନ୍ତରାଜିଖେଡ଼ା, ଲାଲକିଲା ଏବଂ ହୁଲାସ ଆଦି ସ୍ଥଳୀରୁ ମିଳିଥାଏ । ଆଗରୁ OCPକୁ ନିମ୍ନମାନର ହରପ୍ପା ଶିଳ୍ପ ବୋଲି କୁହାଯାଉଥିଲା । ଏ ମଧ୍ୟରେ ହୁଲାସର ଆଦ୍ୟ ପର୍ଯ୍ୟାୟରେ କେତେକ ଉତ୍ତର-ହରପ୍ପା ଅବଶେଷ ପ୍ରାପ୍ତ ହୋଇଛି । ତା' ସତ୍ତ୍ୱେ OCP ଏବଂ ହରପ୍ପା ମଧ୍ୟରେ ବଳିଷ୍ଠ ସମ୍ବନ୍ଧ ଯୋଡ଼ାଯାଇ ପାରୁନାହିଁ । ହରିଆଣା ଓ ପଞ୍ଜାବର କେତେକ ସ୍ଥଳୀରେ ଉତ୍ତର-ହରପ୍ପା ମୃଦ୍‌ଭାଣ୍ଡ (ମାଟିପାତ୍ର) ଏବଂ ପରବର୍ତ୍ତୀ ସମୟର ଲୋକଙ୍କର ଚିତ୍ରିତ ଧୂସର ମୃଦ୍‌ଭାଣ୍ଡ (Painted Grey Ware ବା PGW) ମଧ୍ୟରେ ପାରସ୍ପରିକ ଅତିକ୍ରମଣ ଦେଖିବାକୁ ମିଳିଥାଏ । ଏହାର ଅର୍ଥ ହେଲା– ଉତ୍ତର-ହରପ୍ପା ମୃଦ୍‌ଭାଣ୍ଡରେ ଚିତ୍ରିତ ଧୂସର ମୃଦ୍‌ଭାଣ୍ଡର ଲକ୍ଷଣ ଏବଂ ଚିତ୍ରିତ ଧୂସର ମୃଦ୍‌ଭାଣ୍ଡରେ ଉତ୍ତର-ହରପ୍ପାର ଲକ୍ଷଣ କିଛି କିଛି ରହିଥାଏ । ଏଥିରୁ ଆଭାସ ମିଳେ ଯେ, ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ସାମାନ୍ୟ ପୂର୍ବରୁ PGWର ପ୍ରବେଶ ହୋଇଥିଲା । PGWର ଉତ୍ତର ପର୍ଯ୍ୟାୟରେ ଲୁହାର ବ୍ୟବହାର ଆସିଥିଲା । ସମ୍ଭବତଃ ଏହି ପ୍ରମାଣର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଦିଗ ହେଲା ଉକ୍ତ କ୍ଷେତ୍ରରେ ହରପ୍ପା ବିଚାରର ଖୁବ୍ ଅଳ୍ପ ସାତତ୍ୟ (continuity) ଦେଖିବାକୁ ମିଳେ । ଏମିତିରେ ବି ପଶ୍ଚିମ ଗାଙ୍ଗେୟ ସମତଳର ସଂସ୍କୃତି ଏବଂ ହରପ୍ପାର ଶିଳ୍ପାବଶେଷ ମଧ୍ୟରେ କୌଣସି ସାମଞ୍ଜସ୍ୟ ନ ଥାଏ । ସେ ଯାହାହେଉ, ଏହି ସଂସ୍କୃତିଗୁଡ଼ିକରେ ନଗରୀୟ କେନ୍ଦ୍ରକୁ ନେଇ କୌଣସି ଧାରଣା ନ ଥିଲା, କାରଣ ତା' ପାଇଁ ଆବଶ୍ୟକ ହେଉଥିବା ପୂର୍ବ ସର୍ତ୍ତର ସେଠାରେ କୌଣସି ଉପସ୍ଥିତି ନ ଥିଲା ।

ପୂର୍ବଦିଗକୁ ଗଲେ ଆହୁରି ସାଂସ୍କୃତିକ ସମ୍ବନ୍ଧ ଥିବାର ଜଣାପଡ଼େ । ସେଠାରେ ତମ୍ବାରେ ନିର୍ମିତ ଅନେକ ବସ୍ତୁ ଏକାଠି ପୋତା ହୋଇଥିବାର ଦେଖାଯାଇଛି । ବସ୍ତୁଗୁଡ଼ିକ ମଧ୍ୟରେ ରହିଛି : ବର୍ଚ୍ଛାର ମୁନ, ଖୋରପି, ଛିନି (celts), ମୁନିଆଁ ତରବାରୀ ଏବଂ ମାନବବତ୍ ମନେହେଉଥିବା ଆକୃତି ଇତ୍ୟାଦି । ଏହି ବସ୍ତୁଗୁଡ଼ିକର ନିର୍ମାଣରେ ପ୍ରଭାବୋତ୍ପାଦକ କୁଶଳତା ଥିବାର ଜଣାପଡ଼େ । କେବେ କେବେ ଏସବୁ ଗଭୀର ଖନନ କ୍ରମରେ ପ୍ରାପ୍ତ ହୁଏ, ମାତ୍ର ଅଧିକାଂଶ ଅବସରରେ ମାଟିର ଉପର ଭାଗରେ ମଧ୍ୟ ଏହା ପଡ଼ିଥିବାର ଦେଖାଯାଏ । ଛୋଟନାଗପୁର ଏବଂ ଆହୁରି ପୂର୍ବ ଅଞ୍ଚଳରେ ମିଳୁଥିବା ସେହିସବୁ ଜିନିଷ ସହିତ ସେଗୁଡ଼ିକର ସମ୍ବନ୍ଧ ରହିଛି ବୋଲି କୁହାଯାଉଛି । ସେ ଯାହାହେଉ, ଉଲ୍ଲିଖିତ ବସ୍ତୁଗୁଡ଼ିକର ସମୟକାଳ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ବୋଲି ନିର୍ଦ୍ଧାରଣ ହୋଇଛି ।

PGW ସଂସ୍କୃତି ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀରେ ପଶ୍ଚିମ ଗାଙ୍ଗେୟ ସମତଳରେ ପ୍ରମୁଖ ହୋଇ ରହିଥିଲା । ଏହା ସୈନ୍ଧବ-ଗାଙ୍ଗେୟ ଜଳବିଭାଜିକାରୁ ଆରମ୍ଭ କରି ଗଙ୍ଗା-ଯମୁନାର ସଙ୍ଗମସ୍ଥଳ ଯାଏଁ ପ୍ରସାରିତ ହୋଇଥିଲା । PGW ସଂସ୍କୃତିର କେତେକ ପୁରାତାତ୍ତ୍ୱିକ ସ୍ଥଳୀକୁ ହାକ୍ରା ସମତଳରେ ଉତ୍ତର-ହରପ୍ପା ସନ୍ଦର୍ଭରେ ଚିହ୍ନିତ କରାଯାଇଛି । ଏହି ସଂସ୍କୃତିରେ ଲୁହାର ଆଦ୍ୟ ବ୍ୟବହାର ଦେଖିବାକୁ ମିଳେ, ଯାହା ପୂର୍ଣ୍ଣରୂପରେ ଗାଙ୍ଗେୟ ସମତଳର ସହରୀକରଣ ପୂର୍ବରୁ ଏବଂ ସହରୀକରଣର ସହାୟତାରେ ବିକଶିତ ହୋଇଥିଲା । ଏହାର ସମୟକାଳ ହେଲା ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟବର୍ତ୍ତୀ ସମୟ । ଲୌହଯୁଗ ସଂସ୍କୃତିରେ ପ୍ରଥମେ ଲୁହାର ବ୍ୟବହାର ଅସ୍ତ୍ରଶସ୍ତ୍ର ନିର୍ମାଣ କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ପରେ ଲୁହାର ଅନ୍ୟାନ୍ୟ ବସ୍ତୁ ନିର୍ମାଣରେ ବ୍ୟବହାର ହୁଏ । ବିଶେଷକରି ଘରୋଇ ଉପକରଣରେ ଲୁହାର ପରେ ବ୍ୟବହାର ହୋଇଥାଏ । ଏହି କ୍ଷେତ୍ରରେ ମଧ୍ୟ ତାହା ଦେଖିବାକୁ ମିଳିଥିଲା । କୃଷିଜୀବୀ ରୂପରେ ଲୋକ ପ୍ରଥମେ ଗହମ ଏବଂ ଯବ ଚାଷ କଲେ, ଯଦିଓ ସେବେଳର କିଛି ଧାନ ମଧ୍ୟ ମିଳିଛି । ତା' ସହିତ ଗୋପାଳନର ମଧ୍ୟ ପ୍ରମାଣ ମିଳିଛି । ଗୋପାଳନରୁ ଦୁଗ୍ଧଜାତ ପଦାର୍ଥ ମିଳିଲା । ତା' ସହିତ ମାଂସ ମଧ୍ୟ ମିଳିଲା, ଯାହାର ପ୍ରମାଣ ମିଳେ ଚୁଲି ପାଖରୁ ମିଳିଥିବା ଗୋରୁହାଡ଼ରୁ । ହାଡ଼ରୁ ପୁଣି ଜଣାପଡ଼େ ଯେ, ତାକୁ କଟାଯାଇଛି । ଅର୍ଥାତ୍ ତା'ର ମାଂସକୁ ଖାଦ୍ୟ ରୂପରେ ବ୍ୟବହାର କରାଯାଇଛି । PGW ସଂସ୍କୃତିର ମହତ୍ତ୍ୱପୂର୍ଣ୍ଣ ଜନବସତିଗୁଡ଼ିକ ମଧ୍ୟରେ ପଞ୍ଜାବର ରୋପଡ଼, ହରିଆଣାର ଭଗବାନପୁରା, ଅତ୍ରାଂଜିଖେଡ଼ା, ହସ୍ତିନାପୁର, ଅହିଛତ୍ର ଏବଂ ଉତ୍ତରପ୍ରଦେଶର ଜାଖେଡ଼ା ।

ମଧ୍ୟ-ଗାଙ୍ଗେୟ ସମତଳରେ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର କେତେକ ସ୍ଥଳୀ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀ ବେଳକୁ ସ୍ପଷ୍ଟ ରୂପରେ ବିକଶିତ ହେଲା । ଉକ୍ତ ସ୍ଥଳୀଗୁଡ଼ିକ ମଧ୍ୟରେ ପ୍ରମୁଖ ଥିଲା : ପିପ୍ରହା ଏବଂ ଗନୱାରିଆ (ପରେ ଏହି ଉଭୟ ସ୍ଥାନ ବୌଦ୍ଧଧର୍ମର ଧର୍ମପୀଠ ହେଲା), ସୋହଗୌରା, ନରହନ ଏବଂ ଖୈରାଡିହ । ମିର୍ଜାପୁରର ଦକ୍ଷିଣକୁ ଥିବା ଅନେକ ସ୍ଥଳୀ ରହିଛି । ଉକ୍ତ ସ୍ଥଳୀଗୁଡ଼ିକର ସୋନ ଘାଟୀ ଏବଂ ଘାଟୀ ମଧ୍ୟଦେଇ ଦକ୍ଷିଣକୁ ଯାଇଥିବା ମାର୍ଗ ଉପରେ ନିୟନ୍ତ୍ରଣ ଥିଲା । ଆହ୍ଲାବାଦର ଦକ୍ଷିଣରେ ଥିବା ବେଲାନ ଘାଟୀରେ ଚାଉଳର ଦାନା ପ୍ରାପ୍ତ ହୋଇଛି । କୁହାଯାଏ, ଖ୍ରୀ.ପୂ. ଷଷ୍ଠ ସହସ୍ରାବ୍ଦୀରୁ ସେଠାରେ ଧାନର ଚାଷ ହୋଇଆସୁଥିଲା । ମାତ୍ର ଏହି ଦାବିକୁ ଗ୍ରହଣ କରାଯାଏ ନାହିଁ । ଧାନଚାଷର ଆରମ୍ଭ ସେଠାରେ ଅନେକ ପରେ ହୋଇଥିବ ବୋଲି ମନେକରାଯାଏ । ବୃକ୍ଷରୋପଣ ଏବଂ ପଶୁପାଳନର ପ୍ରମାଣ କୋଲ୍ଡିହବା ଏବଂ ଚୋପାନୀ-ମାଣ୍ଡୋରୁ ମିଳିଛି । ଗାଙ୍ଗେୟ ସମତଳର ଜନବସତିମାନ ଖ୍ରୀ.ପୂ. ତୃତୀୟ ଓ ଦ୍ୱିତୀୟ ସହସ୍ରାବ୍ଦୀ ବେଳର । କେତେକ ବସତି, ଯେମିତି ଗଙ୍ଗା ଓ ସରଜୁର ସଙ୍ଗମସ୍ଥଳରେ ସ୍ଥିତ ଚିରାଂଦ, ନୂତନ ପାଷାଣକାଳୀନ । ଏହି ବସତିମାନ

ପ୍ରଥମ ଶତାବ୍ଦୀ ପର୍ଯ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲେ । ଘାସପତ୍ରରେ ନିର୍ମିତ କୁଡ଼ିଆରେ ଚିକ୍କଣ ପଥରରୁ କୁରାଢ଼ି ଏବଂ କ୍ଷୁଦ୍ର ପାଷାଣାକୃତି, ହାଡ଼ରୁ ତିଆରି ଉପକରଣ, ଶସ୍ୟକୁ ଗୁଣ୍ଡ କରିବାପାଇଁ ଶିଳ-ଶିଳପୁଆ ଏବଂ ପଶୁ (ଷଣ୍ଢ)ର ଆକୃତି ଥିବା ମାଟିପାତ୍ର ଆଦି ବ୍ୟବହାର୍ଯ୍ୟ ଶିଳ୍ପାବଶେଷମାନ ମିଳିଛି । ସଂସ୍କୃତିର ପରବର୍ତ୍ତୀ ପର୍ଯ୍ୟାୟରେ ତମ୍ବାର ଶିଳ୍ପ ଉପକରଣ ଏବଂ ଆହୁରି ପରେ କେତେକ ଲୁହାରୁ ତିଆରି ଉପକରଣ ଥିବାର ପ୍ରମାଣ ମିଳିଛି । ଏହି ଦୃଷ୍ଟିରୁ ଦେଖିଲେ, ଗାଙ୍ଗେୟ ସମତଳରେ ସଂସ୍କୃତିର ବିକାଶ ସମ୍ବନ୍ଧରେ ଉପଯୋଗୀ ସୂଚନା ପାଇବା ପାଇଁ ଚିରାଂଦକୁ ଏକ ମହତ୍ତ୍ୱପୂର୍ଣ୍ଣ ଉତ୍ସ ଭାବରେ ଗ୍ରହଣ କରାଯାଇ ପାରିବ ।

ଗାଙ୍ଗେୟ ସମତଳର ସହରୀ କେନ୍ଦ୍ରର ବିଶେଷତ୍ୱ ହେଲା ନର୍ଥର୍ଣ୍ଣ ବ୍ଲେକ୍ ପଲିସ୍ଡ ୱେର୍ (Northern Black Polished Ware ବା NBPW) । ଏହାକୁ ଓଡ଼ିଆରେ ଉତ୍ତର କୃଷ୍ଣ ଚିକ୍କଣ ଭାଣ୍ଡ କୁହାଯାଇ ପାରିବ । ଏହି ଭାଣ୍ଡ ଅର୍ଥାତ୍ NBPWର ଉଦ୍‌ଗମ ସ୍ଥାନ ହେଲା ଗାଙ୍ଗେୟ ସମତଳ କ୍ଷେତ୍ର । ଲୁହାପଥରକୁ ତରଳାଇବା ପାଇଁ ଏଥିରେ ଉଚ୍ଚ ତାପ ସୃଷ୍ଟିକାରୀ ଜ୍ୱଳନ ଟେକ୍‌ନିକ୍‌ର ବ୍ୟବହାର ହୁଏ । ତା' ସହିତ ସ୍ଥାନୀୟ ନାଲି ମାଟିର ମଧ୍ୟ ତହିଁରେ ଉପଯୋଗ ହୁଏ । ବିଳାସପୂର୍ଣ୍ଣ ଭାଣ୍ଡ ରୂପରେ ଏହାର ବିସ୍ତୃତ ବିତରଣରୁ ଉପମହାଦେଶର ବିଭିନ୍ନ ସ୍ଥାନରେ ବିନିମୟ ଓ ବ୍ୟାପାରର ଗତିବିଧିକୁ ଅନୁଶୀଳନ କରିହୁଏ ।

ଆହୁରି ପୂର୍ବ ଦିଗକୁ ଗଲେ ବଙ୍ଗରେ ଅନେକ ତାମ୍ରପାଷାଣ ସ୍ଥଳୀ ଭାଗିରଥୀର ପଶ୍ଚିମରେ ସ୍ଥିତ ଘାଟୀ ଅଞ୍ଚଳରେ ଦେଖିବାକୁ ମିଳିଥାଏ । ବିଶେଷକରି ଦାମୋଦର ଏବଂ ଅଜୟ ଘାଟୀରେ ସ୍ଥଳୀଗୁଡ଼ିକ ରହିଥିବାର ଜଣାଯାଏ । ଏହା ପଛରେ ସମ୍ଭାବ୍ୟ କାରଣ ହେଲା ଯେ, ଛୋଟନାଗପୁରର ତମ୍ବା ଉତ୍ପାଦନକାରୀ କ୍ଷେତ୍ର ଉପରେ ଉକ୍ତ ସ୍ଥଳୀଗୁଡ଼ିକର ନିର୍ବିରୋଧ ପ୍ରବେଶ ରହିଥିଲା । ପାଣ୍ଡୁ ରାଜାର ଡିବି, ମହିଷୀଦଳ ଏବଂ ମଙ୍ଗଳକୋଟ ଆଦି କେତେକ ବସତି ନୂତନ ପାଷାଣ ସ୍ଥଳୀ ରୂପେ ଆରମ୍ଭ ହେଲା । ମାତ୍ର କାଳକ୍ରମେ ତହିଁରେ ଧାତୁର ବ୍ୟବହାର ହେଲା । ଏଠାରେ ମଧ୍ୟ ରହଣି ପରିସର ମଧ୍ୟରେ ସମାଧିସ୍ଥଳମାନ ରହିଥିଲା । ଅଧିକ ପୂର୍ବଦିଗରେ ଆସାମରେ ସ୍ଥିତ ନୂତନ ପାଷାଣ ସ୍ଥଳୀଗୁଡ଼ିକ ମଧ୍ୟରେ ଦାଓଜାଲି ହାଡ଼ିଂ, କାଚାର କ୍ଷେତ୍ର ଓ ମେଘାଳୟର ଗାରୋ ପାହାଡ଼ର କ୍ଷେତ୍ର ଅନ୍ୟତମ । ନୂତନ ପାଷାଣ ସ୍ଥଳୀ ଓଡ଼ିଶାର କୁଚାଇ ବା ଗୋଲବାଇ ଶାସନରେ ଏବଂ ମଣିପୁରର କେତେକ ସ୍ଥଳରେ ମଧ୍ୟ ଦେଖିବାକୁ ମିଳିଛି । ଭାରତର ସାଂସ୍କୃତିକ ସମ୍ବନ୍ଧ ଦକ୍ଷିଣ-ପୂର୍ବ ଏସିଆ ଏବଂ ପୂର୍ବ ଏସିଆ ସହିତ ମଧ୍ୟ ରହିଥିଲା ବୋଲି ମତପ୍ରକାଶ ପାଉଛି । ମାତ୍ର ଏହି ମତ ଗବେଷଣା ସାପେକ୍ଷ । ଏହିସବୁ କ୍ଷେତ୍ରର ନୂତନ ପାଷାଣ ସଂସ୍କୃତି ମଧ୍ୟରେ ବିଭିନ୍ନ ଉପକରଣ କ୍ଷେତ୍ରରେ ସାମଞ୍ଜସ୍ୟ ମିଳିଛି । ଉପକରଣଗୁଡ଼ିକ ମଧ୍ୟରେ ରହିଛି : କୁରାଢ଼ି, ଦାଆ ଏବଂ କେତେକ ପଥର ଉପକରଣ ଓ ଡୋରିରେ ଟଣାଯାଉଥିବା ମୃଦ୍‌ଭାଣ୍ଡ ।

ହରପ୍ପା ସ୍ଥଳୀ ଏବଂ ଦକ୍ଷିଣ ରାଜସ୍ଥାନର ସ୍ଥଳୀ ମଧ୍ୟରେ କେତେକ ପରୋକ୍ଷ ସମ୍ବନ୍ଧ ରହିଥାଇପାରେ ବୋଲି କୁହାଯାଉଛି । ଦକ୍ଷିଣ ରାଜସ୍ଥାନର ଉକ୍ତ ସ୍ଥଳୀଗୁଡ଼ିକ ମଧ୍ୟରେ ଆହର, ଗୁଲିନ୍ଦ ଏବଂ ବାଲାଥଲ ଅନ୍ୟତମ । ଏହି ସ୍ଥଳୀଗୁଡ଼ିକରୁ ହରପ୍ପା ମାଳି ପ୍ରାପ୍ତ ହୋଇଛି । ତମ୍ବା ପଥର ଆରାବଲୀ ପାହାଡ଼ରେ ମିଳୁଥିଲା । ଏହି କାରଣରୁ ସେଠାରେ ବସତି ସ୍ଥାପନ ହେଲା । ଏହି ସମ୍ବନ୍ଧ ତମ୍ବାର ଖନନକୁ ପ୍ରୋତ୍ସାହିତ କଲା । ଏକ ଅଭିନବ ମୃଦ୍‌ଭାଣ୍ଡ ନିର୍ମାଣ ଶୈଳୀ ଏହି ସମୟରେ ଦୃଷ୍ଟିଗୋଚର ହେଲା । ଏଥିରେ ଉଭୟ କଳା ଓ ଲାଲ୍ ରଙ୍ଗର ବ୍ୟବହାର ରହିଛି । ସେଥିପାଇଁ ତାକୁ କହନ୍ତି 'କୃଷ୍ଣ ଲୋହିତ ମୃଦ୍‌ଭାଣ୍ଡ' (Black and Red Ware) । ଗୁଜରାଟ, ରାଜସ୍ଥାନ, ଦୋଆବର କେତେକ ସ୍ଥାନ, ମଧ୍ୟ-ଗଙ୍ଗା ଘାଟୀ ଏବଂ ବଙ୍ଗର କେତେକ ଅଞ୍ଚଳରେ ଏହାର ବିସ୍ତୃତ ପ୍ରସାର ଦେଖିବାକୁ ମିଳେ । ଏହି ମୃଦ୍‌ଭାଣ୍ଡ ଗୋଟାଏ ସଂସ୍କୃତିର ନୁହେଁ । ପୁଣି ଉକ୍ତ ସ୍ଥଳୀମାନଙ୍କରେ କେବଳ ଏହି ମୃଦ୍‌ଭାଣ୍ଡ ମିଳେ ବୋଲି କହିହେବ ନାହିଁ । ଯଦିଓ ଅଧିକାଂଶ କ୍ଷେତ୍ରରେ ଏହା ହେଲା ସେଠାକାର ପ୍ରଧାନ ମୃଦ୍‌ଭାଣ୍ଡ । ଏହି ମୃଦ୍‌ଭାଣ୍ଡର ଆଦ୍ୟୋନ୍ମେଷ ତିଥି ଖ୍ରୀ.ପୂ. ଦ୍ୱିତୀୟରୁ ପ୍ରଥମ ସହସ୍ରାବ୍ଦୀ ବୋଲି ମତପ୍ରକାଶ ପାଏ ।

ମଧ୍ୟପ୍ରଦେଶର ମାଳବ ପୁରାତାତ୍ତ୍ୱିକ ସ୍ଥଳୀମାନଙ୍କର କେବେ କେବେ ନୀଳରତ୍ନ ମଣି ଓ ରତ୍ନପଥରର ମାଳି ପ୍ରାପ୍ତ ହୋଇଥାଏ, ଯାହା ଉତ୍ତର-ହରପ୍ପା ସଂସ୍କୃତି ସହିତ ସମ୍ବନ୍ଧର ଆଭାସ ଦିଏ । କୟଥା ଏବଂ ନଭଦାଟୋଲିର ପ୍ରମୁଖ ସ୍ଥଳୀରୁ, ଯାହା ଆହୁରି ଆହୁରି ପୁରୁଣା, ଏକ ଅଧିକ ଜଟିଳ ବସତିର ସନ୍ଧାନ ମିଳେ । ନଭଦାଟୋଲିର ସମ୍ମୁଖରେ ନର୍ମଦାର ଆରପଟରେ ମାହେଶ୍ୱର ଅବସ୍ଥିତ । ହୁଏତ ନଦୀ ପାରିହେବା ପାଇଁ ଏହା ଥିଲା ଘାଟ । ନର୍ମଦା ନଦୀବନ୍ଧ ସମ୍ପୂର୍ଣ୍ଣ ହେବା ପୂର୍ବରୁ ପୁରାତାତ୍ତ୍ୱିକ ଅବଶେଷଗୁଡ଼ିକୁ ସଂରକ୍ଷଣ କରିବା ସକାଶେ ମଧ୍ୟପ୍ରଦେଶରେ କେତେକ ଉଦ୍ୟମ ହୋଇଥିଲା । ସେତେବେଳେ ପୁରାତାତ୍ତ୍ୱିକ ସ୍ଥଳୀଗୁଡ଼ିକରୁ ପ୍ରଭାବଶାଳୀ ତାମ୍ରପାଷାଣ ସ୍ତର ନଜରକୁ ଆସିଲା । ତାହା ସବତପୁର, ପୀଠନଗର ଏବଂ ମଣ୍ଡସୌରରେ ମିଳିଥିଲା । ଉକ୍ତ ତାମ୍ରପାଷାଣ ଶିଳ୍ପାବଶେଷରୁ କିଛି ମାଳବ ସଂସ୍କୃତି ସହିତ ସମ୍ବନ୍ଧିତ ଥିଲା । ଅନ୍ୟଗୁଡ଼ିକ ହୋସଙ୍ଗାବାଦ କ୍ଷେତ୍ର ଦେଇ ଦକ୍ଷିଣକୁ ଯାଉଥିବା ମାର୍ଗରେ ଦେଖିବାକୁ ମିଳିଥିଲା । ଏହି ମାର୍ଗ ପରବର୍ତ୍ତୀ ସମୟରେ ଖୁବ୍ ପ୍ରସିଦ୍ଧି ଅର୍ଜନ କଲା ।

ଉତ୍ତର ମହାରାଷ୍ଟ୍ରର ଦୈମାବାଦଠାରେ ଚାରିଗୋଟି ପ୍ରଭାବୋତ୍ପାଦକ ତାମ୍ର ବସ୍ତୁ ମିଳିଛି, ଯାହା ଉତ୍ତର-ହରପ୍ପା ଶୈଳୀର ସ୍ମରଣ କରାଏ । ଏଥିରେ ଗୋଟାକରେ ଜଣେ ଲୋକ ବଳଦର ଏକ ଯୋଡ଼ିକୁ ହଂକାରି ନେଉଛି । ଅନ୍ୟ ତିନୋଟି ବସ୍ତୁରେ ପ୍ରତ୍ୟେକଟିରେ ଚକ ଉପରେ ଗୋଟାଏ ଗଣ୍ଡାର, ଗୋଟାଏ ମଇଁଷି ଏବଂ ଗୋଟାଏ ହାତୀ ରହିଛି । କୌଣସି

ତାମ୍ରପାଷାଣ ସ୍ଥଳୀରେ ଏଭଳି ଅସାମାନ୍ୟ ମୂର୍ତ୍ତି ଆଗରୁ ଦେଖିବାକୁ ମିଳେ ନାହିଁ । ଯଦି ଶୈଳୀର ପରିଚୟକୁ ସ୍ୱୀକାର କରିନିଆଯାଏ, ତେବେ ଏହା ଗୁଜରାଟ ମାଧ୍ୟମରେ ହରପ୍ପା ସହିତ ସମ୍ବନ୍ଧକୁ ଦର୍ଶାଏ । ମହାରାଷ୍ଟ୍ରର ଜୋରୱେ ତାମ୍ରପାଷାଣ ସ୍ଥଳୀ ସହିତ ମଧ୍ୟ ହରପ୍ପାର ଏଭଳି ସମ୍ବନ୍ଧ ରହିଥିବ ବୋଲି ମତପ୍ରକାଶ ପାଏ । ତାମ୍ରପଥରର ଖନନ ଏବଂ ତାମ୍ର ଉପକରଣର ଉତ୍ପାଦନ କାର୍ଯ୍ୟରେ ଜୋରୱେ ଖୁବ୍ ସକ୍ରିୟ ଥିଲା । ଏକା ମାତ୍ରାରେ ଆଗ୍ରହପ୍ରଦ ହେଉଛି ମହାରାଷ୍ଟ୍ରର ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀକାଳୀନ ଇମାମଗାଓଁ ତାମ୍ରପାଷାଣ ସ୍ଥଳୀ । ଏହି ସ୍ଥଳୀକୁ ବିସ୍ତୃତଭାବେ ଖନନ କରାଯାଇଛି । ସର୍ଦ୍ଦାରତନ୍ତ୍ରର ଏହା ଏକଦା କେନ୍ଦ୍ର ହୋଇଥିବ ବୋଲି ବିଚାର କରାଯାଏ ।

ଇମାମଗାଓଁର ଲୋକେ ଉଭୟ କୃଷି ଏବଂ ପଶୁପାଳନ କରୁଥିଲେ । ସାଧାରଣତଃ ଯବ ଓ ବାଜରା ଥିଲା ସେମାନଙ୍କର ମୁଖ୍ୟ ଫସଲ । ସବୁଠାରୁ ବଡ଼ କଥା, ସେଠାରେ ଫସଲକୁ ଅଦଳାବଦଳି କରି ଚାଷ କରାଯାଉଥିଲା ଏବଂ କୃଷି କେବଳ ବର୍ଷାଜଳ ଉପରେ ଆଶ୍ରିତ ନ ଥିଲା । ଜଳଭଣ୍ଡାର ପାଇଁ ବନ୍ଧ ରହିଥିବାର ମଧ୍ୟ ତହିଁରୁ ପ୍ରମାଣ ମିଳିଥାଏ । ଘାସପତ୍ରରେ ତିଆରି କୁଡ଼ିଆଗୁଡ଼ିକ ହୁଏତ ଗୋଲ ବା ବର୍ଗାକାର ଥିଲା । ଏଭଳି କୁଡ଼ିଆ ଥିବା ଗାଁମାନଙ୍କୁ ମାଟିର କାନ୍ଥରେ ବେଢ଼ି ଦିଆଯାଇଥିଲା । ଏହା ଅନ୍ୟ ଗାଁରୁ ଆକ୍ରମଣ କରିବାକୁ ଆସୁଥିବା ଲୋକମାନଙ୍କ ପାଇଁ ନ ହେଲେ ସୁଦ୍ଧା ହିଂସ୍ରଜନ୍ତୁର ଆକ୍ରମଣ ପାଇଁ ବାଧକ ରୂପେ କାମ କରୁଥିଲା । ଏଭଳି ହିଂସ୍ରପଶୁ ନିକଟବର୍ତ୍ତୀ ଜଙ୍ଗଲରେ ଭରି ରହିଥିଲେ । ଗୋଟାଏ କଳସ ଥିବା ଚିତ୍ରରେ ହିଂସ୍ରଜନ୍ତୁଗୁଡ଼ିକର ଦୃଶ୍ୟକୁ ଦର୍ଶାଯାଇଛି । ମାଟିରେ ତିଆରି ସ୍ତ୍ରୀ ମୂର୍ତ୍ତି ମଧ୍ୟ ମିଳିଛି । ଆଶ୍ଚର୍ଯ୍ୟର କଥା, ମୂର୍ତ୍ତିଗୁଡ଼ିକର ମୁଣ୍ଡ ନାହିଁ, କିନ୍ତୁ ଉନ୍ନତ ସ୍ତନଯୁଗଳମାନ ରହିଛି, ଯାହା କର୍ମକାଣ୍ଡର ପ୍ରତୀକାତ୍ମକ ମହତ୍ତ୍ୱକୁ ରେଖାଙ୍କିତ କରେ । କେତେକ ମୂର୍ତ୍ତିକୁ ମାଟିପାତ୍ରରେ ରହିଥିବାର ଦେଖାଯାଏ । ସ୍ତ୍ରୀ ମୂର୍ତ୍ତି ତୁଳନାରେ ପୁରୁଷ ମୂର୍ତ୍ତିର ସଂଖ୍ୟା ଅତି କମ୍ । ଏହି ସଂସ୍କୃତିରେ ମୃତ ବ୍ୟକ୍ତିକୁ କବର ଦେବାର ପ୍ରଥା ରହିଥିଲା । ଘରର ଚଟାଣ ତଳେ ଗାତ ଖୋଳି ମୃତ ବ୍ୟକ୍ତିକୁ ରଖାଯାଉଥିଲା । କବରରେ ଆଉ କିଛି ଉପକରଣ ରହୁଥିଲା । ମୃତକ ଯଦି ଶିଶୁ, ତାକୁ ବଡ଼ ମାଟିପାତ୍ରରେ ରଖି ପୋତି ଦିଆଯାଉଥିଲା । ଏଠାରେ ଯାହା ଅବୁଝା ରହିଯାଏ, ତା' ହେଲା ମୃତକର (ଶିଶୁ ନୁହେଁ) ପାଦ ଦୁଇଟିକୁ କାହିଁକି କାଟି ତାକୁ କବର ଦିଆଯାଉଥିଲା । ମହାରାଷ୍ଟ୍ରର ବିଦର୍ଭସ୍ଥିତ ଜୁନାପାଣି ଏବଂ ମହୁରଝରୀ ଆଦି ସ୍ଥଳୀରୁ ମିଳିଥିବା କବରରୁ ଜଣାଯାଏ ଯେ, କେବେ କେବେ ମୃତକଗୁଡ଼ିକୁ ଥାକ ଥାକ କରି ରଖି କବର ଦିଆଯାଉଥିଲା । ମୃତକ ପାଖରେ କବରରେ କୃଷ୍ଣ-ଲୋହିତ-ମୃଦ୍‌ଭାଣ୍ଡ, ଘୋଡ଼ାର କିଛି ସରଞ୍ଜାମ ଏବଂ ଲୁହା ଓ ତମ୍ବାର ବସ୍ତୁ ରଖାଯାଉଥିଲା । ଏହାର ସମ୍ବନ୍ଧ ଏଠାରୁ ଆହୁରି ଦକ୍ଷିଣରେ ମିଳିଥିବା ମହାପାଷାଣ କବର ସହିତ ଦେଖିବାକୁ ମିଳିଥାଏ ।

ଖ୍ରୀ.ପୂ. ତୃତୀୟ ସହସ୍ରାବ୍ଦୀ ବେଳକୁ ଗୋଦାବରୀ, କୃଷ୍ଣା, ତୁଙ୍ଗଭଦ୍ରା, ପେନ୍ନାର ଏବଂ କାବେରୀର ଉପତ୍ୟକାମାନଙ୍କରେ କୃଷକ ସମୁଦାୟମାନେ ବସତି ସ୍ଥାପନ କରିସାରିଥିଲେ । ତନ୍ମଧ୍ୟରୁ କୃଷ୍ଣା ଓ ତୁଙ୍ଗଭଦ୍ରା ନଦୀ ମଧ୍ୟରେ ଥିବା ରାଏଚୁର ଦୋଆବ କ୍ଷେତ୍ର ଆମର ବିଶେଷ ଧ୍ୟାନ ଆକର୍ଷଣ କରେ । କର୍ଣ୍ଣାଟକର ହାଲ୍ଲୁର, କୁପଗାଲ ଏବଂ ମାସ୍କି ଓ ଆନ୍ଧ୍ରର ନାଗାର୍ଜୁନକୋଣ୍ଡାରେ ମଧ୍ୟ କୃଷକ ସମୁଦାୟ ସୃଷ୍ଟି ହୋଇସାରିଥିଲେ । ଅର୍ଦ୍ଧ-ଶୁଷ୍କ କ୍ଷେତ୍ରମାନ ଗୋପାଳନ କରୁଥିବା ଗ୍ରାମବାସୀଙ୍କ ପାଇଁ ଖୁବ୍ ଉପଯୋଗୀ ସିଦ୍ଧ ହେଲା । କୁହାଯାଏ, କର୍ଣ୍ଣାଟକର କୁପଗାଲ ଓ ପିକଲିହାଲ, ଆନ୍ଧ୍ରର ଉଟନୁରରେ ଜମା ହୋଇଥିବା ପାଉଁଶଗଦା ଗୋବର ଜାଳିବା ଯୋଗୁଁ ସୃଷ୍ଟି ହୋଇଥିଲା । ଆନ୍ଧ୍ରର ବୁଡ଼ିହାଲ ଥିଲା ଏକ ଗୋପାଳକ ବସ୍ତି ଏବଂ ସେଠାରେ କଂସେଇଖାନା ମଧ୍ୟ ଆବିଷ୍କୃତ ହୋଇଛି । ମେଣ୍ଢା ଓ ଛେଳି ଏବଂ ପରେ ମଇଁଷିକୁ ପାଳନ କରାଯାଉଥିଲା । ପ୍ରଥମେ ବାଜରାକୁ ବିସ୍ତୃତଭାବେ ଚାଷ କରାଯାଉଥିଲା । ପରେ ଧାନ ଚାଷ ବି କରାଗଲା । ଉଭୟ ଫସଲ ଆର୍ଦ୍ର ଓ ତଳିଆ ଭାଗରେ କରାଯାଉଥିଲା । ଆରମ୍ଭରେ ଏହି ସଂସ୍କୃତିଗୁଡ଼ିକରେ ଧାତୁର ବ୍ୟବହାର ନ ଥିଲା; ବେଶି ପରିମାଣରେ ପଥର ନିର୍ମିତ ଉପକରଣକୁ ବ୍ୟବହାର କରାଯାଉଥିଲା । କ୍ରମେ ହାତତିଆରି ମାଟିପାତ୍ର ବଦଳରେ ଚକ ନିର୍ମିତ ଉନ୍ନତ ମାଟିପାତ୍ର ଦେଖିବାକୁ ମିଳିଲା ।

ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଶେଷବେଳକୁ ତମ୍ବା ଓ ବ୍ରୋଞ୍ଜର ଶିଳ୍ପସାମଗ୍ରୀ ବ୍ୟବହାର ହେଲା, ଯାହାର ସୀମିତ ପ୍ରମାଣ ଦେଖିବାକୁ ମିଳିଥାଏ । ଏହା ପୂର୍ବର ଏକ ନୂତନ ପାଷାଣ ସ୍ଥଳୀ ପୈୟାମପଲ୍ଲୀ (ତାମିଲନାଡୁ)ରେ ଏବଂ ହାଲ୍ଲୁର ଓ ଟି.ନର୍ସିପୁରରେ ବିକଶିତ ହୋଇଥିଲା । ଏହି ସ୍ଥଳୀଗୁଡ଼ିକରେ ଅଧିକ ମାତ୍ରାରେ ବ୍ରୋଞ୍ଜ ଓ ତମ୍ବାର ବସ୍ତୁ, ମାଳି, ସ୍ତ୍ରୀ ମାଟିମୂର୍ତ୍ତି ଏବଂ ଚକ ତିଆରି ମାଟିପାତ୍ରମାନ ପ୍ରାପ୍ତ ହେଲା । ଏକାରକମର ସ୍ଥିତି କର୍ଣ୍ଣାଟକର ସଙ୍ଗନକଲ୍ଲୁ ଆଦି ସ୍ଥଳୀଗୁଡ଼ିକରେ ଦେଖିବାକୁ ମିଳିଲା । ଏ ମଧ୍ୟରୁ କେତେକ ହେଲା ମହାପାଷାଣ କବର ସ୍ଥଳୀ । ହାଲ୍ଲୁର ଏବଂ କୁମାରନହାଲ୍ଲୀରୁ ଲୁହା ବ୍ୟବହାରର ଆଦ୍ୟ ତିଥି ଜଣାପଡ଼େ । ଏହି ତିଥି ହେଲା ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଉତ୍ତରାର୍ଦ୍ଧ ।

ତାମ୍ରପାଷାଣ ସଂସ୍କୃତିର ଅଧ୍ୟୟନରୁ କେତେଗୁଡ଼ିଏ ସମାନ ବିଶେଷତା ଦେଖିବାକୁ ମିଳେ । ଏଣିକି ପୁରାତତ୍ତ୍ୱର ଏକ ସ୍ଥାପିତ ଦୃଷ୍ଟିକୋଣ ହେଲା ଜନବସତି ଓ ପର୍ଯ୍ୟାବରଣ ମଧ୍ୟରେ ନିବିଡ଼ ସମ୍ବନ୍ଧ ଖୋଜିବା । କେତେକ ଜନବସତିରେ ସ୍ଥାନବିଶେଷ ଏବଂ କ୍ଷେତ୍ର ମଧ୍ୟରେ ଚାଲିଥିବା ପାରସ୍ପରିକ ଅନ୍ତଃକ୍ରିୟା ପରବର୍ତ୍ତୀ ସମୟର ଐତିହାସିକ ପରିବର୍ତ୍ତନ ନିମନ୍ତେ ଏକ ମହତ୍ତ୍ୱପୂର୍ଣ୍ଣ ଲକ୍ଷଣ ସିଦ୍ଧ ହୁଏ । ଆଦ୍ୟ ବସତିର ଛାପ ଅପରିବର୍ତ୍ତିତ ରୂପରେ ଜାରି ରହେନାହିଁ; ତା' ସତ୍ତ୍ୱେ ଏହି ପାରସ୍ପରିକ ଅନ୍ତଃକ୍ରିୟାର ମହତ୍ତ୍ୱ ବଜାୟ ରହେ ।

ସାଧାରଣତଃ ଜନବସତି ନଦୀ ଉପତ୍ୟକାରେ ଦେଖିବାକୁ ମିଳିଥାଏ, ଯଦିଓ ପଶୁପାଳନ ପାଇଁ ଅର୍ଦ୍ଧ-ଶୁଷ୍କ ଅଞ୍ଚଳକୁ ଅଧିକ ପସନ୍ଦ କରାଯାଉଥିବ । ଯେହେତୁ ପଶୁପାଳନ ଏବଂ କୃଷି ପରସ୍ପର ଉପରେ ଆଶ୍ରିତ, ଅର୍ଦ୍ଧ-ଶୁଷ୍କ ଅଞ୍ଚଳ ବାଜରା ଚାଷକୁ ପ୍ରୋତ୍ସାହିତ କରିଥିବ । ସେହି ସୂତ୍ରରେ, ଉତ୍ତର ସମତଳରେ ଗହମ ଓ ଯବକୁ ପ୍ରାଧାନ୍ୟ ମିଳିଲା ଏବଂ ପୂର୍ବାଞ୍ଚଳରେ ଧାନ ପ୍ରମୁଖ ଫସଲ ହେଲା । କୁହାଯାଏ, ଗହମ ଚାଷ ହେଉଥିବା କ୍ଷେତ୍ରର ସାମାଜିକ ଚଳଣି ଧାନଚାଷ କ୍ଷେତ୍ରରୁ ଭିନ୍ନ ହୋଇଥାଏ । ଧାନଚାଷ ହେଉଥିବା ସମାଜରେ ଅନୁକ୍ରମ ଅଧିକ ସ୍ପଷ୍ଟ ଏବଂ ସମ୍ଭବତଃ ସାମାଜିକ ବିଭକ୍ତିକରଣର ମାତ୍ରା ଢେର୍ ବେଶି । ଭାରତର ଇତିହାସ ସନ୍ଦର୍ଭରେ ଏହି ଯୁକ୍ତିକୁ ଅନୁଶୀଳନ କରିବାର ଆବଶ୍ୟକତା ରହିଛି । ମାତ୍ର ଉପରଠାଉରିଆ ଭାବେ ଦେଖିଲେ ପ୍ରଭେଦ ରହିଥିବାର ଅନୁମାନ କରିହୁଏ । ଉଦାହରଣ ସ୍ୱରୂପ, ଉତ୍ତର-ପଶ୍ଚିମ ଓ ମଧ୍ୟ-ଗାଙ୍ଗେୟ ସମତଳ ମଧ୍ୟରେ ସାମାଜିକ ଚଳଣିରେ ପାର୍ଥକ୍ୟ ଦେଖିହୁଏ । ମାତ୍ର କେବଳ ଫସଲ ଏହାର ଏକମାତ୍ର କାରଣ ହୋଇ ନ ପାରେ ।

ଗ୍ରାମ ସଂଗଠନ ଏବଂ ପରେ ପରେ ଏକ ଅଞ୍ଚଳ ମଧ୍ୟରେ ଥିବା କେତୋଟି ଗ୍ରାମର ସୋପାନୀକରଣ ପାଇଁ କିଛି କର୍ତ୍ତୃତ୍ୱ ଓ ନିୟନ୍ତ୍ରଣର ନିୟମ ଦରକାର ପଡ଼ିଲା । ବୋଧହୁଏ, ସାମାଜିକ ସୋପାନୀକରଣରୁ ସେହି ନିୟମ ତିଆରି ହୋଇଥିଲା । ପରିବାରଗୁଡ଼ିକ କୁଳରେ ସମୂହବଦ୍ଧ ହୋଇ ଯାଉଥିଲେ । କୁଳରେ ଅନୁକ୍ରମ ବା ସୋପାନୀକରଣର ପାଳନ ହେଉଥିଲା । କିଛି ନ ହେଲେ, ଅନ୍ତତଃ କୁଳମୁଖ୍ୟ ବା କୁଳର ବୟୋଜ୍ୟେଷ୍ଠମାନେ କର୍ତ୍ତୃତ୍ୱ ଭଳି ଅଧିକାର ନିଜ ହାତରେ ରଖୁଥିଲେ । ଗ୍ରାମଗୁଡ଼ିକର ସାମୂହୀକରଣ ପରେ ପୂର୍ବ ତୁଳନାରେ ଯେତେବେଳେ ଲୋକ ଦଳବଦ୍ଧ ହୋଇ ବୁଲୁଥିଲେ, ସଂରଚନା ଅଧିକ ଜଟିଳ ହେଲା । ସର୍ଦ୍ଦାରତନ୍ତ୍ରରେ କେବଳ ବଳକା ଖାଦ୍ୟ ଉତ୍ପାଦନ ପାଇଁ ଜୋର୍ ଦିଆଗଲା ନାହିଁ, ତା' ସହିତ କେତେକ ନିର୍ଦ୍ଦିଷ୍ଟ ପରିବାର ହାତରେ ଉତ୍ପାଦିତ ଖାଦ୍ୟାନ୍ନର ନିୟନ୍ତ୍ରଣ ରହିବ ବୋଲି ନିଶ୍ଚିତ ହେଲା । ଏହି ପ୍ରକ୍ରିୟାରେ କୁଳମୁଖ୍ୟରୁ ସର୍ଦ୍ଦାର ଭିନ୍ନ ହେଲା । ବିଳାସପୂର୍ଣ୍ଣ ସାମଗ୍ରୀ, ଯଥା- ମାଳି ଏବଂ ପ୍ରତୀକାତ୍ମକ ହାତହତିଆର, ଏହି ପରିବାରମାନଙ୍କର ମର୍ଯ୍ୟାଦା-ଚିହ୍ନ ହେଲା । ଅସ୍ତ୍ରଶସ୍ତ୍ର ଉପରେ ସର୍ଦ୍ଦାର ପରିବାରର ଅଧିକାର, ସାମାଜିକ ଅନୁକ୍ରମକୁ ସ୍ଥାୟିତ୍ୱ ଦେବାର ସାମର୍ଥ୍ୟ ଏବଂ ସଂସାଧନର ଆବଣ୍ଟନ ଉପରେ ଥିବା ନିୟନ୍ତ୍ରଣ ଏବଂ କର୍ମକାଣ୍ଡ ମାଧ୍ୟମରେ ମିଳିଥିବା ପ୍ରତିଷ୍ଠା କ୍ଷମତାର ସ୍ରୋତ ହେଲା ।

ନାରୀ ଲଘୁପ୍ରତିମାର ଆରାଧନା କେତେକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ଥିଲା । ଏହାର କେବଳ ହରପ୍ପାର ନାରୀପ୍ରତିମା ସହିତ ସାମ୍ୟ ନ ଥିଲା, ତା' ସହିତ ପରବର୍ତ୍ତୀ ଇତିହାସରେ

ନାରୀକୁ ଉପାସ୍ୟ ଏବଂ ଦେବୀ ରୂପରେ ପୂଜା କରିବାର ଯେଉଁ ବ୍ୟାପକ ପରମ୍ପରା ଆରମ୍ଭ ହେଲା, ତା'ର ଏହା ବୀଜରୂପ ତୁଲ୍ୟ ଥିଲା । ମାତ୍ର ଏହା ମାତୃକୈନ୍ଦ୍ରିକ ବ୍ୟବସ୍ଥାର ପ୍ରବର୍ତ୍ତନକୁ ଅଗ୍ରାଧିକାର ଦେଲା ବୋଲି କୁହାଯାଇ ନ ପାରେ । ମାତୃକୈନ୍ଦ୍ରିକ ସମାଜ କଦାପି ମୁଣ୍ଡହୀନ ନାରୀପ୍ରତିମା ନିର୍ମାଣକୁ ସ୍ୱୀକୃତି ଦେଇ ନ ପାରେ । ଏପରିକି ପୂଜାଯୋଗ୍ୟ କରିବାପାଇଁ ନାରୀକୁ ମୁଣ୍ଡହୀନ କରାଯାଇ ନ ପାରେ । ମାତ୍ର ପରବର୍ତ୍ତୀ ସମୟ ତୁଳନାରେ ଏହି ସମୟରେ ନାରୀର ସମାଜରେ ଅଧିକ ଉପସ୍ଥିତି ରହିଥିଲା – ତା'ର ଏହା ସଂକେତ ଦିଏ । ସମ୍ଭବତଃ ଏହି ଉପସ୍ଥିତି ପ୍ରାୟ କ୍ଷେତ୍ରରେ ଅଧିକ ପ୍ରଭାବପୂର୍ଣ୍ଣ ମଧ୍ୟ ଥିଲା ।

ପର୍ଣ୍ଣକୁଟୀର ଭିତରେ କବରର ଉପସ୍ଥିତି କଥା ଶୁଣିବାକୁ ବିଚିତ୍ର ମନେହୁଏ । ମାତ୍ର ଏହା ବହୁସ୍ଥାନରେ ଦେଖିବାକୁ ମିଳେ । କ'ଣ ଏହାକୁ ପରିବାରର ମର୍ଯ୍ୟାଦାସୂଚକ ବୋଲି କୁହାଯିବ ? ମୃତକକୁ କୁଟୀର ଭିତରେ କବର ଦେଇ କ'ଣ ମର୍ଯ୍ୟାଦା ଦିଆଯାଉଥିଲା କି, ଯେଉଁ ମର୍ଯ୍ୟାଦାର ସେ ଦାବିଦାର ଥିଲେ ? ନା, ଏହା ମୃତକକୁ ପରିବାରର ପାଖରେ ପାଖରେ ରଖିବାର ଉଦ୍ୟମ ଥିଲା ? ଏହି ଭାବନା ଆଉ କେତେକ ସମାଜରେ ମଧ୍ୟ ଦେଖିବାକୁ ମିଳିଥାଏ । ମୃତକର ପାଦ କାଟି ତାକୁ ପରିବାରରୁ ଛାଡ଼ି ନ ଯିବାକୁ କୁହାଯାଉଥିଲା କି ? ଘର ଭିତରେ କବର ଦେବା ପଛରେ କ'ଣ ଭୟ ରହିଥିଲା କି – କାଳେ ବଣ୍ୟଜନ୍ତୁ ଗାତରୁ କାଢ଼ି ଶବକୁ ନେଇଯିବେ, କାରଣ କଫିନ ଭିତରେ ଶବକୁ ବନ୍ଦ କରାଯାଉ ନ ଥିଲା ?

## ମହାପାଷାଣିକ କବର

ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀ ବେଳକୁ ନାଟକୀୟ ଢଙ୍ଗରେ ସମାଧି ଦେବାର ପ୍ରଣାଳୀରେ ପରିବର୍ତ୍ତନ ଦେଖିବାକୁ ମିଳିଲା । ସମାଧିକୁ ଘର କୋଣରୁ ନେଇ ଏବେ ଏକ ସ୍ୱତନ୍ତ୍ରଭାବେ ସ୍ଥିରୀକୃତ ସମାଧି କ୍ଷେତ୍ରରେ ରଖାଗଲା । ଏହି କ୍ଷେତ୍ର ଥିଲା ମହାପାଷାଣ ସ୍ଥଳୀ (Megalithic sites) । ତହିଁରେ ବିଭିନ୍ନ କିସମର ମହାପାଷାଣିକ ଚିହ୍ନ ରହିଥିଲା । ବିଶେଷକରି ଉପଦ୍ୱୀପରେ ଏହା ଦେଖିବାକୁ ମିଳେ, ଯାହା ଏକ ସ୍ୱତନ୍ତ୍ର ସାଂସ୍କୃତିକ ଧାରାକୁ ଚିହ୍ନିତ କରେ । କେତେକ ମହାପାଷାଣ ସ୍ଥଳୀର ଆରମ୍ଭ ଖ୍ରୀ.ପୂ. 1000 ଶତାବ୍ଦୀ ବା ତା'ର କିଛିକାଳ ପୂର୍ବରୁ । ମହାପାଷାଣ ସ୍ୱଷ୍ଟରୂପରେ ଏକ ଭିନ୍ନ ପ୍ରକାରର ସାଂସ୍କୃତିକ ଧାରାର ଲକ୍ଷଣ ଥିଲା, ନା ତାମ୍ରପାଷାଣ କ୍ରିୟାକଳାପର ଅଂଶ ଭାବରେ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀରେ ବିକଶିତ ହୋଇଥିବା ଏକ କବର ଦେବାର ବ୍ୟବସ୍ଥା ଥିଲା – ସେ ନେଇ ଥିବା ପ୍ରଶ୍ନର ସମାଧାନ ହୋଇପାରି ନାହିଁ । ଜନବସତି ସ୍ଥଳର ବହୁତ ଉଦାହରଣ ମିଳୁନାହିଁ । ଫଳରେ ତାକୁ ସମାଧିସ୍ଥଳ ସହିତ ଯୋଡ଼ି ମୂଲ୍ୟାଙ୍କନକୁ ନିର୍ଦ୍ଦିଷ୍ଟ ରୂପ ଦିଆଯାଇପାରି ନାହିଁ । ସେ ଯାହାହେଉ, ମହାପାଷାଣ

ସ୍ଥଳୀକୁ ଏକ ସ୍ୱତନ୍ତ୍ର ସଂସ୍କୃତି ରୂପରେ ଚିହ୍ନିତ କରିବାପାଇଁ ଉଦ୍ୟମ କରାଯାଇଛି । ଏମିତି ତର୍କ ବି ଦିଆଯାଏ ଯେ, ଯେହେତୁ ମହାପାଷାଣ ସଂସ୍କୃତିର ଲୋକ ଘୋଡ଼ାର ବ୍ୟବହାର କରୁଥିଲେ, ସେମାନେ ଉପଦ୍ୱୀପରେ ବସତି ସ୍ଥାପନ କରିଥିବା ଭାରତାର୍ଯ୍ୟ ଭାଷାଭାଷୀ ଲୋକ ହୋଇଥିବେ । ମାତ୍ର ଏହି ତର୍କକୁ ମଧ୍ୟ ଯଥେଷ୍ଟ ସମର୍ଥନ ମିଳିପାରି ନାହିଁ । ଯାହାହେଉ, ମହାପାଷାଣିକ କବରର ବିସ୍ତୃତ ଏବଂ ବିବିଧତାକୁ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

ମହାପାଷାଣିକ କବରର ରୂପ ଏବଂ ଶୈଳୀରେ ଖୁବ୍ ବିବିଧତା ଦେଖିବାକୁ ମିଳେ । କେବେ ଏହା ଗୋଟାଏ ସିଧା ପଥରରେ ବିଦ୍ୟମାନ ତ ଆଉ କେବେ ପଥର ଚଟାଣକୁ କାଟି ତହିଁରେ ନିର୍ମିତ କକ୍ଷରେ ଏହା ରହିଥାଏ । ବେଲୁଚିସ୍ତାନ ଓ ମକ୍ରାନରେ, ବିନ୍ଧ୍ୟାଞ୍ଚଳରେ ଏବଂ ଉପଦ୍ୱୀପର ଆଉ କେତେକ ସ୍ଥାନରେ କବରରେ ଥାକ ଥାକ କରି ପଥର ରଖାହୋଇଥିବାର ମିଳିଛି । ମହାପାଷାଣିକ କବରର ଅନ୍ୟ ସୂଚକ ହେଲା ରଖାହୋଇଥିବା ଏକ ବଡ଼ ଆକାରର ସ୍ମାରକ ପଥର ବା ମେନହିର । ଏହି ସୂଚକରୁ ନାମ ସୃଷ୍ଟି ହୋଇଛି ମେଗା + ଲିଥୋସ (ବୃହଦାକାର ପଥର ବା ମହାପାଷାଣ) । ଆଉ ଏକପ୍ରକାର କବରରେ ଅନେକ ବଡ଼ ପଥର ଏକ ଢାଞ୍ଚାରେ ରଖିଦିଆଯାଉଥିଲା । ଏହାକୁ ଡୋଲମେନ (Dolmen) କୁହାଯାଏ । ଆଉ ଏକ କିସମରେ ଶୀର୍ଷରେ ଏକ ବଡ଼ ପଥର ରହୁଥିଲା । ତା'ର ଦୁଇ ପାର୍ଶ୍ୱରେ ପଥରଗୁଡ଼ିକୁ ସାଇତି ରଖାଯାଉଥିଲା । ଫଳରେ ମଝିରେ ଏକ ଖାଇ ସୃଷ୍ଟି ହେଉଥିଲା । ସେହି ଖାଇରେ ଶବ ରହୁଥିଲା । ପ୍ରାୟତଃ ଏହା ଥିଲା ବୃତ୍ତାକାରର, ଯାହା ପଥର ଦ୍ୱାରା ଚିହ୍ନିତ ହେଉଥିଲା । ପଥର ହିଁ ଖାଇକୁ ବେଢ଼ି ରହିଥିଲା । ଖାଇ ଭିତରେ କଫିନ ରହୁଥିଲା । ଏହି କଫିନ ଥିଲା ଏକ ଆୟତାକାର ବାକ୍ସ ସଦୃଶ । ତାହା ପଥରର ସ୍ଲାବ୍‌ରେ ତିଆରି । ସ୍ଲାବ୍‌ରେ ହାଡ଼ ଓ ଅନ୍ୟାନ୍ୟ ସମାଧି ଦ୍ରବ୍ୟମାନ ମିଳିଛି । କେବେ କେବେ ପାର୍ଶ୍ୱବର୍ତ୍ତୀ ସ୍ଲାବ୍‌ରେ ଏକ ବୃତ୍ତାକାର ରନ୍ଧ୍ର ରହିଥିଲା । ଏଥିରୁ ମନେହୁଏ, କବର କକ୍ଷର ଉପଯୋଗ ଅନେକଥର କରାଯାଉଥିଲା । କବରର ଅଧିକ ଶୈଳୀ ଏବଂ ରୂପ ଯୋଗୁଁ ଆମର ଧ୍ୟାନ ଉପଦ୍ୱୀପ ଆଡ଼କୁ ଆକୃଷ୍ଟ ହୁଏ । ଉପଦ୍ୱୀପରେ ଅନେକ ସଂଖ୍ୟାରେ ଏହି କିସମର କବର ବିଛେଇ ହୋଇ ପଡ଼ିରହିଛି । କଫିନରେ ସାଧାରଣତଃ ଶବ ରଖିବାର ଭାଣ୍ଡ ରହିଥାଏ । ଏଥିରୁ ଆହୁରି ବ୍ୟାପକ ଥିଲା ପଶ୍ଚିମ ଘାଟର ଗୁମ୍ଫା କବର, ଯାହା କେରଳରେ ମଧ୍ୟ ଦେଖାଯାଏ । ଗୁମ୍ଫା ଖୋଦନ ସହଜ ନ ଥିଲା । ଗୁମ୍ଫା ପାଇଁ ନରମ ପଥରର ଦରକାର ପଡୁଥିଲା । କବରର ବିବିଧତାକୁ ଦେଖିଲେ ଲାଗେ ମହାପାଷାଣିକ କବର କୌଣସି ଗୋଟାଏ ସଂସ୍କୃତିର ଦ୍ୟୋତକ ନ ଥିଲା । ବରଂ ତହିଁରୁ ଏମିତି ସବୁ ବସତିର ଆଭାସ ମିଳେ, ଯାହାର ସାଂସ୍କୃତିକ ପ୍ରବୃତ୍ତିରେ ଅବଧାରଣାଗତ ସମାନତା ଥିଲା, ମାତ୍ର ଯାହାର ଗୋଟାଏ ନିର୍ଦ୍ଦିଷ୍ଟ ରୂପ ନ ଥିଲା ।

ନର୍ମଦା ନଦୀର ଦକ୍ଷିଣରେ ଥିବା ମହାପାଷାଣ କବର ହାଲ୍ଲୁର, ପିକଲିହାଲ, ବ୍ରହ୍ମଗିରି, ମାସ୍କୀ (କର୍ଣ୍ଣାଟକ), ନାଗାର୍ଜ୍ଜୁନକୋଣ୍ଡା (ଆନ୍ଧ୍ର) ଏବଂ ଆଦିଚନ୍ନଲ୍ଲୁର (ତାମିଲନାଡୁ) ଆଦି ସ୍ଥଳୀରେ ଉପଲବ୍ଧ ହୁଏ । ଏହାର ସ୍ୱରୂପର ଅଣ-ଭାରତୀୟ ମହାପାଷାଣ ସଂସ୍କୃତିର ସ୍ୱରୂପ ସହିତ ଅନେକ ସାମ୍ୟ ରହିଛି । ମାତ୍ର ଉଭୟ ସଂସ୍କୃତିର ଉନ୍ମେଷ ଏପର୍ଯ୍ୟନ୍ତ ସୁସ୍ପଷ୍ଟ ନୁହେଁ । ସମ୍ଭବତଃ ଉପଦ୍ୱୀପର ପୂର୍ବର ନୂତନ ପାଷାଣ ଏବଂ ତାମ୍ରପାଷାଣ ସଂସ୍କୃତିରୁ ଉଭୟ ସଂସ୍କୃତିର ଅଭ୍ୟୁଦୟ ହେଲା ଏବଂ ତହିଁରେ ବାହାରର କିଛି କିଛି ଅଂଶ ମିଶିଗଲା । ବ୍ରହ୍ମଗିରିରେ ମହାପାଷାଣିକ ଉପାଦାନ ରହିଥିବା ଏକ ଜନବସତି ରହିଛି । କେତେକ ଆଦିବାସୀ ସମାଜର ପରମ୍ପରା ସହିତ ମହାପାଷାଣିକ ସଂସ୍କୃତିର ସାମଞ୍ଜସ୍ୟ ଖୋଜାଯାଇଛି । ସମାଧି ପରମ୍ପରାକୁ ପାଳନ କରୁଥିବା ଅନେକ ଆଦିବାସୀଙ୍କର ସର୍ନା ବା ସମାଧିକ୍ଷେତ୍ର ରହିଥାଏ । ସର୍ନାରେ ବିଶାଳ ଶିଳାଖଣ୍ଡକୁ ମୃତକର ସ୍ମୃତିରେ ସିଧାକରି ସ୍ଥାପିତ କରାଯାଏ । ଏହି ପରମ୍ପରା ଆଜିଯାଏଁ ଅବ୍ୟାହତ ରହିଛି । ଶ୍ରୀଲଙ୍କାରେ ପ୍ରାୟ ସେହି ଏକା କାଳଖଣ୍ଡରେ ସମାନ କିସମର ମହାପାଷାଣିକ କବରମାନ ଦେଖାଯାଏ । ଏଥିରୁ ମନେହୁଏ, ଦକ୍ଷିଣ ଭାରତ ଓ ଶ୍ରୀଲଙ୍କା ମଧ୍ୟରେ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଶେଷ ସମୟରୁ ସମ୍ବନ୍ଧ ରହିଆସିଛି ।

କବରଗୁଡ଼ିକୁ ମୁଖ୍ୟତଃ କୃଷ୍ଣ-ଲୋହିତ ମୃଦ୍‌ଭାଣ୍ଡରେ ଏବଂ ପ୍ରଭାବଶାଳୀ ଲୌହ ଶିଳ୍ପରେ ସଜ୍ଜିତ କରାଯାଉଥିଲା । ଲୌହଶିଳ୍ପ ଉପକରଣ ମଧ୍ୟରେ ଅନ୍ୟତମ ଥିଲା କୋଡ଼ି, ଦାଆ, ଲଘୁଅସ୍ତ୍ର ଏବଂ ଘୋଡ଼ାର ନାଲ । ଏହିସବୁ କର୍ମକାଣ୍ଡୀ ଉପକରଣକୁ ଜାଣିଶୁଣି ମୃତକ ସାଙ୍ଗରେ କବର ଦେଇ ଦିଆଯାଉଥିଲା କି ? ନା, ନିତ୍ୟବ୍ୟବହାର୍ଯ୍ୟ ବସ୍ତୁଗୁଡ଼ିକୁ ମୃତକକୁ ମରଣୋପରାନ୍ତ ଜୀବନରେ ସହାୟକ ହେବ ବୋଲି ରଖିଦିଆଯାଉଥିଲା ? ଯଦି ସମାଧିସ୍ଥଳ କର୍ମକାଣ୍ଡର କେନ୍ଦ୍ରବିନ୍ଦୁ, ତେବେ ଏହାକୁ ପୂର୍ବପୂଜା ପରମ୍ପରା କୁହାଯିବ କି ? ମାଟିପାତ୍ରରେ ରହିଥିବା କେତେକ ଚିହ୍ନର ହରପ୍ପାର ଲିପି ସହିତ ସାଦୃଶ୍ୟ ଅଛି । ଏହା ଉଲ୍ଲିଖିତ ସଂସ୍କୃତିକୁ ଚିହ୍ନିବା ଲାଗି ଅନ୍ୟ ଏକ ଦୃଷ୍ଟିକୋଣ ପ୍ରଦାନ କରେ । ଏହି କିସମର ସ୍ମାରକ ସହିତ ଯୋଡ଼ି ହୋଇଥିବା ଲୋକ ବୋଧହୁଏ ବାଜରା ଓ ଧାନଚାଷ କରି ଏବଂ ଗୋରୁ, ମେଣ୍ଢା ଓ ଛେଳି ଆଦି ପଶୁପାଳନ କରି ଜୀବିକା ନିର୍ବାହ କରୁଥିଲେ । ଅବଶ୍ୟ ଏଥିରେ ଆଞ୍ଚଳିକ ସ୍ତରରେ ତାରତମ୍ୟ ବି ରହିଥିବ ।

ମହାପାଷାଣିକ କବରରୁ ପ୍ରାପ୍ତ ବସ୍ତୁଗୁଡ଼ିକର କିସମ ପ୍ରାୟ କ୍ଷେତ୍ରରେ ସମାନ । ଉଦାହରଣ ସ୍ୱରୂପ, ସବୁ କବରରୁ ପ୍ରାୟ ସମାନ ଧରଣର ଲୌହ ଉପକରଣ ମିଳିଛି । ଏହି ଆଧାରରେ ପ୍ରଶ୍ନ ହୁଏ, ଗୋଟାଏ ଅଞ୍ଚଳରେ ବସତି ସ୍ଥାପନ କରିଥିବା କମାର ବା ଲୁହାର କ'ଣ ଉପଦ୍ୱୀପର ସବୁଆଡ଼େ ବୁଲି ବୁଲି କମାରଶାଳ କରୁଥିଲେ ? ନା, ବିନିମୟ ବ୍ୟବସ୍ଥା

ଖୁବ୍ ବ୍ୟାପକ ଥିଲା ? ନିଶ୍ଚିତ ରୂପେ ଲୌହ ଉପକରଣ ତିଆରିରେ କମାର ବା ଲୁହାରର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଉପକରଣଗୁଡ଼ିକ ଗୁଣାତ୍ମକ ଦୃଷ୍ଟିରୁ କୁଶଳ କାରିଗର ତିଆରି ବୋଲି ଜଣାପଡ଼େ । ଉତ୍ତର ଓ ପଶ୍ଚିମ ଭାରତରୁ ଘୋଡ଼ା ଯୋଗାଣକାରୀମାନେ ଆକୃଷ୍ଟ ହୋଇ ଉପଦ୍ୱୀପ କ୍ଷେତ୍ରକୁ ଆସୁଥିଲେ । ଫଳରେ ଘୋଡ଼ାର ବ୍ୟବହାର ବୃଦ୍ଧି ପାଇଲା ଏବଂ ବିନିମୟ ତନ୍ତ୍ର ବିସ୍ତୃତ ହେଲା । ଏଥିରୁ ଯେଉଁ ବିଚାର ଆସେ, ତାହା ହେଲା କୁଳର ମୁଖ୍ୟ ହାତରେ ବିନିମୟ ବ୍ୟବସ୍ଥା ଉପରେ ନିୟନ୍ତ୍ରଣ ରହିଥିଲା । ମହାପାଷାଣିକ କବର ପାଇଥିବା ବ୍ୟକ୍ତି ଥିଲେ ସମ୍ଭବତଃ ସେହି କୁଳମୁଖ୍ୟ । ମନେହୁଏ, କବର ଓ ସାମାଜିକ ପ୍ରତିଷ୍ଠା ମଧ୍ୟରେ ଏକ ଦୃଢ଼ ସମ୍ବନ୍ଧ ରହିଥିଲା ।

ଲୌହ ନିର୍ମିତ ଶିଳ୍ପବସ୍ତୁ ଏବଂ ତା'ର ବିବିଧତା ସହଜରେ ଗବେଷକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ମହାପାଷାଣ କବରର ଚିହ୍ନକୁ ସାଧାରଣତଃ ଉର୍ବର ଜମିର ପରିଧି ଭିତରେ ଦେଖିବାକୁ ମିଳିଥାଏ । ଏହି ଜମିରେ ଜଳସେଚନ ବ୍ୟବସ୍ଥା ରହିଥିଲା । ବନ୍ଧ ବା ପୋଖରୀରେ ଜମା ହୋଇଥିବା ପାଣିରୁ ଜମିକୁ ସେଚନ କରାଯାଉଥିଲା । ଏଥିରୁ ମନେହୁଏ ଯେ ବନ୍ଧ ବାନ୍ଧିବା ପାଇଁ ବା ପୋଖରୀ ଖୋଳିବା ପାଇଁ ସହକାରୀ ଭିତ୍ତିରେ ଉଦ୍ୟମ ହେଉଥିଲା । ଏଭଳି ସହକାରୀ ଉଦ୍ୟମ ମହାପାଷାଣ ସ୍ମାରକ ତିଆରି ବେଳେ ବି ହୋଇଥିବ । ତା' ସତ୍ତ୍ୱେ ପୁରାତାତ୍ତ୍ୱିକ ଦୃଷ୍ଟିରୁ ମହାପାଷାଣିକ ସ୍ମାରକୀଗୁଡ଼ିକ ସହିତ ଯୋଡ଼ି ହୋଇଥିବା ବସତି ପ୍ରାୟ ବିରଳ । ଯଦି କବର ପାଇଁ ନିର୍ଦ୍ଧାରିତ କ୍ଷେତ୍ରର ସମ୍ବନ୍ଧ ଉଭୟ ପ୍ରତିଷ୍ଠା ଓ ସାତତ୍ୟ (continuity) ସହିତ ରହିଥିଲା, ତେବେ କ୍ଷେତ୍ରଟି ବସତି କ୍ଷେତ୍ରରୁ ସାମାନ୍ୟ ଦୂରରେ ଅବସ୍ଥାପିତ ହେବା କଥା । ଅନ୍ୟପକ୍ଷରେ, କବର ସହିତ ପ୍ରତିଷ୍ଠା ପ୍ରଶ୍ନକୁ ଅଣଦେଖାକରି ହୁଏନାହିଁ, କାରଣ କେତେକ କବର ସ୍ଥଳୀରୁ ଆଦ୍ୟ ରୋମାନ ସାମ୍ରାଜ୍ୟର ମୁଦ୍ରା ମଧ୍ୟ ପ୍ରାପ୍ତ ହୋଇଛି । ଏଥିରୁ ଏହା ବି ଜଣାପଡ଼େ ଯେ, ଉକ୍ତ କବର ସ୍ଥଳୀଗୁଡ଼ିକ ଖ୍ରୀଷ୍ଟାବ୍ଦ ଆରମ୍ଭର ପାଖାପାଖି ସମୟର ହୋଇଥିବ । ମୁଦ୍ରାର ଉପସ୍ଥିତି ପୁରାତାତ୍ତ୍ୱିକ ପ୍ରମାଣ ଓ ଐତିହାସିକ କାଳ ମଧ୍ୟରେ ସମ୍ପର୍କ ସ୍ଥାପନ କରେ । ଏଥିରୁ ଏକଥା ବି ଜଣାପଡ଼େ ଯେ, ସ୍ଥାନୀୟ ସମାଜଗୁଡ଼ିକରେ ବିବିଧ କିସମର ବିନିମୟ-ତନ୍ତ୍ର ପ୍ରଚଳିତ ଥିଲା । ପୋଥିଗତ ତଥ୍ୟ-ପ୍ରମାଣ ଉପଲବ୍ଧ ହେବା ପୂର୍ବରୁ ପୁରାତାତ୍ତ୍ୱିକ ପ୍ରମାଣକୁ ଭିତ୍ତିକରି ଯେଉଁ ସଂକ୍ଷିପ୍ତ ସର୍ବେକ୍ଷଣ କରାଯାଏ, ତାହା ଖ୍ରୀ.ପୂ. ଦ୍ୱିତୀୟ ଓ ପ୍ରଥମ ସହସ୍ରାବ୍ଦୀର ଆଦ୍ୟ ଭାଗରେ ଉପମହାଦେଶର ବିଭିନ୍ନ ପ୍ରାନ୍ତରେ ଏକ ବିବିଧତାପୂର୍ଣ୍ଣ ବୁଦ୍ଧିମନ୍ତ ସଂସ୍କୃତିର ଉପସ୍ଥିତି ରହିଥିଲା ବୋଲି ସୁସ୍ପଷ୍ଟ କରେ । ଏହି ସଂସ୍କୃତି ସମୂହରୁ ଜଣାଯାଏ ଯେ, ସମକାଳୀନ ନଥିପତ୍ର ଓ ପୁରାତାତ୍ତ୍ୱିକ ତଥ୍ୟ-ପ୍ରମାଣ ସବୁକୁ ଏକ ଐତିହାସିକ ଦୃଷ୍ଟିକୋଣ ମଧ୍ୟରେ ରଖି ବିଚାରବିମର୍ଶ କରିବାକୁ

ହେବ । ଆଗରୁ ତର୍କ ଦିଆଯାଉଥିଲା ଯେ, ପ୍ରାଚୀନ ସଂସ୍କୃତିର ଅବଶେଷ ଖୁବ୍ ବିକ୍ଷିପ୍ତ ଭାବରେ ଏବଂ ସ୍ୱଳ୍ପ ପରିମାଣରେ ଭାରତରେ ରହିଥିଲା । ତେଣୁ ସଂବୃଦ୍ଧ ସଂସ୍କୃତିଟିଏ ପ୍ରବେଶ କଲା ଉତ୍ତାରୁ ତାହା ବିତାଡ଼ିତ ହୋଇ ନିକାଞ୍ଚନକୁ ଚାଲିଗଲା । ଏହାର ପରେ ପରେ ବିକଶିତ ହୋଇଥିବା ସଂସ୍କୃତିର ଐତିହାସିକ ରୂପ ସାତତ୍ୟ ଏବଂ ଉତ୍‌ଖନିତ ସାକ୍ଷ୍ୟକୁ ସମ୍ବଳକରି ନିର୍ଦ୍ଧାରିତ ହୋଇଛି । ଦ୍ୱିତୀୟ ନଗରୀକରଣ ନାମରେ କେବେ କେବେ ଖ୍ୟାତ ବିକାଶର କ୍ଷେତ୍ର ସୈନ୍ଧବ ସମତଳରୁ ଗାଙ୍ଗେୟ ସମତଳକୁ ପରିବର୍ତ୍ତିତ ହେଲା । ଏହି କାଳାଂଶରେ ଯେଉଁ ପ୍ରକ୍ରିୟା ଆରମ୍ଭ ହେଲା, ତାହା ରାଜ୍ୟ ଗଠନ ଓ ସହରର ଅଭ୍ୟୁଦୟକୁ ନିର୍ଦ୍ଦେଶିତ କଲା । ଏହିସବୁ ଗତିବିଧି ଗାଙ୍ଗେୟ ସମତଳରେ ଦେଖିବାକୁ ମିଳିଲା ଏବଂ ତାକୁ ଜାଣିବାପାଇଁ ଲିଖିତ ତଥ୍ୟ-ପ୍ରମାଣ ଉପଲବ୍ଧ ହେଲା । ଅର୍ଥାତ୍ ରାଜ୍ୟ ଗଠନ ଓ ସହରର ଅଭ୍ୟୁଦୟ ସହିତ ଲିଖିତ ତଥ୍ୟ-ପ୍ରମାଣର ଉପଲବ୍ଧତା ହେବ ଏହି କାଳାଂଶର କେତୋଟି ବୈଶିଷ୍ଟ୍ୟ । ଅବଶ୍ୟ ଅଧିକ ସଂଖ୍ୟକ ଲିଖିତ ପ୍ରମାଣ ହେଲା ସହରୀକରଣର ପରିପକ୍ୱ କାଳର ଏବଂ ଏଠାରେ ଅନୁଶୀଳନବେଳେ ପୁରାତାତ୍ତ୍ୱିକ ପ୍ରମାଣକୁ ସାହିତ୍ୟିକ ସାକ୍ଷ୍ୟ ସହଜ କରିବ । ଗାଙ୍ଗେୟ ସମତଳରେ ଅଧିକ ପୁରାତାତ୍ତ୍ୱିକ ଖନନର ଆବଶ୍ୟକତା ରହିଛି, ବିଶେଷକରି ଉପର ସ୍ତରରେ ବିସ୍ତୃତ ଖନନ ହେବା କଥା । ଇଂରାଜୀରେ କହିଲେ, horizontal excavations ବା ଆନୁଭୂମିକ ଖନନର ଲୋଡ଼ା ରହିଛି, କାରଣ ତାହା ପରିବର୍ତ୍ତନ ପ୍ରକ୍ରିୟାକୁ ଅନୁଶୀଳନ କରିବାପାଇଁ ଆବଶ୍ୟକ ପ୍ରମାଣ ପ୍ରଦାନ କରିବ । ଗାଙ୍ଗେୟ ସମତଳର ନଗରୀଗୁଡ଼ିକର ଚରିତ୍ର ଓ ଯୋଜନା ସିନ୍ଧୁ ସଭ୍ୟତାର ନଗରଠାରୁ ଯଥେଷ୍ଟ ଭିନ୍ନ ଥିଲା । ଏହାପଛରେ ଗୋଟାଏ କାରଣ ହେବ ଉଭୟ କ୍ଷେତ୍ର ମଧ୍ୟରେ ଥିବା ପରିବେଶଗତ ଭିନ୍ନତା । ମାତ୍ର ତା' ସହିତ ନଗରୀଗୁଡ଼ିକର ଆର୍ଥିକ କ୍ରିୟାକଳାପ ଓ ରାଜନୈତିକ ଭୂମିକା ମଧ୍ୟ କମ୍ ମହତ୍ତ୍ୱପୂର୍ଣ୍ଣ କାରଣ ନ ଥିଲା ।

# 4

# ସର୍ଦ୍ଦାରତନ୍ତ୍ର ଓ ରାଜତନ୍ତ୍ର ଆଡ଼କୁ କ୍ରମଗତି

## (ଖ୍ରୀଷ୍ଟପୂର୍ବ ପ୍ରାୟ 1200 – 600)

### ଆରମ୍ଭକୁ ନେଇ ବିବରଣୀ

ସିନ୍ଧୁ ସଭ୍ୟତା ପରବର୍ତ୍ତୀକାଳୀନ ବିବରଣୀକୁ ଇତିହାସର ଆରମ୍ଭ ବୋଲି ମନେକରାଯାଏ, କାରଣ ତାହା ଲିଖିତ ସ୍ରୋତସାମଗ୍ରୀ ଉପରେ ପର୍ଯ୍ୟବେସିତ । ପୁରାତାତ୍ତ୍ୱିକ ଏବଂ ଲିଖିତ ତଥ୍ୟ-ପ୍ରମାଣକୁ ଭିତ୍ତିକରି ଆରମ୍ଭକୁ ନେଇ କାହାଣୀ ପ୍ରସ୍ତୁତ କରାଯାଏ ସତ, ହେଲେ ଦୁହିଁଙ୍କୁ ବ୍ୟବସ୍ଥିତ ଢଙ୍ଗରେ ପରସ୍ପର ମଧ୍ୟରେ ଗୁନ୍ଥିବା ଖୁବ୍ କଠିନ କାମ ପ୍ରତୀତ ହୁଏ । ପୁରାତତ୍ତ୍ୱରୁ ବିବିଧ କିସମର ସଂସ୍କୃତିର ଅସ୍ତିତ୍ୱ ସମ୍ବନ୍ଧରେ ଜଣାପଡ଼େ । ଏହି ସଂସ୍କୃତିଗୁଡ଼ିକରୁ ଅଧିକାଂଶ ହେଲେ ତାମ୍ରପାଷାଣ ବା ତାମ୍ରପ୍ରସ୍ତରକାଳୀନ । ଏମାନଙ୍କ ମଧ୍ୟରୁ କେତେକଙ୍କ ମଧ୍ୟରେ ଅନ୍ତଃସମ୍ବନ୍ଧ ରହିଥିବାର ଦେଖାଯାଏ । ଆଉ କେତେକ ସଂସ୍କୃତି ପରସ୍ପରର ପାଖାପାଖି ହୋଇ ରହିଛନ୍ତି । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀର ଉତ୍ତରାର୍ଦ୍ଧ ଏବଂ ପ୍ରଥମ ସହସ୍ରାବ୍ଦୀର ପୂର୍ବାର୍ଦ୍ଧରେ ବିକଶିତ ଭୌତିକ ସଂସ୍କୃତିର ସାକ୍ଷ୍ୟ ଅପେକ୍ଷାକୃତ ସ୍ୱଷ୍ଟ ଅଟେ । କଦାଚିତ୍ ଏହାକୁ ପାଠ୍ୟର ବର୍ଣ୍ଣନ ନିମିତ୍ତ ପ୍ରତି-ସାକ୍ଷ୍ୟ ରୂପରେ ଗ୍ରହଣ କରାଯାଇପାରେ । ସମସ୍ୟା ସେତେବେଳେ ଅନୁଭୂତ ହୁଏ, ଯେତେବେଳେ ପାଠରେ ଉଲ୍ଲିଖିତ ସମୂହ ସହିତ ଏହି ସଂସ୍କୃତିଗୁଡ଼ିକର ସମ୍ବନ୍ଧ ସ୍ଥାପିତ କରିବାକୁ ପ୍ରୟାସ କରାଯାଏ । ପୁଣି ପାଠ ଅନେକ ପ୍ରକାରର । ସେଗୁଡ଼ିକର ବର୍ଣ୍ଣନରେ ଭିନ୍ନତା ଦେଖିବାକୁ ମିଳେ । ତହିଁରେ ଦିଆଯାଇଥିବା କାଳକ୍ରମ ମଧ୍ୟ ଅଲଗା ଅଲଗା । ମାତ୍ର ସବୁଗୁଡ଼ିକୁ ଆରମ୍ଭର ବିବରଣୀ ସମ୍ବନ୍ଧିତ ବୋଲି ମନେକରାଯାଏ । ଯେଉଁ ପାଠ ବୈଦିକ ସାହିତ୍ୟର ଅଂଶବିଶେଷ ଅଟେ ତଥା ବୈଦିକକାଳୀନ ଅଟେ, ସେଗୁଡ଼ିକର ପ୍ରାରମ୍ଭ ବାଚନିକ ବା ଶ୍ରୁତି ପରମ୍ପରାରେ

ହୋଇଥିବାର ଜଣାପଡ଼େ । ଉକ୍ତ ପାଠକୁ ପୂର୍ଣ୍ଣ ଶୁଦ୍ଧତାର ସହିତ କଣ୍ଠସ୍ଥ କରାଯାଉଥିଲା । ଶହ ଶହ ବର୍ଷ ପରେ ତାକୁ ଲିଖିତ ରୂପ ଦିଆଗଲା । ଅତୀତର ବିବରଣୀ ପ୍ରଦାନ କରୁଥିବା ଆଉ ଅନେକ ପାଠ ମଧ୍ୟ ଶ୍ରୁତି ପରମ୍ପରା ରୂପରେ ଆରମ୍ଭ ହୋଇଛି । ରାମାୟଣ, ମହାଭାରତ ଏବଂ ପ୍ରମୁଖ ପୁରାଣମାନ ଏହାର ଗୋଟାଏ ଗୋଟାଏ ଉଦାହରଣ । ଏଗୁଡ଼ିକୁ ଅପେକ୍ଷାକୃତ ଅଧିକ ସ୍ୱତନ୍ତ୍ର ଭାବରେ କଣ୍ଠସ୍ଥ କରାଯାଉଥିଲା । କେବେ କେବେ ଏଥିରେ କିଛି କିଛି ଅଂଶ ଯୋଡ଼ି ବି ଦିଆଯାଉଥିଲା । ଆଜି ଯେଉଁ ରୂପରେ ଏହି କାବ୍ୟ-ପୁରାଣଗୁଡ଼ିକ ଉପଲବ୍ଧ, ତାହା ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ଆରମ୍ଭରେ ଲିପିବଦ୍ଧ କଲା ଉତ୍ତାରୁ ସମ୍ଭବ ହେଲା ।

ପୁରାଣ ହେଉଛି ଅପେକ୍ଷାକୃତ ପରବର୍ତ୍ତୀକାଳୀନ ଧାର୍ମିକ ସଂପ୍ରଦାୟ ସମ୍ବନ୍ଧିତ ସାହିତ୍ୟ । ମାତ୍ର କେତେକ ପ୍ରାରମ୍ଭିକ ପୁରାଣରେ ଅତୀତକୁ ନେଇ ରହିଥିବା ସେତେବେଳର କଳ୍ପନା ବର୍ଣ୍ଣିତ ହୋଇଛି । ତଥ୍ୟ ଅନୁଯାୟୀ, ପୁରାଣ ହେବ ବୈଦିକ ସାହିତ୍ୟର ପରବର୍ତ୍ତୀକାଳୀନ ଆଲେଖ୍ୟ । ମହାକାବ୍ୟଗୁଡ଼ିକ ମଧ୍ୟ ବେଦ ପରର ରଚନା । ମାତ୍ର ଏହା ବେଦରୁ ଭିନ୍ନ; ଅତୀତ ସମ୍ବନ୍ଧରେ ଏହାର ଏକ ନିଜସ୍ୱ ସୁପରିଭାଷିତ ଅବଧାରଣା ରହିଛି । ଏହି କାରଣରୁ ଭାରତୀୟ ସଭ୍ୟତାର ଆରମ୍ଭକୁ ନେଇ ରହିଥିବା ପୁରାଣ ବର୍ଣ୍ଣିତ ବିବରଣୀକୁ ଉଦ୍ଧରଣ କରିବା ଖୁବ୍ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ଏହା ହେଲା ବେଦର ସଂସାରକୁ ପ୍ରବେଶ କରିବା ପୂର୍ବର ବିବରଣୀ । ପୁରାଣକୁ ଇତିହାସର ମାନ୍ୟତା ଦିଆଯାଏ ନାହିଁ । ତଥାପି ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳରେ ଅତୀତକୁ ଯେଉଁଭଳି ଦେଖାଯାଉଥିଲା, ସେ ନେଇ ଏକ ଉପଯୋଗୀ ଦୃଷ୍ଟିକୋଣ ପାଇବାକୁ ହେଲେ ପୁରାଣରୁ ମିଳୁଥିବା ସମନ୍ୱିତ ଦୃଷ୍ଟି କାମରେ ଆସେ ।

ଭାରତୀୟ ଇତିହାସର ଆରମ୍ଭ କଥା କହୁଥିବା ପୌରାଣିକ ବିବରଣ ହେଲା ମୁଖ୍ୟତଃ ଏକ ପରିଚିତ ବିଷୟର ବିବିଧ ରୂପ । ଉଦାହରଣ ସ୍ୱରୂପ, ଏହି ବିବରଣ ବିଷ୍ଣୁପୁରାଣ ଏବଂ ମତ୍ସ୍ୟ ପୁରାଣରେ ଦେଖିବାକୁ ମିଳେ । ବିବରଣ ଅନୁସାରେ ପୃଥିବୀରେ ପ୍ରଥମେ ମନୁମାନେ ଶାସନ କରୁଥିଲେ । ପ୍ରଥମ ମନୁ ଥିଲେ ସ୍ୱୟଂଭୁ, ଅର୍ଥାତ୍ ସେ ସାକ୍ଷାତ୍ ବ୍ରହ୍ମାଙ୍କ ଶରୀରରୁ ଉତ୍ପନ୍ନ ହୋଇଥିଲେ । ସପ୍ତମ ମନୁଙ୍କର ଶାସନକାଳରେ ମହାପ୍ରଳୟ ସଂଘଟିତ ହୋଇଥିଲା, ଯାହାଫଳରେ କି ସମଗ୍ର ବିଶ୍ୱ ଜଳମଗ୍ନ ହୋଇପଡ଼ିଲା । ଏହି ଜଳପ୍ଲାବନ ସମ୍ପର୍କରେ ଭଗବାନ ବିଷ୍ଣୁ ପୂର୍ବରୁ ମନୁଙ୍କୁ ଚେତାବନୀ ଦେଇଥିଲେ ଏବଂ ନିଜ ପରିବାର ଏବଂ ସାତଜଣ ଆଦିଋଷିଙ୍କର ରକ୍ଷା ଲାଗି ନୌକାଟିଏ ନିର୍ମାଣ କରି ରଖିବାକୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଳୟ ସମୟରେ ବିଷ୍ଣୁ ଏକ ବିଶାଳ ମତ୍ସ୍ୟରୂପ ଧାରଣ କଲେ ଏବଂ ନୌକାଟିକୁ ତାଙ୍କ ଶିଙ୍ଘରେ ବାନ୍ଧିରଖିଲେ । ମତ୍ସ୍ୟରୂପୀ ପ୍ରଭୁ ଶିଙ୍ଘରେ ଟାଣି ଟାଣି ନୌକାକୁ ଏକ ପର୍ବତ ଶିଖରକୁ ନେଇଗଲେ । ଜଳପ୍ଲାବନ ହ୍ରାସ ହେବା ପର୍ଯ୍ୟନ୍ତ ମନୁ ସେହି ଶିଖରରେ ଅଟକି

ରହିଲେ । ତେଣିକି ସମସ୍ତେ ନିଜ ନିଜ ଘରକୁ ସୁରକ୍ଷିତ ଭାବରେ ପ୍ରତ୍ୟାବର୍ତ୍ତନ କଲେ । ମନୁଙ୍କର ସନ୍ତାନମାନେ ହେଲେ ଅନେକ ମାନବ ବଂଶର ପୂର୍ବଜ । ପରବର୍ତ୍ତୀ କାଳରେ ରାଜାମାନେ ଆଭିଜାତ୍ୟ ଲାଭ କରିବା ସକାଶେ ସେହି ସନ୍ତାନମାନଙ୍କ ମଧ୍ୟରୁ କାହାକୁ କାହାକୁ ନିଜର ପୂର୍ବଜ ବୋଲି ଦାବି କଲେ । ଏହି କାହାଣୀ ଭିନ୍ନ ଭିନ୍ନ ରୂପରେ ପ୍ରଚଳିତ । ତନ୍ମଧ୍ୟରୁ କେତେକ କାହାଣୀରେ ମନୁଙ୍କର ଜ୍ୟେଷ୍ଠ ସନ୍ତାନ ହେଲେ ହେଲେ ଇକ୍ଷ୍ୱାକୁ, ଯିଏ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଏବଂ କନିଷ୍ଠ ସନ୍ତାନ ହେଲେ ଇଳା; ସେ ଚିତ୍ରବଂଶର ପ୍ରତିଷ୍ଠାତା । କେତେକ ବିବରଣ ଅନୁଯାୟୀ, ଇଳା ଥିଲେ ଉଭୟଲିଙ୍ଗୀ ।

ଏହି ପାଠ ଅନୁସାରେ ମହାପ୍ଲାବନ ହଜାର ହଜାର ବର୍ଷ ପୂର୍ବରୁ ସଂଘଟିତ ହୋଇଥିଲା । ବର୍ଣ୍ଣନା ଅନୁଯାୟୀ, କାଳ ହେଲା ଗୋଟାଏ ଗୋଟାଏ ସମୟ ଖଣ୍ଡ । ମାନବ ପିଢ଼ିଗୁଡ଼ିକର ଅନୁକ୍ରମକୁ ବଂଶାବଳୀ ରୂପରେ ପ୍ରସ୍ତୁତ କରାଯାଏ । ଏହି ଅନୁକ୍ରମ ଖଣ୍ଡିତ ହୁଏନାହିଁ । ଅର୍ଥାତ୍ ଗୋଟାଏ କାଳଖଣ୍ଡର ଅନ୍ତ ହୋଇ ଅନ୍ୟ ଏକ କାଳଖଣ୍ଡ ଆଗମନ କଲା ଉତ୍ତାରୁ ମଧ୍ୟ ବଂଶ ଅନୁକ୍ରମ ଗଡ଼ିଚାଲିଥାଏ । ମନେହୁଏ, ଏହି ପଦ୍ଧତିରେ ଅତୀତର ଅବିଚ୍ଛିନ୍ନ ବର୍ଣ୍ଣନ କରିବାକୁ ପ୍ରୟାସ କରାଯାଏ । ବର୍ଣ୍ଣନ ମଧ୍ୟରେ ଗୋଟାଏ ପରିଣତି ବିନ୍ଦୁ ହେଲା 'ମହାଭାରତ'ରେ ବର୍ଣ୍ଣିତ କୁରୁକ୍ଷେତ୍ର ଯୁଦ୍ଧ । ମହାଭାରତ କାଳ ହେଲା ଏକ ଯୁଗସନ୍ଧି । ତା'ପରେ ଆରମ୍ଭ ହୁଏ ବର୍ତ୍ତମାନର ଯୁଗଚକ୍ର ବା କଳିଯୁଗ । ଏହି ଯୁଗର କାଳ ଗ୍ରହନକ୍ଷତ୍ରଗୁଡ଼ିକର ସ୍ଥିତି ଅନୁସାରେ ଦିଆଯାଇଛି । ଅନେକ ଶତାବ୍ଦୀ ପରେ ଜ୍ୟୋତିର୍ବିଜ୍ଞାନ ଉଦ୍ଦେଶ୍ୟରେ ସମ୍ଭବତଃ ଆର୍ଯ୍ୟଭଟ୍ଟ କାଳ ନିରୂପଣ କଲେ । ଏହାଫଳରେ ଯେଉଁ ତିଥି କଳିଯୁଗର ଆରମ୍ଭ ରୂପରେ ମିଳିଲା ତାହା ହେଲା ଖ୍ରୀ.ପୂ. 3102 ମସିହା । ମନେହୁଏ କଳିଯୁଗର ତାରିଖକୁ 'ମହାଭାରତ'ର ତାରିଖ ଉପରେ ଲଦି ଦିଆଗଲା, ଏଭଳି ଏକ ବିଶାଳ ଯୁଦ୍ଧ ନିମିତ୍ତ ଖ୍ରୀ.ପୂ. 3102 ହେବ ଖୁବ୍ ଆଗତୁରା ସମୟ । ଐତିହାସିକ ସାନ୍ନିଧ୍ୟ ଆଧାରରେ ଯେତେବେଳେ ପରିବର୍ତ୍ତୀ ତିଥିଗୁଡ଼ିକ ନିଶ୍ଚିତ କରାଗଲା, ତାହା ଉକ୍ତ ତିଥି ସହିତ ମେଳ ଖାଇଲା ନାହିଁ । ମହାଭାରତ ଯୁଦ୍ଧ ପରବର୍ତ୍ତୀ ବର୍ଣ୍ଣନରେ ରାଜବଂଶଗୁଡ଼ିକର ବୃତ୍ତାନ୍ତ ଦିଆଯାଇଛି । ରାଜବଂଶ ଓ ରାଜାମାନଙ୍କର ତାଲିକାର ଯେଉଁ ବିବରଣ, ତାହା ପ୍ରଥମ ସହସ୍ରାବ୍ଦର ମଧ୍ୟ ପର୍ଯ୍ୟନ୍ତ ଚାଲିଥାସେ । ପୁରାଣର ବର୍ଣ୍ଣନା ସେହିଠାରେ ଆସି ସମାପ୍ତ ହୁଏ । ତେଣୁ ପ୍ରାରମ୍ଭିକ ପୁରାଣ ରଚନାର ଅନ୍ତିମ ତିଥି ଭାବରେ ପ୍ରଥମ ସହସ୍ରାବ୍ଦୀର ମଧ୍ୟ କାଳକୁ ନିଆଯାଏ ।

ଘଟଣା ଘଟିବାର ଶହ ଶହ ବର୍ଷ ପରେ ଏହିସବୁ ପାରମ୍ପରିକ ବିବରଣକୁ ସଂଗ୍ରହ କରାଯାଇ ଲିଖିତ ରୂପ ଦିଆଯାଇଛି ବୋଲି ସାଧାରଣତଃ ଦାବି କରାଯାଏ । ଯେତେଦିନ

ପର୍ଯ୍ୟନ୍ତ ପୌରାଣିକ ବଂଶାବଳୀ ପରମ୍ପରା ଉପରେ ସୂତ ବା ଚାରଣକବିମାନଙ୍କର ଏକାଧିକାର ରହିଥିଲା, ତାହା ମୌଖିକ ଅବସ୍ଥାରେ ପ୍ରତିଷ୍ଠିତ ଥିଲା । ମାତ୍ର ପରେ ଉକ୍ତ ପରମ୍ପରାକୁ ପରବର୍ତ୍ତୀକାଳୀନ ରାଜାମାନେ ନିଜର ବୈଧତା ପାଇଁ ବ୍ୟବହାର କଲେ । ସେତେବେଳେ ଏହାକୁ ସଂକଳିତ ଓ ସମ୍ପାଦିତ କରାଗଲା ଏବଂ ସଦ୍ୟ ସନ୍ଦର୍ଭ ନିମନ୍ତେ ଲିପିବଦ୍ଧ କରାଗଲା । ସେହି କାରଣରୁ ତହିଁରେ ଅତୀତର ପରବର୍ତ୍ତୀ ଦୃଷ୍ଟି ସମାବିଷ୍ଟ ହୋଇ ରହିଲା । ଏମିତିରେ ଅନ୍ୟ ପରମ୍ପରାଗୁଡ଼ିକ ଭଳି ଏହାକୁ ମଧ୍ୟ ଅକ୍ଷରେ ଅକ୍ଷରେ ସତ ବୋଲି ସ୍ୱୀକାର କରାଯିବା କଥା ନୁହେଁ । ପୁରାଣର ଏହି ଅଂଶ ପୂର୍ଣ୍ଣତଃ ମିଥକୀୟ ନୁହେଁ । ଏଥିରେ କେତେକ ଐତିହାସିକ ବଂଶ ସମ୍ବନ୍ଧରେ କିଛି କିଛି ଉଲ୍ଲେଖ ମଧ୍ୟ ରହିଛି । ହେଲେ ଏହାକୁ ତଥ୍ୟାତ୍ମକ ଇତିହାସ ବୋଲି ଯେଉଁ ଦାବି କରାଯାଏ, ତାହା ମାନ୍ୟ ହୋଇ ନ ପାରେ । ଅନ୍ୟ ପାଠ୍ୟ ସାମଗ୍ରୀ ଅପେକ୍ଷା ଅଧିକ ବିଶ୍ଲେଷଣାତ୍ମକ ଢଙ୍ଗରେ ଏହାକୁ ନିରୀକ୍ଷଣ କରାଯିବା କଥା । ଏହି ଧରଣର ପାଠ ରଚନାକାର, ରଚନାକାଳ, ପ୍ରାମାଣିକତା ଓ ପାଠ୍ୟ-ହସ୍ତକ୍ଷେପ ସମ୍ବନ୍ଧରେ ନାନାପ୍ରକାର ଐତିହାସିକ ସମସ୍ୟା ସୃଷ୍ଟି କରନ୍ତି । ବଂଶାବଳୀର ବିଭାଗଗୁଡ଼ିକର ପ୍ରାମାଣିକତା ନିଶ୍ଚିତ କରିବା କଠିନ ବ୍ୟାପାର । କାରଣ ଅନ୍ୟ ସ୍ରୋତସାମଗ୍ରୀରେ ଅଳ୍ପ କେତୋଟି ମାତ୍ର ନାମ ମିଳିଥାଏ । ପୁଣି ବିଭିନ୍ନ ପାଠରେ ରହିଥିବା ବଂଶାବଳୀ ମଧ୍ୟରେ ସାରଭୂତ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଆବଶ୍ୟକତା ଅନୁଯାୟୀ ବଂଶାବଳୀକୁ କେବେ ପ୍ରସାରିତ କରିଦିଆଯାଏ ତ ଆଉ କେବେ ସଂକୁଚିତ କରିଦିଆଯାଏ ଏବଂ ତହିଁରେ କିମ୍ବଦନ୍ତୀଗୁଡ଼ିକୁ ଗୁନ୍ଥି ଦିଆଯାଏ ।

'ମନୁ' ହେଉଛି ମାନବ ଶବ୍ଦର ବ୍ୟୁତ୍ପତ୍ତିରୁ ସୃଷ୍ଟ ଶବ୍ଦ । ମାନବର ଅର୍ଥ ହେଲା ମାନବ ସମାଜ । ପ୍ରଥମ ଶାସକ ପୃଥୁଙ୍କୁ ନେଇ ଯେଉଁ ଦନ୍ତକଥା ରହିଛି, ତା' ଅନୁଯାୟୀ ସେ ବଣଜଙ୍ଗଲ ସଫାକଲେ ଓ କୃଷିକାର୍ଯ୍ୟ ଏବଂ ଗୋପାଳନ ଆରମ୍ଭ କଲେ । ଅର୍ଥାତ୍ ପୁରାତତ୍ତ୍ୱ ସମ୍ବନ୍ଧିତ ପ୍ରାରମ୍ଭିକ ଜନବସତିର ପ୍ରତିଫଳନ ଏହି ଦନ୍ତକଥାରେ ଦେଖିବାକୁ ମିଳେ । ମହାପ୍ଲାବନର ଟିକିନିଖି ବିବରଣୀକୁ ଅଧ୍ୟୟନ କଲେ ମେସୋପୋଟାମିଆ ସଭ୍ୟତାର ଦନ୍ତକଥା ସ୍ମରଣକୁ ଆସେ । ଏହା ହିବ୍ରୁମାନଙ୍କର କିମ୍ବଦନ୍ତୀକୁ ମଧ୍ୟ ସ୍ମରଣ କରାଏ । ଉକ୍ତ କିମ୍ବଦନ୍ତୀରେ ମହାପ୍ଲାବନରୁ ପ୍ରାଣରକ୍ଷା କରିଥିବା 'ନୁହର ଡଙ୍ଗା' (Noah's Ark)ର ଉଲ୍ଲେଖ ରହିଛି । ସମ୍ଭବତଃ ଭାରତୀୟ କିମ୍ବଦନ୍ତୀଟି ହରପ୍ପା ପରମ୍ପରାରେ ଜନ୍ମ ନେଇଥାଇପାରେ । ମୂଳତଃ ତାହା ମେସୋପୋଟାମିଆ ସଭ୍ୟତାରୁ ଆସିଥାଇପାରେ । ଯେତେବେଳେ ପୁରାଣମାନଙ୍କୁ ସମ୍ପାଦିତ କରାଗଲା, ସେଗୁଡ଼ିକର ନୂଆ ସଂସ୍କରଣ ତିଆରି ହେଲା । ରାଜପରିବାରମାନେ ନିଜ ନିଜର ମୂଳକୁ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶରେ ଖୋଜିଲେ । ତେଣୁ ସ୍ୱାଭାବିକ ଭାବରେ ସେମାନେ ନିଜ ବଂଶକୁ ପୂର୍ବକାଳୀନ ରାଜାମାନଙ୍କ ସହ ସଂଯୋଜିତ କଲେ ।

ପୁରାଣ ଓ ମହାକାବ୍ୟ ମଧ୍ୟରେ ସମ୍ବନ୍ଧ ହେଲା ଯେ, ମହାକାବ୍ୟର ପାତ୍ରମାନଙ୍କ ସହ ମନୁଙ୍କର ସନ୍ତାନମାନେ ବଂଶାନୁକ୍ରମିକଭାବେ ଯୋଡ଼ି ହୋଇଥିବାର ଦେଖାଯାଏ । ସ୍ୱାଭାବିକ ଭାବରେ ସମାନ୍ତରାଳ ବିବରଣମାନ ମଧ୍ୟ ରହିଛି । ସେଗୁଡ଼ିକ ହୁଏତ ମହାକାବ୍ୟର ଚରିତ୍ର ଆଧାରିତ ଅଥବା ଏକ ସାଧାରଣ ଉତ୍ସରୁ ସବୁଯାକ ବିବରଣ ଆନୀତ । ବର୍ଣ୍ଣନାତ୍ମକ ସାହିତ୍ୟର ଅନୁରକ୍ଷଣ ପ୍ରାରମ୍ଭିକ ସ୍ତରରେ ମୌଖିକ ପରମ୍ପରାରେ କରାଯାଇଥାଏ । ତହିଁରେ ଚାରଣକବିମାନେ ନିଜ ପକ୍ଷରୁ କିଛି କିଛି ଯୋଡ଼ିଦିଅନ୍ତି । ତେଣୁ ରଚନା ଦୀର୍ଘ ହେଲେ ସୁଦ୍ଧା ତା'ର ରଚୟିତା ଜଣେ ବୋଲି କହିବା ସତ୍ୟର ଅପଳାପ ହେବ । ଅର୍ଥାତ୍ ଏଭଳି ପୁରାକାଳୀନ ରଚନାର ଏକାଧିକ ରଚନାକାର ରହିଥାନ୍ତି । ଏହାଫଳରେ ପାଠ୍ୟ-ହସ୍ତକ୍ଷେପ ତ ହୁଏ, ତା' ସହିତ ରଚନାକାଳର ନିଶ୍ଚିତ ସମୟ ମଧ୍ୟ ଏକାଧିକ ହୁଏ, ଯାହାକୁ ସ୍ଥିର କରିବା କାଠିକର ହୁଏ । ମହାକାବ୍ୟିକ ସାହିତ୍ୟ କଦାପି ଇତିହାସ ହୋଇ ନ ପାରେ, ମାତ୍ର ଅତୀତକୁ ପର୍ଯ୍ୟାବଲୋକନ କରିବା ନିମନ୍ତେ ଏହା ଏକ ମାଧ୍ୟମ ନିଶ୍ଚୟ । ଏକ ଅତୀତର କାଳଖଣ୍ଡ ତା'ଠାରୁ ପୁରୁଣା ଏକ କାଳଖଣ୍ଡକୁ ଏକ ରକମର ମୋହାବିଷ୍ଟ ହୋଇ ଅବଲୋକନ କରେ ଏବଂ ନିଜ ସମୟରେ ତିରୋହିତ ହୋଇଯାଇଥିବା ମୂଲ୍ୟ ଓ ଆଦର୍ଶକୁ ଖୋଜିବା ଢଙ୍ଗରେ ସେହି ଅତୀତକୁ ଚିତ୍ରଣ କରେ । ତା'ର ସେହି ଚିତ୍ରଣରେ ନିହିତ ଥିବା ସାମାଜିକ ମାନ୍ୟତା ଐତିହାସିକ ନିମନ୍ତେ ଉପଯୋଗୀ ବସ୍ତୁ ସିଦ୍ଧ ହୁଏ । ବର୍ଣ୍ଣିତ ଘଟଣାମାନ କାଳ୍ପନିକ ହେଲେ ସୁଦ୍ଧା ଏହି ଉପଯୋଗିତା ଊଣା ହୁଏ ନାହିଁ ।

ଚନ୍ଦ୍ରବଂଶର ବିଭିନ୍ନ ଖଣ୍ଡର କଥାକୁ ମହାଭାରତ ରୂପାୟିତ କରେ । ଏଥିରେ ଯେଉଁ ବର୍ଣ୍ଣନ, ତାହା କୁଳ ଓ ବଂଶ ସଂଗଠନ ଆଧାରିତ ସମାଜକୁ ଚିହ୍ନିତ କରେ । ରାଜ୍ୟ ପ୍ରଶାସନର ଜଟିଳତାକୁ ହୁଏତ ପରବର୍ତ୍ତୀ ସମୟରେ ତହିଁରେ ଯୋଡ଼ି ଦିଆଗଲା । ରାମାୟଣ ହେଉଛି ରାଜତନ୍ତ୍ରର ସ୍ପଷ୍ଟତର ଅନୁମୋଦନ । ତା'ର ସମ୍ବନ୍ଧ ରହିଛି ସୂର୍ଯ୍ୟବଂଶ ସହିତ । ଉଭୟ ମହାଭାରତ ଓ ରାମାୟଣରେ ଏଭଳି ସମାଜର ମଧ୍ୟ ଉଲ୍ଲେଖ ରହିଛି, ଯାହା ରାଜତନ୍ତ୍ରର ଅନ୍ତର୍ଭୁକ୍ତ ନ ଥିଲା । ଏହି କାରଣରୁ ମହାକାବ୍ୟମାନେ ଏଭଳି ଅନେକ ସମାଜର ଆଭାସ ଦିଅନ୍ତି, ଯାହା ବିସ୍ମୃତିର ଗର୍ଭରେ ଏବଂ ରାଜତନ୍ତ୍ରରୁ ଭିନ୍ନ । ପୁଣି ସେହି ସମାଜଗୁଡ଼ିକର ଏମିତି ସବୁ ଘଟଣା ସହିତ ସମ୍ବନ୍ଧ, ଯାହାକୁ ଭିତ୍ତିକରି ନିର୍ଦ୍ଦିଷ୍ଟ କାଳ ନିରୂପଣ କରିବା କାଠିକର, କାରଣ ତହିଁରେ ଥିବା ଅନେକ ଉପାଦାନକୁ ମୂଳ ରଚନାର ଅନେକ ପରେ ଯୋଡ଼ି ଦିଆଯାଇଛି । ଆଜି ଆମେ ମହାକାବ୍ୟର ଯେଉଁ ପାଠ୍ୟରୂପ ପାଉଁ, ତାହା ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗ ଏବଂ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗ ମଧ୍ୟରେ ଲିଖିତ ବୋଲି (500 BC ଓ 500 AD) ସାଧାରଣତଃ ସ୍ୱୀକାର କରାଯାଏ । ଏକ ବିସ୍ତୀର୍ଣ୍ଣ ସମୟ

କାଳରେ (ପ୍ରାୟ 1000 ବର୍ଷ ମଧ୍ୟରେ) ଏହା ଲିଖିତ ହୋଇଥିବାରୁ ତାକୁ କୌଣସି ଏକ ସୁପରିଭାଷିତ କ୍ଷୁଦ୍ର କାଳାଂଶର ଅଧ୍ୟୟନ ବିଷୟକ ପ୍ରାମାଣିକ ସ୍ରୋତ ବୋଲି ଦାବି କରାଯାଇ ନ ପାରେ । ଏହି ଜଟିଳତା କାରଣରୁ ଐତିହାସିକମାନେ 'ମହାକାବ୍ୟର କାଳ' ସଂକ୍ରାନ୍ତୀୟ ଅବଧାରଣାକୁ ଆଉ ଅଧିକ ଗୁରୁତ୍ୱ ଦେଉନାହାନ୍ତି । କାରଣ ରଚନାର ଅଂଶ ଭାବରେ ମହାକାବ୍ୟର ଘଟଣାମାନ ହୁଏତ ଇତିହାସସିଦ୍ଧ ହୋଇପାରେ, ମାତ୍ର ତା' ପାଇଁ ସହାୟକ ତଥ୍ୟ ପ୍ରମାଣ ରହିବା କଥା । ସେଥିପାଇଁ ମହାକାବ୍ୟ ବର୍ଣ୍ଣିତ ଘଟଣା ସହିତ ପୁରାତାତ୍ତ୍ୱିକ ସାମଗ୍ରୀର ସମ୍ପର୍କ ଯୋଡ଼ିବା ପାଇଁ ପ୍ରୟାସ ହୁଏ । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେବ ହସ୍ତିନାପୁରର ବନ୍ୟା, ଯାହାର ଉଲ୍ଲେଖ ମହାଭାରତରେ କରାଯାଇଛି ଏବଂ ଯାହାର ପ୍ରମାଣ ପୁରାତତ୍ତ୍ୱରୁ ମଧ୍ୟ ପ୍ରାପ୍ତ ହୋଇଛି । ସେହି ବନ୍ୟାର ଆଧାରରେ ମହାଭାରତର ସମୟ ଖ୍ରୀ.ପୂ. ୨00 ପାଖାପାଖି ବୋଲି କୁହାଯାଏ । ମାତ୍ର ଏଭଳି ସମ୍ବନ୍ଧ ସ୍ଥାପନ ମଧ୍ୟ କମ୍ ଜଟିଳତାପୂର୍ଣ୍ଣ ନୁହେଁ, କାରଣ କାଳାନୁକ୍ରମ ଓ ସ୍ଥାନ ଅସାଧ୍ୟ ସମସ୍ୟାମାନ ସୃଷ୍ଟି କରିଦେଇପାରେ । ମହାକାବ୍ୟର କାବ୍ୟାତ୍ମକ କଳ୍ପନା ଖୁବ୍ ଆକର୍ଷକ ନିଶ୍ଚୟ, ମାତ୍ର ତାହା ଐତିହାସିକ ପ୍ରାମାଣିକତାର ସର୍ବଦା ସହଚରୀ ହୋଇ ନ ପାରେ ।

ଆଜି ମହାଭାରତ ଯେଉଁ ରୂପରେ ଆମଠାରେ ଉପଲବ୍ଧ ତାହା ହେଲା ଏକ ଦୀର୍ଘତମ କାବ୍ୟ । ତହିଁରେ ମୁଖ୍ୟ ଘଟଣା ହେଲା କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ସଂଘଟିତ ହୋଇଥିବା ଯୁଦ୍ଧ । ଏହି ମୁଖ୍ୟ ଘଟଣାର ଆଖପାଖରେ ଅନ୍ୟ ଘଟଣାମାନ ପରିଘଟିତ ହୁଅନ୍ତି । ଯେଉଁ ସ୍ଥାନରେ ଏହି ଘଟଣା ସମୂହର କ୍ଷେତ୍ର, ତାହା ହେଲା ଦିଲ୍ଲୀ ଓ ତା'ର ଆଖପାଖର ଉର୍ବର ଓ କୂଟନୀତିକ ଭୂମି । କୌରବମାନେ ହେଲେ ଧୃତରାଷ୍ଟ୍ରଙ୍କର ଶହେ ପୁଅ; ରାଜଧାନୀ ସେମାନଙ୍କର ହସ୍ତିନାପୁର । ପାଣ୍ଡବମାନେ ପାଣ୍ଡୁଙ୍କର ପାଞ୍ଚ ପୁତ୍ର । ସମ୍ପର୍କରେ କୌରବ ଓ ପାଣ୍ଡବମାନେ ହେଲେ ଭାଇ-ଭାଇ । ଯେହେତୁ ଧୃତରାଷ୍ଟ୍ର ଥିଲେ ଜନ୍ମାନ୍ଧ ଏବଂ ରାଜ୍ୟ ଶାସନ ପାଇଁ ଅସମର୍ଥ, କୁରୁ ପ୍ରାନ୍ତର ଉତ୍ତରାଧିକାର ପ୍ରାପ୍ତ ହେଲା ପାଣ୍ଡବମାନଙ୍କୁ । ମାତ୍ର ପାଣ୍ଡୁଙ୍କର ଶରୀରରେ ଏକ ଅସାଧ୍ୟ ଚର୍ମରୋଗ ଥିବାରୁ ପାଣ୍ଡବମାନଙ୍କର ଉତ୍ତରାଧିକାର ପ୍ରାପ୍ତି ଅନିଶ୍ଚିତ ହୋଇପଡ଼ିଲା । ସେତେବେଳର ସଂସ୍କୃତି ଅନୁଯାୟୀ, ରାଜ୍ୟର ଶାସକ ଅନ୍ତତଃ ବାହାରକୁ ନିରୋଗ ଦେଖାଯିବା କଥା । ଧୃତରାଷ୍ଟ୍ରଙ୍କର ଇଚ୍ଛା ନ ଥିଲା କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ କଳହ ହେଉ । ତେଣୁ କଳହକୁ ଏଡ଼ାଇବା ଉଦ୍ଦେଶ୍ୟରେ ରାଜ୍ୟକୁ ସେ ଦୁଇଭାଗରେ ବିଭକ୍ତ କଲେ ଏବଂ ଗୋଟାଏ ଭାଗକୁ ପାଣ୍ଡବମାନଙ୍କୁ ଏବଂ ଅନ୍ୟ ଭାଗଟିକୁ କୌରବମାନଙ୍କୁ ପ୍ରଦାନ କଲେ । ରାଜ୍ୟ ପ୍ରାପ୍ତି ଉତ୍ତାରୁ ପାଣ୍ଡବମାନଙ୍କର ରାଜଧାନୀ ହେଲା ଇନ୍ଦ୍ରପ୍ରସ୍ଥ, ଯାହା ଦିଲ୍ଲୀ ନିକଟରେ ଅବସ୍ଥିତ । ମାତ୍ର ଏହି ବ୍ୟବସ୍ଥାରେ କୌରବମାନେ ସନ୍ତୁଷ୍ଟ ନ ଥିଲେ । ସେମାନେ ପାଣ୍ଡବମାନଙ୍କୁ ଏକ ପଶାଖେଳକୁ ଆମନ୍ତ୍ରଣ ଜଣାଇଲେ ।

ପଶାରେ ପାଣ୍ଡବମାନେ ତାଙ୍କ ସମସ୍ତ ସମ୍ପତ୍ତିକୁ ଖେଳି ହାରିଗଲେ । ପୈତୃକ ସମ୍ପତ୍ତି ଓ ତାଙ୍କର ସହ-ପତ୍ନୀ ମଧ୍ୟ ପଶାରେ ବାଜି ପଡ଼ିଲେ । ଏହାପରେ ଶାନ୍ତି-ଚୁକ୍ତି ହେଲା । ତା' ଅନୁଯାୟୀ, ପାଣ୍ଡବମାନେ ପୈତୃକ ସମ୍ପତ୍ତିର ଅର୍ଦ୍ଧେକ ଏବଂ ସହ-ପତ୍ନୀ ଦ୍ରୌପଦୀଙ୍କୁ ରଖିପାରିବେ ବୋଲି ସ୍ଥିର ହେଲା । ମାତ୍ର ଏହି ସର୍ତ୍ତକୁ ଲାଗୁ କରିବାକୁ ହେଲେ ପ୍ରଥମେ ସେମାନେ ତେର ବର୍ଷ ବନବାସରେ ଯିବେ । ବନବାସ ଅବଧି ଶେଷ ହେଲା, ହେଲେ କୌରବମାନେ ଭାଇଭାଗ ଦେବାକୁ ରାଜି ହେଲେ ନାହିଁ । ଶେଷରେ ବିବାଦର ଯୁଦ୍ଧରେ ନିଷ୍ପତ୍ତି ହେବ ବୋଲି ସ୍ଥିର ହେଲା । କୁରୁକ୍ଷେତ୍ରର ସମତଳ କ୍ଷେତ୍ରରେ ଉଭୟପକ୍ଷ ଅଠର ଦିନ ଧରି ଯୁଦ୍ଧ କଲେ । ଯୁଦ୍ଧରେ ଅନେକ କୁଳ ନାଶ ପାଇଲେ । ଅଧିକାଂଶ କୌରବ ମଧ୍ୟ ପ୍ରାଣ ହରାଇଲେ । ପାଣ୍ଡବମାନେ ଦୀର୍ଘକାଳ ଧରି ଶାନ୍ତିରେ ରାଜ୍ୟ ଶାସନ କରିବା ଉତ୍ତାରୁ ରାଜତ୍ୱ ତ୍ୟାଗକଲେ ଏବଂ ସେମାନଙ୍କର ଜଣେ ନାତି ହାତରେ ରାଜ୍ୟଭାର ଅର୍ପଣ କରି ହିମାଳୟସ୍ଥିତ ଦେବଲୋକକୁ ଚାଲିଗଲେ ।

ମହାଭାରତର ପରିବେଶ ହେଲା କୁଳ ଆଧାରିତ ସମାଜ । ବିଶେଷକରି ଯାଦବମାନଙ୍କ କ୍ଷେତ୍ରରେ ଏହା ଦେଖିବାକୁ ମିଳେ । ପାଣ୍ଡବମାନଙ୍କର ଜଣେ ଅନ୍ତରଙ୍ଗ ସଖା ଓ ଉପଦେଷ୍ଟା ଭାବରେ ଏକ ଯାଦବ ମୁଖ୍ୟ କୃଷ୍ଣ ମହାଭାରତର ଆଖ୍ୟାନରେ ବାରମ୍ବାର ହସ୍ତକ୍ଷେପ କରନ୍ତି । ଯାଦବମାନେ ହେଲେ ପୁରୁଙ୍କର ଅଗ୍ରଜ ଯଦୁଙ୍କର ଦାୟାଦ । ପୁରୁଙ୍କର ବଂଶଧର ଯେମିତି କୌରବ ଓ ପାଣ୍ଡବ କୁଳ, ସେମିତି ଯଦୁଙ୍କର ବଂଶଧର ହେଲେ ଯାଦବ କୁଳ । ଏହି ଭିତ୍ତିରେ ପାଣ୍ଡବ-କୌରବ ଓ ଯାଦବମାନଙ୍କ ମଧ୍ୟରେ ଏକ ଦୂର କୁଳସମ୍ବନ୍ଧ ଦେଖିବାକୁ ମିଳେ । ମହାଭାରତର ଭୌଗୋଳିକ କ୍ଷେତ୍ର ଗଙ୍ଗା-ଯମୁନାର ଦୋଆବ ଓ ଆଖପାଖର ଅଞ୍ଚଳ ଓ ଗୁଜରାଟର ସୌରାଷ୍ଟ୍ର ଅଞ୍ଚଳରେ କେନ୍ଦ୍ରିତ ଥିଲା । ଗଙ୍ଗା-ଯମୁନା ଦୋଆବ କ୍ଷେତ୍ର ଥିଲା କୁରୁ-ପାଣ୍ଡବାଧୀନ ଏବଂ ସୌରାଷ୍ଟ୍ର ଥିଲା ଯାଦବ ଅଧୀନ । ପ୍ରସଙ୍ଗକ୍ରମେ ଏହା ଉଲ୍ଲେଖଯୋଗ୍ୟ ଯେ, ହରପ୍ପା ସଭ୍ୟତାର ନଗରୀଗୁଡ଼ିକର କ୍ରମପତନ ହେବାପରେ ଏହି ଦୁଇ କ୍ଷେତ୍ର ଅଧିକ କର୍ମଚଞ୍ଚଳ ହୋଇଥିଲେ ।

ଆରମ୍ଭରେ ମହାଭାରତ ହୁଏତ ଏକ ସ୍ଥାନୀୟ ଭ୍ରାତୃବିବାଦର ବ୍ୟାଖ୍ୟାନ ହୋଇଥାଇ ପାରେ । ପରବର୍ତ୍ତୀ ସମୟରେ ଏହା ଚାରଣ କବିମାନଙ୍କର ଦୃଷ୍ଟି ଆକର୍ଷଣ କଲା ଏବଂ ଆଖ୍ୟାନରେ ଚାରଣମାନେ ପରିଚିତ ଥିବା ପ୍ରାୟ ସମସ୍ତ ବଂଶ ଓ ଲୋକସମାଜ ଏହି ବିବାଦରେ ଅଂଶଗ୍ରହଣ କରିଥିଲେ ବୋଲି ସ୍ଥାପିତ କରାଗଲା । ପ୍ରତିକାତ୍ମକ ଭାବରେ ଗୋଟାଏ ଦୃଷ୍ଟିରୁ ଦେଖିଲେ, ଯୁଦ୍ଧ କୁଳଭିତ୍ତିକ ସମାଜରେ ଯବନିକା ପକାଇଲା । ଏହାପରେ ଯେଉଁ ସମାଜଗୁଡ଼ିକର ଆବିର୍ଭାବ ହେଲା, ତାହା ରାଜତନ୍ତ୍ରକୁ ସମର୍ଥନ କରୁଥିବାର ଲକ୍ଷ୍ୟ କରାଗଲା ।

ମାତ୍ର ମହାକାବ୍ୟଗୁଡ଼ିକରେ ଯେମିତି ହୁଏ, ଏଥିରେ ମଧ୍ୟ ବାରମ୍ବାର ଯୋଡ଼ାଯାଇଥିବା ଉପାଖ୍ୟାନଗୁଡ଼ିକ ଯୋଗୁଁ କୌଣସି କଥାର ଏକାଧିକ ଅର୍ଥ ବାହାରିପାରେ । ପରମ୍ପରାଗତ ଭାବରେ ମହାଭାରତର ରଚୟିତା ହେଲେ ବ୍ୟାସ । ସ୍ୱୟଂ ରଚୟିତା ବ୍ୟାସ ମଧ୍ୟ ଆଖ୍ୟାନରେ ଅନେକ ଗୂଢ଼ ଭୂମିକା ନିର୍ବାହ କରୁଥିବାର ଉଲ୍ଲେଖ ରହିଛି । ମାତ୍ର-ବାସ୍ତବିକତା ହେଲା ଯେ, ମହାଭାରତ କୌଣସି ଜଣେ ରଚନାକାରଙ୍କ କୃତି ହୋଇ ନ ପାରେ । ଏହା କେବଳ ଏକ ବିବାଦ ଓ ଯୁଦ୍ଧର କାହାଣୀ ନୁହେଁ । ଏଥିରେ ଅନେକ ଉପାଖ୍ୟାନ ରହିଛି । ତନ୍ମଧ୍ୟରୁ କେତେକ ଉପାଖ୍ୟାନ ମୂଳ କାହାଣୀ ସହିତ ସୂତ୍ରବଦ୍ଧ ମଧ୍ୟ ନୁହନ୍ତି । ପୁଣି ମହାଭାରତରେ ଅନେକ କଥ୍ୟ-ଅନ୍ତକ୍ଷେପ (interpolations) ରହିଛି । ଭାଗବତ ଗୀତା ପରି କେତେକ କଥା ତହିଁରେ ସ୍ୱତନ୍ତ୍ର ପରିଚିତି ଲାଭ କରନ୍ତି । ମହାକାବ୍ୟ ଏବଂ କୂଟ-ମହାକାବ୍ୟ (Pseudo epic) ନାମରେ ମହାଭାରତ ମଧ୍ୟରେ ଥିବା ପାର୍ଥକ୍ୟ ବାରିବାକୁ ଅନେକ ପ୍ରୟାସ ହୋଇଛି । ପୁରୁଣା ଆଖ୍ୟାନକୁ ମୂଳ ମହାକାବ୍ୟ ଏବଂ ସଂଲଗ୍ନିକୃତ ଅଂଶକୁ କୂଟ-ମହାକାବ୍ୟ ଭାବରେ ଚିହ୍ନିତ କରାଯାଇଛି । କୂଟ-ମହାକାବ୍ୟ ହେଲା ମୁଖ୍ୟତଃ ଉପଦେଶାତ୍ମକ ଏବଂ ମୂଳ-ମହାଭାରତ ହେଲା ପ୍ରାୟତଃ ବର୍ଣ୍ଣନାତ୍ମକ । ମାତ୍ର ଏହି ପ୍ରଭେଦ ମଧ୍ୟ ସର୍ବଦା ଏକ ବିଶ୍ୱାସଯୋଗ୍ୟ କାଳାନୁକ୍ରମିକ ବିଭାଜନ ନିମନ୍ତେ ସହାୟକ ହୁଏ ନାହିଁ ।

ଆକାର ଦୃଷ୍ଟିରୁ ମହାଭାରତ ତୁଳନାରେ ରାମାୟଣ ହେଉଛି ଏକ କ୍ଷୁଦ୍ରକାବ୍ୟ, ଯଦିଓ ମୂଳ ରାମାୟଣରେ ମଧ୍ୟ ଅନେକ କଥା ଯୋଡ଼ାଯାଇଛି । ଏଥିରେ କ୍ଷେତ୍ର ହେଲା ମଧ୍ୟ ଗାଙ୍ଗେୟ ସମତଳ ଅଞ୍ଚଳର ପୂର୍ବବର୍ତ୍ତୀ ପ୍ରାନ୍ତ ଏବଂ ବିନ୍ଧ୍ୟ ପାର୍ବତ୍ୟ କ୍ଷେତ୍ର । ମୂଳ ରାମାୟଣର ରଚୟିତା ରୂପରେ କବି ବାଲ୍ମୀକିଙ୍କୁ ଚିହ୍ନିତ କରାଯାଏ । ସମ୍ଭବତଃ ସେ ଚାରଣ କବିମାନଙ୍କ ପାଖରୁ ଆଖ୍ୟାନଗୁଡ଼ିକୁ ନେଇ ଏକ ମହାକାବ୍ୟରେ ରୂପାୟିତ କଲେ । ବଳିଷ୍ଠ ସୂଚନୀ ଯୋଗୁଁ ରାମାୟଣ ଆଦ୍ୟକାଳୀନ ସଂସ୍କୃତ ସାହିତ୍ୟର ଏକ ମାନକ ଭାବରେ ପରିଚିତି ପାଇଲା । ରାମାୟଣ କାହାଣୀର ଖଣ୍ଡଗୁଡ଼ିକର ସାଦୃଶ୍ୟ ବୌଦ୍ଧ ଜାତକ କଥା ଇତ୍ୟାଦି ଆଖ୍ୟାନଗୁଡ଼ିକରେ ରହିଥିବାର ପରିଲକ୍ଷିତ ହୁଏ । ଏଥିରୁ ସିଦ୍ଧ ହୁଏ ଯେ, ରାମାୟଣରେ ମଧ୍ୟ ସମୟେ ସମୟେ ଅନ୍ୟ ଆଖ୍ୟାନଗୁଡ଼ିକୁ ଯୋଡ଼ାଯାଇଛି । ରାମାୟଣର ଭାଷା ଅଧିକ ପରିଷ୍କୃତ ଅଟେ ଏବଂ ତା'ର ଅବଧାରଣାମାନ ମହାଭାରତରେ ପ୍ରତିବିମ୍ବିତ ସମାଜର ପରିବର୍ତ୍ତୀ ସମୟର ବୋଲି ମନେହୁଏ । ମାତ୍ର ପାରମ୍ପରିକ ଭାବରେ ଏହାକୁ ମହାଭାରତର ପୂର୍ବବର୍ତ୍ତୀ ରଚନା କୁହାଯାଏ । ରାମାୟଣକୁ ପ୍ରଥମ ସଚେତ ସାହିତ୍ୟିକ ରଚନା ବା ଆଦିକାବ୍ୟର ମାନ୍ୟତା ଦିଆଯାଏ । ଅନ୍ୟ କୌଣସି ମହାକାବ୍ୟକୁ ଏହି ମାନ୍ୟତା ପ୍ରଦାନ କରାଯାଏ ନାହିଁ ।

କୋଶଳ ରାଜ୍ୟର ଉତ୍ତରାଧିକାରୀ ରାମ ବିଦେହ ରାଜ୍ୟର ରାଜକୁମାରୀ ସୀତାଙ୍କୁ ବିବାହ କଲେ । ରାମଙ୍କର ବିମାତା ଚାହିଁଲେ ତାଙ୍କ ପୁତ୍ର ଭରତ ରାଜ୍ୟର ରାଜା ହେଉ । ତେଣୁ ସେ ସଫଳତାର ସହିତ କୂଟଚକ୍ରାନ୍ତ କରି ରାମଙ୍କୁ ଚଉଦ ବର୍ଷ ପାଇଁ ବନବାସକୁ ପଠାଇଦେଲେ । ରାମ ନିଜ ପତ୍ନୀ ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହିତ ବନବାସ ଗଲେ । ବନବାସସ୍ଥଳୀ ହେଲା ଦକ୍ଷିଣ ଉପଦ୍ୱୀପର ବଣଜଙ୍ଗଲ । ସେଠାରେ ସେମାନେ ଅରଣ୍ୟବାସୀ ରୂପେ ବସବାସ କଲେ । ବନବାସ ରହଣି ସମୟରେ ଲଙ୍କାର ରାକ୍ଷସରାଜା ରାବଣ ସୀତାଙ୍କୁ ଅପହରଣ କରିନେଲା । ରାବଣ ବିରୁଦ୍ଧରେ ରାଜା ଏକ ସେନାବାହିନୀ ସଂଗଠିତ କଲେ । ଏଥିରେ ତାଙ୍କୁ ମାଙ୍କଡ଼ ରାଜା ହନୁମାନଙ୍କର ସହଯୋଗ ପ୍ରାପ୍ତ ହେଲା । ରାମ ଓ ରାବଣଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ସଂଘଟିତ ହେଲା । ଯୁଦ୍ଧରେ ରାବଣ ଓ ତାଙ୍କ ସେନା ଧ୍ୱଂସ ପାଇଲେ; ସୀତାଙ୍କୁ ଉଦ୍ଧାର କରାଗଲା । ନିଜର ଶୁଦ୍ଧତା ପ୍ରତିପାଦନ କରିବା ନିମନ୍ତେ ସୀତାଙ୍କୁ ଅଗ୍ନିପରୀକ୍ଷା ଦେବାକୁ ପଡ଼ିଲା । ତେଣିକି ରାମଙ୍କ ସହିତ ତାଙ୍କର ପୁନର୍ମିଳନ ହେଲା । ଚଉଦ ବର୍ଷ ବନବାସ ସମାପ୍ତ ହୁଅନ୍ତେ ରାମ, ସୀତା ଓ ଲକ୍ଷ୍ମଣ କୋଶଳ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ସେମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ରାମ ରାଜା ହେଲେ । ତାଙ୍କ ବନବାସ କାଳରେ ପିତା ଦଶରଥ ମୃତ୍ୟୁବରଣ କରି ସାରିଥିଲେ । ରାମଙ୍କର ଶାସନକାଳକୁ ସୁଖସମୃଦ୍ଧି ଏବଂ ନ୍ୟାୟପୂର୍ଣ୍ଣ ରାଜ୍ୟ ରୂପରେ ମିଥକୀକୃତ କରିଦିଆଗଲା । ଆଜି ମଧ୍ୟ ରାମରାଜ୍ୟକୁ ଆଦର୍ଶ ରାଜ୍ୟ ଭାବରେ ଆମ ସମ୍ମୁଖରେ ପ୍ରସ୍ତୁତ କରାଯାଏ ।

ରାମାୟଣର ଆଖ୍ୟାନ ଲୋକକଥାର ସ୍ଥିରୀକୃତ ଢାଞ୍ଚାରେ ଆଗକୁ ବଢ଼େ । ଅର୍ଥାତ୍ ଏହିଁରେ ସଂଘର୍ଷ ହୁଏ, ବୀରୋଚିତ ପରାକ୍ରମ ଦେଖିବାକୁ ମିଳେ, ବାଧାବିଘ୍ନ ଘଟେ ଏବଂ ଶେଷରେ ବିଜୟ ପ୍ରାପ୍ତ ହୁଏ । ମୂଳ କାହାଣୀର ଅନେକାନେକ ରୂପ ରହିଛି । କେତେକ କାହାଣୀରେ ଭିନ୍ନ ନୈତିକ ସନ୍ଦେଶ ଦିଆଯାଇଛି । ଏହାର ପ୍ରକୃଷ୍ଟ ଉଦାହରଣ ହେବ ବୌଦ୍ଧ ଓ ଜୈନ କାହାଣୀ । ଏ ମଧ୍ୟରୁ କେତେକ କାହାଣୀ ପରେ ଯୋଡ଼ାଯାଇଛି । ଏଥିରେ ସୀତାଙ୍କୁ ନେଇ ରହିଥିବା ଆଖ୍ୟାନରେ ପୂରା ଅଲଗା କଥା ଦେଖିବାକୁ ମିଳେ । ଗୋଟାଏ ବୌଦ୍ଧ କଥା ଅନୁସାରେ, ରାମ ଓ ସୀତା ହେଲେ ଭାଇଭଉଣୀ । ବନବାସରୁ ପ୍ରତ୍ୟାବର୍ତ୍ତନ କଲାପରେ ସେମାନେ ସହସ୍ର ସହସ୍ର ବର୍ଷ ଧରି ରାଜ୍ୟ ଶାସନ କରିଥିଲେ । ବୌଦ୍ଧ ପରମ୍ପରାରେ ସହୋଦର ହେଲା ଶୁଦ୍ଧତମ ପୂର୍ବଜ ପରମ୍ପରାର ସଂସ୍ଥାପନାର ପ୍ରତୀକ । ତେଣୁ ବୌଦ୍ଧ ପରମ୍ପରାରେ ରାମ-ସୀତାଙ୍କୁ ସର୍ବୋତ୍ତମ ମାନ୍ୟତା ପ୍ରଦାନ କରାଯାଏ । 'ରାମକଥା'ର ଏକ ଆରମ୍ଭିକ ଜୈନ ରୂପରେ (Jaina version) ବାଲ୍ମୀକିଙ୍କର ଅଣପାରମ୍ପରିକ ବର୍ଣ୍ଣନାକୁ ଏକ ତର୍କସଙ୍ଗତ ବ୍ୟାଖ୍ୟା ପ୍ରଦାନ କରାଯାଇଛି ଏବଂ ଏହିଁରେ 'ରାମକଥା'ର ପ୍ରମୁଖ ଚରିତ୍ରମାନଙ୍କୁ ଜୈନ ବୋଲି ଦର୍ଶାଯାଇଛି ।

କାହାଣୀର ଏହି ବିଭିନ୍ନତା ଏବଂ ବିବିଧ ବର୍ଣ୍ଣନରୁ ଗୋଟାଏ କଥା ସିଦ୍ଧ ହୁଏ ଯେ 'ରାମକଥା'କୁ ଭିନ୍ନ ଭିନ୍ନ ସଂସ୍କୃତିର ଅଭିବ୍ୟକ୍ତି ଲାଗି ଉପଯୋଗ କରାଯାଉଥିଲା । ରାମକଥା ଦୂରରୁ ଦୂରକୁ ପ୍ରସାରିତ ହେଲା – ସମଗ୍ର ଭାରତରେ ଏବଂ ଏସିଆ ମହାଦେଶର କୋଣ ଅନୁକୋଣରେ ଯେଉଁଠି ଭାରତୀୟ ସଂସ୍କୃତି ପହଞ୍ଚିଥିଲା, ସେହି କ୍ଷେତ୍ରରେ ଏହା ପ୍ରସାର ଲାଭ କଲା । କାହାଣୀର ରୂପଭେଦ ବିଭିନ୍ନ ସମାଜରେ ତା'ର ଅବବୋଧକୁ ପ୍ରତିବିମ୍ବିତ କରେ । ଉକ୍ତ ସମାଜଗୁଡ଼ିକ କାହାଣୀର ଉପମା, ଅଳଙ୍କାର ଓ ପ୍ରତୀକଗୁଡ଼ିକୁ ମଧ୍ୟ ନିଜ ନିଜ ଢଙ୍ଗରେ ପ୍ରସ୍ତୁତ କଲେ । ଏହି ଦୁଇ ମହାକାବ୍ୟର ଲୋକପ୍ରିୟତାର ପ୍ରମାଣ ହେଲା ଯେ, ଭାରତୀୟ ଗ୍ରାମୀଣ କ୍ଷେତ୍ରରେ ସବୁଠି ମହାକାବ୍ୟର ଚରିତ୍ରମାନଙ୍କୁ ଯୋଡ଼ି ଘଟଣାଗୁଡ଼ିକୁ ଦେଖାଯାଏ ।

ରାମାୟଣର ମୂଳକଥା ସମ୍ଭବତଃ ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗର ରଚନା । ମନେହୁଏ, ରାମ ଓ ରାବଣ ମଧ୍ୟରେ ସଂଘଟିତ ହୋଇଥିବା ବିବାଦରେ ଅନେକଟା ଅତିଶୟୋକ୍ତି ରହିଛି । ଅନ୍ୟଥା ଏହା ହେଲା ଏକ ସ୍ଥାନୀୟ ସ୍ତରର ବିବାଦ, ଯାହା ଦୁଇ କିସମର ରାଜ୍ୟ ମଧ୍ୟରେ ସୀମିତ ଥିଲା । ଗୋଟାଏ କିସମ ଥିଲା ଗାଙ୍ଗେୟ ସମତଳ କ୍ଷେତ୍ରରେ ଏବଂ ଦ୍ୱିତୀୟଟି ଥିଲା ବିନ୍ଧ୍ୟ କ୍ଷେତ୍ରରେ । ପ୍ରଥମଟି ଥିଲା ବିସ୍ତାର ଲାଭ କରୁଥିବା ରାଜ୍ୟ ଏବଂ ଦ୍ୱିତୀୟଟି ଥିଲା ସାମାନ୍ୟ କମ୍ ସ୍ଥିର ଥିବା ରାଜ୍ୟ । କୋଶଳ ଉଦୀୟମାନ ରାଜ୍ୟତନ୍ତ୍ରର ପରିଷ୍କାର ସ୍ୱରୂପକୁ ପ୍ରତିନିଧିତ୍ୱ କରୁଥିଲା ଏବଂ ରାକ୍ଷସ ସମାଜଠାରୁ ପୂରା ବିପରୀତ ଥିଲା । ସମ୍ଭବତଃ ବନବାସୀ ଆଦିବାସୀମାନଙ୍କୁ ରାଜତନ୍ତ୍ରଠାରୁ ସେମାନଙ୍କ ଅଲଗା କିସମର ରହଣି ସହଣି ଯୋଗୁଁ ରାକ୍ଷସ ରୂପେ ପ୍ରଥମ କିସମର ସମାଜ ଚିହ୍ନିତ କରୁଥିଲା । ରାଜ୍ୟ ଓ ଜଙ୍ଗଲ ମଧ୍ୟରେ ବିଭାଜନ ଦେଖିବାର ଦୃଷ୍ଟିରୁ ପ୍ରମାଣ ମିଳେ ଯେ, ବିଶ୍ୱକୁ ଦୁଇଭାଗରେ ବିଭକ୍ତ କରାଯାଇଥିଲା । ଗୋଟାଏ ହେଲା ଗ୍ରାମ ଏବଂ ଅନ୍ୟଟି ଅରଣ୍ୟ । ଗ୍ରାମ ହେଲା ଜନବସତିର ପ୍ରତୀକ ଏବଂ ଅରଣ୍ୟ ହେଲା ବନ୍ୟପ୍ରକୃତିର ପ୍ରତୀକ । ଭାରତୀୟ ମହାକାବ୍ୟ ସାହିତ୍ୟରେ ଉଭୟଙ୍କ ମଧ୍ୟରେ ସଂଘାତ ଥିବା କଥା ଦର୍ଶାଯାଏ । ହୁଏତ ରାମାୟଣର ପରବର୍ତ୍ତୀ ସଂସ୍କରଣରେ ସୁଦୂର ଦକ୍ଷିଣକୁ ସ୍ଥାନିତ କରାଯାଇଛି । ଏହା ବିସ୍ତାରିତ ଭୂଗୋଳକୁ ଚିହ୍ନିତ କରାଏ । 'ରାମକଥା'ରେ ଏକ ସଂବୃଦ୍ଧ, ସମ୍ପନ୍ନ ନଗରୀ ରୂପରେ ଲଙ୍କାର ଚିତ୍ରଣ ମଧ୍ୟ ଉପରୋକ୍ତ ପ୍ରବୃତ୍ତିର ପରିଚାୟକ ମନେହୁଏ ।

ମହାକାବ୍ୟ ସାହିତ୍ୟର ସ୍ଥାନ ହେଲା ଏକ କଳ୍ପନାର ରାଜ୍ୟ । ତହିଁରେ ଥିବା ରୂପକଳ୍ପ ହେଲା ତା'ର କେନ୍ଦ୍ରୀୟ ତତ୍ତ୍ୱ । କଳ୍ପନାର ଏହି ରାଜ୍ୟରେ ଲୋକବସତି ଥାଏ; ଲୋକଙ୍କର ସଂସ୍କୃତି ହୁଏତ ସମ୍ପୂର୍ଣ୍ଣ ଅଚିହ୍ନା ଅଥବା ଖୁବ୍ ଅନୁକରଣୀୟ ହୋଇଥାଏ । ଉକ୍ତ କାଳ୍ପନିକ

ଦେଶର ଭୌଗୋଳିକ ଅବସ୍ଥିତି ଅସ୍ପଷ୍ଟ ରହେ, କାରଣ ମହାକାବ୍ୟ ସଂସ୍କୃତିର ଅନ୍ତର୍ଭୁକ୍ତ ଲୋକସମାଜଗୁଡ଼ିକୁ ନିଜ ଭିତରେ ସମାହିତ କରିବାଲାଗି ତାହା ଉଦ୍ଦିଷ୍ଟ ଥାଏ । ଗ୍ରୀସ୍‌ର ଓଡ଼ିଶୀ (Odyssey) ମହାକାବ୍ୟରେ ଯଦି ସମୁଦ୍ର ଥିଲା ବନବାସ ବା ନିର୍ବାସନସ୍ଥଳୀ, ଭାରତୀୟ ମହାକାବ୍ୟରେ ଅରଣ୍ୟକୁ ବନବାସ ସ୍ଥଳୀର ମର୍ଯ୍ୟାଦା ଦିଆଗଲା । ବନବାସର ବିଷୟ ପ୍ରାୟ କ୍ଷେତ୍ରରେ ନିଶ୍ଚିତ ଥାଏ; ଯେହେତୁ ଲୋକ ଦେଶାନ୍ତରଣ କରି ବନପ୍ରଦେଶରେ ଯାଇ ବସତି ସ୍ଥାପନ କରନ୍ତି, ସେଠାରେ ପ୍ରଥମରୁ ବସବାସ କରୁଥିବା ସମୂହ ସହ ସେମାନଙ୍କର ସଂଘାତ ହେବା ସ୍ୱାଭାବିକ । ବନବାସର ପ୍ରକରଣ ଯୋଗୁଁ ରଚନାକାର ମୂଳ କାହାଣୀରେ କିସମ କିସମର କଥା ଅନ୍ତକ୍ଷେପ କରିବାର ସୁବିଧା ପାଆନ୍ତି ଏବଂ କାହାଣୀ ଦୀର୍ଘରୁ ଦୀର୍ଘତର ହୁଏ ।

## ବୈଦିକ ସାହିତ୍ୟ

ଯଦି ବୈଦିକ ସାହିତ୍ୟ ହିଁ ଏକମାତ୍ର ସୂତ୍ର ବା ସ୍ରୋତସାମଗ୍ରୀ ହୋଇଥାନ୍ତା, ଭାରତୀୟ ଇତିହାସର ଆରମ୍ଭ କଥାକୁ ତିଆରି କରିବା ଅପେକ୍ଷାକୃତ ଭାବେ ସହଜ ହୋଇଥାନ୍ତା । ମାତ୍ର ଦୁଇଟି ଅନ୍ୟ ପ୍ରକାରର ସୂତ୍ରସାମଗ୍ରୀ ମଧ୍ୟ ଆମର ଐତିହାସିକ ଆରମ୍ଭକୁ ବୁଝିବାଲାଗି ପ୍ରଭୂତ ଯୋଗଦାନ କରନ୍ତି । ଏହି ଉଭୟ ସୂତ୍ରସାମଗ୍ରୀ ହେଲେ ପୂର୍ବୋକ୍ତ ସୂତ୍ରସାମଗ୍ରୀରୁ ଅଧିକ ପ୍ରାଚୀନ । ଊନବିଂଶ ଶତାବ୍ଦୀରେ ବୈଦିକ ସାହିତ୍ୟର ପଠନ-ପାଠନ ଏବଂ ତତ୍‌ପରବର୍ତ୍ତୀ ଭାଷା-ବୈଜ୍ଞାନିକ ଅଧ୍ୟୟନର ଫଳସ୍ୱରୂପ ଅତୀତର ଏକ ଚିତ୍ରଣ ଦେଖିବାକୁ ମିଳିଲା, ଯାହା ପାରମ୍ପରିକ କାହାଣୀଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ୟୁରୋପର ସଂସ୍କୃତବିତ୍‌ମାନେ ସଂସ୍କୃତକୁ ସଂରଚନା ଓ ଧ୍ୱନି ଦୃଷ୍ଟିରୁ ଗ୍ରୀକ୍ ଓ ଲାଟିନ୍ ସହ ସମ୍ପର୍କିତ ବୋଲି ଦର୍ଶାଇଥିଲେ । ଏଥିରୁ ଆରମ୍ଭ ହେଲା ଏକ ତତ୍ତ୍ୱ, ଯାହାର ଆଧାରରେ କୁହାଗଲା ଯେ ଇଣ୍ଡୋ-ୟୁରୋପୀୟ ବା ଭାରୋପୀୟ ଭାଷାଗୁଡ଼ିକର ପୂର୍ବଜ ଗୋଟାଏ । ଅର୍ଥାତ୍ ଏହି ଭାଷାଗୁଡ଼ିକୁ ବ୍ୟବହାର କରୁଥିବା ଲୋକସମୂହର ପୂର୍ବଜଙ୍କ ମଧ୍ୟରେ ସମାନତା ରହିଥିଲା ।

ଏହି ଗବେଷଣା ପ୍ରମୁଖତଃ ବୈଦିକ ସାହିତ୍ୟ ଉପରେ କେନ୍ଦ୍ରିତ ଥିଲା । ମହାକାବ୍ୟ ଓ ପୁରାଣର ରଚନା ହେବା ପୂର୍ବରୁ ବୈଦିକ ସାହିତ୍ୟର ସର୍ଜନା ହୋଇଥିଲା ଏବଂ ଏହାର ଭାଷା ଖୁବ୍ ପ୍ରାଚୀନ ଆଭିଲେଖିକ (archaic) କିସମର । ଆଜିକାଲି ସେହି କିସମର ସଂସ୍କୃତକୁ ପୁରାତନ ଇଣ୍ଡୋ-ଆର୍ଯ୍ୟ ବା ଭାରତାର୍ଯ୍ୟ ଭାଷା ବୋଲି କୁହାଯାଉଛି । ଏହି ବୈଶିଷ୍ଟ୍ୟ ତାକୁ ପରବର୍ତ୍ତୀକାଳୀନ ସଂସ୍କୃତରୁ, ଯାହାକୁ କ୍ଲାସିକାଲ ବା ଶାସ୍ତ୍ରୀୟ ସଂସ୍କୃତ କୁହାଯାଏ, ପୃଥକ୍ କରେ । ବେଦ ମୁଖ୍ୟତଃ କର୍ମକାଣ୍ଡର ନିୟମାବଳୀ ଏବଂ ତା'ର ଟୀକା

ଅଟେ । ପ୍ରସଙ୍ଗ କ୍ରମେ ତହିଁରେ ଆଖ୍ୟାନ ଦେଖିବାକୁ ମିଳେ । ମହାକାବ୍ୟ ସାହିତ୍ୟରେ ବୀର ନାୟକର ସମାଜର ବର୍ଣ୍ଣନ ରହିଥାଏ । ପୁରାଣ ହେଲା ଆହୁରି ପର ସମୟର ରଚନା, ତହିଁରେ ସଂପ୍ରଦାୟ ସମୂହର କଥା ଲିପିବଦ୍ଧ ହୋଇଥାଏ । ଏହି ଦୃଷ୍ଟିରୁ ଦେଖିଲେ, ମହାକାବ୍ୟ, ପୁରାଣ ଓ ବେଦର ଭିନ୍ନ ଭିନ୍ନ ପ୍ରୟୋଗ ରହିଥିବାର ଜଣାଯାଏ । ଯେହେତୁ ଏହି ତିନିପ୍ରକାର ସୂତ୍ରସାମଗ୍ରୀ ମଧ୍ୟରୁ ବେଦ ହେଲା ସର୍ବପ୍ରାଚୀନ, ତେଣୁ ଭାରତୀୟ ଇତିହାସକୁ ବେଦରେ ନିହିତ ସୂଚନା ସହିତ ଆରମ୍ଭ ହେଲା ବୋଲି ଧରିନିଆଯାଏ । ପୁରାଣ ଓ ମହାକାବ୍ୟରେ ଅତୀତର ମଧ୍ୟ ବ୍ୟାଖ୍ୟା ରହିଛି । ମାତ୍ର ବୈଦିକ ସାହିତ୍ୟରେ ସେହି ଧରଣର ବ୍ୟାଖ୍ୟା ନାହିଁ । ବରଂ ତାକୁ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳରୁ ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳର ମଧ୍ୟବର୍ତ୍ତୀ ଅବଧି (ଖ୍ରୀ.ପୂ. 500 – 500 ମସିହା)ରେ ସୃଷ୍ଟ ରଚନାଗୁଡ଼ିକର ସଂକଳନ କୁହାଯାଇପାରେ । ତେଣୁକରି ବୈଦିକ ସାହିତ୍ୟର ସାକ୍ଷ୍ୟ-ପ୍ରମାଣକୁ ପଠନ କରି ଆଧୁନିକ ବିଦ୍ୱାନମାନେ ଯେଉଁ ଅଧ୍ୟୟନ ପ୍ରସ୍ତୁତ କରନ୍ତି, ତାକୁ ଭିତ୍ତିକରି ତତ୍‌କାଳୀନ ସାମାଜିକ ଚିତ୍ର ପ୍ରସ୍ତୁତ କରାଯାଏ ।

'ଭାରୋପୀୟ' (ଇଣ୍ଡୋ-ୟୁରୋପିଆନ) ଏବଂ 'ଭାରତାର୍ଯ୍ୟ' (ଇଣ୍ଡୋ-ଆର୍ଯ୍ୟନ୍) ହେଲା ଭାଷାର ନାମ । ମାତ୍ର ଊନବିଂଶ ଶତାବ୍ଦୀରେ ଏହାର ପ୍ରୟୋଗ ପ୍ରଜାତୀୟ ନାମ ରୂପରେ ମଧ୍ୟ କରାଗଲା । ଏହା ଭ୍ରମାତ୍ମକ ଅଟେ ଏବଂ ସେହି ଭ୍ରମାତ୍ମକତାରୁ ସୃଷ୍ଟ ସମସ୍ୟା ଏବେ ମଧ୍ୟ ବିଦ୍ୟମାନ ରହିଛି । ହେବା କଥା 'ଭାରୋପୀୟ ଭାଷାଭାଷୀ ଲୋକ' ଏବଂ 'ଭାରତାର୍ଯ୍ୟ ଭାଷାଭାଷୀ ଲୋକ' । ମାତ୍ର ପଦ ଦୁଇଟିର ସଂକ୍ଷିପ୍ତ ରୂପ 'ଭାରୋପୀୟ' ଏବଂ 'ଭାରତାର୍ଯ୍ୟ'କୁ ସାଧାରଣତଃ ବ୍ୟବହାର କରାଯାଏ । ଏଥିପାଇଁ ଇଂରାଜୀ ପଦ 'ଇଣ୍ଡୋ-ୟୁରୋପିଆନ' ଏବଂ 'ଇଣ୍ଡୋ-ଆର୍ଯ୍ୟନ'ର ବହୁଳ ବ୍ୟବହାର ହୁଏ ।

ଭାଷାର ସମ୍ବନ୍ଧ ଥାଏ ସଂସ୍କୃତି ସହିତ; ତାକୁ ପ୍ରଜାତି ସହିତ ଯୋଡ଼ାଯିବା କଥା ନୁହେଁ । ଏମିତିରେ ବି ପ୍ରଜାତି ହେଲା ମାତ୍ର ଏକ ସାମାଜିକ ସଂରଚନା । ହେଲେ ଏହା ନିଜକୁ 'ଜନ୍ମ' ସହିତ ସମ୍ବନ୍ଧିତ କରେ । 'ଭାରୋପୀୟ' (Indo-European) ହେଲା ପୁନଃରଚିତ ଭାଷା । ଏହି ଭାଷାରେ ସଂଯୋଜିତ ଭାଷାଗୁଡ଼ିକୁ ଆଧାର କରି ପଛରୁ ଏହାକୁ ପୁନଃରଚନା କରାଯାଇଛି । ଏହି ଭାଷାଭାଷୀ ଲୋକଙ୍କର ମୂଳ ବାସସ୍ଥଳୀ ଥିଲା ମଧ୍ୟ-ଏସିଆ । କାଳକ୍ରମେ ଶହ ଶହ ବର୍ଷର ଅବଧିରେ ସେମାନେ ଭାଗ ଭାଗ ହୋଇଗଲେ ଏବଂ ସବୁଜ ଚାରଣଭୂମିର ଅନ୍ୱେଷଣରେ ପଶୁପାଳକ ରୂପରେ ବିଭିନ୍ନ ସ୍ଥାନକୁ ପ୍ରସାରିତ ହେଲେ । ବିନିମୟ ପାଇଁ ଉଦ୍ଦିଷ୍ଟ ଜିନିଷପତ୍ରର ସଂବାହକ ଭାବରେ ମଧ୍ୟ ସେମାନେ ଉପଯୋଗୀ ହେଲେ । ସେମାନଙ୍କ ମଧ୍ୟରୁ କେତେକ ଆନାତୋଲିଆକୁ ଚାଲିଗଲେ; ଆଉ

କେତେକ ଗଲେ ଇରାନ ଆଡ଼କୁ । ଇରାନ ଯାଇଥିବା ଲୋକଙ୍କ ମଧ୍ୟରୁ କେତେକ ଭାରତକୁ ଗଲେ ବୋଲି ଧରିନିଆଯାଏ । ସେମାନେ ଯେଉଁ ପାଠ୍ୟ ସଂରଚନା କଲେ, ଯଥା- ଇରାନରେ 'ଆଭେସ୍ତା' ଏବଂ ଭାରତରେ ଋଗ୍‌ବେଦ, ତହିଁରେ ସେମାନେ ନିଜକୁ 'ଆଇରିଆ' ଏବଂ 'ଆର୍ଯ୍ୟ' ବୋଲି ଉଲ୍ଲେଖ କରିଥିଲେ । ତହିଁରୁ ଆରମ୍ଭ ହେଲା ୟୁରୋପୀୟ ପଦ 'ଆର୍ଯ୍ୟନ' । ଭାରତାର୍ଯ୍ୟ (Indo-Aryan) ଭାଷାରେ ବୈଦିକ ସାହିତ୍ୟର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରାଯାଇଛି । ଭାରୋପୀୟ (Indo-European) ଭାଷାର ଏକ ପ୍ରାରମ୍ଭିକ ପାଠ୍ୟ-ସ୍ରୋତ ଭାବରେ ତାକୁ ନିଆଯାଏ, ଯାହା କର୍ମକାଣ୍ଡ ଓ ତା'ର ବ୍ୟାଖ୍ୟାକୁ ଖୁବ୍ ମହତ୍ତ୍ୱ ଦେଇଥାଏ । ଏହି କାରଣରୁ ଭାରୋପୀୟ ପାଠ୍ୟକୁ ସବୁଠାରୁ ଅଧିକ ପବିତ୍ର ମନେକରାଯାଏ । ଭାରତୀୟ ଇତିହାସର ଆରମ୍ଭକୁ ଆର୍ଯ୍ୟମାନଙ୍କର ଆଗମନ ସହିତ ଯୋଡ଼ି ଦେଖାଯାଏ, ଯାହାର ସମୟାବଧି ହେବ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ।

ଅତୀତର ଏହି ଛବିକୁ ବିଂଶ ଶତାବ୍ଦୀରେ ପୁଣିଥରେ ଓଲଟିବାକୁ ପଡ଼ିଲା । 1920 ଦଶକରେ ପୁରାତାତ୍ତ୍ୱିକ ଖନନରୁ ସିଦ୍ଧ ହେଲା ଯେ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ଏକ ନଗରୀୟ ସଭ୍ୟତା ବିକଶିତ ହୋଇଥିଲା । ସିନ୍ଧୁ ସଭ୍ୟତା ବା ହରପ୍ପା ସଂସ୍କୃତି ନାମରେ ଖ୍ୟାତ ଏହି ସଭ୍ୟତା ହେଲା ଋଗ୍‌ବେଦଠାରୁ ମଧ୍ୟ ଅଧିକ ପ୍ରାଚୀନ । ଏହି ଆବିଷ୍କାର ଫଳରେ ଭାରତରେ ସଭ୍ୟତାର ଆରମ୍ଭକୁ ଖ୍ରୀ.ପୂ. ତୃତୀୟ ସହସ୍ରାବ୍ଦୀରେ ଦେଖାଗଲା । ଏବେ ପୁରାତାତ୍ତ୍ୱିକ ଖନନରୁ ପ୍ରମାଣ ମିଳୁଛି ଯେ, ପ୍ରାକ୍-ହରପ୍ପା ସମାଜରେ ସଂସ୍କୃତିର ବିକାଶ ଘଟିଥିଲା । ଏହାର ଅର୍ଥ ଇତିହାସ ଏଠି ଆହୁରି ପ୍ରାଚୀନ । ହରପ୍ପା ସଂସ୍କୃତିରୁ ମନୁମାନଙ୍କର ଶାସନର କୌଣସି ସୂତ୍ର ମିଳେ ନାହିଁ; ବୈଦିକ ସାହିତ୍ୟର ମଧ୍ୟ କୌଣସି ସୂତ୍ର ପ୍ରାପ୍ତ ହୁଏ ନାହିଁ ।

ଭାରତୀୟ ଇତିହାସର ଆରମ୍ଭ ସମ୍ପର୍କରେ ତଥ୍ୟ ପ୍ରଦାନକାରୀ ଅନେକ ଉତ୍ସ ରହିଛି । କାଳାନୁକ୍ରମ ଦୃଷ୍ଟିରୁ ପୁରାତାତ୍ତ୍ୱିକ ତଥ୍ୟ-ପ୍ରମାଣ ସବୁଠାରୁ ଅଧିକ ବଳିଷ୍ଠ ଓ ନିର୍ଭରଯୋଗ୍ୟ । ମାତ୍ର ତାହା କୌଣସି ଏକ ସଂସ୍କୃତିକୁ 'ଆର୍ଯ୍ୟ' ବୋଲି ଚିହ୍ନିତ କରିବାରେ ସହାୟକ ହୋଇ ନ ପାରେ । ଏହା ପଛରେ କାରଣ ହେଲା ଲିପିର ଅଭାବ । ଫଳରେ ପ୍ରତ୍ନତାତ୍ତ୍ୱିକ ତଥ୍ୟ କୌଣସି ଭାଷା ସମ୍ବନ୍ଧରେ ଠୋସ ପ୍ରମାଣ ଦେଇ ନ ପାରେ । ଅବଶୋଷର କଥା ଯେ ହରପ୍ପା ଲିପି ଆଜି ପର୍ଯ୍ୟନ୍ତ ପଠିତ ହୋଇପାରି ନାହିଁ । ଆର୍ଯ୍ୟ ଆକ୍ରମଣର ସିଦ୍ଧାନ୍ତ ତା'ର ମହତ୍ତ୍ୱ ହରାଇ ସାରିଲାଣି । ଋଗ୍‌ବେଦର କେତେକ ଉଦ୍ଧରଣରୁ ଜଣାପଡ଼େ ଯେ ଦଳଗୁଡ଼ିକ ମଧ୍ୟରେ ଖଣ୍ଡଯୁଦ୍ଧ ହେଉଥିଲା । ଦଳଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲେ ନିଜକୁ ଆର୍ଯ୍ୟ ନାମରେ ପରିଚୟ ଦେଉଥିବା ଗୋଷ୍ଠୀ; 'ଆର୍ଯ୍ୟ' ଓ 'ଦାସ'ମାନଙ୍କ ମଧ୍ୟରେ ବି ଖଣ୍ଡଯୁଦ୍ଧ ହେଉଥିବାର

ଉଦ୍ଧରଣ ମିଳେ । ଯେଉଁ ସିଦ୍ଧାନ୍ତ ଅଧିକ ଗ୍ରହଣୀୟ, ତା' ଅନୁଯାୟୀ, ଭାରତାର୍ଯ୍ୟ ଭାଷାଭାଷୀ ଗୋଷ୍ଠୀ କାଳକ୍ରମେ ଭାରତ-ଇରାନ ସୀମାନ୍ତ କ୍ଷେତ୍ର ଏବଂ ଆଫଗାନିସ୍ଥାନରୁ ଉତ୍ତର ଭାରତ ଆଡ଼କୁ ଚାଲିଗଲେ । ନୂଆ ବସତିସ୍ଥଳରେ ସେମାନେ ନିଜ ଭାଷାକୁ ସ୍ଥାପିତ କଲେ । ସେମାନଙ୍କର ଦେଶାନ୍ତରଣ ପଛରେ ଆଶା ଥିଲା ଭଲ ଚାରଣ କ୍ଷେତ୍ର ଓ କୃଷିଯୋଗ୍ୟ ଜମିର ଅନ୍ୱେଷଣ ଏବଂ ବସ୍ତୁ ବିନିମୟରୁ ହେବାକୁ ଥିବା କିଛି ଲାଭ । ସବୁଠାରୁ ବଡ଼ କଥା ଯେ, ଦେଶାନ୍ତରଣ ଯୋଗୁଁ ପୂର୍ବରୁ ସ୍ଥାପିତ ଜନବସତି ଓ ସଂସ୍କୃତିର ବିଘଟନ ହେଲା ନାହିଁ । ଆହୁରି ମଧ୍ୟ କୁହାଯାଏ ଯେ, ଦେଶାନ୍ତରଣ କରିଥିବା ଏହି ସମୂହର ପରେ ମୂଳ ଇରାନ ବାସିନ୍ଦାଙ୍କ ସହ ମତଭେଦ ହେଲା । ମୂଳ ଇରାନ ବାସିନ୍ଦାଙ୍କ ଭାଷା ଓ ବିଚାର 'ଆଭେସ୍ତା' ଗ୍ରନ୍ଥରେ ସଂକଳିତ ହୋଇ ରହିଲା । 'ଋଗ୍‌ବେଦ' ଓ 'ଆଭେସ୍ତା'ରେ ପ୍ରକଟିତ ଅନେକ ଅବଧାରଣା ମଧ୍ୟରେ ସମାନତା ଦେଖିବାକୁ ମିଳେ । ମାତ୍ର ଅର୍ଥ ଖୋଜିଲାବେଳେ ଦୁହିଁଙ୍କ ମଧ୍ୟରେ ଭିନ୍ନତା ଦେଖାଯାଏ ।

ଆର୍ଯ୍ୟ ଭାଷାଭାଷୀ ଲୋକ ଭାରତ ବାହାରୁ ଆସିଥିଲେ – ଏହି ବିଚାରକୁ ଯେଉଁମାନେ ଅଗ୍ରାହ୍ୟ କରନ୍ତି, ସେମାନଙ୍କ ମଧ୍ୟରେ ଏକ ପ୍ରବୃତ୍ତି ହେଲା ଆକ୍ରମଣ ଓ ଦେଶାନ୍ତରଣକୁ ସମାନ ବୋଲି ଚିହ୍ନିତ କରିବା । ଦୁଇଟିଯାକ ହେଲେ ସ୍ପଷ୍ଟ ରୂପରେ ଦୁଇଟି ଭିନ୍ନ ଐତିହାସିକ ପ୍ରକ୍ରିୟା । ଉଭୟ ପ୍ରକ୍ରିୟାର ସମ୍ବନ୍ଧ କେଉଁପ୍ରକାର କାର୍ଯ୍ୟକଳାପ ଓ ସଂଗଠନ ସହିତ ରହିଥିଲା; ଆଗମନ ଉତ୍ତାରୁ କେଉଁପ୍ରକାର ସାମାଜିକ ପଦ୍ଧତିର ଉନ୍ମେଷ ହେଲା ଓ ସମାଜରେ କେଉଁ ଧରଣର ଐତିହାସିକ ପରିବର୍ତ୍ତନ ଦେଖିବାକୁ ମିଳିଲା – ସେଗୁଡ଼ିକ ପ୍ରତି ଆମର ଧ୍ୟାନ ଯିବା କଥା । ଦେଶାନ୍ତରଣରେ ଆସୁଥିବା ସମୂହମାନେ ବଡ଼ ବଡ଼ ଗୋଷ୍ଠୀରେ ଆସୁ ନ ଥିଲେ । ଏହାପଛରେ ପ୍ରମାଣ ହେଲା ଯେ, ବଡ଼ ବଡ଼ ଦଳର ଆଗମନ ହେଲେ ଯେଉଁ କିସମର ବଳପୂର୍ବକ ସାଂସ୍କୃତିକ ପରିବର୍ତ୍ତନ ଦେଖିବାକୁ ମିଳେ, ସେହି କିସମର ପରିବର୍ତ୍ତନ ଭାରତରେ ପରିଲକ୍ଷିତ ହୁଏ ନାହିଁ । ଦେଶାନ୍ତରଣ ଯୋଗୁଁ ଉଭୟ ସ୍ଥାନୀୟ ଓ ବାହାର ଗୋଷ୍ଠୀ ମଧ୍ୟରେ ସାଂସ୍କୃତିକ ଯୋଗାଯୋଗରେ ଭାଷାଗତ ପରିବର୍ତ୍ତନ କ୍ଷେତ୍ରରେ ତଥା ସାମାଜିକ ସ୍ଥିତି ନିର୍ଦ୍ଧାରଣ ବେଳେ ଯେଉଁସବୁ ଦିଗ ଦୃଷ୍ଟିଗୋଚର ହୁଏ, ତାହା ଆକ୍ରମଣ ପରବର୍ତ୍ତୀକାଳୀନ ଦିଗଠାରୁ ପୂରାପୂରି ଅଲଗା ।

ଏ ସମ୍ପର୍କରେ ଭାଷାଗତ ସାକ୍ଷ୍ୟ-ପ୍ରମାଣ ଅଧିକ ସୁସ୍ପଷ୍ଟ । ଭାରତାର୍ଯ୍ୟ ହେଲା ଭାରୋପୀୟ ପରିବାରର ଭାଷା । ପଶ୍ଚିମ ଏସିଆ ଓ ଇରାନର କେତେକ ପ୍ରାଚୀନ ଭାଷା ଏବଂ ୟୁରୋପରେ ସ୍ଥାପିତ ହୋଇଥିବା କେତୋଟି ଭାଷା ମଧ୍ୟରେ ଭାଷାଗତ ଅନ୍ତଃସମ୍ବନ୍ଧ ରହିଛି । ଭାରତାର୍ଯ୍ୟ ହେଲା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀକାଳୀନ ପୁରୁଣା ଇରାନୀର ସଜାତ

(cognate) ଭାଷା । ଉଭୟ ଭାଷା ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ରହିଛି । ଏହି ଭାରତାର୍ଯ୍ୟ ଭାଷା ସେତେବେଳେ କେବଳ ଭାରତୀୟ ଉପମହାଦେଶରେ ପ୍ରଚଳିତ ଦ୍ରାବିଡ଼ ଓ ମୁଣ୍ଡା (ମୁଣ୍ଡାରି) ଭାଷାରୁ ଅନେକ ଉପାଦାନ ଗ୍ରହଣ କରିଛି । ଗାଙ୍ଗେୟ ସମତଳ କ୍ଷେତ୍ରର ପୂର୍ବ ପ୍ରେକ୍ଷାପଟରେ ବିରଚିତ ସର୍ଜନା ସମ୍ଭାରରେ ଗ୍ରହଣଶୀଳତାର ମାତ୍ରା ବୃଦ୍ଧି ପାଇଛି । ଏଥିରୁ ଗୋଟାଏ କଥା ନିଶ୍ଚିତ ହୁଏ ଯେ ଏହିସବୁ ଭାଷାଭାଷୀ ଲୋକସମୂହ ମଧ୍ୟରେ ଅତୀତରେ ଖୁବ୍ ମିଳାମିଶା ହେଉଥିଲା ।

ମନେହୁଏ, ଘଟଣାକ୍ରମ ଥିଲା ଏହିଭଳି : ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦୀର ମଧ୍ୟବେଳକୁ ସିନ୍ଧୁ ସଭ୍ୟତାର ନଗରୀଗୁଡ଼ିକର ପତନ ହୋଇସାରିଥିଲା । ଫଳରେ ସେଠାକାର ଆର୍ଥିକ ଓ ପ୍ରଶାସନିକ ବ୍ୟବସ୍ଥା ଧୀରେ ଧୀରେ କ୍ଷୁଣ୍ଣ ହୋଇ ଗ୍ରାମାଭିମୁଖୀ ହେବାକୁ ବସିଲା । ସମ୍ଭବତଃ ପାଖାପାଖି ଏହି ଅବଧିରେ ଭାରତାର୍ଯ୍ୟ ଭାଷାଭାଷୀ ଲୋକ ଭାରତ-ଇରାନ ସୀମାନ୍ତ କ୍ଷେତ୍ରରୁ ଉତ୍ତର-ପଶ୍ଚିମ ଭାରତରେ ପ୍ରବେଶ କଲେ । ସେମାନେ ସାନ ସାନ ଗୋଷ୍ଠୀରେ ଉତ୍ତର-ପଶ୍ଚିମ ଗିରିପଥ ଦେଇ ଆସୁଥିଲେ ଏବଂ ଉତ୍ତର ଭାରତରେ ବସତି ସ୍ଥାପନ କରୁଥିଲେ । ସାନ ସାନ ଦଳରେ ଦେଶାନ୍ତରଣ କରିବା ପଛରେ ସୁବିଧା ହେଲା ଯେ, ଏହା ଖୁବ୍ ନାଟକୀୟ ଢଙ୍ଗରେ ସ୍ଥାନୀୟ ସମାଜକୁ ଓଲଟପାଲଟ କରିଦିଏ ନାହିଁ । ଦ୍ୱିତୀୟତଃ, ଏଭଳି ଦେଶାନ୍ତରଣ ଖୁବ୍ ଆଗରୁ ଅନ୍ୟମାନଙ୍କ ଅଲକ୍ଷ୍ୟରେ ଚାଲିଥାଇପାରେ, ଯଦିଓ ହରପ୍ପାର ନଗରୀଗୁଡ଼ିକର ପତନ ପରେ ଉକ୍ତ ସାଂସ୍କୃତିକ ପରିବର୍ତ୍ତନକୁ ସ୍ପଷ୍ଟରୂପେ ଚିହ୍ନିତ କରାଯାଇଥିବ । ଅବଶ୍ୟ ପୋଥିଗତ ସାକ୍ଷ୍ୟ-ପ୍ରମାଣର ପୁରାତାତ୍ତ୍ୱିକ ପୁଷ୍ଟି ହୋଇପାରି ନାହିଁ । ତଥାପି ଏକଥା ସିଦ୍ଧ ଯେ, ଉକ୍ତ ଅବଧିରେ କୌଣସି ବୃହତ୍ ଜନବସତି ଦୃଷ୍ଟିଗୋଚର ହୁଏ ନାହିଁ । ପୋଥିଗତ ସୂତ୍ରରୁ ଅନୁମାନ କରାଯାଏ ଯେ, ପ୍ରଥମେ ଉତ୍ତର-ପଶ୍ଚିମାଞ୍ଚଳର ଉପତ୍ୟକା ଓ ପଞ୍ଜାବର ସମତଳ କ୍ଷେତ୍ରରେ ଜନବସତି ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ କେତେକ ଗୋଷ୍ଠୀ ସିନ୍ଧୁ-ଗଙ୍ଗା ଜଳବିଭାଜିକା କ୍ଷେତ୍ର ଆଡ଼କୁ ଯାଇ ବସତି ସ୍ଥାପନ କଲେ । ଚାରଣଭୂମି ଚକ୍ରରେ (pastoral circuits) ପୂର୍ବରୁ ହୁଏତ ଏହି ଧରଣର ଦେଶାନ୍ତରଣ ସାନ ସାନ ଗୋଷ୍ଠୀରେ ହୋଇଆସୁଥିଲା । ଏହି ଲୋକମାନେ ଯେହେତୁ ଥିଲେ ମୁଖ୍ୟତଃ ପଶୁଚାରକ, ସେମାନେ ଚାରଣ କ୍ଷେତ୍ର ଓ କୃଷି ଉପଯୋଗୀ ଜମିର ଅନ୍ୱେଷଣରେ ରହୁଥିଲେ । 'ଆଭେସ୍ତା' ଗ୍ରନ୍ଥରେ ସନ୍ନିବେଶିତ ଥିବା କିମ୍ବଦନ୍ତୀଗୁଡ଼ିକରେ ଇରାନରୁ ସିନ୍ଧୁ ଅଞ୍ଚଳକୁ ଦେଶାନ୍ତରଣର ଅନେକ ଉଦ୍ଧରଣ ରହିଛି । ଜନସଂଖ୍ୟା ବୃଦ୍ଧି ଓ ପଶୁସଂଖ୍ୟା ବୃଦ୍ଧି ହେବାରୁ ଜମି ଉପରେ ବୋଝ ବଢ଼ିଲା । ଫଳରେ ଦେଶାନ୍ତରଣ ଘଟିଲା । କିମ୍ବଦନ୍ତୀର ଉଦ୍ଧରଣ ଏହି ତତ୍ତ୍ୱକୁ ନିର୍ଦ୍ଦେଶ କରେ । ଋଗ୍‌ବେଦରୁ ଆଭାସ ମିଳେ ଯେ, ଦେଶାନ୍ତରଣ କରି ଆସିଥିବା ସମୂହର ପାଖାପାଖି ଅନ୍ୟମାନଙ୍କର ମଧ୍ୟ ଜନବସତି ରହିଥିଲା ।

ପ୍ରଥମ ସହସ୍ରାବ୍ଦୀର ଏହି କାଳଖଣ୍ଡରେ ଋଗ୍‌ବେଦର ସ୍ତୋତ୍ର (Hymns)ଗୁଡ଼ିକୁ ସଂକଳିତ କରାଗଲା । ସେହି ରୂପରେ ଆଜି ଆମେ ତାକୁ ପାଠ କରିଥାଉଁ । ଏହି ସ୍ତୋତ୍ରଗୁଡ଼ିକ ପୂର୍ବକାଳୀନ ଶତାବ୍ଦୀରେ ବିରଚିତ ହୋଇଥିଲେ । ଅର୍ଥାତ୍ ପ୍ରଥମେ ସ୍ତୋତ୍ର ସର୍ଜନା ହେଲା; ପରେ ସଂକଳନ । ଏହା ସ୍ତୋତ୍ରର କାଳକ୍ରମ ନିର୍ଦ୍ଧାରଣକୁ ସମସ୍ୟା ବହୁଳ କରିଦିଏ । ସଂକଳନର କେନ୍ଦ୍ରୀୟ ବା ଅଧିକ ମହତ୍ତ୍ୱପୂର୍ଣ୍ଣ ଅଂଶକୁ 'ପାରିବାରିକ ମଣ୍ଡଳ' କୁହାଯାଏ, ଯାହାକୁ ପ୍ରାଚୀନତମ ରଚନା ବୋଲି ମନେକରାଯାଏ । ଅପେକ୍ଷାକୃତ ଅଧିକ ସମ୍ମାନିତ ପରିବାରମାନେ ଏହାର ରଚୟିତା ବୋଲି ଦାବି କରାଯାଏ । ପରବର୍ତ୍ତୀ କାଳରେ ଯେଉଁମାନେ ଉକ୍ତ ରଚନାକାରମାନଙ୍କର ବଂଶଜ ବୋଲି ନିଜକୁ କହିଲେ, ସେହିମାନେ ଏହି ସ୍ତୋତ୍ରଗୁଡ଼ିକର ଉତ୍ତରାଧିକାରୀ ହେବାର ଦାବି କଲେ । ପରେ ଋଗ୍‌ବେଦର ଟୀକା ପ୍ରସ୍ତୁତ ହେଲା । ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ରସ୍ତୁତ ସାୟଣଙ୍କର ଟୀକାକୁ ପ୍ରସିଦ୍ଧି ମିଳିଲା । ଯଦିଓ ଏହି ଟୀକା ଋଗ୍‌ବେଦ ସଂକଳନର ବହୁ ଶତାବ୍ଦୀ ପରେ ପ୍ରସ୍ତୁତ ହୋଇଥିଲା, ବେଦର ଆଧୁନିକ ବିଶ୍ଳେଷଣମାନ ଆସିବା ପୂର୍ବରୁ ଏହା ପ୍ରକାଶକୁ ଆସିଥିବାରୁ ଏଥିରେ ବେଦ ପରବର୍ତ୍ତୀକାଳୀନ ଦୃଷ୍ଟିର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

## ଋଗ୍‌ବେଦର ସନ୍ଦର୍ଭ

ଏହି ସଂକ୍ଷିପ୍ତ ବିବରଣୀର ଉଦ୍ଦେଶ୍ୟ ହେଲା ବିବିଧ ପ୍ରକାର ସୂତ୍ରସାମଗ୍ରୀରୁ ପ୍ରାପ୍ତ ସାକ୍ଷ୍ୟ-ପ୍ରମାଣର ସ୍ୱରୂପକୁ ଚିହ୍ନିତ କରିବା ତଥା ତାକୁ ଏକ ଐତିହାସିକ କ୍ରମରେ ବ୍ୟବସ୍ଥିତ କରିବା । ପୋଥିଗତ ସୂତ୍ରସାମଗ୍ରୀର ବିବିଧତା ଯୋଗୁଁ ଏକ ପରିଷ୍କୃତ ଛବି ନିର୍ମାଣ ସହଜ ହୁଏନାହିଁ; ଅସମାଧିତ ପ୍ରଶ୍ନମାନ ଅନୁତ୍ତରିତ ହୋଇ ରହିଯାଏ । ଉକ୍ତ ସାମଗ୍ରୀକୁ ଯେତେବେଳେ ପାଠେତର (Non-Textual) ସୂତ୍ରସାମଗ୍ରୀରେ ଯୋଡ଼ିବାକୁ ପ୍ରୟାସ ହୁଏ, ଐତିହାସିକ ଛବି ନିର୍ମାଣର ପ୍ରକ୍ରିୟା ଅଧିକ ଜଟିଳ ହୋଇପଡ଼େ ।

ଭାରତାର୍ଯ୍ୟ ଭାଷା ସଂସ୍କୃତର ସମାନ ନ ହେଲେ ବି ଖୁବ୍ ନିକଟତର ଅଟେ । ମାତ୍ର ଏ ନେଇ ଆଦ୍ୟତମ ସାକ୍ଷ୍ୟ ଭାରତରୁ ନୁହେଁ, ବରଂ ଉତ୍ତର ସିରିଆରୁ ପ୍ରାପ୍ତ ହୁଏ । ଏହି ସାକ୍ଷ୍ୟର ପରିମାଣ ବେଶି ନୁହେଁ । ଦ୍ୱିତୀୟତଃ, ତାହା ଶୃଙ୍ଖଳିତ ଅବସ୍ଥାରେ ମିଳେ ନାହିଁ । ଏଥିରେ କେତୋଟି ନାମ ଏବଂ ଶବ୍ଦ ରହିଛି, ଯାହା ଭାରତାର୍ଯ୍ୟ ଭାଷାର ଅନେକ ରୂପ ମଧ୍ୟରୁ ଗୋଟାକରେ ଦେଖାଯାଏ । ଖ୍ରୀ.ପୂ. ଚତୁର୍ଦ୍ଦଶ ଶତାବ୍ଦୀରେ ହିଟାଇଟ ଏବଂ ମିତାନି ଗୋଷ୍ଠୀ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, ଯାହାର ସାକ୍ଷୀ ରୂପେ କେତେକ ଦେବାଦେବୀର ଉଦ୍ଧରଣ ଦିଆଯାଇଥିଲା । ଏହି ଦେବାଦେବୀମାନେ ହେଲେ ଇନ୍ଦର/ଇନ୍ଦ୍ର,

ମିତ୍ରସ୍ (ଇଲ)/ମିତ୍ର, ନସତିଆନା/ନା ସତ୍ୟ ଏବଂ ଉର୍ଭନାସ୍ୟ (ଇଲ)/ବରୁଣ । ଏହି ଦେବଗଣ ଉଭୟ 'ଋଗ୍‌ବେଦ' ଏବଂ 'ଆଭେସ୍ତା'ରେ ଉଲ୍ଲେଖ ପାଆନ୍ତି । ଆଶ୍ଚର୍ଯ୍ୟର କଥା ଯେ, ଋଗ୍‌ବେଦର ପ୍ରମୁଖ ଦେବତା ଅଗ୍ନି ଓ ସୋମଙ୍କର ଏଥିରେ କୌଣସି ଉଲ୍ଲେଖ ମିଳେନାହିଁ । ତତ୍‌କାଳୀନ ଅନ୍ୟ ଏକ ପୋଥିରେ ମଧ୍ୟ ଭାରତାର୍ଯ୍ୟର କେତୋଟି ଶବ୍ଦ ଦେଖିବାକୁ ମିଳେ । ଉକ୍ତ ପୋଥିଟିର ଅଶ୍ୱମାନଙ୍କୁ ପ୍ରଶିକ୍ଷଣ ଦେବା ନିମନ୍ତେ ବ୍ୟବହୃତ ହେଉଥିଲା । ମଧ୍ୟ-ଏସିଆରୁ ଆନିତ ଅଶ୍ୱ ଓ ରଥ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ବେଳକୁ ପଶ୍ଚିମ ଏସିଆରେ ଖୁବ୍ ପରିଚିତ ହୋଇସାରିଥିଲେ । ଏଥିରୁ ଅନୁମିତ ହୁଏ ଯେ ଅଶ୍ୱ ଏବଂ ଭାରତାର୍ଯ୍ୟ ଭାଷାଭାଷୀ ଲୋକ ଏକାସମୟରେ ଭାରତକୁ ଆସିଥିଲେ । ବେବିଲୋନର କସାଇଟ ଶାସକମାନେ କେତେକ ଦେବତାର ନାମୋଲ୍ଲେଖ କରନ୍ତି, ଯାହାର ପାଖାପାଖି ସମାନ ନାମ ସଂସ୍କୃତରେ ମିଳେ । ଉଦାହରଣ ସ୍ୱରୂପ, 'ସୁରିୟାସ' ଏବଂ 'ମାରୁତସ' । କସାଇଟମାନେ ମଧ୍ୟ ସହସ୍ରାବ୍ଦୀର ମଧ୍ୟଭାଗରେ ଇରାନ ଅଧିତ୍ୟକାରୁ ଯାଇଥିଲେ ବୋଲି କୁହାଯାଏ । କସାଇଟ ଭାଷା ଭାରୋପୀୟ ନୁହେଁ, ଯଦିଓ ଏଥିରେ ଥିବା କେତୋଟି ନାମ ଭାରତାର୍ଯ୍ୟ ଭଳି ଶୁଣାଯାଏ । ପଶ୍ଚିମ ଏସିଆର ଭାରତାର୍ଯ୍ୟ ଭାଷାକୁ ପ୍ରୋଟୋ-ଭାରତାର୍ଯ୍ୟ (Proto-Indo-Aryan) ବୋଲି କୁହାଯାଏ, ଯଦ୍ୱାରା ବୈଦିକ ସଂସ୍କୃତରୁ ତାକୁ ଭିନ୍ନ କରି ଚିହ୍ନିହେବ ଏବଂ ଅଧିକ ପ୍ରାଚୀନ ବୋଲି ଜାଣିହେବ ।

ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀରେ ସଂଘଟିତ ହୋଇଥିବା ହିଟାଇଟ ଓ ମିତାନି ସନ୍ଧିକୁ ଦୃଷ୍ଟିରେ ରଖି ଦେଖିଲେ ଜଣାଯିବ ଯେ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର କୌଣସି ଏକ କାଳଖଣ୍ଡରେ ଉତ୍ତର ସିରିଆରେ କିଛି ଲୋକ ବ୍ୟବହାର କରୁଥିବା ଭାଷାର ଭାରତାର୍ଯ୍ୟ ଭାଷା ସହିତ ଅନେକ ସାମଞ୍ଜସ୍ୟ ରହିଥିଲା । ସେହି ସମୟରେ ଉକ୍ତ କ୍ଷେତ୍ରର ସମ୍ବନ୍ଧ ଉତ୍ତର ଭାରତ ସହିତ ଥିଲା ନା ନାହିଁ, ସେ ନେଇ ଆମ ପାଖରେ କୌଣସି ପୁରାତାତ୍ତ୍ୱିକ କିମ୍ବା ଭାଷାବୈଜ୍ଞାନିକ ସାକ୍ଷ୍ୟ ନାହିଁ । ଫଳରେ ଏହି ଭାଷା ପଶ୍ଚିମ ଏସିଆର ପଶ୍ଚିମ ସୀମାନ୍ତରେ କେମିତି ପହଞ୍ଚିଲା, ତାହା ଜଣାପଡ଼େ ନାହିଁ । ଗୋଟାଏ ସମ୍ଭାବନା ହେଲା ଯେ, ଏହି ଭାଷା ଏଭଳି ଏକ କ୍ଷେତ୍ରରେ ଆରମ୍ଭ ହେଲା, ଯେଉଁ ସ୍ଥାନରୁ ଭାରତାର୍ଯ୍ୟ ଭାଷାଭାଷୀ ଲୋକ ହୁଏତ ପଶ୍ଚିମପଟକୁ ଯାଇଥିବେ, ଅଥବା ଦକ୍ଷିଣ-ପୂର୍ବ ପଟକୁ ଯାଇଥିବେ । ଏହି କ୍ଷେତ୍ରଟି ଉତ୍ତର-ପୂର୍ବ ଇରାନ ହୋଇଥାଇପାରେ । ଏହି ଆଧାରରେ ଦେଖାଯାଇପାରେ ଯେ ଭାରୋପୀୟ ଭାଷାଭାଷୀ ଏବଂ ଅଶ୍ୱ ଓ ରଥ ବ୍ୟବହାରକାରୀ ଲୋକ ପଶ୍ଚିମରେ ଅବସ୍ଥିତ ପ୍ରଦେଶମାନଙ୍କରେ ପ୍ରବେଶ କଲେ । ଏକ ଐତିହାସିକ ଆଗ୍ରହର ବିଷୟ ହେଲା ଯେ, ଉକ୍ତ ସନ୍ଧିରୁ ଆଭାସ ମିଳେ ଯେ ଯୁଦ୍ଧରେ ଏହି ଗୋଷ୍ଠୀର ସାମଗ୍ରିକ ବିଜୟ ହେଲା ।

ତା' ସତ୍ତ୍ୱେ ସିରିଆରେ ଭାରତାର୍ଯ୍ୟ ଭାଷାର ସ୍ଥିତି ସୁଦୃଢ଼ ନ ଥିଲା ଏବଂ କିଛିକାଳ ପରେ ତାହା ସେଠାରେ ଅବଲୁପ୍ତ ହେଲା । ମାତ୍ର ଭାରତରେ ଏହା ସୁଦୃଢ଼ ଭାବରେ ପ୍ରତିଷ୍ଠିତ ହେଲା । ଏହା ଉଲ୍ଲେଖଯୋଗ୍ୟ ଯେ, ଦେଶାନ୍ତରଣର ଫଳସ୍ୱରୂପ ଏହି ଭାଷା ଭାରତକୁ ଆସିଥିଲା । ଏଥିରୁ ଗୋଟାଏ କଥା ସିଦ୍ଧ ହୁଏ ଯେ, ସାମରିକ ବିଜୟ ସର୍ବଦା କୌଣସି ଏକ ଭାଷାର ବିସ୍ତାର କରି ନ ପାରେ । କ୍ଷମତାପୁଞ୍ଜ ଉପରେ ନିୟନ୍ତ୍ରଣ ଏବଂ କର୍ମକାଣ୍ଡକୁ ସ୍ଥାପିତ କରୁଥିବା କର୍ତ୍ତାଧର୍ତ୍ତା ବୋଲି ନିଜକୁ ଦାବି କରିବାର ସାମର୍ଥ୍ୟ ହୁଏତ ଭାଷାର ବିସ୍ତାର ଲାଗି ଅଧିକ ଉନ୍ନତ ଟେକ୍‌ନୋଲୋଜି ସାବ୍ୟସ୍ତ ହେବ ।

ଅନ୍ୟପକ୍ଷରୁ ଦେଖିଲେ, ଇରାନ ଓ ଉତ୍ତର-ଭାରତ ମଧ୍ୟରେ ସମ୍ବନ୍ଧ ଖୁବ୍ ନିବିଡ଼ । ଉଭୟ 'ଆଭେସ୍ତା' ଏବଂ ଭାରତାର୍ଯ୍ୟ ଭାଷା ହେଲେ ସଜାତ, ଅର୍ଥାତ୍ ଗୋଟାଏ ପୂର୍ବଜ ଭାଷାରୁ ଜାତ । 'ଆଭେସ୍ତା' ହେଲା ଜୋରାଷ୍ଟରଧର୍ମୀମାନଙ୍କର ଧର୍ମଗ୍ରନ୍ଥ । ଏହାର କାଳ ନିରୂପଣ ଆଜିପର୍ଯ୍ୟନ୍ତ ବିବାଦାସ୍ପଦ ରହିଛି । ସାଧାରଣ ମତ ହେଲା ଯେ, ଦ୍ୱିତୀୟ ସହସ୍ରାବ୍ଦୀର ମଧ୍ୟକାଳରେ ଏହା ଲିଖିତ ହୋଇଥିଲା । ଉଭୟଙ୍କ ମଧ୍ୟରେ ଭାଷା-ବୈଜ୍ଞାନିକ ସମ୍ବନ୍ଧ କେବଳ କେତୋଟି ଶବ୍ଦ ଯାଏଁ ସୀମିତ ନୁହେଁ । ଉଭୟ ଭାଷାର ଅବଧାରଣାମାନଙ୍କରେ ମଧ୍ୟ ସାମଞ୍ଜସ୍ୟ ଦେଖିବାକୁ ମିଳିଥାଏ । ଗୋଟାଏ ଅନ୍ତର ହେଲା 'ସ' ଓ 'ହ' ମଧ୍ୟରେ ପାରସ୍ପରିକ ପରିବର୍ତ୍ତନିୟତା । ମାତ୍ର ଉକ୍ତ ପରିବର୍ତ୍ତନିୟତାରେ ମଧ୍ୟ ଏକପ୍ରକାର ସଂଗତି ରହିଛି । ଯଥା : 'ହୋମ', 'ଦାହ', 'ହପ୍ତହିନ୍ଦୁ', 'ଅହୁର' ହେଲା ଆଭେସ୍ତାରେ ବ୍ୟବହୃତ ଶବ୍ଦ । ଋଗ୍‌ବୈଦିକ ସଂସ୍କୃତରେ ଏହା ହୁଏ 'ସୋମ', 'ଦାସ', 'ସପ୍ତସିନ୍ଧୁ' ଏବଂ 'ଅସୁର' । ଧାର୍ମିକ ଅବଧାରଣା ଦୃଷ୍ଟିରୁ ଦେଖିଲେ, ଉଭୟ ସ୍ଥିତିରେ ଦେବତାମାନଙ୍କର ଗୁଣ-ଧର୍ମ ବହୁଧା ଓଲଟିଯାଏ । ଫଳରେ ଆଭେସ୍ତାରେ ଇନ୍ଦ୍ର ହେଲେ ଦୈତ୍ୟ । ଦୈବ (ଦେବ) ମଧ୍ୟ ଦୈତ୍ୟ ପ୍ରକୃତିର । ଅନ୍ୟପକ୍ଷରେ ଅସୁର ହେଲେ ସେଠାକାର ପରମପୂଜ୍ୟ ଦେବତା । ଏହି ଆଧାରରେ କୁହାଯାଏ ଯେ ମୂଳତଃ ପ୍ରାଚୀନ ଇରାନୀ ଏବଂ ଭାରତାର୍ଯ୍ୟ ଭାଷାଭାଷୀ ଲୋକ ଥିଲେ ଗୋଟାଏ ଗୋଷ୍ଠୀର, ମାତ୍ର ମତଭେଦ କାରଣରୁ ସେମାନେ ପରସ୍ପରଠାରୁ ଅଲଗା ହେଲେ । ଏହାପରେ ହିଁ ଇଣ୍ଡୋ-ଇରାନ ସୀମାନ୍ତ କ୍ଷେତ୍ର ଓ ଆଫଗାନିସ୍ଥାନର ହରକ୍ଷବତୀ (ସରସ୍ୱତୀ) କ୍ଷେତ୍ରରେ ବସବାସ କରୁଥିବା ଭାରତାର୍ଯ୍ୟଭାଷୀ ଲୋକ ଧୀରେ ଧୀରେ ସୈନ୍ଧବ ସମତଳକୁ ଦେଶାନ୍ତରଣ କଲେ । ସେମାନେ ସାଙ୍ଗରେ ନିଜର ଭାଷା, କର୍ମକାଣ୍ଡ ଓ ସାମାଜିକ ରୀତିନୀତିକୁ ନେଇ ଯାଇଥିଲେ, ଯାହା ସେମାନଙ୍କର ବସତି କ୍ଷେତ୍ର ସପ୍ତସିନ୍ଧୁରେ ବିକଶିତ ହେଲା । ଏହି କ୍ଷେତ୍ରରେ ସେମାନେ କୃଷି ଓ ପଶୁପାଳନ କଲେ ଏବଂ ସ୍ଥାନୀୟ ଲୋକସମାଜରେ ମିଶି ରହିଲେ । ଏକଥା ଋଗ୍‌ବେଦରେ ପ୍ରାଞ୍ଜଳଭାବରେ ବର୍ଣ୍ଣିତ ହୋଇଛି ।

ଏହି ଧରଣର ଏକ ଚିତ୍ରଣ ଗୋଟାଏ ସୀମା ପର୍ଯ୍ୟନ୍ତ ପୁରାତାତ୍ତ୍ୱିକ ସାକ୍ଷ୍ୟ-ପ୍ରମାଣ ସହିତ ମେଳ ଖାଏ । ଏକଥା ଆଗରୁ ବିଦିତ ଯେ ଋଗ୍‌ବେଦର କର୍ମକର୍ମାଣି ଏବଂ କାର୍ଯ୍ୟକଳାପରେ ଅଶ୍ୱର ପ୍ରମୁଖ ଭୂମିକା ରହିଥିଲା । ଯଦି ଭାରତାର୍ଯ୍ୟଭାଷୀ ଲୋକଙ୍କ ଉପସ୍ଥିତିକୁ ଅଶ୍ୱର ଉପସ୍ଥିତି ଯୋଡ଼ି ଦେଖାଯାଏ, ତେବେ ଉପମହାଦେଶରେ (ଭାରତରେ) ଦ୍ୱିତୀୟ ସହସ୍ରାବ୍ଦୀର ଆରମ୍ଭ ବେଳକୁ ଏହି ଗୋଷ୍ଠୀର ଲୋକ ପ୍ରବେଶ କରିସାରିଥିଲେ । ତା' ପୂର୍ବରୁ ପରିପକ୍ୱ ହରପ୍ପା ସଭ୍ୟତା କାଳରେ ସେମାନେ ନ ଥିଲେ । ପରବର୍ତ୍ତୀକାଳୀନ କେତେକ ଅଶ୍ୱହାଡ଼ ଓ ମୃଣ୍ମୟପାତ୍ରରେ ଚିହ୍ନିତ ମୂର୍ତ୍ତି ପ୍ରାପ୍ତ ହୋଇଛି । ଏସବୁ ହେଲେ ହରପ୍ପା ସ୍ଥଳୀର ସୀମାବର୍ତ୍ତୀ ସ୍ଥାନଗୁଡ଼ିକର ଖନନ ବସ୍ତୁ । କିନ୍ତୁ ହରପ୍ପା ବେଳର ଖନନ ବସ୍ତୁରେ ଅଶ୍ୱହାଡ଼ ଓ ମୂର୍ତ୍ତିର ଅନୁପସ୍ଥିତିରୁ ମନେହୁଏ ସେତେବେଳେ ଅଶ୍ୱ ଥିଲା ଏକ ଅଜଣା ପଶୁ । ଭାରତ-ଇରାନ ସୀମାବର୍ତ୍ତୀ ଇଲାକା, ଯାହା ସୈନ୍ଧବ କ୍ଷେତ୍ରକୁ ପ୍ରବେଶମାର୍ଗ ଥିଲା, ସେଠାରେ ପ୍ରତ୍ନତାତ୍ତ୍ୱିକ ଖନନରୁ ଅଳ୍ପମାତ୍ରାରେ ଅନ୍ୟ ବସ୍ତୁ ସବୁ ପ୍ରାପ୍ତ ହୋଇଛି । ଏହି ବସ୍ତୁଗୁଡ଼ିକର ସମାନତା ଦକ୍ଷିଣ ଆଫଗାନିସ୍ଥାନ ଏବଂ ଉତ୍ତର-ପୂର୍ବ ଇରାନରୁ ପ୍ରାପ୍ତ ବସ୍ତୁ ସହିତ ରହିଛି । ଉକ୍ତ ସ୍ଥଳୀଗୁଡ଼ିକ ମଧ୍ୟରେ ବେକ୍‌ଟ୍ରିଆ-ମାର୍ଜିନିଆ ପୁରାତାତ୍ତ୍ୱିକ କ୍ଷେତ୍ର (Bactria Margiana Archaeological Complex ବା BMAC) ଅନ୍ୟତମ । ଖନନରୁ ପ୍ରାପ୍ତ ବସ୍ତୁଗୁଡ଼ିକ ମଧ୍ୟରେ ରହିଛି ଅଶ୍ୱପୃଷ୍ଠରେ ଅଶ୍ୱାରୋହୀର ମୃଣ୍ମୟ ମୂର୍ତ୍ତି । କଦାଚିତ୍ ଅଶ୍ୱର ଥଣ୍ଟ ପରି ମୁହଁ ରହିଛି; ମଧ୍ୟ-ଏସିଆ ଓ ଇରାନର ମୃଦ୍‌ଭାଣ୍ଡ ପରି ବସ୍ତୁ, ଭାଗ ଭାଗ କରାହୋଇଥିବା ମୋହର (compartmented seal); କଂସା ନିର୍ମିତ ବାଟି (ଗିନା) ଓ କୁରାଢ଼ି ଆଦି । ସମ୍ଭବତଃ ଏସବୁ ଥିଲେ ସମ୍ପନ୍ନ ପରିବାର ମଧ୍ୟରେ ବିନିମୟ ହେଉଥିବା ଉପହାର ସାମଗ୍ରୀ, ଯାହା ଲୋକଚଳଣିରେ ନ ଥିଲା । ଅନ୍ୟଥା ଖନନବେଳେ ସେଗୁଡ଼ିକର ପରିମାଣ ଊଣା ହୁଅନ୍ତା ନାହିଁ । ତା' ସହିତ ଏଥିରୁ ଏକଥା ମଧ୍ୟ ଅନୁମାନ କରାଯାଇପାରେ ଯେ ଏହି ବସ୍ତୁଗୁଡ଼ିକ ଚର୍ଚ୍ଚିତ କ୍ଷେତ୍ରକୁ ଅତର୍କିତଭାବେ ଯା-ଆସ କରୁ ନ ଥିଲେ । ସମ୍ଭବତଃ ଏହି ସମୟରେ ଦେଶାନ୍ତରଣର ପ୍ରକ୍ରିୟା ଆରମ୍ଭ ହୋଇ ପରବର୍ତ୍ତୀ ସମୟରେ ତାହା ଜୋର୍ ଧରିଥିଲା ।

ସିରିଆରେ ପ୍ରୋଟୋ-ଭାରତାର୍ଯ୍ୟ ଭାଷାର ସାକ୍ଷ୍ୟ ମିଳିବା ପରେ, ତା'ର ଋଗ୍‌ବେଦର ସମୟକାଳ ସହିତ ମଧ୍ୟ ସମ୍ବନ୍ଧ ଦେଖିହୁଏ । ଭାରତାର୍ଯ୍ୟ ହିଟାଇଟ-ମିତାନିମାନଙ୍କର ସନ୍ଧିପତ୍ରକୁ ଯଦି ଋଗ୍‌ବେଦର ସଂସ୍କୃତ ଅପେକ୍ଷା ଅଧିକ ପ୍ରାଚୀନ ବୋଲି ଆମେ ଗଣନା କରୁ, ତା'ହେଲେ ଋଗ୍‌ବେଦର ରଚନାକାଳ ହେଲା ଖ୍ରୀ.ପୂ. ଚତୁର୍ଦ୍ଦଶ ଶତାବ୍ଦୀର ପର ସମୟ । ଏହି ତିଥି 'ଆଭେସ୍ତା'ରେ ବର୍ଣ୍ଣିତ ଅବଧାରଣା ଓ 'ଆଭେସ୍ତା'ରେ ବ୍ୟବହୃତ ଭାଷାର ନିକଟତର ହେବ ବୋଲି ଅନୁମାନ କରାଯାଏ । ବୈଦିକ ସଂସ୍କୃତର ପ୍ରୟୋଗ କ୍ଷେତ୍ର ପୂର୍ବ ଦିଗକୁ

ଅଧିକରୁ ଅଧିକ ବିସ୍ତାରିତ ହେବା ସହିତ ଏହି ଭାଷା-ବୈଜ୍ଞାନିକ ନିକଟତା ଊଣା ହେବାକୁ ଆରମ୍ଭ କରେ । କର୍ମକର୍ମାଣିକୁ ବ୍ୟାଖ୍ୟା କରୁଥିବା 'ବ୍ରାହ୍ମଣ'ର ରଚନାକାଳ ସହିତ ଉକ୍ତ ତିଥିର ମେଳ ଅଛି । 'ବ୍ରାହ୍ମଣ' ହେଲା ଋଗ୍‌ବେଦ ପରବର୍ତ୍ତୀ କାଳର ସଂରଚନା; ସାଧାରଣ ବିଚାରରେ ତାହା ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ସୃଷ୍ଟି । ପଶ୍ଚିମ ଓ ମଧ୍ୟ-ଗାଙ୍ଗେୟ ସମତଳ କ୍ଷେତ୍ରକୁ ଲୋକଙ୍କର ଦେଶାନ୍ତରଣ ହୋଇଥିବା କଥାର ଏଥିରେ ଉଲ୍ଲେଖ ରହିଛି ।

ଏହି ନିକଟ୍‌ରେ ଋଗ୍‌ବେଦର ରଚନାକାଳ ହରପ୍ପାକାଳୀନ କିମ୍ବା ପ୍ରାକ୍-ହରପ୍ପାକାଳୀନ ବୋଲି କେତେକ ଯୁକ୍ତି ଦର୍ଶାଉଛନ୍ତି । ତା' ଅନୁଯାୟୀ, ସିନ୍ଧୁ ସଭ୍ୟତା ଓ ଋଗ୍‌ବେଦ ହେଲା ସମକାଳୀନ । ଏହା ଯଦି ସିଦ୍ଧ ହୁଏ, ତେବେ ଋଗ୍‌ବେଦର ରଚୟିତା 'ଆର୍ଯ୍ୟମାନେ' ଏବଂ ଭାରତାର୍ଯ୍ୟ ଭାଷାର ଉତ୍ପତ୍ତି ଉତ୍ତର-ଭାରତ ବୋଲି ଦିଆଯାଉଥିବା ତର୍କକୁ ସମର୍ଥନ ମିଳିବ । ଏହାକୁ ସେମାନେ କହୁଛନ୍ତି ସିନ୍ଧୁ-ସରସ୍ୱତୀ ବା ସରସ୍ୱତୀ ସଭ୍ୟତା, ଯାହାର ଶ୍ରେୟ ଯିବ ବୈଦିକ ସଂସ୍କୃତିକୁ । ମାତ୍ର ବାସ୍ତବିକତା ହେଲା ଯେ ଏଭଳି କିଛି ରହିଥିବାର ସାକ୍ଷ୍ୟ-ପ୍ରମାଣ ମିଳେ ନାହିଁ ।

ଏହି ଯେଉଁ ବିଚାର, ତାହା ଭାଷା ବିଜ୍ଞାନରୁ ପ୍ରାପ୍ତ ହୋଇଥିବା ତଥ୍ୟକୁ ଅଣଦେଖା କରେ ଏବଂ ପୁରାତାତ୍ତ୍ୱିକ ସାକ୍ଷ୍ୟ-ପ୍ରମାଣର କୌଣସି ବିଶ୍ଳେଷଣାତ୍ମକ ରୂପରେଖ ଦିଏ ନାହିଁ । ପୁରାତାତ୍ତ୍ୱିକ ସାକ୍ଷ୍ୟ-ପ୍ରମାଣର ଦୁଇଟି ଦିଗ ରହିଛି । ପ୍ରଥମଟି ହେଲା, କ'ଣ ହରପ୍ପା ସଂସ୍କୃତିର ଶିଳ୍ପ-ତଥ୍ୟ ଏବଂ ସ୍ମାରକର ବର୍ଣ୍ଣନା ଋଗ୍‌ବେଦରେ କରାଯାଇଛି ? ଦ୍ୱିତୀୟ ପ୍ରଶ୍ନ ହେଲା, କ'ଣ ହରପ୍ପା ବ୍ୟବସ୍ଥାରେ ନଗରୀୟ ବସତିରେ ସନ୍ନିବେଶିତ ଅବଧାରଣାମାନ ଋଗ୍‌ବେଦରେ ପ୍ରତିଫଳିତ ହୋଇଛି ? ହରପ୍ପାର ନଗରୀକରଣର ମହତ୍ତ୍ୱପୂର୍ଣ୍ଣ ବିଶେଷତ୍ୱଗୁଡ଼ିକର ଋଗ୍‌ବେଦରେ ଉପସ୍ଥିତି ନାହିଁ ବୋଲି ଅଧିକାଂଶ ବିଦ୍ୱାନ ଦର୍ଶାଇଛନ୍ତି । ଏହି ବିଶେଷତ୍ୱଗୁଡ଼ିକ ମଧ୍ୟରେ ଅନ୍ୟତମ ହେଲା : ସମକୋଣୀୟ ବିଭାଜନ ପଦ୍ଧତିକୁ ଅନୁସରଣ କରି ତିଆରି ହୋଇଥିବା ସହର ଯୋଜନା, ବୃହଦ୍ ନିର୍ମାଣ ଭିତ୍ତି ରୂପରେ ପ୍ରସ୍ତୁତ ବ୍ୟାପକ କଞ୍ଚା ଇଟାର ପ୍ଲାଟଫର୍ମ, ସ୍ମାରକୀ ବିଲ୍‌ଡିଂ, ଜଟିଳ ଗଡ଼ ପାଚେରୀ, ବିସ୍ତୃତ ଜଳ-ନିଷ୍କାସନ ପ୍ରଣାଳୀ, ଉଭୟ ପୋଡ଼ା ଓ କଞ୍ଚା ଇଟାର ବ୍ୟବହାର, ଭଣ୍ଡାର ଘର, କର୍ମକାଣ୍ଡ ଉଦ୍ଦେଶ୍ୟରେ ପୋଖରୀ ଏବଂ କାଂସ୍ୟ ଅବଶେଷ, ସିଲ୍, ଦେବୀପ୍ରତିମ ନାରୀ ମୃଣ୍ମୟୀ ମୂର୍ତ୍ତି ଆଦି ।

ଦ୍ୱିତୀୟ କଥା ହେଲା, ଏହିସବୁ ବସ୍ତୁ ଓ ସଂରଚନା ସହିତ ଋଗ୍‌ବେଦରେ ଥିବା ବର୍ଣ୍ଣନାର କୌଣସି ଅବଧାରଣାତ୍ମକ ପରିଚୟ ରହିଛି କି ? ଗୋଟାଏ ଯୋଜନାବଦ୍ଧ ଓ ପାଚେରିବେଷ୍ଟିତ ନଗରୀର ପରିଚାଳନା ପାଇଁ ଯେଉଁ ନାଗରିକ ଜୀବନର ଲୋଡ଼ା ପଡ଼େ,

ତା'ର କୌଣସି ସୂଚନା ଋଗ୍‌ବେଦରୁ ମିଳେ ନାହିଁ । ଗୋଟାଏ ନଗରୀୟ ନିର୍ମାଣ ପାଇଁ ନିଶ୍ଚିତରୂପେ ଏକ ଦାସଶ୍ରମିକ ବର୍ଗର ଲୋଡ଼ାପଡ଼ିଥିବ । ପାରିବାରିକ ଶ୍ରମରେ ଏତେ ବଡ଼ ନିର୍ମାଣ କାର୍ଯ୍ୟ ସମ୍ଭବ ହୋଇପାରେନା । ମାତ୍ର ଋଗ୍‌ବେଦରେ ସେଭଳି ଏକ ବୃହଦ୍ ଶ୍ରମିକ ବର୍ଗର ଉଦ୍ଧରଣ ନାହିଁ । ବିନିମୟ ବ୍ୟବସ୍ଥାକୁ କାର୍ଯ୍ୟକ୍ଷମ କରିବପାଇଁ ନାନାଦି ପଣ୍ୟବସ୍ତୁର ଲୋଡ଼ାଥାଏ; ହସ୍ତଶିଳ୍ପର କେନ୍ଦ୍ର ରହିବା କଥା; ଜଟିଳ ଓ ସ୍ତରୀକୃତ ମାପ ଓ ଓଜନ ପ୍ରଣାଳୀ ରହିବା କଥା; ପୁଣି କେଉଁ ବସ୍ତୁର ବିନିମୟକୁ କେତେ ପ୍ରାଥମିକତା ଦିଆଯିବ; ତା'ର ସ୍ପଷ୍ଟ ଉଲ୍ଲେଖ ରହିବା କଥା । ମାତ୍ର ଏସବୁର ଋଗ୍‌ବେଦରେ ଉଲ୍ଲେଖ ନାହିଁ । ଋଗ୍‌ବେଦର ବର୍ଣ୍ଣନାରେ, ପୋଖରୀକୂଳ କିମ୍ବା ଭବନ ଆଦି ସ୍ଥାୟୀ ସ୍ଥଳୀରେ କର୍ମକାଣ୍ଡ ସମ୍ପାଦନ କରାଯାଏ ନାହିଁ; ମୃଣ୍ମୟ ମୂର୍ତ୍ତିର ଉଲ୍ଲେଖ ନାହିଁ; ଉର୍ବରତାର ଉପାସନା ନାହିଁ । ଋଗ୍‌ବେଦରେ ବର୍ଣ୍ଣିତ ଅଗ୍ନିବେଦୀର (ଯଜ୍ଞବେଦୀ) ରୂପ ଓ ଆକାର ହରପ୍ପାର ଖନନରେ ମିଳେ ନାହିଁ । ହରପ୍ପାର ମିଥକୀୟ ଏକଶିଂଘୀ ପଶୁର କଳ୍ପନା ଋଗ୍‌ବେଦରେ ନାହିଁ । ଏହି ପଶୁର ଚିତ୍ର ହରପ୍ପାର ମୋହରରେ ବାରମ୍ବାର ଦେଖିବାକୁ ମିଳେ । ଋଗ୍‌ବେଦରେ ଅଶ୍ୱର ଅନେକାନେକ ଉଦ୍ଧରଣ ରହିଛି; ମାତ୍ର ହରପ୍ପାରେ ଏହା ବିରଳ । ଋଗ୍‌ବେଦରେ ନା ମୋହରର ଉଲ୍ଲେଖ ରହିଛି, ନା ଲିପିର ଉଦ୍ଧରଣ ରହିଛି ! ମନୁଷ୍ୟର ଶରୀରଗତ ସ୍ଥାପତ୍ୟର ପ୍ରତିଫଳନ ଋଗ୍‌ବେଦରେ ନାହିଁ । ଋଗ୍‌ବେଦର ଭୂଗୋଳ ଉତ୍ତର ସୈନ୍ଧବ ସମତଳ କ୍ଷେତ୍ର ବା ସପ୍ତସିନ୍ଧୁ କ୍ଷେତ୍ର ଯାଏଁ ସୀମିତ । ସିନ୍ଧୁ ନଦୀର ନିମ୍ନ କ୍ଷେତ୍ରର ତଥା ଗୁଜରାଟର ଉଲ୍ଲେଖ ତହିଁରେ ମିଳେନା । ଅନ୍ୟପକ୍ଷରେ, ହରପ୍ପାର ନୌବାଣିଜ୍ୟ ପାଇଁ ନିମ୍ନ ସିନ୍ଧୁ କ୍ଷେତ୍ର, ଗୁଜରାଟ ଓ ପାରସ୍ୟ ଉପସାଗରୀୟ ତଟର ବନ୍ଦର ଓ ପୃଷ୍ଠଦେଶର (hinter land) ଖୁବ୍ ମହତ୍ତ୍ୱ ରହିଥିଲା ବୋଲି ଜଣାଯାଏ ।

## ବୈଦିକ ସାହିତ୍ୟରେ ସମାଜ

'ଋଗ୍‌ବେଦ' ହେଲା ବୈଦିକ ସାହିତ୍ୟର ଆଦ୍ୟତମ ଗ୍ରନ୍ଥ । ଉତ୍ତର ବୈଦିକ ସାହିତ୍ୟ (Later Vedic Corpus) ମଧ୍ୟରେ ରହିଛି ସାମ, ଯଜୁଃ ଏବଂ ଅଥର୍ବ ବେଦ । ଏହି ବେଦଗୁଡ଼ିକର ରଚନାକାଳ ହେଲା ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ଆଦ୍ୟଭାଗ । 'ସଂହିତା' ହେଲା ସ୍ତୋତ୍ର ସଂଗ୍ରହ ଏବଂ 'ବ୍ରାହ୍ମଣ' ହେଉଛି କର୍ମକାଣ୍ଡର ବ୍ୟାଖ୍ୟାନ । ବୈଦିକ ସାହିତ୍ୟର ଆଉ ଦୁଇଟି ଖଣ୍ଡ ହେଲେ 'ଉପନିଷଦ' ଓ 'ଆରଣ୍ୟକ', ଯାହା ମୁଖ୍ୟତଃ ଦାର୍ଶନିକ ବିମର୍ଶ ରୂପେ ପରିଚିତ । 'ସୂତ୍ର'କୁ ମଧ୍ୟ ଏଥିରେ ସାମିଲ କରାଯାଏ । ସୂତ୍ର ତିନି ପ୍ରକାରର – ଗୃହ୍ୟସୂତ୍ର, ଶ୍ରୌତସୂତ୍ର ଏବଂ ଧର୍ମସୂତ୍ର । ଗୃହ୍ୟସୂତ୍ରରେ ପାରିବାରିକ ରୀତିନୀତିର କଥା

ଥାଏ; 'ଶ୍ରୌତସୂତ୍ର'ରେ ନିଜର ପ୍ରତିଷ୍ଠା ଅର୍ଜନ ପାଇଁ ସାର୍ବଜନିକ କର୍ମକାଣ୍ଡର କଥା ଥାଏ ଏବଂ 'ଧର୍ମସୂତ୍ର'ରେ ବର୍ଣ୍ଣ-ବିନିୟମ ଓ ସାମାଜିକ ଦାୟିତ୍ୱ ଅନୁସାରେ ପବିତ୍ର କର୍ତ୍ତବ୍ୟ ପାଳନ କଥା ରହିଥାଏ । ଉପନିଷଦ ଓ ସୂତ୍ର ଆଦିର ରଚନାକାଳ ହେଲା ସମ୍ଭବତଃ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ । ଏଗୁଡ଼ିକ ହେଲେ ସାମାଜିକ ତଥା କର୍ମକାଣ୍ଡ ଆଧାରିତ ଦାୟିତ୍ୱ ସମ୍ପର୍କରେ ସୂଚନା ଦେଉଥିବା ସାଧାରଣ ପାଠ, ଯାହାର ଉଦ୍ଦେଶ୍ୟ ସ୍ତୋତ୍ରଠାରୁ ଭିନ୍ନ । ମନେହୁଏ, ଉଦ୍ଦେଶ୍ୟ ଓ ବିଷୟ ଦୃଷ୍ଟିରୁ ଦେଖିଲେ, ଋଗ୍‌ବେଦ ଏବଂ ଉତ୍ତର ବୈଦିକ ସାହିତ୍ୟ ମଧ୍ୟରେ ବହୁତ ପାର୍ଥକ୍ୟ ନାହିଁ । ଏଥିରୁ ପୁଣିଥରେ ସିଦ୍ଧ ହୁଏ ଯେ ଋଗ୍‌ବେଦ ହେଲା ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀ ବେଳର ଏବଂ ଅନ୍ୟଗୁଡ଼ିକ ହେଲେ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀ ବେଳର ସାହିତ୍ୟ ।

ସଂକଳିତ ହେବା ପୂର୍ବରୁ ସ୍ତୋତ୍ରଗୁଡ଼ିକୁ ନିବିଷ୍ଟ ମନରେ କଣ୍ଠସ୍ଥ କରାଯାଉଥିଲା ଏବଂ ପିଢ଼ି ପିଢ଼ି ଧରି ମୌଖିକ ରୂପରେ ତାକୁ ସଂପ୍ରେଷିତ କରାଯାଉଥିଲା । ଏହା ଅନେକ ଶତାବ୍ଦୀ ଧରି ଚାଲିଥିଲା । ଶ୍ଳୋକଗୁଡ଼ିକୁ କଣ୍ଠସ୍ଥ କରିବାପାଇଁ ତଥା ଧ୍ୱନିର ଯଥାଯଥ ଅଭିବ୍ୟକ୍ତି ପାଇଁ ନାନାପ୍ରକାର ବିଧିବିଧାନର ପାଳନ କରାଯାଉଥିଲା, କାରଣ ଯଥାର୍ଥ ଉଚ୍ଚାରଣ ହେଲା କର୍ମକାଣ୍ଡ ସମ୍ବନ୍ଧିତ ପାଠର ପ୍ରାଥମିକ ଆବଶ୍ୟକତା । ଏହାଫଳରେ ଅତି ଅଳ୍ପସଂଖ୍ୟକ ମନୋନୀତ ବ୍ରାହ୍ମଣମାନେ କେବଳ ବେଦଜ୍ଞାତା ହେଲେ ଏବଂ ସେମାନେ ନିଜକୁ ଶ୍ରେଷ୍ଠ ଜ୍ଞାନୀ ବୋଲି ଦାବି କଲେ । କେବଳ ସେମାନଙ୍କୁ ହିଁ ମହତ୍ତ୍ୱପୂର୍ଣ୍ଣ କର୍ମକାଣ୍ଡମାନ ସମ୍ପାଦନ କରିବାକୁ ଅନୁମତି ମିଳିଲା । ପ୍ରଥମେ ମହାକାବ୍ୟଗୁଡ଼ିକୁ ମଧ୍ୟ କଣ୍ଠସ୍ଥ କରି ପାଠ କରାଯାଉଥିଲା । ମାତ୍ର ସେଗୁଡ଼ିକ ଲୌକିକ ସାହିତ୍ୟ ହୋଇଥିବାରୁ ପାଠ ସମୟରେ ପାଠକ ତହିଁରେ ନୂଆ ନୂଆ କିଛି ଯୋଡ଼ିବାକୁ ଲାଗିଲେ । ମହାକାବ୍ୟ ପାଠନ-ପାଠନ ଅଧିକ ଖୋଲାମେଲା ଥିଲା । ବେଦ ଉପରେ ଅଧିକ ନିୟନ୍ତ୍ରଣ ରହିବା ପଛରେ କାରଣ ହେଲା ଯେ ଏହା ଥିଲା କର୍ମକାଣ୍ଡୀ ପାଠ ଏବଂ ଏହାକୁ ଶୁଦ୍ଧତର ନ କଲେ ଏହାର ନିୟନ୍ତ୍ରଣ ଓ ସୁରକ୍ଷା ସହଜ ହୋଇ ନ ଥାନ୍ତା ।

ଋଗ୍‌ବେଦର ସ୍ତୋତ୍ରର ରଚୟିତା କେତେ ମାତ୍ରାରେ ଭୂଗୋଳ ଜ୍ଞାନର ଅଧିକାରୀ ଥିଲେ, ତାହା ସ୍ତୋତ୍ରରେ ଉଲ୍ଲେଖ କରାଯାଇଥିବା ନଦୀଗୁଡ଼ିକର ନାମରୁ ସୁସ୍ପଷ୍ଟ ହୁଏ । ପୂର୍ବ ଆଫଗାନିସ୍ଥାନ, ସ୍ୱାତ ଉପତ୍ୟକା, ପଞ୍ଜାବ ଏବଂ ସୈନ୍ଧବ-ଗାଙ୍ଗେୟ ଜଳ ବିଭାଜିକା ସହିତ ଋଗ୍‌ବେଦର ବହୁ ପରିଚିତି ରହିଥିଲା । ଏହି କ୍ଷେତ୍ରକୁ 'ସପ୍ତସିନ୍ଧୁ'ର ଦେଶ କୁହାଯାଉଥିଲା । ଯମୁନାକୁ ଗଙ୍ଗାର ଯମଜ ଭଗିନୀ ଓ ସତଲେଜକୁ ବ୍ୟାସନଦୀର ସମ୍ବନ୍ଧୀୟ ବୋଲି ଉଲ୍ଲେଖ କରାଯାଇଛି । ଅର୍ଥାତ୍ ଏ ଦୁଇ ନଦୀକୁ ଘର୍ଘରା-ହାକ୍ରାର ଉପନଦୀ ରୂପେ ଚିହ୍ନିତ କରାଯାଇ ନ ଥିଲା । ଘର୍ଘରାଠାରୁ ସେମାନଙ୍କର ଦୂରକୁ ଚାଲିଯିବା ପଛରେ କାରଣ

ହେଲା ଜଳପ୍ରବାହୀୟ ପରିବର୍ତ୍ତନ (hydraulic changes) । ଏହି ପରିବର୍ତ୍ତନର ଆରମ୍ଭ ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀକାଳୀନ ବୋଲି ମନେକରାଯାଏ । ତେଣୁକରି ଋଗ୍‌ବେଦରେ ମିଳୁଥିବା ଉଲ୍ଲେଖ ତା’ ପର ସମୟର ହୋଇଥିବ । ଜଳବାୟୁ ଦୃଷ୍ଟିରୁ, ଏହି କ୍ଷେତ୍ରରେ ସେତେବେଳେ ଆଜିର ତୁଳନାରେ ଅଧିକ ଆର୍ଦ୍ରତା ଥିଲା । ଆଜି ଯାହା ମରୁପ୍ରାନ୍ତର, ସେଠାରେ ସେତେବେଳେ ଘନଜଙ୍ଗଲ ରହିଥିଲା । ଅବଶ୍ୟ ପଞ୍ଜାବର କେତେକାଂଶ ସେତେବେଳେ ମଧ୍ୟ ବେଶି ଶୁଷ୍କ ହୋଇ ନ ଥିବ ଏବଂ ପଶୁପାଳନ ପାଇଁ ଉପଯୁକ୍ତ ବୋଲି ଗଣା ହେଉଥିବ । ହରପ୍ପା କାଳରେ କୃଷିର ବିକାଶ ହେବା ଯୋଗୁଁ କିଛି ଜଙ୍ଗଲ ହ୍ରାସ ପାଇଥିବ । ପୁଣି ଗାଙ୍ଗେୟ ସମତଳରେ ବସତି ସ୍ଥାପନ ହେବାଫଳରେ ନିର୍ବନିକରଣ (deforestation)ର ମାତ୍ରା ବୃଦ୍ଧି ପାଇଥିବ । ତମ୍ବା ଓ କଂସା ସାଙ୍ଗକୁ ଲୁହାର ଉପକରଣ ବ୍ୟବହାରକୁ ଆସିବା ପରେ ନିର୍ବନିକରଣର ପ୍ରକ୍ରିୟା ବୃଦ୍ଧି ପାଇଥିବ । ମାତ୍ର ଏକଥା ମଧ୍ୟ ସତ ଯେ ଖ୍ରୀ.ପୂ. ୫୦୦ ପୂର୍ବରୁ ଲୁହାର ବ୍ୟବହାର ସାଧାରଣତଃ ଅସ୍ତ୍ର ନିର୍ମାଣ ପାଇଁ କରାଯାଉଥିଲା । ଅର୍ଥାତ୍ ଲୁହାର ଅନ୍ୟ ବ୍ୟବହାର ପ୍ରାୟତଃ ନ ଥିଲା ।

ପୂର୍ବର ଧାରଣା ଅନୁଯାୟୀ, ଭାରତାର୍ଯ୍ୟ ଭାଷାଭାଷୀ ଲୋକ, ଯାହାଙ୍କୁ ଆମେ ସଂକ୍ଷେପରେ ‘ଆର୍ଯ୍ୟ’ ବୋଲି ନାମିତ କରିବା ଏବଂ ଭାରତରେ ସେମାନେ ଭେଟିଥିବା ସମୁଦାୟ ମଧ୍ୟରେ ପ୍ରଜାତିଗତ ପାର୍ଥକ୍ୟ ଥିଲା । ଆର୍ଯ୍ୟମାନେ ଏହି ସମୁଦାୟକୁ ‘ଦାସ’, ‘ଦସ୍ୟୁ’ ଏବଂ ‘ପଣୀ’ ନାମରେ ଉଲ୍ଲେଖ କରୁଥିଲେ । କୁହାଯାଉଥିଲା, ସେତେବେଳେ କେବଳ ଦୁଇଟି ବର୍ଣ୍ଣ ଥିଲା – ଆର୍ଯ୍ୟ ବର୍ଣ୍ଣ ଓ ଦାସ ବର୍ଣ୍ଣ । ଏହି ଉଦ୍ଧୃତିକୁ ପ୍ରମାଣ ରୂପରେ ପେଶ୍ କରାଯାଉଥିଲା । ମାତ୍ର ଏଠାରେ ବର୍ଣ୍ଣର ଅର୍ଥ ହେଲା ରଙ୍ଗ, ଅର୍ଥାତ୍ ଦେହର ରଙ୍ଗ । ସମ୍ଭବତଃ ଏହି ଉଦ୍ଧୃତିକୁ ଅନୁଶୀଳନ କଲେ ଜଣାଯାଏ, ଏଠାରେ ପାର୍ଥକ୍ୟ ଦେଖିବାପାଇଁ ରଙ୍ଗକୁ ପ୍ରତୀକ ଭାବରେ ନିଆଯାଉଥିଲା । ଦାସମାନଙ୍କର ଦେହର ବର୍ଣ୍ଣକୁ ଦର୍ଶାଇବା ସକାଶେ ଅନ୍ୟ ଠୋସ ବର୍ଣ୍ଣନା ଆଉ ଦେଖିବାକୁ ମିଳେନା । ଅନ୍ୟପକ୍ଷରେ, ଉଭୟ ସମୂହଙ୍କ ଭାଷା, କର୍ମକାଣ୍ଡ, ଦେବାଦେବୀ ଏବଂ ରୀତିନୀତି ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଇବା ପାଇଁ ଅନେକ ବର୍ଣ୍ଣନା ରହିଛି । ଉଦାହରଣ ସ୍ୱରୂପ, ପଣୀମାନେ ଗୋ-ସମ୍ପଦ ହରଣ କରୁଥିବାରୁ ସେମାନେ ଅନାଦରର ଯୋଗ୍ୟ । ଏଠାରେ ସ୍ମରଣଯୋଗ୍ୟ ଯେ, ‘ଆଭେସ୍ତା’ରେ ‘ଦାହ’ ଓ ‘ଦହ୍ୟୁ’ (ଋଗ୍‌ବେଦର ଦାସ ଓ ଦସ୍ୟୁ)ର ଅର୍ଥ ହେଲା ‘ଅନ୍ୟ ଲୋକ’ । ଋଗ୍‌ବେଦର ଦାସ ଅର୍ଥ ଚେପଟା ନାକ ଥିବା ଲୋକ, ଯିଏ ମୁହଁ ପାଇ ନାହିଁ, ଅର୍ଥାତ୍ ଭାଷା ଜାଣେ ନାହିଁ । ‘ଚେପଟାନକା’ ଓ ‘ମୁହଁହୀନ’ (ଭାଷାହୀନ) ଅର୍ଥରେ ଅଦଳବଦଳ କରି ଋଗ୍‌ବେଦରେ ‘ଦାସ’ ଶବ୍ଦର ବ୍ୟବହାର ଦେଖିବାକୁ ମିଳେ । ବୋଧହୁଏ ଋଗ୍‌ବେଦ ବିବିଧ ସମାଜକୁ ସେଗୁଡ଼ିକର ସାଂସ୍କୃତିକ ସ୍ୱରୂପ ଆଧାରରେ ଚିହ୍ନିତ କରୁଥିଲା ବୋଲି କହିବା ତର୍କସଙ୍ଗତ

ହେବ । ମାତ୍ର ଋଗ୍‌ବେଦର ସ୍ତୋତ୍ରଗୁଡ଼ିକର ରଚୟିତା ଯେହେତୁ ଆର୍ଯ୍ୟମାନେ, ତହିଁରେ ଆର୍ଯ୍ୟ ସମାଜକୁ ଅଧିକ ମହତ୍ତ୍ୱ ମିଳିବା ସ୍ୱାଭାବିକ । ଦାସମାନଙ୍କ ପ୍ରତି ଆର୍ଯ୍ୟମାନଙ୍କ ମନରେ ଉଭୟ ଭୟ ଓ ତିରସ୍କାର ଭାବ ରହିଥିଲା, କାରଣ ନିଜର ସମ୍ପତ୍ତି, ବିଶେଷକରି ଗୋଧନ ପାଇଁ ସେମାନେ ଈର୍ଷାର ପାତ୍ର ହେଲେ; ଉଭୟଙ୍କ ମଧ୍ୟରେ ବୈରଭାବ ସୃଷ୍ଟିହେଲା । ପରବର୍ତ୍ତୀ ସମୟରେ ଯାହାକୁ କର୍ତ୍ତୃତ୍ୱାଧୀନ କରାଗଲା, ତାକୁ 'ଦାସ' ବୋଲି କୁହାଗଲା । ମାତ୍ର ଅର୍ଥର ଏହି ପରିବର୍ତ୍ତନ ଆସିବାକୁ ଶହ ଶହ ବର୍ଷ ଲାଗିଗଲା । ଏହି ପ୍ରକ୍ରିୟାରେ ଶବ୍ଦଟିର ମୂଳ ଅର୍ଥ ବଦଳିଗଲା । ଶବ୍ଦଟିର ଅର୍ଥ ବଦଳିବା ସମାଜର ଅନ୍ୟ ଏକ ପରିବର୍ତ୍ତନକୁ ମଧ୍ୟ ଇଙ୍ଗିତ କରେ । ଉକ୍ତ ପରିବର୍ତ୍ତନ ହେଲା ପଶୁଚାରଣ ବୃତ୍ତିର କ୍ରମପତନ । ପଶୁଚାରକ ସମାଜ ବ୍ୟବସ୍ଥାରେ ଦାସମାନଙ୍କୁ ନିୟନ୍ତ୍ରଣରେ ରଖିବା କାଠିକର ପାଠ । ଦାସକୁ ଯଦି ପଶୁଚାରଣର ଦାୟିତ୍ୱ ଦିଆଯାଏ, ସେ ଚାରଣ କ୍ଷେତ୍ରରୁ ପଳାୟନ କରିପାରେ । ଆର୍ଯ୍ୟର ଅର୍ଥ ହେଲା ପ୍ରତିଷ୍ଠିତ ବ୍ୟକ୍ତି, ଯିଏ ପ୍ରାୟତଃ ଭାରତାର୍ଯ୍ୟ ଭାଷା କହେ । ଶବ୍ଦର ଏହି ଅର୍ଥ ପରେ ମଧ୍ୟ ଅବ୍ୟାହତ ରହିଲା ।

ଋଗ୍‌ବେଦର ରଚୟିତା ଆରମ୍ଭରେ ପଶୁଚାରକ ଥିଲେ, ମାତ୍ର ସେମାନେ କୃଷିକାର୍ଯ୍ୟ ମଧ୍ୟ କରୁଥିଲେ । ସାଧାରଣତଃ ଦେଶାନ୍ତରଣ କରି ଆସିଥିବା ପଶୁଚାରକ ସମୂହର ସ୍ଥାନୀୟ ସମୁଦାୟ ସହିତ ଗାଢ଼ ସମ୍ବନ୍ଧ ରହିଥାଏ । ଏହି ସ୍ଥିତିରେ ଉଭୟଙ୍କ ମଧ୍ୟରେ କଦାଚିତ କଳହ ହେବା ଏବଂ ପୁଣି ସୁସମ୍ପର୍କ ଗଢ଼ିଉଠିବା ବିଚିତ୍ର ନୁହେଁ । ତେଣୁ କେତେକ ଦାସ ସର୍ଦ୍ଦାରଙ୍କୁ ଶତ୍ରୁ ରୂପରେ ମଧ୍ୟ ଦର୍ଶାଯାଇଛି । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେବ ଦାସ ସର୍ଦ୍ଦାର ସମ୍ବର । ସେତେବେଳେ ଧନାଢ଼୍ୟ ଦାସର ଗୋଧନ ହରଣ କରବା ଏକ ଯଥାର୍ଥ ବୃତ୍ତି ବୋଲି କୁହାଯାଉଥିଲା । ପୁଣି 'ବ୍ରିବୁ' ଏବଂ 'ବଲବୁଥ' ଆଦି କେତେକ ଦାସଙ୍କୁ ନିଜ ଅନୁକୂଳ ଘୋଷଣା କରାଗଲା, କାରଣ ସେମାନେ ବୈଦିକ ପୁରୋହିତ ଦ୍ୱାରା କର୍ମକାଣ୍ଡ ଆୟୋଜନ କରାଇଥିଲେ । ସମ୍ଭବତଃ କେତେକ ପଶୁଚାରକ ସର୍ଦ୍ଦାର ସ୍ଥାନୀୟ କୃଷିଜୀବୀମାନଙ୍କର ସୁରକ୍ଷାଦାତାର ଭୂମିକା ନିର୍ବାହ କଲେ, କାରଣ ହରପ୍ପା ପ୍ରଶାସନ ଭୁଶୁଡ଼ି ପଡ଼ିବା ପରେ ଶୃଙ୍ଖଳାର ଅଭାବ ରହିଥିଲା । ଏହାଫଳରେ, ଭାରତାର୍ଯ୍ୟ ପଶୁଚାରକ ସର୍ଦ୍ଦାରମାନଙ୍କର ପ୍ରଭୁତ କର୍ତ୍ତୃତ୍ୱ ଲାଭ ହେଲା; ସେମାନେ ନିଜ ଭାଷାକୁ ବିସ୍ତାରିତ କରିବାକୁ ଅବସର ପାଇଲେ; କର୍ମକାଣ୍ଡର ପ୍ରାଧାନ୍ୟ ମଧ୍ୟ ବୃଦ୍ଧି ପାଇଲା । ଏହା ସେମାନଙ୍କ ଭାଷାକୁ ସମ୍ମାନ ପ୍ରଦାନ କଲା । ପଶୁଚାରକ ଏବଂ କୃଷିଜୀବୀ ମଧ୍ୟରେ ସାଧାରଣତଃ ଏକ ଅବିଚ୍ଛେଦ୍ୟ ସମ୍ପର୍କ ଦେଖିବାକୁ ମିଳେ । କୃଷକ ଫସଲ ଅମଳ ପରେ ପଶୁଚାରକର ପଶୁବଳକୁ କ୍ଷେତରେ ପାଳ ଚରିବାକୁ ଆମନ୍ତ୍ରଣ କରେ, ଯାହାଫଳରେ କି ବିଲରେ ଗୋବର ପଡ଼େ । କୃଷିଜାତ ବସ୍ତୁର ବିନିମୟ ପାଇଁ ଏହି ପ୍ରକ୍ରିୟାରେ ପଶୁଚାରକମାନେ ମାଧ୍ୟମ ହୁଅନ୍ତି । ଏହି ଆଧାରରେ

ଦହିଁଙ୍କ ମଧ୍ୟରେ ସମ୍ବନ୍ଧ ବଢ଼େ । କେବେ କେବେ ଏହି ସମ୍ବନ୍ଧ 'ଅତି' ସ୍ତରକୁ ଯାଏ; ପ୍ରତିଷ୍ଠିତ ପଶୁଚାରକ ସର୍ଦ୍ଦାରମାନେ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ର ଏବଂ କୃଷିଜମି ଉପରେ ନିଜର କର୍ତ୍ତୃତ୍ୱ ଜାହିର କରନ୍ତି । ଯେତେବେଳେ ବ୍ୟକ୍ତି ସମ୍ପଦା ଉପରେ ନିୟନ୍ତ୍ରଣ ଏବଂ ପ୍ରତିଷ୍ଠା ହାସଲ କରେ, ତା'ର ଏହି ପରିଚୟ ତୁଳନାରେ ଅନ୍ୟ ସବୁ ପରିଚୟ ଗୌଣ ହୋଇପଡ଼େ ।

ବୈଦିକ ସଂସ୍କୃତରେ ଯେଉଁ ଭାଷାଗତ ପରିବର୍ତ୍ତନ ଆସିଲା ତହିଁରେ ଦୁଇପକ୍ଷର ସମ୍ବନ୍ଧ ପ୍ରତିବିମ୍ବିତ ହେଲା । ଭାରତାର୍ଯ୍ୟ ଭାଷାର ପ୍ରଚଳନ ହେଲା; ତାହା ଗୃହୀତ ହେଲା । ଫଳତଃ ଯେଉଁମାନେ ଏହି ଭାଷା ବ୍ୟବହାର କଲେ ବା ତାକୁ ଗ୍ରହଣ କରିନେଲେ, ସେମାନଙ୍କୁ କିଛି ବିଶେଷ ସୁବିଧା ପ୍ରାପ୍ତ ହେଲା । ଉଦାହରଣ ସ୍ୱରୂପ, କର୍ତ୍ତୃତ୍ୱ ମିଳିଲା; ପ୍ରାଦ୍ୟୌଗିକୀ ପରିବର୍ତ୍ତନବେଳେ ସୁବିଧା ହାସଲ ହେଲା ତଥା କର୍ମକାଣ୍ଡ ସମ୍ପାଦନ ପାଇଁ ସୁଯୋଗ ମିଳିଲା । ତା' ସହିତ ଏକଥା ମଧ୍ୟ ସତ ଯେ, ବୈଦିକ ସଂସ୍କୃତରେ ମଧ୍ୟ ପରିବର୍ତ୍ତନ ଅନୁଭୂତ ହେଲା । ଦ୍ରାବିଡ଼ ଓ ଅଷ୍ଟ୍ରୋଏସୀୟ (ଯଥା- ମୁଣ୍ଡା) ଉପାଦାନ ଆସି ବୈଦିକ ସଂସ୍କୃତରେ ମିଶିଲେ । ଭିନ୍ନ ଭିନ୍ନ ସମୁଦାୟ ମଧ୍ୟରେ ଭାବ ବିନିମୟ ପାଇଁ ଏକ ଦ୍ୱିଭାଷୀ କାଳ ରହିଥିବ ବୋଲି ମତପ୍ରକାଶ ପାଏ । ଅଣଭାରତାର୍ଯ୍ୟ ଭାଷାଗୁଡ଼ିକୁ ସମ୍ଭବତଃ ଅର୍ନ୍ତୋସ୍ତରୀୟ ଭାଷା (substratum languages)ର ମାନ୍ୟତା ମିଳିଥିବ । ଅର୍ଥାତ୍ ଉକ୍ତ ଭାଷାଗୁଡ଼ିକରୁ ବିଭିନ୍ନ ଉପାଦାନ ଯାଇ ଭାରତାର୍ଯ୍ୟ ଭାଷାରେ ସମାହିତ ହେଲେ । ବୈଦିକ ସାହିତ୍ୟ ହେଲା କର୍ତ୍ତୃତ୍ୱଧାରୀ ସମୁଦାୟର ଭାଷ୍ୟ । ମାତ୍ର ତହିଁରେ ଅନ୍ୟମାନଙ୍କର ଉପସ୍ଥିତି ମଧ୍ୟ ରହିଛି । ଭାରତାର୍ଯ୍ୟ ଭାଷାରେ ଏହି ଭାଷାଗତ ଉପାଦାନମାନ ଦୃଷ୍ଟିଗୋଚର ହୁଏ । ହେଲେ ତାହା ସଜାତ ପ୍ରାଚୀନ ଇରାନୀୟ ଭାଷାରେ ପରିଲକ୍ଷିତ ହୁଏ ନାହିଁ ।

ଦେଶାନ୍ତରଣର ସାକ୍ଷ୍ୟ-ପ୍ରମାଣ ବିବିଧ ରୂପରେ ଦୃଶ୍ୟମାନ ହୁଏ । ସବୁଠାରୁ ସୁସ୍ପଷ୍ଟ ସାକ୍ଷ୍ୟ ମିଳେ ଆଭେସ୍ତାରେ । ତା' ଅନୁଯାୟୀ, ଆଇରିଆ (airiia)ମାନେ ଏକ ସୁଦୂରବର୍ତ୍ତୀ ମୂଳ ଦେଶକୁ ଦେଶାନ୍ତରଣ କଲେ । ଯେଉଁ ସ୍ଥାନଗୁଡ଼ିକ ଦେଇ ସେମାନେ ଦେଶାନ୍ତରଣ କରିଥିଲେ, ତା'ର ମଧ୍ୟ ଉଲ୍ଲେଖ ରହିଛି । ଭୌଗୋଳିକ ଦିଗରୁ ଜଣାପଡ଼େ ଦେଶାନ୍ତରଣ ମଧ୍ୟ-ଏସିଆରୁ ଉତ୍ତର ଭାରତକୁ ହେଲା । ଉଲ୍ଲିଖିତ ସ୍ଥାନଗୁଡ଼ିକ ମଧ୍ୟରେ ରହିଛି 'ହପ୍ତହିନ୍ଦୁ' । ଅବଶ୍ୟ ଆଭେସ୍ତାର ଏହି ପରିଚ୍ଛେଦଟି ପରବର୍ତ୍ତୀ କାଳର ରଚନା । ତା' ସତ୍ତ୍ୱେ ଏକ ପୂର୍ବବର୍ତ୍ତୀ ଦେଶାନ୍ତରଣର କାହାଣୀ ଏବଂ ତା'ର ଭୂଗୋଳକୁ ନେଇ କୌଣସି ସନ୍ଦେହର ଅବକାଶ ରହେ ନାହିଁ । 'ଆଭେସ୍ତା'ରେ ଆଫଗାନିସ୍ଥାନର ଭୌଗୋଳିକ ସ୍ଥାନ ଭାବରେ 'ହରକ୍ଷବତୀ' (ସରସ୍ୱତୀ) ଓ 'ହରୟୁ' (ସରଜୁ)ର ଉଲ୍ଲେଖ ରହିଛି । ଆହୁରି ପୂର୍ବଦିଗକୁ ଆସି ସେସବୁ ସ୍ଥାନ ଉତ୍ତର ଭାରତରେ ଥିବାର କୁହାଯାଇଛି । ଦୁର୍ବସ ଓ ଭରତ ପରି

ମହତ୍ତ୍ୱପୂର୍ଣ୍ଣ କୁଳ ଦେଶାନ୍ତରଣ କରି ପାର୍ବତ୍ୟାଞ୍ଚଳରୁ ସମତଳ କ୍ଷେତ୍ରକୁ ଅର୍ଥାତ୍ ରାବୀ କ୍ଷେତ୍ରରୁ ବ୍ୟାସ କ୍ଷେତ୍ରକୁ ପ୍ରବେଶ କଲେ ବୋଲି ଉଲ୍ଲେଖ ରହିଛି ।

ଦେଶାନ୍ତରଣର ଅନ୍ୟ ଏକ ସାକ୍ଷ୍ୟ ହେଲା ସ୍ଥାନୀୟ ଗଛଲତା ଓ ପଶୁପକ୍ଷୀଙ୍କୁ ଚିହ୍ନି ନ ପାରିବା । ସ୍ଥାନୀୟ ଲୋକଙ୍କ ପାଇଁ ଏଗୁଡ଼ିକୁ ଚିହ୍ନିବା କଠିନ ହୁଏ ନାହିଁ । ଉଦାହରଣ ସ୍ୱରୂପ, ଆରମ୍ଭରେ ଋଗ୍‌ବେଦର ଲୋକେ ଧାନ-ଚାଉଳ ସମ୍ବନ୍ଧରେ କିଛି ଜାଣି ନ ଥିଲେ, ଯଦିଓ ହରପ୍ପାର କେତେକ ସ୍ଥଳୀରୁ ଚାଉଳର ଅବଶେଷ ପ୍ରାପ୍ତ ହୋଇଛି । ବନ୍ୟପଶୁଙ୍କ ମଧ୍ୟରେ ବାଘ ଓ ଗଣ୍ଡାର ସହିତ ପରିଚୟ ହେବା ଆଗରୁ ସିଂହ ସହିତ ମଣିଷର ପରିଚୟ ହୋଇସାରିଥିଲା । ମାତ୍ର ହରପ୍ପାର ମୋହରମାନଙ୍କରେ ବାଘ ଓ ଗଣ୍ଡାରର ଚିତ୍ର ରହିଛି ଏବଂ ଋଗ୍‌ବେଦରେ ବାଘ ଓ ଗଣ୍ଡାରର ଉଲ୍ଲେଖ ନାହିଁ । ଏଥିରୁ ଅନୁମିତ ହୁଏ ଯେ, ଋଗ୍‌ବେଦର ରଚୟିତାଙ୍କର ଆରମ୍ଭିକ ନିବାସସ୍ଥଳୀ ଆହୁରି ପଶ୍ଚିମ ଓ ଉତ୍ତର ଦିଗକୁ ରହିଥିଲା । ଋଗ୍‌ବେଦରେ ହାତୀକୁ ଏକ ବିଚିତ୍ର ପ୍ରାଣୀ ରୂପରେ ଦେଖାଯାଇଛି । ତାକୁ ହାତ ଥିବା ଜନ୍ତୁ, ମୃଗହସ୍ତିନ ରୂପରେ ବର୍ଣ୍ଣନା କରାଯାଇଛି ।

ଘୋଡ଼ା ସମ୍ପର୍କରେ ଯେଉଁ ବିବରଣ ରହିଛି, ତା' ପଛରେ ଗୋଟାଏ ଉଦ୍ଦେଶ୍ୟ ହେଲା, ଘୋଡ଼ାକୁ ପରିଚିତ କରିବା । ଅନ୍ୟ ଉଦ୍ଦେଶ୍ୟ ହେଲା, ଘୋଡ଼ା ସମ୍ବନ୍ଧିତ ବିଭିନ୍ନ କ୍ରିୟାକଳାପ ସମ୍ପର୍କରେ ପାଠକକୁ ଅବଗତ କରିବା । ଏହାର ଅର୍ଥ ହେଲା, ଭାରତକୁ ସେମାନେ ଘୋଡ଼ା ସହିତ ଆସିଥିଲେ ଏବଂ ଘୋଡ଼ା ସମ୍ବନ୍ଧରେ ସେମାନଙ୍କୁ ଅନେକ କଥା ଜଣାଥିଲା । ଘୋଡ଼ା ପାଇଁ ପର୍ଯ୍ୟାପ୍ତ ମାତ୍ରାରେ ଚାରଣଭୂମି ଥିଲା । ସେଥିପାଇଁ ଋଗ୍‌ବେଦରେ ଘୋଡ଼ାଦାନାର ଉଲ୍ଲେଖ ନାହିଁ । ଅନେକ ପଶୁହରଣ ଅଭିଯାନର ଉଦ୍ଧରଣ ରହିଛି । ଦେଶାନ୍ତରଣକାରୀ ପଶୁଚାରକମାନଙ୍କର ଗମନାଗମନ ସମ୍ବନ୍ଧରେ ସୂଚନା ରହିଛି; ଗୋଧନ ବୃଦ୍ଧିର ମାର୍ଗ ଭାବରେ ପଶୁହରଣ କଥା ରହିଛି; କୁଳ (clans) ମାନେ କେବଳ ଦାସମାନଙ୍କୁ ଲୁଣ୍ଠନ କରୁ ନ ଥିଲେ, ଚାରଣଭୂମି ଏବଂ ଗୃହୋପଯୋଗୀ ଭୂମି ପାଇଁ ନିଜ ନିଜ ମଧ୍ୟରେ କଳହ ମଧ୍ୟ କରୁଥିଲେ । ପଶୁଚାରଣ ପାଇଁ ଗୋଟାଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପ୍ରକ୍ରିୟାରେ ସେମାନେ ବସତି ସ୍ଥାପନ ନିମନ୍ତେ ଉପଯୁକ୍ତ ସ୍ଥାନ ମଧ୍ୟ ଖୋଜୁଥିଲେ । ସମ୍ଭବତଃ ଏହି ସ୍ଥାନ ଖୋଲା ଜାଗା ନ ଥିଲା । ପ୍ରଥମରୁ ବସତି ସ୍ଥାପିତ ହୋଇଥିବା ସ୍ଥାନରେ ସେମାନେ ଅବସ୍ଥାନ କଲେ ଖାଦ୍ୟପଦାର୍ଥ ଏବଂ ଅନ୍ୟାନ୍ୟ ଆବଶ୍ୟକ ବସ୍ତୁ ମିଳିବାର ସମ୍ଭାବନା ଥିଲା । ସେହି ପ୍ରକ୍ରିୟାରେ ସ୍ଥାୟୀ କୃଷିରେ ନିୟୋଜିତ ଥିବା ସ୍ଥାନୀୟ ସମୂହ ଏବଂ ଦେଶାନ୍ତରଣ କରିଥିବା ପଶୁଚାରକ ସମୂହ ମଧ୍ୟରେ ବସ୍ତୁ ବିନିମୟର ଆବଶ୍ୟକତା ପଡ଼ିଥିବ ବୋଲି ଅନୁମାନ କରାଯାଏ ।

ଋଗ୍‌ବେଦରେ ଅନେକ କୁଳର ଉଲ୍ଲେଖ ରହିଛି । ବିଶେଷକରି ଆଦିବାସୀମାନଙ୍କ ମଧ୍ୟରେ ହେଉଥିବା ଅନ୍ତଃକଳହ ପରିପ୍ରେକ୍ଷୀରେ ଏହି ଉଲ୍ଲେଖ ଦେଖିବାକୁ ମିଳେ । ଗୋଟାଏ ସ୍ଥାନରେ ଭାରତ କୁଳର ରାଜା ବା ସର୍ଦ୍ଦାର (ମୁଖିଆ) ଭାବରେ ସୁଦାସଙ୍କର ଉଦ୍ଧରଣ ରହିଛି । ଭାରତ କୁଳ ପଶ୍ଚିମ ପଞ୍ଜାବରେ ବସତି ସ୍ଥାପନ କରିଥିଲେ ଏବଂ ସୁଦାସଙ୍କର ଉଭୟ ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ସହ ସମ୍ପର୍କ ଥିଲା । ଏମାନେ ଥିଲେ ଭରତ ରାଜାଙ୍କର କୁଳପୁରୋହିତ । ରାଜାଙ୍କର ଯୁଦ୍ଧ ଅଭିଯାନକୁ ସଫଳ କରିବାର ସେମାନେ ଦାୟିତ୍ୱ ନେଇଥିଲେ । ରାବୀ ନଦୀ କୂଳରେ ସୁଦାସଙ୍କ ଉପରେ ଦଶଟି କୁଳ ସଂଘବଦ୍ଧ ଭାବରେ ଆକ୍ରମଣ କଲେ । ତା' ସତ୍ତ୍ୱେ ସୁଦାସ ବିଜୟୀ ହେଲେ । ଏହି ଧରଣର ସଂଘର୍ଷ ପଛରେ ପ୍ରମୁଖ କାରଣ ଥିଲା ପଶୁ ହରଣ, ଚାରଣଭୂମି ଓ ନଦୀ ଜଳ ଉପରେ ନିୟନ୍ତ୍ରଣ । ପରିବାର ବା କୁଳ ଅଧୀନରେ ନିଜ ନିଜର ପଶୁବଳ ଥିଲେ । ମାତ୍ର ଚାରଣଭୂମି ଥିଲା ସାମୁଦାୟିକ । ଲୁଣ୍ଠନ ମାଧ୍ୟମରେ ସ୍ୱ-ପଶୁବଳର ଶୀଘ୍ର ବୃଦ୍ଧି ହେବାର ସମ୍ଭାବନା ଥିଲା । ବିବାଦ, ଆକ୍ରମଣ ଓ ଲୁଣ୍ଠନ ନିଜକୁ ଆର୍ଯ୍ୟ ଦାବି କରୁଥିବା କୁଳମାନଙ୍କ ମଧ୍ୟରେ ଦେଖିବାକୁ ମିଳୁଥିଲା; ବିବାଦ ଏମାନଙ୍କର ଓ ଅନ୍ୟମାନଙ୍କ ମଧ୍ୟରେ ବି ରହିଥିଲା ।

ଗାଙ୍ଗେୟ କ୍ଷେତ୍ର ଆଡ଼କୁ ଦେଶାନ୍ତରଣ ଜାରି ରହିଲା । ବ୍ରାହ୍ମଣରେ ମଧ୍ୟ ଏହାର ଅନେକ ଉଲ୍ଲେଖ ରହିଛି । ବିଦେଘ ମାଧବ ନାମରେ ଜଣେ କୁଳ ସର୍ଦ୍ଦାର ନିଜ କୁଳ ସହିତ ହିମାଳୟର ପାଦଦେଶରେ ପୂର୍ବ ଆଡ଼କୁ ଯାଇ ଗଣ୍ଡକରେ ପହଞ୍ଚିଥିଲେ । ନଦୀ ଆରପାରିର କ୍ଷେତ୍ରରେ ବସତି ସ୍ଥାପନ କରିବା ପୂର୍ବରୁ ତାଙ୍କୁ ଅଗ୍ନିସଂଯୋଗ କରି ଜମି ସଫା କରିବାକୁ ପଡ଼ିଥିଲା । ପାଞ୍ଚାଳମାନେ ପ୍ରଥମେ ନିଜେ ସଂଘବଦ୍ଧ ହେଲେ ଏବଂ ତା'ପରେ କୁରୁମାନଙ୍କ ସହିତ ମିଶି ଶକ୍ତିଶାଳୀ କୁରୁ-ପାଞ୍ଚାଳ ସଂଘ ପ୍ରତିଷ୍ଠା କଲେ । ପଶ୍ଚିମ ଗାଙ୍ଗେୟ ସମତଳର ଏକ ଅଞ୍ଚଳରେ ଏହି ସଂଘର ନିୟନ୍ତ୍ରଣ ରହିଥିଲା । ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀ ପର୍ଯ୍ୟନ୍ତ ସେମାନେ ମିଳିତ ହୋଇ ମାସ ମାସ ଧରି ସୈନିକ ଅଭିଯାନରେ ଯାଉଥିଲେ ବୋଲି ଉଲ୍ଲେଖ ରହିଛି । ମହାଭାରତରେ ମଧ୍ୟ କୁରୁ-ପାଞ୍ଚାଳମାନଙ୍କର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଅବଶ୍ୟ ଋଗ୍‌ବେଦରେ ପଶ୍ଚିମ ଗାଙ୍ଗେୟ ସମତଳ କ୍ଷେତ୍ର ବହୁତ ମହତ୍ତ୍ୱପୂର୍ଣ୍ଣ ନ ଥିଲା । ମାତ୍ର ପରେ ପଞ୍ଜାବରୁ ଯାଇ କେନ୍ଦ୍ରଭୂମି ପଶ୍ଚିମ ଗାଙ୍ଗେୟ କ୍ଷେତ୍ର ଅନ୍ତର୍ଗତ କୁରୁ-ପାଞ୍ଚାଳ ଅଞ୍ଚଳ ହେଲା । ସେହି ସମୟରେ ଯେଉଁ ବିସ୍ତୃତ ଆଡ଼ମ୍ବରପୂର୍ଣ୍ଣ ହୋମଯଜ୍ଞ ଆଦି କର୍ମକାଣ୍ଡ ଆୟୋଜନ ହେଲା, ତା'ର କୁରୁ-ପାଞ୍ଚାଳମାନେ ପୃଷ୍ଠପୋଷକତା କଲେ । ଏହି ପ୍ରକ୍ରିୟାରେ ସେମାନେ ଏକ ନୂଆ ଧରଣର ରାଜନୈତିକ ସତ୍ତା ଜାହିର କରିବାକୁ ଲାଗିଲେ । କଥିତଅଛି ଯେ, ସବୁଠାରୁ ଭଲ ସଂସ୍କୃତ କୁରୁ-ପାଞ୍ଚାଳ ଅଞ୍ଚଳରେ ପ୍ରଚଳିତ ଥିଲା । ପରବର୍ତ୍ତୀ ସମୟରେ ଉତ୍ତର-ପଶ୍ଚିମ ଏବଂ ପୂର୍ବାଞ୍ଚଳକୁ ମ୍ଳେଚ୍ଛମାନଙ୍କ ଦେଶ ବୋଲି କୁହାଗଲା । ପ୍ରଥମେ ମ୍ଳେଚ୍ଛର

ଅର୍ଥ ଥିଲା ସଂସ୍କୃତକୁ ଭଲଭାବେ କହିପାରୁ ନ ଥିବା ସମୂହ । ପରେ ଜାତି ବ୍ୟବସ୍ଥାର ବାହାରେ ଥିବା ଏବଂ ସେହି କାରଣରୁ ଅଶୁଦ୍ଧ ମନେ କରାଯାଉଥିବା ଲୋକଙ୍କୁ ମ୍ଳେଚ୍ଛ କୁହାଗଲା । ସଂସ୍କୃତିର ଭୌଗୋଳିକ କେନ୍ଦ୍ର ପରିବର୍ତ୍ତନର ଏହା ହେଲା ଏକ ଆଦ୍ୟ ଉଦାହରଣ । ସମ୍ଭବତଃ ଖ୍ରୀ.ପୂ. ଅଷ୍ଟମ-ସପ୍ତମ ଶତାବ୍ଦୀରେ ଏହି ପରିବର୍ତ୍ତନ ଦେଖିବାକୁ ମିଳିଥିଲା । ଆର୍ଯ୍ୟ ଶବ୍ଦର ଅର୍ଥରେ ମଧ୍ୟ ଏହି ସମୟରେ ପରିବର୍ତ୍ତନ ହୋଇଥିବ ବୋଲି ଅନୁମାନ କରାଯାଏ । କାଳକ୍ରମେ ଅଧିକରୁ ଅଧିକ ମାତ୍ରାରେ ଅଣ-ଆର୍ଯ୍ୟ (ଅନାର୍ଯ୍ୟ) ତତ୍ତ୍ୱ ଏଥିରେ ସମାବିଷ୍ଟ ହେବାରେ ଲାଗିଲା । ପୁଣି ଗାଙ୍ଗେୟ ସମତଳର ନୂତନ ପ୍ରସ୍ତର ଓ ତାମ୍ରପ୍ରସ୍ତର ସଂସ୍କୃତିର ନିର୍ମାତାମାନଙ୍କ ସହ ଆର୍ଯ୍ୟ ଭାଷାଭାଷୀ ଲୋକଙ୍କର ସମ୍ବନ୍ଧ ବୃଦ୍ଧି ପାଉଥିଲା । ଏହିସବୁ ପରିବର୍ତ୍ତନ ଉତ୍ତର-ବୈଦିକ ସାହିତ୍ୟର ରଚନାରେ ପ୍ରତିବିମ୍ବିତ ହେଲା ।

କିଛିକାଳ ପର୍ଯ୍ୟନ୍ତ ଆର୍ଯ୍ୟ ଭାଷାଭାଷୀମାନେ ଉଭୟ କୃଷି ଓ ପଶୁଚାରଣ କରୁଥିଲେ । ଗାଈ ଥିଲା ମୂଲ୍ୟର ପରିମାପକ । ଅନେକ ଭାଷାଗତ ଅଭିବ୍ୟକ୍ତିର ସମ୍ବନ୍ଧ ଥିଲା ଗୋଧନ ସହିତ । 'ଗୋଭିଷ୍ଟି'ର ଶାବ୍ଦିକ ଅର୍ଥ ହେଲା ଗାଈର ଅନୁସନ୍ଧାନ । ମାତ୍ର ତା'ର ବ୍ୟବହାରିକ ଅର୍ଥ ହେଲା 'ଲଢ଼ିବା' । ଅର୍ଥାତ୍ ପଶୁ ହରଣକୁ ନେଇ ସଂଘର୍ଷ ହେବା ଅତି ସାଧାରଣ କଥା ଥିଲା । ବୋଧହୁଏ ଗାଈ ଥିଲା ପ୍ରତୀକ ପଶୁ; ତେଣୁ ପୂଜନୀୟ । ବିଶିଷ୍ଟ ଅବସରମାନଙ୍କରେ ଗୋମାଂସ ଭକ୍ଷଣର ପ୍ରଚଳନ ଥିଲା । କର୍ମକାଣ୍ଡ ସମାପନବେଳେ ତଥା ଅତିଥି-ଅଭ୍ୟାଗତଙ୍କୁ ଆତିଥ୍ୟ ପ୍ରଦାନବେଳେ ଗୋମାଂସ ଭକ୍ଷଣ ବର୍ଜିତ ନ ଥିଲା । ଅନ୍ୟ ପଶୁପାଳକ ସଂସ୍କୃତିରେ ମଧ୍ୟ ମାଂସ ଭକ୍ଷଣ ଏକ ସାଧାରଣ ପ୍ରଥା ଅଟେ । ଗାଈର ଆର୍ଥିକ ମହତ୍ତ୍ୱ ଏତେ ଅଧିକ ଯେ ଦିନକୁଦିନ ତା'ର ପୂଜନୀୟତା ବୃଦ୍ଧି ପାଇଲା । ବୋଧହୁଏ ଏହି କାରଣରୁ ଗାଈକୁ ପବିତ୍ର ଓ ନହନ୍ୟ ମନେକରାଗଲା । ଅବଶ୍ୟ କାହାକୁ ପବିତ୍ର ଗଣାଯିବା ପଛରେ ସର୍ବଦା କୌଣସି ଯୁକ୍ତିସଙ୍ଗତ ତର୍କ ଥିବ ବୋଲି ମନେକରାଯାଇ ନ ପାରେ । ଏହି ପ୍ରଶ୍ନର ସମ୍ପର୍କ ପଶୁବଳ ବୃଦ୍ଧି, ଚାରଣ କ୍ଷେତ୍ର ଏବଂ ପର୍ଯ୍ୟାବରଣ ଜନିତ ପରିବର୍ତ୍ତନ ସହିତ ରହିଥିଲା । ଶେଷରେ ଗୋମାଂସ-ଭକ୍ଷଣ ନ କରିବା ସମାଜରେ ଏକ ପ୍ରତିଷ୍ଠାର ପ୍ରଶ୍ନରେ ପରିଣତ ହେଲା । ବିଭିନ୍ନ ଧାର୍ମିକ ଆଦେଶ ବଳରେ ଗୋମାଂସ ଭକ୍ଷଣକୁ ନିରୁତ୍ସାହିତ କରାଗଲା । ସାଧାରଣତଃ ଉଚ୍ଚ ଜାତି ମଧ୍ୟରେ ଗୋମାଂସ ଭକ୍ଷଣ ନିଷେଧ ଥିଲା । ଅନ୍ୟ ପଶୁମାନଙ୍କ ମଧ୍ୟରେ ଘୋଡ଼ାର ସ୍ଥାନ ମହତ୍ତ୍ୱପୂର୍ଣ୍ଣ ଥିଲା । ଗମନାଗମନ ପାଇଁ ଓ ଯୁଦ୍ଧରେ ଗତିଶୀଳତା ପାଇଁ ଘୋଡ଼ାର ଅତ୍ୟନ୍ତ ଆବଶ୍ୟକତା ରହୁଥିଲା । ପୁରାଣଶାସ୍ତ୍ରରେ ଘୋଡ଼ା କେବଳ ମଣିଷର ରଥ ଟାଣୁ ନ ଥିଲା, ଦେବତାମାନଙ୍କର ରଥକୁ ମଧ୍ୟ ଟାଣୁଥିଲା । ଯଦି ଚାରଣ କ୍ଷେତ୍ର ବିସ୍ତୃତ, ତେବେ ପଶୁଚରାଳି ଘୋଡ଼ା ପିଠିରେ ବସି ସହଜରେ ପଶୁ ଚରାଇ ପାରୁଥିଲା ।

• ପଶୁଚାରଣ ଯୋଗୁଁ କୃଷିକୁ ଉପେକ୍ଷା କରାଯାଉ ନ ଥିଲା । ପୁରାତାତ୍ତ୍ୱିକ ଖନନରୁ ସପ୍ତସିନ୍ଧୁରେ ବିଭିନ୍ନ ସମାଜର ଅବସ୍ଥିତି ରହିଥିବା କଥା ଜଣାପଡ଼େ । ତନ୍ମଧ୍ୟରୁ କେତେକ ହେଲେ : ଶ୍ମଶାନସ୍ଥଳୀ H ସଂସ୍କୃତି, ଗାନ୍ଧାର ଶ୍ମଶାନ ସଂସ୍କୃତି ଏବଂ ଚିତ୍ରିତ ମୃଦ୍ଭାଣ୍ଡ ସଂସ୍କୃତି (Ochre Colour Pottery Culture) । ବୋଧହୁଏ ଋଗ୍‌ବେଦର ରଚୟିତାମାନେ ଏଗୁଡ଼ିକରୁ କେତେକ ସଂସ୍କୃତି ସହିତ ପରିଚିତ ଥିଲେ । ତାମ୍ରପାଷାଣ ସଂସ୍କୃତିରେ କୃଷିର ପ୍ରଚଳନ ରହିଥିଲା । ଏହାଫଳରେ ଉଭୟ କୃଷକ ଓ ପଶୁପାଳକ ସମାଜରେ ରହିଥିବେ । ସେମାନଙ୍କ ମଧ୍ୟରୁ କେତେକ ଆଗରୁ ଥିବେ ଏବଂ ଆଉ କେତେକ ନୂଆ ହୋଇ ଆସିଥିବେ । ମାତ୍ର କୃଷିର ବିସ୍ତାର ନିମିତ୍ତ ଜମି ସଫା କରିବା ଆବଶ୍ୟକ ହୋଇପଡ଼ିଲା । ଜମି ସଫା କରିବାପାଇଁ ନିଆଁର ସାହାଯ୍ୟ ନିଆଗଲା । ବନ ପୋଡ଼ିର ଅନେକ ଉଲ୍ଲେଖ ରହିଛି । ପ୍ରଥମେ ପୋଡୁଚାଷ ପାଇଁ ବନପୋଡ଼ି କରାଯାଇଥିବ । ଲୁହା କୁରାଢ଼ିର ପ୍ରୟୋଗ ଆରମ୍ଭ ହେଲାପରେ ପୋଡ଼ିବାଠାରୁ ଜଙ୍ଗଲ କାଟିବାକୁ ଅଗ୍ରାଧିକାର ମିଳିଥିବ । ପୋଡ଼ିଲେ ଆବଶ୍ୟକତାଠାରୁ ଅଧିକ ବନ ପୋଡ଼ିଯିବାର ଆଶଙ୍କା ରହୁଥିଲା । କୁରାଢ଼ିରେ ଜଙ୍ଗଲ କାଟିରେ ଆବଶ୍ୟକତା ଅନୁସାରେ ଜଙ୍ଗଲ ସଫା ହେଉଥିଲା । ପ୍ରାକ୍-ହରପ୍ପା ସମୟରୁ ଲଙ୍ଗଳର ବ୍ୟବହାର ରହିଥିଲା । ‘ଲଙ୍ଗଳ’ ଶବ୍ଦର ଅନେକ ଉଲ୍ଲେଖ ରହିଛି । ଏହା ମୂଳତଃ ମୁଣ୍ଡା ଆଦିବାସୀମାନଙ୍କର ଶବ୍ଦ । ଅର୍ଥାତ୍ ଏକ ଅଣ-ଆର୍ଯ୍ୟ ଭାଷାର ଏହା ଶବ୍ଦ ଅଟେ । ଭାରତାର୍ଯ୍ୟ ଭାଷାଭାଷୀ ଲୋକ ଯେତେ ମାତ୍ରାରେ କୃଷିଭିତ୍ତିକ ଶବ୍ଦ ଅଣ-ଆର୍ଯ୍ୟ ଭାଷାମାନଙ୍କରୁ ନେଇଛନ୍ତି, ତହିଁରୁ ସିଦ୍ଧ ହୁଏ ଯେ ହଳଲଙ୍ଗଳ ଚାଷ ଭାରତରେ ପ୍ରଥମରୁ ବସତି ସ୍ଥାପନ କରି ରହିଆସିଥିବା ଲୋକଙ୍କ ମଧ୍ୟରେ ଅତିପରିଚିତ ଥିଲା ।

ଅନେକ କୃଷିଜାତ ଦ୍ରବ୍ୟର ଉଲ୍ଲେଖ ଦେଖିବାକୁ ମିଳେ । ଏପରିକି ଯଜ୍ଞରେ ମଧ୍ୟ ସେଗୁଡ଼ିକୁ ବଳି ଦିଆଯାଉଥିଲା । ଜମି କର୍ଷଣ ପାଇଁ ହଳରେ କେବେ କେବେ ଛଅ ଛଅଟି, ଆଠ ଆଠଟି ବଳଦ ଯୋଚାଯାଉଥିଲା । ହଳକୁ ଶକ୍ତି ଓ ଉର୍ବରତାର ପ୍ରତୀକ ମନେ କରାଯାଉଥିଲା । ନିମ୍ନରେ ପ୍ରଦତ୍ତ ଉଦାହରଣ ପରି ଏହା ଅନେକ ସ୍ତୋତ୍ରରୁ ପ୍ରତୀତ ହୋଇଥାଏ ।

‘‘ବର୍ଚ୍ଛାର ମୁନ ପରି ଧାରୁଆ, ଚିକ୍କଣ ମୁଠି ଥିବା ସୁଶାୟିତ ଲଙ୍ଗଳ ଗାଈ, ମେଣ୍ଢା ଓ ଗତିମାନ ରଥର ସଦୃଶ ଏବଂ ଭରାଯୌବନରେ ଯୁବତୀ ପରି ପ୍ରକଟ ହେଉ । ଇନ୍ଦ୍ର ଲଙ୍ଗଳର ଧାରକୁ ଚାପି ରଖନ୍ତୁ; ପୁଷଣ ତା’ର ରକ୍ଷା କରୁ; ସେ ଦୁଗ୍ଧ-ସଂବୃଦ୍ଧ, ପ୍ରତ୍ୟେକ ଆଗାମୀ ଗ୍ରୀଷ୍ମରେ ତାକୁ ସେ ଆମକୁ ପ୍ରଦାନ କରୁ ।

ଲଙ୍ଗଳର ଉତ୍ତମ ମୁନ ସଫଳତାର ସହିତ ଜମିକୁ ବିଦିର୍ଣ୍ଣ କରୁ; ହଳୁଆ ଫନ୍ଦାଯାଇଥିବା ପଶୁକୁ ସଫଳତାର ସହିତ ଆଦେଶ ଦେଉ; ସୁନଶୀର, ତୁମେ ଦୁଇ ବୁନ୍ଦା ହବିସ ନେଇ ଚାରାଗୁଡ଼ିକୁ ସରସ ଫଳରେ ଫଳବତୀ କର ।

କର୍ଷକ ପଶୁ ସଫଳତା ପୂର୍ବକ, ମନୁଷ୍ୟ ସଫଳତା ପୂର୍ବକ, ଲଙ୍ଗଳ ସଫଳତା ପୂର୍ବକ ହଳ କରୁ; ସଫଳତା ପୂର୍ବକ ବନ୍ଧନକୁ ବନ୍ଧାଯାଉ; ସଫଳତା ପୂର୍ବକ ହଳ ଚାଳନା କରାଯାଉ ।''

(Atharva Veda, 3.17, 3–6, Tr. W.D. Whitney)

ଗାଙ୍ଗେୟ ସମତଳରେ କୃଷି କ୍ଷେତ୍ରରେ ଏକ ନୂଆ କଥା ହେଲା । ଗହମରୁ ଯାଇ ଧାନର କୃଷିକୁ ପ୍ରାଧାନ୍ୟ ଦିଆଗଲା ଏବଂ ଗୃହପାଳିତ ପଶୁ ମଧ୍ୟରେ ମଇଁଷିକୁ ମହତ୍ତ୍ୱ ମିଳିଲା । ଧାନଚାଷ ଯୋଗୁଁ ଏକ ନାଟକୀୟ ପରିବର୍ତ୍ତନ ଦେଖାଗଲା, କାରଣ ଉତ୍ପାଦନ ବୃଦ୍ଧି ପାଇବାରୁ ବର୍ଷ ଶେଷରେ ବଳକା ଧାନ ରହିଲା । ଏହାର ସୁଯୋଗ ନେଇ ବିଶ୍ ବା କୁଳ ଉପରେ ଅଧିକ ଉପହାର ଓ ବଳି ଦେବାପାଇଁ ଚାପ ପଡ଼ିଲା । ଯାଗଯଜ୍ଞର ପରିମାଣ ବୃଦ୍ଧି ପାଇଲା; ପୁରୋହିତ ଅଧିକ ଦାନ-ଦକ୍ଷିଣା ପାଇଲେ ।

ପ୍ରଥମେ କୁଳ ବା ସମୁଦାୟ ସାମୂହିକ ରୂପରେ ଜମିର ଉପଯୋଗ କରୁଥିଲା । ପରେ କୁଳର ଅସ୍ମିତା ଊଣା ହେଲା । ଜମି ପରିବାରଗୁଡ଼ିକ ମଧ୍ୟରେ ବଣ୍ଟାହେଲା । ପଶୁଚାରଣ ଅପେକ୍ଷା କୃଷି ଉପରେ ନିର୍ଭରଶୀଳତା ବୃଦ୍ଧି ପାଇବାରୁ ଅନେକ ନୂଆ କିସମର ବୃତ୍ତି ଦେଖିବାକୁ ମିଳିଲା । ସମୁଦାୟରେ କାଠ ବଢ଼େଇର ମହତ୍ତ୍ୱ ବଢ଼ିଲା, କାରଣ ସେ ରଥ ନିର୍ମାଣ ସାଙ୍ଗକୁ ଲଙ୍ଗଳ ତିଆରି କରୁଥିଲା, କାଠରେ ଗୃହର ଢାଞ୍ଚା ନିର୍ମାଣ କରୁଥିଲା । ଜଙ୍ଗଲରୁ ସହଜରେ କାଠ ମିଳୁଥିବାରୁ ବଢ଼େଇକାମ ଏକ ଲାଭଜନକ ବୃତ୍ତିରେ ପରିଣତ ହେଲା । ଏହାଫଳରେ ବଢ଼େଇର ସମାଜରେ ପ୍ରତିଷ୍ଠା ବଢ଼ିଲା । ଗ୍ରାମ ସମୁଦାୟର ଅନ୍ୟ ମହତ୍ତ୍ୱପୂର୍ଣ୍ଣ ସଦସ୍ୟ ଥିଲେ, ଧାତୁଶିଳ୍ପୀ (ଯଥା : ସ୍ୱର୍ଣ୍ଣକାର, କଂସାରି ଓ ଲୁହାର ଆଦି), କୁମ୍ଭାର, ଚର୍ମକାର ଓ ବୁଣାକାର ଆଦି ।

ଗାଙ୍ଗେୟ ସମତଳରେ ବିରଚିତ ଉତ୍ତର-ବୈଦିକ ସାହିତ୍ୟରେ ଏମିତି ସାମାଜିକ ସ୍ଥିତିର ବର୍ଣ୍ଣନା ରହିଛି, ଯାହାକୁ ସହରୀକରଣର ପୂର୍ବାଭାସ ବୋଲି କହିହେବ । ତାମ୍ରପ୍ରସ୍ତର ସଂସ୍କୃତି ବିଶେଷଜ୍ଞତା ପ୍ରାପ୍ତିକୁ ପ୍ରୋତ୍ସାହିତ କଲା । ଏହା କେତେକ ଜନବସତିକୁ ସହରରେ ପରିଣତ ହେବାରେ ସାହାଯ୍ୟ କଲା । ସହରୀକରଣ ପୂର୍ବରୁ କେତେକ ସଂସ୍କୃତିକୁ ଦୁଇଭାଗରେ ଦେଖିହେବ । ଗୋଟାକରେ, ଯାହା ପଶ୍ଚିମରେ ଅବସ୍ଥିତ ଥିଲା, ଚିତ୍ରିତ ଧୂସର ମୃଦଭାଣ୍ଡ (Painted Grey Ware)ର ପ୍ରୟୋଗ ହେଉଥିଲା । ଅନ୍ୟଟିରେ, ଯାହା ମଧ୍ୟ ଏବଂ ପୂର୍ବରେ ଅବସ୍ଥିତ ଥିଲା, କୃଷ୍ଣ-ଲୋହିତ ମୃଦଭାଣ୍ଡର ପ୍ରୟୋଗ ହେଉଥିଲା । ଉଭୟ ସଂସ୍କୃତିରେ

ଜନବସତିମାନ ପରସ୍ପରକୁ ଲାଗି ବିକଶିତ ହୋଇଥିଲେ । ଲୋକଙ୍କର ମୁଖ୍ୟ ଜୀବିକା ଥିଲା କୃଷି । ଚିତ୍ରିତ ଧୂସର ମୃଦଭାଣ୍ଡ ସଂସ୍କୃତି ଏବଂ ଉତ୍ତର ବୈଦିକ ସାହିତ୍ୟରେ ବର୍ଣ୍ଣିତ ଭୌତିକ ସଂସ୍କୃତି ଏବଂ ଉତ୍ତର ବୈଦିକ ସାହିତ୍ୟରେ ବର୍ଣ୍ଣିତ ଭୌତିକ ସଂସ୍କୃତି ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ଥିବା କଥା କୁହାଯାଏ । ମାତ୍ର ଏହି ପୁରାତାତ୍ତ୍ୱିକ ସଂସ୍କୃତିଗୁଡ଼ିକୁ ଆର୍ଯ୍ୟ ସଂସ୍କୃତି ବା ଅନାର୍ଯ୍ୟ ସଂସ୍କୃତି ରୂପରେ ଚିହ୍ନିତ କରିବା ଠିକ୍ ହେବନାହିଁ । ବୈଦିକ ସଂସ୍କୃତି ସହିତ ସାମ୍ୟର ଅର୍ଥ ହେଲା, ଅନେକ ଅନ୍ତଃକ୍ରିୟାର ଫଳସ୍ୱରୂପ ସମାଜଗୁଡ଼ିକ ବିକଶିତ ହେଉଥିଲେ ଏବଂ ତହିଁରେ ଆଚାର ବିଚାରମାନ ଉନ୍ମେଷ ଲାଭ କରୁଥିଲେ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ ବେଳକୁ କେତେକ ସ୍ଥାନରେ ପ୍ରାରମ୍ଭିକ ସହରୀ ଜୀବନ ଦେଖିବାକୁ ମିଳିଲା । ଅନ୍ୟ କେତେକ ସ୍ଥାନରେ କିଛିକାଳ ପରେ ତାହା ଦୃଷ୍ଟିଗୋଚର ହେଲା । ପଞ୍ଜାବ ଏବଂ ଗାଙ୍ଗେୟ ସମତଳ କ୍ଷେତ୍ର ମଧ୍ୟରେ ହିମାଳୟର ପାଦଦେଶ ଦେଇ ରାସ୍ତା ରହିଥିଲା । ଗଙ୍ଗାଧାରାର ନଦୀଗୁଡ଼ିକ ମଧ୍ୟ ସମ୍ପର୍କ ରକ୍ଷା କରିବାରେ ଉପଯୋଗୀ ସିଦ୍ଧ ହେଉଥିଲେ । ହିମାଳୟର ପାଦଦେଶ ବା ତରାଇ କ୍ଷେତ୍ର ଅଧିକ ଆକର୍ଷକ ରହିଥାଇପାରେ, କାରଣ ଏଠାରେ ଜଙ୍ଗଲ ଅଧିକ ଘଞ୍ଚ ନ ଥିଲା । ପୁଣି, ଏଠାରେ ଅନେକ ଧାତବ ପଦାର୍ଥ ମିଳୁଥିଲା । ଜଙ୍ଗଲ ଅପେକ୍ଷା ଗଙ୍ଗାଧାରାରେ ଯାତାୟାତ କରିବା ଅଧିକ ସୁବିଧାଜନକ ହେଉଥିଲା ।

କୃଷି ଉତ୍ପାଦନ ବୃଦ୍ଧି ପାଇବା ଉତ୍ତାରୁ ବଳକା ଶସ୍ୟ ପାଇଁ ବିକାକିଣା ପ୍ରକ୍ରିୟା ଆରମ୍ଭ ହେଲା । ଏହାର ପରିଣତି ହେଲା ବାଣିଜ୍ୟ । ପ୍ରଥମେ ବିନିମୟ ପ୍ରତ୍ୟକ୍ଷ ଭାବରେ ବା 'ବାର୍ଟାର ଫର୍ମ'ରେ ଚାଲିଥିଲା । ବିନିମୟର ମାତ୍ରା ଅଧିକ ହେଲେ ଗାଈକୁ ମୂଲ୍ୟର ଏକକ ରୂପରେ 'ନିଷ୍କ'ର ମଧ୍ୟ ଉଲ୍ଲେଖ ଦେଖିବାକୁ ମିଳେ । ବୋଧହୁଏ ନିଷ୍କ ଥିଲା ସୁନାର ଏକକ । ପରେ ସ୍ୱର୍ଣ୍ଣମୁଦ୍ରାକୁ ନିଷ୍କ କୁହାଗଲା । ଯେତେବେଳେ ଗଙ୍ଗାର ଧାରେ ଧାରେ ପୂର୍ବଦିଗକୁ ଜନବସତିମାନ ସ୍ଥାପିତ ହେବାକୁ ଲାଗିଲା, ନଦୀପଥ ହିଁ ପ୍ରାକୃତିକ ମାର୍ଗରେ ପରିଣତ ହେଲା । ଏହି ବସତିଗୁଡ଼ିକ ନଦୀ କୂଳେ କୂଳେ ରହିଥିଲା । ଅସଲରେ ନଦୀପଥରେ ଆରମ୍ଭ ହୋଇଥିବା ଏହି ବାଣିଜ୍ୟ ଥିଲା ଭିତ୍ତିପ୍ରଦାନକାରୀ !

## ସର୍ଦ୍ଦାର ଓ ରାଜା

ସମାଜର ସବୁଠାରୁ ଛୋଟ ଖଣ୍ଡ ଥିଲା କୁଳ । ଉଚ୍ଚ ପ୍ରତିଷ୍ଠାବାନ ସମୂହରେ ଏହା ଥିଲା ପିତୃକେନ୍ଦ୍ରିକ । କେତେକ ପରିବାରକୁ ନେଇ ଗ୍ରାମର ପ୍ରତିଷ୍ଠା ହେଉଥିଲା । ପ୍ରାରମ୍ଭିକ ବସତିଗୁଡ଼ିକରେ ଗ୍ରାମର ପରିବାରମାନ ପରସ୍ପର ମଧ୍ୟରେ ସମ୍ବନ୍ଧିତ ଥିଲେ ବୋଲି କେତେକ ମତ ଦିଅନ୍ତି । ଅନ୍ୟ ମତ ଅନୁସାରେ, ଗ୍ରାମ ଥିଲା ଏକ ସରାଇ ଘର ପରି, ଯାହାକୁ

ଯାଯାବର ପଶୁଚାରକ ଗୋଷ୍ଠୀ ଉପଯୋଗ କରୁଥିଲେ । ଏକ ସାମାଜିକ ସ୍ୱୀକୃତି ବା ପରିଚୟ ରୂପରେ ପରିବାର ସାଧାରଣତଃ ତିନି ପିଢ଼ି ପର୍ଯ୍ୟନ୍ତ ପ୍ରସାରିତ ହେଉଥିଲା । ଅର୍ଥାତ୍ ପୁତ୍ରସନ୍ତାନମାନେ ନିଜ ନିଜ ପତ୍ନୀ ଓ ସନ୍ତାନମାନଙ୍କୁ ନେଇ ବାପା-ମା'ଙ୍କ ଘରେ ରହୁଥିଲେ । ଅତି କମ୍ ବୟସରେ ବିବାହ ହେବାର ପରମ୍ପରା ନ ଥିଲା । ଯୌତୁକ ଏବଂ କନ୍ୟାଦେୟ (ବଧୂମୂଲ୍ୟ)କୁ ଭିନ୍ନ ଭିନ୍ନ ବିଶେଷତା ମନେକରାଯାଉଥିଲା । ପୁତ୍ରର ଜନ୍ମକୁ ପରିବାରରେ ଖୁବ୍ ସ୍ୱାଗତ କରାଯାଉଥିଲା, କାରଣ ବିଭିନ୍ନ ସାମାଜିକ ପର୍ବପର୍ବାଣିରେ (ଅନୁଷ୍ଠାନରେ) ପୁତ୍ରର ଉପସ୍ଥିତିର ଆବଶ୍ୟକତା ରହୁଥିଲା ।

ପିତୃକୈନ୍ଦ୍ରିକ ପରିବାରର ପରିଧି ମଧ୍ୟରେ ନାରୀର ସ୍ଥିତି ସର୍ବଦା ଏକରକମର ନ ଥିଲା । ଅବସର ଦେଖି କେବେ ନାରୀକୁ ସ୍ୱାତନ୍ତ୍ର୍ୟ ମିଳୁଥିଲା ତ ଆଉ କେବେ ବନ୍ଧନରେ ରହିବାକୁ ପଡୁଥିଲା । ବେଦର ବର୍ଣ୍ଣନାକୁ ଦେଖିଲେ ମନେହେବ, ସେତେବେଳେ ନାରୀକୁ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଭୂମିକା ପ୍ରାପ୍ତ ହୋଇଥିଲା । ମାତ୍ର ବାସ୍ତବିକତା ଆଧାରରେ ଦେଖିଲେ ଜଣାପଡ଼ିବ ଯେ ସବୁ ନାରୀର ଏକା ଭୂମିକା ନ ଥିଲା । ବିଶେଷକରି ଯେତେବେଳେ କୁଳର ଆଚାର ବିଚାର ସ୍ଥାନରେ ଜାତି ନିୟମର ପ୍ରଚଳନ ହେଲା, ସେତେବେଳେ ନାରୀ ସବୁ ଜାତିରେ ଏକା ଧରଣର ଭୂମିକା ସମ୍ପାଦନ କରୁ ନ ଥିଲା । ଅନେକ କର୍ମକର୍ମାଣିରେ ପତ୍ନୀକୁ ଯୋଗଦାନ କରିବାକୁ ପଡୁଥିଲା, ମାତ୍ର ତା' ପକ୍ଷରେ କର୍ତ୍ତୃତ୍ୱର ପ୍ରଶ୍ନ ନ ଥିଲା । ହରପ୍ପାର ଦେବୀପ୍ରତିମା ତୁଳନାରେ ବୈଦିକ ରଚନାରେ ଦେବୀମାନଙ୍କୁ ଅଧିକ କ୍ଷମତା ମିଳି ନ ଥିଲା । ସେମାନେ ଗୌଣ ଭୂମିକା ପାଉଥିଲେ । ବିଧବାକୁ ପ୍ରତିକାତ୍ମକ ଭାବରେ ପତିର ମୃତ୍ୟୁ ପରେ ଆତ୍ମଦାହ କରିବାକୁ ପଡୁଥିଲା । ଏହାକୁ ଏକ ପ୍ରତିଷ୍ଠାର କଥା ବୋଲି ମନେକରାଯାଉଥିଲା । ଅନେକ ଶତାବ୍ଦୀ ପରେ ଏହି ପ୍ରତୀକାତ୍ମକ ଆତ୍ମଦାହକୁ ସତୀ ପ୍ରଥାର ମୂଳ ବୋଲି କୁହାଗଲା । ଏଥିପାଇଁ ପାଠରେ ସାମାନ୍ୟ ସଂଶୋଧନ କରାଗଲା । ସଂଶୋଧିତ ପାଠରେ କୁହାଗଲା ଯେ, ବିଧବା ସ୍ତ୍ରୀ ସତକୁସତ ପତିର ଚିତାରେ ଜଳିଯାଏ । ଅସଲରେ ଏହି କର୍ମକାଣ୍ଡ ଥିଲା ପୂର୍ଣ୍ଣତଃ ପ୍ରତୀକାତ୍ମକ । ବିଧବା ପତ୍ନୀର ପ୍ରତୀକାତ୍ମକ ଆତ୍ମ-ଦାହ ପରେ ମୃତ ପତିର ଭାଇ ସହିତ ପୁନର୍ବିବାହ ସମ୍ପନ୍ନ ହେଉଥିଲା । ଏହି ପ୍ରଥାକୁ ନିୟୋଗ କୁହାଯାଉଥିଲା । ସାଧାରଣତଃ ଏକ ପତି-ପତ୍ନୀକ ବିବାହର ପ୍ରଚଳନ ଥିଲା । ମାତ୍ର ରାଜାମାନଙ୍କ ମଧ୍ୟରେ ବହୁପତ୍ନୀକ ବିବାହର ମଧ୍ୟ ଚଳଣି ଥିଲା । ସ୍ଥାନେ ସ୍ଥାନେ ବହୁପତିକ ବିବାହର ମଧ୍ୟ ଉଦାହରଣ ଦେଖିବାକୁ ମିଳୁଥିଲା । ମୋଟ କଥା ହେଲା, ନା ବିବାହକୁ ନେଇ, ନା କୁଳକୁଟୁମ୍ବକୁ ନେଇ ଗୋଟାଏ ନିର୍ଦ୍ଦିଷ୍ଟ ସାମାଜିକ ନିୟମ ରହିଥିଲା । ପୋଥିପାଠରେ ଦିଆଯାଇଥିବା ନୀତିନିୟମକୁ ମଧ୍ୟ ଅକ୍ଷରେ ଅକ୍ଷରେ ପାଳନକରି ଏସବୁ ସାମାଜିକ କାମ ସମ୍ପନ୍ନ ହେଉ ନ ଥିଲା । କେବଳ ପାଣ୍ଡବମାନଙ୍କ କ୍ଷେତ୍ରରେ ଅନ୍ୟୂନ ତିନିପ୍ରକାର ବୈବାହିକ

ନିୟମ ପାଳିତ ହେଉଥିବାର ଦେଖାଯାଏ । ବହୁପତ୍ନୀକ ବିବାହ, ଯାହା ପାଣ୍ଡୁ କରିଥିଲେ; ବହୁପତିକ ବିବାହ, ଯାହା ଦ୍ରୌପଦୀ କରିଥିଲେ ଏବଂ କୌଟୁମ୍ବିକ ବିବାହ, ଯାହା ଅର୍ଜୁନ ଓ ସୁଭଦ୍ରାଙ୍କ ମଧ୍ୟରେ ସମ୍ପନ୍ନ ହୋଇଥିଲା । ଏହା ତତ୍‌କାଳୀନ ସାମାଜିକ ବ୍ୟବସ୍ଥାରେ ଥିବା ବିବିଧତାକୁ ଚିହ୍ନିତ କରାଏ । ଯଦି ମିଥକ ଶାସ୍ତ୍ରକୁ କୁଟୁମ୍ବ ତଥା ବିବାହ ସମ୍ବନ୍ଧିତ ନିୟମର ଦ୍ୟୋତକ ବୋଲି ଗ୍ରହଣ କରାଯାଏ, ତେବେ ସେତେବେଳେ ଏସବୁକୁ ନେଇ ଖୁବ୍ ନମନୀୟତା ରହିଥିଲା – ଏକଥା ସ୍ୱୀକାର କରିବାକୁ ହେବ ।

ଗୃହ ମଧ୍ୟରେ ଚୁଲିକୁ ପବିତ୍ର ସ୍ଥାନ ମନେକରାଯାଉଥିଲା । ଏହା ଥିଲା ଘରର ନାଭିକେନ୍ଦ୍ର । ଅଗ୍ନିଦେବଙ୍କୁ ପୂଜାକରି ଚୁଲିର ମହତ୍ତ୍ୱକୁ ପ୍ରତୀକାତ୍ମକ ଭାବେ ଦର୍ଶାଯାଉଥିଲା । କାଠର ଏକ ଫ୍ରେମରେ ଘରକୁ ତିଆରି କରାଯାଉଥିଲା । ଘରର କୋଣମାନଙ୍କରେ ଖମ୍ବ ପୋତି ଦିଆଯାଉଥିଲା । କୋଣର ଖମ୍ବଗୁଡ଼ିକ ଉପରେ ଗଛ ଲଦି କ୍ରମବିକାଶ କରାଯାଉଥିଲା; ଘାସ ଓ ପାଳ ଛଣ ଆଦିରେ କାନ୍ଥ ହେଉଥିଲା । ପରେ ପାଳ-ଛଣର କାନ୍ଥରେ ମାଟି ଲିପିଦିଆଗଲା । ଘର ତିଆରିରେ ଇଟାର ବ୍ୟବହାର ନ ଥିଲା । କଞ୍ଚା ଇଟାର ବ୍ୟବହାର ବଡ଼ ବଡ଼ ଯଜ୍ଞବେଦୀ ନିର୍ମାଣରେ କରାଯାଉଥିଲା । ଚାଳର ଛାତକୁ ଧରିରଖିବା ପାଇଁ ବାଉଁଶର ବ୍ୟବହାର ହେଉଥିଲା । ଘରର ଆକାର ବଡ଼ ଥିଲା ଏବଂ ତହିଁରେ ଗୋଟାଏ ଛାତ ତଳେ ଉଭୟ ମଣିଷ ଓ ଗୋରୁଗାଈ ରହୁଥିଲେ । ଲୋକଙ୍କର ପ୍ରଧାନ ଖାଦ୍ୟ ଥିଲା କ୍ଷୀର, ଘିଅ, ପନିପରିବା, ଫଳମୂଳ, ଗହମ ଏବଂ ବାର୍ଲି । ବିଭିନ୍ନ ରୂପରେ ଗହମ ଓ ବାର୍ଲିକୁ ଭୋଜନ ପାଇଁ ବ୍ୟବହାର କରାଯାଉଥିଲା । ଯେଉଁଠି ଧାନଚାଷ ହେଉଥିଲା, ସେଠାରେ ଲୋକ ଚାଉଳକୁ ଅନ୍ନ ରୂପରେ ବ୍ୟବହାର କରୁଥିଲେ । ପର୍ବପର୍ବାଣିରେ କିମ୍ବା ଅନ୍ୟାନ୍ୟ ଅବସରରେ ଅତିଥି-ଅଭ୍ୟାଗତ ଘରକୁ ଆସିଲେ ଭୋଜନରେ ନାନା ବ୍ୟଞ୍ଜନ ପରଷା ଯିବାର ପରମ୍ପରା ରହିଥିଲା । ଗୋ-ମାଂସ, ଛେଳିମାଂସ ଓ ମଇଁଷିମାଂସ ସହିତ ପାନୀୟ ସୁରା ବା ମଧୁ (ମଦ କିସମର ପାନୀୟ)ର ସେବନକୁ ଭୋଜିର ଆଖ୍ୟା ମିଳୁଥିଲା । ଲୋକ ସାଧାସିଧା କପଡ଼ା ବ୍ୟବହାର କରୁଥିଲେ; ନାନା କିସମର ଗହଣା ପିନ୍ଧୁଥିଲେ । ଗହଣାକୁ ଲାଭ କରୁଥିବା ବ୍ୟକ୍ତି ନିଜକୁ ଗୌରବଶାଳୀ ମନେକରୁଥିଲେ ।

ସଙ୍ଗୀତ ପ୍ରତି ଲୋକଙ୍କର ଖୁବ୍ ଆକର୍ଷଣ ରହିଥିଲା । ଏହା ସେତେବେଳର ବାଦ୍ୟଯନ୍ତ୍ରଗୁଡ଼ିକର ଉଲ୍ଲେଖରୁ ସୁସ୍ପଷ୍ଟ ହୁଏ । ତା'ଛଡ଼ା ଧ୍ୱନୀ, ସ୍ୱର ଓ ରାଗ ସମ୍ବନ୍ଧରେ ମଧ୍ୟ ଲୋକଙ୍କର ଜ୍ଞାନ ଖୁବ୍ ବିକଶିତ ଥିଲା । ସାମବେଦର ଗାୟନବେଳେ ସେହି ଜ୍ଞାନକୁ ଉପଯୋଗ କରାଯାଉଥିଲା । ପରବର୍ତ୍ତୀ ସମୟରେ ବିକଶିତ ହୋଇଥିବା ସଙ୍ଗୀତ ଶୈଳୀଗୁଡ଼ିକର ଆରମ୍ଭ ବୈଦିକ ଯୁଗରେ ହୋଇଥିଲା ବୋଲି କୁହାଯାଏ । ମାତ୍ର ବୈଦିକ

ସଙ୍ଗୀତକୁ ପୂର୍ବଜ ଦାବି କରିବା ପଛରେ ଇତିହାସଠାରୁ ଅଧିକ ପ୍ରତିଷ୍ଠାର ପ୍ରଶ୍ନ ଜଡ଼ିତ ଭଳି ମନେହୁଏ । ସେ ଯାହାହେଉ, ସେତେବେଳେ ବିବିଧତାପୂର୍ଣ୍ଣ ସଙ୍ଗୀତ ସଂରଚନା ହୋଇଥିଲା, ପରେ ଏହି ବିବିଧତା ଭାରତୀୟ ସଙ୍ଗୀତର ବୈଶିଷ୍ଟ୍ୟ ହେଲା । ଅବସର ସମୟରେ ଲୋକ ମୁଖ୍ୟତଃ ନୃତ୍ୟ, ସଙ୍ଗୀତରେ ଓ ପଶାଖେଳରେ ସମୟ ବ୍ୟତୀତ ମନେକରୁଥିଲେ । ଉତ୍ସାହୀ ଲୋକ ରଥଦୌଡ଼କୁ ବି ଅବସର ବିନୋଦନର ଏକ ମାଧ୍ୟମ କରୁଥିଲେ । ରାଜାମାନେ ରଥଦୌଡ଼କୁ ଏକ ଖେଳ ଭାବରେ ନେଉଥିଲେ । କଦାଚିତ ଏହା ସିଂହାସନ ଆରୋହଣ ସମୟର ଏକ କାର୍ଯ୍ୟକ୍ରମର ସ୍ଥାନ ନେଉଥିଲା । ରଥଗୁଡ଼ିକ ବେଶି ଓଜନିଆ ନ ଥିଲା; ଚକରେ କାଠର ସ୍ପୋକ୍ ଲାଗିଥିଲା । ରଥକୁ ଘୋଡ଼ାମାନେ ଟାଣୁଥିଲେ । ପଶା ହେଲା ସେତେବେଳର ଏକ ଲୋକପ୍ରିୟ ଖେଳ । ପଶାଖେଳରେ ମାତିଥିବା ଲୋକ ନିଜ ଅଭ୍ୟାସ ପାଇଁ ପଶ୍ଚାତାପ କରୁଥିଲେ । ତା' ସତ୍ତ୍ୱେ ଖେଳରୁ ସେମାନେ ବିରତ ହେଉ ନ ଥିଲେ । ପଶାର ଗୋଟିଚାଳନାକୁ ନେଇ ଅନେକ ସ୍ତୋତ୍ର ରହିଥିଲା ।

କୁଳଗୁଡ଼ିକ ପିତୃସତ୍ତାତ୍ମକ ସମୂହ ରୂପରେ ସଂଗଠିତ ହୋଇଥିଲେ । ଆରମ୍ଭିକ ପର୍ଯ୍ୟାୟରେ ରାଜା ଜଣେ ନେତୃସ୍ଥାନୀୟ ବ୍ୟକ୍ତି ମାତ୍ର ଥିଲେ । ଯେତେବେଳେ ସୁରକ୍ଷାର ଆବଶ୍ୟକତା ପଡ଼ିଲା ଏବଂ ସାମାଜିକ ନିୟମ ଅବଶ୍ୟମ୍ଭାବୀ ହୋଇପଡ଼ିଲା, ସବୁଠାରୁ ସମର୍ଥ ରକ୍ଷକ ଦଳର ସର୍ଦ୍ଦାରଭାବେ ମନୋନୀତ ହେଲେ । ଧୀରେ ଧୀରେ ସେ ବିଶେଷାଧିକାରମାନ ନେଲେ, ଯାହା ରାଜତନ୍ତ୍ରର ଅଂଶ ହେଲା । ମାତ୍ର, ରାଜା ହାତରେ ସମସ୍ତ କ୍ଷମତା ଯେମିତି ଠୁଳ ନ ହୁଏ, ତା'ର ବ୍ୟବସ୍ଥା କରିବାକୁ କୁଳସମାଜମାନ ରହିଥିଲା । ତାକୁ 'ବିଦଥ', 'ସଭା' ଓ 'ସମିତି' ନାମରେ ଲୋକ ଜାଣୁଥିଲେ । ଲୁଣ୍ଠନରୁ ହାସଲ ହୋଇଥିବା ଧନସମ୍ପତ୍ତିକୁ 'ବିଦଥ'ରେ ବସି ଲୋକ ନିଜ ନିଜ ମଧ୍ୟରେ ବାଣ୍ଟି ନେଉଥିଲେ । କେବେ କେବେ ଚାରଣକବିମାନଙ୍କୁ ଉଦାର ଭାବରେ ପୁରସ୍କାର ପ୍ରଦାନ କରାଯାଉଥିଲା, କାରଣ ସେ ସର୍ଦ୍ଦାରଙ୍କ ଲୁଣ୍ଠନ ଲାଭର ପ୍ରଶଂସା କରି ପ୍ରଶସ୍ତି ଗାନ କରୁଥିଲେ । ବୀରକୁ ଅମର କରିବା ଉଦ୍ଦେଶ୍ୟରେ ରଚିତ ହେଉଥିବା ସ୍ତୋତ୍ରର ପ୍ରଶଂସା କରି ଦିଆଯାଉଥିବା ଉପହାରକୁ ଦାନ କୁହାଯାଉଥିଲା । ତେଣୁ ଧନସମ୍ପତ୍ତି ଦାନ କରୁଥିବା ସର୍ଦ୍ଦାରଙ୍କ ପ୍ରଶଂସାରେ କବିମାନେ ଶତମୁଖ ହୋଇପଡୁଥିଲେ । ଦାତା-ସର୍ଦ୍ଦାରଙ୍କୁ 'ଦେବଦାସ' କୁହାଯାଉଥିଲା । ଋଗ୍‌ବେଦରେ ମଧ୍ୟ ଦାନ-ସ୍ତୁତି ସ୍ତୋତ୍ରମାନ ରହିଛି । କେବେ କେବେ ଦାନର ପରିମାଣକୁ ଅତିରଞ୍ଜନ କରି ଗ୍ରହିତାମାନେ ବଖାଣୁଥିଲେ । ଯଥା- 60,000 ଗାଈ ଏବଂ 10,000 ଘୋଡ଼ା ରାଜା ପ୍ରଦାନ କଲେ ବୋଲି ଅତିରଞ୍ଜିତ କରାଯାଉଥିଲା । ଯେଉଁମାନେ କମ୍ ଦାନ ଦେଉଥିଲେ, ସେମାନଙ୍କୁ ଲଜ୍ଜିତ କରିବାପାଇଁ ଏଭଳି ଅତିଶୟୋକ୍ତିର ବ୍ୟବହାର କରାଯାଉଥିଲା । ଦାନ ବାଣ୍ଟିବାର ଅବସର ବୃଦ୍ଧି ହେବା ସହିତ 'ଦକ୍ଷିଣା'ର ବିଚାର ମନକୁ

ଆସିଲା । ଦକ୍ଷିଣା ହେଲା ଦାନ ଉପରେ ଏକ ରକମର କର, ଯାହା କର୍ମକାଣ୍ଡ ସମ୍ପାଦନ କରୁଥିବା ବ୍ୟକ୍ତି ବା ପୁରୋହିତକୁ ଦିଆଯାଉଥିଲା । ଦାନ ଓ ଦକ୍ଷିଣା ପୃଷ୍ଠପୋଷକ ଓ ପୁରୋହିତ ମଧ୍ୟରେ ଏକ ସମ୍ପର୍କ ସ୍ଥାପିତ କରିଥିଲା । ଏହି ସମ୍ପର୍କ ପ୍ରତିସ୍ପର୍ଦ୍ଧାତ୍ମକ ଥିଲା ଏବଂ ସାଙ୍ଗରେ ବନ୍ଧୁତାପୂର୍ଣ୍ଣ ବି ଥିଲା ।

ବୈଦିକ ସମାଜରେ ଦାନର ଚେର ଖୁବ୍ ତଳକୁ ମାଡ଼ିଗଲା । କାଳକ୍ରମେ ଏହା କେବଳ ଏକ ସାମାଜିକ ରୂପ ନେଲା ନାହିଁ, ତା' ସାଙ୍ଗକୁ ସମ୍ପତ୍ତି ବିତରଣ ପାଇଁ ଏକ ମାଧ୍ୟମ ରୂପେ କାର୍ଯ୍ୟ କଲା । ବିଶେଷକରି ଏହା କୁଳସଭାମାନଙ୍କରେ ଦେଖିବାକୁ ମିଳିଲା । ସଭା ଥିଲା ସମାଜର ଜ୍ୟେଷ୍ଠ ଏବଂ ସ୍ୱତନ୍ତ୍ର ବ୍ୟକ୍ତିମାନଙ୍କର ବୈଠକ କେନ୍ଦ୍ର; ମାତ୍ର ସମିତି ଥିଲା କୁଳସଭା । ଏହିପ୍ରକାର ରାଜନୈତିକ ସଂଗଠନର ଉନ୍ମେଷକୁ କେତେକ କିମ୍ବଦନ୍ତୀରେ ଦେଖାଯାଇପାରେ । କିମ୍ବଦନ୍ତୀରେ ସରକାରର ଉଦ୍ଭବକୁ ଆଖ୍ୟାୟିତ କରାଯାଇଛି । ଗୋଟାଏ କିମ୍ବଦନ୍ତୀ ଅନୁସାରେ ଦେବ ଓ ଦାନବଙ୍କ ମଧ୍ୟରେ ଯୁଦ୍ଧ ଚାଲିଥିଲା । ଯୁଦ୍ଧରେ ଦେବକୁଳର ପରାଜୟ ନିଶ୍ଚିତ ବୋଲି ଆଶଙ୍କା ସୃଷ୍ଟିହେଲା । ସେହି ବେଳାରେ ଦେବକୁଳ ଏକତ୍ର ହୋଇ ଜଣେ ରାଜା ନିଯୁକ୍ତ କଲେ ଏବଂ ଯୁଦ୍ଧରେ ବିଜୟପ୍ରାପ୍ତ ହେଲେ ।

ପରବର୍ତ୍ତୀ ସମୟରେ 'ରାଜା' ଶବ୍ଦକୁ ଯେଉଁ ଅର୍ଥରେ ସମାଜରେ ଗ୍ରହଣ କରାଗଲା, ସେହି ଅର୍ଥରେ ଦେଖିଲେ ଏହି କାଳର ରାଜାଙ୍କୁ ରାଜା ନ କହି 'ସର୍ଦ୍ଦାର' କହିବା ଅଧିକ ଯୁକ୍ତିସଙ୍ଗତ ହେବ । ରାଜା ଶବ୍ଦ 'ଚମକିବା' ବା 'ନେତୃତ୍ୱ ଦେବା' ଅର୍ଥ ଦେଉଥିବା ଧାତୁରୁ ଆନୀତ । ହେଲେ ମହାକାବ୍ୟରେ ଏହାର ବ୍ୟୁତ୍ପତ୍ତି ଯେଉଁ ଧାତୁରୁ ହୋଇଛି, ତା'ର ଅର୍ଥ ହେଲା 'ରଞ୍ଜକ' ବା 'ପ୍ରସନ୍ନକାରୀ ବ୍ୟକ୍ତି' । ଅର୍ଥାତ୍ ରାଜାର ଧ୍ୱନିଗତ ଅର୍ଥ ହେଲା 'ପ୍ରଜାକୁ ସନ୍ତୁଷ୍ଟ କରୁଥିବା ବ୍ୟକ୍ତି' । ଏହି ଦ୍ୱିତୀୟ ଅର୍ଥକୁ ସମସ୍ତେ ଗ୍ରହଣ କରନ୍ତି ନାହିଁ । ରାଜତ୍ୱ ଦିଗରେ ଅନୁଭୂତ ହୋଇଥିବା ପରିବର୍ତ୍ତନକୁ ସାଧାରଣତଃ ଦୁଇଟି ସ୍ତରରେ ଦେଖାଯାଏ । ପ୍ରଥମ ସ୍ତରରେ ଉତ୍ତରକାଳୀନ ବେଦରେ ସୁବିବେଚିତ ଢଙ୍ଗରେ ବିଶାଳ ଯଜ୍ଞ ଅନୁଷ୍ଠାନର ସମ୍ପାଦନ ହେଲା । ଯଜ୍ଞ ଆୟୋଜନ ଆଧାରରେ ପୁରୋହିତ ସର୍ଦ୍ଦାରଙ୍କୁ ସାମାନ୍ୟ ଜନତାଠାରୁ ଉଚ୍ଚତର ସ୍ଥିତିରେ ଅଭିଷିକ୍ତ କରୁଥିଲେ । ତା' ସହିତ ସର୍ଦ୍ଦାରଙ୍କଠାରେ ଦେବତ୍ୱର ତତ୍ତ୍ୱ ମଧ୍ୟ ବିରାଜମାନ ବୋଲି ଘୋଷଣା କରୁଥିଲେ । ଦ୍ୱିତୀୟ ସ୍ତର ରାଜ୍ୟର ଉତ୍ପତ୍ତି ସହିତ ତାଳଦେଇ ବିକଶିତ ହେଲା । ରାଜ୍ୟର ଉତ୍ପତ୍ତିର ବିଶେଷ ଅର୍ଥ ହେଲା କୁଳଭିତ୍ତିକ ସମାଜ ଓ ଶାସନ ବ୍ୟବସ୍ଥାର ବିଲୟ । ଏହାସହିତ ବିଶ୍ ବା କୁଳର ଅବଧାରଣା କ୍ରମଶଃ ହ୍ରାସ ପାଇଲା ଏବଂ ଜଣେ ବ୍ୟକ୍ତି ରାଜା ରୂପରେ ମନୋନୀତ ହେଲେ । ରାଜ୍ୟ ସମକ୍ଷରେ କୁଳର ମହତ୍ତ୍ୱ ଊଣା ହେଲା । ଗାଈ ଯେମିତି ଘାସକୁ ଚରିଯାଏ, ଠିକ୍ ସେମିତି ରାଜା ବିଶ୍‌କୁ ଅନ୍ତଃସ୍ଥ କରିନେଲେ । ସ୍ଥିତିକୁ ବୁଝିବାଲାଗି ଏହା ହେବ ଏକ ଉପଯୁକ୍ତ ରୂପକ ।

ଆରମ୍ଭରେ ରାଜା ମୁଖ୍ୟତଃ ଏକ ସୈନିକ ନେତା ବା ସେନାପତି ଥିଲେ । ଜନବସତିକୁ ସୁରକ୍ଷା ପ୍ରଦାନ କରିବା ଓ ଅନ୍ୟ କୁଳର ଧନସମ୍ପତ୍ତି ଲୁଣ୍ଠନ କରିବାରେ ତାଙ୍କର କାର୍ଯ୍ୟକୁଶଳତା ସିଦ୍ଧ ହେଉଥିଲା । ଏହା ଥିଲା ତାଙ୍କ ଯୋଗ୍ୟତାର ପରିଚାୟକ । ଲୋକ ତାଙ୍କୁ ସ୍ୱେଚ୍ଛାରେ ଉପହାର ଓ ଭେଟି ପ୍ରଦାନ କରୁଥିଲେ, ଯାହାକୁ ବଳି କୁହାଯାଉଥିଲା । ଏଥିରୁ ବଳିକୁ ଦେବତାମାନଙ୍କଠାରେ ସମର୍ପଣ କରାଯାଉଥିବା ବସ୍ତୁର ଅର୍ଥ ରୂପରେ ପ୍ରୟୋଗ କରାଗଲା । ରାଜା ଲୋକଙ୍କଠାରୁ ନିୟମିତ ଟିକସ ଦାବି କରୁ ନ ଥିଲେ । ଲୋକଙ୍କଠାରେ ନିୟମିତ ଦେବାପାଇଁ ବି ସେମିତି ଟିକସ ଯୋଗ୍ୟ ଅର୍ଥ ନ ଥିଲା । ଭୂମି ଉପରେ ରାଜାଙ୍କର କୌଣସି ଅଧିକାର ନ ଥିଲା । ଗୋଧନ ହରଣର ସଫଳତା ପରେ ଲୁଣ୍ଠନକାରୀଙ୍କ ମଧ୍ୟରେ ଯେଉଁ ଭାଗବଣ୍ଟା ହେଉଥିଲା, ତହିଁରୁ ରାଜା ମଧ୍ୟ ଭାଗ ପାଉଥିଲେ । ଏହା ଥିଲା ସିଂହଭାଗ । ଶୁଳ୍କକର ମଧ୍ୟ ଉଲ୍ଲେଖ କିରାଗଲା । ଶୁଳ୍କକର ଅର୍ଥ ହେଲା କୌଣସି ଏକ ବସ୍ତୁର ମୂଲ୍ୟ । ପରବର୍ତ୍ତୀ ସମୟରେ ରାଜ୍ୟର ପ୍ରତିଷ୍ଠା ହେଲାପରେ ବଳି, ଭାଗ ଓ ଶୁଳ୍କକୁ ଟିକସ ଅର୍ଥରେ ବ୍ୟବହାର କରାଗଲା ।

ଯେତେବେଳେ ପୁରୋହିତର କର୍ମ ଅଧିକ ବୈଶିଷ୍ଟ୍ୟପୂର୍ଣ୍ଣ ହେଲା ଏବଂ ରାଜାଙ୍କୁ ଅଧିକ କର୍ତ୍ତୃତ୍ୱ ପ୍ରାପ୍ତ ହେଲା, ରାଜା ଯଜ୍ଞର ପୃଷ୍ଠପୋଷକ ରୂପେ ଉଦୀୟମାନ ହେଲେ । ତେଣିକି ରାଜା ଓ ବ୍ରାହ୍ମଣ ମଧ୍ୟରେ ଉଭୟ ପ୍ରତିସ୍ପର୍ଦ୍ଧା ଓ ଅନୁପୂରକତାର ସମ୍ପର୍କ ଆରମ୍ଭ ହେଲା । ରାଜା ହେଲେ କର୍ତ୍ତୃତ୍ୱ ଓ କ୍ଷମତାର ଅଧିକାରୀ ଏବଂ ବ୍ରାହ୍ମଣ ହେଲେ ରାଜାଙ୍କର କ୍ଷମତାକୁ କର୍ମକାଣ୍ଡ ମାଧ୍ୟମରେ ବୈଧତା ପ୍ରଦାନ କରୁଥିବା ବ୍ୟକ୍ତି । ଏହି ପ୍ରତିସ୍ପର୍ଦ୍ଧାରେ ଶେଷରେ ବ୍ରାହ୍ମଣକୁ ସର୍ବୋଚ୍ଚ କର୍ମକାଣ୍ଡୀ ପାହ୍ୟା ମିଳିଲା । ପର ସମୟରେ କିମ୍ବଦନ୍ତୀରେ କୁହାଯାଇଛି ଯେ, ଦେବତାମାନେ ଯୁଦ୍ଧରେ ବିଜୟୀ ହେବାଲାଗି ରାଜା ନିର୍ବାଚିତ କଲେ ଏବଂ ତାଙ୍କ ଭିତରେ ବିଶିଷ୍ଟ ଗୁଣଗୁଡ଼ିକୁ ଭରିଦେଲେ । ଠିକ୍ ସେହିଭଳି ବିଶେଷ ଯଜ୍ଞମାନ ଆୟୋଜିତ କରାଗଲା ଏବଂ ତହିଁରେ ବ୍ରାହ୍ମଣମାନେ ରାଜାଙ୍କୁ ଦେବୋପମ ଗୁଣରେ ବିଭୂଷିତ କଲେ । ବ୍ରାହ୍ମଣ ହେଲେ ଦେବତା ଓ ମାନବମାନଙ୍କ ମଧ୍ୟରେ ମଧ୍ୟସ୍ଥି, ସୂତ୍ରଧର । ଏହି ମଧ୍ୟସ୍ଥି ହେବାର ଯୋଗ୍ୟତା ହାସଲ କଲାପରେ ବ୍ରାହ୍ମଣମାନଙ୍କର ଶକ୍ତିରେ ଅଭିବୃଦ୍ଧି ଘଟିଲା । ଏଥିରୁ ଆରମ୍ଭ ହେଲା ସାଂସାରିକ ଶକ୍ତି ଓ ଧାର୍ମିକ ଶକ୍ତି ମଧ୍ୟରେ ପାରସ୍ପରିକ ନିର୍ଭରଶୀଳତା । କଦାଚିତ୍ ଉଭୟଙ୍କ ମଧ୍ୟରେ ପାହ୍ୟା ଲାଗି ବିବାଦ ମଧ୍ୟ ଦେଖିବାକୁ ମିଳୁଥିଲା । ବୈଦିକ ସାହିତ୍ୟର ବିପରୀତ, ମହାଭାରତରେ କ୍ଷତ୍ରିୟମାନଙ୍କର ଆବଶ୍ୟକତା ଓ ପାହ୍ୟାକୁ ପ୍ରମୁଖ ବୋଲି ଦର୍ଶାଉଥିବା ସ୍ଥିତିର ବର୍ଣ୍ଣନା ରହିଛି । କ୍ରମଶଃ ରାଜାମାନେ ନିଜ ପଦବୀକୁ ପୁରୁଷାନୁକ୍ରମିକ କରିବାକୁ ଆଗ୍ରହୀ ହେଲେ; ଜ୍ୟେଷ୍ଠପୁତ୍ରକୁ ଉତ୍ତରାଧିକାର ଦେବାର ପ୍ରବୃତ୍ତି

ଦେଖାଗଲା । ଋଗ୍‌ବେଦରେ ବଂଶାବଳୀର ଚିତ୍ରଣ ପ୍ରାୟ ନ ଥାଏ ଏବଂ ଯେଉଁଠି ଥାଏ, ତାହା ଛୋଟ ଓ ସୀମିତ ଅର୍ଥରେ । ଏହାର ବିପରୀତ ଉତ୍ତର ବୈଦିକ ସାହିତ୍ୟରେ ଦୀର୍ଘ ବଂଶାବଳୀର ଉଲ୍ଲେଖ ମିଳେ । ବଂଶାବଳୀ ଯଥାର୍ଥ ହେଉ ବା କାଳ୍ପନିକ ତାହାରି ଆଧାରରେ ରାଜାଙ୍କୁ ବୈଧତା ମିଳିବାର ଉଦ୍ଦେଶ୍ୟ ରହିଲା । ଏହି ଅନୁସାରେ ସଭା-ସମିତି ଆଦି ପରିଷଦରେ ମଧ୍ୟ ପରିବର୍ତ୍ତନ ଦେଖିବାକୁ ମିଳିଲା । 'ସଭା' ହେଲା ଏକ ଉପଦେଷ୍ଟା ମଣ୍ଡଳୀ ସଦୃଶ; ଅନ୍ତିମ ନିଷ୍ପତ୍ତି ନେବାର କ୍ଷମତା ରହିଲା ରାଜାଙ୍କ ହାତରେ । ବିଶାଳ ସଭା-ସମିତିଗୁଡ଼ିକ କ୍ରମଶଃ ଅନ୍ତର୍ହିତ ହେଲେ । ଏହା ରାଜତନ୍ତ୍ରର ଆଗମନକୁ ଇଙ୍ଗିତ କଲା ।

ପ୍ରାରମ୍ଭିକ ଢଙ୍ଗର ପ୍ରଶାସନିକ ବ୍ୟବସ୍ଥାରେ ରାଜା ହେଲେ ନାଭିକେନ୍ଦ୍ର ସଦୃଶ । ସର୍ଦ୍ଦାରତନ୍ତ୍ରକୁ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ସହିତ ସଂଯୋଜିତ କରାଗଲା । ଏହି ଅଞ୍ଚଳରେ ଗ୍ରାମଗୁଡ଼ିକରେ ସ୍ଥାୟୀଭାବେ ବସବାସ କରୁଥିବା ପରିବାର, ବିସ୍ତୃତ କୁଳ ଏବଂ ଆହୁରି ବିସ୍ତୃତ ଆଦିବାସୀ ସଂପ୍ରଦାୟ ସାମିଲ ହୋଇ ରହିଲେ । ଏହି ସମସ୍ତଙ୍କୁ ନେଇ ଗଠିତ ଅଞ୍ଚଳ ବିଶେଷକୁ 'ଜନପଦ' କୁହାଗଲା । ଜନପଦର ଶାବ୍ଦିକ ଅର୍ଥ ହେଲା ଯେଉଁଠି ଆଦିବାସୀ ଜନ ନିଜର ପାଦ ରଖନ୍ତି । ଶାସକ କୁଳର ନାମ ଅନୁସାରେ ଜନପଦଗୁଡ଼ିକ ଚିହ୍ନିତ ହେଲେ । କେବେ କେବେ ଶାସକ କୁଳ ଥିଲେ ଗୋଟାଏ । ଯଥା : 'କେକୟ', 'ମଦ୍ର', 'କୁରୁ' ଓ 'କୋଶଳ' । ପୁଣି କେବେ କେବେ କୁଳଗୁଡ଼ିକର ମହାସଂଘ ଶାସକକୁଳର ପଦମର୍ଯ୍ୟାଦା ଲାଭ କଲା । ପାଞ୍ଚାଳ ହେଲା ସେହି ଧରଣର ଏକ ମହାସଂଘ । କୁରୁ ଓ ପାଞ୍ଚାଳମାନେ ଏକଜୁଟ ହେବାପରେ ଏକ ଅଧିକ ଜଟିଳ ମହାସଂଘର ଉଦୟ ହେଲା । ରାଜାଙ୍କର ମୁଖ୍ୟ ସହାୟକଙ୍କ ମଧ୍ୟରେ ବାରମ୍ବାର ଉଲ୍ଲେଖ ମିଳେ ପୁରୋହିତ ଏବଂ ସେନାନୀଙ୍କର । ପୁରୋହିତ ହେଲେ ମୁଖ୍ୟ ପୂଜକ । ପୂଜା, କର୍ମକର୍ମାଣି ସହିତ ସେ ରାଜାଙ୍କ ପାଇଁ ଜ୍ୟୋତିଷ ଏବଂ ଉପଦେଷ୍ଟାର କାର୍ଯ୍ୟ କରୁଥିଲେ । ସେନାନୀ ଥିଲେ ସୈନ୍ୟ ଅଧିକାରୀ । ପରବର୍ତ୍ତୀ ସମୟରେ ରାଜାଙ୍କ ପରିପାର୍ଶ୍ୱରେ ରହୁଥିବା ପାରିଷଦମାନଙ୍କର ସଂଖ୍ୟାରେ ବୃଦ୍ଧି ହେଲା । ରଥବାହକ, କୋଷାଧ୍ୟକ୍ଷ, ଅଶ୍ୱ ସଂରକ୍ଷକ ଏବଂ ପଶାଖେଳ ଅଧୀକ୍ଷକ ମଧ୍ୟ ପାରିଷଦରେ ଶୋଭା ପାଇଲେ । ପଶାଖେଳ ଅଧିକ୍ଷକଙ୍କ ପାରିଷଦରେ ସାମିଲ ହେବାରୁ ଜଣାଯାଏ ଯେ ଉଭୟ ସମ୍ଭ୍ରାନ୍ତ ଓ ସାଧାରଣ ଜନ ସ୍ତରରେ ଏହାର ଖୁବ୍ ଲୋକପ୍ରିୟତା ରହିଥିଲା । ପଶାରେ ଚଳମାନ ସମ୍ପତ୍ତି, ଚାରଣକ୍ଷେତ୍ର ଓ ରାଜ୍ୟକୁ ଖେଳିବାର ପରମ୍ପରା ରହିଥିଲା; କୃଷିଜମି ଉପରେ ସେଯାଏଁ ଅଧିକାର ସାବ୍ୟସ୍ତ ହୋଇ ନ ଥିଲା । 'ମହାଭାରତ'ରେ ଏହାର ଖୁବ୍ ଭଲଭାବେ ଉଲ୍ଲେଖ ରହିଛି ।

କେତେକ ଉତ୍ସବ ଆୟୋଜନ ପଛରେ ଆରମ୍ଭରେ ଉଦ୍ଦେଶ୍ୟ ଥିଲା ସର୍ଦ୍ଦାରଙ୍କର ପାହ୍ୟାକୁ ସ୍ଥାପିତ କରିବା । ମାତ୍ର କ୍ରମେ କ୍ରମେ ଏହି ଆୟୋଜନଗୁଡ଼ିକ କେବଳ ବିଶାଳ ହେଲା ନାହିଁ, ବରଂ ରାଜପଦ ଦାବି କରୁଥିବା ବ୍ୟକ୍ତି ପାଇଁ ତାହା ବିଶେଷ ଆବଶ୍ୟକତା ହୋଇପଡ଼ିଲା । ଥରେ ସର୍ଦ୍ଦାର ନିଜ ପଦବୀରେ ଅଧିଷ୍ଠିତ ହୋଇଗଲେ ଏବଂ ତାଙ୍କୁ ବୈଧତା ମିଳିଗଲେ ସେ ବର୍ଷେ ବ୍ୟାପୀ ରାଜସୂୟ ଯଜ୍ଞ ଆୟୋଜିତ କରୁଥିଲେ । ଏହି ଯଜ୍ଞରେ ପୁରୋହିତ ନିଜର ଅଲୌକିକ ଶକ୍ତି ବଳରେ ଦେବୋପମ ଗୁଣଗୁଡ଼ିକୁ ସ୍ୱର୍ଗରୁ ଆଣି ରାଜା ବା ସର୍ଦ୍ଦାରଙ୍କୁ ବିଭୂଷିତ କରୁଥିଲେ । ଯଜ୍ଞ ସର୍ବଦା ଶୁଦ୍ଧତା ଓ ସାଙ୍କେତିକ ଭାବେ ପୁନର୍ଜନ୍ମ ପ୍ରଦାନ କରୁଥିଲା । ଯଜ୍ଞର ଶେଷ ପର୍ଯ୍ୟାୟରେ ରାଜା ରାଜଭକ୍ତି ଦର୍ଶାଇଥିବା ବାରଜଣ ରତ୍ନିଙ୍କୁ ଧନରତ୍ନ ଉପହାର ପ୍ରଦାନ କରୁଥିଲେ । ପ୍ରତିଦାନରେ ରତ୍ନିମାନେ ରାଜାଙ୍କଠାରେ ନିଷ୍ଠା ପ୍ରକଟ କରୁଥିଲେ । ଏହି ରତ୍ନିମାନଙ୍କ ମଧ୍ୟରେ କେତେକ ଥିଲେ ପରିବାରର ଲୋକ ଏବଂ ଅନ୍ୟ କେତେକ ଥିଲେ ଶିଳ୍ପୀ ଓ ବିଶେଷଜ୍ଞ । ରାଜାଙ୍କ ପାଖରୁ ମର୍ଯ୍ୟାଦା ଲାଭ କରୁଥିବା ସୂଚୀରେ ଶିଳ୍ପୀ ଓ ବିଶେଷଜ୍ଞମାନଙ୍କର ଉଲ୍ଲେଖରୁ ଜଣାପଡ଼େ ଯେ ଦୈନନ୍ଦିନ ଜୀବନରେ ଏହି ବିଶେଷଜ୍ଞମାନଙ୍କର ବିଶେଷ ଆବଶ୍ୟକତା ରହୁଥିଲା । ରାଜ୍ୟାଭିଷେକ ଅନୁଷ୍ଠାନ ଶେଷ ହେବାର କିଛି ବର୍ଷ ପରେ, ଯଜ୍ଞ ଆୟୋଜନ କରାଯାଉଥିଲା । ଯଜ୍ଞର ଉଦ୍ଦେଶ୍ୟ ଥିଲା ରାଜାଙ୍କ ମନରେ ନବଜୀବନର ସଞ୍ଚାର କରିବା ।

ସମ୍ଭବତଃ ସବୁଠାରୁ ଅଧିକ ଆଡ଼ମ୍ବରପୂର୍ଣ୍ଣ ଓ ପ୍ରସିଦ୍ଧ ଯଜ୍ଞ ହେଲା ଅଶ୍ୱମେଧ ଯଜ୍ଞ । ରୋମ୍ ଓ କେଲ୍ଟ ଆଦି କେତେକ ଭିନ୍ନ ସଂସ୍କୃତି ପାଇଁ ମଧ୍ୟ ଏହି ଯଜ୍ଞ ନୂଆ ନ ଥିଲା । ଖୁବ୍ ସରଳ କର୍ମକାଣ୍ଡରୁ ଆରମ୍ଭ ହୋଇ ଏହା ପରେ ଅନେକ ମାତ୍ରାରେ ଆଡ଼ମ୍ବରପୂର୍ଣ୍ଣ ହୋଇପଡ଼ିଥିଲା । ଉତ୍ତର ବୈଦିକ ସାହିତ୍ୟରେ ରହିଥିବା ଏହାର ବର୍ଣ୍ଣନାରୁ ତାହା ସୁସ୍ପଷ୍ଟ ହୁଏ । ଅଶ୍ୱମେଧ ଯଜ୍ଞ ଆୟୋଜନ କରିଥିବା ଅନେକ ରାଜାଙ୍କ ମଧ୍ୟରୁ ସମ୍ଭାବିତ ରାଜାମାନଙ୍କର ଏକ ସୂଚୀ ମିଳିଥାଏ । ଏଥିରୁ ଉକ୍ତ ରାଜାମାନଙ୍କର ସୀମିତ ପୂର୍ବଜ-ପରମ୍ପରା ସମ୍ବନ୍ଧରେ ମଧ୍ୟ ସୂଚନା ମିଳେ । ପୂର୍ବଜଙ୍କ ମଧ୍ୟରେ କେତେକ ଐତିହାସିକ ଏବଂ ଆଉ କେତେକ କାଳ୍ପନିକ । ଯଥୋଚିତ ପୂଜା-ଅନୁଷ୍ଠାନ ପରେ ରାଜା ଏକ ବିଶେଷ ଧରଣର ଅଶ୍ୱକୁ ନିଜ ଇଚ୍ଛାନୁସାରେ ଭ୍ରମଣ କରିବା ଲାଗି ଛାଡ଼ିଦିଅନ୍ତି । ଅଶ୍ୱ ପଛରେ ରକ୍ଷକ ଥାଆନ୍ତି । ଯେଉଁ ପ୍ରଦେଶ ଦେଇ ଅଶ୍ୱ ଯାଏ, ସେହି ପ୍ରଦେଶ ଉପରେ ରାଜା ନିଜ କର୍ତ୍ତୃତ୍ୱ ଦାବି କରନ୍ତି । ସୈଦ୍ଧାନ୍ତିକ ରୂପରେ କେବଳ ଶକ୍ତିଶାଳୀ ରାଜାଙ୍କୁ ଏହି ଯଜ୍ଞ ଆୟୋଜନ କରିବାପାଇଁ ଅନୁମତି ମିଳୁଥିଲା । ଏହି ରାଜାଙ୍କର ଅଧିକାରଭୁକ୍ତ କ୍ଷେତ୍ର ଉପରେ ରାଜୁତି କରିବାର ସାମର୍ଥ୍ୟ ରହିଥିଲା । ମାତ୍ର ବ୍ୟବହାରିକ ଦୃଷ୍ଟିରୁ ଦେଖିଲେ ଅଶ୍ୱମେଧ ଯଜ୍ଞ ଥିଲା ରାଜପଦ ପ୍ରାପ୍ତି ଲାଗି କରାଯାଉଥିବା ଏକ ଅନୁଷ୍ଠାନ । ଅନେକ ସାନ ସର୍ଦ୍ଦାର ମଧ୍ୟ ଅଶ୍ୱମେଧ ଯଜ୍ଞ

ଆୟୋଜନ କରୁଥିଲେ ଏବଂ ନିଜ ସମ୍ମାନ ବଞ୍ଚାଇବା ପାଇଁ ଅଶ୍ୱକୁ ଏକ ସୀମିତ ଓ ନିୟନ୍ତ୍ରିତ କ୍ଷେତ୍ର ମଧ୍ୟରେ ବିଚରଣ କରିବାକୁ ଦେଉଥିଲେ । ଅଶ୍ୱମେଧ ଯଜ୍ଞ ବହୁ ଆଡ଼ମ୍ବରରେ ଆୟୋଜିତ ହେଉଥିଲା । ଏଥିରେ ଅନେକ ପୁରୋହିତ କର୍ମକାଣ୍ଡ ସମ୍ପାଦନ କରିବା ଲାଗି ନିଯୁକ୍ତ ହେଉଥିଲେ । କିସମ କିସମର ପଶୁଙ୍କୁ ମଧ୍ୟ ଏକତ୍ରିତ କରାଯାଉଥିଲା । ଯଜ୍ଞ ପୂଜାରେ ନାନାପ୍ରକାର ସାମଗ୍ରୀର ଲୋଡ଼ା ପଡୁଥିଲା । ଭ୍ରମଣ କ୍ଷେତ୍ରରୁ ଅଶ୍ୱ ଫେରିଆସିବା ପରେ ଯଜ୍ଞର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଉଥିଲା । ଏଥିରେ କୃଷିଜମିର ଉର୍ବରତା ସମ୍ବନ୍ଧିତ ଅନୁଷ୍ଠାନ କରାଯାଉଥିଲା । ଯଜ୍ଞ ସମର୍ପିତ ଅଶ୍ୱ ଓ ରାଜାଙ୍କର ପାଟରାଣୀ ଅନୁଷ୍ଠାନରେ ମୁଖ୍ୟ ଭୂମିକାରେ ରହୁଥିଲେ । ମୋଟ କଥା ହେଲା ଯେ ଏହି ଧରଣର କର୍ମକାଣ୍ଡର ଆୟୋଜନ ହେଲେ ଉଭୟ ରାଜା ଓ ବ୍ରାହ୍ମଣର ପ୍ରତିଷ୍ଠାରେ ଅଭିବୃଦ୍ଧି ଘଟୁଥିଲା । ଏଣିକି ରାଜାଙ୍କର ପ୍ରତିଷ୍ଠା ପଛରେ ରହିଲା ଆର୍ଥିକ ଓ ରାଜନୈତିକ କ୍ଷମତା । କୁଳ ସମ୍ବନ୍ଧ ଆଧାରିତ ପ୍ରତିଷ୍ଠା ଉପରେ ସେ ଆଶ୍ରା କରୁ ନ ଥିଲେ । ଏଥିରୁ ସୂତ୍ରପାତ ହେଲା ରାଜପଦ ଏବଂ ପ୍ରାରମ୍ଭିକ ରାଜ୍ୟର ଅଭିଧାରଣାର, ଯାହା ଇତିହାସର ମୋଡ଼ ବଦଳେଇଦେଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଶୈଶବରେ ଜାତି

ଉତ୍ତର ବୈଦିକ ଯୁଗରେ କେତେକ କୁଳକୁ ଆର୍ଯ୍ୟର ମର୍ଯ୍ୟାଦା ଦିଆଗଲା । ମାତ୍ର ପୁରୁ ଭଳି କେତେକ ପ୍ରତିଷ୍ଠିତ ରାଜା ଥିଲେ, ଯାହାଙ୍କର ପୂର୍ବ ଇତିହାସ ସ୍ପଷ୍ଟ ନୁହେଁ । ପୁରୁ ରାଜାଙ୍କୁ 'ମ୍ରିଧ୍ର-ବାଚ' (Mridhra-vac) କୁହାଯାଉଥିଲା । ଏହାର ଅର୍ଥ ହେଲା, ଯିଏ ଶୁଦ୍ଧ ଭାଷା କହିପାରନ୍ତି ନାହିଁ । ପରେ ତାଙ୍କୁ ଅସୁର-ରାକ୍ଷସ-ଜାତ ବୋଲି ବର୍ଣ୍ଣନା କରାଗଲା । ଏପରିକି ଯେଉଁଠି ଦାସମୂଳ କଥାର ଉଲ୍ଲେଖ ରହିଛି, ସେଠି ମଧ୍ୟ ଅସ୍ପଷ୍ଟତା ଦୂର ହୁଏ ନାହିଁ । ଉଦାହରଣ ସ୍ୱରୂପ, ଗୋଟାଏ ସ୍ଥାନରେ କୁହାଯାଇଛି : ଦାସୀପୁତ୍ର ବ୍ରାହ୍ମଣମାନଙ୍କର ଉପସ୍ଥିତିରେ । ଅର୍ଥାତ୍ କେତେକ ବ୍ରାହ୍ମଣ ପଦବାଚ୍ୟ ଲୋକଙ୍କର ମାତା ଦାସ ସମୁଦାୟର ଥିଲେ । ଏହାର ଉଲ୍ଲେଖ ବେଦର ଉତ୍ତର ଭାଗରେ ରହିଛି । ଏଥିରୁ ଜଣାପଡ଼େ ଯେ, ସମାଜରେ ମିଶ୍ରିତ ସମୁଦାୟର ଉଦ୍‌ଗମ ରହିଥିଲା । ପ୍ରଥମେ ଏହି ବ୍ରାହ୍ମଣମାନଙ୍କୁ ନୀଚ ଦୃଷ୍ଟିରେ ଦେଖାଯାଉଥିଲା । ମାତ୍ର ପରେ ଏମାନେ ପୁରୋହିତ ରୂପରେ ଯାଗ-ଯଜ୍ଞମାନ ସମ୍ପାଦନ କଲେ ଏବଂ ସ୍ୱ ସ୍ୱ ଶକ୍ତିର ପରିଚୟ ଦେଲେ । ଫଳରେ ସେମାନଙ୍କୁ ସମ୍ମାନଜନକ ଦୃଷ୍ଟିରେ ଦେଖାଗଲା । ସମ୍ଭବତଃ ଏହି ସମୟରେ ବିଭିନ୍ନ ସ୍ଥାନୀୟ ଉପାସନାକୁ ବୈଦିକ ଉପାସନାରେ ସାମିଲ କରାଯାଉଥିଲା । ଏହି କାର୍ଯ୍ୟ କରି ଅନ୍ୟଥା 'ନୀଚ'ର ସ୍ଥିତିରେ ଥିବା

ବ୍ରାହ୍ମଣ ପଦମର୍ଯ୍ୟାଦା ଲାଭ କଲା । କୁହାଯାଏ, ଅଥର୍ବ ବେଦରେ ବର୍ଣ୍ଣିତ ଅନେକଗୁଡ଼ିଏ କର୍ମକାଣ୍ଡ ଏହିପ୍ରକାର ଥିଲା । ଯଦି କର୍ମକାଣ୍ଡର ବିଶେଷଜ୍ଞଙ୍କୁ ଅଧିକ ପଦମର୍ଯ୍ୟାଦା ପ୍ରାପ୍ତ ହେଲା, ଆଗରୁ ସମାଜରେ ରହିଆସିଥିବା ଲୋକଙ୍କୁ ମଧ୍ୟ ସାମାଜିକ ସୋପାନର କେଉଁଠି ନା କେଉଁଠି ସମାହିତ କରିଦିଆଯାଇଥିବ । ଉଦାହରଣ ସ୍ୱରୂପ, ନିଷାଦମାନଙ୍କର ସଂସ୍କୃତି ଥିଲା ସମ୍ପୂର୍ଣ୍ଣ ଅଲଗା । ମାତ୍ର ସେମାନଙ୍କୁ ମଧ୍ୟ ବୈଦିକ କର୍ମକାଣ୍ଡରେ ସଂଯୋଜିତ କରିଦିଆଗଲା ।

ଋଗ୍‌ବେଦ ପରବର୍ତ୍ତୀ ବେଦଗୁଡ଼ିକରେ ଚାରିଗୋଟି ବର୍ଣ୍ଣର ଉଲ୍ଲେଖ ରହିଛି । ସେଗୁଡ଼ିକ ହେଲା– ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଅବଶ୍ୟ ଋଗ୍‌ବେଦର ଏକ ସ୍ତୋତ୍ରରେ ମଧ୍ୟ ଏକଥା ଉଲ୍ଲିଖିତ । ଋଗ୍‌ବେଦରେ ମୁଖ୍ୟତଃ ଦୁଇଟି ବର୍ଣ୍ଣର ବର୍ଣ୍ଣନା ରହିଛି : ଆର୍ଯ୍ୟବର୍ଣ୍ଣ ଓ ଦାସବର୍ଣ୍ଣ । ସେହି ଦୁଇ ବର୍ଣ୍ଣକୁ ଭାଙ୍ଗି ଚାରିଗୋଟି ବର୍ଣ୍ଣ ସୃଷ୍ଟି କରାଗଲା ବୋଲି କହିହେବ ନାହିଁ, କାରଣ ଚାରୋଟିଯାକ ବର୍ଣ୍ଣର ଆଧାର ଭିନ୍ନ ଭିନ୍ନ । ପ୍ରଥମ ତିନିଗୋଟି ବର୍ଣ୍ଣର ବୃତ୍ତିଗତ ଆଧାର ରହିଥିଲା । ଜଣେ ଥିଲା ପୁରୋହିତ, ଦ୍ୱିତୀୟ ଜଣକ ହେଲା ସୈନିକ ଓ ସମ୍ଭ୍ରାନ୍ତ ଏବଂ ତୃତୀୟ ଜଣକର ବୃତ୍ତି ହେଲା ଗୋଚାରଣ, କୃଷି ଏବଂ ବସ୍ତୁ ବିନିମୟ କରି ସମାଜ ପାଇଁ ସମ୍ପତ୍ତି ଠୁଳ କରିବା । ଗୋଷ୍ଠୀଗୁଡ଼ିକୁ ଚିହ୍ନିବା ପାଇଁ ବୃତ୍ତିଗତ ନିୟମ ଓ ବିବାହ ବିଧିର ସୂତ୍ରପାତ ହେଲା । ଗୋତ୍ରର ଉଲ୍ଲେଖରୁ ଏହା ସୁସ୍ପଷ୍ଟ ହୁଏ । ଗୋତ୍ରର ଶାବ୍ଦିକ ଅର୍ଥ ହେଲା 'ଗାଈର ବୟାନ' । ପରେ ଏହାର ପ୍ରୟୋଗ ଅନୁମତ ବୈବାହିକ କ୍ଷେତ୍ରକୁ ଚିହ୍ନିବା ଲାଗି, ଗୋଟାଏ ସମୂହକୁ ଅନ୍ୟ ସମୂହରୁ ପୃଥକ୍ କରିବାଲାଗି ତଥା ଆହୁରି ପରେ ସମ୍ପତ୍ତି ଅଧିକାରକୁ ଦର୍ଶାଇବା ଲାଗି କରାଗଲା ।

ବର୍ଣ୍ଣ ବ୍ୟବସ୍ଥାରେ ଚତୁର୍ଥ ବର୍ଣ୍ଣ ଶୂଦ୍ରର ସମାବେଶକୁ ଏକ ବଡ଼ ସାମାଜିକ ପରିବର୍ତ୍ତନର ଦ୍ୟୋତକ ଭାବରେ ଗ୍ରହଣ କରାଯାଇପାରେ । ଶ୍ରମ କିଏ କରିବ ଏବଂ ତା' ଉପରେ କାହାର ନିୟନ୍ତ୍ରଣ ରହିବ – ଏକଥା ଆଗରୁ ବଂଶ ଓ କୌଟମ୍ବିକ ସମ୍ବନ୍ଧ ମଧ୍ୟରେ ସ୍ଥିର ହେଉଥିଲା । କେବେ କେବେ ଏହି ବିଭାଜନ ବରିଷ୍ଠ ବଂଶ (senior lineage)ର ରୂପ ନେଇ ନିଜଠାରୁ କନିଷ୍ଠ ବଂଶ (lesser lineage)କୁ ପୃଥକ୍ କରୁଥିଲା । ସେଥିପାଇଁ କୌଟମ୍ବିକ ସମ୍ବନ୍ଧ ଏବଂ ବୟଃ ଗୋଷ୍ଠୀରେ ଆର୍ଥିକ ସମ୍ବନ୍ଧ ସମାହିତ ହୋଇ ରହୁଥିଲା । ଯେଉଁଠି ସୋପାନୀକରଣକୁ ସ୍ୱୀକୃତି ମିଳିଥିଲା, ସେଠାରେ ମୁଖ୍ୟତଃ ଗୋଟାଏ ପରିବାର ଅନ୍ୟ ପରିବାରରୁ ପୃଥକ୍ ହୋଇ ଏକ ନିର୍ଦ୍ଦିଷ୍ଟ ବଂଶ ମର୍ଯ୍ୟାଦା ଦାବି କରୁଥିଲା । ଏହାଦ୍ୱାରା ପରିବାରରେ ଏଭଳି ଏକ ବ୍ୟବସ୍ଥା ସୃଷ୍ଟି ହେଉଥିଲା, ଯେଉଁଥିରେ କନିଷ୍ଠ କୁଳବଧୂଙ୍କର ପରିବାର ଶ୍ରମ ୟୁନିଟରେ ପରିଣତ ହେଉଥିଲେ । ପରବର୍ତ୍ତୀ ସମୟରେ କୁଳ ବାହାରର

ଲୋକଙ୍କୁ ଶ୍ରମ ପାଇଁ ବ୍ୟବହାର କରାଗଲା । ଯେଉଁମାନେ କୁଳସମ୍ବନ୍ଧ ବାହାରର ଲୋକ, ସେମାନଙ୍କୁ ଶ୍ରମ ପାଇଁ କୁହାଗଲା । ଏହା ଯେତେବେଳେ କୃଷି ବ୍ୟବସ୍ଥାକୁ ବିସ୍ତାରିତ ହେଲା, ସାମାଜିକ ପାର୍ଥକ୍ୟ ବୃଦ୍ଧି ପାଇଲା । ସ୍ଥାୟୀ ଭାବରେ ଅନ୍ୟ ପାଇଁ ଶ୍ରମ କରୁଥିବା ଏକ ଶ୍ରମିକ ଗୋଷ୍ଠୀ ସ୍ଥାପିତ କରି ଏହି ପରିବର୍ତ୍ତନକୁ ଏକ ସ୍ଥାୟୀରୂପ ଦିଆଗଲା । ପୂର୍ବ ବ୍ୟବସ୍ଥାଠାରୁ ଏହା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ଆଗରୁ ଋଗ୍‌ବେଦରେ 'ଦାସ'ର ଅର୍ଥ ଥିଲା ଅନ୍ୟ ସଂସ୍କୃତିର ଲୋକ । ବର୍ତ୍ତମାନ ତାହା ଅନ୍ୟ ପାଇଁ ଶ୍ରମ କରୁଥିବା ବ୍ୟକ୍ତି ଉଦ୍ଦେଶ୍ୟରେ ବ୍ୟବହୃତ ହେଲା । ଏହା ଥିଲା ଶୂଦ୍ରର କର୍ତ୍ତବ୍ୟ । କୃଷିଠାରୁ ଆରମ୍ଭ କରି ଶିଳ୍ପକଳା ପାଇଁ ତଥା କମ୍ ଆକର୍ଷକ କାର୍ଯ୍ୟ ପାଇଁ ସେ ଏଣିକି ଶ୍ରମ ଦେବାକୁ ଆରମ୍ଭ କରିଥିଲା ।

ଦିନକୁଦିନ ଶ୍ରମ ବିଭାଜନ ଅଧିକ ତୀବ୍ର ହେଲା । ସାମାଜିକ ପାହ୍ୟା ସ୍ଥିର କରିବାପାଇଁ କିଏ କେଉଁ କିସମର ଶ୍ରମ କରୁଛି, ତାକୁ ଦେଖାଗଲା । ବୈଶ୍ୟକୁ କୁହାଗଲା ସେ କରଦାତା, ଅନ୍ୟମାନଙ୍କ ଦ୍ୱାରା ଭକ୍ଷଣଯୋଗ୍ୟ ଏବଂ ଅନ୍ୟ ହାତରେ ଶୋଷିତ ହେବାର ପାତ୍ର । ସେମିତି ଶୂଦ୍ରକୁ ଅନ୍ୟମାନଙ୍କର ସେବକ କୁହାଗଲା । ତାକୁ ଯିଏ ପାରିବ ତଡ଼ିଦେଇ ପାରିବ, ଯେତେବେଳେ ଚାହିଁବ ହତ୍ୟା କରିପାରିବ । କୃଷିର ବିସ୍ତାର ଓ ଶିଳ୍ପକଳାର ଉଦୟ ହେବା ଯୋଗୁଁ ବିଭିନ୍ନ ପ୍ରକାର ବିଶେଷଜ୍ଞତାପୂର୍ଣ୍ଣ ଶ୍ରମର ଆବଶ୍ୟକତା ପଡ଼ିଲା । ତା' ସହିତ ନୂଆ ନୂଆ କିସମର ବୃତ୍ତି ବାହାରିଲା । ତନ୍ମଧ୍ୟରେ ନାନା ପ୍ରକାରର କାରିଗର, କୃଷକ ଏବଂ ଶ୍ରମିକର ବର୍ଗ ରହିଥିଲେ । ଏ ସମସ୍ତଙ୍କୁ ସମାଜରେ ତଳ ସ୍ତରର ବୋଲି କୁହାଗଲା ଏବଂ ସ୍ୱତନ୍ତ୍ର ଜାତିର ମର୍ଯ୍ୟାଦା ପ୍ରଦାନ କରାଗଲା ।

'ଜାତି'ର ମୂଳ ଶବ୍ଦ ହେଲା ଜନ୍ମ ବା ଜାତ; ଜନ୍ମରୁ ମିଳିଥିବା ପାହ୍ୟା । ଏହା ବର୍ଣ୍ଣଠାରୁ ଭିନ୍ନ । ବର୍ଣ୍ଣର କାର୍ଯ୍ୟ ଓ ସୃଷ୍ଟି ଓ ଜାତିର କାର୍ଯ୍ୟ ଓ ସୃଷ୍ଟି ମଧ୍ୟରେ ମେଳ ଦେଖାଯାଏନା । ବର୍ଣ୍ଣର ଏକ ସଂଭାଗ ଭାବରେ ଜାତିକୁ ନିଆଯାଇପାରେନା । କର୍ମକାଣ୍ଡର ପାହ୍ୟା ସହିତ ବର୍ଣ୍ଣକୁ ଯୋଡ଼ି ଦେଖିହେବ ବୋଲି କୁହାଯାଏ । କର୍ମକାଣ୍ଡରେ ଶୂଦ୍ରକୁ କୌଣସି ପାହ୍ୟା ଦିଆଯାଇ ନାହିଁ ! କୌଣସି କର୍ମକାଣ୍ଡରେ ତାକୁ ସାମିଲ୍ କରାଯାଏ ନାହିଁ । ଉପର ତିନି ବର୍ଣ୍ଣର ଲୋକ ନିଜ ନିଜ ବର୍ଣ୍ଣ ମଧ୍ୟରେ ବିବାହ କରିବେ ବୋଲି କଡ଼ାକଡ଼ି ନିୟମ ରହିଛି । ଜାତି ମିଶ୍ରିତ ବିବାହରୁ ସୃଷ୍ଟ ସମୁଦାୟକୁ ଶୂଦ୍ର ବର୍ଣ୍ଣଭୁକ୍ତ କରାଗଲା ବୋଲି ଆଚାର ସମ୍ବନ୍ଧୀୟ ପାଠରେ କୁହାଯାଇଛି । ଯେଉଁମାନେ ଶୁଦ୍ଧତା ଉପରେ ଗୁରୁତ୍ୱ ଦେଉଥିଲେ, ତାଙ୍କ ବିଚାରରେ ଶୂଦ୍ର ହେଲା ନୀଚ ସ୍ତର । ଏହି ପ୍ରକ୍ରିୟାରେ ଲୋକଙ୍କୁ ଅଲଗା ଅଲଗା କରାଗଲା ଏବଂ ସେମାନଙ୍କ ଉପରେ ଜାତିର ଛାପ ଛାଡ଼ି ଦିଆଗଲା । ମିଶ୍ରିତ ଜାତିର ନିମ୍ନବର୍ଗକୁ ଦର୍ଶାଇବା ଲାଗି ଏହାକୁ ଏକ ଉଦ୍ୟମ ଭାବରେ ଦେଖାଯାଇପାରେ । ପ୍ରକୃତରେ

ଶୂଦ୍ର ଜାତିର ଉଦୟ ଏହି ଢଙ୍ଗରେ ହୋଇଥିବ ବୋଲି କୁହାଯାଇ ନ ପାରେ । ଥରେ ଲୋକଙ୍କୁ ବର୍ଗୀକୃତ କଲାପରେ ଉଭୟ ବର୍ଣ୍ଣ ଓ ଜାତି ନିଜ ନିଜର ନିର୍ଦ୍ଦିଷ୍ଟ ବିବାହ ନିୟମ ପାଳନ କଲେ । ବୃତ୍ତି ପ୍ରବେଶ, ସାମାଜିକ ଅନୁକ୍ରମ (hierarchy) ଏବଂ ବଂଶମର୍ଯ୍ୟାଦାକୁ ନେଇ ମଧ୍ୟ ସ୍ୱତନ୍ତ୍ର ନିୟମ କାନୁନ୍‌ର ପାଳନ ହେଲା । ବୈବାହିକ କ୍ଷେତ୍ର ମଧ୍ୟରେ ହିଁ ବିବାହ ଆୟୋଜିତ ହେଲା । ଜାତି ଆଧାରିତ ସମାଜର ତିଷ୍ଠି ରହିବାରେ ଏହାର ତୀବ୍ର ଆବଶ୍ୟକତା ଥିଲା । ସ୍ତ୍ରୀର ବିନିମୟକୁ ନିୟନ୍ତ୍ରଣ କରିବାରେ ତଥା ସ୍ତ୍ରୀକୁ କର୍ତ୍ତୃତ୍ୱାଧୀନ କରି ରଖିବାରେ ମଧ୍ୟ ଏହା ଖୁବ୍ ଏକ ସଫଳ ବ୍ୟବସ୍ଥା ସିଦ୍ଧ ହେଲା ।

ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ ବେଳକୁ ସୈଦ୍ଧାନ୍ତିକ ରୂପରେ ସ୍ଥାପିତ ହେଲା ଯେ ଉପର ତିନୋଟି ବର୍ଣ୍ଣ ହେଲେ ଦ୍ୱିଜ । ଦ୍ୱିତୀୟ ଜନ୍ମ ପରେ ସେମାନେ କର୍ମକାଣ୍ଡ ଅନୁଯାୟୀ ପାହ୍ୟା ପ୍ରାପ୍ତ ହୁଅନ୍ତି । ଏହାର ବିପରୀତ ଶୂଦ୍ର ହେଲା ଏକଜ ବା ଥରେ ଜନ୍ମ ନେଉଥିବା ବର୍ଣ୍ଣ । ଏହାକୁ ବୃତ୍ତିର ଶୁଦ୍ଧତା ପ୍ରଶ୍ନ ସହ ଯୋଡ଼ି ଦିଆଗଲା । ସେହି ହିସାବରେ ବ୍ରାହ୍ମଣ ହେଲା ଶୁଦ୍ଧତମ ଏବଂ ଶୂଦ୍ର ହେଲା ସବୁଠାରୁ କମ୍ ଶୁଦ୍ଧ । ପରବର୍ତ୍ତୀ ସମୟରେ ପଞ୍ଚମ ବର୍ଗକୁ ମଧ୍ୟ ଏଥିରେ ସାମିଲ କରାଗଲା । ସେମାନେ ହେଲେ ଅସ୍ପୃଶ୍ୟ, ଯାହାକୁ ଆଜିକାଲି ଦଳିତ ବୋଲି କୁହାଯାଉଛି । ଏହି ବର୍ଗକୁ ସବୁଠାରୁ ବେଶି ଅଶୌଚ ଓ ଅଶୁଦ୍ଧ ମନେକରାଗଲା । ଯେଉଁ ବ୍ୟବସ୍ଥା ସଂପଦା ଉପରେ ଅଧିକାର, ସାମାଜିକ ପ୍ରତିଷ୍ଠା ଏବଂ ବୃତ୍ତିଦ୍ୱାରା ନିର୍ଦ୍ଧାରିତ ଜନ୍ମଜାତ ମର୍ଯ୍ୟାଦା ଓ ତା' ସହିତ କର୍ମକାଣ୍ଡୀ ଶୁଦ୍ଧ-ଅଶୁଦ୍ଧର ଅବଧାରଣାକୁ ଯୋଡ଼ି ରଖିଲା, ତାହା ନିଃସନ୍ଦେହ ସାମାଜିକ ନିୟନ୍ତ୍ରଣ ପାଇଁ ଅକାଟ୍ୟ ଯୁକ୍ତି ସାବ୍ୟସ୍ତ ହେଲା ।

ଦ୍ୱିତୀୟ ପରିଚ୍ଛେଦରେ କରାଯାଇଥିବା ପ୍ରଶ୍ନଟି ଏଠାରେ ଅଧିକ ପ୍ରାସଙ୍ଗିକ ମନେହେବ । କୁଳ ସ୍ତରରୁ ବର୍ଣ୍ଣ ସ୍ତରକୁ ସଂକ୍ରମଣ ଚାଲିଥିଲାବେଳେ ଜାତି ପୂର୍ବରୁ କ'ଣ ବର୍ଣ୍ଣ ରହିଥିଲା ? ଭାରତ ଇତିହାସରେ ଏହି ସଂକ୍ରମଣ କଥା ଅବିଦିତ ନୁହେଁ । ଏହାର ଉତ୍ତରରେ ସାଧାରଣତଃ 'ହଁ' ବୋଲି କୁହାଯାଏ । ମାତ୍ର ଏହାର ଏକ ବିକଳ୍ପ ଉତ୍ତର ଖୋଜାଯାଇପାରେ କି ? ଯଦି କୁଳ ହେଲା ସାମାଜିକ ସଂଗଠନର ଆଦ୍ୟରୂପ, ତେବେ ପ୍ରଥମେ କୁଳ ଜାତିରେ ରୂପାନ୍ତରିତ ହୋଇଥିବା ଜାତିରେ କୁଳର କେତେକ ଚରିତ୍ର ନିହିତ ଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ, କେଉଁ କୁଳରେ ଜାତି ବିବାହ କରିବାକୁ ସମ୍ମତି ଦେବ, ସେହି ନିୟମକୁ ପାଳନ କରାଯାଏ । ବର୍ଣ୍ଣଭେଦକୁ ପାଳନ କରୁଥିବା ବର୍ଣ୍ଣ-ବିଭାଜିତ-ଜାତି ସମାଜ ଯେଉଁ ଲୋକଙ୍କୁ ଜିଣିନେଇଛି, ନିଜ କର୍ତ୍ତୃତ୍ୱାଧୀନ କରି ରଖିଛି ବା ନିଜ ଅତିକ୍ରମଣର ଶିକାର କରି ରଖିଛି, ସେହି ଲୋକଙ୍କୁ ନେଇ ଏକ ଜାତି ସୃଷ୍ଟି ହେଲା । ତେବେ ଏହି ନୂଆ ଜାତିର ସୃଷ୍ଟି ହେବାପରେ କ'ଣ ଜାତିର ପାହ୍ୟାରେ ଏପଟ ସେପଟ

କରାଗଲା ? ଯଦି ବିଜିତ କୁଳରୁ କେତେକଙ୍କୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ପାହ୍ୟାରେ ସ୍ଥାନ ମିଳିଲା, ବାକୀମାନଙ୍କୁ କ'ଣ ଶୂଦ୍ର ପାହ୍ୟାରେ ଭର୍ତ୍ତି କରିଦିଆଗଲା କି ? ଜାତି ସମାଜ ଆଧାରିତ ଅନୁକ୍ରମରେ ଏକ କର୍ମକାଣ୍ଡୀ ପାହ୍ୟା ଭାବରେ ସର୍ବଦା ବର୍ଣ୍ଣର ଲୋଡ଼ା ପଡ଼ିବ । ଯେହେତୁ ଶୂଦ୍ରମାନଙ୍କୁ ଅଧିକାଂଶ ବୈଦିକ ପୂଜା-ପର୍ବ ବା କର୍ମକାଣ୍ଡରେ ଅଂଶଗ୍ରହଣ କରିବାରୁ ବଞ୍ଚିତ କରାଗଲା, ସେମାନେ ତାଙ୍କର ନିଜର ପୂଜାପର୍ବମାନ ଆରମ୍ଭ କଲେ ଏବଂ ନିଜର ଦେବାଦେବୀଙ୍କୁ ପୂଜା କଲେ । କେବଳ ସମ୍ଭ୍ରାନ୍ତ ବର୍ଗର ଲୋକଙ୍କ ପାଇଁ ବୈଦିକ କର୍ମକାଣ୍ଡ ଧର୍ମର ସ୍ଥାନ ନେଲା ।

ସମାଜର ଏହି ଧରଣର ବିଭାଜନ ଯୋଗୁଁ ପରର ଶତାବ୍ଦୀମାନଙ୍କରେ ନୂତନ ସଂସ୍କୃତି ଏବଂ ନୂଆ ନୂଆ ଜନସମାଜକୁ ମୁଖ୍ୟ ଧାରାରେ ସାମିଲ କରିବା କାଠିକର ହେଲା ନାହିଁ । ନୂତନ ଲୋକସମୂହଗୁଡ଼ିକ ପ୍ରତ୍ୟେକ ପ୍ରାୟ ସ୍ୱତନ୍ତ୍ର ଜାତିର ଚରିତ୍ରକୁ ଆପଣାଇଲେ । ସେମାନଙ୍କୁ ଜାତି ଅନୁକ୍ରମରେ ସେମାନଙ୍କର ସାମାଜିକ ସ୍ଥିତି ଏବଂ ପେଶା ଆଧାରରେ ସ୍ଥାନ ଦିଆଗଲା । କେଉଁ କାରଣରୁ ସେମାନେ ଜାତି ବ୍ୟବସ୍ଥାରେ ସାମିଲ ହେଉଛନ୍ତି, ତାକୁ ମଧ ଅନୁକ୍ରମରେ ସ୍ଥାନ ପ୍ରଦାନ କଲାବେଳେ ଧ୍ୟାନ ଦିଆଗଲା । ଉଦାହରଣ ସ୍ୱରୂପ, ଯୁଦ୍ଧଜୟୀ ହୋଇ ଆସିଥିବା ଗୋଷ୍ଠୀ ଜାତି ଅନୁକ୍ରମର ଉପରେ ସ୍ଥାନ ହାସଲ କରିବ ଏବଂ ପରାଜିତ ତଳେ । ଏହି ପ୍ରକ୍ରିୟାରେ ଯେଉଁ ଗୋଷ୍ଠୀମାନେ ଜାତି ଅନୁକ୍ରମରେ ସାମିଲ ହେଲେ ତନ୍ମଧ୍ୟରେ ଥିଲେ ପଶୁଚାରକ ଏବଂ ବଣିକ ଗୋଷ୍ଠୀ, କୃଷକକୁଳ, ବାହାରୁ ଆସି ବସତି ସ୍ଥାପନ କରିଥିବା ଆକ୍ରମଣକାରୀ (ଯଥା- ହୂଣ), ବିଭିନ୍ନ କ୍ଷେତ୍ରରେ ଅଳ୍ପ ଅଳ୍ପ ସଂଖ୍ୟାରେ ରହୁଥିବା ବନବାସୀମାନେ ଏବଂ ଉପାନ୍ତରେ ରହୁଥିବା ଲୋକମାନେ । ଏହାକୁ ଏକ ରକମର 'ଧର୍ମାନ୍ତରଣ' ବୋଲି ମଧ ଆଖ୍ୟାୟିତ କରାଯାଇ ପାରିବ ।

ଏହି ସାମାଜିକ ବିଭାଜନର ମହତ୍ତ୍ୱକୁ ବ୍ରାହ୍ମଣମାନେ ଖୁବ୍‌ଶୀଘ୍ର ବୁଝିଗଲେ । ଛାମୁ ଜାତି ରୂପରେ ଗୋଟାକୁ କର୍ତ୍ତୃତ୍ୱ ମିଳିବ ବୋଲି ମଧ ସେମାନେ ଜାଣିପାରିଲେ । ତେଣୁ ସେମାନେ କର୍ମକାଣ୍ଡୀ ଶୁଦ୍ଧତା ଆଧାରରେ ଉଚ୍ଚତମ ପଦ ଦାବି କରିନେଲେ । ସେମାନେ ଆହୁରି ମଧ ଦାବି କଲେ ଯେ ରାଜତନ୍ତ୍ର ପାଇଁ ଲୋଡ଼ା ପଡୁଥିବା ଦେବୋପମ ଗୁଣରେ ସେମାନେ ହିଁ ଜଣକୁ ବିଭୂଷିତ କରିପାରିବେ ତଥା ବର୍ଣ୍ଣ ବିଭାଜନକୁ ଧାର୍ମିକ ମାନ୍ୟତା ଦେଇପାରିବେ । ଋଗ୍‌ବେଦର ଏକ ବହୁଚର୍ଚ୍ଚିତ ସ୍ତୋତ୍ର ଅଛି, ଯାହା ଜାତିର ଉଦ୍‌ଭବକୁ ପୌରାଣିକ ମାନ୍ୟତା ପ୍ରଦାନ କରେ । ଅବଶ୍ୟ ସ୍ତୋତ୍ରଟିକୁ ପରେ ଋଗ୍‌ବେଦରେ ଯୋଡ଼ାଯାଇଥିଲା ଭଳି ମନେହୁଏ । ସ୍ତୋତ୍ରଟି ହେଲା :

*ଯେତେବେଳେ ଦେବତାମାନେ ମଣିଷକୁ ବଳିଦେଇ ଯଜ୍ଞ କଲେ*
*ଯେତେବେଳେ ସେମାନେ ମଣିଷକୁ ଖଣ୍ଡ ଖଣ୍ଡ କଲେ.*
*ତେବେ କେତେ ଭାଗରେ ଖଣ୍ଡିତ କଲେ ?*
*କ'ଣ ଥିଲା ତା'ର ମୁହଁ, କ'ଣ ଥିଲା ତା'ର ଭୁଜା,*
*କ'ଣ ଥିଲା ତା'ର ଜଂଘ, କ'ଣ କୁହାଗଲା ତା'ର ପାଦକୁ ?*
*ବ୍ରାହ୍ମଣ ହେଲା ତା'ର ମୁହଁ, ତା'ର ଦୁଇ ଭୁଜାରୁ ଜନ୍ମ ନେଲେ ଯୋଦ୍ଧା ।*
*ଜଂଘରୁ ଜାତ ହେଲା ବୈଶ୍ୟ, ପାଦରୁ ଉତ୍ପନ୍ନ ଶୂଦ୍ର ।।*
*ଯଜ୍ଞ ସହିତ ଦେବତାମାନେ ଯଜ୍ଞକୁ ବଳି ଦେଲେ ।*
*ଏହା ଥିଲା ପ୍ରଥମ ପବିତ୍ର ନିୟମ ।*

*ଏହି ମହାନ ଶକ୍ତିମାନେ ସ୍ୱର୍ଗରେ ପହଞ୍ଚିଗଲେ, ଯେଉଁଠି ଚିରନ୍ତନ ଆତ୍ମାମାନେ, ଦେବଗଣ ବାସ କରନ୍ତି ।*

(Rig-Veda, 10-90, Tr. A.L. Basham, *The Wonder That Was India*, p.241)

ଜାତି ବ୍ୟବସ୍ଥାରେ ନିରନ୍ତରତା ଆଣିବାପାଇଁ ତାକୁ ବଂଶାନୁଗତ କରିଦିଆଗଲା, ବୃତ୍ତି ସହିତ ଯୋଡ଼ି ଦିଆଗଲା, ସହଭୋଜନକୁ ତହିଁରେ ବାରଣ କରାଗଲା । କେତେକ କ୍ଷେତ୍ରରେ ଗୋଷ୍ଠୀ ଭିତରେ ଓ ଅନ୍ୟ କେତେକ କ୍ଷେତ୍ରରେ ଗୋଷ୍ଠୀ ବାହାରେ ବିବାହକୁ ମାନ୍ୟତା ଦେବାଲାଗି ବିସ୍ତୃତ ନିୟମମାନ ତିଆରି କରାଗଲା ଏବଂ ବିବାହ କ୍ଷେତ୍ର ନିର୍ଦ୍ଧାରିତ କରାଗଲା । ସାମାଜିକ ନିୟନ୍ତ୍ରଣର ଏକ ରୂପ ଭାବରେ ଜାତିର ଆଧାର ଚାତୁର୍ବର୍ଣ୍ଣ ବିଭାଜନର କର୍ମକାଣ୍ଡୀ ପାଳନ ଉପରେ ନିର୍ଭର କରୁଥିଲା । ଜାତିଦ୍ୱାରା ଆରୋପିତ ଅନୁକ୍ରମ ମଧ୍ୟ ପାଳିତ ହେବା କଥା, ଅନ୍ୟଥା ଜାତି ବ୍ୟବସ୍ଥାର ନିରନ୍ତରତା କ୍ଷୁଣ୍ଣ ହେବ । ଏସବୁକୁ ବାଦ୍ ଦେଲେ, ଜାତି ସମ୍ବନ୍ଧ ଏବଂ ଜାତି ସାମଞ୍ଜସ୍ୟ ଭାରତୀୟ ସମାଜର ଦୈନନ୍ଦିନର କାର୍ଯ୍ୟକଳାପ ନିମିତ୍ତ ତଥା ବିଭିନ୍ନ ପ୍ରକାରର ଧାର୍ମିକ ସମୂହ ସକାଶେ ଖୁବ୍ ପ୍ରାସଙ୍ଗିକ ସିଦ୍ଧ ହେଲା । ଦ୍ୱିଜ ହିନ୍ଦୁର ଚିନ୍ତା ଥିଲା ବର୍ଣ୍ଣ, ମାତ୍ର ବୃହତ୍ ସମାଜ ପାଇଁ ମୌଳିକ ହେଲା ଜାତି । ଭାରତର ସର୍ବତ୍ର ଚତୁଃବର୍ଣ୍ଣ ବିଭାଜିତ ସମାନ ବ୍ୟବସ୍ଥାକୁ ସମାନ ଭାବରେ ପାଳନ କରାଯାଉ ନ ଥିଲା । ଜାତି ବଂଶାନୁଗତ ହେଲାପରେ ଏବଂ ବୃତ୍ତି ଓ ଜାତି ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ସ୍ଥାପିତ ହେଲାପରେ ଜାତି ଅନୁକ୍ରମରେ କେହି ନିଜେ ନିଜେ ଉପର ସ୍ତରକୁ ଉନ୍ନୀତ ହୋଇ ନ ପାରେ । ସମଗ୍ର ଜାତି ପାଇଁ ଅନୁକ୍ରମର ଉପର ସ୍ତରକୁ ଯିବା ସମ୍ଭବ ଥିଲା । ମାତ୍ର ତା' ପାଇଁ ପୂରା ଗୋଷ୍ଠୀକୁ ଏକଜୁଟ ହୋଇ ବସତି ଓ ବୃତ୍ତି ପରିବର୍ତ୍ତନ କରିବାର ଆବଶ୍ୟକତା ରହିଥିଲା ।

ବ୍ୟକ୍ତିଗତ ଭାବରେ କେହି ଜାତିବ୍ୟବସ୍ଥାର ପ୍ରତିବାଦ କରି ଜାତିକୁ ମାନୁ ନ ଥିବା କୌଣସି ସଂପ୍ରଦାୟରେ ସାମିଲ ହୋଇପାରୁଥିଲା, ଅଥବା ଜାତିର ଅବଧାରଣାକୁ ଅନ୍ତତଃ ପ୍ରଶ୍ନ କରିପାରୁଥିଲା । ଏହିସବୁ କଥା ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ପରଠାରୁ ଉଦ୍‌ଭବ ହେଲା ।

## ଏକ କର୍ମକାଣ୍ଡ ଓ ସାମାଜିକ ବିନିମୟ ରୂପରେ ଯଜ୍ଞ

ହରପ୍ପା ଲୋକେ ଲିପିର ବ୍ୟବହାର କରୁଥିଲେ ସତ । ମାତ୍ର ସେମାନଙ୍କ ସମୟରେ ଲେଖନ ପଦ୍ଧତି ବିକଶିତ ହୋଇପାରି ନ ଥିଲା । ସେଥିପାଇଁ ମୌଖିକ ସ୍ମୃତି ଓ ମୌଖିକ ଶିକ୍ଷା ଉପରେ ସେତେବେଳେ ଜୋର୍ ଦିଆଯାଉଥିଲା । ଋଗ୍‌ବେଦର ଏକ ସ୍ତୋତ୍ରରେ ଭାରି ମଜାଦାର ଢଙ୍ଗରେ ବ୍ରହ୍ମଚାରୀର ମନ୍ତ୍ରପାଠ କଥା କୁହାଯାଇଛି । ବ୍ରହ୍ମଚାରୀମାନେ ସେମାନଙ୍କ ଗୁରୁ ବା ବ୍ରାହ୍ମଣ କରୁଥିବା ମନ୍ତ୍ରପାଠକୁ ବର୍ଷାଋତୁର ବେଙ୍ଗ ଭଳି ଏକ ସ୍ୱରରେ ଦୋହରାନ୍ତି । କୌଣସି ବିଷୟକୁ କଣ୍ଠସ୍ଥ କରିବାର ପଦ୍ଧତି ସରଳ ନ ଥିଲା । ଉକ୍ତ ପଦ୍ଧତିକୁ ଏତେ ଅଧିକ ପରିଷ୍କାର କରାଯାଉଥିଲା ଯେ ମୂଳରଚନା ପ୍ରାୟ ଅପରିବର୍ତ୍ତନୀୟ ରହୁଥିଲା । ପ୍ରଥମ ସହସ୍ରାବ୍ଦୀର ମଧ୍ୟ-ସମୟ ପର୍ଯ୍ୟନ୍ତ ବ୍ରହ୍ମଚାରୀ ବା ଶିକ୍ଷାର୍ଥୀ ବ୍ୟବସ୍ଥା ସୁଦୃଢ଼ ହୋଇସାରିଥିଲା । ଗୁରୁଙ୍କ ଆଶ୍ରମରେ ବ୍ରହ୍ମଚାରୀକୁ ଅନେକ ବର୍ଷ ଧରି ରହିବାକୁ ପଡୁଥିଲା । ଯେତେବେଳେ ନଗରୀୟ ଜୀବନ ଆକର୍ଷଣୀୟ ହେଲା, ଜଣେ ଭଲ ଛାତ୍ର ତା' ପ୍ରତି ଆକୃଷ୍ଟ ନ ହେବା କଥା ବୋଲି ନିର୍ଦ୍ଦେଶ ଦିଆଗଲା । ସୈଦ୍ଧାନ୍ତିକ ରୂପରେ ସମସ୍ତ ଦ୍ୱିଜ ଜାତି ପାଇଁ ଶିକ୍ଷାର ଦ୍ୱାର ଉନ୍ମୁକ୍ତ ଥିଲା । ମାତ୍ର ଔପଚାରିକ ଶିକ୍ଷାର ପାଠ୍ୟକ୍ରମ ମୁଖ୍ୟ ରୂପରେ ବ୍ରାହ୍ମଣମାନଙ୍କ ପାଇଁ କେବଳ ଉପଯୋଗୀ ହେଉଥିଲା । ତେଣୁ ଅନ୍ୟ ଦ୍ୱିଜମାନେ ଏଭଳି ଶିକ୍ଷାରୁ ଦୂରରେ ରହୁଥିଲେ । ପାଠ୍ୟ ବିଷୟ ମଧ୍ୟରେ ଗଣିତ, ବ୍ୟାକରଣ ଏବଂ ଛନ୍ଦଶାସ୍ତ୍ର ଥିଲା ଅନ୍ୟତମ । କେତେକ ଋଗ୍‌ବେଦର ସ୍ତୋତ୍ରରେ କଥୋପକଥନର ଅଭ୍ୟାସକୁ ମଧ୍ୟ ପାଠ୍ୟ କରାଯାଇଥିଲା, ଯାହାକୁ ଆଦ୍ୟ ପର୍ଯ୍ୟାୟର ନାଟକ ବୋଲି ଆମେ କହିପାରିବା ।

ଇତିହାସର ଏହି ପର୍ଯ୍ୟାୟରେ କୌଣସି ବିଧି ବିଷୟକ ସଂସ୍ଥା ନ ଥିଲା । ରୀତି-ପରମ୍ପରାକୁ ହିଁ ବିଧିର ମାନ୍ୟତା ଦିଆଯାଉଥିଲା; ନିର୍ଣ୍ଣାୟକ ଥିଲେ ସର୍ଦ୍ଦାର ଅଥବା ରାଜା ଓ ପୁରୋହିତମାନେ । ସମ୍ଭବତଃ ଏହି ନୀତିନିର୍ଣ୍ଣାୟକମାନେ ସମାଜର ବୟୋଜ୍ୟେଷ୍ଠମାନଙ୍କ ସହିତ ପରାମର୍ଶ କରୁଥିଲେ । ଅତି ସାଧାରଣ ଅପରାଧ ଥିଲା ଚୋରି ଏବଂ ବିଶେଷକରି ପଶୁ ଚୋରି । ହତ୍ୟାର ଦଣ୍ଡ ସ୍ୱରୂପ କ୍ଷତିପୂରଣ ଦିଆଯାଉଥିଲା । ସାଧାରଣତଃ ଗୋଟାଏ ମଣିଷ ହତ୍ୟା ପାଇଁ ଶହେ ଗାଈ ଜୋରିମାନା ଦେବାକୁ ପଡୁଥିଲା । ମୃତ୍ୟୁଦଣ୍ଡ କଥା ଅନେକ

ପରେ ବିଧି ବ୍ୟବସ୍ଥାକୁ ଆସିଥିଲା । ବିଚାର ସମୟରେ କଠୋର ପରୀକ୍ଷା ଦେବାର ପରମ୍ପରା ଖୁବ୍ ପ୍ରଚଳିତ ଥିଲା । ଏହି ଧରଣର ଗୋଟାଏ ପରୀକ୍ଷାରେ ଅଭିଯୁକ୍ତକୁ ତା'ର ନିର୍ଦ୍ଦୋଷତାର ପ୍ରମାଣ ଦେବାପାଇଁ ନିଜ ଜିଭକୁ ଏକ ଉତ୍ତପ୍ତ କୁରାଢ଼ିର ଧାରରେ ରଖିବାକୁ ପଡୁଥିଲା । କାଳକ୍ରମେ ଉତ୍ତରାଧିକାରର ନିୟମମାନ ପ୍ରଣୟନ ହେଲା, କାରଣ କାହାକୁ ସମ୍ପତ୍ତି କୁହାଯିବ, ସେ ନେଇ ଅବଧାରଣାମାନ ବଦଳିଯିବାର ସମସ୍ୟା ସୃଷ୍ଟିହେଲା । ଦିନକୁଦିନ ବିଚାର ପ୍ରକ୍ରିୟାରେ ଜାତିର ମହତ୍ତ୍ୱ ବୃଦ୍ଧି ପାଇବାକୁ ଲାଗିଲା; ଉଚ୍ଚ ଜାତିର ଲୋକଙ୍କ ପାଇଁ ଦଣ୍ଡବିଧାନର ମାତ୍ରା କ୍ରମଶଃ ଊଣା ହେବାକୁ ଲାଗିଲା ।

ହରପ୍ପା ଲୋକେ ସମ୍ଭବତଃ କେତେକ ବସ୍ତୁକୁ ପବିତ୍ର ବୋଲି ମନେକରୁଥିଲେ । ସେହିଭଳି କେତେକ ବସ୍ତୁକୁ ଉର୍ବରତା ସହିତ ସେମାନେ ଯୋଡ଼ି ଦେଖୁଥିଲେ । ଉଦାହରଣ ସ୍ୱରୂପ, ନାରୀମୂର୍ତ୍ତି, ଷଣ୍ଢ, ଶିଙ୍ଘଧାରୀ ଦେବତା ଏବଂ ପିପଳ ଗଛକୁ ସେମାନେ ଉର୍ବରତାର ପ୍ରତୀକ ମନେକରୁଥିଲେ । ପରବର୍ତ୍ତୀ ସମୟରେ ଉପାସନାରେ ଏଗୁଡ଼ିକ ପୁଣିଥରେ ସ୍ଥାନ ପାଇଲେ । ଏହି କାରଣରୁ ଋଗ୍‌ବେଦରେ ଦାସକୁ ଭର୍ତ୍ସନା କରାଯାଏ, କାରଣ ସେ ଯଥୋଚିତ କର୍ମକାଣ୍ଡର ପାଳନ କରେନା; କେବଳ ଉର୍ବରତାର ପୂଜା କରେ । ବେଦ ଆଧାରିତ ବ୍ରାହ୍ମଣ ଧାର୍ମିକ ବିଶ୍ୱାସ ପଦ୍ଧତି ଏତେ ଅମୂର୍ତ୍ତ କିସମର ଥିଲା ଯେ କମ୍ ଲୋକ ହିଁ ତାକୁ ହୃଦୟଙ୍ଗମ କରିପାରୁଥିଲେ । ଏହାର ପ୍ରଭାବକୁ ପରବର୍ତ୍ତୀ ସମୟରେ ବିକଶିତ ହୋଇଥିବା ଦର୍ଶନରେ ଦେଖାଯାଇ ପାରିବ । ସେ ଯାହାହେଉ, ଅଧିକାଂଶ ଲୋକ ଧର୍ମ ଓ ଉପାସନାର ମୂର୍ତ୍ତରୂପକୁ ପସନ୍ଦ କରୁଥିଲେ । ବିଭିନ୍ନ ପ୍ରକାର କର୍ମକାଣ୍ଡରେ ଗୋଟାଏ ଅନୁକ୍ରମର ବିକାଶ ହେଲା । ଆଡ଼ମ୍ବରପୂର୍ଣ୍ଣ କର୍ମକାଣ୍ଡ ଖୁବ୍ ଖର୍ଚ୍ଚସାପେକ୍ଷ ଥିଲା । ସାଧାରଣ କର୍ମକାଣ୍ଡକୁ ଆବଶ୍ୟକ ଉପାଦାନଗୁଡ଼ିକରେ ସୀମିତ ରଖାଯାଉଥିଲା । କର୍ମକାଣ୍ଡର ବିସ୍ତାର ହେବାଫଳରେ ପୁରୋହିତମାନଙ୍କର ସଂଖ୍ୟା ବୃଦ୍ଧି ହେଲା । ବିଶେଷ କର୍ମକାଣ୍ଡର ସମ୍ପାଦନ ପାଇଁ ବିଶେଷଜ୍ଞ ପୁରୋହିତ ଲୋଡ଼ା ହେଲେ । ବୈଦିକ ସାହିତ୍ୟରେ ନିଜକୁ ଆର୍ଯ୍ୟ ଦାବି କରୁଥିବା ବର୍ଗର ପ୍ରାରମ୍ଭିକ ଅବସ୍ଥାର ଧର୍ମର ପ୍ରତିବିମ୍ବ ଦେଖିବାକୁ ମିଳେ । ପରେ ଏହା ହିନ୍ଦୁଧର୍ମକୁ ଖୁବ୍ ବଳଶାଳୀ କଲା । ମାତ୍ର ସେତେବେଳେ ଏହା ଏକ ସ୍ୱୟଂସମ୍ପୂର୍ଣ୍ଣ ଧର୍ମ ଥିଲା । ଅନ୍ୟ ଧର୍ମ ଆଚରଣର ସଂସ୍ପର୍ଶରେ ଆସିବା ଯୋଗୁଁ କେତେକ ବିଶ୍ୱାସ ଧର୍ମାଚରଣରେ ନିଶ୍ଚିତରୂପେ ପରିବର୍ତ୍ତନ ଆସିଥିବ । ବୈଦିକ ସାହିତ୍ୟଯାକ ସଂକଳିତ ହେବା ଉତ୍ତାରୁ କର୍ମକାଣ୍ଡଗୁଡ଼ିକର, ବିଶେଷକରି ବଡ଼ ବଡ଼ ଯଜ୍ଞର ପାଳନ ଅଧିକ ସୁଚାରୁରୂପେ କରାଯାଇଥିବ ବୋଲି ଅନୁମାନ କରିହୁଏ ।

ମିଥକ ବା କିମ୍ବଦନ୍ତୀଗୁଡ଼ିକର ନିରନ୍ତର ସୃଷ୍ଟି ହେଉଥିଲା; ସଂଶୋଧନ ବି ହେଉଥିଲା । ପରିବର୍ତ୍ତିତ ବିଶ୍ୱାସଗୁଡ଼ିକୁ ଜାଣିବା ସକାଶେ ମିଥକରୁ ହିଁ ଆଭାସ ମିଳୁଥିଲା । ଅନେକ ମିଥକରେ ଦେବ ଓ ଦାନବଙ୍କ ମଧ୍ୟରେ ସଂଘଟିତ ହୋଇଥିବା ଶତ୍ରୁତା ମୁଖ୍ୟ ପ୍ରସଙ୍ଗ ହେଉଥିଲା । 'ଆଭେସ୍ତା'ରୁ ଆରମ୍ଭକରି ଋଗ୍‌ବେଦର ରଚନାକାଳ ମଧ୍ୟରେ ଦେବ ଓ ଦାନବଙ୍କୁ ନେଇ ରହିଥିବା ଅବଧାରଣାରେ କେମିତି କ୍ରମଶଃ ପରିବର୍ତ୍ତନ ଆସିଲା, ତାହାକୁ ମିଥକରେ ସ୍ପଷ୍ଟ ଦେଖିହୁଏ । ସୋମଯଜ୍ଞ ଥିଲା ସେତେବେଳେ ଏକ ମହତ୍ତ୍ୱପୂର୍ଣ୍ଣ କର୍ମକାଣ୍ଡ । ତାକୁ ଭାରୋପୀୟ ଭାଷାଭାଷୀଙ୍କ ମଧ୍ୟରେ କେବଳ ଇରାନ ଓ ଭାରତରେ ଆୟୋଜନ କରାଯାଉଥିଲା । ସୋମବୃକ୍ଷରେ ଦେବତା ବିରାଜମାନ ବୋଲି ବିଶ୍ୱାସ ରହିଥିଲା । ତା' ସହିତ ଏକଥା ବି ଉଲ୍ଲେଖଥିଲା ଯେ ଏହା କେବଳ ପଶ୍ଚିମୋତ୍ତର ପାହାଡ଼ିଆ କ୍ଷେତ୍ରରେ ମିଳେ । ସୋମଗଛକୁ 'ଇଫେଡ୍ରା' ବୋଲି ମନେକରାଯାଉଥିଲା । ଆଜିକାଲି 'ଇଫେଡ୍ରା'ର ରସକୁ ଶ୍ୱାସରୋଗୀଙ୍କ ପାଇଁ ପ୍ରସ୍ତୁତ ହେଉଥିବା ଔଷଧରେ ବ୍ୟବହାର କରାଯାଏ । ମାତ୍ର ପରେ ଏକ ଛତୁ ଜାତୀୟ ଗଛକୁ ସୋମ ବୋଲି କୁହାଗଲା । ପୂଜା, ଅନୁଷ୍ଠାନ ଆଦି କର୍ମକାଣ୍ଡ ଅବସରରେ ସୋମର ରସ ବା ସୋମରସକୁ ପାନ କରାଯାଉଥିଲା । ସୋମରସ ପାନ କଲେ ମୁଣ୍ଡକୁ ନିଶା ଧରୁଥିଲା । ଋଗ୍‌ବେଦର ଏକ ପୂରା ମଣ୍ଡଳରେ ସୋମର ଚର୍ଚ୍ଚା ରହିଛି । ସମ୍ଭବତଃ ଚର୍ଚ୍ଚା ପଛରେ ଏକ ଜଟିଳ କିସମର ପ୍ରତୀକବାଦ ନିହିତ ଅଛି । ଉଭୟ ଇରାନ ଓ ଭାରତର କର୍ମକାଣ୍ଡଗୁଡ଼ିକରେ ଅଗ୍ନିପୂଜାର ବିଶେଷ ମହତ୍ତ୍ୱ ରହିଥିଲା । ଅନ୍ୟ ସ୍ଥାନରେ ବି ଅଗ୍ନିପୂଜାର ପରମ୍ପରା ରହିଥିଲା, ମାତ୍ର ଇରାନ ଓ ଭାରତରେ ଏହା ଥିଲା ଖୁବ୍ ଅଧିକ । ପ୍ରଥମେ ଯଜ୍ଞକୁଣ୍ଡ ଆକାରରେ ସାନ ଥିଲା ଏବଂ ତାକୁ ଘରେ ସ୍ଥାପିତ କରାଯାଉଥିଲା । ମାତ୍ର ପରେ ଏହାର ଆକାର ବୃଦ୍ଧି ପାଇଲା, କାରଣ କର୍ମକାଣ୍ଡର ସଂରଚନାର ଆକାର ମଧ୍ୟ ବିଶାଳ ହେଲା । ବିଶାଳ କର୍ମକାଣ୍ଡ ପାଇଁ ଘର ବାହାରେ ଯଜ୍ଞକୁଣ୍ଡ ନିର୍ମାଣ ହେଲା । ଏହି କାଳାଂଶରେ ଯଜ୍ଞବେଦୀ ନିର୍ମାଣରେ କଞ୍ଚାଇଟାର ବ୍ୟବହାର ହେଉଥିଲା । ସେହି କାରଣରୁ ଯଜ୍ଞ ପରେ ଇଟାର ଅବଶେଷ ବହୁଦିନ ପର୍ଯ୍ୟନ୍ତ ରହୁ ନଥିଲା । ଶତାବ୍ଦୀର ଆରମ୍ଭରେ ପୋଡ଼ାଇଟାରେ ତିଆରି ଯଜ୍ଞବେଦୀର ଅବଶେଷକୁ କାହିଁ କେଉଁଠି ଆଜି ବି ଦେଖାଯାଇ ପାରିବ । ଶୁଭଦିନ ଓ ଶୁଭମୁହୂର୍ତ୍ତରେ କର୍ମକାଣ୍ଡର ଶୁଭାରମ୍ଭ ହେଉଥିଲା । ଯଜ୍ଞର କର୍ତ୍ତା ବା ଯଜମାନଙ୍କୁ କର୍ମକାଣ୍ଡ ଅବଧି ସମୟରେ ଅଭିଷିକ୍ତ ବା ଶୁଦ୍ଧ କରାଯାଉଥିଲା । କର୍ମକାଣ୍ଡ ଆରମ୍ଭ ପୂର୍ବରୁ ଯଜ୍ଞସ୍ଥଳକୁ ପବିତ୍ର କରାଯାଉଥିଲା ଏବଂ କର୍ମକାଣ୍ଡ ସମାପ୍ତି ପରେ ତାକୁ ବି-ପବିତ୍ର (desanctified) କରାଯାଉଥିଲା । ଏହିଧରଣର ପୂଜା-ଉପାସନା ନିମନ୍ତେ କୌଣସି ସ୍ଥାୟୀ ସ୍ଥଳୀ ନ ଥିଲା । ଉଲ୍ଲିଖିତ ସମୟରେ ମୂର୍ତ୍ତିପୂଜାର ମଧ୍ୟ ପ୍ରଚଳନ ନ ଥିଲା ।

ଋଗ୍‌ବେଦରେ ଉଲ୍ଲେଖ ରହିଥିବା ଦେବୀ-ଦେବତାଙ୍କ ମଧ୍ୟରେ କେତେକ ମୂଳତଃ ଥିଲେ ଇଣ୍ଡୋ-ଇରାନୀ । ଉଦାହରଣ ସ୍ୱରୂପ, ମିତ୍ର ଓ ବରୁଣ । ପରବର୍ତ୍ତୀ ସମୟରେ ଏମାନଙ୍କର ସ୍ଥାନରେ ଆସିଲେ ଇନ୍ଦ୍ର ଓ ଅଗ୍ନି । ଇନ୍ଦ୍ର ଥିଲେ ଜଣେ 'ହିରୋ' ବା ଆଦର୍ଶ ବୀରନାୟକ । ସେ ଯୁଦ୍ଧରେ ପ୍ରବଳ ପ୍ରତାପୀ ଦାନବମାନଙ୍କୁ ଦଣ୍ଡିତ କରିବାରେ ସତତ ତତ୍ପର; ଦାସମାନଙ୍କର ଘରଦ୍ୱାର ଏବଂ ଗ୍ରାମକୁ ନାଶ କରିବା ପାଇଁ ଖୁବ୍ ଆଗ୍ରହୀ ଏବଂ ତାଙ୍କୁ ପ୍ରସନ୍ନ କରିପାରୁଥିବା ଭକ୍ତର ସହାୟତା ପାଇଁ ସର୍ବଦା ପ୍ରସ୍ତୁତ ରହୁଥିଲେ । ଶତ୍ରୁ ବିରୁଦ୍ଧରେ ତାଙ୍କର ସହାୟତା କାମନା କରାଯାଉଥିଲା । ସେ ଘଡ଼ଘଡ଼ି ଓ ବିଜୁଳିର ମଧ୍ୟ ଦେବତା ଥିଲେ; ବୃଷ୍ଟି ଦେବତା ଭାବରେ ସେ ସମାଜର ଏକ ମହତ୍ତ୍ୱପୂର୍ଣ୍ଣ ଆବଶ୍ୟକତା ପୂରଣ କରୁଥିଲେ । ଅଗ୍ନି ଥିଲେ ଅନ୍ୟ ଏକ ପ୍ରମୁଖ ଦେବତା । ଅଗ୍ନିର ଆବାହନ କରି କେତୋଟି ଉତ୍କୃଷ୍ଟ ଧରଣର ସ୍ତୋତ୍ର ରଚିତ ହୋଇଥିଲା । ବିବାହ ସଂସ୍କାର ଭଳି ଅନେକ ପାରିବାରିକ ସଂସ୍କାରର ନାଭିକେନ୍ଦ୍ର ଥିଲେ ଅଗ୍ନିଦେବ । ଅଗ୍ନିକୁ ପାଞ୍ଚଟି ତତ୍ତ୍ୱ ମଧ୍ୟରେ ଶୁଦ୍ଧତମ ମନେକରାଯାଉଥିଲା । ଦେବତା ଓ ମନୁଷ୍ୟ ମଧ୍ୟରେ ଏକ ଉପଯୁକ୍ତ ମାଧ୍ୟମ ରୂପରେ ତାଙ୍କୁ ଦେଖାଯାଉଥିଲା । ଅନ୍ୟ ଦେବାଦେବୀଙ୍କ ମଧ୍ୟରେ ସୂର୍ଯ୍ୟ, ସାବିତ୍ରୀ, ପୁଷନ ଓ ଯମ ଅନ୍ୟତମ ଥିଲେ । ସାବିତ୍ରୀ ହେଲେ ସୂର୍ଯ୍ୟ ଦେବୀ; ଗାୟତ୍ରୀ ମନ୍ତ୍ର ତାଙ୍କ ଉଦ୍ଦେଶ୍ୟରେ ବୋଲାଯାଏ । ଏମାନଙ୍କ ବ୍ୟତୀତ ବ୍ରହ୍ମାଣ୍ଡରେ ଅନେକ ଅଲୌକିକ ଶକ୍ତି ବାସ କରୁଥିଲେ । ଗନ୍ଧର୍ବ, ମରୁତ, ବିଶ୍ୱଦେବ ଥିଲେ ତନ୍ମଧ୍ୟରେ ଅନ୍ୟତମ । ଆବଶ୍ୟକ ସ୍ଥଳେ ଏମାନଙ୍କର ସଂଖ୍ୟା ବୃଦ୍ଧି ହୋଇପାରୁଥିଲା । ଯଜ୍ଞ ଉପାଦାନଗୁଡ଼ିକ ସମ୍ବନ୍ଧରେ ମଧ୍ୟ ସ୍ତୋତ୍ର ରଚନା କରାଯାଇଥିଲା । ଯଜ୍ଞବେଦୀ, ସୋମ ତରୁକୁ ପେଷିବା ପାଇଁ ବ୍ୟବହୃତ ହେଉଥିବ ଶିଳ, ହଳ, ଯୁଦ୍ଧାସ୍ତ୍ର, ଢୋଲ ଏବଂ ମୂଷଳ ଉଦ୍ଦେଶ୍ୟରେ ସ୍ତୋତ୍ର ରହିଥିଲା ।

ସେତେବେଳେ ପ୍ରମୁଖ କର୍ମକାଣ୍ଡ ଥିଲା ଯଜ୍ଞ । କିଛି ମାତ୍ରାରେ ନୈବେଦ୍ୟ ସହିତ ଗୁହ୍ୟ କର୍ମକାଣ୍ଡକୁ ପୂର୍ବବତ୍ କରାଯାଉଥିଲା । ପ୍ରଥମେ ଯଜ୍ଞ ଘରଯାଏଁ ସୀମିତ ଥିଲା । ଧୀରେ ଧୀରେ ଆକର୍ଷଣୀୟ କର୍ମକାଣ୍ଡଗୁଡ଼ିକୁ ପୃଷ୍ଟପୋଷକତା ମିଳିବା ଆରମ୍ଭ ହେଲା । ଏହି ଆକର୍ଷଣୀୟ କର୍ମକାଣ୍ଡର ଏକ ସାର୍ବଜନିକ ପ୍ରୟୋଜନ ରହିଥିଲା । ତହିଁରେ ଉଚ୍ଚ ଜାତିର ଲୋକ ଅଂଶଗ୍ରହଣ କରୁଥିଲେ । ଧାର୍ମିକ ସତ୍ତା ଏବଂ ସାଂସାରିକ ସତ୍ତା ମଧ୍ୟରେ ଚାଲିଥିବା ପ୍ରତିଯୋଗିତା ନିମନ୍ତେ ଯଜ୍ଞ ଏକ ମଞ୍ଚ ସଦୃଶ ହେଲା । ବିଦ୍ୱାନ୍‌ମାନଙ୍କ ମତ ଅନୁଯାୟୀ, ଧାର୍ମିକ ବିଶ୍ୱାସ ଅପେକ୍ଷା କର୍ମକାଣ୍ଡ ଆୟୋଜନ କରିବା ହେଲା ଅଧିକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ଧାର୍ମିକ ସିଦ୍ଧାନ୍ତ ତୁଳନାରେ ଧାର୍ମିକ ରୀତିନୀତିର ପାଳନ ଅଧିକ ପ୍ରମୁଖ ବୋଲି

କୁହାଗଲା । ଯଜ୍ଞ କର୍ମ କଲେ କୁଳ ଓ ବ୍ୟବସ୍ଥାର କଲ୍ୟାଣ ହୁଏ । ଏହି ଧରଣର ଅବଧାରଣାଗୁଡ଼ିକ ଯୋଗୁଁ ଅରକ୍ଷଣଶୀଳମାନେ (heterodox) ପରେ ସହଜରେ ଯଜ୍ଞର ଅବମୂଲ୍ୟାୟନ କରିବାକୁ ସୁବିଧା ପାଇଲେ । ଯଜ୍ଞରେ ପଶୁଧନ ବୃଦ୍ଧି, ଭଲ ଫସଲ ଆଦି ଘରୋଇ ସଂବୃଦ୍ଧି ପାଇଁ ତଥା ଯୁଦ୍ଧ ଓ ଲୁଣ୍ଠନରେ ସଫଳତା ପାଇଁ ଯାଚନା କରାଯାଉଥିଲା । ଦେବତାମାନେ ଯଜ୍ଞକର୍ତ୍ତାଙ୍କୁ ବର ପ୍ରଦାନ କରୁଥିଲେ ଏବଂ ଅଦୃଶ୍ୟ ରୂପରେ ଯଜ୍ଞସ୍ଥଳରେ ଉପସ୍ଥିତ ରହୁଥିଲେ ବୋଲି ବିଶ୍ୱାସ ରହିଥିଲା । ପାରିବାରିକ ସ୍ତରରେ ଆୟୋଜିତ ଯଜ୍ଞରେ ନୈବେଦ୍ୟ ସୀମିତ ପରିମାଣରେ ରହୁଥିଲା । ମାତ୍ର ସାର୍ବଜନିକ ଯଜ୍ଞକୁ ଏକ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଅବସର ମନେକରାଯାଉଥିଲା । ତା'ର ସମ୍ପାଦନ ଉତ୍ତାରୁ ଲୋକ ଫୁର୍ତ୍ତି ମନାଉଥିଲେ । ଯଜ୍ଞରେ ରାଜାଙ୍କୁ ମିଳିଥିବା ଭେଟି ଓ ଉପହାରରୁ ବଳିଥିବା ସାମଗ୍ରୀକୁ ରାଜା ପୁରୋହିତ ଏବଂ ଅନ୍ୟ ରାଜାମାନଙ୍କୁ ଦାନ-ଦପାନ କରୁଥିଲେ ।

କର୍ମକାଣ୍ଡର ବିସ୍ତାର ହେଲାପରେ ପୁରୋହିତର ଭୂମିକା ଅଧିକ ମହତ୍ତ୍ୱପୂର୍ଣ୍ଣ ସିଦ୍ଧ ହେଲା । ପୁରୋହିତକୁ ବ୍ରାହ୍ମଣ କୁହାଗଲା । ଅର୍ଥାତ୍ ବ୍ରହ୍ମାଙ୍କର ରହସ୍ୟମୟ ଓ ଅଲୌକିକ ଶକ୍ତିଯୁକ୍ତ ବ୍ୟକ୍ତି ହେଲା ବ୍ରାହ୍ମଣ । ଏକ ବିଶ୍ୱାସ ଅନୁସାରେ ଦେବତା, ପୁରୋହିତ ଏବଂ ବଳି, ତିନିହେଁ ଏକାକାର ହୋଇଯାଆନ୍ତି । ଦାନର ପ୍ରତିଦାନ ସର୍ବଦା ଅଧିକ ହୁଏ ବୋଲି ବିଶ୍ୱାସ ରହିଥିଲା । ଯଜ୍ଞ କର୍ମ ଦ୍ୱାରା ପୁରୋହିତର କର୍ତ୍ତୃତ୍ୱ ବୃଦ୍ଧି ପାଉଥିଲା, କାରଣ ପୁରୋହିତ ବିନା ଯଜ୍ଞ-କର୍ମ କରାଯାଇପାରୁ ନ ଥିଲା । ଯଜ୍ଞ-କର୍ମ ଯୋଗୁଁ ରାଜାଙ୍କର ପ୍ରତିପତ୍ତି ବି ବୃଦ୍ଧି ପାଉଥିଲା, କାରଣ ରାଜା ଥିଲେ ଯଜ୍ଞର ଖର୍ଚ୍ଚବହନକାରୀ ପୃଷ୍ଠପୋଷକ । ଯଜ୍ଞ ପାଇଁ ଆବଶ୍ୟକ ହେଉଥିବା ଅର୍ଥ ରାଜା ବିଶ (ପ୍ରଜା)ଠାରୁ ସଂଗ୍ରହ କରୁଥିଲେ । ଅର୍ଥାତ୍ ଉତ୍ପାଦନର କିଛି ଅଂଶ ଦେବାପାଇଁ ତାକୁ ବିଶ୍ ଉପରେ ଚାପ ଦେବାକୁ ପଡୁଥିଲା । ବିଶ୍ ଓ ଶୂଦ୍ର ଉପରେ ପ୍ରତିପତ୍ତି ଜାହିର କରିବା ନିମନ୍ତେ ଯଜ୍ଞ କ୍ଷତ୍ରିୟକୁ ସାହାଯ୍ୟ କଲା । ଏହି କାରଣରୁ 'ବିଶକୁ କ୍ଷତ୍ରିୟର ଭୋଜନ' ଓ 'କ୍ଷତ୍ରିୟ ବିଶ୍‌କୁ ଭକ୍ଷଣ କରେ' ବୋଲି କୁହାଯାଉଥିଲା । ଉତ୍ତର ବୈଦିକ ସାହିତ୍ୟରେ 'ରାଜା' ଓ 'ରାଜନ' ପରିବର୍ତ୍ତେ ବାରମ୍ବାର 'କ୍ଷତ୍ରିୟ'ର ଉଲ୍ଲେଖ ରହିଛି । କ୍ଷତ୍ରିୟର ମୂଳ ଶବ୍ଦ ହେଲା 'କ୍ଷତ୍ର' ବା ଶକ୍ତି । ସର୍ଦ୍ଦାର ଅଧିକ ଶକ୍ତି ଲାଭ କଲାପରେ ରାଜତନ୍ତ୍ରରେ ପରିଣତ ହେଲା ବୋଲି ଏଥିରୁ ବୁଝାପଡ଼େ ।

ସାର୍ବଜନିକ ଯଜ୍ଞ ଥିଲା ଏମିତି ଏକ ଅନୁଷ୍ଠାନ, ଯେଉଁଥିରେ ରାଜା ଧନ ସଂଗ୍ରହ କରୁଥିଲେ ଏବଂ କର୍ମକାଣ୍ଡ ମାଧ୍ୟମରେ ତାକୁ ପ୍ରଦର୍ଶନ କରୁଥିଲେ । ଯଜ୍ଞରେ ଏହି ଧନର ଉପଯୋଗ ହେଉଥିଲା ଏବଂ ଅବଶିଷ୍ଟାଂଶ ବିତରିତ ହେଉଥିଲା । କିଛି ଧନକୁ କର୍ମକାଣ୍ଡ

ଅନୁସାରେ ନଷ୍ଟ ମଧ୍ୟ କରାଯାଉଥିଲା । ନଷ୍ଟ କରିବା ଥିଲା ଧନ ପ୍ରଦର୍ଶନର ଏକ ସ୍ୱରୂପ । ଯଜ୍ଞର ପୃଷ୍ଠପୋଷକ ବା ଯଜମାନ ଥିଲେ ପ୍ରାୟ କ୍ଷେତ୍ରରେ ରାଜା । ଯଜ୍ଞ ଆୟୋଜକ ଏହି ରାଜାମାନେ ଯଜ୍ଞକୁ ଆଡ଼ମ୍ବରପୂର୍ଣ୍ଣ କରି ତଥା ଆହୁରି ଆହୁରି ଦାନ-ଦପାନ ଦେଇ ନିଜ ନିଜ ମଧ୍ୟରେ ପ୍ରତିଯୋଗିତା କରୁଥିଲେ । ଦାନର ଭାଗ ମିଳୁଥିଲା ସେହିମାନଙ୍କୁ ଯେଉଁମାନେ ରାଜାଙ୍କର ଭୂୟସୀ ପ୍ରଶଂସା କରୁଥିଲେ ଏବଂ ଯଜମାନଙ୍କର ଶକ୍ତି ଓ ମର୍ଯ୍ୟାଦା ପ୍ରତିଷ୍ଠା କରାଉଥିଲେ । ଏହାଦ୍ୱାରା ଅଧିକ ଧନପ୍ରାପ୍ତି ହେବ ବୋଲି ରହିଥିବା ରାଜାର ବିଶ୍ୱାସକୁ ସେମାନେ ଦ୍ୱିଗୁଣିତ କରୁଥିଲେ । ଯଜ୍ଞର ତୁଳନା 'ପଟଲୈଚ' (Potlatch) ମହାଭୋଜ ସହିତ କରାଯାଏ । ପାଟଲୈଚ ହେଲା ଉତ୍ତର ପ୍ରଶାନ୍ତ ତଟର ମୂଳ ଆମେରିକୀୟମାନଙ୍କର ଏକ ଭୋଜି । ଭୋଜି ପରେ ଏଥିରେ ସର୍ଦ୍ଦାର କେବଳ ଧନ ପ୍ରଦର୍ଶନ କରନ୍ତି ନାହିଁ, ତା' ସହିତ ପ୍ରାପ୍ତ ଧନକୁ ବିନଷ୍ଟ ମଧ୍ୟ କରନ୍ତି । ରାଜାଙ୍କଠାରୁ ମିଳୁଥିବା ଦାନ ବଳରେ ପୁରୋହିତ ବ୍ରାହ୍ମଣ ଖୁବ୍ ସଂବୃଦ୍ଧ ଓ ଶକ୍ତିଶାଳୀ ହେଲେ । ଯଜ୍ଞ ରାଜାଙ୍କୁ କେବଳ ଏକ ଆର୍ଥିକ ଶକ୍ତି ରୂପେ ଅଭିବୃଦ୍ଧି ଲାଭ କରିବାରୁ ବାରଣ କରୁଥିଲା । ଆର୍ଥିକ ଶକ୍ତି ସହିତ କର୍ମକାଣ୍ଡୀ ସ୍ୱୀକୃତି ଲାଭକରି ପ୍ରତିଷ୍ଠା ଅର୍ଜନ କରିବାରେ ଏହା ରାଜାଙ୍କୁ ସାହାଯ୍ୟ କରୁଥିଲା । ମାତ୍ର ରାଜତନ୍ତ୍ରର ପ୍ରତିଷ୍ଠା ସକାଶେ ଆର୍ଥିକ ଶକ୍ତିର ବି ପ୍ରୟୋଜନ ରହିଥିଲା । ଯେଉଁ ଧରଣର ରାଜ୍ୟର ଅବଧାରଣା ଜାତ ହୋଇଥିଲା, ତହିଁରେ ରାଜାଙ୍କୁ ଅନ୍ୟାନ୍ୟ କାର୍ଯ୍ୟ ସହିତ ଧନର ସଂଗ୍ରହ ଓ ବିତରଣ କରିବାକୁ ପଡୁଥିଲା । ଅର୍ଥାତ୍ ରାଜତନ୍ତ୍ରରେ ଆର୍ଥିକ ପ୍ରଶ୍ନ କଦାପି ଗୌଣ ନ ଥିଲା ।

ଯଜ୍ଞ ଆୟୋଜନ ପାଇଁ ରାଜାଙ୍କୁ ଅଧିକ ଧନ ସଂଗ୍ରହ କରିବାକୁ ପଡ଼ିବାରୁ ବିଶ୍ ଉପରେ ଦେୟ ଭାର ବୃଦ୍ଧି ପାଇଲା । ବିଶ୍ ଏହି ଦେୟକୁ ଆରମ୍ଭରେ ଭେଟି ଓ ବଳି ରୂପରେ ଯୋଗାଉଥିଲା । ବିଶ୍‌ଠାରୁ ଦେୟ ସଂଗ୍ରହ ପାଇଁ ରାଜାଙ୍କୁ ଏକ ପ୍ରାରମ୍ଭିକ କିସମର ପ୍ରଶାସନ ସୃଷ୍ଟି କରିବାକୁ ପଡ଼ିଥିବ ବୋଲି ଅନୁମାନ କରାଯାଏ । ଯେଉଁ ବିନ୍ଦୁରେ ଧନ ସଂଗ୍ରହ ହେବ ଏବଂ ବିଭିନ୍ନ କାର୍ଯ୍ୟ ପାଇଁ ବ୍ୟୟ ହେବ, ସେହି ବିନ୍ଦୁରେ ରାଜତନ୍ତ୍ର ରାଜନୈତିକ କର୍ତ୍ତୃତ୍ୱ ଜାହିର କରେ । କର୍ମକାଣ୍ଡୀ କର୍ତ୍ତୃତ୍ୱଠାରୁ ଏହା ଅଲଗା ଥିଲା । ମାତ୍ର ଏକଥା ବି ସତ ଯେ ରାଜତନ୍ତ୍ରର ଆବଶ୍ୟକୀୟ ପୂର୍ବ ସର୍ତ୍ତ ଭାବରେ ଯଜ୍ଞ ଅନୁଷ୍ଠାନ ଏକ ସ୍ଥାୟୀ ଚରିତ୍ର ହୋଇପାରି ନ ଥିଲା । ଥରେ ରାଜ୍ୟ ପ୍ରତିଷ୍ଠା ହେଲାପରେ ରାଜ୍ୟର ସୁଚାରୁ ପରିଚାଳନା ନିମନ୍ତେ ଧନର ଆହୁରି ଅନେକ ଆବଶ୍ୟକତା ଥିବା କଥା ଅନୁଭୂତ ହେଲା । ଗୋଟାଏ ସ୍ତରରେ କର୍ମକାଣ୍ଡକୁ ଏତେ ମହତ୍ତ୍ୱ ଦିଆଯିବ କଥା ନୁହେଁ ବୋଲି କୁହାଗଲା । ସେତେବେଳକୁ

ଲୌକିକ ଓ ଆଧ୍ୟାତ୍ମିକ ମଧ୍ୟରେ ରହିଥିବା ସମ୍ବନ୍ଧକୁ ନେଇ ନୂଆ ଅବଧାରଣା ସୃଷ୍ଟି ହୋଇସାରିଥିଲା । ଅନ୍ୟ ଏକ ସ୍ତରରେ ନଗରୀୟ ସଭ୍ୟତା ଉଦ୍‌ଭବ ହେବାର ଅବ୍ୟବହିତ ପୂର୍ବରୁ ମଧ୍ୟ ଗାଙ୍ଗେୟ ସମତଳରେ ବହୁଳ ଉତ୍ପାଦନ ଯୋଗୁଁ ରାଜା ଅଧିକ ଧନ ସଂଗ୍ରହ କଲେ ଏବଂ ସମାଜ ଓ ରାଜନୀତିରେ ଏକ ପରିବର୍ତ୍ତନ ଆଣିବା ପାଇଁ ଆର୍ଥିକ ସହଯୋଗ କଲେ । ଉତ୍ପାଦନର ପରିମାଣ ଏତେ ଅଧିକ ଥିଲା ଯେ, ସବୁତକ ସଂଗୃହିତ ଧନ କର୍ମକାଣ୍ଡରେ ବ୍ୟୟ ହୋଇପାରୁ ନ ଥିଲା । ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ଯେ, ଆରମ୍ଭିକ ସ୍ତରରେ କ୍ଷତ୍ରିୟମାନେ ହିଁ ଯଜ୍ଞର ପ୍ରୟୋଜନିୟତାକୁ ନେଇ ପ୍ରଶ୍ନ କରିଥିଲେ । ଏକଥା ଉପନିଷଦରେ ଉଲ୍ଲିଖିତ ଅଛି । ଯଜ୍ଞର ଯଜମାନ ଭାବରେ ସେମାନେ ଏହାର ବିଶେଷ ଆବଶ୍ୟକତା ନ ଥିବା କଥା ଅନୁଭବ କରିଥିବେ, କାରଣ ସେମାନେ ସେତେବେଳକୁ ସମାଜର ଧାର୍ମିକ ଆଚରଣ, ଦାର୍ଶନିକ ସିଦ୍ଧାନ୍ତ, ସାମାଜିକ ନୈତିକତା ଏବଂ ଆର୍ଥିକ କ୍ଷମତା ପ୍ରଶ୍ନକୁ ପ୍ରଭାବିତ କରିବା ସ୍ଥିତିରେ ପହଞ୍ଚି ସାରିଥିଲେ ।

ଯଜ୍ଞ-କର୍ମର କେତୋଟି ମହତ୍ତ୍ୱପୂର୍ଣ୍ଣ ଆନୁସଙ୍ଗିକ ପରିଣାମ ଦେଖିବାକୁ ମିଳିଲା । ବିସ୍ତୃତ ଯଜ୍ଞସ୍ଥଳର ସଠିକ ସୀମାଙ୍କନ ଏବଂ ଯଜ୍ଞ ପାଇଁ ଆବଶ୍ୟକ ସଂରଚନା ଓ ଉପାଦାନ ନିମନ୍ତେ ଉପଯୁକ୍ତ ମାପ ତଉଲର ଦରକାର ପଡୁଥିଲା । ଏହାର ଫଳସ୍ୱରୂପ ଗଣିତ ଜ୍ଞାନର ବିକାଶ ଦେଖିବାକୁ ମିଳିଲା । ଯଜ୍ଞକୁଣ୍ଡ ନିର୍ମାଣ ପାଇଁ ସଠିକ ସଂଖ୍ୟାର କଞ୍ଚା ଇଟା ଓ ଇଟାର ଆକାର ସ୍ଥିର କରିବାକୁ ପଡୁଥିଲା । ଏଥିରୁ ପ୍ରାଥମିକ ଜ୍ୟାମିତିର ଉପଯୋଗ ଆରମ୍ଭ ହେଲା । କୁହାଯାଏ ଯେ, ହରପ୍ପା ସଂସ୍କୃତିରୁ ଇଟାର ବ୍ୟବହାର ଓ ହିସାବର ପରମ୍ପରା ଆସିଥିବ । ଯଜ୍ଞ ପ୍ରାଙ୍ଗଣ ନିର୍ମାଣ କରିବାର କଳା ହରପ୍ପାରୁ ଆସିଥିବ । ଅସଲରେ ଋଗ୍‌ବେଦ ସମୟରେ କର୍ମକାଣ୍ଡ ପାଇଁ ଇଟା ନିର୍ମିତ ବିଶାଳ ଯଜ୍ଞସ୍ଥଳୀର ଦରକାର ପଡୁ ନ ଥିଲା । ଉତ୍ତର ବୈଦିକ ସଂସ୍କୃତିରେ ହିଁ ତା'ର ପ୍ରଚଳନ ଦେଖିବାକୁ ମିଳିଲା । ହରପ୍ପାର ଲୋକେ ନିର୍ମାଣରେ ଇଟାର ବ୍ୟବହାର କଲାବେଳେ ଉନ୍ନତ ଜ୍ଞାନର ପରାକାଷ୍ଠା ଦେଖାଇଥିଲେ । ଉକ୍ତ ଜ୍ଞାନ ଯଜ୍ଞବେଦୀ ନିର୍ମାଣ ଯାଏଁ କେବଳ ସୀମିତ ନ ଥିଲା । ଯଦି ସେହି ପରମ୍ପରା ଅବ୍ୟାହତ ରହିଥାନ୍ତା, ତାହେଲେ ଋଗ୍‌ବେଦ କାଳରେ ନ ହେଲା ନାହିଁ, ତା'ର ଉପଯୋଗ ଅନ୍ତତଃ ଉତ୍ତର-ବୈଦିକ କାଳରେ କରାଯାଇଥାନ୍ତା । କ୍ଷେତ୍ର-ମାପର ପଦ୍ଧତିର ପରବର୍ତ୍ତୀ ସମୟରେ ଜମି ଉପରେ କର ନିର୍ଦ୍ଧାରଣ କଲାବେଳେ ବ୍ୟବହାରରେ ଆସିଲା । ଅବଶ୍ୟ ପୁରୋହିତର କାର୍ଯ୍ୟରେ ଗଣନାର ଆବଶ୍ୟକତା ପଡୁଥିଲା । ପଞ୍ଜିକା ପ୍ରସ୍ତୁତି ପାଇଁ ଚନ୍ଦ୍ରମାର ଗତି ଓ ନକ୍ଷତ୍ରପୁଞ୍ଜର ଗତିକୁ ପର୍ଯ୍ୟବେକ୍ଷଣ କରାଗଲା । ଯଜ୍ଞରେ ପଶୁବଳି ଦିଆଯାଉଥିଲା ।

ତହିଁରୁ ପଶୁର ଶରୀର ବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ପ୍ରାପ୍ତ ହେଲା । ରୋଗ-ବିଜ୍ଞାନ (pathology) ବି ଜ୍ଞାନର ପରିସରକୁ ଆସିଲା । ମାତ୍ର ସାଙ୍ଗରେ ଏକଥା ବି ସତ ଯେ, ଚିକିତ୍ସକଙ୍କୁ ଆରମ୍ଭରେ ଅଶୁଦ୍ଧ (ଅପବିତ୍ର) ଓ କର୍ମକାଣ୍ଡରେ ଭାଗ ନେବାପାଇଁ ଅନୁପଯୁକ୍ତ ମନେକରାଯାଉଥିଲା ।

ମୃତକକୁ ହୁଏତ ମାଟି ଦିଆଯାଉଥିଲା, ନୋହିଲେ ଦାହ କରାଯାଉଥିଲା । ମାଟି ଦେବା ଥିଲା ପ୍ରାରମ୍ଭିକ ସଂସ୍କୃତି; ପରେ ତା' ସ୍ଥାନରେ ଦାହ ସଂସ୍କାରର ପ୍ରଚଳନ ହେଲା । ମାତ୍ର ଦାହ ସଂସ୍କାରର ବହୁଳ ପ୍ରଚଳନ ପରେ ସୁଦ୍ଧା କେତେକ ସଂପ୍ରଦାୟଙ୍କ ମଧ୍ୟରେ ମାଟି ଦେବା ସଂସ୍କାର ଅବ୍ୟାହତ ରହିଲା । ଦାହ ସଂସ୍କାରକୁ ମହତ୍ତ୍ୱ ମିଳିବା ପଛରେ ସମ୍ଭବତଃ କାରଣ ଥିଲା ନିଆଁରେ ଶୁଦ୍ଧିକରଣ । (ଦାହ ସଂସ୍କାର ଖୁବ୍ ବ୍ୟବହାରିକ, ମାତ୍ର ଶବ ପୋତାହେଲେ ଐତିହାସିକ ପାଇଁ ଖୁବ୍ ଉପଯୋଗୀ ହୁଏ, କାରଣ ଶ୍ମଶାନ ଓ ଶବ ସହିତ ରଖାହୋଇଥିବା ଅନ୍ୟାନ୍ୟ ସାମଗ୍ରୀ ତଥ୍ୟ-ସାମଗ୍ରୀର କାର୍ଯ୍ୟ କରେ । ଉପଦ୍ୱୀପର ମହାପାଷାଣ କବର (megalithic burial)ରୁ ପ୍ରାପ୍ତ ସାମଗ୍ରୀ ହେଲା ଏହାର ଉତ୍କୃଷ୍ଟ ପ୍ରମାଣ ।)

ମରଣୋପରାନ୍ତ ଜୀବନର କଳ୍ପନା ହୁଏତ ଦଣ୍ଡ ବା ପୁରସ୍କାରରେ କରାଯାଉଥିଲା । ଯିଏ ଦଣ୍ଡର ଯୋଗ୍ୟ ସେ 'ମାଟିଘର' (House of clay)କୁ ଯାଉଥିଲେ ଏବଂ ଯିଏ ପୁରସ୍କାରର ଯୋଗ୍ୟ (ଯେମିତି ବୀରପୁରୁଷ), ସେ ପିତୃସଂସାରକୁ (World of Fathers) ଯାଉଥିଲେ । ଉତ୍ତର ବୈଦିକ ସାହିତ୍ୟରେ ପୁନର୍ଜନ୍ମର ଅବଧାରଣାକୁ ନେଇ ସଂକେତ ମିଳେ । ଉଦାହରଣ ସ୍ୱରୂପ, ଆତ୍ମ ପୁଣି ବୃକ୍ଷଲତା ରୂପରେ ଜନ୍ମନିଏ ବୋଲି ଉଲ୍ଲେଖ ରହିଛି । ମାତ୍ର ଆରମ୍ଭରେ ଆତ୍ମାର ଦେହାନ୍ତରଣ ସମ୍ବନ୍ଧୀୟ କଳ୍ପନା ତହିଁରେ ସ୍ପଷ୍ଟ ରୂପରେ ନାହିଁ । ଉପନିଷଦରେ ଏହାର ବାରମ୍ବାର ଉଲ୍ଲେଖ ରହିଛି ଏବଂ ଶେଷରେ ଏକ ସିଦ୍ଧାନ୍ତ ରୂପରେ ଏହାକୁ ଅଭିବ୍ୟକ୍ତ କରାଯାଇଛି । ଏହି ସିଦ୍ଧାନ୍ତ ଅନୁଯାୟୀ, କର୍ମ ଅନୁସାରେ ଆତ୍ମା ସୁଖମୟ ଅଥବା ଦୁଃଖମୟ ସ୍ଥିତିରେ ପୁନର୍ଜନ୍ମ ଲାଭ କରେ । ଏହା କର୍ମ ଓ ସଂସାର (ପୁନର୍ଜନ୍ମ) ସିଦ୍ଧାନ୍ତ ରୂପରେ ବିକଶିତ ହେଲା, ଯାହାର ଆଜି ମଧ୍ୟ ଭାରତୀୟ ବିଚାରରେ ଖୁବ୍ ପ୍ରଭାବ ରହିଛି ।

ବିଚାରବନ୍ତ ବ୍ରାହ୍ମଣମାନେ ଯଜ୍ଞର ମହତ୍ତ୍ୱକୁ ନେଇ ପ୍ରଶ୍ନର ଆଭାସ ଦେଇଥିଲେ । ତାକୁ କ୍ଷତ୍ରିୟମାନେ ଅଧିକ ଗାମ୍ଭୀର୍ଯ୍ୟର ସହ ପ୍ରଶ୍ନ କରିବା ଆରମ୍ଭ କଲେ । ଏଥିରୁ ବିକଳ୍ପ ବିଚାର ଜନ୍ମ ନେଲା । ଗୋଟାଏ ବିକଳ୍ପ ବିଚାର ଅନୁଯାୟୀ, ଆତ୍ମାର ଉଦ୍ଦେଶ୍ୟ ହେଲା ପରମାତ୍ମା ସହିତ ବିଲୀନ ହେବା । ପରମାତ୍ମା ସହିତ ସମାହିତ ହେବାପାଇଁ ଆତ୍ମାକୁ ପୁନର୍ଜନ୍ମର

ଅନେକ ଚକ୍ର ଦେଇ ଯିବାକୁ ପଡ଼ିପାରେ । ତେଣୁ ଯଜ୍ଞ କର୍ମକାଣ୍ଡରୁ ଅବ୍ୟାହତି ନେବାକୁ ପ୍ରୟାସ କରି ରାଜା ଆଶ୍ୱସ୍ତି ଲାଭ କରିପାରେ । ମାତ୍ର ଏହି ବିଚାର ଶୀଘ୍ର କର୍ମ ଓ ସଂସାରର ବିଚାର ଦ୍ୱାରା କବଳିତ ହୋଇପଡ଼ିଲା । ପୁନର୍ଜନ୍ମ ନେଇଥିବା ଜୀବନରେ ଗୁଣବତ୍ତାର ମାନଦଣ୍ଡ ଥିଲା ଜାତି ଓ ଜାତି ଅନୁକ୍ରମର ପାଳନ କରିବା । ତେଣୁ 'ଛାନ୍ଦୋଗ୍ୟ ଉପନିଷଦ'ରେ କୁହାଯାଇଛି :

*''ଯେଉଁମାନଙ୍କର ଆଚରଣ ଉତ୍ତମ, ସେମାନେ ଶୀଘ୍ର ଉତ୍ତମ ଜନ୍ମଲାଭ କରିବେ– ବ୍ରାହ୍ମଣ ଜନ୍ମ, କ୍ଷତ୍ରିୟ ଜନ୍ମ ଏବଂ ବୈଶ୍ୟ ଜନ୍ମ । ମାତ୍ର ଯେଉଁମାନଙ୍କର ଆଚରଣ ମନ୍ଦ, ସେମାନେ ଶୀଘ୍ର ମନ୍ଦ ଜନ୍ମ ଲାଭ କରିବେ– ଶ୍ୱାନର ଜନ୍ମ, ଘୁଷୁରିର ଜନ୍ମ ଏବଂ ଚଣ୍ଡାଳର ଜନ୍ମ ।''* (Chandogya Upanishad, 5.10.7, Tr. S. Radhakrishnan)

କର୍ମର ସିଦ୍ଧାନ୍ତକୁ ଧର୍ମ ଅର୍ଥାତ୍ ସାମାଜିକ ଏବଂ ଧାର୍ମିକ କର୍ତ୍ତବ୍ୟର ବୃହତ୍ତର କଳ୍ପନା ମଧ୍ୟରେ ବ୍ୟବସ୍ଥିତ ରୂପ ପ୍ରଦାନ କରାଗଲା । ରକ୍ଷଣଶୀଳ ସନାତନୀ ଦୃଷ୍ଟିକୋଣରୁ ଏହାର ଅର୍ଥ ହେଲା ସାମାଜିକ ବ୍ୟବସ୍ଥାର ଅନୁରକ୍ଷଣ । ଅର୍ଥାତ୍ ବର୍ଣ୍ଣଭେଦର ପାଳନ ।

ସୃଷ୍ଟି ତଥା ତା'ର ଉଦ୍‌ଭବ ସମ୍ବନ୍ଧରେ ଅନେକ ରହସ୍ୟବାଦୀ ଅବଧାରଣା ଦିଆଗଲା । ଗୋଟାଏ ଅବଧାରଣା ଅନୁଯାୟୀ ସୃଷ୍ଟିର ଉଦ୍‌ଭବ ହେଲା ଏକ ବିରାଟ ବ୍ରହ୍ମାଣ୍ଡୀୟ ଯଜ୍ଞରୁ ଏବଂ ଯଜ୍ଞର ଉଚିତ ସମ୍ପାଦନ ବଳରେ ହିଁ ଏହାର ଅନୁରକ୍ଷଣ ହୋଇପାରିଲା; କିନ୍ତୁ ଏହି ଧାରଣାକୁ ସର୍ବତୋ ସ୍ୱୀକାର କରାଯାଇ ନ ଥିଲା । ସୃଷ୍ଟି ସ୍ତୋତ୍ର ନାମକ ସ୍ତୋତ୍ରରୁ ଏହାର ପ୍ରମାଣ ମିଳେ । ଉକ୍ତ ସ୍ତୋତ୍ରରେ ସୃଷ୍ଟି ସମ୍ବନ୍ଧୀୟ ପ୍ରତ୍ୟେକ ଧାରଣାକୁ ସନ୍ଦେହାତ୍ମକ ବୋଲି ଅଭିହିତ କରାଯାଇଛି । ସୃଷ୍ଟିର ଉଦ୍‌ଭବ ଶୂନ୍ୟରୁ ବୋଲି ଏଥିରେ ବର୍ଣ୍ଣନା ରହିଛି । ସ୍ତୋତ୍ରଟିକୁ ନିମ୍ନରେ ଉଦ୍ଧୃତ କରାଗଲା ।

*''ସେତେବେଳେ ଶୂନ୍ୟ ବି ନ ଥିଲା, ଅସ୍ତିତ୍ୱ ବି ନ ଥିଲା । ସେତେବେଳେ ବାୟୁ ନ ଥିଲା, ନା ଥିଲା ତା' ଉପରର ଆକାଶ । ତାହେଲେ ତାକୁ କିଏ ଘୋଡ଼ି ରଖିଥିଲା ? କେଉଁଠି ଥିଲା ସେ ? କାହା ଅନୁରକ୍ଷଣରେ ? ସେତେବେଳେ କ'ଣ ବ୍ରହ୍ମାଣ୍ଡୀୟ ଜଳ ଥିଲା ଅତଳ ଗଭୀରରେ ? ମାତ୍ର କାହାକୁ ଜଣା, କିଏ କହିପାରିବ କେଉଁଠାରୁ ଏସବୁ ଆସିଲା, କେମିତି ରଚନା ହେଲା ସୃଷ୍ଟିର ? ସ୍ୱୟଂ ଦେବତା ବି ସୃଷ୍ଟ ହେଲେ ସୃଷ୍ଟି ପରେ । ତେବେ କିଏ ଜାଣେ ପ୍ରକୃତରେ କେଉଁଠୁ ଆସିଲା ସୃଷ୍ଟି ?''*

(Rig Veda, 10.129, Tr. A.L. Basham, *The Wonder That Was India*, p.277)

ସୃଷ୍ଟି ସ୍ତୋତ୍ରରେ ବ୍ୟକ୍ତ ହୋଇଥିବା ସନ୍ଦେହକୁ ଏକ ବ୍ୟାପକ ଭାବନାର ଲକ୍ଷଣ ରୂପରେ ଦେଖାଯାଇ ପାରିବ । ଏଣିକି ସ୍ଥାନୀୟ ସ୍ତରରେ ବ୍ୟାପ୍ତ ବିଶ୍ୱାସ ଓ ରୀତିନୀତିକୁ ବୈଦିକ ଧର୍ମାଚରଣରେ ସାମିଲ କରିବାର ପରମ୍ପରା ସୃଷ୍ଟି ହେଲା । ଫଳରେ ଯେଉଁ ମିଶ୍ରିତ ଅବଧାରଣାର ଜନ୍ମ ହେଲା, ତାକୁ ବିବିଧ ସୂତ୍ର ସାମଗ୍ରୀର ସମାଗମ କୁହାଯିବ । 'ଶୁଦ୍ଧ ପରମ୍ପରା' ନାମରେ ତାକୁ ଅଭିହିତ କରିବା ଠିକ୍ ହେବନାହିଁ । କେତେକ ଯୁକ୍ତି କରନ୍ତି ଯେ, ଉପନିଷଦର ଅବଧାରଣା ଏବଂ ସନ୍ୟାସର ବିଚାର କୌଣସି ଗୋଟାଏ ବ୍ରାହ୍ମଣ୍ୟ ପରମ୍ପରାରୁ ଆସିନାହିଁ । ବରଂ ସେତେବେଳେ ଭାରତରେ ଥିବା ନାନା କିସମର ଗୋଷ୍ଠୀ ଓ ସଂପ୍ରଦାୟର ବିଚାରରୁ ଏହା ଆସିଛି । ଏହି ଯୁକ୍ତିରେ ସତ୍ୟତା ରହିଛି ବୋଲି ମନେହୁଏ । ମାତ୍ର ଉକ୍ତ ଅବଧାରଣା ଓ ବିଚାର ପଛରେ ରହିଥିବା ବାସ୍ତବିକ ପରିସ୍ଥିତି ଉପରେ ଦୃଷ୍ଟିପାତ କରିବା ଅଧିକ ଯୁକ୍ତିସଙ୍ଗତ ହେବ, କାରଣ ସମାଜର ବିଭିନ୍ନ ବର୍ଗ ଉକ୍ତ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ । ସଂସାରର ତୀବ୍ର ପରିବର୍ତ୍ତନରେ ବିସ୍ମିତ ହୋଇ ସେମାନେ ନାନା ପ୍ରଶ୍ନ କରୁଥିଲେ ଓ ତା'ର ଉତ୍ତର ଖୋଜୁଥିଲେ, ଯାହା ନୂତନ ଅବଧାରଣା ଓ ବିଚାରକୁ ଜନ୍ମ ଦେଉଥିଲା ।

ସାମାଜିକ ଓ ସାଂସାରିକ ପରିବର୍ତ୍ତନ କେତେକଙ୍କ ମନରେ ସନ୍ୟାସ ବିଚାର ଦେଲା । ଫଳରେ ସେମାନେ ଗୋଷ୍ଠୀରୁ ବାହାରି ଜଙ୍ଗଲରେ ଏକାନ୍ତବାସ କଲେ ଅଥବା ଜନବସତିପୂର୍ଣ୍ଣ କ୍ଷେତ୍ରରୁ ଅଲଗା ହୋଇ ଛୋଟ ଛୋଟ ଗୋଷ୍ଠୀରେ ଯାଇ ରହିଲେ । ସନ୍ୟାସ ପଛରେ ଦୁଇ କିସମର ପ୍ରୟୋଜନ ରହିଥାଇପାରେ । ହୁଏତ ଭୌତିକ ଶରୀର ଉପରେ ଅସାମାନ୍ୟ ନିୟନ୍ତ୍ରଣ ପ୍ରାପ୍ତ କରି ଅସାଧାରଣ ଶକ୍ତିର ଅଧିକାରୀ ହେବା, ଯେମିତି ଯୋଗ ଓ ଧ୍ୟାନ ବଳରେ କରାଯାଏ । ଅଥବା ନୀତିନିୟମରେ ବନ୍ଧା ସମାଜରୁ ଶାରୀରିକ ରୂପରେ ପୃଥକ୍ ହୋଇ ସାଂସାରିକ ବନ୍ଧନରୁ ମୁକ୍ତ ହେବା । ଏହାର ପ୍ରମାଣ ହେଲା ଯେ, ଯୁବାବସ୍ଥାରେ କାହାରି ସନ୍ୟାସ ନେବା ଅର୍ଥ ବୈଦିକ କର୍ମକାଣ୍ଡ ତଥା ଆଚାର-ବିଷୟକ ପାଠରୁ ନିବୃତ୍ତ ହେବା ହୋଇଯାଏ ।

ସନ୍ୟାସ ପଛରେ ଉଦ୍ଦେଶ୍ୟ ନ ଥିଲା ସାମାଜିକ ଦାୟିତ୍ୱରୁ ମୁକ୍ତି ପାଇବା କିମ୍ବା ଜୀବନକୁ ଏକ ନକାରାତ୍ମକ ଦର୍ଶନର ଶରଣାଗତ କରିବା । ବରଂ ସନ୍ୟାସୀ ଏକ ବୈକଳ୍ପିକ ଜୀବନ-ଶୈଳୀ ପାଇଁ ପଥ ଅନ୍ୱେଷଣ କରୁଥିଲେ । ତାହା ଏଭଳି ଏକ ଜୀବନଶୈଳୀ ଥିଲା, ଯାହା ଏକ ନୂତନ ଦର୍ଶନ ଆଧାରିତ ଥିଲା ତଥା ପ୍ରଚଳିତ ଆଚାର ବିଚାରଠାରୁ ଭିନ୍ନ ଥିଲା । ଭାରତୀୟ ଇତିହାସର ବିଭିନ୍ନ ଘଟଣା ଓ ପରିସ୍ଥିତିରେ ଏଭଳି ଏକ ସମ୍ଭାବନାର ପ୍ରଭାବ ଅନେକଥର ଦେଖିବାକୁ ମିଳିଛି । ଏହାକୁ କେବେ କେବେ ନିଷ୍କ୍ରିୟ ଆଧ୍ୟାତ୍ମ ବୋଲି

କୁହାଯାଇଛି । ମାତ୍ର ବାସ୍ତବିକତା ହେଲା ଯେ, ଅନେକ ଅବସରରେ ଏହା ଭାରତୀୟ ସମାଜକୁ ଏକ ବୈପ୍ଳବିକ ମୋଡ଼ ଦେବାରେ ବା ଅତିକମ୍‌ରେ ଏକ ବୈପ୍ଳବିକ ବିଚାର ତଥା ବ୍ୟବହାର ପାଇଁ ସ୍ଥାନ ସୃଷ୍ଟି କରିବାରେ ସହାୟକ ସିଦ୍ଧ ହେଲା । ସନ୍ୟାସରେ ସାମାଜିକ ଦାୟିତ୍ୱ ତ୍ୟାଗ କରିବା କଥା ନିହିତ ଥାଏ । ଏହା ଏକପ୍ରକାର ପ୍ରତି-ସଂସ୍କୃତିକୁ ପ୍ରୋତ୍ସାହିତ କଲା । ଫଳରେ ସନ୍ୟାସ ଭାରତରେ ଧାର୍ମିକ ଏବଂ ସାମାଜିକ ଚିନ୍ତନର ଏକ ସ୍ୱୀକୃତ ଧାରା ହେଲା । ପ୍ରତ୍ୟେକ କ୍ଷେତ୍ରରେ ନ ହେଲେ ବି କେତେକ କ୍ଷେତ୍ରରେ ଭାରତୀୟ ସନ୍ୟାସବାଦ ପଛରେ ଏକ ସାମାଜିକ ଓ ରାଜନୈତିକ ଦିଗକୁ ଦେଖିହୁଏ । ତାକୁ କେବଳ ଜୀବନର ଏକ ନକାରାତ୍ମକ ଇଚ୍ଛା କହି ଅଣଦେଖା କରିବା ଉଚିତ ହେବ ନାହିଁ ।

ଆମର ଧାରଣା ଯେ ସନ୍ୟାସୀମାନେ ସର୍ବଦା ନିରୋଳାରେ ଜଙ୍ଗଲରେ ଅଥବା ପର୍ବତ ଶିଖରରେ ରହୁଥିଲେ । ଏହା ଭ୍ରମାତ୍ମକ ଧାରଣା । କେତେକ ସନ୍ୟାସୀ ନିଜ ସମୁଦାୟକୁ ଫେରି ସାମାଜିକ ଓ ଧାର୍ମିକ ରୀତିନୀତିଗୁଡ଼ିକୁ ପାଳନ ନ କରିବାପାଇଁ ଲୋକଙ୍କୁ ପ୍ରୋତ୍ସାହିତ କରୁଥିଲେ । ସେମାନଙ୍କର ଫେରିବା ଥିଲା ସମାଜ ପାଇଁ ଏକ ରକମର ବିପଦ । ଆଚାର ସମ୍ବନ୍ଧୀୟ ପାଠରେ ସନ୍ୟାସକୁ ଜୀବନର ଏକ ପର୍ଯ୍ୟାୟ ଭାବରେ ଦେଖାଯାଇଥିଲା । ସେହି ହିସାବରେ ବ୍ୟକ୍ତିର ଜୀବନକୁ ଚାରୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ପର୍ଯ୍ୟାୟକୁ ଆଶ୍ରମ କୁହାଯାଉଥିଲା । ପ୍ରଥମେ ବ୍ୟକ୍ତିକୁ ବ୍ରହ୍ମଚାରୀ ବା ବିଦ୍ୟାର୍ଥୀ, ଦ୍ୱିତୀୟ ପର୍ଯ୍ୟାୟରେ ଗୃହସ୍ଥ, ତୃତୀୟ ପର୍ଯ୍ୟାୟରେ ବାନପ୍ରସ୍ଥ ଏବଂ ଚତୁର୍ଥ ବା ଶେଷ ପର୍ଯ୍ୟାୟରେ ସନ୍ୟାସ ଆଶ୍ରମରେ ରହିବା କଥା ବୋଲି ଉପଦେଶ ଦିଆଯାଇଥିଲା । ସନ୍ୟାସକୁ ଜୀବନର ଚତୁର୍ଥ ପର୍ଯ୍ୟାୟରେ ରଖାଯାଇଥିଲା, କାରଣ ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟକୁ ପ୍ରାଥମିକତା ମିଳିବା କଥା । କହିବା ବାହୁଲ୍ୟ ଯେ, ଏହି କିସମର ଆଶ୍ରମିକ ଜୀବନ କେବଳ ଉପର ଜାତିରେ ପାଳିତ ହେବାର ସମ୍ଭାବନା ଥିଲା । ଅନ୍ୟ ଶବ୍ଦରେ କହିଲେ, ଏହା କେବଳ ଏକ ଆଦର୍ଶ ରୂପରେ ସିଦ୍ଧାନ୍ତରେ ରହିଥିଲା । ସବୁଠାରୁ ବଡ଼ କଥା, ସିଦ୍ଧାନ୍ତ ରୂପରେ ମଧ୍ୟ ଏଭଳି ଏକ ଜୀବନଚର୍ଯ୍ୟା କେବଳ ପୁରୁଷ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

କେତେକ ସନ୍ୟାସୀ ଓ ରାଜା ନିରନ୍ତର ମୌଳିକ ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜୁଥିଲେ । ଏକଥା ଉପନିଷଦରୁ ଜଣାଯାଏ । ସୃଷ୍ଟି ହେଲା କେମିତି ? କ'ଣ ଏକ ବ୍ରହ୍ମାଣ୍ଡୀୟ ପ୍ରଜନନ କ୍ରିୟାରୁ ସୃଷ୍ଟିର ଉଦ୍‌ଭବ ହେଲା ? କ'ଣ ଉତ୍ତାପରୁ ଏହା ଜାତ ହେଲା ? କ'ଣ ସନ୍ୟାସରୁ ଏହା ଜାତ ହେଲା ? ଆତ୍ମା ବୋଲି କିଛି ଅଛି କି ? କ'ଣ ସେ ଆତ୍ମା ? ଆତ୍ମା ଓ ପରମାତ୍ମା ମଧ୍ୟରେ କ'ଣ ବା ସମ୍ବନ୍ଧ ? ଏବଂ ଶେଷରେ ଆତ୍ମାର ପରିଭାଷା କ'ଣ ?

ନିମ୍ନୋକ୍ତ ସ୍ତୋତ୍ରରେ ଏହାର ଅବତାରଣା ରହିଛି :

*"ବଟ ବୃକ୍ଷର ଏକ ଫଳ ଆଣ ।"*

*"ହଁ, ଆଣିଲି ଆର୍ଯ୍ୟ ।"*

*"ତାକୁ ଭାଙ୍ଗିଦିଅ ।"*

*"ହଁ, ଭାଙ୍ଗିଲି ଆର୍ଯ୍ୟ ।"*

*"କ'ଣ ଦେଖୁଛ ତହିଁରେ ?"*

*"ଅସଂଖ୍ୟ ସାନ ସାନ ବୀଜ, ଆର୍ଯ୍ୟ ।"*

*"ଗୋଟାଏ ବୀଜକୁ ଭାଙ୍ଗ ।"*

*"ଭାଙ୍ଗିଲି, ଆର୍ଯ୍ୟ ।"*

*"ଏବେ କ'ଣ ଦେଖୁଛ ?"*

*"କିଛି ନାହିଁ, ଆର୍ଯ୍ୟ ।"*

*"ଆୟୁଷ୍ମାନ, ତୁମେ ଯାହା ଦେଖିପାରୁନ, ତାହା ହେଲା ସାରତତ୍ତ୍ୱ ଏବଂ ସେହି ସାରତତ୍ତ୍ୱରେ ବଟ ବୃକ୍ଷର ଅସ୍ତିତ୍ୱ ବିଦ୍ୟମାନ ଅଛି । ବିଶ୍ୱାସ ରଖ ଆର୍ଯ୍ୟ, ସେହି ସାରତତ୍ତ୍ୱ ମଧ୍ୟରେ ଯାହା ରହିଛି, ତାହା ହେଲା ବଟବୃକ୍ଷର ଆତ୍ମା । ତାହାହିଁ ସତ୍ୟ, ତାହାହିଁ ଆତ୍ମା ଏବଂ ତୁମେ ହେଲ ସେହି ଆତ୍ମା, ଶ୍ୱେତକେତୁ ।"*

(Chandogya Upanishad, 6.13, Tr. A.L. Basham, *The Wonder That Was India*, p.250)

ଖ୍ରୀଷ୍ଟପୂର୍ବ 1200 ରୁ 600 ର ମଧ୍ୟକାଳକୁ ସାମାନ୍ୟତଃ ବୈଦିକ ଯୁଗର ସ୍ୱର୍ଣ୍ଣଯୁଗ କୁହାଯାଏ । ଏହିପ୍ରକାର ଅବଧାରଣା ପଛରେ ଗୋଟାଏ ଧରଣର ଐତିହାସିକ ତଥ୍ୟ-ପ୍ରମାଣ ଓ ଗୋଟାଏ କିସମର ବ୍ୟାଖ୍ୟାକୁ ଅଯାଚିତ ମହତ୍ତ୍ୱ ଦେବାର ପ୍ରବୃତ୍ତି ଦେଖିବାକୁ ମିଳେ । ଉପରୋକ୍ତ କାଳଖଣ୍ଡର ଐତିହାସିକ ଚିତ୍ରରେ ନାନା କିସମର ଅନିଶ୍ଚିତତା ଏବଂ ଦୋଷ-ତ୍ରୁଟି ରହିଛି । କାଳଖଣ୍ଡର ଶେଷ ସମୟ ବେଳକୁ ବୈଦିକ ସାହିତ୍ୟର ସଂକଳନ ସମ୍ପୂର୍ଣ୍ଣ ହୋଇଥିଲା । ଏହି ସାହିତ୍ୟର ମୁଖ୍ୟ ପ୍ରସଙ୍ଗ ହେଲା କର୍ମକାଣ୍ଡ ଓ ଧାର୍ମିକ ବିଶ୍ୱାସ । ତେଣୁ ଏଥିରେ ସେହି ସମାଜକୁ ଅତିଶୟ ପ୍ରଶଂସା କରାଯାଇଛି, ଯେଉଁ ସମାଜରେ ଅନେକ କର୍ମକାଣ୍ଡର କର୍ତ୍ତା ଓ ପୃଷ୍ଠପୋଷକ ରହିଥିଲେ । ଏବେ ଆବଶ୍ୟକତା ହେଲା ଶବ୍ଦ ମଧ୍ୟରେ ଲୁଚି ରହିଥିବା ଅର୍ଥକୁ ପରଖିବାର, ଯଦ୍ୱାରା କି ସମାଜର ଅନ୍ୟ ବର୍ଗ ସମ୍ବନ୍ଧରେ ଜାଣିହେବ

ତଥା ଅନ୍ୟ ସମାଜଗୁଡ଼ିକ ସମ୍ବନ୍ଧରେ ଧାରଣା କରିହେବ । ପୁରାତତ୍ତ୍ୱରୁ ମଧ୍ୟ ଏ ଦିଗରେ ମହତ୍ତ୍ୱପୂର୍ଣ୍ଣ ତଥ୍ୟ-ପ୍ରମାଣ ମିଳିପାରେ । ପ୍ରତ୍ନତାତ୍ତ୍ୱିକ ଖନନରୁ, ବିଶେଷକରି ଗାଙ୍ଗେୟ ସମତଳ କ୍ଷେତ୍ରରେ ସମାନ୍ତରାଳ ଖନନ କଲେ ଏହି ସମାଜର ଉଦ୍‌ଭବ ସମ୍ପର୍କରେ ଜାଣିହେବ । ସାମାଜିକ ଏବଂ ରାଜନୈତିକ ସଂସ୍ଥାଗୁଡ଼ିକ ସମ୍ବନ୍ଧରେ ଜ୍ଞାନ ପ୍ରଦାନକାରୀ ଅଧ୍ୟୟନ ଏବଂ ତା' ସହିତ ଧାର୍ମିକ ରୂପର ବିକାଶକୁ ଚିହ୍ନିତ କରିବା ଯୋଗ୍ୟ ଅଧ୍ୟୟନକୁ ତ ପ୍ରାଥମିକତା ଆଧାରରେ ମହତ୍ତ୍ୱ ମିଳିବା ଉଚିତ ।

'ଆର୍ଯ୍ୟ' ଭାରତର ମୂଳ ନିବାସୀ ଥିଲେ ନା ବହିରାଗତ ? ଏଭଳି ପ୍ରଶ୍ନ ପ୍ରଥମେ ଊନବିଂଶ ଶତାବ୍ଦୀରେ କରାଗଲା । ପ୍ରଶ୍ନଟିର ଅଧିକ ସମ୍ବନ୍ଧ ଇତିହାସରେ ନୁହେଁ, ବରଂ ରାଜନୀତିରେ ରହିଛି । ଇତିହାସ ଦୃଷ୍ଟିରୁ ଅଧିକ ପ୍ରାସଙ୍ଗିକ ପ୍ରଶ୍ନ ହେଲା, ପରସଂସ୍କୃତି ଗ୍ରହଣ ବା ସଂସ୍କୃତିକରଣ ବା acculturation ର ସାମାଜିକ ବିକାଶ ହେଲା କେମିତି ? ବିଭିନ୍ନ ବିଚାରଧାରାର ଉଦୟ ହେଲା କିପରି ? ଏହି ପ୍ରଶ୍ନର ଉତ୍ତରରୁ ସୁସ୍ପଷ୍ଟ ହେବ ବେଦ ଉଲ୍ଲିଖିତ 'ଆର୍ଯ୍ୟ'ର ପ୍ରକୃତ ଅର୍ଥ ।

ଏହି କାଳଖଣ୍ଡରେ ଅଧିକାଂଶ ପରିବର୍ତ୍ତନ ସୈନ୍ଧବ-ଗାଙ୍ଗେୟ କ୍ଷେତ୍ରରେ ଦେଖିବାକୁ ମିଳିଥିଲା । ସେଠାକାର ସମାଜ ଯେଉଁ ବିଚାର ଓ ସଂସ୍ଥାନକୁ ଜନ୍ମଦେଲା, ତାହା ଭାରତୀୟ ସମାଜର ରୂପକାର ହେଲା । ତନ୍ମଧ୍ୟରୁ କେତେକ ବିଚାର ଓ ସଂସ୍ଥାନର ଗଠନ ହେଲା ଭାରତାର୍ଯ୍ୟ ଭାଷାଭାଷୀ ଲୋକଙ୍କର ଆସିବା ପରେ ଏବଂ ସେମାନଙ୍କର ସ୍ଥାନୀୟ ସଂସ୍କୃତି ସହିତ କାର୍ଯ୍ୟ ବିନିମୟ ହେବାପରେ । ଆଉ କେତେକ ବିଚାର ଓ ସଂସ୍ଥାନର ଉଦ୍‌ଭବ ସମ୍ବନ୍ଧରେ ଆଗରୁ ଏହି ପରିଚ୍ଛେଦରେ କୁହାଯାଇଛି । ପ୍ରଥମ ସହସ୍ରାବ୍ଦୀର ପ୍ରାରମ୍ଭିକ ଅବଧିକୁ ଆର୍ଯ୍ୟ ବିଜୟକାଳ ଏବଂ ତା' ଯୋଗୁଁ ଉତ୍ତର ଭାରତରେ ପ୍ରସାରିତ ହୋଇଥିବା ଏକରକମର ଆର୍ଯ୍ୟ ସଂସ୍କୃତି ସମୟ ବୋଲି କହିବା ଠିକ୍ ହେବ ନାହିଁ । ତା' ସହିତ ତାକୁ ପୂର୍ଣ୍ଣତଃ ସ୍ୱଭୂମିଜ ଅର୍ଥାତ୍ ବାହାର ସଂସ୍କୃତିରୁ ସମ୍ପୂର୍ଣ୍ଣତଃ ପ୍ରଭାବମୁକ୍ତ ଆର୍ଯ୍ୟ ସଂସ୍କୃତି କହିବା ମଧ୍ୟ ଯୁକ୍ତିସଙ୍ଗତ ହେବ ନାହିଁ । ଅନ୍ୟ ଶବ୍ଦରେ କହିଲେ, ଉପରୋକ୍ତ ଅବଧିରେ ସମାଜର ଯେଉଁ ଐତିହାସିକ ଚିତ୍ରର ନିର୍ମାଣ ହୁଏ, ତହିଁରେ ଅନେକ ସମାଜ ଦେଖାପଡ଼ନ୍ତି; ସେମାନଙ୍କର ମୂଳ ହେଲା ବିବିଧ ପ୍ରକାରର; ପ୍ରତ୍ୟେକ ଏକ ସାଂସ୍କୃତିକ ମଞ୍ଚରେ ସ୍ୱ ସ୍ୱ ଉପସ୍ଥିତି ବା କର୍ତ୍ତୃତ୍ୱ ଜାହିର କରିବାକୁ ପ୍ରୟାସ କରୁଛନ୍ତି । ଯାହା ସାଧାରଣତଃ ହୁଏ, ଏହି ପ୍ରକ୍ରିୟାରେ ସଂସ୍କୃତିରେ ନିରନ୍ତର ପରିବର୍ତ୍ତନ ପରିଲକ୍ଷିତ ହୋଇଛି । ଆମଠାରେ ମହଜୁଦ ଥିବା ସାହିତ୍ୟିକ ସାକ୍ଷ୍ୟପ୍ରମାଣଗୁଡ଼ିକ ବେଦରୁ ଆନୀତ । ବେଦର ରଚୟିତା ଯେହେତୁ ବ୍ରାହ୍ମଣମାନେ,

ସେମାନଙ୍କର ଦୃଷ୍ଟିକୋଣକୁ ଯେଉଁଠି ସମ୍ଭବ, ଭିନ୍ନ ଦୃଷ୍ଟିକୋଣ ମିଳୁଥିବା ଅନ୍ୟ ସୂତ୍ର-ସାମଗ୍ରୀର ଆଧାରରେ ପରଖିବାକୁ ପଡ଼ିବ । ଅଥବା ବେଦକୁ ଏହିଭଳିଭାବେ ଦେଖିବାକୁ ହେବ, ଯେମିତି ତହିଁରେ ଭିନ୍ନ ଦୃଷ୍ଟିକୋଣର ସ୍ୱର ମଧ୍ୟ ଶୁଣାଯିବ ।

ଏତିକି କଲେ, ସୂତ୍ର-ସାମଗ୍ରୀକୁ ନେଇ ଅଧିକ ସୂକ୍ଷ୍ମ ପ୍ରଶ୍ନ ମିଳିବାର ସମ୍ଭାବନା ରହିବ । ଏକ ସନ୍ତୁଳିତ ଚିତ୍ର ପାଇବାରେ ସର୍ବଦା ପୁରାତତ୍ତ୍ୱ ସହାୟକ ହୁଏ, କାରଣ ପୁରାତତ୍ତ୍ୱରୁ ଭୌତିକ ସଂସ୍କୃତିର ସାକ୍ଷ୍ୟ ମିଳେ । ତାହାରି ଆଧାରରେ ନୂତନ ସାମାଜିକ ସ୍ୱରୂପ ଆଡ଼କୁ ନେଇଯାଉଥିବା ପରିବର୍ତ୍ତନଗୁଡ଼ିକୁ ଲକ୍ଷ୍ୟ କରିହୁଏ । ଏହି ପରିବର୍ତ୍ତନର କାଳଗତ ଉପାଦାନକୁ ଅନେକ ସମୟରେ ଆଧୁନିକ ଟୀକାକାରମାନେ ଅଣଦେଖା କରିଦିଅନ୍ତି । ଯେଉଁ ପରିବର୍ତ୍ତନ ହୋଇଥିଲା, ତାହା ଅତି ଧୀର ମନ୍ଥର ବେଗରେ ପ୍ରାୟ ହଜାରେ ବର୍ଷ ମଧ୍ୟରେ ସମ୍ଭବ ହୋଇଥିଲା । ଆରମ୍ଭରେ ବିଭିନ୍ନ ସମାଜ ମଧ୍ୟରେ ଦୂରତ୍ୱ ରହିଥିଲା, ଯାହା ପରେ ପରେ ଊଣା ହେବାକୁ ଲାଗିଲା । ଅବଶ୍ୟ ସଂସ୍କୃତିଗୁଡ଼ିକ ସ୍ୱ ସ୍ୱ ବୈଶିଷ୍ଟ୍ୟ ବଜାୟ ରଖିଲେ । ଆଦ୍ୟକାଳୀନ ଓ ପରକାଳୀନ ସଂସ୍କୃତିରେ ମଧ୍ୟ ପରିବର୍ତ୍ତନ ଦେଖିବାକୁ ମିଳିଲା । ଭାଷା କ୍ଷେତ୍ରରେ ଅନୁଭୂତ ହୋଇଥିବା ପରିବର୍ତ୍ତନକୁ ଏହାର ଏକ ସ୍ୱାଭାବିକ ଓ ଜଟିଳ ଉଦାହରଣ ଭାବରେ ନିଆଯାଇ ପାରିବ ।

ନିଜ ବିକାଶ ପ୍ରକ୍ରିୟାରେ ବୈଦିକ ସଂସ୍କୃତ ଦ୍ରାବିଡ଼ୀୟ ତଥା ଅଷ୍ଟ୍ରୋ-ଏସୀୟ ଉପାଦାନଗୁଡ଼ିକୁ ଗ୍ରହଣ କରିନେଲା । ଏହି ଗ୍ରହଣଶୀଳତା ପଛରେ ଆଧାର ଥିଲା ଦ୍ୱିଭାଷୀ ସୂତ୍ର । ସେବେକାର ସମାଜର ବିଭିନ୍ନ ସମୂହ ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ଯୋଗୁଁ ଏହା ସଂଘଟିତ ହୋଇଥିଲା ବୋଲି ବିଦ୍ୱାନମାନେ ମତ ଦିଅନ୍ତି । ଉକ୍ତ ସମୂହଗୁଡ଼ିକ ମଧ୍ୟରେ ନିଜକୁ ଆର୍ଯ୍ୟ ବୋଲି ଚିହ୍ନିତ କରୁଥିବା ଲୋକ ବି ସାମିଲ ଥିଲେ । ସେମାନେ ଭାରତାର୍ଯ୍ୟ ଭାଷା କହୁଥିଲେ ଏବଂ ସମାଜର ସମ୍ମାନିତ ସଦସ୍ୟ ଭାବରେ ଗଣ୍ୟ ହେଉଥିଲେ । ଇତିହାସ ଦୃଷ୍ଟିରୁ ଯେଉଁ ପ୍ରଶ୍ନଟି ଅଧିକ ପ୍ରାସଙ୍ଗିକ, ତାହା ହେଲା : ଅନ୍ୟ ଭାଷାଗୁଡ଼ିକର ଉପସ୍ଥିତି ସତ୍ତ୍ୱେ ଭାରତାର୍ଯ୍ୟ ଭାଷା ଉତ୍ତର ଭାରତର ପ୍ରଭାବଶାଳୀ ଭାଷା ହେଲା କେମିତି ? ଅସଲରେ ପ୍ରଭାବର ସମ୍ବନ୍ଧ ସାଧାରଣତଃ ଶକ୍ତି, କ୍ଷମତା, ଟେକ୍‌ନୋଲୋଜି (ପ୍ରାଦ୍ୟୌଗିକୀ) ଏବଂ କର୍ମକାଣ୍ଡୀ ଶ୍ରେଷ୍ଠତା ସହ ରହିଥାଏ । ଆର୍ଯ୍ୟମାନେ ଅବଶ୍ୟ ଏସବୁର ଅଧିକାରୀ ବୋଲି ନିଜକୁ ଦାବି କରୁଥିଲେ । ହେଲେ ସେମାନଙ୍କ ଦାବିକୁ କାହିଁକି ଓ କେମିତି ଏତେ ବ୍ୟାପକ ରୂପରେ ସ୍ୱୀକୃତି ମିଳିଲା – ତାହା ଅନୁଶୀଳନର ବିଷୟ ।

ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ପାଣିନି ଲିଖିତ 'ଅଷ୍ଟାଧ୍ୟାୟୀ'ରେ ସଂସ୍କୃତକୁ ଅଧିକ ଲୋକପ୍ରିୟ କରିବା ସକାଶେ ତଥା ତା'ର ବ୍ୟାକରଣକୁ ସଂରଚନା କରିବା ସକାଶେ ପ୍ରୟାସ

କରାଗଲା । ଉଚ୍ଚ ଜାତିର ଲୋକ ସଂସ୍କୃତ ସହିତ ପରିଚିତ ଥିଲେ, ଯଦିଓ ଦୈନନ୍ଦିନ ଜୀବନରେ ସାଧାରଣ କଥାବାର୍ତ୍ତାରେ 'ପ୍ରାକୃତ'ର ଉପଯୋଗ କରାଯାଉଥିଲା । ଯଦି କର୍ମକାଣ୍ଡରେ ବ୍ୟବହୃତ ଭାଷାରେ ଅନ୍ୟାନ୍ୟ ଭାଷାରୁ ଶବ୍ଦ ନିଆ ହେବାର ପ୍ରମାଣ ରହିଛି, ତେବେ ସାଧାରଣ କଥାବାର୍ତ୍ତାରେ ଅନ୍ୟ ଭାଷାରୁ ଅଧିକ ଶବ୍ଦ ଆଦି ନିଆଯାଇଥିବ । ଫଳରେ ମିଶ୍ରିତ ଭାଷା ଆର୍ଯ୍ୟ ଓ ଅନାର୍ଯ୍ୟ ଭାଷାଭାଷୀ ମଧ୍ୟରେ ରହିଥିବା ବିଭେଦକୁ ନିଶ୍ଚିତରୂପେ ଭାଙ୍ଗି ଦେଇଥିବ । ଗୋଟାଏ ସ୍ତରରେ ସମଗ୍ର ଉପମହାଦେଶରେ ସଂସ୍କୃତ ଏକତା ଆଣିବାରେ ସହାୟକ ହୋଇଥିବ, ମାତ୍ର ତା ସହିତ ଏହା ଅନ୍ୟ ଭାଷାଭାଷୀ ଲୋକଙ୍କୁ ଅଲଗା ଅଲଗା ବି କରିଦେଇଥିବ ବୋଲି ଆଶଙ୍କା କରାଯାଏ । କେତେକ ବ୍ୟାଖ୍ୟାରୁ ଜଣାପଡ଼େ ଯେ, ବୈଦିକ ସଂସ୍କୃତର କିଛି ଉପାଦାନ ସଂସ୍କୃତଭାଷୀଙ୍କ ପାଇଁ ମଧ୍ୟ ଅଜଣା ଥିଲା । ଏହାର ଉଦ୍ଧରଣ ଯାସ୍କଙ୍କ 'ନିରୁକ୍ତ'ରେ ରହିଛି । ଭାଷାକୁ ବ୍ୟାକରଣର ନିୟମବଦ୍ଧ କରିବା ପଛରେ ଗୋଟାଏ ଉଦ୍ଦେଶ୍ୟ ହେବ ଭାଷାଗତ ପରିବର୍ତ୍ତନକୁ ନିୟନ୍ତ୍ରଣ କରିବା । ତା' ସହିତ ବ୍ୟାକରଣର ଏହା ବି ଉଦ୍ଦେଶ୍ୟ ହୋଇପାରେ ଯେ ଭାଷା ସଂହ ଅପରିଚିତ ଲୋକଙ୍କୁ ଭାଷା ଶିଖିବାରେ ସାହାଯ୍ୟ କରିବା ।

ଜାତି ବ୍ୟବସ୍ଥା ଦ୍ୱାରା ସମାଜର ବିଭକ୍ତିକରଣ (stratification) ଯୋଗୁଁ ଉଚ୍ଚ ଜାତିର ଲୋକେ ସମ୍ପଦା ଉପରେ ଅଧିକରୁ ଅଧିକ ଅଧିକାର ଲାଭ କଲେ ଏବଂ ତଳ ଜାତିର ଲୋକ ଅଧିକରୁ ଅଧିକ କର୍ତ୍ତୃତ୍ୱାଧୀନ ହେଲେ । ବିବିଧ କିସମର ଅସମାନତାକୁ ଏହା ଯଥାର୍ଥ ବୋଲି ତର୍କ ଦେଲା । ଲୋକ ସମୂହ ଏବଂ ସେବେକାର ପରିସ୍ଥିତି ଅନୁଯାୟୀ ଅସମାନତାର ସ୍ଥାୟିତ୍ୱ ବା ଅସ୍ଥାୟିତ୍ୱର ପରିମାଣ ଊଣାଅଧିକ ରହୁଥିଲା । ଜାତିଗୁଡ଼ିକ ମଧ୍ୟରେ ରହିଥିବା ଜାତିସମ୍ବନ୍ଧ ସାର୍ବଜନିକ ଜୀବନକୁ ପ୍ରଭାବିତ କରୁଥିଲା । ଅନେକ ସମୟରେ ଏହା ସୁଦୂରସ୍ଥ ରାଜନୈତିକ ପ୍ରଶ୍ନରୁ ଧ୍ୟାନ ହଟେଇ ସ୍ଥାନୀୟ ଭକ୍ତିରେ କେନ୍ଦ୍ରିତ କରୁଥିଲା । ଯେଉଁଠି କେନ୍ଦ୍ରୀୟ ରାଜନୀତିକ କ୍ଷମତା ଦୂରବର୍ତ୍ତୀ ହୁଏ, ସେଇଠି ସ୍ଥାନୀୟ ସ୍ତରର ଗତିବିଧି ବୃଦ୍ଧିପାଏ ।

କାଳକ୍ରମେ ଯଜ୍ଞକୁ ପ୍ରାଧାନ୍ୟ ଦେବା ବୈଦିକ ବ୍ରାହ୍ମଣ୍ୟ ଧର୍ମର ବୈଶିଷ୍ଟ୍ୟରେ ପରିଣତ ହେଲା । ଏହାର ପ୍ରତିକ୍ରିୟା ରୂପରେ ନାନା କିସମର ଦାର୍ଶନିକ ଅବଧାରଣା ଏବଂ ଧାର୍ମିକ ଅଭିବ୍ୟକ୍ତି ଜନ୍ମଲାଭ କରିବାର ଅବସର ପାଇଲେ । ତା'ର ପ୍ରମାଣ ଉପନିଷଦରୁ ଏବଂ ପରବର୍ତ୍ତୀ ସମୟରେ ବିକଶିତ ହୋଇଥିବା ବିଚାରଧାରାଗୁଡ଼ିକରୁ ମିଳିଥାଏ । ନୂତନ କିସମର ବିଶ୍ୱାସ ଏବଂ ପୂଜା ପ୍ରଣାଳୀକୁ ପ୍ରବର୍ତ୍ତନ କରିଥିବା ଧର୍ମୋପଦେଶକମାନେ ମଧ୍ୟ ଏହାର

ପ୍ରମାଣ ଦିଅନ୍ତି । ଉପନିଷଦର ତତ୍ତ୍ୱ-ଚିନ୍ତନରେ ବ୍ରାହ୍ମଣମାନଙ୍କର ଯୋଗଦାନ ରହିଥିଲା । ଏହି ଚିନ୍ତନ କର୍ମ ଓ ସଂସାର ମଧ୍ୟରେ ଅନ୍ତଃସମ୍ବନ୍ଧ ସ୍ଥାପନ କରୁଥିଲା । ପରେ ବୌଦ୍ଧ ଓ ଜୈନ ଆଦି ଶ୍ରମଣ ସଂପ୍ରଦାୟ ଯେତେବେଳେ ବୈଦିକ ବ୍ରାହ୍ମଣ୍ୟବାଦର ବିକଳ୍ପ ପ୍ରସ୍ତୁତ କଲେ, ସେତେବେଳେ କିଞ୍ଚିତ୍ ଭିନ୍ନ ରୂପରେ ଉକ୍ତ ଚିନ୍ତନ ଶ୍ରମଣ ସଂପ୍ରଦାୟର ଆଧାରସ୍ତମ୍ଭ ହେଲା । ବାସ୍ତବିକତା ହେଲା ଯେ, ଉକ୍ତ ଚିନ୍ତନ ପରେ ବଢ଼ି ଉଠିଥିବା ଆହୁରି ଅନେକ ସଂପ୍ରଦାୟ ପାଇଁ ଆଧାରର କାମ କଲା । ଏଥିରୁ ଯେଉଁ ଧର୍ମର ଜନ୍ମ ହେଲା ତାକୁ କୁହାଗଲା ପୌରାଣିକ ହିନ୍ଦୁଧର୍ମ । ଏହା ବୈଦିକ ବ୍ରାହ୍ମଣ୍ୟବାଦରୁ ଅନେକ ଦୃଷ୍ଟିରୁ ପୃଥକ୍ ।

ଏହି କାଳଖଣ୍ଡରେ ଅନେକ ସାମାଜିକ ସମୂହ ଉପମହାଦେଶର ଭୌତିକ ଭୂଦୃଶ୍ୟ ଉପରେ ମଧ୍ୟ ନିଜ ନିଜ ଛାଇ ଛାଡ଼ିଗଲେ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଆହାର ଯୋଗାଇବା ଲାଗି ଅର୍ଥାତ୍ କୃଷି ପାଇଁ ତଥା ଶୈଶବକାଳୀନ ବଜାର ବା ବସ୍ତୁ ବିନିମୟ କେନ୍ଦ୍ର ପାଇଁ ଅନାବାଦି ଜମି ଓ ଜଙ୍ଗଲର ଛୋଟ ଛୋଟ ଖଣ୍ଡରୁ ଗଛ କାଟି ସଫା କରାଗଲା । ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ ବେଳକୁ ତହିଁରୁ କେତେକ ସହର ରୂପରେ ବିକଶିତ ହେଲା । ଗାଙ୍ଗେୟ ସମତଳରେ ସହରୀକରଣ ପାଇଁ ଏହି ସହରଗୁଡ଼ିକ ଭିତ୍ତି ପ୍ରଦାନ କଲେ । ସେବେଳାରେ ଯେଉଁମାନେ ନିଜକୁ 'ଆର୍ଯ୍ୟ' ବୋଲି ପରିଚୟ ଦେଉଥିଲେ, ସେମାନେ ଦେଶୀ ନା ବିଦେଶୀ; ସେ କଥାକୁ ନେଇ ଆଦୌ ଚିନ୍ତା କରାଯାଉ ନ ଥିଲା । କାରଣ ସେତେବେଳେ ଦେଶୀ ବା ବିଦେଶୀ ହେବା ପଛରେ ପ୍ରତିଷ୍ଠା ଓ ସଂସ୍କୃତିର ପ୍ରଶ୍ନ ଜଡ଼ିତ ନ ଥିଲା । ଋଗ୍‌ବେଦ ଏବଂ ଉତ୍ତର ବେଦ ମଧ୍ୟରେ ପାର୍ଥକ୍ୟ ସୁସ୍ପଷ୍ଟ ଥିଲା । ଋଗ୍‌ବେଦରେ ଆର୍ଯ୍ୟ ଓ ଦାସ ମଧ୍ୟରେ ପାର୍ଥକ୍ୟ ଭାଷା, କର୍ମକାଣ୍ଡ ଏବଂ ରୀତିନୀତିରେ ବୋଲି ଦର୍ଶାଯାଇଛି । ଉତ୍ତର ବେଦରେ 'ଆର୍ଯ୍ୟ'କୁ ସମ୍ମାନିତ ବର୍ଗରେ ଏବଂ 'ଦାସ'କୁ ଅଧୀନସ୍ଥ ବର୍ଗରେ ସ୍ଥାନିତ କରାଯାଏ, ତେଣିକି ଆର୍ଯ୍ୟ ବା 'ଦାସ'ର ମୂଳ ଯାହା ବି ହୋଇଥାଉ । ଉଭୟ 'ଆର୍ଯ୍ୟ' ଓ 'ଦାସ' ଶବ୍ଦ ଋଗ୍‌ବେଦରେ ରହିଛି, ମାତ୍ର ପରବର୍ତ୍ତୀ ସମୟରେ ଶବ୍ଦର ଅର୍ଥ ବଦଳି ଯାଇଛି ।

ଏହି ପରିଘଟନା ମୂଳରେ ଆର୍ଯ୍ୟକୁ ଏକ ସାମାଜିକ ମର୍ଯ୍ୟାଦା ରୂପରେ ଦାବି କରୁଥିବା ସମୂହ ଏବଂ ଉକ୍ତ ମର୍ଯ୍ୟାଦାରୁ ବଞ୍ଚିତ ଥିବା ସମୂହ ମଧ୍ୟରେ ବଳ ପରୀକ୍ଷାର ପ୍ରଶ୍ନ ଜଡ଼ିତ ଥିଲା । ଏହାର ଫଳସ୍ୱରୂପ, ଉଭୟ ସମୂହର ଲୋକଙ୍କ ମଧ୍ୟରେ ନିରନ୍ତର ସଂଶୋଧନ ଏବଂ ପରିବର୍ତ୍ତନ ଦେଖିବାକୁ ମିଳିଲା । ବିଭିନ୍ନ ପ୍ରକାର ପୃଷ୍ଠଭୂମିର ଲୋକଙ୍କୁ ହୁଏତ ଏହି ସାମାଜିକ ମର୍ଯ୍ୟାଦା ପ୍ରଦାନ କରାଗଲା ଅଥବା ତହିଁରୁ ବଞ୍ଚିତ କରାଗଲା । ଜନ୍ମ ବା ପ୍ରଜାତି ସହିତ ଏହି ମର୍ଯ୍ୟାଦାର କୌଣସି ସମ୍ବନ୍ଧ ନ ଥିଲା । ବରଂ ଅନ୍ୟ ବୈଶିଷ୍ଟ୍ୟଗୁଡ଼ିକ ଆଧାରରେ

ତାକୁ ସ୍ଥିର କରାଯାଉଥିଲା । ଉଦାହରଣ ସ୍ୱରୂପ, ଭାରତାର୍ଯ୍ୟ ଭାଷାରୁ ଉତ୍ପନ୍ନ ଭାଷା ବୋଲି କହୁଥିବା ଲୋକ ଅଥବା ବୈଦିକ ସାହିତ୍ୟରେ ଉଲ୍ଲିଖିତ ଥିବା ଧାର୍ମିକ ବିଶ୍ୱାସ ଓ କର୍ମକାଣ୍ଡକୁ ଅନ୍ତତଃ ସୈଦ୍ଧାନ୍ତିକ ରୂପରେ ସ୍ୱୀକୃତି ଦେଉଥିବା ଲୋକକୁ 'ଆର୍ଯ୍ୟ' ମର୍ଯ୍ୟାଦା ଦିଆଗଲା । ତେଣୁ 'ଆର୍ଯ୍ୟ'କୁ ଏକ ମର୍ଯ୍ୟାଦା ରୂପରେ ଚିହ୍ନିତ କରାଯାଇପାରେ । ଐତିହାସିକ ଆବଶ୍ୟକତା ଅନୁଯାୟୀ ଏଥିରେ ବିଭିନ୍ନ ସମୟରେ ପରିବର୍ତ୍ତନମାନ କରାଯାଇଛି । କୌଣସି ସମ୍ମାନ କିମ୍ବା ସ୍ଥାୟୀ ପୂର୍ବଜ-ପରମ୍ପରାରେ ଏହାର ଅର୍ଥ ଖୋଜାଯାଇ ନ ପାରେ । ଆର୍ଯ୍ୟ ବୋଲାଉଥିବା ସମୂହର ଏକ ସ୍ଥାୟୀ ଆତ୍ମବୋଧ ଥିଲା ଏବଂ ତାହା ହେଲା ନିଜକୁ ସେମାନେ କର୍ତ୍ତୃତ୍ୱଧାରୀ ସମୁଦାୟ ରୂପରେ ଦେଖୁଥିଲେ । ଅର୍ଥାତ୍ ଅନ୍ୟମାନଙ୍କୁ ସେମାନେ ଅଧୀନରେ ରଖିବେ ଏବଂ ନିଜ ପାଇଁ ସମ୍ମାନ ଦାବି କରିବେ । ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ ବେଳକୁ ଉତ୍ତର ଭାରତର ଲୋକସମାଜ ଆଉ ଋଗ୍‌ବେଦକାଳୀନ କୃଷକ-ପଶୁଚାରକ ସମୁଦାୟ ହୋଇ ରହି ନ ଥିଲା; ଅନେକ ଆଗକୁ ବଢ଼ିଯାଇସାରିଥିଲା । ଏଣିକି ଉକ୍ତ ସମାଜର ଲୋକ ରାଜନୀତିକ ଦୃଷ୍ଟିରୁ ପ୍ରଭାବଶାଳୀ କ୍ଷେତ୍ରଗୁଡ଼ିକରେ ବସତି ସ୍ଥାପନ କରିସାରିଥିଲେ । ଏହି କ୍ଷେତ୍ରଗୁଡ଼ିକରେ କୁଳୀନ ଆଭିଜାତ୍ୟ ସମୂହ ବା ରାଜାମାନଙ୍କର ଶାସନ ରହିଥିଲା, ଯାହା ସମାଜକୁ ରାଜତନ୍ତ୍ର ଆଡ଼କୁ ନେଇଗଲା ।

# 5

# ସୈନ୍ଧବ-ଗାଙ୍ଗେୟ ସମତଳର ରାଜ୍ୟ ଓ ନଗରୀ

## (ଖ୍ରୀଷ୍ଟପୂର୍ବ 600 – 300 ପ୍ରାୟ)

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଏକ ବଡ଼ ଧରଣର ଐତିହାସିକ ପରିବର୍ତ୍ତନ ଦେଖିବାକୁ ମିଳିଲା । ତାହା ହେଲା ଉତ୍ତର ଭାରତରେ ରାଜ୍ୟତନ୍ତ୍ର, ଗୋଷ୍ଠୀତନ୍ତ୍ର (oligarchies) ଓ ସର୍ଦ୍ଦାରତନ୍ତ୍ର (chiefdom)ର ବିକାଶ ଓ ନଗରୀଗୁଡ଼ିକର ଆବିର୍ଭାବ । ଏଣିକି ଦୃଷ୍ଟି ଉତ୍ତର-ପଶ୍ଚିମ କ୍ଷେତ୍ର ଓ ପଞ୍ଜାବରୁ ଯାଇ ଗାଙ୍ଗେୟ ସମତଳରେ ଅଟକିଲା, ଯଦିଓ ପଶ୍ଚିମୋତ୍ତର କ୍ଷେତ୍ର ଓ ପଞ୍ଜାବରେ ଜନଜୀବନ ଶେଷ ହୋଇଯାଇ ନ ଥିଲା । ରାଜନୀତିରେ ପରିବର୍ତ୍ତନ ପ୍ରଥମେ ଆରମ୍ଭ ହେଲା । ମାତ୍ର ଯେଉଁଠି ପରିବର୍ତ୍ତନ ନଗରୀକରଣ ସହିତ ତାଳଦେଇ ଚାଲିଲା, ସେଇଠି ଭାରତୀୟ ଉପମହାଦେଶର ଐତିହାସିକ ପ୍ରବାହର ଏହା ସ୍ରୋତ ସଦୃଶ ହେଲା । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀର ପୂର୍ବରୁ କୌଳିକ ସଂଗଠନ ଆଧାରିତ ବ୍ୟବସ୍ଥା ଓ ରାଜତ୍ୱକାଳୀନ ଅନ୍ୟ ବ୍ୟବସ୍ଥା ମଧ୍ୟରେ ହୁଏତ ଅନୁପୂରକତା ଦେଖିବାକୁ ମିଳୁଥିଲା, ନୋହିଲେ ସଂଘର୍ଷ । କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଯେତେବେଳେ ସ୍ଥାୟୀ ବସତି ଆରମ୍ଭ ହେଲା, ତାହା ବସତି ପ୍ରତିଷ୍ଠା କରିଥିବା କୁଳକୁ ବା କୁଳସଂଘକୁ ଏକ ଭୌଗୋଳିକ ପରିଚୟ ପ୍ରଦାନ କଲା । କାଳକ୍ରମେ ଉକ୍ତ ପରିଚୟ ଏକ ଠୋସ ସ୍ୱରୂପ ନେଲା, ଯେତେବେଳେ କ୍ଷେତ୍ରଟିକୁ କୁଳ ନିଜର ବୋଲି ଦାବି କଲା ଏବଂ ନିଜକୁ ରାଜକୁଳ କହି କ୍ଷେତ୍ରକୁ ସେହି ନାମରେ ନାମିତ କଲା । ଏହି କ୍ଷେତ୍ରାଧିକାରକୁ ବଜାୟ ରଖିବା ନିମନ୍ତେ ରାଜନୈତିକ ସଂଗଠନର ଆବଶ୍ୟକତା ପଡ଼ିଲା । ଉକ୍ତ ରାଜନୈତିକ ସଂଗଠନକୁ ଗଣସଂଘ, ସର୍ଦ୍ଦାରତନ୍ତ୍ର ବା ରାଜ୍ୟତନ୍ତ୍ର କୁହାଗଲା । ପୂର୍ବବର୍ତ୍ତୀ କାଳର ରାଜ୍ୟ-ବ୍ୟବସ୍ଥାମାନେ ଶାସକ ପରିବାରର ବଂଶରୁ ନିଜର ପରିଚୟ ପାଇଥିଲେ । ସେଗୁଡ଼ିକ ଧୀରେ ଧୀରେ ପ୍ରଦେଶର ପରିଚୟ ଖୋଜିଲେ ଏବଂ ନୂଆ ଧରଣର ରାଜନୈତିକ ସତ୍ତାର ରୂପ ନେଲେ । ଅବଶ୍ୟ ପ୍ରଦେଶକୁ ମିଳିଥିବା ନାମରେ

ମଧ୍ୟ ପୂର୍ବରୁ ରହିଥିବା ବଂଶ ନାମକୁ ଦେଖିହେବ । ରାଜ୍ୟର ସଂରଚନାରେ ରାଜତାନ୍ତ୍ରିକ ବ୍ୟବସ୍ଥା ଦିଗରେ ହୋଇଥିବା ଏହି ପରିବର୍ତ୍ତନ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା ।

ଗଣସଂଘର ଅଭ୍ୟୁଦୟକୁ ଆଦ୍ୟ-ରାଜ୍ୟ (proto-state) ରୂପରେ ଦେଖିବା ଉଚିତ ହେବ । ଏହା ରାଜ୍ୟତନ୍ତ୍ରଠାରୁ ପୃଥକ୍ ଥିଲା, କାରଣ ଏଥିରେ କ୍ଷମତା ବିତରିତ ହୋଇଥିଲା, ସମାଜର ବିଶେଷ ବିଭକ୍ତିକରଣ ହୋଇ ନ ଥିଲା ଏବଂ ପ୍ରଶାସନ ଓ ଦଣ୍ଡ-ଶକ୍ତିର ପ୍ରାଦୁର୍ଭାବ ଖୁବ୍ ଅଧିକ ନ ଥିଲା । ଭାରତୀୟ ଇତିହାସରେ ବିଶେଷକରି ଉତ୍ତର ଏବଂ ପଶ୍ଚିମ କ୍ଷେତ୍ରରେ ଗଣସଂଘ ଖୁବ୍ ଦୀର୍ଘଜୀବି ହୋଇ ରହିଥିଲା । ଯୁଦ୍ଧରେ ଅନ୍ୟମାନେ ସମୟେ ସମୟେ ଗଣସଂଘଗୁଡ଼ିକୁ ଜିଣି ନେଉଥିଲେ । ତା' ସତ୍ତ୍ୱେ ଗଣସଂଘଗୁଡ଼ିକ ପୁଣି ମୁଣ୍ଡଟେକି ଉଠୁଥିଲେ ଏବଂ ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ ପର୍ଯ୍ୟନ୍ତ ତିଷ୍ଠି ରହିଥିଲେ ।

ରାଜ୍ୟକୁ ସାର୍ବଭୌମ ରାଜନୈତିକ ସତ୍ତା କୁହାଯାଏ ଏବଂ ତା'ର ଅଭିବୃଦ୍ଧି ଏକ ଜଟିଳ ସର୍ତ୍ତାବଳୀର ପ୍ରକ୍ରିୟା ସୃଷ୍ଟି କରେ । ଏହି ପ୍ରକ୍ରିୟାରେ ଘନ ଜନସଂଖ୍ୟା ବିଶିଷ୍ଟ ବସତି ରହିଥାଏ । ତହିଁରୁ ନିରନ୍ତର କୃଷି ଓ ଅନ୍ୟାନ୍ୟ ସମ୍ପଦା ଯାଏ; ଏକ ନିର୍ଦ୍ଧାରିତ ଓ ସ୍ୱୀକୃତ କ୍ଷେତ୍ର ରହିଥାଏ; ଏକ ନଗରୀୟ କ୍ଷେତ୍ରର ଆବଶ୍ୟକତା ପଡ଼େ, ଯେଉଠି କର୍ତ୍ତୃପକ୍ଷ ନିବାସ କରନ୍ତି; ନଗରୀୟ କ୍ଷେତ୍ରରେ ହସ୍ତଶିଳ୍ପ କାର୍ଯ୍ୟ ପାଇଁ ଜାଗା ରହିଥାଏ; ହସ୍ତଶିଳ୍ପରୁ ପ୍ରସ୍ତୁତ ସାମଗ୍ରୀ ଉଭୟ ସ୍ଥାନୀୟ ବ୍ୟବହାର ଏବଂ ବାହାରକୁ ରପ୍ତାନି ପାଇଁ ଉଦ୍ଦିଷ୍ଟ ହୁଏ; ରପ୍ତାନି ଯୋଗୁଁ ବ୍ୟବସାୟିକ ବିନିମୟ ହୁଏ; ସାମାଜିକ ବିଭକ୍ତିକରଣର ପରିଧି ଭିତରକୁ ବିଭିନ୍ନ ସମୁଦାୟ ଆକୃଷ୍ଟ ହୋଇ ଆସନ୍ତି ଏବଂ ଅସମତାପୂର୍ଣ୍ଣ ସାମାଜିକ ମର୍ଯ୍ୟାଦାକୁ ଗ୍ରହଣ କରନ୍ତି; କିଛି ନା କିଛି ପ୍ରଶାସନିକ ବ୍ୟବସ୍ଥା ଆୟୋଜିତ ହୋଇ ରାଜ୍ୟର ସତ୍ତାଧାରୀ ଗୋଷ୍ଠୀ ରାଜସ୍ୱ ଅସୁଲ କରି ତାକୁ ପୁନର୍ବଣ୍ଟନ କରନ୍ତି; ସେନା ଓ ନୀତିନିୟମ ଉପରେ ଏକଚାଟିଆ ଅଧିକାର ଜାହିର କରି କର୍ତ୍ତୃତ୍ୱ ପ୍ରତିଷ୍ଠା ହୁଏ; କୂଟନୀତି କଥା ସତ୍ତାଧାରୀ ଜାଣିଥାନ୍ତି; ଏବଂ ରାଜ୍ୟର ସାର୍ବଭୌମତ୍ୱକୁ କର୍ତ୍ତୃତ୍ୱର ନାଭିକେନ୍ଦ୍ର ରୂପରେ ରାଜା ପ୍ରତିନିଧିତ୍ୱ କରନ୍ତି । ରାଜ୍ୟ ବ୍ୟବସ୍ଥାର ଅଭ୍ୟୁଦୟ ସର୍ବଦା ସେହିଠାରେ ହୁଏ, ଯେଉଁଠି କ୍ଷମତା-ସମ୍ବନ୍ଧ ସମାନ ନ ଥାଏ, ସମ୍ବଳ ଉପରେ ସମସ୍ତଙ୍କର ସମାନ ଅଧିକାର ନ ଥାଏ ଏବଂ ସାମାଜିକ ବିଷମତା ରହିଥାଏ । ଏହିସବୁ ଅସମତାକୁ ଯଥାର୍ଥ କହି ବିଭିନ୍ନ ବିଚାରଧାରା ରହିଥାଏ, ଯାହା ରାଜ୍ୟ-ବ୍ୟବସ୍ଥାକୁ ସ୍ଥାୟିତ୍ୱ ପ୍ରଦାନ କରେ ।

ଏହି କାଳର ଏକ ଉଲ୍ଲେଖନୀୟ ଉପାଦାନ ହେଲା ମହାଜନପଦ, ଯାହା ପୂର୍ବବର୍ତ୍ତୀ ଜନପଦଠାରୁ ବଡ଼ ଓ ଅଧିକ ଶକ୍ତିଶାଳୀ ଥିଲା ବୋଲି ପ୍ରମାଣ ମିଳେ । ବୌଦ୍ଧ ସୂତ୍ରସାମଗ୍ରୀରୁ କେବଳ 16ଟି ମହାଜନପଦର ଉଲ୍ଲେଖ ମିଳେ । ସେଗୁଡ଼ିକ ହେଲେ : ମଧ୍ୟଗଙ୍ଗା

ଉପତ୍ୟକାସ୍ଥିତ ଅଙ୍ଗ, ମଗଧ, ବୃଜିସଂଘ ଏବଂ ମଲ୍ଲ ମହାଜନପଦ; ତା'ର ପଶ୍ଚିମରେ କାଶୀ, କୋଶଳ ଏବଂ ବତ୍ସ; ଆହୁରି ପଶ୍ଚିମକୁ କୁରୁ, ପାଞ୍ଚାଳ, ମତ୍ସ୍ୟ ଓ ଶୁରସେଣ; ପଶ୍ଚିମୋତ୍ତରରେ କମ୍ବୋଦ ଓ ଗାନ୍ଧାର; ପଶ୍ଚିମ ଓ ମଧ୍ୟ-ଭାରତରେ ଅବନ୍ତି ଓ ଚେଦି ଏବଂ ଦକ୍ଷିଣରେ ଅସ୍ସକ । ଆରମ୍ଭିକ ବୌଦ୍ଧ ପାଲି ଧର୍ମଗ୍ରନ୍ଥର ଏତିକି ଭୂଗୋଳ ସହିତ ପରିଚିତି ରହିଥିଲା । ବୈଦିକ ରଚନାରେ ମଗଧ ଓ ଅଙ୍ଗକୁ ଅପାବନ କ୍ଷେତ୍ର ବୋଲି କୁହାଯାଇଛି । ମାତ୍ର ଏହି ମଗଧ ପୁଣି ଗାଙ୍ଗେୟ ସମତଳର ରାଜନୀତିକୁ ଦିନେ ସ୍ୱ-କର୍ତ୍ତୃତ୍ୱାଧୀନ କରି ରଖିଥିଲା । ଅସ୍ସକର ମହତ୍ତ୍ୱ ହେଲା ଯେ ଏହା ଦକ୍ଷିଣପଥ ବା ଉତ୍ତର-ଭାରତରୁ ଉପଦ୍ୱୀପକୁ ଯାଉଥିବା ମାର୍ଗରେ ଅବସ୍ଥିତ ଥିଲା । ବୃଜି ଥିଲା ଆଠଗୋଟି କୁଳର ଏକ ମହାସଂଘ । କୁହାଯାଏ ବୃଜିରେ 7,707 ରାଜା ରାଜତ୍ୱ କରୁଥିଲେ । ସେହିଭଳି ମଲ୍ଲ ମହସଂଘରେ 500 ଜଣ ରାଜା ଥିଲେ । ତହିଁରୁ ଅଧିକ ସଂଖ୍ୟକ ରାଜା ରହିଥିଲେ ଚେଦି ଗଣସଂଘରେ । ଜୈନଗ୍ରନ୍ଥରେ ତାଲିକାଭୁକ୍ତ କରାଯାଇଥିବା ମହାଜନପଦଗୁଡ଼ିକର ଭୌଗୋଳିକ ପରିସୀମା ଅଧିକ ବ୍ୟାପକ ଥିଲା । ସମ୍ଭବତଃ ପରବର୍ତ୍ତୀ ସମୟରେ ଏହି ତାଲିକା ପ୍ରସ୍ତୁତ କରାଯାଇଥିଲା । ମୋଟାମୋଟି ଭାବେ ଏହା ଆର୍ଯ୍ୟବର୍ତ୍ତର ସୀମା ସହିତ ଖାପ ଖାଇଯାଏ । ବୌଦ୍ଧ ଓ ଜୈନ ଗ୍ରନ୍ଥରେ 'ଆର୍ଯ୍ୟବର୍ତ୍ତ'ର ସୀମା ପୂର୍ବ ଆଡ଼କୁ ବିସ୍ତାରିତ ବୋଲି ଦର୍ଶାଯାଇଛି । ତା' ପଛରେ ସମ୍ଭାବ୍ୟ କାରଣ ହେଲା ଯେ ଉଭୟ ଧର୍ମର କେନ୍ଦ୍ର ମୁଖ୍ୟ ବୈଦିକ କ୍ଷେତ୍ରର ପୂର୍ବରେ ଅବସ୍ଥିତ । ମହାଭାରତରେ ଉଲ୍ଲିଖିତ କୁଳଗୁଡ଼ିକ ମଧ୍ୟରୁ ଅନେକ ରାଜତନ୍ତ୍ର ତୁଳନାରେ ଗଣସଂଘ ବ୍ୟବସ୍ଥାର ଅଧିକ ନିକଟତର ଥିଲେ । ଉଦାହରଣ ସ୍ୱରୂପ, କୃଷ୍ଣ ବାସୁଦେବଙ୍କର ବୃଷ୍ଣି କୁଳ ଥିଲା ଗଣସଂଘ ସଦୃଶ । ଜନପଦର ପ୍ରମୁଖ ଥିଲା ଶାସକ କୁଳ, ଯାହାର ନାମ ଅନୁଯାୟୀ ଜନପଦର ନାମକରଣ କରାଯାଉଥିଲା । ଶାସକକୁଳର ସଂସ୍କୃତି ଓ ଭାଷାକୁ ମଧ୍ୟ ଜନପଦରେ ମହତ୍ତ୍ୱ ମିଳୁଥିଲା । ମାତ୍ର ଏକଥା ମଧ୍ୟ ସତ ଯେ, ମହାଜନପଦ ବିବିଧ ସଂସ୍କୃତିରୁ ଉପାଦାନଗୁଡ଼ିକୁ ନିଜ ଭିତରେ ସମାହିତ କରୁଥିଲା ।

## ଦ୍ୱିତୀୟ ନଗରୀକରଣ : ଗାଙ୍ଗେୟ ସମତଳ କ୍ଷେତ୍ର

ରାଜ୍ୟ ଏବଂ ଆଦ୍ୟ-ରାଜ୍ୟ (proto-state)ର ଉଦୟ ଅନେକ ସମୟରେ ନଗରୀକରଣ ପ୍ରକ୍ରିୟା ସହିତ ଯୋଡ଼ି ହୋଇଥିଲା । ଯେମିତି ରାଜ୍ୟ ବ୍ୟବସ୍ଥାରେ କିଛି କିଛି ପରିମାଣରେ ରାଜ୍ୟ ସଂରଚନା କଥା ରହିଥିଲା, ସେମିତି ପୂର୍ବର ଜନବସତିଗୁଡ଼ିକରୁ ବିକଶିତ ହୋଇଥିବା ସହରରେ କିଛି କିଛି ମାତ୍ରାରେ ନଗରୀକରଣର ଉପାଦାନ ରହିଥିଲା । ସହରର ଅଭ୍ୟୁଦୟ ସବୁଠି ସମାନ ରୂପରେ ହୋଇ ନ ଥିଲା । ଫଳରେ ତହିଁରେ ବିବିଧ ଚରିତ୍ର

ମିଶିଥିଲା । କେତେକ ସହର ରାଜନୈତିକ ଏବଂ ପ୍ରଶାସନିକ କେନ୍ଦ୍ର ରୂପରେ ବିକଶିତ ହୋଇଥିଲା; ସେଗୁଡ଼ିକ ଥିଲା କ୍ଷମତାର ନାଭିକେନ୍ଦ୍ର । ହସ୍ତିନାପୁର ହେବ ଏହି ଧରଣର ସହରର ଏକ ପ୍ରକୃଷ୍ଟ ଉଦାହରଣ । ପରବର୍ତ୍ତୀକାଳୀନ ରଚନାରେ ରାଜ୍ୟଗୁଡ଼ିକର ରାଜଧାନୀର ଉଲ୍ଲେଖ ରହିଛି । ଯେମିତି ମଗଧର ରାଜଧାନୀ ରାଜଗୃହ, କୋଶଳର ରାଜଧାନୀ ଶ୍ରାବସ୍ତୀ, ବତ୍ସର କୌଶାମ୍ବୀ, ଅଙ୍ଗର ଚମ୍ପା ଏବଂ ପାଞ୍ଚାଳ ରାଜ୍ୟର ରାଜଧାନୀ ଅହିଛତ୍ର । ବାକୀ ସହରଗୁଡ଼ିକ ବଜାର କେନ୍ଦ୍ର ରୂପରେ ବିକଶିତ ହୋଇଥିଲେ । ସାଧାରଣତଃ ଯେଉଁ କ୍ଷେତ୍ରରେ ବଳକା କୃଷି ଉତ୍ପାଦନ ହେଉଥିଲା, ସେଠାରେ ଗ୍ରାମଗୁଡ଼ିକ ମଧ୍ୟରେ ସାମଗ୍ରୀ ବିନିମୟ ପାଇଁ ଏକ କେନ୍ଦ୍ରର ଆବଶ୍ୟକତା ପଡୁଥିଲା, ଯାହା ସହର ରୂପରେ ବିକାଶ ଲାଭ କଲା । ଆରମ୍ଭରେ ବିନିମୟ ପାଇଁ ଅତି ସାଧାରଣ ଓ ଅତ୍ୟାବଶ୍ୟକ ବସ୍ତୁମାନ ଆସୁଥିଲା, ଯେମିତି ଖାଦ୍ୟାନ୍ନ ଓ ଲୁଣ । ଯଦି ବଜାର ବାଣିଜ୍ୟପଥରେ ଅବସ୍ଥିତ, ତାହେଲେ ସୁଦୂରବର୍ତ୍ତୀ ଅଞ୍ଚଳରୁ ମଧ୍ୟ ସାମଗ୍ରୀ ବିନିମୟ ପାଇଁ ପହଞ୍ଚୁଥିଲା । ଉଜ୍ଜୟିନୀ ଥିଲା ଏଭଳି ଏକ ବଜାର ଭିତ୍ତିକ ସହର । ସମ୍ଭ୍ରାନ୍ତ ବର୍ଗର ଲୋକେ ବିଶେଷ ଅବସରରେ କିଣୁଥିବା ମହଙ୍ଗା ସାମଗ୍ରୀ କେବଳ ଏହି ବଜାରରେ ମିଳୁଥିଲା ବୋଲି କହିହେବ ନାହିଁ । ଏସବୁକୁ ବାଦ୍ ଦେଲେ ବୈଶାଳୀ ଭଳି ସହର ବି ଏହି ସମୟରେ ବିକଶିତ ହୋଇଥିଲା, ଯାହାକୁ ତୀର୍ଥସ୍ଥାନ ରୂପେ ମନେକରି ଲୋକ ସମାଗମ ହେଉଥିଲା । ଏ ସମସ୍ତ ସହର ମଧ୍ୟରେ କୌଶାମ୍ବୀର ବିକାଶ ଥିଲା ଆଦ୍ୟକାଳୀନ ଏବଂ ସେଠାରେ ଉପର ବର୍ଣ୍ଣିତ ସବୁ କିସମର କର୍ମ ସମ୍ପାଦନ ହେଉଥିଲା । କୁହାଯାଏ, ରାଜା ହସ୍ତିନାପୁରରୁ କୌଶାମ୍ବୀକୁ ବାରମ୍ବାର ବନ୍ୟା ହେବା ଯୋଗୁଁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ଗଙ୍ଗାର ନଦୀ ମାର୍ଗ ଉପରେ ନିୟନ୍ତ୍ରଣ ରଖିବା ପାଇଁ ନୂତନ ରାଜଧାନୀ ଅଧିକ ଉପଯୋଗୀ ସିଦ୍ଧ ହେଲା । ଏକ ପ୍ରାରମ୍ଭିକ ବୌଦ୍ଧ ବିହାରର ମଧ୍ୟ ସେଠାରେ ନିର୍ମାଣ ହୋଇଥିଲା । ସହରର ବିକାଶ ହେବା ଫଳରେ ସେଠାରେ ଘନ ଜନବସତି ସୃଷ୍ଟି ହେଲା ତଥା ବିଭିନ୍ନ ବୃତ୍ତି ଓ ସାମଗ୍ରୀ ଉପଲବ୍ଧ ହେଲା ।

ଅବଶୋଷର କଥା ଯେ, ଗାଙ୍ଗେୟ ସମତଳରେ ବ୍ୟାପକ ଆନୁଭୂମିକ (horizontal) ପ୍ରତ୍ନତାତ୍ତ୍ୱିକ ଖନନ ନ ହେବା ପର୍ଯ୍ୟନ୍ତ ଏହି ପରିବର୍ତ୍ତନ ପ୍ରକ୍ରିୟାର ପୁଙ୍ଖାନୁପୁଙ୍ଖ ଜାଣିହେବ ନାହିଁ । ସେତକ ହୋଇପାରିଲେ ନାଗରିକ ଜୀବନ ସମ୍ବନ୍ଧିତ ଅଧିକ ଜଟିଳ ପ୍ରଶ୍ନଗୁଡ଼ିକର ଉତ୍ତର ମିଳିପାରିବ । ଯାହା ସବୁ ପ୍ରତ୍ନତାତ୍ତ୍ୱିକ ଖନନ ହୋଇଛି, ତନ୍ମଧ୍ୟରୁ ଅଧିକାଂଶ ହେଲା ଅନୁଲମ୍ବୀୟ (vertical) ଖନନ । ଏଥିରୁ କାଳକ୍ରମ ସମ୍ବନ୍ଧରେ ଜଣାପଡ଼େ; ଅନ୍ୟ ସୂଚନା ଅଧିକ ମିଳେ ନାହିଁ । ହରପ୍ପା ସହରଗୁଡ଼ିକର ଖନନ ଓ ଏହି ଖନନ ମଧ୍ୟରେ ପାର୍ଥକ୍ୟ ଖୁବ୍ ସୁସ୍ପଷ୍ଟ । ତେଣୁ ଯଦିଓ ପ୍ରାରମ୍ଭିକ ସାକ୍ଷ୍ୟ ପ୍ରମାଣ ପୁରାତତ୍ତ୍ୱରୁ ପ୍ରାପ୍ତ ହୋଇଛି, ତଥାପି ପ୍ରାପ୍ତ

ଖନନ ସାମଗ୍ରୀ ଆଧାରରେ ସହରର ଅଭ୍ୟୁଦୟ, ବିକାଶ ଓ କ୍ରିୟାକଳାପ ସମ୍ବନ୍ଧରେ ଟିପ୍ପଣୀ କରିବା ସହଜ ହୁଏ ନାହିଁ । ପଶ୍ଚିମୋତ୍ତରସ୍ଥିତ ଭୀର ଢୁଙ୍କୁରୀ (ଛୋଟ ପାହାଡ଼)ରେ ଆନୁଭୂମିକ ଖନନ କରାଯାଇଛି । ଏହା ତକ୍ଷଶିଳା ନଗରୀର ଅଂଶ ଓ ସେହି ସମୟର ସହର । ମାତ୍ର ଗାଙ୍ଗେୟ କ୍ଷେତ୍ରଠାରୁ ଏହାର ଦୂରତା ଏତେ ଅଧିକ ଯେ, ତାକୁ ଆଧାର କରି ମଧ୍ୟ ଗାଙ୍ଗେୟ କ୍ଷେତ୍ରର ସହରୀକରଣ ସମ୍ବନ୍ଧରେ ବିଶେଷ କିଛି କହିହେବ ନାହିଁ ।

ଯେହେତୁ ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ନାହିଁ, ତେଣୁ ପୋଥିପାଠରୁ ସୂଚନା ଆହରଣ କରାଯାଏ । ହେଲେ ପୋଥିପାଠ ସର୍ବଦା ସେତେବେଳର ଲେଖାସାମଗ୍ରୀ ହୋଇ ନ ଥାଏ । କେତେକ କ୍ଷେତ୍ରରେ ଯଦିଓ ପୋଥି ଅତୀତକୁ ପ୍ରତିବିମ୍ବିତ କରେ, ତହିଁର କେତେକ ତଥ୍ୟ ଆଲୋଚ୍ୟ ସମୟର ଠିକ୍ ପର କାଳାଂଶର ହୋଇଥାଇ ପାରେ । ସର୍ଦ୍ଦାରତନ୍ତ୍ର ଏବଂ ସହର ସମ୍ବନ୍ଧରେ ନିର୍ଦ୍ଦିଷ୍ଟ କିସମର ତଥ୍ୟ ମିଳେ ପାଣିନିଙ୍କ ବ୍ୟାକରଣରୁ, ଯାହା ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀର ରଚନା ଓ ନଗରୀୟ କେନ୍ଦ୍ରର ସମକାଳୀନ । ବୌଦ୍ଧ ପାଲି ଗ୍ରନ୍ଥରେ, ବିଶେଷକରି ତ୍ରିପିଟକରେ, ବୁଦ୍ଧଙ୍କର ଜୀବନ ଓ ଉପଦେଶ ସମ୍ବନ୍ଧରେ ବର୍ଣ୍ଣନା ରହିଛି । ଏହି ବୌଦ୍ଧଗ୍ରନ୍ଥଗୁଡ଼ିକ ଅଧିକାଂଶ କ୍ଷେତ୍ରରେ ନଗରୀୟ ପ୍ରେକ୍ଷାପଟରେ ରଚିତ ହୋଇଛି । ତେଣୁ ନଗରୀୟ ସଭ୍ୟତାର ସାକ୍ଷ୍ୟ ଭାବରେ ସେଗୁଡ଼ିକୁ ବ୍ୟବହାର କରାଯାଇ ପାରିବ । ବୌଦ୍ଧଗ୍ରନ୍ଥଗୁଡ଼ିକ ପ୍ରାରମ୍ଭିକ ସ୍ତରରେ ମୌଖିକ ପରମ୍ପରାରେ ରହିଥିଲେ । ଗୌତମବୁଦ୍ଧଙ୍କର ମୃତ୍ୟୁର ଦୁଇ ତିନି ଶତାବ୍ଦୀ ପରେ ସେଗୁଡ଼ିକୁ ଲେଖାଗଲା । ସେଥିପାଇଁ ଆରମ୍ଭିକ ପର୍ଯ୍ୟାୟର ନଗରୀକରଣ ସହିତ ଏହାର ମେଳ ଦେଖାଯାଏନି । କେବଳ ପରବର୍ତ୍ତୀ ସମୟର ପରିପକ୍ୱ ନଗରୀକରଣ ସହିତ ତା'ର ମେଳ ଖାଏ । ତା' ସତ୍ତ୍ୱେ ସହରର ବିକାଶ ପ୍ରକ୍ରିୟା ସମ୍ବନ୍ଧରେ ଏଥିରୁ ଅନେକ ତଥ୍ୟ ଯେ ମିଳିପାରିବ, ଏଥିରେ ସନ୍ଦେହ ନାହିଁ ।

ଗାଙ୍ଗେୟ ସମତଳର ଦୁଇଟି କ୍ଷେତ୍ରରେ ଘନ ଜନବସତିର ଉଲ୍ଲେଖ ମିଳେ । ଗୋଟାଏ ହେଲା ଦୋଆବ ଓ ଅନ୍ୟଟି ମଧ୍ୟ ଗାଙ୍ଗେୟ ସମତଳର ତାମ୍ର ପାଷାଣ ସମାଜ । ଉଭୟ କ୍ଷେତ୍ରରେ ରାଜ୍ୟ ଓ ସହରର ଅଭ୍ୟୁଦୟ ଦେଖିବାକୁ ମିଳିଥିଲା, ମାତ୍ର ତହିଁରେ ପାର୍ଥକ୍ୟ ଥିଲା । ଦୋଆବ ଓ ପଶ୍ଚିମ ଗାଙ୍ଗେୟ ସମତଳରେ ଚିତ୍ରିତ ମୃଦ୍‌ଭାଣ୍ଡ ସଂସ୍କୃତିର (PGW) ବିକାଶ ଘଟିଥିଲା । ଏହା ପ୍ରାୟ 1200–400 ଖ୍ରୀ.ପୂ. ବେଳର ସଂସ୍କୃତି । ଏହାର ପୂର୍ବଦିଗକୁ ଗଲେ କୃଷ୍ଣ ଲୋହିତ ମୃଦ୍‌ଭାଣ୍ଡ (Black and Red Ware ବା BRW) ତଥା ତା' ଆଗକୁ Northern Black Polished Ware (NBPW) (c. 700–200 ଖ୍ରୀ.ପୂ.)ରୁ ଜଣାପଡ଼େ ଯେ ସହସ୍ରାବ୍ଦୀର ମଧ୍ୟକାଳରେ ଘନ ସହରୀକରଣ ରହିଥିଲା । ଅବଶ୍ୟ ଏଭଳି ଧାରଣା ପଛରେ ବୌଦ୍ଧଗ୍ରନ୍ଥର ଛାପ ବି ରହିଥାଇ ପାରେ ।

ଦୋଆବର ଜନସଂଖ୍ୟା କମ୍ ଥିଲା, କିନ୍ତୁ ଧୀରେ ଧୀରେ ଏହା ବୃଦ୍ଧି ପାଇବାକୁ ଲାଗିଥିଲା । ନଦୀତଟରେ ପ୍ରତିଷ୍ଠିତ ହେଲା ପରେ କେତେକ ଜନବସତି ଅଭ୍ୟନ୍ତରକୁ ସଂପ୍ରସାରିତ ହେଲେ ଏବଂ ସେଠାରେ ଜଙ୍ଗଲ ସଫାକରି କୃଷିକାର୍ଯ୍ୟ ଆରମ୍ଭ କଲେ । ବନ୍ୟାରୁ ରକ୍ଷା ପାଇବା ସକାଶେ କିମ୍ବା ଜଙ୍ଗଲକୁ ଅତିକ୍ରମଣ କରିବା ଉଦ୍ଦେଶ୍ୟରେ ଏଭଳି ସଂପ୍ରସାରଣ ହୋଇଥିବ । ଚିତ୍ରିତ ଗୈରିକ ମୃଦ୍‌ଭାଣ୍ଡ (Ochre Grey Pottey) ମିଳୁଥିବା ଛୋଟ ଛୋଟ ଜନବସତି ବହୁସଂଖ୍ୟାରେ ଉପର ଦୋଆବ କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ଚିତ୍ରିତ ମୃଦ୍‌ଭାଣ୍ଡ ମିଳୁଥିବା ବସତି ଦୋଆବରେ ବହୁଳ ଭାବରେ ରହିଥିଲା । ବଡ଼ ବଡ଼ ବସତି ଅଶ୍ୱକ୍ଷୁରାକୃତି ହ୍ରଦର ତଟରେ ଦେଖାଯାଏ । ଆହୁରି ପୂର୍ବଦିଗକୁ ଗଲେ, ଅଧିକ ଅମଳ ଦେଉଥିବା ଧାନଚାଷ ଦେଖିବାକୁ ମିଳେ, ଯଦିଓ ଧାନଚାଷରେ ଅଧିକ ଶ୍ରମର ଲୋଡ଼ା ପଡ଼େ । ଏହି ସମୟରେ ଭୂଦୃଶ୍ୟରେ ଅଧିକ ପରିମାଣରେ ସ୍ଥାୟୀ କୃଷି ଦେଖିବାକୁ ମିଳିଥିଲା, ମାତ୍ର ଶିକାରୀ-ସଂଗ୍ରାହକ, ପଶୁଚାରକ ଏବଂ ପୋଡୁଚାଷୀ ମଧ୍ୟ ନିଶ୍ଚିହ୍ନ ହୋଇ ଯାଇ ନ ଥିଲେ । ପାଖକୁ ପାଖ ଲାଗି ରହିଥିବା ଛୋଟ ଛୋଟ ଚିତ୍ରିତ ଧୂସର ମୃଦ୍‌ଭାଣ୍ଡ ବସତି ସ୍ଥାନରେ ବଡ଼ ବଡ଼ ବସତିର ବିକାଶ ଦେଖିବାକୁ ମିଳିଲା । ଏହି ବଡ଼ ବଡ଼ ବସତି ଦୀର୍ଘ ବ୍ୟବଧାନରେ NBPW ର ବସତି ସହିତ ଯୋଡ଼ିହୋଇ ରହିଥିଲା । ଏହି NBPW ହେଲା ପ୍ରାରମ୍ଭିକ ସହରର ପୂର୍ବସୂରୀ ।

ନବପାଷାଣ ଓ ତାମ୍ରପାଷାଣ ଯୁଗୀୟ ବସତିକୁ ବାଦ୍‌ଦେଲେ ଗାଙ୍ଗେୟ ସମତଳରେ, ଜଳବିଭାଜିକା କ୍ଷେତ୍ରରୁ ଦେଶାନ୍ତରଣ କରି ମଧ୍ୟ ଅନେକ ଲୋକ ବସତି ସ୍ଥାପନ କଲେ । ଏହାର ଆଭାସ ଦୋଆବର ଚିତ୍ରିତ ଧୂସର ମୃଦ୍‌ଭାଣ୍ଡ ସହ ସମ୍ବନ୍ଧିତ ବ୍ଲେକ୍ ସ୍ଲିପ୍‌ଡ ୱେର (Black Slipped Ware)ରୁ ମିଳିଥାଏ । ମଧ୍ୟ ଗାଙ୍ଗେୟ ସମତଳରୁ ପ୍ରାପ୍ତ ମାଟିପାତ୍ର ସହିତ ଏହାର ସମ୍ବନ୍ଧ ଥିଲା । ଅବଶ୍ୟ ବ୍ଲେକ୍ ସ୍ଲିପ୍‌ଡ ୱେର ଥିଲା ସାମାନ୍ୟ ପରବର୍ତ୍ତୀକାଳୀନ । ଜଳବିଭାଜିକା କ୍ଷେତ୍ରର କେତେକ ଟେକ୍‌ନୋଲୋଜିର ନକଲ କରାଯାଇଥିଲା ବୋଲି PGW ଏବଂ NBPW ର ଟେକ୍‌ନିକ୍‌ରେ ସମ୍ଭବତଃ କିଛି ସମାନତା ଆସିଯାଇଥିବ । ଏଥିରୁ ପଶ୍ଚିମ ସମତଳ କ୍ଷେତ୍ରର ସଂସ୍କୃତିକୁ ସେଠାରେ ଲଦି ଦିଆଯାଇଥିବାର କୌଣସି ସଂକେତ ମିଳେ ନାହିଁ । କେବଳ ପଶ୍ଚିମ ସମତଳର ଲୋକ ଓ ଟେକ୍‌ନୋଲୋଜିର ସ୍ଥାନୀୟ ସଂସ୍କୃତି ସହିତ ସମନ୍ୱୟ ଘଟିଥିଲା ବୋଲି ଆଭାସ ମିଳେ । ଜଳୀୟ ସ୍ଥିତି ତଥା ଜଳବାୟୁରେ ପରିବର୍ତ୍ତନ ଅନୁଭୂତ ହେବା ଫଳରେ ପଶ୍ଚିମୋତ୍ତର ଏବଂ ପଞ୍ଜାବରେ ହୁଏତ କିଛି ଶୁଷ୍କତା ଦେଖାଯାଇଥିବ । ଏହା ଲୋକଙ୍କ ଦୋଆବ କ୍ଷେତ୍ରକୁ ଦେଶାନ୍ତରଣ କରିବାକୁ ପ୍ରୋତ୍ସାହିତ କରିଥିବ । ସେଠାରୁ ପୁଣି ଅଧିକ ଉର୍ବର କୃଷିଜମିର ଅନ୍ୱେଷଣରେ ଲୋକ ଆହୁରି ପୂର୍ବ ଦିଗକୁ ଆକୃଷ୍ଟ ହୋଇଥିବେ । ଯେଉଁ ଜନବସତିମାନ ସହର ରୂପରେ ବିକଶିତ ହେଲା,

ସେଠାକାର ପୁରାତତ୍ତ୍ୱରୁ ଜଣାପଡ଼େ ଯେ ପୂର୍ବବର୍ତ୍ତୀ ବସତି ତୁଳନାରେ ସେଗୁଡ଼ିକ ଭିନ୍ନ ଥିଲା । ତା'ଛଡ଼ା ସହରର ପ୍ରମାଣ ଚିହ୍ନ NBPW ତ ସେଠାରେ ରହିଛି । NBPW ବାଣିଜ୍ୟ ମାଧ୍ୟମରେ ସମଗ୍ର ଉପମହାଦେଶରେ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ଶେଷବେଳକୁ ପହଞ୍ଚି ସାରିଥିଲା ଏବଂ ତାକୁ ଚିହ୍ନିବା କାଠିକର ନୁହେଁ । ଦୋଆବ କ୍ଷେତ୍ରର ପ୍ରଖ୍ୟାତ ଓ ବଡ଼ ସହର ଭାବରେ ହସ୍ତିନାପୁର ସ୍ଥାନରେ କ୍ରମଶଃ କୌଶାମ୍ବୀ ଏବଂ ଭିଟାର ଅଧିକ ଉଲ୍ଲେଖ ଦେଖିବାକୁ ମିଳିଲା । ଏହି ଦୁଇଟି ନୂଆ ସହରରେ ମହାନଗରର ଲକ୍ଷଣମାନ ପରିଲକ୍ଷିତ ହେଲା । ବୈଶାଳୀ, ଉଜ୍ଜୟିନୀ, ଶ୍ରାବସ୍ତୀ, ରାଜଘାଟ ଏବଂ ରାଜଗୃହର ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାପଡ଼େ ଯେ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳ ବେଳକୁ ସେଠାରେ ସହରର ଆରମ୍ଭ ହେଲା ।

ଖନନ ଓ ପୋଥିଗତ ସାକ୍ଷ୍ୟ-ପ୍ରମାଣଗୁଡ଼ିକୁ ନିରୀକ୍ଷଣ କଲେ ଜଣାଯାଏ ଯେ ସହରୀ କେନ୍ଦ୍ରର ଯୋଜନାକୁ ନେଇ ରହିଥିବା ଅବଧାରଣାରେ ଅନେକ ସଂଗତି ରହିଥିଲା । ଅବଶ୍ୟ ଯୋଜନା ଅନୁଯାୟୀ ସହର କେନ୍ଦ୍ରର ବିକାଶ ଘଟୁ ନ ଥିଲା । ସହର ପ୍ରାୟତଃ ଏକ ଖାଇ କିମ୍ବା ପ୍ରାଚୀର ବେଷ୍ଟିତ ଥିଲା । ଖାଇ ଖୋଳିବା ଯୋଗୁଁ ପ୍ରାପ୍ତ ମାଟିକୁ ପ୍ରାଚୀର ନିର୍ମାଣରେ ବ୍ୟବହାର କରାଯାଉଥିଲା । କେତେକ ସ୍ଥଳରେ ପ୍ରାଚୀର ମାଟି ନିର୍ମିତ ଥିଲା, ଯେମିତି ରାଜଘାଟରେ । ମାତ୍ର ପରବର୍ତ୍ତୀ ସମୟରେ ତାକୁ ଇଟାରେ ତିଆରି କରାଗଲା । ଇଟା ନିର୍ମିତ ପାଚେରୀ ବିଶିଷ୍ଟ ସହର ମଧ୍ୟରେ କୌଶାମ୍ବୀ ଅନ୍ୟତମ । ଯେହେତୁ ଅନେକ ସହର ନଦୀକୂଳରେ ସ୍ଥାପିତ ହୋଇଥିଲେ, ପାଚେରୀ ଯୋଗୁଁ ବନ୍ୟାରୁ ସୁରକ୍ଷା ମିଳୁଥିଲା । ପୁଣି, ଲୁଣ୍ଠନକାରୀ ଏବଂ ଆକ୍ରମଣକାରୀଙ୍କ ଦାଉରୁ ଗଡ଼ପାଚେରୀ ସହରକୁ ଯତ୍‌କିଞ୍ଚିତ୍ ରକ୍ଷା କରୁଥିଲା । ସହର ବିକାଶ କଲା ପରେ ସେଠାକାର ପରିବେଶ ଗାଁଠାରୁ ଭିନ୍ନ ଥିଲା । ଏହି ଭିନ୍ନତା ଯୋଗୁଁ ଗାଁ ଓ ସହର ମଧ୍ୟରେ ସୀମା ନିର୍ଦ୍ଧାରଣ ଆବଶ୍ୟକ ହୋଇପଡ଼ିଲା । ଫଳରେ ସହର ଚାରିକଡ଼େ ପାଚେରୀ ତିଆରି ହେଲା । ରାଜସ୍ୱ ଅସୁଲି ପରେ ତାକୁ ସହରରେ ଜମା କରି ରଖାଯାଉଥିଲା । ତେଣୁ ସହର ଉପରେ ଆକ୍ରମଣର ଆଶଙ୍କା ରହୁଥିଲା ଏବଂ ସୁରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବାକୁ ପଡୁଥିଲା । ଆଗ ତୁଳନାରେ ଘର ସେଠାରେ ଶୋଭନୀୟ ଭାବରେ ତିଆରି କରାଯାଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଘର ତିଆରିରେ ଇଟାର ବ୍ୟବହାର ଦେଖିବାକୁ ମିଳିଲା । ଯଦିଓ ପୋଡ଼ା ଇଟାର ବ୍ୟବହାର ମଧ୍ୟ ହେଉଥିଲା, ଅଧିକାଂଶ ଥିଲା କଞ୍ଚା ଇଟାରେ ତିଆରି ଘର । ଘରେ ଅନେକ ନୂତନ ସୁବିଧାମାନ କରାଯାଇଥିଲା, ଯଥା- ନାଳି, ନଳକୂପ ଏବଂ ସୋକେଜ୍ ପିଟ (soakage pit) । ଏଗୁଡ଼ିକ ଦ୍ୱିତୀୟ ନଗରୀକରଣର ପୁରାତାତ୍ତ୍ୱିକ ଚିହ୍ନ ବା ପ୍ରତୀକ ହେଲେ । ସବୁଠାରୁ ବଡ଼ କଥା, ଆକାରରେ ଏଗୁଡ଼ିକ ହରପ୍ପାରୁ ପ୍ରାପ୍ତ ଅବଶେଷଠାରୁ ଭିନ୍ନ ଥିଲେ । ଭୀର ଢୁଙ୍ଗୁରୀର ଘରମାନଙ୍କରେ କୋଠରିଗୁଡ଼ିକ

ଅଗଣାର ଚାରିକଡ଼େ ରହିଥିଲେ । ସେତେବେଳର ଅନେକ ସହରରେ ଏଭଳିଆ ଘରର ପ୍ରତିରୂପ ଦେଖିବାକୁ ମିଳିଥାଏ । ଯେଉଁ କୋଠରିଗୁଡ଼ିକର ଦୁଆରମୁହଁ ସିଧା ରାସ୍ତା ଆଡ଼କୁ ରହିଥିଲା, ତାହା ଦୋକାନ ହୋଇଥାଇପାରେ ବୋଲି ଅନୁମାନ କରାଯାଏ । ଶଗଡ଼ ନେବାରେ ସୁବିଧା ହେବ ବୋଲି ରାସ୍ତାକୁ ସମତଳ କରାଯାଇଥିଲା ।

ପ୍ରାରମ୍ଭିକ ବାଣିଜ୍ୟରେ ଅନେକ କିସମର ସାମଗ୍ରୀ ରହିଥିଲା । ଲୌହ ନିର୍ମିତ ସାମଗ୍ରୀ ମଧ୍ୟରେ କୋଡ଼ି, ଦା', ଛୁରୀଠାରୁ ଆରମ୍ଭକରି ଆଙ୍କୁସୀ, କଣ୍ଟା, ତୀରର ଅଗ୍ରଭାଗରେ ବ୍ୟବହୃତ ହେଉଥିବା ମୁନିଆ ଲୁହା, ବାସନକୁସନ ଏବଂ ଦର୍ପଣ ଆଦି ରହିଥିଲା । ଉତ୍ତର-ପଶ୍ଚିମ କ୍ଷେତ୍ରର ପୋତଓ୍ୱାର ଅଧିତ୍ୟକା (plateau)ରୁ ଖଣିରୁ ଲୁଣ ଉତ୍ପାଦନ କରାଯାଇ ବିକ୍ରି ହେଉଥିଲା । ମନେହୁଏ ଏହି ଲୁଣ ଗାଙ୍ଗେୟ ସମତଳ ଯାଏଁ ଆସୁଥିଲା । ସହରର ଶିଳ୍ପୀ ଓ କାରିଗରମାନେ ଲୁଗା, 'ବିଡ଼', ମାଟିପାତ୍ର, ହାତୀଦାନ୍ତ ତିଆରି ସାମଗ୍ରୀ, କାଚ ନିର୍ମିତ ସାମଗ୍ରୀ, କାଚର ବାସନ ଆଦି ତିଆରି କରୁଥିଲେ । ଏହିସବୁ ବସ୍ତୁର ବ୍ୟାପାର ହେଉଥିଲା । ଏଗୁଡ଼ିକ ମଧ୍ୟରୁ କେତେକ ବସ୍ତୁର ବଟକରା ମିଳିଛି, ଯାହାକୁ ବିନିମୟର ସାକ୍ଷୀ ଭାବରେ ଦେଖିହେବ । ବସ୍ତୁ ବିନିମୟ ମାଧ୍ୟମରେ ପରିବଣ୍ଟନ କେବଳ ଗାଙ୍ଗେୟ ସମତଳ ଯାଏଁ ସୀମିତ ନ ଥିଲା । ଉତ୍ତର-ପଶ୍ଚିମ କ୍ଷେତ୍ରକୁ ମଧ୍ୟ ବିନିମୟ ପାଇଁ ବସ୍ତୁ ଯାଉଥିଲା ଏବଂ ସେଠାରୁ ବିନିମୟରେ ଘୋଡ଼ା ଅଣାହେଉଥିଲା ବୋଲି ମନେହୁଏ । କମ୍ବଳ ଓ ଅନ୍ୟ ପଶମ ବସ୍ତ୍ର ମଧ୍ୟ ବାଣିଜ୍ୟ ପାଇଁ ଉତ୍ପାଦନ ହେଉଥିବା କଥା ସାହିତ୍ୟରେ ଉଲ୍ଲେଖ ଅଛି । ମଣିଷ ଓ ପଶୁର ଆକୃତି ଥିବା ଟେରାକୋଟାର ମଧ୍ୟ ଚାହିଦା ଥିଲା । ଏହିସବୁ ଆକୃତିର ଛାଞ୍ଚ ଅନେକ ସଂଖ୍ୟାରେ ପ୍ରାପ୍ତ ହୋଇଛି । ଖନନରୁ ଖୁବ୍ କେଶବିନ୍ୟାସ କରିଥିବା ସ୍ତ୍ରୀ ମୂର୍ତ୍ତି ମଧ୍ୟ ମିଳିଛି । କୂଅର ସଠିକ ଗୋଲେଇ ଏବଂ ବଡ଼ ବଡ଼ ଜାର୍ ତିଆରିରେ ମଧ୍ୟ ଟେରାକୋଟାର ବ୍ୟବହାର ହେଉଥିଲା । ଟେରାକୋଟାର ରିଙ୍ଗ୍ ଉପରେ ରିଙ୍ଗ୍ ରଖି ତାକୁ ସୋକେଜ ପିଟ୍ (soakage pit) ରୂପରେ ବ୍ୟବହାର କରାଯାଉଥିଲା ।

ଉତ୍ତର-ପଶ୍ଚିମର ନଗରୀୟ ବସତି, ବିଶେଷକରି ଯେଉଁ ସଂସ୍କୃତିରୁ ତକ୍ଷଶୀଳାର ଜନ୍ମ ହୋଇଛି, ତାହା ଗାଙ୍ଗେୟ ସମତଳରୁ ପୃଥକ୍ । ହୟଶାଳ ଏବଂ ଭୀର ଡୁଙ୍ଗୁରୀ (mound)ର ଖନନରୁ ତକ୍ଷଶୀଳା ନଗରର ବସତିର ମହତ୍ତ୍ୱ ରେଖାଙ୍କିତ ହୋଇଥାଏ । ହୟଶାଳ ହେଲା ପୂର୍ବକାଳୀନ ଏବଂ ଭୀର ହେଲା ତକ୍ଷଶୀଳାକାଳୀନ । ଇରାନୀ ଆକେମେନିଡ଼ ଅଭିଲେଖରେ ଉତ୍ତର-ପଶ୍ଚିମର ଗାନ୍ଧାରକୁ ଆକେମେନିଡ୍ ସାମ୍ରାଜ୍ୟର ଏକ ପ୍ରଦେଶ ବୋଲି ଉଲ୍ଲେଖ କରାଯାଇଛି । ତେଣୁ ତକ୍ଷଶୀଳା ତା'ର ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶାସନିକ କେନ୍ଦ୍ର ହୋଇଥିବ । ଆରମ୍ଭରେ ଏଥିରୁ ନଗରୀକରଣ ପାଇଁ ପ୍ରୋତ୍ସାହନ ମିଳିଥିବ । ପରେ ଉତ୍ତର

ଭାରତ ଏବଂ ପଶ୍ଚିମ କ୍ଷେତ୍ରର ବିଭିନ୍ନ ସ୍ଥାନ ମଧ୍ୟରେ ଏକ ବିନିମୟର କେନ୍ଦ୍ର ରୂପରେ ତକ୍ଷଶୀଳାର ମହତ୍ତ୍ୱ ବୃଦ୍ଧି ପାଇଲା । ଗୋଟାଏ ମତ ଅନୁଯାୟୀ, ଗାନ୍ଧାର ନିକଟବର୍ତ୍ତୀ ସହର, ଯଥା- ତକ୍ଷଶୀଳା ଓ ପୁଷ୍କଳବତୀରେ ମିଳିଥିବା ନଗରୀକରଣ ପ୍ରବୃତ୍ତି ସମ୍ଭବତଃ ପଶ୍ଚିମପଟର ନଗରୀରୁ, ଯେମିତି ଆଫଗାନିସ୍ତାନର କାନ୍ଦାହାରରୁ ଆସିଥିଲା ।

ଉଭୟ ନଗରୀକରଣ ଏବଂ ରାଜ୍ୟ ଗଠନ ପ୍ରକ୍ରିୟା ଯାହା ଉପରେ ନିର୍ଭରଶୀଳ ଥିଲା, ତାହା ହେଲା ଉତ୍ପାଦନରୁ ଅସୁଲି ବା ଆଦାୟ । କେଉଁ ଉପାୟରେ ଉତ୍ପାଦନର ବଳକା ଅଂଶକୁ ଆଦାୟ କରାଯିବ, ତାହା ନିଶ୍ଚିତ ନ ହେଲେ ଏପ୍ରକାର ବିକାଶ ସମ୍ଭବ ହେବ ନାହିଁ । ସହର ବାସିନ୍ଦା ଯେହେତୁ ନିଜ ପାଇଁ ଖାଦ୍ୟାନ୍ନ ଉତ୍ପାଦନ କରନ୍ତି ନାହିଁ, ସେମାନଙ୍କ ପାଇଁ ବଳକା କୃଷି ଉତ୍ପାଦନ ହେବା ଆବଶ୍ୟକ । ଏହା ବିବିଧ ପ୍ରକାର ଅର୍ଥନୈତିକ କର୍ମ ପାଇଁ ଭିତ୍ତି ପ୍ରଦାନ କରେ । ବୋଧହୁଏ ସବୁଠାରୁ ନିର୍ଣ୍ଣାୟକ ଥିଲା ବର୍ଷରେ ଦୁଇଟି ଫସଲର ଉତ୍ପାଦନ ହେବା ଏବଂ କେତୋଟି ସ୍ଥାନରେ ତିନୋଟି ଫସଲର ଉତ୍ପାଦନ ହେବା । ଧାନ ଚାଷରୁ ଅନ୍ୟାନ୍ୟ ଚାଷ ତୁଳନାରେ ଅଧିକ ପରିମାଣର ଉତ୍ପାଦନ ହେଲା, ଯାହା ବଳକା ଉତ୍ପାଦନ ସୃଷ୍ଟି କଲା । ତେଣିକି କୃଷି ପାଇଁ ଜଳସେଚନକୁ ଏକ ଆବଶ୍ୟକତା ମନେକରାଗଲା । ବୈଦିକ ସାହିତ୍ୟରେ ମଧ୍ୟ ଗଙ୍ଗା ସମତଳ କ୍ଷେତ୍ରକୁ ଖାଲୁଆ ଓଦା ମାଟି ବୋଲି କୁହାଯାଇଛି । ତାକୁ କୃଷି ଉପଯୋଗୀ କରିବା ସକାଶେ ଜଳ ନିଷ୍କାସନର ବ୍ୟବସ୍ଥା କରାଯାଇଥିବ । ସମ୍ଭବତଃ ଏଥିରୁ କେନାଲ ତିଆରି କରିବାର ବୁଦ୍ଧି ଜୁଟିଥିବ । ଜଳସେଚନ ପାଇଁ ଆଗରୁ ରହିଥିବା କୂଅ ଓ ଜଳୋତ୍ତଳନ ବ୍ୟବସ୍ଥା ପାଇଁ ଏହା ଖୁବ୍ ଅନୁପୂରକ ସିଦ୍ଧ ହୋଇଥିବ । ଅଧିକ ଅମଳକ୍ଷମ କୃଷି ଏବଂ ଜଳସେଚନ ବ୍ୟବସ୍ଥା ପାଇଁ ଶ୍ରମ ବିଶେଷଭାବେ ଲୋଡ଼ା । ଅର୍ଥାତ୍ ଯଥେଷ୍ଟ ସଂଖ୍ୟାରେ ଶ୍ରମିକ ମିଳିବା କଥା । ଉକ୍ତ ଶ୍ରମିକଙ୍କୁ ପୁଣି ନିୟନ୍ତ୍ରିତ ଓ ନିର୍ଦ୍ଦେଶିତ କରିବା ନିମିତ୍ତ ଏକ ବ୍ୟବସ୍ଥା ରହିବା କଥା ।

ମାତ୍ର ବଳକା ଉତ୍ପାଦନ ଯଥେଷ୍ଟ ନ ଥିଲା । ପୁଣି ତାକୁ ସଂଗ୍ରହ ଓ ବଣ୍ଟନ କରିବା ସକାଶେ ଏକ କ୍ଷୁଦ୍ର ସମୂହର ଆବଶ୍ୟକତା ଥିଲା । ଏହି ସମୂହ ସଂଗ୍ରହ ଓ ବଣ୍ଟନ କାର୍ଯ୍ୟକୁ ସୁଚାରୁ ରୂପେ କରିପାରିବ । ବୃହତ୍ତର ସମାଜ ପୁଣି ଏହି କ୍ଷୁଦ୍ର ଗୋଷ୍ଠୀର ନିୟନ୍ତ୍ରଣକୁ ସ୍ୱୀକାର କରିବା କଥା । ବଳକା ଉତ୍ପାଦନ କ୍ଷମତାର ଉଦ୍ଭବ ସେତେବେଳେ ହେବ, ଯେତେବେଳେ ସାମାଜିକ ମର୍ଯ୍ୟାଦା ଦାବି କରୁଥିବା ଗୋଷ୍ଠୀର କର୍ତ୍ତୃତ୍ୱ ବୃଦ୍ଧିରେ ତାକୁ ବିନିଯୋଗ କରାଯିବ । ଯେଉଁ ଗୋଷ୍ଠୀ ନିଜ ପାଇଁ ଖାଦ୍ୟାନ୍ନ ଉତ୍ପାଦନ କରେ ନାହିଁ, ତା ପାଇଁ ଖାଦ୍ୟ ଯୋଗାଇ ବଳକା ଉତ୍ପାଦନ ଉକ୍ତ ଗୋଷ୍ଠୀକୁ ବିଭିନ୍ନ ଶିଳ୍ପକଳାରେ ପାରଙ୍ଗମତା ହାସଲ କରିବା ନିମନ୍ତେ ସାହାଯ୍ୟ କଲା । ବଳକା ଉତ୍ପାଦନ କେବଳ ସ୍ଥାନୀୟ ଉପଯୋଗରେ

ସୀମିତ ରହିଲା ନାହିଁ, ତାକୁ ବିନିମୟ ବ୍ୟବସ୍ଥାର ଅଭିବୃଦ୍ଧିରେ ବ୍ୟବହାର କରାଗଲା । ବିନିମୟରୁ ରାଜସ୍ୱ ପ୍ରାପ୍ତି ହେଲା । ମାତ୍ର ଏହି ଅଭିବୃଦ୍ଧିକୁ ଜାରି ରଖିବାକୁ ହେଲେ କଞ୍ଚାମାଲ୍ ପ୍ରସ୍ତୁତି ଏବଂ ଉତ୍ପାଦିତ ସାମଗ୍ରୀର ବିତରଣ ନିମନ୍ତେ ଯଥେଷ୍ଟ ସଂଖ୍ୟାରେ ଲୋକ ରହିବା କଥା ।

ପୂର୍ବରୁ ଧାରଣା ଥିଲା, ବଳକା ଉତ୍ପାଦନ ପାଇଁ ପ୍ରାଥମିକ ସର୍ତ୍ତ ହେବ ଜଳସେଚନ ବ୍ୟବସ୍ଥା । ତେଣୁ ଜଳସେଚନ ବ୍ୟବସ୍ଥାର ନିୟନ୍ତ୍ରଣ ଯାହା ହାତରେ ରହିବ, ସେ ହିଁ କ୍ଷମତାର ମୂଳକୁ ହାତରେ ରଖିପାରିବ । ଏହି ଧାରଣାକୁ ଆଜିକାଲି ଆଉ ଗ୍ରହଣ କରାଯାଉ ନାହିଁ । ଜଳସେଚନର କୃଷିରେ ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ, ମାତ୍ର ତାକୁ ମୌଳିକ ବା ଏକମାତ୍ର ଆବଶ୍ୟକତା କୁହାଯାଇ ପାରିବ ନାହିଁ । ଆଜିକାଲି ଲୌହ ଟେକ୍ନୋଲୋଜିକୁ କୃଷି ପାଇଁ ଅଧିକ ଗୁରୁତ୍ୱ ଥିଲା ବୋଲି କୁହାଯାଉଛି । ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଶେଷ ବେଳକୁ ଅପରିଷ୍କୃତ ରୁକ୍ଷ କିସମର ଲୌହ ଉପକରଣ ମିଳିବା ଆରମ୍ଭ ହୋଇଯାଇଥିଲା । ଖ୍ରୀ.ପୂ. ୪୦୦ରୁ ଲୌହର ବ୍ୟବହାର, ବିଶେଷକରି ଅସ୍ତ୍ରଶସ୍ତ୍ର ନିର୍ମାଣରେ ହୋଇଥିଲା ବୋଲି ଜଣାପଡ଼େ । ମାତ୍ର ସେହି ଲୌହ ଉନ୍ନତମାନର ନ ଥିଲା । ଉନ୍ନତ ଧରଣର ଲୌହ ଉପକରଣ ପରେ ବ୍ୟବହାରକୁ ଆସିଲା । ଏହା ଉଭୟ ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ଅଧିକ ଥିଲା । ଲୌହ ଉପକରଣ ମଧ୍ୟରେ ଅନ୍ୟତମ ଥିଲା ପାତ୍ର, କଣ୍ଟା ଆଦି ତଥା ଉନ୍ନତ କିସମର ଅସ୍ତ୍ରଶସ୍ତ୍ର ।

ତମ୍ବା ତରଳେଇବା ପାଇଁ ବ୍ୟବହୃତ ଟେକ୍ନୋଲୋଜି ପରି ଟେକ୍ନୋଲୋଜିକୁ ବ୍ୟବହାର କରି ଲୁହାପଥରକୁ ତରଳାଗଲା ଏବଂ ଲୁହା ଉତ୍ପାଦନ କରାଗଲା ବୋଲି ଅନୁମାନ କରାଯାଏ । ମାତ୍ର ସହସ୍ରାବ୍ଦୀର ମଧ୍ୟକାଳରୁ ଲୌହର ବ୍ୟବହାରରେ ଖୁବ୍ ଉନ୍ନତି ଦେଖିବାକୁ ମିଳିଲା । NBPWରୁ ଜଣାପଡ଼େ ଯେ ସେତେବେଳକୁ ଅଧିକ ଉତ୍ତାପକାରୀ ବ୍ୟବସ୍ଥା ସମ୍ଭବ ହୋଇ ସାରିଥିଲା । ଉତ୍ତର ରାଜସ୍ଥାନର ଯୋଧପୁରରେ କରାଯାଇଥିବା ଖନନରୁ ଲୁହାଭାଟି ମିଳିଛି । ଅତରଂଜିଖେଡ଼ା ଏବଂ ଖୈରାଡିହି ଥିଲା ମଧ୍ୟ-ଗାଙ୍ଗେୟ ସମତଳର ଅନ୍ୟ ଦୁଇଟି ଲୁହା ଉତ୍ପାଦନ କେନ୍ଦ୍ର । କୁଶଳତାର ସହିତ ଲୁହାର ବ୍ୟବହାର କରିବା ଥିଲା ଏକ ନୂତନ ଅନୁଭୂତି, କାରଣ ଗାଙ୍ଗେୟ କ୍ଷେତ୍ରର ତାମ୍ରପାଷାଣ ସଂସ୍କୃତିରେ ଧାତୁର ବିଶେଷ ପ୍ରୟୋଗ ଦେଖିବାକୁ ମିଳେ ନାହିଁ । ଏହି ସମୟରୁ ଭାରତର ବିଭିନ୍ନ ସ୍ଥାନରେ ବ୍ୟବହୃତ ହେଉଥିବା ଉପକରଣଗୁଡ଼ିକୁ ଦେଖିଲେ ମନେହୁଏ ଅନେକ ସମାଜ ଲୁହାର ବ୍ୟବହାରକୁ ନେଇ ନୂଆ ନୂଆ ପ୍ରୟୋଗମାନ କରୁଥିଲେ । ଯେତେଗୁଡ଼ିଏ ସ୍ଥାନରୁ ଲୁହାର ଅବଶେଷ ପ୍ରାପ୍ତ ହୋଇଛି, ତହିଁରୁ ଲାଗେ ଯେ ଏହି ଧାତୁର ବ୍ୟାପକ ଉପଯୋଗ କରାଯାଉଥିଲା । ଗୋଟାଏ ମତ ଅନୁସାରେ, 'ମହାଭାରତ'ର ଆରମ୍ଭ ପର୍ବରେ ଲୁହାକୁ ତରଳ କରିବା,

ଶୀତଳ କରିବା ଏବଂ ଆବଶ୍ୟକତା ଅନୁଯାୟୀ ଉପକରଣ ତିଆରି କରିବା କଥାର ଉଲ୍ଲେଖ ରହିଛି ।

ଲୌହ ଟେକ୍‌ନୋଲୋଜି ଯୋଗୁଁ କୃଷି ଉତ୍ପାଦନ ବୃଦ୍ଧି ପାଇଲା ବୋଲି ଯେଉଁ ଯୁକ୍ତି ଦର୍ଶାଯାଏ, ତହିଁରେ ଏକାଧିକ ସଂଯୋଗ ରହିଛି । ପ୍ରଥମ ହେଲା, ଲୁହା କୁରାଢ଼ିର ବ୍ୟବହାର ଫଳରେ ଜଙ୍ଗଲ ସହଜରେ ସଫା ହେଲା ଏବଂ କୃଷିଯୋଗ୍ୟ ଜମି ପ୍ରସ୍ତୁତ ହେଲା । ଦ୍ୱିତୀୟ, ଲୁହାର କୋଡ଼ି ହେଲା କୃଷିର ଏକ ଅତି ଉପଯୋଗୀ ଉପକରଣ । ତା'ଛଡ଼ା, ଲଙ୍ଗଳରେ ଲୁହାଧାର (କସନା)ର ଉଦ୍ଭାବନ ଫଳରେ କଠିନ ମାଟିକୁ ପୋତିବା ବା କର୍ଷଣ କରିବା, ଲଙ୍ଗଳର କାଷ୍ଠ ଧାର ତୁଳନାରେ ଅଧିକ ଫଳପ୍ରଦ ହେଲା । ମାତ୍ର ଖନନରୁ ଖୁବ୍ କମ୍‌ସଂଖ୍ୟକ ଲୁହା କୋଦାଳ ମିଳିଛି । ତତ୍‌କାଳୀନ ରଚନାରୁ ଜଣାଯାଏ ଯେ, ଜଙ୍ଗଲ ସଫା କରିବାପାଇଁ ନିଆଁର ବେଶି ଉପଯୋଗ ହେଉଥିଲା । ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳିଥିବା ଲୁହା କସନା (plough share)ର ପରିମାଣ ତ ନଗଣ୍ୟ ପ୍ରାୟ । ଏକ ବୌଦ୍ଧ ରଚନାରେ ଲୁହା କସନାରେ ପାଣି ଚଢ଼ାଇବା କଥା କୁହାଯାଇଛି । ସେହି ଆଧାରରେ କୁହାଯାଏ ଯେ, ସେତେବେଳେ ଲଙ୍ଗଳରେ ଲୁହା କସନାର ବ୍ୟବହାର ହେଉଥିଲା । ଗାଙ୍ଗେୟ ସମତଳ ବାହାରେ ଯେଉଁ କ୍ଷେତ୍ର, ସେଠାକାର ମାଟିରେ ଲୁହା କସନାର ଉପଯୋଗିତାକୁ ନେଇ ଗବେଷକମାନେ ସନ୍ଦେହ ପ୍ରକାଶ କରନ୍ତି ।

କୁରାଢ଼ି ଏବଂ ଲୁହା କସନାକୁ ଗୁରୁତ୍ୱ ଦେବା ପ୍ରକ୍ରିୟାରେ ଲୁହା ଟେକ୍‌ନୋଲୋଜିର ଗୋଟାଏ କାର୍ଯ୍ୟକୁ ସାଧାରଣତଃ ଅଣଦେଖା କରାଯାଏ । ବିଭିନ୍ନ ଶିଳ୍ପ କାରିଗରୀ କ୍ଷେତ୍ରରେ ଲୁହା ଉପକରଣ ଆସିବା ପରେ ବ୍ୟାପକ ପରିବର୍ତ୍ତନ ହୋଇଥିବ, ଯାହାକୁ ଦୃଷ୍ଟି ଦିଆଯାଏ ନାହିଁ । ଏହା ପରେ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ତାମ୍ର ପାଷାଣ ସ୍ତର ତୁଳନାରେ ହାଡ଼, କାଚ, ହାତୀଦାନ୍ତ, ମଣିପଥର, ଶାମୁକା ଏବଂ ପଥରରୁ ନିର୍ମିତ ବସ୍ତୁରେ ବ୍ୟାପକ ଅଭିବୃଦ୍ଧି ଦେଖିବାକୁ ମିଳିଲା । ଲୁହା ଉପକରଣର ଉପଯୋଗ ବୃଦ୍ଧି ପାଇବା ସହିତ ନୂତନ ଟେକ୍‌ନୋଲୋଜି ବ୍ୟବହାରକୁ ନେଇ ଆତ୍ମବିଶ୍ୱାସ ବୃଦ୍ଧି ହେଲା । ନୂତନ ଟେକ୍‌ନୋଲୋଜି ବ୍ୟାପକ ଭାବରେ ବ୍ୟବହୃତ ହେଲା । ଉଦାହରଣ ସ୍ୱରୂପ, ଘରର ସିଲିଂ ପାଇଁ ବିମ୍‌ରୁ ଆରମ୍ଭକରି ଉନ୍ନତ ଧରଣର ରଥ, ଶଗଡ଼ ଏବଂ ଡଙ୍ଗା ଆଦି କାଠ ତିଆରି ସାମଗ୍ରୀ ପ୍ରସ୍ତୁତ କରିବାଲାଗି ଲୁହା ଉପକରଣର ବ୍ୟବହାର ହେଲା । ପୁଣି ଆହୁରି ଅନେକ ଟେକ୍‌ନୋଲୋଜି, ଯଥା- ଉନ୍ନତ ମାନର ମାଟି ତିଆରି ପାତ୍ରକୁ ପୋଡ଼ିବା ପାଇଁ ତଥା କାଚ ତିଆରି ପାଇଁ ଆବଶ୍ୟକ ଭାଟିର ଟେକ୍‌ନୋଲୋଜି ଓ ଲୁହାର ଟେକ୍‌ନୋଲୋଜି ମଧ୍ୟରେ ଅନ୍ତଃସମ୍ବନ୍ଧ ରହିଥିଲା ।

ହୁଏତ ପରିବର୍ତ୍ତନ ପାଇଁ ଲୁହାକୁ ଏକମାତ୍ର ଟେକ୍‌ନୋଲୋଜି ଭାବରେ ନିଆଯାଇ ନ ପାରେ । ତା' ସତ୍ତ୍ୱେ ଏକଥା ମଧ୍ୟ ସତ ଯେ ସମ୍ପୂର୍ଣ୍ଣ ପରିବର୍ତ୍ତନ ପ୍ରକ୍ରିୟାରେ ଲୁହାର ଭୂମିକାକୁ ଗୌଣ କରାଯାଇ ନ ପାରେ । ବଳକା ଉତ୍ପାଦନ ଉପରେ ଏକ ମୁଷ୍ଟିମେୟ ଗୋଷ୍ଠୀର ନିୟନ୍ତ୍ରଣ ରହିଥିଲା । ତେଣୁ ବଳକା ଉତ୍ପାଦନ କେଉଁଭଳିଭାବେ ବୃଦ୍ଧି ପାଇବ, ତାହା ଏକ ମହତ୍ତ୍ୱପୂର୍ଣ୍ଣ ଉପାଦାନ ଭାବେ ଗଣା ହେଉଥିଲା । ଲୌହ ପ୍ରାଦ୍ୟୋଗିକୀ ବା ଲୁହା ଟେକ୍‌ନୋଲୋଜିର ପ୍ରଚାର ଲୁହାର ଉପଲବ୍ଧତା ଏବଂ ଯାଯାବର ଭାବେ ଗୋଟାଏ ସ୍ଥାନରୁ ଆଉ ଏକ ସ୍ଥାନକୁ ଯାଉଥିବା ଲୌହ କର୍ମକାର (ଲୋହାର ବା ଲୁହୁରା) ମାଧ୍ୟମରେ ହେଲା । ତେଣୁ ଏହି ଟେକ୍‌ନୋଲୋଜି ଉପରେ ଏକାଧିକାର ସାବ୍ୟସ୍ତ କରିବା ସହଜ ନ ଥିଲା । ସମାଜରେ ଲୌହକାରର (ଲୌହ କର୍ମକାରର) ସ୍ଥାନ ଥିଲା ଅତି ନିମ୍ନରେ । ତେଣୁ କେତେକ ଖାସ୍ ଉତ୍ପାଦନ ଉପରେ ନିୟନ୍ତ୍ରଣ ରଖିବା ସମ୍ଭବ ହେଲା । ଅନେକ ଲୌହ ଉପକରଣର ଦୈନନ୍ଦିନ ବ୍ୟବହାର ରହିଥିଲା । ତାକୁ ବାଦ୍ ଦେଲେ ଅନ୍ୟ ଲୌହ ଉପକରଣମାନ ସମ୍ଭବତଃ ମର୍ଯ୍ୟାଦାର ପ୍ରତୀକ ରୂପେ ଗଣା ହେଲେ । ରାଜ୍ୟ ଏହି ପ୍ରକ୍ରିୟାରେ ଅସ୍ତ୍ରଶସ୍ତ୍ର ଉପରେ ନିଜର ନିୟନ୍ତ୍ରଣ ଜାହିର କଲା ।

ବଳକା ଉତ୍ପାଦନ ପାଇଁ କୃଷି ସଂପ୍ରସାରଣ ଏବଂ ଲୁହାର ବ୍ୟବହାର ନିଶ୍ଚିତ ରୂପେ ଏକ ଆବଶ୍ୟକତା ହୋଇଥିବ । ମାତ୍ର ତାହା ଯଥେଷ୍ଟ କାରଣ ହୋଇ ନ ଥିବ, ଯାହାକୁ ଆଧାର କରି ସହରୀକରଣ ସମ୍ଭବ ହୋଇଥିବ ଏବଂ ରାଜ୍ୟ ବ୍ୟବସ୍ଥା ପ୍ରତିଷ୍ଠା ଲାଭ କରିଥିବ । ଉଦାହରଣ ପାଇଁ ଉପଦ୍ୱୀପର ସମକାଳୀନ ମହାପାଷାଣିକ (Megalithic) ସମାଜକୁ ଦେଖିହେବ । ଉପଦ୍ୱୀପର ସଂସ୍କୃତି ପ୍ରାକ୍-ରାଜ୍ୟ ଓ ପ୍ରାକ୍-ସହର ସ୍ତରରେ ସେତେବେଳେ ରହିଗଲା, ଯଦିଓ ସେଠାରେ ଉଭୟ କୃଷି ସଂପ୍ରସାରଣ ଓ ଲୁହାର ବ୍ୟବହାର ଜଣା ନ ଥିଲା । ବଳକା ଉତ୍ପାଦନର ସଂଗ୍ରହ ବା ଅସୁଲି ଏବଂ ପୁନଃବିତରଣ ଥିଲା ପରିବର୍ତ୍ତନର ଅନ୍ୟ ଏକ ଅତିମହତ୍ତ୍ୱପୂର୍ଣ୍ଣ ଉପାଦାନ । କୋଠଘରକୁ ଅସୁଲ ହୋଇ ଆସୁଥିବା ସାମଗ୍ରୀ ଉପରେ ଅଧିକାର ସାବ୍ୟସ୍ତ କରିବା ଶାସକ ଓ କର୍ତ୍ତୃପକ୍ଷଙ୍କ କେବଳ ଏକମାତ୍ର କାର୍ଯ୍ୟ ନ ଥିଲା, ବରଂ ଶ୍ରମ ଦେଇ ଉତ୍ପାଦନ କରୁଥିବା ସମୂହକୁ ନିୟନ୍ତ୍ରଣ କରିବା ବି ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା । ରାଜ୍ୟ ଗଠନ ଦିଗରେ ଅଧିକ ବିକାଶ ନିମନ୍ତେ ଶ୍ରମ କରୁଥିବା ଗୋଷ୍ଠୀ ଏବଂ ଶ୍ରମର ପ୍ରବନ୍ଧନ କରୁଥିବା ଗୋଷ୍ଠୀ ମଧ୍ୟରେ ଏକ ନୂଆ ସମ୍ବନ୍ଧ ସ୍ଥାପନର ଆବଶ୍ୟକତା ପଡୁଥିଲା ।

ତତ୍‌କାଳୀନ ରଚନାବଳୀରୁ ପ୍ରାରମ୍ଭିକ ନଗରୀକରଣ ଦୁଇଟି ମାର୍ଗରେ ହୋଇଥିବ ବୋଲି ଅନୁମାନ କରାଯାଏ । ଗୋଟାଏ ହେଲା, ଲୌହକାର, କୁମ୍ଭକାର, ବଢ଼େଇ, ବୁଣାକାର

ଏବଂ ବେତ ଓ ବାଉଁଶ କାମ କରୁଥିବା ବେତରା ଆଦି ପେଷାଦାର କାରିଗରମାନଙ୍କର ସ୍ୱତନ୍ତ୍ର ଗ୍ରାମ ବସିଥିବ । ଏହି ଗ୍ରାମଗୁଡ଼ିକ ଆବଶ୍ୟକ କଞ୍ଚାମାଲ୍‌ର ଓ ବଜାର ତଥା ଯାତାୟାତ ମାର୍ଗର ନିକଟରେ ସ୍ଥାପିତ ହୋଇଥିବ । ଉଦାହରଣ ସ୍ୱରୂପ, ମାଟିପାତ୍ର ନିର୍ମାଣ ପାଇଁ ଲୋଡ଼ା ପଡୁଥିବା ମାଟି ଯେଉଁଠି ମିଳିବ, ସେଠିକି କୁମ୍ଭକାରମାନେ ଆକୃଷ୍ଟ ହୋଇ ଯିବେ ଏବଂ ତା' ପାଖରେ ବସତି ସ୍ଥାପନ କରିବେ । ସେହିଭଳି ଉପଯୁକ୍ତ କାଠ ମିଳୁଥିବା ଜାଗାରେ ଯାଇ ବଢ଼େଇ ରହିବାକୁ ପସନ୍ଦ କରିବ । ବିଶେଷଜ୍ଞ କାରିଗରମାନେ ଏକତ୍ରିତ ହୋଇ ରହିବେ, କାରଣ ତଦ୍ୱାରା ସମ୍ବଳ ଓ କାରିଗରୀ ବସ୍ତୁକୁ ନିଜ ନିଜ ମଧ୍ୟରେ ବାଣ୍ଟିପାରିବେ । ଏହିଭଳି ଏକତ୍ରିତ ହୋଇ ସେମାନେ ରହିଲେ, ଉକ୍ତ ସ୍ଥାନଟି ସହରରେ ରୂପାନ୍ତରିତ ହେବ ଏବଂ ସହର ହେବାପରେ ଉତ୍ପାଦନର ପ୍ରସାରଣ ସମ୍ଭବ ହେବ । ଏହାଫଳରେ ସହରର ବଜାର ବାଣିଜ୍ୟ କେନ୍ଦ୍ର ରୂପରେ ଅଭିବୃଦ୍ଧି ଲାଭ କରିବ । ବୈଶାଳୀ, ଶ୍ରାବସ୍ତୀ, ଚମ୍ପା, ରାଜଗୃହ, କୌଶାମ୍ବୀ ଏବଂ କାଶୀ ଆଦି ଥିଲେ ଏଭଳିଆ ସହର । ଗାଙ୍ଗେୟ ସମତଳର ଅର୍ଥନୀତିରେ ଏହି ସହରଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଆଉ କେତେକ ସହର, ଯଥା- ଉଜ୍ଜୟିନୀ, ତକ୍ଷଶୀଳା ଓ ଭାରକଚ୍ଛ ବା ଭୃଗୁକଚ୍ଛ ବନ୍ଦର (ବଡ଼ୌଚ), ନିଜର ବ୍ୟାପକ ଭୌଗୋଳିକ ପ୍ରଭାବ ଓ ଆର୍ଥିକ ସମ୍ପର୍କ ଲାଗି ପ୍ରସିଦ୍ଧି ପାଇଥିଲା ।

ନଗରୀକରଣର ଏକ ସଂକେତ ରହିଥିଲା ଜନବସତିଗୁଡ଼ିକର ଅନୁକ୍ରମରେ (hierarchy) । ଗ୍ରାମ ଥିଲା ସବୁଠାର ସାନ ଜନବସତି । 'ନିଗମ' ଓ 'ପୂତ ବେଦନ' ବୋଲି ଉଲ୍ଲେଖ ଥିବା ସ୍ଥାନ ଥିଲା ବିନିମୟ କେନ୍ଦ୍ର ଓ ସ୍ଥାନୀୟ ବଜାର । ନଦୀ ବନ୍ଦରକୁ ପାଟଳିଗ୍ରାମ ଓ ନଦୀଘାଟକୁ ଶ୍ରୀଙ୍ଗବେରପୁର କୁହାଯାଉଥିଲା । ଏହି ଉଭୟ ସ୍ଥାନ ବସ୍ତୁ ବିନିମୟ କେନ୍ଦ୍ର ରୂପେ କାର୍ଯ୍ୟ କରୁଥିଲେ । ସହରକୁ 'ନଗର' ଏବଂ ବଡ଼ ସହରକୁ 'ମହାନଗର' ନାମରେ ଉଲ୍ଲେଖ କରାଯାଉଥିଲା । ମହାନଗର କେବଳ ଆକାରରେ ବଡ଼ ନ ଥିଲା, ତା' ସହିତ ସୁପ୍ରତିଷ୍ଠିତ, ଧନାଢ୍ୟ ଏବଂ ରାଜନୈତିକ ଦୃଷ୍ଟିରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । କୌଶାମ୍ବୀ ଏକ ମହାନଗରର ମହତ୍ତ୍ୱ ପାଉଥିଲା, କାରଣ ଆକାରରେ ଏହା ପ୍ରାୟ 150 ହେକ୍ଟର ଥିଲା । ବୌଦ୍ଧିକ ଗ୍ରନ୍ଥରେ କଦାଚିତ ଗ୍ରାମ, ନିଗମ, ନଗରକୁ ସାନରୁ ବଡ଼ କ୍ରମ ଅନୁଯାୟୀ ଉଲ୍ଲେଖ କରାଯାଇଛି । ଗ୍ରାମ ହେଲା ଗ୍ରାମ; ନିଗମ ହେଲା ହାଟ ବା ବଜାର; ଓ ନଗର ହେଲା ସହର ।

ସହରର ଏକ ବିଶେଷତ୍ୱ ହେଲା ତହିଁରେ ଭିନ୍ନ ଭିନ୍ନ ପରିଚୟର ଲୋକ ନିବାସ କରୁଥିଲେ । ସୈଦ୍ଧାନ୍ତିକ ରୂପରେ, ପେଷାନିପୁଣ ଗୋଷ୍ଠୀମାନେ ସହରର ନିର୍ଦ୍ଧାରିତ ଅଂଶଗୁଡ଼ିକରେ ଅବସ୍ଥାନ କରିବେ ବୋଲି କଥା ରହିଥିଲା । ପୋଥିପାଠରେ ଦୁଇଟି ଜାଗାର

ଉଲ୍ଲେଖ ରହିଛି, ଯେଉଁଠି ସମକୋଣରେ ଦୁଇଟି ରାଜପଥ ପରସ୍ପରକୁ ଭେଟିଛନ୍ତି । ଏହି ଜାଗାଟି ସହରର ଅକ୍ଷକେନ୍ଦ୍ର ରୂପେ ବିକଶିତ ହୋଇଛି । ସହରର କେନ୍ଦ୍ରସ୍ଥଳ ହେଉଛି ଅଧିକାରୀ ରହୁଥିବା ସ୍ଥାନ, ଯଥା- ରାଜପ୍ରାସାଦ, ରାଜଦରବାର ବା ଗଣସଂଘର ସଭାକକ୍ଷ । ଏହି ସବୁ ଥିଲା ସ୍ମାରକ ସ୍ଥାନୀୟ ବିଲ୍‌ଡିଂ । ଉଦାହରଣ ସ୍ୱରୂପ, କୌଶାମ୍ବୀର ରାଜପ୍ରାସାଦ । ଅବଶ୍ୟ ଏହି ଧରଣର ବିଲ୍‌ଡିଂର ନିର୍ମାଣ ନଗରୀକରଣର ପରିପକ୍ୱ ଅବସ୍ଥାରେ ଦେଖିବାକୁ ମିଳିଥିଲା । ଭୀର ଡୁଙ୍ଗୁରୀ (Bhir Mound)ର କୌଣସି ନଗର-ଯୋଜନା ନ ଥିଲା । ତାକୁ ଅନୁଧ୍ୟାନ କଲେ ଲାଗେ ଯୋଜନା ଅନୁଯାୟୀ ସହରର ନିର୍ମାଣ ସଦାବେଳେ ହେଉ ନ ଥିଲା । ନଗରୀକରଣରେ ସମରୂପତା ଆଣିବା ଲାଗି କେତେକ ପ୍ରୟାସ ହେଉଥିଲା, ଯାହାକୁ ରାସ୍ତାର ନେଟୱାର୍କ, ନାଳି-ନର୍ଦ୍ଦମା ବ୍ୟବସ୍ଥା ଏବଂ ପେଷା ଅନୁସାରେ ସାହିର ସ୍ଥାପନ ମାଧ୍ୟମରେ ଦେଖିହେବ ।

ଏପର୍ଯ୍ୟନ୍ତ ପ୍ରାପ୍ତ ସାକ୍ଷ୍ୟ-ପ୍ରମାଣକୁ ବିଚାର କଲେ ଜଣାଯିବ ଯେ, ଗାଙ୍ଗେୟ ସମତଳର ନଗରୀକରଣ ସମୟରେ ନା ହରପ୍ପାକାଳୀନ ନଗର-ଯୋଜନାକୁ ସ୍ମୃତିରେ ଅଣାଯାଇଛି, ନା ତାକୁ ଅନୁକରଣ କରିବାକୁ ପ୍ରୟାସ କରାଯାଇଛି । ହରପ୍ପାର ଗଡ଼ (citadel)ର ସଂରଚନାକୁ ନଗର ନିର୍ମାଣ ବେଳେ ସାମିଲ କରିଦିଆଯାଇଛି ଅଥବା ନଗରର ଯନ୍ତ୍ର-ତନ୍ତ୍ର ବିଛେଇ ହୋଇ ପଡ଼ିଛି । ଯଦିଓ ଅନେକଗୁଡ଼ିଏ ସହର ଏହି ସମୟରେ ନଦୀକୂଳରେ ସ୍ଥାପିତ ହୋଇଥିଲେ ଏବଂ ସେଗୁଡ଼ିକ ଉପରେ ବନ୍ୟାର ପ୍ରକୋପ ଲାଗି ରହିଥିଲା, ସହରର ବିଲ୍‌ଡିଂଗୁଡ଼ିକୁ ସୁରକ୍ଷିତ ରଖିବା ସକାଶେ ଇଟା ନିଅଁର କୌଣସି ପ୍ରମାଣ ମିଳେନା । ଗାଙ୍ଗେୟ ନଦୀ ବ୍ୟବସ୍ଥାର ନଗରୀୟ ଆବଶ୍ୟକତା ଓ ନଗର-ବାସିନ୍ଦାମାନେ ପୂର୍ଣ୍ଣତଃ ସୈନ୍ଧବ ନଗରୀୟ କେନ୍ଦ୍ରଠାରୁ ଅଲଗା ଥିଲେ । ସମ୍ଭବତଃ ସହର ନିର୍ମାଣ ତୁଳନାରେ କୃଷି କାର୍ଯ୍ୟକୁ ଶ୍ରମ ପ୍ରବନ୍ଧନ ବେଳେ ଅଧିକ ମହତ୍ତ୍ୱ ଦିଆଯାଉଥିଲା ।

ସହର ବାସିନ୍ଦାଙ୍କ ମଧ୍ୟରେ କୌଳିକ ସମ୍ବନ୍ଧ ନ ଥିଲା (କେତେକ ଗୋଷ୍ଠୀ ତନ୍ତ୍ରକୁ ବାଦ୍ ଦେଲେ) ସହରର ଅଭିବୃଦ୍ଧି ସହିତ ଯାହା ବା କୌଳିକ ସମ୍ବନ୍ଧ ଥିଲା, ତାହା ଆହୁରି ହ୍ରାସ ପାଇଲା, ଯଦିଓ ଗ୍ରାମ ଅପେକ୍ଷା ସହରରେ ଘନ ଜନବସତି ରହିଥିଲା । ସହରରେ ସମ୍ପର୍କର ଆଧାର ଅନ୍ୟ ବିଶେଷତ୍ୱଗୁଡ଼ିକରେ ରହିଥିଲା । ସହରରେ ସମ୍ପର୍କର ଆଧାର ଅନ୍ୟ ବିଶେଷତ୍ୱଗୁଡ଼ିକରେ ରହିଥିଲା । ଉଦାହରଣ ସ୍ୱରୂପ, ବୃତ୍ତିଗତ ନିର୍ଭରତା ଏବଂ ପ୍ରଶାସନିକ ଆବଶ୍ୟକତା ଆଧାରରେ ସମ୍ପର୍କ ସୃଷ୍ଟି ହେଉଥିଲା । ମାତ୍ର ଏହି ସମୟରେ ସହରଗୁଡ଼ିକ ଏତେ ସାନ ଥିଲେ ଯେ ଲୋକଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ବନ୍ଧ ସମ୍ଭବ ହୋଇପାରୁଥିଲା । ଲୋକ କ୍ଷମତାର କେନ୍ଦ୍ରରେ ପରସ୍ପରକୁ ଭେଟୁଥିଲେ । ତା'ଛଡ଼ା ଯେଉଁଠି

ବସ୍ତୁ ବିନିମୟ ହେଉଥିଲା, ସେଠି ଲୋକ ସମ୍ମିଳିତ ହେଉଥିଲେ । ପରେ ଧର୍ମସ୍ଥଳୀ ମଧ୍ୟ ଲୋକଙ୍କୁ ମିଳିତ ହେବାପାଇଁ ସ୍ଥାନ ପ୍ରଦାନ କଲା । ଭାରତର ସହରମାନଙ୍କରେ ସାଧାରଣତଃ ଗୋଟାଏ କେନ୍ଦ୍ରୀୟ ବଜାର ନ ଥିଲା । ଉତ୍ପାଦନର କେନ୍ଦ୍ରରେ ବସ୍ତୁ ବିକା-କିଣା ହେଉଥିଲା । ଏଥିରୁ ସହରର କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ନିର୍ଦ୍ଦିଷ୍ଟ କିସମର ବସ୍ତୁ ମିଳିବାର ପରମ୍ପରା ସୃଷ୍ଟି ହୋଇଥିବ । ଏହି ବ୍ୟବସ୍ଥା ବଳରେ ଉତ୍ପାଦନ ଓ ବିନିମୟ କେନ୍ଦ୍ରଗୁଡ଼ିକ ସହର ରୂପେ ଅଭିବୃଦ୍ଧି ଲାଭ କରିଥାଇପାରେ । ଏହି ପରିପ୍ରେକ୍ଷୀରେ ଦେଖିଲେ, ସହର ହେଲା ଏମିତି ଏକ ସ୍ଥାନ, ଯେଉଁଠି କିସମ କିସମର ପେଷା ରହିଥିଲା ଏବଂ ସେହି ପେଷାଦାରମାନଙ୍କୁ ନାନା ଧରଣର ଟେକ୍‌ନୋଲୋଜିକୁ ପ୍ରୟୋଗ କରିବାକୁ ଅବସର ମିଳୁଥିଲା ।

## ଗଣସଂଘ : ସର୍ଦ୍ଦାରତନ୍ତ୍ର ଓ ଗୋଷ୍ଠୀତନ୍ତ୍ର

ଗଣସଂଘ ହେଲା ରାଜ୍ୟତନ୍ତ୍ରର ବିକଳ୍ପ ରାଜନୈତିକ ବ୍ୟବସ୍ଥା । ଆଗରୁ ଯେଉଁ ବ୍ୟବସ୍ଥା ରହିଥିଲା, ତା'ର ପ୍ରତିନିଧିତ୍ୱ କରୁଥିଲା ଗଣସଂଘ । ବିଭିନ୍ନ ବିଚାରଧାରା ଓ ସିଦ୍ଧାନ୍ତ, ବିଶେଷକରି ବୌଦ୍ଧ ଓ ଜୈନ ବିଚାର ସହିତ ଗଣସଂଘର ସମ୍ବନ୍ଧ ରହିବା ପଛରେ କାରଣ ହେଲା ଯେ ଏହି ବିଚାରଗୁଡ଼ିକର ମୂଳ ଗଣସଂଘରେ ରହିଥିଲା । ଏହି କାରଣରୁ ବୌଦ୍ଧ ଗ୍ରନ୍ଥଗୁଡ଼ିକରେ ଗଣସଂଘ ବ୍ୟବସ୍ଥା କେଉଁଭଳି ଭାବେ କାର୍ଯ୍ୟ କରୁଥିଲା, ତା'ର ଉଲ୍ଲେଖ ରହିଛି । ପାଣିନିଙ୍କର ବ୍ୟାକରଣରେ ସର୍ଦ୍ଦାରତନ୍ତ୍ର ଓ ରାଜ୍ୟତନ୍ତ୍ରର ଉଲ୍ଲେଖ ଅଛି । ମାତ୍ର ଏହା ବ୍ୟାକରଣ ପୁସ୍ତକ ହୋଇଥିବାରୁ ସେ ନେଇ ବିସ୍ତୃତ ବିବରଣୀ ନାହିଁ । ବ୍ରାହ୍ମଣୀୟ ସ୍ରୋତରେ ଗଣସଂଘକୁ ଅସ୍ୱୀକାର କରାଯାଏ, କାରଣ ଗଣସଂଘରେ କର୍ମକାଣ୍ଡ କିମ୍ବା ବର୍ଣ୍ଣ ନିୟମକୁ ପାଳନ କରାଯାଏ ନାହିଁ । ବୈଦିକ ସାହିତ୍ୟରେ ମଧ୍ୟ ସେହି କାରଣରୁ ଗଣସଂଘକୁ ବିଶେଷ ମହତ୍ତ୍ୱ ଦିଆଯାଏ ନାହିଁ । ଏପରିକି ତହିଁରେ ସହରକୁ ମଧ୍ୟ ଅସ୍ୱୀକାର କରାଯାଏ, ଯଦିଓ ବୌଦ୍ଧିକ ଗ୍ରନ୍ଥରେ ନଗରୀୟ କେନ୍ଦ୍ର ପ୍ରତି ସହାନୁଭୂତି ପ୍ରଦର୍ଶନ କରାଯାଏ ଓ ସହରର ପ୍ରମୁଖତାକୁ ଦର୍ଶାଯାଏ । ଏସବୁ ସତ୍ତ୍ୱେ ରାଜ୍ୟତନ୍ତ୍ରରେ ସହରର ଅଧିକ ସକ୍ରିୟ ଭୂମିକା ଦେଖିବାକୁ ମିଳେ । ବିଶେଷକରି ଯେଉଁଠି ସହର ରାଜ୍ୟର ରାଜଧାନୀ, ସେଠାରେ ଭୂମିକା ଅଧିକ ସୁସ୍ପଷ୍ଟ ।

ସାଧାରଣତଃ ଗାଙ୍ଗେୟ ସମତଳରେ ରାଜ୍ୟଗୁଡ଼ିକ ଅବସ୍ଥିତ ଥିଲା । ମାତ୍ର ଗଣସଂଘ ଥିଲା ଏହି ରାଜ୍ୟଗୁଡ଼ିକର ସାମାନ୍ୟ ଉପାନ୍ତରେ । ହିମାଳୟର ପାଦଦେଶରେ, ତା'ର ଦକ୍ଷିଣରେ, ଉତ୍ତର-ପଶ୍ଚିମ ଭାରତରେ, ପଞ୍ଜାବରେ, ସିନ୍ଧୁ କ୍ଷେତ୍ରରେ ତଥା କେନ୍ଦ୍ରୀୟ ଓ ପଶ୍ଚିମ ଭାରତରେ ଗଣସଂଘଗୁଡ଼ିକ ରହିଥିଲେ । କମ୍ ଉର୍ବର କ୍ଷେତ୍ର, ପାର୍ବତ୍ୟାଞ୍ଚଳରେ

ଗଣସଂଘର ଅବସ୍ଥିତିକୁ ଦେଖିଲେ ଜଣାପଡ଼େ ଯେ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ହେବା ପୂର୍ବରୁ ସେଗୁଡ଼ିକ ପ୍ରତିଷ୍ଠିତ ହୋଇସାରିଥିଲେ, କାରଣ ବଣଜଙ୍ଗଲଭରା ସାନ ସାନ ପାହାଡ଼ିଆ କ୍ଷେତ୍ରକୁ ସଫା କରିବା ନିଶ୍ଚିତରୂପେ ସମତଳ କ୍ଷେତ୍ରର ଓଦାମାଟିରେ ଥିବା ଜଙ୍ଗଲକୁ ସଫା କରିବା ଅପେକ୍ଷା ଅଧିକ ସହଜ । ହୁଏତ ଏକଥା ବି ହୋଇଥାଇପାରେ ଯେ, ସମତଳ କ୍ଷେତ୍ରର ଅଧିକ ସ୍ୱାଧୀନ ମନୋଭାବର ଅଧିବାସୀ ଜଙ୍ଗଲ ଆଡ଼କୁ ଚାଲିଗଲେ ଏବଂ ସେଠାରେ ସମତାବାଦୀ ପରମ୍ପରାର ସମାଜ ପ୍ରତିଷ୍ଠା କଲେ । ଅନ୍ତତଃ ଶାସକକୁଳ ସ୍ତରରେ ଏହି ପରମ୍ପରାକୁ ସେମାନେ ବଜାୟ ରଖିଲେ । ସେମାନେ ଜଙ୍ଗଲ ଅଞ୍ଚଳକୁ ଚାଲିଯିବା ପଛରେ ଗୋଟାଏ କାରଣ ହୋଇଥିବ ରାଜ୍ୟର ରୂପ ନେଉଥିବା କ୍ଷେତ୍ରରେ ବୃଦ୍ଧି ପାଉଥିବା ରକ୍ଷଣଶୀଳତା । ବୈଦିକ ରକ୍ଷଣଶୀଳତାକୁ ଅସ୍ୱୀକାର କରିବା ପଛରେ ଆଉ ଏକ କାରଣ ହୋଇଥିବ ସେମାନଙ୍କର ଏକ ପୁରାତନ ପରମ୍ପରାର ଅଂଶ ହେବା କିମ୍ବା ଏକ ବୈକଳ୍ପିକ ପରମ୍ପରା ସୃଷ୍ଟି କରିବା । ପଶ୍ଚିମ ଭାରତରେ ମଧ୍ୟ ଗଣସଂଘ ପରି ବ୍ୟବସ୍ଥା ରହିଥିଲା । ମହାଭାରତରେ ବର୍ଣ୍ଣିତ ବୃଷ୍ଣି ହେବ ସେହି ଧରଣର ଏକ ପରମ୍ପରା । ଯେହେତୁ ବୌଦ୍ଧ ଗ୍ରନ୍ଥାବଳୀରେ ଗାଙ୍ଗେୟ ସମତଳ ଉପରେ ଅଧିକ ଧ୍ୟାନ ଦିଆଯାଇଛି; ତେଣୁ ପଶ୍ଚିମ ଭାରତର ଗଣସଂଘ ବ୍ୟବସ୍ଥା ସମ୍ପର୍କରେ ତହିଁରୁ ଅଧିକ କିଛି ଜାଣିବା ସମ୍ଭବ ହୁଏ ନାହିଁ ।

'ଗଣସଂଘ' ବା 'ଗଣରାଜ୍ୟ' ହେଲା ଏକ ଯୁକ୍ତଶବ୍ଦ । 'ଗଣ' ଓ 'ସଂଘ' ବା 'ରାଜ୍ୟ' । 'ଗଣ' ଅର୍ଥାତ୍ ସମାନ ମର୍ଯ୍ୟାଦା ଦାବି କରୁଥିବା ସମୂହ ଏବଂ 'ସଂଘ' ହେଲା 'ପରିଷଦ' । 'ରାଜ୍ୟ'ର ଅର୍ଥ ହେଲା ଏଠାରେ 'ଶାସନ' । ଗଣସଂଘ ହେଲା ଏକ ବ୍ୟବସ୍ଥା, ଯେଉଁଥିରେ ଗୋଟାଏ କୁଳର ସମସ୍ତ ପରିବାର ମୁଖ୍ୟ କିମ୍ବା ମହାସଂଘ ହୋଇଥିବ ଯଦି ସେଠାକାର ସମସ୍ତ କୁଳ ମୁଖ୍ୟ ଏକ ପରିଷଦ ମାଧ୍ୟମରେ କ୍ଷେତ୍ରଟିକୁ ଶାସନ କରିବେ । ଅର୍ଥାତ୍ 'ପରିଷଦ'ର ସଦସ୍ୟ ହେଲେ କେବଳ ନିର୍ଦ୍ଦିଷ୍ଟ କୁଳଗୁଡ଼ିକର ବା ପରିବାର ମୁଖ୍ୟ । ଏହି ଶବ୍ଦ (ଗଣସଂଘ)ର ବିଭିନ୍ନ ପ୍ରକାର ଅନୁବାଦ କରାଯାଇଛି । ଆଗରୁ କୁହାଯାଉଥିଲା ଯେ, 'ଗଣସଂଘ' ହେଲା 'ଗଣତନ୍ତ୍ର', ମାତ୍ର ଏହା ସଠିକ୍ ଅନୁବାଦ ନୁହେଁ, କାରଣ ମାତ୍ର କେତୋଟି ପରିବାର ପାଖରେ କ୍ଷମତା କେନ୍ଦ୍ରିତ ହୋଇ ରହିଥିଲା ଏବଂ ଏହି ସୀମିତ ସଂଖ୍ୟକ ପରିବାର ହିଁ ଶାସନରେ ସକ୍ରିୟ ରହୁଥିଲେ । ପ୍ରଦେଶରେ ରହୁଥିବା ଅଧିକାଂଶ ଲୋକଙ୍କ ହାତରେ କୌଣସି ଅଧିକାର ନ ଥିଲା; ସେମାନେ ସମ୍ବଳ ଉପରେ ବି ଅଧିକାରରୁ ବଞ୍ଚିତ ଥିଲେ । ତେଣୁ ଗଣସଂଘକୁ 'ସାଧାରଣତନ୍ତ୍ର' ବୋଲି କୁହାଗଲା, କାରଣ ଏହା ରାଜତନ୍ତ୍ର ନ ଥିଲା । ମାତ୍ର ଗଣସଂଘରେ ସାମାଜିକ ଅନୁକ୍ରମ ବି ରହିଥିଲା । 'ଗଣସଂଘ'କୁ 'ଅଳ୍ପତନ୍ତ୍ର' ବା 'ଗୋଷ୍ଠୀତନ୍ତ୍ର' (oligarchy) ବୋଲି ମଧ୍ୟ ଅନୁବାଦ କରାଗଲା । 'ଗୋଷ୍ଠୀତନ୍ତ୍ର'ରେ ଶାସକ ପରିବାର କ୍ଷମତାର ଉପଯୋଗ କରନ୍ତି । ଅପେକ୍ଷାକୃତ ନିକଟ ଅତୀତରେ

'ଗଣସଂଘ'ର ପ୍ରାରମ୍ଭିକ ରୂପକୁ ସର୍ଦ୍ଦାରତନ୍ତ୍ର (chief doms) ବୋଲି କୁହାଯାଉଛି, କାରଣ ଏଥିରେ ନିର୍ଦ୍ଦିଷ୍ଟ ମୂଳ ଉପରେ ଜୋର୍ ଦିଆଯାଏ । ଗଣସଂଘ ବ୍ୟବସ୍ଥାକୁ ସେହି କ୍ରମରେ ଆଦ୍ୟ-ରାଜ୍ୟ ବୋଲି କୁହାଯାଉଛି, ଯାହା ରାଜତନ୍ତ୍ରଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା ।

ଗଣସଂଘରେ ହୁଏତ ଗୋଟିଏ କୁଳର ଲୋକ ରହିଥିଲେ ଅଥବା କେତୋଟି କୁଳ ମିଶି କୁଳସଂଘ ଗଠନ କରି ରହୁଥିଲେ । ଶାକ୍ୟ, କୋଳୀୟ ଓ ମଲ୍ଲ ଗଣରାଜ୍ୟରେ କେବଳ ଗୋଟାଏ ଗୋଟାଏ କୁଳର ଲୋକ ରହିଥିଲେ । ମାତ୍ର ବୃଜି ଏବଂ ବୃଷ୍ଣି ଗଣସଂଘରେ କୁଳମାନେ ସଂଘବଦ୍ଧ ହୋଇ ରହିଥିଲେ । ବୃଜି ମହାସଂଘ ବୈଶାଳୀରେ ଥିଲା । ଏଥିରେ ଅନ୍ତର୍ଭୁକ୍ତ ଥିବା କୁଳଗୁଡ଼ିକ ସ୍ୱାଧୀନ ଥିଲେ ଏବଂ ପ୍ରତ୍ୟେକ ସମାନ ମର୍ଯ୍ୟାଦାର ଅଧିକାରୀ ଥିଲେ । ମହାସଂଘରେ ମିଶିଲା ପରେ ସୁଦ୍ଧା ପ୍ରତ୍ୟେକ କୁଳ ନିଜ ନିଜର ପରିଚିତି ବଜାୟ ରଖୁଥିଲେ । ସବୁଗୁଡ଼ିକ ଥିଲେ କ୍ଷତ୍ରିୟ କୁଳ । ମାତ୍ର କ୍ଷତ୍ରିୟ ହେବା ସତ୍ତ୍ୱେ ସେମାନେ ବର୍ଣ୍ଣ ଆଧାରିତ ସାମାଜିକ ବ୍ୟବସ୍ଥାର ପାଳନ କରୁ ନ ଥିଲେ । ସେମାନେ କୁଳ ବ୍ୟବସ୍ଥାକୁ ରାଜତନ୍ତ୍ର ଅପେକ୍ଷା ବେଶି ଭଲକରି ବଜାୟ ରଖିଥିଲେ । ଉଦାହରଣ ସ୍ୱରୂପ, ସେମାନେ କୁଳମାନଙ୍କର ପ୍ରତିନିଧିତ୍ୱ କରୁଥିବା ପରିଷଦ ମାଧ୍ୟମରେ ଶାସନ କରିବାର ଅବଧାରଣାକୁ ବଞ୍ଚାଇ ରଖିଥିଲେ, ଯଦିଓ ପରିଷଦ କେବଳ କୁଳ କିମ୍ବା ପରିବାର ମୁଖ୍ୟ ଯାଏଁ ସୀମିତ ଥିଲା । ବୃଜିମାନଙ୍କର ଉଦ୍‌ଭବକୁ ନେଇ ରହିଥିବା କିମ୍ବଦନ୍ତୀରେ ଦୁଇଟି ବିଚିତ୍ର ଚରିତ୍ରର ଉଲ୍ଲେଖ ଦେଖିବାକୁ ମିଳେ । ପ୍ରଥମ, ଶାସକକୁଳ ସର୍ବଦା କୁଳର ଉଚ୍ଚ ମର୍ଯ୍ୟାଦାବାନ ଲୋକଦ୍ୱାରା ପ୍ରତିଷ୍ଠିତ ହୋଇଥାଏ । ଉକ୍ତ ମର୍ଯ୍ୟାଦାବନ୍ତ ପୁରୁଷ ବିଭିନ୍ନ କାରଣରୁ ଗୃହତ୍ୟାଗୀ ଅଥବା ଦେଶାନ୍ତରୀ ହୋଇଥାନ୍ତି । ଅନ୍ୟଟିରେ, କୁଳର ପ୍ରତିଷ୍ଠାତା ଉଚ୍ଚ ମର୍ଯ୍ୟାଦାବାନ ହେବା ସହିତ ଭାଇ ଓ ଭଉଣୀର ମିଳନରୁ ଜାତ ବୋଲି କିମ୍ବଦନ୍ତୀ ରହିଥିଲା । ଭାଇ ଓ ଭଉଣୀର ମିଳନରୁ ଜାତ ବୋଲି କାହାକୁ ଆଖ୍ୟାୟିତ କରିବା ଅର୍ଥ ଶୁଦ୍ଧ ବୋଲି ପ୍ରମାଣ ଦେବା । ବୈଦିକ ରକ୍ଷଣଶୀଳତାରୁ ପୃଥକ୍ ଏହି ପରମ୍ପରାର ଉଲ୍ଲେଖ ଏକ ବ୍ରାହ୍ମଣ ରଚନାରେ ଦେଖିବାକୁ ମିଳେ । ତହିଁରେ ଗଣସଂଘ କୁଳକୁ ସ୍ଖଳିତ କ୍ଷତ୍ରିୟମାନଙ୍କର ସମୁଦାୟ ରୂପେ ବର୍ଣ୍ଣନା କରାଯାଇଛି । ତାକୁ ଏପରିକି ଶୂଦ୍ର ବୋଲି କୁହାଯାଇଛି, କାରଣ ଗଣସଂଘମାନେ ବ୍ରାହ୍ମଣର ସମ୍ମାନ କରନ୍ତି ନାହିଁ ଏବଂ ବୈଦିକ କର୍ମକାଣ୍ଡର ପାଳନ କରନ୍ତି ନାହିଁ । ବ୍ରାହ୍ମଣକୁ ସମ୍ମାନ ଦେବା ମାନେ ବର୍ଣ୍ଣ ଅନୁକ୍ରମକୁ ସ୍ୱୀକାର କରିନେବା । ଗଣସଂଘରେ କେବଳ ଦୁଇଟି ଅନୁକ୍ରମ ରହିଥିଲା – ଶାସକ କ୍ଷତ୍ରିୟ ରାଜକୁଳ ଏବଂ ଦାସ, ଶ୍ରମିକମାନଙ୍କର ଦାସ-କର୍ମକାର । ଦାସ-କର୍ମକାରମାନେ ଥିଲେ ଅଣ-କୌଳିକ ଶ୍ରମିକ । ପୂର୍ବର କୌଳିକ ବ୍ୟବସ୍ଥାରେ କୁଳସମ୍ବନ୍ଧୀମାନେ ମିଶି ଶ୍ରମ କରୁଥିଲେ । ଗଣସଂଘମାନେ ବୈଦିକ କର୍ମକାଣ୍ଡକୁ ସ୍ୱୀକାର କରୁ ନ ଥିଲେ । ଏହାର ଏକ ପ୍ରମାଣ ହେଲା ଯେ ସେମାନେ ପରିବେଷ୍ଟିତ କ୍ଷେତ୍ର

ଏବଂ ବଗିଚାକୁ ପବିତ୍ର ମନେ କରୁଥିଲେ । ଏହା ସ୍ଥାନୀୟ ଲୌକିକ ପରମ୍ପରା ମାତ୍ର ଥିଲା ଏବଂ ବୈଦିକ ପରମ୍ପରାର ଅଙ୍ଗ ନ ଥିଲା ।

ଶାସନର ସାମୂହିକତାକୁ ଗଣସଂଘର ପ୍ରମୁଖ ଶକ୍ତି ମନେକରାଯାଉଥିଲା । ବାସ୍ତବିକତା ହେଲା ଯେ ପ୍ରମୁଖ ସହରର (ଯେମିତି ରାଜଧାନୀ) ପରିବାର ମୁଖ୍ୟ ବା କୁଳମୁଖ୍ୟମାନେ ପରିଷଦ ବା ଏସେମ୍ବ୍ଲିରେ ଅଂଶଗ୍ରହଣ କରୁଥିଲେ । ପରିଷଦର ସଭାପତି ଭାବେ କାର୍ଯ୍ୟ କରୁଥିଲେ କୁଳମୁଖ୍ୟ । ସଭ୍ୟମାନେ ସଭାରେ ଏକତ୍ର ହେଉଥିଲେ । କୁଳମୁଖ୍ୟର ପଦବୀ ବଂଶାନୁଗତ ନ ଥିଲା । ତାକୁ ରାଜପଦ ନ କହି ବରଂ ସର୍ଦ୍ଦାର କୁହାଯିବା କଥା । ଅବଶ୍ୟ ପରେ ଯେତେବେଳେ ରାଜା କୁହାଯାଉଥିବା ସର୍ଦ୍ଦାର ପଦର ମହିମା ବୃଦ୍ଧି ପାଇଲା, ସେତେବେଳେ ତାକୁ (ଗଣସଂଘ ମୁଖ୍ୟକୁ) ରାଜପଦ ମନେକରାଗଲା । ବିଚାରାଧୀନ ବିଷୟକୁ ସଭାରେ ଉପସ୍ଥାପିତ କରାଯାଉଥିଲା ଏବଂ ତା' ଉପରେ ଚର୍ଚ୍ଚା ହେଉଥିଲା । ଯଦି କୌଣସି ବିଷୟ ସର୍ବସମ୍ମତିକ୍ରମେ ଗୃହୀତ ହୋଇପାରୁ ନ ଥିଲା, ତା' ଉପରେ ଭୋଟ ନିଆଯାଉଥିଲା । ଯେଉଁ ପ୍ରାରମ୍ଭିକ କିସମର ପ୍ରଶାସନ ରହିଥିଲା, ତହିଁରେ ରାଜାଙ୍କୁ କାର୍ଯ୍ୟରେ ସହଯୋଗ କରିବା ଲୋକଙ୍କ ମଧ୍ୟରେ ଥିଲେ କୋଷାଧ୍ୟକ୍ଷ, ସେନା ପ୍ରମୁଖ ଏବଂ ରାଜାଙ୍କର ପରାମର୍ଶଦାତା । ପରବର୍ତ୍ତୀ ସମୟରେ ବିସ୍ତୃତ ନ୍ୟାୟିକ ପ୍ରକ୍ରିୟାର ଉଲ୍ଲେଖ ମିଳେ । ସନ୍ଦିଗ୍ଧ ଅପରାଧୀକୁ ଜଣକ ପରେ ଜଣେ କ୍ରମାନ୍ୱୟରେ ସାତଜଣ ଅଧିକାରୀଙ୍କ ଆଗରେ ନିଜର ନିର୍ଦ୍ଦୋଷପଣ ସିଦ୍ଧ କରିବାକୁ ପଡୁଥିଲା ।

ଗଣସଂଘର ସାମାଜିକ ଏବଂ ରାଜନୈତିକ କ୍ଷମତା ରାଜାଙ୍କ ହାତରେ ରହୁଥିଲା ଏବଂ ରାଜା ପ୍ରତିନିଧି ଭାବରେ ସଭାରେ ବସୁଥିଲେ । ବିସ୍ମୟକାରୀ ତଥ୍ୟ ହେଲା ଯେ ସେଠାରେ କେବଳ ଜଣେ ରାଜା ନ ଥିଲେ । ଏହି ରାଜାଗଣଙ୍କୁ କ୍ଷତ୍ରିୟର ମର୍ଯ୍ୟାଦା ପ୍ରଦାନ କରାଯାଉଥିଲା । ଏହି କାରଣରୁ ବୌଦ୍ଧ ରଚନାବଳୀରେ କ୍ଷତ୍ରିୟକୁ ବର୍ଣ୍ଣ ଅନୁକ୍ରମରେ ସବା ଉପରେ ଓ ବ୍ରାହ୍ମଣକୁ ଦ୍ୱିତୀୟ ସ୍ଥାନରେ ରଖାଯାଇଛି । ବୌଦ୍ଧ ରଚନାଗୁଡ଼ିକ ଗଣସଂଘ ବ୍ୟବସ୍ଥା ସହିତ ଅଧିକ ପରିଚିତ ଥିଲେ । ଅବଶ୍ୟ ବୌଦ୍ଧମାନଙ୍କର ବ୍ରାହ୍ମଣମାନଙ୍କ ପ୍ରତି ବିରୋଧ ଭାବ ରହିଥିବା ଯୋଗୁଁ ମଧ୍ୟ ଏହା ହୋଇଥାଇପାରେ । ମଧ୍ୟ ଗାଙ୍ଗେୟ ସମତଳରେ ସ୍ଥିତ ଗଣସଂଘଗୁଡ଼ିକର ଆୟର ପ୍ରମୁଖ ସ୍ରୋତ ଥିଲା କୃଷି ଏବଂ ବିଶେଷକରି ଧାନଚାଷ । ପଞ୍ଜାବ ଏବଂ ଦୋଆବ କ୍ଷେତ୍ରକୁ ବାଦ୍‌ଦେଲେ ଅନ୍ୟ ଅଞ୍ଚଳରେ ଗୋପାଳନ ଆଉ ପ୍ରମୁଖ ପେଷା ହୋଇ ରହି ନ ଥିଲା । ଅବଶ୍ୟ ସେଠାକାର ସହରଗୁଡ଼ିକୁ ବଣିକମାନେ ଆସୁଥିଲେ, ଯାହା ଆୟର ଏକ ସ୍ରୋତ ହୋଇଥାଇପାରେ । ମାତ୍ର ଉତ୍ତର-ପଶ୍ଚିମର ସର୍ଦ୍ଦାରତନ୍ତ୍ର ନିମନ୍ତେ ଆୟର ପ୍ରମୁଖ ସ୍ରୋତ ବାଣିଜ୍ୟ ହୋଇଥିବ ବୋଲି ଅନୁମାନ କରାଯାଏ ।

କୁଳ ସମୂହ ଭୂମିର ମାଲିକ ଥିଲା । ମାତ୍ର ତହିଁରେ କାର୍ଯ୍ୟ କରୁଥିଲେ ଶ୍ରମିକ ଓ ଦାସମାନେ । ସେମାନଙ୍କୁ ଦାସ-କର୍ମକାର ବୋଲି କୁହାଯାଉଥିଲା । ଏହିଭଳି ଏକ ମିଶ୍ରିତ ଶବ୍ଦର ବ୍ୟବହାରରୁ ଉତ୍ପାଦନ ନିର୍ଦ୍ଦିଷ୍ଟ ଭାବରେ କେତେମାତ୍ରାରେ ଦାସ ଉପରେ ଏବଂ କେତେ ମାତ୍ରାରେ କର୍ମକାର ବା ମଜୁରିଆ ଉପରେ ନିର୍ଭରଶୀଳ ଥିଲା, ତାହା ସ୍ଥିର କରିବା କଠିନ ହୋଇପଡ଼େ । ଅଧିକାଂଶ କ୍ଷେତ୍ରରେ ଦାସ କହିଲେ ଘରୋଇ କାର୍ଯ୍ୟରେ ନିୟୋଜିତ ଦାସକୁ ବୁଝାଏ । ଦାସକୁ ଉତ୍ପାଦନ କାର୍ଯ୍ୟରେ ବ୍ୟବହାର କରିବା କଥା କାହିଁ ବର୍ଣ୍ଣିତ ହୋଇନାହିଁ । ଏକ ଦ୍ୱିସ୍ତରୀୟ ବ୍ୟବସ୍ଥାରେ, ଯେଉଁମାନେ ବିଲରେ କାମ କରୁଥିଲେ, ସେମାନେ ସମସ୍ତେ ଶାସକ କୁଳର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ କର୍ମ ସମ୍ପାଦନ କରୁଥିଲେ । ଶ୍ରମର ପ୍ରବନ୍ଧନ ବା ପରିଚାଳନା ସେତେବେଳ ପର୍ଯ୍ୟନ୍ତ ସହଜ ହେଉଥିଲା, ଯେତେବେଳ ପର୍ଯ୍ୟନ୍ତ ମଜୁରିଆ-କୃଷକ ପ୍ରତିରୋଧ କରୁ ନ ଥିଲା । ଗୋଟାଏ ଉଲ୍ଲେଖ ରହିଛି, ଯେଉଁଥିରେ ଶାକ୍ୟ ଓ କୋଳୀୟଙ୍କ ମଧ୍ୟରେ ଜଳସେଚନ ପାଇଁ ପାଣିକୁ ନେଇ କଳହ ହେଲା । ପ୍ରକୃତରେ କଳହ କୃଷିକର୍ମରେ ନିୟୋଜିତ ଉଭୟ ସମୁଦାୟ ମଧ୍ୟରେ ସୀମିତ ନ ରହି ଉଭୟ ଶାସକକୁଳର ପ୍ରତ୍ୟକ୍ଷ ହସ୍ତକ୍ଷେପ ଯାଏଁ କଥା ଗଲା । ଏଥିରୁ ପ୍ରମାଣ ମିଳେ ଯେ ଶାସକକୁଳ କୃଷିର ପ୍ରତ୍ୟକ୍ଷ ପ୍ରବନ୍ଧନ କରୁଥିଲେ । ସଭାରେ ଦାସ-କର୍ମକାରଙ୍କର କୌଣସି ପ୍ରତିନିଧିତ୍ୱ ନ ଥିଲା । ସେମାନଙ୍କର କୌଣସି ଅଧିକାର ମଧ୍ୟ ନ ଥିଲା ।

ଗଣସଂଘର ବର୍ଣ୍ଣନରୁ ଜଣାପଡ଼େ ଯେ, ସହର ଗଣସଂଘର ରାଜଧାନୀର କାର୍ଯ୍ୟ କରୁଥିଲା ଏବଂ ଲୋକଙ୍କର ଜୀବନର ଏକ ସୁପରିଚିତ ଅଙ୍ଗ ଥିଲା । ଯେଉଁ କୁଳ ସଦସ୍ୟମାନେ ଜମିର ମାଲିକ ଥିଲେ, ସେମାନେ ସହରରେ ବାସ କରୁଥିଲେ ଏବଂ ସାଧାରଣ ସହରୀ କାର୍ଯ୍ୟକଳାପରେ ଭାଗ ନେଉଥିଲେ । ବୈଶାଳୀ ସହରର ଜଣେ ଯୁବକ ସୁଦୂର ତକ୍ଷଶୀଳା ଯାଇ ଡାକ୍ତରୀ ତାଲିମ ନେଇଥିଲେ ଏବଂ ସେଠାରୁ ଫେରି ଆସିଥିଲେ । ଯୁବକଙ୍କର ଯାତ୍ରା ବହୁ କଷ୍ଟରେ ସମାପନ ହୋଇଥିଲା ବୋଲି ବର୍ଣ୍ଣନା ରହିଛି । ବ୍ୟକ୍ତିକ ମତକୁ ରାଜତନ୍ତ୍ରରେ ଯେତେ ବିରୋଧ କରାଯାଉଥିଲା, ତା' ତୁଳନାରେ ଗଣସଂଘରେ ତା'ର କମ୍ ବିରୋଧ ହେଉଥିଲା । ଗଣସଂଘରେ ଅ-ରକ୍ଷଣଶୀଳ ମନୋଭାବକୁ ସହ୍ୟ କରାଯାଉଥିଲା । ଗଣସଂଘରୁ ଦୁଇଜଣ ପ୍ରସିଦ୍ଧ ଧର୍ମୋପଦେଶକ ସୃଷ୍ଟି ହେଲେ । ଜଣେ ହେଲେ ବୃଜ୍ଜି ମହାସଂଘ ଅନ୍ତର୍ଗତ ଜ୍ଞାତ୍ରିକ କୁଳର ମହାବୀର, ଯିଏ ଜୈନ ମତବାଦକୁ ପ୍ରସାରିତ କରି ଆଗକୁ ନେବାକୁ ପ୍ରୟାସ କରିଥିଲେ ଏବଂ ଅନ୍ୟ ଜଣକ ହେଲେ ଶାକ୍ୟକୁଳର ମୁଖ୍ୟ ସହର କପିଳବାସ୍ତୁରେ ଲାଳିତ-ପାଳିତ ହୋଇଥିବା ଗୌତମ ବୁଦ୍ଧ । ବୈଶାଳୀରେ ଥିଲା ବୃଜ୍ଜି ମହାସଂଘର ରାଜଧାନୀ ।

ଗଣସଂଘରେ ରାଜତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ ନ ଥିଲା । ସମ୍ଭବତଃ ଏହି କାରଣରୁ ବ୍ରାହ୍ମଣୀୟ ରାଜନୈତିକ ସିଦ୍ଧାନ୍ତକୁ ଗଣସଂଘର ସଦସ୍ୟମାନେ ଅସ୍ୱୀକାର କରିବାକୁ ସାହସ କରୁଥିଲେ । ଅ-ବ୍ରାହ୍ମଣ ସିଦ୍ଧାନ୍ତକୁ ଗ୍ରହଣ କରିବାର ପରମ୍ପରା ଏକ ବୌଦ୍ଧ ବର୍ଣ୍ଣନରେ ଦେଖିବାକୁ ମିଳେ, ଯେଉଁଠି ରାଜ୍ୟର ଉଦ୍‌ଭବ ସମ୍ପର୍କରେ କୁହାଯାଇଛି । ଏହାକୁ 'ସୋସିଆଲ କଣ୍ଟ୍ରାକ୍ଟ' (ସାମାଜିକ ସହବନ୍ଧନ) ସିଦ୍ଧାନ୍ତର ମୂଳ ବୋଲି କୁହାଯାଇ ପାରିବ । ଏହି ସିଦ୍ଧାନ୍ତ ଅନୁସାରେ, ସୁଦୂର ଅତୀତରେ ସୃଷ୍ଟିର ସମସ୍ତ ଜୀବଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ସଂହତି ରହିଥିଲା । ନାରୀ ଓ ପୁରୁଷମାନଙ୍କର କୌଣସି କାମନା ନ ଥିଲା, କାରଣ ସବୁକିଛି ପ୍ରତ୍ୟେକଙ୍କୁ ମିଳିପାରୁଥିଲା । ମାତ୍ର କାଳକ୍ରମେ ଅଧୋପତନ ଆରମ୍ଭ ହେଲା ଏବଂ ସେମାନଙ୍କ ମଧ୍ୟରେ ଆବଶ୍ୟକତା, ଆକାଂକ୍ଷା ଓ ଇଚ୍ଛା ସୁସ୍ପଷ୍ଟ ହେଲା । ଏହା ସ୍ୱାମୀତ୍ୱ ଓ ପ୍ରଭୁତ୍ୱର ଅବଧାରଣାକୁ ଜନ୍ମଦେଲା । ତହିଁରୁ ଆରମ୍ଭ ହେଲା ପରିବାର; ପରିବାରରୁ ବ୍ୟକ୍ତିଗତ ସମ୍ପତ୍ତି; ତହିଁରୁ କଳହ ଓ ସଂଘର୍ଷ, ଯାହା ଆଇନ ଓ ନିୟନ୍ତ୍ରଣକାରୀ ଅଧିକାରୀଙ୍କୁ ଜନ୍ମଦେଲା । ସେତେବେଳେ ସ୍ଥିରହେଲା ଯେ କଳହକୁ ଦୂର କରିବାକୁ ହେଲେ ଜଣକୁ ଶାସନ କରିବା ନିମନ୍ତେ ତଥା ନ୍ୟାୟ ପ୍ରବର୍ତ୍ତନ କରିବା ନିମନ୍ତେ ନିର୍ବାଚିତ କରିବାକୁ ହେବ । ସେ ହେବ ମହାସାମନ୍ତ ବା ମହାନିର୍ବାଚିତ ପ୍ରତିନିଧି । ତାଙ୍କୁ ଜମିର ଉତ୍ପାଦନର ଏକ ନିର୍ଦ୍ଧାରିତ ଅଂଶ ପାରିଶ୍ରମିକ ରୂପେ ଦିଆଯିବ । ଏହା ନିଃସନ୍ଦେହ ଯେ, ସେତେବେଳର ବିଭିନ୍ନ ଅନୁଷ୍ଠାନ, ଯଥା- ପରିବାର, ବ୍ୟକ୍ତିଗତ ସମ୍ପତ୍ତି ଏବଂ ଜାତି ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧକୁ ବ୍ୟାଖ୍ୟା କରିବାକୁ ଏହି ବୌଦ୍ଧ ସିଦ୍ଧାନ୍ତ ପ୍ରୟାସ କରିଛି । ସିଦ୍ଧାନ୍ତଟିକୁ ଅନୁଶୀଳନ କଲେ ଜାଣିହେବ ଯେ, ଗଣସଂଘରେ ପ୍ରଚଳିତ ଥିବା ରାଜନୈତିକ ବ୍ୟବସ୍ଥାକୁ ଏହା ସୁହାଉଥିଲା । ଦ୍ୱିତୀୟତଃ, ଗଣସଂଘର ବ୍ୟବସ୍ଥା ରାଜତନ୍ତ୍ରରେ ରହିଥିବା ରାଜନୈତିକ ବ୍ୟବସ୍ଥାଠାରୁ ପୃଥକ୍ ଥିଲା । ରାଜତନ୍ତ୍ରକୁ ନେଇ ରହିଥିବା ବ୍ରାହ୍ମଣୀୟ ସିଦ୍ଧାନ୍ତ ଅନୁଯାୟୀ, ରାଜା ହେଲେ ପ୍ରଜାବର୍ଗର ରକ୍ଷକ; ତାଙ୍କୁ ଈଶ୍ୱର ନିଯୁକ୍ତ କରିଛନ୍ତି; ସେ ବଳି ଆଦି ସମସ୍ତ କର୍ମକାଣ୍ଡର ପୃଷ୍ଠପୋଷକ; ତାଙ୍କର କର୍ତ୍ତବ୍ୟ ହେଲା – ବର୍ଣ୍ଣାଶ୍ରମ ଧର୍ମକୁ ସମାଜରେ ତିଷ୍ଠି ରହିବାରେ ସହଯୋଗ କରିବା । ଏହାର ବିପରୀତ, ବୌଦ୍ଧ ସିଦ୍ଧାନ୍ତରେ ଶାସନର ଆବଶ୍ୟକତାକୁ ଏକ ହେତୁବାଦୀ ବ୍ୟାଖ୍ୟା ଦେବାକୁ ପ୍ରୟାସ କରାଯାଇଛି ।

## ରାଜତନ୍ତ୍ର

ଗଣସଂଘର ବିପରୀତ ରାଜତନ୍ତ୍ରରେ ଏକ କେନ୍ଦ୍ରୀକୃତ ଶାସନ ରହିଥିଲା; ତହିଁରେ ରାଜାଙ୍କର ସାର୍ବଭୌମତ୍ୱ ମେରୁଦଣ୍ଡ ଭଳି କାର୍ଯ୍ୟ କରୁଥିଲା । ରାଜତନ୍ତ୍ରର ରାଜ୍ୟବ୍ୟବସ୍ଥା

ଧୀରେ ଧୀରେ ସର୍ଦ୍ଦାର ବା ମୁଖିଆ ହାତରୁ ରାଜାଙ୍କ ହାତକୁ ଅନ୍ତରିତ ହେଲା । ଏହି ପରିବର୍ତ୍ତନ ସହିତ ଏକ କର୍ମକାଣ୍ଡୀ ମର୍ଯ୍ୟାଦା ରାଜାଙ୍କୁ ପ୍ରାପ୍ତ ହେଲା, ଯାହା ତାଙ୍କ କର୍ତ୍ତୃତ୍ୱରେ ଏକ ନୂତନ ଉପାଦାନ ରୂପେ ଶୋଭା ପାଇଲା । ଶାସକ ପରିବାର ହାତରେ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଥିଲା । ଏହାକୁ ଯଥାର୍ଥ ବୋଲି ପ୍ରତିପାଦନ କରିବାର ଆବଶ୍ୟକତା ରହିଥିଲା । ତେଣୁ ବ୍ରାହ୍ମଣୀୟ କର୍ମକାଣ୍ଡ ମାଧ୍ୟମରେ ଶାସକ ପରିବାରକୁ କ୍ଷତ୍ରିୟ ମର୍ଯ୍ୟାଦା ଦିଆଯାଉଥିଲା । ରାଜତନ୍ତ୍ର ରୂପେ ଏଭଳି ଏକ ରାଜ୍ୟବ୍ୟବସ୍ଥାର ବିକାଶ ହେଲା, ଯାହାର ଚରିତ୍ର ପୂର୍ବକାଳୀନ ବ୍ୟବସ୍ଥା ତୁଳନାରେ ନୂତନ ଥିଲା । ରାଜା ଆଇନକୁ କାର୍ଯ୍ୟକାରୀ କରୁଥିଲେ । ତା' ପାଇଁ ତାଙ୍କୁ ଦଣ୍ଡ ପ୍ରଦାନ କରିବାକୁ ଶକ୍ତିର ଆଶ୍ରୟ ନେବାକୁ ପଡୁଥିଲା । ଏହି ଦଣ୍ଡ-ଶକ୍ତିର ଏବଂ ଜାତି କ୍ଷେତ୍ରର ପାରମ୍ପରିକ ଆଇନ ମଧ୍ୟରେ ସାମଞ୍ଜସ୍ୟ ରଖିବାର ଆବଶ୍ୟକତା ରହିଥିଲା । ସମଗ୍ର ଇତିହାସରେ ସାମଞ୍ଜସ୍ୟ କଥାକୁ ମହତ୍ତ୍ୱ ଦିଆଯାଇଥିଲା । ଶାସନର ପରିଧି ମୁଖ୍ୟ ସହରର ଚାରିକଡ଼ରେ ପ୍ରସାରିତ କ୍ଷେତ୍ରକୁ ଆବୋରିଥିଲା । କଦାଚିତ ଏହା ତା'ଠାରୁ ମଧ୍ୟ ଅଧିକ ଦୂରକୁ ବିସ୍ତାରିତ ହୋଇ ରହିଥିଲା ।

ଶାସକ ପରିବାର ରାଜତନ୍ତ୍ରରେ କାଳକ୍ରମେ ରାଜବଂଶର ରୂପ ନେଲେ ଏବଂ ଉତ୍ତରାଧିକାର ସୂତ୍ରରେ ରାଜପଦ ପ୍ରାପ୍ତ ହେବାକୁ ଲାଗିଲା । ପ୍ରାୟତଃ ଏଥିରେ ଜ୍ୟେଷ୍ଠାଧିକାର କଥା ବି ରହିଥିଲା । ରାଜନୈତିକ କ୍ଷମତା ରାଜାଙ୍କ ହାତରେ କେନ୍ଦ୍ରୀଭୂତ ହୋଇ ରହିଥିଲା । ତାଙ୍କୁ ପରାମର୍ଶ ଓ ସହଯୋଗ ଦେବା ଲାଗି ମନ୍ତ୍ରୀମାନେ ଥିଲେ ଓ ଉପଦେଷ୍ଟା ପରିଷଦ ରହିଥିଲେ । ଉପଦେଷ୍ଟା ପରିଷଦକୁ ସାଧାରଣତଃ 'ପରିଷଦ' ଓ 'ସଭା' ବୋଲି କୁହାଯାଉଥିଲା । ଉଭୟ ଶବ୍ଦର ପ୍ରଚଳନ ଆରମ୍ଭରୁ ରହିଥିଲା, ମାତ୍ର ଏଣିକି ତହିଁରେ ପରାମର୍ଶର ଅର୍ଥ ସଂଯୋଜିତ ହେଲା । ରାଜାଙ୍କ ସାହାଯ୍ୟ ଲାଗି ଏକ ପ୍ରଶାସନ ମଧ୍ୟ ରହିଥିଲା, ଯାହା ଅଧିକାରୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଅଧିକାରୀବର୍ଗ ରାଜସ୍ୱର ପରିମାଣ ନିର୍ଦ୍ଧାରଣ କରୁଥିଲେ; ରାଜସ୍ୱ ଅସୁଲି କରୁଥିଲେ ଏବଂ ତାକୁ ରାଜକୋଷରେ ଜମା କରୁଥିଲେ । ରାଜକୋଷ ଥିଲା ରାଜଧାନୀରେ । ରାଜକୋଷରୁ ଉକ୍ତ ଅର୍ଥର ବିଭିନ୍ନ କାର୍ଯ୍ୟ ପାଇଁ ପୁନଃବିତରଣ ହେଉଥିଲା । କାର୍ଯ୍ୟଗୁଡ଼ିକ ମଧ୍ୟରେ ଥିଲା : ବେତନ ଏବଂ ସାର୍ବଜନିକ ବ୍ୟୟ, ଯଥା ସେନା ଓ ପ୍ରଶାସନିକ ଖର୍ଚ୍ଚ, ବ୍ରାହ୍ମଣମାନଙ୍କ ପାଇଁ ଦେୟ, ଧାର୍ମିକ ଅନୁଷ୍ଠାନ ପାଇଁ ବ୍ୟୟ ଏବଂ ରାଜାଙ୍କର ଘରୋଇ ଖର୍ଚ୍ଚ । ସାର୍ବଜନିକ କାର୍ଯ୍ୟ ମଧ୍ୟରେ ଉତ୍ପାଦନ ବୃଦ୍ଧି ପାଇଁ ପଦକ୍ଷେପ ରହିଥିଲା, କାରଣ ଉତ୍ପାଦନ ବୃଦ୍ଧି ପାଇଲେ ରାଜସ୍ୱ ବୃଦ୍ଧି ପାଇବାର ସମ୍ଭାବନା ରହିଥିଲା । ଉଦାହରଣ ସ୍ୱରୂପ, ଜଳସେଚନକୁ ରାଜ୍ୟ ଏକସମୟରେ ପ୍ରମୁଖତା ଦେଉଥିଲା । ମାତ୍ର କୃଷି ପାଇଁ ଜଳ ସୁଲଭକାରୀ ସାଧାରଣ ସେଚନ କାର୍ଯ୍ୟ

ଅଧିକାଂଶ କ୍ଷେତ୍ରରେ ସ୍ୱୟଂ କୃଷକକୁ ବା ଗ୍ରାମକୁ କରିବାକୁ ପଡୁଥିଲା । ଯେଉଁଠି କୃଷକ ଜଳସେଚନ ବ୍ୟବସ୍ଥା କରିବାକୁ ଖର୍ଚ୍ଚ ଦୃଷ୍ଟିରୁ ଅସମର୍ଥ ଥିଲା, ସେହି କ୍ଷେତ୍ରରେ ରାଜ୍ୟ ସହାୟତା ପ୍ରଦାନ କରୁଥିଲା । ଉଦାହରଣ ସ୍ୱରୂପ, କେନାଲ ଖୋଦନ ବା ପୋଖରୀ ଖୋଦନ ପାଇଁ ବ୍ୟକ୍ତିଗତଭାବେ କୃଷକ ଅସମର୍ଥ ଥିଲା । ତେଣୁ ତା' ପାଇଁ ରାଜ୍ୟର ସହାୟତା ପ୍ରାପ୍ତ ହେଉଥିଲା । ରାଜ୍ୟର ଅସ୍ତିତ୍ୱର ଅର୍ଥ ହେଲା ରାଜ୍ୟକୁ ଉଭୟ ଶତ୍ରୁ ଓ ମିତ୍ର ରାଜ୍ୟର ପଡ଼ୋଶୀ ସହିତ ସମ୍ପର୍କ ରଖିବାକୁ ବି ପଡୁଥିଲା । କ୍ଷମତାଧାରୀ ପାଇଁ ଯାହା ଅନୁକୂଳ, ତାକୁ ଦୃଷ୍ଟିରେ ରଖି ସାମାଜିକ ସମ୍ବନ୍ଧ ସ୍ଥାପିତ କରାଯାଉଥିଲା ।

ରାଜତନ୍ତ୍ରରେ କୁଳ ପ୍ରତି ଅନୁରକ୍ତି ସ୍ଥାନରେ ଜାତି ପ୍ରତି ଅନୁରକ୍ତି ଏବଂ ରାଜଭକ୍ତିକୁ ମହତ୍ତ୍ୱ ଦିଆଗଲା । ରାଜ୍ୟର ବିସ୍ତାର ହେବାଫଳରେ ସଭାର ମହତ୍ତ୍ୱ ଊଣା ହେଲା । ସଭାର ବାରମ୍ବାର ଆୟୋଜନ ପାଇଁ ଏଣିକି ଦୂରତା ଏକ ବଡ଼ ପ୍ରତିବନ୍ଧକ ହେଲା । ଗଣସଂଘ ଏକ ସାନ ଭୌଗୋଳିକ କ୍ଷେତ୍ରକୁ ଭିତ୍ତି କରି ଗଠିତ ହୋଇଥିଲା । ତହିଁରେ ଏକ ଅପେକ୍ଷାକୃତ ଅଧିକ ପ୍ରତିନିଧିମୂଳକ ଶାସନର ଆବଶ୍ୟକତା ସହଜରେ ପୂରଣ ହୋଇପାରୁଥିଲା । ରାଜତନ୍ତ୍ରରେ ରାଜାଙ୍କୁ ଈଶ୍ୱରଙ୍କ ଚଳନ୍ତି ପ୍ରତିମା ମନେକରାଯାଉଥିଲା । ତା'ର ଆନୁସଙ୍ଗିକ ଅଙ୍ଗ ଥିଲେ ପୁରୋହିତ ଏବଂ ବୈଦିକ କର୍ମକାଣ୍ଡ । ଏସବୁ ମିଶି ଆଦ୍ୟ ବୈଦିକକାଳୀନ ଲୋକପ୍ରିୟ ସଭାର ମହତ୍ତ୍ୱକୁ ଊଣା କରିଦେଲେ । ରାଜ୍ୟର ଅଭିଜାତ ବର୍ଗ ମଧ୍ୟରେ ଏବଂ ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟରେ ଯେଉଁ ବିବାଦ ଆଗରୁ ଦୃଷ୍ଟିଗୋଚର ହେଉଥିଲା, ତହିଁରେ ଆଉ ଏକ ଉପାଦାନ ଯୋଡ଼ିହେଲା । ତାହା ହେଲା ସହରରେ ଧନୀକ ବଣିକ ଗୋଷ୍ଠୀର ଅଭ୍ୟୁଦୟ । ବର୍ଣ୍ଣାଶ୍ରମର ପାଳନକୁ ଗୁରୁତ୍ୱ ଦେବା ପଛରେ କ୍ଷମତାରେ ନିଜ ନିୟନ୍ତ୍ରଣ ବଜାୟ ରଖିବା ଏକ ପ୍ରମୁଖ ଉଦ୍ଦେଶ୍ୟ ଥିଲା ।

ଏହି କାଳଖଣ୍ଡର ରଚିତ ସାହିତ୍ୟରେ ଅନେକ ରାଜତନ୍ତ୍ରର ଉଲ୍ଲେଖ ରହିଛି । ତନ୍ମଧ୍ୟରେ ଆରମ୍ଭରେ କାଶୀ ଥିଲା ଅଧିକ ମହତ୍ତ୍ୱପୂର୍ଣ୍ଣ । କାଶୀର ଉତ୍ତରରେ ସ୍ଥାପିତ କୋଶଳ ଓ ପରେ ଦକ୍ଷିଣ ବିହାରରେ ସ୍ଥାପିତ ହୋଇଥିବା ମଗଧ ଥିଲା ଆଉ ଦୁଇଟି ମହତ୍ତ୍ୱପୂର୍ଣ୍ଣ ରାଜ୍ୟ । ଏହି ତିନୋଟି ରାଜ୍ୟ ମଧ୍ୟରେ ଗାଙ୍ଗେୟ ସମତଳ କ୍ଷେତ୍ର ଉପରେ ନିୟନ୍ତ୍ରଣ ସ୍ଥାପିତ କରିବା ନିମନ୍ତେ ତୀବ୍ର ପ୍ରତିଯୋଗିତା ଚାଲୁଥିଲା । ଉଭୟ କୂଟନୈତିକ ଦୃଷ୍ଟିରୁ ତଥା ଅର୍ଥନୈତିକ ଦୃଷ୍ଟିରୁ ଏହି ନିୟନ୍ତ୍ରଣର ଖୁବ୍ ଆବଶ୍ୟକତା ରହିଥିଲା, କାରଣ ସେତେବେଳେ ଆଦ୍ୟ ବାଣିଜ୍ୟର ଅଧିକାଂଶ ଭାଗ ନଦୀପଥରେ ପରିବାହିତ ହେଉଥିଲା ଏବଂ ବାଣିଜ୍ୟର ମୁଖ୍ୟ କେନ୍ଦ୍ର ଥିଲା ନଦୀଘାଟ । ଶେଷରେ କେବଳ ଚାରିଗୋଟି ରାଜ୍ୟ ପ୍ରତିଯୋଗିତାରେ ରହିପାରିଲେ । ତନ୍ମଧ୍ୟରୁ କାଶୀ, କୋଶଳ ଓ ମଗଧ ଥିଲେ ରାଜତନ୍ତ୍ର ଏବଂ ଏକମାତ୍ର ବୃଜି ଥିଲା ଗୋଷ୍ଠୀତନ୍ତ୍ର ।

ସେତେବେଳେ ରାଜାମାନେ କ୍ଷତ୍ରିୟ ହୋଇଥିବେ ବୋଲି ଆଶା କରାଯାଉଥିଲା । ମାତ୍ର ବିଭିନ୍ନ ଜାତିର ରାଜା ଶାସନ କରୁଥିଲେ ବୋଲି ରାଜାଙ୍କର କ୍ଷତ୍ରିୟ ହେବା ଏକ ପୋଥିଗତ ନିୟମ ହୋଇ ରହିଯାଇଥିଲା । ରାଜତ୍ୱ ସହିତ ଦେବଗୁଣ ପ୍ରାପ୍ତି ହେଉଥିଲା ବୋଲି ଦୃଢ଼ ବିଶ୍ୱାସ ରହିଥିଲା । ସମୟେ ସମୟେ ଆଡ଼ମ୍ବରପୂର୍ଣ୍ଣ ଯାଗଯଜ୍ଞ ଆଦି କର୍ମକାଣ୍ଡ କରି ତଥା ବୈଦିକ ଗ୍ରନ୍ଥରେ ବର୍ଣ୍ଣିତ ନୀତିନିୟମକୁ ପାଳନ କରି ରାଜା ଏହି ବିଶ୍ୱାସକୁ ପୂର୍ଣ୍ଣତଃ ପୁନଃସ୍ଥାପିତ କରୁଥିଲେ । ପୂର୍ବରୁ ରାଜାମାନେ ଖୁବ୍ ନିୟମିତ ଢଙ୍ଗରେ ଏସବୁ ପାଳନ କରୁଥିଲେ । ମାତ୍ର ପରେ ତାକୁ ଆଉ ଖୁବ୍ ବେଶି ପାଳନ କରାଗଲା ନାହିଁ । ଯେଉଁ ରାଜା କର୍ମକାଣ୍ଡ ପାଳନ କରୁଥିଲେ, ସେ କର୍ମକାଣ୍ଡୀ କ୍ଷମତା ଦାବି କରୁଥିଲେ । ମାତ୍ର ରାଜତନ୍ତ୍ରର ବ୍ୟବହାରିକ ଭିତ୍ତି ରହିଥିଲା ରାଜନୈତିକ କ୍ଷମତାକୁ କେନ୍ଦ୍ରୀଭୂତ କରି ରଖିବାରେ ଏବଂ ସମ୍ବଳ ଉପରେ ଅଧିକାର ସାବ୍ୟସ୍ତ କରିବାରେ । ଲୋକଙ୍କ ଦୃଷ୍ଟିରେ, ବିଶାଳ ଯାଗଯଜ୍ଞର କର୍ମକାଣ୍ଡ ଥିଲା ପ୍ରଭାବଶାଳୀ ସମାରୋହ; ଲୋକ ତାକୁ ନେଇ ବର୍ଷ ବର୍ଷ ଧରି ଚର୍ଚ୍ଚା କରିବେ । ଏହାଦ୍ୱାରା ଜଟିଳ ମନ ବିଭ୍ରମିତ ହେବ ଏବଂ ରାଜାଙ୍କ ପ୍ରତି ଏକରକମର ବିସ୍ମୟପୂର୍ଣ୍ଣ ଆତଙ୍କର ଭାବ ସୃଷ୍ଟି ହେବ । ଲୋକଙ୍କ ବିଚାରରେ ରାଜା ହେବେ ଜଣେ ବ୍ୟତିକ୍ରମ ପୁରୁଷ, ଯିଏ ଦେବାଦେବୀଙ୍କ ସହ, ହେଉ ପଛେ ତାହା ପୂଜକଙ୍କ ମାର୍ଫତରେ, ଆଳାପ କରନ୍ତି । ପୂଜକମାନେ ମଧ୍ୟ ସାଧାରଣ ମଣିଷ ନ ଥିଲେ, କାରଣ ଦୈବୀଶକ୍ତିର ପ୍ରକୃତ ସଂଯୋଜକ ଥିଲେ ସେମାନେ । ପୂର୍ବରୁ ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟରେ ବିବାଦ ହୋଇଥିଲା ସତ; ମାତ୍ର ରାଜତନ୍ତ୍ରରେ ରାଜଗାଦି ଓ ପୌରୋହିତ୍ୟ ଥିଲେ ପରସ୍ପରର ପରିପୂରକ ।

ରାଜନୈତିକ ପ୍ରତିଷ୍ଠା ପାଇଁ କାଶୀ, କୋଶଳ ଓ ମଗଧ ରାଜ୍ୟ ଓ ବୃଜି ଗଣସଂଘ ମଧ୍ୟରେ ପାରସ୍ପରିକ କଳହ ଦୀର୍ଘଦିନ ଧରି ଚାଲିଲା । ଶେଷରେ ଉତ୍ତର ଭାରତରେ ରାଜନୈତିକ ଗତିବିଧିର ପ୍ରମୁଖ କେନ୍ଦ୍ର ରୂପରେ ମଗଧ ବିଜୟପ୍ରାପ୍ତ ହେଲା । ଏହି ପ୍ରତିଷ୍ଠା ମଗଧ ପାଖରେ ଅନେକ ଶତାବ୍ଦୀ ଧରି ରହିଥିଲା । ମଗଧର ପ୍ରଥମ ମହତ୍ତ୍ୱପୂର୍ଣ୍ଣ ରାଜା ଥିଲେ ବିମ୍ବିସାର, ଯିଏ ରାଜସ୍ୱକୁ ନିୟନ୍ତ୍ରଣ କରୁଥିବା ବୃହଦ୍ ରାଜ୍ୟର ଗୁରୁତ୍ୱକୁ ବୁଝିପାରିଥିଲେ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀର ଉତ୍ତରାର୍ଦ୍ଧରେ ବିମ୍ବିସାର ରାଜତ୍ୱ ଲାଭ କରିଥିଲେ । ସେ ଉଚ୍ଚବଂଶଜ ବୈଶାଳୀ ରାଜା ଓ କୋଶଳର ଶାସକ ପରିବାର ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରିଥିଲେ ଯାହା ତାଙ୍କ ରାଜ୍ୟପ୍ରସାର ନୀତିକୁ ସହଯୋଗ କଲା । ଏହିପ୍ରକାରେ ରାଜ୍ୟର ଉତ୍ତର ଓ ପଶ୍ଚିମ ସୀମାନ୍ତକୁ ସୁରକ୍ଷିତ କରି ସେ ଦକ୍ଷିଣ-ପୂର୍ବର ରାଜ୍ୟ ଅଙ୍ଗ ଅଭିମୁଖେ ସେନା ଅଭିଯାନ କଲେ । ଏହା ତାଙ୍କୁ ଗାଙ୍ଗେୟ ମୁହାଣ ପର୍ଯ୍ୟନ୍ତ ଯାଇଥିବା ନଦୀମାର୍ଗ ଉପରେ ନିୟନ୍ତ୍ରଣ ପ୍ରଦାନ କଲା । ନଦୀମାର୍ଗରୁ ତେଣିକି ପୂର୍ବତଟ ଉପରେ ବାଣିଜ୍ୟିକ ସମ୍ବନ୍ଧ ସ୍ଥାପନ କରିବା ତାଙ୍କ ପାଇଁ ସହଜ ହେଲା ।

ବିମ୍ବିସାର ଏକ ପ୍ରଶାସନିକ ବ୍ୟବସ୍ଥା ସ୍ଥାପିତ କଲେ । ତହିଁରେ ବିଭିନ୍ନ ଧରଣର କାର୍ଯ୍ୟ ପାଇଁ ଅଧିକାରୀମାନଙ୍କୁ ନିଯୁକ୍ତ କରାଯାଇଥିଲା । ସେ ମନ୍ତ୍ରୀମାନଙ୍କର ପରାମର୍ଶର ଆବଶ୍ୟକତାକୁ ମଧ୍ୟ ମହତ୍ତ୍ୱ ଦେଉଥିଲେ । ଗ୍ରାମ ଥିଲା ପ୍ରଶାସନର ମୌଳିକ ୟୁନିଟ, ଯାହା ଆଜି ବି ଅଛି । କୃଷିଜମିକୁ ମାପିବା ପାଇଁ ତଥା ଶସ୍ୟର ମୂଲ୍ୟାଙ୍କନ କରିବାପାଇଁ ସେ ଅଧିକାରୀ ନିଯୁକ୍ତ କରିଥିଲେ । ଗ୍ରାମ ପ୍ରଶାସନର ମୁଖ୍ୟ ଥିଲେ ଗ୍ରାମଣୀ, ଯିଏ ଲୋକଙ୍କଠାରୁ କର ଆଦାୟ କରୁଥିଲେ । ଅଧିକାରୀବର୍ଗ ସଂଗୃହିତ କରକୁ ରାଜକୋଷକୁ ଆଣି ଜମା କରୁଥିଲେ ।

ଆଗରୁ ଭେଟି, ଉପହାର ଆଦି ସ୍ୱେଚ୍ଛାମୂଳକ ଥିଲା । ଏଣିକି ତାହା କର ରୂପରେ ଆଦାୟ ହେଲା । ତାକୁ ବଳି, ଭାଗ, କର ଓ ଶୁଳ୍କ ଆଦି କୁହାଯାଉଥିଲା । ଏହି ଶବ୍ଦଗୁଡ଼ିକର ପ୍ରୟୋଗ ପୂର୍ବରୁ ମଧ୍ୟ ରହିଥିଲା । ମାତ୍ର ବିମ୍ବିସାରଙ୍କ ସମୟରେ ତା'ର ଅର୍ଥ ବଦଳିଗଲା । ବଳି ହେଲା କୃଷି ଅଧିକୃତ ଭୂମି ଉପରେ କର । ଅର୍ଥାତ୍ ରାଜସ୍ୱର ଉତ୍ସ ଉପରେ ତାକୁ ଆଦାୟ କରାଯାଉଥିଲା । ଭାଗ ହେଲା ଉତ୍ପାଦନର ଅଂଶ । ଏହାକୁ ବାଦ୍‌ଦେଲେ ଆଉ ବିଭିନ୍ନ ପ୍ରକାରର କର ମଧ୍ୟ ଥିଲା । ଏହିପରିଭାବେ ଭୂମିର ଆକାର ଓ ଉତ୍ପାଦନ ଆଧାରରେ କର ନିର୍ଦ୍ଧାରଣ କରାଯାଉଥିଲା । ଅଧିକାରୀମାନେ କର ନିର୍ଦ୍ଧାରଣ ଓ ନିର୍ଦ୍ଧାରିତ ସମୟରେ କର ଅସୁଲି କରୁଥିଲେ । ଜଟିଳତାପୂର୍ଣ୍ଣ ରାଜସ୍ୱ ବ୍ୟବସ୍ଥାର ଏହା ଥିଲା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ପରବର୍ତ୍ତୀ ସମୟରେ ମଧ୍ୟ ଏହି ବ୍ୟବସ୍ଥା ଅବ୍ୟାହତ ରହିଥିଲା । ପୂର୍ବରୁ କୁଳର ସଦସ୍ୟମାନେ ବା ଅନ୍ୟ କନିଷ୍ଠ କୁଳମାନେ ସ୍ୱେଚ୍ଛାରେ ଶାସକ କୁଳକୁ ଧନ ସୁଲଭ କରାଉଥିଲେ । ମାତ୍ର ଏଣିକି ତାକୁ ଉତ୍ପାଦନକାରୀ ପାଖରୁ ଶାସକ ବର୍ଗ ଅସୁଲି କଲେ । ବଡ଼ କଥା ହେଲା ଯେ କରଦାତା ଓ କରଗ୍ରହିତାଙ୍କ ମଧ୍ୟରେ କୁଳସମ୍ବନ୍ଧ ନ ଥିଲା । ଏକ କୃଷିଭିତ୍ତିକ ଅର୍ଥବ୍ୟବସ୍ଥାକୁ ଏହି ପ୍ରକ୍ରିୟାରେ ସ୍ଥାପିତ କରାଯାଉଥିଲା । ଏଣୁ ଏଣିକି ଶାସକ ଓ ଶାସିତ, କୃଷକ ଓ ତା'ର କୃଷିଜମି, ଧନୀ ଓ ଗରିବ ମଧ୍ୟରେ ପାର୍ଥକ୍ୟକୁ ବେଶ୍ ସହଜରେ ବାରି ହେଉଥିଲା । ଗୋଟାଏ ରାଜ୍ୟକୁ ଶାସନ କରିବା ଓ ଗୋଟାଏ ଗଣସଂଘକୁ ପ୍ରତ୍ୟକ୍ଷଭାବେ ପରିଚାଳନା କରିବା ମଧ୍ୟରେ ପ୍ରଭେଦ ଖୁବ୍ ସୁସ୍ପଷ୍ଟ ଥିଲା ।

ସେତେବେଳେ ବିଭିନ୍ନ କିସମର ଭୂସ୍ୱାମୀ ଥିଲେ, କାରଣ ବ୍ୟକ୍ତିଗତ ଭାବେ ପ୍ରତ୍ୟେକ ବ୍ୟକ୍ତି ପାଖରେ ଥିବା ଭୂମିର ପରିମାଣ ଏକା ନ ଥିଲା । ଧନୀ ବ୍ୟକ୍ତିକୁ ଗହପତି ବା ଗୃହପତି କୁହାଯାଉଥିଲା । ସେମାନଙ୍କ ମଧ୍ୟରୁ କେତେକ ବଡ଼ ଭୂସ୍ୱାମୀ ଥିଲେ । ସାନ ଭୂସ୍ୱାମୀକୁ କସକ ବା କୃଷକ କୁହାଯାଉଥିଲା । ଉଭୟଙ୍କ ମଧ୍ୟରେ ଏକ ବିଶେଷ ପାର୍ଥକ୍ୟ ହେଲା ଯେ ଗୃହପତି ବିଲରେ କାମ କରିବାପାଇଁ ଦାସ ଓ କର୍ମକାରମାନଙ୍କୁ ନିଯୁକ୍ତ କରୁଥିଲେ ।

ଏହି ଦାସ ଓ କର୍ମକାରମାନେ ଗୃହପତିଙ୍କର କୁଳସମ୍ବନ୍ଧୀ ନ ଥିଲେ । ଦରିଦ୍ର ଲୋକ ସ୍ୱ-ପରିବାରଜନଙ୍କ ଶ୍ରମରେ କୃଷିକାର୍ଯ୍ୟ କରୁଥିଲେ । ଯେତେବେଳେ ବିଭିନ୍ନ ଗତିବିଧି ଓ ଉତ୍ପାଦନର ଏକ ପ୍ରମୁଖ ସଂସ୍ଥା ରୂପରେ ରାଜ୍ୟର ଉତ୍ପତ୍ତି ହେଲା, ସେତେବେଳେ ସାମାଜିକ ମର୍ଯ୍ୟାଦାର ପ୍ରତୀକରୂପେ ବର୍ଣ୍ଣକୁ ବାରମ୍ବାର ଉଲ୍ଲେଖ କରାଗଲା । ଉଚ୍ଚ ବର୍ଗର ଦୃଷ୍ଟିକୋଣରୁ ବୋଧହୁଏ ବର୍ଣ୍ଣବ୍ୟବସ୍ଥା ଥିଲା ଜାତିପ୍ରଥା ଅପେକ୍ଷା ଅଧିକ ସମରୂପୀ । ସମାଜର ତଳ ସ୍ତରରେ କୃଷକ ଓ କର୍ମକାରଙ୍କୁ ରଖାଗଲା ଏବଂ ସେମାନଙ୍କୁ ଶୂଦ୍ର ବର୍ଣ୍ଣର ମର୍ଯ୍ୟାଦା ଦିଆଗଲା । ଏକଥା ଅନସ୍ୱୀକାର୍ଯ୍ୟ ଯେ, ଭବିଷ୍ୟତରେ ଜମିହୀନ ଶ୍ରମିକର ସାମାଜିକ ମର୍ଯ୍ୟାଦା ଶୂଦ୍ର କୃଷକ ଅପେକ୍ଷା ମଧ୍ୟ ତଳେ ବୋଲି ନିର୍ଦ୍ଧାରିତ ହେବାର ଥିଲା ଏବଂ ଶୂଦ୍ର କୃଷକ ଉପରେ ସମାଜର ନିର୍ଭରଶୀଳତା ବୃଦ୍ଧି ପାଇବାର ଥିଲା ।

ଏହି ସମୟରେ ସମାଜରେ ଆଉ ଏକ ପ୍ରବୃତ୍ତି ଦେଖିବାକୁ ମିଳିଲା । ରାଜ୍ୟ ଅଧିକରୁ ଅଧିକ ପରିମାଣର ଜମି ଉପରେ ନିଜର ଦାବି ଜଣାଇଲା, କାରଣ ଅନାବାଦି ଜମିରେ ରାଜ୍ୟର ଅଧିକାର ରହିଛି ବୋଲି ଧାରଣା ଦିଆଗଲା । ଏହାସହିତ ରାଜାଙ୍କୁ କେଉଁ ରୂପେ ଦେଖାଯିବ, ସେହି ଦୃଷ୍ଟି ମଧ୍ୟ ବଦଳିଗଲା । ଆରମ୍ଭରେ ରାଜାଙ୍କୁ ବହିଃଆକ୍ରମଣରୁ ନିଜ ପ୍ରଜାମାନଙ୍କୁ ସୁରକ୍ଷା ପ୍ରଦାନ କରୁଥିବା ବ୍ୟକ୍ତି ରୂପରେ ଦେଖାଯାଉଥିଲା । ସେତେବେଳେ ତାଙ୍କର ଯୋଦ୍ଧାଗୁଣ ଥିଲା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ମାତ୍ର ପରେ ତାଙ୍କୁ ନ୍ୟାୟଦାତା ରୂପରେ ଦେଖାଗଲା । ରାଜା ବିନା ସମାଜ ଅରାଜକତାପୂର୍ଣ୍ଣ ହୋଇଯିବ ବୋଲି ଧାରଣା ସୃଷ୍ଟିହେଲା । ବିଭିନ୍ନ ଦୃଷ୍ଟାନ୍ତ ମାଧ୍ୟମରେ ଏହାକୁ ବ୍ୟାଖ୍ୟା କରାଗଲା । ତନ୍ମଧ୍ୟରୁ ଏକ ବହୁପରିଚିତ ଦୃଷ୍ଟାନ୍ତକୁ ମତ୍ସ୍ୟନ୍ୟାୟ କୁହାଯାଉଥିଲା । ତା' ଅନୁଯାୟୀ, ଅନାବୃଷ୍ଟି ହେଲେ ପୋଖରୀମାନ ଶୁଖିଯାଏ । ସେତେବେଳେ ବଡ଼ ମାଛ ସାନ ମାଛମାନଙ୍କୁ ଭକ୍ଷଣ କରେ । ଏହିଭଳି ବିଶୃଙ୍ଖଳିତ ସ୍ଥିତିରେ ଜଣେ ନ୍ୟାୟ ପ୍ରତିଷ୍ଠାତାର ଲୋଡ଼ା ପଡ଼େ । ସେହି ନ୍ୟାୟରେ ରାଜତ୍ୱର ପ୍ରତିଷ୍ଠା ହୁଏ ବୋଲି ବ୍ୟାଖ୍ୟା କରାଯାଏ । ମାତ୍ର ରାଜତ୍ୱର ଏହି ସହବନ୍ଧନରେ ସାଧାରଣତଃ ଜଣେ ଦେବତାଙ୍କର ହସ୍ତକ୍ଷେପ ରହିଥାଏ । ରାଜକାର୍ଯ୍ୟ ପାଇଁ ମନୋନୀତ ବ୍ୟକ୍ତି ଜଣକୁ କୁହାଗଲା ମନୁ । ସେ ଦେବତାମାନଙ୍କ ଦ୍ୱାରା ନିଯୁକ୍ତ । ନିଜର ରାଜକାର୍ଯ୍ୟ ସମ୍ପାଦନ ପାଇଁ ସେ ପାରିଶ୍ରମିକ ପାଆନ୍ତି, ଯାହାକୁ କର ଏବଂ ଅନ୍ୟାନ୍ୟ ବିଶେଷାଧିକାର ବୋଲି କୁହାଯାଏ । ଅନାବାଦି ଜମି ଉପରେ ନିୟନ୍ତ୍ରଣ ହେଉଛି ସେହିଭଳି ଏକ ରାଜାଧିକାର, ଯାହାକୁ ପରବର୍ତ୍ତୀ ପୋଥିପାଠରେ ସ୍ପଷ୍ଟଭାବରେ ଉଲ୍ଲେଖ କରାଯାଇଛି ।

ଗ୍ରାମ ବାହାରେ ପଡ଼ିଆ ଓ ଚାରଣଭୂମି (ଗୋଚର ଜମି) ରହିଥିଲା । ତା' ଆଗକୁ ଥିଲା ଅନାବାଦି ଜମି ଓ ଜଙ୍ଗଲ । ଏହି ପ୍ରଭେଦକୁ ଦର୍ଶାଇବା ପାଇଁ 'ଗ୍ରାମ' ଓ 'ଅରଣ୍ୟ'

କଥା କୁହାଯାଇଛି । ଗ୍ରାମ ହେଲା ବସତି ବା ବସ୍ତି ଏବଂ ଅରଣ୍ୟ ହେଲା ଜଙ୍ଗଲ ବା ବନ୍ୟଭୂମି । ପରେ ସେହି ଏକା ଅର୍ଥରେ 'କ୍ଷେତ୍ର' ଓ 'ବନ' ଶବ୍ଦର ବ୍ୟବହାର କରାଯାଇଛି । ଅନାବାଦି ଜମି ହେଲା ରାଜାଧିକାରଭୁକ୍ତ । ଏହି ଧାରଣାରୁ ରାଜା ସେହି ଜମିର ଉତ୍ପାଦନର ଗୋଟାଏ ଭାଗ ନେଇପାରିବେ ବୋଲି ନିୟମ ବାହାରିଲା । ଉକ୍ତ ଅନାବାଦି ଜମି କୃଷିଯୋଗ୍ୟ ହେଲାପରେ ସାଧାରଣତଃ ରାଜା ଉତ୍ପାଦନର ଏକ-ଷଷ୍ଠାଂଶ ରାଜଦେୟ କର ରୂପେ ଅସୁଲି କରୁଥିଲେ । ଏହି ଆଧାରରେ ତାଙ୍କୁ 'ଷଡ଼ଭାଗିନ' ବୋଲି ପାରମ୍ପରିକ ନାମ ମିଳିଥିଲା । ପ୍ରକୃତରେ କେବେ କେବେ କରର ପରିମାଣ ଏକ-ଷଷ୍ଠାଂଶରୁ ବି ଅଧିକ ଥିଲା । ରାଜଭୂମି ବାହାରେ ଥିବା ଜମିରେ ରାଜାଙ୍କର ଅଧିକାର ରହିଛି – ଏହି ଧାରଣା ହେଲା ପରବର୍ତ୍ତୀକାଳୀନ : ରାଜା ଅନାବାଦି ଜମିକୁ ନିୟନ୍ତ୍ରଣ କରିବା କଥା ଉଠିବାରୁ ଏହି ବିଚାର ଜନ୍ମନେଲା । ରାଜାଙ୍କୁ ରାଜ୍ୟର ପ୍ରତୀକ ରୂପରେ ଗଣାଯାଉଥିଲା । ସେହି ଆଧାରରେ ବୋଧହୁଏ ଜମି ଉପରେ ତାଙ୍କର ଅଧିକାରକୁ କିଛି ଅସ୍ପଷ୍ଟ ଶବ୍ଦରେ ଗ୍ରହଣ କରାଗଲା । କାଳକ୍ରମେ ରାଜା ଓ ରାଜ୍ୟ ମଧ୍ୟରେ ପାର୍ଥକ୍ୟ ଧୂମିଳ ହେଲା । ତେଣିକି ରାଜାଙ୍କର ଭୂସ୍ୱାମୀ ଅଧିକାରକୁ କେହି ଆଉ ଦୃଢ଼ଭାବରେ ପ୍ରତିରୋଧ କଲେ ନାହିଁ ।

ବର୍ଣ୍ଣ ଅନୁକ୍ରମରେ ଆଉ ଏକ ସାମାଜିକ ଗୋଷ୍ଠୀକୁ ସାମିଲ କରାଗଲା । ସେମାନେ ଶୂଦ୍ରଠାରୁ ମଧ୍ୟ ତଳେ ଅବସ୍ଥାପିତ ହେଲେ । ସାଧାରଣତଃ ଚାଣ୍ଡାଳମାନଙ୍କୁ ଉକ୍ତ ଗୋଷ୍ଠୀରେ ରଖାଗଲା ଓ ସେମାନଙ୍କୁ ଅସ୍ପୃଶ୍ୟ ଆଖ୍ୟା ଦିଆଗଲା । ତତ୍କାଳୀନ ପାଠ୍ୟ ସାମଗ୍ରୀରେ ବିଭିନ୍ନ ରୂପରେ ସେମାନଙ୍କ କଥା ଉଲ୍ଲେଖ କରାଯାଇଛି । ଅବଶ୍ୟ ତନ୍ମଧ୍ୟରୁ କେତେକ, ଯଥା- ବୁଦ୍ଧ ଜାତକ କଥା, ପରବର୍ତ୍ତୀକାଳୀନ ରଚନା । କୁହାଯାଏ ଅସ୍ପୃଶ୍ୟ ରୂପରେ ଚିହ୍ନିତ ହେଉଥିବା ଚାଣ୍ଡାଳମାନେ ଥିଲେ ଜନବସତିର ସବା କଣରେ ରହିଥିବା ଗୋଷ୍ଠୀ । ଅତିକ୍ରମଣ କରି ବସବାସ କରୁଥିବା ଗୋଷ୍ଠୀ ସେମାନଙ୍କୁ ହୁଏତ କଣକୁ ଠେଲି ଦେଇଥିଲେ, ଅଥବା ସେମାନେ ନିଜେ ଶିକାର ଓ ଖାଦ୍ୟ ସଂଗ୍ରହ କରି ଜୀବିକାର୍ଜନ କରୁଥିବାରୁ କଣରେ ବସତି ସ୍ଥାପନ କରିବାକୁ ଆବଶ୍ୟକ ମଣୁଥିଲେ । ସେମାନଙ୍କର ନିଜସ୍ୱ ଭାଷା ଥିଲା, ଯାହା ଭାରତୀର୍ଯ୍ୟ ଭାଷାଭାଷୀ ଲୋକଙ୍କ ପାଇଁ ଅବୁଝା ଥିଲା । ସେମାନଙ୍କର ବୃତ୍ତି ମଧ୍ୟରେ ଅନ୍ୟତମ ଥିଲା ମଶିଣା ବୁଣିବା ଏବଂ ଶିକାର କରିବା । ଏହି ବୃତ୍ତିକୁ ଅତି ନୀଚ ରୂପେ ଗଣାଯାଉଥିଲା । ଅନ୍ୟ ଏକ ଯୁକ୍ତି ଅନୁଯାୟୀ, ଚାଣ୍ଡାଳମାନେ ସହର ବିକଶିତ ହେବା ସହିତ ଦିନକୁଦିନ ମର୍ଯ୍ୟାଦା ହରାଇଲେ, କାରଣ ସହରରେ ସେମାନଙ୍କୁ ଏଭଳି ଶାରୀରିକ କାର୍ଯ୍ୟ କରିବାକୁ ପଡ଼ିଲା, ଯାହାକୁ କର୍ମକାଣ୍ଡୀ ସୋପାନରେ ଅଶୌଚ ବୋଲି ଗଣାଯାଉଥିଲା । ନଗରୀକରଣର ପ୍ରସାର ଯୋଗୁଁ ବସତିର କଣରେ ଅବସ୍ଥାପିତ ଲୋକ ଆକୃଷ୍ଟ ହୋଇ ସହରକୁ ଆସନ୍ତି । ସେଠାରେ ସେମାନେ ଭୂମିହୀନ; ପୁଣି ନିଜ କର୍ମକୁଶଳତା ପ୍ରଦର୍ଶନ ପାଇଁ ଅବସର ମିଳେନା ।

ଫଳରେ ଧୀରେ ଧୀରେ ସେମାନେ 'ନୀଚ' କାମ କରିବାକୁ ବାଧ୍ୟ ହୁଅନ୍ତି । ଏହିସବୁ 'ତଳ' ଗୋଷ୍ଠୀର ଉପସ୍ଥିତି ସାମାଜିକ ନିର୍ଯୋଗ୍ୟତା ଓ ନିଷେଧର ମୂର୍ତ୍ତିମନ୍ତ ପ୍ରତୀକ ହେଲା ଏବଂ ରାଜତନ୍ତ୍ରରେ ଉଚ୍ଚ ଜାତିର ବର୍ଦ୍ଧିଷ୍ଣୁ କର୍ତ୍ତୃତ୍ୱକୁ ଦର୍ଶାଇଲା । ବ୍ରାହ୍ମଣ ଓ ଅସ୍ପୃଶ୍ୟ ନାମକ ଦୁଇଟି ବର୍ଗ ସାମାଜିକ ପ୍ରତିଭାର (counter weight) ରୂପେ କାର୍ଯ୍ୟ କରନ୍ତି । ବର୍ଣ୍ଣ ବ୍ୟବସ୍ଥାକୁ ତିଷ୍ଠି ରହିବାକୁ ହେଲେ ଉଚ୍ଚ ବର୍ଗକୁ ଆହୁରି ଉଚ୍ଚକୁ ଏବଂ ନୀଚ ବର୍ଗକୁ ଆହୁରି ତଳକୁ ଯିବା ଜରୁରି ହୋଇପଡ଼େ । ବୋଧହୁଏ ଅସ୍ପୃଶ୍ୟତା ହେବ କୌଣସି ସମାଜ ଉପରେ ଢାଳି ଦିଆଯାଇଥିବା ସବୁଠାରୁ ନିପତିତ ମର୍ଯ୍ୟାଦା । ନୈତିକତା ଦୃଷ୍ଟିରୁ ଏହା ଥିଲା ସବୁଠାରୁ ଅନ୍ୟାୟପୂର୍ଣ୍ଣ ବିଧି । ଆର୍ଥିକ ଅସାମର୍ଥ୍ୟ ଏବଂ ସାମାଜିକ ନିର୍ଯୋଗ୍ୟତା (disability)ର ଆଶ୍ରୟ ନେଇ ବଂଶାନୁଗତ ମର୍ଯ୍ୟାଦା ସମାଜରେ ଏକ ସ୍ଥାୟୀ ଏବଂ କର୍ତ୍ତୃତ୍ୱାଧୀନ ଶ୍ରମିକ ବର୍ଗ ନିର୍ମାଣ କରିବାରେ ସଫଳ ହେଲା ।

## ମଗଧର କର୍ତ୍ତୃତ୍ୱ ବିସ୍ତାର

ଅଜାତଶତ୍ରୁ ଥିଲେ ବିମ୍ବିସାରଙ୍କ ପୁତ୍ର । କୁହାଯାଏ ମଗଧକୁ ଶାସନ କରିବା ସକାଶେ ଅଧୈର୍ଯ୍ୟ ହୋଇ ଶେଷରେ ସେ ଖ୍ରୀ.ପୂ. 493 ରେ ପିତାଙ୍କୁ ହତ୍ୟାକରି ରାଜପଦରେ ଅଭିଷିକ୍ତ ହେଲେ । ସାମରିକ ଅଭିଯାନ ମାଧ୍ୟମରେ ସେ ପିତାଙ୍କ ପରି ରାଜ୍ୟ ବିସ୍ତାର ନୀତି ଅବଲମ୍ବନ କରିବାକୁ ଦୃଢ଼ପ୍ରତିଜ୍ଞ ଥିଲେ । ମଗଧର ରାଜଧାନୀ ରାଜଗୃହ ଥିଲା ଏକ ମନୋରମ ନଗରୀ । ତାକୁ ବେଢ଼ିଥିବା ପାଞ୍ଚଟି ପାହାଡ଼ ରାଜଧାନୀକୁ ପ୍ରାକୃତିକ ସୁରକ୍ଷା ପ୍ରଦାନ କରୁଥିଲା । ଅଜାତଶତ୍ରୁ ରାଜଗୃହକୁ ଶକ୍ତିଶାଳୀ କଲେ ଏବଂ ଗଙ୍ଗାନଦୀ କୂଳରେ ପାଟଳିଗ୍ରାମ ନାମରେ ଏକ କ୍ଷୁଦ୍ର ଦୁର୍ଗ ନିର୍ମାଣ କଲେ । ସ୍ଥାନୀୟ ଉତ୍ପାଦନର ବିକାକିଣା ପାଇଁ ଏହି ପାଟଳିଗ୍ରାମ ହେଲା ଏକ ପ୍ରମୁଖ କେନ୍ଦ୍ର । ପରବର୍ତ୍ତୀ ସମୟରେ ଏହା ମୌର୍ଯ୍ୟ ମହାନଗରୀ ପାଟଳିପୁତ୍ର ନାମରେ ପ୍ରସିଦ୍ଧି ଅର୍ଜନ କଲା । ପୂର୍ବରୁ ବିମ୍ବିସାର ପୂର୍ବ ଦିଗରେ ସ୍ଥିତ ଅଙ୍ଗ ରାଜ୍ୟକୁ ଜିଣି ସାରିଥିଲେ । ତେଣୁ ଅଜାତଶତ୍ରୁ ଉତ୍ତର ଓ ପଶ୍ଚିମ ଦିଗକୁ ଜିଣିବା ପାଇଁ ଅଭିଯାନ ଆରମ୍ଭ କଲେ । କୋଶଳର ରାଜା ଥିଲେ ତାଙ୍କର ମାମୁଁ; ମାତ୍ର ତା' ସତ୍ତ୍ୱେ ସେ କୋଶଳକୁ ଜିଣି ନିଜ ରାଜ୍ୟରେ ସଂଲଗ୍ନ କଲେ । ପଶ୍ଚିମରେ ସେ କାଶୀ ପର୍ଯ୍ୟନ୍ତ ଅଧିକାର କରିନେଲେ । ନଦୀପଥରେ ପରିଚାଳିତ ବାଣିଜ୍ୟ କାରବାରକୁ ନିଜ ନିୟନ୍ତ୍ରଣାଧୀନ କରିବାଲାଗି ସେ ବୃଜି ମହାସଂଘ ସହିତ ଯୁଦ୍ଧ କଲେ । ଏହା ଥିଲା ଦୁଇଟି ରାଜନୈତିକ ବ୍ୟବସ୍ଥା ମଧ୍ୟରେ ସଂଘର୍ଷ; ଗୋଟାଏ ରାଜତନ୍ତ୍ର ଏବଂ ଅନ୍ୟଟି ଗଣସଂଘ । ଯୁଦ୍ଧ ଅନେକବର୍ଷ ଧରି ଚାଲିଲା । ଶେଷରେ ଅଜାତଶତ୍ରୁଙ୍କର ମନ୍ତ୍ରୀ ବସ୍ସକାର (ବର୍ଷାକର) ମହାସଂଘରେ ଗୃହବିବାଦ ସୃଷ୍ଟି କଲେ ।

ଯୁଦ୍ଧର ବର୍ଣ୍ଣନାରେ ଦୁଇଟି ଅସ୍ତ୍ରର ଉଲ୍ଲେଖ ରହିଛି, ଯାହା ମଗଧର ସାମରିକ ପ୍ରାଦ୍ୟୋଗିକୀରେ ନୂତନ କରି ବ୍ୟବହାର ହେଲା । ଗୋଟାଏ ହେଲା, ମହାଶିଳକଣ୍ଟକ, ଯାହାକୁ ବଡ଼ ବଡ଼ ପଥରଖଣ୍ଡକୁ ନିକ୍ଷେପ କରିବା କାମରେ ବ୍ୟବହାର କରାଯାଉଥିଲା ଏବଂ ଅନ୍ୟଟି ହେଲା ରଥମୁଷଳ । ଏଥିରେ ରଥରେ ବନ୍ଧା ହୋଇ ଏକ ବଡ଼ ମୁଷଳ ରହିଥିଲା । ରଥମୁଷଳ ଶତ୍ରୁସେନା ମଧ୍ୟଦେଇ ଅତିକ୍ରମ କଲାବେଳେ ଅନେକ ଶତ୍ରୁ ସୈନ୍ୟ ତହିଁରେ ଚାପି ହୋଇ ନିହତ ହେଉଥିଲେ । ପ୍ରଥମକରି ଏଣିକି ଏକ ବୃତ୍ତି ଭାବରେ ସୈନିକର ଏବଂ ସ୍ଥାୟୀ ସେନାର ଆବଶ୍ୟକତାକୁ ରାଜତନ୍ତ୍ର ବ୍ୟବସ୍ଥା ଅନୁଭବ କଲା । ପରିଶେଷରେ ବସ୍ସକାର ବୃଜ୍ଜି ମହାସଂଘରେ ଗୃହବିବାଦ ସୃଷ୍ଟି କରିବାରେ ସଫଳ ହେଲେ ଏବଂ ଯୁଦ୍ଧରେ ମଗଧ ବିଜୟୀ ହେଲା । ଗାଙ୍ଗେୟ ସମତଳରେ ଏହା ଥିଲା ରାଜତନ୍ତ୍ରର ବିଜୟ । ଯେଉଁ ମହତ୍ତ୍ୱାକାଂକ୍ଷା ବିମ୍ବିସାର ଆରମ୍ଭରୁ ପାଳିଥିଲେ, ତାହା ପରିପୂର୍ଣ୍ଣ ହେଲା ।

ମଗଧର ଉତ୍‌ଥାନ ପଛରେ କେବଳ ବିମ୍ବିସାର ଓ ଅଜାତଶତ୍ରୁଙ୍କର ରାଜନୈତିକ ମହତ୍ତ୍ୱାକାଂକ୍ଷା ନ ଥିଲା, କାରଣ ଅଜାତଶତ୍ରୁଙ୍କ ଉତ୍ତରାଧିକାରୀ ରୂପରେ ଅନେକ ଅକ୍ଷମ ରାଜା ରାଜ୍ୟର ସିଂହାସନ ଆରୋହରଣ କରିବା ସତ୍ତ୍ୱେ, ମଗଧ ତା'ର ବର୍ଚ୍ଚସ୍ୱ ବା କର୍ତ୍ତୃତ୍ୱ ବଜାୟ ରଖିପାରିଥିଲା । ଗଙ୍ଗାନଦୀ ଧାରାର ପ୍ରମୁଖ ବିନ୍ଦୁଗୁଡ଼ିକରେ ମଗଧର ନିୟନ୍ତ୍ରଣ ରହିଥିଲା, ଯାହାଫଳରେ ନଦୀ ବାଣିଜ୍ୟ ଉପରେ ରାଜ୍ୟର ଦଖଲ ରହିଲା । ନଦୀ ବାଣିଜ୍ୟରୁ ମିଳୁଥିବା ରାଜସ୍ୱର ପରିମାଣ ଅଧିକ ଥିଲା ବୋଲି ପାଟଳିଗ୍ରାମର ବିପଣନ କେନ୍ଦ୍ରକୁ ଦୁର୍ଗ ପରିବେଷ୍ଟିତ କରାଗଲା । ଅଙ୍ଗକୁ ଦଖଲ କଲାପରେ ସୁଦୂରବର୍ତ୍ତୀ ଅଞ୍ଚଳକୁ ବାଣିଜ୍ୟକୁ ନିଆଯାଇ ପାରିଲା । ଏହାବ୍ୟତୀତ ମଗଧରେ ପ୍ରାକୃତିକ ସମ୍ପଦ ଭରପୂର ହୋଇ ରହିଥିଲା । ସେଠାକାର ଉର୍ବର ଜମି ଧାନଚାଷ ପାଇଁ ଉପଯୁକ୍ତ ଥିଲା । କୃଷିର ସଂପ୍ରସାରଣ ହେବାଫଳରେ ଆଉ ଅନେକ ପ୍ରକାର ରାଜସ୍ୱ ପ୍ରାପ୍ତ ହେଲା । ମଗଧ ଆଖପାଖରେ ଥିବା ଘନଜଙ୍ଗଲରୁ ନିର୍ମାଣ ପାଇଁ ଆବଶ୍ୟକ କାଠ ଓ ସେନା ପାଇଁ ହାତୀ ସହଜଲଭ୍ୟ ଥିଲେ । ପୁଣି ହାତୀଦାନ୍ତରୁ ମୂଲ୍ୟବାନ ସାମଗ୍ରୀର ତିଆରି ହୋଇପାରୁଥିଲା । ଏସବୁକୁ ବାଦ୍‌ଦେଲେ ସ୍ଥାନୀୟ ସ୍ତରରେ ଲୁହା ଓ ତମ୍ବା ମିଳୁଥିଲା, ଯାହା ରାଜ୍ୟର ସମୃଦ୍ଧି ଓ ଗତିବିଧିକୁ ଅଭିବୃଦ୍ଧି ଲାଭ କରିବାରେ ସହାୟକ ହେଲା ।

ଖ୍ରୀ.ପୂ. 461 ରେ ଅଜାତଶତ୍ରୁଙ୍କର ମୃତ୍ୟୁ ହେଲା । ତାଙ୍କ ପରେ ପରେ ଯେଉଁ ପାଞ୍ଚଜଣ ରାଜା କ୍ରମାନ୍ୱୟରେ ସିଂହାସନ ଆରୋହଣ କଲେ, ସମସ୍ତେ ଥିଲେ ପିତୃହନ୍ତା । ଏକଥା କିମ୍ବଦନ୍ତୀ କହେ । ଶେଷରେ ମଗଧର ପ୍ରଜା ଏଥିରେ ଅତିଷ୍ଠ ହୋଇ ଶେଷ ରାଜାଙ୍କୁ ଗାଦିଚ୍ୟୁତ କଲେ ଏବଂ ଶିଶୁନାଗ ନାମକ ଜଣେ ଉଚ୍ଚାଧିକାରୀଙ୍କୁ ରାଜପଦରେ ଅଧିଷ୍ଠିତ କଲେ । ଶିଶୁନାଗଙ୍କ ରାଜବଂଶ କେବଳ ମାତ୍ର ଅର୍ଦ୍ଧଶତାବ୍ଦୀ ଧରି ମଗଧର ଶାସନ କଲେ ।

ଶିଶୁନାଗ ବଂଶଙ୍କୁ ପଦଚ୍ୟୁତ କରି ସିଂହାସନ ଆରୋହଣ କଲେ ମହାପଦ୍ମନନ୍ଦ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ରାଜବଂଶ ସ୍ୱଳ୍ପାୟୁ ହେଲେ ବି ଖୁବ୍ ମହତ୍ତ୍ୱପୂର୍ଣ୍ଣ ଥିଲା । ନନ୍ଦମାନେ ଥିଲେ ତଳ ସାମାଜିକ ସ୍ତରର । ସେମାନଙ୍କୁ ଶୂଦ୍ର ବୋଲି କୁହାଯାଉଥିଲା । ଅଣ-କ୍ଷତ୍ରିୟ ରାଜାଙ୍କ ମଧ୍ୟରେ ସେମାନେ ବୋଧହୁଏ ଆଦ୍ୟତମ ହେବେ । ସେମାନଙ୍କ ସମୟରୁ ଉତ୍ତର ଭାରତର ଅଧିକାଂଶ ନେତୃସ୍ଥାନୀୟ ରାଜବଂଶ ଥିଲେ ଅଣ-କ୍ଷତ୍ରିୟ ଜାତିର । ଏହାର ପ୍ରାୟ ହଜାରେ ବର୍ଷ ପରେ ପ୍ରତ୍ୟେକ ରାଜକୁଳ ସେମାନେ ଜନ୍ମରୁ କ୍ଷତ୍ରିୟ ନ ହୁଅନ୍ତୁ ପଛେ, ରାଜାଧିକାର ଲାଭ କଲାପରେ ନିଜକୁ କ୍ଷତ୍ରିୟ ବୋଲି ଦାବି କରିବାକୁ ଲାଗିଲେ । ନନ୍ଦମାନଙ୍କୁ କ୍ଷତ୍ରିୟ ବିନାଶକାରୀ କୁହାଯାଏ । ସମ୍ଭବତଃ ଏହାର ତାତ୍ପର୍ଯ୍ୟ ହେଲା ଯେ, ନନ୍ଦମାନେ ମଧ୍ୟ ଗାଙ୍ଗେୟ ସମତଳରେ ପ୍ରତିଷ୍ଠିତ ହୋଇ ରହିଥିବା ଗଣସଂଘଗୁଡ଼ିକୁ ଜିଣି ନିଜ ରାଜ୍ୟରେ ସାମିଲ କରି ନେଇଥିଲେ ।

ନନ୍ଦମାନଙ୍କୁ କେବେ କେବେ ସାମ୍ରାଜ୍ୟ ସ୍ଥାପନ ପାଇଁ ମହତ୍ତ୍ୱାକାଂକ୍ଷା ରଖିଥିବା ପ୍ରଥମ ରାଜବଂଶ ଭାବରେ ଅଭିହିତ କରାଯାଏ । ପୁରାଣରେ ମଧ୍ୟ ଏହାର ସଂକେତ ମିଳେ । ସେମାନଙ୍କ ଅଧିକାରରେ ମଗଧ ପରି ଏକ ବିଶାଳ ରାଜ୍ୟ ପ୍ରାପ୍ତ ହୋଇଥିଲା ଏବଂ ତାକୁ ସେମାନେ ଆହୁରି ବିସ୍ତାରିତ କରିବାକୁ ପ୍ରୟାସ କରିଥିଲେ । ଏହି ଉଦ୍ଦେଶ୍ୟ ପୂରଣ ନିମିତ୍ତ ସେମାନେ ଏକ ବିଶାଳ ସେନାବାହିନୀ ଗଠନ କରିଥିଲେ । ନନ୍ଦସେନା ସମ୍ବନ୍ଧରେ ଗ୍ରୀକ୍‌ମାନଙ୍କ ବର୍ଣ୍ଣନରେ ନିଶ୍ଚିତରୂପେ ଖୁବ୍ ଅତିରଞ୍ଜନ ରହିଛି । ତହିଁରେ ଦର୍ଶାଯାଇଥିବା କମ୍ ଆନୁମାନିକ ସଂଖ୍ୟା ଅନୁସାରେ – ସେନାରେ ଦୁଇଲକ୍ଷ ପଦାତିକ ସୈନ୍ୟ, 20,000 ଅଶ୍ୱାରୋହୀ, ଦୁଇହଜାର ରଥ ଏବଂ ତିନିହଜାର ହସ୍ତୀ ରହିଥିଲେ । ଗ୍ରୀକ୍ ବର୍ଣ୍ଣନରେ ଅତିରଞ୍ଜନ ରହିବା ପଛରେ ଉଦ୍ଦେଶ୍ୟ ହେଲା ଯେ, ଆଲେକ୍‌ଜାଣ୍ଡରଙ୍କ ଗ୍ରୀକ୍ ସେନା ବିଶାଳ ମଗଧ ସେନାକୁ ଦେଖି ଆଗକୁ ଅଗ୍ରସର ହେବାକୁ ମନାକଲେ ବୋଲି ସିଦ୍ଧ କରିବା । ମାତ୍ର ଗ୍ରୀକ୍‌ମାନଙ୍କ ବିରୁଦ୍ଧରେ ନନ୍ଦରାଜାଙ୍କୁ ସେନାର ଉପଯୋଗ କରିବାକୁ ସୁଯୋଗ ମିଳି ନ ଥିଲା । କାରଣ ଦକ୍ଷିଣ ପଞ୍ଜାବରୁ ଆଲେକ୍‌ଜାଣ୍ଡାର ସିନ୍ଧୁନଦୀର ଧାରେ ଧାରେ ପ୍ରତ୍ୟାବର୍ତ୍ତନ କଲେ ।

ମଗଧ ରାଜତନ୍ତ୍ରର କର୍ତ୍ତୃତ୍ୱ ବୃଦ୍ଧି ପଛରେ ଅନ୍ୟ ଏକ କାରଣ ହେଲା ରାଜସ୍ୱ । ମଗଧ କର ଅସୁଲିକୁ ଯଥେଷ୍ଟ ମହତ୍ତ୍ୱ ଦେଉଥିଲା । ଅଧିକାରୀବର୍ଗ ନିୟମିତ ରୂପରେ ବ୍ୟବସ୍ଥିତ ଢଙ୍ଗରେ କର ଅସୁଲି କରୁଥିଲେ । ପ୍ରଶାସନିକ ବ୍ୟବସ୍ଥାର ଏକ ଅଭିନ୍ନ ଅଙ୍ଗ ଥିଲା କର ଅସୁଲି । ନନ୍ଦ ରାଜାମାନଙ୍କର ଅଗାଧ ସମ୍ପତ୍ତିରୁ ମନେହୁଏ ରାଜକୋଷଟକୁ ସର୍ବଦା ଭରପୂର ରଖାଯାଉଥିଲା । ସୁଦୂର କଳିଙ୍ଗରେ (ଓଡ଼ିଶା) ମଧ୍ୟ ନନ୍ଦମାନେ କେନାଲ ଖୋଦନ କରି ଜଳସେଚନ ପାଇଁ ସୁବ୍ୟବସ୍ଥା କରିଥିଲେ । କୃଷି ଅର୍ଥବ୍ୟବସ୍ଥା ଆଧାରରେ ଏକ ସାମ୍ରାଜ୍ୟ ସଂରଚନାର ସମ୍ଭାବନା ନନ୍ଦ ରାଜତ୍ୱ ସମୟରେ ଭାରତୀୟ ମନରେ ଜନ୍ମ

ନେଲା । ନନ୍ଦ ସାମ୍ରାଜ୍ୟର ବିସ୍ତାରକୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ମଝିରୁ ଅବରୁଦ୍ଧ କଲେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଥିଲେ ଜଣେ ଦୁଃସାହସୀ ନବଯୁବକ, ଯିଏ ଖ୍ରୀ.ପୂ. 321 ରେ ନନ୍ଦମାନଙ୍କୁ ଗାଦିଚ୍ୟୁତ କରି ସିଂହାସନ ଆରୋହଣ କଲେ । ସାମ୍ରାଜ୍ୟର ଯେଉଁ ପରିକଳ୍ପନା ନନ୍ଦମାନଙ୍କ ସମୟରେ ମଗଧ ମନରେ ଜନ୍ମ ନେଇଥିଲା, ତାହା ମୌର୍ଯ୍ୟମାନଙ୍କ ନେତୃତ୍ୱରେ ସାକାର ହେଲା ।

## ଉତ୍ତର-ପଶ୍ଚିମ ଭାରତ ଏବଂ ଆଲେକ୍‌ଜାଣ୍ଡାର

ଏହି ସମୟରେ ଇତିହାସର ଦୃଶ୍ୟପଟ ଉତ୍ତର-ପଶ୍ଚିମ ଭାରତକୁ ପରିବର୍ତ୍ତିତ ହେଲା । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଉତ୍ତର-ପଶ୍ଚିମ ଭାରତ ଆକେମେନିଡ଼ ସାମ୍ରାଜ୍ୟ (Achaemenid Empire)ର ଅଂଶ ହୋଇ ରହିଥିଲା । ଖ୍ରୀ.ପୂ. 530ର କିଛି କାଳ ପୂର୍ବରୁ ପାରସ୍ୟର ଆକେମେନିଡ଼ ସମ୍ରାଟ ସାଇରସ ହିନ୍ଦୁକୁଶ ପର୍ବତମାଳା ଅତିକ୍ରମ କରି ଆସିଥିଲେ । ତାଙ୍କୁ କମ୍ବୋଜ ଓ ଗାନ୍ଧାରର ଲୋକ ଭେଟି, ଉପହାର ଆଦି ପ୍ରଦାନ କରିଥିଲେ । ଏହି ସୂତ୍ରରେ କମ୍ବୋଜ ଓ ଗାନ୍ଧାର ଆକେମେନିଡ଼ ସାମ୍ରାଜ୍ୟର ଅଧୀନତା ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଆକେମେନିଡ଼ ଅଭିଲେଖରେ ଗାନ୍ଧାର ଓ ହିନ୍ଦୁସ (ସିନ୍ଧୁ)କୁ ସାମ୍ରାଜ୍ୟର ସତ୍ରାପି ବା ରାଜ୍ୟ ବୋଲି ଉଲ୍ଲେଖ କରାଯାଇଛି । ଇତିହାସ ଦୃଷ୍ଟିରୁ ଦେଖିଲେ, ଏହା ଥିଲା ଏମିତି ଏକ କ୍ଷେତ୍ର, ଯାହା ଭିନ୍ନ ଭିନ୍ନ ରାଜ୍ୟର ଅଂଶ ହେଉଥିଲା । କେବେ ଏହା ଉତ୍ତର-ଭାରତର ତ କେବେ ଆଫଗାନିସ୍ତାନର ତ ଆଉ କେବେ ଇରାନର ଆଧିପତ୍ୟ କ୍ଷେତ୍ର ଅନ୍ତର୍ଗତ ହୋଇ ରହୁଥିଲା ।

ଇତିହାସର ଜନକ ହେରୋଡଟସ୍‌ଙ୍କ ଉଲ୍ଲେଖ ଅନୁଯାୟୀ, ଗାନ୍ଧାର ଥିଲା ଆକେମେନିଡ଼ ସାମ୍ରାଜ୍ୟର ବିଂଶତମ ସତ୍ରାପି । ଏହା ସଂବୃଦ୍ଧ ଥିଲା ଏବଂ ସବୁଠାରୁ ଅଧିକ ଜନବହୁଳ ମଧ୍ୟ ଥିଲା । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଗ୍ରୀକ୍‌ମାନଙ୍କ ବିରୁଦ୍ଧରେ ଲଢୁଥିବା ପାରସ୍ୟ ସେନାକୁ ଭାରତୀୟ ରାଜ୍ୟମାନେ ଭଡ଼ାଟିଆ ସୈନ୍ୟ ଯୋଗାଣ କରୁଥିଲେ । ହେରୋଡଟସ୍‌ଙ୍କ ବର୍ଣ୍ଣନା ଅନୁସାରେ, ଏହି ଭାରତୀୟ ସୈନ୍ୟମାନେ ସୂତାବସ୍ତ୍ର ପରିଧାନ କରୁଥିଲେ; ବକ୍‌କଳ ରଞ୍ଜୁର ଧନୁ, ଭାଲ ଏବଂ ଲୁହା ପାତି ଲାଗିଥିବା ବେତ ଧରି ଯୁଦ୍ଧ କରୁଥିଲେ । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀର ଆଦ୍ୟଭାଗରେ ଆକେମେନିଡ଼ ଦରବାରରେ ରହିଥିବା ଜଣେ ଗ୍ରୀକ୍ ଚିକିତ୍ସକ କେସିୟସ୍ ମଧ୍ୟ ତତ୍‌କାଳୀନ ଉତ୍ତର-ପଶ୍ଚିମ ଭାରତ ସମ୍ବନ୍ଧରେ ନିଜ ରଚନାରେ ଅନେକ କଥା ଉଲ୍ଲେଖ କରିଛନ୍ତି । ତହିଁରୁ ଅନେକ ବିଷୟ କଳ୍ପନା-ପ୍ରସୂତ । ଉଦାହରଣ ସ୍ୱରୂପ, ବାଘର ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି :

*"ତାର [ବାଘର] ପ୍ରତ୍ୟେକ ମାଢ଼ିରେ ତିନି ଧାଡ଼ି ଲେଖା ଦାନ୍ତ ଥାଏ । ଲାଞ୍ଜର ଅଗରେ ଦଂଶନ ଶକ୍ତି ରହିଥାଏ, ଯାହା ମାଧ୍ୟମରେ ସେ ବାହୁଯୁଦ୍ଧରେ ନିଜକୁ ସୁରକ୍ଷିତ ରଖେ । ଦୂରରେ ସ୍ଥିତ ଶତ୍ରୁ ଉପରକୁ ସେ ଧନୁର୍ଦ୍ଧାରୀ ଶର ନିକ୍ଷେପ କଲାଭଳି ଲାଞ୍ଜରୁ ବିଷ ପ୍ରକ୍ଷେପ କରେ ।"*

(Quoted in Pausanius, IX. 21 : J.W. McCrindle, *Ancient India as Described in Classical Literature*, P.210)

ଗାନ୍ଧାର ଏବଂ ଉତ୍ତର-ପଶ୍ଚିମ ପ୍ରାନ୍ତର ପ୍ରସିଦ୍ଧ ନଗରୀଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା ତକ୍ଷଶୀଳା, ଯାହାକୁ ଗ୍ରୀକ୍‌ମାନେ 'ତକ୍ସିଲା' (Taxila) ବୋଲି କହୁଥିଲେ । ଖୁବ୍‌ଶୀଘ୍ର ଏହା ଏକ ମହାନଗରୀରେ ପରିଣତ ହୋଇଥିଲା । ଏଠାରେ ଉଭୟ ଭାରତୀୟ ଓ ପାରସ୍ୟର ବିଦ୍ୟାର ସମାୟୋଜନ ଦେଖିବାକୁ ମିଳୁଥିଲା । ପରେ ହେଲନବାଦୀ (Hellenstic) ଗ୍ରୀକ୍ ବିଦ୍ୟା ମଧ୍ୟ ତହିଁରେ ସଂଯୋଜିତ ହେଲା । ରକ୍ଷଣଶୀଳ ବ୍ରାହ୍ମଣମାନେ ଏହି କ୍ଷେତ୍ରକୁ ଅପବିତ୍ର ଭୂମି ବୋଲି କହୁଥିଲେ, କାରଣ ଏଠାରେ ବୈଦିକ କର୍ମକାଣ୍ଡ ଆଉ ନିୟମିତ ଢଙ୍ଗରେ ଆୟୋଜନ କରାଯାଉ ନ ଥିଲା । ବ୍ରାହ୍ମଣମାନେ ଭୁଲିଗଲେ ଯେ ଏକଦା ଇରାନର ଏବଂ ବେଦରେ ଚିହ୍ନିତ ବିଚାର ଓ କର୍ମକାଣ୍ଡ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଥିଲା । ତା' ସତ୍ତ୍ୱେ, ଇରାନ ଓ ଭାରତର ମିଶ୍ରିତ ପ୍ରଭାବକୁ ଭାରତୀୟ ଜୀବନର ବିଭିନ୍ନ କ୍ଷେତ୍ରରେ ଦେଖାଯାଇ ପାରିବ । ପାରସ୍ୟର ସିଗଲୋଇ ମୁଦ୍ରାର ଅନୁକରଣରେ ଭାରତରେ ମୁଦ୍ରା ପ୍ରଚଳିତ ହେଲା; ସମ୍ଭବତଃ ପାରସ୍ୟର ରାଜା ଡାରିଅସଙ୍କ ପ୍ରସ୍ତର ଅଭିଲେଖରୁ ପ୍ରେରଣା ନେଇ ଭାରତରେ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକ ଅନେକ ପ୍ରସ୍ତର ଅଭିଲେଖ ରଚନା କରାଇଲେ, ଯାହା ଖୁବ୍ ଉପଯୋଗୀ ସିଦ୍ଧ ହେଲା; ଉତ୍ତର-ପଶ୍ଚିମ ଭାରତରେ ବହୁଳଭାବେ ବ୍ୟବହୃତ ହୋଇଥିବା ଖରୋଷ୍ଟୀ ଲିପି ଆସିଥିଲା ଆକେମେନିଡ଼ ସାମ୍ରାଜ୍ୟରେ ପ୍ରଚଳିତ ଆର୍ମାଇକ ଲିପିରୁ । ଆକେମେନିଡ଼ ଅଧିକାର ଯୋଗୁଁ ମଧ୍ୟ-ଏସିଆର କେତେକ ପଶ୍ଚିମ କ୍ଷେତ୍ର ଓ ଗାନ୍ଧାର ଗୋଟାଏ ଆଧିପତ୍ୟର ଅଧୀନ ହେଲା । ଆଗରୁ ତାହା ଦୁଇଟି ପୃଥକ୍ କ୍ଷେତ୍ର ରୂପେ ରହିଥିଲା । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ମଧ୍ୟ ଉଭୟ କ୍ଷେତ୍ରକୁ ଗୋଟାଏ ପ୍ରଦେଶ ରୂପେ ବିଭିନ୍ନ ରାଜା ଗ୍ରହଣ କରିନେଲେ । ଉତ୍ତର-ପଶ୍ଚିମ ଭାରତରେ ଆକେମେନିଡ଼ ରାଜତ୍ୱ ଲୋପ ପାଇଲା ଖ୍ରୀ.ପୂ. 330 ରେ ଯେତେବେଳେ ମାସିଡୋନିଆର ରାଜା ଆଲେକ୍‌ଜାଣ୍ଡାର ତାକୁ ଯୁଦ୍ଧରେ ଜିଣିନେଲେ । ଆକେମେନିଡ଼ ରାଜ୍ୟ ବିଜିତ ହେଲା ଉତ୍ତାରୁ ଭାରତର ଉତ୍ତର-ପଶ୍ଚିମ କ୍ଷେତ୍ର ମଧ୍ୟ ଆଲେକ୍‌ଜାଣ୍ଡାରଙ୍କ ସେନା ହାତରେ ଆକ୍ରମଣର ଶିକାର ହେଲା ।

ଖ୍ରୀ.ପୂ. 327 ଶତାବ୍ଦୀରେ ଆଲେକ୍ଜାଣ୍ଡାର ଖୁବ୍‌ଶୀଘ୍ର ଡାରିଅସଙ୍କ ସାମ୍ରାଜ୍ୟ ଅତିକ୍ରମ କରି ଭାରତ କ୍ଷେତ୍ରରେ ପ୍ରବେଶ କଲେ । ଭାରତର ଉତ୍ତର-ପଶ୍ଚିମ କ୍ଷେତ୍ରରେ ଗ୍ରୀକ୍‌ସେନା ଅଭିଯାନ ପ୍ରାୟ ଦୁଇବର୍ଷ ଧରି ଚାଲିଲା । ଇତିହାସ ବା ରାଜନୀତି ଦୃଷ୍ଟିକୋଣରୁ ଦେଖିଲେ ଭାରତ ଉପରେ ଏହାର ଖୁବ୍ କମ୍ ପ୍ରଭାବ ପଡ଼ିଥିଲା । ଆଦ୍ୟ ଭାରତୀୟ ରଚନାମାନଙ୍କରେ ଆଲେକ୍ଜାଣ୍ଡାରଙ୍କ ନାମ ସୁଦ୍ଧା ଉଲ୍ଲେଖ ନାହିଁ । ଅସଲରେ ଡାରିଅସଙ୍କ ସାମ୍ରାଜ୍ୟର ପୂର୍ବ ସୀମାନ୍ତରେ ପହଞ୍ଚିବା ଉଦ୍ଦେଶ୍ୟରେ ଆଲେକ୍ଜାଣ୍ଡାର ଭାରତ ଯାଏଁ ଆସିଥିଲେ । ତାଙ୍କର ଅନ୍ୟ ଏକ ଇଚ୍ଛା ଥିଲା – ସେ 'ସମୁଦ୍ର ସମସ୍ୟା'କୁ ସମାଧାନ କରିବେ । ସମୁଦ୍ରର ସୀମାକୁ ନେଇ ଗ୍ରୀକ୍ ମାନଚିତ୍ରକାରୀମାନେ ଖୁବ୍ ସମସ୍ୟାରେ ଧନ୍ଦି ହେଉଥିଲେ । ଏସବୁ ବ୍ୟତୀତ, ସ୍ୱାଭାବିକ ଭାବରେ ଆଲେକ୍ଜାଣ୍ଡାର ଭାରତ ଭଳି ଏକ ଧନୀ ଦେଶକୁ ଜିଣିବାକୁ ଚାହୁଁଥିଲେ । ସେତେବେଳେ ଭାରତକୁ ଏକ ଧନୀ ଦେଶ ବୋଲି ସର୍ବତ୍ର କୁହାଯାଉଥିଲା । ବିଜୟ ଅଭିଯାନରେ ଆସି ସେ ପଞ୍ଜାବର ପଞ୍ଚନଦୀକୁ ଅତିକ୍ରମ କଲେ । ଶେଷ ନଦୀର ମୁହାଣରେ ପହଞ୍ଚିଲା ଉତ୍ତାରୁ ଗ୍ରୀକ୍ ସେନା ଆଗକୁ ଅଗ୍ରସର ହେବାକୁ ଅମଙ୍ଗ ହେଲେ । ଏହା ପଛରେ ଗୋଟାଏ କାରଣ ହୋଇଥିବ ନନ୍ଦ ସାମ୍ରାଜ୍ୟର ବିଶାଳ ସେନା ସମ୍ବନ୍ଧିତ ସୂଚନା । ତେଣିକି ଆଲେକ୍ଜାଣ୍ଡାର ସିନ୍ଧୁନଦୀର ଧାରେ ଧାରେ ଫେରି ବେବିଲୋନ ଚାଲିଗଲେ । କିଛି ସୈନିକ ସମୁଦ୍ରରେ ପାରସ୍ୟ ସାଗର ଦେଇ ଗଲେ ଏବଂ ବାକୀମାନେ ସମୁଦ୍ରତଟରେ ସ୍ଥଳମାର୍ଗରେ ଫେରିଗଲେ । ସମୁଦ୍ର ଅପେକ୍ଷା ତଟୀୟ ସ୍ଥଳମାର୍ଗ ଖୁବ୍ ବିନାଶକାରୀ ସିଦ୍ଧ ହେଲା, କାରଣ ଏହି ପଥ ଅତ୍ୟନ୍ତ ଦୁର୍ଗମ ଥିଲା ।

ଭାରତ ଅଭିଯାନରେ ଆଲେକ୍ଜାଣ୍ଡାରଙ୍କୁ କେତୋଟି କଠିନ ଯୁଦ୍ଧ କରିବାକୁ ପଡ଼ିଥିଲା । ତନ୍ମଧ୍ୟରୁ ଅନ୍ୟତମ ଥିଲା ଝେଲମ କ୍ଷେତ୍ରର ରାଜା ପୁରୁଙ୍କ ବିରୁଦ୍ଧରେ ସଂଘଟିତ ହୋଇଥିବା ହାଇଦସପାସ ଯୁଦ୍ଧ । ଉଭୟ ରାଜତନ୍ତ୍ର ଏବଂ ଗଣସଂଘଗୁଡ଼ିକୁ, ଯାହାକୁ ଗ୍ରୀକ୍‌ମାନେ 'ସ୍ୱୟଂଶାସିତ ନଗରୀ' ବୋଲି କହୁଥିଲେ, କର୍ତ୍ତୃତ୍ୱାଧୀନ କରିବାକୁ ଗ୍ରୀକ୍‌ସେନା ଖୁବ୍ ଯୁଦ୍ଧ କଲେ । ମଳୟର ଲୋକ ଯୁଦ୍ଧରେ ଆଲେକ୍ଜାଣ୍ଡାରଙ୍କୁ ଆହତ କରି ଛାଡ଼ିଥିଲେ, ଯାହାର ଗ୍ରୀକ୍‌ସେନା ତୀବ୍ର ପ୍ରତିଶୋଧ ନେଲେ । ଗ୍ରୀକ୍‌ସେନା ସିନ୍ଧୁନଦୀର ଧାରେ ଧାରେ ଏବଂ ମକରାନ ତଟରେ ପ୍ରତ୍ୟାବର୍ତ୍ତନ କଲାବେଳେ ଖୁବ୍ ଅସୁବିଧାର ସମ୍ମୁଖୀନ ହେଲେ । ଆଲେକ୍ଜାଣ୍ଡାର ବିଜିତ ଭାରତ କ୍ଷେତ୍ରକୁ ତାଙ୍କ ସେନାଧକ୍ଷମାନଙ୍କ କର୍ତ୍ତୃତ୍ୱରେ ଛାଡ଼ିଦେଇ ଯାଇଥିଲେ । ମାତ୍ର ଭାରତରୁ ପ୍ରତ୍ୟାବର୍ତ୍ତନ କରିବାର ଅଳ୍ପଦିନ ପରେ ଗ୍ରୀକ୍ ବୀରଙ୍କର ମୃତ୍ୟୁ ହେଲା ଏବଂ ତାଙ୍କ ସାମ୍ରାଜ୍ୟରେ ଅରାଜକତା ସୃଷ୍ଟି ହେଲା । ଫଳରେ ଭାରତର ବିଜିତ କ୍ଷେତ୍ରର ଶାସନଭାର ପାଇଥିବା ଗ୍ରୀକ୍ ସେନାଧକ୍ଷମାନେ ଖୁବ୍‌ଶୀଘ୍ର ଭାରତ ଛାଡ଼ି ଚାଲିଗଲେ ଏବଂ ପଶ୍ଚିମ ଏସିଆରେ ଯାଇ ନିଜ ନିଜର ଭାଗ୍ୟ ପରୀକ୍ଷା କଲେ ।

ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନର ଏକ ମହତ୍ତ୍ୱପୂର୍ଣ୍ଣ ଫଳ ଦେଖିବାକୁ ମିଳିଥିଲା । ଏହା ନା ରାଜନୈତିକ ଫଳ ଥିଲା, ନା ସାମରିକ ଫଳ । ଅଭିଯାନ ସମୟରେ ଆଲେକ୍‌ଜାଣ୍ଡାରଙ୍କ ସହିତ ଶିକ୍ଷିତ ଗ୍ରୀକ୍‌ମାନେ ରହୁଥିଲେ । ସେମାନେ ଭାରତ ସମ୍ବନ୍ଧରେ ନିଜ ନିଜର ବିବରଣୀ ଲେଖିଦେଇ ଗଲେ । ଏହିଭଳି ଦୁଇଟି ବିବରଣୀକାର ଥିଲେ ଏଡ୍‌ମିରାଲ ନିୟରକସ ଏବଂ ଓଡ଼ିସାଇ କ୍ରିଟ୍‌ସ । ସେମାନଙ୍କ ବିବରଣୀରୁ ସେତେବେଳର ଉତ୍ତର ଭାରତକୁ ଗ୍ରୀକ୍‌ମାନେ କେଉଁ ଦୃଷ୍ଟିରେ ଦେଖୁଥିଲେ, ତାହା ଜଣାପଡ଼େ । ଅନ୍ୟ ଗ୍ରୀକ୍ ରଚନାରେ ରହିଥିବା ଭାରତ ଚିତ୍ରକୁ ସୁଧାରିବାକୁ ଏହି ବିବରଣୀରୁ ସହାୟତା ମିଳେ । ଅବଶ୍ୟ ଉଲ୍ଲିଖିତ ଏହି ବିବରଣୀଗୁଡ଼ିକରେ ମଧ୍ୟ ଅନେକ କଳ୍ପନାପ୍ରସୂତ କଥା ରହିଛି । ସେ ଯାହାହେଉ, ଗ୍ରୀକ୍ ବିବରଣୀରୁ ଜଣାପଡ଼େ ଯେ, ଉତ୍ତର-ପଶ୍ଚିମ ପ୍ରାନ୍ତ ଓ ଗାଙ୍ଗେୟ ସମତଳର ରୀତିନୀତି ଓ ଚାଲିଚଳଣି ମଧ୍ୟରେ ଅନେକ ପ୍ରଭେଦ ରହିଥିଲା । ଅର୍ଥାତ୍ ସେତେବେଳେ ମଧ୍ୟ ଆଞ୍ଚଳିକ ସଂସ୍କୃତିମାନ ବିବିଧତାପୂର୍ଣ୍ଣ ଥିଲା ଏବଂ ସବୁ ସଂସ୍କୃତିର ମୂଳାଧାର ଗୋଟାଏ ବା ସମରୂପୀ ନ ଥିଲା । ତା'ଛଡ଼ା ଆଲେକ୍‌ଜାଣ୍ଡାରଙ୍କ ଅଭିଯାନର ଆଉ ଏକ ଫଳ ହେଲା ଯେ, ଅନିଚ୍ଛାସତ୍ତ୍ୱେ ହେଉ ପଛେ, ଏହା ଯୋଗାଯୋଗର ମାର୍ଗ ଖୋଲିଦେଲା ଏବଂ ବିପଣନ ପାଇଁ ବିନ୍ଦୁମାନ ସୃଷ୍ଟି କଲା । ଆଲେକ୍‌ଜାଣ୍ଡାରଙ୍କ ପରେ ହେଲନବାଦୀ ରାଜ୍ୟଗୁଡ଼ିକର ଭାରତ ସହିତ ନିକଟତା ମୌର୍ଯ୍ୟ ରାଜ୍ୟବ୍ୟବସ୍ଥା ଏବଂ ବାଣିଜ୍ୟ ପାଇଁ ଅହେତୁକ ହେଲା ନାହିଁ । ଏଗୁଡ଼ିକ ମଧ୍ୟରୁ କେତେକ ହେଲନବାଦୀ ରାଜ୍ୟର ପ୍ରତିଷ୍ଠାତା ଥିଲେ ଆଲୋକ୍‌ଜାଣ୍ଡାରଙ୍କ ସେନାଧ୍ୟକ୍ଷମାନେ । ଗ୍ରୀକ୍ ବିବରଣୀରେ 'ସ୍ୱୟଂଶାସିତ ନଗରୀ'ର ବାରମ୍ବାର ଉଲ୍ଲେଖରୁ ମନେହୁଏ ଯେ ସେତେବେଳେ ସିନ୍ଧୁ ସମତଳ କ୍ଷେତ୍ରରେ ପ୍ରଭୁତ କିସମର ଗଣସଂଘ ରହିଥିଲା । ମଗଧରେ ସାମ୍ରାଜ୍ୟର ଉତ୍‌ଥାନ ପରେ ସୁଦ୍ଧା ଗଣସଂଘୀୟ ବ୍ୟବସ୍ଥା ସିନ୍ଧୁ କ୍ଷେତ୍ରରେ ବିରାଜମାନ ଥିଲା । ଏହାର ବିପରୀତ, ପୂର୍ବ ଭାରତର ଗଣସଂଘମାନ ମଗଧ ଶକ୍ତିର ଉତ୍‌ଥାନ ପରେ ଅଧୋପତନର ଶିକାର ହୋଇଥିଲେ ।

ଗ୍ରୀକ୍ ବିବରଣରେ ଉଭୟ ତଥ୍ୟ ଓ କଳ୍ପନାର ମିଶ୍ରଣ ଦେଖିବାକୁ ମିଳିଥାଏ । ସେମାନେ ଯେଉଁଭଳି ଭାବେ ଭାରତୀୟମାନଙ୍କର ବର୍ଣ୍ଣନା କରନ୍ତି, ତାହା ସେମାନଙ୍କର ବିଶ୍ୱଦୃଷ୍ଟିକୁ ଦର୍ଶାଏ । ପରବର୍ତ୍ତୀ ସମୟରେ ସେମାନଙ୍କର ଭାରତ ସହିତ ପରିଚିତି ବଢ଼ିଲା । ଫଳରେ ଆଗରୁ ପ୍ରଚଳିତ ଥିବା ଅନେକ ଅବିଶ୍ୱାସଯୋଗ୍ୟ କାହାଣୀକୁ ସଂଶୋଧନ କରାଗଲା । ତା' ସତ୍ତ୍ୱେ କାହାଣୀଗୁଡ଼ିକରେ ରହିଥିବା ବିଦେଶୀପଣ ପୂର୍ଣ୍ଣତଃ ଦୂର ହୋଇପାରିଲା ନାହିଁ । ଗ୍ରୀକ୍‌ମାନଙ୍କର ଭାରତ ଦୃଷ୍ଟିରେ ଥିବା କଳ୍ପନା ଓ ବିସ୍ମୟ ଭାବର ଖେଳ ହୁଏତ କାହାଣୀକୁ ରୋମାଞ୍ଚକର କରେ । ମାତ୍ର ତା' ସହିତ ଏହା ଶହ ଶହ ବର୍ଷ ଧରି ୟୁରୋପୀୟମାନଙ୍କ

ମନରେ ଭାରତର ଏକ ମିଥକୀୟ ଓ ଅସାଧାରଣ ଛବିର ନିର୍ମାଣ ହେବାରେ ସାହାଯ୍ୟ କରେ । ଆଲୋକ୍‌ଜାଣ୍ଡାରଙ୍କ ସେନାପତି ନିଅରକସ ଭାରତୀୟମାନଙ୍କର ବସ୍ତ୍ରର ସଠିକ୍ ବର୍ଣ୍ଣନା କରି ଲେଖିଛନ୍ତି :

*''ଭାରତୀୟମାନେ ପିନ୍ଧୁଥିବା ପୋଷାକ ଗଛରୁ ପ୍ରାପ୍ତ କପାରୁ ତିଆରି ହୁଏ । ମାତ୍ର ଏହି କପା ହୁଏତ ଉଜ୍ଜ୍ୱଳ ଧଳା ରଙ୍ଗର, ଯାହା ଆଉ କେଉଁଠି ମିଳେନା, ଅଥବା ଭାରତୀୟମାନଙ୍କ ଶରୀର ଗାଢ଼ କଳାରଙ୍ଗର ହୋଇଥିବାରୁ ଅଧିକ ଉଜ୍ଜ୍ୱଳ ଦେଖାଯାଏ । ସେମାନେ (ଭାରତୀୟମାନେ) କପାର ଅଧୋବସ୍ତ୍ର ପିନ୍ଧନ୍ତି, ଯାହା ଆଣ୍ଠୁ ତଳକୁ ପାଦର ଗଣ୍ଠିବନ୍ଧ ପର୍ଯ୍ୟନ୍ତ ଆବୃତ୍ତ କରେ ଏବଂ ତା' ସହିତ ଏକ ଉର୍ଦ୍ଧ୍ୱବସ୍ତ୍ର ଧାରଣ କରନ୍ତି, ଯାହା ପିଠିକୁ ଏବଂ ମୁଣ୍ଡର କିଛି ଅଂଶକୁ ଘୋଡ଼େଇ ରଖେ । ଭାରତୀୟମାନେ ହାତୀଦାନ୍ତରେ ନିର୍ମିତ କୁଣ୍ଡଳ କାନରେ ପିନ୍ଧନ୍ତି । ମାତ୍ର ଏମାନେ ହେଲେ ଖୁବ୍ ସମ୍ଭ୍ରାନ୍ତ ବର୍ଗ । ସେମାନେ ଗ୍ରୀଷ୍ମରୁ ରକ୍ଷା ପାଇବା ପାଇଁ ଏକପ୍ରକାରର ଛତା ବ୍ୟବହାର କରନ୍ତି । ସେମାନେ ଧଳା ଚମଡ଼ାରୁ ପ୍ରସ୍ତୁତ ଯୋତା ପିନ୍ଧନ୍ତି । ଏହା ଖୁବ୍ ସଜ୍ଜିତ ହୋଇଥାଏ ଏବଂ ତା'ର ତଳ ଖୁବ୍ ରଙ୍ଗବେରଙ୍ଗର ଏବଂ ମୋଟା ଥାଏ, ଯଦ୍ଦ୍ୱାରା କି ତାକୁ ପିନ୍ଧିଥିବା ବ୍ୟକ୍ତି ଦେଖିବାକୁ ଉଚ୍ଚ ଜଣାପଡ଼ିବ ।''*

(Nearchus, quoted in Arrian's; Indica, 16; J.W. McCrindle, *Ancient India as Described by Megasthenes and Arrian*, p.219)

ମାତ୍ର ଭାରତ ସମ୍ବନ୍ଧରେ କିମ୍ଭୂତକାରୀ କଥା ବି କୁହାଯାଉଥିଲା ଏବଂ ପରବର୍ତ୍ତୀ ବିବରଣମାନଙ୍କରେ ତାକୁ ବାରମ୍ବାର ପୁନରାବୃତ୍ତି କରାଯାଉଥିଲା ।

*''କୁହାଯାଏ, ଲୋକ ଅଛନ୍ତି, ଯେଉଁମାନଙ୍କର ଉଚ୍ଚତା ଦଶ ଫୁଟ ଏବଂ ଚଉଡ଼ା ଛଅ ଫୁଟ, ସେମାନଙ୍କର ନାକ ନ ଥାଏ; ମୁହଁ ଉପରକୁ ଦୁଇଟି ରନ୍ଧ୍ର ମାତ୍ର ରହିଥାଏ, ଯାହା ନିଶ୍ୱାସ ନେବାରେ ସାହାଯ୍ୟ କରେ । କେତେକ ଲୋକଙ୍କୁ ଦରବାରକୁ ଅଣାଯାଇଥିଲା; ସେମାନଙ୍କର ମୁହଁ ନ ଥିଲା । ...ସେମାନେ ଗଙ୍ଗାନଦୀର ଉତ୍ସ ପାଖରେ ରହନ୍ତି; ସେମାନେ ସୁଗନ୍ଧି ସେବନ କରି ଏବଂ ପୋଡ଼ା ମାଂସକୁ ଆଘ୍ରାଣ କରି ଜୀବନ ଧାରଣ କରନ୍ତି । କେତେକଙ୍କର କାନ ଏତେ ବିଶାଳ ଯେ ତାହା ପାଦ ଯାଏଁ ଓହଳୁଥିଲା ଏବଂ ତା' ଉପରେ ସେମାନେ ଶୋଇଯାଉଥିଲେ । ପୁଣି ପିମ୍ପୁଡ଼ି ଏମିତି ଯେ, ତାହା ଗାତରୁ ସୁନା ବାହାର କରିଦିଏ ଏବଂ ଉପରେ ଆଣି ଜମା କରେ, ଯାହାକୁ ଲୋକ ସଂଗ୍ରହ କରନ୍ତି ।''*

(Strabo, Geography, 15.1.57; J.W. McCrindle, *Ancient India as Described by Megasthenes and Arrian*, pp.74-75)

ଭାରତର ସୋଫିଷ୍ଟମାନଙ୍କ (ତର୍କଶାସ୍ତ୍ରୀ) ସହିତ ଆଲେକ୍‌ଜାଣ୍ଡାରଙ୍କ ବାର୍ତ୍ତାଳାପର ଏକ ଚିତ୍ରଣ ଖୁବ୍ ସ୍ଥାୟୀ ହୋଇ ରହିଛି । କଥିତଅଛି, ଜଣେ ସୋଫିଷ୍ଟ ଆଲେକ୍‌ଜାଣ୍ଡାରଙ୍କ ସହ ବେବିଲୋନ ବି ଯାତ୍ରା କରିଥିଲେ । ନିଃସର୍ତ୍ତ ବାର୍ତ୍ତାର ପ୍ରସଙ୍ଗରେ ଅବଶ୍ୟ କାହାଣୀର ରଙ୍ଗ ଲାଗିଥିବ । କୁହାଯାଏ, ଆଲେକ୍‌ଜାଣ୍ଡାରଙ୍କ ପରବର୍ତ୍ତୀ ସମୟରେ ଭାରତୀୟ ବିଚାର ପ୍ରଭାବଶାଳୀ ଢଙ୍ଗରେ ହେଲନବାଦରେ ଏବଂ ଭୂମଧ୍ୟସାଗରୀୟ ଜଗତରେ ସ୍ଥାନ ପାଇଲା । ଏହାର ପ୍ରଭାବରେ ଯେଉଁ ଚିନ୍ତନର ଜନ୍ମ ହେଲା, ତାହା ୟୁରୋପୀୟ ପରମ୍ପରାରେ ପ୍ରତିଷ୍ଠା ଲାଭ କରିଥିବା ବିଚାର ସହିତ ମେଳ ଖାଇଲା ନାହିଁ । ୟୁରୋପର କେତେକ ଅବିଜ୍ଞେୟବାଦୀ (agnostic) ଚିନ୍ତନ ପ୍ରାଚ୍ୟରୁ ଯାଇଥିବା କଥା କୁହାଯାଏ । ସେହି କିସମର ଏକ ଚିନ୍ତନ ହେଲା ନିଓ-ପ୍ଲାଟୋନିଜମ୍, ଯାହା ୟୁରୋପୀୟ ଦର୍ଶନର ଏକ ଅନ୍ତଃଧାରା ରୂପରେ ଶହ ଶହ ବର୍ଷ ଧରି ପାଶ୍ଚାତ୍ୟରେ ସ୍ଥାପିତ ହୋଇ ରହିଥିଲା ।

ଅନ୍ୟପକ୍ଷରୁ ଯଦି ଦେଖାଯାଏ, ଭାରତୀୟମାନେ ବହୁତ କିଛି ଗ୍ରୀକ୍‌ମାନଙ୍କ ସମ୍ବନ୍ଧରେ କହିନାହାନ୍ତି ଏବଂ ଯାହା କହିଛନ୍ତି, ତହିଁରେ ସମରୂପତା ନାହିଁ । ସଂସ୍କୃତରେ ଗ୍ରୀକ୍‌ମାନଙ୍କ ପାଇଁ ଯବନ ଶବ୍ଦର ପ୍ରୟୋଗ କରାଯାଇଛି । ଏହା ପ୍ରାକୃତର 'ୟୋନ' ଶବ୍ଦରୁ ଉଦ୍ଭବ । ମନେହୁଏ, 'ୟୋନ' ଶବ୍ଦ 'ୟୌନ'ରୁ ଆସିଛି, ଯାହା ଆକେମେନିଡ୍ ଅଭିଲେଖରେ ଉଲ୍ଲିଖିତ 'ଅୟୋନିୟା' ଶବ୍ଦର ଏକ ଅନ୍ୟ ରୂପ ଅଟେ । ଏହା ପରେ 'ଯବନ' ଶବ୍ଦ ପାଶ୍ଚାତ୍ୟରୁ ଆସୁଥିବା ଲୋକଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ହେଲା । ଏହାର ପ୍ରୟୋଗ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିଲା । ପରବର୍ତ୍ତୀ ସମୟର ବ୍ରାହ୍ମଣୀୟ ରଚନାମାନଙ୍କରେ ଯବନମାନଙ୍କ ପ୍ରତି ବହୁତ ନିନ୍ଦାତ୍ମକ ଏବଂ ଘୃଣାପୂର୍ଣ୍ଣ ଦୃଷ୍ଟିକୋଣ ରହିଥିଲା । ସମ୍ଭବତଃ ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନବେଳେ ବ୍ରାହ୍ମଣମାନଙ୍କ ପ୍ରତି ରହିଥିବା ଦ୍ୱେଷପୂର୍ଣ୍ଣ ଆଚରଣ ଯୋଗୁଁ ଏହିଭଳି ଘୃଣା ଦେଖିବାକୁ ମିଳିଥିଲା । ହୁଏତ ଏହାର ଅନ୍ୟ ଏକ କାରଣ ହେବ ଯବନ ଶାସକମାନଙ୍କର ବ୍ରାହ୍ମଣ୍ୟ ଧର୍ମକୁ ଅସ୍ୱୀକାର । ଏହାର ବିପରୀତ ବୌଦ୍ଧ ଗ୍ରନ୍ଥମାନଙ୍କରେ 'ୟୋନ ସମାଜ' ସମ୍ବନ୍ଧରେ କୌତୂହଳ ରହିଥିଲା । ୟୋନ ସମାଜ ମାତ୍ର ଦୁଇଟି ବର୍ଗରେ ବିଭାଜିତ – ସ୍ୱାମୀ ଓ ଦାସ – ଏହି ବର୍ଗ ବିଭାଜନକୁ ବୌଦ୍ଧମାନେ ବର୍ଣ୍ଣ ବିଭାଜନର ଏକ ଉଚିତ ବିକଳ୍ପ ରୂପରେ ଦେଖୁଥିଲେ ।

## ପ୍ରାରମ୍ଭିକ ବାଣିଜ୍ୟ

ଆଲେକ୍‌ଜାଣ୍ଡାର ପଞ୍ଜାବରେ ଅନେକ ଗ୍ରୀକ୍ ବସତି ସ୍ଥାପନ କରିଯାଇଥିଲେ । ତନ୍ମଧ୍ୟରୁ କୌଣସି ବସତି ସହର ରୂପେ ତିଷ୍ଠିପାରିଲା ନାହିଁ । ବୋଧହୁଏ, ସେଠାକାର

ଗ୍ରୀକ୍ ବାସିନ୍ଦାମାନେ ପଡ଼ୋଶୀ ସହରମାନଙ୍କରେ ଯାଇ ରହିଲେ । ଏହି ପ୍ରକ୍ରିୟାରେ ସେମାନେ ଉତ୍ତର-ପଶ୍ଚିମ ପ୍ରାନ୍ତରେ ଏକ ଅସ୍ଥିର ଗ୍ରୀକ୍ ଜନସମୂହ ହୋଇ ରହିଲେ । ଗ୍ରୀକ୍ ସେନା ଯେତେବେଳେ ପଶ୍ଚିମ ଏସିଆ ଏବଂ ଇରାନ ଅତିକ୍ରମ କରି ଭାରତରେ ପ୍ରବେଶ କଲେ, ତାହା ଆଫଗାନିସ୍ଥାନ ମଧ୍ୟଦେଇ ଉତ୍ତର-ପଶ୍ଚିମ ଭାରତ ଏବଂ ଇରାନ ମଧ୍ୟରେ ଥିବା ମାର୍ଗକୁ ସୁଦୃଢ଼ କଲା ବା ନୂଆ ମାର୍ଗ ଖୋଲିଦେଲା । ପୁଣି ଉକ୍ତ ମାର୍ଗ ପୂର୍ବ ଭୂମଧ୍ୟସାଗରକୁ ମଧ୍ୟ ଯୋଡ଼ିଲା । ଫଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ବାଣିଜ୍ୟ କାରବାର ବୃଦ୍ଧି ପାଇଲା । ଏହା ନିଃସନ୍ଦେହ ଯେ, ଉକ୍ତ ବାଣିଜ୍ୟ କାରବାରରେ ପୂର୍ବରୁ ଉଲ୍ଲିଖିତ କ୍ଷୁଦ୍ର ଗ୍ରୀକ୍ ସମୁଦାୟ, ଯାହା ଭାରତ ଏବଂ ପଶ୍ଚିମ ଏସିଆରେ ରହିଥିଲା, ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କଲା । ସାଧାରଣତଃ ଯେଉଁଠି ବସ୍ତୁ ବିନିମୟ ହୁଏ, ଖୁବ୍‌ଶୀଘ୍ର ସେଠାରେ ବିଚାରର ମଧ୍ୟ ବିନିମୟ ହୁଏ । ଏହି କ୍ଷେତ୍ରରେ ମଧ୍ୟ ତାହା ଦେଖିବାକୁ ମିଳିଲା । କଳା, ଚିକିତ୍ସାଶାସ୍ତ୍ର ଏବଂ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ବିଚାର ବିନିମୟ ହୋଇଥିବାର ପ୍ରମାଣ ରହିଛି । ପୂର୍ବର ସ୍ରୋତ-ସାମଗ୍ରୀରେ ପଶ୍ଚିମ ଏସିଆରେ କାହିଁ କେଉଁଠି ଭାରତୀୟମାନଙ୍କର ଉପସ୍ଥିତି ରହିଥିବା କଥା ଉଲ୍ଲେଖ କରାଯାଇଛି । ମାତ୍ର ଏହା ପରେ ସେମାନଙ୍କର ଉପସ୍ଥିତି ଅଧିକ ସ୍ପଷ୍ଟ ରୂପରେ ଦେଖିବାକୁ ମିଳିଲା ।

ଭାରତୀୟ ଉପଦ୍ୱୀପକୁ ଯାଇଥିବା ମାର୍ଗ ଯୋଗୁଁ ଉତ୍ତର ଭାରତର ବାଣିଜ୍ୟ ନିମନ୍ତେ ଆଉ ଏକ କ୍ଷେତ୍ର ପ୍ରସ୍ତୁତ ହେଉଥିଲା । ସୁଦୂର ଦକ୍ଷିଣର ଅଲଗାଂକୁଲମ୍‌ଠାରେ NBPW ଏବଂ ପଞ୍ଚମାର୍କ୍‌ଡ (Punch Marked Coin) ମୁଦ୍ରା ବା ଆହତ ସିକ୍କା ମୋହର ମିଳିଛି । ଏଥିରୁ ପ୍ରମାଣ ମିଳେ ଯେ ଉପଦ୍ୱୀପ ସହିତ ଅନ୍ତତଃ ସଞ୍ଚାର ମାର୍ଗ ସେତେବେଳକୁ ଆରମ୍ଭ ହୋଇସାରିଥିଲା । ଉଜ୍ଜୟିନୀ, ବିଦିଶା ଏବଂ ତ୍ରିପୁରୀକୁ ଡେକାନର ପ୍ରତିଷ୍ଠାନ ସହର ସହିତ ସଂଯୋଜିତ କରାଯାଉଥିଲା । ମାତ୍ର ମୁଖ୍ୟ ବାଣିଜ୍ୟ ମାର୍ଗ ଗଙ୍ଗାନଦୀର ସମାନ୍ତର ହୋଇ ରହିଥିଲା । ଏହି ମାର୍ଗ ରାଜଗୃହରୁ ସୁଦୂର କୌଶାମ୍ବୀ ପର୍ଯ୍ୟନ୍ତ ଏବଂ ଉଜ୍ଜୟିନୀ ମଧ୍ୟଦେଇ ଭୃଗୁକଚ୍ଛ ବା ଭରୁଚ ବା ବଡ଼ୋଚ ପର୍ଯ୍ୟନ୍ତ ଯାଇଥିଲା । ନର୍ମଦାର ବେଳାସଙ୍ଗମରେ ଭରୁଚ୍ ବାଣିଜ୍ୟ ପାଇଁ ଏକ ମୁଖ୍ୟ ବନ୍ଦର ରୂପେ ପଶ୍ଚିମରେ ବିକଶିତ ହେବାକୁ ଆରମ୍ଭ କରିଥିଲା । ଅନ୍ୟ ଏକ ମାର୍ଗ କୌଶାମ୍ବୀରୁ ଦୋଆବ ପର୍ଯ୍ୟନ୍ତ ଏବଂ ସେଠାରୁ ଆଗକୁ ପଞ୍ଜାବ ଅତିକ୍ରମ କରି ତକ୍ଷଶୀଳା ପର୍ଯ୍ୟନ୍ତ ଯାଇଥିଲା । ଏହା ଥିଲା ପଶ୍ଚିମର ସ୍ଥଳ-ବାଣିଜ୍ୟ ପାଇଁ ଦ୍ୱାର । ମଧ୍ୟଗଙ୍ଗା ସମତଳରେ ଶ୍ରାବସ୍ତୀ ମଧ୍ୟ ଏକ ବାଣିଜ୍ୟ କେନ୍ଦ୍ର ରୂପେ ରହିଥିଲା ।

ବାଣିଜ୍ୟ ସାମଗ୍ରୀକୁ ବଳଦଗାଡ଼ିରେ ପରିବହନ କରାଯାଉଥିଲା । ପଶୁ ପିଠିରେ ଇଦି ମଧ୍ୟ ସାମଗ୍ରୀ ନିଆଯାଉଥିଲା । ମାତ୍ର ନଦୀ ମାର୍ଗର ବ୍ୟବହାର ଯୋଗୁଁ ଡଙ୍ଗାରେ

ଅଧିକ ପରିମାଣରେ ମାଲ ନେବା ଆଣିବା ସମ୍ଭବ ହେଲା । ତତ୍‌କାଳୀନ ପ୍ରମୁଖ ନଦୀ ବନ୍ଦରଗୁଡ଼ିକ ମଧ୍ୟରେ ଥିଲେ ରାଜଘାଟ, ପାଟ୍‌ଲିଗ୍ରାମ, ବୈଶାଳୀ ଏବଂ ଚମ୍ପା । ଏହି ସମୟରେ ଗଙ୍ଗା ଡେଲ୍‌ଟାର ତାମଲୁକ ଏବଂ ଦକ୍ଷିଣ ଭାରତର ଭରୁଚ (ଭୃଗୁକଚ୍ଛ) ଆଦି ତଟୀୟ ବନ୍ଦରର ବାରମ୍ବାର ଉଲ୍ଲେଖ ଦେଖିବାକୁ ମିଳେ । ସପୋରା ବନ୍ଦର (ବମ୍ବେ ନିକଟରେ ଅବସ୍ଥିତ), ଯାହା ମୌର୍ଯ୍ୟ କାଳରେ ପ୍ରସିଦ୍ଧି ଅର୍ଜନ କଲା, ତାହା କିଛିକାଳ ପୂର୍ବରୁ ଆରମ୍ଭ ହୋଇ ସାରିଥିଲା । ଅଶ୍ୱାରୋହରଣ ଥିଲା ଗମନାଗମନର ଦ୍ରୁତତମ ସାଧନ । ମାତ୍ର ଲୋକ ଅଧିକ ପସନ୍ଦ କରୁଥିଲେ ଘୋଡ଼ାଗାଡ଼ିକୁ, କାରଣ ତାହା ଆରାମଦାୟୀ ଥିଲା ।

ସହରର ଉଦ୍ଭବ ପରେ ଭୂଦୃଶ୍ୟ (landscape)ରେ କିଛି ପରିବର୍ତ୍ତନ ଦେଖିବାକୁ ମିଳିଲା । ପ୍ରଥମତଃ, ରଚନାମାନଙ୍କରେ ଏଣିକି ସହରକୁ ନେଇ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ମିଳିଲା, ଯାହା ଲେଖକ ଓ ତାଙ୍କର ବିଶ୍ୱଦୃଷ୍ଟି ଉପରେ ନିର୍ଭର କରୁଥିଲା । ଅନେକ ଦୃଷ୍ଟିକୋଣରୁ ସହରର ଉତ୍‌ଥାନ ଏକ ନୂଆ କଥା ସୃଷ୍ଟି କଲା । ସହରୀ ଓ ଗ୍ରାମୀଣ କ୍ଷେତ୍ର ମଧ୍ୟରେ ଅବଶ୍ୟ ସୀମାଙ୍କନ ବା ସୀମା ନିର୍ଦ୍ଧାରଣ ସ୍ପଷ୍ଟ ହୋଇ ନ ଥିଲା । ଏଣିକି, ସୀମାଙ୍କନ ପ୍ରକ୍ରିୟା ଆରମ୍ଭ ହେଲା । ଗଡ଼ ଓ ପାଚେରୀ ନିର୍ମାଣ ହେଲା ସେହି ସୀମାଙ୍କନର ପ୍ରତୀକ । ଅବଶ୍ୟ ଗଡ଼ ଓ ପାଚେରୀଗୁଡ଼ିକର ଖୁବ୍ ପ୍ରଭାବୋଦ୍ଦିପକ ଢଙ୍ଗରେ ନିର୍ମାଣ ହୋଇ ନ ଥିଲା । ପ୍ରଥମରୁ ଜନବସତି ଓ ଜଙ୍ଗଲ ମଧ୍ୟରେ ସୀମାଙ୍କନ କରାଯାଉଥିଲା । ଠହିଁରେ ଆଉ ଏକ ଉପାଦାନ ଏଣିକି ଯୋଡ଼ିହେଲା । ଅର୍ଥାତ୍ ସହର ମଧ୍ୟ ନୂଆକରି ଜନବସତିରେ ମିଶିଲା । ଗ୍ରାମର ଲୋକଙ୍କ ମଧ୍ୟରେ କୁଟୁମ୍ବ ସମ୍ବନ୍ଧ ବା ବୃତ୍ତି ସମ୍ବନ୍ଧ ରହିଥିଲା । ହେଲେ ସହରର ଲୋକ ଭିନ୍ନ ଭିନ୍ନ ଓ ଅସମ୍ବନ୍ଧିତ ପୃଷ୍ଠଭୂମିର ଥିଲେ । ସହରର ସଂରଚନା ଓ ନିର୍ମାଣ ପାଇଁ ଅଧିକ ସଂଖ୍ୟକ ଶ୍ରମିକର ଆବଶ୍ୟକତା ପଡ଼ିଲା, ଯାହା ଗ୍ରାମୀଣ ଆବଶ୍ୟକତାଠାରୁ ସମ୍ପୂର୍ଣ୍ଣ ଅଲଗା ଥିଲା । ସମ୍ଭବତଃ ସାମାଜିକ ପରିବର୍ତ୍ତନର ଏହା ଥିଲା ଏକ ସ୍ପଷ୍ଟ ସ୍ୱରୂପ ।

ସହରକୁ ଗ୍ରାମ ତୁଳନାରେ ଖୁବ୍ ବଡ଼ ମନେକରାଯାଉଥିଲା । ଉଦାହରଣ ସ୍ୱରୂପ, ରାମାୟଣରେ ଅଯୋଧ୍ୟାର ଆକାର ଯାହା ଦର୍ଶାଯାଇଛି, ତାହା ଗାଙ୍ଗେୟ ସମତଳରେ ନଗରୀୟ ଖନନରୁ ମିଳୁଥିବା ପ୍ରମାଣ ଆଧାରରେ ଦେଖିଲେ ଢେର୍ ମାତ୍ରାରେ ଅତିରଞ୍ଜିତ । ସେତେବେଳେ ସବୁଠାରୁ ବଡ଼ ସହରଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା କୌଶାମ୍ବୀ । ତା'ର ଜନସଂଖ୍ୟା ପ୍ରାୟ 36,000 ଏବଂ ଆକାର 150 ରୁ 200 ହେକ୍ଟର ପ୍ରାୟ ହେବ ବୋଲି ଅନୁମାନ କରାଯାଏ । ଅଧିକାଂଶ ବଡ଼ ନଗରୀ, ଯଥା- ରାଜଗୃହ, ଅହିଛତ୍ର ଏବଂ ଶ୍ରାବସ୍ତୀ, ପ୍ରାୟ କୌଶାମ୍ବୀ ପରି ହେବେ । ପୋଥିପାଠରେ ସହରର ନିର୍ଦ୍ଧାରିତ ଆକାର ଦେବା ପ୍ରତି ଧ୍ୟାନ ଦିଆଯାଇ ନାହିଁ । କେବଳ ପୂର୍ବ ତୁଳନାରେ ଏବଂ ପରିଚିତ ଗ୍ରାମଗୁଡ଼ିକ ତୁଳନାରେ ସହର ଖୁବ୍ ବିଶାଳ ଥିଲା ବୋଲି କୁହାଯାଇଛି । ସହର ଅନ୍ତର୍ଭୁକ୍ତ ସ୍ଥାନଗୁଡ଼ିକ ମଧ୍ୟରେ

ଉଦ୍ୟାନ ମଣ୍ଡିତ ଘର ରହିଥିଲା । ସହର ଉପକଣ୍ଠରେ ବଡ଼ ବଡ଼ ଫଳବଗିଚା ଓ ଉପବନ ସବୁ ରହିଥିଲା ।

ଅଧିକାଂଶ ବିଳାସ ସାମଗ୍ରୀ ବାଣିଜ୍ୟ ପାଇଁ ଦୂରବର୍ତ୍ତୀ ସ୍ଥାନକୁ ଯାଉଥିଲା । ସାଧାରଣ ଉତ୍ପାଦନମାନ ସ୍ଥାନୀୟ ସ୍ତରରେ ବିକ୍ରିବଟା ହୋଇଯାଉଥିଲା । ବାଣିଜ୍ୟ ସାମଗ୍ରୀକୁ ବିଭିନ୍ନ ଗୋଷ୍ଠୀର ଲୋକ ନେବାଆଣିବା କରୁଥିଲେ । ତନ୍ମଧ୍ୟରେ ଥିଲେ ପଶୁଚାରକ, ଯାଯାବର, କାରିଗର ଏବଂ ସ୍ଥାୟୀ ବଣିକମାନେ । ସହର ସହିତ ସମ୍ବନ୍ଧିତ କେତେକ କାମ ଏଣିକି ବୃତ୍ତି ରୂପରେ ବିକଶିତ ହେଉଥିଲେ । ପରେ ଏହି ବୃତ୍ତିମାନ ଖୁବ୍ ମହତ୍ତ୍ୱ ପାଇଲେ । ସଂବୃଦ୍ଧ, ଜମିମାଲିକ, ଗୃହସ୍ୱାମୀ ବା 'ଗହପତି'ରୁ ଏଣିକି କିଛି ଲୋକ 'ଶେଠି' ରୂପରେ ବିକଶିତ ହେବାକୁ ଲାଗିଥିଲେ । ଏହି ସେଠିମାନେ ଉଦ୍ୟମୀ ବଣିକ ଏବଂ ବିତ୍ତଦାତା ରୂପେ ପରେ ଖୁବ୍ ଚର୍ଚ୍ଚାକୁ ଆସିଲେ ।

ଧାତୁ ତିଆରି ମୁଦ୍ରାର ପ୍ରଚଳନ ବେପାରକୁ ଖୁବ୍ ସହଜ କଲା । ଏହାପରେ ବାଣିଜ୍ୟ ଗତିବିଧିରେ ଏକ ଗୁଣାତ୍ମକ ପରିବର୍ତ୍ତନ ଦେଖିବାକୁ ମିଳିଲା । ରୁପାର 'ପଞ୍ଚ ମାର୍କଡ଼' ମୁଦ୍ରା ମାନକ ମୁଦ୍ରାର ସ୍ଥାନ ନେଲା, ଯଦିଓ ତମ୍ବାର ପଞ୍ଚ ମାର୍କଡ଼ ମୁଦ୍ରା ଏବଂ ରୁକ୍ଷ ତମ୍ବା ମୁଦ୍ରାର ମଧ୍ୟ ପ୍ରଚଳନ ରହିଥିଲା । ମୁଦ୍ରାର ପରିମାଣରୁ ରୁପାର ଉପଲବ୍ଧତା କଥା ଜଣାଯାଏ । କିଛି ରୁପା ରାଜସ୍ଥାନର ଖଣିରୁ ମିଳୁଥିବାର ମନେହୁଏ । ସମ୍ଭବତଃ, ବାଣିଜ୍ୟରେ ସଂଶ୍ଳିଷ୍ଟ ସଂସ୍ଥାମାନେ ମୁଦ୍ରା ଜାରି କରୁଥିଲେ । କେତେକ ମୁଦ୍ରା ଉପରେ 'ନେଗମ'ର ମୁଦ୍ରାଲେଖ ଦେଖିବାକୁ ମିଳେ । ବିପଣନ କାର୍ଯ୍ୟରେ ଜଡ଼ିତ 'ନିଗମ'ରୁ ବୋଧହୁଏ 'ନେଗମ'ର ଚିହ୍ନ ଯାଇଥିବ । ମୁଦ୍ରାର ମୁଦ୍ରଣ ଏକ ନୂଆ ବୃତ୍ତି ଭାବରେ ଏଣିକି ସହରରେ ଦୃଷ୍ଟିଗୋଚର ହେଲା । ମାନକ ମୁଦ୍ରା ଥିଲା 'ପଣ' । ମୁଦ୍ରାର ବ୍ୟବହାର ଯେତେ ଅଧିକ ବୃଦ୍ଧି ପାଇଲା, ସେତେ ଅଧିକ କମ୍ ଓ ଅଧିକ ମୂଲ୍ୟର ମୁଦ୍ରାର ମୁଦ୍ରଣ କାର୍ଯ୍ୟ ହେଲା । ଅର୍ଥାତ୍ ବାଣିଜ୍ୟର ଅଭିବୃଦ୍ଧି ସହିତ ମୁଦ୍ରାର ମୁଦ୍ରାକରର ବୃତ୍ତିକୁ ଅଧିକ ମହତ୍ତ୍ୱ ମିଳିଲା ।

ମୁଦ୍ରା ବା ପଇସାର ପ୍ରଚଳନ ବାଣିଜ୍ୟ କ୍ଷେତ୍ରରେ ଏକ ବଡ଼ ପରିବର୍ତ୍ତନର ସୂଚକ ହେଲା । ବିନିମୟର ଏକ ମାଧ୍ୟମ ରୂପରେ ତଥା ହିସାବ ରଖିବା ପାଇଁ ମୁଦ୍ରା ସମରୂପତା ଦେଲା । ଗୋଟାଏ ପ୍ରଣାଳୀ ଅନ୍ତର୍ଗତ ବିଭିନ୍ନ କିସମର ବସ୍ତୁର ମୂଲ୍ୟାଙ୍କନ କରିବାରେ ମୁଦ୍ରା ସାହାଯ୍ୟ କଲା । ସୁଦୂର ରାଜ୍ୟକୁ ବାଣିଜ୍ୟ ସହଜ ହେଲା; ବଣିକମାନଙ୍କ ମଧ୍ୟରେ ସମ୍ବନ୍ଧ ରଖିବାରେ ବି ମୁଦ୍ରା ସାହାଯ୍ୟ କଲା । ପୁଞ୍ଜିଲଗାଣ ବିତ୍ତଦାତାର ବୃତ୍ତିର ଏକ ଆଗ୍ରହ ସୃଷ୍ଟିକାରୀ ଅଙ୍ଗ ହେଲା; କାରଣ ମୁଦ୍ରାକୁ ଗଚ୍ଛିତ ରଖି ପୁଞ୍ଜି ଭାବରେ ଇଚ୍ଛାମତେ ବ୍ୟବହାର କରାଯାଇ ପାରିଲା । ଏହାଦ୍ୱାରା ପୁଞ୍ଜି ଲଗାଣକୁ ନେଇ ପୂର୍ବାନୁମାନ ଲାଭଦାୟକ ହେବାର

ସମ୍ଭାବନା ରହିଲା । ମୁଦ୍ରା ବ୍ୟବସ୍ଥାର ଆଉ ଏକ ଦିଗ ରୂପରେ ସୁଧରେ ଋଣ ଦେବା ଆରମ୍ଭ ହେଲା । ମାତ୍ର ଏହା କେତେ ମାତ୍ରାରେ ପ୍ରଚଳିତ ଥିଲା ଏବଂ କେଉଁ ହାରରେ ସୁଧ ନିଆଯାଉଥିଲା, ତାହା ଏହି ସମୟ ପାଇଁ ଜଣାପଡ଼େ ନାହିଁ । ବ୍ରାହ୍ମଣୀୟ ସ୍ରୋତଗୁଡ଼ିକ ଆରମ୍ଭରେ ସୁଧଖୋରୀକୁ ବିରୋଧ କରୁଥିଲେ, କାରଣ ଏକ ନୂଆ ବୃତ୍ତି ଭାବରେ ବିକଶିତ ହୋଇଥିବା ବିତ୍ତଦାତାର କାର୍ଯ୍ୟ ଥିଲା । ବିତ୍ତଦାତାମାନେ ସାଧାରଣତଃ ସହରରେ ରହୁଥିଲେ ଏବଂ ଅରକ୍ଷଣଶୀଳ ବିଚାରର ଥିଲେ । ଗୌତମବୁଦ୍ଧ ସୁଧରେ ପୁଞ୍ଜିଲଗାଣ କ୍ରିୟାକୁ ଅନୁମୋଦନ କରିଥିଲେ । ଏକ ସ୍ରୋତ ଅନୁଯାୟୀ, ସେ କୁଆଡ଼େ କହିଥିଲେ :

*"ଯିଏ ଗୁଣବାନ ଓ ବୁଦ୍ଧିମାନ,*
*ସେ ପାହାଡ଼ ଉପରେ ଜଳୁଥିବା ନିଆଁ ପରି ଦିପ୍ତିମାନ ।*
*ସେ ଧନ ସଞ୍ଚିତ କରେ,*
*ଯେମିତି ଅନ୍ୟର କ୍ଷତି ନ କରି*
*ଭ୍ରମଣକାରୀ ମଧୁମକ୍ଷୀ ମଧୁ ସଞ୍ଚୟ କରେ ।*
*ଯେମିତି ପିମ୍ପୁଡ଼ିର ଧନ ପରି ଜମାହୁଏ ସମ୍ପତ୍ତି ।*
*ଯେତେବେଳେ ସଦ୍‌ଗୃହସ୍ଥ ଧନ ଜମାକରେ,*
*ତା'ର କୁଳଜନଙ୍କୁ ଲାଭ ପ୍ରଦାନ କରିବାପାଇଁ ସମର୍ଥ ହୁଏ*
*ଚାରି ଭାଗରେ ସେ ଧନକୁ ବାଣ୍ଟିଦିଏ,*
*ଫଳରେ ଜୀବନର ସୁଖଦ ଉପାଦାନକୁ*
*ସ୍ୱୟଂ ସହିତ ଯୋଡ଼ିପାରେ ।*
*ଗୋଟାଏ ଭାଗକୁ ସେ ଖର୍ଚ୍ଚକରି ମଜା ନେଉ,*
*ଦୁଇ ଭାଗ ଧନକୁ ସେ ତା' ବୃତ୍ତିରେ ଲଗାଉ*
*ଏବଂ ଚତୁର୍ଥ ଭାଗଟିକୁ ସେ ସୁରକ୍ଷିତ ରଖୁ*
*ଯାହା ଆବଶ୍ୟକତା ପଡ଼ିଲେ କାମରେ ଆସିବ ।"*

(Digha Nichaya, III, 188, Ar. T.W. Rhys Davids, *Dialogues of the Buddha*, III, pp. 179-80)

ପାରସ୍ୟର ଆକେମେନିଡ଼ ଶାସିତ କ୍ଷେତ୍ରରେ ଆର୍ମାଇକ ଲିପିର ବ୍ୟବହାର ରହିଥିଲା । ଆକେମେନିଡ଼ ପ୍ରଶାସନ ଓ ବାଣିଜ୍ୟର ପ୍ରସାରଣରେ ଏହା ଖୁବ୍ ସହାୟକ ହେଉଥିଲା । ସମ୍ଭବତଃ ଏହାରି ପ୍ରଭାବରେ ଭାରତରେ ଲିପିର ଆବଶ୍ୟକତା ପଡ଼ିଲା । ଏକଥା ଅନସ୍ୱୀକାର୍ଯ୍ୟ ଯେ ଲିପି ଉଭୟ ପ୍ରଶାସନିକ ଏବଂ ବାଣିଜ୍ୟିକ କ୍ରିୟାକଳାପରେ ସହଯୋଗ କରେ । ହରପ୍ପା

ଲିପି ଉତ୍ତାରୁ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ଲିଖିତ ଅଶୋକଙ୍କ ଶିଳାଲେଖ ହେଉଛି ଭାରତର ସର୍ବପ୍ରାଚୀନ ଲିପି । ତାକୁ ଦେଖିଲେ ଜଣାଯାଏ ଉଲ୍ଲିଖିତ କାଳଖଣ୍ଡରେ ଲୋକ କେତେ ମାତ୍ରାରେ ଲିପି ସହିତ ଅଭ୍ୟସ୍ତ ହୋଇସାରିଥିଲେ । ଏହାର ଅର୍ଥ ହେଲା, ଲିପିର ପ୍ରଥମ ବ୍ୟବହାର ଅଶୋକଙ୍କ ପୂର୍ବରୁ ଅନେକ ପିଢ଼ି ଆଗରୁ ହୋଇଥିବ । ପାଣିନି ତାଙ୍କର ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ଗ୍ରନ୍ଥ ଅଷ୍ଟାଧ୍ୟାୟୀର ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଲିଖିତ ହୋଇଥିବା ଏକ ଲିପିର ଉଲ୍ଲେଖ କରିଛନ୍ତି । ବୋଧହୁଏ ଏହା ଥିଲା ସେହି ଇରାନୀୟ ଆର୍ମାଇକ ଲିପି, ଯାହା ଉତ୍ତର-ପଶ୍ଚିମ ଭାରତର ଶିକ୍ଷିତ ବର୍ଗରେ ପ୍ରଚଳିତ ଥିଲା । ଶ୍ରୀଲଙ୍କାର ଅନୁରାଧାପୁରରେ ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଉତ୍‌ଖନିତ ବାସନ ଉପରେ ବ୍ରାହ୍ମୀ ଲିପିର ଉଦ୍ଧରଣ ରହିଛି । ଏହାକୁ ବ୍ରାହ୍ମୀ ଲିପିର ଆଦ୍ୟତମ ପ୍ରମାଣ ରୂପେ ନିଆଯାଇ ପାରିବ । ମାତ୍ର ପ୍ରାପ୍ତ ପ୍ରତ୍ନତାତ୍ତ୍ୱିକ ଅବଶେଷକୁ ନେଇ ବିବାଦ ରହିଛି । ବ୍ରାହ୍ମୀର ଆରମ୍ଭ ସମୟ ନିର୍ଦ୍ଧାରଣ କରିବା ସକାଶେ କାହିଁ କେଉଁଠି ମିଳିଥିବା ପ୍ରମାଣ ସହିତ୍ ଆହୁରି ଅଧିକ ପ୍ରମାଣ ଯୋଗାଡ଼ କରିବାକୁ ପଡ଼ିବ ।

ବୈଦିକ ସ୍ତୋତ୍ରକୁ କଣ୍ଠସ୍ଥ କରିବା ସକାଶେ ଅନେକ କିସମର ବିଧି ରହିଥିଲା । ବୈଦିକ ସଂସ୍କୃତିର ବିଶ୍ଳେଷଣ ପାଇଁ ଜଟିଳ ନିୟମମାନ ମଧ୍ୟ ରହିଥିଲା । ପରିଷ୍କୃତ ଭାଷା ବୈଜ୍ଞାନିକ ବିଶ୍ଳେଷଣ ନିମନ୍ତେ ଦୃଢ଼ ଭିତ୍ତି ସୃଷ୍ଟି କରାଯାଇଥିଲା । ଏହି ସ୍ଥିତିରେ ଲିପି ନ ରହିବା ଯୋଗୁଁ ଭାଷା ବିକାଶର ପ୍ରକ୍ରିୟା ନିଶ୍ଚୟ ବାଧାପ୍ରାପ୍ତ ହୋଇଥିବ ବୋଲି ଅନୁମାନ କରିହୁଏ, ଯଦିଓ ଏହାକୁ ସମସ୍ତେ ଗ୍ରହଣ କରନ୍ତି ନାହିଁ । ପାଣିନିଙ୍କ ବ୍ୟାକରଣ କର୍ମକାଣ୍ଡୀ ଭାଷା ବା ବୈଦିକ ସଂସ୍କୃତର ବ୍ୟାକରଣ ନ ଥିଲା । ସାଧାରଣ ଭାବେ ବ୍ୟବହୃତ ସଂସ୍କୃତର ଏହା ଏକ ବ୍ୟାକରଣ ଥିଲା ଏବଂ ଭାଷା ସଂରଚନାର ଉନ୍ନତ ଜ୍ଞାନକୁ ପ୍ରତିବିମ୍ବିତ କରୁଥିଲା । (ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖଯୋଗ୍ୟ ଯେ ଊନବିଂଶ ଶତାବ୍ଦୀର ୟୁରୋପରେ ଫ୍ରାଂଜ ବୋପଙ୍କର ଗବେଷଣା ଏବଂ ତୁଳନାତ୍ମକ ଭାଷା-ଶାସ୍ତ୍ରର ପ୍ରଧାନ ବିନ୍ଦୁ ଥିଲା ଏହି ବ୍ୟାକରଣ । ଆଧୁନିକ ଭାଷା ବିଜ୍ଞାନର ମୂଳକୁ ମଧ୍ୟ ତହିଁରେ ଦେଖାଯାଇପାରେ ।)

ପାଖାପାଖି ଏହି ସମୟରେ ଭାରତାର୍ଯ୍ୟ ପରିବାରର ଭାଷାମାନଙ୍କ ମଧ୍ୟରେ ବିବିଧତା ରହିଥିବା କଥା ଜଣାପଡ଼େ । କର୍ମକାଣ୍ଡର ଭାଷା ଭାବରେ ବୈଦିକ ସଂସ୍କୃତ କଥିତ ସଂସ୍କୃତଠାରୁ ଅଲଗା ହୋଇ ବିକାଶ ଲାଭ କଲା । କଥିତ ସଂସ୍କୃତକୁ ପାଣିନି 'ଭାଷା' ବୋଲି ଉଲ୍ଲେଖ କରିଛନ୍ତି ଏବଂ ତାକୁ ଶୃଙ୍ଖଳାବଦ୍ଧ କରିବା ସକାଶେ ସେ ବ୍ୟାକରଣ ଲେଖିଥିଲେ । ଯେଉଁମାନେ ଔପଚାରିକ ଶିକ୍ଷା ଗ୍ରହଣ କଲେ, ତାଙ୍କ ପାଇଁ ଏହା 'ଶାସ୍ତ୍ରୀୟ ସଂସ୍କୃତ' ରୂପରେ ପରବର୍ତ୍ତୀ ସମୟରେ ବିକଶିତ ହେଲା । ପରେ ଯାହା ସବୁ ବ୍ୟାକରଣ ଲେଖାହେଲା – ସଂସ୍କୃତର

ତଥା ଅନ୍ୟାନ୍ୟ ଭାରତାର୍ଯ୍ୟ ଭାଷାର ସବୁଗୁଡ଼ିକ ପାଇଁ ପାଣିନିଙ୍କ ବ୍ୟାକରଣ ଭିତ୍ତି ପ୍ରଦାନ କଲା । ଏହି ସମୟରେ ବ୍ୟାକରଣ ରଚନାର କ'ଣ ଆବଶ୍ୟକତା ପଡ଼ିଲା – ତା' ବି ଏକ ଗବେଷଣାର ବିଷୟ । ଅନ୍ୟାନ୍ୟ ଅଣ-ଆର୍ଯ୍ୟଭାଷାଗୁଡ଼ିକ ସେତେବେଳକୁ ପ୍ରଚଳିତ ଥିଲେ । ତାଙ୍କରି ପ୍ରଭାବରେ ସଂସ୍କୃତରେ ପରିବର୍ତ୍ତନମାନ ଦେଖିବାକୁ ମିଳୁଥିଲା । ଉକ୍ତ ପରିବର୍ତ୍ତନକୁ ଅବରୁଦ୍ଧ କରିବା ସକାଶେ ବ୍ୟାକରଣ ଲେଖାଗଲା କି ? ଯେଉଁମାନେ ଭାରତାର୍ଯ୍ୟ ଭାଷା ସହିତ ପରିଚିତ ନ ଥିଲେ, ସେମାନଙ୍କ ମଧ୍ୟରେ ସଂସ୍କୃତକୁ ଆଦୃତ କରିବା ସକାଶେ ବ୍ୟାକରଣ ରଚିତ ହେଲା କି ? ସାହିତ୍ୟର ମୌଖିକ ପରମ୍ପରାକୁ ଏକ ଲିଖିତ ପରମ୍ପରାର ସ୍ୱରୂପ ଦେବା ସକାଶେ ଏହା ଲେଖାଗଲା କି ? କୁହାଯାଏ, ପାଣିନି ଥିଲେ ଉତ୍ତର-ପଶ୍ଚିମ ପ୍ରଦେଶ ନିବାସୀ, ଯଦିଓ ପଶ୍ଚିମ ଗାଙ୍ଗେୟ ସମତଳର କୁରୁ-ପାଞ୍ଚାଳ କ୍ଷେତ୍ରରେ ସେତେବେଳେ ସର୍ବୋତ୍କୃଷ୍ଟ ସଂସ୍କୃତର ପ୍ରଚଳନ ରହିଥିଲା ।

ଗ୍ରାମ ଓ ସହରରେ ଲୋକଙ୍କ ମଧ୍ୟରେ ପ୍ରାକୃତ ଭାଷାର ଲୋକପ୍ରିୟତା ରହିଥିଲା । ପ୍ରାକୃତର ମଧ୍ୟ ଭାରତାର୍ଯ୍ୟ ଭାଷା ପରିବାରରୁ ଜନ୍ମ । ଏଥିରେ ସ୍ଥାନୀୟ ବିବିଧତା ଦେଖିବାକୁ ମିଳୁଥିଲା । ପଶ୍ଚିମ କ୍ଷେତ୍ରର ପ୍ରାକୃତକୁ 'ଶୌରସେନୀ' ଏବଂ ପୂର୍ବ କ୍ଷେତ୍ରର ପ୍ରାକୃତକୁ 'ମାଗଧୀ' କୁହାଯାଉଥିଲା, କାରଣ ତାହା ମଗଧ କ୍ଷେତ୍ରରେ ବିଶେଷଭାବେ ପ୍ରଚଳିତ ଥିଲା । ନିଜ ବିଚାରକୁ ଅଧିକ ଲୋକଙ୍କ ପାଖରେ ପହଞ୍ଚାଇବା ସକାଶେ ବୁଦ୍ଧ ମାଗଧୀର ଏକ ବୋଲିକୁ ବ୍ୟବହାର କରୁଥିଲେ । ପରବର୍ତ୍ତୀ ସମୟରେ ବୌଦ୍ଧଗ୍ରନ୍ଥମାନ ପାଲି ଭାଷାରେ ରଚିତ ହେଲା । ପାଲି ମଧ୍ୟ ହେଲା ଭାରତାର୍ଯ୍ୟ ଭାଷାର ଏକ ଭଗିନୀ ଭାଷା । ସହରଗୁଡ଼ିକରେ ଅନେକ ଭାଷାର ପ୍ରଚଳନ ରହୁଥିଲା । ଫଳରେ ଉକ୍ତ ଭାଷାଗୁଡ଼ିକର ସଂରଚନା ଏବଂ ଶବ୍ଦ ଭଣ୍ଡାରରେ ପରିବର୍ତ୍ତନ ଦେଖାଯିବା ସ୍ୱାଭାବିକ କଥା ।

ସାମାଜିକ ଏବଂ ଅର୍ଥନୈତିକ ଜୀବନରେ ଏହାର ଅନ୍ୟ କ୍ଷେତ୍ରରେ ହୋଇଥିବା ପରିବର୍ତ୍ତନ ସହିତ ନିବିଡ଼ ସମ୍ବନ୍ଧ ରହିଥାଇପାରେ । ନୂତନ ପରିସ୍ଥିତିକୁ ଦୃଷ୍ଟିରେ ରଖି ବ୍ରାହ୍ମଣମାନେ ସାମାଜିକ ଆଚାର ବିଚାର ସମ୍ବନ୍ଧୀୟ ନୀତିନିୟମର ଆବଶ୍ୟକତା ଅନୁଭବ କରିଥିବେ । ଫଳରେ 'ଧର୍ମଶାସ୍ତ୍ର'ର ରଚନା ହେଲା, ଯାହା ପ୍ରତ୍ୟେକ ବର୍ଣ୍ଣ ପାଇଁ ସାମାଜିକ ନିୟମ, ସାମାଜିକ ଦାୟିତ୍ୱ ଏବଂ କର୍ତ୍ତବ୍ୟ ତଥା ଉଚିତ ବ୍ୟବହାର ସ୍ଥିର କଲା । ସାମାଜିକ ନିୟମର ରଚନାର ଅର୍ଥ ହେଲା ସମାଜରେ ପ୍ରଚଳିତ ଭିନ୍ନ ଭିନ୍ନ ଆଚାର-ବ୍ୟବହାର ମଧ୍ୟରେ ସାମଞ୍ଜସ୍ୟ ସ୍ଥାପିତ କରିବା । ଉଦାହରଣ ସ୍ୱରୂପ, ଏହାର ପରିଚୟ ଆମକୁ ବିବାହର ନିୟମ ସଙ୍ଗତ ସୂଚୀରେ ମିଳିଥାଏ । ସୂଚୀ ଅନୁସାରେ, ପିତୃକୈନ୍ଦ୍ରିକ ପ୍ରଚଳନରେ ସବୁଠାରୁ ଭଲ ପଦ୍ଧତି ହେଲା ବାପ ତା' କନ୍ୟାକୁ କନ୍ୟାର ସ୍ୱାମୀ ହସ୍ତରେ ଦାନ ଦେବ । ଆଉ ଏକ

ବୈବାହିକ ଧାରାରେ କନ୍ୟା-ମୂଲ୍ୟ ଦିଆଯିବ । ଏହି ଦ୍ୱିତୀୟ ଧାରା ବି ଗ୍ରହଣୀୟ ବୋଲି କୁହାଯାଇଛି । ମାତ୍ର ସବୁଠାରୁ ନୀଚ ଧାରାର ବିବାହ ହେଲା – କନ୍ୟାକୁ ଅପହରଣ କରି ନେଇଯିବା । ଅର୍ଥାତ୍ ବିଭିନ୍ନ ଧାରାର ବିବାହକୁ ବୈଧତା ପ୍ରଦାନ କରାଯାଇଛି, ଯଦିଓ ତନ୍ମଧ୍ୟରୁ କାହାକୁ ଅଧିକ ବୈଧ ବୋଲି କୁହାଯାଇଛି । ଏଥିରୁ ମନେହୁଏ ଯେ, ବିବାହର ଅନେକ ଧାରା ରହିଥିଲା ଏବଂ ସେଗୁଡ଼ିକୁ 'ଧର୍ମଶାସ୍ତ୍ର' ରଚୟିତାମାନେ କ୍ରମ ଅନୁସାରେ ଗ୍ରହଣ କରିଥିଲେ । ସମାଜରେ ପ୍ରଚଳିତ କେଉଁ ନିୟମକୁ ସ୍ୱୀକାର କରାଯିବ, କାହାକୁ ନାହିଁ – ତାହା ନିଶ୍ଚିତ କରିବା 'ଧମଗ୍ରନ୍ଥ'ର ରଚୟିତାମାନଙ୍କ ପାଇଁ ଗମ୍ଭୀର ସମସ୍ୟା ସୃଷ୍ଟି କରିଥିବ । ଉଚ୍ଚଜାତି ପାଇଁ ସାମାଜିକ ନିୟମଗୁଡ଼ିକରେ ସମରୂପତା ଓ ଅନୁରୂପତା ରଖିବାକୁ ପ୍ରୟାସ କରାଗଲା । ମାତ୍ର 'ତଳ' ଜାତିର ନିୟମରେ ଏତେମାତ୍ରାରେ ବିବିଧତା ରହିଥିଲା ଯେ, ତାକୁ ନିୟମବଦ୍ଧ କରିବା କଠିନ ହେଲା । ଉଚ୍ଚ ବର୍ଣ୍ଣର ବିଶେଷାଧିକାରରେ ଗୁରୁତ୍ୱ ଦିଆଗଲା ଏବଂ ନିମ୍ନ ଜାତିକୁ ସେହି ଅନୁପାତରେ ନିର୍ଯୋଗ୍ୟତାରେ ଭର୍ତ୍ତି କରି ଦିଆଗଲା । ତତ୍କାଳୀନ ସ୍ରୋତସାମଗ୍ରୀରେ ବାରମ୍ବାର ତଳ ଜାତି ଏବଂ ସ୍ତ୍ରୀମାନଙ୍କୁ ଏକା ସ୍ତରରେ ରଖାଯାଇଛି, ଯାହା ଉଭୟଙ୍କ ପରାଧୀନତାକୁ ସୁସ୍ପଷ୍ଟ କରେ ।

## ଧର୍ମ ଓ ବିଚାରଧାରା : ପ୍ରଶ୍ନ ଓ ଉତ୍ତର

ସେତେବେଳେ ପ୍ରତିଷ୍ଠିତ ରଢ଼ିବାଦ ଓ ଉଦୀୟମାନ ଗୋଷ୍ଠୀର ଆକାଂକ୍ଷା ମଧ୍ୟରେ ଯେମିତି ପ୍ରତିଯୋଗିତା ହେଉଥିଲା, ସେମିତି ସମନ୍ୱୟ ରକ୍ଷା ପାଇଁ ପ୍ରୟାସ ମଧ୍ୟ ହେଉଥିଲା । ଏହା ଧାର୍ମିକ ବିଶ୍ୱାସ ଓ ବ୍ୟବହାର କ୍ଷେତ୍ରରେ ଦେଖାଦେଉଥିବା ପରିବର୍ତ୍ତନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲା; ଦାର୍ଶନିକ ଚିନ୍ତନରେ ମଧ୍ୟ ପରିବର୍ତ୍ତନ ଆଣିଲା । ପରିଣାମ ସ୍ୱରୂପ, ଚିନ୍ତନରେ ଯେଉଁ ପରିମାଣରେ ସଂବୃଦ୍ଧି ଆସିଲା, ତାକୁ ପର ଶତାବ୍ଦୀରେ ମଧ୍ୟ ଅତିକ୍ରମ କରାଯାଇ ପାରିଲା ନାହିଁ । ପୂର୍ବବର୍ତ୍ତୀ କାଳର ସନ୍ୟାସୀ ଏବଂ ଯାଯାବର ତର୍କବାଦୀମାନେ ରଢ଼ି-ବିରୋଧୀ ଚିନ୍ତନର ଏକ ପରମ୍ପରା ସୃଷ୍ଟି କରିଥିଲେ । ସାଧାରଣତଃ ଦାର୍ଶନିକ ଚିନ୍ତନରେ ସେତେବେଳେ ନିୟନ୍ତ୍ରିତ ନିୟତିବାଦ (controlled determinism)ରୁ ଆରମ୍ଭକରି ସ୍ୱଚ୍ଛନ୍ଦ ଭୌତିକବାଦ (free-ranging materialism) ପର୍ଯ୍ୟନ୍ତ ସବୁକିଛି ସମାବିଷ୍ଟ ହୋଇ ରହିଥିଲା । ପ୍ରତିଦ୍ୱନ୍ଦ୍ୱିତା ଏବଂ ବିବାଦର ମାତ୍ରା ଖୁବ୍ ଅନେକ ଥିଲା । ନୂତନ ଦାର୍ଶନିକଙ୍କର ମତ ଶୁଣିବା ପାଇଁ 'କୁତୂହଳଶାଳା'ରେ ତଥା ସହର ଉପକଣ୍ଠରେ ସ୍ଥିତ ଉଦ୍ୟାନ ଏବଂ ବଗିଚାରେ ଶ୍ରୋତା ଏକତ୍ରିତ ହେଉଥିଲେ । ଏହାର ବିପରୀତ, ବୈଦିକ ବିଚାରକୁ ନେଇ କେବେ ସାର୍ବଜନିକ ରୂପରେ ସଭାସମିତିରେ ବିବାଦ ଆଲୋଚନା ହେଉ ନ ଥିଲା । ଏହା

ଥିଲା ଏକ ସମ୍ପୂର୍ଣ୍ଣ ଭିନ୍ନ ପରିଦୃଶ୍ୟ । ସହରୀ ଜୀବନର ଏକ ବିଶେଷତ୍ୱ ହେଲା ବିବିଧ ଓ ପରସ୍ପର ବିରୋଧୀ ଚିନ୍ତାଧାରାର ଉଦ୍ଭବ ।

ଭିନ୍ନ ଭିନ୍ନ ବିଚାର ପ୍ରକଟ କରୁଥିବା ଲୋକଙ୍କ ମଧ୍ୟରୁ କେତେକ ଗୋଷ୍ଠୀକୁ ସଂପ୍ରଦାୟର ମାନ୍ୟତା ଦିଆଗଲା । ସେମାନେ ସାନ ସାନ ଗୋଷ୍ଠୀରେ କାମ କରୁଥିଲେ ଏବଂ ଗୋଟାଏ ଗୋଟାଏ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତକୁ ସମର୍ଥନ କରୁଥିଲେ । ସେହି ଆଧାରରେ ସେମାନେ ସ୍ୱେଚ୍ଛାରେ ଗୋଷ୍ଠୀ ନିର୍ମାଣ କରିଥିଲେ । ଏହି କାରଣରୁ ସଂପ୍ରଦାୟର ସଂଖ୍ୟା ଖୁବ୍ ବେଶି ଥିଲା । ସେମାନେ ସମସ୍ତେ ଜାତି ଆଧାରରେ ଉକ୍ତ ସଂପ୍ରଦାୟରେ ସାମିଲ ହେଉ ନ ଥିଲେ, ଯଦିଓ ସଂପ୍ରଦାୟର ସଭ୍ୟମାନଙ୍କର ଭାଷା ଗୋଟାଏ ଥିଲା ଏବଂ ସମ୍ଭବତଃ ସଂପ୍ରଦାୟର ସବୁ ସଭ୍ୟଙ୍କର ଉଦ୍ଦେଶ୍ୟରେ ସମାନତା ରହିଥିଲା । ଏସବୁ କଥା ଜାଣିବାପାଇଁ ଆମମାନଙ୍କ ପାଇଁ ସୂତ୍ରସାମଗ୍ରୀ ହେଲା ପରବର୍ତ୍ତୀକାଳୀନ ପାଠ, ଯେଉଁଥିରେ ଦାର୍ଶନିକ ଚିନ୍ତନର ଆରମ୍ଭ ପ୍ରତିବିମ୍ବିତ ହୋଇଛି । ଯେତେବେଳେ ଅନୁଗାମୀଙ୍କର ସଂଖ୍ୟା ବୃଦ୍ଧି ପାଉଥିଲା ବା କେତେକ ସାନ ସାନ ସଂପ୍ରଦାୟ ମିଳିତ ହୋଇ ଯାଉଥିଲେ, ସଂଖ୍ୟାତ୍ମକ ଦୃଷ୍ଟିରୁ ସଂପ୍ରଦାୟର ବଳ ବୃଦ୍ଧି ପାଉଥିଲା । ସଂପ୍ରଦାୟର ସୀମିତ ପରିଚୟ ତୁଳନାରେ ସଂଘର ପରିଚୟକୁ ବ୍ୟାପକ ମନେକରାଯାଉଥିଲା । କଦାଚିତ୍ ସଂଘ ବିଭାଜିତ ହୋଇ ଛୋଟ ଛୋଟ ସମୂହରେ ରୂପାନ୍ତରିତ ହେଉଥିଲା ଏବଂ ସମୂହକୁ କେନ୍ଦ୍ରକରି ନୂତନ ସଂପ୍ରଦାୟର ଅଭ୍ୟୁଦୟ ଘଟୁଥିଲା ।

ଏହି ଧରଣର ଏକ ସଂପ୍ରଦାୟ ଥିଲେ 'ଆଜୀବିକ ସମାଜ' । ସେମାନେ ନିୟତିବାଦୀ ଦର୍ଶନର ଅନୁଗାମୀ ଥିଲେ । ଏହି ମତବାଦ ଅନୁସାରେ, ମଣିଷ ଜୀବନର ସାମାନ୍ୟରୁ ସାମାନ୍ୟତମ କାର୍ଯ୍ୟ ମଧ୍ୟ ପୂର୍ବ ନିର୍ଦ୍ଧାରିତ, ଭାଗ୍ୟ ନିର୍ଦ୍ଧାରିତ । ତାକୁ କେହି ବଦଳେଇ ପାରିବେ ନାହିଁ । ଆଜୀବିକମାନଙ୍କର ଏକ ଭିକ୍ଷୁ ସଂସ୍ଥା ଥିଲା । ପ୍ରତ୍ୟେକ ଭିକ୍ଷୁ ଗ୍ରହଣ କରିନେଇଥିଲା, ଭିକ୍ଷୁ ହେବା ତା' ଭାଗ୍ୟର ଲିଖନ । ଏହିଭଳି ଅନେକ ସଂପ୍ରଦାୟ ରହିଥିଲେ । ତନ୍ମଧ୍ୟରୁ କେତେକ ନିରୀଶ୍ୱରବାଦରେ ବିଶ୍ୱାସ କରୁଥିଲେ । 'ଚାର୍ବାକ୍'ମାନେ ଥିଲେ ନିରୀଶ୍ୱରବାଦୀ । ସେମାନଙ୍କର ଦର୍ଶନ ଭୌତିକବାଦରୁ ଜନ୍ମ ନେଇଥିଲା ଏବଂ ବୈଦିକ ବ୍ରାହ୍ମଣବାଦକୁ ବିରୋଧ କରୁଥିଲା । ମଣିଷ ମାଟିରୁ ସୃଷ୍ଟ ଏବଂ ଅନ୍ତତଃ ସେ ମାଟିରେ ହିଁ ମିଶିଯାଏ । 'ଚାର୍ବାକ୍' ବିଚାରର ଏକ ପ୍ରଭାବଶାଳୀ ପ୍ରବକ୍ତା ଥିଲେ ଅଜିତ କେଶକମ୍ବଳ । ସେ କହୁଥିଲେ :

*''ମଣିଷର ସୃଷ୍ଟି ଚାରୋଟି ତତ୍ତ୍ୱରୁ । ଯେତେବେଳେ ମଣିଷର ମୃତ୍ୟୁ ହୁଏ, ମାଟିରେ ମାଟି, ଜଳରେ ଜଳ, ବାୟୁରେ ବାୟୁ ଏବଂ ଅଗ୍ନିରେ ଅଗ୍ନି ମିଶିଯାଏ ଏବଂ ତା'ର ସଂଜ୍ଞା ଶୂନ୍ୟରେ ବିଲୀନ ହୋଇଯାଏ । ଚାରିଜଣ ଲୋକ ଶବକୁ କାନ୍ଧରେ ବୋହି ନିଅନ୍ତି । ଶ୍ମଶାନ*

*ପର୍ଯ୍ୟନ୍ତ ସେମାନେ କଥାବାର୍ତ୍ତା କରି ଚାଲନ୍ତି । ଶ୍ମଶାନରେ ମୃତବ୍ୟକ୍ତିର ଅସ୍ଥିର ରଙ୍ଗ କପୋତ ପକ୍ଷୀର ଡେଣା ପରି ହୋଇଯାଏ ଏବଂ ତା'ର ତ୍ୟାଗ-ବଳିଦାନ ସବୁ ଭସ୍ମୀଭୂତ ହୋଇଯାଏ । ଯିଏ ଭିକ୍ଷାଦାନ କରିବାପାଇଁ ଶିକ୍ଷାଦାନ କରନ୍ତି, ସେମାନେ ହେଲେ ମହାମୂର୍ଖ ଏବଂ ଯିଏ ଅସ୍ତିତ୍ୱ [ଅମରତ୍ୱ] ର କଥା କହନ୍ତି, ସେ ହେଲେ ଅହଂକାରୀ ଏବଂ ଭଣ୍ଡ ମିଥ୍ୟାବାଦୀ । ଯେତେବେଳେ ଶରୀରର ଅନ୍ତ ହୁଏ, ଉଭୟ ମୂର୍ଖ ଏବଂ ପଣ୍ଡିତ ଖଣ୍ଡିତ ଓ ନଷ୍ଟବିନଷ୍ଟ ହୋଇଯାଆନ୍ତି । ମୃତ୍ୟୁ ପରେ ସେମାନଙ୍କର ଆଉ କିଛି ଅବଶେଷ ରହେ ନାହିଁ ।''*

(Digha Nikaya, 1.55, Tr. A.L. Basham, *The Wonder That Was India*, p.296)

ଗୌତମବୁଦ୍ଧ ଏହି ଧରଣର ସଂପ୍ରଦାୟକୁ 'ସର୍ପ-ମୀନବତ୍' ବୋଲି କହିଛନ୍ତି । ଅର୍ଥାତ୍ ଏମାନେ ହେଲେ କୁଚକ୍ରୀ । ରଢ଼ିବାଦୀମାନେ ଚାର୍ବାକ୍‌ମାନଙ୍କୁ ତିରସ୍କାର ଦୃଷ୍ଟିରେ ଦେଖନ୍ତି ଏବଂ ଅନୈତିକ ଆଚରଣକାରୀ ବୋଲି ଭର୍ତ୍ସନା କରନ୍ତି । ରଢ଼ିବାଦୀ ଓ ଚାର୍ବାକ୍‌ବାଦୀ ହେଲେ ପରସ୍ପର ବିରୋଧୀ ବିଚାର । ବ୍ରାହ୍ମଣମାନଙ୍କର ଦୃଷ୍ଟିକୋଣ ମଧ୍ୟ ଚାର୍ବାକ୍‌ବାଦୀଙ୍କ ପ୍ରତି ବିଶେଷ ରୂପରେ କଠୋର ଥିଲା । ସେମାନଙ୍କ କଠୋରତା ପଛରେ କାରଣ ହେଲା ଯେ, ଚାର୍ବାକ୍‌ବାଦୀମାନେ କର୍ମକାଣ୍ଡକୁ ମୂର୍ଖତାପୂର୍ଣ୍ଣ କହି ବିରୋଧ କରୁଥିଲେ ଏବଂ ପୁରୋହିତମାନେ କର୍ମକାଣ୍ଡକୁ ପାଳନ କରିବାକୁ କହୁଥିଲେ । କର୍ମକାଣ୍ଡର ପାଳନ ପୁରୋହିତମାନଙ୍କର ଜୀବନର ଆଧାର ଥିଲା । ପୁରୋହିତମାନଙ୍କ ଦ୍ୱାରା ରଚିତ ସାହିତ୍ୟରେ ଭୌତିକବାଦୀ ବିଚାରକୁ ଅଣଦେଖା କରାଯାଇଛି । ଫଳରେ ଭାରତୀୟ ଦର୍ଶନରେ ଭୌତିକବାଦର ବିଶେଷ ସ୍ଥାନ ନ ଥିଲା ବୋଲି ଅନେକ ଦିନ ଯାଏଁ ମନେକରାଯାଉଥିଲା । ମାତ୍ର ଜ୍ଞାନ ଚର୍ଚ୍ଚାରେ ବର୍ତ୍ତମାନ ଭୌତିକବାଦୀ ଚାର୍ବାକ୍ ଏବଂ ଲୋକାୟତ ସଂପ୍ରଦାୟର ଯୋଗଦାନକୁ ଆଗ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ଗଣାଯାଉଛି ।

ଯେତେ ଯାହା ସଂପ୍ରଦାୟ ଥିଲା, ତନ୍ମଧ୍ୟରେ ଦୁଇଟି ସଂପ୍ରଦାୟ ସ୍ଥାୟୀ ହୋଇ ରହିଗଲେ ଏବଂ ସ୍ୱତନ୍ତ୍ର ଧର୍ମର ମାନ୍ୟତା ପାଇଲେ । ଏହି ଦୁଇଟି ସଂପ୍ରଦାୟ ହେଲେ ଜୈନଧର୍ମ ଏବଂ ବୌଦ୍ଧଧର୍ମ । ସେମାନଙ୍କ ସ୍ଥାୟିତ୍ୱ ପଛରେ ଗୋଟାଏ କାରଣ ହେଲା ଯେ, ଅନ୍ୟ ସଂପ୍ରଦାୟ ତୁଳନାରେ ଏହି ଉଭୟ ସଂପ୍ରଦାୟର ବିଚାରରେ ସମକାଳୀନ ପରିବର୍ତ୍ତନକୁ ବୁଝିବା ନିମିତ୍ତ ଏକ ସାମଗ୍ରିକ ଦୃଷ୍ଟିକୋଣ ରହିଥିଲା । ଉଭୟ ଚିନ୍ତନ ପୂର୍ବବର୍ତ୍ତୀ ଚିନ୍ତାଧାରା ତଥା ନୈତିକତାରୁ ସମ୍ବନ୍ଧ ଛିନ୍ନକରି ପରିବର୍ତ୍ତନର ଚାପ ଆଗରେ ଅଧିକ ସମ୍ବେଦନଶୀଳ ଉତ୍ତର ପ୍ରସ୍ତୁତ କରିଥିଲେ । ଜୈନ ବିଚାର ବହୁ ପୂର୍ବରୁ ପ୍ରଚଳିତ ହୋଇ ରହିଥିଲା ବୋଲି ବିଶ୍ୱାସ କରାଯାଏ । ଏହି ବିଚାରର ଅନୁଗାମୀଙ୍କ ମତରେ ଜୈନ ଧର୍ମାଚାର୍ଯ୍ୟର ପରମ୍ପରା ବହୁ ପୂର୍ବରୁ ଚାଲୁଥିଲା ।

ଧର୍ମାଚାର୍ଯ୍ୟମାନେ 'ତୀର୍ଥଙ୍କର' ନାମରେ ପରିଚିତ ଥିଲେ । 'ତୀର୍ଥଙ୍କର'ର ଅର୍ଥ ହେଲା ମାର୍ଗଦର୍ଶନକାରୀ ବା ମୁକ୍ତିଦାତା । କେତେକ ଅନ୍ୟ ସଂପ୍ରଦାୟରେ ମଧ୍ୟ 'ତୀର୍ଥଙ୍କର' ପରମ୍ପରା ରହିଥିବାର ଦାବି କରାଯାଏ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ମହାବୀର 'ତୀର୍ଥଙ୍କର'ମାନଙ୍କର ବିଚାରଗୁଡ଼ିକୁ ଏକ ଠୋସ ସ୍ୱରୂପ ପ୍ରଦାନ କଲେ । ଏହାର ଫଳସ୍ୱରୂପ ଜୈନ ସଂପ୍ରଦାୟର ସଂଗଠନ ଓ ପ୍ରଚାର ହେଲା । ପ୍ରଥମେ ଏହି ସଂପ୍ରଦାୟ 'ନିର୍ଗ୍ରନ୍ଥ' ନାମରେ ପରିଚିତ ଥିଲା । ଜୈନ ଶବ୍ଦ 'ଜୀନ' ଅର୍ଥାତ୍ 'ବିଜେତା' ଶବ୍ଦରୁ ଜାତ । ମହାବୀର ଥିଲେ 'ଜୀନ', କାରଣ ସେ ଇନ୍ଦ୍ରିୟଗୁଡ଼ିକ ଉପରେ ବିଜୟଲାଭ କରିଥିଲେ । କଥିତଅଛି, ଯୁବାବସ୍ଥାରେ ମହାବୀର ଗୃହତ୍ୟାଗ କରି ସନ୍ୟାସୀ ହୋଇଥିଲେ । ଦୀର୍ଘ ବାର ବର୍ଷ ଧରି ସେ ସତ୍ୟର ଅନ୍ୱେଷଣରେ ବଣଜଙ୍ଗଲରେ ବୁଲୁଥିଲେ । ଅନ୍ତତଃ ତାଙ୍କର ଜ୍ଞାନ ପ୍ରାପ୍ତି ହେଲା । ମହାବୀରଙ୍କ ଧର୍ମପ୍ରଚାରର କ୍ଷେତ୍ର ଗାଙ୍ଗେୟ ସମତଳ ମଧ୍ୟରେ ସୀମିତ ଥିଲା । ମାତ୍ର ପରବର୍ତ୍ତୀ କାଳରେ ଦେଶର ଅନ୍ୟାନ୍ୟ ଭାଗରେ ଜୈନ ଅନୁଗାମୀମାନଙ୍କର ସଂଖ୍ୟା ବୃଦ୍ଧି ହେଲା । ବିଶେଷକରି କର୍ଣ୍ଣାଟକ ଏବଂ ପଶ୍ଚିମ ଭାରତରେ ଅନେକ ଜୈନ ଅନୁଗାମୀ ଦେଖିବାକୁ ମିଳିଲେ ।

ଜୈନଧର୍ମର ଶିକ୍ଷାକୁ ପ୍ରଥମେ ମୌଖିକ ପରମ୍ପରା ରୂପରେ ସୁରକ୍ଷିତ ରଖାଗଲା । ମହାବୀରଙ୍କର ପ୍ରାୟ ହଜାରେ ବର୍ଷ ପରେ ବଲଭୀରେ ଅନୁଷ୍ଠିତ ପାରିଷଦରେ ଜୈନ ଗ୍ରନ୍ଥଗୁଡ଼ିକର ସମ୍ପାଦନା କରାଗଲା । ସମ୍ପାଦିତ ଗ୍ରନ୍ଥର ଅନ୍ତିମ ପାଠକୁ କେତେକ ଜୈନଗ୍ରନ୍ଥ ଅନୁସରଣ କରିଥାନ୍ତି । 'ଆଚରଙ୍ଗ ସୂତ୍ର', 'ସୂତ୍ରକୃତାଙ୍ଗ' ଏବଂ 'କଳ୍ପସୂତ୍ର'କୁ ପୂର୍ବବର୍ତ୍ତୀ ଜୈନ ପାଠ ବୋଲି ମନେକରାଯାଏ । ସାଧାରଣତଃ ଧର୍ମସଂପ୍ରଦାୟଗୁଡ଼ିକ କ୍ଷେତ୍ରରେ ପ୍ରଥମେ ମୌଖିକ ପରମ୍ପରା ସୃଷ୍ଟି ହୁଏ ଏବଂ ପରେ ତାକୁ ଲିଖିତ ରୂପ ଦିଆଯାଏ; ଏହା ଜୈନଧର୍ମରେ ବି ହୋଇଥିଲା । ମାତ୍ର ଏଥିରେ ମୂଳ ଶିକ୍ଷାକୁ ନିଶ୍ଚିତ କରି ତାକୁ ପରେ ସଂଯୋଜିତ ହୋଇଥିବା ଭାଗରୁ ପୃଥକ୍ କରିବା କଠିନ ହୋଇପଡ଼େ । ପରେ ଜୈନଧର୍ମ ଦୁଇଟି ପ୍ରମୁଖ ସଂପ୍ରଦାୟରେ ବିଭକ୍ତ ହୋଇପଡ଼ିଲା । ତନ୍ମଧ୍ୟରୁ ଗୋଟାଏ ହେଲା 'ଦିଗାମ୍ବର', ଅର୍ଥାତ୍ 'ଦିକ୍' ଯାହାର ଅମ୍ବର ବା ବସ୍ତ୍ର, ଅର୍ଥାତ୍ ନଗ୍ନ । ଦ୍ୱିତୀୟ ଭାଗ ହେଲା 'ଶ୍ୱେତାମ୍ବର', ଅର୍ଥାତ୍ ଶ୍ୱେତବସ୍ତ୍ରଧାରୀ । ଜୈନଧର୍ମର ଇତିହାସ ଲିଖନ ଅବ୍ୟାହତ ରହିଲା ଏବଂ ଦ୍ୱାଦଶ ଶତାବ୍ଦୀରୁ ନେଇ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ଇତିହାସ ଲିଖନ କ୍ରିୟା ଖୁବ୍ ମହତ୍ତ୍ୱ ଲାଭ କଲା । ଏହି କାଳାଂଶରେ ପଶ୍ଚିମ ଭାରତରେ ଜୈନଧର୍ମର ଖୁବ୍ କର୍ତ୍ତୃତ୍ୱ ରହିଥିଲା ।

ଜୈନମାନେ କଦାପି ବୈଦିକ କର୍ତ୍ତୃତ୍ୱକୁ ସ୍ୱୀକାର କରୁ ନ ଥିଲେ । କେବଳ ବ୍ରାହ୍ମଣମାନେ ଜ୍ଞାନର ଅଧିକାରୀ – ଏପ୍ରକାର ଦାବିକୁ ମଧ୍ୟ ସେମାନେ ସ୍ୱୀକାର କରୁ ନ ଥିଲେ । ପ୍ରାରମ୍ଭିକ ଜୈନ ସିଦ୍ଧାନ୍ତରେ ଦେବାଦେବୀଙ୍କର ମହତ୍ତ୍ୱ ନ ଥିଲା । ଜୈନ ସିଦ୍ଧାନ୍ତ

ଅନୁଯାୟୀ, ଏକ ଶାଶ୍ୱତ ନିୟମାନୁସାରେ ବିଶ୍ୱବ୍ରହ୍ମାଣ୍ଡ ପରିଚାଳିତ ହୋଇଥାଏ ଏବଂ ନିୟମିତ ଢଙ୍ଗରେ ଏହା ଉତ୍‌ଥାନ ଓ ପତନର ଲହଡ଼ି ଅତିକ୍ରମ କରୁଥାଏ । ଜୀବନର ଲକ୍ଷ୍ୟ ହେଲା ଆତ୍ମାର ଶୁଦ୍ଧିକରଣ, କାରଣ ଶୁଦ୍ଧ ଆତ୍ମା କେବଳ ଶରୀରରୁ ବିମୁକ୍ତି ପାଏ ଏବଂ ମହାନନ୍ଦର ଅବସ୍ଥାରେ ଅବସ୍ଥାନ କରେ । କେବଳ ଜ୍ଞାନ ଲାଭ କଲେ ଶୁଦ୍ଧିକରଣ ପ୍ରାପ୍ତି ହୁଏ ନାହିଁ, କାରଣ ଜ୍ଞାନଲାଭ ହେଲା ଏକ ଆପେକ୍ଷିକ ତତ୍ତ୍ୱ । କେତେକ ଉପନିଷଦର ଉପଦେଷ୍ଟା ଜ୍ଞାନପ୍ରାପ୍ତିକୁ ଶୁଦ୍ଧିକରଣ ବୋଲି କହିଛନ୍ତି, ଯାହାକୁ ଜୈନସିଦ୍ଧାନ୍ତ ଗ୍ରହଣ କରେ ନାହିଁ । ଏହି ସତ୍ୟକୁ ଏକ କାହାଣୀ ମାଧ୍ୟମରେ ବ୍ୟାଖ୍ୟା କରାଯାଇଛି । କାହାଣୀରେ ଛଅଜଣ ଦୃଷ୍ଟିହୀନ ବ୍ୟକ୍ତି ଏକ ହସ୍ତୀର ଗୋଟାଏ ଗୋଟାଏ ଅଙ୍ଗକୁ ସ୍ପର୍ଶକରି ହସ୍ତୀଟିର ପୂରା ଚିତ୍ରଣ କରିବାକୁ ଯାଇ ଯେମିତି ଭୁଲ୍ କରନ୍ତି, ସେମିତି ଜ୍ଞାନରୁ ସାମାନ୍ୟ ଟିକିଏ ପାଇ ନିଜକୁ ଜ୍ଞାନୀ ମନେକରିବା ଭୁଲ୍ କଥା । ହସ୍ତୀର ଶୁଣ୍ଢକୁ ଛୁଇଁ କେହି ହସ୍ତୀଟିକୁ ରସି ସଦୃଶ ବୋଲି କହେ ତ ଆଉ କିଏ ତାକୁ ସାପ ଭଳି ବା ଗଛର ଗଣ୍ଡି ଭଳି ବୋଲି କହେ । ଅର୍ଥାତ୍ ବ୍ୟକ୍ତି ଜ୍ଞାନର ଅଣୁମାତ୍ର କେବଳ ପାଇଥିବାରୁ, ସେହି ସାମାନ୍ୟ ଜ୍ଞାନ ତାକୁ ମୁକ୍ତି ଦେବାରେ ଅସମର୍ଥ ରହେ । ଆତ୍ମାର ଶୁଦ୍ଧିକରଣ ପାଇଁ ଜୀବନଧାରଣ କରିବା ଜରୁରି । ଜୈନମାନେ ସନ୍ତୁଳିତ ଜୀବନ ଉପରେ ବିଶେଷ ମହତ୍ତ୍ୱ ଦିଅନ୍ତି । ମହାବୀର ଜୈନଙ୍କ ମତରେ, କେବଳ ଜୈନଭିକ୍ଷୁ ପକ୍ଷରେ ସନ୍ତୁଳିତ ଜୀବନ ଧାରଣ ସମ୍ଭବପର । ମାତ୍ର ବାସ୍ତବିକତା ହେଲା ଯେ, ସନ୍ୟାସ ବ୍ରତ ଗ୍ରହଣ କରିବା ଉତ୍ତାରୁ ଜୈନଭିକ୍ଷୁ ବା ଭିକ୍ଷୁଣୀ ଗୃହସ୍ଥ ଉପରେ ଆଶ୍ରିତ ଥିଲେ । ଜୈନଭିକ୍ଷୁ ଭିକ୍ଷାଟନ ପାଇଁ ଯେମିତି ଶପଥ ନେଉଥିଲେ, ଜୈନ ଗୃହସ୍ଥ ସେମିତି ଭିକ୍ଷାଦାନ ପାଇଁ ଶପଥ ନେଉଥିଲେ ।

ଜୈନଧର୍ମରେ ଅହିଂସା ବ୍ରତର ପାଳନ ସମସ୍ତ ସୀମାକୁ ଅତିକ୍ରମଣ କରୁଥିଲା । ଅଜାଣତରେ ଚାଲୁଥିବାବେଳେ ଯଦି ପାଦତଳେ ଦଳିହୋଇ ପିମ୍ପୁଡ଼ିଟିଏ ମରିଯାଏ, ତାହା ଅପରାଧ ଶ୍ରେଣୀଭୁକ୍ତ ହୁଏ । ଅଧିକ ରଢ଼ିବାଦୀ ଜୈନମାନେ ମୁହଁ ଓ ନାକକୁ କପଡ଼ାରେ ଆବୃତ୍ତ କରି ରଖୁଥିଲେ, ଯାହାଫଳରେ କି ସେମାନେ ଶ୍ୱାସପ୍ରଶ୍ୱାସରେ କୌଣସି ଜୀବର ଜୀବନ ହାନି କରିବେ ନାହିଁ । 'ଆଚରଙ୍ଗ ସୂତ୍ର' ଅନୁସାରେ, ଜୈନଧର୍ମରେ କୌଣସି ପ୍ରାଣୀର ଜୀବନ ନେବା, ତା' ପ୍ରତି ହିଂସା ଆଚରଣ କରିବା, ଦୁର୍ବ୍ୟବହାର କରିବା, ତାକୁ କଷ୍ଟ ଦେବା କିମ୍ବା ତାକୁ ବିସ୍ଥାପିତ କରିବା ସମ୍ପୂର୍ଣ୍ଣତଃ ବର୍ଜିତ ଥିଲା । ଅହିଂସା ଉପରେ ଅଧିକ ମହତ୍ତ୍ୱ ଦେଉଥିବାରୁ ଜୈନମାନେ କୃଷିକର୍ମରୁ ନିବୃତ୍ତ ହେଲେ, କାରଣ କୃଷିରେ କୀଟପତଙ୍ଗକୁ ମାରିବା ଏକ ଆବଶ୍ୟକତା ହୋଇପଡ଼େ । ଯେଉଁ ହସ୍ତଶିଳ୍ପରେ ଅନ୍ୟ ଜୀବର ଜୀବନ ପ୍ରତି ଭୟ ଥିଲା, ସେହି ହସ୍ତଶିଳ୍ପକୁ ମଧ୍ୟ ସେମାନେ ପରିତ୍ୟାଗ କଲେ । କେବଳ ବାଣିଜ୍ୟ ଓ ବ୍ୟାପାର ବୃତ୍ତିରେ ସେମାନେ ସୈଦ୍ଧାନ୍ତିକ ରୂପରେ ରହିପାରିଲେ । ଜୈନଧର୍ମରେ

ମିତବ୍ୟୟିତାକୁ ପ୍ରୋତ୍ସାହନ ଦିଆଯାଉଥିଲା । ତେଣୁ ମିତବ୍ୟୟିତା ଜୈନମାନଙ୍କ ପାଇଁ ଏକ ନୈତିକ କର୍ତ୍ତବ୍ୟ ହେଲା । ବାଣିଜ୍ୟ ବ୍ୟବସାୟରେ ମଧ୍ୟ ଏହାକୁ ପାଳନ କରିବାର ଆବଶ୍ୟକତା ରହିଥିଲା । ଏହି ପ୍ରକ୍ରିୟାରେ ପ୍ରସ୍ତୁତ ସାମଗ୍ରୀର ବିକାକିଣାରେ ଜୈନମାନେ ବିଶେଷଜ୍ଞ ସିଦ୍ଧ ହେଲେ ଏବଂ ମଧ୍ୟସ୍ଥି ରୂପରେ କାର୍ଯ୍ୟ କରିବାକୁ ଲାଗିଲେ । ବିତ୍ତୀୟ ବ୍ୟବସାୟ ପ୍ରତି ସେମାନଙ୍କର ଅଧିକ ଆଗ୍ରହ ରହୁଥିଲା । କ୍ରମଶଃ ଜୈନମାନେ ସହରୀ ସଂସ୍କୃତିର ପ୍ରସାରରେ ଖୁବ୍ ଜଡ଼ିତ ହୋଇ ରହିଲେ ।

ମହାବୀର ଓ ଗୌତମବୁଦ୍ଧ ଥିଲେ ପ୍ରାୟ ସମକାଳୀନ ଧର୍ମଉପଦେଷ୍ଟା । କାଳକ୍ରମେ ବୁଦ୍ଧ ଅଧିକ ପ୍ରସିଦ୍ଧ ହେଲେ, କାରଣ ତାଙ୍କ ପ୍ରବର୍ତ୍ତିତ ଧର୍ମ ଏସିଆର କୋଣଅନୁକୋଣକୁ ପ୍ରସାରିତ ହେଲା । ସିଦ୍ଧାର୍ଥ ଗୌତମଙ୍କର ଜ୍ଞାନପ୍ରାପ୍ତି ପରେ ନାମ ହେଲା ବୁଦ୍ଧ । ଏହାର ଅର୍ଥ ହେଲା ପ୍ରକୃତ ଜ୍ଞାନପ୍ରାପ୍ତ ହୋଇଥିବା ବ୍ୟକ୍ତି । ଗୌତମ ଥିଲେ ଶାକ୍ୟ କୁଳର । ତାଙ୍କର ପିତା ଥିଲେ ଶାକ୍ୟ ଗଣସଂଘର କ୍ଷତ୍ରିୟ ରାଜା । ବୁଦ୍ଧଙ୍କର ଜୀବନଚରିତର ଯୀଶୁଖ୍ରୀଷ୍ଟଙ୍କର ଜୀବନ କାହାଣୀ ସହିତ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ– ଉଭୟଙ୍କୁ ନେଇ ରହିଥିବା ଅବଧାରଣାରେ ଅକାମ ଗର୍ଭାଧାନ ଏବଂ ଶୈତାନର ପ୍ରରୋଚନା କଥା ରହିଥିଲା । ବୁଦ୍ଧଙ୍କ ଜନ୍ମ ହୋଇଥିଲା ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ । ସେ ଜଣେ ରାଜପୁତ୍ରର ଜୀବନ ବ୍ୟତୀତ କରୁଥିଲେ । ମାତ୍ର ଜଣେ ରୁଗ୍ଣ, ଜଣେ ଜରାଗ୍ରସ୍ତ ଏବଂ ଏକ ମୃତକକୁ ଦେଖିବା ପରେ ତାଙ୍କ ମନ ବିତୃଷ୍ଣାରେ ଭରିଗଲା । ଶେଷରେ ଦିନେ ରାତିରେ ଘର-ପରିବାର ତ୍ୟାଗକରି ସେ ସନ୍ୟାସୀ ଜୀବନର ମାର୍ଗରେ ଚାଲିଗଲେ । ଅନେକ କୃଚ୍ଛ୍ରସାଧନା ପରେ ସେ ଅନୁଭବ କଲେ ଯେ ପୁନର୍ଜନ୍ମରୁ ମୁକ୍ତି ପାଇବା ଲାଗି ଏହା ପ୍ରକୃଷ୍ଟ ମାର୍ଗ ନୁହେଁ । ତା'ପରେ ସେ ଧ୍ୟାନ ମାଧ୍ୟମରେ ମୁକ୍ତିର ମାର୍ଗ ଅନ୍ୱେଷଣ କଲେ । ଶେଷରେ ଧ୍ୟାନର ଅଣଚାଶ ଦିନରେ ସେ ଜ୍ଞାନଲାଭ କଲେ ବୋଲି ଘୋଷଣା କଲେ । ଏହା ତାଙ୍କୁ ସଂସାରରେ ବ୍ୟାପ୍ତ ଦୁଃଖର କାରଣ ଜାଣିବାରେ ସାହାଯ୍ୟ କଲା । ପ୍ରଥମ ଧର୍ମୋପଦେଶ ବୁଦ୍ଧ ବାରାଣାସୀ ନିକଟସ୍ଥ ସାରନାଥର ମୃଗ ଉଦ୍ୟାନରେ ନିଜର ପାଞ୍ଚଜଣ ଶିଷ୍ୟଙ୍କୁ ପ୍ରଦାନ କରିଥିଲେ ।

ଏହି ଧର୍ମୋପଦେଶକୁ 'ଧର୍ମଚକ୍ର ପ୍ରବର୍ତ୍ତନ ପ୍ରବଚନ' କୁହାଯାଏ । ଏହା ହେଉଛି ବୁଦ୍ଧଙ୍କ ଉପଦେଶର ବୀଜମନ୍ତ୍ର । ଏଥିରେ ଚାରୋଟିଯାକ ମହାସତ୍ୟ ରହିଛି : ଜୀବନ ଦୁଃଖମୟ; କାମନା ହିଁ ଦୁଃଖର କାରଣ; କାମନାର ବିନାଶରେ ନିର୍ବାଣର ମାର୍ଗ ରହିଛି ଏବଂ ନିର୍ବାଣ ପୁନର୍ଜନ୍ମରୁ ବିମୁକ୍ତି ଦିଏ ଏବଂ ଅଷ୍ଟାଙ୍ଗ ମାର୍ଗ ପାଳନରେ ନିର୍ବାଣପ୍ରାପ୍ତି ସମ୍ଭବ । ଅଷ୍ଟାଙ୍ଗ ମାର୍ଗ ହେଲା : ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ୍ ବଚନ, ସମ୍ୟକ୍ ଆଚରଣ,

ସମ୍ୟକ୍ ଆଜୀବିକା, ସମ୍ୟକ୍ ଉଦ୍ୟମ, ସମ୍ୟକ୍ ସ୍ମୃତି ଏବଂ ସମ୍ୟକ୍ ଧ୍ୟାନ । ଆଠଟିଯାକ ମାର୍ଗର ସମାୟୋଜନକୁ ମଧ୍ୟମ ମାର୍ଗ ବୋଲି ବର୍ଣ୍ଣନା କରାଯାଏ ।

ବୁଦ୍ଧ ବାଣୀକୁ ବୁଝିବା ନିମନ୍ତେ କୌଣସି ରହସ୍ୟବାଦୀ ଚିନ୍ତନର ଆବଶ୍ୟକତା ପଡୁ ନ ଥିଲା, ଅଥବା ଜଟିଳ କର୍ମକାଣ୍ଡ ଆୟୋଜନର ବି ଲୋଡ଼ା ନ ଥିଲା । କେବଳ ଲୋଡ଼ା ସଦାଚାର ପ୍ରତି ପ୍ରତିବଦ୍ଧତା । ଏହାର ଏକ ମୁଖ୍ୟ ବିଶେଷତ୍ୱ ହେଲା ଯେ, ଏହା କୌଣସି ଜାତିଗତ ବିଶେଷାଧିକାର କିମ୍ବା ନିର୍ଯୋଗ୍ୟତାକୁ ଭିତ୍ତିକରି ସୃଷ୍ଟି ହୋଇ ନଥିଲା; କେବଳ ସାମାଜିକ କଲ୍ୟାଣକୁ ଧ୍ୟାନରେ ରଖିଥିଲା । ବୁଦ୍ଧଧର୍ମର ଏହିପ୍ରକାର ଦୃଷ୍ଟିକୋଣକୁ ସହରୀ ଜୀବନରେ ପ୍ରଚଳିତ ଲୋକାଚାର ପ୍ରତି ସମ୍ବେଦନଶୀଳତା ଭାବରେ ଦେଖାଯାଇ ପାରିବ । ଏଥିରେ ଥିବା ହେତୁବାଦୀ ତର୍କକୁ ଧ୍ୟାନ ଦେଲେ ଜଣାଯିବ ଯେ, କାର୍ଯ୍ୟ ଓ କାରଣ ମଧ୍ୟରେ ଥିବା ସମ୍ବନ୍ଧକୁ ଆଧାର କରି ବିଶ୍ଳେଷଣ କରିବା ବୌଦ୍ଧଧର୍ମର ଏକ ବୈଶିଷ୍ଟ୍ୟରେ ପରିଣତ ହୋଇଥିଲା । ବୌଦ୍ଧଧର୍ମର ବିଚାରଧାରାରେ ନା ଦୈବ ହସ୍ତକ୍ଷେପ ପାଇଁ ଅବସର ଥିଲା ନା ରହସ୍ୟବାଦର କଥା ରହିଥିଲା । ବୁଦ୍ଧ ନିଜ ଭାଷାରେ ରହସ୍ୟବାଦକୁ 'ଜିରାରୁ ଶିରା କାଢ଼ିବା କଥା' ବୋଲି କହୁଥିଲେ । ନିଜ ବିଚାରକୁ ବୁଦ୍ଧ କଦାପି ଦେବବାଣୀ ବୋଲି କହି ନ ଥିଲେ । ବରଂ ତାଙ୍କ ମତରେ, ସେ କେବଳ ତାଙ୍କୁ ବୋଧ ହୋଇଥିବା ସତ୍ୟର ଆବିଷ୍କାର କରିବାକୁ ପ୍ରୟାସ କରିଥିଲେ, କାରଣ ତା'ର ସାମାଜିକ ଆବଶ୍ୟକତା ରହିଥିଲା ।

ସୃଷ୍ଟିର ରଚନା କିମ୍ବା ପାଳନ ପାଇଁ କୌଣସି ଦୈବୀଶକ୍ତିର ଆବଶ୍ୟକତା ରହିଥିବା କଥା ବୌଦ୍ଧଧର୍ମ କହେ ନାହିଁ । ବରଂ ନିରୀଶ୍ୱରବାଦୀଙ୍କ ପରି ପ୍ରାକୃତିକ ଢଙ୍ଗରେ ବ୍ରହ୍ମାଣ୍ଡର ଉତ୍‌ଥାନ ଓ ପତନ ହୁଏ ବୋଲି ଯୁକ୍ତି କରେ । ଆରମ୍ଭରେ ବିଶ୍ୱ ଥିଲା ଏକ ଅପାର ଆନନ୍ଦର ଉଦ୍ୟାନ । ମାତ୍ର ମନୁଷ୍ୟ କାମନାର ବଶୀଭୂତ ହେବାଦ୍ୱାରା ଏହା ଦୁଃଖର ଭଣ୍ଡାରରେ ପରିଣତ ହେଲା । ବୌଦ୍ଧଧର୍ମରେ ବେଦକୁ ଦେବରଚିତ ବୋଲି କୁହାଯାଏ ନାହିଁ । ଅବଶ୍ୟ ବୌଦ୍ଧଧର୍ମ ବ୍ୟତୀତ ଆଉ ଅନେକ ସିଦ୍ଧାନ୍ତରେ ମଧ୍ୟ ବେଦର ଦେବରଚିତ ହେବା ତର୍କକୁ ସ୍ୱୀକାର କରାଯାଏ ନାହିଁ । ବୌଦ୍ଧଧର୍ମ ଅନେକ ବ୍ରାହ୍ମଣୀୟ କର୍ମକାଣ୍ଡ, ବିଶେଷକରି ପଶୁବଳିକୁ ସ୍ୱୀକୃତି ଦିଏ ନାହିଁ । ଶ୍ରାଦ୍ଧକ୍ରିୟା କିମ୍ବା ଅନ୍ୟାନ୍ୟ ପବିତ୍ର ଅନୁଷ୍ଠାନରେ ବୌଦ୍ଧଧର୍ମ ଲୋକପ୍ରିୟ ଓ ଲୋକ ସ୍ୱୀକୃତ ପରମ୍ପରାର ଆଡ଼ମ୍ବରହୀନ ଉପାଦାନକୁ ଗ୍ରହଣ କରିଥିଲା । ଫଳରେ ଅମୂର୍ତ୍ତ ବିଚାର ଏବଂ ବୈଦିକ ଧର୍ମ ତୁଳନାରେ ଏହା କମ୍ ବ୍ୟୟସାପେକ୍ଷ ଏବଂ ସହଜ ସରଳ ମନେହେଲା । ପ୍ରଶାସନ ଓ ରାଜ୍ୟର ଉଦ୍ଭବକୁ ଦୃଷ୍ଟିରେ ରଖି ବୁଦ୍ଧଙ୍କର ବିଚାରକୁ ଦେଖିଲେ ଜଣାପଡ଼େ ଯେ ଏହା ଈଶ୍ୱରଠାରୁ ସ୍ୱାଧୀନ ଏକ ବିଚାର ଭାବରେ ପ୍ରତିଷ୍ଠିତ ହୋଇଥିଲା । ବୈଦିକ ବ୍ରାହ୍ମଣବାଦରେ ଶାସନତନ୍ତ୍ରର ଆରମ୍ଭ ହେବା ପଛରେ ଈଶ୍ୱରଙ୍କ

ସ୍ୱୀକୃତି ରହିଥିବା କଥା କୁହାଯାଏ । ମାତ୍ର ବୌଦ୍ଧଧର୍ମର ମତ ଅନୁସାରେ, କ୍ରମିକ ସାମାଜିକ ପରିବର୍ତ୍ତନର ଏକ ପ୍ରକ୍ରିୟାରେ ପ୍ରଶାସନିକ ତନ୍ତ୍ରର ଉଦ୍ଭବ ହୋଇଥିଲା, କାରଣ ପରିବାର ସ୍ଥାପନ ହେଲାପରେ ଏବଂ ସମ୍ପତ୍ତିର ଅଧିକାର କଥା ଆସିବା ପରେ ସମାଜରେ କଳହ ଉପୁଜିଲା । ତା'ର ନିବାରଣ ପାଇଁ ଲୋକମାନେ ମିଶି ଜଣକୁ ପ୍ରଶାସନ କାର୍ଯ୍ୟ ସକାଶେ ନିଯୁକ୍ତ କଲେ । ଲୋକଙ୍କ ଦ୍ୱାରା ନିଯୁକ୍ତ ପ୍ରଶାସକଙ୍କୁ ଲୋକଙ୍କୁ ସୁରକ୍ଷା ପ୍ରଦାନ କରିବା ସକାଶେ ବିଧିବିଧାନ କରିବାକୁ ଦାୟିତ୍ୱ ଦିଆଗଲା । ସାମାଜିକ କଳହର ଉନ୍ମେଷ ଏବଂ ବିଧିର ଆବଶ୍ୟକତାକୁ ବ୍ୟାଖ୍ୟା କରିବାପାଇଁ ଏହା ଥିଲା ଏକ ତାର୍କିକ ଉଦ୍ୟମ ।

ପ୍ରକୃତରେ ଯଦି ଅନୁଶୀଳନ କରାଯାଏ ଜଣାଯିବ ଯେ, ତର୍କ ଏବଂ ହେତୁବାଦିତାର ଉପାଦାନକୁ ମହତ୍ତ୍ୱ ଦେଇ ବୁଦ୍ଧ ନିଜ ସମୟର ଦାର୍ଶନିକ ବିଚାରଗୁଡ଼ିକୁ ପ୍ରତିବିମ୍ବିତ ମାତ୍ର କରୁଥିଲେ । ପୁନର୍ଜନ୍ମ ଚକ୍ରରୁ ମୁକ୍ତିର ଅର୍ଥ ନିର୍ବାଣ, ଯାହାର ବିଶଦ ଅର୍ଥ ହେଲା ମହାନନ୍ଦ କିମ୍ବା ସର୍ବକାଳୀନ ବିଲୁପ୍ତି । ତେଣୁ କର୍ମ ଓ ସଂସାରର ସିଦ୍ଧାନ୍ତ କର୍ମ ସାଙ୍ଗରେ ପୁନର୍ଜନ୍ମକୁ ଯୋଡୁଥିଲା । ଯଦିଓ ବୁଦ୍ଧ ଆତ୍ମାର ଅବସ୍ଥିତିକୁ ସ୍ୱୀକାର କରି ନ ଥିଲେ, ବୌଦ୍ଧଧର୍ମର ମୌଳିକ ତତ୍ତ୍ୱ ହେଲା କର୍ମ ଓ ସଂସାର । ବୁଦ୍ଧଙ୍କ ମତରେ, କର୍ମ ଦ୍ୱାରା ଚେତନାକୁ ଈପ୍ସିତ ରୂପ ଦିଆଯାଇପାରେ । ବୁଦ୍ଧଧର୍ମର କର୍ମ ଓ ପୁନର୍ଜନ୍ମର ସିଦ୍ଧାନ୍ତକୁ ଆତ୍ମାର ଅସ୍ୱୀକୃତି ଏକ ଭିନ୍ନ ମୋଡ଼ ଦେଲା । ବୁଦ୍ଧଧର୍ମର ଚତୁଃସତ୍ୟରେ କର୍ମର ଅବଧାରଣା ଅବ୍ୟକ୍ତ ରୂପରେ ବିଦ୍ୟମାନ ଥିଲା । ଏହା ଆଂଶିକ ରୂପରେ କାମନା ଓ ଦୁଃଖ ସହିତ ଯୋଡ଼ିହୋଇ ରହିଥିଲା । ପ୍ରାରମ୍ଭିକ ଉପନିଷଦର ବିମର୍ଶ ପ୍ରତି ବୁଦ୍ଧଙ୍କର ଉପଦେଶକୁ ଏକ ଉତ୍ତର ରୂପେ ଦେଖାଯାଇ ପାରିବ, ଯେଉଁଥିରେ କେତେକ ବିଚାର ସହିତ ସହମତି ଏବଂ ଅନ୍ୟ ବିଚାର ସହିତ ଅସହମତି ରହିଥିଲା । ଅସହମତିକୁ ନଗଣ୍ୟ କୁହାଯାଇ ପାରିବ ନାହିଁ । ମାତ୍ର ବୁଦ୍ଧଙ୍କର ବିଚାର ଥିଲା ବୈଦିକ ବିଚାରଧାରାରୁ ପୃଥକ୍ । ତା' ସହିତ ଏହା ତତ୍‌କାଳୀନ ଐତିହାସିକ ପରିବର୍ତ୍ତନର ଏକ ଉଚିତ ଉତ୍ତର ହେଲା । ଏହି ପରିବର୍ତ୍ତନରେ ରାଜ୍ୟର ଅଭ୍ୟୁଦୟ ଏବଂ ସହରର ବିକାଶ କଥା ରହିଥିଲା । ସେହି ପରିବର୍ତ୍ତନରୁ ଏହି ଧରଣର ପ୍ରଶ୍ନର ଉଦ୍ଭବ ହେଉଥିଲା ଏବଂ ତା'ର ଉତ୍ତର ପ୍ରଚଳିତ ବିଚାରଧାରାରେ ନ ଥିଲା । ପରିବର୍ତ୍ତନ ପ୍ରକ୍ରିୟାରେ ଯେଉଁ ସବୁ ସଂସ୍ଥାର ଉଦୟ ହେଉଥିଲା, ସେଗୁଡ଼ିକ ଅସ୍ଥିର ଅବସ୍ଥାରେ ରହିଥିଲା । ସାମାଜିକ ଅନୁକ୍ରମକୁ ପରିଭାଷିତ କରିବାଲାଗି ଯାହାସବୁ ଚାଲିଥିଲା, ତହିଁରେ ବ୍ୟକ୍ତି ମର୍ଯ୍ୟାଦା ଲାଭ କରିବା ନିମନ୍ତେ ସଂଘର୍ଷ କରୁଥିଲା । ସାମାଜିକ ଦାୟିତ୍ୱକୁ ତ୍ୟାଗକରି ସନ୍ନ୍ୟାସୀ ହେବାର ମନୋବୃତ୍ତି ପଛରେ ଗୋଟାଏ ସୀମା ପର୍ଯ୍ୟନ୍ତ ଏହିସବୁ ପରିବର୍ତ୍ତନର ପରିଣାମ ରହିଥିଲା । ତା' ସହିତ ଯେଉଁ ପ୍ରଶ୍ନଗୁଡ଼ିକ ପରିବର୍ତ୍ତନର ସମ୍ମୁଖୀନ ହେଉଥିବା ସମାଜକୁ ବ୍ୟତିବ୍ୟସ୍ତ କରୁଥିଲା, ତା'ର ଉତ୍ତର ପାଇବା ଲାଗି ଉଦ୍ୟମ ମଧ୍ୟ ଜାରି ରହିଥିଲା ।

ବ୍ରାହ୍ମଣ୍ୟ ବିଚାରର ବିପରୀତ, ବୁଦ୍ଧଙ୍କର କର୍ମର କଳ୍ପନା ବର୍ଣ୍ଣ ଆଧାରିତ ସମାଜର ନିୟମ ସହିତ ବାନ୍ଧିହୋଇ ନ ଥିଲା । ସାମାଜିକ ନୈତିକତା ମଧ୍ୟ ବର୍ଣ୍ଣ ନିୟମ ଦ୍ୱାରା ନିର୍ଦ୍ଧାରିତ ହୋଇ ନ ଥିଲା । ବ୍ୟକ୍ତିର କର୍ମ ସୁଧୁରିଲେ ଶ୍ରେଷ୍ଠତର ଜନ୍ମ ସୁନିଶ୍ଚିତ ହେବ ଏବଂ ଅଷ୍ଟାଙ୍ଗ ମାର୍ଗ ଆଧାରରେ ସାମାଜିକ ନୈତିକତାର ନିୟମକୁ ପାଳନ କଲେ କର୍ମ ସୁଧୁରିବ । କେବଳ ବ୍ରାହ୍ମଣୀୟ ରଚନାରେ ଦିଆଯାଇଥିବା ପରମ କର୍ତ୍ତବ୍ୟକୁ ପାଳନ କଲେ କର୍ମ ସୁଧୁରିବ ନାହିଁ । ଏହା ଥିଲା ବୁଦ୍ଧବାଣୀ । ବୁଦ୍ଧ ଜାତିର ବିଲୁପ୍ତି କଥା କହି ନ ଥିଲେ, କାରଣ ତା' ପାଇଁ ସମାଜର ଏକ ବୈପ୍ଳବିକ ପୁନର୍ବିନ୍ୟାସର ଆବଶ୍ୟକତା ଥିଲା । ସେ ବର୍ଣ୍ଣ ହେଉ ବା ଜାତି, ଏହା ସାମାଜିକ ମାନ୍ୟତାର ଦ୍ୟୋତକ ଥିଲା । ଜାତି ବୈବାହିକ ପରିଧି ଏବଂ ବ୍ୟକ୍ତିର ବୃତ୍ତି ନିର୍ଦ୍ଧାରଣ କରୁଥିଲା । ସାମାଜିକ ନୈତିକତାର ନିୟମ ଥିଲା ଏକ ସ୍ୱତନ୍ତ୍ର ପ୍ରସଙ୍ଗ; ଏହାର ଜାତି ମାନ୍ୟତା ସହିତ ସମ୍ବନ୍ଧ ନ ଥିଲା । ପାଶ୍ଚାତ୍ୟର ଯୋନଙ୍କ ମଧ୍ୟରେ ବିଦ୍ୟମାନ ମାଲିକ ଓ ଦାସର ଦ୍ୱିଭାଜନ ସମ୍ବନ୍ଧରେ ବୁଦ୍ଧ ବିସ୍ମୟ ପ୍ରକାଶ କରିଥିଲେ । ଏହା ଥିଲା ଜାତିର ସାର୍ବଭୌମିକତା ଦାବିକୁ ନେଇ ତାଙ୍କର ପ୍ରଶ୍ନ ।

ଜାତି ପ୍ରଶ୍ନକୁ ଏକ ଅବ୍ୟକ୍ତ ଓ ଅପ୍ରତ୍ୟକ୍ଷ ଢଙ୍ଗରେ ବୁଦ୍ଧ ପ୍ରଶ୍ନ କରିଥିଲେ, କାରଣ ସ୍ତ୍ରୀମାନଙ୍କୁ ବିବାହର କର୍ତ୍ତୃତ୍ୱରେ ବାନ୍ଧି ନ ହୋଇ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ କରିବାକୁ ସେ ଅଧିକାର ଦେଇଥିଲେ । ତାଙ୍କର ସଂଶୟ ସତ୍ତ୍ୱେ, ସ୍ତ୍ରୀମାନଙ୍କୁ ଭିକ୍ଷୁଣୀ ରୂପରେ ସଂଘରେ ଯୋଗ ଦେବାକୁ ସେ ରାଜି ହୋଇଥିଲେ । ସୀମିତ ମାତ୍ରାରେ ହେଉପଛେ, ସଂଘ ହେଲା ଏକ ବୈକଳ୍ପିକ ଜୀବନ ପନ୍ଥା । ସ୍ତ୍ରୀମାନଙ୍କୁ ସଂଘରେ ଯୋଗଦେବାବେଳେ ତାଙ୍କ ମନରେ ଯେଉଁ ସଂଶୟ ଥିଲା, ତା' ପଛରେ କାରଣ ଥିଲା ଯେ ଏହା କାଳେ ବିବାହ ଓ ପରିବାର ବ୍ୟବସ୍ଥାକୁ ଦୁର୍ବଳ କରିଦେବ । ବୌଦ୍ଧ ଭିକ୍ଷୁଣୀମାନେ ରଚନା କରିଥିବା କବିତା ଓ ସ୍ତୋତ୍ରଗୁଡ଼ିକ ପରେ 'ଥେରିଗାଥା' ରୂପରେ ସଂକଳିତ ହୋଇଥିଲା । ଏହା ସ୍ତ୍ରୀମାନଙ୍କର ସମ୍ବେଦନାକୁ ଅଭିବ୍ୟକ୍ତ କରେ । ସ୍ତ୍ରୀମାନେ ବୌଦ୍ଧଧର୍ମର ଗୃହସ୍ଥି, ଅନୁଗାମୀ ଓ ସଂରକ୍ଷିକା ହୋଇପାରୁଥିଲେ । ଏଥିରୁ ସେମାନଙ୍କୁ ଅଧିକ ଅଧିକାରପୂର୍ଣ୍ଣ ଭୂମିକା ପ୍ରାପ୍ତ ହେଲା । ଉଦାହରଣ ସ୍ୱରୂପ, ଗାଙ୍ଗେୟ ସମତଳର ନଗରୀମାନଙ୍କରେ ଅନେକ ସୁସଂବୃଦ୍ଧ ଓ ସୁସଂସ୍କୃତ ଗଣିକା ରହିଥିଲେ । ସେମାନେ ବୌଦ୍ଧସଂଘକୁ ପ୍ରଭୂତ ଦାନ ଦେଇଥିଲେ । ଏହି ସ୍ତ୍ରୀମାନଙ୍କୁ ସେମାନଙ୍କ ଉପଲବ୍ଧି ପାଇଁ ବୌଦ୍ଧସଂଘରେ ସମ୍ମାନ ଓ ସଂଘରେ ଯୋଗଦେବା ପାଇଁ ଅନୁମତି ମିଳୁଥିଲା । ବେଶ୍ୟା ଓ ନଗରବଧୂ ଗଣିକାମାନେ ଥିଲେ ନଗରୀୟ ଜୀବନର ଉପଜ । ମାତ୍ର ଉଭୟଙ୍କ ମଧ୍ୟରେ ସଂଘ ପାର୍ଥକ୍ୟ ଦେଖୁଥିଲା ଏବଂ ଗଣିକାକୁ ତା'ର ସାଂସ୍କୃତିକ ଉପଲବ୍ଧ ଯୋଗୁଁ ଗ୍ରହଣ କରୁଥିଲା । ସ୍ତ୍ରୀମାନଙ୍କ ଦାନ ଦେବା ଥିଲା ସେମାନଙ୍କ ଆତ୍ମବିଶ୍ୱାସର ଅଭିବ୍ୟକ୍ତି, କାରଣ ଏହା ସେମାନଙ୍କୁ ଧନର ଅଧିକାରିଣୀ ହେବା ପାଇଁ

ଏବଂ ନିଜ ଇଚ୍ଛାମତେ଼ ଅନୁଦାନ ଦେବାପାଇଁ ଅନୁମତି ଦେଉଥିଲା । ଏହା ଥିଲା ବୈଦିକ ବ୍ରାହ୍ମଣ୍ୟବାଦର ପରିପନ୍ଥୀ । ବୈଦିକ ବ୍ରାହ୍ମଣ୍ୟବାଦରେ ଯଜ୍ଞର ପୃଷ୍ଟପୋଷକ ନିଜ ପତ୍ନୀଙ୍କୁ ଧରି ଯଜ୍ଞବେଦୀରେ ଉପବେଶନ କରୁଥିଲେ, ମାତ୍ର ତହିଁରେ ନାରୀ ସ୍ୱୟଂ ଯଜ୍ଞର ପୃଷ୍ଟପୋଷକ ନ ଥିଲା । ବୌଦ୍ଧଧର୍ମରେ ଭିକ୍ଷୁଣୀ ସଂଘର ସ୍ଥାପନ ଥିଲା ଏକ ଅଭିନବ ପରିକଳ୍ପନା, କାରଣ ଧର୍ମ ସୂତ୍ରରେ ସ୍ତ୍ରୀର କ୍ରିୟାକଳାପକୁ ନେଇ ସେତେବେଳେ ଅଧିକରୁ ଅଧିକ ବନ୍ଧନ ଲଦି ଦିଆଯାଇଥିଲା ।

ବୁଦ୍ଧ ମଧ୍ୟ ଗାଙ୍ଗେୟ ସମତଳର ସହରଗୁଡ଼ିକୁ ଯାଉଥିଲେ । ପରେ ଯେତେବେଳେ ବୌଦ୍ଧବିହାରମାନ ସ୍ଥାପିତ ହେଲା, ସେଠାରେ ଯାଇ ବୌଦ୍ଧଭିକ୍ଷୁମାନଙ୍କୁ ତଥା ତାଲିମ ପାଇଁ ଆସିଥିବା ଅନ୍ୟମାନଙ୍କୁ ଧର୍ମୋପଦେଶ ଦେଉଥିଲେ । ଆରମ୍ଭରେ ସଂଘକୁ ସମ୍ପତ୍ତି ଅଧିକାର କରିବାରୁ ବାରଣ କରାଯାଇଥିଲା । ମାତ୍ର ବର୍ଷାଋତୁରେ ସେମାନଙ୍କ ଭୋଜନ ପାଇଁ ସଂଘକୁ ବ୍ୟବସ୍ଥା କରିବାକୁ ପଡୁଥିଲା । ଏଥିରୁ ସମ୍ପତ୍ତି ଅଧିକାରର ଆବଶ୍ୟକତା ପଡ଼ିଲା । ମୁଖ୍ୟତଃ ବୌଦ୍ଧଧର୍ମରେ ଭିକ୍ଷୁମାନେ ସମ୍ମିଳିତ ହୋଇ ଧ୍ୟାନ କରୁଥିଲେ । ମାତ୍ର ଯେଉଁ ଭିକ୍ଷୁ ନିରୋଳାରେ ଜୀବନ ବ୍ୟତୀତ କରିବାକୁ ଇଚ୍ଛା କରୁଥିଲେ, ତାଙ୍କୁ ତହିଁରୁ ବାରଣ କରାଯାଉ ନ ଥିଲା । ବୌଦ୍ଧଧର୍ମରେ ଭିକ୍ଷୁ ସଂଘର ସ୍ଥାପନା ହେଲା । ସଂଘର ଆଧିକାରିକ ସଂସ୍ଥା ହେଲେ ଭିକ୍ଷୁ ସମାଜ । ଭିକ୍ଷୁମାନେ ଗୋଟାଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଇ ଧର୍ମୋପଦେଶ ଦେଉଥିଲେ ଏବଂ ଭିକ୍ଷା ଯାଚନା କରୁଥିଲେ । ଏହା ବୌଦ୍ଧଧର୍ମକୁ ଏକ ମିଶନାରୀ ଛବି ପ୍ରଦାନ କଲା । ବୁଦ୍ଧଙ୍କର ଉପଦେଶକୁ ଏକ ଡଙ୍ଗା ସହିତ ତୁଳନା କରାଯାଇଛି, ଯାହା ଜୀବନ-ସମୁଦ୍ରକୁ ଅତିକ୍ରମ କରିବା ଲାଗି ଉଦ୍ଦିଷ୍ଟ । କୁହାଯାଇଛି, ଡଙ୍ଗାକୁ କୂଳରେ ରହିବାକୁ ଦିଅ, ଯାହାଫଳରେ ଆଉ କେହି ବି ତାକୁ ଆଶ୍ରୟ କରି ସମୁଦ୍ରକୁ ପାରି ହୋଇପାରିବ । ପରବର୍ତ୍ତୀ ସମୟରେ ଯେତେବେଳେ ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କ ପାଇଁ ଆବାସ ନିର୍ମାଣ ହେଲା, ବୌଦ୍ଧବିହାର ଓ ଭିକ୍ଷୁଣୀ ବିହାରଗୁଡ଼ିକୁ ସହର ସମୀପରେ ପ୍ରତିଷ୍ଠା କରାଗଲା । ଏହାଫଳରେ ଗୃହସ୍ଥ ଅନୁଗାମୀମାନଙ୍କ ପାଖରୁ ଆଶାମତେ ସହଯୋଗ ମିଳିପାରିଲା ।

ବୌଦ୍ଧବିହାରର ସ୍ଥାପନ ସମାଜରେ ଶିକ୍ଷାକୁ ପ୍ରୋତ୍ସାହନ ଦେଲା, କାରଣ ବୌଦ୍ଧବିହାର ହେଲା ଶିକ୍ଷାର ଉତ୍ସ । ଆଗରୁ କେବଳ ବ୍ରାହ୍ମଣମାନେ ଶିକ୍ଷାଦାନ କରୁଥିଲେ । ଏବେ ଭିକ୍ଷୁମାନେ ବି ତହିଁରେ ସାମିଲ ହେଲେ । ବୌଦ୍ଧବିହାର ଶିକ୍ଷାର ବିଶେଷତ୍ୱ ହେଲା ଯେ ଏହା କେବଳ ଉଚ୍ଚଜାତି ପାଇଁ ଆରକ୍ଷିତ ନ ଥିଲା । ବ୍ରାହ୍ମଣ ଭିକ୍ଷୁ ବିଚାରଧାରାତ୍ମକ ରୂପାନ୍ତରଣର ପ୍ରତୀକ ଥିଲେ । ମନେହୁଏ ଉଚ୍ଚଜାତିର ସଦସ୍ୟଙ୍କୁ ସଂଘରେ ନେବାପାଇଁ ଅଧିକ ଆଗ୍ରହ ପ୍ରକାଶ ପାଉଥିଲା । ମର୍ଯ୍ୟାଦାବାନ ଲୋକ ସଂଘରେ ଯୋଗ ଦେଉଛନ୍ତି ବୋଲି ଦର୍ଶାଇବା ଥିଲା

ଏହାର ଲକ୍ଷ୍ୟ । ଗଣସଂଘର ଯେଉଁ କ୍ଷତ୍ରିୟମାନେ ବୈଦିକ ଯଜ୍ଞର ସମର୍ଥକ ନ ଥିଲେ, ସେମାନେ ବୁଦ୍ଧଧର୍ମ ଓ ଜୈନଧର୍ମର ସମର୍ଥନ କରିବେ ବୋଲି ସମ୍ଭାବନା ରହିଥିଲା । ବର୍ଣ୍ଣ ଅନୁକ୍ରମରେ କମ୍ ମର୍ଯ୍ୟାଦା ପାଉଥିବା ସଂବୃଦ୍ଧ ବଣିକମାନେ ସଂଘରେ ସମ୍ମାନ ପାଉଥିଲେ । ଫଳରେ, ସେମାନେ ଏହି ନୂତନ ଧର୍ମର ପୃଷ୍ଠପୋଷକ ହେଲେ । କ୍ରମଶଃ ଅନ୍ୟ ଜାତିର ଲୋକଙ୍କୁ ମଧ୍ୟ ଭିକ୍ଷୁସଂଘରେ ଗ୍ରହଣ କରାଗଲା ।

ଗଣସଂଘର ପରିଚାଳନା ଯେଉଁ ପଦ୍ଧତିରେ ଚାଲିଥିଲା, ବୌଦ୍ଧବିହାରକୁ ମଧ୍ୟ ସେହି ଢଙ୍ଗରେ ପ୍ରତିଷ୍ଠା କରାଗଲା । ନିୟମିତ ଢଙ୍ଗରେ ପାକ୍ଷିକ ସଭା ଅନୁଷ୍ଠିତ ହେଉଥିଲା । ସେଠାରେ ଭିକ୍ଷୁମାନଙ୍କର ମତକୁ ଉପସ୍ଥିତ ସଭ୍ୟମାନେ ଶୁଣୁଥିଲେ ଏବଂ ସଂଘର ନିୟମାନୁସାରେ ନିଷ୍ପତ୍ତି ନେଉଥିଲେ । ଅସହମତି ଅଧିକ ହେଲେ ସଂପ୍ରଦାୟ ବିଭାଜିତ ହେବାର ଏବଂ ନୂତନ ସଂପ୍ରଦାୟ ସ୍ଥାପିତ ହେବାର ଆଶଙ୍କା ରହୁଥିଲା । ବୌଦ୍ଧ କାର୍ଯ୍ୟକଳାପକୁ ନେଇ ନିର୍ଦ୍ଦେଶ ରହିଥିଲା ଯେ, ବିଭିନ୍ନ ମତକୁ ଗଣତାନ୍ତ୍ରିକ ପ୍ରକ୍ରିୟାରେ ବିଚାର ଆଲୋଚନା କରାଯିବ ଏବଂ ସେହି ପ୍ରକ୍ରିୟାରେ ନିଷ୍ପତ୍ତି ନିଆଯିବ । ସଂଘର ଆଦ୍ୟକାଳୀନ ଇତିହାସରେ ଏହିଭଳି ବିଚାର ପ୍ରଚଳିତ ରହିଥିବ । ମାତ୍ର ଖ୍ରୀ.ପୂ. ତୃତୀୟ ଶତାବ୍ଦୀରୁ ପ୍ରତିବାଦୀ ମତପୋଷଣ କରୁଥିବା ବ୍ୟକ୍ତିଙ୍କୁ ସଂଘରୁ ନିଷ୍କାସିତ କରାଯାଉଥିବାର ଉଲ୍ଲେଖ ରହିଛି ।

ଗୌତମ ବୁଦ୍ଧଙ୍କର ମୃତ୍ୟୁ ପରେ ବୌଦ୍ଧଗ୍ରନ୍ଥ ତ୍ରିପିଟକକୁ ମୁଖସ୍ଥ କରି ଉଚ୍ଚାରଣ କରିବାର ପରମ୍ପରା ଆରମ୍ଭ ହେଲା । ତେଣିକି ତାକୁ ସଂଗୃହିତ କରାଗଲା । ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଏହା ଲିଖିତ ସ୍ତରକୁ ଆସି ନ ଥିଲା । ତେଣୁ ଗ୍ରନ୍ଥର ମୌଳିକ ଧର୍ମୋପଦେଶକୁ ପରେ ଶିଷ୍ୟମାନଙ୍କ ଦ୍ୱାରା ଯୋଡ଼ାଯାଇଥିବା ଅଂଶରୁ ପୃଥକ୍ କରିବା କଠିନ ହୋଇପଡ଼ିଲା । ଦ୍ୱିତୀୟତଃ, ଗ୍ରନ୍ଥର ପାଠର ନିର୍ଦ୍ଦିଷ୍ଟ ରଚନାକାଳ ନିର୍ଦ୍ଧାରଣ କରିବା କାଠିକର ହୋଇପଡ଼େ । ମଝିରେ ମଝିରେ ବୌଦ୍ଧ ସମ୍ମିଳନୀମାନ ସଂଘଟିତ ହେଉଥିଲା । ପ୍ରଥମ ସମ୍ମିଳନୀ ହେଲା ରାଜଗୃହରେ; ଦ୍ୱିତୀୟ ସମ୍ମିଳନୀ ହେଲା ବୈଶାଳୀରେ; ଏବଂ ତୃତୀୟ ହେଲା ପାଟଳିପୁତ୍ରରେ । ଏହି ସମ୍ମିଳନୀମାନଙ୍କରେ କିଛି କିଛି ଅଂଶ ଗ୍ରନ୍ଥରେ ଯୋଡ଼ାଯାଇଥିବ । ସମ୍ମିଳନୀର ଉଦ୍ଦେଶ୍ୟ ଥିଲା ମୌଳିକ ଉପଦେଶକୁ ବ୍ୟାଖ୍ୟା କରିବା, ନିର୍ଦ୍ଧାରିତ କରିବା ଏବଂ ସଂକଳିତ କରିବା । ଯେଉଁଠି ମତପାର୍ଥକ୍ୟ ଉପୁଜେ, ତାହାହେଲେ ସଂଘର ପ୍ରଶାସନିକ ନିୟମ ସମ୍ବନ୍ଧରେ ସମ୍ମିଳନୀରେ ନିଷ୍ପତ୍ତି ନେବାର ଆବଶ୍ୟକତା ପଡୁଥିଲା । ଉଦାହରଣ ସ୍ୱରୂପ, ଏକ ପ୍ରମୁଖ ବିବାଦୀୟ ପ୍ରଶ୍ନ ଥିଲା, ଭିକ୍ଷୁମାନେ ଭିକ୍ଷାରେ ଅର୍ଥ ଗ୍ରହଣ କରିବେ ନା ନାହିଁ । ଅନୁଦାନ ରୂପରେ ଅଚଳ ସମ୍ପତ୍ତି ସଂଘ ଗ୍ରହଣ କରିବ ନା ନାହିଁ – ସେ ନେଇ ଖୁବ୍ ଦାୟିତ୍ୱପୂର୍ଣ୍ଣ ଢଙ୍ଗରେ ନିଷ୍ପତ୍ତି ନେବାକୁ ପଡୁଥିଲା । ଦାନରେ ମିଳିଥିବା ଉଦ୍ୟାନକୁ ସଂଘ ସ୍ୱୀକାର କରିବ

ନା ନାହିଁ ? ଏହା ବି ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଥିଲା, କାରଣ ଏହି ଧରଣର ଅନୁଦାନ ସିଦ୍ଧ କରିବ ଯେ ସଂଘ ସମ୍ପତ୍ତିର ମାଲିକାନା ନିଜ ହାତରେ ରଖିପାରିବ । ସଂଘ ସମ୍ପତ୍ତିର ମାଲିକାନାକୁ ସାମୁଦାୟିକ କୁହାଯାଉଥିଲା । ଚତୁର୍ମାସ୍ୟାରେ ଅର୍ଥାତ୍ ବର୍ଷା ଋତୁରେ ଭିକ୍ଷୁମାନଙ୍କୁ ସେହି ସମ୍ପତ୍ତିରୁ ନିବାସ ଯୋଗାଇ ଦିଆଯାଉଥିଲା, କାରଣ ସେହି ସମୟରେ ସେମାନେ ଭିକ୍ଷା ପାଇଁ ଯାଇ ପାରୁ ନ ଥିଲେ । ସେ ଯାହାହେଉ, ସମ୍ପତ୍ତିର ମାଲିକାନା ନିଶ୍ଚିତ ରୂପେ ଗୃହତ୍ୟାଗୀ ସନ୍ୟାସୀମାନଙ୍କ ପାଇଁ ସମସ୍ୟା ସୃଷ୍ଟି କରିଥିବ । ଏମିତିରେ ବି ଯୁଗେ ଯୁଗେ ଶ୍ରମଣ ଆଧାରିତ ଧର୍ମ ଆଗରେ ସମ୍ପତ୍ତି ସମସ୍ୟା ହୋଇଛି ।

ଅଧିକାଂଶ ବୌଦ୍ଧଗ୍ରନ୍ଥ ପରେ ଚୀନୀ ଭାଷାରେ ତଥା ଅନ୍ୟାନ୍ୟ ଭାଷାରେ ଅନୂଦିତ ହେଲା । ପାଲି ଏବଂ ଅନ୍ୟ ଭାଷାରେ ରହିଥିବା ବୌଦ୍ଧଗ୍ରନ୍ଥଗୁଡ଼ିକର ଏକ ତୁଳନାତ୍ମକ ଅଧ୍ୟୟନ ପାଇଁ ଏହା ଅବସର ପ୍ରଦାନ କରେ । ଏହି ଧରଣର ଅଧ୍ୟୟନ ଗ୍ରନ୍ଥର ମୌଳିକ ଉଦ୍ଦେଶ୍ୟକୁ ସାହାଯ୍ୟ କରିବ ବୋଲି ଆଶା କରାଯାଏ । ବୌଦ୍ଧଧର୍ମ ଅନେକ ସାଂପ୍ରଦାୟିକ ବିଭାଜନ ଆଶଙ୍କାର ସମ୍ମୁଖୀନ ହୋଇଛି – ଏହାର ମୂଳ ମାଟି ଭାରତରେ ତଥା ଏସିଆର ଅନ୍ୟାନ୍ୟ ଦେଶରେ ଯେତେବେଳେ ଏହା ପ୍ରସାର ଲାଭ କରୁଥିଲା । ବୌଦ୍ଧଧର୍ମର କେତେକ ସ୍ୱରୂପ ଏହାକୁ ଅତୁଟ ପରମ୍ପରାର ବୋଲି ଦାବି କରନ୍ତି । ମାତ୍ର ସତ୍ୟତା ହେଲା ଯେ, ଅନ୍ୟ ଧର୍ମଗୁଡ଼ିକ ପରି ବୌଦ୍ଧଧର୍ମକୁ ମଧ୍ୟ ଐତିହାସିକ ଢ଼ୁଆର-ଭଟ୍ଟା ଦେଇ ଗତି କରିବାକୁ ପଡ଼ିଛି ଏବଂ ଏହାର ଶୃଙ୍ଖଳାବୋଧ ମଧ୍ୟ ଭଙ୍ଗ ହୋଇଛି । ଶ୍ରୀଲଙ୍କା ଏବଂ କେତେକ ଦକ୍ଷିଣ-ପୂର୍ବ ଏସୀୟ ଦେଶରେ ବୌଦ୍ଧଧର୍ମର 'ଥେରବାଦ' ପନ୍ଥ (Theravada)ର ପ୍ରମୁଖତା ରହିଛି । ଅନ୍ୟତ୍ର ସର୍ବସ୍ତିବାଦ ପନ୍ଥର ଅଧିକ ପ୍ରଭାବ ରହିଛି ।

ଏହି କିଛି ବର୍ଷ ହେଲା ଉଭୟ ବୌଦ୍ଧଧର୍ମ ଏବଂ ଜୈନଧର୍ମକୁ ହିନ୍ଦୁଧର୍ମର ଅଂଶବିଶେଷ ବୋଲି କୁହାଯାଉଛି । ମାତ୍ର ତିନୋଟିଯାକ ଧର୍ମ ତତ୍‌କାଳୀନ ପୋଥିପାଠରେ ଭିନ୍ନ ଭିନ୍ନ ବୋଲି ଉଲ୍ଲେଖ ରହିଥିଲା । ସେତେବେଳେ ଅଭିଜାତ ବର୍ଗର ଧର୍ମ ଥିଲା ବୈଦିକ ବ୍ରାହ୍ମଣ୍ୟ ଧର୍ମ, ଯାହାକୁ ନା ବୌଦ୍ଧଧର୍ମ ନା ଜୈନଧର୍ମ ସ୍ୱୀକାର କରୁଥିଲେ । ପ୍ରକୃତରେ ଦେଖିଲେ, ଉଭୟ ବୌଦ୍ଧଧର୍ମ ଓ ଜୈନଧର୍ମ ଅନେକ ବ୍ରାହ୍ମଣୀୟ ସିଦ୍ଧାନ୍ତ ଓ ଆଚରଣକୁ ବିରୋଧ କରୁଥିଲେ ଏବଂ ନିଜର ନୂତନ ବିଚାର ମାଧ୍ୟମରେ ଏକ ବିକଳ୍ପ ପ୍ରସ୍ତୁତ କରୁଥିଲେ । ବୈଦିକ ବ୍ରାହ୍ମଣବାଦ ବା ପରବର୍ତ୍ତୀ ସମୟର ପ୍ରାଚୀନ ପୌରାଣିକ ହିନ୍ଦୁଧର୍ମ ବିପରୀତ, ବୌଦ୍ଧଧର୍ମ ଓ ଜୈନଧର୍ମର ନିର୍ଦ୍ଦିଷ୍ଟ ଧର୍ମୋପଦେଷ୍ଟା ରହିଥିଲେ, ଯାହାଙ୍କୁ ପରେ ଧର୍ମର ପ୍ରତିଷ୍ଠାତା ରୂପରେ ଦେଖାଗଲା । ଉଭୟ ଧର୍ମ ନିଜର ଭିକ୍ଷୁ ସଂଘ ସ୍ଥାପିତ କରିଥିଲେ; ଗୋଟାଏ ଗୋଟାଏ ନୂଆ ଧାର୍ମିକ ସଂସ୍ଥା ଗଢ଼ିଥିଲେ । ଉଭୟ ଧର୍ମର ଦେବାଦେବୀଙ୍କ ସହିତ କୌଣସି ସମ୍ବନ୍ଧ ନ ଥିଲା; କର୍ମକାଣ୍ଡୀ ଯଜ୍ଞକୁ ଉଭୟ ଧର୍ମ ମାନ୍ୟତା ଦେଇ ନ ଥିଲେ ।

ଉଭୟେ ଜାତି ଆଧାରିତ ପ୍ରଭେଦ ସ୍ଥାନରେ ସାମାଜିକ ସଦାଚାରକୁ ମହତ୍ତ୍ୱ ଦେଉଥିଲେ । ଉଭୟ ସଂପ୍ରଦାୟରେ ଧର୍ମର ଇତିହାସକୁ ନେଇ ଏକ ଦୃଢ଼ ଧାରଣା ରହିଥିଲା । ବୌଦ୍ଧଧର୍ମରେ କାଳାନୁକ୍ରମର କେନ୍ଦ୍ରବିନ୍ଦୁ ଥିଲା ମହାପରିନିର୍ବାଣ; ଏହା ଖ୍ରୀ.ପୂ. 486/483 ରେ ଘଟିତ ହୋଇଥିଲା ବୋଲି ଗଣନା କରାଯାଏ । (ମହାପରିନିର୍ବାଣର ତିଥି ଭାବରେ ଏହା ଆଉ ସର୍ବସମ୍ମତ ନୁହେଁ । ମହାପରିନିର୍ବାଣର ତିଥି ଏତେ ପୁରୁଣା ନୁହେଁ ବୋଲି କୁହାଯାଉଛି, ଯଦିଓ ତାହା ମଧ୍ୟ ସର୍ବସମ୍ମତ ନୁହେଁ ।)

ବୌଦ୍ଧ ଏବଂ ଜୈନ ସଂପ୍ରଦାୟରେ ଏବଂ ଅନ୍ୟ କେତେକ ସଂପ୍ରଦାୟରେ ଭିକ୍ଷୁ ଓ ଭିକ୍ଷୁଣୀଙ୍କର ସଂଘ ରହିଥିଲା । ସାଧାରଣ ଭାବରେ ସେମାନଙ୍କୁ ଶ୍ରମଣ ବା ଶମନ ବୋଲି କୁହାଯାଉଥିଲା । ଶ୍ରମଣର ଅର୍ଥ ହେଲା ଯିଏ ପୁନର୍ଜନ୍ମରୁ ମୁକ୍ତି ପାଇବା ଲାଗି ପରିଶ୍ରମ କରନ୍ତି । ଏହା ପରେ ବ୍ରାହ୍ମଣବାଦ ଓ ଶ୍ରମଣବାଦ ମଧ୍ୟରେ ପ୍ରଭେଦ ସୃଷ୍ଟି ହେଲା । ଦୁଇଟି ସମାନ୍ତର ଧାର୍ମିକ ଅଭିବ୍ୟକ୍ତି ରୂପରେ ଉଭୟ ବିଚାର ବହୁ ଶତାବ୍ଦୀ ଧରି ରହିଥିଲେ । ଅନେକ ରଚନାକାର ଉଭୟ ବିଚାରକୁ ସ୍ୱତନ୍ତ୍ର ବିଚାର ରୂପେ ଗଣନା କରୁଥିଲେ । ଏପରିକି ଏକାଦଶ ଶତାବ୍ଦୀରେ ବିବରଣୀ ଲେଖିଥିବା ଆଲବେରୁନି ଦୁହିଁଙ୍କୁ ଦୁଇଟି ସ୍ୱତନ୍ତ୍ର ବିଚାରଧାରା ବୋଲି ଉଲ୍ଲେଖ କରିଥିଲେ । ସନ୍ୟାସୀମାନେ ଉଭୟ ଧର୍ମରେ, ସଂଘରେ ଯୋଗଦେବା ପରେ ସାମାଜିକ ଦାୟିତ୍ୱକୁ ପରିତ୍ୟାଗ କରୁଥିଲେ । ସେମାନେ ସଂଘର ଜଣେ ସମସ୍ତରର ସଭ୍ୟ ଭାବରେ ରହୁଥିଲେ ଏବଂ ଜାତିଭେଦକୁ ସ୍ୱୀକାର କରୁ ନ ଥିଲେ । ଏହି ସନ୍ୟାସୀ ବା ଭିକ୍ଷୁମାନେ ଗ୍ରାମ ଅବା ସହରର ଉପକଣ୍ଠରେ ରହୁଥିଲେ, ଯାହାଫଳରେ କି ସେମାନଙ୍କୁ ଗୃହସ୍ଥମାନଙ୍କର ସହଯୋଗ ମିଳିପାରିବ । ଗୃହସ୍ଥମାନେ ବୌଦ୍ଧଧର୍ମ ଅଥବା ଜୈନଧର୍ମର ଅନୁଗାମୀ ଥିଲେ, ମାତ୍ର ଗୃହତ୍ୟାଗୀ ନ ଥିଲେ । ଗୃହସ୍ଥ ଅନୁଗାମୀମାନଙ୍କୁ 'ଉପାସକ' ଏବଂ 'ଉପାସିକା' କୁହାଯାଉଥିଲା । ସନ୍ୟାସ ବ୍ରତ ପାଳନ କରୁଥିବା ଯୋଗୁଁ ଭିକ୍ଷୁମାନେ ଅଧିକ ସ୍ୱାଧୀନତା ଲାଭ କରୁଥିଲେ, ଯାହାକି ସେମାନଙ୍କୁ ନିର୍ବାଣ ପ୍ରତି ତଥା ସାମାଜିକ କଲ୍ୟାଣ ପାଇଁ ଧ୍ୟାନ ଦେବାକୁ ସୁଯୋଗ ଦେଉଥିଲା । ଗୃହତ୍ୟାଗ ସର୍ବଦା ସନ୍ୟାସ ରୂପେ ପରିଗଣିତ ହେଉ ନ ଥିଲା । ଗୃହତ୍ୟାଗ ଓ ସନ୍ୟାସ ମଧ୍ୟରେ ପ୍ରଭେଦ ଖୋଜିବା ହୁଏତ ଉପଯୋଗୀ ସିଦ୍ଧ ହେବ । ସନ୍ୟାସୀ ନୀତିଗତ ଭାବେ ନିର୍ଜନବାସ କରି ରହୁଥିଲେ, ସାମାଜିକ ଦାୟିତ୍ୱକୁ ତ୍ୟାଗ କରିଥିଲେ ଏବଂ ଗୃହତ୍ୟାଗ ପୂର୍ବରୁ ସ୍ୱ-ଶ୍ରାଦ୍ଧକ୍ରିୟା ସମାପନ କରିସାରିଥିଲେ । ଅନ୍ୟ ପକ୍ଷରେ, ତ୍ୟାଗୀ ସାମାଜିକ ଦାୟିତ୍ୱକୁ, ଯାହାକୁ ପରିବାର ଓ ଜାତି ବନ୍ଧନ ମାଧ୍ୟମରେ ପାଳନ କରିବାକୁ ପଡ଼ିଥାଏ, ପରିହାର କରୁଥିଲେ । ମାତ୍ର ସେ ଏକ ବୈକଳ୍ପିକ ସମାଜରେ ପ୍ରବେଶ କରୁଥିଲେ । ଏହି ସମାଜ ଥିଲା ସଂଘ । ଏହି ସଂଘରେ ତ୍ୟାଗୀ ନୂତନ ଦାୟିତ୍ୱଗୁଡ଼ିକୁ ବହନ କରୁଥିଲେ ।

ଗୃହସ୍ଥ ସମାଜର ସଦସ୍ୟମାନଙ୍କର ସଂଖ୍ୟା ବୃଦ୍ଧି ହେବା ଫଳରେ ଭିକ୍ଷୁମାନଙ୍କୁ ଜୀବନଚକ୍ରର କର୍ମକାଣ୍ଡଗୁଡ଼ିକୁ ପାଳନ କରିବାକୁ ନିମନ୍ତ୍ରଣ କରାଗଲା । ଏହି କର୍ମକାଣ୍ଡଗୁଡ଼ିକ ମଧ୍ୟରେ ଥିଲା ଜନ୍ମ, ବୟଃପ୍ରାପ୍ତି ବା ବୟଃସନ୍ଧି, ବିବାହ ଓ ମୃତ୍ୟୁ ଆଦି । ଏହା ଥିଲା ପରିବର୍ତ୍ତନର ଆରମ୍ଭ । କାଳକ୍ରମେ ଆହୁରି ଅନେକ କର୍ମକାଣ୍ଡ ଯୋଡ଼ା ହେଲା । ପୁଣି ପୂଜାପୀଠର ମଧ୍ୟ ଆରମ୍ଭ ହେଲା । କ୍ଷୁଦ୍ର ସ୍ତୁପ, ଚୈତ୍ୟରୁ ପୂଜାପୀଠର ଆରମ୍ଭ ହୋଇ ଭବିଷ୍ୟତରେ ତାହା ବିଶାଳ ଆକାର ଧାରଣ କଲା । ସ୍ତୁପ ଥିଲା ସମାଧିସ୍ଥଳ ଏବଂ ଚୈତ୍ୟ ଥିଲା ପବିତ୍ର ଚଉରା । ସାଧାରଣତଃ ପବିତ୍ର ବୃକ୍ଷ କିମ୍ବା ସ୍ଥାନୀୟ ଦେବାଦେବୀ ଥିବା ସ୍ଥାନରେ ଏହି ପୂଜାପୀଠଗୁଡ଼ିକୁ ସ୍ଥାପିତ କରାଗଲା । ଉତ୍ତର ବିହାରର ଲୌରିଆ ନନ୍ଦନଗଡ଼ ଥିଲା ସେମିତି ଏକ ପ୍ରାରମ୍ଭିକ ବୌଦ୍ଧ ପୂଜାପୀଠ । ଏଠାରେ କେତୋଟି ସୁବର୍ଣ୍ଣ ପ୍ରତିମା ମଧ୍ୟ ରହିଛି । ସମ୍ଭବତଃ ପୂର୍ବରୁ ପୂଜିତା ଦେବୀର ପ୍ରତିମା ଏଗୁଡ଼ିକ । ଅନୁଗାମୀମାନଙ୍କର ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ଲୋକପ୍ରିୟ ଧାର୍ମିକ ଚଳଣିକୁ ଆପଣାଇବା ଜରୁରି ଥିଲା ।

କେତେକ ଲୋକ ଭିକ୍ଷୁ ହେବାକୁ ଆଗ୍ରହ ପ୍ରକାଶ କରୁଥିଲେ, କାରଣ ସମାଜର ରୀତିନୀତିକୁ ସେମାନେ ପସନ୍ଦ କରୁ ନ ଥିଲେ । ପରିଣାମତଃ ସେମାନେ ତହିଁରୁ ବାହାରକୁ ଚାଲିଆସୁଥିଲେ । ଏଥିରେ ବ୍ୟକ୍ତିଗତ ଇଚ୍ଛା ଏବଂ ବ୍ୟକ୍ତିଗତ ସ୍ୱାଧୀନତାର ଅଭିବ୍ୟକ୍ତିର କଥା ରହିଥିଲା, ଯଦିଓ ସଂଘରେ ସାମିଲ ହେବା ପର୍ଯ୍ୟନ୍ତ କଥା ସୀମିତ ରହୁଥିଲା । ସଂଘ ଥିଲା ତ୍ୟାଗୀମାନଙ୍କର ସଂସ୍ଥା । ତହିଁରେ ସନ୍ୟାସୀ ନ ଥିଲେ । ତେଣୁ ଧୀରେ ଧୀରେ ସଂଘର ଶାଖା ଏବଂ ଉପାସକ ମଧ୍ୟରେ ପ୍ରଭେଦ ଦେଖାଗଲା । ଉପାସକଙ୍କ ମଧ୍ୟରେ ରାଜପରିବାରରୁ ଆରମ୍ଭ କରି ସାଧାରଣ କାରିଗର ପର୍ଯ୍ୟନ୍ତ ସବୁ ବର୍ଗର ଲୋକ ସାମିଲ ଥିଲେ । ଏହି ଉପାସକମାନେ ଥିଲେ ସଂଘର ପ୍ରମୁଖ ଅନୁଦାତା । ଉପାସକ ଯଜ୍ଞ କର୍ମକାଣ୍ଡ ପାଳନ ପାଇଁ ଦାନ ଦେଉ ନ ଥିଲେ, ବରଂ ସଂଘର ସ୍ଥାୟୀ ଅନୁରକ୍ଷଣ ପାଇଁ ଦାନ ଦେଉଥିଲେ । ଯେତେବେଳେ ବୌଦ୍ଧବିହାରଗୁଡ଼ିକୁ ବଡ଼ ବଡ଼ ପରିମାଣର ଅନୁଦାନ ପ୍ରାପ୍ତ ହେଲା ଏବଂ ତହିଁରେ ସଂବୃଦ୍ଧି ଦେଖାଗଲା, ସମ୍ଭବତଃ ଭିକ୍ଷୁମାନେ ମଧ୍ୟ ଅଧିକ ସୁଖସୁବିଧାପୂର୍ଣ୍ଣ ଜୀବନ ବ୍ୟତୀତ କରିବାକୁ ସୁଯୋଗ ପାଇଲେ । ପରିଣାମ ସ୍ୱରୂପ, କିଛି ଲୋକ ଆରାମଦାୟକ ଜୀବନର ଅନ୍ୱେଷଣରେ ଆସି ସମୃଦ୍ଧଶାଳୀ ବୌଦ୍ଧବିହାରମାନଙ୍କରେ ନିବାସ କରିବାକୁ ପ୍ରୟାସ କଲେ ।

ବୌଦ୍ଧଧର୍ମ ଓ ଜୈନଧର୍ମ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଥିଲା । ଉଭୟ ଧର୍ମ ସଂପ୍ରଦାୟର ପ୍ରତିଷ୍ଠାତା ଥିଲେ କ୍ଷତ୍ରିୟମାନେ; ଉଭୟ ସଂପ୍ରଦାୟ ବ୍ରାହ୍ମଣୀୟ ରଢ଼ିବାଦର ବିରୋଧ କରୁଥିଲେ । ଯଦିଓ ବର୍ଣ୍ଣାଶ୍ରମର ବିଲୁପ୍ତି ପାଇଁ ଏହି ଦୁଇ ସଂପ୍ରଦାୟ ଆହ୍ୱାନ କରି

ନ ଥିଲେ, ତଥାପି ଧର୍ମସୂତ୍ରରେ ବର୍ଣ୍ଣିତ ବର୍ଣ୍ଣପ୍ରଥାକୁ ବିରୋଧ କରୁଥିଲେ । ଉଭୟ ସଂପ୍ରଦାୟ ଆରମ୍ଭରେ କେବଳ ଉଚ୍ଚବର୍ଗର ଲୋକଙ୍କୁ ଅନୁଗାମୀ ରୂପେ ପାଉଥିଲେ । ଅନ୍ୟମାନଙ୍କୁ ପାଇବାରେ ଉଭୟ ସଂପ୍ରଦାୟକୁ ଅନେକ ଅପେକ୍ଷା କରିବାକୁ ପଡ଼ିଥିଲା । ସମସ୍ତ ବର୍ଗର ଲୋକ ଏହି ନୂତନ ସଂପ୍ରଦାୟରେ ସାମିଲ ହେଲାବେଳକୁ କେତେକ ଆଚରଣରେ ପରିବର୍ତ୍ତନ ଦେଖିବାକୁ ମିଳିଲା । ଯାହା ଐତିହାସିକ ପ୍ରକ୍ରିୟାରେ ଆରମ୍ଭ ହୋଇଥିବା ସବୁ ଧର୍ମରେ ଦେଖିବାକୁ ମିଳିଥାଏ, ନୂତନ ପରିପ୍ରେକ୍ଷୀରେ ମୂଳ ଉପଦେଶର ଅର୍ଥ ବଦଳିଯାଏ । ନୂଆ ଅର୍ଥ ଧର୍ମକୁ ଭିନ୍ନ ଭିନ୍ନ ପ୍ରକାରରେ ବଦଳି ଯିବାରେ ସାହାଯ୍ୟ କରେ । ତେଣୁ ପରିବର୍ତ୍ତନର ଏହି ଧରଣର ଇତିହାସକୁ ଅଧ୍ୟୟନ କରିବା ସମୟରେ ମୂଳ ପାଠକୁ ସମକାଳୀନ ପାଠର ପରିପ୍ରେକ୍ଷୀରେ ରଖି ଦେଖିବା ଉଚିତ ।

ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରୁ ଆରମ୍ଭ କରି ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ ଯାଏଁ ଯେଉଁ କାଳଖଣ୍ଡ, ତହିଁରେ କୃଷିର ସଂପ୍ରସାରଣ, ସହରର ଅଭ୍ୟୁଦୟ ଏବଂ ପୂର୍ବ ତୁଳନାରେ ବ୍ୟାପକ ମାତ୍ରାରେ ବାଣିଜ୍ୟର ବିକାଶ ଏବଂ ରାଜ୍ୟ ଓ ରାଜ୍ୟତନ୍ତ୍ର ରୂପରେ ରାଜନୈତିକ କର୍ତ୍ତୃତ୍ୱର ଉଦୟ ଦେଖିବାକୁ ମିଳିଲା । ଏହି ସମୟରେ ରାଜ୍ୟତନ୍ତ୍ର ଓ ସର୍ଦ୍ଦାରତନ୍ତ୍ର ମଧ୍ୟରେ ଚାଲିଥିବା ପ୍ରତିଯୋଗିତାକୁ ବି ଦେଖିବାକୁ ମିଳିଲା । ଧର୍ମ ଓ ବିଚାରଧାରାର ନବରଚିତ ସୂତ୍ରରେ ଏହି ପରିବର୍ତ୍ତନର ବରାବର ସମ୍ବନ୍ଧ ରହିଥିଲା । ମୌର୍ଯ୍ୟ କାଳରେ ଏହି ସୂତ୍ରକୁ ଉଭୟ ପରିମାଣାତ୍ମକ ଏବଂ ଗୁଣାତ୍ମକ ଦୃଷ୍ଟିରୁ ଅଧିକ ପ୍ରତିଷ୍ଠା ମିଳିଥିଲା । ଏହା ନିଃସନ୍ଦେହ ଯେ ପୂର୍ବବର୍ତ୍ତୀ ସୂତ୍ର ତୁଳନାରେ ଏହି ନବରଚିତ ସୂତ୍ର ନିଶ୍ଚିତ ରୂପେ ଅଧିକ ବିବିଧତାପୂର୍ଣ୍ଣ ଥିଲା ।

# 6

# ସାମ୍ରାଜ୍ୟର ଉଦୟ : ମୌର୍ଯ୍ୟକାଳୀନ ଭାରତ

**ଖ୍ରୀଷ୍ଟପୂର୍ବ 321 – 185 ପ୍ରାୟ**

## ମୌର୍ଯ୍ୟ ଓ ସେମାନଙ୍କ ଜଗତ

ଔପନିବେଶିକ ଯୁଗରେ ଭାରତର ଇତିହାସ ତତ୍ତ୍ୱ ସହିତ ପ୍ରଥମକରି ସାମ୍ରାଜ୍ୟର ଅବଧାରଣାର ପରିଚୟ ଘଟିଲା । ସେତେବେଳେ ଅତୀତର କେତେକ ସାମ୍ରାଜ୍ୟକୁ ଚିହ୍ନିତ କରାଗଲା ଏବଂ ସମକାଳୀନ ଉପନିବେଶବାଦୀ ସାମ୍ରାଜ୍ୟର ପ୍ରତ୍ୟକ୍ଷ ପୂର୍ବସୂରୀ ରୂପରେ ସେଗୁଡ଼ିକୁ ଦେଖିବା ଲାଗି ପ୍ରୟାସ କରାଗଲା । ବିସ୍ତୃତ ଭୂଖଣ୍ଡ ଆଧାରରେ ଐତିହାସିକମାନେ ସାମ୍ରାଜ୍ୟର ସଂଜ୍ଞା ନିରୂପଣ କଲେ ଏବଂ ଅତିକାୟ ସ୍ଥାପତ୍ୟ, ବ୍ୟାପକ ସାର୍ବଜନିକ କାର୍ଯ୍ୟ ଏବଂ ଭବ୍ୟ ସାମ୍ରାଜ୍ୟିକ ଘୋଷଣାପତ୍ରରେ ସାମ୍ରାଜ୍ୟର ଗୌରବ ନିହିତ ବୋଲି ତର୍କ ଦେଲେ । ଏହି କିସମର ଐତିହାସିକ ବର୍ଣ୍ଣନରେ ଅଣ-ୟୁରୋପୀୟ ସାମ୍ରାଜ୍ୟଗୁଡ଼ିକୁ ନିରଙ୍କୁଶ ଓ ଅନଗ୍ରସର ବୋଲି ବ୍ୟାଖ୍ୟା କରାଗଲା । ୟୁରୋପ ବାହାରର ସାମ୍ରାଜ୍ୟର ସଠିକ ସଂଜ୍ଞା ନିରୂପଣ ଲାଗି 'ପ୍ରାଚ୍ୟ ନିରଙ୍କୁଶବାଦ' (Oriental Despolism) ନାମକ ପଦର ପ୍ରୟୋଗ ଦେଖିବାକୁ ମିଳିଲା । ଏହି ଧରଣର ସାମ୍ରାଜ୍ୟବାଦୀ ବ୍ୟବସ୍ଥାରେ ଯେହେତୁ ସାମ୍ରାଜ୍ୟର ସକଳ ଭୂଖଣ୍ଡର ମାଲିକାନା ରାଜ୍ୟ ହାତରେ, ଭୂରାଜସ୍ୱ ହିଁ ସାମ୍ରାଜ୍ୟର ଏକମାତ୍ର ଆୟର ଉତ୍ସ ବୋଲି ତର୍କ ଦିଆଗଲା । ଊନବିଂଶ ଶତାବ୍ଦୀରେ ଔପନିବେଶିକ ସାମ୍ରାଜ୍ୟ ବ୍ୟବସ୍ଥା ଯେଉଁଭଳି ଭାବେ ରାଜ୍ୟର ସମସ୍ତ ସମ୍ପଦାକୁ ନିଜର ବୋଲି ଦାବି କରୁଥିଲା, ତା' ପାଇଁ ଏହି ପ୍ରକାରର ଐତିହାସିକ ବ୍ୟାଖ୍ୟାକୁ ଯଥାର୍ଥ ମନେକରାଗଲା ।

ମାତ୍ର ଯେତେବେଳେ ଆରମ୍ଭର ବୃହତ୍ ରାଜ୍ୟ ପାଇଁ 'ସାମ୍ରାଜ୍ୟ' ଶବ୍ଦର ପ୍ରୟୋଗ ହେଲା, ସଂଜ୍ଞାର କେନ୍ଦ୍ରବିନ୍ଦୁକୁ ବଦଳିବାକୁ ପଡ଼ିଲା । ଆଦ୍ୟ ଅତୀତ ପରିପ୍ରେକ୍ଷୀରେ ସାମ୍ରାଜ୍ୟକୁ ରାଜ୍ୟର ଏକ ବହୁ ବିକଶିତ ଏବଂ ଜଟିଳ ସ୍ୱରୂପ ଭାବରେ ଚିହ୍ନିତ କରାଯାଇଥିଲା । ତେଣୁ ପୂର୍ବକାଳୀନ ରାଜ୍ୟର ପ୍ରକୃତିରେ ସାମ୍ରାଜ୍ୟର ବିକାଶ ଘଟିଥିଲା ବୋଲି କୁହାଗଲା । ଅନ୍ୟ ଶବ୍ଦରେ କହିଲେ, ପ୍ରାକ୍-ରାଜ୍ୟ ବା ଅ-ରାଜ୍ୟରୁ ରାଜ୍ୟକୁ ରୂପାନ୍ତରଣ କାଳରେ ଯେଉଁ ପରିବର୍ତ୍ତନମାନ ହୋଇଥିଲା, ତାହା ସାମ୍ରାଜ୍ୟର ଅଭ୍ୟୁଦୟକୁ ଅନୁଶୀଳନ କରିବା ପାଇଁ ପ୍ରମୁଖ ହେଲା । ଏହାସହିତ ଏକ ଗୁଣାତ୍ମକ ପରିବର୍ତ୍ତନର ମଧ୍ୟ ବିଶେଷ ମହତ୍ତ୍ୱ ରହିଛି ବୋଲି ଅନୁଭବ ହେଲା । ଉଦାହରଣ ସ୍ୱରୂପ, ରାଜ୍ୟର ବିପରୀତ, ସାମ୍ରାଜ୍ୟର ଆର୍ଥିକ ଆଧାର ଅପେକ୍ଷାକୃତ ବିବିଧତାପୂର୍ଣ୍ଣ ହୋଇଥାଏ । ଅର୍ଥାତ୍ କ୍ଷୁଦ୍ର ରାଜ୍ୟର ଆର୍ଥିକ ଆଧାରରେ ଅନେକ ସମରୂପତା ଦେଖିବାକୁ ମିଳେ । ଏହି ସନ୍ଦର୍ଭରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଲା, ରାଜ୍ୟ କ'ଣ ଅର୍ଥବ୍ୟବସ୍ଥାର ପୁନଃରଚନା କରିବାକୁ ପ୍ରୟାସ କରେ ? ଯଦି ହଁ, କେଉଁ ଅର୍ଥବ୍ୟବସ୍ଥା ତାହା ? ନା, କେବଳ ରାଜସ୍ୱର ସର୍ବାଂଶକୁ ଦୋହନ କରିବା ଉଦ୍ଦେଶ୍ୟରେ ଅଞ୍ଚ ମାତ୍ରକୁ ପୁନଃରଚନା କରେ ? ବିଶେଷ ଭାବରେ ସାମ୍ରାଜ୍ୟିକ ଶକ୍ତିର ପ୍ରତୀକଗୁଡ଼ିକୁ ଆଧାର କରି ସାମ୍ରାଜ୍ୟରେ ସାଂସ୍କୃତିକ ସମରୂପତା ରହିଥାଏ ବୋଲି ମନେକରାଯାଏ । ମାତ୍ର ସାମ୍ରାଜ୍ୟିକ ସାଂସ୍କୃତିକ ସ୍ୱରୂପଗୁଡ଼ିକ କେତେ ମାତ୍ରାରେ ସାମ୍ରାଜ୍ୟର ଦୂରଦୂରାନ୍ତର କ୍ଷେତ୍ରରେ ପରିବ୍ୟାପ୍ତ ହୋଇଥାଏ, ତା'ର ଏଯାଏଁ ଯଥାଯଥ ଅନୁଶୀଳନ ହୋଇନାହିଁ । ଏକ ସାମ୍ରାଜ୍ୟର ପରିଭାଷା ନିର୍ମାଣ ବେଳେ ଏହିସବୁ ଅନୁଶୀଳନର ବିଶେଷ ଆବଶ୍ୟକତା ରହିଛି । ତେଣୁ ଯଥାର୍ଥ ଭାବେ ଅତିକାୟ ସ୍ଥାପତ୍ୟଗୁଡ଼ିକୁ ଗୁରୁତ୍ୱପୂର୍ଣ୍ଣ ବୋଲି ଦେଖାଗଲା । ସେଗୁଡ଼ିକୁ ସାମ୍ରାଜ୍ୟିକ କ୍ଷମତା ଓ ଉପସ୍ଥିତିର ଅଭିବ୍ୟକ୍ତି ରୂପରେ ନିଆଗଲା । ଏହି ଧରଣର ସାମ୍ରାଜ୍ୟିକ ଉପସ୍ଥିତିର ଅନ୍ୟ ଏକ ଉପାଦାନ ହେବ ବିଧିବ୍ୟବସ୍ଥାର ଏକରୂପତା । ଅନ୍ୟ ଶବ୍ଦରେ, ସମଗ୍ର ସାମ୍ରାଜ୍ୟରେ ଏକରକମର ବିଧିବ୍ୟବସ୍ଥା ରହିଥିଲା ନା ନାହିଁ, ତାକୁ ଦେଖିବା କଥା । ଅଶୋକଙ୍କ ଏକ ରାଜାଦେଶ (Edict)ରେ ଏ ନେଇ ପରୋକ୍ଷ ଉଲ୍ଲେଖ ରହିଛି । ମାତ୍ର ପ୍ରଶ୍ନାଧୀନ ବିଧିର ସୂଚନା ତହିଁରେ ସୁସ୍ପଷ୍ଟ ନୁହେଁ ।

ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ମୌର୍ଯ୍ୟମାନଙ୍କର ଉତ୍‌ଥାନ ପରେ ବିବିଧ କିସମର ସୂତ୍ରସାମଗ୍ରୀ ବହୁଳ ପରିମାଣରେ ଉପଲବ୍ଧ ହେଲା, ଯାହା ଐତିହାସିକ ପରିଦୃଶ୍ୟକୁ ଅଧିକ ଆଲୋକିତ କଲା । ସୂତ୍ରସାମଗ୍ରୀରୁ କେବଳ ଅଧିକ ସୂଚନା ମିଳିଲା ନାହିଁ, ତା' ସହିତ ସମସାମୟିକ ଇତିହାସ ସମ୍ପର୍କିତ ବିଚାରକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଦେଖିବାପାଇଁ ପ୍ରୋତ୍ସାହନ ମିଳିଲା । ମୌର୍ଯ୍ୟ ସାମ୍ରାଜ୍ୟ ଭାରତ ଉପମହାଦେଶର ଅଧିକାଂଶ କ୍ଷେତ୍ରରେ ନିଜର ନିୟନ୍ତ୍ରଣ ରଖିଥିଲା ବୋଲି ରାଜନୈତିକ ପରିଦୃଶ୍ୟରୁ ଏଣିକି ସୁସ୍ପଷ୍ଟ ହେଲା; ଗୋଟାଏ ନିର୍ଦ୍ଦିଷ୍ଟ କ୍ଷମତାର

କେନ୍ଦ୍ରକୁ ଅଧିକ ଧ୍ୟାନ ମିଳିଲା । ସେତେବେଳେ ରାଜନୈତିକ ବ୍ୟବସ୍ଥାରେ ଏକରୂପତା ଆଣିବା ପାଇଁ ଆବଶ୍ୟକ ଉଦ୍ୟମ ହେଲା । ଏହି ହେତୁରୁ ପୂର୍ବ ଶତାବ୍ଦୀ ତୁଳନାରେ ଏହି ସମୟଖଣ୍ଡ ଉପରେ ଅଧିକ ବିଶ୍ୱାସର ସହିତ ଏକ ଐତିହାସିକ ଅବଧାରଣାର ସଂରଚନା କରାଯାଇପାରେ । ଏକ ସାମ୍ରାଜ୍ୟିକ ବ୍ୟବସ୍ଥାରେ ସ୍ୱାଭାବିକ ଭାବରେ ସାମ୍ରାଜ୍ୟର ସୀମାନ୍ତଗୁଡ଼ିକୁ ପରସ୍ପରର ନିକଟତର କରାଗଲା, ଲୋକଙ୍କର ଗମନାଗମନ ଓ ବସ୍ତୁର ପରିବହନ ପାଇଁ ସୁବିଧା ସୁଯୋଗ ସୃଷ୍ଟି କରାଗଲା ଏବଂ ବିଭିନ୍ନ ସ୍ତରରେ ସମ୍ପର୍କ ଓ ସଞ୍ଚାରର ସମ୍ଭାବନା ଖୋଜିବାକୁ ପ୍ରୟାସ କରାଗଲା । ଏହି ପ୍ରୟାସର ପରିଣାମ ସ୍ୱରୂପ, ଲିପିର ବ୍ୟବହାର ହେଲା, ବିନିମୟ ବ୍ୟବସ୍ଥାରେ ଆହତ ସିକ୍କା ମୋହରର (Punch-marked coins) ବ୍ୟବହାର ହେଲା ଏବଂ ନୂତନ ନୀତିକୁ ଯଥାର୍ଥ ପ୍ରମାଣିତ କରିବା ସକାଶେ ନୂତନ ବିଚାରଧାରାକୁ ଦର୍ଶାଗଲା ।

ରାଜ୍ୟର ଯେତେଗୁଡ଼ିଏ କିସମ, ସେହି ଆଧାରରେ ଦେଖିଲେ, ରାଜ୍ୟଗୁଡ଼ିକ ବସ୍ତୁତଃ ସାମ୍ରାଜ୍ୟଠାରୁ ଭିନ୍ନ । ଯେଉଁ ସମ୍ପଦା ସହଜରେ ଉପଲବ୍ଧ ତହିଁରୁ ରାଜ୍ୟଗୁଡ଼ିକ ଅଧିକରୁ ଅଧିକ ଲାଭ ଆହରଣ କରିବା ସକାଶେ ପ୍ରୟାସ କରନ୍ତି; ଅଧିକ ସମ୍ପଦା ଲାଭ କରିବା ଉଦ୍ଦେଶ୍ୟରେ ସମ୍ପଦାର ଉତ୍ସଗୁଡ଼ିକର ପୁନଃସଂରଚନା କରିବାକୁ ବିଶେଷ ଉଦ୍ୟମ କରନ୍ତି ନାହିଁ । ଅନ୍ୟପକ୍ଷରେ, ସାମ୍ରାଜ୍ୟର ଆବଶ୍ୟକତା ଓ ସାମ୍ରାଜ୍ୟ ଉପରେ ଚାପ ହେଲା ସମ୍ପୂର୍ଣ୍ଣ ଭିନ୍ନ କିସମର, ଯାହାଫଳରେ ସାମ୍ରାଜ୍ୟିକ ପ୍ରଶାସନର ଆର୍ଥିକ ଆବଶ୍ୟକତାକୁ ପୂରଣ କରିବା ନିମନ୍ତେ ସାମ୍ରାଜ୍ୟ ରାଜସ୍ୱର ସମ୍ଭାବନା ରହିଥିବା କ୍ଷେତ୍ରରେ ପୁନଃସଂରଚନା କରେ । ଫଳରେ ସାମ୍ରାଜ୍ୟିକ ବ୍ୟବସ୍ଥା ସ୍ଥିର ରହିପାରେନା; ବରଂ ନିଜର ଆର୍ଥିକ ଆବଶ୍ୟକତା ଓ ସଂସାଧନ ମଧ୍ୟରେ ତାଳମେଳ ରଖିବାକୁ ସର୍ବଦା ପ୍ରୟାସ କରୁଥାଏ । ସମରୂପତା ଆଣିବା ଉଦ୍ଦେଶ୍ୟରେ ଏହା ବିବିଧତାକୁ ବିନଷ୍ଟ କରିବାକୁ ପ୍ରୟାସ କରେ, ଯଦିଓ ଏଥିରେ ତାଙ୍କୁ କଦାପି ପୂର୍ଣ୍ଣ ସଫଳତା ହାସଲ ହୋଇ ନ ଥାଏ । ଉଭୟ ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରରେ ବିବିଧତା ବିରାଜମାନ ରହେ । ସାଂସ୍କୃତିକ ସମରୂପତା ଆଣିବା ପାଇଁ ନୂତନ ବିଚାରଧାରାକୁ ପ୍ରସାରିତ କରାଯାଏ । ଅଶୋକଙ୍କର 'ଧମ୍ମ' ଥିଲା ସେହିଭଳି ଏକ ନୂତନ ବିଚାରଧାରା । ଠିକ୍ ସେମିତି, ସାମ୍ରାଜ୍ୟର ସବୁ ଭାଗରେ ସମାନ ପରିମାଣରେ ସମ୍ପଦା ନ ଥାଏ । ଉପଲବ୍ଧ ସମ୍ପଦାର ମଧ୍ୟ ସର୍ବତ୍ର ଏକା କିସମର ଉପଯୋଗ କରାଯାଏନା । ସେଥିପାଇଁ କିଛିମାତ୍ରାରେ ଆର୍ଥିକ ପୁନଃସଂରଚନାର ଆବଶ୍ୟକତା ପଡ଼େ । ଯେଉଁ ସମ୍ପଦାର ଅଧିକ ଉପଯୋଗ, ତହିଁରେ ପୁନଃସଂରଚନାକୁ ସୀମିତ କରାଯାଏ । ମୌର୍ଯ୍ୟ ସାମ୍ରାଜ୍ୟରେ କୃଷିର ବିସ୍ତାର କରି ଓ କେତେକ ଅବସରରେ ଶ୍ରମିକମାନଙ୍କର ଗତିଶୀଳତାକୁ ବୃଦ୍ଧିକରି ଏହି ପୁନଃସଂରଚନା (restructuring) ପାଇଁ ଉଦ୍ୟମ କରାଗଲା । ଏଥିପାଇଁ ଦୀର୍ଘସ୍ଥାୟୀ

ବ୍ୟାପାରିକ ବିନିମୟ ମଧ୍ୟ ଆରମ୍ଭ କରାଗଲା । ମାତ୍ର ସାମ୍ରାଜ୍ୟିକ ବ୍ୟବସ୍ଥା ଅନେକ ସମୟରେ ଆର୍ଥିକ ତାରତମ୍ୟର ମଧ୍ୟ ଲାଭ ଉଠାଏ ଏବଂ ନୂତନ ସମ୍ବନ୍ଧଗୁଡ଼ିକ ସ୍ଥାୟୀ କରିବାପାଇଁ ଅର୍ଥବ୍ୟବସ୍ଥାର ପୁନର୍ଗଠନ କରେ । ପ୍ରଶାସନ ମାଧ୍ୟମରେ ସମ୍ପଦାକୁ ହସ୍ତଗତ କରିବା ଯେଉଁ ଉପାୟରେ ସହଜ ହେବ, ତାକୁ ଆଧାର କରି ଏହା ବିଭେଦକୁ କାର୍ଯ୍ୟକାରୀ କରେ ।

ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠାତା ଥିଲେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ । ସେ ଖ୍ରୀଷ୍ଟପୂର୍ବ 321 ରେ ନନ୍ଦ ସିଂହାସନ ଆରୋହଣ କଲେ । ସେତେବେଳେ ସେ ଥିଲେ ଜଣେ ନବଯୁବକ । କୁହାଯାଏ କୌଟିଲ୍ୟ ନାମକ ଜଣେ ବ୍ରାହ୍ମଣ ଥିଲେ ତାଙ୍କର ଦିଗଦ୍ରଷ୍ଟା ଓ ଦୀକ୍ଷାକାରୀ । ସିଂହାସନ ପ୍ରାପ୍ତିରେ ତଥା ତାକୁ ନିଜ କରଗତ କରି ରଖିବାରେ ଚନ୍ଦ୍ରଗୁପ୍ତଙ୍କୁ କୌଟିଲ୍ୟଙ୍କର ପୂର୍ଣ୍ଣ ସହଯୋଗ ପ୍ରାପ୍ତ ହୋଇଥିଲା । ଅନେକ କିମ୍ବଦନ୍ତୀ ଓ କାହାଣୀରେ ଏକଥା ବର୍ଣ୍ଣିତ ହୋଇଛି । ଏହି କାହାଣୀଗୁଡ଼ିକ ବିଶେଷକରି ବୌଦ୍ଧଗ୍ରନ୍ଥ ଏବଂ ଜୈନଗ୍ରନ୍ଥରୁ ଆନୀତ । ମୌର୍ଯ୍ୟକାଳର ବହୁ ଶତାବ୍ଦୀ ପରେ ରଚିତ ହୋଇଥିବା ବିଶାଖାଦତ୍ତଙ୍କର 'ମୁଦ୍ରାରାକ୍ଷସ' ନାଟକରେ ମଧ୍ୟ ଚନ୍ଦ୍ରଗୁପ୍ତଙ୍କର କ୍ଷମତାସୀନ ହେବା ଓ କୌଟିଲ୍ୟଙ୍କର ତହିଁରେ ପୂର୍ଣ୍ଣ ସହଯୋଗ ଥିବା କଥା ବର୍ଣ୍ଣିତ ହୋଇଛି । ମୌର୍ଯ୍ୟ ବଂଶର ମୂଳ ଏବଂ ଜାତି ମର୍ଯ୍ୟାଦାକୁ ନେଇ ଗ୍ରନ୍ଥଗୁଡ଼ିକରେ ଭିନ୍ନ ଭିନ୍ନ ଉଲ୍ଲେଖ ରହିଛି । ସମ୍ଭବତଃ ମୌର୍ଯ୍ୟମାନଙ୍କୁ ଅଧିକ ମର୍ଯ୍ୟାଦା ଦେବା ଉଦ୍ଦେଶ୍ୟରେ ବୌଦ୍ଧଗ୍ରନ୍ଥମାନଙ୍କରେ ମୌର୍ଯ୍ୟମାନେ ଶାକ୍ୟ ବଂଶର ଏକ ଶାଖା କ୍ଷତ୍ରିୟ ମୋରୀୟ ବଂଶର ବୋଲି କୁହାଯାଇଛି । ମାତ୍ର ବ୍ରାହ୍ମଣୀୟ ରଚନାମାନଙ୍କରେ ସେମାନେ (ମୌର୍ଯ୍ୟମାନେ) ଶୂଦ୍ର ଓ ଅପଧର୍ମୀ (heretics), କାରଣ ପ୍ରତ୍ୟେକ ମୌର୍ଯ୍ୟ ରାଜା ଗୋଟାଏ ଗୋଟାଏ ବ୍ରାହ୍ମଣେତର ବା ଅଣ-ସନାତନୀ (heterodox) ସଂପ୍ରଦାୟର ପୃଷ୍ଠପୋଷକ ସାଜିଥିଲେ । ଏଥିରେ କୌଣସି ଆଶ୍ଚର୍ଯ୍ୟର ଅବକାଶ ନାହିଁ ଯେ, ମୌର୍ଯ୍ୟ ବଂଶକୁ ନନ୍ଦବଂଶ ସହିତ ମଧ୍ୟ ଯୋଡ଼ି ଦିଆଯାଏ । ପୁରାଣରେ ନନ୍ଦମାନଙ୍କୁ ଶୂଦ୍ର ବୋଲି କୁହାଯାଇଛି । ସୂର୍ଯ୍ୟବଂଶ ଏବଂ ଚନ୍ଦ୍ରବଂଶର କ୍ଷତ୍ରିୟ ବୀରମାନଙ୍କର ବିପରୀତ ଏକ ଶୂଦ୍ର ଉତ୍ତରାଧିକାରୀ ରାଜବଂଶର ଉତ୍ପତ୍ତି ହେବ ବୋଲି ଏକ ଅସ୍ପଷ୍ଟ ଉକ୍ତି ମଧ୍ୟ ରହିଛି । ରାଜବଂଶର କୁଳମର୍ଯ୍ୟାଦାରେ ଏହି ପରିବର୍ତ୍ତନକୁ ରାଜ୍ୟୋଦୟର ଏକ ଉପାଦାନ ଭାବରେ ଦେଖିହେବ । ଅର୍ଥାତ୍ ସେତେବେଳେ ରାଜନୈତିକ କ୍ଷମତା ହାସଲ କରିବାର ମାର୍ଗ ସବୁ ବର୍ଣ୍ଣ ପାଇଁ ଖୋଲା ଥିଲା; ପ୍ରାୟ ସବୁ ବର୍ଣ୍ଣର ଲୋକେ ରାଜପଦ ପ୍ରାପ୍ତି ପାଇଁ ମନରେ ଉଚ୍ଚାକାଂକ୍ଷା ପାଳି ପାରୁଥିଲେ ।

ମୌର୍ଯ୍ୟ ଯୁବକ ଚନ୍ଦ୍ରଗୁପ୍ତ ଏବଂ ତାଙ୍କ ସମର୍ଥକମାନେ ନନ୍ଦ ରାଜାଙ୍କ ତୁଳନାରେ ସାମରିକ ଶକ୍ତି କ୍ଷେତ୍ରରେ ଯଥେଷ୍ଟ ଊଣା ଥିଲେ । ଫଳରେ କୁଶଳ ରଣନୀତି ତାଙ୍କ (ଚନ୍ଦ୍ରଗୁପ୍ତ) ପାଇଁ ଅତ୍ୟନ୍ତ ଆବଶ୍ୟକ ହୋଇପଡ଼ିଲା । ଏହି ରଣନୀତି ଉପଯୋଗୀ ମଧ୍ୟ ସିଦ୍ଧ ହେଲା । ମଗଧର ସିଂହାସନ ଆରୋହଣ ଥିଲା, କେତେକ ସୂତ୍ର ଅନୁଯାୟୀ, ଚନ୍ଦ୍ରଗୁପ୍ତଙ୍କର ପ୍ରଥମ

ପଦକ୍ଷେପ । କେତେକ କାହାଣୀରେ ଚନ୍ଦ୍ରଗୁପ୍ତ, ନନ୍ଦରାଜ୍ୟର ବିଚ୍ଛିନ୍ନାଞ୍ଚଳଗୁଡ଼ିକରେ ଉପଦ୍ରବ କରୁଥିଲେ ବୋଲି କୁହାଯାଇଛି । ବିଚ୍ଛିନ୍ନାଞ୍ଚଳ ଓ ସୀମାବର୍ତ୍ତୀ ଅଞ୍ଚଳରୁ ସେ କ୍ରମଶଃ କେନ୍ଦ୍ରାଞ୍ଚଳ ଆଡ଼କୁ ଅଗ୍ରସର ହେଲେ । ଏହି ରଣନୀତିର ମୂଳରେ ଥିଲା ଏକ କାହାଣୀ । ଉକ୍ତ କାହାଣୀ ଅନୁସାରେ, ଭାବୀସମ୍ରାଟ ଚନ୍ଦ୍ରଗୁପ୍ତ କୁଆଡ଼େ ଥରେ ଜଣେ ସ୍ତ୍ରୀଲୋକକୁ ତା' ପିଲାକୁ ଗାଳି କରୁଥିବାର ଶୁଣିଲେ । ପିଲାଟି ଗରମ ତରକାରିକୁ ମଝିରୁ ଖାଉଥିବାର ଦେଖି ମା' କହିଲା, ''ଅପେକ୍ଷାକୃତ କମ୍ ଗରମ ଥିବା କୋଣଆଡୁ ଖାଅ ।'' ଏଥିରୁ ଶିକ୍ଷା ପାଇ କୁଆଡ଼େ ଚନ୍ଦ୍ରଗୁପ୍ତ ମଗଧର ଦୂର ସୀମାନ୍ତଆଡୁ ଆକ୍ରମଣ କରିବାକୁ ଲାଗିଲେ । ପ୍ରଥମେ ଗାଙ୍ଗେୟ ସମତଳ ତାଙ୍କ ନିୟନ୍ତ୍ରଣକୁ ଆସିଲା । ଏହା ଉତ୍ତାରୁ ସେ ଆଲେକ୍ଜାଣ୍ଡାରଙ୍କ ଭାରତରୁ ପ୍ରତ୍ୟାବର୍ତ୍ତନ ପରେ ଶୂନ୍ୟସ୍ଥାନ ସୃଷ୍ଟି ହୋଇଥିବା ଉତ୍ତର-ପଶ୍ଚିମ କ୍ଷେତ୍ରରେ ଧ୍ୟାନ କେନ୍ଦ୍ରିତ କଲେ । ଏହିସବୁ କ୍ଷେତ୍ର ଖୁବ୍‌ଶୀଘ୍ର ତାଙ୍କ କର୍ତ୍ତୃତ୍ୱକୁ ଆସିଲା । ତେଣିକି ସେ ସିନ୍ଧୁପ୍ରଦେଶରେ ଯାଇ ପହଞ୍ଚିଲେ । ସେଠାରେ ଆଲେକ୍‌ଜାଣ୍ଡାରଙ୍କ ଉତ୍ତରାଧିକାରୀ ଗ୍ରୀକ୍ ସେନାପତି ସେଲ୍ୟୁକସ ନିକେଟର୍ ଗଡ଼ ବାନ୍ଧି ପୂର୍ଣ୍ଣ କର୍ତ୍ତୃତ୍ୱ ଜାହିର କରିଥିଲେ । ତେଣୁ ଚନ୍ଦ୍ରଗୁପ୍ତ କିଛିକାଳ ସେଲ୍ୟୁକସଙ୍କ ସମତୁଲ ହେବାପାଇଁ ପ୍ରସ୍ତୁତି କଲେ । ଇତ୍ୟବସରରେ ସେ ମଧ୍ୟ ଭାରତକୁ ଅଭିଯାନରେ ଗଲେ ଏବଂ ସେଠାରେ ନର୍ମଦା ନଦୀର ଉତ୍ତରରେ ସ୍ଥିତ କ୍ଷେତ୍ରକୁ ଅଧିକାର କରିନେଲେ । ଖ୍ରୀ.ପୂ. 305 ରେ ସେ ପୁଣିଥରେ ଉତ୍ତର-ପଶ୍ଚିମ କ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ସେଲ୍ୟୁକସଙ୍କ ବିରୁଦ୍ଧରେ ଯୁଦ୍ଧ ଅଭିଯାନ ଆରମ୍ଭ କଲେ । ଉଭୟଙ୍କ ମଧ୍ୟରେ ଖ୍ରୀ.ପୂ. 303 ରେ ଯୁଦ୍ଧ ପରେ ସନ୍ଧି ସ୍ୱାକ୍ଷରିତ ହେଲା । ସନ୍ଧିର ସର୍ତ୍ତଗୁଡ଼ିକୁ ଅନୁଶୀଳନ କଲେ ମନେହୁଏ, ଚନ୍ଦ୍ରଗୁପ୍ତଙ୍କୁ ଏହି ଯୁଦ୍ଧରେ ସଫଳତା ପ୍ରାପ୍ତି ହୋଇଥିଲା ।

ଯୁଦ୍ଧ ପରେ କେତେକ ସେଲ୍ୟୁକସ ଶାସନାଧୀନ କ୍ଷେତ୍ର, ଯାହାକୁ ଆଜିର ପୂର୍ବ ଆଫଗାନିସ୍ଥାନ, ବେଲୁଚିସ୍ତାନ ଓ ମକ୍ରାନ ଆଦି ଅଞ୍ଚଳ ସହିତ କରାଯାଏ, ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଏହା ଉତ୍ତାରୁ, ଉତ୍ତର-ପଶ୍ଚିମ କ୍ଷେତ୍ରର ମାର୍ଗ ଏବଂ ସନ୍ଧିସ୍ଥଳଗୁଡ଼ିକ ପାରସ୍ୟ-ଗ୍ରୀସୀୟ ହେଲେନବାଦୀ ନିୟନ୍ତ୍ରଣରୁ ମୌର୍ଯ୍ୟ ନିୟନ୍ତ୍ରଣକୁ ଆସିଲା । ବସ୍ତୁତଃ ଇରାନ ଓ ଉତ୍ତର ଭାରତର ପ୍ରମୁଖ ରାଜ୍ୟ ମଧ୍ୟରୁ କୌଣସି ରାଜ୍ୟ ଯଦି ଅନ୍ୟ ପାଖକୁ (ଇରାନ୍‌ର ରାଜ୍ୟ ଉତ୍ତର ଭାରତକୁ କିମ୍ବା ଉତ୍ତର ଭାରତର ରାଜ୍ୟ ଇରାନକୁ) ହସ୍ତାନ୍ତରିତ ହୁଏ, ତାକୁ ବଡ଼ କଥା ବୋଲି ସେତେବେଳେ ମନେକରାଯାଉ ନଥିଲା । ଏହି ଐତିହାସିକ ପୃଷ୍ଠଭୂମିରେ କୌଣସି ରାଜବଂଶକୁ ଉତ୍ତର-ପଶ୍ଚିମ କ୍ଷେତ୍ରରେ 'ବିଦେଶୀ' ରୂପେ ଚିତ୍ରଣ କରିବାର ପ୍ରବୃତ୍ତିର ପ୍ରଚଳନ ନ ଥିଲା । ଯଦି ଦେଖାଯାଏ, ଏହି କ୍ଷେତ୍ରର ଲୋକମାନେ ନିଜେ ବି ବିବିଧ ସଂସ୍କୃତିରୁ ଆସିଥିଲେ । ସେଲ୍ୟୁକସଙ୍କର ଯେଉଁ କ୍ଷେତ୍ର ହାତଛଡ଼ା ହେଲା,

ତା'ରି ବଦଳରେ ତାଙ୍କୁ 500 ହାତୀ ପ୍ରାପ୍ତ ହେଲା । ଏଥିରୁ ଜଣାପଡ଼େ ଯେ, ହେଲେନବାଦୀ ସାମରିକ କୂଟନୀତିରେ ଯୁଦ୍ଧ ଅଭିଯାନରେ ହାତୀର ଉପସ୍ଥିତିକୁ ଖୁବ୍ ମହତ୍ତ୍ୱ ଦିଆଯାଉଥିଲା । ସନ୍ଧି ପରେ ଏକ ଏପିଗେମିଆ (Epiganımia)ର ବିବାହୋଲ୍ଲେଖ ଦେଖିବାକୁ ମିଳେ, ଯାହାକୁ ଆଧାର କରି ଉଭୟ ରାଜବଂଶ ମଧ୍ୟରେ ବୈବାହିକ ସମ୍ବନ୍ଧ ମଧ୍ୟ ସ୍ଥାପିତ ହୋଇଥିବାର ଅନୁମାନ କରାଯାଏ । ମାତ୍ର ତା'ଠାରୁ ବଡ଼ କଥା, ଏହି ବିବାହ ସମ୍ବନ୍ଧରୁ ଜଣାପଡ଼େ ଯେ, ହେଲେନବାଦୀ ଗ୍ରୀକ୍ ଏବଂ ଭାରତୀୟମାନଙ୍କ ମଧ୍ୟରେ ଅନ୍ତତଃ ପୂର୍ବ ଆଫଗାନିସ୍ତାନର ନଗରୀୟ ପରିବେଶରେ ସଂଘଟିତ ହୋଇଥିବା ବିବାହକୁ ବୈଧତା ପ୍ରଦାନ କରାଯାଉଥିଲା । ସୈନ୍ଧବ ସମତଳ ଓ ଗାଙ୍ଗେୟ ସମତଳ ଏବଂ ତା' ସହିତ ସୀମାନ୍ତ କ୍ଷେତ୍ରଗୁଡ଼ିକ ଉପରେ ଆଧିପତ୍ୟ ବିସ୍ତାର କରି ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସାମ୍ରାଜ୍ୟକୁ ଭିତ୍ତି ପ୍ରଦାନ କଲେ । ଯେକୌଣସି ମାପଦଣ୍ଡରେ ଦେଖିଲେ, ଏହା ଯେ ଏକ ଦୁର୍ଦ୍ଧର୍ଷ ସାମ୍ରାଜ୍ୟ ଥିଲା, ତାହା କାହାକୁ ଆଜି ଅସ୍ୱୀକାର୍ଯ୍ୟ ହୋଇ ନ ପାରେ ।

ପ୍ରାଚୀନ ଜଗତରେ ଯୁଦ୍ଧ ଅଭିଯାନର ଉଦ୍ଦେଶ୍ୟ କେବଳ ନୂତନ କ୍ଷେତ୍ର ଉପରେ ବିଜୟ ହାସଲ ନ ଥିଲା । କୂଟନୀତିକ ସୁବିଧା ହାସଲ ପାଇଁ ତଥା ଅର୍ଥନୈତିକ ଲାଭ ପାଇବା ପାଇଁ ମଧ୍ୟ ଯୁଦ୍ଧ କରାଯାଉଥିଲା । ପଡ଼ୋଶୀ ରାଜ୍ୟଗୁଡ଼ିକ ସହିତ ସମ୍ବନ୍ଧ ରୂପରେ କୂଟନୀତି ସୁସ୍ପଷ୍ଟ ହେଉଥିଲା । ପରବର୍ତ୍ତୀ ସମୟରେ ଏହା ମଣ୍ଡଳ ସିଦ୍ଧାନ୍ତକୁ ଆଧାର ଯୋଗାଇଲା । ମଣ୍ଡଳ ସିଦ୍ଧାନ୍ତର ଅର୍ଥ ହେଲା – ମିତ୍ର ଓ ଶତ୍ରୁକୁ ନେଇ କୂଟନୀତିର ଚକ୍ରାକାର ବା ମଣ୍ଡଳାକାର । ଆର୍ଥିକ ସୁବିଧା ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରର କେବଳ ପ୍ରକୃତି ଓ ସ୍ଥିତିରେ ନୁହେଁ ବା ଅଧିକାରଭୁକ୍ତ ହେବାକୁ ଥିବା କ୍ଷେତ୍ର ଓ ତା'ର ସମ୍ପଦାରେ ନୁହେଁ, ବରଂ ତା' ସହିତ ଯୁଦ୍ଧର ଚରିତ୍ରରେ ଏହା ସ୍ପଷ୍ଟତର ହେଉଥିଲା । ଧନାଢ଼୍ୟ ପଡ଼ୋଶୀ ରାଜ୍ୟ ବିରୁଦ୍ଧରେ ବ୍ୟାପକ ଯୁଦ୍ଧ ଅଭିଯାନରୁ ପ୍ରଭୂତ ଧନସମ୍ପଦ ଲାଭ ହେବାର ଆଶା ରହିଥିଲା । ଯୁଦ୍ଧବନ୍ଦୀମାନଙ୍କୁ ଶ୍ରମିକ ରୂପେ ଉପଯୋଗ ମଧ୍ୟ କରାଯାଉଥିଲା । ସେଥିପାଇଁ ଯୁଦ୍ଧ ସହିତ କେବଳ ସୈନିକ ଗତିବିଧି କଥା ଜଡ଼ିତ ନ ଥିଲା । ସେଲ୍ୟୁକସଙ୍କ ସେନା ବିରୁଦ୍ଧରେ ମୌର୍ଯ୍ୟମାନେ ଯୁଦ୍ଧ ଅଭିଯାନ କରିଥିଲେ, କାରଣ ସେମାନେ ଗାନ୍ଧାର ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଚାହୁଁଥିଲେ । ଆକେମେନିଡ଼ ସାମ୍ରାଜ୍ୟର ଏକ ଅଂଶ ରୂପରେ ଆରମ୍ଭରୁ ଗାନ୍ଧାର ଥିଲା ରାଜସ୍ୱର ଏକ ପ୍ରମୁଖ ଉତ୍ସ । ତା'ଛଡ଼ା, ପଶ୍ଚିମ ଏସିଆ ସହିତ ସ୍ଥଳମାର୍ଗରେ ଗାନ୍ଧାର ସଂଯୋଜିତ ଥିଲା । ଠିକ୍ ସେହିଭଳି, ମଧ୍ୟଭାରତ ଉପରେ ଆଧିପତ୍ୟ ରହିବା ଅର୍ଥ ଉପଦ୍ୱୀପକୁ ପ୍ରବେଶପଥ ଲାଭ କରିବା । ସେପର୍ଯ୍ୟନ୍ତ ଉପଦ୍ୱୀପର ସମ୍ପଦା ଉପରକୁ ଉତ୍ତର ଭାରତର ରାଜଶକ୍ତିମାନଙ୍କର ଦୃଷ୍ଟି ଯାଇ ନ ଥିଲା ।

ଯୁଦ୍ଧ ଅଭିଯାନ ସତ୍ତ୍ୱେ, ମୌର୍ଯ୍ୟ ଓ ସେଲ୍ୟୁକସଙ୍କ ମଧ୍ୟରେ ମିତ୍ରତାପୂର୍ଣ୍ଣ ଓ ଅନୁସନ୍ଧିତ୍ସୁମୂଳକ ସମ୍ପର୍କ ଅବ୍ୟାହତ ରହିଥିଲା । ଚନ୍ଦ୍ରଗୁପ୍ତଙ୍କୁ ପରବର୍ତ୍ତୀ ଗ୍ରୀକ୍ ବିବରଣୀମାନଙ୍କରେ 'ସଂଦ୍ରୋକୋଟ୍ଟ' ବୋଲି ଉଲ୍ଲେଖ କରାଯାଇଛି ଏବଂ ଯୁବାବସ୍ଥାରେ ସେ ଆଲେକ୍‌ଜାଣ୍ଡାରଙ୍କ ସହିତ ସାକ୍ଷାତ କରିଥିଲେ ବୋଲି କୁହାଯାଇଛି । ଅଷ୍ଟାଦଶ ଶତାବ୍ଦୀରେ ୱିଲିଅମ ଜୋନ୍‌ସ ଗ୍ରୀକ୍ ବିବରଣୀର 'ସଂଦ୍ରୋକୋଟ୍ଟ' ହିଁ ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ବୋଲି ସିଦ୍ଧ କଲେ । ଏହାଫଳରେ ମୌର୍ଯ୍ୟ କାଳାନୁକ୍ରମକୁ ବୁଝିବା ସହଜ ହେଲା । ସମ୍ଭବତଃ, ବୈବାହିକ ସମ୍ବନ୍ଧ ସ୍ଥାପିତ ହେବାରୁ ସେଲ୍ୟୁକସଙ୍କ ଜଣେ କନ୍ୟା ପାଟଳିପୁତ୍ର ସ୍ଥିତ ମୌର୍ଯ୍ୟ ରାଜପୁରକୁ ଆସିଥିଲେ । ତାଙ୍କ ସହିତ ଅନେକ ଗ୍ରୀକ୍ ମହିଳା ମଧ୍ୟ ଆସିଥିବାର ଅନୁମିତ ହୁଏ । ଏହାବ୍ୟତୀତ, ମୌର୍ଯ୍ୟ ଦରବାର ଏବଂ ସେଲ୍ୟୁକସଙ୍କ ଦରବାର ମଧ୍ୟରେ ଏକାଧିକ ଦୂତର ଆଦାନ ପ୍ରଦାନ ହୋଇଥିଲା । ଆଭ୍ୟନ୍ତରର ହେଲେନବାଦୀ ରାଜ୍ୟଗୁଡ଼ିକର ଦୂତ ମଧ୍ୟ ମୌର୍ଯ୍ୟ ଦରବାରକୁ ଆସିଥିଲେ । ପୁଣି ମୌର୍ଯ୍ୟ ଓ ସେହିସବୁ ରାଜ୍ୟ ମଧ୍ୟରେ ଉପହାରର ଆଦାନ ପ୍ରଦାନ ଦେଖିବାକୁ ମିଳିଥିଲା । ଉପହାର ମଧ୍ୟରେ କାମୋତ୍ତେଜକ ଔଷଧ ସାମିଲ ଥିଲା । ପାଟଳିପୁତ୍ରରେ ଆଗନ୍ତୁକମାନଙ୍କୁ ଭବ୍ୟ ସ୍ୱାଗତ କରାଯାଉଥିଲା । ଆଗନ୍ତୁକମାନଙ୍କର ଭଲମନ୍ଦ ବୁଝିବା ସକାଶେ ସହର ପ୍ରଶାସନରେ ଏକ ସ୍ୱତନ୍ତ୍ର କମିଟି ରହିଥିଲା ।

ମନେହୁଏ ସେଲ୍ୟୁକସଙ୍କ ଦୂତ ମେଘାସ୍ଥିନିସ ଭାରତ ପରିଭ୍ରମଣରେ ଆସି ଦୀର୍ଘକାଳ ଧରି ଏଠାରେ ରହିଥିଲେ । ସେ ତାଙ୍କର ପରିଭ୍ରମଣ ବିବରଣୀକୁ 'ଇଣ୍ଡିକା' ଶୀର୍ଷକରେ ଲେଖିଯାଇଛନ୍ତି । 'ଇଣ୍ଡିକା'ରେ ବର୍ଣ୍ଣିତ ଅନେକ ବିବରଣୀକୁ ସାଧାରଣ କଥାବାର୍ତ୍ତା ଓ ପରିଭ୍ରମଣକାରୀର କାହାଣୀରୁ ଏକତ୍ରିତ କରାଯାଇଥିଲା । ବିବରଣୀର ରୂପରେଖ ଯାହା ତାହା ବ୍ୟକ୍ତିଗତ ଅନୁଭୂତି ଲବ୍‌ଧ ନ ଥିଲା ବୋଲି ମନେହୁଏ । କେତେକ ସମସାମୟିକଙ୍କ ମତରେ ମେଘାସ୍ଥିନିସ ପାଟଳିପୁତ୍ରରେ ସମୟ ନିର୍ବାହ କରିଥିଲେ କି ନା – ତାହା ସନ୍ଦେହାସ୍ପଦ । ଅବଶୋଷର କଥା ଯେ, ମୂଳ ବିବରଣୀ ସମ୍ବଳିତ ପାଣ୍ଡୁଲିପି ଆଉ ଉପଲବ୍‌ଧ ହେଉ ନାହିଁ । ଯାହା ଉପଲବ୍‌ଧ, ତାହା ହେଲା ଇଣ୍ଡିକାର ଉଦ୍ଧୃତି । ଏହିସବୁ ଉଦ୍ଧୃତି ଡଓଡରସ, ଷ୍ଟ୍ରାବୋ ଓ ଆରିଆନଙ୍କ ପରି ପରବର୍ତ୍ତୀକାଳୀନ ଲେଖକଙ୍କ ରଚନାରେ ଦେଖିବାକୁ ମିଳିଥାଏ । ଏହି ଲେଖକମାନେ ମୂଳ ଇଣ୍ଡିକାକୁ ପୁନଃସଂରଚନା କରିଥିବାର ମନେହୁଏ, କାରଣ ପାଣ୍ଡୁଲିପିର କେତେକ ବିନ୍ଦୁକୁ ନେଇ ଲେଖକ ତିନିଜଣଙ୍କ ମଧ୍ୟରେ ଏକମତ ନାହିଁ । ହେଲେନବାଦୀ ରାଜ୍ୟଗୁଡ଼ିକ ବୈଧତା ଲାଭ କରିବା ସକାଶେ ଐତିହାସିକମାନଙ୍କଠାରୁ ସହଯୋଗ କାମନା କରୁଥିଲେ । ଐତିହାସିକମାନେ ସେମାନଙ୍କ ପ୍ରଶାସନକୁ ବ୍ୟାଖ୍ୟା କରନ୍ତୁ ବୋଲି ସେମାନେ (ରାଜ୍ୟମାନେ) ଇଚ୍ଛାପ୍ରକାଶ କରୁଥିଲେ । ସେହି ସୂତ୍ରରେ ମେଘାସ୍ଥିନିସଙ୍କୁ ସେଲ୍ୟୁକସ

ମନୋନୟନ କରିଥିଲେ । ଅନ୍ୟ ଲେଖକମାନେ ହେଲେନବାଦୀ ରାଜ୍ୟଗୁଡ଼ିକ ସମ୍ବନ୍ଧରେ ଯେଉଁ ବର୍ଣ୍ଣନାମାନ କରିଛନ୍ତି, ସେହି ପରିପ୍ରେକ୍ଷୀରେ ମୌର୍ଯ୍ୟକାଳୀନ ଭାରତ ସମ୍ପର୍କିତ ମେଘାସ୍ଥିନିସଙ୍କ ବିବରଣୀକୁ ଅନୁଶୀଳନ କଲେ ପାଣ୍ଡୁଲିପି ସୁଖପାଠ୍ୟ ହେବ ବୋଲି ଆଶା କରାଯାଏ ।

ଜୈନ ପରମ୍ପରା ଅନୁଯାୟୀ, ଜୀବନର ଅନ୍ତିମ କାଳରେ ଚନ୍ଦ୍ରଗୁପ୍ତ ଜଣେ ପକ୍କା ଜୈନ ଭାବରେ ରାଜସିଂହାସନକୁ ପୁତ୍ର ବିନ୍ଦୁସାରଙ୍କ ହାତରେ ସମର୍ପଣ କଲେ ଏବଂ ନିଜେ ସନ୍ୟାସୀ ହେଲେ । ସେବେଳର ଜଣେ ପ୍ରସିଦ୍ଧ ଜୈନ ସନ୍ୟାସୀ ଭଦ୍ରବାହୁ ଏବଂ ଅନ୍ୟ ଜୈନ ସନ୍ୟାସୀମାନଙ୍କ ସହିତ ସେ ଦକ୍ଷିଣ ଭାରତ ପରିଭ୍ରମଣରେ ଗଲେ । ସେଠାରେ ସେ ରଢ଼ିବାଦୀ ଜୈନ ପରମ୍ପରାର ପାଳନ ପୂର୍ବକ ନିରନ୍ନ ରହି ଦେହତ୍ୟାଗ କଲେ । କର୍ଣ୍ଣାଟକସ୍ଥିତ ଜୈନ ତୀର୍ଥସ୍ଥଳୀ ଶ୍ରବଣବେଲଗୋଲା ନିକଟସ୍ଥ ଏକ ସ୍ଥାନକୁ ସ୍ଥାନୀୟ ପରମ୍ପରାରେ ଚନ୍ଦ୍ରଗୁପ୍ତଙ୍କର ସମାଧିସ୍ଥଳ ରୂପେ ଚିହ୍ନିତ କରାଯାଏ ।

ଖ୍ରୀ.ପୂ. 297 ରେ ପ୍ରାୟ ବିନ୍ଦୁସାର ମୌର୍ଯ୍ୟ ସିଂହାସନ ଆରୋହଣ କଲେ । ଗ୍ରୀକ୍ ବିବରଣୀରେ ତାଙ୍କୁ 'ଅମିତ୍ରଚାଟ୍ସ' ବୋଲି କୁହାଯାଇଛି, ଯାହା ସଂସ୍କୃତ ଶବ୍ଦ 'ଅମିତ୍ରଘାତ'ର ଗ୍ରୀକ୍ ଅପଭ୍ରଂଶ ଅଟେ । ଅମିତ୍ରଘାତର ଅର୍ଥ ହେଲା 'ଶତ୍ରୁବିନାଶକାରୀ' । ଯାହା ଜଣାପଡ଼େ, ବିନ୍ଦୁସାର ଥିଲେ ବିବିଧ ଆଗ୍ରହ ଓ ସ୍ୱାଦର ଜଣେ ପିପାସୁ । କୁହାଯାଏ, କିଛି ସୁମିଷ୍ଟ ମଦ୍ୟ, ଦ୍ରାକ୍ଷା ଭଳି ଶୁଷ୍କ ଫଳ ଏବଂ ଜଣେ ସୋଫିମତବାଦୀ କୂଟତାର୍କିକଙ୍କୁ ମୌର୍ଯ୍ୟ ଦରବାରକୁ ପ୍ରେରଣ କରିବାକୁ ସେ ଗ୍ରୀକ୍ ରାଜା ଆଣ୍ଟିଓକସ ପ୍ରଥମଙ୍କୁ ଅନୁରୋଧ କରିଥିଲେ । ବୌଦ୍ଧ ପରମ୍ପରା ଅନୁଯାୟୀ, ବିନ୍ଦୁସାର ଆଜୀବିକ ସଂପ୍ରଦାୟର ପୃଷ୍ଠପୋଷକ ଥିଲେ । ବୌଦ୍ଧଧର୍ମର ଏକ ତିବ୍ବତୀୟ ଇତିହାସରେ, ଯାହା ଅନେକ ଶତାବ୍ଦୀ ପରେ ଲେଖାଯାଇଥିଲା, ତାଙ୍କୁ 'ଦୁଇ ସମୁଦ୍ରର ମଧ୍ୟାଂଶ'ର ଜୟକର୍ତ୍ତା ବୋଲି କୁହାଯାଇଛି । ଅନୁମାନରେ ଦୁଇ ସମୁଦ୍ର ହେଲା ଆରବ ସାଗର ଓ ବଙ୍ଗୋପସାଗର । ଏଥିରୁ ମନେହୁଏ ଯେ, ବିନ୍ଦୁସାର ଦକ୍ଷିଣକୁ ସେନା ପ୍ରେରଣ କରି କର୍ଣ୍ଣାଟକ ପର୍ଯ୍ୟନ୍ତ ଅଞ୍ଚଳକୁ ମୌର୍ଯ୍ୟ ଶାସନାଧୀନ କରିଥିଲେ । ନିକଟରେ କର୍ଣ୍ଣାଟକର ସନ୍ନତିଠାରେ ଅଶୋକଙ୍କ ଅନୁଶାସନକୁ ଆବିଷ୍କାର କରାଯାଇଛି । ଏହା ଅଶୋକଙ୍କର କଳିଙ୍ଗ ଅନୁଶାସନ ସଦୃଶ ଅଟେ, ମାତ୍ର ଏହା କଳିଙ୍ଗ ଯୁଦ୍ଧ ପରେ ପ୍ରଦତ୍ତ ହୋଇଛି । ଏଥିରୁ ପ୍ରଶ୍ନ ଉଠେ, କ'ଣ ଅଶୋକଙ୍କ ରାଜତ୍ୱ ପୂର୍ବରୁ କର୍ଣ୍ଣାଟକ ମୌର୍ଯ୍ୟ ଅଧିକାରଭୁକ୍ତ ହୋଇ ନ ଥିଲା କି ? ଅର୍ଥାତ୍ ବିନ୍ଦୁସାର ନୁହଁନ୍ତି, ବରଂ ତାଙ୍କ ପୁତ୍ର ଅଶୋକ କର୍ଣ୍ଣାଟକକୁ ପ୍ରଥମକରି ମୌର୍ଯ୍ୟ ଅଧୀନକୁ ଆଣିଥିଲେ କି ? ନା, ଭୁଲବଶତଃ ଏହି ଅନୁଶାସନକୁ ସେଠାରେ ସ୍ଥାନିତ କରାଯାଇଛି ? ଆଦ୍ୟକାଳୀନ ତାମିଲ କବିମାନେ ଭୂଖଣ୍ଡରେ

ମୌର୍ଯ୍ୟ ରଥର ଗର୍ଜନ ଶୁଭାଯାଉଥିବା କଥା ବର୍ଣ୍ଣନା କରିଛନ୍ତି । ମୌର୍ଯ୍ୟ ରଥର ଧ୍ୱଜା ସୂର୍ଯ୍ୟର ପ୍ରକାଶରେ ଉଜ୍ଜ୍ୱଳ ଦିଶୁଥିଲା ବୋଲି ତାମିଲ କାବ୍ୟରେ ଉଲ୍ଲେଖ ରହିଛି । ସେ ଯାହାହେଉ, ସୁଦୂର ଦକ୍ଷିଣର ସର୍ଦ୍ଦାରତନ୍ତ୍ରଗୁଡ଼ିକ ସହିତ ମୌର୍ଯ୍ୟମାନଙ୍କର ମୈତ୍ରୀପୂର୍ଣ୍ଣ ସମ୍ବନ୍ଧ ରହିଥିଲା । ଖ୍ରୀ.ପୂ. 272 ପାଖାପାଖି ବିନ୍ଦୁସାରଙ୍କର ଦେହାନ୍ତ ହେଲା । ସେତେବେଳକୁ ଉପମହାଦେଶର ଏକ ବଡ଼ ଅଂଶ ମୌର୍ଯ୍ୟ ଶାସନାଧୀନ ହୋଇସାରିଥିଲା । ଯେଉଁ ଗୋଟାଏ କ୍ଷେତ୍ର ମୌର୍ଯ୍ୟମାନଙ୍କ ସହିତ ଶତ୍ରୁତାପୂର୍ଣ୍ଣ ଆଚରଣ କରୁଥିଲା ଏବଂ ମୌର୍ଯ୍ୟମାନଙ୍କର ବାଣିଜ୍ୟିକ ସମ୍ବନ୍ଧରେ ବାଧା ଉପୁଜ କରୁଥିଲା, ତାହା ଥିଲା ପୂର୍ବ ଉପକୂଳରେ ସ୍ଥିତ କଳିଙ୍ଗ । ବିନ୍ଦୁସାରଙ୍କ ପୁତ୍ର ଅଶୋକ ସେହି ଅବିଜିତ ରାଜ୍ୟ କଳିଙ୍ଗ ଉପରେ ଆଧିପତ୍ୟ ବିସ୍ତାର କରିବାର ଦାୟିତ୍ୱ ନେଲେ । କଳିଙ୍ଗ ଉପରେ ମୌର୍ଯ୍ୟମାନଙ୍କର ସୈନ୍ୟ ଅଭିଯାନ କେବଳ ମାତ୍ର ଏକ ସାମରିକ ମହତ୍ତ୍ୱର ଘଟଣା ହୋଇ ରହିଲା ନାହିଁ ।

ମାତ୍ର ଶହେ ବର୍ଷ ପୂର୍ବରୁ ଭାରତ ଇତିହାସରେ ଅଶୋକ ଥିଲେ ଜଣେ ସାଧାରଣ ରାଜା । ମୌର୍ଯ୍ୟ ରାଜବଂଶର ସୂଚୀରେ ତାଙ୍କର କେବଳ ନାମୋଲ୍ଲେଖ ରହିଥିଲା; ପୁରାଣରେ ତା'ର ସୂଚନା ରହିଥିଲା । ଅନ୍ୟତ୍ର, ଯେମିତି ବୌଦ୍ଧଗ୍ରନ୍ଥ, ତାଙ୍କୁ ଜଣେ 'ଚକ୍ରବର୍ତ୍ତୀ' ବା 'ଚକ୍କବତ୍ତୀ' ଭାବରେ ଉଲ୍ଲେଖ କରାଯାଇଥିଲା । ବୌଦ୍ଧଧର୍ମର ବିଲୁପ୍ତି ପରେ ଚକ୍ରବର୍ତ୍ତୀ ପରମ୍ପରାର ମଧ୍ୟ ଆଉ ଶୁଣା ନ ଥିଲା । ମାତ୍ର 1837 ମସିହାରେ ଜେମ୍‌ସ ପ୍ରିନ୍‌ସେପ ନାମକ ଜଣେ ପ୍ରାଚ୍ୟ ବିଦ୍ୟାବିଦ୍ ପ୍ରାଚୀନ ବ୍ରାହ୍ମୀ ଲିପିର ପଠନ ବିଦ୍ୟା ଆବିଷ୍କାର କଲେ । ହରପ୍ପା ଲିପିକୁ ବାଦ୍‌ଦେଲେ ବ୍ରାହ୍ମୀ ହେବ ଭାରତର ସର୍ବପ୍ରାଚୀନ ଲିପି । ଅନେକ ଅଭିଲେଖ ଥିଲା, ଯେଉଁଥିରେ ରାଜା ନିଜକୁ 'ଦେବାନାଂପ୍ରିୟ ପ୍ରିୟଦର୍ଶୀ' (ଦେବପ୍ରିୟ ପ୍ରିୟଦର୍ଶୀ) ବୋଲି ଉଲ୍ଲେଖ କରିଥିଲେ । ଏହି ନାମଟି ଭାରତୀୟ ରାଜବଂଶର କୌଣସି ନାମ ସହିତ ମେଳ ଖାଉ ନ ଥିଲା, ଯଦିଓ ଶ୍ରୀଲଙ୍କାର ବୌଦ୍ଧ ପଞ୍ଜିକାରେ ଏହାର ଉଲ୍ଲେଖ ରହିଥିଲା । କ୍ରମଶଃ ସବୁ ସୂତ୍ରଗୁଡ଼ିକୁ ଏକତ୍ର କରାଗଲା ଏବଂ ଶେଷରେ 1915 ରେ ଏହାର ପୁଷ୍ଟି ହେଲା, ଯେତେବେଳେ ରାଜାଦେଶର ଅନ୍ୟ ଏକ ପାଠ ଲୋକଲୋଚନକୁ ଆସିଲା । ଉକ୍ତ ପାଠରେ ରାଜା ନିଜକୁ 'ଦେବାନାଂପ୍ରିୟ ଅଶୋକ' ବୋଲି ଉଲ୍ଲେଖ କରିଥିଲେ ।

ଅଶୋକଙ୍କର ଅନୁଶାସନ ବା ରାଜାଦେଶଗୁଡ଼ିକ ଅଭିଲେଖ ରୂପରେ ସାମ୍ରାଜ୍ୟର ବିଭିନ୍ନ ସ୍ଥାନରେ ଉପଲବ୍ଧ ହୋଇଛି । ତହିଁରୁ କେବଳ ଅଶୋକଙ୍କ ବ୍ୟକ୍ତିତ୍ୱ ନୁହେଁ, ତା' ସହିତ ତାଙ୍କ ରାଜତ୍ୱକାଳୀନ ମହତ୍ତ୍ୱପୂର୍ଣ୍ଣ ଘଟଣାବଳୀ ଏବଂ ସର୍ବୋପରି ଜଣେ ଶାସକ ଭାବରେ ତାଙ୍କର ନୀତି ସମ୍ବନ୍ଧରେ ଜାଣିବାକୁ ମିଳେ । ଅଶୋକଙ୍କର ବ୍ୟକ୍ତିଗତ କଥନ ରୂପରେ ଏହି ଅନୁଶାସନଗୁଡ଼ିକ ହେଉଛି ଉଲ୍ଲେଖନୀୟ ଦସ୍ତାବିଜ, ଯାହାକୁ ଉକ୍ତ ସମୟର

ପରିପ୍ରକାଶ ଭାବରେ ଦେଖିହେବ । ସରକାରୀ ଦସ୍ତାବିଜର ପାରମ୍ପରିକ ପରିସୀମାକୁ ଅତିକ୍ରମ କରି ରାଜାଦେଶ ଅଶୋକଙ୍କ ବ୍ୟକ୍ତିଗତ ସମ୍ବେଦନାକୁ ଦର୍ଶାଏ । ଜଣେ ବ୍ୟକ୍ତି ରୂପରେ ଓ ଜଣେ ରାଷ୍ଟ୍ରପୁରୁଷ ଭାବରେ ଅଶୋକ ନିଜକୁ ଯେଉଁ ରୂପେ ଅଭିବ୍ୟକ୍ତ କରନ୍ତି, ରାଜାଦେଶରେ ସେହି 'ଅଭିବ୍ୟକ୍ତି'କୁ ସ୍ୱଷ୍ଟ ଦେଖିହୁଏ । ରାଜାଦେଶର କଥୋପକଥନ ସଦୃଶ ଶୈଳୀ ରାଜାଙ୍କର ବ୍ୟକ୍ତିତ୍ୱକୁ ପରିଦୃଷ୍ଟ କରାଏ ।

ରାଜତ୍ୱର ପ୍ରଥମାଂଶରେ ଅନୁଶାସନଗୁଡ଼ିକୁ ଶିଳାପୃଷ୍ଠରେ ଖୋଦିତ କରାଯାଇଥିଲା । ସେଗୁଡ଼ିକୁ ସହଜରେ ଚିହ୍ନିତ କରାଯାଇ ପାରୁଥିଲା; ଏବଂ 'ମାଇନର' ଓ 'ମେଜର' ଶିଳାଲେଖ ବୋଲି ଶ୍ରେଣୀବିଭାଗ କରାଯାଇଥିଲା । ସାମ୍ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁଠି ସ୍ଥାୟୀ ଜନବସତି ରହିଥିଲା ଓ ଜନବସତି ଜନବହୁଳ ଥିଲା, ସେଠାରେ ରାଜାଦେଶଗୁଡ଼ିକୁ ଖୋଦିତ କରାଯାଇଥିଲା । ମାତ୍ର ରାଜତ୍ୱର ଉତ୍ତରାଂଶରେ ରାଜାଦେଶଗୁଡ଼ିକୁ ଚିକ୍କଣ ଏକାଶ୍ମ ପଥରରେ ଲେଖାଯାଇଥିଲା । ଏହି ଏକାଶ୍ମ ପଥରଗୁଡ଼ିକର ଶୀର୍ଷରେ ପଶୁମୂର୍ତ୍ତି ଆସୀନ ଥିଲା । ଏହାକୁ ସ୍ତମ୍ଭ ଅଭିଲେଖ ନାମରେ ଚିହ୍ନିତ କରାଯାଏ । ବାରାଣାସୀ ନିକଟସ୍ଥ ଚୁନାର ନାମକ ସ୍ଥାନରୁ ଏହି ପଥରଗୁଡ଼ିକୁ ଖୋଦନ କରାଯାଉଥିଲା । ତହିଁରେ ଲେଖନ ଓ ଖୋଦନ କ୍ରିୟା ଖୁବ୍ ଦକ୍ଷତାପୂର୍ଣ୍ଣ ଢଙ୍ଗରେ ସମ୍ପନ୍ନ ହେଉଥିଲା । ସ୍ତମ୍ଭଲେଖ ବା ସ୍ତମ୍ଭ ଅଭିଲେଖଗୁଡ଼ିକ ମୁଖ୍ୟତଃ ଗାଙ୍ଗେୟ ସମତଳରେ ସ୍ଥାପିତ । ସମ୍ଭବତଃ ନଦୀମାର୍ଗରେ ସେଗୁଡ଼ିକୁ ଅଣାଯାଇଥିଲା । ଏହି କ୍ଷେତ୍ର ଅଶୋକଙ୍କ ସାମ୍ରାଜ୍ୟର ନାଭିକେନ୍ଦ୍ର ରୂପେ ପରିଗଣିତ ହେଉଥିଲା ।

ଅଶୋକଙ୍କ ନୂଆ ନୂଆ ଅଭିଲେଖ ଏବେ ମଧ୍ୟ ମିଳୁଛି ଏବଂ ପ୍ରତ୍ୟେକ ନୂଆ ଅଭିଲେଖରୁ କିଛି ନୂତନ ତଥ୍ୟ ମିଳିବାର ଆଶା କରାଯାଉଛି । ଯେଉଁ ଅଭିଲେଖରେ ପାଠର ପୁରୁଣା ଅଭିଲେଖର ପାଠ ସହିତ ସମାନତା ରହିଛି, ସେଠାରେ ମଧ୍ୟ ମୌର୍ଯ୍ୟକାଳୀନ ଇତିହାସ ସମ୍ବନ୍ଧରେ ତଥା ଅଭିଲେଖର ଅବସ୍ଥିତିରୁ ସାମ୍ରାଜ୍ୟର ସ୍ଥିତି ସମ୍ବନ୍ଧରେ ମହତ୍ତ୍ୱପୂର୍ଣ୍ଣ ସୂଚନାମାନ ମିଳୁଛି । ଉତ୍ତର-ପଶ୍ଚିମ ସୀମାନ୍ତ ସ୍ଥିତ ଗ୍ରୀକ୍ ଓ ଆର୍ମାଇକ ଭାଷୀ ପ୍ରଜାଙ୍କ ଉଦ୍ଦେଶ୍ୟରେ ଅଶୋକ ଗ୍ରୀକ୍ ଓ ଆର୍ମାଇକରେ ଅଭିଲେଖକୁ ଅନୁବାଦ କରାଇଥିଲେ । ସେହି ଅନୁବାଦରୁ ଅନେକ ପାକୃତ ଶବ୍ଦର ପ୍ରକୃତ ଅର୍ଥ ମିଳିପାରୁଛି, ଯାହା ପୂର୍ବରୁ ଇତିହାସକାରମାନଙ୍କ ମଧ୍ୟରେ ବିବାଦ ସୃଷ୍ଟି କରୁଥିଲା । ଉଦାହରଣ ସ୍ୱରୂପ, କେତେକ ଗବେଷକ 'ଧମ୍ମ'କୁ ବୌଦ୍ଧଧର୍ମ ବୋଲି କହୁଥିଲେ । ଅନ୍ୟ କେତେକ ଗବେଷକଙ୍କ ମତରେ, ଏହାର ଅର୍ଥ ହେଲା ନୈତିକ ଚିନ୍ତନ, ସଦାଚାର ପ୍ରତି ନିଷ୍ଠା । ଗ୍ରୀକ୍ ଭାଷାରେ ଏହାର ଅନୁବାଦ ହେଲା ଇଉସେବିଆ (eusebeia), ଅର୍ଥାତ୍ ସଦାଚାର ପ୍ରତି ନିଷ୍ଠା । ଆଶ୍ଚର୍ଯ୍ୟର କଥା ଯେ, ଗ୍ରୀକ୍ ଓ ଆର୍ମାଇକରେ ବୁଦ୍ଧବାଣୀର କୌଣସି ଉଲ୍ଲେଖ ନାହିଁ । ଯଦି ରାଜାଦେଶର

ଉଦ୍ଦେଶ୍ୟ ବୌଦ୍ଧଧର୍ମର ପ୍ରସାର ହୋଇଥାନ୍ତା, ତେବେ ଅଭିଲେଖରେ ବୁଦ୍ଧଙ୍କର ନାମୋଲ୍ଲେଖ ନିଶ୍ଚୟ ରହିଥାନ୍ତା । ତା'ଠାରୁ ମଧ୍ୟ ବଡ଼ କଥା ଯେ, ଉକ୍ତ ଭାଷାରେ (ଗ୍ରୀକ୍ ବା ଆର୍ମାଇକ) ରହିଥିବା କେତେକ ଦାର୍ଶନିକ ବିମର୍ଶକୁ ସଂପୃକ୍ତ ରାଜାଦେଶର ଅବଧାରଣାରେ ସ୍ଥାନିତ କରାଯାଇଛି । ଏହି ଦୃଷ୍ଟିରୁ ଦେଖିଲେ, ଜୋରାଷ୍ଟ୍ରୀୟ ଅବଧାରଣାର ପରିପ୍ରେକ୍ଷୀରେ ଆର୍ମାଇକ ଭାଷାରେ ପ୍ରଦତ୍ତ ରାଜାଦେଶଗୁଡ଼ିକ ଅଧିକ ସୁସ୍ପଷ୍ଟ ହୁଅନ୍ତି । ଅଧିକ ସାଧାରଣ ସ୍ତରରେ ଦେଖିଲେ, ଗ୍ରୀକ୍‌ରେ ଖୋଦିତ ମାଇନର ଶିଳାଲେଖରୁ ଏହାର ସଠିକ ତିଥି ଜଣାପଡ଼େ । ଫଳରେ ସଠିକ କାଳାନୁକ୍ରମ ନିରୂପଣ କରିବା ସହଜ ହୁଏ ।

ପ୍ରଥମେ ଅଶୋକ ତକ୍ଷଶିଳାଠାରେ ଏବଂ ତା'ପରେ ଉଜ୍ଜୟିନୀଠାରେ ପ୍ରଶାସକ ରୂପେ କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ଦୁଇ ନଗରୀ ବାଣିଜ୍ୟିକ ଗତିବିଧି ପାଇଁ ପ୍ରସିଦ୍ଧ ଥିଲେ । ଉତ୍ତରରୁ ମିଳିଥିବା ପରବର୍ତ୍ତୀକାଳୀନ ବୌଦ୍ଧଗ୍ରନ୍ଥରୁ ଅଶୋକଙ୍କର ତକ୍ଷଶିଳାର ପ୍ରଶାସନିକ ଅନୁଭୂତି ସମ୍ପର୍କରେ ସୂଚନା ମିଳେ । ପିତା ବିନ୍ଦୁସାର ଯେତେବେଳେ ମୃତ୍ୟୁଶଯ୍ୟାରେ, ସେତେବେଳେ ଅଶୋକ କେମିତି ସିଂହାସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ, ତାହାର ଉଲ୍ଲେଖ ଦେଖିବାକୁ ମିଳେ । ରାଜପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାରେ କେତେକ ଶକ୍ତିଶାଳୀ ମନ୍ତ୍ରୀ ଅଶୋକଙ୍କୁ ଉତ୍ସାହିତ କରୁଥିଲେ ବୋଲି ଉଲ୍ଲେଖ ରହିଛି । ଦକ୍ଷିଣରୁ ପ୍ରାପ୍ତ ବୌଦ୍ଧଗ୍ରନ୍ଥ, ଅର୍ଥାତ୍ ଶ୍ରୀଲଙ୍କାରୁ ମିଳିଥିବା ବିବରଣୀରେ ଅଶୋକଙ୍କର ଉଜ୍ଜୟିନୀ ଅବସ୍ଥାନ କଥା ଜଣାପଡ଼େ । ବିବରଣୀ ଅନୁଯାୟୀ, ଅଶୋକ ସେଠାରେ ଜଣେ ସୌଦାଗରର ସୁନ୍ଦରୀକନ୍ୟା ପ୍ରେମରେ ପଡ଼ିଥିଲେ । ଏହି କନ୍ୟା ଥିଲେ ଜଣେ ପରମ ବୌଦ୍ଧ ଓ ଅଶୋକଙ୍କ ପୁତ୍ର 'ମହିନ୍ଦ' (ମହେନ୍ଦ୍ର)ଙ୍କର ମାତା । ପରବର୍ତ୍ତୀ ସମୟରେ ମହେନ୍ଦ୍ର ଶ୍ରୀଲଙ୍କାରେ ବୌଦ୍ଧଧର୍ମର ପ୍ରଚାର କରିଥିଲେ ।

ପିତାଙ୍କ ମୃତ୍ୟୁ ପରେ ଅଶୋକ ତୁରନ୍ତ ସିଂହାସନରେ ଅଭିଷିକ୍ତ ହେଲେ, ନା ସିଂହାସନ ପାଇଁ ଦୀର୍ଘ ଚାରିବର୍ଷକାଳ ନିଜ ଭାଇମାନଙ୍କ ସହ କଳହ କଲେ ? ଏହି ପ୍ରଶ୍ନର ଉତ୍ତରକୁ ନେଇ ଐତିହାସିକମାନଙ୍କ ମଧ୍ୟରେ ବିବାଦ ଏଯାଏଁ ଅତୁଟ ରହିଛି । ଅଶୋକଙ୍କ ରାଜତ୍ୱର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ଭାବରେ ସମ୍ରାଟଙ୍କର ବୌଦ୍ଧଧର୍ମ ଗ୍ରହଣକୁ ବାରମ୍ବାର ଉଲ୍ଲେଖ କରାଯାଏ । ଅଶୋକଙ୍କର ବୌଦ୍ଧଧର୍ମରେ ଦୀକ୍ଷିତ ହେବା ଘଟଣା ସହିତ କଳିଙ୍ଗ ଯୁଦ୍ଧକୁ ଯୋଡ଼ି ଦେଖାଯାଏ । ଖ୍ରୀ.ପୂ. 260 ରେ ପ୍ରାୟ ଅଶୋକ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କରି ସେମାନଙ୍କୁ (କଳିଙ୍ଗମାନଙ୍କୁ) ପରାସ୍ତ କରିଥିଲେ । ସମ୍ଭବତଃ ଏହି ଯୁଦ୍ଧ ପଛରେ ଉଦ୍ଦେଶ୍ୟ ଥିଲା କଳିଙ୍ଗର ଧନସମ୍ପଦ ଲାଭ କରିବା । ଉପଦ୍ୱୀପ ସହିତ ମୌର୍ଯ୍ୟମାନଙ୍କର ଲାଭପ୍ରଦ ବାଣିଜ୍ୟ କାରବାର ପାଇଁ ପୂର୍ବତଟ ଥିଲା ପ୍ରକୃଷ୍ଟ ମାଧ୍ୟମ । ତାକୁ ନିୟନ୍ତ୍ରଣାଧୀନ କରିବା

ଅଶୋକଙ୍କର ଏକ ପ୍ରମୁଖ ଉଦ୍ଦେଶ୍ୟ ଥିଲା । ପୁଣି କୁହାଯାଏ, ନନ୍ଦ ସମୟରୁ ମଗଧର କଳିଙ୍ଗ ଉପରେ ଆଧିପତ୍ୟ ରହିଥିଲା, ଯାହାର ପ୍ରମାଣ ହେଲା କଳିଙ୍ଗରେ ନନ୍ଦ ନିର୍ମିତ କେନାଲ ବ୍ୟବସ୍ଥା । ଏହି ଆଧିପତ୍ୟକୁ କଳିଙ୍ଗ ଉଲ୍ଲଂଘନ କରିଥିବାରୁ ଦଣ୍ଡ ଦେବାପାଇଁ ତଥା କଳିଙ୍ଗ ଉପରେ ପୁନଃନିୟନ୍ତ୍ରଣ ସାବ୍ୟସ୍ତ କରିବାପାଇଁ ଅଶୋକ ଯୁଦ୍ଧ ଘୋଷଣା କରିଥିଲେ । ସେ ଯାହାହେଉ, ଯୁଦ୍ଧର କ୍ଷୟକ୍ଷତି ଅଶୋକଙ୍କୁ ବିଷାଦଗ୍ରସ୍ତ କଲା । ଆଗରୁ ତାଙ୍କର ବୌଦ୍ଧଧର୍ମ ପ୍ରତି ସାମାନ୍ୟ ଆକର୍ଷଣ ରହିଥିଲା, ଯାହା ଯୁଦ୍ଧ ଉତ୍ତାରୁ ଜୀବନ୍ୟାସ ପାଇଲା । ଏଣିକି ବୌଦ୍ଧଧର୍ମ ହେଲା ତାଙ୍କ ଜୀବନର ପରମ ଉଦ୍ଦେଶ୍ୟ । ଆଗରୁ କୁହାଯାଉଥିଲା ଯେ, ଯୁଦ୍ଧର ବିଭିଷିକାରେ ଅଥୟ ହୋଇ ସେ ନାଟକୀୟ ଢଙ୍ଗରେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ମାତ୍ର ତାଙ୍କର ଏକ ଅଭିଲେଖରେ ଅଶୋକ ଉଲ୍ଲେଖ କରିଛନ୍ତି ଯେ, ଯୁଦ୍ଧର ଦୁଇବର୍ଷ ଛଅମାସ ପରେ ସେ ବୌଦ୍ଧଧର୍ମର ଜଣେ ଉତ୍ସାହୀ ଅନୁଗାମୀ ହେଲେ । ଅର୍ଥାତ୍ ତାଙ୍କର ଧର୍ମାନ୍ତରଣ ଆକସ୍ମିକ ନ ଥିଲା । ବୌଦ୍ଧଧର୍ମରେ ଦୀକ୍ଷିତ ହେବା ପରେ ସେ ଅହିଂସା ମାର୍ଗର ପୃଷ୍ଠପୋଷକତା କଲେ ଏବଂ ତରବାରିର ଜୟ ପ୍ରକୃତ ବିଜୟ ନୁହେଁ ବୋଲି ପ୍ରଚାର କଲେ । ମାତ୍ର ଆଶ୍ଚର୍ଯ୍ୟର କଥା, କଳିଙ୍ଗର କୌଣସି ସ୍ଥାନରେ ସେ ନିଜ ପଶ୍ଚାତାପକୁ ଅଭିବ୍ୟକ୍ତ କରିନାହାନ୍ତି । ତା' ପରିବର୍ତ୍ତେ ସେ ତଥାକଥିତ ପୃଥକ୍ ଅନୁଶାସନ ରାଜାଦେଶ ଜାରି କରିଥିଲେ । ଏହି ରାଜାଦେଶରେ ସୁଶାସନର ଆବଶ୍ୟକତାକୁ ମହତ୍ତ୍ୱ ଦେଇ ସେ ତାଙ୍କ ଅଧିକାରୀମାନଙ୍କୁ ନାନା ନିର୍ଦ୍ଦେଶ ଦେଇଥିଲେ ।

ସେ ଯାହାହେଉ କଳିଙ୍ଗଯୁଦ୍ଧ ସମ୍ପର୍କିତ ଅଶୋକଙ୍କ ବକ୍ତବ୍ୟ ଅସାଧାରଣ ଥିଲା । ଜଣେ ବିଜେତାର ମନକୁ ଅଭିବ୍ୟକ୍ତ କରୁଥିବା ଏହି ଅଭିଲେଖ ଅଶୋକଙ୍କୁ ଏକ ବିରଳ ବ୍ୟକ୍ତିତ୍ୱ ରୂପରେ ପ୍ରତିଷ୍ଠିତ କରେ । ଅଭିଲେଖରେ ଅଶୋକ କହିଛନ୍ତି :

*"ରାଜତ୍ୱର ଅଷ୍ଟମ ବର୍ଷ ଗତ ହୁଅନ୍ତେ ଦେବାନାଂ ପ୍ରିୟ ରାଜା ପ୍ରିୟଦର୍ଶୀ କଳିଙ୍ଗକୁ ବିଜୟ କଲେ । ଯୁଦ୍ଧରେ ଏକଲକ୍ଷ ପଚାଶହଜାର ଲୋକ ବାସଚ୍ୟୁତ ହେଲେ, ଏକଲକ୍ଷ ଲୋକଙ୍କର ପ୍ରାଣହାନି ହେଲା ଏବଂ ତଦୂର୍ଦ୍ଧ୍ୱ ସଂଖ୍ୟକ ଲୋକଙ୍କର ବିନାଶ ହେଲା । ତଦୁତ୍ତାରୁ ଯେତେବେଳେ କଳିଙ୍ଗକୁ ଅଧିକାର କରି ନିଆଗଲା, ଦେବାନାଂପ୍ରିୟ ଆନ୍ତରିକତାର ସହିତ ଧମ୍ମ ଆଚରଣ କଲେ, ଧମ୍ମ ଇଚ୍ଛା କଲେ ଏବଂ ଧମ୍ମ ଶିକ୍ଷା ଦେଲେ । କଳିଙ୍ଗକୁ ଜିଣିଲା ପରେ ଦେବାନାଂପ୍ରିୟ ଘୋର ପଶ୍ଚାତାପ କଲେ, କାରଣ ଯେତେବେଳେ ଏକ ସ୍ୱତନ୍ତ୍ର ଦେଶ ଉପରେ ଜୟଲାଭ ହୁଏ, ସେତେବେଳେ ଲୋକଙ୍କର ହତ୍ୟା, ମୃତ୍ୟୁ ଏବଂ ନିର୍ବାସନ ଦେବାନାଂପ୍ରିୟଙ୍କ ପାଇଁ ଅତ୍ୟନ୍ତ ଦୁଃଖଦାୟୀ ହୁଏ ଏବଂ ତାଙ୍କ ମନ ଭାଙ୍ଗିପଡ଼େ । ଦେବାନାଂପ୍ରିୟଙ୍କ ଲାଗି ଯେଉଁ କଥା ଅଧିକ ଦୁଃଖଦ ହୁଏ, ତାହା ହେଲା ଦେଶର ସମସ୍ତ*

*ଦେଶବାସୀ, ସେ ବ୍ରାହ୍ମଣ ହୁଅନ୍ତୁ ବା ଶ୍ରମଣ ବା ଅନ୍ୟ ସଂପ୍ରଦାୟର ଅଥବା ଗୃହସ୍ଥ ହୁଅନ୍ତୁ, ଯେଉଁମାନେ ପରିବାରର ବରିଷ୍ଠଙ୍କ ପ୍ରତି ଆଦର ରଖନ୍ତି, ମାତା-ପିତାଙ୍କର ସମ୍ମାନ କରନ୍ତି, ଶିକ୍ଷକଙ୍କ ଆଜ୍ଞା ପାଳନ କରନ୍ତି, ବନ୍ଧୁଜନଙ୍କ ସହ ପରିଚିତଙ୍କ ସହ, ସହକର୍ମୀ ସହ, ବନ୍ଧୁବାନ୍ଧବ ସହ, ଦାସ ଓ ଚାକର ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ବନ୍ଧ ରଖନ୍ତି, ସେମାନଙ୍କୁ ସମସ୍ତଙ୍କୁ ହିଂସା, ହତ୍ୟା ଓ ପ୍ରିୟଜନଙ୍କଠାରୁ ବିଚ୍ଛେଦ ସହ୍ୟ କରିବାକୁ ପଡ଼େ । ଏପରିକି ଯେଉଁ ଭାଗ୍ୟବାନମାନେ ଏହି ଦୁଃସ୍ଥିତିରୁ ରକ୍ଷା ପାଇଛନ୍ତି, ଯେଉଁମାନଙ୍କର ପ୍ରେମ ଅତୁଟ ରହିଛି, ସେମାନେ ମଧ ଜ୍ଞାତି ଓ ମିତ୍ରଜନଙ୍କ ଦୁଃଖ ଯୋଗୁଁ କଷ୍ଟ ଭୋଗ କରନ୍ତି । ସମସ୍ତ ଜନତାର କ୍ଲେଶ-ଯନ୍ତ୍ରଣା ଦେବାନାଂ ପ୍ରିୟଙ୍କ ମନପ୍ରାଣକୁ ଦୋହଲାଇ ଦେଇଛି ।''*

(Major Rock Edict XIII, Tr. Romilla Thapar, Ashoka and the *Decline of the Mauryas*, pp.255-6)

ଅଶୋକଙ୍କ ରାଜତ୍ୱ କାଳରେ ବୌଦ୍ଧ ସଂଘ ବ୍ୟବସ୍ଥାକୁ ପୁନଃସଂଗଠିତ କରାଗଲା । ଏଥିପାଇଁ ଖ୍ରୀ.ପୂ. 250 ରେ ପ୍ରାୟ ପାଟଳିପୁତ୍ରଠାରେ ତୃତୀୟ ବୌଦ୍ଧ ସମ୍ମିଳନୀ ଆୟୋଜିତ ହେଲା । ଥେରବାଦ ସଂପ୍ରଦାୟ ବୁଦ୍ଧଙ୍କ ଶିକ୍ଷାର ପ୍ରକୃତ ପ୍ରତିନିଧିତ୍ୱ କରେ ବୋଲି ଦାବି କଲେ । ଏହି ଦାବିର ଆଧାରରେ ସଂପ୍ରଦାୟ ଦକ୍ଷିଣ ପରମ୍ପରାରେ ଏକ ପ୍ରଭାବଶାଳୀ ସଂପ୍ରଦାୟର ମାନ୍ୟତା ଲାଭକଲା ଏବଂ ଅସନ୍ତୁଷ୍ଟ ମନେହେଉଥିବା ଗୋଷ୍ଠୀଗୁଡ଼ିକୁ ନିଷ୍କାସନ କଲା । ଥେରବାଦୀ ବୌଦ୍ଧଗ୍ରନ୍ଥ ଅଶୋକଙ୍କୁ ଥେରବାଦର ବୋଲି ପ୍ରଚାର କରେ, କାରଣ ତାହା ଉକ୍ତ ସଂପ୍ରଦାୟକୁ ଅଧିକ ମାନ୍ୟତା ଦିଆଇବ । ଅଶୋକ ଅବଶ୍ୟ ପ୍ରତ୍ୟକ୍ଷଭାବେ କୌଣସି ଅଭିଲେଖରେ ଉଲ୍ଲେଖ କରିନାହାନ୍ତି, ମାତ୍ର ଗୋଟାଏ ଅଭିଲେଖରେ ଅପ୍ରତ୍ୟକ୍ଷ ରୂପେ ବୌଦ୍ଧ ସଂଘକୁ ସମ୍ବୋଧନ କରିଛନ୍ତି ଏବଂ ଅସନ୍ତୁଷ୍ଟ ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କୁ ବୌଦ୍ଧଧର୍ମରୁ ନିଷ୍କାସିତ କରିବାକୁ ପରାମର୍ଶ ଦେଇଛନ୍ତି । ସେତେବେଳେ ସଂପ୍ରଦାୟ ଭିତ୍ତିକ ପ୍ରତିସ୍ପର୍ଦ୍ଧାରେ ଅସନ୍ତୁଷ୍ଟମାନଙ୍କର ନିଷ୍କାସନକୁ ଅସ୍ୱାଭାବିକ ମନେକରାଯାଉ ନ ଥିଲା ।

ପାଟଳିପୁତ୍ର ବୌଦ୍ଧ ସମ୍ମିଳନୀରେ ସମ୍ଭବତଃ ଧର୍ମୋପଦେଷ୍ଟାମାନଙ୍କୁ ଉପମହାଦେଶର ଏବଂ ବାହାରର ବିଭିନ୍ନ ଅଞ୍ଚଳକୁ ପ୍ରେରଣ କରିବା ଲାଗି ନିଷ୍ପତ୍ତି ହୋଇଥିଲା । ସମ୍ମିଳନୀରେ ବୌଦ୍ଧଧର୍ମକୁ ବହୁଳଭାବେ ପ୍ରସାର କରିବାକୁ ମଧ ନିଷ୍ପତ୍ତି ଗୃହୀତ ହୋଇଥିଲା । ଫଳରେ ଖ୍ରୀଷ୍ଟପୂର୍ବ ଯାଇ ଖ୍ରୀଷ୍ଟାବ୍ଦ ଆରମ୍ଭ ହେବାବେଳକୁ ବୌଦ୍ଧଧର୍ମ ଏସିଆର ସର୍ବତ୍ର ପ୍ରସାର ଲାଭ କଲା । ଭାରତରେ ଜନ୍ମିଥିବା ଧର୍ମଗୁଡ଼ିକ ମଧ୍ୟରେ, ସେହି ଦୃଷ୍ଟିରୁ ବୌଦ୍ଧଧର୍ମ ହିଁ ସବୁଠାରୁ ଅଧିକ ସଂଖ୍ୟାରେ ଧର୍ମପ୍ରଚାରକ ସୃଷ୍ଟି କଲା । ଧର୍ମାନ୍ତରଣ କିଛି ମାତ୍ରାରେ ଜାତି ଓ ଧର୍ମ ମଧ୍ୟରେ ଥିବା ସମ୍ବନ୍ଧ ଦ୍ୱାରା ଭାରତରେ ଏକ ଧାର୍ମିକ କାର୍ଯ୍ୟ ଉପରେ ନିର୍ଦ୍ଧାରିତ ହେଉଥିଲା । ଯେଉଁମାନେ ବୌଦ୍ଧଭିକ୍ଷୁ ହେବାକୁ କିମ୍ବା ସାଧାରଣ ବୌଦ୍ଧ ଅନୁଗାମୀ ହେବାକୁ ଇଚ୍ଛା ପ୍ରକାଶ

କଲେ, ସେମାନଙ୍କ ପାଇଁ ବୌଦ୍ଧଧର୍ମ କଦାପି ଜାତିକୁ ପ୍ରତିବନ୍ଧକ ବୋଲି ମନେକଲା ନାହିଁ । ଏହା ବୈଦିକ ବ୍ରାହ୍ମଣ୍ୟଧର୍ମଠାରୁ ସମ୍ପୂର୍ଣ୍ଣ ବିପରୀତ ପରମ୍ପରା ସୃଷ୍ଟିକଲା, କାରଣ ବ୍ରାହ୍ମଣ୍ୟଧର୍ମରେ ଧାର୍ମିକ କାର୍ଯ୍ୟରେ ଅଂଶଗ୍ରହଣ ପାଇଁ ଏବଂ କଦାଚିତ୍ ଦେବାଦେବୀଙ୍କ ଆରାଧନା ପାଇଁ ଜାତି ଥିଲା ପ୍ରମୁଖ ଉପାଦାନ । ତା' ସହିତ ଏକଥା ମଧ୍ୟ ସତ ଯେ, ସାମାଜିକ ବିଭାଗୀକରଣର ଏକ ସ୍ୱରୂପ ଭାବରେ ଜାତିକୁ ବୌଦ୍ଧଧର୍ମ ଅସ୍ୱୀକାର କରି ନ ଥିଲା । ପରବର୍ତ୍ତୀ ସମୟରେ ଭାରତକୁ ପ୍ରବେଶ କରିଥିବା ଖ୍ରୀଷ୍ଟଧର୍ମ ଓ ଇସଲାମ୍, ଯାହା ଜାତିକୁ ସ୍ୱୀକୃତି ଦିଅନ୍ତି ନାହିଁ, ତାହା ଜାତି ଅବଧାରଣାର ସଂକ୍ରମଣକୁ ପ୍ରତିରୋଧ କରିପାରିଲେ ନାହିଁ ।

ଉପମହାଦେଶ ବାହାରକୁ ବିଶ୍ୱଜଗତ ସହିତ ସମ୍ବନ୍ଧ ସ୍ଥାପନ କରିବାକୁ ଏହି କାଳଖଣ୍ଡରେ ଯୋଗାଯୋଗର ସାଧନମାନ ବିକାଶ ଲାଭ କରୁଥିଲା । ଏହି ଦେଶଗୁଡ଼ିକ ମଧ୍ୟରୁ ଅଧିକାଂଶ ଥିଲେ ଭାରତର ପଶ୍ଚିମ ଦିଗର ଦେଶ । ପୂର୍ବଭାଗ ପଶ୍ଚିମ ତୁଳନାରେ ଅନାବିଷ୍କୃତ ହୋଇ ରହିଲା । ଅଶୋକ ହେଲେନବାଦୀ ଦେଶଗୁଡ଼ିକୁ ଧର୍ମପ୍ରଚାରକ ପ୍ରେରଣ କଲେ ଏବଂ ଉକ୍ତ ଦେଶଗୁଡ଼ିକ ସହିତ ପରିଚିତି ବୃଦ୍ଧି ପାଇଲା । କେବଳ ସେତିକି ନୁହେଁ, ସେଠାରେ ଭାରତୀୟ ବସ୍ତୁ ପ୍ରତି ଆଗ୍ରହ ମଧ୍ୟ ବୃଦ୍ଧି ହେଲା । ଭାରତ ଓ ଉକ୍ତ ଦେଶଗୁଡ଼ିକ ମଧ୍ୟରେ ଏହି କାଳରେ ହୋଇଥିବା ଦୂତ ବିନିମୟ କଥାର ସ୍ପଷ୍ଟ ଉଲ୍ଲେଖ ରହିଛି । ହେଲେନବାଦୀ ରାଜ୍ୟଗୁଡ଼ିକ ମଧ୍ୟରେ ସେଲ୍ୟୁକସ୍‌ଙ୍କ ରାଜ୍ୟ ଥିଲା ଭାରତର ନିକଟତମ । ଉଭୟ ଦେଶର ସୀମାନ୍ତ ପରସ୍ପରକୁ ସ୍ପର୍ଶ କରୁଥିଲେ । ଭାରତର ଉତ୍ତର-ପଶ୍ଚିମ ସ୍ଥିତ ରାଜ୍ୟଗୁଡ଼ିକରେ ଅନେକ ପାରସ୍ୟର ଉପାଦାନ ଅବ୍ୟାହତ ଥିଲା, କାରଣ ଏହି କ୍ଷେତ୍ର ଅତୀତରେ ଆକେମେନିଡ ସାମ୍ରାଜ୍ୟର ଅଂଶ ହୋଇ ରହିଥିଲା । ଫଳସ୍ୱରୂପ, ଅଶୋକ ସ୍ତମ୍ଭଗୁଡ଼ିକର ଶୀର୍ଷ ଓ ପାର୍ସୀପୋଲିସ (Persepolis) ମଧ୍ୟରେ ଅନେକ ସମାନତା ରହିଥିଲା । ସମ୍ଭବତଃ ଡାରିୟସଙ୍କ ଅଭିଲେଖ ଖୋଦନ ସମ୍ପର୍କରେ ଅବଗତ ହୋଇ ଅଶୋକ ଶିଳାଖଣ୍ଡରେ ଅଭିଲେଖ ରଚନା କରାଇଥିଲେ । ମାତ୍ର ଅଶୋକଙ୍କ ଅଭିଲେଖରେ ଥିବା ତଥ୍ୟ ଓ ଅଭିଲେଖଗୁଡ଼ିକର ଅବସ୍ଥିତି ଆକେମେନିଡ଼ ଅଭିଲେଖଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲା ।

ଅଶୋକ ନିଜ ସମସାମୟିକ ପଶ୍ଚିମର ଅନେକ ରାଷ୍ଟ୍ରପୁରୁଷଙ୍କ ନାମୋଲ୍ଲେଖ କରିଛନ୍ତି । ଏମାନଙ୍କ ସହିତ ସେ କୂଟନୈତିକ ଏବଂ ଆଉ ଅନେକ କିସମର ବସ୍ତୁ ଓ ବିଚାରର ବିନିମୟ କରୁଥିଲେ । ତାଙ୍କର ଏକ ଅଭିଲେଖରେ ଉଲ୍ଲେଖ ଅଛି, ''ଯେଉଁଠାରେ ଗ୍ରୀକ୍ ରାଜା ଅମିତ ଯୋଗ ଏବଂ ତାଙ୍କ କର୍ତ୍ତୃତ୍ୱର ବାହାରେ ଥିବା ଚାରିଜଣ ରାଜା, ଯଥା- ତୁରମୟ, ଅନ୍ତେକିନା, ମକ ଓ ଅଲିକ୍ୟସୁଦଲ ରାଜତ୍ୱ କରୁଥିଲେ... ।'' ଏହି ଚାରିଜଣ ରାଜାଙ୍କୁ ଯଥାକ୍ରମେ ସେଲ୍ୟୁକସ ନିକେଟରଙ୍କ ପୌତ୍ର ସିରିଆର ରାଜା ଏଣ୍ଟିଓକସ ଦ୍ୱିତୀୟ

ଥିୟୋସ (Antiochus II Theos : 260–246 ଖ୍ରୀ.ପୂ.); ଇଜିପ୍ଟର ଟଲେମି ଦ୍ୱିତୀୟ ଫିଲାଡେଲଫସ (Ptolemy II Philadelphus : 285–247 ଖ୍ରୀ.ପୂ.); ମାସିଡୋନିଆର ଏଣ୍ଟିଗୋନସ୍ ଗୋନାଟସ୍ (Antigonus Gonatus : 276–239 ଖ୍ରୀ.ପୂ.); ସୈରେନୀର ମାଗସ୍ (Magas of Cyrene); ଏବଂ ଇପାଇରସର ଆଲେକ୍‌ଜାଣ୍ଡାର (Alexander of Epirus) ବୋଲି ଚିହ୍ନିତ କରାଯାଇଛି । ଭାରତୀୟ ଇତିହାସର କାଳାନୁକ୍ରମିକ ମୂଳାଧାର ରୂପରେ ଏହି ଉଦ୍ଧରଣ ମୌର୍ଯ୍ୟ ଏବଂ ହେଲେନବାଦୀ ଶାସକମାନଙ୍କର ସମୟକ୍ରମକୁ ପରସ୍ପର ସହିତ ଯୋଡ଼ିବାରେ ସାହାଯ୍ୟ କରେ । ଉପରୋକ୍ତ ରାଜାମାନଙ୍କର ନାମକୁ ଉଦ୍ଦେଶ୍ୟପୂର୍ଣ୍ଣ ଢଙ୍ଗରେ ମନୋନୟନ କରାଯାଇଛି, କାରଣ ଏହି ରାଜାମାନେ ପରସ୍ପରର ପଡ଼ୋଶୀ ଓ ଜ୍ଞାତିଜନ ଥିଲେ ।

ଅଶୋକଙ୍କର ଅଭିଲେଖଗୁଡ଼ିକ ସାଧାରଣତଃ ସ୍ଥାନୀୟ ଲିପିରେ ଲିଖିତ ହୋଇଥିଲା । ଗ୍ରୀକ୍ ଓ ଆର୍ମାଇକରେ ଖୋଦିତ ଅଭିଲେଖକୁ ବାଦ୍ ଦେଲେ ଅନ୍ୟଗୁଡ଼ିକ ପ୍ରାକୃତ ଭାଷାରେ ଲିଖିତ । ଫଳରେ ଉତ୍ତର-ପଶ୍ଚିମର ପେଶାବର ନିକଟସ୍ଥ କ୍ଷେତ୍ରରେ ମିଳିଥିବା ଅଭିଲେଖ ଖରୋଷ୍ଠୀ ଲିପିରେ ଖୋଦିତ, ଯାହା ଇରାନରେ ବ୍ୟବହୃତ ଆର୍ମାଇକରୁ ଆନୀତ । ଠିକ୍ ସେହିପରି, ଆଧୁନିକ କାନ୍ଦାହାରରେ, ଯାହା ମୌର୍ଯ୍ୟ ସାମ୍ରାଜ୍ୟର ଉତ୍ତର-ପଶ୍ଚିମ କୋଣରେ ଅବସ୍ଥିତ, ପ୍ରାପ୍ତ ଅଭିଲେଖ ଗ୍ରୀକ୍ ଓ ଆର୍ମାଇକରେ ଖୋଦିତ । ଭାରତର ଅନ୍ୟ ଅଞ୍ଚଳରେ ବ୍ରାହ୍ମୀ ଲିପିର ପ୍ରୟୋଗ ହୋଇଥିଲା । ଯଦିଓ ଉତ୍ତର-ପଶ୍ଚିମରେ ସ୍ଥାନୀୟ ଲିପି ଓ ଭାଷାର ପ୍ରୟୋଗ ହେଲା, ଦକ୍ଷିଣସ୍ଥ ଉପଦ୍ୱୀପରେ ସ୍ଥାନୀୟ ଭାଷା ତାମିଲର ବ୍ୟବହାର ଅଭିଲେଖ ଖୋଦନବେଳେ ରହିଲା ନାହିଁ । ସେଠାରେ ପ୍ରାକୃତର ଉପଯୋଗ ହେଲା, ଯାହାର ସ୍ଥାନୀୟ ସ୍ତରରେ ପ୍ରୟୋଗ ନ ଥିଲା । ତାମିଲର ସେତେବେଳେ ଲିପି ନ ଥିଲା ବୋଲି ସମ୍ଭବତଃ ଏଭଳି କରାଯାଇଥିଲା । ତାମିଲର ପୂର୍ବତମ ଲିପିକୁ ବ୍ରାହ୍ମୀରୁ ଆହରଣ କରାଯାଇଥିଲା । ସମ୍ଭବତଃ ଏହା ବି କାରଣ ହୋଇପାରେ ଯେ, ଦକ୍ଷିଣର ଏହି ଅଞ୍ଚଳଗୁଡ଼ିକରେ ସର୍ଦ୍ଦାରତନ୍ତ୍ର ରହିଥିଲା ଏବଂ ସେଗୁଡ଼ିକୁ ଉତ୍ତର-ପଶ୍ଚିମର ରାଜ୍ୟ ଭଳି ମର୍ଯ୍ୟାଦାପ୍ରାପ୍ତ ହୋଇ ନ ଥିଲା । ପ୍ରାକୃତର ବ୍ୟାପକ ଆଭିଲୈଖିକ ବ୍ୟବହାର ଆଧାରରେ କୁହାଯାଇପାରେ ଯେ ରାଜାଦେଶ (Edicts) ସାମ୍ରାଜ୍ୟରେ ଏକରକମର ସାଂସ୍କୃତିକ ସମରୂପତା ଆଣିବାକୁ ପ୍ରୋତ୍ସାହନ ଦେଇଥିଲା ଏବଂ ଭୌଗୋଳିକ ଦୃଷ୍ଟିରୁ ସୀମିତ ଥିବା ଅନ୍ୟ ଭାଷାଗୁଡ଼ିକୁ କିଞ୍ଚିତ୍ ଅଣଦେଖା କରିଥିଲା । ମାତ୍ର ତା' ସହିତ ଏହା ମଧ୍ୟ ସତ୍ୟ ଯେ, ଅଭିଲେଖର ପ୍ରାକୃତରେ ଆଞ୍ଚଳିକ ଭାଷାଗତ ବିବିଧତା ଦେଖିବାକୁ ମିଳିଥିଲା । ବ୍ରାହ୍ମୀ ଲିପିର ମୂଳ କ'ଣ, ତାହା ଏଯାଏଁ ସମାଧିତ ହୋଇ ନାହିଁ । କେତେକ ଗବେଷକଙ୍କ ମତରେ, ଦକ୍ଷିଣର ସେମିଟିକ ଲିପି ସହିତ

ଏହାର ସାମଞ୍ଜସ୍ୟ ରହିଛି । ତେଣୁ ସେମାନଙ୍କର ଯୁକ୍ତି ଯେ, ବାଣିଜ୍ୟିକ ସମ୍ବନ୍ଧରୁ ଏହାର ବିକାଶ ଘଟିଛି । ଅନ୍ୟ ମତାନୁସାରେ, ବ୍ରାହ୍ମୀର ଉଦ୍‌ଭବ ସ୍ଥାନୀୟ ସ୍ତରରେ ଘଟିଛି; ରାଜ୍ୟ ପ୍ରଶାସନର ସୁବିଧା ନିମନ୍ତେ ତାକୁ ଉଦ୍ଭାବନ କରାଯାଇଛି । ଖରୋଷ୍ଠୀ ଓ ବ୍ରାହ୍ମୀ ଲିପି ମଧ୍ୟରେ ଥିବା ନିବିଡ଼ ସମ୍ବନ୍ଧରୁ ମନେହୁଏ, ଖରୋଷ୍ଠୀ ହୁଏତ ବ୍ରାହ୍ମୀକୁ ପ୍ରଭାବିତ କରିଥିବ । ବୋଧହୁଏ, ଖରୋଷ୍ଠୀ ଜାଣିଥିବା ଲିପି ଖୋଦନକାରୀମାନଙ୍କୁ କର୍ଣ୍ଣାଟକ ପରି ସୁଦୂର ଦକ୍ଷିଣରେ ବ୍ରାହ୍ମୀ ଅଭିଲେଖ ଖୋଦନ କରିବାରେ ନିଯୁକ୍ତ କରାଯାଇଥିବ ।

ତିବ୍ବତୀୟ ସୂତ୍ର-ସାମଗ୍ରୀରୁ ଜଣାପଡ଼େ ଯେ ମଧ୍ୟ-ଏସିଆର ଖୋଟାନ ରାଜ୍ୟ ଉଭୟ ଭାରତୀୟ ଓ ଚୀନ୍ ରାଜନୈତିକ ନିର୍ବାସିତମାନଙ୍କ ଦ୍ୱାରା ସଂଯୁକ୍ତ ଭାବରେ ସ୍ଥାପିତ ହୋଇଥିଲା । ସ୍ୱୟଂ ଅଶୋକ ମଧ୍ୟ ଖୋଟାନ ପରିଦର୍ଶନରେ ଯାଇଥିଲେ । ସେ କ୍ଷେତ୍ରରେ ଅନେକ ବିପଦସଂକୁଳ ଅଞ୍ଚଳକୁ ତାଙ୍କୁ ଅତିକ୍ରମ କରିବାକୁ ପଡ଼ିଥିବ । ଯାତ୍ରାର ଏହି ପ୍ରତିବନ୍ଧକଗୁଡ଼ିକୁ ଦୃଷ୍ଟି ଦେଲେ ଲାଗେ ଅଶୋକ ହୁଏତ ଖୋଟାନ ସଶରୀରେ ଯାତ୍ରା କରି ନ ଥିବେ । ସେତେବେଳେ ଅଶୋକଙ୍କର ଚୀନ୍ ସହିତ ସମ୍ବନ୍ଧର ମାତ୍ରାକୁ ନିରୂପଣ କରିବା କାଠିକର ମନେହୁଏ । ମଧ୍ୟ-ଏସିଆକୁ ଥିବା ମାର୍ଗ ସମ୍ପର୍କରେ ହୁଏତ ସେତେବେଳେ ଜ୍ଞାନ ଥିଲା, ମାତ୍ର ତାହା ନିୟମିତ ବ୍ୟବହାରରେ ଆସି ନ ଥିଲା । ଉତ୍ତର-ପଶ୍ଚିମର ପାର୍ବତ୍ୟାଞ୍ଚଳମାନ ଥିଲା ସୀମାନ୍ତ କ୍ଷେତ୍ର, ଯାହା ଚୀନ୍ ଅଧିକାରଭୁକ୍ତ ହୋଇ ରହିଥିଲା । ମାତ୍ର ଉତ୍ତରରୁ ଦକ୍ଷିଣ ଦିଗକୁ ଏହି ପାର୍ବତ୍ୟାଞ୍ଚଳର ବିସ୍ତାର ଅଧିକାଧିକ ଗମନାଗମନ ପାଇଁ ବାଧା ଉତ୍ପନ୍ନ କରୁଥିଲା । କଥିତ ଅଛି, ଅଶୋକଙ୍କର ଜଣେ କନ୍ୟା ନେପାଳର ଏକ ସମ୍ଭ୍ରାନ୍ତ ପରିବାରରେ ବିବାହ କରିଥିଲେ । ଏହା ଉଭୟ କ୍ଷେତ୍ର ମଧ୍ୟରେ ସମ୍ପର୍କର ସୂତ୍ର ସ୍ଥାପନ କରିଥିଲା । ପୂର୍ବ ଗାଙ୍ଗେୟ କ୍ଷେତ୍ର ବଙ୍ଗର ଅନ୍ତର୍ଭୁକ୍ତ ଥିଲା । ନଗରୀୟ କେନ୍ଦ୍ର ଓ ଡେଲ୍ଟାରେ ସ୍ଥିତ ବନ୍ଦରଗୁଡ଼ିକ, ଯଥା- ଚନ୍ଦ୍ରକେତୁଗଡ଼ ଏବଂ ତାମ୍ରଲିପ୍ତି ବା ତାମଲୁକ, ବାଣିଜ୍ୟ କେନ୍ଦ୍ର ରୂପେ ବିକଶିତ ହେଲେ । ଯେଉଁ ପୋତଗୁଡ଼ିକ ପୂର୍ବ ତଟକୁ ଏବଂ ଦକ୍ଷିଣ ଭାରତକୁ ଯାତ୍ରା କରୁଥିଲେ, ସେଗୁଡ଼ିକ ଡେଲ୍ଟାର ବନ୍ଦରରୁ ଯାତ୍ରା ଆରମ୍ଭ କରୁଥିଲେ । ପଶ୍ଚିମ ତଟର ପ୍ରମୁଖ ବନ୍ଦର ରୂପରେ ଭୃଗୁକଚ୍ଛ (ଗ୍ରୀକ୍ ରଚନାରେ ବେରିଗଜା ନାମରେ ଉଲ୍ଲିଖିତ) ଏବଂ ବମ୍ବେ ନିକଟବର୍ତ୍ତୀ ସୋପାରା ଖୁବ୍ ପ୍ରସିଦ୍ଧି ଅର୍ଜନ କରିଥିଲେ ।

ମୌର୍ଯ୍ୟ ରାଜଧାନୀ ପାଟଳିପୁତ୍ର ପୂର୍ବରୁ ଉତ୍ତରପଥ ନାମରେ ପରିଚିତ ମାର୍ଗ ସହିତ ଯୋଡ଼ିହୋଇ ରହିଥିଲା । ଏହି ପଥ ହିମାଳୟର ପାଦଦେଶରେ ଏବଂ ସମ୍ଭବତଃ ଗଣ୍ଡକ ପ୍ରଦେଶ ଦେଇ ଯାଇଥିଲା । ରାଜଧାନୀ ଏଭଳି ଏକ ସ୍ଥଳରେ ଥିଲା, ଯାହାଦ୍ୱାରା ଗଙ୍ଗାନଦୀ ପ୍ରଣାଳୀକୁ ନିୟନ୍ତ୍ରଣ କରିବା ସହଜ ହେଉଥିଲା । ନଦୀ ପଥ ବ୍ୟତୀତ ମୁଖ୍ୟ ବାଣିଜ୍ୟ

କେନ୍ଦ୍ରଗୁଡ଼ିକ ଦ୍ୱାରା ଗାଙ୍ଗେୟ ସମତଳ ସଂଯୋଜିତ ହୋଇଥିଲା । ଉତ୍ତର-ମୌର୍ଯ୍ୟ କାଳରେ ଇଟାଲିର ପରିବ୍ରାଜକ ପ୍ଲିନିଙ୍କ ବର୍ଣ୍ଣନା ଅନୁଯାୟୀ ତକ୍ଷଶିଳାରୁ ପାଟଳିପୁତ୍ର ପର୍ଯ୍ୟନ୍ତ ଏକ ସୁଦୀର୍ଘ ରାଜପଥ ରହିଥିଲା । ଏହି ପଥ ସମ୍ଭବତଃ ତାମ୍ରଲିପ୍ତି ଯାଏଁ ସଂପ୍ରସାରିତ ହୋଇଥିଲା । ଉପଦ୍ୱୀପକୁ ଯାଇଥିବା ମାର୍ଗର କଡ଼େ କଡ଼େ ଥିବା କେନ୍ଦ୍ରବିନ୍ଦୁଗୁଡ଼ିକରେ ଥିବା ରାଜାଦେଶର ଅବସ୍ଥିତିରୁ ଏହା ସୁସ୍ପଷ୍ଟ ହୁଏ । ତନ୍ମଧ୍ୟରେ କେତୋଟି ବିନ୍ଦୁ ହେଲା ସହସରାମ, ପଙ୍ଗୁରରିଆ (ହୋଶଙ୍ଗାବାଦ ନିକଟସ୍ଥ) ଏବଂ ସନ୍ନତି । ଦକ୍ଷିଣ କର୍ଣ୍ଣାଟକସ୍ଥିତ ଅଶୋକଙ୍କ ଅଭିଲେଖ ସ୍ଥଳୀଗୁଡ଼ିକରେ ବୋଧହୁଏ ପୂର୍ବ ଉପକୂଳ ଦେଇ ସମୁଦ୍ର ପଥରେ ପହଞ୍ଚି ହେଉଥିଲା । ଏଥିପାଇଁ କୃଷ୍ଣାନଦୀର ଅବବାହିକା ପର୍ଯ୍ୟନ୍ତ ଯାଇ ସେଠାରୁ ଆଭ୍ୟନ୍ତରୀଣ କ୍ଷେତ୍ରକୁ ଯାତ୍ରା କରିବାକୁ ପଡୁଥିଲା ।

ଉପଦ୍ୱୀପରେ ମୌର୍ଯ୍ୟ ଶାସନର ବିସ୍ତାର ଓ ପ୍ରଭାବର ମାତ୍ରାକୁ ଜାଣିବାକୁ ହେଲେ ଅଶୋକଙ୍କ ଅଭିଲେଖସ୍ଥଳୀ ଖୁବ୍ ଉପଯୋଗୀ ପ୍ରମାଣିତ ହୁଏ । କର୍ଣ୍ଣାଟକ ପାରିହେଲେ ଆଉ ଅଭିଲେଖ ଦେଖିବାକୁ ମିଳେ ନାହିଁ, ଯାହାର ଅର୍ଥ ହେଲା ମୌର୍ଯ୍ୟ ଶାସନ କର୍ଣ୍ଣାଟକଯାଏଁ ବ୍ୟାପିଥିଲା । ଦକ୍ଷିଣର ଯେଉଁ ବଂଶଗୁଡ଼ିକ ସହିତ ଅଶୋକଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧ ଥିଲା, ତା'ର ସେ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି । ସେମାନେ ହେଲେ : ଚୋଳ, ପାଣ୍ଡ୍ୟ, ସତୀୟପୁତ୍ର ଏବଂ କେରଳପୁତ୍ର । ଅଶୋକ ତାମ୍ରପର୍ଣ୍ଣୀ (ଶ୍ରୀଲଙ୍କା)ର ମଧ୍ୟ ଉଲ୍ଲେଖ କରିଛନ୍ତି । ଏଥିରେ ଦକ୍ଷିଣର ରାଜାମାନଙ୍କୁ ବିଜୟ କରିବାର କୌଣସି ଉଦ୍ୟମ କଥା ବର୍ଣ୍ଣିତ ନାହିଁ । ମନେହୁଏ, ସୁଦୂର ଦକ୍ଷିଣର ଧନସମ୍ପଦ ପରବର୍ତ୍ତୀ ସମୟରେ ଯେମିତି ସୁଦୃଶ୍ୟ ହେବାରେ ଲାଗିଲା, ତାହା ସେତେବେଳେ ଦୃଶ୍ୟମାନ ହୋଇ ନ ଥିଲା । ଅନ୍ୟପକ୍ଷରେ, ସେଠାରେ (ଦକ୍ଷିଣରେ) ପ୍ରଚଳିତ ଥିବା ସର୍ଦ୍ଦାରତନ୍ତ୍ର ମୌର୍ଯ୍ୟ ସେନାବାହିନୀର ଶକ୍ତି ପରାକ୍ରମ ଦେଖି ବା ସେ ସମ୍ପର୍କରେ ଅବଗତ ହୋଇ ମୌର୍ଯ୍ୟମାନଙ୍କ ସହ ବନ୍ଧୁତା କରି ଶାନ୍ତିରେ ରହିବାକୁ ପସନ୍ଦ କରିଥିଲା ।

ଶ୍ରୀଲଙ୍କାର ଇତିବୃତ୍ତ (chronicle), ଦୀପବଂଶ ତଥା ମହାବଂଶରେ ମୌର୍ଯ୍ୟମାନଙ୍କର ଦ୍ୱୀପ ସହିତ ଥିବା ସମ୍ବନ୍ଧ ସମ୍ପର୍କରେ ବର୍ଣ୍ଣନା ରହିଛି । ଏହି ବର୍ଣ୍ଣନା ଅନୁଯାୟୀ, ଅଶୋକଙ୍କ ପୁତ୍ର ମହେନ୍ଦ୍ର ଥିଲେ ଦ୍ୱୀପର ପ୍ରଥମ ବୌଦ୍ଧ ପ୍ରଚାରକ ଏବଂ ସେଠାକାର ରାଜା ତିସ୍ସ ଉଦ୍‌ବୁଦ୍ଧ ହୋଇ ନିଜକୁ ସମ୍ରାଟ ଅଶୋକଙ୍କ ଆଦର୍ଶରେ ଗଢ଼ିବାକୁ ପ୍ରୟାସ କରିଥିଲେ । ଏହାଛଡ଼ା, ଉଭୟ ଦେଶ ମଧ୍ୟରେ ଅନେକଥର ଉପହାର ଓ ଦୂତର ଆଦାନ ପ୍ରଦାନ ହୋଇଥିଲା । ମୌର୍ଯ୍ୟ ସମ୍ରାଟ ମୂଳ ବୋଧିଦ୍ରୁମର ଏକ ଶାଖା ଶ୍ରୀଲଙ୍କାର ରାଜାଙ୍କୁ ଉପହାର ରୂପେ ଦେଇଥିଲେ । ଏହି ବୋଧିଦ୍ରୁମ ବଞ୍ଚିରହିଲା, ଯଦିଓ ମୂଳ ବୋଧିଦ୍ରୁମ ଭାରତରେ ପରବର୍ତ୍ତୀ ସମୟରେ ବୌଦ୍ଧ ବିରୋଧୀମାନଙ୍କ ହାତରେ ଉତ୍ପାଟିତ ହେଲା । ପ୍ରକାଶଥାଉ କି, ଏହି ବୋଧିଦ୍ରୁମ ତଳେ ବୋଧଗୟାରେ ବୁଦ୍ଧ ଜ୍ଞାନପ୍ରାପ୍ତ ହୋଇଥିଲେ ।

ପ୍ରଥମ ତିନିଜଣ ମୌର୍ଯ୍ୟ ଶାସକ, ଚନ୍ଦ୍ରଗୁପ୍ତ, ବିନ୍ଦୁସାର ଓ ଅଶୋକଙ୍କ ଶାସନକାଳ ଥିଲା ଖୁବ୍ ପ୍ରଭାବଶାଳୀ । ଏହି କାଳଖଣ୍ଡର ମୋଟ ଅବଧି ଥିଲା ପ୍ରାୟ ୨୦ ବର୍ଷ । ସେତେବେଳେ ମୌର୍ଯ୍ୟ ପ୍ରଶାସନ କେବଳ ଏକ ବିସ୍ତୃତ କ୍ଷେତ୍ର ହୋଇ ନ ଥିଲା, ତା' ସହିତ ଉପମହାଦେଶର ବିବିଧତାପୂର୍ଣ୍ଣ ଉପାଦାନଗୁଡ଼ିକୁ ଏକତ୍ର ମଧ୍ୟ କରିଥିଲା । ମୌର୍ଯ୍ୟ ସମ୍ରାଟମାନେ ଏଭଳି ଏକ ରାଜନୈତିକ ଦୃଷ୍ଟିଭଙ୍ଗୀକୁ ଅଭିବ୍ୟକ୍ତ କରିଥିଲେ, ଯାହା ପରବର୍ତ୍ତୀକାଳୀନ ଭାରତର ରାଜନୈତିକ ଜୀବନକୁ ରଙ୍ଗାୟିତ କଲା । ଅବଶ୍ୟ ଅଳ୍ପ କେତେଜଣ ମାତ୍ର ରାଜା ମୌର୍ଯ୍ୟ ପଦ୍ଧତିକୁ ନିଜ ନିଜ ରାଜ୍ୟରେ ପ୍ରତ୍ୟାରୋପଣ କରିବାରେ ସଫଳତା ଲାଭ କରିଥିଲେ । ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ କିଭଳି ଏବଂ କାହିଁକି ଏହି ଧରଣର ଏକ ସାମ୍ରାଜ୍ୟିକ ସ୍ୱପ୍ନ ନିର୍ଦ୍ଦିଷ୍ଟ ରୂପ ନେଇପାରିଲା ? ତା' ପଛରେ କାରଣ ଏକ ନା ଅନେକ ? ଏସବୁ ପ୍ରଶ୍ନ ଆଜି ବି ମହତ୍ତ୍ୱପୂର୍ଣ୍ଣ ।

## ସାମ୍ରାଜ୍ୟର ରାଜ୍ୟ ବ୍ୟବସ୍ଥା

ଯେଉଁ ସୂତ୍ରସାମଗ୍ରୀଗୁଡ଼ିକରୁ ମୌର୍ଯ୍ୟ ରାଜ୍ୟ ବ୍ୟବସ୍ଥା ସମ୍ବନ୍ଧରେ ସୂଚନା ମିଳେ, ତନ୍ମଧ୍ୟରେ 'ଅର୍ଥଶାସ୍ତ୍ର' ହେଲା ପ୍ରଧାନ । ଏଥିରେ ରାଜ୍ୟ ପରିଚାଳନା ସମ୍ପର୍କରେ ଏକ ବିଶଦ ରୂପରେଖା ଦିଆଯାଇଛି । ଅର୍ଥଶାସ୍ତ୍ରର ରଚନା ନିର୍ଦ୍ଦିଷ୍ଟ କେବେ ହୋଇଥିଲା, ସେ ନେଇ ଏବେ ସୁଦ୍ଧା ସଠିକ ତିଥି ନିରୂପଣ ହୋଇ ପାରିନାହିଁ । ଆଉ ଅନେକ ପ୍ରାଚୀନ ଗ୍ରନ୍ଥର ମଧ୍ୟ ଏହି ଏକା ସ୍ଥିତି । 'ଅର୍ଥଶାସ୍ତ୍ର'ର ପ୍ରଣେତା ଭାବରେ କୌଟିଲ୍ୟଙ୍କୁ ଚିହ୍ନିତ କରାଯାଏ ଏବଂ ଅନେକଙ୍କ ମତରେ ଚନ୍ଦ୍ରଗୁପ୍ତଙ୍କର ପ୍ରଧାନମନ୍ତ୍ରୀ ଚାଣକ୍ୟଙ୍କର ଅନ୍ୟନାମ ଥିଲା କୌଟିଲ୍ୟ । ଅବସୋସର ବିଷୟ ଯେ, ତୃତୀୟ ଶତାବ୍ଦୀରେ ମୂଳ 'ଅର୍ଥଶାସ୍ତ୍ର'ର ଯେଉଁ ନୂଆ ସଂସ୍କରଣ ବିଷ୍ଣୁଗୁପ୍ତଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା, ତାହା କେବଳ ଆଜି ଉପଲବ୍ଧ । କାଳାନୁକ୍ରମିକ ବିବାଦ ଏଇଥିପାଇଁ ଯେ ଯଦି ଗ୍ରନ୍ଥଟିର କେତେକ ଅଂଶ ମୌର୍ଯ୍ୟକାଳ ସମ୍ବନ୍ଧିତ, ତେବେ ତାହା କେଉଁ ଅଂଶ ? ପୁଣି କେଉଁ ଅଂଶ ପରବର୍ତ୍ତୀକାଳୀନ ? ଏକଥା ସୁସ୍ପଷ୍ଟ ହୋଇ ପାରୁନାହିଁ । ପୁସ୍ତକର ଦ୍ୱିତୀୟ ଖଣ୍ଡଟି ସମ୍ଭବତଃ ମୌର୍ଯ୍ୟକାଳୀନ, ହେଲେ ତାକୁ ବସ୍ତୁ ସ୍ଥିତିର ବର୍ଣ୍ଣନା ରୂପରେ ନିଆଯାଇ ନ ପାରେ । ବରଂ ଏକ ସୈଦ୍ଧାନ୍ତିକ ପ୍ରବନ୍ଧ ରୂପରେ ତାହା ଆବଶ୍ୟକୀୟ ପ୍ରଶାସନିକ ବିଷୟଗୁଡ଼ିକୁ ଚିହ୍ନିତ କରେ । ଫଳରେ ତହିଁରୁ ରାଜ୍ୟ ବ୍ୟବସ୍ଥା ସମ୍ପର୍କରେ ସଂକେତ ମିଳେ । ସେତେବେଳର ବିଶେଷତ୍ୱ ହୁଏତ ଏହି ବିଚାରକୁ ପ୍ରେରିତ କରିଥିବ । ଗ୍ରନ୍ଥରେ ଏକ କେନ୍ଦ୍ରିକୃତ ଶାସନର ବିଶଦ କାର୍ଯ୍ୟ ପଦ୍ଧତି ବର୍ଣ୍ଣିତ । ଏହା ସେତେବେଳର ଆଦର୍ଶ ଥିଲା । ଅଧିକ ମହତ୍ତ୍ୱପୂର୍ଣ୍ଣ ହେଲା ଯେ,

ଏଭଳି ଏକ ଆଦର୍ଶର ସମ୍ଭାବନାକୁ ଗ୍ରନ୍ଥରେ ଦେଖାଯାଇ ପାରିଥିଲା । ସେହି ଦୃଷ୍ଟିରୁ ଦେଖିଲେ, ଏକ ନିର୍ଦ୍ଦିଷ୍ଟ କିସମର ଶାସନ ପ୍ରଣାଳୀକୁ ପ୍ରୋତ୍ସାହିତ କରିବା ଥିଲା 'ଅର୍ଥଶାସ୍ତ୍ର'ର ପ୍ରମୁଖ ଉଦ୍ଦେଶ୍ୟ ।

ମୌର୍ଯ୍ୟ କାଳରେ ଉତ୍ତର ଭାରତର ରାଜସ୍ୱ ମୁଖ୍ୟତଃ କୃଷି ଆଧାରିତ୍ ଥିଲା । ବୃହତ୍ କ୍ଷେତ୍ରଗୁଡ଼ିକୁ କୃଷିଯୋଗ୍ୟ କରାଯାଇଥିଲା । ସରକାରଙ୍କ ଆୟର ସ୍ୱୀକୃତ ସ୍ରୋତ ଭାବରେ ଭୂ-ରାଜସ୍ୱକୁ ମହତ୍ତ୍ୱ ମିଳିଥିଲା । ସେତେବେଳେ ଧାରଣା ଥିଲା, ଯଦି ନିୟମିତ କର ନିର୍ଦ୍ଧାରଣ କରାଯାଏ, ତେବେ ରାଜସ୍ୱ ବୃଦ୍ଧି ପାଇବ । କର ଅସୁଲିରୁ ପ୍ରାପ୍ତ ହେଉଥିବା ରାଜସ୍ୱ ସମ୍ବନ୍ଧରେ ପୂର୍ବାନୁମାନ କରାଯାଇ ପାରୁଥିଲା । ଏହାଫଳରେ ରାଜକୋଷୀୟ ସୁରକ୍ଷାକୁ ନେଇ ଏକ ଧାରଣା ସୃଷ୍ଟି ହେଲା । କର ଅସୁଲି ସୁଚାରୁ ରୂପେ କେମିତି ହେବ – ତାହା ଥିଲା ପ୍ରଶାସନିକ ବ୍ୟବସ୍ଥାର ପ୍ରମୁଖ ଉଦ୍ଦେଶ୍ୟ । ଏଭଳି ଏକ ଦକ୍ଷ ପ୍ରଶାସନିକ ତତ୍ତ୍ୱର ତତ୍ତ୍ୱବିଦ୍ ଭାବରେ କୌଟିଲ୍ୟ ବିସ୍ତାରରେ କର ଅସୁଲିର ପଦ୍ଧତିଗୁଡ଼ିକ ସମ୍ପର୍କରେ, ତଜ୍ଜନିତ ସମସ୍ୟାଗୁଡ଼ିକ ସମ୍ପର୍କରେ ଏବଂ ରାଜସ୍ୱର ସମ୍ଭାବ୍ୟ ସ୍ରୋତଗୁଡ଼ିକ ସମ୍ପର୍କରେ ଆଲୋଚନା କରିଛନ୍ତି । ପରିଣାମ ସ୍ୱରୂପ, ସରକାରର ଅଗୋଚରରେ ଘରୋଇ ଭାବରେ ଜଙ୍ଗଲରୁ ଗଛକଟାଯାଇ ପାରୁନଥିଲା । ତା' ପାଇଁ ରାଜଅନୁମତିପତ୍ରର ଆବଶ୍ୟକତା ପଡୁଥିଲା । ଏହାର ଅର୍ଥ ହେଲା, ସରକାର ଜଙ୍ଗଲଜାତ ଦ୍ରବ୍ୟକୁ ସଂଗ୍ରହ କରିବାକୁ ତଥା ନିର୍ବନିକରଣ ମାଧ୍ୟମରେ କୃଷିର ସଂପ୍ରସାରଣକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଥିଲେ । ପ୍ରଶ୍ନ ହେଲା, ଏହାଦ୍ୱାରା ପ୍ରକୃତରେ କେତେ ମାତ୍ରାରେ ନିୟନ୍ତ୍ରଣ ହାସଲ କରାଯାଇ ପାରିଥିଲା ? କୃଷି ବାହାରେ ଯାହାସବୁ ଅର୍ଥନୈତିକ ଗତିବିଧି ସେ ସମ୍ବନ୍ଧରେ ରାଜ୍ୟ ନା ଅଜ୍ଞାତ ଥିଲା, ନା ସେଭଳି ଗତିବିଧିକୁ ନିରୁତ୍ସାହିତ କରୁଥିଲା । ଗ୍ରାମାଞ୍ଚଳରେ ପଶୁ ପାଳନ କରାଯାଉଥିଲା ଏବଂ ତା' ଉପରେ ରାଜ୍ୟ କର ଅସୁଲି କରୁଥିଲା । ସୈଦ୍ଧାନ୍ତିକ ରୂପରେ, ବାଣିଜ୍ୟିକ କାର୍ଯ୍ୟକଳାପ, ବିଶେଷକରି ଉପକୂଳ ଅଞ୍ଚଳରେ ଚାଲିଥିବା ବାଣିଜ୍ୟ ସରକାରଙ୍କ ନିୟନ୍ତ୍ରଣାଧୀନ ଥିଲା । ରାଜ୍ୟ ଯେଉଁଠି ଓ ଯେତେବେଳେ ସମ୍ଭବ ବଣିକମାନଙ୍କଠାରୁ ଟିକସ, ଯାତ୍ରାକର ଏବଂ ବାଣିଜ୍ୟକର ଆଦି ଅସୁଲି କରୁଥିଲା । ପୂର୍ବରୁ କୃଷିଜାତ ପଦାର୍ଥ ଉପରେ ଯେଉଁଭଳି ଭାବେ କର ବସୁଥିଲା ଏବଂ ତାକୁ ଯେଉଁ ପଦ୍ଧତିରେ ଅସୁଲି କରାଯାଉଥିଲା, ସେହି ପଦ୍ଧତିରେ ବାଣିଜ୍ୟକର ଆଦି ମଧ୍ୟ ଅସୁଲ କରାଗଲା ।

କୃଷି ବିଷୟକ ରାଜ୍ୟର ଗତିବିଧିକୁ ବାଦ୍ ଦେଲାପରେ ଆହୁରି ଅନେକ ଲୋକ ବ୍ୟକ୍ତିଗତ ସ୍ତରରେ ଜମିମାଲିକ କିମ୍ବା କୃଷକ ଭାବରେ ନିଜେ ଜମିର ମାଲିକାନା ରଖିଥିଲେ । ସେମାନେ ହୁଏତ ନିଜେ କୃଷି କରୁଥିଲେ, ଅଥବା ଅନ୍ୟମାନଙ୍କ ହାତରେ କୃଷି କରାଉଥିଲେ ।

ଏଥିପାଇଁ ସେମାନଙ୍କୁ ନାନା କିସମର କର ଦେବାକୁ ପଡୁଥିଲା । ବଡ଼ ବଡ଼ ଭୂସ୍ୱାମୀମାନେ ଜମିର ରୟତ ଚାଷୀଠାରୁ ଖଜଣା ସଂଗ୍ରହ କରୁଥିଲେ । କ୍ରମଶଃ ଜମିରେ ବ୍ୟକ୍ତିର ବ୍ୟକ୍ତିଗତ ମାଲିକାନାକୁ ସ୍ୱୀକୃତି ମିଳିଲା । ଏହାର ପ୍ରମାଣ ଏକ କଥନରେ ରହିଛି । ଉକ୍ତ କଥନ ଅନୁସାରେ, ଭୂସମ୍ପତ୍ତି ବିକ୍ରିବେଳେ ପ୍ରଥମେ କୁଟୁମ୍ବ ଜନ ଏବଂ ଋଣଦାତାଙ୍କୁ କ୍ରେତା ରୂପରେ ପ୍ରାଥମିକତା ପ୍ରଦାନ କରାଯିବ । ଜମିରେ କୌଟମ୍ବିକ ସମ୍ପର୍କକୁ ତଥାପି ମାନ୍ୟତା ମିଳୁଥିଲା । ରାଜ୍ୟ ତା'ର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବହୁ ପରିମାଣର ନିଷ୍ଫଳା ଜମି ଓ ସୀତା ଜମି ବା ରାଜାଙ୍କ ଜମି ଉପରେ କୃଷିକାର୍ଯ୍ୟ କରୁଥିଲା । ସୀତା ଜମି ଉପରେ ପ୍ରତ୍ୟକ୍ଷଭାବେ ନିଯୁକ୍ତ କର୍ମଚାରୀ କୃଷି କରୁଥିଲେ । ରୟତ ଚାଷୀ ମଧ୍ୟ ରାଜ୍ୟକୁ କର ଦେଇ କୃଷି କରୁଥିଲେ । କୌଣସି କୌଣସି ସ୍ଥାନରେ ଏହି ରାଜକୃଷି ପାଇଁ ରାଜ୍ୟ ମଜୁରିଆଙ୍କୁ ମଧ୍ୟ ନିଯୁକ୍ତ କରୁଥିଲେ । ଅବସୋସର କଥା ଯେ, ମେଘାସ୍ଥିନିସଙ୍କ ବିବରଣୀକୁ ଉଦ୍ଧୃତ କରି ଗ୍ରୀକ୍ ଲେଖକମାନେ ରାଜ୍ୟ ଓ କୃଷକ ମଧ୍ୟରେ ଥିବା ସମ୍ପର୍କକୁ ଦର୍ଶାଇ ପରସ୍ପର ବିରୋଧୀ ମନ୍ତବ୍ୟମାନ ଦେଇଛନ୍ତି । ଅବଶ୍ୟ ଉକ୍ତ ଲେଖକମାନେ ଏକମତ ଯେ ସମାଜରେ କୃଷକମାନେ ଥିଲେ ବହୁସଂଖ୍ୟକ; ମାତ୍ର ସ୍ୱୟଂ ରାଜବଂଶର ଜମି ଉପରେ ମାଲିକାନା ରହିଥିଲା । ଏହିସବୁ ବିବରଣୀରେ ଅର୍ଥଶାସ୍ତ୍ରରେ ବର୍ଣ୍ଣିତ ରୟତର କିସମ ନାହିଁ । 'ଅର୍ଥଶାସ୍ତ୍ର'ର ପାଠରେ ରାଜ୍ୟକୁ ଜଙ୍ଗଲ ସଫା କରିବା ସକାଶେ ପରାମର୍ଶ ଦିଆଯାଇଛି । ଏହାଛଡ଼ା ପରିତ୍ୟକ୍ତ ଜମିରେ କୃଷି କରିବାକୁ ଏବଂ ଅଧିକାଧିକ ଶୂଦ୍ରମାନଙ୍କୁ ଜମିରେ ଚାଷ କରିବାକୁ ରାଜ୍ୟମାନେ ତତ୍ପର ହେବା କଥା ବୋଲି କୁହାଯାଇଛି । ଯେଉଁ ଅଞ୍ଚଳ ଅଧିକ ଜନବହୁଳ, ତହିଁରୁ କିଛି ଲୋକଙ୍କୁ ଜନବିରଳ ଅଞ୍ଚଳରେ ସ୍ଥାପିତ କରିବା ପାଇଁ ରାଜ୍ୟକୁ 'ଅର୍ଥଶାସ୍ତ୍ର'ରେ ନିର୍ଦ୍ଦେଶ ଦିଆଯାଇଛି । ପଡ଼ୋଶୀ ରାଜ୍ୟମାନଙ୍କରୁ ମଧ୍ୟ ଲୋକଙ୍କୁ ଅଣାଯାଇ କମ୍ ଉର୍ବର ଅଞ୍ଚଳରେ ସ୍ଥାପିତ କରାଯିବା କଥା ବୋଲି କୁହାଯାଇଛି । ଏହା ନିଃସନ୍ଦେହ ଯେ, କଳିଙ୍ଗ ଯୁଦ୍ଧ ପରେ କଳିଙ୍ଗରୁ ବିସ୍ଥାପିତ ଦେଢ଼ଲକ୍ଷ ଲୋକଙ୍କୁ ନିଷ୍ଫଳା ଜମିକୁ ସଫା କରିବା ସକାଶେ ତଥା ନୂଆ ଜନବସତି ପ୍ରତିଷ୍ଠା କରିବା ସକାଶେ ବିଭିନ୍ନ ସ୍ଥାନକୁ ପ୍ରେରଣ କରାଯାଇଥିଲା ।

ନୂତନ ବସତିରେ ସ୍ଥାପିତ ଶୂଦ୍ରମାନଙ୍କୁ ଆରମ୍ଭରେ କରମୁକ୍ତ କରାଯାଉଥିଲା । ମାତ୍ର ଜମିର ଉର୍ବରତା ବୃଦ୍ଧି ପାଇବା ଉତ୍ତାରୁ, ଅର୍ଥାତ୍ କୃଷିକାର୍ଯ୍ୟ ଆରମ୍ଭ ହେବା ଉତ୍ତାରୁ ସେମାନଙ୍କଠାରୁ ଦେୟ ଅସୁଲି ହେଉଥିଲା । ଅତୀତରେ ଏଭଳି ଶୂଦ୍ର ଚାଷୀକୁ ବିଦ୍ୱାନ୍‌ମାନେ ରାଜ-ଦାସ (helots) କହୁଥିଲେ । ରାଜ-ଦାସ ଅର୍ଥାତ୍ ଯାହାକୁ ରାଜ୍ୟ ଅଧିକାରଭୁକ୍ତ କରି ନିଯୁକ୍ତ କରିଥାଏ । ମାତ୍ର ରାଜଦାସ ବ୍ୟବସ୍ଥା ବା 'ହେଲୋଟେଜ (helotage)ର ବିପରୀତ, ଭାରତର ଏହି ଶୂଦ୍ର-ଚାଷୀମାନେ ନା ରାଜାଙ୍କର ଅଧିକାରଭୁକ୍ତ ହୋଇ ରହିଥିଲେ,

ନା ରାଜ୍ୟର କିଣା ଚାକର ଥିଲେ । ଶୂଦ୍ର ଚାଷୀ ବ୍ୟତୀତ ଆଉ ଏକ କିସମର କୃଷିଜୀବୀ ଥିଲେ, ଯେଉଁମାନେ ମଜୁରି ଖଟୁଥିଲେ । ସେମାନଙ୍କୁ 'ଦାସ-କର୍ମକାର' କୁହାଯାଉଥିଲା । ସେମାଦେ ଦାସ ଥିଲେ ଏବଂ ତା' ସହିତ ମଜୁରି ମଧ୍ୟ ଖଟୁଥିଲେ । ଫଳରେ ସେମାନଙ୍କର କୌଣସି ସ୍ୱାଧୀନତା ନ ଥିଲା ଏବଂ ସେମାନଙ୍କୁ ବହୁ ଶୋଷଣର ଶିକାର ହେବାକୁ ପଡୁଥିଲା । ଏଭଳି ଶୋଷିତ ଲୋକଙ୍କର ଅବସ୍ଥା ପ୍ରତି ବୌଦ୍ଧଗ୍ରନ୍ଥ ଖୁବ୍ ସମ୍ବେଦନଶୀଳ ପ୍ରତୀତ ହେଉଥିଲା ।

ମେଘାସ୍ଥିନିସ୍ ତାଙ୍କ ବିବରଣୀରେ ଭାରତରେ ଦାସତ୍ୱ ପ୍ରଥା ନ ଥିଲା ବୋଲି ଉଲ୍ଲେଖ କରିଛନ୍ତି । ମାତ୍ର ଭାରତର ସ୍ରୋତ ସାମଗ୍ରୀରେ ଏହାର ବିପରୀତ ପ୍ରମାଣମାନ ମିଳିଥାଏ । ସମ୍ଭବତଃ ସେ ଦାସତ୍ୱ କଥା କହିଲାବେଳେ ଏଥେନ୍ସର ଦାସ କଥା ମନରେ ରଖିଥିଲେ । ମାତ୍ର ଭାରତର ଦାସତ୍ୱ ଥିଲା ସମ୍ପୂର୍ଣ୍ଣ ଭିନ୍ନ କିସମର । ଗ୍ରୀସ୍‌ର ସ୍ପାର୍ଟା ଦାସ ବ୍ୟବସ୍ଥା ସହିତ ଭାରତର ସାମଞ୍ଜସ୍ୟ ରହିଛି ବୋଲି ସେ ଉଲ୍ଲେଖ କରିଥିଲେ, କାରଣ ଉଭୟ ଦାସତ୍ୱରେ ଜନ୍ମ ଆଧାରରେ ମର୍ଯ୍ୟାଦାକୁ ପ୍ରମୁଖତା ମିଳିଥାଏ । ଭାରତରେ ସମ୍ପନ୍ନ ପରିବାରମାନଙ୍କରେ ଗୃହ-ଦାସ ରଖିବା ଥିଲା ଏକ ସାଧାରଣ କଥା । ଏହି ଗୃହ-ଦାସମାନେ ତଳ ବର୍ଗର ଥିଲେ ସତ, ମାତ୍ର ଅସ୍ପୃଶ୍ୟ ନ ଥିଲେ । ଅନ୍ୟଥା ସେମାନଙ୍କୁ ସୁଖୀ-ସମ୍ପନ୍ନ ଉଚ୍ଚବଂଶଜଙ୍କ ଘରେ ପ୍ରବେଶ ମିଳୁ ନ ଥାନ୍ତା । କେତେକ ଖଣି ଓ ହସ୍ତଶିଳ୍ପାଳୟରେ ମଧ୍ୟ ଗୃହଦାସଙ୍କୁ ଉପଯୋଗ କରିବାର ପରମ୍ପରା ରହିଥିଲା । ଏକାଧିକ ପାଠରେ, ଯେଉଁ ପରିସ୍ଥିତି ଦାସତ୍ୱକୁ ପ୍ରୋତ୍ସାହିତ କରୁଥିଲା, ତା'ର ଅବତାରଣା ରହିଥିଲା । ଜନ୍ମରୁ ଜଣେ ଦାସତ୍ୱ ପାଉଥିଲା । ନିଜକୁ ସ୍ୱେଚ୍ଛାରେ ବିକ୍ରୟ କରି ମଧ୍ୟ ଜଣେ ଦାସତ୍ୱକୁ ବରଣ କରୁଥିଲା । ଯୁଦ୍ଧରେ ବନ୍ଦୀ ହୋଇ କିମ୍ବା ବିଚାରାଳୟରୁ ଦଣ୍ଡ ପାଇ ସୁଦ୍ଧା ଜଣେ ଦାସତ୍ୱକୁ ବରି ନେଉଥିଲା । ଦାସତ୍ୱ ଥିଲା ଏକ ସମାଜ ସ୍ୱୀକୃତ ବ୍ୟବସ୍ଥା, ଯାହା ଦାସ ଓ ମାଲିକ ମଧ୍ୟରେ ଥିବା ସମ୍ପର୍କକୁ ସ୍ପଷ୍ଟତଃ ପରିଭାଷିତ କରୁଥିଲା । ଉଦାହରଣ ସ୍ୱରୂପ, ଜଣେ ଦାସୀ ଯଦି ମାଲିକକୁ ପୁତ୍ରସନ୍ତାନଟିଏ ଜନ୍ମକରି ଦିଏ, ତେବେ ଦାସୀ କେବଳ ଦାସତ୍ୱରୁ ମୁକ୍ତ ହେଉ ନଥିଲା, ତା' ସହିତ ଦାସୀପୁତ୍ର ଭାବରେ ତା' ସନ୍ତାନକୁ ପିତୃସମ୍ପତ୍ତିରୁ ଭାଗ ମିଳୁଥିଲା ଏବଂ ପୁତ୍ରର ମର୍ଯ୍ୟାଦା ମଧ୍ୟ ପ୍ରାପ୍ତ ହେଉଥିଲା । ହୁଏତ ମେଘାସ୍ଥିନିସ ଜାତି ମର୍ଯ୍ୟାଦାକୁ ସ୍ୱାତନ୍ତ୍ର୍ୟର ଡିଗ୍ରୀ ଆଧାରରେ ରହିଥିବା ବିଭକ୍ତିକରଣ ବୋଲି ଭ୍ରମାତ୍ମକ ଅବଧାରଣା ରଖିଥିଲେ । ଗ୍ରୀକ୍ ସମାଜରେ ଯଦିଓ ବ୍ୟାବହାରତଃ ଅସ୍ୱତନ୍ତ୍ରତାର ଭିନ୍ନ ଭିନ୍ନ ପରିଣାମକୁ ସ୍ୱୀକାର କରାଯାଉଥିଲା, ତଥାପି ସୈଦ୍ଧାନ୍ତିକ ରୂପରେ ଉକ୍ତ ସମାଜ କେବଳ ବ୍ୟକ୍ତି ଓ ଦାସ ମଧ୍ୟରେ ପ୍ରଭେଦ ଦେଖୁଥିଲା । ଏହି ପ୍ରଭେଦ ଭାରତୀୟ ସମାଜରେ ବହୁତ ସ୍ପଷ୍ଟ ନ ଥିଲା । ଭାରତରେ ଦାସ ସ୍ୱ-ସ୍ୱତନ୍ତ୍ରତାକୁ କିଣିନେଇ ପାରୁଥିଲା ଏବଂ ତା'ର ମାଲିକ ମଧ୍ୟ ତାକୁ ସ୍ୱେଚ୍ଛାରେ କଦାଚିତ୍ ସ୍ୱତନ୍ତ୍ରତା ପ୍ରଦାନ କରୁଥିଲେ ।

ଦାସ ଯଦି ପୂର୍ବରୁ ଆର୍ଯ୍ୟ ଥିଲା, ତେବେ ଦାସତ୍ୱର ଅବଧି ପୂରଣ ହେବାପରେ ସେ ଆର୍ଯ୍ୟର ମାନ୍ୟତା ପାଇବ ବୋଲି 'ଅର୍ଥଶାସ୍ତ୍ର'ରେ ଉଲ୍ଲେଖ ରହିଛି । ସମ୍ଭବତଃ ଆର୍ଯ୍ୟ ଓ ଦାସର କାର୍ଯ୍ୟବିଧିରେ ଏହି ସମୟରେ କେତେକ ପରିବର୍ତ୍ତନ ସମ୍ଭବ ହୋଇଥିଲା । ଭାରତୀୟ ସମାଜରେ ଯାହା ଅପରିବର୍ତ୍ତନୀୟ ତାହା ହେଲା ଜାତି; ଦାସତ୍ୱ କିମ୍ବା ଅଦାସତ୍ୱ ନୁହେଁ । ମାତ୍ର ବ୍ୟବହାରତଃ ଦାସତ୍ୱ ଓ ଅଦାସତ୍ୱ ଜାତି ବ୍ୟବସ୍ଥାରେ ହିଁ ନିହିତ ଥିଲା । ଉପର ଜାତି ତୁଳନାରେ 'ତଳ' ଜାତି କମ୍ ସ୍ୱତନ୍ତ୍ର ଥିଲେ ଏବଂ ଅସ୍ପୃଶ୍ୟତାକୁ ଦାସତ୍ୱର ପର୍ଯ୍ୟାୟବାଚୀ ମନେ କରାଯାଉଥିଲା ।

ଭୂ-ରାଜସ୍ୱ ଅନ୍ତତଃ ଦୁଇ କିସମର ଥିଲା । ଗୋଟାକରେ କୃଷିଜମି ଉପରେ କର ବସୁଥିଲା ଏବଂ ଅନ୍ୟଟିରେ ମୋଟ ଉତ୍ପାଦନ ଉପରେ କର ଧାର୍ଯ୍ୟ କରାଯାଉଥିଲା । ବୁଦ୍ଧଙ୍କର ଜନ୍ମସ୍ଥାନ ଲୁମ୍ବିନୀକୁ ସ୍ମାରକୀ ଭାବରେ ଗ୍ରହଣ କରି ଅଶୋକ ସେଠାରେ ଏକ ଶିଳାଲେଖ ସ୍ଥାପନ କରିଥିଲେ । ତହିଁରେ 'ବଳି' ଏବଂ 'ଭାଗ' ନାମରେ ଦୁଇପ୍ରକାର କରର ଉଲ୍ଲେଖ ରହିଛି । ସମ୍ଭବତଃ ଏହା ଥିଲା ସେହି ଉପରୋକ୍ତ ଦୁଇ କିସମର ଭୂମିକର । ରୁଚିକର ବିଷୟ ହେଲା ଯେ ଶିଳାଲେଖରେ ଲୁମ୍ବିନୀର ପ୍ରଜାମାନଙ୍କୁ 'ବଳି'ରୁ ମୁକ୍ତ କରାଯାଇଛି । ମାତ୍ର 'ଭାଗ' ମୁକ୍ତ କରାଯାଇ ନାହିଁ । ଜମି ଅନୁସାରେ କର ଧାର୍ଯ୍ୟ ହେଉଥିଲା ଏବଂ କର ପରିମାଣ ମୋଟ ଆଦାୟର ଏକଷଷ୍ଠାଂଶରୁ ଏକଚତୁର୍ଥାଂଶ ମଧ୍ୟରେ ସୀମିତ ରହୁଥିଲା । ଜଣେ ଚାଷୀ କରୁଥିବା କୃଷି ଓ ଜମିର ଉର୍ବରତା ଉପରେ ଭିତ୍ତିକରି କର ଧାର୍ଯ୍ୟ ହେଉଥିଲା । ସେତେବେଳେ ପିଣ୍ଡରକର ଉଲ୍ଲେଖ ଦେଖିବାକୁ ମିଳେ । ପିଣ୍ଡରକ ହେଲା ଜମା ହୋଇଥିବା କର । ମନେହୁଏ, ଗୋଟାଏ ଗ୍ରାମରୁ ମିଳିତ ଭାବରେ କର ଅସୁଲି ହେଉଥିଲା । ପଶୁପାଳକ ଏବଂ ପଶୁଧନ ସୃଷ୍ଟିକାରୀ ବର୍ଗ ଉପରେ ମଧ କର ଧାର୍ଯ୍ୟ ହେଉଥିଲା । ଅନ୍ୟାନ୍ୟ ଆର୍ଥିକ କାର୍ଯ୍ୟକଳାପ ଉପରେ ମଧ କର ନିରୂପିତ ହେଉଥିଲା । ରାଜ୍ୟ ଭିଷ୍ଟି ବା ଶ୍ରମ-କର ମଧ ଅସୁଲ କରୁଥିଲା । ଏହାକୁ ୟୁରୋପର ସାମନ୍ତବାଦୀ ସମାଜରେ ପ୍ରଚଳିତ ଥିବା କର ସହିତ ତୁଳନା କରାଯାଏ । ଏହା ବେଠି ବା ବାଧ୍ୟତାମୂଳକ ପାରିଶ୍ରମିକ ରହିତ ଶ୍ରମ ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । ମାତ୍ର ଅନ୍ୟ କେତେକ ଐତିହାସିକଙ୍କ ମତରେ, କର ବଦଳରେ ଶ୍ରମ-କର ଅସୁଲି ହେଉଥିଲା । 'ଭିଷ୍ଟି'ର ସମ୍ବନ୍ଧ ଅନ୍ୟ କର ଅପେକ୍ଷା ବ୍ୟକ୍ତି ସହିତ ଅଧିକ ଥିଲା । ଏହି ସମୟରେ ହସ୍ତଶିଳ୍ପ କଳା ପରିପ୍ରେକ୍ଷୀରେ ଭିଷ୍ଟିର ଅଧିକ ଉଲ୍ଲେଖ ଦେଖିବାକୁ ମିଳିଥାଏ । ହସ୍ତଶିଳ୍ପୀମାନେ ରାଜ୍ୟ ପାଇଁ କାମ କରୁଥିଲେ, ଯାହାଫଳରେ ସେମାନଙ୍କୁ ଖଜଣା ଦେବାକୁ ପଡୁ ନ ଥିଲା ।

ଯଦି ରାଜ୍ୟ ଜଳସେଚନର ବ୍ୟବସ୍ଥା କରୁଥିଲା, ତା' ପାଇଁ ନିୟମିତ ଭାବେ ଜଳ କର ଅସୁଲି ହେଉଥିଲା । ଚନ୍ଦ୍ରଗୁପ୍ତଙ୍କର ଜଣେ ରାଜ୍ୟପାଳ ପଶ୍ଚିମ ଭାରତର ଗିରନାର

ନିକଟରେ ଏକ ବନ୍ଧ ନିର୍ମାଣ କରାଇଥିଲେ । ଫଳରେ ସୁଦର୍ଶନ ହ୍ରଦର ଜଳରେ ଉକ୍ତ କ୍ଷେତ୍ରରେ ଜଳସେଚନର ବ୍ୟବସ୍ଥା ହୋଇପାରିଥିଲା । ଏହାର ନିକଟରେ ମିଳିଥିବା ଏକ ଶିଳାଲେଖର ଉଲ୍ଲେଖ ଅନୁଯାୟୀ, ଦୀର୍ଘ ୪୦୦ ବର୍ଷ ଧରି ବନ୍ଧର ନିରନ୍ତର ମରାମତି କାର୍ଯ୍ୟ କରାଯାଉଥିଲା । ସ୍ଥାନୀୟ ଅଥଚ ସରକାରୀ ପ୍ରୋତ୍ସାହନରେ ବନ୍ଧ ନିର୍ମାଣ ହୋଇଥିବା କଥା ଅଭିଲେଖରୁ ସୂଚିତ ହୁଏ । ମାତ୍ର ଯେଉଁଠି ଘରୋଇ ଉଦ୍ୟମରେ କୂଅ ଖୋଳାଯାଉଥିଲା ବା ନଦୀଜଳକୁ ଆନିକଟ ମାଧ୍ୟମରେ ନିଆଯାଉଥିଲା ବା ପୋଖରୀ ଖୋଳାଯାଉଥିଲା ସେଠାରେ ଜଳ କରରେ ରିହାତି ଦିଆଯାଉଥିଲା ବା ତାକୁ ସମ୍ପୂର୍ଣ୍ଣ ଛାଡ଼ କରାଯାଉଥିଲା । 'ଅର୍ଥଶାସ୍ତ୍ର'ରେ ଘରୋଇ ଜଳସେଚନ ବ୍ୟବସ୍ଥାକୁ ପ୍ରଶଂସା କରାଯାଇଥିଲା । ଫଳରେ ଜଳଭଣ୍ଡାର, ବନ୍ଧ ଏବଂ କେନାଲର ରକ୍ଷଣାବେକ୍ଷଣକୁ ରାଜ୍ୟର ଦାୟିତ୍ୱ ବୋଲି ମନେକରାଯାଉଥିଲା । କେତେକ ଯୁକ୍ତି ବାଢ଼ନ୍ତି, ଜଳସେଚନ ବ୍ୟବସ୍ଥା ଉପରେ ରାଜ୍ୟର ନିୟନ୍ତ୍ରଣ ରହିଥିଲା ବୋଲି ରାଜ୍ୟର ଅର୍ଥ ବ୍ୟବସ୍ଥାରେ ମଧ୍ୟ ରାଜ୍ୟର ଏକାଧିକାର ରହିଥିଲା ଏବଂ ଏହା ନିରଙ୍କୁଶତାକୁ ସ୍ଥାୟିତ୍ୱ ଦେଉଥିଲା । ମାତ୍ର ଏଭଳି ଯୁକ୍ତି ଭିତ୍ତିହୀନ ମନେହୁଏ ।

ମେଘାସ୍ଥିନିସ୍‌ଙ୍କ ଅନୁସାରେ, ଜମି ଏତେ ଅଧିକ ପରିମାଣରେ ଉର୍ବର ଥିଲା ଯେ, ବର୍ଷରେ ଦୁଇଟି ଫସଲ ହେବାରେ ଅସ୍ୱାଭାବିକତା କିଛି ନ ଥିଲା । ମାତ୍ର ଅନ୍ୟ କେତେକ ସ୍ରୋତସାମଗ୍ରୀରେ ଦୁର୍ଭିକ୍ଷର ଉଲ୍ଲେଖ ରହିଛି । ଜୈନ ରଚନା ଅନୁସାରେ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଶାସନର ଶେଷ ଆଡ଼କୁ ରାଜ୍ୟରେ ଘୋର ଦୁର୍ଭିକ୍ଷ ପଡ଼ିଥିଲା । ପୂର୍ବ ଭାରତର ମହାସ୍ଥାନରୁ ପ୍ରାପ୍ତ ଏକ ଅଭିଲେଖରେ ଦୁର୍ଭିକ୍ଷବେଳେ ପ୍ରତିକାରର ଉପାୟମାନଙ୍କର ସୂଚୀ ପ୍ରଦାନ କରାଯାଇଛି । ପ୍ରଶାସନ ଉକ୍ତ ପଦକ୍ଷେପମାନ ନେବା ଉଚିତ ବୋଲି ପରାମର୍ଶ ଦିଆଯାଇଛି । ଏହି ଅଭିଲେଖ ହୁଏତ ମୌର୍ଯ୍ୟକାଳୀନ ହୋଇଥିବ ଅଥବା ଉତ୍ତର-ମୌର୍ଯ୍ୟକାଳୀନ ହୋଇଥିବ । ବୈଦିକ ରଚନା ଓ ପୁରାଣମାନଙ୍କରେ ଦୀର୍ଘ ବାର ବର୍ଷର ଦୁର୍ଭିକ୍ଷର ଉଲ୍ଲେଖ ଦେଖିବାକୁ ମିଳେ । ମାତ୍ର ଏହି କିସମର ଉଲ୍ଲେଖକୁ କେବଳ ଦୁଷ୍କାଳର ପ୍ରତୀକ ରୂପେ ଦେଖିବାକୁ ହେବ । ଆକ୍ଷରିତ ଅର୍ଥରେ ତାକୁ ନିଆଯିବା କଥା ନୁହେଁ ।

ଯଦି କୃଷିଭିତ୍ତିକ ଅର୍ଥବ୍ୟବସ୍ଥା ସେତେବେଳେ ଏକ ସାମ୍ରାଜ୍ୟର ଗଠନରେ ସହଯୋଗ କଲା, ତେବେ ସାମ୍ରାଜ୍ୟ ମଧ୍ୟ ଆର୍ଥିକ ଗତିବିଧିର ଅଭିବୃଦ୍ଧିରେ ବେଶ୍ ସାହାଯ୍ୟ କଲା । ଉପମହାଦେଶର ରାଜନୈତିକ ଏକତ୍ରିକରଣ ପାଇଁ ଯେଉଁ ଉଦ୍ୟମ ହେଲା ତଥା ଏକ ସ୍ଥିର ଓ ସ୍ଥାୟୀ ସରକାର ଯେଉଁ ସୁରକ୍ଷା ପ୍ରଦାନ କଲା, ତାହା ବିଭିନ୍ନ ହସ୍ତଶିଳ୍ପର ସଂପ୍ରସାରଣକୁ ପ୍ରୋତ୍ସାହିତ କଲା । ଫଳତଃ, ଏହା ବାଣିଜ୍ୟର ଅଭିବୃଦ୍ଧିରେ ସହାୟକ ହେଲା । ରାଜ୍ୟ ପକ୍ଷରୁ କେତେକ ହସ୍ତଶିଳ୍ପୀଙ୍କୁ, ଯଥା- ଅସ୍ତ୍ର ନିର୍ମାଣ ପାଇଁ କମାର ଏବଂ ଜାହାଜ ନିର୍ମାଣ ପାଇଁ କାଠମିସ୍ତ୍ରୀ ନିଯୁକ୍ତ କରାଗଲା । ଏହି କାରିଗରମାନଙ୍କୁ କରମୁକ୍ତ କରାଗଲା । ଅନ୍ୟ

ଯେଉଁମାନେ ରାଜ୍ୟ ପରିଚାଳିତ କର୍ମଶାଳାରେ ଅବସ୍ଥାପିତ ଥିଲେ, ସେମାନଙ୍କୁ କର ଦେବାକୁ ପଡୁଥିଲା । ଏଭଳି କର୍ମଶାଳାର ଏକ ଉଦାହରଣ ହେଲା ବସ୍ତ୍ର ଉତ୍ପାଦନଶାଳା ଏବଂ ଖଣି ଖନନଶାଳା । ଏ ସମସ୍ତଙ୍କୁ ବାଦ୍ ଦେଲାପରେ ଯେଉଁ କର୍ମକାରବର୍ଗ ରହିଲେ, ସେମାନେ ବ୍ୟକ୍ତିଗତ ସ୍ତରରେ ଅଥବା ପ୍ରାୟ କ୍ଷେତ୍ରରେ ସଂଘବଦ୍ଧ ହୋଇ କାର୍ଯ୍ୟ କରୁଥିଲେ । ସେମାନଙ୍କର ସଂଘକୁ 'ଶ୍ରେଣୀ' ବା 'ପୂଗ' ବୋଲି କୁହାଯାଉଥିଲା । ଦିନକୁ ଦିନ ଏହାର ଆକାର ବୃଦ୍ଧି ପାଉଥିଲା ତଥା ଏଥିରେ ଜଟିଳତା ବଢୁଥିଲା । ହସ୍ତଶିଳ୍ପୀ ଓ କର୍ମକାରମାନେ ସଂଘରେ ମିଶି କାମ କରିବାକୁ ପସନ୍ଦ କରୁଥିଲେ, କାରଣ ଏକାକୀ କାମ କଲେ କର୍ମଶାଳା ଅଧିକ ଖର୍ଚ୍ଚବହୁଳ ସିଦ୍ଧ ହେଉଥିଲା । ଦ୍ୱିତୀୟତଃ, ବ୍ୟକ୍ତିଗତ ଭାବରେ କର୍ମକାରକୁ ଏକ ବିଶାଳ ସଂଘ ସହ ପ୍ରତିଯୋଗିତା ମଧ୍ୟ କରିବାକୁ ପଡୁଥିଲା । ପୁଣି ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ଦେଖିଲେ, ବଣିକ ସଂଘଠାରୁ ସାମୂହିକ ଭାବରେ କର ଅସୁଲ କରିବା ସହଜ ହେଉଥିଲା । ଅନ୍ୟ ପକ୍ଷରେ, ବୃତ୍ତିକୁ ସ୍ଥାନୀୟକରଣ କରିବା ଦ୍ୱାରା ତଥା ବଂଶାନୁଗତ ବୃତ୍ତିକୁ ପ୍ରାଥମିକତା ଦେବା ଦ୍ୱାରା ସଂଘକୁ ବଳ ମିଳୁଥିଲା । କ୍ରମଶଃ ଏହି ବଣିକ ସଂଘମାନେ ବ୍ୟବସାୟିକ ଗିଲ୍ଡ୍ (guild) ଭଳି କାମ କଲେ ।

ସିଦ୍ଧାନ୍ତତଃ ବାଣିଜ୍ୟ ସାମଗ୍ରୀ ସବୁର ବିକ୍ରି ଉପରେ ରାଜ୍ୟର କଠୋର ଦୃଷ୍ଟି ରହିଥିଲା । ବିକ୍ରି ମାଲ୍ ଉପରେ ମୋହର ଲାଗୁଥିଲା, ଯାହାଫଳରେ କି ପୁରୁଣା ଓ ନୂଆ ମାଲ୍ ମଧ୍ୟରେ ଉପଭୋକ୍ତା ପାର୍ଥକ୍ୟ ବାରି ପାରିବ । ମାଲ୍‌ର ଦର ନିର୍ଦ୍ଧାରଣ ପୂର୍ବରୁ ବାଣିଜ୍ୟ ଅଧୀକ୍ଷକ ଦ୍ୱାରା ଉକ୍ତ ବସ୍ତୁର ପ୍ରଚଳିତ ମୂଲ୍ୟ, ଯୋଗାଣ ଓ ଆବଶ୍ୟକତା ଏବଂ ଉତ୍ପାଦନ ମୂଲ୍ୟ ତନଖି କରିବାର ବ୍ୟବସ୍ଥା ରହିଥିଲା । ବସ୍ତୁର ମୂଲ୍ୟର ଏକ ପଞ୍ଚମାଂଶ ଟୋଲ୍ ଟିକସ ରୂପରେ ରାଜକୋଷକୁ ଯାଉଥିଲା । ତା' ବାହାରେ ଟୋଲ ଟିକସର ଏକପଞ୍ଚମାଂଶ ବାଣିଜ୍ୟ କର ଲାଗୁଥିଲା । କର ଫାଙ୍କୁଥିବା ଅପରାଧୀକୁ କଠୋର ଦଣ୍ଡ ମିଳୁଥିଲା ବୋଲି ମେଗାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାପଡ଼େ । ବଣିକର ଲାଭ ଯେମିତି ସୀମା ଉଲ୍ଲଘଂନ ନ କରେ, ତା' ପାଇଁ ରାଜ୍ୟ ବସ୍ତୁର ମୂଲ୍ୟ ନିୟନ୍ତ୍ରଣ କରୁଥିଲା । ମୌର୍ଯ୍ୟ ପ୍ରଶାସନ କେତେ ପରିମାଣରେ ରାଜସ୍ୱ ଆଦାୟ କରିପାରିବ, ତାହା ଗୋଟାଏ ନିର୍ଦ୍ଦିଷ୍ଟ କ୍ଷେତ୍ର କିମ୍ବା ମାର୍ଗ ଉପରେ ଥିବା ମୌର୍ଯ୍ୟ ପ୍ରଶାସନର ନିୟନ୍ତ୍ରଣ ଉପରେ ନିର୍ଭର କରୁଥିଲା । ସେତେବେଳେ ବ୍ୟାଙ୍କ ବ୍ୟବସ୍ଥା ନ ଥିଲା, ମାତ୍ର ପାରମ୍ପରିକ ଢଙ୍ଗରେ ଋଣ କାରବାର ଚାଲିଥିଲା । ଋଣ ଟଙ୍କା ଉପରେ ବର୍ଷକୁ 15 ପ୍ରତିଶତ ସୁଧ ନିଆଯାଉଥିଲା । ମାତ୍ର କମ୍ ସୁରକ୍ଷିତ ଋଣ କାରବାରରେ ୬୦ ପ୍ରତିଶତ ପର୍ଯ୍ୟନ୍ତ ସୁଧ ନିଆଯାଉଥିଲା । ଏସବୁ ହେଲା ପୋଥିଗତ ସୂଚନା; ପ୍ରକୃତରେ କ'ଣ ସତ, ତାହା ସୁସ୍ପଷ୍ଟ ନୁହେଁ ।

ସହରୀ କ୍ଷେତ୍ରଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାପଡ଼େ ଯେ, ପୂର୍ବ ତୁଳନାରେ ମୌର୍ଯ୍ୟ କାଳରେ ଜୀବନ-ସ୍ତରରେ ଉନ୍ନତି ଘଟିଥିଲା । ଘରୋଇ ଉପଯୋଗ ପାଇଁ ନିର୍ମିତ ଭବନଗୁଡ଼ିକରେ ଇଟାର ବ୍ୟବହାର ହେଉଥିଲା । ଏହାର ବିପରୀତ, ପାଟଳିପୁତ୍ରରେ ରାଜପ୍ରାସାଦ ଓ ସାଧାରଣ ଦର୍ଶନ କକ୍ଷର ନିର୍ମାଣରେ ପଥରର ବ୍ୟବହାର ହୋଇଥିଲା । ମେଘାସ୍ଥିନିସ୍‌ଙ୍କ ବିବରଣୀ ଅନୁଯାୟୀ, ପାଟଳିପୁତ୍ରର ଚାରିକଡ଼େ କାଷ୍ଠର ବାଡ଼ ପାଚେରୀ ରହିଥିଲା ଏବଂ ପାଚେରୀର ଯଥାସ୍ଥାନମାନଙ୍କରେ ଗମ୍ବୁଜ ଓ ଦ୍ୱାରମାନ ରହିଥିଲା । ଖନନରୁ ଉକ୍ତ ସୂଚନା ସତ ବୋଲି ଜଣାପଡ଼ିଲା । ନଦୀତଟର ନରମ ବାଲିଆ ମାଟିରେ କାଷ୍ଠର ପାଚେରୀ ଅଧିକ ସୁରକ୍ଷିତ ଥିଲା । ମେଘାସ୍ଥିନିସ୍ ଆହୁରି ମଧ୍ୟ ଲେଖିଛନ୍ତି ଯେ, ଅନେକ ଗୃହ ଯେହେତୁ କାଠରେ ତିଆରି, ଘରପୋଡ଼ି ଥିଲା ସେତେବେଳର ଏକ ବଡ଼ ସମସ୍ୟା । ମୌର୍ଯ୍ୟକାଳୀନ ନଗରୀଗୁଡ଼ିକ ମଧ୍ୟରେ ସମ୍ଭବତଃ ପାଟଳିପୁତ୍ର ଥିଲା ଏକମାତ୍ର ନଗରୀ, ଯାହା ବିଶାଳ ସ୍ଥାପତ୍ୟରେ ପରିପୂର୍ଣ୍ଣ ହୋଇ ରହିଥିଲା । ଏଭଳି ସ୍ଥାପତ୍ୟକୁ ସାମ୍ରାଜ୍ୟର ଶକ୍ତି ଓ ଉପସ୍ଥିତିର ପ୍ରତୀକ ମନେକରାଯାଉଥିଲା । ମୌର୍ଯ୍ୟ କାଳରେ ଏହା କେବଳ ରାଜଧାନୀ ପର୍ଯ୍ୟନ୍ତ ସୀମିତ ଥିଲା । ଅନ୍ୟ ସ୍ଥାନମାନଙ୍କରେ ସାମ୍ରାଜ୍ୟର ଉପସ୍ଥିତି ରାଜାଦେଶରେ ପ୍ରତିଭାତ ହେଉଥିଲା । ଅବସୋସର କଥା ଯେ, ପାଟଳିପୁତ୍ରର ଐତିହାସିକ ସ୍ଥଳୀ ଉପରେ ଆଧୁନିକ ପାଟନା ନଗରୀ ସ୍ଥାପିତ ହୋଇଛି, ଯାହାଫଳରେ କି ପ୍ରତ୍ନତାତ୍ତ୍ୱିକ ଖନନ ସମ୍ଭବପର ହୁଏ ନାହିଁ । ନଗରୀୟ ଚରିତ୍ରଗୁଡ଼ିକୁ ମୌର୍ଯ୍ୟ କାଳରେ ସ୍ପଷ୍ଟ ରୂପରେ ଦେଖିହୁଏ । ଉଦାହରଣ ସ୍ୱରୂପ, ଆବଶ୍ୟକ ସଂଖ୍ୟାରେ ରିଙ୍ଗ କୂଅ ଓ ସୋକେଜ ପିଟ । ଏହି ସମୟରେ ପରିମାଣାତ୍ମକ ଦୃଷ୍ଟିରୁ ଅଧିକ ଲୌହର ବ୍ୟବହାର ଦେଖିବାକୁ ମିଳିଥିଲା । ଅନେକ ପ୍ରକାରର ଲୌହ ନିର୍ମିତ ସାମଗ୍ରୀ ମଧ୍ୟ ରହିଥିଲା । ଦକ୍ଷିଣ ଭାରତରେ ମଧ୍ୟ ଉତ୍ତର କୃଷ୍ଣ ଚିକ୍କଣ ମୃଦଭାଣ୍ଡ (Northern Black Polished Ware)ର ପ୍ରାପ୍ତିରୁ ଜଣାପଡ଼େ ଯେ ବାଣିଜ୍ୟର ବେଶ୍ ଅଭିବୃଦ୍ଧି ସେତେବେଳେ ଘଟିଥିଲା ।

ବଡ଼ ବଡ଼ ସହରଗୁଡ଼ିକ ମଧ୍ୟରେ ଯଥେଷ୍ଟ ଦୂରତା ରହିଥିଲା । କେବଳ ଗଙ୍ଗା ସମତଳ ସ୍ଥିତ ସହରଗୁଡ଼ିକ ପରସ୍ପରଠାରୁ ଖୁବ୍ ଦୂରତା ରଖୁ ନ ଥିଲେ । ମହାସ୍ଥାନ (ବଙ୍ଗଳାଦେଶର ବୋଗ୍ରା ଜିଲ୍ଲାରେ ସ୍ଥିତ), ଓଡ଼ିଶାର ଶିଶୁପାଳଗଡ଼, କୃଷ୍ଣା ଅବବାହିକା ସ୍ଥିତ ଅମରାବତୀ, ବମ୍ବେ ନିକଟବର୍ତ୍ତୀ ସାପୋରା ଏବଂ ଆଫଗାନିସ୍ତାନର କାନ୍ଦାହାର ଆଦି ଥିଲେ ସେତେବେଳର କେତୋଟି ପ୍ରମୁଖ ନଗରୀ । ନଗରୀଗୁଡ଼ିକ ମଧ୍ୟରେ ଦୂରତାର ମାତ୍ରା କେତେ ଅଧିକ ଥିଲା, ତାହା ମାନଚିତ୍ରକୁ ଦେଖିଲେ ଜାଣିହୁଏ । ଏଗୁଡ଼ିକ ମଧ୍ୟରୁ କେତେକ ନଗରୀ ପୂର୍ବ ତୁଳନାରେ ଅଧିକ ବିଶାଳ ଥିଲା । ମାତ୍ର ସବୁଠାରୁ ବୃହତ୍ ଥିଲା ପାଟଳିପୁତ୍ର । କେତେକ

ଐତିହାସିକ ଶିଶୁପାଳଗଡ଼କୁ ତୋଷାଳି ବୋଲି ଚିହ୍ନିତ କରନ୍ତି । ଅଶୋକଙ୍କର ଏକ ଶିଳାଲେଖରେ ତୋଷାଳିକୁ ଏକ ପ୍ରମୁଖ ପ୍ରଶାସନିକ କେନ୍ଦ୍ର ବୋଲି କୁହାଯାଇଛି । ଧଉଳିସ୍ଥିତ ଅଶୋକଙ୍କ ଶିଳାଲେଖଠାରୁ ଏହାର ଦୂରତା ଖୁବ୍ ବେଶି ନୁହେଁ । କଳିଙ୍ଗର ବିଜୟ ଓ ଅମରାବତୀର ସ୍ଥିତି ଯୋଗୁଁ ପୂର୍ବ ଉପକୂଳରେ ମୌର୍ଯ୍ୟ ଗତିବିଧି ବୃଦ୍ଧି ପାଇଥିଲା । ଉତ୍ତର-ମୌର୍ଯ୍ୟ କାଳରେ, ଏହାଫଳରେ ଉପକୂଳରେ ଅନେକ ବୌଦ୍ଧସ୍ଥଳୀ ସ୍ଥାପିତ ହେଲା ।

ମୌର୍ଯ୍ୟକାଳ ସହିତ ଆହତ ସିକ୍କା ମୋହର ଏବଂ ଆଉ କେତେକ ତମ୍ବା ମୁଦ୍ରାକୁ ଯୋଡ଼ି ଦେଖାଯାଏ । ସବୁଠାରୁ ସହଜରେ ମିଳୁଥିବା ଆହତ ସିକ୍କା ମୋହରରେ ପରିଚିତ ଚିତ୍ରମାନ, ଯଥା- ଅର୍ଦ୍ଧଚନ୍ଦ୍ର, ପାହାଡ଼, ଧାଡ଼ି ଧାଡ଼ି ବୃକ୍ଷ, ସୂର୍ଯ୍ୟର ଚିହ୍ନ ଏବଂ ଛଅଟି ତୀର ସଦୃଶ ଚିହ୍ନ ବେଷ୍ଟିତ ବୃତ୍ତ, ରହିଥିଲା । ମୋହର ମୁଦ୍ରାଗୁଡ଼ିକର କାଳାନୁକ୍ରମ ଜାଣିବା ପାଇଁ ସେଗୁଡ଼ିକୁ ସଜାଇ ରଖାଯାଇଥିଲା ଏବଂ ତହିଁରେ ଥିବା ଚିହ୍ନର ସନ୍ଦର୍ଭରେ ତାକୁ ଦେଖାଯାଇଥିଲା । ଯୁକ୍ତି ହେଲା ଯେ, କମ୍ ଓଜନର ମୁଦ୍ରାଗୁଡ଼ିକ ଅଧିକ ପ୍ରାଚୀନ ହୋଇଥିବେ, କାରଣ ସମୟକ୍ରମେ ମୁଦ୍ରାର ଧାତୁ ଘଷିମାଜି ହୋଇ କ୍ଷୟ ହୋଇଥିବ । ମାତ୍ର ଏଥିରୁ ମଧ ସ୍ପଷ୍ଟ ପରିଣାମ କିଛି ମିଳିପାରି ନାହିଁ ।

ମନେହୁଏ, ଉଭୟ ମନୁଷ୍ୟ ଓ ଜୀବଜନ୍ତୁଙ୍କର 'ଟେରାକୋଟା' ବା ପୋଡ଼ାମାଟିର ଚିତ୍ର ସେତେବେଳେ ଖୁବ୍ ଲୋକପ୍ରିୟ ଥିଲା । ମାତ୍ର ପ୍ରସ୍ତର ସ୍ତମ୍ଭ ଉପରେ ରହିଥିବା ମାର୍ଜିତ ଚିତ୍ରକଳା ତୁଳନାରେ ତାହା କିଛି ନୁହେଁ । ସାଧାରଣ ବର୍ଗର ଲୋକେ ଟେରାକୋଟାର ବ୍ୟବହାର କରୁଥିଲେ, ହେଲେ ପ୍ରସ୍ତର ସ୍ତମ୍ଭର ଏବଂ ତା'ର ଶୀର୍ଷସ୍ଥ ଚିତ୍ରରେ ରାଜଦରବାରର କଳାତ୍ମକ ଅଭିବ୍ୟକ୍ତି ଦେଖିବାକୁ ମିଳୁଥିଲା । ଏହା ବିଶେଷ ଭାବରେ ଲୋକଙ୍କର ଦୃଷ୍ଟି ଆକର୍ଷଣ ମଧ କରୁଥିଲା । ବହୁସଂଖ୍ୟାରେ ଟେରାକୋଟାର ଛାଞ୍ଚ ମିଳିଛି; ତହିଁରେ ଉର୍ବରତାର ଉପାସନା ସହ ସଂପୃକ୍ତ ମୂର୍ତ୍ତିର ଛାଞ୍ଚ ମଧ ରହିଛି । ମନେହୁଏ, ପଥରକୁ ଖୋଦିତ କରିବା କୌଶଳରେ ଏହି ସମୟରେ ଅନେକ ଅଭିବୃଦ୍ଧି ଘଟିଥିଲା । ଏହାର ଏକ ବିଶେଷ ସୌନ୍ଦର୍ଯ୍ୟବୋଧ ରହିଥିଲା । ଏଥିରୁ ମୌର୍ଯ୍ୟ ଚିକ୍କଣ କଳାର ଜନ୍ମ ନେଲା, ଯାହା ପଥରକୁ ଏକ ସ୍ୱତନ୍ତ୍ର ଗୁଣ ପ୍ରଦାନ କଲା । ବିଶାଳ ଯକ୍ଷ ଓ ଯକ୍ଷୀ ମୂର୍ତ୍ତିର ନିର୍ମାଣ ପାଇଁ ପଥରର ବ୍ୟବହାର କରାଗଲା । ଏହାର ନମୁନା ଦିଦାରଗଞ୍ଜର ମୂର୍ତ୍ତିରେ ଦେଖିହେବ । ସମ୍ଭବତଃ ଏହି ମୂର୍ତ୍ତି ମୌର୍ଯ୍ୟକାଳୀନ ଅଟେ । ଏଥିରେ ସ୍ତମ୍ଭରେ ଓ ଶୀର୍ଷରେ ନିର୍ମିତ ମୂର୍ତ୍ତିର ନିପୁଣତା ରହିଛି । ଧଉଳିସ୍ଥିତ ପଥରରେ ଖୋଦିତ ହାତୀ ଥିଲା ଅପେକ୍ଷାକୃତ କର୍କଶ କାରିଗରୀ କାମ । ଧନାଢ଼୍ୟ ଓ ଶକ୍ତିଶାଳୀ ଲୋକ ପଥର ସ୍ଥାପତ୍ୟର ପୃଷ୍ଠପୋଷକ ଥିଲେ, ଯାହାକୁ ମାମୁଲି 'ଟେରାକୋଟା' ମୂର୍ତ୍ତି ସହିତ କଦାପି ତୁଳନା କରାଯାଇ ନ ପାରେ ।

## ଏକ ଉପମହାଦେଶୀୟ ସମାଜର ସଂଘଟନ

ମେଘାସ୍ଥିନିସ୍‌ଙ୍କ ବିବରଣୀ ଅନୁଯାୟୀ, ମୌର୍ଯ୍ୟ ସମାଜ ସାତ ଭାଗରେ ବିଭକ୍ତ ଥିଲା– ଦାର୍ଶନିକ, କୃଷକ, ସୈନିକ, ପଶୁପାଳକ, କାରିଗର, ଦଣ୍ଡାଧିକାରୀ ଏବଂ ପାରିଷଦ । ଏମାନଙ୍କୁ ମେଘାସ୍ଥିନିସ୍ ଗୋଟାଏ ଗୋଟାଏ ସ୍ୱତନ୍ତ୍ର ଜାତି ବୋଲି କହିଛନ୍ତି, କାରଣ କେହି ତା' ବୃତ୍ତି ପରିବର୍ତ୍ତନ କରିପାରୁ ନ ଥିଲା । କେବଳ ଦାର୍ଶନିକକୁ ଏହି ନିୟମର ଉର୍ଦ୍ଧ୍ୱରେ ରଖାଯାଇଥିଲା । ସାତୋଟିଯାକ ଗୋଷ୍ଠୀ ସମାନ ନିୟମ କାନୁନ୍ ପାଳନ କରୁ ନ ଥିଲେ । କୁହାଯାଏ, ମେଘାସ୍ଥିନିସ୍ ବୃତ୍ତିକୁ ଜାତି ବୋଲି ବୁଝିଥିଲେ ଏବଂ ସାତଗୋଟି ଭାଗ ମାନେ 'ବର୍ଣ୍ଣ'କୁ କହୁଥିଲେ । ମାତ୍ର 'ବର୍ଣ୍ଣ'ର ମୋଟ ସଂଖ୍ୟା ହେଲା ଚାରି । ଅବଶ୍ୟ ବିଭିନ୍ନ ପ୍ରକାର ବର୍ଗୀକରଣ ନିମନ୍ତେ ସାଧାରଣତଃ ସାତ ସଂଖ୍ୟାର ବ୍ୟବହାର କରାଯାଏ । ମନେହୁଏ, ମେଘାସ୍ଥିନିସ ଜାତିର ନିୟମକୁ ବ୍ୟାଖ୍ୟା କରିବାକୁ ଚେଷ୍ଟା କରୁଥିଲେ, କାରଣ ବ୍ୟକ୍ତିର ବିବାହ ଓ ବୃତ୍ତି ନିର୍ଦ୍ଧାରଣରେ ବର୍ଣ୍ଣ ଅପେକ୍ଷା ଜାତିର ଅଧିକ ମହତ୍ତ୍ୱ ରହିଥାଏ । ଆଶ୍ଚର୍ଯ୍ୟର କଥା ଯେ, ମେଘାସ୍ଥିନିସ୍ ସାମାଜିକ ଅଶୌଚ କିମ୍ବା ଅସ୍ପୃଶ୍ୟତାର କୌଣସି ଉଲ୍ଲେଖ କରିନାହାନ୍ତି । ଏହାର କାରଣ କ'ଣ ହୋଇପାରେ ? ସାମାଜିକ ଅଶୌଚ ଓ ଅସ୍ପୃଶ୍ୟତା ଏତେ ମାତ୍ରାରେ ଜଟିଳତାପୂର୍ଣ୍ଣ ଯେ ବହିରାଗତ ଜଣେ ପର୍ଯ୍ୟବେକ୍ଷକ ସହଜରେ ତାକୁ ବୁଝିପାରିବ ନାହିଁ ? ନା, ମୌର୍ଯ୍ୟକାଳୀନ ସମାଜରେ ଅସ୍ପୃଶ୍ୟତା ସୁସ୍ପଷ୍ଟ ନ ଥିଲା ? ଉତ୍ତର-ମୌର୍ଯ୍ୟ କାଳରେ ଏହା ବହୁଳ ମାତ୍ରାରେ ସଂକ୍ରମିତ ହେଲା କି ? ସେ ଯାହାହେଉ, ମେଘାସ୍ଥିନିସ୍‌ଙ୍କ ବିବରଣୀ ଖୁବ୍ ଆଗ୍ରହପ୍ରଦ । ଏହାର କାରଣ ନୁହେଁ ଯେ ବିବରଣୀ ସମ୍ପୂର୍ଣ୍ଣ ସତ୍ୟ ଆଧାରିତ, ବରଂ ତାହା ଜଣେ ପର୍ଯ୍ୟବେକ୍ଷକର ରିପୋର୍ଟ, ଯେଉଁଥିରେ ଶୁଣାକଥା ଏବଂ ପ୍ରଚଳିତ ଅବଧାରଣାର ନାନା ସଦ୍ୟ ପ୍ରତିଫଳନ ମାତ୍ର ରହିଛି ।

ଦାର୍ଶନିକ ବର୍ଗର ଦୁଇଟି ଉପବର୍ଗ ରହିଥିଲା 'ବ୍ରୈଚମନ' (Brachmanes) ଏବଂ 'ଶରମେନ' (Sarmanes) ବା ବ୍ରାହ୍ମଣ ଓ ଶ୍ରମଣ । ତାତ୍ପର୍ଯ୍ୟ ହେଲା ଯେ, ସେ ବୈଦିକ ବ୍ରାହ୍ମଣ ଏବଂ ଶ୍ରମଣର ଧାର୍ମିକ ପ୍ରତୀକକୁ ଦର୍ଶାଉଥିଲେ । ବ୍ରାହ୍ମଣ ଓ ଶ୍ରମଣ ହେଲା ସମୂହବାଚକ ସଂଜ୍ଞା, ଯାହାର ପରେ ମଧ୍ୟ ପ୍ରୟୋଗ ହୋଇଥିଲା । ଶ୍ରମଣ ଗୋଷ୍ଠୀରେ ଅନେକ ପ୍ରକାର ସନ୍ୟାସୀ ଓ ଭିକ୍ଷୁ ରହିଥିଲେ । ଉଦାହରଣ ସ୍ୱରୂପ, ବୌଦ୍ଧ, ଜୈନ, ଆଜୀବିକ ଏବଂ ଅନ୍ୟ ସଂପ୍ରଦାୟର ଗୃହସ୍ଥ ଅନୁଗାମୀ । ଏମାନେ ସମସ୍ତେ ଶ୍ରମଣ ଗୋଷ୍ଠୀଭୁକ୍ତ ଥିଲେ । ସେମାନଙ୍କର ମୋଟ ସଂଖ୍ୟା ଏତେ ଅଧିକ ଥିଲା ଯେ ସେମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ବର୍ଗର କଳ୍ପନା କରାଯାଉଥିଲା । ଦାର୍ଶନିକମାନେ କୌଣସି କର ଦେଉ ନ ଥିଲେ । ଏକଥା ଭାରତୀୟ ପୋଥିମାନଙ୍କରେ ମଧ୍ୟ ବ୍ରାହ୍ମଣ ଓ ଭିକ୍ଷୁମାନଙ୍କୁ ଉଲ୍ଲେଖ କଲାବେଳେ କୁହାଯାଇଥିଲା ।

କୃଷକ ବର୍ଗରେ ଜମିମାଲିକମାନଙ୍କ ବ୍ୟତୀତ ଶୁଦ୍ର ଚାଷୀ ଏବଂ କୃଷିଜୀବୀ ଶ୍ରମିକ ରହିଥିବେ ବୋଲି ମନେକରାଯାଏ । ସମାଜରେ ଚାଷୀମାନେ ଥିଲେ ବହୁସଂଖ୍ୟକ । ଏଥିରୁ କୃଷିର ପ୍ରମୁଖତା ଏବଂ ମୌର୍ଯ୍ୟକାଳୀନ ନିର୍ମାଣ ପଛରେ ରହିଥିବା ଏହାର ଆବଶ୍ୟକତା କଥା ସିଦ୍ଧ ହୁଏ । ମୌର୍ଯ୍ୟ ପ୍ରଶାସକୀୟ ନିର୍ମାଣରେ ଉଭୟ ସାମରିକ ଓ ବେସାମରିକ ନିର୍ମାଣ ସାମିଲ ଥିଲା । ଚାଷୀକୁ ସାଧାରଣତଃ ନିରସ୍ତ୍ର ରଖାଯାଉଥିଲା । ଯାହାଫଳରେ କୃଷକ ବିଦ୍ରୋହର ସମ୍ଭାବନା ହ୍ରାସ ପାଉଥିଲା । ବୌଦ୍ଧଗ୍ରନ୍ଥରେ ଯେଉଁଠି ରାଜା ଦ୍ୱାରା କୃଷକର ଉତ୍ପୀଡ଼ନ କଥା ଉଲ୍ଲେଖ ଅଛି, ସେଇଠି କାହିଁ କେଉଁଠି ରାଜା ଦ୍ୱାରା କୃଷକ ନିର୍ବାସନ ପାଇବାର ସୂଚନା ମଧ୍ୟ ରହିଛି । ଉତ୍ପୀଡ଼ିତ କୃଷକ ପ୍ରାୟତଃ ପଡ଼ୋଶୀ ରାଜ୍ୟକୁ ପଳାୟନ କରୁଥିଲେ । ପଳାୟନ ବା ଦେଶାନ୍ତରଣ ଥିଲା ବିଦ୍ରୋହ ତୁଳନାରେ ନିଶ୍ଚିତ ରୂପେ ସହଜ ପନ୍ଥା । ଏହି କାରଣରୁ ପରବର୍ତ୍ତୀ ସମୟରେ ଯେଉଁଠି କୃଷକ ବିଦ୍ରୋହ ସଂଘଟିତ ବି ହୋଇଛି, ତା'ର ମୋଟ ସଂଖ୍ୟା ବେଶି ନୁହେଁ ।

ସାତଗୋଟି ସାମାଜିକ ବିଭାଗ ମଧ୍ୟରେ ମେଘାସ୍ଥିନିସ୍ ସୈନିକମାନଙ୍କୁ ଗୋଟାଏ ବର୍ଗରେ ରଖିଛନ୍ତି, ଯାହା ସେନାର ମହତ୍ତ୍ୱକୁ ଦର୍ଶାଏ । ମୌର୍ଯ୍ୟ ସାମ୍ରାଜ୍ୟର ସ୍ଥାୟୀ ସେନା ନିଶ୍ଚିତ ରୂପେ ନନ୍ଦ ସେନା ଅପେକ୍ଷା ସଂଖ୍ୟାରେ ବିଶାଳ ଥିଲା । ରୋମ୍‌ର ସୂତ୍ରସାମଗ୍ରୀରୁ ଏହାର ସୂଚନା ମିଳେ । ଉତ୍ତର-ମୌର୍ଯ୍ୟ କାଳରେ ଭାରତ ଭ୍ରମଣ କରିଥିବା ପ୍ଲିନୀଙ୍କର ଉଲ୍ଲେଖ ଅନୁଯାୟୀ, ମୌର୍ଯ୍ୟ ସେନାର 700 ହାତୀ, 1,000 ଘୋଡ଼ା ଏବଂ ୫0,000 ପଦାତିକ ସୈନ୍ୟ ରହିଥିଲେ । ପ୍ଲୁଟାର୍କ ନାମକ ଜଣେ ପରିବ୍ରାଜକ ପଦାତିକ ସୈନ୍ୟର ସଂଖ୍ୟାକୁ ଅତିରଞ୍ଜନ କରି ଛଅଲକ୍ଷ ବୋଲି କହିଛନ୍ତି । ଯେମିତି ଆଲେକ୍‌ଜାଣ୍ଡାରଙ୍କ ଆକ୍ରମଣ ବେଳେ ଭାରତୀୟ ସେନାକୁ ଅତିରଞ୍ଜନ କରି ଦର୍ଶାଯାଇଥିଲା, ଠିକ୍ ସେହିଭଳି ପ୍ଲୁଟାର୍କଙ୍କ ବିବରଣୀରେ ଅତିରଞ୍ଜନ ରହିଛି । ଶାନ୍ତି ସମୟରେ ଏକ ବିଶାଳ ସେନାର ପରିପାଳନ ରାଜ୍ୟ ପାଇଁ ନିଶ୍ଚିତ ରୂପେ ଆର୍ଥିକ ବୋଝ ହେଉଥିବ । ମେଘାସ୍ଥିନିସ୍ କହନ୍ତି, ''ଯେତେବେଳେ କାର୍ଯ୍ୟ ନ ଥାଏ, ସୈନିକମାନେ ଅଳସୁଆମୀରେ ମଦିରା ପାନ କରି ସମୟ କାଟନ୍ତି, କାରଣ ରାଜକୋଷ ସେମାନଙ୍କ ଖର୍ଚ୍ଚ ଭରଣା କରେ ।'' ଏହି ପରିସ୍ଥିତିରେ ସ୍ୱଭାବତଃ ରାଜକୋଷକୁ ପୂର୍ଣ୍ଣ ରଖିବା ରାଜ୍ୟ ପାଇଁ ଏକ ଆବଶ୍ୟକତା ଥିଲା । ଏଥିପାଇଁ କର ଯୋଗ୍ୟ ପ୍ରତ୍ୟେକ ବସ୍ତୁ ଉପରେ କର ବସୁଥିଲା ଏବଂ ନୂଆ ବସତି ସ୍ଥାପନ କରିବା ସକାଶେ ଲୋକଙ୍କୁ ସାମୂହିକ ଭାବରେ ଅନ୍ତରଣ (deportation) କରାଯାଉଥିଲା । ଆର୍ଥିକ କାରଣରୁ ସେନା ଅଭିଯାନକୁ ହୁଏତ ବହୁତ ପ୍ରୋତ୍ସାହିତ କରାଯାଉ ନ ଥିଲା । ସେନାର ପଦାତିକ ବାହିନୀରେ କ୍ଷତ୍ରିୟମାନଙ୍କ ବ୍ୟତୀତ ଅନ୍ୟମାନେ ମଧ୍ୟ ଭର୍ତ୍ତି ହେଉଥିଲେ । ରଥାରୋହୀ ଏବଂ ସହାୟକ

ଭାବରେ ସାଧାରଣତଃ 'ତଳ' ଜାତିର ଲୋକଙ୍କୁ ନିଯୁକ୍ତ କରାଯାଉଥିଲା । କୌଟିଲ୍ୟ ସୈନିକମାନଙ୍କୁ ଅସ୍ତ୍ରାଗାରରେ ଅସ୍ତ୍ରକୁ ଜମା ଦେବାକୁ ନିର୍ଦ୍ଦେଶ ଦେଇଥିଲେ ।

ଅନ୍ୟ ବର୍ଗ ମଧ୍ୟରେ ପଶୁପାଳନ ପାଇଁ ଏକ ଭିନ୍ନ ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ପଶୁପାଳକମାନେ ଥିଲେ ଆଦିବାସୀ ସଂପ୍ରଦାୟର । ସେମାନେ ସେପର୍ଯ୍ୟନ୍ତ ନିଜର କୁଳ ପରିଚୟକୁ ବଜାୟ ରଖିଥିଲେ । ପଶୁପାଳକମାନଙ୍କର ଯାହା ସଂଖ୍ୟା ଥିଲା, ତାକୁ ଦେଖି ସେମାନଙ୍କୁ ଏକ ସ୍ୱତନ୍ତ୍ର ସାମାଜିକ ବର୍ଗରେ ନିଆଯିବା କିଛି ବିଚିତ୍ର ନ ଥିଲା । ଏହି ବର୍ଗରେ କେତେକ ଶିକାରୀ-ସଂଗ୍ରାହକ ଏବଂ ପୋଡୁଚାଷୀଙ୍କୁ ମଧ୍ୟ ସାମିଲ କରାଯାଇଥିବ । ଏଥିରେ ପୁଣି ଉଦ୍ୟାନ-କୃଷି କରୁଥିବା ଲୋକ ବି ରହିଥିବେ । ଏ ସମସ୍ତଙ୍କୁ ଭାରତୀୟ ପୋଥି ପାଠରେ ଆଟବିକ ବୋଲି ଉଲ୍ଲେଖ କରାଯାଇଛି । ପଶୁପାଳକମାନେ ଅଧିକାଂଶ ସମୟରେ ଜଙ୍ଗଲରେ ପଶୁଚାରଣ କରୁଥିଲେ ଏବଂ ସେହି ପ୍ରକ୍ରିୟାରେ ବନବାସୀଙ୍କ ସହିତ ଭଲଭାବେ ପରିଚିତ ଥିଲେ ।

କାରିଗରର ସାମାଜିକ ମର୍ଯ୍ୟାଦା ତା କାରିଗରୀ ଉପରେ ନିର୍ଭର କରୁଥିଲା । ଉଦାହରଣ ସ୍ୱରୂପ, ଅସ୍ତ୍ର ଓ ଅନ୍ୟାନ୍ୟ ମୂଲ୍ୟବାନ ବସ୍ତୁ ନିର୍ମାଣ କରୁଥିବା କାରିଗରଙ୍କୁ ତନ୍ତୀ ଓ କୁମ୍ଭାର ତୁଳନାରେ ଅଧିକ ମର୍ଯ୍ୟାଦା ପ୍ରାପ୍ତ ହେଉଥିଲା । ଅତ୍ୟାବଶ୍ୟକ ଗୃହୋପକରଣ ନିର୍ମାଣ କରୁଥିବା କମାରକୁ ସମାଜରେ ତଳ ପାହ୍ୟା ଦିଆଯାଇଥିଲା । ବୌଦ୍ଧଗ୍ରନ୍ଥରେ ଧନାଢ଼୍ୟ କାରିଗରଙ୍କୁ 'ଗହପତି' (ଗୃହପତି)ର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା । କମ୍ ଆୟ ସମ୍ପନ୍ନ କାରିଗରଙ୍କୁ ଶୂଦ୍ର ଶ୍ରେଣୀରେ ରଖାଯାଇଥିଲା । ଆଶ୍ଚର୍ଯ୍ୟର କଥା ଯେ, ବଣିକର କୌଣସି ଉଲ୍ଲେଖ ମିଳେ ନାହିଁ । କେବଳ ଗୋଟାଏ ଗ୍ରୀକ୍ ଶବ୍ଦର ଉଲ୍ଲେଖରୁ ଜଣାପଡ଼େ ଯେ ନଗରବାସିନ୍ଦାମାନେ ପାଇକାରୀ ବ୍ୟବସାୟୀ ହୋଇଥିବେ । ଦଣ୍ଡାଧିକାରୀ ଏବଂ ପାରିଷଦମାନେ ଥିଲେ ପ୍ରଶାସନିକ ବ୍ୟବସ୍ଥାର ଅଙ୍ଗ । ସେମାନେ ପ୍ରମୁଖତଃ ବ୍ରାହ୍ମଣ ଓ କ୍ଷତ୍ରିୟ ଜାତିର ଲୋକ । ମାତ୍ର ଅନ୍ୟ ଜାତିର ଲୋକ ମଧ୍ୟ ପ୍ରଶାସନିକ ପଦବୀରେ ନିଯୁକ୍ତ ରହିଥିବାର ଉଲ୍ଲେଖ ଅଛି ।

ମେଘାସ୍ଥିନିସ୍ ଭାରତୀୟ ସମାଜର ଯେଉଁ ରୂପରେଖ ପ୍ରସ୍ତୁତ କରିଛନ୍ତି, ତହିଁରୁ ଜଣାପଡ଼େ ଯେ, ତତ୍‌କାଳୀନ ସମାଜ ଆଧୁନିକ ବିଦ୍ୱାନ୍‌ମାନେ କଳ୍ପନା କରୁଥିବା ସମାଜ ତୁଳନାରେ ଅଧିକ ନମନୀୟ ଥିଲା । ଉଭୟ ଆର୍ଥିକ ଓ ସାମାଜିକ ମର୍ଯ୍ୟାଦାକୁ ଆଧାର କରି ସାମାଜିକ ପୃଥକୀକରଣ ହେଉଥିଲା । ମେଘାସ୍ଥିନିସ୍‌ଙ୍କ ବ୍ୟାଖ୍ୟାର ଏକ ଉପଯୋଗୀ ଉପାଦାନ ହେଲା ଯେ, ଯେଉଁ ସମାଜକୁ ମୌର୍ଯ୍ୟ ବ୍ୟବସ୍ଥା ସମନ୍ୱିତ କରିବାକୁ ପ୍ରୟାସ କରୁଥିଲା, ତା'ର ଏଥିରେ ବିଶଦ ବିବରଣ ରହିଥିଲା । ଯେଉଁ ଅଞ୍ଚଳରେ ସରଳ ଓ ସ୍ଥାନୀୟ

କୃଷି ଓ ବାଣିଜ୍ୟ ଅର୍ଥବ୍ୟବସ୍ଥାରେ ପ୍ରଭୁତ୍ୱ ପାଇଲା, ସେଠାରେ ସାମାଜିକ ବୈଶିଷ୍ଟ୍ୟରେ ଦ୍ରୁତ ପରିବର୍ତ୍ତନ ଅନୁଭୂତ ହେଲା ।

ବ୍ରାହ୍ମଣ ତତ୍ତ୍ୱବିଦ୍‌ମାନେ ଚାହୁଁଥିବା ଯୋଜନା ଅନୁଯାୟୀ ସେତେବେଳେ ଜାତି ବ୍ୟବସ୍ଥା କାମ କରୁଥିବ ବୋଲି କିଛି ମାନେ ନାହିଁ । ବ୍ରାହ୍ମଣମାନଙ୍କ ଯୋଜନାରେ ସାମାଜିକ ଅସମାନତାକୁ ସ୍ୱୀକୃତି ମିଳିଥିଲା । ପ୍ରଥମ ତିନୋଟି ବର୍ଣ୍ଣ ଥିଲେ ଦ୍ୱିଜ; ସେମାନେ ଶୂଦ୍ର ଏବଂ ଜାତି ବହିର୍ଭୂତ ଗୋଷ୍ଠୀ ଅପେକ୍ଷା ଅଧିକ ଅଧିକାର ଭୋଗ କରୁଥିଲେ । ମାତ୍ର ଉଚ୍ଚବର୍ଣ୍ଣ ମଧ୍ୟରେ ବୈଶ୍ୟ ପ୍ରାୟତଃ ଅନ୍ୟ ଦୁଇ ଉଚ୍ଚବର୍ଣ୍ଣ, ବ୍ରାହ୍ମଣ ଓ କ୍ଷତ୍ରିୟ, ତୁଳନାରେ ବିଶେଷାଧିକାରରେ ଯଥେଷ୍ଟ ଲାଭ ନେଇପାରିଲେ ନାହିଁ । ଏହା ପଛରେ କାରଣ ହେଲା ଯେ, ବୈଶ୍ୟମାନଙ୍କର ସମ୍ବନ୍ଧ ଅନ୍ୟ ଦୁଇ ଉଚ୍ଚ ବର୍ଣ୍ଣ ସହିତ ସୁସ୍ପଷ୍ଟ ନ ଥିଲା । ତା' ସତ୍ତ୍ୱେ ବଣିକ ଓ ବ୍ୟବସାୟୀମାନେ ଏତେବେଳକୁ ବାଣିଜ୍ୟର ସମ୍ଭାବନା ବୃଦ୍ଧି ପାଇବାରୁ ଆର୍ଥିକ ଦୃଷ୍ଟିରୁ କ୍ଷମତାଶାଳୀ ହେଲେ । ସମାଜର ଅନ୍ୟ ଶ୍ରେଷ୍ଠତର ଗୋଷ୍ଠୀମାନଙ୍କ ସହିତ ସେମାନଙ୍କର ନିଶ୍ଚିତ ରୂପେ ବିବାଦ ବୃଦ୍ଧି ପାଇଥିବ । ନଗର କେନ୍ଦ୍ରଗୁଡ଼ିକରେ 'ଗିଲ୍‌ଡ' ମୁଖ୍ୟମାନଙ୍କର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ତା' ସତ୍ତ୍ୱେ, ସାମାଜିକ ରୀତିସଂହିତା ଯୋଗୁଁ ସେମାନଙ୍କୁ ସମ୍ମାନିତ ପଦମର୍ଯ୍ୟାଦା ମିଳୁ ନ ଥିଲା । ସେ ଯାହାହେଉ, ବୌଦ୍ଧ ଗ୍ରନ୍ଥଗୁଡ଼ିକରେ ନଗରୀୟ ଜୀବନ ସମ୍ବନ୍ଧିତ ଯେଉଁ ବର୍ଣ୍ଣନା ରହିଛି, ତହିଁରୁ ଲାଗେ, ବ୍ରାହ୍ମଣ୍ୟ ରୀତିନୀତି ତା' ପାଇଁ ବିଶେଷ ବାଧକ ନ ଥିଲା । ଯଦି ଶବ୍ଦର ଅର୍ଥ ଦୃଷ୍ଟିରୁ ଦେଖାଯାଏ, ଧର୍ମସୂତ୍ରର ନୀତିନିୟମକୁ ବିଶେଷାଧିକାର ରହିତ ଗୋଷ୍ଠୀ ତୀବ୍ର ବିରୋଧ କରୁଥିଲେ । ସେମାନଙ୍କ କ୍ଷୋଭର ଅଭିବ୍ୟକ୍ତିକୁ ଆଂଶିକ ଭାବରେ ଅସନାତନୀ ଗୋଷ୍ଠୀ ପ୍ରତି ସମର୍ଥନ ରୂପରେ ଦେଖିହେବ । ସମର୍ଥନ ପାଉଥିବା ଅସନାତନୀ ଗୋଷ୍ଠୀ ମଧ୍ୟରେ ମୁଖ୍ୟ ଥିଲା ବୌଦ୍ଧ ସଂପ୍ରଦାୟ । ବ୍ରାହ୍ମଣ୍ୟ ପୋଥିପାଠର ବିପରୀତ, ବୌଦ୍ଧ ଗ୍ରନ୍ଥମାନଙ୍କରେ ବଣିକ ଓ ଋଣଦାତା ଶେଠିମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ରହିଥିଲା । ଅସଲରେ ଶେଠିମାନେ ଥିଲେ ବୌଦ୍ଧଧର୍ମ ଏବଂ ଅନ୍ୟାନ୍ୟ ଅସନାତନୀ ସଂପ୍ରଦାୟର ପ୍ରମୁଖ ପୃଷ୍ଠପୋଷକ । ଏହା ସମ୍ଭବତଃ ବ୍ରାହ୍ମଣ ଓ ଅନ୍ୟ ସଂପ୍ରଦାୟଗୁଡ଼ିକ ମଧ୍ୟରେ (ଅସନାତନୀ) କଳହ ସୃଷ୍ଟି କରିଥିବ । ଅଶୋକ ତାଙ୍କ ଅନୁଶାସନମାନଙ୍କରେ ସାମାଜିକ ସଂହିତାକୁ ଯେଉଁ ମହତ୍ତ୍ୱ ଦେଇଛନ୍ତି ଏବଂ ଉଭୟ ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ସମାନ ରୂପରେ ସମ୍ମାନ ଜଣାଇବାକୁ ବାରମ୍ବାର ଆହ୍ୱାନ ଜଣାଇଛନ୍ତି, ତହିଁରୁ ମନେହୁଏ, ନିଶ୍ଚୟ ସେତେବେଳେ ସାମାଜିକ ଅଶାନ୍ତି ରହିଥିବ ।

ମହିଳାମାନଙ୍କ ନାନାବିଧ ଗତିବିଧି ରହିଥିଲା । ରାଜାଙ୍କର ଅଙ୍ଗରକ୍ଷୀମାନେ ମହିଳା ଧନୁର୍ଦ୍ଧାରୀ ଥିଲେ ଏବଂ ମୃଗୟା ସମୟରେ ମଧ୍ୟ ସେମାନେ ରାଜାଙ୍କ ସାଙ୍ଗରେ ଯାଉଥିଲେ

ବୋଲି ଏକ କୌତୂହଳପ୍ରଦ ଉଲ୍ଲେଖ ଦେଖିବାକୁ ମିଳେ । ଅନ୍ୟ କେତେକ ସମାଜରେ ମଧ୍ୟ ଏଭଳି ମହିଳା ଅଙ୍ଗରକ୍ଷୀ ରହିଥିବାର ଉଲ୍ଲେଖ ମିଳିଛି । ତେଣୁ ଏହାର ସତ୍ୟତାକୁ ସନ୍ଦେହ କରାଯାଇ ନ ପାରେ । ଏହାଛଡ଼ା, ମହିଳାମାନଙ୍କୁ ଗୁପ୍ତଚର ଓ ନୃତ୍ୟାଙ୍ଗନା-ଗାୟିକା ରୂପରେ ମଧ୍ୟ ନିଯୁକ୍ତ କରାଯିବାର ବ୍ୟବସ୍ଥା ରହିଥିଲା । ଉଚ୍ଚ ଜାତିର ମହିଳାମାନେ ନିର୍ଦ୍ଧନ ହେଲେ କିମ୍ୱା ବିଧବା ହେଲେ ବା ପରିତ୍ୟକ୍ତା ହେଲେ ବା ଗଣିକାମାନେ ବୟସ୍କା ହେଲେ ରାଜ୍ୟ ପକ୍ଷରୁ ସେମାନଙ୍କୁ କାମ୍ ଦିଆଯାଉଥିଲା । କାମ ମଧ୍ୟରେ ଅନ୍ୟତମ ଥିଲା ସୂତା କାଟିବା କାମ । ମାତ୍ର ସେ କ୍ଷେତ୍ରରେ ସେମାନଙ୍କ ଗତିବିଧି ଉପରେ ରାଜ୍ୟର ତୀକ୍ଷ୍ଣ ଦୃଷ୍ଟି ରହୁଥିଲା । ଯଦି ଜଣେ ଋଣଗ୍ରସ୍ତ କୃଷକର ମୃତ୍ୟୁ ହେଲା, ତା'ର ପତ୍ନୀ ଜମି ଚାଷକରି ଋଣ ପରିଶୋଧ କରିବାର ରୀତି ଥିଲା । ଏହି ରୀତି ଉଚ୍ଚ ବର୍ଗର ନାରୀମାନଙ୍କ କ୍ଷେତ୍ରରେ ଲାଗୁ ହେଉ ନ ଥିଲା । ଯଦି ଜଣେ ଦାସୀକନ୍ୟା ତା'ର ମାଲିକର ସନ୍ତାନକୁ ଜନ୍ମଦିଏ, ତେବେ ଉଭୟ ମା' ଓ ଶିଶୁ ଦାସତ୍ୱରୁ ଛାଡ଼ ପାଉଥିଲେ । ମହିଳା ସନ୍ୟାସୀ ମଧ୍ୟ ସେତେବେଳେ ଥିଲେ, ମାତ୍ର ସେମାନଙ୍କର ସଂଖ୍ୟା ବିଶେଷ ନ ଥିଲା । ସେମାନଙ୍କ ସମ୍ବନ୍ଧରେ ଅଧିକ ବର୍ଣ୍ଣନା ସାହିତ୍ୟିକ କୃତିଗୁଡ଼ିକରେ ଦେଖିବାକୁ ମିଳିଥାଏ । ଉକ୍ତ ବର୍ଣ୍ଣନାରେ ସନ୍ୟାସିନୀମାନେ ଦରବାରରେ ବୁଲୁଥିବାର ଦେଖାଯାଏ । ବେଶ୍ୟମାନେ ମଧ୍ୟ ନିଜ ଉପାର୍ଜନ ଉପରେ ଟିକସ ଦେବା କଥା ବୋଲି କୌଟିଲ୍ୟ କହିଛନ୍ତି । ଏହାର ଅର୍ଥ ହେଲା ଯେ ସେତେବେଳେ ବେଶ୍ୟମାନଙ୍କର ସଂଖ୍ୟା ଊଣା ନ ଥିଲା ଏବଂ ସେମାନଙ୍କ ପାଖରୁ ମିଳିବାର ସମ୍ଭାବନା ଥିବା ରାଜସ୍ୱର ପରିମାଣ କମ୍ ନ ଥିଲା । ବେଶ୍ୟାମାନଙ୍କର କ୍ଷତି କରୁଥିବା ଲୋକକୁ ପ୍ରଶାସନ ପକ୍ଷରୁ ଦଣ୍ଡବିଧାନ କରାଯିବା କଥା ଉଲ୍ଲେଖ ଅଛି । ଏଥିରୁ ଲାଗେ ଯେ, ରାଜ୍ୟ ସେମାନଙ୍କର ସମସ୍ୟାକୁ ଅଣଦେଖା କରୁ ନ ଥିଲା । ସମ୍ଭବତଃ ବେଶ୍ୟାବୃତ୍ତି କରୁଥିବା ମହିଳାମାନଙ୍କ ମଧ୍ୟରୁ କେତେକଙ୍କୁ ରାଜାଙ୍କ ସହଚରୀ କାମରେ ନିଯୁକ୍ତ କରାଯାଉଥିଲା । ନାରୀମାନଙ୍କୁ ନେଇ ଯାହାସବୁ ଉଲ୍ଲେଖ ରହିଛି, ତାକୁ ଅନୁଶୀଳନ କଲେ ଜଣାପଡ଼େ ଯେ, ଏହି କେତେକ ମହିଳାଙ୍କୁ ବାଦ୍‌ଦେଲେ, ଅଧିକାଂଶ ମହିଳା ପରିବାରରେ ପୁରୁଷମାନଙ୍କ ଇଚ୍ଛାନୁସାରେ ପରିଚାଳିତ ହେଉଥିଲେ ।

ଆଶ୍ଚର୍ଯ୍ୟର କଥା ଯେ, ଅଶୋକଙ୍କ ଦ୍ୱାରା ପ୍ରଦତ୍ତ ରାଜାଦେଶରେ ନା ବର୍ଣ୍ଣ କଥା ରହିଛି, ନା ଜାତି କଥା ରହିଛି । ଏଥିରୁ ଜଣାପଡ଼େ ଯେ, ସାମାଜିକ ବର୍ଗ ରୂପେ ଜାତି ଓ ବର୍ଣ୍ଣ ସେତେବେଳ ପର୍ଯ୍ୟନ୍ତ ପ୍ରାଧାନ୍ୟ ପାଇ ନ ଥିଲା । ମାତ୍ର ସାମାଜିକ ଭେଦ ଖୁବ୍ ସୁସ୍ପଷ୍ଟ ଥିଲା । ଏହାର ସୂଚନା ମୂର୍ତ୍ତିକଳାର ଅଭିବ୍ୟକ୍ତିରେ ପରିଦୃଷ୍ଟ ହୁଏ । ଯେଉଁ ସବୁ ପ୍ରସ୍ତର ସ୍ତମ୍ଭରେ ଅଶୋକଙ୍କ ଆଦେଶ ଲିପିବଦ୍ଧ ହୋଇଥିଲା, ତହିଁରେ ପଶୁ ମୂର୍ତ୍ତି ରହିଥିଲା । ମାତ୍ର ବଡ଼ କଥା ହେଲା ଯେ, ଏଥିରେ ଉଭୟ ବୌଦ୍ଧ ଦର୍ଶନ ଓ ସାମ୍ରାଜ୍ୟର ସିଦ୍ଧାନ୍ତର ଅଭିବ୍ୟକ୍ତି

ପରିଦୃଷ୍ଟ ହୋଇଥାଏ । ଏହାର ବିପରୀତ ଟେରାକୋଟା ବା ମୃଣ୍ମୟ ମୂର୍ତ୍ତିରେ ନାନା କିସମର ଜୀବଜନ୍ତୁ ଓ ମଣିଷର ଆକୃତି ଦେଖିବାକୁ ମିଳିଥାଏ, ଯାହା ଲୋକପ୍ରିୟ କଳାର ଦ୍ୟୋତକ ଥିଲା । ଧାର୍ମିକ ବିଚାର ଏବଂ ସାଜସଜ୍ଜା ପାଇଁ ଏସବୁ ମୂର୍ତ୍ତିର ପରିକଳ୍ପନା କରାଯାଉଥିଲା ।

## ପ୍ରଶାସନ ଓ ସାମ୍ରାଜ୍ୟ

ସେତେବେଳର ଆର୍ଥିକ ଅବସ୍ଥା ଏବଂ ଆବଶ୍ୟକତା ଯୋଗୁଁ ମୌର୍ଯ୍ୟ କାଳରେ ଏକ କେନ୍ଦ୍ରୀକୃତ ଅମଲାତାନ୍ତ୍ରିକ ପ୍ରଶାସନ ଗଢ଼ିଉଠିଲା । ଏଭଳି ଏକ ପ୍ରଶାସନିକ ସ୍ୱରୂପ କଥା 'ଅର୍ଥଶାସ୍ତ୍ର'ରେ ସଂରଚିତ ହୋଇଥିଲା । ଯଦି 'ଅର୍ଥଶାସ୍ତ୍ର'ର ଆଖ୍ୟାନ ତତ୍‌କାଳୀନ ପରିବର୍ତ୍ତନକୁ ପ୍ରତିଫଳିତ କରୁଥିଲା ବୋଲି ଧରିନିଆଯାଏ, ତେବେ କେନ୍ଦ୍ରୀକୃତ ପ୍ରଶାସନିକ ସମ୍ଭାବନାକୁ ପୁସ୍ତକରେ ଦର୍ଶାଯାଇଛି ବୋଲି ଯୁକ୍ତି କରିହେବ । ହେଲେ କେତେ ମାତ୍ରାରେ ସେହିସବୁ ଆଖ୍ୟାନ କାର୍ଯ୍ୟକାରୀ ହେଉଥିଲା ଏବଂ କେତେ ପରିମାଣରେ ପ୍ରଶାସନକୁ କାର୍ଯ୍ୟାନ୍ୱିତ କରାଯାଉଥିଲା, ତାକୁ ଅନୁଶୀଳନ କରିବା ସକାଶେ ଅନ୍ୟସବୁ ସୂତ୍ର-ସାମଗ୍ରୀକୁ ବି ନିରୀକ୍ଷଣ କରିବାକୁ ହେବ । ଆଗରୁ ଯେଉଁ ଏକରୂପତାପୂର୍ଣ୍ଣ ଏବଂ କେନ୍ଦ୍ରୀକୃତ ପ୍ରଶାସନର ଧାରଣା ରହିଥିଲା, ତହିଁରେ ପରିବର୍ତ୍ତନର ଆବଶ୍ୟକତା ଅଛି । ସେ ଯାହାହେଉ, ଅନ୍ୟ ସୂତ୍ରସାମଗ୍ରୀଗୁଡ଼ିକରେ ମଧ୍ୟ କିଛି ପରିମାଣରେ କେନ୍ଦ୍ରୀକରଣର ଆଭାସ ମିଳିଥାଏ । ସମ୍ଭବତଃ ଅର୍ଥଶାସ୍ତ୍ରରେ ଯେଉଁ ପ୍ରଣାଳୀର ସଂରଚନା କରାଯାଇଛି, ତା'ର ସୂତ୍ର ଏଥିରୁ ପ୍ରାପ୍ତ ହୋଇଛି । ସେଥିପାଇଁ ବ୍ୟବସ୍ଥାରେ ପରିଦୃଷ୍ଟ ହେଉଥିବା ବିବିଧତାକୁ ଧ୍ୟାନ ଦେବା ଅଧିକ ଉପଯୋଗୀ ହେବ ।

ମୌର୍ଯ୍ୟ ଶାସନ ପ୍ରଣାଳୀର ନାଭିକେନ୍ଦ୍ର ଥିଲେ ରାଜା । ତାଙ୍କର କ୍ଷମତା ଏତେବେଳକୁ ଖୁବ୍ ବୃଦ୍ଧି ପାଇଥିଲା । ଅଶୋକ ଏହାକୁ ପିତୃବତ୍ ରାଜତ୍ୱ (Paternal Kingship) ନାମରେ ପରିଭାଷିତ କରିଥିଲେ । ତାଙ୍କର ଉକ୍ତି, 'ସମସ୍ତ ମନୁଷ୍ୟ ମୋର ସନ୍ତାନ' – ସମସ୍ତଙ୍କୁ ନିଜ ଛତ୍ରଛାୟା ତଳେ ଆଣିବା ଲାଗି ଉଦ୍ଦିଷ୍ଟ ଥିଲା । ସେ ପ୍ରଜାଙ୍କ ସହ ସମ୍ପର୍କ ପ୍ରତିଷ୍ଠା କରିବାକୁ ନିଜ ସାମ୍ରାଜ୍ୟରେ ବ୍ୟାପକ ଭାବରେ ଗସ୍ତ କରୁଥିଲେ । ସମାଜରେ ପ୍ରଚଳିତ ରୀତିନୀତିକୁ ଅଭିପୁଷ୍ଟ କରି ରାଜା ନିୟମ ପ୍ରଣୟନ କରୁଥିଲେ । ଏଥିପାଇଁ ତାଙ୍କର ଅଖଣ୍ଡ କ୍ଷମତା ରହିଥିଲା, ମାତ୍ର ମନ୍ତ୍ରୀମାନଙ୍କଠାରୁ ପରାମର୍ଶ ନେବାର ବି ବିଧି ରହିଥିଲା । ମନ୍ତ୍ରୀ ପରିଷଦର ରାଜନୈତିକ ମର୍ଯ୍ୟାଦା ସୁପରିଭାଷିତ ନ ଥିଲା । ପରିଷଦର କ୍ଷମତା ବିଶେଷ ଭାବରେ ରାଜାଙ୍କର ବ୍ୟକ୍ତିତ୍ୱ ଉପରେ ନିର୍ଭର କରୁଥିଲା । ରାଜା ବାରମ୍ବାର ମନ୍ତ୍ରୀ ପରିଷଦର ପରାମର୍ଶ ନେଉଥିବା କଥା ଅଶୋକଙ୍କ ରାଜାଦେଶରେ ଉଲ୍ଲେଖ ଅଛି । ରାଜା

ଯେଉଁ ନିୟମ କାନୁନ୍ ତିଆରି କରୁଥିଲେ, ତା' ପାଇଁ ମନ୍ତ୍ରୀ ପରିଷଦ ନିଜର ପରାମର୍ଶ ଦେଉଥିଲେ । ମାତ୍ର ନିଷ୍ପତ୍ତି ନେବାର କ୍ଷମତା ରହିଥିଲା ସମ୍ରାଟଙ୍କ ହାତରେ ।

ମୌର୍ଯ୍ୟମାନେ ଯେଉଁପ୍ରକାର ପ୍ରଶାସନ ବ୍ୟବସ୍ଥା ଲାଗୁ କରିଥିଲେ, ତା'ର ମାର୍ଗଦର୍ଶକ ରୂପରେ ଯଦି 'ଅର୍ଥଶାସ୍ତ୍ର'କୁ ନିଆଯାଏ, ତେବେ ଜଣାଯିବ ଯେ କେନ୍ଦ୍ରୀୟ ପ୍ରଶାସନରେ ଦୁଇଟି ମୁଖ୍ୟ ପଦବୀ ରହିଥିଲା । ଗୋଟାଏ ହେଲା କୋଷାଧ୍ୟକ୍ଷ ଓ ଅନ୍ୟଟି ମୁଖ୍ୟ ସମାହର୍ତ୍ତା ବା ରାଜସ୍ୱ ସଂଗ୍ରାହକ । କୋଷାଧ୍ୟକ୍ଷର ଦାୟିତ୍ୱ ଥିଲା ରାଜସ୍ୱରେ ପ୍ରାପ୍ତ ମୁଦ୍ରାର ହିସାବ ରଖିବା ଏବଂ ବସ୍ତୁ ରୂପରେ ଗଚ୍ଛିତ ଆୟକୁ ଭଣ୍ଡାରରେ ରଖିବା । ସମାହର୍ତ୍ତାଙ୍କୁ କାମରେ ସାହାଯ୍ୟ କରିବାପାଇଁ ଅନେକ କିରାଣୀ ରହିଥିଲେ । ସାମ୍ରାଜ୍ୟର ବିଭିନ୍ନ କ୍ଷେତ୍ରରୁ ସଂଗ୍ରହ ହେଉଥିବା କରର ରେକର୍ଡ଼ ରଖିବା ଥିଲା ସେମାନଙ୍କର ମୁଖ୍ୟ କାମ । ପ୍ରତ୍ୟେକ ପ୍ରଶାସନିକ ବିଭାଗର ହିସାବକୁ ଠିକ୍‌ଭାବେ ରଖାଯାଉଥିଲା ଏବଂ ମନ୍ତ୍ରୀମାନେ ତାକୁ ସଂଯୁକ୍ତ ଭାବରେ ରାଜାଙ୍କ ଆଗରେ ପେଶ୍ କରୁଥିଲେ । ଏହା ପଛରେ ଉଦ୍ଦେଶ୍ୟ ଥିଲା ଭ୍ରଷ୍ଟାଚାର ଓ ଦୁର୍ନୀତିକୁ ନିୟନ୍ତ୍ରଣ କରିବା । ପ୍ରତ୍ୟେକ ବିଭାଗରେ ଅନେକ ଅନୁଭାଗ ଅଧିକାରୀ ଏବଂ ଅଧସ୍ତନ କର୍ମଚାରୀଙ୍କୁ ରଖାଯାଇଥିଲା । ସେମାନେ ସ୍ଥାନୀୟ ପ୍ରଶାସନ ଓ କେନ୍ଦ୍ରୀୟ ପ୍ରଶାସନ ମଧ୍ୟରେ ଏକ ମାଧ୍ୟମ ରୂପେ କାର୍ଯ୍ୟ କରୁଥିଲେ । ଅର୍ଥଶାସ୍ତ୍ରରେ ବିଶେଷକରି ସ୍ୱର୍ଣ୍ଣ ଓ ସ୍ୱର୍ଣ୍ଣକାର, ଭଣ୍ଡାର, ବାଣିଜ୍ୟ, ଜଙ୍ଗଲଜାତ ସାମଗ୍ରୀ, ଅସ୍ତ୍ରାଗାର, ମାପ-ଓଜନ, କରଫାଟକୀ ବା ଟୋଲ, ବୁଣାକାର, କୃଷି, ମଦିରା, ବଧଶାଳା, ନଗରବଧୂ, ଜାହାଜ, ଗୋଧନ, ଅଶ୍ୱ, ହସ୍ତୀ, ରଥ, ପଦାତିକ ବାହିନୀ, ପାସ୍‌ପୋର୍ଟ ଓ ନଗର ପରିଚାଳନା ପାଇଁ ଅନୁଭାଗ ଅଧିକାରୀ ନିଯୁକ୍ତ ହୋଇଥିବା କଥା ଉଲ୍ଲେଖ ଅଛି ।

ସରକାରୀ ବ୍ୟୟର ବହୁ ଅଂଶ କର୍ମଚାରୀମାନଙ୍କର ବେତନ ଏବଂ ସାର୍ବଜନିକ କାର୍ଯ୍ୟ ପାଇଁ ଖର୍ଚ୍ଚ ହେଉଥିଲା । ମୋଟ ଆୟର ଏକଚତୁର୍ଥାଂଶ ଏଥିପାଇଁ ଗଚ୍ଛିତ ହୋଇ ରହୁଥିଲା । ପ୍ରଶାସନିକ କାର୍ଯ୍ୟରେ ନିଯୁକ୍ତ କର୍ମଚାରୀମାନଙ୍କୁ କେଉଁ ରୂପେ ବେତନ ଦିଆଯାଉଥିଲା, ତା'ର ସୂଚନା ଯେଉଁ ପୁସ୍ତକରୁ ମିଳେ, ସେହି ପୁସ୍ତକ ଉତ୍ତର-ମୌର୍ଯ୍ୟକାଳୀନ ବୋଲି ମନେହୁଏ । ଏଥିରୁ ଯେଉଁ ଅନୁକ୍ରମ ନିର୍ଦ୍ଧାରିତ ହୁଏ, ତାହା ପ୍ରଶାସନିକ ପ୍ରାଥମିକତାକୁ ବ୍ୟାଖ୍ୟା କରେ । ଏହି ସୂଚନା ଅନୁଯାୟୀ, ଉଚ୍ଚ ଅଧିକାରୀମାନଙ୍କୁ ଖୁବ୍ ଭଲ ଦରମା ଦିଆଯାଉଥିଲା, ଯାହା ରାଜକୋଷର ବହୁଳ ନିର୍ଗମକୁ ନିର୍ଦ୍ଦେଶ କରେ । ପ୍ରଧାନମନ୍ତ୍ରୀ, ପୁରୋହିତ ଏବଂ ସେନାନାୟକଙ୍କୁ 48,000 ପଣ ମିଳୁଥିଲା; କୋଷାଧ୍ୟକ୍ଷ ଓ ସମାହର୍ତ୍ତାଙ୍କୁ ମିଳୁଥିଲା 24,000 ପଣ; ହିସାବରକ୍ଷକ, କିରାଣୀ ଏବଂ ସୈନିକମାନଙ୍କୁ ମିଳୁଥିଲା 500 ପଣ; ମନ୍ତ୍ରୀମାନଙ୍କୁ ମିଳୁଥିଲା 12,000 ପଣ; ଏବଂ କାରିଗରର ବେତନ ଥିଲା 120

ପଣ । ପଣର ମୂଲ୍ୟ କେତେ ଓ ବେତନ ମାସିକ ଥିଲା ନା ବାର୍ଷିକ, ତାହା ସୁସ୍ପଷ୍ଟ ନୁହେଁ । ବେତନ ଟଙ୍କା ଆକାରରେ ଦିଆଯାଉଥିଲା ବୋଲି ମନେକରାଯାଏ । ମିଳୁଥିବା ବେତନର ତୁଳନା ଅନ୍ୟ ସାମଗ୍ରୀର ମୂଲ୍ୟ ସହିତ କରାଯାଇପାରେ, ଯାହା ବିଭିନ୍ନ ସ୍ରୋତରୁ ପ୍ରାପ୍ତ । ଯୋଡ଼ିବଳଦର ମୂଲ୍ୟ ଥିଲା 24 ପଣ ଏବଂ ଜଣେ ଦାସକୁ କ୍ରୟ କରିବା ସକାଶେ ଖର୍ଚ୍ଚ କରିବାକୁ ପଡୁଥିଲା 100 ପଣ । ହୁଏତ ଏହା ନିର୍ଦ୍ଦିଷ୍ଟ ବେତନ ହୋଇ ନ ପାରେ, ମାତ୍ର ବେତନ ମଧ୍ୟରେ ଥିବା ଏହି ଅନୁପାତରୁ ଅନେକ କିଛି ଧାରଣା କରିହୁଏ । ଉଦାହରଣ ସ୍ୱରୂପ, ଜଣେ କିରାଣୀ ଓ ପ୍ରଧାନମନ୍ତ୍ରୀଙ୍କ ବେତନ ବା ଜଣେ ସାଧାରଣ ସୈନିକ ଓ ସେନାନାୟକଙ୍କ ବେତନ ମଧ୍ୟରେ ଅନୁପାତ ହେଲା 1 : 196 ।

ଏହି ଅନୁପାତ ଯଦି କିଛି ମାତ୍ରାରେ ସତ ହୋଇଥାଏ, ତେବେ ଅମଲାତନ୍ତ୍ରର ଉଚ୍ଚବର୍ଗଙ୍କୁ ଖୁବ୍ ଭଲ ବେତନ ମିଳୁଥିଲା ବୋଲି କୁହାଯିବ । ସାର୍ବଜନିକ କାର୍ଯ୍ୟର ପରିଧି ଖୁବ୍ ବ୍ୟାପକ ଥିଲା । ଅଶୋକଙ୍କ ଶିଳାଲେଖର ଉଲ୍ଲେଖ ଅନୁଯାୟୀ, ଏଥିରେ ରାସ୍ତା, କୂପ ଓ ବିଶ୍ରାମାଗାର ନିର୍ମାଣ ଓ ମରାମତି ତଥା ଉଦ୍ୟାନ ନିର୍ମାଣ ଅନ୍ତର୍ଭୁକ୍ତ ଥିଲା । ଏହାବ୍ୟତୀତ, ସୁଦର୍ଶନ ହ୍ରଦ ପରି ଜଳସେଚନ ବ୍ୟବସ୍ଥା, ସେନାବାହିନୀର ରକ୍ଷଣାବେକ୍ଷଣ, ଖଣିର ପରିଚାଳନା ଏବଂ ରାଜ୍ୟର ଏକାଧିକାର ଥିବା କ୍ଷେତ୍ରରେ ଅର୍ଥ ନିବେଶ ମଧ୍ୟ ସାର୍ବଜନିକ କାର୍ଯ୍ୟରେ ସାମିଲ ଥିଲା । ରାଜ୍ୟର ଏକାଧିକାର କ୍ଷେତ୍ର ମଧ୍ୟରେ ଅସ୍ତ୍ରାଗାର, ଧାର୍ମିକ ଅନୁଷ୍ଠାନ ଓ ବ୍ୟକ୍ତିମାନଙ୍କୁ ରାଜାଙ୍କ ପରିବାର ପକ୍ଷରୁ ଦିଆଯାଉଥିବା ଅନୁଦାନ ରହିଥିଲା । ଅଶୋକଙ୍କ ରାଣୀ ଅନେକ ଦାନ ଆଦି କରୁଥିଲେ । ଏସବୁକୁ ବାଦ୍ ଦେଲେ ପୁଣି ରାଜପରିବାରର ଖର୍ଚ୍ଚ ରହିଥିଲା । ଏସବୁକୁ ସାର୍ବଜନିକ ବ୍ୟୟରେ ନିଆଯାଉଥିଲା ।

ଏହା ନିଃସନ୍ଦେହ ଯେ, ପ୍ରଶାସନ ପ୍ରାୟତଃ ପ୍ରଚଳିତ ନୀତିନିୟମକୁ ମାନି ଚଳୁଥିଲା । ତା' ସହିତ ଉପସ୍ଥିତ ରାଜନୈତିକ ଓ ଆର୍ଥିକ ଆବଶ୍ୟକତା ସହିତ ତାଳମେଳ ମଧ୍ୟ ରଖୁଥିଲା । 'ଅର୍ଥଶାସ୍ତ୍ର' ଏକ ଅତିମାତ୍ରାରେ କେନ୍ଦ୍ରିକୃତ ବ୍ୟବସ୍ଥାକୁ ସମର୍ଥନ କରୁଥିଲା । ତହିଁରେ ସମ୍ପୂର୍ଣ୍ଣ କାର୍ଯ୍ୟ-ବ୍ୟବସ୍ଥା ଉପରେ ରାଜାଙ୍କର ପ୍ରଭୂତ ନିୟନ୍ତ୍ରଣ ରହିଥିଲା । ମାତ୍ର ଏହି କିସମର ନିୟନ୍ତ୍ରଣ ରଖିବା ସେତେବେଳେ କାଠିକର ହୋଇଥିବ, କାରଣ ମୌର୍ଯ୍ୟ ସାମ୍ରାଜ୍ୟର ଆକାର ଖୁବ୍ ବିଶାଳ ଥିଲା ଏବଂ ତହିଁରେ ବହୁପ୍ରକାର ଆର୍ଥିକ ଓ ସାଂସ୍କୃତିକ ବିବିଧତା ରହିଥିଲା । ଅବଶ୍ୟ ମଗଧ ଭଳି ଏକ କ୍ଷୁଦ୍ର କ୍ଷେତ୍ରରେ, ଯେଉଁଠି ପ୍ରଶାସନ କୌଟିଲ୍ୟଙ୍କ ଅତି ପାଖରେ ଥିଲା, ଏହାର କାର୍ଯ୍ୟାନ୍ୱୟନ ଅନେକାଂଶରେ ସମ୍ଭବ ହୋଇଥିବ । ତେଣୁ ସେତେବେଳର ଆର୍ଥିକ ଓ ସାମାଜିକ ଢାଞ୍ଚା ସହ ତାଳମେଳ ରଖି ପ୍ରଶାସନ ସଂଗଠିତ ହୋଇଥିଲା ବୋଲି କହିବା ଅଧିକ ବ୍ୟବହାରିକ ହେବ । ଏହି ଦୃଷ୍ଟିରୁ ବିଚାର କଲେ, ମୌର୍ଯ୍ୟକାଳରେ ତିନି

ପ୍ରକାରର ପ୍ରଶାସନିକ ଢାଞ୍ଚା ରହିଥିବାର ଅନୁମାନ କରିହୁଏ । ଅର୍ଥାତ୍ ଭିନ୍ନ ଭିନ୍ନ ପରିସ୍ଥିତି ପାଇଁ ପ୍ରଶାସନର ଢାଞ୍ଚା ବଦଳୁଥିଲା । ମାତ୍ର ଢାଞ୍ଚା ଯାହା ହେଉ ନା କାହିଁକି ସବୁ ପରିସ୍ଥିତିରେ ରାଜସ୍ୱ ଆଦାୟ ଓ ପରିବଣ୍ଟନ ଉପରେ ସମୁଚିତ ମହତ୍ତ୍ୱ ରହିଥିଲା । ଏକଥା ଅନୁମାନ କରିହୁଏ ।

ପ୍ରଥମ ହେଲା ମଗଧ, ଯାହା ସାମ୍ରାଜ୍ୟର କେନ୍ଦ୍ର ଓ ମୂଳ ରାଜ୍ୟ ଥିଲା । ମଗଧ ଏକ ରାଜ୍ୟ ରୂପରେ କାର୍ଯ୍ୟ କରିବାର ଦୀର୍ଘ ଅନୁଭୂତି ପାଇଥିଲା । ଗାଙ୍ଗେୟ ସମତଳ କ୍ଷେତ୍ର ମଗଧର ଅନ୍ତର୍ଭୁକ୍ତ ଥିଲା । ମୋଟାମୋଟି ଏହି କ୍ଷେତ୍ରରେ ଅଶୋକଙ୍କର ସ୍ତମ୍ଭ ଅଭିଲେଖଗୁଡ଼ିକୁ ସ୍ଥାପନ କରାଯାଇଥିଲା । ଉକ୍ତ ଅଭିଲେଖରେ ଅଶୋକଙ୍କ ପ୍ରଶାସନର ସିଂହାବଲୋକନ ଦେଖିବାକୁ ମିଳିଥାଏ । ସ୍ତମ୍ଭ ଅଭିଲେଖଗୁଡ଼ିକୁ ସେହି ସ୍ଥାନମାନଙ୍କରେ ସ୍ଥାପିତ କରାଯାଇଥିଲା, ଯେଉଁଠି ନଦୀ ପଥରେ ପରିବହନର ସୁବିଧା ଥିଲା । ମାତ୍ର ଅନ୍ୟ ଦୃଷ୍ଟିରୁ ଦେଖିଲେ, ସ୍ତମ୍ଭ ଅଭିଲେଖ ସ୍ଥାପିତ କ୍ଷେତ୍ର ହେଲା କେନ୍ଦ୍ରିକୃତ ପ୍ରଶାସନିକ କ୍ଷେତ୍ର, ଯେଉଁଠି କୌଟିଲ୍ୟଙ୍କ ବ୍ୟବସ୍ଥା ଅନ୍ୟ ଅଞ୍ଚଳ ଅପେକ୍ଷା ଅଧିକ ସୁଚାରୁରୂପେ କାର୍ଯ୍ୟ କରୁଥିଲା । ମଗଧ ଥିଲା ସାମ୍ରାଜ୍ୟର ମୁଖ୍ୟ କେନ୍ଦ୍ର । ସାମ୍ରାଜ୍ୟର ଆୟ ଓ ପରିବଣ୍ଟନ ବ୍ୟବସ୍ଥା ଏହି ସ୍ଥାନରୁ ନିୟନ୍ତ୍ରିତ ହେଉଥିଲା । କୂଟନୀତି ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ କ୍ଷେତ୍ରଗୁଡ଼ିକୁ ଜୟକରି ମଗଧ ତା'ର ପ୍ରଭୁତ୍ୱ ବୃଦ୍ଧି କରିଥିଲା । ବିଜିତ କ୍ଷେତ୍ରର କୃଷି ଓ ବାଣିଜ୍ୟ ସମ୍ଭାବନା ଏବଂ ରାଜସ୍ୱ ମଧ୍ୟ ମଗଧକୁ ସଂବୃଦ୍ଧ ହେବାରେ ସାହାଯ୍ୟ କଲା । ଏଭଳି ବିଜିତ କ୍ଷେତ୍ର ସମଗ୍ର ଉପମହାଦେଶରେ ବିକ୍ଷିପ୍ତ ହୋଇ ରହିଥିଲା । ତୁଳନାତ୍ମକ ଢଙ୍ଗରେ ଦେଖିଲେ, ଏଗୁଡ଼ିକ ଥିଲା ମଗଧ ପର ସ୍ତରର ରାଜ୍ୟ । ମଗଧ ଯଦି କେନ୍ଦ୍ର ହୁଏ, ଏଗୁଡ଼ିକ ହେଲା ଦ୍ୱିତୀୟ ସ୍ତରର ରାଜ୍ୟ । ଇଂରାଜୀରେ ମଗଧକୁ 'ମେଟ୍ରୋପୋଲିଟାନ' ରାଜ୍ୟ ଓ ଏଗୁଡ଼ିକୁ 'କୋର୍' (Core) ବା ମୁଖ୍ୟ ରାଜ୍ୟ କୁହାଯାଇପାରେ ।

'କୋର୍' ବା ମୁଖ୍ୟ ରାଜ୍ୟଗୁଡ଼ିକ କେନ୍ଦ୍ର ସରକାରର ନିୟନ୍ତ୍ରଣରେ ଥିଲେ ସୁଦ୍ଧା, କେନ୍ଦ୍ରୀୟ ପ୍ରଶାସନର ଖୁବ୍ ଅଧିକ ପ୍ରତ୍ୟକ୍ଷ ନିୟନ୍ତ୍ରଣ ସେଗୁଡ଼ିକ ଉପରେ ନ ଥିଲା । ବିଶେଷକରି ରାଜ୍ୟପାଳ ଓ ଅନ୍ୟ ବରିଷ୍ଠ ଅଧିକାରୀମାନଙ୍କର ନିୟନ୍ତ୍ରଣରେ ସେଗୁଡ଼ିକ ରହିଥିଲେ । ମୌର୍ଯ୍ୟ ଶାସନାଧୀନ କ୍ଷେତ୍ର ଭାବରେ ଏହି 'କୋର୍' ରାଜ୍ୟମାନ ଦ୍ୱିତୀୟ ସ୍ତରର ରାଜ୍ୟକରଣକୁ ଅନୁଭବ କରିଥିଲେ । ଯୁଦ୍ଧ ବଳରେ ସେମାନେ ମୌର୍ଯ୍ୟ ରାଜ୍ୟରେ ଯୋଡ଼ି ହୋଇଥିଲେ ଏବଂ ସମୟକ୍ରମେ ରାଜ୍ୟ ପ୍ରଣାଳୀ ସହିତ ନିଜ ନିଜକୁ ଖାପ ଖୁଆଇ ନେଲେ । 'ମେଟ୍ରୋପୋଲିଟାନ୍' ରାଜ୍ୟର ସମତୁଲ କରିବା ଉଦ୍ଦେଶ୍ୟରେ ସାମ୍ରାଜ୍ୟ ପ୍ରଶାସନ ସେଠାରେ କେତେକ ଅର୍ଥନୈତିକ ପରିବର୍ତ୍ତନ ଆଣିଥିବ ବୋଲି ଅନୁମାନ କରାଯାଏ ।

'କୋର୍' ଅଞ୍ଚଳଗୁଡ଼ିକ ଅଶୋକଙ୍କ ରାଜାଦେଶ ଓ ମେଜର ରକ୍ ଏଡିକ୍ଟ (Major Rock Edict) ଥିବା ସ୍ଥଳୀର ନିକଟରେ ଅବସ୍ଥିତ । ଉଦାହରଣ ହେଲା, ଗାନ୍ଧାର, ଦକ୍ଷିଣ କର୍ଣ୍ଣାଟକ, ରାଏଚୁର ଅବବାହିକା, କଳିଙ୍ଗ ଓ ସୌରାଷ୍ଟ୍ର । ଗାନ୍ଧାରର ଗୁରୁତ୍ୱ ହେଲା ଯେ ପଶ୍ଚିମ ଏସିଆର ହେଲେନବାଦୀ ରାଜ୍ୟଗୁଡ଼ିକୁ ଯାଇଥିବା ମାର୍ଗ ଉପରେ ଏହାର ନିୟନ୍ତ୍ରଣ ଥିଲା । ଅର୍ଥାତ୍ ବାଣିଜ୍ୟିକ ବିନିମୟ ପାଇଁ କ୍ଷେତ୍ରଟିର ଖୁବ୍ ମହତ୍ତ୍ୱ ରହିଥିଲା । କର୍ଣ୍ଣାଟକର ଯେଉଁ ଅଞ୍ଚଳରେ ଅଭିଲେଖ ଦେଖିବାକୁ ମିଳେ, ତାହା ସୁନା ଖନନ ପାଇଁ ତଥା ତାମ୍ରପାଷାଣ ଓ ମହାପାଷାଣ କାଳୀନ ଲୋକଙ୍କ ଗତିବିଧି ପାଇଁ ପ୍ରସିଦ୍ଧ ଥିଲା । ଆରମ୍ଭରେ ବୋଧହୁଏ ନଗର କେନ୍ଦ୍ରଗୁଡ଼ିକ ମୌର୍ଯ୍ୟ ପ୍ରଶାସନିକ କେନ୍ଦ୍ର ଯାଏଁ ସୀମିତ ଥିଲେ । ସୁବର୍ଣ୍ଣଗିରିର ଗୁରୁତ୍ୱ ଏକ ସୁନାଖଣି ରୂପେ ଥିବାର ଅନୁମାନ କରାଯାଏ । ଖଣିଜ ବସ୍ତୁର ଉତ୍ଖନନ ଆୟର ଏକ ଗୁରୁତ୍ୱପୂର୍ଣ୍ଣ ସ୍ରୋତ ରୂପେ ପରିଗଣିତ ହେଉଥିଲା । କର୍ଣ୍ଣାଟକରେ ସୁନା ଯେମିତି ମିଳୁଥିଲା, ସେମିତି ରାଜସ୍ଥାନରୁ ତମ୍ବା ଏବଂ ଦକ୍ଷିଣ ବିହାରରୁ ଲୁହା ମିଳୁଥିଲା । କମ୍ବୋଜ, ଯୋନ, ପିଟିନିକ ଓ ଆନ୍ଧ୍ରର ଲୋକଙ୍କର ରାଜାଦେଶରେ ଉଲ୍ଲେଖ ରହିଛି । ବୋଧହୁଏ ସେମାନେ ସମସ୍ତେ 'କୋର୍' କ୍ଷେତ୍ରର ଅଧିବାସୀ ଥିଲେ । ସେମାନଙ୍କୁ ସମସ୍ତଙ୍କୁ ସମୟକ୍ରମେ ସାମ୍ରାଜ୍ୟିକ ଆଧିପତ୍ୟାଧୀନ କରାଯାଇଥିଲା ।

ତୃତୀୟ ସ୍ତରରେ ଥିଲା ଉପାନ୍ତ କ୍ଷେତ୍ର । ଏହି କ୍ଷେତ୍ରଗୁଡ଼ିକ ଅପେକ୍ଷାକୃତ ନିରୋଳାରେ ଥିଲା ଏବଂ ସେଠାରେ ସୀମିତ ମାତ୍ରାରେ ଜନବସତିମାନ ରହିଥିଲା । ଏହି କ୍ଷେତ୍ରରେ ସାମ୍ରାଜ୍ୟ ପ୍ରଶାସନ ଆର୍ଥିକ ବ୍ୟବସ୍ଥାକୁ ନୂଆ ଭାବେ ଗଢ଼ିବା ପାଇଁ ପ୍ରୟାସ କରି ନ ଥିଲା । ବରଂ ଏହି କ୍ଷେତ୍ରରେ ସାମ୍ରାଜ୍ୟ ପ୍ରଶାସନ ଆର୍ଥିକ ବ୍ୟବସ୍ଥାକୁ ନୂଆ ଭାବେ ଗଢ଼ିବା ପାଇଁ ପ୍ରୟାସ କରି ନ ଥିଲା । ବରଂ ଏହି କ୍ଷେତ୍ରରେ ଯାହା ସବୁ ସମ୍ବଳ ଥିଲା, ତାକୁ ଆହରଣ କରିବାକୁ ଉଦ୍ୟମ କରୁଥିଲା । ଉପାନ୍ତ କ୍ଷେତ୍ରଗୁଡ଼ିକୁ ଯୁଦ୍ଧ ବଳରେ ଜିଣାଯାଇ ନ ଥିଲା । ସେଠାରେ ପ୍ରତ୍ୟକ୍ଷ ପ୍ରଶାସନିକ ନିୟନ୍ତ୍ରଣ ନ ଥିଲା । କେବଳ ପ୍ରଭୁତ୍ୱ ପ୍ରଦର୍ଶନ ପାଇଁ ସେଗୁଡ଼ିକୁ ରଖିବାର ଆବଶ୍ୟକତା ଥିଲା । ଉପାନ୍ତ କ୍ଷେତ୍ରକୁ 'ବଫର ଯୋନ' ଭାବରେ ଦେଖାଯାଉଥିଲା । ମୁଖ୍ୟତଃ ଉପାନ୍ତ ଅଞ୍ଚଳଗୁଡ଼ିକ ଥିଲା ବନାଞ୍ଚଳ । ତହିଁରୁ ଗଛ, ହାତୀ ଏବଂ ମୂଲ୍ୟବାନ ପଥର ଆଦି ବନଜ ସାମଗ୍ରୀ ମିଳୁଥିଲା । ସେଠାକାର ଅଧିବାସୀ ସ୍ଥାନୀୟ ବନଜ ସମ୍ପଦକୁ ମୌର୍ଯ୍ୟ ପ୍ରଶାସନ ଅପେକ୍ଷା ଅଧିକ ସୁଚାରୁ ରୂପେ ସଂଗ୍ରହ କରିପାରୁଥିଲେ । ତେଣୁ ଉକ୍ତ ସାମଗ୍ରୀଗୁଡ଼ିକୁ ପାଇବା ଲାଗି ପ୍ରଶାସନ ସେମାନଙ୍କ ସହ ଆବଶ୍ୟକ ସମ୍ପର୍କ ରଖୁଥିଲା । ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ମୌର୍ଯ୍ୟ କର୍ତ୍ତୃତ୍ୱାଧୀନ କରାଯାଇ ପାରୁଥିଲା, ସେମାନଙ୍କୁ ଅଶୋକଙ୍କ ରାଜାଦେଶରେ 'ଆଟବିକ' ବା ବନବାସୀ ବୋଲି ଉଲ୍ଲେଖ କରାଯାଇଥିଲା ।

ବନବାସୀମାନଙ୍କୁ ଯେଉଁଭଳି ଭାବେ ସମ୍ବୋଧନ କରାଯାଇଛି, ତହିଁରୁ ଉଭୟ ଧମକ ଓ ଖୋସାମଦର ଭାବ ରହିଥିବା କଥା ଅନୁମାନ କରିହୁଏ । ଯେତେବେଳେ ଜଙ୍ଗଲ ଜମିକୁ ପ୍ରଶାସନ ଅତିକ୍ରମଣ କରିନେଉଥିଲା, ତା'ର ବିରୋଧ କରୁଥିଲେ ବନବାସୀମାନେ । ସେ କ୍ଷେତ୍ରରେ ସେମାନଙ୍କୁ ଧମକ ଦିଆଯାଉଥିଲା । ପ୍ରଶାସନର ଅତିକ୍ରମଣର ଅର୍ଥ ନୁହେଁ ସେନା ବା କର୍ମଚାରୀମାନେ ଆସି ନିୟନ୍ତ୍ରଣ ସାବ୍ୟସ୍ତ କରିବେ । ବରଂ ତପସ୍ୱୀମାନଙ୍କର ଆଶ୍ରମ ପ୍ରତିଷ୍ଠା, ପଶୁଚାରକ ଓ କୃଷକମାନଙ୍କର ବସତି ସ୍ଥାପନ ଯୋଗୁଁ ଜଙ୍ଗଲ ଉପରେ ରାଜ୍ୟର ଅତିକ୍ରମଣ ଅଧିକ ସ୍ଥାୟୀ ପ୍ରମାଣିତ ହେଉଥିଲା । ବନବାସୀମାନଙ୍କ ଦୃଷ୍ଟିରୁ ଏମାନେ ସମସ୍ତେ ଥିଲେ 'ପର' ଓ 'ଆକ୍ରମଣକାରୀ', କାରଣ ବନବାସୀମାନଙ୍କର ନୀତିନିୟମଠାରୁ ସ୍ଥାୟୀ ବାସିନ୍ଦାମାନଙ୍କ ରୀତିନୀତି ସମ୍ପୂର୍ଣ୍ଣ ପୃଥକ୍ ଥିଲା । ସ୍ଥାୟୀ ବାସିନ୍ଦାମାନଙ୍କ ଦୃଷ୍ଟିରେ, ବନବାସୀମାନଙ୍କର କିଛି ଆଚାର ବିଚାର ନ ଥିଲା; ଅନେକ ସମୟରେ ସେମାନଙ୍କର ମତିଗତି ବୁଝାପଡୁ ନ ଥିଲା । ସେଥିପାଇଁ ବନବାସୀମାନଙ୍କୁ ପୁରାଣରେ ରାକ୍ଷସ ଭାବରେ ବର୍ଣ୍ଣନା କରାଯାଇଛି ।

ଉପଦ୍ୱୀପରେ ଥିବା ମହାପାଷାଣିକ ଜନବସତିରେ ଲୌହ ଉପକରଣକୁ ଉପଯୋଗ କରି ଧାନଚାଷ ହେଉଥିଲା । ସେଠାକାର ଲୋକଙ୍କର ବିଶାଳ ସମାଧିସ୍ଥଳମାନ ଥିଲା । ଅର୍ଥାତ୍ ସେମାନେ ଶବକୁ ଦାହ କରୁ ନ ଥିଲେ । ଏହି ହେତୁରୁ ସେଠାକାର ସମାଜମାନ ବନବାସୀ ସମାଜ ତୁଳନାରେ ଅଧିକ ଜଟିଳ ଥିଲେ । ମାତ୍ର ବନବାସୀମାନେ ସେମାନଙ୍କ ସହ ମିଳିମିଶି ରହୁଥିଲେ । ମହାପାଷାଣିକ ଶିଳ୍ପାବଶେଷରେ ମୌର୍ଯ୍ୟ ଉପସ୍ଥିତି ବିଶେଷ ନାହିଁ, ଯଦିଓ ଏହି ଅଞ୍ଚଳରେ ମଧ୍ୟ ଅଶୋକଙ୍କ ଅଭିଲେଖ ରହିଥିଲା ଏବଂ ତହିଁରେ ମୌର୍ଯ୍ୟ ପ୍ରଶାସନର ଉଲ୍ଲେଖ ଥିଲା । ମନେହୁଏ, ବିନା କୌଣସି ବ୍ୟାପକ ଅର୍ଥନୈତିକ ପରିବର୍ତ୍ତନ କରି ସ୍ଥାନୀୟ ସୂତ୍ର ମାଧ୍ୟମରେ ସମ୍ବଳ ସବୁ ଆହରଣ କରାଯାଉଥିଲା । କର୍ଣ୍ଣାଟକର ସୁନାଖଣି ଥିବା ଅଞ୍ଚଳରେ ଅଶୋକଙ୍କ ଅନେକ ଅଭିଲେଖ ଦେଖିବାକୁ ମିଳେ । ବୋଧହୁଏ, ଏଠାରେ ସୁନା ଖୋଦନ କରାଯାଉଥିଲା । ଯଦିଓ ମୌର୍ଯ୍ୟ ସ୍ତରର ପ୍ରତ୍ନତାତ୍ତ୍ୱିକ ଖନନରୁ ସୁନା ତିଆରି ବସ୍ତୁ ବିଶେଷ ମିଳିନାହିଁ, ତଥାପି ଖୁବ୍ ଅଧିକ ମାତ୍ରାରେ ସେତେବେଳେ ପ୍ରଶାସନିକ କାର୍ଯ୍ୟକଳାପ ଚାଲିଥିଲା । କର୍ଣ୍ଣାଟକରୁ ଯଥେଷ୍ଟ ସୁନା ଖୋଦନ ହୋଇ ନ ଥିଲେ ଏସବୁ ବ୍ୟାପକ ଗତିବିଧି ସମ୍ଭବପର ହୁଅନ୍ତା ବା କେମିତି ?

ମୌର୍ଯ୍ୟ ପ୍ରଶାସନ ଓ ଅର୍ଥବ୍ୟବସ୍ଥାକୁ 'ମେଟ୍ରୋ-ପୋଲିଟାନ' ବା କେନ୍ଦ୍ର ରାଜ୍ୟ, 'କୋର୍' ବା ମୁଖ୍ୟ କ୍ଷେତ୍ର ଓ ଉପାନ୍ତ କ୍ଷେତ୍ରର ଦୃଷ୍ଟିରେ ଦେଖିବାର ଅର୍ଥ ନୁହେଁ, ଯେ ଏହା ଖଣ୍ଡିତ ରାଜ୍ୟ ସଦୃଶ ଥିଲା । କେନ୍ଦ୍ର, କୋର୍ ଏବଂ ଉପାନ୍ତ ଆଦି ଶବ୍ଦର ପ୍ରୟୋଗ ବେଳେ ଖଣ୍ଡିତ ରାଜ୍ୟର ଦୃଷ୍ଟିରୁ ତାହା କରାଯାଇ ନାହିଁ । ବରଂ ଏକ ଐତିହାସିକ ମଡେଲ ଭାବରେ

ତାକୁ ଦର୍ଶାଇବା ପାଇଁ ବ୍ୟବହାର କରାଯାଇଛି । ଉଦାହରଣ ସ୍ୱରୂପ, ବଜାର ଏବଂ ଉତ୍ପାଦନ ସମ୍ବନ୍ଧିତ ବାଣିଜ୍ୟର ବିଶ୍ଳେଷଣରେ ଏହିପରି କରାଯାଇଛି । ଏଠାରେ ଯେଉଁପ୍ରକାର ମୌର୍ଯ୍ୟ ବ୍ୟବସ୍ଥା କଥା କୁହାଯାଉଛି, ତାହା କର୍ମକାଣ୍ଡୀ ମର୍ଯ୍ୟାଦା, କର୍ମକାଣ୍ଡୀ ଅନୁକ୍ରମ କିମ୍ବା କର୍ମକାଣ୍ଡୀ ରାଜନୀତିର ପୃଥକୀକରଣ ସହିତ ସମ୍ବନ୍ଧିତ ନୁହେଁ । ପ୍ରଶାସନ ଓ ରାଜସ୍ୱ ଆଦାୟ ଉପରେ ମୌର୍ଯ୍ୟ ନିୟନ୍ତ୍ରଣର ସ୍ୱରୂପରେ କୌଣସି ପରିବର୍ତ୍ତନ ଆସି ନ ଥିଲା, ବରଂ ତହିଁରେ ବିବିଧତା ଦେଖିବାକୁ ମିଳିଥିଲା । ଫଳସ୍ୱରୂପ, ହୁଏତ ବନବାସୀମାନଙ୍କର ସର୍ଦ୍ଦାର ଜଙ୍ଗଲରୁ ମୌର୍ଯ୍ୟ ପ୍ରଶାସନର ଦାବିମତେ ବିଭିନ୍ନ ପଦାର୍ଥ ସଂଗ୍ରହ କରୁଥିଲେ । ମୌର୍ଯ୍ୟ ପ୍ରଶାସନ ତାକୁ ବସ୍ତୁ ଆକାରରେ ସଂଗୃହିତ ହେଉଥିବା କର ଭାବରେ ରଖୁଥିଲା । ଅଶୋକ ବନବାସୀମାନଙ୍କୁ ଯେଉଁ ଭାଷାରେ ସତର୍କବାଣୀ ଶୁଣାଇଛନ୍ତି, ତହିଁରୁ ମୌର୍ଯ୍ୟ ନିୟନ୍ତ୍ରଣ ଆଟବିକ କ୍ଷେତ୍ରରେ ଊଣା ହୋଇଥିବାର ଜଣାପଡ଼େ ନାହିଁ ।

ଶିଳାଲେଖରୁ ସୁସ୍ପଷ୍ଟ ହୁଏ ଯେ, ମୌର୍ଯ୍ୟ ସାମ୍ରାଜ୍ୟକୁ ସମରୂପ ୟୁନିଟରେ ତିଆରି ବୋଲି ମନେକରାଯାଉ ନ ଥିଲା । ତହିଁରେ ବିଭିନ୍ନ ପ୍ରକାର ଜନସମାଜର ଉପସ୍ଥିତିକୁ ସ୍ୱୀକାର କରାଯାଇଥିଲା । ପୂର୍ବରୁ ପ୍ରଶାସନର ଯେଉଁସବୁ ଭିନ୍ନ ଭିନ୍ନ ରୂପ କଥା କୁହାଯାଇଛି, ତାହା ବିବିଧତାକୁ ସମାୟୋଜିତ କରିନେଉଥିଲା । ତା' ସହିତ ସାମ୍ରାଜ୍ୟିକ ପ୍ରଶାସନ ଦ୍ୱାରା ପ୍ରୟୋଗ କରିବାକୁ ଥିବା ସାମାନ୍ୟ ଓ ସମଗ୍ର ନିୟନ୍ତ୍ରଣକୁ ଉପେକ୍ଷା କରୁ ନ ଥିଲା । ମୌର୍ଯ୍ୟ ବ୍ୟବସ୍ଥାର କେନ୍ଦ୍ର 'ମେଟ୍ରୋପୋଲିଟାନ' ରାଜ୍ୟ ବୋଲି ମଧ୍ୟ ଗ୍ରହଣ କରାଯାଇଥିଲା । ଏହା ରାଜାଙ୍କ ନିର୍ଦ୍ଦେଶରୁ ସ୍ପଷ୍ଟ ହୁଏ । ନିର୍ଦ୍ଦେଶରେ ରାଜା ବନବାସୀମାନଙ୍କୁ ପ୍ରବୋଧନା ଦେଇଥିଲେ ଏବଂ ତା' ସହିତ ଆବଶ୍ୟକ ପଡ଼ିଲେ ରାଜ୍ୟ କଠୋର ନୀତି ଆପଣେଇବ ବୋଲି ଧମକ ମଧ୍ୟ ଦେଇଥିଲେ । 'ଅର୍ଥଶାସ୍ତ୍ର'ରେ ମଧ୍ୟ କୁହାଯାଇଛି ଯେ ବନବାସୀମାନେ ଯଦିଓ ଉପାନ୍ତରେ ରହନ୍ତି, ରାଜାଙ୍କ ଗସ୍ତ ସମୟରେ ସେମାନେ ବିପଦ ଆଣିପାରନ୍ତି । ସେଥିପାଇଁ ରାଜା ସେମାନଙ୍କ ଉପରେ ଭରସା କରିବା ଅନୁଚିତ ଏବଂ ଯଦି ସମ୍ଭବ, ସେମାନଙ୍କର ତୁଷ୍ଟିକରଣ କରିବା ଉଚିତ । ବନବାସୀମାନେ ହେଲେ ଏକ ରାଜନୈତିକ ବାସ୍ତବିକତା । ତେଣୁ ସେମାନଙ୍କୁ ଚତୁରତାର ସହ ବ୍ୟବହାର କରିବା କଥା । କୃଷକଙ୍କ ବ୍ୟତୀତ ପଶୁଚାରକମାନଙ୍କର ମଧ୍ୟ ପୁସ୍ତକରେ ଉଲ୍ଲେଖ ରହିଛି । ସେ ସମୟର ପୁରାତତ୍ତ୍ୱରୁ ବିଭିନ୍ନ ପ୍ରକାରର ଜନବସତିର ସଂକେତ ମିଳିଥାଏ । ପ୍ରଶାସନ ଏହି ସବୁ ବିବିଧତାକୁ ଧ୍ୟାନ ଦେଉଥିଲା ଏବଂ ତା' ପାଇଁ ବିବିଧ ପ୍ରକାରର ପ୍ରଶାସନିକ ବ୍ୟବସ୍ଥା କରିଥିଲା । ବିବିଧତାକୁ ସ୍ୱୀକାର କରିବା ଅର୍ଥ ବିବିଧ କିସମର ପ୍ରଶାସନିକ ଢାଞ୍ଚାକୁ ଉପଯୋଗୀ କରିବା । ଯେହେତୁ ସାମ୍ରାଜ୍ୟର କ୍ଷେତ୍ରଗୁଡ଼ିକ ବିବିଧତାପୂର୍ଣ୍ଣ, ସେଠି କାର୍ଯ୍ୟାନ୍ୱିତ ହେବାକୁ ଥିବା ପ୍ରଶାସନିକ ଢାଞ୍ଚାକୁ ନମନୀୟ କରିବାର ଆବଶ୍ୟକତା ରହିଥିଲା ।

ପ୍ରତ୍ୟକ୍ଷ ଶାସନ ଅନ୍ତର୍ଗତ 'ମେଟ୍ରୋପୋଲିଟାନ' କ୍ଷେତ୍ରକୁ ବାଦ୍‌ଦେଲେ ସାମ୍ରାଜ୍ୟର ବାକୀ ଅଂଶକୁ କେତେକ ପ୍ରଦେଶରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ପ୍ରଦେଶରେ ଜଣେ ଯୁବରାଜ ବା ରାଜପରିବାରର ଜଣକୁ ରାଜ୍ୟପାଳ ରୂପେ ନିଯୁକ୍ତ କରାଯାଇଥିଲା । ପ୍ରାଦେଶିକ ପ୍ରଶାସନର ରାଜଧାନୀ ତକ୍ଷଶିଳା, ଉଜ୍ଜୟିନୀ, ଧଉଳି, ସୁବର୍ଣ୍ଣଗିରି ଏବଂ ସମ୍ଭବତଃ ଗିରନାରରେ ଅବସ୍ଥିତ ଥିଲା । କ୍ଷୁଦ୍ର ଅଞ୍ଚଳଗୁଡ଼ିକର ପ୍ରଶାସକ ରୂପେ ସ୍ଥାନୀୟ ଲୋକଙ୍କୁ ନିଯୁକ୍ତ କରାଯାଉଥିଲା । ଉଦାହରଣ ସ୍ୱରୂପ, ସୌରାଷ୍ଟ୍ରରେ ତୁଷାସ୍ପ ଏବଂ ତକ୍ଷଶିଳାରେ ରୋମିଡ଼ୋଟେ ନାମକ ଇରାନୀୟଙ୍କୁ ନିଯୁକ୍ତ କରାଯାଇଥିଲା । ପ୍ରାଦେଶିକ ପ୍ରସାଶାସନର ଅତିରିକ୍ତ ଅଡ଼ିଟ (audit) ଓ ହିସାବ କରିବା ନିମନ୍ତେ ପ୍ରତି ପାଞ୍ଚ ବର୍ଷରେ ପ୍ରାଦେଶିକ ନାମକ ବରିଷ୍ଠ ଅଧିକାରୀମାନେ ରାଜ୍ୟକୁ ଗସ୍ତ କରୁଥିଲେ । ରାଜୁକ ନାମକ ବିଧି ଅଧିକାରୀଙ୍କୁ ସ୍ୱତନ୍ତ୍ର ଭାବରେ ନଗର ଓ ଗ୍ରାମାଞ୍ଚଳରେ ନିଯୁକ୍ତ କରାଯାଇଥିଲା । ସେମାନେ ବିଧି ବିଷୟକ କାର୍ଯ୍ୟ ସହିତ କର ନିରୂପଣ କାର୍ଯ୍ୟ ମଧ୍ୟ କରୁଥିଲେ । ଯୁକ୍ତ ନାମକ ଅଧିକାରୀଙ୍କ ଦାୟିତ୍ୱ ଥିଲା ବିଭିନ୍ନ ସ୍ରୋତରୁ ପ୍ରାପ୍ତ ସୂଚନାକୁ ଲିପିବଦ୍ଧ କରିବା । ଅଧିକାଂଶ ଫୌଜଦାରୀ ବା ଅପରାଧିକ ମାମଲାରେ ଅର୍ଥଦଣ୍ଡ ହିଁ ଦିଆଯାଉଥିଲା । ମାତ୍ର କେତେକ ଗୁରୁତର ଅପରାଧ ପାଇଁ ଜୋରିମାନାକୁ ଯଥେଷ୍ଟ ମନେକରାଯାଉ ନ ଥିଲା । ଅଶୋକ ଅହିଂସାର ପ୍ରଚାର କରିବା ସତ୍ତ୍ୱେ ମୃତ୍ୟୁଦଣ୍ଡକୁ ବି ଉଚ୍ଛେଦ କରି ନ ଥିଲେ ।

'ଅର୍ଥଶାସ୍ତ୍ର'ରେ ଦିଆଯାଇଥିବା ରୂପରେଖ ଅନୁଯାୟୀ ପ୍ରଦେଶଗୁଡ଼ିକ କେତୋଟି ଜିଲ୍ଲାରେ, ଜିଲ୍ଲାକୁ କେତୋଟି ଗ୍ରାମ୍ୟ ସମୂହରେ ଏବଂ ଗ୍ରାମ୍ୟ ସମୂହ (ଯେମିତି ପଞ୍ଚାୟତ)କୁ ଗ୍ରାମରେ ବିଭକ୍ତ କରାଯିବା କଥା । ଏହି ବ୍ୟବସ୍ଥାକୁ ବିଭିନ୍ନ ସମୟରେ ଲାଗୁ କରାଯାଇଛି ଏବଂ ତାହା ଆଜିଯାଏଁ ମୋଟାମୋଟି ଅପରିବର୍ତ୍ତିତ ରହିଛି । ଗ୍ରାମ୍ୟ ସମୂହ ବା ପଞ୍ଚାୟତ ସ୍ତରରେ ଜଣେ ହିସାବରକ୍ଷକ ରହୁଥିଲେ । ତାଙ୍କର କାମ ଥିଲା ସୀମାନ୍ତର ସୁରକ୍ଷା, ଜମି ଓ ଦଲିଲର ପଞ୍ଜିକରଣ, ଜନସଂଖ୍ୟାର ହିସାବ ରଖିବା ଏବଂ ପଶୁସମ୍ପଦର ମୋଟ ତାଲିକା ପ୍ରସ୍ତୁତ କରିବା । ସେଠାରେ ନିଯୁକ୍ତ ଅନ୍ୟ ଜଣେ ରାଜକର୍ମଚାରୀ ହେଲେ ରାଜସ୍ୱ ଅସୁଲକାରୀ । ଗ୍ରାମ ସ୍ତରରେ ଥିଲେ ଜଣେ ମୁଖିଆ, ଯାହାଙ୍କର ବାରମ୍ବାର ନାମୋଲ୍ଲେଖ ଦେଖିବାକୁ ମିଳେ । ସେ କିଛି ସରକାରୀ କ୍ଷମତା ପାଇ କାର୍ଯ୍ୟ କରୁଥିଲେ । ଉଭୟ ହିସାବରକ୍ଷକ ଓ ରାଜସ୍ୱ ଅସୁଲକାରୀ ଥିଲେ ତାଙ୍କ ଉପରିସ୍ଥ କର୍ମଚାରୀ । ଶିଳାଲେଖରେ ପ୍ରଶାସନିକ ଭାଗଗୁଡ଼ିକର ମଧ୍ୟ ଉଲ୍ଲେଖ ରହିଛି । ତନ୍ମଧ୍ୟରୁ ଗୋଟାଏ ଭାଗ ହେଲା 'ଆହାର' । ଉଭୟ ସଂଗ୍ରହ ଓ ଭୋଜନ ଅର୍ଥରେ ଏହାର ବ୍ୟବହାର ହେଉଥିବାରୁ, ତା'ର ଉଲ୍ଲେଖ ଖୁବ୍ ଉତ୍ସାହପ୍ରଦ ମନେହୁଏ ।

ନଗରୀୟ ପ୍ରଶାସନରେ ମଧ୍ୟ ସୋପାନ କ୍ରମରେ ଅଧିକାରୀମାନେ କାର୍ଯ୍ୟ କରୁଥିଲେ । ନଗର ଅଧୀକ୍ଷକ ଆଇନ-ଶୃଙ୍ଖଳା ରକ୍ଷା କରୁଥିଲେ ଓ ନଗରର ପରିଚ୍ଛନ୍ନତା କଥା ବୁଝୁଥିଲେ । ତାଙ୍କ ସହାୟତା ପାଇଁ ଜଣେ ହିସାବରକ୍ଷକ ଓ ରାଜସ୍ୱ ଆଦାୟକାରୀ ନିଯୁକ୍ତ ହୋଇଥିଲେ । ମେଗାସ୍ଥିନିସଙ୍କ ବର୍ଣ୍ଣନା ଅନୁଯାୟୀ, ପାଟଳିପୁତ୍ରର ପ୍ରଶାସନ ପାଇଁ ତିରିଶ ଜଣ ଅଧିକାରୀ ନିଯୁକ୍ତ ହୋଇଥିଲେ । ସେମାନେ ଛଅଟି କମିଟିରେ ଭାଗ ହୋଇଥିଲେ; ପ୍ରତ୍ୟେକ କମିଟିରେ ପାଞ୍ଚଜଣ ଲେଖାଏଁ ସଭ୍ୟ ରହିଥିଲେ । ପ୍ରତ୍ୟେକ କମିଟି ନିମ୍ନମତେ କାର୍ଯ୍ୟ ପରିଚାଳନା କରୁଥିଲେ : ଶିଳ୍ପ କଳା ସମ୍ବନ୍ଧିତ ମାମଲା; ବିଦେଶାଗତ ଭ୍ରମଣକାରୀଙ୍କ ସୁଖସୁବିଧା; ଜନ୍ମ ଓ ମୃତ୍ୟୁର ପଞ୍ଜିକରଣ; ବାଣିଜ୍ୟ ଓ ବ୍ୟବସାୟ ଜନିତ ମାମଲା; ଉତ୍ପାଦିତ ସାମଗ୍ରୀର ବିକ୍ରି; ଏବଂ ଶେଷରେ ବସ୍ତୁ ଉପରେ ଟିକସ ଅସୁଲି । ସାଧାରଣତଃ କ୍ରୟମୂଲ୍ୟର ଏକଦଶମାଂଶ ଟିକସ ରୂପରେ ଅସୁଲ କରାଯାଉଥିଲା । 'ଅର୍ଥଶାସ୍ତ୍ର'ରେ ମଧ୍ୟ ସେହି ଏକା ଧରଣର ପ୍ରଶାସନ କଥା କୁହାଯାଇଛି । ଅର୍ଥଶାସ୍ତ୍ରରେ ନଗର କେନ୍ଦ୍ରଗୁଡ଼ିକରେ ଉତ୍ପାଦନ ଓ ବିନିମୟ ବ୍ୟବସ୍ଥାର ଯଥାଯଥ ନିରୀକ୍ଷଣ କରିବାକୁ ପରାମର୍ଶ ଦିଆଯାଇଛି, ଯଦ୍ୱାରା ରାଜସ୍ୱକୁ ନିୟନ୍ତ୍ରଣ କରିହେବ । ଯଦି ଏହାକୁ ଅକ୍ଷରେ ଅକ୍ଷରେ ପାଳନ କରାଯାଉଥିଲା, ତେବେ ପ୍ରଶ୍ନ ଉଠେ ବିନିମୟ ଗତିବିଧିକୁ ଏହା ପ୍ରତିରୋଧ କରୁଥିଲା କି ?

କଥନି ଅନୁଯାୟୀ, ପ୍ରକୃତରେ କ'ଣ ପ୍ରଶାସନ ପ୍ରଭାବଶାଳୀ ହୋଇପାରିଥିଲା ? ଏହି ପ୍ରଶ୍ନର ସଠିକ ଉତ୍ତର ପାଇବା ସହଜ ନୁହେଁ । ଉଦାହରଣ ସ୍ୱରୂପ, ଦସ୍ତାବିଜର ରକ୍ଷଣାବେକ୍ଷଣ ଉପରେ ସେତେବେଳେ ଖୁବ୍ ଗୁରୁତ୍ୱ ଦିଆଯାଇଥିଲା । ମାତ୍ର ବାସ୍ତବିକତା ହେଲା ଯେ ଦସ୍ତାବିଜମାନ ରହିପାରିଲା ନାହିଁ । ଏପରିକି ପରବର୍ତ୍ତୀ ସମୟର ଦସ୍ତାବିଜ ମଧ୍ୟ ନାହିଁ । ପ୍ରଦେଶ ଓ କେନ୍ଦ୍ର ମଧ୍ୟରେ ଯୋଗାଯୋଗ ନିଶ୍ଚିତରୂପେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିବ, ପାଟଳିପୁତ୍ର ଓ ପ୍ରଦେଶଗୁଡ଼ିକ ମଧ୍ୟରେ ଖୁବ୍ ଦୂରତା ରହିଥିଲା । ଫଳରେ ପ୍ରଦେଶରେ ରାଜାଦେଶକୁ ପହଞ୍ଚିବା ପାଇଁ ଅନେକ ସମୟ ଲାଗିଯାଉଥିବ । ସାମାନ୍ୟ ବିଷୟ ପ୍ରସଙ୍ଗ ଉପରେ ସ୍ଥାନୀୟ ସ୍ତରରେ ହିଁ ନିଷ୍ପତ୍ତି ନିଆଯାଉଥିବ – ଏଥିରେ ଆଦୌ ସନ୍ଦେହ ନାହିଁ ।

ଗୁପ୍ତଚର ବ୍ୟବସ୍ଥା ଥିଲା ମୌର୍ଯ୍ୟ ଶାସନର ଏକ ସ୍ୱୀକୃତ ଅଙ୍ଗ । ଅନ୍ୟ ସାମ୍ରାଜ୍ୟିକ ବ୍ୟବସ୍ଥାରେ ମଧ୍ୟ ଗୁପ୍ତଚର ରଖିବା ଏକ ସାଧାରଣ ପ୍ରଥା ଥିଲା । 'ଅର୍ଥଶାସ୍ତ୍ର'ରେ ଗୁପ୍ତଚରର ଯଥାସମ୍ଭବ ଅଧିକ ବ୍ୟବହାର କରିବାକୁ ପରାମର୍ଶ ଦିଆଯାଇଛି । ଏକାନ୍ତରେ ବାସ କରୁଥିବା ବ୍ୟକ୍ତି, ଗୃହସ୍ଥ, ବଣିକ, ସନ୍ୟାସୀ, ବିଦ୍ୟାର୍ଥୀ, ଭିକାରୁଣୀ ଓ ଗଣିକା ବେଶରେ ଗୁପ୍ତଚର ଭଲଭାବେ କାମ କରିପାରିବ ବୋଲି ଏଥିରେ କୁହାଯାଇଛି । ଅଶୋକ ସମାଚାର ବାହକର

ବି ଉଲ୍ଲେଖ କରିଛନ୍ତି । ସମାଚାର ବାହକ ଲୋକଙ୍କର ମତକୁ ରାଜାଙ୍କ ଆଗରେ ରଖୁଥିଲା । ଏହି ମାଧ୍ୟମରେ ଅତି ନିଭୃତ କୋଣଗୁଡ଼ିକରେ ବାସ କରୁଥିବା ଲୋକଙ୍କ ସହିତ ମଧ୍ୟ ସମ୍ରାଟ ସମ୍ପର୍କ ସ୍ଥାପନ କରିପାରୁଥିଲେ ।

## ଅଶୋକଙ୍କ ଧମ୍ମ

ଏହିଭଳି ଏକ ପୃଷ୍ଠଭୂମିରେ ଅଶୋକ ଏକ ବିଚାର ଦେଲେ, ଯାହା ଭାରତର ରାଜନୈତିକ ଓ ସାମାଜିକ ପରିବେଶରେ ନୂତନ ଦିଗ୍‌ଦର୍ଶନ ଭାବେ ଗଣାହେଲା । ସାଂପ୍ରତିକ ସମୟରେ ଏହି ବିଚାର ଲୋକଙ୍କର ଖୁବ୍ ଧ୍ୟାନ ଆକର୍ଷଣ କରିଛି ଏବଂ ଅଶୋକଙ୍କ ସମ୍ପର୍କରେ ଅଧିକ ଜିଜ୍ଞାସା ସୃଷ୍ଟି କରିଛି । ଅଶୋକ ଯେଉଁଭାବେ ଦର୍ଶନ ବା 'ଧମ୍ମ'ର ବିଚାରକୁ ବ୍ୟାଖ୍ୟା କରିଥିଲେ, ତାକୁ ଆଧାର କରି ଏହି ନୂତନ ଆଦର୍ଶର ସୃଷ୍ଟି । ଅଶୋକ 'ଧମ୍ମ' ଶବ୍ଦର ବାରମ୍ବାର ବ୍ୟବହାର କରିଛନ୍ତି । ସଂସ୍କୃତ ଶବ୍ଦ ଧର୍ମର ପ୍ରାକୃତ ରୂପ ହେଲା 'ଧମ୍ମ' । ଏହାର ଅର୍ଥ ହେଲା, ସନ୍ଦର୍ଭ ଅନୁସାରେ, ସାର୍ବଜନୀନ ନିୟମ ବା ସଦାଚାର । ବ୍ୟାପକ ଅର୍ଥରେ କହିଲେ, ଯେଉଁ ସମାଜରେ ବ୍ରାହ୍ମଣ୍ୟ ଧର୍ମ ପ୍ରଚଳିତ, ସେହି ସମାଜରେ ସାମାଜିକ ଓ ଧାର୍ମିକ ନିୟମକୁ ଲାଗୁ କରିବାର ଉଦ୍ୟମ ହେଲା ଧମ୍ମ । ବୌଦ୍ଧଗ୍ରନ୍ଥରେ ବୌଦ୍ଧଧର୍ମର ଶିକ୍ଷା ନିମିତ୍ତ ଏହାର ଉପଯୋଗ କରାଯାଉଥିଲା । ମାତ୍ର ସେତେବେଳେ ଶବ୍ଦଟିର ଖୁବ୍ ବ୍ୟାପକ ଅର୍ଥରେ ବ୍ୟବହାର ହେଉଥିଲା । ଯେଉଁ ରୂପରେ ଅଶୋକ ତାଙ୍କ ରାଜାଦେଶରେ 'ଧମ୍ମ'ର ପ୍ରୟୋଗ କରୁଥିଲେ, ତାକୁ ପରଖିଲେ ଲାଗେ, ଏହାର ଅର୍ଥ ଖୁବ୍ ବ୍ୟାପକ ଥିଲା ।

ଅଶୋକ ସମ୍ବନ୍ଧିତ ଆଦ୍ୟ କୃତିଗୁଡ଼ିକରେ ଶ୍ରୀଲଙ୍କାର ବୌଦ୍ଧ ଇତିବୃତ୍ତ (chronicle)ରୁ ତଥ୍ୟମାନ ସଂଗ୍ରହ କରାଯାଇଛି । ଅଶୋକଙ୍କ ରାଜାଦେଶରୁ ମଧ୍ୟ ତଥ୍ୟ ନିଆଯାଇଛି । ସ୍ୱାଭାବିକ ଭାବରେ ଏଥିରେ ରାଜାଦେଶର ବୌଦ୍ଧ ଦୃଷ୍ଟିକୋଣକୁ ଗୁରୁତ୍ୱ ଦିଆଯାଇଛି । କଳିଙ୍ଗ ଯୁଦ୍ଧ ପରେ ଅଶୋକ ଆକସ୍ମିକ ଭାବେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ ବୋଲି ନାଟକୀୟ ବ୍ୟାଖ୍ୟାନ କରାଯାଇଛି । ବୌଦ୍ଧଧର୍ମ ଗ୍ରହଣ କଲାପରେ ସେ ବୌଦ୍ଧଧର୍ମର ଦୟା ଭାବରେ ଆପ୍ଲୁତ ହେଲେ ବୋଲି ଦର୍ଶାଯାଇଛି । ଜଣେ ଐତିହାସିକଙ୍କ ଭାଷାରେ, ଅଶୋକ ଏକାଦିକ୍ରମେ ଜଣେ ବୌଦ୍ଧଭିକ୍ଷୁ ଓ ଜଣେ ସମ୍ରାଟ ଭାବେ କାର୍ଯ୍ୟନିର୍ବାହ କରୁଥିଲେ । ଏହା ନିଃସନ୍ଦେହ ଯେ, ଅଶୋକ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଜଣେ ବ୍ୟବହାରିକ ବୌଦ୍ଧ ଭାବେ ଜୀବନଯାପନ କରୁଥିଲେ । ମାତ୍ର ତାଙ୍କ ସମୟରେ ବୌଦ୍ଧଧର୍ମ କେବଳ ଏକ ଧାର୍ମିକ ବିଶ୍ୱାସ ନ ଥିଲା; ତା' ସହିତ ନାନା ସ୍ତରରେ ଏହା ଏକ ସାମାଜିକ ଜୀବନର ବିଭିନ୍ନ ସମ୍ଭାଗକୁ ପ୍ରଭାବିତ କରୁଥିଲା । ସ୍ୱାଭାବିକ ଭାବରେ, ଜଣେ ଦାୟିତ୍ୱସମ୍ପନ୍ନ ଓ

ସମ୍ବେଦନଶୀଳ ରାଜପୁରୁଷ ରୂପେ ତାଙ୍କୁ ବୌଦ୍ଧଧର୍ମର ଶିକ୍ଷା ସନ୍ଦର୍ଭରେ ନିଜର ଭୂମିକା ନିରୂପଣ କରିବାର ଥିଲା । ଅଶୋକଙ୍କ ରାଜାଦେଶ ସେହି ସମ୍ବେଦନଶୀଳତାକୁ ପ୍ରତିଫଳିତ କରେ । ତା' ସହିତ ସେ ଶାସନ କରୁଥିବା ପ୍ରଜାକୁଳର ନୈତିକତାକୁ ନେଇ ରହିଥିବା ତାଙ୍କର ଚିନ୍ତାକୁ ଦର୍ଶାଏ ।

ଯାହା ପ୍ରତୀତ ହୁଏ, ଅଶୋକ ବୌଦ୍ଧଧର୍ମରେ ଥିବା ତାଙ୍କର ବ୍ୟକ୍ତିଗତ ଆସ୍ଥା ଓ ସମର୍ଥନକୁ ରାଜାର ଦାୟିତ୍ୱରୁ ପୃଥକ୍ କରି ରଖିଥିଲେ । ରାଜା ରୂପେ ସେ କହୁଥିଲେ, ପ୍ରତ୍ୟେକ ଧର୍ମକୁ ସମ୍ମାନ ମିଳିବା ଉଚିତ । ସେଥିପାଇଁ ତାଙ୍କର ଅଭିଲେଖ ଥିଲା ଦୁଇ ପ୍ରକାରର । ଅଳ୍ପସଂଖ୍ୟକ ଅଭିଲେଖରେ ସେ ଜଣେ ଗୃହୀ ବୌଦ୍ଧଧର୍ମାବଲମ୍ବୀ ଭାବରେ ବୌଦ୍ଧ ସଂଘକୁ ନିବେଦନ କରିଛନ୍ତି । ଏହିସବୁ ଅଭିଲେଖରେ ବୌଦ୍ଧଧର୍ମ ପ୍ରତି ତାଙ୍କର ଆକର୍ଷଣ ଏବଂ 'ସଂଘ' ସହିତ ସମ୍ପର୍କକୁ ବର୍ଣ୍ଣନା କରାଯାଇଛି । ଏଥିରେ ତାଙ୍କର ଭାଷା ହେଉଛି ଜଣେ ଧର୍ମବିଶ୍ୱାସୀର ଭାଷା । ସେ ଅନ୍ୟ ମତ ପ୍ରତି ସାମାନ୍ୟ ଅସହିଷ୍ଣୁ ଭାବ ମଧ୍ୟ ଏଥିରେ ପ୍ରକଟ କରିଛନ୍ତି । ଉଦାହରଣ ସ୍ୱରୂପ, ଗୋଟାଏ ପରିଚ୍ଛେଦରେ ସେ କହିଛନ୍ତି ଯେ ପ୍ରତିବାଦୀ ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କୁ ସଂଘରୁ ନିଷ୍କାସନ କରାଯିବା ଉଚିତ । ଅନ୍ୟ ଏକ ଅଭିଲେଖରେ, ବୁଦ୍ଧଙ୍କର ଉପଦେଶଗୁଡ଼ିକୁ ଦର୍ଶାଯାଇଛି, ଯାହାକୁ ପ୍ରତ୍ୟେକ ବୌଦ୍ଧ ଧର୍ମାବଲମ୍ବୀ ଏବଂ ବିଶେଷକରି ବୌଦ୍ଧ ଭିକ୍ଷୁମାନେ ଭଲଭାବେ ଜାଣିବା ଉଚିତ ବୋଲି ପରାମର୍ଶ ଦିଆଯାଇଛି ।

ମାତ୍ର ଅଧିକ ମହତ୍ତ୍ୱପୂର୍ଣ୍ଣ ହେଲା ଅନ୍ୟ ଅଭିଲେଖ, ଯାହାର ସଂଖ୍ୟା ଅଧିକ ଏବଂ ଯାହାକୁ ପ୍ରସ୍ତର ଚଟାଣ ଉପରେ ଖୋଦନ କରାଯାଇଥିଲା । ଏହି ଅଭିଲେଖକୁ 'ମେଜର' ବା ଗୁରୁ ଏବଂ 'ମାଇନର' ବା ଲଘୁ ଶିଳା ଅଭିଲେଖ (Major and Minor Rock Edicts) ଏବଂ ସ୍ତମ୍ଭାଭିଲେଖ କୁହାଯାଏ । ସ୍ଥଳବିଶେଷରେ 'Edict'କୁ 'ରାଜାଦେଶ' ଓ 'ଅନୁଶାସନ' ମଧ୍ୟ କୁହାଯାଏ । ଏହିସବୁ ଅଭିଲେଖକୁ ସ୍ୱତନ୍ତ୍ର ଭାବରେ ସ୍ଥାପିତ ସ୍ତମ୍ଭମାନଙ୍କରେ ଲେଖାଯାଇଥିଲା । ସେଗୁଡ଼ିକୁ ଲୋକ ଏକତ୍ରିତ ହେଉଥିବା ସ୍ଥଳୀମାନଙ୍କରେ ପ୍ରତିଷ୍ଠା କରାଯାଇଥିଲା । ଯଦି ଧରିନିଆଯାଏ ଯେ, ସେତେବେଳେ ସ୍ୱାକ୍ଷରଙ୍କ ସଂଖ୍ୟା ଖୁବ୍ ଅଧିକ ନ ଥିବ, ଏହି ସ୍ଥାନମାନଙ୍କରେ ଏକତ୍ରିତ ଜନସମୂହକୁ ରାଜାଦେଶକୁ ପଢ଼ି ଶୁଣା ଦିଆଯାଉଥିଲା । ମୌଖିକ ପରମ୍ପରା ମାଧ୍ୟମରେ ବିଚାରକୁ ପ୍ରଚାର କରିବାର ଏହା ଏକ ଧାରା ଥିଲା । ଲୋକଙ୍କ ପାଖରୁ ରାଜା କ'ଣ ଆଶା କରନ୍ତି, ତାକୁ ସୁସ୍ପଷ୍ଟ କରିବା ଥିଲା ଏହି ଅଭିଲେଖର ଉଦ୍ଦେଶ୍ୟ ।

ମାଇନର ବା ଲଘୁ ଶିଳା ରାଜାଦେଶ (Minor Rock Edicts)ରେ ଅଶୋକ ନିଜକୁ ବୌଦ୍ଧଧର୍ମାବଲମ୍ବୀ ବୋଲି ପୁଣିଥରେ ସୂଚିତ କରିଛନ୍ତି ଏବଂ ଉଭୟ ଲଘୁ ଓ ଗୁରୁ

ଶିଳା ରାଜାଦେଶରେ ସେ ଯେଉଁଭାବେ ବୁଝିଥିଲେ, ସେହିଭାବେ 'ଧମ୍ମ'କୁ ପରିଭାଷିତ କରିଛନ୍ତି । ମୌର୍ଯ୍ୟକାଳୀନ ଭାରତ ସନ୍ଦର୍ଭରେ ଅଶୋକ ଯେଉଁରୂପେ ଏହି ବିଚାରକୁ ବ୍ୟାଖ୍ୟା କରିଛନ୍ତି, ତାହା ହେବ ତାଙ୍କର ବଡ଼ ଉପଲବ୍ଧି । 'ଧମ୍ମ'କୁ ସେ ଦୟା ରୂପରେ ଦେଖୁ ନ ଥିଲେ, ଯାହାକୁ ଭଲ କାର୍ଯ୍ୟର ପରିଣାମ ଏବଂ ଧାର୍ମିକ ବିଶ୍ୱାସର ପ୍ରେରଣାର ଫଳ ବୋଲି ବିବେଚନା କରାଯାଏ । ବରଂ ଧମ୍ମ ସାମାଜିକ ନୈତିକତାକୁ ବୈଧତା ପ୍ରଦାନ କରୁଥିଲା । କେତେକ ଐତିହାସିକ ଅଶୋକଙ୍କ ଧମ୍ମକୁ ବୌଦ୍ଧଧର୍ମର ଏକ ସମାର୍ଥବୋଧକ ଶବ୍ଦ ରୂପରେ ବିଶ୍ଳେଷଣ କରିଛନ୍ତି । ସେମାନଙ୍କର ଯୁକ୍ତି ହେଲା ଯେ, ଅଶୋକଙ୍କର ଉଦ୍ଦେଶ୍ୟ ଥିଲା ବୌଦ୍ଧଧର୍ମର ପ୍ରଚାର-ପ୍ରସାର, ଯାହାଫଳରେ ଏହା ମୌର୍ଯ୍ୟ ସାମ୍ରାଜ୍ୟର ଧର୍ମ ହୋଇପାରିବ । ରାଜାଦେଶରୁ ସୁସ୍ପଷ୍ଟ ହୁଏ ଯେ, ଅଶୋକଙ୍କର ସେଭଳି କୌଣସି ଅଭିପ୍ରାୟ ନ ଥିଲା । ମନେହୁଏ, ଅଶୋକ ଶାସନ ନିମନ୍ତେ ଉଚିତ ମାର୍ଗ ଖୋଜୁଥିଲେ ଏବଂ ସାମାଜିକ କଳହ ଓ ଅସହିଷ୍ଣୁତାକୁ ହ୍ରାସ କରିବାପାଇଁ ଉପାୟର ସନ୍ଧାନରେ ଥିଲେ । ସେହି ପରିପ୍ରେକ୍ଷୀରେ ନୈତିକତାକୁ ବ୍ୟାପକ ଅର୍ଥରେ ସେ ବ୍ୟବହାର କରିବାକୁ ଚେଷ୍ଟା କରୁଥିଲେ । ଧମ୍ମର ଉଦ୍ଦେଶ୍ୟ ଥିଲା, ମନରେ ଏକ ପ୍ରବୃତ୍ତି ସୃଷ୍ଟି କରିବା, ଯଦ୍ୱାରା ବ୍ୟକ୍ତିର ଅନ୍ୟପ୍ରତି ନୈତିକ ଆଚରଣ ପ୍ରାଧାନ୍ୟ ପାଇବ ଏବଂ ବ୍ୟକ୍ତିର ସମ୍ମାନକୁ ସ୍ୱୀକୃତି ମିଳିବ । ଧମ୍ମକୁ ସେ ଏମିତି ଭାଷାରେ ଅଭିବ୍ୟକ୍ତ କଲେ, ଯାହା ସେ ବେଳର ବିଚାର ଆଲୋଚନାର ଭାଷା ଥିଲା । ଯେଉଁ ବିଚାର ଉପରେ ସେ ଧ୍ୟାନ ଦେଲେ, ସେହି ଧରଣର ବିଚାର ବୌଦ୍ଧ ଦର୍ଶନରେ ରହିଛି । ମାତ୍ର ଏକଥା ସତ ଯେ, ରାଜନୈତିକ ଅନୁଷ୍ଠାନର ଚିନ୍ତାର ଊର୍ଦ୍ଧ୍ୱରେ ଯେଉଁସବୁ ଯୁକ୍ତିତର୍କ ସେତେବେଳେ ପ୍ରଚଳିତ ଥିଲା, ତହିଁରେ ଅଶୋକଙ୍କ ଧମ୍ମ ପ୍ରମୁଖ ସିଦ୍ଧ ହେଲା ।

ଅଶୋକଙ୍କ ଧମ୍ମର ଅବଧାରଣାକୁ ହୁଏତ ଭଲଭାବେ ବୁଝିହେବ, ଯଦି ତାକୁ ସମସାମୟିକ ପରିସ୍ଥିତିର ଏକ ଉତ୍ତର ରୂପରେ ବିଶ୍ଳେଷଣ କରାଯିବ । ଅଶୋକଙ୍କ ମନରେ ଯେଉଁ ଏକ ନୀତି ଦାନା ବାନ୍ଧୁଥିଲା, ତା'ର ଏକ ଅଂଶ ଥିଲା ଧମ୍ମ । ଅଶୋକ ଏହାକୁ ପ୍ରଚଳିତ ସମସ୍ୟାର ସନ୍ଦର୍ଭରେ ଦେଖୁଥିଲେ । ତେଣୁ ସେହି ଦୃଷ୍ଟିରୁ ଏହାର ଚରିତ୍ରର ମୂଲ୍ୟାଙ୍କନ କରାଯିବା କଥା । ଏକ ପରିବାର ରୂପରେ ମୌର୍ଯ୍ୟମାନେ ଉଚ୍ଚ ବିଚାରସମ୍ପନ୍ନ ଥିଲେ । ସେମାନେ ବ୍ରାହ୍ମଣ୍ୟଧର୍ମର ବିରୋଧ ନ କରୁଥିଲେ ସୁଦ୍ଧା ଜୈନ, ଆଜୀବକ ଓ ବୌଦ୍ଧ ଆଦି ଅସନାତନୀ ସଂପ୍ରଦାୟର ପୃଷ୍ଠପୋଷକ ଥିଲେ ଏବଂ ସେହି ପ୍ରକ୍ରିୟାରେ ଜୀବନ ଓ ବିଚାରର ବିକଳ୍ପ ମାର୍ଗକୁ ପ୍ରୋତ୍ସାହିତ କରୁ ଏଥିଲେ । ବୈଦିକ ବ୍ରାହ୍ମଣବାଦର ବିକଳ୍ପ ସିଦ୍ଧାନ୍ତର ଶକ୍ତି ଓ ସମର୍ଥନ ଯେ ଅହେତୁକ ପ୍ରତିସ୍ପର୍ଦ୍ଧା ସୃଷ୍ଟି କରିଥାନ୍ତା, ଏଥିରେ ସନ୍ଦେହ ନାହିଁ । କେତେକ ମାତ୍ରାରେ ପ୍ରତିସ୍ପର୍ଦ୍ଧା ବିବାଦ ରୂପରେ ପରିଦୃଷ୍ଟ ମଧ୍ୟ ହେଉଥିଲା । ପୁଣି ନୂଆକରି ଉନ୍ମେଷ

ଲାଭ କରୁଥିବା ସଂପ୍ରଦାୟଗୁଡ଼ିକର ମର୍ଯ୍ୟାଦାକୁ ନେଇ ଉତ୍ତେଜନା ଲାଗି ରହିଥିଲା । ଉଦାହରଣ ସ୍ୱରୂପ, ବାଣିଜ୍ୟିକ ସମୁଦାୟ ଓ ନଗରୀଗୁଡ଼ିକରେ ହସ୍ତଶିଳ୍ପୀ ସଂଘମାନେ ନିଜ ନିଜର କର୍ତ୍ତୃତ୍ୱ ଜାହିର କରୁଥିଲେ । ଏହିସବୁ ସାମାଜିକ ସମସ୍ୟା ଯୋଗୁଁ ଆଗ ଅପେକ୍ଷା ପ୍ରଶାସନିକ ବ୍ୟବସ୍ଥା କ୍ରମଶଃ ଅଧିକ ଜଟିଳ ହୋଇପଡୁଥିଲା । ପୁଣି ସାମ୍ରାଜ୍ୟର ବିଶାଳ ଆକାର ବି ସମସ୍ୟା ସୃଷ୍ଟି କରୁଥିଲା ।

ଏହି ସ୍ଥିତିରେ ଯେତେବେଳେ ପରସ୍ପର ବିରୋଧୀ ଶକ୍ତି କାର୍ଯ୍ୟ କରୁଥିଲେ, ସେତେବେଳେ ଏକ ସାଧାରଣ ସମଗ୍ରତାପୂର୍ଣ୍ଣ ବିଚାରର ଆବଶ୍ୟକତା ରହିଥିଲା । ସାମ୍ରାଜ୍ୟରେ ବିବିଧ ପ୍ରକାରର ସାଂସ୍କୃତିକ ଏବଂ ସାମାଜିକ ବ୍ୟବସ୍ଥା ରହିଥିଲା । ଉତ୍ତର-ପଶ୍ଚିମରେ ହେଲେନବାଦୀ ସମାଜ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ହୋଇଥିଲା । ଗୋଟାଏ ଭାଗ ମାଲିକର ଓ ଅନ୍ୟଟି ଦାସର । ଗାଙ୍ଗେୟ ସମତଳ ଓ 'କୋର୍' କ୍ଷେତ୍ରରେ ଚତୁର୍ବର୍ଣ୍ଣ ବ୍ୟବସ୍ଥା ରହିଥିଲା; ତହିଁରେ ପୁଣି ଅସଂଖ୍ୟ ଜାତି ଅନ୍ତର୍ଭୁକ୍ତ ଥିଲେ । ଆଟବିକ ବା ବନବାସୀମାନେ ବିକ୍ଷିପ୍ତ ହୋଇ ସାମ୍ରାଜ୍ୟର ବିଭିନ୍ନ ଅଂଶରେ ରହିଥିଲେ । ସେମାନେ ବର୍ଣ୍ଣାଶ୍ରମର ଅନ୍ତର୍ଭୁକ୍ତ ନ ଥିଲେ । ଏହିସବୁ ବିବିଧତାକୁ ହୁଏତ ଶକ୍ତି ବଳରେ ଅଥବା ସନ୍ତୁଷ୍ଟିକରଣ କରି ନିୟନ୍ତ୍ରଣାଧୀନ କରିହେବ । ଅଶୋକ ତା' ପାଇଁ ଦ୍ୱିତୀୟ ମାର୍ଗକୁ ଚୟନ କଲେ । ମୌର୍ଯ୍ୟ ସମାଜ ଓ ରାଜନୈତିକ ବ୍ୟବସ୍ଥାର ସଂରଚନା ଯାହା, ତହିଁରେ ସଫଳତା ଲାଭ କରିବା ସକାଶେ କୌଣସି ପଦକ୍ଷେପ ନେବାକୁ ହେଲେ, କେନ୍ଦ୍ରୀୟ କର୍ତ୍ତୃତ୍ୱରୁ ସମର୍ଥନ ମିଳିବା କଥା । ଅଶୋକ ଲୋକଙ୍କୁ ଏକତାବଦ୍ଧ କରୁଥିବା କେତୋଟି ଆଦର୍ଶକୁ ସମ୍ମୁଖରେ ରଖିଲେ । ତତ୍‌କାଳୀନ ସମୟର ବୌଦ୍ଧିକ ଓ ଧାର୍ମିକ ସ୍ରୋତର ପ୍ରଭାବରେ ସେ ବହୁମାତ୍ରାରେ ପ୍ରଭାବିତ ହୋଇଥିଲେ । ଅଶୋକ ଧମ୍ମର ନିଜ ଆବଶ୍ୟକତା ଅନୁସାରେ ଅର୍ଥ କଲେ ଏବଂ ନିଜର ବ୍ୟକ୍ତିଗତ ପରିଭାଷା ଦେଇ ବିଷଦ ବ୍ୟାଖ୍ୟା କଲେ ।

ଧମ୍ମର ସିଦ୍ଧାନ୍ତ ଯାହା ଥିଲା, ତାହା ଯେ କୌଣସି ଧର୍ମାବଲମ୍ବୀ ପାଇଁ ଗ୍ରହଣୀୟ ହୋଇପାରିବ । ଧମ୍ମକୁ ଜାତି, କର୍ତ୍ତବ୍ୟ କିମ୍ବା ନିୟମକୁ ଧ୍ୟାନରେ ରଖି ବ୍ୟାଖ୍ୟା କରାଯାଇ ନ ଥିଲା । ତା'ର ବ୍ୟାଖ୍ୟାକୁ ଅନିଶ୍ଚିତ ଭାବରେ ରଖି ଦିଆଯାଇଥିଲା । କେବଳ ସାମାଜିକ ନୈତିକତାର ଆବଶ୍ୟକତାକୁ ଦୃଷ୍ଟିରେ ରଖି ତା'ର ଉଲ୍ଲେଖ କରାଯାଇଥିଲା । ମୌଳିକ ସିଦ୍ଧାନ୍ତରେ ଅଶୋକ କେବଳ ସହିଷ୍ଣୁତାକୁ ଅଧିକ ଗୁରୁତ୍ୱ ଦେଇଥିଲେ । ତାଙ୍କ ମତରେ, ଏହା କେବଳ ପରସ୍ପର ମଧ୍ୟରେ ସହିଷ୍ଣୁତା ସୃଷ୍ଟି କରିବ ନାହିଁ, ତା' ସହିତ ବିଶ୍ୱାସ ଓ ବିଚାର ସ୍ତର ପ୍ରସାରିତ ହେବ । ସେ ବାରମ୍ବାର ଦାସ ଓ ଚାକରମାନଙ୍କ ପ୍ରତି ସମ୍ବେଦନଶୀଳ ହେବାକୁ, ଶିକ୍ଷକମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ, ପିତାମାତାଙ୍କ ଆଜ୍ଞା ପାଳନ କରିବାକୁ,

ବନ୍ଧୁ, ପରିଜନ ଏବଂ ପରିଚିତମାନଙ୍କର ଆଦର କରିବାକୁ ତଥା ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ସମ୍ମାନ ଓ ଦାନ କରିବାକୁ ନିବେଦନ କରିଛନ୍ତି । ପୁଣି ସମସ୍ତ ଜୀବ ପ୍ରତି ଦୟାବାନ ହେବାକୁ ତଥା ଜୀବହତ୍ୟାରୁ ବିରତ ହେବାକୁ ମଧ୍ୟ ସେ ନିବେଦନ କରିଛନ୍ତି । ସେ କହିଛନ୍ତି :

*"ମାତ୍ର ଦେବାନାଂ ପ୍ରିୟ ସମ୍ମାନପୂର୍ଣ୍ଣ ଦାନ ତୁଳନାରେ ସମସ୍ତ ସଂପ୍ରଦାୟର ଉନ୍ନତିକୁ ଅଧିକ ମହତ୍ତ୍ୱ ଦିଅନ୍ତି । ଏଥିପାଇଁ ନିଜର ବାଣୀରେ ସଂଯମ ରଖିବାକୁ ହେବ । ଅଯଥା ନିଜ ସଂପ୍ରଦାୟର ଗୁଣଗାନ ଏବଂ ଅନ୍ୟ ସଂପ୍ରଦାୟର ନିନ୍ଦା ସର୍ବାଦୌ ବର୍ଜନୀୟ । ...ପ୍ରତ୍ୟେକ ଅବସରରେ ଅନ୍ୟ ସଂପ୍ରଦାୟର ଆଦର କରିବା ଉଚିତ, କାରଣ ତା' ଦ୍ୱାରା ବ୍ୟକ୍ତି ନିଜ ସଂପ୍ରଦାୟର ପ୍ରଭାବ ବିସ୍ତାରରେ ସାହାଯ୍ୟ କରେ ଓ ଅନ୍ୟ ସଂପ୍ରଦାୟକୁ ଲାଭାନ୍ୱିତ କରେ । ଏହାର ବିପରୀତ ବ୍ୟବହାର କଲେ ବ୍ୟକ୍ତି ନିଜ ସଂପ୍ରଦାୟର ପ୍ରଭାବକୁ ହ୍ରାସ କରେ ଓ ଅନ୍ୟ ସଂପ୍ରଦାୟର କ୍ଷତି ସାଧନ କରେ । ...ସେଥିପାଇଁ ମିଳାମିଶା ସର୍ବଦା ଶ୍ରେୟସ୍କର ଅଟେ, ଯାହାଫଳରେ କି ଲୋକ ପରସ୍ପରର ସିଦ୍ଧାନ୍ତକୁ ଶୁଣିପାରିବେ ।"*

(Major Rock Edict XII, Tr. R. Thapar,
*Ashoka and the Decline of the Mauryas*, P.255)

ଧମ୍ମକୁ ମତଭେଦ ଦୂର କରିବା ସକାଶେ ଏକ ଆବେଦନ ରୂପରେ ଦେଖିହେବ, ଯଦ୍ୱାରା ସମାଜରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନ ନିର୍ବାହ ସମ୍ଭବ ହେବ । ମତଭେଦକୁ ଖୋଲାଖୋଲି ଅଭିବ୍ୟକ୍ତ କରିହେବ ତଥା ସ୍ୱୀକାର କରିହେବ; ମାତ୍ର ତା' ପାଇଁ ସହିଷ୍ଣୁତା ରଖିବାକୁ ହେବ । ମତଭେଦ ଯେମିତି ସମାଜରେ ବୈମନସ୍ୟ ସୃଷ୍ଟି ନ କରିବ, ତା' ପାଇଁ ସମସ୍ତଙ୍କର ଚିନ୍ତା ରହିବା କଥା । ଯେଉଁ ଅବସରରେ ବୈମନସ୍ୟ ଭାବକୁ ପ୍ରୋତ୍ସାହନ ମିଳେ କିମ୍ବା ଯେଉଁ ବିନ୍ଦୁରେ ବିରୋଧ ସୃଷ୍ଟି ହୁଏ, ସେହିସବୁ ଅବସରକୁ, ଯଥା- ତର୍କସଭାକୁ, ଅଶୋକ ନିରୁତ୍ସାହିତ କରୁଥିଲେ ।

ହିଂସାରୁ ନିବୃତ୍ତି ହେଲା ଧମ୍ମର ଅନ୍ୟ ଏକ ସିଦ୍ଧାନ୍ତ । ଏଥିପାଇଁ ଯୁଦ୍ଧକୁ ପରିହାର କରିବାକୁ, ହିଂସା ବଳରେ ବିଜୟ ହାସଲ ନ କରିବାକୁ ତଥା ପଶୁ ବଧ ନ କରିବାକୁ କୁହାଯାଇଛି । ମାତ୍ର ଅଶୋକ ଅହିଂସାକୁ ଲାଗୁ କରିବା ସକାଶେ କଠୋର ମନୋଭାବ ରଖି ନ ଥିଲେ । ସେ ଜାଣିଥିଲେ ଯେ, କେତେକ ଅବସରରେ ହିଂସା ଅବଶ୍ୟମ୍ଭାବୀ । ଉଦାହରଣ ସ୍ୱରୂପ, ବନବାସୀମାନେ ଯଦି ଉପଦ୍ରବ କରନ୍ତି, ସେମାନଙ୍କୁ ହିଂସାପୂର୍ଣ୍ଣ ଉପାୟରେ ଦମନ କରିବାକୁ ହେବ । ଯୁଦ୍ଧର ଭୟାବହତାକୁ ଏକ ଭାବଗର୍ଭକ ଉକ୍ତିରେ ସେ କହିଛନ୍ତି, ଧମ୍ମ ଆଚରଣ କରିବା ଉତ୍ତାରୁ ଭବିଷ୍ୟତରେ ହିଂସାର ପ୍ରୟୋଗରୁ ସେ ନିଜକୁ ବାରଣ କରିବେ । ସେ ଆହୁରି କହିଛନ୍ତି ଯେ, ତାଙ୍କର ଇଚ୍ଛା ତାଙ୍କ ଉତ୍ତରାଧିକାରୀମାନେ ମଧ୍ୟ ବଳ ପ୍ରୟୋଗ କରି ଯୁଦ୍ଧଜୟ ନ କରନ୍ତୁ । ତା' ସହିତ ସେ ଏକଥା ମଧ୍ୟ କହିଛନ୍ତି ଯେ, ଅତି ଆବଶ୍ୟକ

ହେଲେ ସେମାନେ ଦୟା ଓ କରୁଣା ଭାବ ମନରେ ରଖି ଯୁଦ୍ଧଜୟ କରିବେ । ରାଜପୁରର ପାକଶାଳାରେ ମାଂସ ରନ୍ଧା ହେବ ନାହିଁ ବୋଲି ସେ ନିର୍ଦ୍ଦେଶ ଜାରି କରିଥିଲେ । କେବଳ ମୟୂର ଓ ମୃଗ ମାଂସକୁ ରାଜ ପାକଶାଳାରୁ ବାରଣ କରାଯାଇ ନ ଥିଲା । ଅଶୋକ କେତେକ ପକ୍ଷୀ, ପଶୁ ଓ ମାଛର ତାଲିକା ପ୍ରସ୍ତୁତ କରି ଉକ୍ତ ଜୀବମାନଙ୍କୁ ଅବଧ ଘୋଷଣା କରିଥିଲେ । ଏମାନଙ୍କ ମଧ୍ୟରୁ କେତେକ ଜୀବକୁ ବର୍ଷର କେତୋଟି ନିର୍ଦ୍ଦିଷ୍ଟ ଦିନରେ ଅବଧ ବୋଲି ଦର୍ଶାଯାଇଥିଲା । ଅଶୋକଙ୍କର ସେହି ନିର୍ଦ୍ଦେଶକୁ ବଣ୍ୟଜୀବ ସଂରକ୍ଷଣର ଆଦ୍ୟ ଉଦ୍ୟମ ଭାବରେ ବାରମ୍ବାର ଉଲ୍ଲେଖ କରାଯାଏ । ଜୀବ ସଂରକ୍ଷଣର ଉଦ୍ୟମ ପଛରେ କର୍ମକାଣ୍ଡର ଚାପ କିମ୍ବା ଜୀବର ଔଷଧୀୟ ଗୁଣ କାରଣ ହୋଇଥିବ ବୋଲି ସମ୍ଭାବିତ ବ୍ୟାଖ୍ୟା ଦିଆଯାଇପାରେ । ଅନ୍ୟ ଏକ ରାଜାଦେଶରେ ଅଶୋକ ଔଷଧୀୟ ବୃକ୍ଷଲତାକୁ ରୋପଣ କରିବାକୁ ଆବେଦନ କରିଛନ୍ତି, ଯାହାକି ମନୁଷ୍ୟ ଓ ପଶୁମାନଙ୍କ କାମରେ ଲାଗିପାରିବ ।

ଧମ୍ମର ନୀତିରେ ପ୍ରଜାର କଲ୍ୟାଣ ପାଇଁ ରାଜାର ଚିନ୍ତାକୁ ମଧ୍ୟ ସମାବେଶ କରାଯାଇଛି । ସମ୍ରାଟଙ୍କର ଘୋଷଣା ଅନୁଯାୟୀ :

*''ରାସ୍ତା ପାର୍ଶ୍ୱରେ ମୁଁ ବରଗଛ ସବୁ ରୋପଣ କରାଇଛି । ଏହା ଉଭୟ ପଶୁ ଓ ମନୁଷ୍ୟକୁ ଛାୟା ପ୍ରଦାନ କରିବ । ମୁଁ ଆମ୍ବଗଛମାନ ରୋପଣ କରାଇଛି; କୂପ ଖୋଦନ କରାଇଛି; ଏବଂ ପ୍ରତି ନଅ ମାଇଲ ଦୂରରେ ବିଶ୍ରାମାଳୟ ସ୍ଥାପିତ କରାଇଛି । ...ଏବଂ ପଶୁ ଓ ମନୁଷ୍ୟମାନଙ୍କ ଲାଗି ସର୍ବତଃ ପାଣିର ବ୍ୟବସ୍ଥା କରାଇଛି । ଏହା ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି । ବସ୍ତୁତଃ ପୂର୍ବବର୍ତ୍ତୀ ରାଜାମାନେ ଏବଂ ସେମାନଙ୍କ ସହିତ ମୁଁ ସଂସାରକୁ ଅନେକ ପ୍ରକାରେ ଲାଭାନ୍ୱିତ କରିବା ସକାଶେ ପ୍ରୟାସ କରିଅଛୁ । ମାତ୍ର ମୁଁ ଏହି ଉଦ୍ଦେଶ୍ୟରେ ଏସବୁ କରିଛି, ଯଦ୍ୱାରା ମୋର ପ୍ରଜା ଧମ୍ମ ଆଚରଣ କରିବେ ।''*

(Pillar Edict, VII, Tr. R. Thapar,
*Ashoka and the Decline of the Mauryas*, P.265)

ଅଶୋକ 'ଅହେତୁକ ଉତ୍ସବ ଏବଂ ଯାଗଯଜ୍ଞ'କୁ କଠୋର ଶବ୍ଦରେ ସମାଲୋଚନା କରିଛନ୍ତି । ତାଙ୍କ ମତରେ, ଅନ୍ଧବିଶ୍ୱାସର ଏସବୁ ହେଲେ ଗୋଟାଏ ଗୋଟାଏ ପରିଣାମ । ଉଦାହରଣ ସ୍ୱରୂପ, ସୁରକ୍ଷିତ ଯାତ୍ରା କିମ୍ବା ରୋଗର ତୁରନ୍ତ ଉପଶମ ପାଇଁ ଲୋକ ଯାଗଯଜ୍ଞ କରନ୍ତି । ନିମ୍ନ ସ୍ତରର ପୁରୋହିତମାନଙ୍କ ପାଇଁ ଏହା ହେଲା ଏକ ବ୍ୟବସାୟ ସଦୃଶ । ସେମାନେ ନିଜ ଜୀବିକା ପାଇଁ ଏହି ଧରଣର ଅନୁଷ୍ଠାନ ଓ ଉତ୍ସବ ଉପରେ ନିର୍ଭର କରନ୍ତି । ଅନ୍ୟପକ୍ଷରେ, ଅଲୌକିକ ଚମତ୍କାରୀ ଆୟୋଜନ ଯଦି ଧମ୍ମ ଉଦ୍ଦେଶ୍ୟରେ ଆୟୋଜିତ, ତାକୁ ଅଶୋକ ବିରୋଧ କରୁ ନ ଥିଲେ । ସ୍ପଷ୍ଟ ରୂପରେ ଏହା ଥିଲା ଏକ ପ୍ରଚାରସର୍ବସ୍ୱ କାର୍ଯ୍ୟ ।

ଧମ୍ମର ନୀତିକୁ କାର୍ଯ୍ୟକାରୀ କରିବା ଲାଗି ତଥା ପ୍ରସାର କରିବା ଲାଗି, ଅଶୋକ 'ଧମ୍ମ ମହାମାତ୍ର' ନାମରେ ଏକ ସ୍ୱତନ୍ତ୍ର ଧରଣର ଅଧିକାରୀଙ୍କୁ ନିଯୁକ୍ତ କରିଥିଲେ । ସେମାନଙ୍କର ପ୍ରମୁଖ କାର୍ଯ୍ୟ ଥିଲା ପ୍ରଜାଜନଙ୍କର କଲ୍ୟାଣ । ଏହି ଧରଣର ଅଧିକାରୀଙ୍କ କ୍ଷେତ୍ରରେ ଯାହା ସର୍ବଦା ହୋଇଥାଏ, ସେମାନଙ୍କ ନିଯୁକ୍ତି ପଛରେ ଉଦ୍ଦେଶ୍ୟ ମହତ ହେବା ସତ୍ତ୍ୱେ, ସେମାନେ ଲୋକଙ୍କ ଦୈନନ୍ଦିନ ଜୀବନରେ ଆବଶ୍ୟକତାଠାରୁ ଅଧିକ ହସ୍ତକ୍ଷେପ କରୁଥିଲେ । ଫଳରେ ରାଜାଙ୍କର ଉଦ୍ଦେଶ୍ୟ ପୂରଣ ହୋଇପାରୁ ନ ଥିଲା । ଯଦି ଅଶୋକଙ୍କର ଉଦ୍ଦେଶ୍ୟ କେବଳ ବୌଦ୍ଧଧର୍ମର ପ୍ରଚାର-ପ୍ରସାର ହୋଇଥାନ୍ତା, ତେବେ ସଂଘକୁ ସହଯୋଗ କରି ସେ ତାକୁ ପୂରଣ କରିପାରିଥାନ୍ତେ । ଧମ୍ମ ମହାମାତ୍ରଙ୍କର ନିଯୁକ୍ତିରୁ ତାଙ୍କର ବ୍ୟାପକ ଦୃଷ୍ଟି ରହିଥିବା କଥା ସୁସ୍ପଷ୍ଟ ହୁଏ ।

ଏତେ ସବୁ ଆନ୍ତରିକ ପ୍ରୟାସ ସତ୍ତ୍ୱେ ଅଶୋକଙ୍କ ଧମ୍ମ ନୀତି ସଫଳ ହେଲା ନାହିଁ । ଏହା ପଛରେ ଗୋଟାଏ କାରଣ ହେବ ଧମ୍ମକୁ ଗ୍ରହଣୀୟ କରିବା ସକାଶେ ଅଶୋକଙ୍କର ଅତୀଚ୍ଛା । ହୁଏତ ତାଙ୍କ ନିଜ ଦୁର୍ବଳତା ବି କାରଣ ହୋଇପାରେ, କାରଣ ରାଜତ୍ୱର ଉତ୍ତରାର୍ଦ୍ଧରେ ସେ ଧମ୍ମକୁ ନେଇ ଅତ୍ୟନ୍ତ ମୋହାବିଷ୍ଟ ହୋଇପଡ଼ିଥିଲେ । ସାମାଜିକ ଉତ୍ତେଜନା ଓ ସାଂପ୍ରଦାୟିକ ବିଦ୍ୱେଷ ରହିଥିଲା । ହୁଏତ ତହିଁରେ କିଛି ନିୟନ୍ତ୍ରଣ ଆସିଥିବ, ମାତ୍ର ସମସ୍ୟାରୁ ନିବୃତ୍ତି ମିଳିଲା ନାହିଁ । ସେ ଯାହାହେଉ, ଅଶୋକ ସର୍ବଦା ପ୍ରଶଂସାର ପାତ୍ର ହେବେ, କାରଣ ସେ ସାମାଜିକ ନୈତିକତାର ଆବଶ୍ୟକତାକୁ ଚିହ୍ନିପାରିଥିଲେ ଏବଂ ଜଣେ ଚକ୍ରବର୍ତ୍ତୀ ସମ୍ରାଟ ଭାବରେ ତାକୁ ପରିଭାଷିତ ଓ କାର୍ଯ୍ୟାନ୍ୱିତ କରିବାକୁ ଯଥାସାଧ୍ୟ ଉଦ୍ୟମ କରିଥିଲେ । ବୌଦ୍ଧ ପରମ୍ପରାରେ ତାଙ୍କୁ ଚକ୍ରବର୍ତ୍ତୀ ବା ବିଶ୍ୱସମ୍ରାଟ ରୂପେ ବର୍ଣ୍ଣନା କରାଯାଇଛି, ଯିଏ ନିୟମର ଚକ୍ରକୁ ଗତିଶୀଳ କରିବାର ଦାୟିତ୍ୱ ନେଇଥିଲେ । ତାଙ୍କ ଶାସନର ମୂଳବିନ୍ଦୁ ହେଲା ଏହି ନିୟମ ଚକ୍ରର ଗତିଶୀଳତା । ଅଶୋକ ନିଜେ ନିଜକୁ ଚକ୍ରବର୍ତ୍ତୀ ବୋଲି କାହିଁ କେଉଁଠି ଉଲ୍ଲେଖ କରିନାହାନ୍ତି । ସମ୍ଭବତଃ ପ୍ରଚାରସର୍ବସ୍ୱତା କଦାପି ତାଙ୍କ ଜୀବନର ଉଦ୍ଦେଶ୍ୟ ନ ଥିଲା ।

## ସାମ୍ରାଜ୍ୟର ପତନ

ଦୀର୍ଘ 37 ବର୍ଷର ଶାସନକାଳ ପରେ ଅଶୋକ ଖ୍ରୀ.ପୂ. 232 ରେ ପ୍ରାୟ ପ୍ରାଣତ୍ୟାଗ କଲେ । ଶେଷ ମୌର୍ଯ୍ୟ ସମ୍ରାଟ ବୃହଦ୍‌ରଥ ସେନାବାହିନୀର ଅଭିବାଦନ ଗ୍ରହଣ କରିବା ସମୟରେ ସେନାନାୟକ ପୁଷ୍ୟମିତ୍ରଙ୍କ ହାତରେ ନିହତ ହେଲେ । ପୁଷ୍ୟମିତ୍ର ଥିଲେ ଜଣେ ବ୍ରାହ୍ମଣ । ସେ ଶୁଙ୍ଗ ରାଜବଂଶ ପ୍ରତିଷ୍ଠା କଲେ, ଯାହା ମୌର୍ଯ୍ୟବଂଶର ଉତ୍ତରାଧିକାରୀ

ହେଲା । ଭାରତରେ ଆଦ୍ୟ ଇତିହାସରେ ସେନା ଦ୍ୱାରା କ୍ଷମତା ହାସଲ କରିବାର ପରମ୍ପରା କ୍ୱଚିତ୍ ଦେଖିବାକୁ ମିଳେ । ତେଣୁ ପୁଷ୍ୟମିତ୍ରଙ୍କର କ୍ଷମତା ଦଖଲ ଘଟଣାକୁ ରାଜାଙ୍କର ଅଯୋଗ୍ୟତାକୁ ଦର୍ଶାଇବା ପାଇଁ ଏକ ଉଦାହରଣ ରୂପରେ ଦେଖାଯାଏ ।

ମୌର୍ଯ୍ୟ ସାମ୍ରାଜ୍ୟର ପତନର ଯେଉଁ ଛବି ଉଦ୍ଭାସିତ ହୁଏ, ତହିଁରେ 'ମେଟ୍ରୋପୋଲିଟାନ' କ୍ଷେତ୍ରର ନିଜ ସ୍ଥିତି ବଜାୟ ରହେ ଏବଂ 'କୋର୍' କ୍ଷେତ୍ର ସବୁ ସ୍ୱତନ୍ତ୍ର ରାଜ୍ୟ ରୂପରେ ବିକଶିତ ହୁଅନ୍ତି । ଗାଙ୍ଗେୟ ସମତଳ ମୌର୍ଯ୍ୟ ଅଧୀନରେ ରହିଥିଲା, ଯାହା ପରବର୍ତ୍ତୀ ଉତ୍ତରାଧିକାରୀମାନଙ୍କ ରାଜ୍ୟର କେନ୍ଦ୍ର ହେଲା । ଉତ୍ତର-ପଶ୍ଚିମ କ୍ଷେତ୍ର ବେକ୍‌ଟ୍ରୀୟ ଗ୍ରୀକ୍ (Bacterian Greeks)ମାନଙ୍କ ଅଧିକାରଭୁକ୍ତ ହେଲା । ଏହି କ୍ଷେତ୍ର ସୀମାନ୍ତ ଦେଶର ରାଜନୀତି ଦ୍ୱାରା ପ୍ରଭାବିତ ହୋଇ ରହିଲା । ଆଶ୍ଚର୍ଯ୍ୟର କଥା ଯେ, ଏହି ସମୟରେ ପଞ୍ଜାବ ଓ ରାଜସ୍ଥାନର କେତେକ ଗଣସଂଘ ନିଜ ନିଜର କର୍ତ୍ତୃତ୍ୱ ସାବ୍ୟସ୍ତ କଲେ । ମାତ୍ର ଗାଙ୍ଗେୟ ସମତଳର ଗଣସଂଘଗୁଡ଼ିକ ଏତେବେଳକୁ ରାଜତନ୍ତ୍ରରେ ମିଶି ସାରିଥିଲେ । ଏହାକୁ ସାମ୍ରାଜ୍ୟର ପ୍ରଶାସନ ଉପରେ ଏକପ୍ରକାର ଟୀକା କହିଲେ ଅତ୍ୟୁକ୍ତି ହେବ ନାହିଁ । ସାମ୍ରାଜ୍ୟର ଅନ୍ୟ ଭାଗଗୁଡ଼ିକ, ଯାହା ପୂର୍ବରୁ 'କୋର୍' କ୍ଷେତ୍ର ଭାବେ ରହିଥିଲା, ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇପଡ଼ିଲା । ତନ୍ମଧ୍ୟରୁ କେତେକ ରାଜ୍ୟରେ ନୂତନ ରାଜବଂଶର ଅଭ୍ୟୁଦୟ ହେଲା, ତ ଆଉ କେତେକ ରାଜ୍ୟ ପୂର୍ବରୁ ସ୍ଥାପିତ ଥିବା ରାଜବଂଶର ନିୟନ୍ତ୍ରଣରେ ରହିଲା । ଗାନ୍ଧାର, କଳିଙ୍ଗ ଓ ପଶ୍ଚିମ ଦାକ୍ଷିଣାତ୍ୟର କେତେକ ଅଂଶ ଥିଲେ ଏହି ଧରଣର 'କୋର୍' କ୍ଷେତ୍ର । ଉପମହାଦେଶର ବିଭିନ୍ନ ପ୍ରାନ୍ତରେ ବନବାସୀମାନେ ଆଗଭଳି ବାସ କରୁଥିଲେ । ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାନୀୟ ସମାଜଗୁଡ଼ିକର ମୂଳୋତ୍ପାଟନ କରିବାକୁ ଚାହୁଁ ନ ଥିଲା । ଅନ୍ୟପକ୍ଷରେ, ଏହିସବୁ କ୍ଷେତ୍ର ଏକ ସମରୂପ ବିଶିଷ୍ଟ ସଂସ୍କୃତିର ଅବିଚ୍ଛିନ୍ନ ଅଙ୍ଗ ହୋଇ ରହି ନ ଥିଲେ ।

ଅତୀତରେ ତର୍କ ଦିଆଯାଉଥିଲା ଯେ, ମୌର୍ଯ୍ୟ ସାମ୍ରାଜ୍ୟର ପତନ ମୂଳରେ କାରଣ ହେଲା ଅଶୋକଙ୍କ ନୀତି । ସେ ଯେହେତୁ ବୌଦ୍ଧଧର୍ମର ସମର୍ଥନ ନୀତି ଆଚରଣ କରୁଥିଲେ, ବ୍ରାହ୍ମଣମାନେ ଉତ୍‌କ୍ଷିପ୍ତ ହୋଇ ବିଦ୍ରୋହ କଲେ ବୋଲି ତର୍କ ଦିଆଯାଏ । ମାତ୍ର ସେ ତାଙ୍କର ସାଧାରଣ ପ୍ରଶାସନିକ ନୀତିରେ କଦାପି ହିନ୍ଦୁ ଧର୍ମକୁ ବଳି ଦେଇ ବୌଦ୍ଧଧର୍ମର ଉଗ୍ର ପ୍ରଚାର କରୁ ନ ଥିଲେ । ଯଦି ବୌଦ୍ଧଧର୍ମକୁ କିଏ ଗ୍ରହଣ କଲା ବା ନ କଲା, ତହିଁରେ କିଛି ବାଧ୍ୟବାଧକତା ନ ଥିଲା । ଉଭୟ ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ସମ୍ମାନ ଦେବାକୁ ସେ ବାରମ୍ବାର ନିବେଦନ କରୁଥିଲେ । ପୁଣି ସେ ସମୟରେ ବୈଦିକ ବ୍ରାହ୍ମଣ୍ୟ ଧର୍ମର ଭାରତୀୟ ଉପଖଣ୍ଡରେ ବହୁଳ ପ୍ରଚଳନ ଥିବାର ଆମ ପାଖରେ ଠୋସ ପ୍ରମାଣ ନାହିଁ । ସେତେବେଳେ ଏହା

ଅଳ୍ପସଂଖ୍ୟକଙ୍କ ଧର୍ମ ଥିଲା, ଯଦିଓ କାଳକ୍ରମେ ଏହି ଧର୍ମର ଶକ୍ତି ବୃଦ୍ଧି ଘଟୁଥିଲା । ଅଶୋକଙ୍କ ପୃଷ୍ଠପୋଷକତା ଲାଭକରି ବୌଦ୍ଧଧର୍ମ ଅବଶ୍ୟ ସାମ୍ରାଜ୍ୟର କେତେକ ଅଞ୍ଚଳରେ ପ୍ରତିଷ୍ଠା ଲାଭ କଲା । ମାତ୍ର ବୌଦ୍ଧଧର୍ମର ବହୁଳ ପ୍ରସାର ଘଟିଲା, ଯେତେବେଳେ ବଣିକ ଗୋଷ୍ଠୀ ଉତ୍ତର ମୌର୍ଯ୍ୟକାଳରେ ଏହାର ନୂତନ ପୃଷ୍ଠପୋଷକ ସାଜିଲେ । ଆହୁରି କୁହାଯାଏ ଯେ, ଅଶୋକ ଅହିଂସା ଉପରେ ଅଧିକ ବଳ ଦେବାରୁ ମୌର୍ଯ୍ୟ ସେନା ଦୁର୍ବଳ ହୋଇପଡ଼ିଲା, ଯାହାଫଳରେ ମୌର୍ଯ୍ୟ ସୀମାରେ ଶତ୍ରୁମାନେ ସହଜରେ ଆକ୍ରମଣ କରିବାକୁ ଲାଗିଲେ । ମାତ୍ର ଏଥିରେ ଦ୍ୱିରୁକ୍ତି ନାହିଁ ଯେ, ଅହିଂସାର ପ୍ରଚାର କରି ଅଶୋକ ଅନ୍ୟ ଦାୟିତ୍ୱଗୁଡ଼ିକୁ ଅଣଦେଖା କରି ନ ଥିଲେ । ଏହାର ପ୍ରମାଣ ମିଳେ ନିଜ ପୁତ୍ର ଓ ପୌତ୍ରମାନଙ୍କୁ ଅଶୋକ ଦେଇଥିବା ଉପଦେଶରେ । ସେଥିରେ ସେ ଅତି ଆବଶ୍ୟକ ପଡ଼ିଲେ ହିଂସାର ପ୍ରୟୋଗ କରିବାକୁ ପରାମର୍ଶ ଦେଇଛନ୍ତି । ରାଜାଦେଶରୁ ଜଣାପଡ଼େ ଯେ ସେ ଅହିଂସା ନୀତି ଆଚରଣ କରି ରାଜ୍ୟର ସାମରିକ ଶକ୍ତିକୁ ହ୍ରାସ କରିବାକୁ କେବେ ସଚେତ ମନରେ ପ୍ରୟାସ କରି ନ ଥିଲେ ।

ଏହାର ଅର୍ଥ ହେଲା, ମୌର୍ଯ୍ୟ ସାମ୍ରାଜ୍ୟର ପତନର କାରଣ ଆମକୁ ଅନ୍ୟଠାରେ ଖୋଜିବାକୁ ପଡ଼ିବ । ମୌର୍ଯ୍ୟ ଅର୍ଥବ୍ୟବସ୍ଥା ଘୋର ଚାପର ସମ୍ମୁଖୀନ ହେଉଥିଲା ବୋଲି କୁହାଯାଏ । ଯଦିଓ ଏହି ଦିଗରେ ଆହୁରି ଗବେଷଣାର ଆବଶ୍ୟକତା ରହିଛି, ତଥାପି ପତନର ସମ୍ଭାବିତ କାରଣ ସେଇଠି ବୋଲି ମନେହୁଏ । ସେନାର ଖର୍ଚ୍ଚ, ଅମଲାତନ୍ତ୍ରର ଉଚ୍ଚ ସ୍ତରରେ ଥିବା ଅଧିକାରୀମାନଙ୍କର ବେତନ ଖର୍ଚ୍ଚ, ପୁଣି ନୂତନ ବସତି ସ୍ଥାପନ ପାଇଁ ଖର୍ଚ୍ଚ ଆଦି ରାଜକୋଷକୁ ନିଶ୍ଚିତରୂପେ ତଳିତଳାନ୍ତ କରିଦେଇଥିବ । ତେଣୁ ସର୍ବଦା ଅଧିକରୁ ଅଧିକ ରାଜସ୍ୱ ପାଇଁ ରାଜ୍ୟର ପ୍ରୟାସ ରହୁଥିବ । ଅବଶ୍ୟ ମୌର୍ଯ୍ୟ ନଗରୀଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରମାଣ ମିଳେ ଯେ ପ୍ରାରମ୍ଭିକ ସ୍ତରରେ ଆର୍ଥିକ ବିକାଶ ଘଟୁଥିଲା । ମାତ୍ର ମୌର୍ଯ୍ୟ କାଳରେ ଦ୍ୱିତୀୟାର୍ଦ୍ଧରେ ବିପରୀତ ଛବିର ଅବତାରଣା ହେଲା, କାରଣ ରୌପ୍ୟମୁଦ୍ରାର ଅବମୂଲ୍ୟନ ଦେଖିବାକୁ ମିଳିଲା । ଏହି କାରଣରୁ ଅର୍ଥବ୍ୟବସ୍ଥା ଉପରେ ଘୋର ଚାପ ପଡ଼ିଲା । ରାଜସ୍ୱର ସ୍ୱାଭାବିକ ସ୍ରୋତ ମୌର୍ଯ୍ୟ ସାମ୍ରାଜ୍ୟର ବ୍ୟୟ ବହନ ପାଇଁ ଯଥେଷ୍ଟ ହେଲା ନାହିଁ । ମୁଦ୍ରାର କାଳାନୁକ୍ରମିକ ଅନିଶ୍ଚିତତା ରହିଥିଲା । ହେଲେ କେବଳ ମୁଦ୍ରାର ଅବମୂଲ୍ୟନ ଯୋଗୁଁ ଘୋର ଆର୍ଥିକ ସଂକଟ ଦେଖାଦେଇଥିବ ବୋଲି କୁହାଯାଇ ନ ପାରେ । ଆର୍ଥିକ ଆବଶ୍ୟକତା ସମୟରେ ଦୁଇଟି ଫସଲ ଚାଷ କରିବାକୁ କୌଟିଲ୍ୟ 'ଅର୍ଥଶାସ୍ତ୍ର'ରେ ପରାମର୍ଶ ଦେଇଛନ୍ତି । ମାତ୍ର କେତେକ ଅଞ୍ଚଳରେ ଏହା ମୌର୍ଯ୍ୟମାନଙ୍କ ପୂର୍ବରୁ ପ୍ରଚଳିତ ଥିବାର ପ୍ରମାଣ ରହିଛି ।

ମୌର୍ଯ୍ୟ ସାମ୍ରାଜ୍ୟର ପତନ ପାଇଁ ଅନ୍ୟ ଆର୍ଥିକ କାରଣଗୁଡ଼ିକ ସିଧା ସିଧା ଦାୟୀ ଥିଲେ । କୌଟିଲ୍ୟ ପ୍ରାୟ ସମସ୍ତ କାର୍ଯ୍ୟକଳାପ ଉପରେ କର ବସିବା କଥା ବୋଲି କହିଛନ୍ତି । ଏଥିରୁ ଆର୍ଥିକ ସଂକଟ ରହିଥିବା କଥା ଅନୁମାନ କରାଯାଏ । ଯଦିଓ ଗାଙ୍ଗେୟ ସମତଳରେ କୃଷି ବ୍ୟବସ୍ଥା ପ୍ରଚଳିତ ଥିଲା, ତଥାପି ସମଗ୍ର ସାମ୍ରାଜ୍ୟରେ ପ୍ରଚଳିତ ଆର୍ଥିକ ପ୍ରଣାଳୀରେ ବିବିଧତା ରହିଥିଲା । ଏଠାରେ ସୂଚନାଯୋଗ୍ୟ ଯେ, କୃଷିଯୋଗ୍ୟ ଜମିର ପରିମାଣ ବୃଦ୍ଧି ପାଉଥିବା ସତ୍ତ୍ୱେ ପୂର୍ବ ଭାରତରେ ଦୁର୍ଭିକ୍ଷ ପଡ଼ିଥିବାର ଉଲ୍ଲେଖ ରହିଛି । ଏହାର ଅର୍ଥ ହେଲା, ଯୋଗାଣ ବ୍ୟବସ୍ଥା ପର୍ଯ୍ୟାପ୍ତ ନ ଥିଲା । ଏହିପ୍ରକାର ବିବିଧତା ଯୋଗୁଁ ହୁଏତ ରାଜ୍ୟରେ ଆର୍ଥିକ ସନ୍ତୁଳନ ସ୍ଥାପିତ ହୋଇପାରୁ ନ ଥିଲା । କୃଷିପ୍ରଧାନ ପ୍ରଦେଶରୁ ପ୍ରାପ୍ତ ରାଜସ୍ୱ ସମଗ୍ର ସାମ୍ରାଜ୍ୟର ଖର୍ଚ୍ଚ ବହନ ପାଇଁ ଯଥେଷ୍ଟ ହେଉ ନ ଥିଲା । ମନେହୁଏ, ଆବଶ୍ୟକ ପଡ଼ିଲେ ମୌର୍ଯ୍ୟ ପ୍ରଶାସନ ରାଜସ୍ୱ ଦୋହନ କରୁଥିଲା ସିନା, ଅର୍ଥବ୍ୟବସ୍ଥାକୁ ଯଥେଷ୍ଟ ମାତ୍ରାରେ ପୁନର୍ଗଠିତ କରିପାରି ନ ଥିଲା । ଫଳରେ ଅର୍ଥବ୍ୟବସ୍ଥା ଦୀର୍ଘକାଳୀନ ଭିତ୍ତିରେ ସାମ୍ରାଜ୍ୟକୁ ସହଯୋଗ କରିପାରୁ ନ ଥିଲା । ସାମ୍ରାଜ୍ୟର 'କୋର୍' ପ୍ରଦେଶରେ, ଯଥା- ଗାନ୍ଧାର ଓ କଳିଙ୍ଗରେ, ଆର୍ଥିକ ବିକାଶ ଘଟିଲା, ଯାହାଫଳରେ ସେଠାରେ ନୂତନ ରାଜ୍ୟର ଅଭ୍ୟୁଦୟ ହେଲା । ଉକ୍ତ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ଓ ମୌର୍ଯ୍ୟ ସାମ୍ରାଜ୍ୟର ପତନ ଏକ ସମୟରେ ସଂଘଟିତ ହେଲା । ସେଥିପାଇଁ ଯୁକ୍ତି କରାଯାଏ ଯେ, ଏହି ସମୟରେ ମୌର୍ଯ୍ୟ ନିୟନ୍ତ୍ରଣ ହ୍ରାସ ପାଇଲା ସତ, ତା' ସହିତ ସ୍ଥାନୀୟ ଆର୍ଥିକ ବିକାଶ ମଧ୍ୟ ଦେଖିବାକୁ ମିଳିଲା ।

ଯଦି ବିଶ୍ୱର ଅନ୍ୟାନ୍ୟ ସାମ୍ରାଜ୍ୟ ସହିତ ତୁଳନା କରାଯାଏ, ମୌର୍ଯ୍ୟ ସାମ୍ରାଜ୍ୟ ଥିଲା ସ୍ୱଳ୍ପାୟୁ । ସମ୍ଭବତଃ ବ୍ୟବସ୍ଥାର ତୃଣମୂଳର ଚରିତ୍ରଗୁଡ଼ିକ ଏକ ଦୀର୍ଘସ୍ଥାୟୀ ସାମ୍ରାଜ୍ୟ ପାଇଁ ଅନୁକୂଳ ନ ଥିଲା । ଏକ ସାମ୍ରାଜ୍ୟିକ ଭିତ୍ତି ପାଇଁ ଲୋଡ଼ା ଏକ ସୁସଂଗଠିତ ପ୍ରଶାସନ । ତହିଁରେ ନିରନ୍ତରତା ରଖିବା ସକାଶେ କାରକମାନ ରହିଥିବା କଥା । ମୌର୍ଯ୍ୟ ଅମଲାତନ୍ତ୍ର କେନ୍ଦ୍ରୀକୃତ (Centralised) ଥିଲା । ଶାସକ ବା ରାଜା ଥିଲେ ତା'ର ମୁଖ୍ୟ, ଯାହାଙ୍କ ପ୍ରତି ସମସ୍ତ ସମ୍ବନ୍ଧିତ ବ୍ୟକ୍ତି ଭକ୍ତି ରଖୁଥିଲେ । ନୂଆ ରାଜା ଆସୀନ ହେବା ଅର୍ଥ ରାଜଭକ୍ତିରେ ପୁନର୍ବିନ୍ୟାସ ହେବା । ତା'ଠାରୁ ଦୁଃସ୍ଥିତି ହେଲା ଯେ ରାଜା ବଦଳିବା ସାଙ୍ଗରେ ନୂଆ ଅଧିକାରୀଙ୍କର ନିଯୁକ୍ତି ହେବା । ନିଯୁକ୍ତି ବ୍ୟବସ୍ଥା ମନମୁଖୀ ଥିଲା । ସ୍ଥାନୀୟ ପ୍ରଶାସକମାନେ ନିଜ ନିଜ ଇଚ୍ଛାରେ ଅଧିକାରୀ ନିଯୁକ୍ତ କରୁଥିଲେ । ସବୁ ସ୍ତରରେ ଏହିଭଳି ମନମୁଖୀ ଭାବେ ନିଯୁକ୍ତି ହେଉଥିବ ବୋଲି ଅନୁମାନ କରାଯାଏ । ଯଦି ନିଯୁକ୍ତି ପାଇଁ କିଛି ସୁଦୃଢ଼ ଉପାୟ ରହିଥାନ୍ତା ଯାହାଫଳରେ କି କେତୋଟି ନିର୍ଦ୍ଦିଷ୍ଟ ସାମାଜିକ ସମୂହ ଓ ସ୍ଥାନୀୟ ଗୋଷ୍ଠୀର

ପ୍ରଶାସନ ଉପରେ ଥିବା କର୍ତ୍ତୃତ୍ୱ ହ୍ରାସ ପାଇଥାନ୍ତା, ତାହେଲେ ସ୍ଥିତି ହୁଏତ ସୁଧୁରି ପାରିଥାନ୍ତା । ଅନୁଷ୍ଠାନର ନିର୍ମାଣ କରିବାକୁ ହେଲେ ବ୍ୟକ୍ତିଗତ ଇଚ୍ଛା ଓ ଆବଶ୍ୟକତାକୁ ଦୂରରେ ରଖିବାକୁ ପଡ଼େ ଏବଂ ସାମାଜିକ ଓ ନାଗରିକ ସ୍ୱାର୍ଥକୁ ଅଗ୍ରାଧିକାର ଦେବାକୁ ପଡ଼େ । ମାତ୍ର ମୌର୍ଯ୍ୟ କାଳରେ ତା'ର ଅଭାବ ଦେଖିବାକୁ ମିଳିଥିଲା ।

ମୌର୍ଯ୍ୟ ଶାସନରେ କୌଣସି ପ୍ରତିନିଧିମୂଳକ ଅନୁଷ୍ଠାନ ନ ଥିଲା । ଫଳରେ ଲୋକଙ୍କ ମତ ମିଳିପାରୁ ନ ଥିଲା । ଏହା ସମସ୍ୟାକୁ ଉଗ୍ରତର କଲା । ଲୋକମତ ଜାଣିବା ପାଇଁ ଅନ୍ୟ ପ୍ରାଚୀନ ରାଜାମାନଙ୍କ ଭଳି ମୌର୍ଯ୍ୟମାନେ ଗୁପ୍ତଚର ବ୍ୟବସ୍ଥା ଉପରେ ନିର୍ଭର କରୁଥିଲେ । ଉଭୟ ରାଜନୈତିକ ଏବଂ ପ୍ରଶାସନିକ କାର୍ଯ୍ୟରେ ଏହା ନାନା କିସମର ସମସ୍ୟା ସୃଷ୍ଟି କରିଥିବ । 'ଅର୍ଥଶାସ୍ତ୍ର'ର ବିଚାରଧାରା ପ୍ରତିନିଧିମୂଳକ ଅବଧାରଣାର ପକ୍ଷଧର ନ ଥିଲା । ଏପରିକି ସୀମିତ ଆକାରର ପ୍ରତିନିଧି ବ୍ୟବସ୍ଥାକୁ ମଧ୍ୟ ଏହା ସମର୍ଥନ କରୁ ନ ଥିଲା । ଅନେକ ଲୋକ ମିଶି ନିଷ୍ପତ୍ତି ନେବାର ପରମ୍ପରାକୁ 'ଅର୍ଥଶାସ୍ତ୍ର'ରେ ପ୍ରୋତ୍ସାହିତ କରାଯାଇ ନ ଥିଲା । ବିଭେଦ ସୃଷ୍ଟି କରିବାପାଇଁ ଯେତେ ସବୁ ପଦ୍ଧତିର ଏଥିରେ ଉଲ୍ଲେଖ ଅଛି ଏବଂ ଗଣସଂଘକୁ ନିଃଶେଷ କରିଦେବାକୁ ଯେମିତି ପରାମର୍ଶ ରହିଛି, ତାକୁ ଅନୁଶୀଳନ କଲେ ଅର୍ଥଶାସ୍ତ୍ରର ଗଣତନ୍ତ୍ର ବିରୋଧୀ ସ୍ୱଭାବ ସ୍ପଷ୍ଟ ଜଣାପଡ଼େ । 'ଗଣସଂଘ'କୁ କେବଳ ଜୟ କରାଯିବା କଥା ନୁହେଁ, ଏକ ବ୍ୟବସ୍ଥା ଭାବରେ ତାକୁ ନିର୍ମୂଳ କରି ରାଜ୍ୟତନ୍ତ୍ରରେ ସଂଲଗ୍ନ କରାଯିବା କଥା ବୋଲି କୁହାଯାଇଛି । ଅବଶ୍ୟ 'ଗଣସଂଘ' ମଧ୍ୟ ଆଦର୍ଶ ପ୍ରତିନିଧିମୂଳକ ବ୍ୟବସ୍ଥା ନ ଥିଲା । ମାତ୍ର ରାଜ୍ୟତନ୍ତ୍ର ତୁଳନାରେ ଏଥିରେ କ୍ଷମତାର ବ୍ୟାପକ ବିକେନ୍ଦ୍ରୀକରଣ ହୋଇଥିଲା ।

ସେତେବେଳେ ରାଜନୈତିକ ନିଷ୍ଠାର ଅର୍ଥ ହେଲା ରାଜ୍ୟ ପ୍ରତି ନିଷ୍ଠା ଏବଂ ରାଜ୍ୟର ଅର୍ଥ ହେଲା ରାଜା ଓ ସରକାର । ରାଜତାନ୍ତ୍ରିକ ବ୍ୟବସ୍ଥା ଧାର୍ମିକ ରଢ଼ିବାଦ ଉପରେ ଅଧିକରୁ ଅଧିକ ନିର୍ଭର କରୁଥିଲା ଏବଂ ରାଜ୍ୟର ଅବଧାରଣାକୁ ଯଥାସମ୍ଭବ ଉହ୍ୟ ରଖୁଥିଲା । ତା' ପରିବର୍ତ୍ତେ ସାମାଜିକ ବ୍ୟବସ୍ଥା ପ୍ରତି ନିଷ୍ଠା ରଖିବାକୁ ଲୋକଙ୍କୁ ପ୍ରରୋଚିତ କରୁଥିଲା । ଜାତି ଓ ରାଜନୀତି ମଧ୍ୟରେ ଆତ୍ମନିର୍ଭରତା ଯୋଗୁଁ କାଳକ୍ରମେ ଜାତିକୁ ରାଜନୈତିକ ଅନୁଷ୍ଠାନ ତୁଳନାରେ ଅଧିକ ମର୍ଯ୍ୟାଦା ପ୍ରାପ୍ତ ହେଲା । ଏହାକୁ ଗୋଟାଏ ସୀମା ପର୍ଯ୍ୟନ୍ତ ରାଜତ୍ୱ ଏବଂ ରାଜାର କର୍ତ୍ତବ୍ୟ ପ୍ରତି ବଦଳୁଥିବା ଦୃଷ୍ଟିକୋଣରେ ଅନୁମାନ କରିହେବ । ପ୍ରାରମ୍ଭରେ ବ୍ରାହ୍ମଣ୍ୟ ସ୍ରୋତସାମଗ୍ରୀରେ ରାଜାଙ୍କ ଦେବତ୍ୱକୁ ମହତ୍ତ୍ୱ ଦିଆଯାଇଥିଲା । ମାତ୍ର ପରବର୍ତ୍ତୀ ସମୟରେ ବୌଦ୍ଧଗ୍ରନ୍ଥ ଏବଂ ଜୈନଗ୍ରନ୍ଥମାନଙ୍କରେ ସାମାଜିକ ଚୁକ୍ତିର ଫଳସ୍ୱରୂପ ରାଜ୍ୟର ଉତ୍ପତ୍ତି ହେଲା ବୋଲି ନୂଆ ଅବଧାରଣା ଦିଆଗଲା । ରାଜ୍ୟ ପାଇଁ ନିୟନ୍ତ୍ରଣକାରୀ ଏକ କ୍ଷମତା

କେନ୍ଦ୍ରର ଆବଶ୍ୟକତା ରହିଛି ବୋଲି କହିବାକୁ ପରେ ବ୍ରାହ୍ମଣ୍ୟ ସ୍ରୋତ ସାମଗ୍ରୀରେ ମଧ୍ୟ ସାମାଜିକ ଚୁକ୍ତିର ଅବଧାରଣାକୁ ମହତ୍ତ୍ୱ ଦିଆଗଲା । ଅର୍ଥାତ୍, ରାଜା ହେଲେ ଦେବ ପ୍ରତିନିଧି । ମାତ୍ର ତାଙ୍କ ମର୍ଯ୍ୟାଦା ଓ କ୍ଷମତାର ଆଧାର ହେଲା ପ୍ରଜା ଓ ଈଶ୍ୱର ମଧ୍ୟରେ ସଂଘଟିତ ହୋଇଥିବା ଏକ ଚୁକ୍ତିନାମା । ପୂର୍ବର ମତ୍ସ୍ୟକନ୍ୟାର ସିଦ୍ଧାନ୍ତ ଦିଆଯାଇଥିଲା, ଯାହା ଅରାଜକତାର ଦ୍ୟୋତକ ଥିଲା । ରାଜତନ୍ତ୍ରର ଅନୁପସ୍ଥିତିରେ ସେହି ଧରଣର ଅରାଜକତା ଅବଶ୍ୟମ୍ଭାବୀ ବୋଲି ଧାରଣା ସୃଷ୍ଟି କରାଯାଇଥିଲା ।

'ଅର୍ଥଶାସ୍ତ୍ର'ରେ 'ସପ୍ତାଙ୍ଗ' ସିଦ୍ଧାନ୍ତ ମାଧ୍ୟମରେ ରାଜ୍ୟର ବିଭିନ୍ନ ଉପାଦାନ ସମ୍ବନ୍ଧରେ ଅଲୋଚନା କରାଯାଇଛି । ସେ ଅନୁଯାୟୀ, ରାଜ୍ୟର ସାତଗୋଟି ଉପାଦାନ ହେଲା : ରାଜା, କ୍ଷେତ୍ର, ପ୍ରଶାସନ, ରାଜକୋଷ, ରାଜଧାନୀ, ସେନା ଓ ଦଣ୍ଡାଧିକାରୀ ମାଧ୍ୟମରେ ପ୍ରଦର୍ଶିତ ଶକ୍ତି ଏବଂ ମିତ୍ରଶକ୍ତି । ବ୍ରାହ୍ମଣ୍ୟ ରଚନାମାନଙ୍କରେ ସମୟକ୍ରମେ ଦୁଇଟି ଉପାଦାନକୁ ରାଜ୍ୟର ପ୍ରତିଷ୍ଠା ପାଇଁ ଅତ୍ୟାବଶ୍ୟକ ବୋଲି ମହତ୍ତ୍ୱ ଦିଆଗଲା । ପ୍ରଥମଟି ହେଲା ଦଣ୍ଡ ଏବଂ ଦ୍ୱିତୀୟଟି ହେଲା ବର୍ଣ୍ଣ-ଆଶ୍ରମ-ଧର୍ମ । ଦଣ୍ଡ ବଳରେ ରାଜ୍ୟ ଦଣ୍ଡିବାର ଶକ୍ତି ପାଏ ଏବଂ ନୀତିନିୟମଗୁଡ଼ିକୁ କାର୍ଯ୍ୟାନ୍ୱିତ କରିବାପାଇଁ ସାମର୍ଥ୍ୟ ପାଏ । ଦ୍ୱିତୀୟ ଉପାଦାନ ବର୍ଣ୍ଣ ଅନୁସାରେ ସାମାଜିକ ଏବଂ କର୍ମକାଣ୍ଡୀ ଦାୟିତ୍ୱ ପୂରଣ କରିବାକୁ କହେ । କାଳକ୍ରମେ ବର୍ଣ୍ଣାଶ୍ରମ ରାଜ୍ୟ ଉପରେ ଭାରୀ ହେବାକୁ ବସିଲା । ବର୍ଣ୍ଣାଶ୍ରମ ବିଚାର ଅନୁଯାୟୀ, ରାଜାର କର୍ତ୍ତବ୍ୟ ହେଲା ପ୍ରଜାର ରକ୍ଷା କରିବା ଏବଂ ବର୍ଣ୍ଣାଶ୍ରମ ଧର୍ମର ପାଳନ କରିବା । ବର୍ଣ୍ଣାଶ୍ରମ ଧର୍ମର ଅର୍ଥ ହେଲା ଧର୍ମଶାସ୍ତ୍ରରେ ବର୍ଣ୍ଣିତ ସାମାଜିକ କର୍ତ୍ତବ୍ୟ ଓ ଦାୟିତ୍ୱକୁ ସ୍ୱୀକୃତି ପ୍ରଦାନ କରିବା । ବୌଦ୍ଧଗ୍ରନ୍ଥରେ ଏ ସମ୍ବନ୍ଧରେ ଏକ ଭିନ୍ନ ପ୍ରକାରର ବିଚାର ରହିଥିଲା । ସେ ଅନୁଯାୟୀ, ଚକ୍ରବର୍ତ୍ତୀ ରାଜାଙ୍କୁ ନ୍ୟାୟସଙ୍ଗତ ଉପାୟରେ ଶାସନ କରିବା ଉଚିତ । ଅର୍ଥାତ୍ ବର୍ଣ୍ଣ ନିର୍ବିଶେଷରେ ସମସ୍ତ ପ୍ରଜାଜନଙ୍କ କଲ୍ୟାଣ ସୁନିଶ୍ଚିତ କରିବା ହେଲା ରାଜାର ଧର୍ମ । ଯଦି ରାଜା ସମସ୍ତଙ୍କ ହିତ ସୁନିଶ୍ଚିତ କରନ୍ତି ତେବେ ବିଧି ଚକ୍ର ସ୍ୱତଃ ଗତିମାନ ହେବ । ଅନ୍ୟାୟପୂର୍ଣ୍ଣ କର୍ମ କଲେ ବିଧିଚକ୍ରର ଗତିରୋଧ ହେବ ଏବଂ ଚକ୍ର ଧୂଳିସାତ୍ ହେବ । ବ୍ରାହ୍ମଣ୍ୟ ରଚନାରେ ଥିବା ରାଜନୈତିକ ସିଦ୍ଧାନ୍ତ ଅନୁସାରେ, ଅନୁଭବ ସ୍ତରରେ ସର୍ବୋଚ୍ଚ କର୍ତ୍ତୃତ୍ୱଧାରୀ ହେଲେ ରାଜା ଏବଂ ଅମୂର୍ତ୍ତ ସ୍ତରରେ ସର୍ବୋଚ୍ଚ କର୍ତ୍ତା ହେଲା ଧର୍ମ । ଧର୍ମ ଅତି ଧୀର ମନ୍ଥର ବେଗରେ ପରିବର୍ତ୍ତିତ ହୁଏ ଏବଂ ପରିବର୍ତ୍ତନର ବେଗ ଏତେ ମନ୍ଥର ଯେ ତାକୁ ଦେଖିହୁଏ ନାହିଁ । ଏହାଦ୍ୱାରା ତା' ପ୍ରତି ନିଷ୍ଠା ଅବାଧ ରୂପରେ ତିଷ୍ଠି ରହେ । ଦୈବୀ ସ୍ରୋତରୁ ଧର୍ମକୁ ସ୍ୱୀକୃତି ମିଳେ, ଯାହାଫଳରେ ଧର୍ମର ରକ୍ଷା ଏକ ପୁଣ୍ୟ ଓ ଅପରିହାର୍ଯ୍ୟ କର୍ତ୍ତବ୍ୟ ହୁଏ ।

ମୌର୍ଯ୍ୟ ଯୁଗର ଅନେକ ଉପାଦାନ ଥିଲା, ଯାହା ଇତିହାସ ଦୃଷ୍ଟିରୁ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଅନେକ ଗତିବିଧି ଉପରେ ରାଜ୍ୟ ସ୍ୱୟଂ ନିୟନ୍ତ୍ରଣ ରଖିଥିଲା । ରାଜସ୍ୱ ଅସୁଲି ଉପରେ ରାଜ୍ୟର ପରିଚାଳନା ନିର୍ଭର କରୁଥିଲା । ତେଣୁ ନିୟନ୍ତ୍ରଣର ଅଭିକର୍ତ୍ତା ଭାବରେ ରାଜ୍ୟର ମହତ୍ତ୍ୱ ରହୁଥିଲା । ନିୟନ୍ତ୍ରଣର ମାଧ୍ୟମ ଥିଲେ ପ୍ରଶାସନିକ ଅଧିକାରୀମାନେ । ସେମାନେ ରାଜସ୍ୱର ସ୍ରୋତଗୁଡ଼ିକୁ ଠିକଣା କରୁଥିଲେ ଏବଂ କର ଅସୁଲି କରୁଥିଲେ । ରାଜ୍ୟ ଓ କୃଷକ ବା କାରିଗର ମଧ୍ୟରେ ଯେଉଁ ସମ୍ବନ୍ଧ ରହିଥିଲା, ତହିଁରେ ଅମଲାତନ୍ତ୍ରକୁ ବାଦ୍‌ଦେଲେ ଅନ୍ୟ କେହି ମଧ୍ୟସ୍ଥି ନ ଥିଲେ । କୃଷକ ଥିଲା ମୋଟାମୋଟି ଭାବେ ସ୍ୱାଧୀନ, ମାତ୍ର ରାଜ୍ୟର ନିୟନ୍ତ୍ରଣାଧୀନ ଜମିରେ ତାକୁ ଶ୍ରମ କରିବାକୁ ପଡୁଥିଲା । ରାଜ୍ୟ କୃଷି ଜମିର ସଂପ୍ରସାରଣ ଲାଗି ପ୍ରାରମ୍ଭିକ ପଦକ୍ଷେପ ନେଉଥିଲା । କୃଷକର ଅସନ୍ତୋଷ ଦେଶାନ୍ତରଣ ରୂପରେ ପ୍ରାୟତଃ ଅଭିବ୍ୟକ୍ତ ହେଉଥିଲା । ରାଜ୍ୟକୁ ନୂଆ ବସତି ସ୍ଥାପନ ପାଇଁ ମଧ୍ୟ ପଦକ୍ଷେପ ନେବାକୁ ପରାମର୍ଶ ମିଳୁଥିଲା । ବିବିଧ କିସମର ବିନିମୟ ବ୍ୟବସ୍ଥା ରହିଥିଲା । ମୋହର ମୁଦ୍ରାର ଭୂମିକା ସୁସ୍ପଷ୍ଟ ଥିଲା । ବାଣିଜ୍ୟର ସମ୍ଭାବନା ସବୁକୁ ବ୍ୟବହାର ଉପଯୋଗୀ କରିବା ଆରମ୍ଭ ହୋଇଥିଲା । ଅଶୋକଙ୍କ ରାଜାଦେଶରେ ବର୍ଣ୍ଣର ଉଲ୍ଲେଖ ନ ଥିବାରୁ, ମନେହୁଏ ଅନ୍ୟାନ୍ୟ ସାମାଜିକ ବର୍ଗ, ଯଥା- ପରିବାର, କୁଳ ଓ ସଂପ୍ରଦାୟର ହୁଏତ ସେତେବେଳେ ଅଧିକ ମହତ୍ତ୍ୱ ରହିଥିଲା । ବର୍ଣ୍ଣ ହୁଏତ ଥାଇପାରେ, ମାତ୍ର ସାମାଜିକ ପରିଦୃଶ୍ୟରେ ଜାତିର ଅଧିକ ଗୁରୁତ୍ୱ ରହିଥିବ । ଉଦାହରଣ ସ୍ୱରୂପ, ବ୍ରାହ୍ମଣମାନଙ୍କ ସନ୍ଦର୍ଭରେ 'ବର୍ଣ୍ଣ'ର ଉଲ୍ଲେଖ ରହୁଥିବ । ଅନେକ ଅସନାତନୀ ସଂପ୍ରଦାୟ ସେତେବେଳେ ରହିଥିଲେ ଏବଂ ସେମାନଙ୍କୁ ପୃଷ୍ଠପୋଷକତା ମଧ୍ୟ ମିଳୁଥିଲା । ଏହାର ସମ୍ବନ୍ଧ ଜାତି ପ୍ରଶ୍ନ ସହିତ ରହିଥିଲା ବୋଲି ଧାରଣା ସୃଷ୍ଟି ହୁଏ । ଉତ୍ତର-ମୌର୍ଯ୍ୟ କାଳରେ ଏହିସବୁ ଉପାଦାନରେ କ୍ରମ ପରିବର୍ତ୍ତନ ଦେଖିବାକୁ ମିଳିଲା । ପ୍ରଥମ ସହସ୍ରାବ୍ଦୀର ମଧ୍ୟ-ସମୟକୁ ଏସବୁ ଯାଇ ନୂଆ ସଂରଚନାମାନ ଦେଖିବାକୁ ମିଳିଲା, ଯାହା ଐତିହାସିକ ଗତିବିଧିକୁ ଏକ ଦିଗ୍‌ଦର୍ଶନ ପ୍ରଦାନ କଲା ।

ଖ୍ରୀ.ପୂ. ଦ୍ୱିତୀୟ ସହସ୍ରାବ୍ଦୀର ଆରମ୍ଭ ବେଳକୁ ଭାରତରେ ସାମ୍ରାଜ୍ୟିକ ଶାସନର ପ୍ରଥମ ଅନୁଭୂତି ଶେଷ ପାଇଗଲା । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ଅନ୍ୟ ସବୁ ଅନୁଭୂତି ଆସିଲା । ମାତ୍ର ପରିବେଶ ଆଉ ପୂର୍ବଭଳି ନ ଥିଲା : ମୌର୍ଯ୍ୟ ରାଜନୀତିକ ବ୍ୟବସ୍ଥାରେ ଯେଉଁ ମାତ୍ରାରେ କେନ୍ଦ୍ରୀୟ ନିୟନ୍ତ୍ରଣ ଆଣିବା ପାଇଁ ଉଦ୍ୟମ କରାଯାଇଥିଲା, ବିଶେଷକରି 'ମେଟ୍ରୋପୋଲିଟାନ' କ୍ଷେତ୍ରରେ, ତାହା ପରବର୍ତ୍ତୀ ସମୟରେ ଅଧିକରୁ ଅଧିକ କାଠିକର ହୋଇପଡ଼ିଲା, କାରଣଅଧିକାରୀ ଓ ଭୂସ୍ୱାମୀମାନଙ୍କ ହାତରେ ରାଜା ଅଧିକାର ଦେଉଥିଲେ ଏବଂ ସେମାନେ ରାଜା ଓ ପ୍ରଜା ମଧ୍ୟରେ ଦଲାଲ ଭଳି କାର୍ଯ୍ୟ କରିବା ଆରମ୍ଭ କଲେ ।

ସାମ୍ରାଜ୍ୟର ଲାଳସା ଲୋପ ପାଇଲା ନାହିଁ ସିନା, ହେଲେ ଏହି ପ୍ରଥମ ସାମ୍ରାଜ୍ୟ ପଛରେ ଯେଉଁ ପ୍ରବଳ ମାତ୍ରାରେ ପ୍ରେରଣା ଓ ତୀବ୍ରତା ରହିଥିଲା, ତାହା ଆଉ ଦେଖିବାକୁ ମିଳିଲା ନାହିଁ । କିନ୍ତୁ ତା'ଠାରୁ ବଡ଼ କଥା ହେଲା ଯେ, ଏହି ପ୍ରଥମ ସାମ୍ରାଜ୍ୟରେ ଅଶୋକ ଜଣେ ଅନନ୍ୟ ରାଜା ରୂପେ ପ୍ରତୀୟମାନ ହୁଅନ୍ତି । ସାମାଜିକ ନୈତିକତା ନିମିତ୍ତ ତାଙ୍କର ଦୃଢ଼ ପ୍ରତିବଦ୍ଧତା ରହିଥିଲା । ଭାରତୀୟ ଇତିହାସରେ ସେହି କାରଣରୁ, ମୌର୍ଯ୍ୟ ଯୁଗ କେବଳ ବୈଶିଷ୍ଟ୍ୟପୂର୍ଣ୍ଣ ହୁଏ ନାହିଁ, ଅନ୍ୟ ସମାଜର ଇତିହାସ ପାଇଁ ବିରଳ ସିଦ୍ଧ ମଧ୍ୟ ହୁଏ ।

# 7

# ରାଜନୀତି ଓ ବ୍ୟବସାୟ ସନ୍ଦର୍ଭରେ

**ପ୍ରାୟ 200 ଖ୍ରୀ.ପୂ. – 300 ଖ୍ରୀଷ୍ଟାବ୍ଦ**

## ଶୁଙ୍ଗ, ଖାରବେଳ ଏବଂ ଗୋଷ୍ଠୀତନ୍ତ୍ର

ମୌର୍ଯ୍ୟ କାଳ ଉତ୍ତାରୁ ଭାରତରେ ରାଜନୈତିକ ଘଟଣା ବିକେନ୍ଦ୍ରିତ ହୋଇପଡ଼ିଲା । ତହିଁରେ ଅନେକ ରାଜା, ବହୁ କିସମର ସମ୍ପତ ଏବଂ ନାନା ପ୍ରକାରର ଲୋକ ପ୍ରତୀୟମାନ ହେଲେ । ଏହି କାଳଖଣ୍ଡ ପାଇଁ ତଥ୍ୟ ସାମଗ୍ରୀ ପୂର୍ବବର୍ତ୍ତୀ କାଳ ତୁଳନାରେ ଅଧିକ ବିବିଧ ହେଲା । ଦ୍ୱିତୀୟତଃ, ସୁଦୂରବର୍ତ୍ତୀ ସ୍ଥାନର ପ୍ରାସଙ୍ଗିକ ତଥ୍ୟ ସାମଗ୍ରୀର ଉପଯୋଗ କରାଗଲା । ଉଦାହରଣ ସ୍ୱରୂପ, ତତ୍‌କାଳୀନ ଚୀନ୍ ଇତିହାସ ଲେଖିଥିବା ସୂ ମା ଚୀନ ବା ସୀମା କ୍ୱିଆନଙ୍କ ଲେଖାକୁ ବ୍ୟବହାର କରାଗଲା । ଏହି କାଳଖଣ୍ଡରେ ଯେତେବେଳେ ଉପଦ୍ୱୀପ ଓ ଦକ୍ଷିଣ ଭାରତର ଲୋକେ ରାଜନୀତିର ପରିଭାଷା ଖୋଜୁଥିଲେ ଏବଂ ନୌବାଣିଜ୍ୟର ଅନୁଭବ ନେଉଥିଲେ, ସେତେବେଳେ ଉତ୍ତର ଭାରତରେ ଲୋକ ମଧ୍ୟ-ଏସିଆର ଘଟଣା ଜାଲରେ ଛନ୍ଦି ହୋଇପଡ଼ିଥିଲେ । ମୌର୍ଯ୍ୟମାନେ ନୂତନ ଗତିବିଧିର ସମ୍ଭାବନାମାନ ଆବିଷ୍କାର କରିବା ଆରମ୍ଭ କରିଥିଲେ । ସେମାନଙ୍କର ଉଦ୍ୟମ ଉପମହାଦେଶ ପର୍ଯ୍ୟନ୍ତ କେବଳ ସୀମିତ ନ ଥିଲା । ବରଂ ଭାରତ ବାହାରେ, ବିଶେଷକରି ପଶ୍ଚିମ କ୍ଷେତ୍ରରେ ମଧ୍ୟ ଜାରି ରହିଥିଲା । ମୌର୍ଯ୍ୟ ପରବର୍ତ୍ତୀ ରାଜ୍ୟମାନେ ଦିଗ୍‌ବଳୟର ସଂପ୍ରସାରଣର ଆବଶ୍ୟକତାକୁ ଓ ନୂତନ ଉପକ୍ରମମାନଙ୍କରେ ଅଂଶଗ୍ରହଣର ଆବଶ୍ୟକତାକୁ ପୂର୍ବବତ୍ ସ୍ୱୀକୃତି ଦେଇଥିଲେ । ଏହି ସମୟରେ ଅନେକ ନୂତନ ରାଜ୍ୟର ବିକାଶ ହେଲା । ମୌର୍ଯ୍ୟ କାଳ ତୁଳନାରେ ସେମାନଙ୍କର ପାରସ୍ପରିକ ସମ୍ବନ୍ଧ ଜଟିଳତାପୂର୍ଣ୍ଣ ଥିଲା, ଯାହା ପାଠକୁ ଅବୁଝା କରିଦେବାର ଆଶଙ୍କା ରହିଥାଏ ।

ଉତ୍ତର-ପଶ୍ଚିମ ପ୍ରଦେଶଗୁଡ଼ିକର ଘଟଣାବଳୀକୁ ଏହି କାଳରେ ଇତିହାସ ଗବେଷଣାରେ ପ୍ରାଥମିକତା ଦେବାର ପ୍ରବୃତ୍ତି ଦେଖାଯାଏ, କାରଣ ସେ ନେଇ ଅଧିକ ତଥ୍ୟ ପ୍ରମାଣ ରହିଛି । ତନ୍ମଧ୍ୟରେ ହେଲେନବାଦୀ ଓ ରୋମ୍‌ର ତଥ୍ୟ ବି ରହିଛି । ଏହି ପ୍ରବୃତ୍ତିକୁ ଦେଖି କେହି ହୁଏତ ମନେକରି ପାରନ୍ତି ଯେ, ଉତ୍ତର-ପଶ୍ଚିମ କ୍ଷେତ୍ର ରାଜନୀତିର କେନ୍ଦ୍ର ଥିଲା । ମାତ୍ର ସେମିତି କିଛି ପରିବର୍ତ୍ତନ ହୋଇ ନ ଥିଲା । ବରଂ ସେତେବେଳେ ରାଜନୀତିକ ଆକାଂକ୍ଷାର ଅନେକ କେନ୍ଦ୍ର ଥିଲେ । ବଡ଼ ବଡ଼ ରାଜ୍ୟର ବିଘଟନ ପରେ ଅନେକ ସମୟରେ ଏହିଭଳି ହୋଇଥାଏ । ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଏହି ଧରଣର ଯେଉଁ ଘଟଣାମାନ ପରିଘଟିତ ହେଲା, ତାହା ଆଗାମୀ କେତେ ଶତାବ୍ଦୀରେ ନୂତନ କ୍ଷେତ୍ରୀୟ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ପାଇଁ ବୀଜ ବୁଣିଦେଲା । ଉପରୁ ଦେଖିଲେ ଲାଗେ ଉତ୍ତର-ମୌର୍ଯ୍ୟ କାଳରେ କୌଣସି ସଂଯୋଜନାକାରୀ ଉପାଦାନ ନ ଥିଲା । ମାତ୍ର ସଂଯୋଜନକାରୀ ଉପାଦାନ ଅବଶ୍ୟ ଥିଲା, ଯଦିଓ ତାହା ରାଜନୀତିକ ଘଟଣାଗୁଡ଼ିକ ମଧ୍ୟରେ ବାହାରୁ ହଠାତ୍ ପ୍ରତୀୟମାନ ହେଉ ନ ଥିଲା ।

ଉତ୍ତର-ମୌର୍ଯ୍ୟ ବା ମୌର୍ଯ୍ୟୋତ୍ତର କାଳର ଗବେଷଣା ପାଇଁ ପ୍ରାଥମିକ ତଥ୍ୟ ହୁଏ ମୁଦ୍ରା ଓ ଅଭିଲେଖ, ଯଦିଓ ତାହା ପୂର୍ବକାଳୀନ ଆହତ ସିକ୍କା ମୋହର ଏବଂ ଅଶୋକଙ୍କ ରାଜାଦେଶଠାରୁ ଭିନ୍ନ ଥିଲା । ବିଶେଷକରି ଇଣ୍ଡୋ-ଗ୍ରୀକ୍ ମୁଦ୍ରା ହେଲା କଳାତ୍ମକ ଉତ୍କୃଷ୍ଟତାର ନମୁନା । ସେଗୁଡ଼ିକର ଆର୍ଥିକ ମୂଲ୍ୟ ଠିକ୍‌ରୂପେ ନିର୍ଦ୍ଧାରିତ ହୋଇଥିଲା । ଏଥିରୁ ବିନିମୟର କେନ୍ଦ୍ର ଓ ପଶ୍ଚିମୋତ୍ତର ଓ ଆଖପାଖରେ ରହିଥିବା ଉଦୀୟମାନ ଧାର୍ମିକ ସଂପ୍ରଦାୟ ଓ ଉପାସନା ସମ୍ବନ୍ଧରେ ବିଶଦ ସୂଚନା ମିଳେ । ଏହି କାଳରୁ ଅଭିଲେଖରେ ଦାନ ଓ ଅନୁଦାନ ସମ୍ବନ୍ଧରେ ଉଲ୍ଲେଖ ରହିଛି, ଅଥବା ତହିଁରେ ରାଜାଙ୍କର ପ୍ରଶସ୍ତି ଓ ଇତିବୃତ୍ତ ରହିଛି । ଅଭିଲେଖକୁ ମାଧ୍ୟମ କରି ରାଜା ନିଜ ପ୍ରଜାଙ୍କ ସହିତ ଯେଉଁ ସମ୍ବାଦର ପ୍ରକ୍ରିୟା ଅଶୋକଙ୍କ ସମୟରେ ଆରମ୍ଭ କରିଥିଲେ, ତା'ର ପୁନରାବୃତ୍ତି ଆଉ ଦେଖିବାକୁ ମିଳେନି । ହୁଏତ ସାମାଜିକ ସମସ୍ୟା ଜଟିଳ ନ ଥିଲା, କିମ୍ବା ଏଭଳି ସମ୍ବାଦ ପ୍ରକ୍ରିୟାକୁ ରାଜାମାନେ ଆଉ ବିଶେଷ ଉପଯୋଗୀ ମନେକଲେ ନାହିଁ ।

ମୌର୍ଯ୍ୟମାନଙ୍କର ଉତ୍ତରାଧିକାରୀ ଥିଲେ ଶୁଙ୍ଗ ନାମକ ବ୍ରାହ୍ମଣ ରାଜବଂଶ । ଶୁଙ୍ଗମାନେ ମୌର୍ଯ୍ୟମାନଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ଶୁଙ୍ଗ ବଂଶର ପ୍ରତିଷ୍ଠାତା ଥିଲେ ପୁଷ୍ୟମିତ୍ର ଶୁଙ୍ଗ । ସେ ସେନାଧ୍ୟକ୍ଷ ଥିଲେ ଏବଂ ଶେଷ ମୌର୍ଯ୍ୟ ସମ୍ରାଟଙ୍କୁ ହତ୍ୟାକରି ସିଂହାସନ ଅଧିକାର କରିନେଲେ । କାଳିଦାସଙ୍କ ରୋମାଣ୍ଟିକ ନାଟକ 'ମାଳବିକାଗ୍ନିମିତ୍ରମ୍'ରେ ଶୁଙ୍ଗ ଶାସନର ଏକ ଚିତ୍ର ଦେଖିବାକୁ ମିଳେ । ଏହି ଚିତ୍ର ବୌଦ୍ଧ କୃତି 'ଦିବ୍ୟବଦନ'ରେ ରହିଥିବା

ଶୁଙ୍ଗ ଶାସନର ଚିତ୍ରଠାରୁ ପୃଥକ ଅଟେ । ବୌଦ୍ଧକୃତି ଅନୁସାରେ, ଶୁଙ୍ଗମାନେ ବୌଦ୍ଧମାନଙ୍କ ଉପରେ ଅତ୍ୟାଚାର କରିଥିଲେ ଏବଂ ବୌଦ୍ଧ ମଠ ଓ ବିହାରଗୁଡ଼ିକୁ ଧ୍ୱଂସ କରି ଦେଇଥିଲେ । ସମ୍ଭବତଃ ଏହା ହେଲା ଏକ ଅତିଶୟୋକ୍ତି । ପ୍ରତ୍ନତାତ୍ତ୍ୱିକ ପ୍ରମାଣରୁ ଜଣାପଡ଼େ ଯେ, ଶୁଙ୍ଗ ଶାସନ କାଳରେ ବୌଦ୍ଧ ସ୍ମାରକୀଗୁଡ଼ିକ ଭଗ୍ନାବସ୍ଥାରେ ଥିଲା ଏବଂ ତହିଁରେ ମରାମତି କାର୍ଯ୍ୟ ଚାଲୁଥିଲା । ଯଦି ଏହି ସ୍ମାରକୀଗୁଡ଼ିକର କାଳାନୁକ୍ରମକୁ ଆଗକୁ ଠେଲି ଦିଆଯାଏ, ତେବେ ମରାମତି କାର୍ଯ୍ୟ ଉତ୍ତର-ଶୁଙ୍ଗ କାଳରେ ହୋଇଥିଲା ବୋଲି କହିହେବ । ଅନେକ ଐତିହାସିକଙ୍କ ଗଣନା ଅନୁଯାୟୀ ଶୁଙ୍ଗ ଶାସନର କାଳାନୁକ୍ରମ ଆଗକୁ ରହିବ । ସେ ଯାହାହେଉ, ଯଦି ସ୍ମାରକୀର ମରାମତି ପରେ ହୋଇଥିଲା, ତେବେ ସାଞ୍ଚିସ୍ତୂପ ଏବଂ କୌଶାମ୍ବୀର ବୌଦ୍ଧମଠ ଶୁଙ୍ଗ କାଳରେ ହିଁ କ୍ଷତିଗ୍ରସ୍ତ ହୋଇଥିଲା । ପୁଣି ପୁଷ୍ୟମିତ୍ର ଶୁଙ୍ଗ ଅଶ୍ୱମେଧ ଯଜ୍ଞ ଆୟୋଜନ କରିଥିବା କଥାକୁ ଜୋର୍‌ଦେଇ କୁହାଯାଏ । ଯଜ୍ଞ ଆୟୋଜନକୁ ବୈଦିକ ବ୍ରାହ୍ମଣ୍ୟ ଧର୍ମ ପ୍ରତି ଆନୁଗତ୍ୟ ପ୍ରକାଶ ଏବଂ ଅସନାତନୀ (heterodex) ସଂପ୍ରଦାୟଗୁଡ଼ିକ ପ୍ରତି ଅସୂୟାଭାବର ଉଦ୍ରେକ ବୋଲି ମନେକରାଯାଏ । କୁହାଯାଏ, ଉତ୍ତର-ପଶ୍ଚିମ କ୍ଷେତ୍ରରେ ଯବନମାନଙ୍କର ଆକ୍ରମଣକୁ ବିଫଳ କରିବାର କାମନା କରି ପୁଷ୍ୟମିତ୍ର ଯଜ୍ଞ ଆୟୋଜନ କରିଥିଲେ ।

ଶୁଙ୍ଗମାନେ ନିରନ୍ତର ଯୁଦ୍ଧରେ ବ୍ୟସ୍ତ ରହୁଥିଲେ । ସେମାନେ ଦାକ୍ଷିଣାତ୍ୟର ଦକ୍ଷିଣରେ ସ୍ଥିତ ପଡ଼ୋଶୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ; ହେଲେନବାଦୀ ଗ୍ରୀକ୍‌ମାନେ ଉତ୍ତର-ପଶ୍ଚିମରେ ଅନୁପ୍ରବେଶ କରିବାକୁ ଉଦ୍ୟମ କଲେ, ତେଣୁ ତାଙ୍କ ବିରୁଦ୍ଧରେ ଯୁଦ୍ଧ କଲେ; ପୁଣି ସାମ୍ରାଜ୍ୟର ଦକ୍ଷିଣ-ପୂର୍ବରେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କଲେ । ମୌର୍ଯ୍ୟ ସାମ୍ରାଜ୍ୟର ପତନ ଉତ୍ତାରୁ ଅନେକ ନୂଆ ରାଜ୍ୟର ଅଭ୍ୟୁଦୟ ଘଟିଥିଲା ଏବଂ ସେମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ମଧ୍ୟ ଚାଲିଥିଲା । ଆରମ୍ଭରେ ଶୁଙ୍ଗ ରାଜ୍ୟରେ ଗାଙ୍ଗେୟ ସମତଳର ଅଧିକାଂଶ ଭାଗ ସାମିଲ ଥିଲା । ଗାଙ୍ଗେୟ ସମତଳର ସୁଦୂର କ୍ଷେତ୍ରଗୁଡ଼ିକ ସେମାନଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ନ ଥିଲା । ସେମାନେ ଶୁଙ୍ଗମାନଙ୍କଠାରେ କେବଳ ରାଜନୈତିକ ଆନୁଗତ୍ୟ ରଖିଥିଲେ । ମାତ୍ର ଶହେ ବର୍ଷର ଅନ୍ତରାଳରେ ଶୁଙ୍ଗ ରାଜ୍ୟ ସୀମିତ ହୋଇ ମଗଧ ଏବଂ ତା'ର ପାଖାପାଖି କ୍ଷେତ୍ର ଯାଏଁ ରହିଲା । ସେହି ସୀମିତ କ୍ଷେତ୍ରରେ ମଧ୍ୟ ଶୁଙ୍ଗ ଆଧିପତ୍ୟ ସୁସ୍ପଷ୍ଟ ନ ଥିଲା । ଶୁଙ୍ଗମାନଙ୍କ ସିଂହାସନ ଉପରେ ଶେଷରେ ଅନ୍ୟ ଏକ ବ୍ରାହ୍ମଣ ରାଜବଂଶ କଣ୍ୱ ବଂଶ ଅଧିକାର ସାବ୍ୟସ୍ତ କଲେ । କଣ୍ୱ ବଂଶର ଅର୍ଦ୍ଧ-ଶତାବ୍ଦୀ ଧରି ଅର୍ଥାତ୍ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପର୍ଯ୍ୟନ୍ତ ମଗଧରେ ଘଟଣାବିହୀନ ଢଙ୍ଗରେ ରାଜତ୍ୱ ରହିଥିଲା ।

ଏହି କାଳଖଣ୍ଡର ଏକ ଉଲ୍ଲେଖଯୋଗ୍ୟ ବିଶେଷତା ହେଲା ପଞ୍ଜାବ ଓ ହରିଆଣାର ଜଳ ବିଭାଜିକା କ୍ଷେତ୍ରରେ ଏବଂ ରାଜସ୍ଥାନରେ ଆଦିବାସୀ ବା କୁଳ ଆଧାରିତ ରାଜନୈତିକ ବ୍ୟବସ୍ଥାର ପୁନର୍ଦର୍ଶନ । ସେମାନଙ୍କ ମୁଦ୍ରାରୁ ଏହି ଆଦିବାସୀ ରାଜ୍ୟଗୁଡ଼ିକର ଅବସ୍ଥିତି ସମ୍ବନ୍ଧରେ ଜାଣିହୁଏ । ମୁଦ୍ରାରୁ ଆର୍ଜୁନାୟନ, କୁନିନ୍ଦ, ଔଦୁମ୍ବର, ତ୍ରିଗର୍ତ୍ତ, ଅଗସ୍ତ୍ୟ, ଶିବି ତଥା ଯୌଧେୟଙ୍କ ନାମୋଲ୍ଲେଖ ମିଳେ । ସ୍ଥାନୀୟ ରାଜନୈତିକ ବ୍ୟବସ୍ଥାର ଆବଶ୍ୟକତା ପୂରଣ ପାଇଁ ସେମାନଙ୍କ ମଧ୍ୟରୁ କେତେକ ନିକଟବର୍ତ୍ତୀ କ୍ଷେତ୍ରକୁ ଦେଶାନ୍ତରଣ କଲେ । ଏହି କାରଣରୁ ଉତ୍ତର ଦାକ୍ଷିଣାତ୍ୟରେ ଅଭୀରମାନଙ୍କୁ ଦେଖିବାକୁ ମିଳେ । ମାଳବମାନେ ଦକ୍ଷିଣ ରାଜସ୍ଥାନରେ ବସବାସ କଲେ । ପରେ ଉଜ୍ଜୟିନୀ ସହିତ ସେମାନଙ୍କ ସମ୍ବନ୍ଧ ହେତୁ ଖ୍ରୀ.ପୂ. 58–57 ସମ୍ବତ ସାଙ୍ଗରେ ସେମାନଙ୍କୁ ସଂଯୋଜିତ କରାଗଲା ।

ଏମାନଙ୍କ ମଧ୍ୟରୁ ଅନେକ କୁଳ ନିଜ ପାଇଁ କ୍ଷତ୍ରିୟ ମର୍ଯ୍ୟାଦା୍ ଦାବି କରୁଥିଲେ, କାରଣ ପୁରାଣ ଓ କିମ୍ବଦନ୍ତୀର କ୍ଷତ୍ରିୟ ବୀର ନାୟକଙ୍କର ବଂଶଜ ବୋଲି ଦାବି କରିବାରେ ଗୌରବ ରହିଥିଲା । ସେମାନଙ୍କର କେତେକ ରାଜା ଯେଉଁ ପଦଗୌରବ ବହନ କରିଥିଲେ, ତହିଁରୁ ରାଜପଦର ଧ୍ୱନି ସ୍ପଷ୍ଟ ହେଉଥିଲା । ମାତ୍ର ସେମାନଙ୍କ ମୁଦ୍ରାରେ 'ଗଣ' ବା 'ଜନପଦ'ର ନାମ ରହୁଥିଲା । ସେମାନଙ୍କ ସଂରଚନା 'ଗଣସଂଘ' ସଦୃଶ ଥିଲା । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେବ ଯୌଧେୟ ଜନପଦ । ଏହି ରାଜାମାନେ କ୍ଷତ୍ରିୟମାନଙ୍କ ଉପରେ ବାରମ୍ବାର ଆକ୍ରମଣ କରୁଥିଲେ ବୋଲି ବର୍ଣ୍ଣନା ରହିଛି । ସମ୍ଭବତଃ ରାଜତନ୍ତ୍ରର ଏକ ବିକଳ୍ପ ରାଜନୈତିକ ବ୍ୟବସ୍ଥାକୁ ସେମାନେ କାର୍ଯ୍ୟକାରୀ କରିବାକୁ ପ୍ରୟାସ କରୁଥିଲେ ବୋଲି ଏଥିରୁ ଅନୁମାନ କରିହୁଏ ।

ଏହି ସମୟ ବେଳକୁ ରାଜତନ୍ତ୍ର ବ୍ୟବସ୍ଥା ଖୁବ୍ ପ୍ରସାର ଲାଭ କରିଥିଲା । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ମଧ୍ୟକାଳରେ ଓଡ଼ିଶାରେ କଳିଙ୍ଗ ଏକ ସ୍ୱାଧୀନ ରାଜ୍ୟ ଭାବେ ପ୍ରତିଷ୍ଠା ଲାଭ କରିଥିଲା । ଖାରବେଳ ଥିଲେ ତା'ର ଶାସକ । ମାଧ୍ୟମିକ ରାଜ୍ୟ ଗଠନର ଏହା ଏକ୍ ଉଚିତ ଉଦାହରଣ ହେବ, କାରଣ ମୌର୍ଯ୍ୟ କାଳରେ କଳିଙ୍ଗ 'କୋର୍' କ୍ଷେତ୍ରରେ ରହିଥିଲା ଏବଂ ମୌର୍ଯ୍ୟ ପ୍ରଶାସନିକ ଆଧିପତ୍ୟ ଯୋଗୁଁ ରାଜ୍ୟର ସଂରଚନାର ଛାପ ତା' ଉପରେ ଭଲଭାବେ ପଡ଼ିଥିଲା । ତୋଷାଳିରେ ସ୍ଥିତ ମୌର୍ଯ୍ୟ କେନ୍ଦ୍ର ଏକ ବୌଦ୍ଧସ୍ଥଳୀ ରୂପେ ବିକଶିତ ହୋଇଥିଲା । ମାତ୍ର ଏହି ସମୟରେ କଳିଙ୍ଗରେ ଜୈନ ଆଶ୍ରମମାନ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଏହା ନିଃସନ୍ଦେହ ଯେ, ଆରମ୍ଭରେ ଖାରବେଳ ଏହି ଜୈନ ଆଶ୍ରମଗୁଡ଼ିକୁ ପୃଷ୍ଠପୋଷକତା ପ୍ରଦାନ କରିଥିଲେ । ହାତୀଗୁମ୍ଫାଠାରେ ଖାରବେଳଙ୍କର ଏକ ଦୀର୍ଘ ଅଭିଲେଖ ରହିଛି, ଯେଉଁଠି ରାଜାଙ୍କର ପ୍ରତିବର୍ଷର ଜୀବନ ବୃତ୍ତାନ୍ତ ଲିଖିତ ହୋଇ ରହିଛି । ଯେହେତୁ ଅଭିଲେଖ କିଛି ମାତ୍ରାରେ ଧ୍ୱଂସପ୍ରାପ୍ତ, ତାକୁ ନାନା ଦିଗରୁ ଅଧ୍ୟୟନ କରାଯାଇପାରେ । ଏହି ଅଭିଲେଖ

ଅନୁସାରେ, ଖାରବେଳ ଥିଲେ ଚେଦିକୁଳଙ୍କ ମହାମେଘବାହନ ବଂଶର । (ଏଠାରେ ସୂଚନାଯୋଗ୍ୟ ଯେ, ତୃତୀୟ ଶତାବ୍ଦୀରେ ଲିଖିତ ଜୈନଗ୍ରନ୍ଥ 'ପୌମଚର୍ଯ୍ୟମ୍'ରେ ରାମାୟଣର ରାବଣଙ୍କୁ 'ମହାମେଘବାହନ' ବଂଶର ବୋଲି ବର୍ଣ୍ଣନା କରାଯାଇଛି ।) ଜୈନଧର୍ମର ପୃଷ୍ଠପୋଷକତା କରିବା ସତ୍ତ୍ୱେ ଖାରବେଳ ପଡ଼ୋଶୀ ରାଜ୍ୟଗୁଡ଼ିକ ଉପରେ ଆକ୍ରମଣ କରିବାକୁ ପଛଘୁଞ୍ଚା ଦେଉ ନ ଥିଲେ । ଏହାଫଳରେ କଳିଙ୍ଗର ସ୍ୱାଧୀନତା ରକ୍ଷା କରିବାରେ ସେ ସମର୍ଥ ହୋଇଥିଲେ । ନନ୍ଦମାନଙ୍କ ଦ୍ୱାରା ନିର୍ମିତ କେନାଲ ବ୍ୟବସ୍ଥାର ଖାରବେଳ ଉଲ୍ଲେଖ କରିଛନ୍ତି । ମାତ୍ର କେନାଲ ମରାମତି ଓ ସଂପ୍ରସାରଣରେ ତାଙ୍କ ନିଜ ଉଦ୍ୟମକୁ ସେ ମହତ୍ତ୍ୱ ଦେଇଛନ୍ତି । ଅଭିଲେଖରେ ମୌର୍ଯ୍ୟମାନଙ୍କ ସମ୍ପର୍କରେ କୌଣସି ଉଲ୍ଲେଖ ନାହିଁ । ଅଭିଲେଖର କ୍ଷୟପ୍ରାପ୍ତ ଅଂଶରେ ଯଦି ସେଭଳି ଉଲ୍ଲେଖ ରହିଥିବ, ତାହେଲେ ଏଯାଏଁ ତାହା ପାଠ୍ୟ ହୋଇପାରି ନାହିଁ । ତଥାପି ଅଭିଲେଖରେ କେତେକ ବିଚାର ସମ୍ବନ୍ଧରେ ସୂଚନା ରହିଛି, ଯାହାକୁ ଅଶୋକଙ୍କ ଅଭିଲେଖର ପ୍ରତିଧ୍ୱନି କୁହାଯାଇପାରେ । ଉଦାହରଣ ସ୍ୱରୂପ, ଅଶୋକଙ୍କ ଭଳି ଖାରବେଳ ମଧ୍ୟ ସବୁ ଧାର୍ମିକ ସଂପ୍ରଦାୟ ପ୍ରତି ସହିଷ୍ଣୁ ଭାବ ରଖିଥିଲେ ବୋଲି କୁହାଯାଇଛି । ସେ ରାଜକୋଷର ଅଧିକାଂଶ ସମ୍ପତ୍ତିକୁ ପ୍ରଜାଙ୍କ ମଙ୍ଗଳ ପାଇଁ ଖର୍ଚ୍ଚ କରୁଥିଲେ ବୋଲି ଉଲ୍ଲେଖ ରହିଛି । ଅବଶ୍ୟ ଏହା ଅତିଶୟୋକ୍ତି ବି ହୋଇଥାଇ ପାରେ ।

ହାତୀଗୁମ୍ଫା ଅଭିଲେଖକୁ ଆଦ୍ୟ ରାଜଚରିତ ରୂପରେ ନିଆଯାଇପାରେ । ସେଥିପାଇଁ ଏହାର ସାରାଂଶକୁ କିଞ୍ଚିତ୍ ବିସ୍ତାରରେ ରଖିବା ଉଚିତ ହେବ । ଏହି ଦୀର୍ଘ ଅଭିଲେଖର ରୂପାନ୍ତରଣ ନିମ୍ନ ପ୍ରକାର ହେବ :

*"ଯିଏ ଚେଦି ରାଜବଂଶର ମହିମାର ଅଭିବୃଦ୍ଧି କରିଛନ୍ତି, ଯିଏ ଉତ୍କୃଷ୍ଟ ଏବଂ ଶୁଭଲକ୍ଷଣ ତଥା ସୁରୂପାକୃତି ଯୁକ୍ତ, ଯାହାଙ୍କର ସଦ୍‌ଗୁଣ ଯୋଗୁଁ ଖ୍ୟାତି ଚତୁର୍ଦ୍ଦିଗରେ ପରିବ୍ୟାପ୍ତ, ଯିଏ କଳିଙ୍ଗର ସ୍ୱାମୀ, ସେହି ଯଶସ୍ୱୀ ଖାରବେଳ, ବୀର, ମହାରାଜା, ମହାମେଘବାହନଙ୍କ ବଂଶଜଙ୍କର... ଅର୍ହତ (ଜୀନ)ମାନଙ୍କୁ ପ୍ରଣାମ ।*

*ସୁସ୍ଥ ଓ ସୌନ୍ଦର୍ଯ୍ୟବାନ ଶରୀରରେ ଯୌବନର ପନ୍ଦର ବର୍ଷ କ୍ରୀଡ଼ାରେ ବ୍ୟତୀତ କଲେ । ଯୁବରାଜ ପଦରେ ନଅବର୍ଷ ପର୍ଯ୍ୟନ୍ତ ପ୍ରଶାସନର ସଞ୍ଚାଳନ କଲେ ଏବଂ ପତ୍ରାଚାର, ମୁଦ୍ରା, ବିତ୍ତ ତଥା ନାଗରିକ ଏବଂ ଧାର୍ମିକ ନୀତିନିୟମ ଉପରେ ପୂର୍ଣ୍ଣ ଅଧିକାର ପ୍ରାପ୍ତ ହେଲେ । ଏହାସହିତ ସେ ବିଦ୍ୟାରେ ମଧ୍ୟ ପାରଙ୍ଗମ ହେଲେ ।*

*ବୟସ୍କତା ପ୍ରାପ୍ତ କଲାପରେ କଳିଙ୍ଗର ରାଜବଂଶରେ ରାଜା ରୂପରେ ଅଭିଷିକ୍ତ ହେଲେ । ପ୍ରଥମ ବର୍ଷ ସେ ବାତ୍ୟାବିଧ୍ୱସ୍ତ ନଗରୀର ଦ୍ୱାର, ପ୍ରାଚୀର ତଥା ଭବନର ଜୀର୍ଣ୍ଣୋଦ୍ଧାର*

କଲେ; ହ୍ରଦରେ ବନ୍ଧ ନିର୍ମାଣ କଲେ ଏବଂ ନଗରୀରେ ଜଳାଗାର ଓ ପୋଖରୀ ନିର୍ମାଣ କଲେ ଏବଂ ଉଦ୍ୟାନଗୁଡ଼ିକର ପୁନରୁଦ୍ଧାର କଲେ ।

ଏହି ସମସ୍ତ କାର୍ଯ୍ୟ ପାଇଁ 35,000 ମୁଦ୍ରା ବ୍ୟୟ ହେଲା ଓ ପ୍ରଜାମାନେ ସନ୍ତୁଷ୍ଟ ହେଲେ ।

ଦ୍ୱିତୀୟ ବର୍ଷରେ ଅଶ୍ୱାରୋହୀ, ହସ୍ତୀସେନା, ପଦାତିକ ଏବଂ ରଥାରୋହୀ ସମ୍ମିଳିତ ଚତୁରଙ୍ଗ ସେନା ସାତକର୍ଣ୍ଣୀ [ସାତବାହନ ରାଜା] ଅଧିକୃତ ପଶ୍ଚିମ କ୍ଷେତ୍ର ବିରୁଦ୍ଧରେ ଯୁଦ୍ଧ ଅଭିଯାନରେ ଗଲେ ଏବଂ ମୂଷିକ ଲୋକଙ୍କ ନଗରୀକୁ ମଧ୍ୟ ଆକ୍ରମଣ କଲେ ।

ତୃତୀୟ ବର୍ଷରେ ଉତ୍ସବ ଓ ସଭାସମିତିରେ ନାଟ୍ୟ ଓ ସଙ୍ଗୀତ ପ୍ରଦର୍ଶନ କରାଗଲା ।

ଚତୁର୍ଥ ବର୍ଷରେ ସେ ରଥିକ ଓ ଭୋଜକମାନଙ୍କ ଉପରେ ଆକ୍ରମଣ କଲେ ଏବଂ ସେମାନଙ୍କୁ ପରାସ୍ତ କଲେ ।

ପଞ୍ଚମ ବର୍ଷରେ ସେ ନନ୍ଦ ରାଜାଙ୍କ ଦ୍ୱାରା ପୂର୍ବରୁ ନିର୍ମିତ କେନାଲକୁ ସଂପ୍ରସାରିତ କଲେ ।

ଯେହେତୁ ରାଜା ରାଜସୂୟ ଯଜ୍ଞ ଆୟୋଜନ କରିଥିଲେ, ତେଣୁ ନଗରୀବାସୀଙ୍କ ଉପରୁ କର ଓ ଶୁଳ୍କ ମାଫ୍ କଲେ ଏବଂ ନଗରୀ ଓ ଆଖପାଖରେ ଥିବା ଅନୁଷ୍ଠାନମାନଙ୍କୁ ଅନେକ ଶତସହସ୍ର ମୁଦ୍ରା ଉପହାର ଦେଲେ ।

ସପ୍ତମ ବର୍ଷରେ ରାଜରାଣୀ ଏକ ସନ୍ତାନକୁ ଜନ୍ମ ଦେଲେ । ଅଷ୍ଟମ ବର୍ଷରେ ସେ ମଗଧର ରାଜଧାନୀକୁ ଆକ୍ରମଣ କଲେ, ଯାହାଫଳରେ ରାଜା ଦିମିତ (ଇଣ୍ଡୋ-ଗ୍ରୀକ୍ ରାଜା ଦିମିତ୍ରସ) ମଥୁରାକୁ ପଳାୟନ କଲେ ।

ଆହୁରି ଉପହାରମାନ ପ୍ରଦାନ କରାଗଲା । ତନ୍ମଧ୍ୟରେ ଥିଲା ସୁବର୍ଣ୍ଣ ବୃକ୍ଷ, ହାତୀ, ରଥ, ଆବାସ, ଧର୍ମଶାଳା । ତା' ସହିତ ବ୍ରାହ୍ମଣମାନଙ୍କୁ କରମୁକ୍ତ ଘୋଷଣା କରାଗଲା । ଅଷ୍ଟତିରିଶ ଲକ୍ଷ ମୁଦ୍ରା ଖର୍ଚ୍ଚକରି ଏକ ରାଜପ୍ରାସାଦ ନିର୍ମାଣ କରାଗଲା ।

ଦଶମ ବର୍ଷରେ ସେ ଭାରତବର୍ଷ ଉପରେ ଜୟଲାଭ କରିବା ସକାଶେ ସେନା ପ୍ରେରଣ କଲେ । ଅନ୍ୟ ଏକ ସେନାଭିଯାନ କୃଷ୍ଣାନଦୀ ପଟେ ଦକ୍ଷିଣକୁ ପ୍ରେରିତ ହେଲା ଓ ପିଥୁଣ୍ଡ ନଗରୀ ଉପରେ ଆକ୍ରମଣ କଲା । ସେଠାରେ ଗଧମାନଙ୍କୁ ଲଙ୍ଗଳରେ ଯୋଚାଯାଇ ଜମି କର୍ଷଣ କରାଯାଉଥିଲା । ସେ ଦ୍ରାମିର [ତାମିଲ ପ୍ରଦେଶ] ମହାସଂଘକୁ ଧ୍ୱଂସ କଲେ । କଳିଙ୍ଗ ପାଇଁ ଏହି ମହାସଂଘ ଏକ ବିପଦ ସଦୃଶ ଥିଲା ।

ଦ୍ୱାଦଶ ବର୍ଷରେ ତାଙ୍କ ସେନା ଉତ୍ତର ଦିଗକୁ ଯାଇ ମଗଧର ଲୋକମାନଙ୍କୁ ଆକ୍ରମଣ କଲେ । ସେ କଳିଙ୍ଗରୁ ନନ୍ଦମାନେ ଲୁଣ୍ଠନ କରି ନେଇଯାଇଥିବା ଜୀନମୂର୍ତ୍ତିକୁ ଫେରାଇ

*ଆଣିଲେ । ତା' ସହିତ ମଗଧ ଓ ଅଙ୍ଗର ଧନସମ୍ପଦ ଲୁଣ୍ଠନ କରି ପ୍ରତ୍ୟାବର୍ତ୍ତନ କଲେ । ସେ ସ୍ମାରକସ୍ତମ୍ଭ ନିର୍ମାଣ ପାଇଁ ତଥା ଅଭ୍ୟନ୍ତର, ହାତୀଶାଳ ଓ ଘୋଡ଼ାଶାଳ ନିର୍ମାଣ ପାଇଁ ଶହେ ମିସ୍ତ୍ରୀ-କାରିଗରଙ୍କର ବସତି ସ୍ଥାପନ କଲେ ଏବଂ ସେମାନଙ୍କୁ କରମୁକ୍ତ କଲେ ।*

*ତାଙ୍କ ଦରବାରକୁ ଦକ୍ଷିଣର ପାଣ୍ଡ୍ୟ ରାଜ୍ୟରୁ ବହୁମୂଲ୍ୟ ମୋତି ଓ ରତ୍ନ ଅଣାହେଲା ।*

*ତ୍ରୟୋଦଶ ବର୍ଷରେ ସେ ଏକ ଜୈନ ଆଶ୍ରମର ସାଧୁମାନଙ୍କୁ ରକ୍ଷଣାବେକ୍ଷଣ ପାଇଁ ତଥା ଉପହାର ରୂପେ ଅର୍ଥଦାନ କଲେ ।*

*ସନ୍ୟାସୀ, ମୁନି ଏବଂ ଭିକ୍ଷୁଙ୍କର ଏକ ସମ୍ମିଳନୀ ଆୟୋଜନ କରାଗଲା ଏବଂ ଅର୍ହତଙ୍କର ସ୍ମୃତିଚିହ୍ନ ରହିଥିବା ସ୍ଥଳୀକୁ ସଜ୍ଜିତ କରାଗଲା । ସେ ଜୈନ ଗ୍ରନ୍ଥଗୁଡ଼ିକୁ ସଂକଳିତ କରିବାପାଇଁ ମଧ ବ୍ୟବସ୍ଥା କଲେ ।*

*ସେ ହେଉଛନ୍ତି ଶାନ୍ତି ଓ ସମୃଦ୍ଧିର ରାଜା, ସନ୍ୟାସୀ ଓ ବିଦ୍ୟାର ରାଜା ।*

*ସେ ଅସାଧାରଣ ଗୁଣ ସମ୍ପନ୍ନ ଅଟନ୍ତି, ସମସ୍ତ ସଂପ୍ରଦାୟକୁ ସମ୍ମାନ ଦିଅନ୍ତି ଏବଂ ସବୁ ଉପାସନା ପୀଠର ଅନୁରକ୍ଷଣ କରନ୍ତି । ତାଙ୍କ ସେନା ଅପରାଜେୟ । ସେ ରାଜ୍ୟ ରକ୍ଷକ ଅଟନ୍ତି । ରାଜର୍ଷି ବସୁଙ୍କର ସେ ବଂଶଜ ଅଟନ୍ତି ।''*

(Adapted from Epigraphia India, XX, pp. 71-89,
K.P. Jayaswal and R.D. Banerji,
*The Hathigumpha Inscription of Kharavela*)

ରାଜପଦର ସମସ୍ତ ଗୁଣକୁ ହାତୀଗୁମ୍ଫା ଅଭିଲେଖରେ ଏକତ୍ରିତ କରି ପ୍ରସ୍ତୁତ କରାଯାଇଛି । ଅର୍ଥାତ୍ ଦେଶ-ବିଜୟ, ଦାନଶୀଳତା ଏବଂ ପ୍ରଜାକଲ୍ୟାଣ ଗୁଣକୁ ସମନ୍ୱିତ କରାଯାଇଛି । ହାତୀଗୁମ୍ଫାର ଆଖପାଖରେ ଥିବା ଗୁମ୍ଫାରେ ମୂର୍ତ୍ତି ଓ ଅନ୍ୟାନ୍ୟ ଭାସ୍କର କଳା ସ୍ଥାପତ୍ୟ ରହିଛି । ତହିଁରେ ରାଜକୀୟତା ଉପରେ ଯଥେଷ୍ଟ ଧ୍ୟାନ ଦିଆଯାଇଛି । ଯଦି କଳିଙ୍ଗରେ ଖାରବେଳଙ୍କ ସମୟରେ ବି କେତେଗୁଡ଼ିଏ ସର୍ଦ୍ଦାରତନ୍ତ୍ର ରହିଥିବେ ସେମାନଙ୍କୁ ବଶ କରିବାଲାଗି ଏପ୍ରକାର ଦାବି ହୁଏତ ଆବଶ୍ୟକ ହୋଇଥିବ । ଅଶୋକଙ୍କ ଅଭିଲେଖରେ ରଥିକ ଓ ଭୋଜକ ଲୋକଙ୍କ ଉଲ୍ଲେଖ ରହିଛି । ସାତବାହନ ଅଭିଲେଖରେ ପଦବୀର ଉଲ୍ଲେଖ କରି ମହାରଥୀ ଏବଂ ମହାଭୋଜ ବୋଲି ସେମାନଙ୍କ ମୁଖ୍ୟଙ୍କୁ ଚିହ୍ନିତ କରାଯାଇଛି । ମୌର୍ଯ୍ୟ ପ୍ରଶାସନିକ କେନ୍ଦ୍ର ଭାବରେ ସ୍ଥାପିତ ଶିଶୁପାଳଗଡ଼ ଏକ ବାଣିଜ୍ୟ କେନ୍ଦ୍ର ରୂପେ ମଧ ପ୍ରସିଦ୍ଧି ପାଇଥିଲା । ବିସ୍ମୟର କଥା ଯେ, ଖାରବେଳ ନିଜ ନାମରେ ମୁଦ୍ରା ପ୍ରଚଳନ କରି ନ ଥିଲେ । ପୂର୍ବରୁ ପ୍ରଚଳିତ ଥିବା ଆହତ ସିକ୍କା ମୋହର ମୁଦ୍ରା ତାଙ୍କ ସମୟରେ ମଧ ବ୍ୟବହୃତ ହେଉଥିଲା । ସମ୍ଭବତଃ କଳିଙ୍ଗର ବିତ୍ତୀୟ ବ୍ୟବସ୍ଥା ସ୍ୱ-ମୁଦ୍ରା ପ୍ରଣୟନ ପାଇଁ

ସେପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ ନ ଥିଲା, ଯଦିଓ ନଗର ବିକାଶ ଲାଗି ପ୍ରଭୂତ ବ୍ୟୟ ବରାଦ ହୋଇଥିବା କଥା ଅଭିଲେଖରେ ଉଲ୍ଲେଖ ହୋଇଛି । ବସୁ ଥିଲେ ଚେଦି ରାଜା, ଯାହାଙ୍କର ବଂଶଜ ରୂପେ ଖାରବେଳଙ୍କୁ ଚିହ୍ନିତ କରାଯାଇଛି । କିମ୍ବଦନ୍ତୀ ଅନୁସାରେ, ରାଜା ବସୁ ଆକାଶରେ ଉଡ଼ିପାରୁଥିବା ଏକ ରଥ ଉପହାରରେ ପାଇଥିଲେ । ରାଜା ବସୁଙ୍କ ସହିତ ନିଜକୁ ସମ୍ବନ୍ଧିତ କରି ଖାରବେଳ ପୁରାଣ ପୁରୁଷ ସ୍ତରକୁ ଉନ୍ନୀତ ହେବାକୁ ପ୍ରୟାସ କରିଛନ୍ତି । ରଥ-ବିମାନର ଅଧିକାରୀ ଭାବରେ ତାଙ୍କ ପୂର୍ବସୂରୀ ବସୁଙ୍କୁ ରାମାୟଣର ରାବଣ ସହିତ ଯୋଡ଼ି ଦିଆଯାଏ । ସେ ଯାହାହେଉ, ଖାରବେଳଙ୍କ ମୃତ୍ୟୁ ପରେ କଳିଙ୍ଗ ପୁଣିଥରେ ନିଷ୍କ୍ରିୟ ସଦୃଶ ହୋଇ ରହିଲା ।

## ଇଣ୍ଡୋ-ଗ୍ରୀକ୍ ଏବଂ ଶକ

ଇରାନ୍‌ରେ ଆକେମେନିଡ୍ ସାମ୍ରାଜ୍ୟର ପତନ ହେଲା । ସେପଟେ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ହେଲା । ଏହା ପରେ ଯେଉଁ କେତେକ ରାଜ୍ୟର ଉଦୟ ହେଲା, ତହିଁରେ ଆଲେକ୍‌ଜାଣ୍ଡାରଙ୍କ ଭୂତପୂର୍ବ ସେନାପତିମାନେ ଶାସକ ହେଲେ । ଏହିଭଳି ଏକ ରାଜ୍ୟ ଥିଲା ସେଲ୍ୟୁକସଙ୍କ ରାଜ୍ୟ, ଯାହାର ସୀମାନ୍ତ ମୌର୍ଯ୍ୟ ସାମ୍ରାଜ୍ୟକୁ ସ୍ପର୍ଶ କରିଥିଲା । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ହେଲେନବାଦୀ ରାଜାମାନଙ୍କ ମାଧ୍ୟମରେ ହେଲେନବାଦୀ ଗ୍ରୀକ୍ ଓ ଭାରତୀୟମାନଙ୍କ ମଧ୍ୟରେ ମିଳାମିଶା ବୃଦ୍ଧି ପାଇଲା । ହେଲେନବାଦୀ ରାଜାମାନେ ଆଲେକ୍‌ଜାଣ୍ଡାରଙ୍କ ଉତ୍ତରାଧିକାରୀ ରୂପେ ଉତ୍ତର-ପଶ୍ଚିମ ପ୍ରଦେଶମାନଙ୍କରେ ଶାସନ କରୁଥିଲେ । କେତେକଙ୍କ ମତରେ, ବେକ୍‌ଟ୍ରିଆରେ ରାଜତ୍ୱ କରୁଥିବା ଗ୍ରୀକ୍-ବେକ୍‌ଟ୍ରିୟମାନେ ଉତ୍ତର-ପଶ୍ଚିମ ଭାରତରେ ରାଜତ୍ୱ କରୁଥିବା ଇଣ୍ଡୋ-ଗ୍ରୀକ୍‌ମାନଙ୍କଠାରୁ ପୃଥକ୍ ଥିଲେ । ଅନ୍ୟ କେତେକ ବିଦ୍ୱାନ, ସେମାନଙ୍କୁ ଇଣ୍ଡୋ-ବେକ୍‌ଟ୍ରୀୟ ଗ୍ରୀକ୍ ବା ଇଣ୍ଡୋ-ଗ୍ରୀକ୍ ନାମରେ ଚିହ୍ନିତ କରନ୍ତି । ଭାରତର ତଥ୍ୟ-ସାମଗ୍ରୀରେ ସେମାନଙ୍କୁ 'ଯବନ' ବୋଲି କୁହାଯାଏ । ଯବନ ଶବ୍ଦ ଗ୍ରୀସ୍ ଉପଦ୍ୱୀପରେ ବାସ କରୁଥିବା ହେଲେନୀୟ ଗ୍ରୀକ୍ (Hellenic Greeks) ଏବଂ ହେଲେନବାଦୀ ଗ୍ରୀକ୍ (Hellenistic Greek) ମଧ୍ୟରେ ପ୍ରଭେଦ ଦେଖେ ନାହିଁ । ହେଲେନବାଦୀ ଗ୍ରୀକ୍‌ମାନେ ହେଲେ ଗ୍ରୀକ୍ ବଂଶଜ କିମ୍ବା ମିଶ୍ର ଜାତି । ସେମାନେ ଗ୍ରୀକ୍ ସଂସ୍କୃତିରୁ ପ୍ରେରଣା ନିଅନ୍ତି ଏବଂ ପୂର୍ବ ଭୂମଧ୍ୟ ଏବଂ ପଶ୍ଚିମ ଏସିଆ କ୍ଷେତ୍ରରେ ବାସ କରନ୍ତି । ପୂର୍ବ ଭୂମଧ୍ୟର ଗ୍ରୀକ୍-ରୋମ୍ ସଂସ୍କୃତିରୁ ଗ୍ରୀକ୍ ସଂସ୍କୃତି ପ୍ରେରଣା ପାଏ । ତା' ଉପରେ ଇରାନ ଓ ମଧ୍ୟ-ଏସିଆର ପ୍ରଭାବ ମଧ୍ୟ ରହିଛି । ଆରମ୍ଭରେ ଏହାକୁ ଗ୍ରୀକ୍-ରୋମ୍ ଉପନିବେଶବାଦୀ ସଂସ୍କୃତି ମଧ୍ୟ କୁହାଯାଉଥିଲା । ଖ୍ରୀ.ପୂ. ତୃତୀୟ ଓ ପ୍ରଥମ ଶତାବ୍ଦୀ

ମଧ୍ୟରେ ଶାସନ କରୁଥିବା ହେଲେନବାଦୀ ରାଜାମାନଙ୍କର ରାଜନୈତିକ ଆକାଂକ୍ଷା ଫଳବତୀ ହୋଇ ନ ଥିଲା । ସେମାନେ ପୂର୍ବ ଭୂମଧ୍ୟରେ କର୍ତ୍ତୃତ୍ୱ ବିସ୍ତାର ପାଇଁ ଚେଷ୍ଟା କରୁଥିଲେ । ତା' ସହିତ ପଶ୍ଚିମ ଓ ମଧ୍ୟ-ଏସିଆରେ ଲାଭକାରୀ ବାଣିଜ୍ୟିକ ଗତିବିଧି ଉପରେ ନିୟନ୍ତ୍ରଣ ମଧ୍ୟ ରଖିଥିଲେ । ଏହି ଦ୍ୱୈତ ଇଚ୍ଛା ସେମାନଙ୍କ ରାଜନୈତିକ ଆକାଂକ୍ଷାକୁ ଦୁଇଖଣ୍ଡ କରିଦେଲା । ଉପଦ୍ୱୀପର ଗ୍ରୀକ୍‌ମାନଙ୍କ ତୁଳନାରେ ହେଲେନବାଦୀ ଗ୍ରୀକ୍‌ମାନଙ୍କ ସହିତ ଭାରତୀୟମାନେ ଅଧିକ ପରିଚିତ ଥିଲେ । ପରବର୍ତ୍ତୀ ସମୟରେ ପଶ୍ଚିମ-ଏସିଆ ପଟରୁ ଯେଉଁମାନେ ଭାରତକୁ ପ୍ରବେଶ କଲେ, ସେମାନଙ୍କୁ ସମସ୍ତଙ୍କୁ ଯବନ ବୋଲି କୁହାଗଲା ।

ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ସେଲ୍ୟୁକସୀ ରାଜତ୍ୱର ପତନ ହେଲା । ଏହାର ପ୍ରକୃତ ଲାଭ ମିଳିଲା ବେକ୍‌ଟ୍ରିଆ ଓ ପାର୍ଥିଆର ଶାସକମାନଙ୍କୁ, କାରଣ ସେମାନେ ସେଲ୍ୟୁକସୀ କର୍ତ୍ତୃତ୍ୱରୁ ମୁକ୍ତ ହୋଇ ନିଜକୁ ସ୍ୱାଧୀନ ଘୋଷଣା କଲେ । ଉଭୟଙ୍କ ମଧ୍ୟରେ ବେକ୍‌ଟ୍ରିଆ ଥିଲା ଆରମ୍ଭରେ ଅଧିକ ଶକ୍ତିଶାଳୀ । ଏହା ହିନ୍ଦୁକୁଶ ଏବଂ ଅକ୍ସସ ବା ଆମୁଦରିଆ କ୍ଷେତ୍ର ମଧ୍ୟରେ ଅବସ୍ଥିତ ଥିଲା । ଅକ୍ସସ ବା ଆମୁଦରିଆ ଥିଲା ଏକ ଉର୍ବର କ୍ଷେତ୍ର, ଯାହାର ଗାନ୍ଧାରରୁ କୃଷ୍ଣସାଗର, ମଧ୍ୟଏସିଆ ଏବଂ ପୂର୍ବ ଭୂମଧ୍ୟକୁ ଯାଉଥିବା ମାର୍ଗ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ରହିଥିଲା । ତା'ଛଡ଼ା, ଆମୁଦରିଆରେ ପ୍ରାକୃତିକ ସଂସାଧନର ବିଶାଳ ଭଣ୍ଡାର ମଧ୍ୟ ଥିଲା । ବେକ୍‌ଟ୍ରିଆରେ ଥିବା ଗ୍ରୀକ୍ ବସତିର ଆରମ୍ଭ ଆକେମେନିଡ଼ କାଳରେ (ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀ) ହେଇଥିଲା, ଯେତେବେଳେ ପାରସ୍ୟର ରାଜା ଗ୍ରୀକ୍ ଦେଶାନ୍ତରୀ (exiles)ମାନଙ୍କୁ ଉକ୍ତ କ୍ଷେତ୍ରରେ ସ୍ଥାପିତ କରିଥିଲେ । ବେକ୍‌ଟ୍ରିଆର ନଗରୀମାନଙ୍କରେ ଗ୍ରୀକ୍ ଶିଳ୍ପୀମାନେ ବସବାସ କରିବାରୁ ବସତିଗୁଡ଼ିକର ମହତ୍ତ୍ୱ ବୃଦ୍ଧି ପାଇଲା ।

ବେକ୍‌ଟ୍ରିଆର ଶାସନାଧିକାରୀ ଡିଓଡୋଟସ ସେଲ୍ୟୁକସୀ ରାଜା ଏଣ୍ଟିଓକସଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଏଣ୍ଟିଓକସ୍ ଏହି ବିଦ୍ରୋହକୁ ଦମନ କରିପାରିଲେ ନାହିଁ, କାରଣ ତାଙ୍କ ପ୍ରାଥମିକ ଆଗ୍ରହ ଥିଲା ପୂର୍ବ ଭୂମଧ୍ୟରେ । ଫଳରେ ଡିଓଡୋଟସ ସ୍ୱାଧୀନତା ଅର୍ଜନ କଲେ । ସେ ଯାହାହେଉ, ଖ୍ରୀ.ପୂ. 206 ମସିହାରେ ଏଣ୍ଟିଓକସ ଭାରତର ଏକ ଅଖ୍ୟାତ ରାଜା ସୁଭାଗାସେନଙ୍କ ସହ ସନ୍ଧିଚୁକ୍ତି ସ୍ୱାକ୍ଷର କଲେ । ଏହାର ଉଦ୍ଦେଶ୍ୟ ଥିଲା ଆବଶ୍ୟକ ସଂଖ୍ୟକ ହାତୀର ଆମଦାନି । ସନ୍ଧିରୁ ସୁସ୍ପଷ୍ଟ ହେଲା ଯେ, ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ସହଜରେ ଶତ୍ରୁ ଆକ୍ରମଣ ହୋଇପାରେ । ରାଜା ଇଉଥିଡେମ୍‌ସଙ୍କ ପୁତ୍ର ଡିମେଟ୍ରିଅସ୍ (ଇଉଥିଡେମ୍‌ସ ମଧ୍ୟ ସେଲ୍ୟୁକସୀ ରାଜାଙ୍କୁ ପରାସ୍ତ କରିଥିଲେ) ସୈନ୍ୟ ନେଇ ହିନ୍ଦୁକୁଶର ଦକ୍ଷିଣ-ପୂର୍ବ କ୍ଷେତ୍ରକୁ ସହଜରେ ନିଜ ଅଧିକାରଭୁକ୍ତ କଲେ । ପରେ ଦ୍ୱିତୀୟ ଡିମେଟ୍ରିଅସ୍ ନାମକ ଜଣେ ରାଜା ଦକ୍ଷିଣ ଆଫଗାନିସ୍ଥାନ, ପଞ୍ଜାବ ଓ ସିନ୍ଧୁ ଉପତ୍ୟକାର

ଏକ ବିଶାଳ କ୍ଷେତ୍ର ଉପରେ ରାଜତ୍ୱ କଲେ । ଏହାଫଳରେ, ଉତ୍ତର-ପଶ୍ଚିମ ଭାରତରେ ଇଣ୍ଡୋ-ଗ୍ରୀକ୍ ଶକ୍ତିର ପ୍ରତିଷ୍ଠା ହେଲା । ଗାଙ୍ଗେୟ ମଧ୍ୟସ୍ଥଳ ଉପରେ ସେମାନଙ୍କ ପକ୍ଷରୁ ଆକ୍ରମଣ ହେଲା । ମାତ୍ର ଉତ୍ତର-ପଶ୍ଚିମ କ୍ଷେତ୍ରରେ ହିଁ ସେମାନେ ସୀମିତ ହୋଇ ରହିଲେ । ବୋଧହୁଏ ପଞ୍ଜାବ ପର୍ଯ୍ୟନ୍ତ ସେମାନଙ୍କ କର୍ତ୍ତୃତ୍ୱ ବିସ୍ତାର ଲାଭ କରିଥିଲା । ଏ କଥାର ଅପ୍ରତ୍ୟକ୍ଷ ପ୍ରମାଣ ମିଳେ ପାତଞ୍ଜଳିଙ୍କ ବ୍ୟାକରଣ 'ମହାଭାଷ୍ୟ'ରୁ । 'ମହାଭାଷ୍ୟ'ର ରଚନାକାଳ ହେଲା ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀ । ବ୍ୟାକରଣର କୌଣସି ଏକ ଗୂଢ଼ ରୂପକୁ ବିଶ୍ଳେଷଣ କରିବାପାଇଁ ସେ ଯେଉଁ ଉଦାହରଣ ଦେଇଛନ୍ତି, ତହିଁରେ ପଶ୍ଚିମ ଗାଙ୍ଗେୟ ସମତଳ ଏବଂ ରାଜସ୍ଥାନରେ 'ଯବନ' ଆକ୍ରମଣ ହୋଇଥିଲା ବୋଲି କୁହାଯାଇଛି ।

ଇଣ୍ଡୋ-ଗ୍ରୀକ୍ ରାଜାମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ଅବିସ୍ମୃତ ହେବେ ମନେନ୍ଦର । ସେ ମିଳିନ୍ଦ ନାମରେ ଭାରତରେ ପରଚିତ । ଏକ ବୌଦ୍ଧଗ୍ରନ୍ଥ ରହିଛି, ତା'ର ନାମ ହେଲା ମିଳିନ୍ଦପହ୍ନ । ଏଥିରେ ରାଜା ମିଳିନ୍ଦ ପ୍ରଶ୍ନ ପଚାରିଛନ୍ତି ଏବଂ ସେହି ପ୍ରକ୍ରିୟାରେ ବୌଦ୍ଧଧର୍ମର ବିଶ୍ଳେଷଣ କରାଯାଇଛି । ଏହି ପ୍ରଶ୍ନୋତ୍ତର ପୁସ୍ତିକାରେ ରାଜା ମିଳିନ୍ଦ ପଚାରିଥିବା ପ୍ରଶ୍ନସବୁର ବୌଦ୍ଧ ଦାର୍ଶନିକ ନାଗସେନ ଉତ୍ତର ଦେଉଛନ୍ତି । ପ୍ରଶ୍ନୋତ୍ତର ପରେ ରାଜା ମିଳିନ୍ଦ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଛନ୍ତି । ଏହି କାଳଖଣ୍ଡରେ ଗ୍ରୀକ୍‌ମାନେ ବୌଦ୍ଧଧର୍ମ ପ୍ରତି ଖୁବ୍ ଅଧିକ ମାତ୍ରାରେ ଆକୃଷ୍ଟ ହେଉଥିଲେ । ସେହି ସନ୍ଦର୍ଭରେ ଏଭଳି ଏକ ପୁସ୍ତକ ବୌଦ୍ଧଧର୍ମର ପ୍ରଚାର-ପ୍ରସାରରେ ନିଶ୍ଚୟ ଖୁବ୍ ଉପଯୋଗୀ ସିଦ୍ଧ ହୋଇଥିବ ବୋଲି ଅନୁମାନ କରାଯାଏ । ପ୍ରାୟ 150 ରୁ 135 ଖ୍ରୀ.ପୂ. ମଧ୍ୟରେ ଶାସନ କରି ମନେନ୍ଦର ଇଣ୍ଡୋ-ଗ୍ରୀକ୍ ଶକ୍ତିକୁ ସ୍ଥାୟୀ କଲେ ଏବଂ ଭାରତ ଭିତରକୁ ତାଙ୍କ ରାଜ୍ୟର ସୀମାକୁ ସଂପ୍ରସାରିତ କଲେ । କୁହାଯାଏ, ସେ ସ୍ୱାତ ଉପତ୍ୟକା ଏବଂ ଉତ୍ତର-ପଶ୍ଚିମରେ ସ୍ଥିତ ହାଜାରା ଜିଲ୍ଲା ଏବଂ ପଞ୍ଜାବକୁ ନିଜ ଅଧିକାରଭୁକ୍ତ କରିଥିଲେ । ଉତ୍ତରରେ କାବୁଲ ଏବଂ ଦକ୍ଷିଣରେ ମଥୁରା କ୍ଷେତ୍ରରେ ମନେନ୍ଦରଙ୍କ ମୁଦ୍ରା ପ୍ରାପ୍ତ ହୋଇଛି । ମନେନ୍ଦର ଗାଙ୍ଗେୟ ସମତଳକୁ ମଧ ଅଧିକାର କରିଥିଲେ ବୋଲି ବିଶ୍ୱାସ କରାଯାଏ, ମାତ୍ର ତାକୁ ସେ ନିଜ ନିୟନ୍ତ୍ରଣରେ ରଖିପାରି ନଥିଲେ । ହୁଏତ ସେ ପାଟଳିପୁତ୍ରର ନିକଟକୁ ପହଞ୍ଚି ପାରି ନ ଥିଲେ, ମାତ୍ର ଶୁଙ୍ଗ ଶାସନାଧୀନ ଯମୁନା କ୍ଷେତ୍ରର ପ୍ରଦେଶଗୁଡ଼ିକ ଉପରେ ଆକ୍ରମଣ କରିଥାଇ ପାରନ୍ତି । ମନେନ୍ଦର ଏତେ ଲୋକପ୍ରିୟ ଥିଲେ ଯେ, ତାଙ୍କ ଦାହ-ସଂସ୍କାର ପରେ ଉତ୍ତର-ପଶ୍ଚିମର ବିଭିନ୍ନ ନଗରୀରେ ତାଙ୍କ ଚିତାଭସ୍ମ ପାଇବା ପାଇଁ ଖୁବ୍ ପ୍ରତିଯୋଗିତା ହୋଇଥିଲା ବୋଲି କୁହାଯାଏ । କୁଆଡ଼େ ତାଙ୍କ ସ୍ମୃତିଚିହ୍ନର ଅନେକ ସ୍ମାରକ ନିର୍ମାଣ ହୋଇଥିଲା । ଏହି କାହାଣୀର ସତ୍ୟତାକୁ ନେଇ ଅନେକ ସନ୍ଦେହ ରହିଛି । କାହାଣୀର ଲେଖକ ପ୍ଲୁଟାର୍କ ବୋଧହୁଏ ବୁଦ୍ଧଙ୍କ କଥାକୁ ଭୁଲ୍‌ରେ ମନେନ୍ଦରଙ୍କ କାହାଣୀ ରୂପରେ ବର୍ଣ୍ଣନା କରି ଦେଇଛନ୍ତି ।

ମନେହୁଏ, ମନେନ୍ଦରଙ୍କ ପରେ କିଛିକାଳ ଅଭିଭାବକ ଶାସନ (regency) ଚାଲିଲା । ତା'ପରେ ଆରମ୍ଭ ହେଲା ଷ୍ଟ୍ରାଟୋଙ୍କ ଶାସନ । ଏହି ସମୟରେ ବେକ୍ଟ୍ରିଆରେ ୟୁକ୍ରେଟାଇଡିସଙ୍କ ବଂଶ ଶାସନ କରୁଥିଲେ । ଏହି ବଂଶ ୟୁଥିଦେମସଙ୍କ ବଂଶରୁ ଭିନ୍ନ ହୋଇଥିଲେ । ପ୍ରଥମ ଡିମେଟ୍ରିୟସ ପୁଣି ୟୁକ୍ରେଟାଇଡିସଙ୍କ ବଂଶରୁ ଅଲଗା ହୋଇ ନୂତନ ରାଜ୍ୟ ପ୍ରତିଷ୍ଠା କଲେ । ବେକ୍ଟ୍ରିଆ ରାଜାଙ୍କର ଗାନ୍ଧାର ଉପରେ ଲୋଲୁପ ଦୃଷ୍ଟି ପଡ଼ିଲା । ସେ କାବୁଲ ପାରହୋଇ ତକ୍ଷଶିଳା ରାଜ୍ୟକୁ ନିଜ ଅଧିକାରଭୁକ୍ତ କଲେ । ମାତ୍ର ତକ୍ଷିଶିଳାରେ ବେକ୍ଟ୍ରିଆର ଶାସନ ଅଧିକ କାଳ ପର୍ଯ୍ୟନ୍ତ ତିଷ୍ଠିପାରି ନ ଥିଲା ।

ହେଲେନବାଦୀ ଗ୍ରୀକ୍‌ମାନେ ନିଜ ଉପସ୍ଥିତିର ପ୍ରମାଣ ସ୍ୱରୂପ, ଉତ୍ତର-ପଶ୍ଚିମ ପ୍ରଦେଶରେ ଅନେକ ଭବ୍ୟ ଭବନ ଏବଂ ସାନ ସାନ ଉତ୍କୃଷ୍ଟ କଳାସାମଗ୍ରୀ ଛାଡ଼ିଯାଇଥିଲେ । ଆମୁଦରିଆ ଓ କୋକଚାର ସଙ୍ଗମସ୍ଥଳରେ ସ୍ଥିତ ଐଖାନୁମ, ବାକ୍ଟ୍ରା (ଆଧୁନିକ ବଲ୍ଖ), ମାଜିଆନା ସ୍ଥିତ ଏଣ୍ଟିଓକ ଏବଂ ତକ୍ଷଶିଳା ସ୍ଥିତ ସିରକପ ନଗରର ପ୍ରତ୍ନତାତ୍ତ୍ୱିକ ଖନନରୁ ନଗରୀୟ ଯୋଜନାର ବିଲକ୍ଷଣ ପ୍ରତିଭା ସବୁ ଆବିଷ୍କୃତ ହୋଇଛି । ଐଖାନୁମ ନଗରୀର ନିର୍ମାଣ ସାଧାରଣ ନଗର ଯୋଜନା ଅନୁସାରେ ହୋଇଥିଲା । ନଗରୀର ତଳି ଅଞ୍ଚଳ ଓ ଗଡ଼ ଅଞ୍ଚଳ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହିଥିଲା । ଗଡ଼ ଅଞ୍ଚଳରେ ଉପାସନା ଗୃହ ଥିଲା, ନାଟ୍ୟଶାଳା ଥିଲା, ଭବନମାନଙ୍କରେ ସୁନ୍ଦର ସ୍ତମ୍ଭ ଓ ମୋଜାଇକ ଚଟାଣ ରହିଥିଲା । ମଧ୍ୟ-ଏସିଆରେ ଆକେମେନିଡ଼ ସଂସ୍କୃତିର ଉତ୍ତରାଧିକାରୀ ରୂପେ ଏହି ହେଲେନବାଦୀ ନଗରୀର ବିକାଶ ଘଟିଥିଲା ବୋଲି ନଗରୀର ସ୍ଥାପନସ୍ଥଳୀ ଓ ଗତିବିଧିରୁ ସୁସ୍ପଷ୍ଟ ହୁଏ । ହେଲେନବାଦୀ କ୍ଷେତ୍ରରେ ବିକ୍ଷିପ୍ତ ହୋଇ ରହିଥିବା ସେମାନଙ୍କ ମୁଦ୍ରା ମଧ୍ୟ ଆବିଷ୍କୃତ ହୋଇଛି । ମୁଦ୍ରାର ମୁଦ୍ରଣ ଉନ୍ନତ ମାନର ଏବଂ ତହିଁରେ ଅଙ୍କିତ ମାନବାକୃତି ଉଚ୍ଚ ସୌନ୍ଦର୍ଯ୍ୟବୋଧର ଦ୍ୟୋତକ ଅଟେ । ବିସ୍ମୟର କଥା ଯେ, ଭାରତରେ ମୁଦ୍ରାରେ ମାନବାକୃତିର ଅଙ୍କନ ପରମ୍ପରା ବିରଳ ପ୍ରାୟ ।

ଇଣ୍ଡୋ-ଗ୍ରୀକ୍‌ମାନଙ୍କର ଇତିହାସକୁ ପୁନଃରଚନା କରିବା ସକାଶେ ମୁଖ୍ୟତଃ ସେମାନଙ୍କର ମୁଦ୍ରାର ଆଶ୍ରୟ ନିଆଯାଇଥାଏ । ବେକ୍ଟ୍ରିଆର କେତେକ ମୁଦ୍ରାକୁ ଏଥେନ୍‌ସରେ ପ୍ରଯୁକ୍ତ ସିକ୍କା ମୋହର ଆଧାରରେ ମୁଦ୍ରଣ କରାଯାଇଥିଲା । ତାକୁ ଏଥେନ୍‌ସର 'ପେଚା' (owl) ମୋହର ସହିତ ତୁଳନା କରାଯାଇପାରେ । ଏଥିରୁ ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ର ସହିତ ବେକ୍ଟ୍ରିଆର ସମ୍ବନ୍ଧ ଥିବାର ଆଭାସ ମିଳେ । ଏଥେନ୍‌ସର 'ପେଚା' ମୁଦ୍ରା ରୁପାରେ ତିଆରି । ଏହାକୁ ପେଚା ମୁଦ୍ରା କୁହାଯାଉଥିଲା, କାରଣ ଏହାର ଗୋଟାଏ ପାର୍ଶ୍ୱରେ ଏଥେନ୍‌ସର ଦେବୀ 'ଏଥେନା'ଙ୍କର ଏବଂ ଅନ୍ୟ ପାର୍ଶ୍ୱରେ ଦେବୀଙ୍କର ପ୍ରିୟ 'ପେଚା'ର ଚିତ୍ର ରହିଥିଲା ।

ସମଗ୍ର ଭୂମଧ୍ୟସାଗରୀୟ କ୍ଷେତ୍ରରେ ଚଳୁଥିଲା । ଇଣ୍ଡୋ-ଗ୍ରୀକ୍ ମୁଦ୍ରା 'ଏଟିକ' ମୁଦ୍ରାର ମାନଦଣ୍ଡରେ ଆଧାରିତ ଥିଲା । ଏଥିରେ ଗ୍ରୀକ୍ ଭାଷାରେ ମୁଦ୍ରାଲେଖ ରହିଥିଲା ଏବଂ ଏହା ବେକ୍‌ଟ୍ରିଆରେ ପ୍ରଚଳିତ ଥିଲା । କମ୍ ଓଜନର ରୌପ୍ୟମୁଦ୍ରାରେ ଦ୍ୱିଭାଷିକ ଲେଖ ରହିଥିଲା । ତହିଁରୁ ଗୋଟାଏ ଭାଷାର ଲିପି ଥିଲା ଗ୍ରୀକ୍ ଏବଂ ଅନ୍ୟଟି ଖରୋଷ୍ଠୀ କିମ୍ବା ବ୍ରାହ୍ମୀ । ଏହି ମୁଦ୍ରାର ଉତ୍ତର-ପଶ୍ଚିମ ଭାରତରେ ପ୍ରଚଳନ ରହିଥିଲା । ଅର୍ଥାତ୍ ସ୍ଥାନୀୟ ଆବଶ୍ୟକତାକୁ ଦୃଷ୍ଟିରେ ରଖି ମୁଦ୍ରାର ନିର୍ମାଣ ହେଉଥିଲା ।

ଭାରତର ମୁଦ୍ରାବିଦ୍ୟାରେ ଇଣ୍ଡୋ-ଗ୍ରୀକ୍ ମୁଦ୍ରା ଅନେକ ନୂଆ ଉପାଦାନକୁ ସମାବିଷ୍ଟ କଲା । ଉଦାହରଣ ସ୍ୱରୂପ, ମୁଦ୍ରାର ଛାଞ୍ଚରେ ଖୋଦନ, ମୁଦ୍ରାଲେଖର ବ୍ୟବହାର, ଶାସକମାନଙ୍କର ଆକୃତି, ମୋନୋଗ୍ରାମ୍ ଏବଂ ଦେବାଦେବୀଙ୍କର ଆକୃତିକୁ ଏହାଦ୍ୱାରେ ମୁଦ୍ରାର ମୁଦ୍ରଣ ବେଳେ ମହତ୍ତ୍ୱ ଦିଆଗଲା । ଏହିସବୁ ବିଶିଷ୍ଟ ଗୁଣ ଯୋଗୁଁ ମୁଦ୍ରାକୁ ଚିହ୍ନିହୁଏ ଓ ଶାସକମାନଙ୍କର କାଳାନୁକ୍ରମ ନିର୍ଦ୍ଧାରଣ କରିହୁଏ, ଯଦିଓ କେତେକ ସ୍ଥଳରେ ଏକାଧିକ ଶାସକ ଗୋଟାଏ ନାମ ବହନ କରିଥାନ୍ତି । ଇଣ୍ଡୋ-ଗ୍ରୀକ୍ ମୁଦ୍ରାକୁ ବାଦ୍ ଦେଲେ, ଭାରତରେ ଅନ୍ୟତ୍ର ମୁଦ୍ରାରେ ଆକୃତିର ଅଙ୍କନ ଦେଖିବାକୁ ମିଳେନା । ଯେଉଁଠି ରାଜାର ଆକୃତି ରହେ, ସେଠି ମଧ୍ୟ ରାଜାର ଚିତ୍ର ନୁହେଁ, ବରଂ କୌଣସି ଏକ ନିର୍ଦ୍ଦିଷ୍ଟ କାମ କରୁଥିବାର ଚିତ୍ରକୁ ଦର୍ଶାଯାଏ । ମୁଦ୍ରାରେ ମନୁଷ୍ୟ ଆକୃତିକୁ ସ୍ଥାନ ନ ଦେବାର ପ୍ରବୃତ୍ତି ଖୁବ୍ ବିସ୍ମୟକର ପ୍ରତୀତ ହୁଏ । ଏମିତିରେ ରାଜାଙ୍କର ମୂର୍ତ୍ତିର ଅଭାବ ଦେଖିବାକୁ ମିଳେନା । ପୁଣି ଅଭିଲେଖଗୁଡ଼ିକରେ ଜୀବନଚରିତ ରୂପରେ ରାଜାଙ୍କର ସାହିତ୍ୟିକ ଶବ୍ଦ-ଚିତ୍ର ମଧ୍ୟ ଦେଖିବାକୁ ମିଳିଥାଏ । ଦେବୀଦେବତାଙ୍କୁ ମୂର୍ତ୍ତି ରୂପରେ ଅଥବା ପ୍ରତୀକ ରୂପରେ ସ୍ଥାପନ କରାଯାଉଥିଲା । ଦେବାଦେବୀ ଶୈବ ବା ଭାଗବତ ଧର୍ମର କିମ୍ବା ବୁଦ୍ଧ, ଜୈନ କିମ୍ବା ଜୋରାଷ୍ଟ୍ରଙ୍କର ଅଥବା ଗ୍ରୀକ୍-ରୋମ୍ ଉପାସନା ସମ୍ବନ୍ଧିତ ଥିଲେ । ଏଥିରୁ ଜଣାପଡ଼େ ଯେ, ଦକ୍ଷିଣ-ଏସିଆରେ ବହୁ ଦେବାଦେବୀଙ୍କର ଉପାସନା ରହିଥିଲା ଏବଂ ରାଜା ଏକାଧିକ ସଂପ୍ରଦାୟକୁ ପୃଷ୍ଠପୋଷକତା ପ୍ରଦାନ କରୁଥିଲେ । ମୁଦ୍ରାରେ ସ୍ଥାନୀୟ ଦେବାଦେବୀଙ୍କର ଅଙ୍କନ ରହିଥିବାରୁ ମୁଦ୍ରାର ଗ୍ରହଣୀୟତା ବୃଦ୍ଧି ପାଉଥିଲା, ଯାହା ବାଣିଜ୍ୟର ଅଭିବୃଦ୍ଧିରେ ସାହାଯ୍ୟ କରୁଥିଲା । ପୁଣି ଏହିପ୍ରକାର ମୁଦ୍ରାଙ୍କନ ନିର୍ଦ୍ଦିଷ୍ଟ ଧାର୍ମିକ ସଂପ୍ରଦାୟର ବିକାଶରେ ମଧ୍ୟ ସହାୟକ ହେଉଥିଲା । ଉଦାହରଣ ସ୍ୱରୂପ, ଇଣ୍ଡୋ-ଗ୍ରୀକ୍ ମୁଦ୍ରାରେ ଅଙ୍କନ ଯୋଗୁଁ କୃଷ୍ଣ ବାସୁଦେବ ଏବଂ ବଳରାମଙ୍କ ଉପାସନାକୁ ପ୍ରୋତ୍ସାହନ ମିଳିଲା । ବହୁପ୍ରଚଳିତ ରୌପ୍ୟମୁଦ୍ରାରେ ଅଙ୍କିତ ଆକୃତିରେ ବିଭିନ୍ନ ସଂପ୍ରଦାୟକୁ ମହତ୍ତ୍ୱ ଦିଆଯାଇଥିଲା । ସଂପ୍ରଦାୟର ଲୋକପ୍ରିୟତାକୁ ଦେଖି ଉକ୍ତ ସଂପ୍ରଦାୟର ଚିହ୍ନକୁ ସ୍ଥାନୀୟ ସ୍ତରରେ ପ୍ରାଥମିକତା ମିଳୁଥିଲା ।

ଭାରତୀୟ ବା ଇରାନୀ ସଂସ୍କୃତି ସହିତ ହେଲେନବାଦୀ ସଂସ୍କୃତିର ମିଶ୍ରଣର ପ୍ରତୀକ ଭାବରେ ମୁଦ୍ରାକୁ ଦେଖାଯାଇପାରେ । କେବେ କେବେ ମୁଦ୍ରାରେ ହେଲେନବାଦୀ ଦେବାଦେବୀଙ୍କ ସ୍ଥାନରେ ଯକ୍ଷୀ ଓ ଅନ୍ୟାନ୍ୟ ଭାରତୀୟ ଦେବୀ ଚିତ୍ର ଅଙ୍କିତ ହୋଇଥିବାର ଦେଖାଯାଏ, ଯଦିଓ ହେରାକ୍ଲିସଙ୍କ ଚିତ୍ରର ଅଙ୍କନ ପୂର୍ବବତ୍ ରହିଥିଲା । ଦକ୍ଷିଣ ତାଜିକିସ୍ତାନ ସ୍ଥିତ ତଖ୍ତ-ଇ-ସଙ୍ଗୀନରେ ଜୋରାଷ୍ଟ୍ରୀୟ ଅଗ୍ନି ମନ୍ଦିରରେ ଗ୍ରୀକ୍ ସାଜସଜ୍ଜାର ନମୁନା ଦେଖିବାକୁ ମିଳେ । ମିଶ୍ରଣ ସଂସ୍କୃତିର ଅନ୍ୟ ଏକ ଉଲ୍ଲେଖନୀୟ ଉଦାହରଣ ହେବ ପଶ୍ଚିମ-ଭାରତର ବେସନଗରସ୍ଥିତ ସ୍ତମ୍ଭ ଅଭିଲେଖ । ଏହି ସ୍ତମ୍ଭ ଅଭିଲେଖକୁ କୌଣସି ଏକ ଉତ୍ତର ଶୁଙ୍ଗ ରାଜାଙ୍କ ଦରବାରରେ ତକ୍ଷଶିଳାର ରାଜା ଏଣ୍ଟିଆଲକିଡ଼ାସ (Antialkidas)ଙ୍କ ଦୂତ ହେଲିଓଡୋରସ (Heliodorus) ସ୍ଥାପିତ କରିଥିଲେ । ହେଲିଓଡୋରସ ଥିଲେ ବିଷ୍ଣୁଙ୍କର କୃଷ୍ଣ ଅବତାର ବାସୁଦେବଙ୍କର ଅନୁଗାମୀ । ସେ ନିଜେ ଗ୍ରୀକ୍ ହେବା ସତ୍ତ୍ୱେ ବୈଷ୍ଣବ ଥିଲେ । ବେସନଗରର ଖନନରୁ ଏକ ମନ୍ଦିରର ଅବଶେଷ ପ୍ରାପ୍ତ ହୋଇଛି, ଯାହା ଥିଲା ସମ୍ଭବତଃ ହିନ୍ଦୁ ଉପାସନା ଉଦ୍ଦେଶ୍ୟରେ ସମର୍ପିତ ପ୍ରଥମ ମନ୍ଦିର । ଏହା ଭାଗବତ ସଂପ୍ରଦାୟର ମନ୍ଦିର ଥିଲା ବୋଲି ବିଶ୍ୱାସ କରାଯାଏ । ସେତେବେଳେ ଭାଗବତ ସଂପ୍ରଦାୟ ନୂଆକରି ବିକାଶ ଲାଭ କରୁଥିଲା ଏବଂ ତା'ର ଆଚାର-ବିଚାର ସାଂସ୍କୃତିକଗଣ ପାଇଁ ମାର୍ଗ ପ୍ରଶସ୍ତ କରୁଥିଲା । ଏହି ପ୍ରବୃତ୍ତି ଯୋଗୁଁ ବୈଦିକ ବ୍ରାହ୍ମଣ୍ୟ ଧର୍ମ ରାଜ-ସଂରକ୍ଷଣରୁ ବଞ୍ଚିତ ହେଲା । ବିଶେଷକରି ମୂର୍ତ୍ତିପୂଜକମାନଙ୍କ ପାଇଁ ବ୍ରାହ୍ମଣ୍ୟ ଧର୍ମର କୌଣସି ଅଧିକ ଉପଯୋଗ ରହିଲା ନାହିଁ ।

ହେଲିଓଡୋରସ ଅଭିଲେଖର ବିପରୀତ, 'ଗାର୍ଗୀ ସଂହିତା'ର 'ଯୁଗପୁରାଣ' ମଣ୍ଡଳରେ ଜନୈକ ବ୍ରାହ୍ମଣ ଲେଖକ ଯବନମାନଙ୍କ ପ୍ରତି ଶତ୍ରୁତାପୂର୍ଣ୍ଣ ଦୃଷ୍ଟିକୋଣ ପ୍ରଦର୍ଶନ କରିଛନ୍ତି । ତାଙ୍କ ଅନୁସାରେ, 'ଯବନ'ମାନେ ନୃଶଂସ ଓ ଅମାନବୀୟ ଆଚରଣ କରୁଥିଲେ । ଏମିତିରେ ଯବନମାନେ ମୌର୍ଯ୍ୟ କାଳରୁ ଭାରତରେ ପରିଚିତ ଥିଲେ । ତା' ସତ୍ତ୍ୱେ ସେମାନଙ୍କୁ ଖଳନାୟକ ତୁଲ୍ୟ ମନେକରିବା ବିସ୍ମୟକର ମନେହୁଏ । ଯବନମାନଙ୍କ ପ୍ରତି ରାଗର ବୋଧହୁଏ ଗୋଟାଏ କାରଣ ହେବ ସେମାନଙ୍କର ବ୍ରାହ୍ମଣ ତୁଳନାରେ ବୌଦ୍ଧଧର୍ମୀମାନଙ୍କ ପ୍ରତି ଅଧିକ ଆଦର ଭାବ । ଅବଶ୍ୟ ନୂତନ କରି ବିକଶିତ ହେଉଥିବା ଶୈବ ଓ ଭାଗବତ ସଂପ୍ରଦାୟକୁ ମଧ୍ୟ ଯବନମାନଙ୍କର କୃପାଦୃଷ୍ଟି ରହିଥିଲା । ବୈଦିକ ବ୍ରାହ୍ମଣ୍ୟ ଧର୍ମ ଆରମ୍ଭରୁ ଯବନ ଓ ମ୍ଳେଚ୍ଛମାନଙ୍କୁ ଜାତି ପରିଧିରୁ ବାହାର କରି ରଖିଥିଲା । ଏହାର ବିପରୀତ, ଭାଗବତ ସଂପ୍ରଦାୟ ବାହାରୁ ଆସିଥିବା ଅଜାତିର ଲୋକଙ୍କୁ ଓ ସମାଜକୁ ସ୍ୱୀକାର କରି ନେଉଥିଲା । ହେଲେନବାଦୀ ଗ୍ରୀକ୍‌ମାନଙ୍କ ପରି ବାହାର ଲୋକଙ୍କୁ ତ ଏହା ଜାତିମର୍ଯ୍ୟାଦା ମଧ୍ୟ ପ୍ରଦାନ କରିଥିଲା । ଏହି

ଧାର୍ମିକ ସଂପ୍ରଦାୟମାନେ ନଗରୀୟ ପରିବେଶରେ ବିକାଶ ଲାଭ କଲେ । ଅନ୍ୟପକ୍ଷରେ, ବୈଦିକ ବ୍ରାହ୍ମଣ୍ୟ ଧର୍ମର ଚଳଣି ପାଇଁ ନଗର ଅନୁକୂଳ ସିଦ୍ଧ ହୋଇ ନ ଥିଲା ।

## ଶକ, ପାର୍ଥିଆନ, କୁଶାଣ ଏବଂ କ୍ଷତ୍ରପ

ଉତ୍ତର-ପଶ୍ଚିମରେ ଗ୍ରୀକ୍ ରାଜ୍ୟଗୁଡ଼ିକର ପତନ ସମୟରେ ମଧ୍ୟ-ଏସିଆର ଯାଯାବର ଲୋକମାନେ ବେକ୍ଟ୍ରିଆ ଉପରେ ଥରେ ଆକ୍ରମଣ କଲେ । ଏହି ସମୟରୁ ମଧ୍ୟ-ଏସିଆର ଲୋକଙ୍କ ଦେଶାନ୍ତରଣ ଉତ୍ତର-ଭାରତର ଘଟଣାବଳୀ ଉପରେ ପୃଷ୍ଠଭୂମିର କାର୍ଯ୍ୟ କଲା । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ଶେଷ ଆଡ଼କୁ ଯେଉଁମାନେ ପ୍ରଥମେ ବେକ୍ଟ୍ରିଆ ଉପରେ ଆକ୍ରମଣ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ପାର୍ଥିଆନ (Parthians) ଏବଂ ସିଥିଆନମାନେ (Scythians) । ଭାରତୀୟ ପୋଥିମାନଙ୍କରେ ସେମାନଙ୍କୁ ପହ୍ଲବ ଓ ଶକ ବୋଲି ଉଲ୍ଲେଖ କରାଯାଇଛି । ଏହିମାନେ ବେକ୍ଟ୍ରୀୟ ଶକ୍ତିକୁ ଦୁର୍ବଳ କରିଥିଲେ । ଖ୍ରୀଷ୍ଟ ସମ୍ବତର ଆରମ୍ଭରେ ଉତ୍ତର-ପଶ୍ଚିମ ଭାରତରେ ସିଥୋ-ପାର୍ଥିଆନ ଶାସନର ବା ଶକ-ପହ୍ଲବ ଶାସନର ଶୁଭାରମ୍ଭ ହେଲା । ଶକମାନେ ମଧ୍ୟ-ଏସିଆର ଦକ୍ଷିଣିଜ ନଦୀ ଏବଂ ଇସ୍ସିକୁଲ ହ୍ରଦର (Issykkul lake) ଆଖପାଖରେ ବାସ କରୁଥିଲେ । ୟୁଚୀ ବା ୟୁଝିମାନଙ୍କ ଆକ୍ରମଣର ଶିକାର ହେବା ଫଳରେ ସେମାନେ ଦେଶାନ୍ତରଣ କରିବାକୁ ବାଧ୍ୟ ହେଲେ । କେତେକ ଗଲେ ଦକ୍ଷିଣ ଦିଗକୁ, ଆଉ କେତେକ ଗଲେ ପଶ୍ଚିମ ଆଡ଼କୁ । ୟୁଚୀମାନେ ମୂଳତଃ ପଶୁଚାରକ ଥିଲେ । ସେମାନଙ୍କ ପଶୁଚାରଣ କ୍ଷେତ୍ର ଥିଲା ପଶ୍ଚିମ ଚୀନ୍‌ର ସମତଳ ଅଞ୍ଚଳ ।

ଏମିତିରେ ଯାଯାବର ପଶୁଚାରକ ଗୋଷ୍ଠୀ ବିଶାଳ ରାଜ୍ୟ ସ୍ଥାପନ କରିବେ ବୋଲି ଆଶା କରାଯାଏନା । ମାତ୍ର ସ୍ଥାପିତ ରାଜ୍ୟଗୁଡ଼ିକ ସହିତ ସେମାନଙ୍କ ସମ୍ବନ୍ଧ ବୃଦ୍ଧି ପାଇବାରୁ ଏଭଳି ଏକ ସ୍ଥିତି ଉତ୍ପନ୍ନ ହେଲା, ଯେଉଁଥିରେ ଯାଯାବରମାନେ ସ୍ଥାୟୀ ସମାଜ ଉପରେ କର୍ତ୍ତୃତ୍ୱ ଜାହିର କଲେ । ଅନ୍ତତଃ ଏହା ରାଜ୍ୟ ଗଠନ ପାଇଁ ସହାୟକ ହେଲା । ଏହି ପ୍ରକ୍ରିୟାରେ ପଶୁଚାରକମାନେ ସୁଯୋଗ୍ୟ ଶାସକ ରୂପେ ପରିଚିତ ଲାଭ କଲେ । ସେତେବେଳେ ଛେଳି, ମେଣ୍ଢା, ଅଶ୍ୱ ଆଦି ପଶୁଧନ ଲାଭ କରିବା ସକାଶେ ଲୁଣ୍ଠନ କରିବା ଏବଂ ଚାରଣଭୂମି ଉପରେ ଅଧିକାର ସାବ୍ୟସ୍ତ କରିବା ଏକ ସାଧାରଣ କଥା ଥିଲା । ଏବେ ସେମାନେ ସଂସାଧନର ନିୟନ୍ତ୍ରଣ ଓ ପ୍ରବନ୍ଧନକୁ ମହତ୍ତ୍ୱ ଦେଲେ । ଏହି ପରିବର୍ତ୍ତନର ଆରମ୍ଭ ହେଲା ଦେୟ ଅସୁଲିରୁ । ପଶୁଚାରକ ଯାଯାବର ଗୋଷ୍ଠୀ ବସତି ସ୍ଥାପନ କରିଥିବା ସମାଜରୁ ସୁରକ୍ଷା ଟିକସ ବା ଦେୟ ଅସୁଲି କରୁଥିଲେ, ଯାହା କୁଳମୁଖ୍ୟ ସର୍ଦ୍ଦାରଙ୍କୁ ଶକ୍ତିଶାଳୀ କଲା ।

ଏଥିରୁ ଜନ୍ମ ନେଲା ଏକ ଅଭିଜାତ ବର୍ଗ । ପଶୁଚାରକ ଗୋଷ୍ଠୀର ଅଭିଜାତ ବର୍ଗ ହୁଏତ କୃଷି କରିପାରିଥାନ୍ତେ, ମାତ୍ର ସେମାନେ କୃଷକ ସମାଜ ଉପରେ ଶାସନ କରିବାକୁ ସୁବିଧାଜନକ ମନେକଲେ । ସେମାନେ ନିର୍ଦ୍ଦିଷ୍ଟ ଚାରଣ ଭୂମିଚକ୍ର ଦେଇ ଯାଉଥିଲେ । ପୁଣି ବସ୍ତୁ ପରିବହନ ପାଇଁ ପଶୁମାନଙ୍କୁ ଉପଯୋଗ କରୁଥିଲେ । ଏହାଫଳରେ ବସ୍ତୁ ବିନିମୟବେଳେ ସେମାନଙ୍କ ମହତ୍ତ୍ୱ ବଢ଼ିଲା; ସ୍ଥିର ସମାଜଗୁଡ଼ିକ ମଧ୍ୟରେ ସେମାନେ ଉତ୍ତମ ମଧ୍ୟସ୍ଥି ସିଦ୍ଧ ହେଲେ । ପୂର୍ବ କ୍ଷେତ୍ରରେ ସେମାନେ ଘୋଡ଼ା ଆଣି ବିକ୍ରି କଲେ, ପଶ୍ଚିମ କ୍ଷେତ୍ରରେ (ମଧ୍ୟ-ଏସିଆରେ) ରେଶମ ବିକ୍ରି କଲେ ।

ଏମିତିରେ ଶକମାନେ ଥିଲେ ମୂଳତଃ ପଶୁଚାରକ । ମାତ୍ର ସେମାନଙ୍କ ସଂସ୍କୃତି ପରିଷ୍କୃତ ଥିଲା, ଯାହା ତାଙ୍କର ସମାଧି-କକ୍ଷରୁ ସୁସ୍ପଷ୍ଟ ହୁଏ । ସେମାନେ କାଠରେ ବିଶାଳ ସମାଧିମାନ ନିର୍ମାଣ କରୁଥିଲେ । ସମାଧିରେ ଶକମାନଙ୍କର ସ୍ଥାପତ୍ୟ କୌଶଳ ପ୍ରତିଭାତ ହେଉଥିଲା । ସମାଧିର ଆକାର ଓ ବସ୍ତୁରେ ବିବିଧତା ରହିଥିଲା । ଏହା ଶକ ସମାଜରେ ଥିବା ସାମାଜିକ ପାର୍ଥକ୍ୟକୁ ଦର୍ଶାଏ ଏବଂ ଶକମାନେ ସାମାଜିକ ପ୍ରଭେଦ ସମ୍ପର୍କରେ ସଚେତନ ଥିଲେ ବୋଲି ଇଙ୍ଗିତ କରେ । ସମାଧିରେ ସର୍ଦ୍ଦାର ଏବଂ ତାଙ୍କ ଘୋଡ଼ା ସାଙ୍ଗରେ ଅନେକ ସମାଧି ଦ୍ରବ୍ୟକୁ ରଖାଯାଉଥିଲା । ଏହି ଦ୍ରବ୍ୟରେ ଅସ୍ତ୍ରଶସ୍ତ୍ର, ଘୋଡ଼ାର ଗହଣା ଓ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ଅନ୍ତର୍ଭୁକ୍ତ ଥିଲା । ବ୍ୟବହାର୍ଯ୍ୟ ବସ୍ତୁ ସୁସଜ୍ଜିତ ହୋଇ ରହିଥିଲା । ତହିଁରେ ସୁନାର ମଧ୍ୟ ବ୍ୟବହାର ହୋଇଥିଲା । ଶକମାନଙ୍କ ଗତିବିଧିର ପ୍ରମୁଖ ବିନ୍ଦୁ ଥିଲା ଘୋଡ଼ା । ଶକମାନେ ଘୋଡ଼ା ବ୍ୟବହାର କରୁଥିବାରୁ ତୀବ୍ର ଗତି ପାଇଥିଲେ । ସେମାନେ ଘୋଡ଼ାର ବିଭିନ୍ନ ସାମଗ୍ରୀ, ଯଥା- ସାଜ, ଲଗାମ, ସମାସିକ ଧନୁ (Compound bow)ର ଆବିଷ୍କାର କରିଥିଲେ । ଏହା ସେମାନଙ୍କ ସେନାର କୁଶଳତାକୁ ବୃଦ୍ଧି କଲା । ଅଶ୍ୱାରୋହୀ ଭାବରେ ପାଦ ରଖିବା ସକାଶେ ଏକ ପ୍ରାଚୀନ କିସମର ରେକାବ ମଧ୍ୟ ସେମାନେ ଆବିଷ୍କାର କରିଥିଲେ ବୋଲି ମନେକରାଯାଏ ।

ପଶୁଚାରଣର ଅଭିବୃଦ୍ଧିରେ ତଥା ବ୍ୟବସାୟର ମଧ୍ୟସ୍ଥି ରୂପରେ ସେମାନଙ୍କ ଭୂମିକାକୁ ମଧ୍ୟ-ଏସିଆର ଭୌଗୋଳିକ ସ୍ଥିତି ସାହାଯ୍ୟ କଲା । ମରୁପ୍ରାନ୍ତର ମଝିରେ ମଝିରେ ବିକ୍ଷିପ୍ତ ଭାବରେ ଓଏସିସ (ମରୁଦ୍ୟାନ) ଓ ଉର୍ବର ଜମିମାନ ରହିଥିଲା । ତନ୍ମଧ୍ୟରୁ କେତେକ ସହର ଓ ରାଜ୍ୟର ନାଭିକେନ୍ଦ୍ର ଥିଲା । ବିଶେଷକରି କେତେକ କ୍ଷେତ୍ର ପୂର୍ବବର୍ତ୍ତୀ ଆକେମେନିଡ଼ ଉଦ୍ୟମର ଫଳ ସ୍ୱରୂପ ଆଗରୁ ସ୍ଥାପିତ ହୋଇଥିଲା । ସେହିଭଳି ଉକ୍ତ କ୍ଷେତ୍ରଗୁଡ଼ିକୁ ହେଲେନବାଦୀମାନଙ୍କର ପ୍ରୋତ୍ସାହନ ମିଳିଥିଲା । ତରିମ୍ ଘାଟୀ ଭାରତୀୟ ଓ ଚୀନ୍ ବାଣିଜ୍ୟର ମିଳନସ୍ଥଳୀ ରୂପେ ବିକଶିତ ହୋଇଥିଲା । ଠିକ୍ ସେହିଭଳି ଦୁନହୁଆଂ ପ୍ରଥମେ ଏକ ଦୁର୍ଗ

ସହର (garrison town) ଥିଲା । ମାତ୍ର ଧୀରେ ଧୀରେ ସେଠାରେ ବାଣିଜ୍ୟ କାରବାର ଚାଲିଲା । ସେଥିପାଇଁ ପଶୁଚାରକମାନଙ୍କୁ ନିଜର ପ୍ରଭାବ ବିସ୍ତାର ପାଇଁ ମରୁଦ୍ୟାନ କ୍ଷେତ୍ରର ଅଧିବାସୀଙ୍କ ସହିତ ସମ୍ବନ୍ଧ ସ୍ଥାପିତ କରିବାକୁ ପଡୁଥିଲା ।

କ୍ରମଶଃ ଚାରଣକ୍ଷେତ୍ର ଶୁଷ୍କ ହୋଇପଡ଼ିଲା । ଫଳରେ ପଶୁଚାରକମାନେ ମଝିରେ ମଝିରେ ଚୀନ୍‌ର ପ୍ରଦେଶଗୁଡ଼ିକ ଉପରେ ଲୁଣ୍ଠନ ଆରମ୍ଭ କଲେ । ଉଦ୍ଦେଶ୍ୟ ଥିଲା ନୂତନ ଚାରଣକ୍ଷେତ୍ର ଅଧିକାର । ବସତି ସ୍ଥାପନ କରି ରହିଥିବା ଚୀନ୍ ସମାଜର ଧନରତ୍ନ ଲୁଣ୍ଠନ ମଧ୍ୟ ଉଦ୍ଦେଶ୍ୟ ଥିଲା । ପରେ ଚୀନ୍ ସମ୍ରାଟ ସି ହୁଆଂଗ ତୀଙ୍କ ପ୍ରତିରୋଧ ଯୋଗୁଁ ପଶୁଚାରକ ଆଦିବାସୀମାନେ ପଶ୍ଚିମ ଦିଗକୁ ଚାଲିଗଲେ । ଚୀନ୍‌ର ସୀମାନ୍ତକୁ ଯାଯାବର ଜାତି ସିଉଙ୍ଗ ନୁ / ଜିଓଂଗନୁ, ଓ୍ବ ସୁନ ଏବଂ ୟୁ-ଚି ମାନଙ୍କ ଆକ୍ରମଣରୁ ରକ୍ଷା କରିବାପାଇଁ ଖ୍ରୀ.ପୂ. ତୃତୀୟ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସମ୍ରାଟ ସି ହୁଆଂଗ ତୀ ମହାପ୍ରାଚୀର (Great Wall) ନିର୍ମାଣ କରାଇଥିଲେ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ସିଉଙ୍ଗ ନୁ ଯାଯାବର ଜାତିକୁ ଘୋର ଦୁର୍ଭିକ୍ଷର ସମ୍ମୁଖୀନ ହେବାକୁ ପଡ଼ିଲା । ଅଧିକ ବରଫପାତ ଏବଂ ପଡ଼ୋଶୀ ଆକ୍ରମଣ ଥିଲା ଦୁର୍ଭିକ୍ଷର ପ୍ରମୁଖ କାରଣ । ଦୁର୍ଭିକ୍ଷ ଯୋଗୁଁ ସେମାନଙ୍କୁ ଦେଶାନ୍ତରଣ କରିବାକୁ ପଡ଼ିଲା । ୟୁ-ଚି ଲୋକଙ୍କୁ ବିତାଡ଼ିତ କରି ସେମାନେ ବସବାସ କଲେ । ଏହାର କ୍ରମିକ ପ୍ରତିକ୍ରିୟା ସମଗ୍ର ମଧ୍ୟ-ଏସିଆରେ ପଡ଼ିଲା । ମଧ୍ୟ-ଏସିଆରେ ସଂଘଟିତ ଘଟଣାର ପ୍ରଭାବ ଉତ୍ତର ଭାରତରେ ଦେଖିବାକୁ ମିଳିଲା ।

ୟୁ-ଚି ଲୋକମାନେ ଉତ୍କୃଷ୍ଟ ଜମିରୁ ବିତାଡ଼ିତ ହୋଇ ସୁଦୂରବର୍ତ୍ତୀ ଅଞ୍ଚଳକୁ ଦେଶାନ୍ତରଣ କଲେ । ସେମାନେ ଦୁଇଟି ଗୋଷ୍ଠୀରେ ଭାଗ ହୋଇଥିଲେ । ପ୍ରଥମଟିକୁ କ୍ଷୁଦ୍ର ୟୁ ଚି କୁହାଗଲା । ସେମାନେ ଉତ୍ତର ତିବ୍ବତରେ ବସତି ସ୍ଥାପନ କଲେ । ଅନ୍ୟଟି ଥିଲା ମହା ୟୁ-ଚି (Great Yush-Chih) । ସେମାନେ ପଶ୍ଚିମ ଦିଗରେ ଯାଇ ଅରଲ ହ୍ରଦକୂଳରେ ପହଞ୍ଚିଲେ । ସେଠାରେ ସେମାନେ ସିଥିଆନ ବା ଶକମାନଙ୍କୁ ବିତାଡ଼ିତ କରି କିଛି କାଳ ବସବାସ କଲେ । ଏପଟେ ଶକମାନେ ପାର୍ଥିଆ ଓ ବେକ୍‌ଟ୍ରିଆ ମଧ୍ୟକୁ ପ୍ରବେଶ କଲେ । ଖ୍ରୀ.ପୂ. 128 ରେ ଜଣେ ଚୀନ୍ ପରିବ୍ରାଜକ ଲେଖିଥିଲେ ଯେ ଅରଲ ହ୍ରଦ ପାଖାପାଖି ପ୍ରଦେଶରେ ଆଉ ସିଥିଆନ ବା ଶକମାନେ ରହୁ ନ ଥିଲେ । ସେମାନଙ୍କ ସ୍ଥାନରେ ସେ ୟୁ-ଚିମାନଙ୍କୁ ବସବାସ କରିଥିବାର ପାଇଥିଲେ । ପାର୍ଥିଆ ଶକମାନଙ୍କୁ ବେଶି କାଳ ଧରି ଅଟକେଇ ରଖିପାରିଲା ନାହିଁ । ପ୍ରତିରୋଧ କରିବା ପ୍ରକ୍ରିୟାରେ ପାର୍ଥିଆର ଲୋକ ପରାଜିତ ହେଲେ । ସେ ଯାହାହେଉ, ଶକମାନେ ଆଉ ସେଠାରେ ଅଟକିଲେ ନାହିଁ । ସେମାନେ ସୈନ୍ଧବ ସମତଳ କ୍ଷେତ୍ରକୁ ମାଡ଼ିଗଲେ । ଶେଷରେ ସେମାନେ ପଶ୍ଚିମ ଭାରତରେ ପ୍ରତିଷ୍ଠା

ଲାଭ କଲେ । ସେମାନଙ୍କ ଅଧିକାର ମଥୁରା ପର୍ଯ୍ୟନ୍ତ ରହିଥିଲା । ପଶ୍ଚିମରେ ସେମାନଙ୍କର ମୁଖ୍ୟକେନ୍ଦ୍ର ଥିଲା ଇରାନର ସେଇସ୍ତାନ ପ୍ରଦେଶ । ଅଶ୍ୱାରୋହୀ ପଶୁଚାରକମାନେ ଅଶ୍ୱାରୋହୀ ସେନା ପାଇଁ ଖୁବ୍ ଯୋଗ୍ୟ ପ୍ରମାଣିତ ହେଲେ । ଯୁଦ୍ଧ ଅଭିଯାନବେଳେ ଏହାର ସୁଫଳ ଦେଖିବାକୁ ମିଳିଲା ।

ପାର୍ଥିଆନ, ଶକ ଓ ୟୁ-ଚି ମାନେ ଭାରତରେ ଗୋଟାକ ପରେ ଗୋଟାଏ ପହଞ୍ଚିଲେ । ବିଭିନ୍ନ ସମାଜର ଲୋକଙ୍କ ମଧ୍ୟରେ କଳହ ହେଲା । ମଧ୍ୟ-ଏସିଆର ମରୁଭୂମିର ଶୁଷ୍କତା ପୁଣି ଚୀନ୍ ଓ ଭାରତର ଇତିହାସକୁ ଓଲଟପାଲଟ କରିଦେଲା । ଚାରକ-ଯାଯାବର ଜୀବନବୃତ୍ତି ବସ୍ତୁର ସାମୟିକ ବିକାକିଣା ପାଇଁ ମାର୍ଗ ସଦୃଶ ହେଲା । କେତେକ ବସ୍ତୁ ବିନିମୟ ପଛରେ ଶୁଦ୍ଧ ଲାଭର ଉଦ୍ଦେଶ୍ୟ ରହିଥିଲା । କିଛି ବିନିମୟ ଭେଟି-ଉପହାର ରୂପରେ ଚାଲିଥିଲା । ଉଦାହରଣ ସ୍ୱରୂପ, ଚୀନ୍‌ର ରେଶମ ମଧ୍ୟ-ଏସିଆ ଦେଇ ଭାରତ ଓ ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ରକୁ ଆସୁଥିଲା । ଭାରତକୁ ଆସୁଥିଲା ଉପହାର ବିନିମୟ ଭାବରେ ଏବଂ ଭୂମଧ୍ୟ କ୍ଷେତ୍ରକୁ ଯାଉଥିଲା ବ୍ୟବସାୟିକ ସାମଗ୍ରୀ ରୂପରେ । ମଧ୍ୟ-ଏସିଆରୁ ଆସୁଥିବା ଲୋକ ଉଚ୍ଚ ପାର୍ବତ୍ୟ ଓ ମରୁଭୂମି ମାର୍ଗ ସହିତ ପରିଚିତ ଥିଲେ । ମଝିରେ ମଝିରେ ପଡୁଥିବା ମରୁଦ୍ୟାନରେ ସେମାନେ ବିଶ୍ରାମ ନେଉଥିଲେ । ଉତ୍ତର-ପଶ୍ଚିମର ଗିରିପଥ ଦେଇ ଭାରତ ଆସିବା କାଠିକର ଥିଲା । ମାତ୍ର ଭାରତର ସମତଳ କ୍ଷେତ୍ରର ଉର୍ବରତା ଓ ଧନସମ୍ପତ୍ତିର ଆକର୍ଷଣକୁ ସେମାନେ ଏଡ଼ାଇ ପାରୁ ନ ଥିଲେ । ଉର୍ବର ଜମିକୁ ବାଦ୍‌ଦେଲେ ଲାଭଜନକ ବ୍ୟବସାୟ ରୂପରେ ଭାରତରେ ଉତ୍ପାଦିତ ପଣ୍ୟସାମଗ୍ରୀ ମଧ୍ୟ ଲୋକଙ୍କୁ ଆକୃଷ୍ଟ କରୁଥିଲା । ରୋମୀୟ ବାଣିଜ୍ୟ ଓ ମଧ୍ୟ-ଏସିଆ ମଧ୍ୟରେ ଥିବା ସମ୍ବନ୍ଧ ସଂବୃଦ୍ଧି ପାଇଁ ସମ୍ଭାବନା ଆଣିଦେଲା । ଏକା ରୀତିରେ, ରୋମ୍ ସାମ୍ରାଜ୍ୟର ଅଂଶ ଭାବରେ ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ର ଓ ପଶ୍ଚିମ-ଭାରତ ମଧ୍ୟରେ ବାଣିଜ୍ୟ କାରବାର ବୃଦ୍ଧି ପାଇବାରେ ଲାଗିଥିଲା । ଆରମ୍ଭରେ ପଶୁଚାରକମାନେ ବାଣିଜ୍ୟକୁ ସହାୟକ ବୃତ୍ତି ଭାବରେ ନେଇଥିଲେ । ପରେ ଏହା ସେମାନଙ୍କର ମୁଖ୍ୟ ବୃତ୍ତି ହେଲା । ଏହି ପ୍ରକ୍ରିୟାରେ ପଶୁଚାରକମାନେ ବଣିକ ହେଲେ । ପାଖରେ ଘୋଡ଼ା ଥିବାରୁ ସେମାନେ ସଫଳ ଅଶ୍ୱାରୋହୀ ସିଦ୍ଧ ହେଲେ ।

ଶକମାନଙ୍କର ଭାରତୀୟ ଐତିହାସିକ ପରିଦୃଶ୍ୟରେ ପ୍ରବେଶ ଉତ୍ତାରୁ, ଶକ ମୁଦ୍ରା ଓ ଅଭିଲେଖଗୁଡ଼ିକ ଭାରତୀୟ ଇତିହାସର ଅଧ୍ୟୟନ ପାଇଁ ଖୁବ୍ ପ୍ରାସଙ୍ଗିକ ସିଦ୍ଧ ହେଲା । ଠିକ୍ ସେହିଭଳି ମଧ୍ୟ-ଏସିଆର ଉଲ୍ଲେଖ ଥିବା ଚୀନ୍‌ର ତଥ୍ୟସାମଗ୍ରୀ ମଧ୍ୟ ଖୁବ୍ ଉପଯୋଗୀ ହେଲା । ପ୍ରାୟ 80 ଖ୍ରୀ.ପୂ.ରେ ଶକ ରାଜା ମାଉଏଜ (Maues) ବା ମୋଗ ଗାନ୍ଧାରରେ ଶକ ଶାସନର ସ୍ଥାପନା କଲେ । ତାଙ୍କର ଜଣେ ଉତ୍ତରାଧିକାରୀ ଅଜେସ (Azes) ଉତ୍ତର

ଭାରତରେ ଥିବା ଶେଷ ଇଣ୍ଡୋ-ଗ୍ରୀକ୍ ରାଜ୍ୟକୁ ଅଧିକାର କରିନେଲେ । ପ୍ରାୟ ୫୮ ଖ୍ରୀ.ପୂ.ରେ ଆରମ୍ଭ ହୋଇଥିବା ସମ୍ବତର ସେ ପ୍ରଚଳନ କରିଥିଲେ ବୋଲି ଆଜିକାଲି ତଥ୍ୟ ଦିଆଯାଉଛି । ଏହି ସମ୍ବତକୁ ପରେ କୃତ, ମାଳବ ବା ବିକ୍ରମାଦିତ୍ୟ ସମ୍ବତ ନାଁରେ ପ୍ରସିଦ୍ଧି ମିଳିଲା । ଯାହା ମନେହୁଏ, ଏହି ସମ୍ବତର ଉପଯୋଗ ଜ୍ୟୋତିର୍ବିଜ୍ଞାନରେ ମଧ୍ୟ କରାଯାଉଥିଲା । ସେଥିପାଇଁ 'କୃତ' ଶବ୍ଦର ବ୍ୟବହାର ରହିଛି । ରାଜାଙ୍କ ନାମକୁ ଯୋଡ଼ି ସମ୍ବତକୁ ପ୍ରତିଷ୍ଠା ଦିଆଗଲା । ପରେ ଏଥିରେ ବିକ୍ରମାଦିତ୍ୟଙ୍କର ନାମ ଯୋଡ଼ାଗଲା । ଏହି ସମ୍ବନ୍ଧ କିମ୍ବଦନ୍ତୀମୂଳକ ଅଟେ, କାରଣ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ବିକ୍ରମାଦିତ୍ୟ ନାମରେ ଏଭଳି କୌଣସି ପ୍ରତାପୀ ରାଜା ନ ଥିଲେ, ଯାହାଙ୍କ ନାମରେ ସମ୍ବତର ପ୍ରଚଳନ ହୋଇପାରିବ ।

ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଦ୍ୱିତୀୟ ମିତ୍ରେଦେଅସ ଭାରତରେ ପହଲବ ଶକ୍ତିର ସ୍ଥାପନା କଲେ । ତା'ର କିଛି ବର୍ଷ ପରେ ବୋନୋନିସ (Vonones) କ୍ଷମତାକୁ ଆସିଲେ । ଗୋଣ୍ଡୋଫେରିସ (Gondophares) ବା ଗୁଣ୍ଡଫର୍ନିସ (Gundophernes)ଙ୍କୁ ଏହି ସମୟରେ ପ୍ରସିଦ୍ଧି ମିଳିଲା, କାରଣ ଯୀଶୁଖ୍ରୀଷ୍ଟଙ୍କର ଶିଷ୍ୟ ସେଣ୍ଟ ଥୋମାସଙ୍କ ସହିତ ତାଙ୍କର ସମ୍ବନ୍ଧ ଥିଲା । ସେଣ୍ଟ ଥୋମାସ ଓ ଥୋମାସ ଜଣେ ହୋଇଥିବେ ବୋଲି ଅନୁମାନ କରାଯାଏ । ପ୍ରବାଦ ଅଛି ଯେ, ସେଣ୍ଟ ଥୋମାସ ପୂର୍ବ ଭୂମଧ୍ୟ କ୍ଷେତ୍ରରୁ ଯାତ୍ରା ଆରମ୍ଭ କରି ଗୋଣ୍ଡୋଫେରିସଙ୍କ ରାଜସଭାରେ ପହଞ୍ଚିଥିଲେ । ସେଠାରୁ ସେ ଦକ୍ଷିଣ ଭାରତକୁ ଯାତ୍ରା କରିଥିଲେ । ଏହି ଘଟଣାରୁ ଗୋଣ୍ଡୋଫେରିସଙ୍କ ସମୟ ପ୍ରଥମ ଶତାବ୍ଦୀ ହୋଇଥିବ ବୋଲି ମନେକରାଯାଏ । ମାତ୍ର ଦକ୍ଷିଣ ଭାରତରେ ଖ୍ରୀଷ୍ଟଧର୍ମ ପ୍ରଥମ ଶତାବ୍ଦୀ ପରେ ଯାଇ ପହଞ୍ଚିଥିବାର ଐତିହାସିକ ପ୍ରମାଣ ରହିଛି ।

ଶକ ଶାସନ ମୋଟାମୋଟି ଭାବେ ଆକେମେନିଡ଼ ଏବଂ ଇରାନର ସେଲ୍ୟୁକସୀ ବ୍ୟବସ୍ଥା ଭଳି ଥିଲା । ରାଜ୍ୟକୁ କେତୋଟି ପ୍ରଦେଶରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ପ୍ରଦେଶରେ ମହାକ୍ଷତ୍ରପ ନାମରେ ଜଣେ ସାମରିକ ପ୍ରଶାସକ ନିଯୁକ୍ତ ଥିଲେ । ପ୍ରଦେଶକୁ ପୁଣି କେତୋଟି ଭାଗରେ ବିଭକ୍ତ କରି ତା'ର ଶାସକ ରୂପେ କ୍ଷତ୍ରମ ନାମରେ ଜଣେ ଅଧିକାରୀଙ୍କୁ ନିଯୁକ୍ତ କରାଯାଇଥିଲା । କ୍ଷତ୍ରପମାନେ କେବଳ ଅଭିଲେଖ ଜାରି କରୁ ନ ଥିଲେ, ତା' ସହିତ ମୁଦ୍ରା ପ୍ରଣୟନ ମଧ୍ୟ କରୁଥିଲେ । ଏଥିରୁ ମନେହୁଏ ଯେ, ଭାରତର ଜଣେ ସାଧାରଣ ପ୍ରଶାସକ ତୁଳନାରେ ସେମାନଙ୍କୁ ଅଧିକ ସ୍ୱାଧୀନତା ମିଳିଥିଲା । ଶକମାନଙ୍କର ଉଭୟ ଭାରତୀୟ ଓ ଅଣ-ଭାରତୀୟ ନାମ ରହିଥିବାର ଦେଖାଯାଏ । କେତେକ ମର୍ଯ୍ୟାଦାବାନ ସ୍ଥାନୀୟ ଲୋକଙ୍କୁ ମଧ୍ୟ ଶାସନାଧିକାରୀ ରୂପେ ନିଯୁକ୍ତି ମିଳୁଥିଲା । ଶକମାନଙ୍କର ମେରିଡ୍ଡାର୍କ ନାମରେ ଏକ ସରକାରୀ ପଦବୀ ଥିବାର ଦେଖାଯାଏ । ତାଙ୍କୁ କୌଣସି ବିଶେଷ

ଅଞ୍ଚଳର ଅଧିକାରୀ ଭାବେ ଦାୟିତ୍ୱ ଦିଆଯାଇଥିଲା । ଦୁଇଜଣ ରାଜାଙ୍କ ନାମରେ ମୁଦ୍ରା ପ୍ରଚଳନଜ ବ୍ୟବସ୍ଥାକୁ ଦେଖି କୁହାଯାଏ ଯେ, ଶକ ରାଜା ଏକ କମ୍ ମର୍ଯ୍ୟାଦାସମ୍ପନ୍ନ ରାଜାଙ୍କ ସହିତ ମିଶି ମୁଦ୍ରା ପ୍ରଣୟନ କରୁଥିଲେ । ଏହାର ବିପରୀତ, କେତେକ ରାଜା ହେଲେନବାଦୀ ଓ ଆକେମେନିଡ଼ ପରମ୍ପରାର ଅନୁକରଣ କରି 'ମହାରାଜ' ଓ 'ରାଜାଧିରାଜ' ଆଦି ବଡ଼ ବଡ଼ ପଦବୀ ଧାରଣ କରୁଥିଲେ । ବଡ଼ ବଡ଼ ଆଡ଼ମ୍ବରପୂର୍ଣ୍ଣ ଉପାଧି ଧାରଣର ଉଦ୍ୟମ ନିଶ୍ଚିତରୂପେ କିଛିକାଳ ପୂର୍ବେ ଯାଯାବର ଜୀବନ ଯାପନ କରୁଥିବା ଶକମାନଙ୍କୁ ଅଜବ ଲାଗୁଥିବ !

ୟୁ-ଚି ମାନେ ଶକମାନଙ୍କୁ ଦକ୍ଷିଣ ଦିଗକୁ ବିତାଡ଼ିତ କଲେ । ଏକ ଚୀନ୍ ସୂତ୍ରର ଉଲ୍ଲେଖ ଅନୁଯାୟୀ, ୟୁ-ଚି ମାନଙ୍କର ଜଣେ ସର୍ଦ୍ଦାର, କୁଜୁଲା କାଡ଼ଫିସ (Kujula Kadphises) ସେମାନଙ୍କର ପାଞ୍ଚୋଟି ଜନଜାତିକୁ ଏକଜୁଟ କଲେ ଏବଂ ଉତ୍ତର ପାର୍ବତ୍ୟାଞ୍ଚଳ ବାଟ ଦେଇ ଉତ୍ତର-ପଶ୍ଚିମ ଭାରତରେ ପ୍ରବେଶ କଲେ । କାଡ଼ଫିସ ବେକ୍ଟ୍ରିଆରେ ଶାସନ ପ୍ରତିଷ୍ଠା କଲେ ଏବଂ କାବୁଲ ଓ କାଶ୍ମୀର ପର୍ଯ୍ୟନ୍ତ କ୍ଷେତ୍ରକୁ ନିଜ ଅଧିକାରଭୁକ୍ତ କଲେ । ଏଥିରୁ ଜନ୍ମନେଲା କୁଶାଣ ରାଜ୍ୟ । ଉଭୟ ଗ୍ରୀକ୍ ଓ ଲାଟିନ ସ୍ରୋତସାମଗ୍ରୀରେ ମଧ୍ୟ ଏହାର ପ୍ରମାଣ ରହିଛି । ଉପରୋକ୍ତ ସ୍ରୋତସାମଗ୍ରୀରେ ଉତ୍ତରପଟୁ ଯାଯାବରମାନେ ବେକ୍ଟ୍ରିଆ ଉପରେ ଆକ୍ରମଣ କରୁଥିଲେ ବୋଲି ଅଭିଯୋଗ କରାଯାଇଛି । ଭାରତୀୟ ପୋଥିପାଠରେ କୁଶାଣର ଉଲ୍ଲେଖ ନାହିଁ । ବରଂ ସେମାନଙ୍କୁ ତୁଖାର ବା ତୁଷାର ବୋଲି କୁହାଯାଇଛି । କୁଶାଣ ରାଜ୍ୟର ଏକ ମୁଖ୍ୟ ପ୍ରଦେଶ ଥିଲା ବେଗ୍ରାମ-କାବୁଲ । ଏକଦା ଏହା ସେଲ୍ୟୁକସୀ ଏବଂ ମୌର୍ଯ୍ୟ ଅଧୀନରେ ଥିବା ପୈରୋପାମିସାଡ଼ି (Paropamisadae)-ମାନଙ୍କର ମୁଖ୍ୟ କେନ୍ଦ୍ର ଥିଲା । ପୁଣିଥରେ ଇଣ୍ଡୋ-ଇରାନ ସୀମାନ୍ତ କ୍ଷେତ୍ର ଉତ୍ତର-ଭାରତ ଓ ପଶ୍ଚିମର ଶକ୍ତିମାନଙ୍କ ପାଇଁ ବିବାଦ କ୍ଷେତ୍ର ସିଦ୍ଧ ହେଲା । ପ୍ରଥମ ଶତାବ୍ଦୀର ମଧ୍ୟଭାଗରେ କୁଜୁଲା କାଡ଼ଫିସଙ୍କର ମୃତ୍ୟୁ ପରେ ୱେମା କାଡ଼ଫିସ (Wema Kadphises) ସିଂହାସନାରୂଢ଼ ହେଲେ । କୁଶାଣ ମୁଦ୍ରାରେ କିଛି ସୁନାର ମୋହର ମିଳିଛି । ଏହା ରୋମ୍‌ର ଦିନାରିୟସ ଔରିୟସ (denarius aureus) ମୁଦ୍ରାର ଅନୁକରଣ ବୋଲି କୁହାଯାଏ, ଯାହା ରୋମ୍‌ର ବାଣିଜ୍ୟ ଯୋଗୁଁ ମଧ୍ୟ-ଏସିଆରେ ପ୍ରଚଳିତ ଥିଲା । କୁଶାଣମାନେ ଟେଟ୍ରାଡ୍ରଖମ (tetradrachms) ନାମରେ ଅନେକ ତମ୍ବାମୁଦ୍ରା ମଧ୍ୟ ପ୍ରଣୟନ କରିଥିଲେ । ଏଥିରେ ଶିବମୂର୍ତ୍ତି ଅଙ୍କିତ ହୋଇଥିଲା ।

ମଧ୍ୟ-ଏସିଆରେ କନିଷ୍କଙ୍କ ଅଧୀନରେ କୁଶାଣ ବଂଶ ଖୁବ୍ ଅଭିବୃଦ୍ଧି ଲାଭ କଲା । ଆଫଗାନିସ୍ତାନରୁ ପ୍ରାପ୍ତ ଅଭିଲେଖରେ କନିଷ୍କଙ୍କ କୁଶାଣମାନଙ୍କର ପୂର୍ବବର୍ତ୍ତୀ ରାଜାମାନଙ୍କ

ସହ ସମ୍ପର୍କର ସ୍ପଷ୍ଟ ଉଲ୍ଲେଖ ରହିଛି । ଏହି ଅଭିଲେଖରେ କନିଷ୍କ ହିନ୍ଦୁ ଜୟ କରିଛନ୍ତି ବୋଲି କହିଛନ୍ତି । ସେତେବେଳେ ଉତ୍ତର-ପଶ୍ଚିମ ଭାରତକୁ ହିନ୍ଦୁ କୁହାଯାଉଥିଲା ।'ସେ ଚମ୍ପା (ମଧ୍ୟ-ଗାଙ୍ଗେୟ ସମତଳରେ ସ୍ଥିତ ନଗରୀ) ପର୍ଯ୍ୟନ୍ତ ସମସ୍ତ ନଗରୀ ଉପରେ ବିଜୟ ହାସଲ କରିଛନ୍ତି ବୋଲି ଉଲ୍ଲେଖ ରହିଛି । କନିଷ୍କ ଆହୁରି ମଧ୍ୟ କହିଛନ୍ତି ଯେ ସେ ଗ୍ରୀକ୍ ଲିପିରେ ଏକ ରାଜାଦେଶ ଜାରି କରିଥିଲେ । ଉକ୍ତ ରାଜାଦେଶକୁ ପୁଣି 'ଆର୍ଯ୍ୟନ' ଭାଷାରେ ଅନୁବାଦ କରିଥିଲେ । ପ୍ରଥମଥର ପାଇଁ ସେ ଏକ ନିର୍ଦ୍ଦିଷ୍ଟ ଭାଷାକୁ 'ଆର୍ଯ୍ୟନ' ବୋଲି ଉଲ୍ଲେଖ କରିଛନ୍ତି । ବୋଧହୁଏ, ପ୍ରାକୃତକୁ ସେ ଆର୍ଯ୍ୟନ ବୋଲି କହୁଥିଲେ । ମଥୁରାରୁ ପ୍ରାପ୍ତ ଏକ ମସ୍ତକବିହୀନ ପ୍ରତିକୃତି ପ୍ରାପ୍ତ ହୋଇଛି, ଯାହା କନିଷ୍କଙ୍କର ବୋଲି ଏକ ଅଭିଲେଖରୁ ଜଣାପଡ଼େ । ପ୍ରତିକୃତିରେ ରାଜା କନିଷ୍କ ଯୋତା ଓ କୋଟ୍ ପରିହିତ ହୋଇଛନ୍ତି । କନିଷ୍କ ୭୮ ରୁ ୧୪୪ ମସିହା ମଧ୍ୟରେ କେବେ ସିଂହାସନରେ ଅଭିଷିକ୍ତ ହୋଇଥିବେ । ପ୍ରାୟ ୭୮ ମସିହାରେ ଆରମ୍ଭ ହୋଇଥିବା ଏକ ସମ୍ବତକୁ ଶକ ସମ୍ବତ ନାମରେ ଚିହ୍ନିତ କରାଯାଏ । ଏହି ବର୍ଷ କନିଷ୍କ ସିଂହାସନରେ ବସିଥିବେ ବୋଲି କେତେକ ବିଶ୍ୱାସ କରନ୍ତି । କୁଶାଣ ରାଜ୍ୟ ମଧ୍ୟ ଗଙ୍ଗା ସମତଳ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା, କାରଣ ମଧ୍ୟଗଙ୍ଗା କ୍ଷେତ୍ରରୁ କୁଶାଣ ଅଭିଲେଖ ପ୍ରାପ୍ତ ହୋଇଛି । କୁଶାଣମାନଙ୍କର ପ୍ରଧାନ ସହର ଥିଲା ପୁରୁଷପୁର, ଯାହା ପେଶାୱାର ପାଖରେ ଅବସ୍ଥିତ । ଅନ୍ୟ ଏକ ପ୍ରଧାନ ସହର ହେଲା ମଥୁରା । କୁଶାଣ ଶିଳ୍ପାବଶେଷମାନ ଚିରାଂଦରୁ ପ୍ରାପ୍ତ ହୋଇଛି । ମାତ୍ର କୁଶାଣମାନେ ଉକ୍ତ ଅଞ୍ଚଳକୁ ଅଧିକାରଭୁକ୍ତ କରିଥିଲେ ନା ନାହିଁ ତହିଁରୁ ସ୍ପଷ୍ଟ ପ୍ରମାଣ ପ୍ରାପ୍ତ ହୁଏ ନାହିଁ । ଶିଳ୍ପାବଶେଷ ଓ ମୁଦ୍ରା ବାଣିଜ୍ୟ ମାର୍ଗରେ ଦୂରଦୂରାନ୍ତରକୁ ଯାତ୍ରା କରିଥାନ୍ତି । ତାକୁ ସର୍ବଦା ଦିଗ୍‌ବିଜୟର ପ୍ରମାଣ ବୋଲି ମନେକରାଯିବା କଥା ନୁହେଁ ।

କୁଶାଣ ରାଜ୍ୟରେ କାଶଗଡ଼ ଭଳି ମଧ୍ୟ-ଏସିଆର ଦୂରବର୍ତ୍ତୀ ପ୍ରଦେଶ ସାମିଲ ହେଲାପରେ ଏହା ଏକ ବିଶାଳ ରାଜ୍ୟରେ ପରିଣତ ହେଲା, ଯାହାକୁ ସାମ୍ରାଜ୍ୟ-ସଦୃଶ ବୋଲି କହିହେବ । ମରୁଦ୍ୟାନ ଏବଂ କୁଶାଣ କ୍ଷେତ୍ର ଭାରତ ଓ ଚୀନ୍‌ର ମଧ୍ୟଭାଗରେ ରହିଥିବାରୁ ଉଭୟ ଦେଶ ପରସ୍ପରର ନିକଟବର୍ତ୍ତୀ ହେଲେ । ନିକଟରେ କେତେକ ଅଭିଲେଖ ଓ ମୁଦ୍ରାର ଆବିଷ୍କାର ହୋଇଛି, ଯାହା କ୍ଷେତ୍ର ମଧ୍ୟର ବ୍ୟାପକ ଅନ୍ତଃସମ୍ପର୍କକୁ ଦର୍ଶାଏ । କୁଶାଣ ସାମ୍ରାଜ୍ୟର ବୃହତ୍ ଅଂଶ ଥିଲା ମଧ୍ୟ-ଏସିଆରେ ଏବଂ ତା'ର କେନ୍ଦ୍ର ଥିଲା ବେକ୍ଟ୍ରିଆ । ଏଥିପାଇଁ ଅନେକ କୁଶାଣ ବେକ୍ଟ୍ରିଆ ଅଭିଲେଖ ପ୍ରଦାନ କରାଯାଇଥିଲା । ବେକ୍ଟ୍ରିଆରେ ପ୍ରାକୃତ ଭାଷାରେ ଲିଖିତ ଅଭିଲେଖ ମିଳିଛି । ମାତ୍ର ଭାରତର ଉତ୍ତର-ପଶ୍ଚିମ ପ୍ରଦେଶରେ ବେକ୍ଟ୍ରିଆ ଭାଷାରେ ଲିଖିତ ଅଭିଲେଖ ନାହିଁ । ମଧ୍ୟ-ଏସିଆର ଖଲଚୟାନରେ ମିଳିଥିବା ଏକ ଆଦ୍ୟ କୁଶାଣ ମୁଦ୍ରାରେ ବ୍ରାହ୍ମୀ ମୁଦ୍ରାଭିଲେଖ ମିଳିଛି, ଯଦିଓ ଖରୋଷ୍ଠୀର ମଧ୍ୟ ବ୍ୟବହାର

ରହିଥିଲା । ଏଥିରୁ ମନେହୁଏ ଯେ ଭାରତ ବାହାରେ ବି ହୁଏତ ପ୍ରାକୃତ ଭାଷାଭାଷୀ ଲୋକ ରହୁଥିଲେ । ଏଥିରୁ ସାଂସ୍କୃତିକ ଓ ବାଣିଜ୍ୟିକ ମହତ୍ତ୍ୱ କଥା ବି ଜଣାପଡ଼େ ।

ଉତ୍ତର-ପଶ୍ଚିମ କ୍ଷେତ୍ରକୁ ମଧ୍ୟ-ଏସିଆ ସହିତ ଏବଂ ଉପର ସିନ୍ଧୁ ମାର୍ଗକୁ ଗିଲଗିଟ, ଚିତ୍ରାଲ ଏବଂ ସ୍କର୍ଦୁ ସହିତ ଯୋଡ଼ିବା ସକାଶେ କିଛି ବର୍ଷ ପୂର୍ବେ କାରକୋରମ ରାଜପଥର ନିର୍ମାଣ ହେଲା । ସେତେବେଳେ ଜଣାପଡ଼ିଲା ଯେ ପ୍ରାୟ ସେହି ଗତିପଥରେ ବହୁ ପୂର୍ବରୁ ଏକ ରାଜପଥ ରହିଥିଲା । ସିନ୍ଧୁର ପାର୍ଶ୍ୱରେ ଯାଇ ଏହା ହୁଂଜା ଉପତ୍ୟକାରେ ପ୍ରବେଶ କରିଥିଲା । ଶେଷରେ ଏହାର ଶାଖାମାନ ସମରକନ୍ଦ, ତାସକୁରଗନ ଏବଂ ୟାରକନ୍ଦକୁ ଯାଇଥିଲା । ରେଶମ ମାର୍ଗର ଏହା ଥିଲା ଏକ ଶାଖା । ଅଶୋକଙ୍କ ରାଜାଦେଶ ଉତ୍ତର-ପଶ୍ଚିମରେ ସ୍ଥିତ ମାନସେହରା ଏବଂ ଶାହବାଜଗଡ଼ିରେ ମିଳିଛି, ଯାହା ଉକ୍ତ ମାର୍ଗର ଆରମ୍ଭ ବିନ୍ଦୁ ହେବାପାଇଁ ଉଚିତ ସ୍ଥାନ ଥିଲା । ଏହି ମାର୍ଗର ପାର୍ଶ୍ୱରେ ଖରୋଷ୍ଠୀ, ବ୍ରାହ୍ମୀ ଏବଂ ବେକ୍ଟ୍ରିଆରେ ଲିଖିତ ଅଭିଲେଖ ମିଳିଛି, ବୌଦ୍ଧମୂର୍ତ୍ତି ମିଳିଛି । ଏଥିରୁ ଅନୁମିତ ହୁଏ ଯେ ଖ୍ରୀଷ୍ଟ ସମ୍ବତ ଆରମ୍ଭର ପୂର୍ବରୁ ମାର୍ଗଟି ରହିଥିଲା । ଉତ୍ତର ଭାରତରେ 'ଶାରଦା' ନାମରେ ଏକ ଲିପିର ବ୍ୟବହାର ରହିଥିଲା । ଆଦ୍ୟକାଳୀନ ଶାରଦା ଲିପିରେ ଓ ସୋଗାଡ଼ିୟନ ତଥା ଚୀନ୍ ଭାଷାରେ ଲିଖିତ ଅଭିଲେଖରୁ ଜଣାପଡ଼େ ଯେ ଉକ୍ତ ମାର୍ଗର ପରେ ମଧ୍ୟ ଉପଯୋଗ ହେଉଥିଲା । କାହିଁ କେଉଁଠି ଅଶ୍ୱର ବର୍ଣ୍ଣନା ରହିଛି । ଏଥିରୁ ଲାଗେ, ମଧ୍ୟ-ଏସିଆ ସହିତ ଅଶ୍ୱର ବ୍ୟାପାର ଚାଲିଥିଲା । ମଧ୍ୟ-ଏସିଆର ଅଶ୍ୱକୁ ଉଚ୍ଚକୋଟୀର ବୋଲି ମନେକରାଯାଉଥିଲା । ଏହି ମାର୍ଗର ବ୍ୟାପକ ଉପଯୋଗ ହେଉଥିଲା, କାରଣ ମଧ୍ୟ-ଏସିଆର ସେନାର ଭାରତରେ ପ୍ରବେଶ ପାଇଁ ଏହା ଏକ ପ୍ରବେଶ ବିନ୍ଦୁ ତୁଲ୍ୟ ଥିଲା । ଏହି ମାର୍ଗର ମଧ୍ୟ-ଏସିଆ ସହିତ ସମ୍ବନ୍ଧ ଥିବାରୁ ଏହା ବାଣିଜ୍ୟର ଅଭିବୃଦ୍ଧିରେ ସହାୟକ ହେଲା । ଭାରତର କାରିଗରୀ କୁଶଳତାକୁ ମଧ୍ୟ ଏହା ପ୍ରଭାବିତ କଲା । ଉଦାହରଣ ସ୍ୱରୂପ, ଘୋଡ଼ାର ସାଜସରଞ୍ଜାମ, ଉପକରଣ ତିଆରିରେ ଉନ୍ନତି ଦେଖିବାକୁ ମିଳିଲା । ଏହିସବୁ ଉପକରଣ ସହିତ ମଧ୍ୟ-ଏସିଆବାସୀ ପରିଚିତ ଥିଲେ । ଏଣିକି ତା'ର ଭାରତରେ ଉତ୍ପାଦନ ଯୋଗୁଁ ଏଠାକାର ଅଶ୍ୱାରୋହୀ ସେନା ଲାଭାନ୍ୱିତ ହେଲେ ।

ଯେହେତୁ କୁଶାଣ ରାଜ୍ୟର ପରିଧି ବୃଦ୍ଧି ପାଇଥିଲା ଏବଂ ତହିଁରେ ବସବାସ କରୁଥିବା ଲୋକଙ୍କ ମଧ୍ୟରେ ଅନ୍ତଃସମ୍ବନ୍ଧ ନିଗୂଢ଼ ହୋଇଥିଲା, ଅନେକ ଧର୍ମକୁ ରାଜାଙ୍କ ପୃଷ୍ଠପୋଷକତା ପ୍ରାପ୍ତ ହେଲା । ଧର୍ମଗୁଡ଼ିକ ମଧ୍ୟରେ ଥିଲେ ବୌଦ୍ଧଧର୍ମ, ଜୈନଧର୍ମ, ଭାଗବତ ଓ ଶୈବ ସଂପ୍ରଦାୟ, ଜୋରାଷ୍ଟ୍ରବାଦୀ ଏବଂ ହେଲେନବାଦୀ ଉପାସନା ପ୍ରଣାଳୀ । ଉତ୍ତରର ବୌଦ୍ଧ ଧର୍ମାବଲମ୍ବୀମାନେ କନିଷ୍କଙ୍କୁ ସେମାନଙ୍କର ସଂରକ୍ଷକ ମନେକରୁଥିଲେ । ବୌଦ୍ଧ ସିଦ୍ଧାନ୍ତର ସ୍ପଷ୍ଟୀକରଣ ପାଇଁ ଆୟୋଜିତ ଚତୁର୍ଥ ବୌଦ୍ଧ ସମ୍ମିଳନୀର ଆୟୋଜକ ବୋଲି ତାଙ୍କୁ

କୁହାଗଲା । ପାଟଳିପୁତ୍ରଠାରେ ମୌର୍ଯ୍ୟ କାଳରେ ତୃତୀୟ ବୌଦ୍ଧ ସମ୍ମିଳନୀ ସଂଘଟିତ ହୋଇଥିଲା । ତହିଁରେ ଅଶୋକ ଅଧ୍ୟକ୍ଷତା କରିଥିଲେ ବୋଲି ଥେରବାଦୀ ବୌଦ୍ଧମାନେ ଦାବି କରନ୍ତି । କନିଷ୍କଙ୍କର ଚତୁର୍ଥ ବୌଦ୍ଧ ସମ୍ମିଳନୀରେ ଭୂମିକାକୁ ନେଇ ରହିଥିବା ଦାବି ମଧ୍ୟ ଏହିପ୍ରକାରର ଥିଲା । ସେ ଯାହାହେଉ, ଚତୁର୍ଥ ସମ୍ମିଳନୀରେ ବିବିଧ ବୌଦ୍ଧ ସଂପ୍ରଦାୟକୁ ଏବଂ ମଧ୍ୟ-ଏସିଆରେ ସେମାନଙ୍କର ଧର୍ମପ୍ରଚାରର ଉଦ୍ୟମକୁ ସ୍ୱୀକୃତି ଦିଆଗଲା । କୁଶାଣମାନଙ୍କ ଦୃଷ୍ଟିରୁ ଦେଖିଲେ, ଧାର୍ମିକ କାର୍ଯ୍ୟକଳାପରେ ସେମାନଙ୍କର ସଂପୃକ୍ତି ଏକ ରକମର ରାଜବିଜ୍ଞାପନ ହୋଇପାରେ । କୁଶାଣମାନେ 'ଦେବପୁତ୍ର' ନାମରେ ଏକ ପଦବୀ ଧାରଣ କରୁଥିଲେ, ଯାହା ଚୀନୀ ବ୍ୟବହାରରୁ ହୁଏତ ଆସିଥିବ । ଅବଶ୍ୟ ଏହା ସେମାନଙ୍କର ଦେବତ୍ୱର ଦାବିକୁ ମଧ୍ୟ ଇଙ୍ଗିତ କରୁଥିବ । ରୋମ୍‌ର ସମ୍ରାଟମାନେ ଦୈବୀଶକ୍ତି ପ୍ରାପ୍ତ ବୋଲି ଦର୍ଶାଇବାକୁ 'ଦିବା ଫିଲିଅସ' (Diva filius) ଉପାଧି ଧାରଣ କରୁଥିଲେ, ଯାହାର ପ୍ରଭାବ କୁଶାଣମାନଙ୍କ ଉପରେ ପଡ଼ିଥିବ । କୁଶାଣ ରାଜାଙ୍କ ମୃତ୍ୟୁ ପରେ ତାଙ୍କୁ ଦେବତ୍ୱ ପ୍ରଦାନ କରିବା ସକାଶେ 'ଦେବକୁଳ' ତିଆରି କରାଯାଉଥିଲା । ଭାରତରେ ଏଭଳି ଉଦାହରଣ ପ୍ରାୟତଃ ମିଳେ ନାହିଁ । ପ୍ରଶ୍ନ ଉଠେ : ଯେହେତୁ କୁଶାଣମାନେ ଭାରତ ମୂଳନିବାସୀ ନ ଥିଲେ, ଶାସକ ରୂପରେ ସେମାନେ ସମ୍ମାନ ପ୍ରାପ୍ତ କରିବା ସକାଶେ ଦେବତ୍ୱ ଦାବିକୁ ଏକ ଉପଯୁକ୍ତ ମାର୍ଗ ମନେକରୁଥିଲେ କି ?

ଇଣ୍ଡୋ-ଗ୍ରୀକ୍ ରାଜା ଓ କୁଶାଣମାନେ ଆଡ଼ମ୍ବରପୂର୍ଣ୍ଣ ଉପାଧିମାନ ଧାରଣ କରୁଥିଲେ । ଇଣ୍ଡୋ-ଗ୍ରୀକ୍‌ମାନେ 'ବାସିଲିଓ ବାସିଲି' (basileo basili) ବା ରାଜାଧିରାଜ ଉପାଧି ଧାରଣ କରିଥିଲେ । କୁଶାଣମାନେ ପାରସ୍ୟ, ଚୀନ୍ ଏବଂ ରୋମ୍‌ର ପ୍ରଭାବରେ ଉପାଧି ଅନୁକରଣ କରୁଥିଲେ । 'ମହାରାଜାଧିରାଜ', 'ଦେବପୁତ୍ର', 'ସୋଟର' (ତ୍ରାତା) ଏବଂ 'କାଇଜର' ହେଲା ସେହି ଧରଣର କେତୋଟି ଉପାଧି । କୁଶାଣ ରାଜା ଯେଉଁ ଆଭାମଣ୍ଡଳ ସୃଷ୍ଟି କରିଥିଲେ, ତାକୁ ଭୂମଧ୍ୟସାଗରୀୟ ପରମ୍ପରାର ଅନୁକରଣ ମନେକରାଯାଏ । ଏହି ଧରଣର ଉପାଧି ମନରେ ସାମ୍ରାଜ୍ୟର ଧାରଣା ସୃଷ୍ଟି କରାଏ । ରାଜାର ମର୍ଯ୍ୟାଦା ବୃଦ୍ଧି କରିବାପାଇଁ ପୂର୍ବଜ ରାଜାଙ୍କୁ ଦେବତା ତୁଲ୍ୟ ବୋଲି କୁହାଯାଉଥିଲା ଏବଂ ତାଙ୍କ ନାମରେ ମନ୍ଦିର ନିର୍ମାଣ କରାଯାଇଥିଲା । ମଥୁରାର ସୁର୍ଖ କୋତାଲ ନଥା ମଟରେ ଥିବା କୁଶାଣ ରାଜାମାନଙ୍କର 'ପୋର୍ଟ୍ରେଟ' (ପୂର୍ଣ୍ଣ ଅବୟବାକୃତି)ର ବିଶାଳତା ଦେବୀ-ଦେବତାଙ୍କ ମନ୍ଦିର ସହିତ ତୁଳନୀୟ । ଏହାକୁ ଏକ ବିଡ଼ମ୍ବନା କୁହାଯିବ, କାରଣ ବିସ୍ତୃତ ପ୍ରଦେଶରେ ଅଧିକାର ଥିବା ସତ୍ତ୍ୱେ କୁଶାଣ ଶାସନ ସାମ୍ରାଜ୍ୟ ପ୍ରଣାଳୀର ଅନୁସରଣ କରୁ ନ ଥିଲା । ସେମାନଙ୍କ ନିୟନ୍ତ୍ରଣର ସ୍ୱରୂପ ବିଭିନ୍ନ କ୍ଷେତ୍ରରେ ଭିନ୍ନ ଭିନ୍ନ ଥିଲା । କେତେକ କ୍ଷେତ୍ରରେ ପ୍ରତ୍ୟକ୍ଷ ଶାସନ ଚାଲିଥିଲା ତ ଆଉ କେତେକ କ୍ଷେତ୍ରରେ ସ୍ଥାନୀୟ

କ୍ଷତ୍ରପର ଶାସନ ଚାଲିଥିଲା । ପୁଣି ଅନ୍ୟ କେତେକ କ୍ଷେତ୍ର ପୂର୍ବରୁ ରହିଥିବା ରାଜାଙ୍କ ନିୟନ୍ତ୍ରଣରେ ଥିଲା, ଯଦିଓ ସେଠାରେ କୁଶାଣ ଆଧିପତ୍ୟ ରହିଥିଲା । ସ୍ୱାଧୀନ ରାଜତ୍ୱ ସ୍ଥାପିତ ହେବାର ପୂର୍ବାବସ୍ଥାରେ ମହାକ୍ଷତ୍ରପ ପଦର ସୃଷ୍ଟି କରାଯାଉଥିଲା ।

ଧୀରେ ଧୀରେ କୁଶାଣ ଶକ୍ତିର ପତନ ହେଲା । ପତନର ଗୋଟାଏ କାରଣ ହେଲା ଇରାନର ଉଦୀୟମାନ ସସାନୀ ଶକ୍ତି ସହିତ କୁଶାଣମାନଙ୍କର ସଂଘର୍ଷ । ଦ୍ୱିତୀୟତଃ, ପଞ୍ଜାବ ଓ ରାଜସ୍ଥାନର କର୍ତ୍ତୃତ୍ୱଶାଳୀ ଗଣସଂଘମାନଙ୍କ ଯୋଗୁଁ ସେମାନଙ୍କ କର୍ତ୍ତୃତ୍ୱ ହ୍ରାସ ପାଇଲା । କୁଶାଣ ବଂଶର ବୈଶିଷ୍ଟ୍ୟ ଦିନକୁ ଦିନ ବିଲୁପ୍ତ ହେଲା । ଏହାର ସଂକେତ ଉତ୍ତର-କୁଶାଣ ରାଜା ବାସୁଦେବଙ୍କ ନାମରୁ ମିଳିଥାଏ । ଭାଗବତ ଉପାସନା ସହିତ ହେଲିଓଡରସଙ୍କ ସଂପୃକ୍ତିକୁ ଏହା ମନେ ପକାଇଦିଏ । ଏହି ସମୟରେ ଇରାନରେ ଘଟୁଥିବା ଘଟଣା ପୁଣିଥରେ ଉତ୍ତର-ପଶ୍ଚିମ ଭାରତର ଇତିହାସକୁ ପ୍ରଭାବିତ କରିବାକୁ ଲାଗିଲା । 226 ମସିହାରେ ଇରାନରେ ଅର୍ଦାଶିର ପହଲବମାନଙ୍କୁ ବିତାଡ଼ିତ କଲେ ଏବଂ ସସାନୀ ରାଜବଂଶ ପ୍ରତିଷ୍ଠା କଲେ । ଅର୍ଦଶିରଙ୍କ ଉତ୍ତରାଧିକାରୀ ତୃତୀୟ ଶତାବ୍ଦୀର ମଧ୍ୟଭାଗରେ ପେଶାୱର ଏବଂ ତକ୍ଷଶିଳା ଅଧିକାର କରିନେଲେ । ଏହାପରେ କୁଶାଣମାନେ ମଧ୍ୟ ସସାନୀମାନଙ୍କର କର୍ତ୍ତୃତ୍ୱାଧୀନ ହେଲେ ।

ପ୍ରଥମ ସହସ୍ରାବ୍ଦୀରେ ମଧ୍ୟ-ଏସିଆର ହସ୍ତକ୍ଷେପ ଯୋଗୁଁ ଉତ୍ତର ଭାରତର ଇତିହାସ ଦେଶ-ବିଜୟ, ଦେଶାନ୍ତରଣ ଏବଂ ବ୍ୟାପାରର ଯୁଗରେ ପରିଣତ ହେଲା । ଯେଉଁମାନେ ଆରମ୍ଭରେ ଉତ୍ତର-ଭାରତକୁ ଆସିଲେ, ସେମାନେ ସମସ୍ତେ ଏଠାକାର ରୀତିନୀତି ଓ ବିଶ୍ୱାସ-ବିଚାର ଦୃଷ୍ଟିରୁ ବାହାର ଲୋକ ଥିଲେ । ମାତ୍ର ସେମାନଙ୍କର ଏଠାକାର ସମାଜ ସହିତ ଯେଉଁ ବିଚାର ବିନିମୟ ଚାଲିଲା, ତାହା ଉଭୟ ସମାଜର ସାଂସ୍କୃତିକ ଅନୁଭବକୁ ବିସ୍ତାରିତ କଲା । ଯଦି ଗ୍ରୀକ୍‌ମାନେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ କିମ୍ବା ଭାଗବତ ଓ ଶୈବ ଦେବାଦେବୀଙ୍କୁ ଗ୍ରହଣ କରିନେଲେ, ସେ କ୍ଷେତ୍ରରେ ଭାରତୀୟମାନେ ମଧ୍ୟ ଗ୍ରୀକ୍ ଦେବାଦେବୀଙ୍କୁ ଉପାସନା କଲେ । ଉଦାହରଣ ସ୍ୱରୂପ, ଭାରତରେ 'ଅର୍ଡ଼ାକ୍ଷ' ଦେବୀଙ୍କର ଆରାଧନା 'ଶ୍ରୀ' ରୂପରେ ପ୍ରଚଳିତ ହେଲା । କେତେକ କୁଶାଣ ମୁଦ୍ରାରେ ଜୋରାଷ୍ଟ୍ର ଦେବାଦେବୀଙ୍କ ଚିତ୍ରର ଅଙ୍କନ ଦେଖିବାକୁ ମିଳେ ।

କୁଶାଣମାନଙ୍କର ଉତ୍ତର-ଭାରତରେ ପ୍ରବେଶ ଉତ୍ତାରୁ ଶକମାନେ ପଶ୍ଚିମ-ଭାରତର କଚ୍ଛ, କାଥିଆୱାଡ଼ ଏବଂ ମାଳବ କ୍ଷେତ୍ରକୁ ଦେଶାନ୍ତରଣ କରି ଚାଲିଗଲେ । ସେଠାରେ ସେମାନେ ଚତୁର୍ଥ ଶତାବ୍ଦୀର ଉତ୍ତରାର୍ଦ୍ଧ ପର୍ଯ୍ୟନ୍ତ ରାଜ୍ୟ ଶାସନ କଲେ । ବିଶେଷକରି ରୁଦ୍ରଦମନଙ୍କ ଶାସନ ଇତିହାସରେ ଲିପିବଦ୍ଧ ହୁଏ, କାରଣ ସାଂସ୍କୃତିକ ପରିବର୍ତ୍ତନକୁ ରୁଦ୍ରଦମନ

ଖୁବ୍ ପ୍ରୋତ୍ସାହନ ଦେଇଥିଲେ । ଦ୍ୱିତୀୟ ଶତାବ୍ଦୀର ମଧ୍ୟଭାଗରେ ରୁଦ୍ରଦମନ କ୍ଷତ୍ରପ ରୂପେ ଶାସନ କରୁଥିଲେ । ସଂସ୍କୃତରେ ଲିଖିତ ତାଙ୍କର ଏକ ଦୀର୍ଘ ଅଭିଲେଖ ସୌରାଷ୍ଟ୍ରର ଜୁନାଗଡ଼ଠାରେ ରହିଛି, ଯାହା ତାଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ସୂଚନା ଦିଏ । ଅଭିଲେଖରେ ବ୍ୟବହୃତ ସଂସ୍କୃତର ଭାଷା ଥିଲା ବ୍ୟବହାରିକ, ଯାହା ପାଣିନିଙ୍କ ବ୍ୟାକରଣର ମୂଳଭିତ୍ତି ହୁଏ । ସେତେବେଳେ ବ୍ୟବହୃତ ଥିବା ପ୍ରାକୃତ ବଦଳରେ ରୁଦ୍ରଦମନ ସଂସ୍କୃତର ବ୍ୟବହାର କରିଥିଲେ, କାରଣ ତାହାରି ମାଧ୍ୟମରେ କୁଶାଣମାନଙ୍କୁ ସନାତନ ଧର୍ମର ସଂରକ୍ଷକ ଭାବେ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ଏମିତିରେ ଶକମାନଙ୍କୁ ନିମ୍ନ ସ୍ତରର କ୍ଷତ୍ରିୟର ମର୍ଯ୍ୟାଦା ମିଳିଥିଲା । ସେତେବେଳେ ଉତ୍ତର-ପଶ୍ଚିମ କ୍ଷେତ୍ରରେ ବୌଦ୍ଧଧର୍ମ, ଭାଗବତ ଧର୍ମ ଏବଂ ଅନ୍ୟାନ୍ୟ ନୂତନ ସଂପ୍ରଦାୟକୁ ରାଜସଂରକ୍ଷଣ ମିଳୁଥିଲା । ଏହାର ବିପରୀତ, ବ୍ରାହ୍ମଣ୍ୟ ଧର୍ମକୁ ପୃଷ୍ଠପୋଷକତା ଦେଇ ରୁଦ୍ରଦମନ ବ୍ରାହ୍ମଣମାନଙ୍କ ସହ ସନ୍ଧି କରିଥିଲେ କି ? ଏହା କେବଳ ଗୋଟାଏ ଧର୍ମକୁ ସଂରକ୍ଷଣ ନ ଥିଲା, ତା' ସହିତ ଏକ ବିଚାରଧାରା ସହିତ ତାଙ୍କର ସଂପୃକ୍ତି ଥିଲା କି ? ଆଶ୍ଚର୍ଯ୍ୟର କଥା ଯେ ସଂସ୍କୃତରେ ଅଭିଲେଖ ଲିଖନ ଆରମ୍ଭ କରିଥିବା ରାଜାର ବର୍ଣ୍ଣ ମାନ୍ୟତା ସଂଶୟପୂର୍ଣ୍ଣ ଥିଲା । ରୁଦ୍ରଦମନ ଜଣେ ରାଜା ଭାବରେ ବୈଧତା ପାଇବା ଲାଗି କ'ଣ ରକ୍ଷଣଶୀଳ ବର୍ଗର ସହଯୋଗ କାମନା କରୁଥିଲେ ? କିମ୍ବା ରାଜସଭାରେ ପ୍ରମୁଖତା ପାଇବାକୁ ଯାଉଥିବା ଭାଷାକୁ ସେ ସମାନ୍ତରଭାବେ ସଂରକ୍ଷଣ ଦେବାକୁ ପ୍ରୟାସ କରୁଥିଲେ କି ? ଅଭିଲେଖରେ ସାଧାରଣତଃ ରାଜାଙ୍କର ବିଜୟସୂଚୀ ଖୋଦିତ ହୋଇଥାଏ । ମାତ୍ର ରୁଦ୍ରଦମନଙ୍କ ଏହି ଅଭିଲେଖରେ ବିଜୟସୂଚୀ ବ୍ୟତୀତ ରାଜାଙ୍କୁ ଜଣେ ସାହିତ୍ୟିକ ରୁଚିସମ୍ପନ୍ନ ବ୍ୟକ୍ତି ରୂପରେ ମଧ୍ୟ ଚିତ୍ରିତ କରାଯାଇଛି । ସେ ତତ୍‌କାଳୀନ ସାଂସ୍କୃତିକ ପରିବେଶରେ ସଂସ୍କୃତର ଭଲଭାବେ ବ୍ୟବହାର କରିପାରୁଥିଲେ ବୋଲି ଉଲ୍ଲେଖ ରହିଛି । ସମୟକ୍ରମେ ଅଭିଲେଖରେ ପ୍ରଶସ୍ତି ଏକ ସ୍ୱାଭାବିକ ଚରିତ୍ର ହେଲା ଏବଂ ସଂସ୍କୃତରେ ମଧ୍ୟ ଅଭିଲେଖ ଜାରି କରାଗଲା ।

ଅଶୋକଙ୍କ ଗୁରୁ (ମେଜର) ଶିଳା ଅଭିଲେଖ ଥିବା ପ୍ରସ୍ତର ଉପରେ 150 ମସିହାରେ ରୁଦ୍ରଦମନଙ୍କ ଏହି ରାଜାଦେଶ ଜାରି କରାଯାଇଛି । ଅଶୋକଙ୍କ ରାଜାଦେଶର ଭାଷା ଯଦି ପ୍ରାକୃତ, ରୁଦ୍ରଦମନଙ୍କ ଅଭିଲେଖ ସଂସ୍କୃତରେ ଲେଖାଯାଇଛି । ଏଥିରୁ ଐତିହାସିକ ପରିବର୍ତ୍ତନର ସ୍ୱରୂପକୁ ଦେଖିହେବ । ଅଭିଲେଖରେ ମୌର୍ଯ୍ୟକାଳରେ ନିର୍ମିତ ସୁଦର୍ଶନ ହ୍ରଦର ମରାମତି କଥା ଉଲ୍ଲେଖ ଅଛି । ହ୍ରଦଟି ଆଜି ମଧ୍ୟ ବ୍ୟବହାର୍ଯ୍ୟ, ଯଦିଓ ତୀବ୍ର ଝଡ଼ତୋଫାନ ଯୋଗୁଁ ଏହା ଧ୍ୱଂସର ଶିକାର ହୋଇଛି । ମରାମତି ଦାୟିତ୍ୱରେ ଥିବା ମନ୍ତ୍ରୀ ସମର୍ଥ, ଧୈର୍ଯ୍ୟଶୀଳ, ନିରାଗୀ, ସ୍ପଷ୍ଟବାଦୀ ଏବଂ ଭ୍ରଷ୍ଟାଚାରର ଉର୍ଦ୍ଧ୍ୱରେ ! ଅଭିଲେଖରେ ରୁଦ୍ରଦମନଙ୍କ ପ୍ରଶସ୍ତି ରହିଛି । ତାଙ୍କର ନର୍ମଦା ଉପତ୍ୟକା ଉପରେ ଯୁଦ୍ଧଜୟ, ସାତବାହନ ରାଜା (ନର୍ମଦାର

ଦକ୍ଷିଣରେ) ବିରୁଦ୍ଧରେ ସାମରିକ ଅଭିଯାନ ଏବଂ ରାଜସ୍ଥାନ ସ୍ଥିତ ଯୌଧେୟ ଗଣସଂଘ ଉପରେ ବିଜୟ ହାସଲ କଥା ଉଲ୍ଲେଖ ଅଛି ।

*"(ସେ) ଯିଏ ନିଜ ହାତର ସଂକେତରେ ଧର୍ମ ପ୍ରତି ପ୍ରବଳ ପ୍ରତିବଦ୍ଧତା ଉତ୍ପନ୍ନ କଲେ; ଯିଏ ଅଧ୍ୟୟନ କରି ତଥା ସ୍ମୃତିରେ ରଖି ଜ୍ଞାନ ପାଇଛନ୍ତି, ବ୍ୟାକରଣର ବ୍ୟବହାର ଜାଣିଛନ୍ତି; ସଙ୍ଗୀତ, ତର୍କଶାସ୍ତ୍ର, ଅନ୍ୟ ମହାନ ବିଜ୍ଞାନର ଜ୍ଞାତା, ଯିଏ ଅଶ୍ୱ, ହାତୀ ଏବଂ ରଥର ପରିଚାଳନାରେ ସିଦ୍ଧହସ୍ତ; ଯିଏ ତରବାରି, ବର୍ମର ଉପଯୋଗରେ ଏବଂ ମୁଷ୍ଟିଯୁଦ୍ଧରେ,... ତ୍ୱରିତ କାର୍ଯ୍ୟରେ ଏବଂ ଶତ୍ରୁକୁ ପ୍ରତିରୋଧ କରିବାରେ (ପାରଙ୍ଗମ); ଯିଏ ଦିନ ପ୍ରତିଦିନ ପ୍ରଜାଙ୍କୁ ଉପହାର ଦେବାରେ ଏବଂ ସମ୍ମାନିତ କରିବାରେ ଅଭ୍ୟସ୍ତ; ଯିଏ ପ୍ରଜାଙ୍କୁ ଅନାଦର କରନ୍ତି ନାହିଁ; ଯିଏ ଦାନୀ; ଯାହାଙ୍କର ରାଜକୋଷ ନ୍ୟାୟସଙ୍ଗତ ଉପାୟରେ ପ୍ରାପ୍ତ ଉପହାର, ଶୁଳ୍କ ତଥା ଭାଗ ଯୋଗୁଁ ସୁନା, ରୁପା, ହୀରା, ନୀଳା ଏବଂ ବୈଦୁର୍ଯ୍ୟରେ ପରିପୂର୍ଣ୍ଣ; ଯାହାଙ୍କ ଦ୍ୱାରା ରଚିତ ଗଦ୍ୟ, ପଦ୍ୟ ପ୍ରାଞ୍ଜଳ, ରୁଚିକର, ମଧୁର, ଆକର୍ଷକ, ସୁନ୍ଦର ଓ ଉପଯୁକ୍ତ ଶବ୍ଦ ପ୍ରୟୋଗ ହେତୁ ଉତ୍କୃଷ୍ଟ ତଥା ଆଳଂକାରିକ ଅଟେ; ଯାହାଙ୍କର କାୟା ଶୁଭ ଲକ୍ଷଣଯୁକ୍ତ ଅଟେ ତଥା ଉଚ୍ଚତା, ଆୟାମ, ସ୍ୱର, ତେଜ, ଶକ୍ତିରେ ପରିପୂର୍ଣ୍ଣ ଅଟେ; ଯିଏ ମହାକ୍ଷତ୍ରପ ଉପାଧି ଧାରଣ କରିଛନ୍ତି; ଯାହାଙ୍କୁ ରାଜକୁମାରୀମାନେ ସ୍ୱୟଂବରରେ ଅନେକ ବରଣମାଳା ପ୍ରଦାନ କରିଛନ୍ତି ।"*

(Epigraphia India VIII, pp.36 ff, Tr. F. Kielhorn, *Junagarh Rock Inscription of Rudradan*)

ଏହି ଅଭିଲେଖକୁ ପରେ ଲେଖା ହୋଇଥିବା ରାଜାମାନଙ୍କର ଜୀବନୀ ସମ୍ବଳିତ ପ୍ରଶସ୍ତିର ଏକ ଆଦ୍ୟ ଉଦାହରଣ ବୋଲି କୁହାଯାଇ ପାରିବ । କେବଳ ସଂସ୍କୃତ ଭାଷାର ପ୍ରୟୋଗ ଯୋଗୁଁ ନୁହେଁ, ବରଂ ପାରମ୍ପରିକ କ୍ଷତ୍ରିୟ ରାଜାମାନଙ୍କର ବର୍ଣ୍ଣନା ଦୃଷ୍ଟିରୁ ଏହା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଏକ ସାହିତ୍ୟିକ ବିଭାବ ରୂପରେ ପ୍ରଶସ୍ତି ରଚନାର ଆରମ୍ଭ ହୋଇଥିଲା, ଯାହାକୁ ଏହିସବୁ ଅଭିଲେଖ ପରିପ୍ରେକ୍ଷୀରେ ଦେଖିହେବ । ଏହା ଅଧିକ ସ୍ପଷ୍ଟ ହେଲା ଅଶ୍ୱଘୋଷ ରଚିତ ପ୍ରସିଦ୍ଧ 'ବୁଦ୍ଧ ଚରିତ'ରେ । ରାଜ୍ୟର ଯେଉଁ କ୍ଷେତ୍ରରେ ରାଜତନ୍ତ୍ରର ପରିଚିତି କମ୍ ଥିଲା, ସେହି କ୍ଷେତ୍ରରେ ଏହା ଆଦର୍ଶ ରାଜାର ଚିତ୍ରଣ ମାଧ୍ୟମରେ ରାଜତନ୍ତ୍ରକୁ ସୁଦୃଢ଼ କରିବାରେ ସାହାଯ୍ୟ କରୁଥିଲା । ବୈଧତା ପ୍ରଦାନ କରିବାପାଇଁ ପ୍ରଶସ୍ତି ସର୍ଦ୍ଦାର ଓ ପ୍ରଶାସକମାନଙ୍କୁ, ସେମାନଙ୍କ ଜନ୍ମ ନିର୍ବିଶେଷରେ ଆଦର୍ଶ କ୍ଷତ୍ରିୟ ଶାସକ ରୂପେ ଦର୍ଶାଉଥିଲା ।

ଏହିସବୁ ପ୍ରଶସ୍ତିମୂଳକ ଅଭିଲେଖର ପ୍ରଭାବ ପରବର୍ତ୍ତୀ କାଳରେ ଲିଖିତ ରାଜପ୍ରଶଂସାଯୁକ୍ତ ଦରବାରୀ ସାହିତ୍ୟରେ ଦେଖିବାକୁ ମିଳେ । ଏଣିକି ଦେବାଦେବୀଙ୍କ ସହିତ ରାଜାଙ୍କର ତୁଳନା ଆରମ୍ଭ ହେଲା । ବିଡ଼ମ୍ବନାର ବିଷୟ ଯେ, ଯେତେବେଳେ ରାଜା

ପ୍ରବଳ ଶକ୍ତିଶାଳୀ ନ ଥିଲେ, ସେତେବେଳେ ତାଙ୍କ ଦେବତ୍ୱର କଥା କୁହାଗଲା । ଏହାର ଏକମାତ୍ର ବ୍ୟତିକ୍ରମ ଥିଲା କୁଶାଣମାନେ ଧାରଣ କରିଥିବା 'ଦୈବପୁତ୍ର' ଉପାଧି । ମଧ୍ୟ-ଏସିଆରୁ ଆସିଥିବା ବଂଶମାନେ ନିଜ ନିଜ ଇଚ୍ଛାରେ ଏଠାକାର ସଂପ୍ରଦାୟ ଓ ବିଚାରଧାରାକୁ ଆପଣେଇଲେ । କିଏ ବୌଦ୍ଧଧର୍ମର ସଂରକ୍ଷକ ହେଲା ତ ଆଉ କିଏ ଜୈନଧର୍ମ କିମ୍ବା ଭାଗବତ ଧର୍ମର ପୃଷ୍ଠପୋଷକ ସାଜିଲା । ବୌଦ୍ଧବିହାର ଏବଂ ବ୍ରାହ୍ମଣମାନଙ୍କୁ ଭୂମିଦାନ କରି ସେମାନେ ବୈଧତା ହାସଲ କରିବାକୁ ପ୍ରୟାସ କଲେ । ଆରମ୍ଭରେ ଏହି ପ୍ରବୃତ୍ତି କିଛି କିଛି ମାତ୍ରାରେ ଚାଲିଲା । ପରେ ଏହା ଏମିତି ବିଶାଳ ରୂପ ନେଲା ଯେ, ତାହା ରାଜ୍ୟବ୍ୟବସ୍ଥାର ସଂରଚନାକୁ ପ୍ରଭାବିତ କଲା ।

## ସାତବାହନ

ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ପଶ୍ଚିମ ଦାକ୍ଷିଣାତ୍ୟରେ ସାତବାହନ ବଂଶର ସ୍ଥାପନା ହେଲା । ସାତବାହନମାନଙ୍କୁ କେହି କେହି ଆନ୍ଧ୍ର ବଂଶ ବୋଲି ମଧ୍ୟ କହିଥାନ୍ତି । ଏଥିରୁ ମନେହୁଏ ଯେ ସେମାନେ ମୂଳତଃ ଆନ୍ଧ୍ର ନିବାସୀ ଥିଲେ । ପୂର୍ବ ଉପକୂଳସ୍ଥ କୃଷ୍ଣା ଓ ଗୋଦାବରୀ ନଦୀର ଅବବାହିକାକୁ ଆନ୍ଧ୍ର କୁହାଯାଉଥିଲା । ଆନ୍ଧ୍ରରୁ ସେମାନେ ଗୋଦାବରୀ ଉପରକୁ ପଶ୍ଚିମ ଦିଗରେ ଗଲେ ଏବଂ ଶେଷରେ ପଶ୍ଚିମ ଦାକ୍ଷିଣାତ୍ୟରେ ନିଜର ଶକ୍ତି ପ୍ରତିଷ୍ଠା କଲେ । ମୌର୍ଯ୍ୟ ସାମ୍ରାଜ୍ୟର ବିଘଟନ ସେମାନଙ୍କ ପ୍ରତିଷ୍ଠାରେ ସହାୟକ ସିଦ୍ଧ ହେଲା । ଅଶୋକ ସ୍ୱତନ୍ତ୍ର ଭାବରେ ଆନ୍ଧ୍ରମାନଙ୍କର ଉଲ୍ଲେଖ କରିଥିଲେ । ଆନ୍ଧ୍ରମାନେ ତାଙ୍କର ଆଧିପତ୍ୟ ସ୍ୱୀକାର କରିଥିଲେ ସିନା, ବିଜିତ ହୋଇ ନ ଥିଲେ । ସାତବାହନମାନଙ୍କ ସମ୍ବନ୍ଧରେ ଯେଉଁ ମତକୁ ଆଜିକାଲି ସାଧାରଣତଃ ଗ୍ରହଣ କରାଯାଏ, ତାହା ହେଲା : ସେମାନଙ୍କର ମୂଳ ଥିଲା ପଶ୍ଚିମରେ; ପରେ ପୂର୍ବ ଉପକୂଳ ସେମାନଙ୍କ ନିୟନ୍ତ୍ରଣକୁ ଆସିଲା; ଏହି କ୍ଷେତ୍ରକୁ ଆନ୍ଧ୍ର କୁହାଯାଉଥିଲା ।

ସର୍ଦ୍ଦାରତନ୍ତ୍ରରୁ ରାଜ୍ୟତନ୍ତ୍ରକୁ ପରିବର୍ତ୍ତନ ବେଳେ ଯେଉଁ ଧାରା, ତାକୁ ସାତବାହନମାନଙ୍କ ଉତ୍‌ଥାନରେ ଦେଖିହୁଏ । ନୂତନଭାବେ ପ୍ରତିଷ୍ଠା ପାଇଥିବା ସାତବାହନ ରାଜା ବୈଧତା ପାଇବା ପାଇଁ ବୈଦିକ ଯଜ୍ଞ ଆୟୋଜନ କରିଥିଲେ । ସେମାନଙ୍କ ଶାସନରେ ସର୍ଦ୍ଦାରତନ୍ତ୍ର ସମୟରୁ ଥିବା କେତେକ ପ୍ରଶାସକ ପଦବୀକୁ ଅବ୍ୟାହତ ରଖାଯାଇଥିଲା । କୁହାଯାଏ, ମୌର୍ଯ୍ୟମାନଙ୍କ ଅଧୀନରେ ସେମାନେ ପ୍ରଶାସନିକ ପଦପଦବୀରେ ରହିଥିବାରୁ ମନରେ ରାଜନୈତିକ ଆକାଂକ୍ଷା ପାଳିଲେ ଏବଂ ଆଉ ଅନେକଙ୍କ ଭଳି ମୌର୍ଯ୍ୟ ସାମ୍ରାଜ୍ୟର ବିଘଟନ ପରେ ସ୍ୱତନ୍ତ୍ର ରାଜ୍ୟର ସମ୍ଭାବନା ଖୋଜିଲେ ।

ଯେଉଁ ସାତବାହନ ରାଜାଙ୍କୁ ପ୍ରଥମେ ବହୁ ସ୍ୱୀକୃତି ମିଳିଥିଲା, ସେ ହେଲେ ସାତକର୍ଣ୍ଣୀ । ସେନାର ବହୁଳ ପ୍ରସାର ନୀତି ଯୋଗୁଁ ସେ ସଫଳ ହୋଇଥିଲେ । ସେ ପଶ୍ଚିମରେ ଶାସନ କରୁଥିଲେ ଏବଂ ଖାରବେଳ ତାଙ୍କ ବିରୁଦ୍ଧରେ ସେନା ଅଭିଯାନ କରିଥିଲେ ବୋଲି ବିଶ୍ୱାସ କରାଯାଏ । ସାତକର୍ଣ୍ଣୀ ସାତବାହନମାନଙ୍କର ରାଜଧାନୀ ପ୍ରତିଷ୍ଠାନର ନାମାନୁସାରେ 'ପ୍ରତିଷ୍ଠାନେଶ୍ୱର' ଉପାଧିରେ ଚର୍ଚ୍ଚିତ ଥିଲେ । ପ୍ରତିଷ୍ଠାନ ଥିଲା ଦାକ୍ଷିଣାତ୍ୟର ପୈଥାନ ନଗରୀ । ମୁଦ୍ରାତାତ୍ତ୍ୱିକ ପ୍ରମାଣରୁ ଜଣାଯାଏ ଯେ, ସାତକର୍ଣ୍ଣୀ ଖ୍ରୀ.ପୂ. 50 ରେ ରାଜ୍ୟ ଶାସନ କରୁଥିଲେ । ସାମରିକ ବିଜୟ ଫଳରେ ସେ ନର୍ମଦାର ଉତ୍ତରକୁ ପୂର୍ବ ମାଳବ ଉପରେ ଅଧିକାର ସାବ୍ୟସ୍ତ କଲେ । ସେତେବେଳେ ଏହି ପ୍ରଦେଶ ଉପରେ ଶକମାନଙ୍କର ଆକ୍ରମଣର ଆଶଙ୍କା ରହିଥିଲା । ମଧ୍ୟ-ଭାରତର ସାଞ୍ଚିସ୍ଥିତ ଏକ ଅଭିଲେଖରେ ସାତକର୍ଣ୍ଣୀଙ୍କୁ 'ରାଜଶ୍ରୀ ସାତକର୍ଣ୍ଣୀ' ବୋଲି ଉଲ୍ଲେଖ କରାଯାଇଛି । ଏକ ବିଶାଳ କ୍ଷେତ୍ର ଉପରେ ରାଜତ୍ୱ କରିବାର ଆକାଂକ୍ଷା ପାଳିଥିବା ଜଣେ ଏଭଳି ଏକ ସରଳ ଉପାଧି ଗ୍ରହଣ କରିବା ଆଶ୍ଚର୍ଯ୍ୟଜନକ ମନେହୁଏ । ପରବର୍ତ୍ତୀ ଅଭିଯାନ ଥିଲା ଦକ୍ଷିଣ ଦିଗରେ । ଗୋଦାବରୀ ଉପତ୍ୟକା ଜୟ କଲାପରେ ସେ 'ଦକ୍ଷିଣେଶ୍ୱର' ଉପାଧି ଧାରଣ କଲେ । ନିଜ ରାଜତ୍ୱକୁ ବୈଧତା ଦେବା ସକାଶେ ସାତକର୍ଣ୍ଣୀ ଅଶ୍ୱମେଧ ଯଜ୍ଞ ଆୟୋଜନ କରିଥିଲେ । ସେ 'ଖତିୟ'ମାନଙ୍କୁ ପରାଜିତ କରିଥିଲେ ବୋଲି ଦାବି କରିଛନ୍ତି । ଟଲେମୀ 'ଖତିୟ' ବା 'କ୍ଷତ୍ରିୟ'ମାନଙ୍କୁ ଖତ୍ରିଏଓଇ ନାମରେ ଉଲ୍ଲେଖ କରିଛନ୍ତି ବୋଲି ବିଶ୍ୱାସ କରାଯାଏ । ମାତ୍ର ପଶ୍ଚିମ ଓ ମଧ୍ୟ ଭାରତରେ ଗୋଷ୍ଠୀତନ୍ତ୍ର ବ୍ୟବସ୍ଥାରେ ଶାସନ କରୁଥିବା କ୍ଷତ୍ରିୟ ରାଜବଂଶକୁ ମଧ୍ୟ ଖତିୟ କୁହାଯାଉଥିବ ବୋଲି ଅନୁମାନ କରାଯାଏ । ଏହି ଗୋଷ୍ଠୀତନ୍ତ୍ରଗୁଡ଼ିକର ସତତ ଉପସ୍ଥିତି ଏବଂ ରାଜତାନ୍ତ୍ରିକ ବ୍ୟବସ୍ଥାର ବିରୋଧ ସତ୍ତ୍ୱେ ସେମାନଙ୍କ ପ୍ରତିଷ୍ଠା ଅର୍ଜନ କରିବାର ସାମର୍ଥ୍ୟ ଉପରେ ଆବଶ୍ୟକମତେ ଆଲୋଚନା ଏପର୍ଯ୍ୟନ୍ତ ହୋଇ ନାହିଁ ।

ସମୟକ୍ରମେ ପଶ୍ଚିମ ଭାରତରେ ନର୍ମଦାର ଉତ୍ତର କ୍ଷେତ୍ରରେ ଶକମାନେ ଶକ୍ତିଶାଳୀ ହେଲେ ଏବଂ ସେମାନେ ସାତବାହନ ଅଞ୍ଚଳକୁ ଜିଣିନେଇ ନିଜ ରାଜ୍ୟରେ ସଂଲଗ୍ନ କରିଦେଲେ । ପ୍ରଥମ ଶତାବ୍ଦୀରେ ଶକ କ୍ଷତ୍ରପ ନହପନ ପ୍ରଣୟନ କରିଥିବା ମୁଦ୍ରାମାନ ନାସିକ କ୍ଷେତ୍ରରେ ଆବିଷ୍କୃତ ହୋଇଛି । ଏହାର ଅର୍ଥ ହେଲା, ଏହି କ୍ଷେତ୍ର ଉପରେ ଶକମାନଙ୍କର ଅଧିକାର ରହିଥିଲା । ମାତ୍ର କିଛି ବର୍ଷ ପରେ ସାତବାହନମାନେ ପୁଣିଥରେ ତାଙ୍କର ପଶ୍ଚିମ କ୍ଷେତ୍ର ଉପରେ ଅଧିକାର ସାବ୍ୟସ୍ତ କଲେ । ଏହାର ପ୍ରମାଣ ହେଲା ନହପନଙ୍କ ମୁଦ୍ରା । ମୁଦ୍ରା ଉପରେ ଗୌତମୀପୁତ୍ର ସାତକର୍ଣ୍ଣୀଙ୍କ ନାମ ମଧ୍ୟ ପ୍ରଣିତ ହୋଇଛି । ପଶ୍ଚିମ ଭାରତରେ ଗୌତମୀପୁତ୍ର ସାତକର୍ଣ୍ଣୀ ଶକମାନଙ୍କର ଶକ୍ତିକୁ ପୁନଃପ୍ରତିଷ୍ଠା କଲେ । ବନ୍ଦର ଏବଂ ପେରିପ୍ଲସର ରାଜନୀତିର ପଶ୍ଚିମ ତଟରେ ବହୁଳ ଉଲ୍ଲେଖକୁ ଅନୁମାନ କଲେ ଲାଗେ ଏହି

କ୍ଷେତ୍ରରେ ରୋମ୍ ଅଧିକୃତ ଇଜିପ୍ଟର ବାଣିଜ୍ୟ ଯୋଗୁଁ ବ୍ୟବସାୟିକ ପ୍ରତିଯୋଗିତା ଘନିଭୂତ ହୋଇଥିଲା ।

ଗୌତମୀପୁତ୍ରଙ୍କର ପୁତ୍ର ଓ ଉତ୍ତରାଧିକାରୀ ଥିଲେ ବଶିଷ୍ଠୀପୁତ୍ର । ଦ୍ୱିତୀୟ ଶତାବ୍ଦୀର ଆରମ୍ଭରେ ସେ ଶାସନ କରୁଥିଲେ । ତାଙ୍କର ଅନ୍ୟ ଏକ ନାମ ଥିଲା ଶ୍ରୀ ପୁଲୁମାଭି, ଯାହାଫଳରେ ତାଙ୍କୁ ଟଲେମୀ ଉଲ୍ଲେଖ କରିଥିବା 'ସିରୋ ପୋଲେମାଓସ' ବୋଲି ଚିହ୍ନିତ କରାଯାଏ । ଦ୍ୱିତୀୟ ଶତାବ୍ଦୀରେ ଟଲେମୀ ଲିଖିତ 'ଭାରତର ଭୂଗୋଳ'ରେ ରାଜା ସିରୋ ପୋଲେମାଓସ ବୈଠାନା (ପୈଥାନ)ରେ ରାଜତ୍ୱ କରୁଥିବାର ଉଲ୍ଲେଖ ରହିଛି । ଏଣୁ ଏଣିକି ଉତ୍ତର ଓ ଦକ୍ଷିଣ ଭାରତ ମଧ୍ୟରେ ଦାକ୍ଷିଣାତ୍ୟ ବା ଡେକାନ (Deccan) ଏକ ଯୋଗସୂତ୍ର ହେଲା । ଯୋଗସୂତ୍ର କେବଳ ରାଜନୀତି ଦୃଷ୍ଟିରୁ ନୁହେଁ, ବରଂ ବାଣିଜ୍ୟ ନିମିତ୍ତ ଏବଂ ବୌଦ୍ଧଧର୍ମ ଓ ଜୈନଧର୍ମର ପ୍ରସାର ଦୃଷ୍ଟିରୁ ମଧ୍ୟ ଉପଯୋଗୀ ସିଦ୍ଧ ହେଲା । ବଶିଷ୍ଠୀପୁତ୍ରଙ୍କ ଦାବି ଅନୁଯାୟୀ, ଗୌତମୀପୁତ୍ର ଶକମାନଙ୍କୁ ବିତାଡ଼ିତ କରିଥିଲେ ଏବଂ କ୍ଷତ୍ରିୟମାନଙ୍କର ଗର୍ବ ଧ୍ୱଂସ କରିଥିଲେ; ସେ ଚତୁର୍ବର୍ଣ୍ଣ ମଧ୍ୟରେ ବର୍ଣ୍ଣସଂକର ପ୍ରବୃତ୍ତିକୁ ଅବରୁଦ୍ଧ କରିଥିଲେ ଏବଂ ଦ୍ୱିଜମାନଙ୍କର ହିତ ସାଧନ କରିଥିଲେ । ବ୍ରାହ୍ମଣ୍ୟ ସାମାଜିକ ସଂହିତାରେ ଶକମାନଙ୍କୁ ନିଚ ଜାତି ଏବଂ ଯବନମାନଙ୍କୁ ଅଧମ କ୍ଷତ୍ରିୟ ବୋଲି କୁହାଯାଇଛି । ସାତବାହନ ଅଭିଲେଖରେ ମଧ୍ୟ ଶକ, ଯବନ ଏବଂ ପହଲବମାନଙ୍କ ପାଇଁ ସେହିସବୁ ଶବ୍ଦ ବ୍ୟବହାର କରାଯାଇଛି ।

ସାତବାହନ ଏବଂ ଶକମାନଙ୍କ ମଧ୍ୟରେ ଥିବା ସମ୍ବନ୍ଧକୁ ସୁଗମ କରିବା ସକାଶେ ରୁଦ୍ରଦମନଙ୍କ କନ୍ୟା ଏବଂ ସାତବାହନ ରାଜାଙ୍କ ମଧ୍ୟରେ ଏକ ବୈବାହିକ ସମ୍ବନ୍ଧ ସ୍ଥାପନ କରାଗଲା । ଆଶ୍ଚର୍ଯ୍ୟର କଥା ଯେ, ଯେଉଁ ସାତବାହନମାନେ ବର୍ଣ୍ଣସଂକର ପ୍ରବୃତ୍ତିର ତୀବ୍ର ବିରୋଧ କରୁଥିଲେ, ସେମାନେ ପୁଣି ଶକ ପରିବାରରୁ କନ୍ୟା ଗ୍ରହଣ କରିବା ସକାଶେ ଆଗ୍ରହ ପ୍ରକାଶ କରିଥିଲେ । ଆଚରଣ ଓ ଉଚ୍ଚାରଣ ମଧ୍ୟରେ ଏ ଯେଉଁ ଅସଂଗତି, ତା' ପଛରେ ରହିଥିଲା ରାଜନୈତିକ ପ୍ରୟୋଜନୀୟତା । ମାତ୍ର ସୁ-ସମ୍ବନ୍ଧ ସ୍ଥାପନର ଏହି ଉଦ୍ୟମ ଫଳବତୀ ହୋଇ ନ ଥିଲା ଏବଂ ରୁଦ୍ରଦମନ ଦୁଇଥର ସାତବାହନ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ତା' ସତ୍ତ୍ୱେ ପାରିବାରିକ ସମ୍ବନ୍ଧ ଥିବାରୁ ସେ ସାତବାହନ ରାଜାଙ୍କୁ ହତ୍ୟାକରି ନ ଥିଲେ ବୋଲି କହିଛନ୍ତି । ରୁଦ୍ରଦମନଙ୍କ ମୃତ୍ୟୁ ପରେ, ସାତବାହନମାନେ ଶକ ପ୍ରଦେଶକୁ ଜିଣିବାରେ ସଫଳ ହେଲେ । ଦ୍ୱିତୀୟ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ସାତବାହନମାନଙ୍କର କର୍ତ୍ତୃତ୍ୱ ପଶ୍ଚିମ ଭାରତରୁ କୃଷ୍ଣା ଅବବାହିକା ଏବଂ ଉତ୍ତର ତାମିଲନାଡୁ ପର୍ଯ୍ୟନ୍ତ କ୍ଷେତ୍ରରେ ବ୍ୟାପି ରହିଥିଲା । ମାତ୍ର ଏହି ବିଶାଳ କ୍ଷେତ୍ରକୁ ସେମାନେ ଅଧିକ କାଳ ଧରି ନିଜ ଅଧିକାରରେ ରଖିପାରି ନ ଥିଲେ । ତୃତୀୟ ଶତାବ୍ଦୀରେ ସାତବାହନମାନଙ୍କର ଶକ୍ତି କ୍ଷୟ ହେଲା ଏବଂ

ତା’ ସହିତ ତାଳଦେଇ ସ୍ଥାନୀୟ ପ୍ରଶାସନିକ ଅଧିକାରୀମାନଙ୍କର କ୍ଷମତା ବୃଦ୍ଧି ହେଲା । ଅନେକ ଅଧିକାରୀ ସ୍ୱାଧୀନତା ଦାବି କଲେ ।

ସାତବାହନମାନେ ସମ୍ରାଟ ଉପାଧି ବହନ କରି ନ ଥିଲେ, କାରଣ ସେମାନଙ୍କର ସ୍ଥାନୀୟ ସର୍ଦ୍ଦାର ଓ ରାଜାମାନଙ୍କ ଉପରେ ଥିବା ନିୟନ୍ତ୍ରଣ ସମ୍ରାଟ ଭଳି ନ ଥିଲା ବୋଲି ସେମାନେ ସ୍ୱୀକାର କରିପାରୁଥିଲେ । ଏହି ସ୍ୱୀକୃତି ସେମାନଙ୍କ ପ୍ରଶାସନିକ ବ୍ୟବସ୍ଥାରେ ମଧ୍ୟ ସୁସ୍ପଷ୍ଟ ହୋଇଥିଲା । ସାତବାହନ ବ୍ୟବସ୍ଥାରେ କ୍ଷମତା ଅନୁକ୍ରମରେ ଥିବା ସମସ୍ତ ଅଧିକାରୀଙ୍କ ହାତରେ କ୍ଷମତାକୁ ବଣ୍ଟାଯାଇଥିଲା । ଅର୍ଥାତ୍ କେନ୍ଦ୍ରରେ କ୍ଷମତା କେନ୍ଦ୍ରୀଭୂତ ହୋଇ ରହି ନ ଥିଲା । ସାତବାହନ ରାଜ୍ୟ କେତୋଟି କ୍ଷୁଦ୍ର ପ୍ରଦେଶରେ ବିଭାଜିତ ହୋଇଥିଲା । ପ୍ରତ୍ୟେକ ପ୍ରଦେଶରେ କ୍ଷମତା କେତେଜଣ ବେସାମରିକ ଓ ସାମରିକ ଅଧିକାରୀଙ୍କ ହାତରେ ରହିଥିଲା । ଏହି ଅଧିକାରୀମାନେ ହେଲେ : ଅମାତ୍ୟ, ମହାଭୋଜ, ମହାସେନାପତି, ମହତଲବାର ଏବଂ ମହାରଥୀ । ଏମାନଙ୍କ ମଧ୍ୟରୁ କେତେକ ଅଧିକାରୀଙ୍କ ରାଜପରିବାରରେ ବିବାହ କରିବାକୁ ମଧ୍ୟ ଅନୁମତି ଦିଆଯାଇଥିଲା । ସମ୍ଭବତଃ ଏହି ଅଧିକାରୀମାନେ ସଂପୃକ୍ତ ଅଞ୍ଚଳର ସର୍ଦ୍ଦାର ବା ମୁଖ୍ୟ ଥିଲେ । ବୈବାହିକ ସମ୍ବନ୍ଧ ଯୋଗୁଁ ସେମାନେ ରାଜବଂଶ ପ୍ରତି ଅଧିକ ଅନୁରକ୍ତ ହେବେ ବୋଲି ଆଶା ରହିଥିଲା । କେତେକ ଅଧିକାରୀଙ୍କ ମୁଦ୍ରା ପ୍ରଣୟନ କରିବାର କ୍ଷମତା ମଧ୍ୟ ରହିଥିଲା । ସାତବାହନ ଶକ୍ତିର ଅଧୋପତନ ପରେ ଏହି ପ୍ରଶାସକମାନେ ସ୍ୱାଧୀନ ରାଜା ହେବାକୁ ଯୋଜନା କଲେ । ଶାସନ ଦାୟିତ୍ୱ ଥିଲା ସ୍ଥାନୀୟ ଲୋକଙ୍କ ହାତରେ, ଯଦିଓ ରାଜଅଧିକାରୀଙ୍କ ହାତରେ ସାଧାରଣ ନିୟନ୍ତ୍ରଣ ଭାର ରହିଥିଲା । ଗ୍ରାମ ଥିଲା ପ୍ରଶାସନର ମୌଳିକ ଏକକ ବା ୟୁନିଟ । ମୌର୍ଯ୍ୟ ସମୟରୁ ପ୍ରଚଳିତ ଥିବା କେତେକ ପଦପଦବୀକୁ ସାତବାହନମାନେ ଗ୍ରହଣ କରି ନେଇଥିଲେ । ଅଧିକାରୀକୁ ‘ମହାମାତ୍ର’ ଓ ପ୍ରଶାସନିକ ଖଣ୍ଡକୁ ‘ଆହାର’ ବୋଲି କୁହାଯାଉଥିଲା । ମୌର୍ଯ୍ୟ କାଳରେ ମଧ୍ୟ ଏହି ପଦବୀର ପ୍ରଚଳନ ଥିଲା । କର ଆଦାୟ ପାଇଁ ଉତ୍ସ ଥିଲା ଗାଁ । ଯୁଦ୍ଧ ସମୟରେ ସେନାକୁ ସୈନିକ ଯୋଗାଇବାର ଦାୟିତ୍ୱ ଗ୍ରାମକୁ ଦିଆଯାଇଥିଲା । ଏହା ରାଜ୍ୟ ସହିତ ଗ୍ରାମକୁ ଅଧିକ ଅନୁବନ୍ଧିତ କରିଥିବ ବୋଲି ଅନୁମାନ କରାଯାଏ । ରାଜନୈତିକ ସମ୍ବନ୍ଧରେ ସଂଘଟିତ ହେଉଥିବା ପରିବର୍ତ୍ତନ ପ୍ରାଦେଶିକ ଶାସକ ଏବଂ ସେମାନଙ୍କ ଅଧିକାରୀବର୍ଗ ଯାଏଁ ସୀମିତ ଥିଲା ।

କେତେକ ସାତବାହନ ରାଜା ମାତୃନାମର ପ୍ରୟୋଗ କରୁଥିଲେ । ରାଜା କ’ଣ ନିଜକୁ ସ୍ପଷ୍ଟରୂପେ ଚିହ୍ନିତ କରିବାପାଇଁ ଏପରି କରୁଥିଲେ ? ନା ସାତବାହନମାନେ ମାତୃବଂଶିକ ରୀତି ଦ୍ୱାରା ପ୍ରଭାବିତ ଥିଲେ ? ଏହି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମିଳିପାରି ନାହିଁ ।

ନୂତନ କ୍ଷେତ୍ରମାନଙ୍କରେ ଜାତିବ୍ୟବସ୍ଥାର ପ୍ରଚଳନ ଉତ୍ତାରୁ କେତେକ ସ୍ଥାନୀୟ ରୀତିନୀତିକୁ ପରିହାର କରାଯାଇଥିବ । ମାତ୍ର ଆଉ କେତେକ ପରମ୍ପରା ପୂର୍ବବତ୍ ରହିଯାଇଥିବ । ଯେଉଁ ପରମ୍ପରା ସମ୍ବନ୍ଧରେ 'ଧର୍ମଶାସ୍ତ୍ର'ରେ କିଛି ଉଲ୍ଲେଖ ନ ଥିବ ଏବଂ ସେହି ପରମ୍ପରାର ଯଦି ସ୍ଥାନୀୟ ସ୍ତରରେ ପ୍ରମୁଖତା ଥିବ, ତାହା ତ୍ୟକ୍ତ ହୋଇ ନ ଥିବ । ଅନ୍ୟପକ୍ଷରେ ବିଧି-ସଂହିତାର ଖୁବ୍ ଅଧିକ କର୍ତ୍ତୃତ୍ୱ ବି ନଥିବ ବୋଲି ମନେହୁଏ ।

ପଶ୍ଚିମ ଭାରତର ଅଭୀର ଓ ତ୍ରୈକୁଟକ-ଶକ୍ତି ଅଧୋପତନର ଶିକାର ହୋଇଥିବା ସାତବାହନମାନଙ୍କ ଉପରେ ବାରମ୍ବାର ଆକ୍ରମଣ କଲେ । ସାତବାହନଙ୍କ ପରେ ବକଟକମାନେ ଉତ୍ତର ଦାକ୍ଷିଣାତ୍ୟ ଉପରେ କର୍ତ୍ତୃତ୍ୱ ବିସ୍ତାର କଲେ । ଉପଦ୍ୱୀପର ଉତ୍ତରାଂଶରେ କାଳଚୁରୀ-ଚେଦି ବଂଶ ପ୍ରଭୁତ୍ୱ ସ୍ଥାପନ କଲେ । ସେମାନେ 248-249 ଖ୍ରୀଷ୍ଟାବ୍ଦରେ ଏକ ସମ୍ବତର ପ୍ରଚଳନ କଲେ । ସମ୍ବତ ପ୍ରଚଳନ କରିବାରେ କାଳଚୁରୀ-ଚେଦି ଥିଲେ ଏକ ଆଦ୍ୟ ରାଜବଂଶ । କ୍ଷମତା ଦାବି କରିବା ପାଇଁ ସମ୍ବତ ପ୍ରଚଳନକୁ ଏକ ଉଚିତ ମାର୍ଗ ମନେ କରାଯାଉଥିଲା । ଏହି ସମୟରେ ଗାଙ୍ଗେୟ ସମତଳରେ ଅନେକ କ୍ଷୁଦ୍ର ରାଜ୍ୟ, ଜାଣି, ଜୀବନ୍ୟାସ ଲାଭ କଲେ । ସେମାନଙ୍କର ପ୍ରମୁଖ ଭୂମିକା ଥିଲା ଉତ୍ତର-ପଶ୍ଚିମ ପଟରୁ ଆସୁଥିବା ଆକ୍ରମଣକାରୀଙ୍କୁ ପ୍ରତିହତ କରିବା । ଅବସୋସର କଥା ଯେ, ଏହି କ୍ଷୁଦ୍ର ରାଜ୍ୟଗୁଡ଼ିକର କୌଣସି ଅବଶେଷ ମିଳିନାହିଁ । ସେମାନଙ୍କ ମଧ୍ୟରୁ କେତେକ ରାଜବଂଶକୁ ମାଘ, ବୋଧି ଏବଂ ନାଗବଂଶ ସହିତ ଚିହ୍ନିତ କରାଯାଏ । ଆଉ କେତେକ ରାଜା ସେମାନଙ୍କ ନାମରେ 'ମିତ୍ର' ସାଙ୍ଗିଆ ଯୋଡ଼ିଥାନ୍ତି, ଯଦିଓ ଏହାର କୌଣସି ସମ୍ବନ୍ଧ ଶୁଙ୍ଗମାନଙ୍କ ସହିତ ନାହିଁ ।

ତୃତୀୟ-ଚତୁର୍ଥ ଶତାବ୍ଦୀରେ ଉପଦ୍ୱୀପର ଆହୁରି ଦକ୍ଷିଣକୁ ଶାଳଂକାୟନ, ବୃହତ୍ପଲାୟନ ଏବଂ ଇକ୍ଷ୍ୱାକୁମାନଙ୍କର ରାଜ୍ୟର ଉଦୟ ହେଲା । ବୃହତ୍ପଲାୟନ ଓ ଶାଳଂକାୟନମାନେ ପଶ୍ଚିମ ଗୋଦାବରୀ ଜିଲ୍ଲାରେ ଏବଂ ମାସୁଲିପଟ୍ଟମ କ୍ଷେତ୍ରରେ ରାଜତ୍ୱ କରୁଥିଲେ; ଇକ୍ଷ୍ୱାକୁମାନେ ଆହୁରି ଦକ୍ଷିଣକୁ କୃଷ୍ଣା ଉପତ୍ୟକାରେ ରାଜତ୍ୱ କରୁଥିଲେ । ଇକ୍ଷ୍ୱାକୁମାନେ ଥିଲେ ଏକ ସ୍ଥାନୀୟ ବଂଶ । କ୍ଷମତାକୁ ଆସିଲା ପରେ ସେମାନେ ନିଜକୁ ସୂର୍ଯ୍ୟବଂଶ ବୋଲି ଦାବି କଲେ । ସେମାନେ ବିଶାଳ ନାଗାର୍ଜୁନ କୋଣ୍ଡା ନଗରୀର ପ୍ରତିଷ୍ଠାତା ଥିଲେ । ପୃଷ୍ଠପୋଷକତା ପ୍ରଦାନରେ ଇକ୍ଷ୍ୱାକୁ ରାଜବଂଶର ଲିଙ୍ଗଭେଦ ଦେଖିବାକୁ ମିଳୁଥିଲା : ରାଜାମାନେ ବୈଦିକ ଯାଗଯଜ୍ଞକୁ ସଂରକ୍ଷଣ ଦେଉଥିଲେ ଏବଂ ରାଣୀମାନେ ବୌଦ୍ଧସଂଘକୁ । ଦୁଇପ୍ରକାର ପୃଷ୍ଠପୋଷକତା ଯୋଗୁଁ ଦୁଇଟି ଉଦ୍ଦେଶ୍ୟ ପୂରଣ ହେଉଥିଲା । ବୈଦିକ ଅନୁଷ୍ଠାନ ସେହି କ୍ଷେତ୍ରରେ ନୂଆ ଥିଲା । ତାକୁ ଆୟୋଜନ କରି ସର୍ଦ୍ଦାରମାନେ ରାଜପଦ ପାଇଁ

ବୈଧତା ସଂଗ୍ରହ କରୁଥିଲେ । ଅନ୍ୟପକ୍ଷରେ, ବୌଦ୍ଧସଂଘର ବ୍ୟାପକ ଲୋକ ସଂପୃକ୍ତି ରହିଥିଲା । ତା'ର ସମର୍ଥନ ରାଜାଙ୍କ ପାଇଁ ବହୁ ଆବଶ୍ୟକ ଥିଲା । ବୈଦିକ ପରମ୍ପରାକୁ ଗ୍ରହଣ କରିନେଲା ପରେ ସର୍ଦ୍ଦାର ପରିବାରକୁ କୁଳତନ୍ତ୍ରୀୟ ସମାଜରେ ଅନ୍ୟ କୁଳବନ୍ଧୁଙ୍କ ତୁଳନାରେ ବିଶିଷ୍ଟ ମନେକରାଯାଉଥିଲା । ପ୍ରଥମ ପିଢ଼ିକୁ କ୍ଷତ୍ରିୟ ମାନ୍ୟତାପ୍ରାପ୍ତ ହେଲାପରେ, ଅନ୍ୟ ସର୍ଦ୍ଦାର, ଯଥା- ମହାତଲବାରଙ୍କୁ କ୍ଷତ୍ରିୟ ଗୋତ୍ର ମାନ୍ୟତା ଦାବି କରିବା ଅସୁବିଧାଜନକ ହେଉ ନ ଥିଲା ।

## ଦକ୍ଷିଣ ଭାରତ

ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀର ଶେଷ ଆଡ଼କୁ ଦକ୍ଷିଣ ଭାରତ ପ୍ରାକ୍-ଇତିହାସରୁ ଇତିହାସ ସ୍ତରକୁ ଅଗ୍ରଗତି କଲା । ସମସାମୟିକ ଘଟଣାବଳୀକୁ ପ୍ରତିଫଳିତ କରୁଥିବା ସାହିତ୍ୟିକ ଦସ୍ତାବିଜମାନ ଏହି ସମୟରୁ ଉପଲବ୍ଧ ହେଲା । ଅଶୋକ ତାଙ୍କ ଅଭିଲେଖରେ ଦକ୍ଷିଣ ଭାରତର ଲୋକଙ୍କୁ ଚୋଳ, ଚେର, ପାଣ୍ଡ୍ୟ ଓ ସତିୟପୁତ୍ର ନାମରେ ଉଲ୍ଲେଖ କରିଛନ୍ତି । ଏହି ଲୋକସମାଜମାନେ ତାମିଳକମ ସଂସ୍କୃତିର ମୁଖ୍ୟ ଧର୍ତ୍ତା ଥିଲେ । ତାମିଳକମର ସଂଜ୍ଞା ତତ୍କାଳୀନ ଦ୍ରାବିଡ଼ ସମୂହର ପ୍ରମୁଖ ଭାଷା ତାମିଳରୁ ପ୍ରାପ୍ତ ହୋଇଛି । ଏମାନଙ୍କ ମଧ୍ୟରୁ କେତେକଙ୍କ ନାମ ଶେଷରେ 'ପୁତ୍ର' ଯୋଡ଼ାଯାଇଥିବାରୁ ମନେହୁଏ ସେମାନେ କୁଳ ଓ ସର୍ଦ୍ଦାରତନ୍ତ୍ର ବ୍ୟବସ୍ଥାରେ ରହିଥିଲେ । ପ୍ରଥମ ତିନୋଟି ସର୍ଦ୍ଦାରତନ୍ତ୍ର ପ୍ରାୟ ଜାତିବାଚକ ସଂଜ୍ଞାର ପରିଚିତି ପାଇଲା । ଯେଉଁ ସମାଜ ଯେଉଁ ସର୍ଦ୍ଦାରତନ୍ତ୍ରର କ୍ଷେତ୍ରରେ ରହୁଥିଲା, ତାକୁ ସେହି ନାମରେ ପରିଚୟ ମିଳୁଥିଲା । ଏହି ସର୍ଦ୍ଦାରତନ୍ତ୍ରମାନେ ପରେ ରାଜ୍ୟର ମାନ୍ୟତା ଲାଭ କଲେ । ଚୋଳ ଓ ପାଣ୍ଡ୍ୟମାନେ ପୂର୍ବ କ୍ଷେତ୍ରରେ ରହିଥିଲେ । ତଳ କାବେରୀ କ୍ଷେତ୍ରରେ ଚୋଳମାନେ କେନ୍ଦ୍ରୀଭୂତ ଥିଲେ । ପାଣ୍ଡ୍ୟ କ୍ଷେତ୍ରର ଦୁଇଟି ବ୍ୟବସାୟିକ କେନ୍ଦ୍ର ଥିଲା କୋରକୈ ଓ ଅଲଗଙ୍କୁଲମ । ନିକଟରେ ସମ୍ପାଦିତ ହୋଇଥିବା ଖନନରୁ ଏହା ସିଦ୍ଧ ହୋଇଛି । କୋରକୈ ଥିଲା ଏକ ମୋତି ଉତ୍ପାଦନ କେନ୍ଦ୍ର ଏବଂ ଅଲଗଙ୍କୁଲମ ଥିଲା ଏକ ବନ୍ଦର । କାବେରୀ ନଦୀତଟରେ କରୁର ଏକ ମହତ୍ତ୍ୱପୂର୍ଣ୍ଣ ଅନ୍ତର୍ଦେଶୀୟ ବାଣିଜ୍ୟ କେନ୍ଦ୍ର ଥିଲା । କୋଡୁମନାଲ ଥିଲା ସେହିଭଳି ଆଉ ଏକ କେନ୍ଦ୍ର । ରତ୍ନପଥରମାନ ସେଠାରେ ମିଳୁଥିଲା ବୋଲି ଖନନରୁ ପ୍ରମାଣ ମିଳିଛି । ଧୀରେ ଧୀରେ ଚେରମାନେ ପଶ୍ଚିମ ତଟବର୍ତ୍ତୀ କ୍ଷେତ୍ରରେ ନିଜର ଆସ୍ଥାନ ବୃଦ୍ଧି କଲେ । ସତିୟପୁତ୍ରମାନଙ୍କର ଇତିହାସରେ ବେଶି ଉଲ୍ଲେଖ ନାହିଁ । ତାମିଲନାଡୁର ଏକ ଅଭିଲେଖରେ କେବଳ ସେମାନଙ୍କର ଉଲ୍ଲେଖ ଦେଖିବାକୁ ମିଳେ ।

ଦକ୍ଷିଣ ଭାରତର ଏହି କ୍ଷେତ୍ରର ଇତିହାସ ସଂରଚନା ପାଇଁ ବିବିଧ କିସମର ସ୍ରୋତସାମଗ୍ରୀର ଉପଯୋଗ କରାଯାଏ : ମହାପାଷାଣିକ ସମାଧିସ୍ଥଳ, ତାମିଲ ବ୍ରାହ୍ମୀ ଲିପିରେ ଲିଖିତ ଅଭିଲେଖ (ଯେଉଁଠି ଆରମ୍ଭରେ ତାମିଲରେ ଲେଖିବା ସକାଶେ ବ୍ରାହ୍ମୀ ଲିପିର ବ୍ୟବହାର କରାଯାଉଥିଲା) ଓ ସଙ୍ଗମ ସାହିତ୍ୟରେ ଥିବା ତାମିଲ ପଦ୍ୟାବଳୀ । କେତେକ ତୁଳନାତ୍ମକ ତଥ୍ୟ ଗ୍ରୀକ୍ ସ୍ରୋତରୁ ମିଳିଥାଏ : ଦ ପେରିପ୍ଲସ୍ ଅଫ୍ ଦ ଏରିଥ୍ରିଆନ୍ ସି (The Periplus of the Erythrean Sea ବା The Periplus Maria Erythrae) ଏବଂ ଟଲେମୀ ବିରଚିତ ଜିଓଗ୍ରାଫି (Geography) । ଉଭୟ କୃତିରେ ଦକ୍ଷିଣ ଭାରତର କେତେକାଂଶ କଥା ବର୍ଣ୍ଣିତ ହୋଇଛି । ଏହାସହିତ ରହିଛି ପ୍ଲିନୀଙ୍କ ଲାଟିନ ପୁସ୍ତକ 'ନେଚୁରାଲ ହିଷ୍ଟ୍ରି' (Natural History) । ଉତ୍ତରରେ ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ସମଗ୍ର ଉପଦ୍ୱୀପରେ ମହାପାଷାଣିକ ସମାଧିସ୍ଥଳମାନ ବିକ୍ଷିପ୍ତ ହୋଇ ରହିଛି । ସେଗୁଡ଼ିକର ଆକାରରେ ଓ ଦୁଇଟି ସମାଧିସ୍ଥଳ ମଧ୍ୟରେ ଦୂରତାରେ କୌଣସି ସମତ୍ୱ ନାହିଁ । ତାମିଲକମରେ ସ୍ଥିତ ସମାଧିସ୍ଥଳରେ ମେନ୍‌ହିର (ଦୀର୍ଘାଶ୍ମ ସ୍ତମ୍ଭ), ଡୋଲମେନ (ବହୁ ପ୍ରସ୍ତରୀୟ ସମାଧି), ଅର୍ନବରିଆଲ (କଳସ ଶବାଧାନ) ଏବଂ ପାଷାଣ-ବୃତ୍ତ କବର ଅନ୍ତର୍ଭୁକ୍ତ । କେରଳରେ ସମାଧି ଚଟ୍ଟାଣକୁ କାଟି ତିଆରି ହୋଇଥିବା କକ୍ଷ କବର ମିଳିଛି । ପଥରର ସ୍ଲାବଗୁଡ଼ିକୁ ଥାକ ଥାକ କରି ଗାତରେ ରଖାଯାଉଥିଲା ଏବଂ ତହିଁରୁ ଏକ ପଥରର କକ୍ଷ ତିଆରି ହେଉଥିଲା । କକ୍ଷରେ ସ୍ମୃତିଚିହ୍ନ ଓ ସମାଧି ବସ୍ତୁକୁ ରଖି ତାକୁ ମାଟିରେ ଯୋଡ଼ି ଦିଆଯାଉଥିଲା । ସମାଧି ସ୍ଥାନଟିକୁ ପୃଥକ୍ କରିବା ସକାଶେ ତାକୁ ପଥର ଘେରି ମଧ୍ୟରେ ରଖାଯାଉଥିଲା । କବରରେ ପୋଡ଼ା ମାଟି (ଟେରାକୋଟା)ର କଳସ ଓ କଫିନ ବି ମିଳିଛି । ପାର୍ବତ୍ୟ କ୍ଷେତ୍ରରେ ଚଟ୍ଟାଣ କାଟି ସମାଧି ନିର୍ମାଣ କରାଯାଉଥିଲା । ନଦୀ ଉପତ୍ୟକା କ୍ଷେତ୍ରରେ କଳସ କବର ଦେଖିବାକୁ ମିଳେ । ସମାଧିରେ ବିଶ୍ୱାସ କରୁଥିବା ସମାଜ ଏକପ୍ରକାରର ନ ଥିଲା । ସେମାନଙ୍କର ସଂସ୍କୃତିରେ ଭିନ୍ନତା ରହିଥିଲା । ତା' ସତ୍ତ୍ୱେ ସେମାନଙ୍କର ସଂସ୍କୃତିରେ ଏମିତି ଅନେକ ଉପାଦାନ ଥିଲା, ଯାହା ସାଂସ୍କୃତିକ ଯୋଗସୂତ୍ର ରଖୁଥିଲା । ଏହି କାରଣରୁ ଉପଦ୍ୱୀପର ସଂସ୍କୃତି ବୈଶିଷ୍ଟ୍ୟପୂର୍ଣ୍ଣ ମନେହୁଏ ।

ଶବାଧାନ ସାମଗ୍ରୀ ସହିତ କବରରୁ କେବଳ ପୂର୍ବଜମାନଙ୍କ ପ୍ରତି ସମ୍ମାନ ଥିବା କଥା ଜଣାପଡ଼େ ନାହିଁ, ତା' ସହିତ ସେମାନଙ୍କର ମରଣୋପରାନ୍ତ ଜୀବନ ପ୍ରତି ରହିଥିବା ବିଶ୍ୱାସ କଥା ସ୍ପଷ୍ଟ ହୁଏ । ସମାଧି କ୍ଷେତ୍ରରେ ଶରୀରାବଶେଷ; ଅଶ୍ୱ ଓ ଗୋଧନର ହାଡ଼; ଧାତୁ ଦ୍ରବ୍ୟ, ଯାହାର ଅଧିକାଂଶ ଲୌହ ନିର୍ମିତ (ବାକୀ କେତେକ ତମ୍ବା, ସୁନା ଓ ରୁପାରୁ ତିଆରି), ହାତୀଦାନ୍ତର ଗହଣା; ରତ୍ନପଥର; ପୋଡ଼ା ଚାଉଳ ଓ ମାଣ୍ଡିଆ; କୃଷ୍ଣ ଏବଂ

ଲୋହିତ ମାଟିପାତ୍ର ମଧ୍ଯ ମିଳିଛି । ସମ୍ଭବତଃ ଏଗୁଡ଼ିକ ସର୍ଦ୍ଦାର ଓ ରାଜପରିବାରର କବରସ୍ଥଳୀ ।

ଏହି ସମାଧିସ୍ଥଳଗୁଡ଼ିକର ତିଥି ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦୀ । କେତେକ କ୍ଷେତ୍ରରେ ସେଗୁଡ଼ିକର ଉପର ସ୍ତରରେ ମିଳିଥିବା କେତେକ ବସ୍ତୁ ପ୍ରଥମ ସହସ୍ରାବ୍ଦୀର । ଉଦାହରଣ ସ୍ୱରୂପ, ରୋମ୍ ସାମ୍ରାଜ୍ୟର ମୁଦ୍ରା ମିଳିଛି । ସମାଧିର ସଂରଚନାରେ ଏକପ୍ରକାରର ନିୟମବଦ୍ଧତା ରହିଛି । ସେଗୁଡ଼ିକୁ ତିଆରି କରିବାପାଇଁ ବଡ଼ ବଡ଼ ପଥରକୁ ଏକ ନିର୍ଦ୍ଦିଷ୍ଟ ଧାରାରେ କଟାଯାଇଥିବ । ଯାହା ମନେହୁଏ, ଏହି ସମାଜରେ ଜ୍ଞାତିକୁଟୁମ୍ବର ଲୋକଙ୍କୁ ଶ୍ରମିକ ରୂପେ କାର୍ଯ୍ୟ କରିବାକୁ ପ୍ରରୋଚିତ କରାଯାଇ ପାରୁଥିଲା । ସମାଧିରେ ରଖାଯାଇଥିବା ମାଟିପାତ୍ର ହେଲା ମୁଖ୍ୟତଃ କୃଷ୍ଣ-ଲୋହିତ-ମୃଦ୍‌ଭାଣ୍ଡ, ଯାହାର ନିର୍ମାଣ ସ୍ଥାନୀୟ ସ୍ତରରେ ହୋଇଥିବ । ତହିଁରେ କାରିଗରୀ କୁଶଳତା ଦେଖିବାକୁ ମିଳିଥାଏ । କେତେକ ମୃଦ୍‌ଭାଣ୍ଡରେ ଲୁହାପାତିରେ ଆଞ୍ଚୁଡ଼ି କିଛି ଚିହ୍ନ ତିଆରି କରାଯାଇଛି । କେତେକ ଚିହ୍ନର ହରପ୍ପାର ସିଲ୍‌ର ଲେଖା ସହିତ ସାମଞ୍ଜସ୍ୟ ଅଛି ଭଳି ଲାଗେ । ସେଠାରେ ବ୍ୟବହୃତ ହେଉଥିବା ଲୌହ ଶିଳ୍ପଜାତ ବସ୍ତୁ, କୋଡ଼ି, ଘୋଡ଼ାର ସାଜସରଞ୍ଜାମ ଏବଂ ହାତହତିଆରକୁ ହୁଏତ ସ୍ଥାନୀୟ କମାର ତିଆରି କରିଥିବ, ଅଥବା ଏକ ବାଣିଜ୍ୟିକ ବିନିମୟ ଧାରାରେ ସେଗୁଡ଼ିକ ବାହାରୁ ଆସୁଥିବ । ଦାକ୍ଷିଣାତ୍ୟରେ ଖନନରୁ ଧାତୁ ତରଳା ଯାଉଥିବା ଫର୍ଣ୍ଣେସ ପ୍ରାପ୍ତ ହୋଇଛି । ଦକ୍ଷିଣର କୋଡୁମନାଲ ଥିଲା ଲୌହସାମଗ୍ରୀ ଉତ୍ପାଦନର ଏକ ବଡ଼ କେନ୍ଦ୍ର । ପଥର ମଣି ବି ବାଣିଜ୍ୟ ପାଇଁ ଏକ ସାମଗ୍ରୀ ହୋଇଥିବ । ଯଦି ଏହିସବୁ ବସ୍ତୁ ସ୍ଥାନୀୟ କାରିଗର ଦ୍ୱାରା ନିର୍ମିତ ହେଉ ନ ଥିଲା, ତେବେ ବାଣିଜ୍ୟର ଧାରା ଖୁବ୍ ବ୍ୟାପକ ଥିଲା ବୋଲି ମନେକରିବାକୁ ହେବ ।

ଯଦିଓ ସମାଧିର ଆକୃତିରେ ବିବିଧତା ଅଛି, ସେ ପ୍ରକାର ବିବିଧତା ଶବାଧାନରେ ଦେଖିବାକୁ ମିଳେ ନାହିଁ । କେତେକ ଜନବସତି ସମାଧିସ୍ଥଳର ନିକଟରେ ଅବସ୍ଥିତ । ଗୋଟାଏ ସିଦ୍ଧାନ୍ତ ଅନୁସାରେ, ଏହାର ଗୋଟାଏ କାରଣ ହେଲା ସମାଜର ଯାଯାବର ଜୀବନଚର୍ଯ୍ୟା । ମାତ୍ର ଏହି କାରଣ ପୂରାପୂରି ଠିକ୍ ବୋଲି ମନେହୁଏ ନାହିଁ । କୃଷି ଉପକରଣର (କୋଡ଼ି) ହୁଏତ ପୋଡୁଚାଷରେ, ନୋହିଲେ ସ୍ଥାୟୀ କୃଷିରେ ଉପଯୋଗ କରାଯାଇଥିବ । ସମାଧିସ୍ଥଳକୁ ଲୋକ ପବିତ୍ର ମନେକରୁଥିଲେ । ତା'ର ରୀତିମତ ରକ୍ଷଣାବେକ୍ଷଣ ଲୋଡ଼ା । ସେ କ୍ଷେତ୍ରରେ ସମାଧିସ୍ଥଳରୁ ବହୁ ଦୂରକୁ ଯାଯାବର ଯାଇ ନ ପାରନ୍ତି । ସ୍ମାରକୀ ମେନହୀର, ଯାହାକୁ କେତେକ ମଧ୍ୟଭାରତୀୟ ଆଦିବାସୀ ସର୍ଣ୍ଣା ବୋଲି କହନ୍ତି, ସମୂହର ଓ ଧାର୍ମିକ ଗତିବିଧିର ମୁଖ୍ୟ ଆକର୍ଷଣ ହୁଏ । ଏହାକୁ ପରିଚୟର ପ୍ରତୀକ ରୂପେ ଦେଖାଯାଉଥିଲା ।

ଦକ୍ଷିଣ ଭାରତର ଇତିହାସ ରଚନା ପାଇଁ ମହାପାଷାଣ ବ୍ୟତୀତ ଆଉ ଯେଉଁ ଆଦ୍ୟତମ ବସ୍ତୁନିଷ୍ଠ ତଥ୍ୟସାମଗ୍ରୀ ମିଳିଥାଏ, ତହିଁରେ ସାନ ସାନ ସମର୍ପଣ ଅଭିଲେଖ ଅନ୍ୟତମ । ଏହି ସମର୍ପଣ ଅଭିଲେଖମାନ (dedicatory inscriptions) ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରୁ ପ୍ରଥମ ସହସ୍ରାବ୍ଦୀ ମଧ୍ୟକାଳର । ଅଭିଲେଖଗୁଡ଼ିକରେ ଗୁମ୍ଫାଦାନର ବର୍ଣ୍ଣନ ରହିଥାଏ । ଗୁମ୍ଫାଦାନ କରିଥିଲେ କେହି ସର୍ଦ୍ଦାର ବା ପରେ କେହି କାରିଗର ବା ବଣିକ ବା ବୌଦ୍ଧ କିମ୍ବା ଜୈନଭିକ୍ଷୁ । ସହସ୍ରାବ୍ଦୀର ମଧ୍ୟକାଳରେ ବ୍ରାହ୍ମଣ ବସତି ଆରମ୍ଭ ହୋଇଥିବାର ଉଲ୍ଲେଖ ମିଳେ । ଅଭିଲେଖର ଭାଷା ତାମିଲ, ଯଦିଓ ତହିଁରେ କାହିଁ କେଉଁଠି ପ୍ରାକୃତ ଶବ୍ଦ ମଧ୍ୟ ରହିଛି । ଅଶୋକଙ୍କର ବ୍ରାହ୍ମୀ ଲିପିକୁ ଆବଶ୍ୟକତା ଅନୁସାରେ ପରିବର୍ତ୍ତନ କରି ତାମିଲ ବ୍ୟବହାର କରାଯାଇଥିବାର ସୂତ୍ର ଆମକୁ ଏଥିରୁ ମିଳିଥାଏ । ସମ୍ଭବତଃ ମୌର୍ଯ୍ୟ ପ୍ରଶାସନର ପ୍ରଭାବ ଓ ଯାଯାବର ବୌଦ୍ଧ ଏବଂ ଜୈନ ସାଧୁମାନଙ୍କର ଦକ୍ଷିଣ ଭାରତ ଆଗମନ ଯୋଗୁଁ ବ୍ରାହ୍ମୀକୁ ତାମିଲ ଭାଷାର ଅନୁକୂଳ ରୂପ ଦେବାର ଏହି ପ୍ରକ୍ରିୟା ଆରମ୍ଭ ହୋଇଥିଲା । ଆକୃତିରେ ସଜ୍ଜିତ ଅଭିଲେଖ ମଧ୍ୟ ମିଳିଥାଏ । ତହିଁରେ ବଡ଼ ବଡ଼ ଭାଣ୍ଡରେ ନାମ ଖୋଦିତ ହୋଇଥାଏ । ଯେଉଁ ଅଭିଲେଖ ସମର୍ପିତ, ତହିଁରେ ଦାତାର ନାମ ସହିତ ବୃତ୍ତି ମଧ୍ୟ ଉଲ୍ଲେଖ ରହିଥାଏ । ଏଥିରୁ ଜଣାପଡ଼େ ଯେ, ଅନେକ ଦାତା ବସ୍ତ୍ର, ତାଡ଼ି (ଖଜୁରି ରସ), ଶସ୍ୟ ଏବଂ ଲୁଣର ବ୍ୟବସାୟୀ ଥିଲେ । ସ୍ୱର୍ଣ୍ଣକାର ଏବଂ ରତ୍ନପଥର କାରିଗରମାନେ ମଧ୍ୟ ଦାତା ଥିଲେ । ଅଭିଲେଖଗୁଡ଼ିକର ପ୍ରାପ୍ତି ସ୍ଥାନରୁ ମାର୍ଗ ମଧ୍ୟରେ ଥିବା ସମ୍ବନ୍ଧ ସମ୍ପର୍କରେ ତଥ୍ୟ ମିଳେ । କାଳାନୁକ୍ରମ ନିରୂପଣ କରିବା ସମୟରେ ତଥା ସଙ୍ଗମ ସାହିତ୍ୟରେ ଉଲ୍ଲେଖ ଥିବା ସର୍ଦ୍ଦାର ଓ କୁଳର ନାମର ସଠିକତା ଜାଣିବା ପାଇଁ ଏହି ଅଭିଲେଖଗୁଡ଼ିକର ବିଶେଷ ଉପାଦେୟତା ଥିବା ଅନୁଭବ କରିହୁଏ ।

ସଙ୍ଗମ ସାହିତ୍ୟ ହେଲା ଆଦ୍ୟତମ ସାହିତ୍ୟିକ ତଥ୍ୟ ପ୍ରମାଣ । ଏହା ହେଲା ଲୋକପ୍ରିୟ ବିଷୟକୁ ନେଇ ଲିଖିତ କାବ୍ୟର ସଂକଳନ । କଥିତ ଅଛି, ବହୁ ଶତାବ୍ଦୀ ପୂର୍ବେ କ୍ରମାନ୍ୱୟରେ ତିନୋଟି ସଙ୍ଗମ ବା ସାହିତ୍ୟ ସମ୍ମିଳନୀ ଆୟୋଜିତ ହୋଇଥିଲା । ଶେଷ ସଙ୍ଗମ ହୋଇଥିଲା ମଦୁରାଇରେ । ଉଭୟ କବି ଏବଂ ଗ୍ରାମ୍ୟ କବିମାନଙ୍କର ରଚନାକୁ ସମ୍ମିଳନୀରେ ସଂକଳିତ କରାଯାଇଥିଲା, ଯାହାକୁ ସଙ୍ଗମ ସାହିତ୍ୟ ବୋଲି କୁହାଯାଏ । ଆଦ୍ୟ ରଚନାମାନଙ୍କରେ ମୁଖ୍ୟତଃ ଗ୍ରାମ୍ୟ ଚାରଣ କବିମାନଙ୍କର କୃତି ସଂକଳିତ ହୋଇଛି, ଯାହାକୁ 'ଏଟ୍ଟୁଟୋଗୋଇ' (Ettutogai) କୁହାଯାଏ । ଏହାର କିଛିକାଳ ପରେ ସଂକଳିତ ରଚନାକୁ 'ପଟ୍ଟୁପଟ୍ଟୁ' (Pattupattu) କୁହାଯାଏ, ଯାହାର ରଚନା ଅବଧି ଖ୍ରୀ.ପୂ. 200 ରୁ 300 ଖ୍ରୀଷ୍ଟାବ୍ଦ ମଧ୍ୟରେ । ଏହାବ୍ୟତୀତ, ତାମିଲ ବ୍ୟାକରଣ 'ତୋଲକାପ୍ପିୟମ' (Tolkppiyam) ଏବଂ ତା'ର କିଛିକାଳ

ପରେ ଉପଦେଶାତ୍ମକ କାବ୍ୟ ତିରୁକ୍କୁରଳ (Tirukkural) ସଂକଳିତ ହୋଇଥିଲା । ଏହି କାବ୍ୟଗୁଡ଼ିକର ରଚନା ଅବଧି ନିରୂପଣ କରିବା ସମସ୍ୟାପ୍ରଦ । ଫଳରେ ଐତିହାସିକ ତଥ୍ୟ ପ୍ରମାଣ ରୂପରେ କାବ୍ୟଗୁଡ଼ିକର ଉପଯୋଗ ମଧ୍ୟ ଏକ ଜଟିଳ ବ୍ୟାପାର ।

ସଙ୍ଗମ ସାହିତ୍ୟର ଅନେକ କାବ୍ୟରେ ଆକ୍ରମଣ ଓ ଲୁଣ୍ଠନ ବୃତ୍ତାନ୍ତର ବର୍ଣ୍ଣନ ରହିଛି । କେତେକ କାବ୍ୟରେ କନ୍ୟା ଅପହରଣର କଥା ରହିଛି ! ବୀରଗାଥା'ର ଏହା ହେଲା ସାଧାରଣ ବିଷୟ । ଅନ୍ୟ ଭାରତୀୟ ଭାଷାରେ ମଧ୍ୟ ପୌରାଣିକ କାବ୍ୟମାନ ରହିଛି, ଯାହାକୁ 'ସଙ୍ଗମ'ର ସମାନ୍ତର କୃତି ମନେକରାଯିବ । 'ସଙ୍ଗମ' କାବ୍ୟରେ ଯେଉଁ ବୈଶିଷ୍ଟ୍ୟ ଦେଖିବାକୁ ମିଳେ, ତାହା ହେଲା କାବ୍ୟର ପରିବେଶ ପ୍ରଶ୍ନକୁ ନେଇ ସଚେତନତା ଏବଂ ପର୍ଯ୍ୟାବରଣ ଦୃଷ୍ଟିରୁ ଗତିବିଧି ମଧ୍ୟରେ ଅନ୍ତଃସମ୍ବନ୍ଧ । କାବ୍ୟରେ ପାଞ୍ଚଗୋଟି ପର୍ଯ୍ୟାବରଣ କ୍ଷେତ୍ରର ଉଲ୍ଲେଖ ରହିଛି । ପ୍ରତ୍ୟେକ କ୍ଷେତ୍ରକୁ ତିନୈ (Tinai) ବୋଲି କୁହାଯାଇଛି । କୌଣସି ତିନୈ ଯଦି ଶିକାରୀ-ସଂଗ୍ରାହକ ପାଇଁ ଉପଯୋଗୀ, ତେବେ ଅନ୍ୟ ତିନୈ ପଶୁଚାରକ ପାଇଁ ବା ଲୁଣ୍ଠନକର୍ତ୍ତା ପାଇଁ ବା ଧୀବର ପାଇଁ ବା ଧାନ ଉତ୍ପାଦକ କୃଷକ ପାଇଁ ଉପଯୋଗୀ ଥିଲା । ଯେହେତୁ ତିନୈଗୁଡ଼ିକ ପରସ୍ପରଠାରୁ ପୂର୍ଣ୍ଣତଃ ସୀମାଙ୍କିତ ନ ଥିଲେ, ଗୋଟାକରେ ଚାଲିଥିବା ଗତିବିଧି କିଛି ମାତ୍ରାରେ ଅନ୍ୟଟିରେ ବି ଚାଲିପାରୁଥିଲା । କୃଷିଜମିକୁ ସମ୍ପତ୍ତି ଭାବେ କରାଯାଇଥିବା ଉଲ୍ଲେଖରୁ କୃଷିର କ୍ରମିକ ପ୍ରସାର ହୋଇଥିବା କଥା ଜଣାପଡ଼େ ।

କୁଳରେ ଗୃହର ମୁଖ୍ୟଙ୍କୁ ମହତ୍ତ୍ୱପୂର୍ଣ୍ଣ ମନେ କରାଯାଉଥିଲା । ମାତ୍ର ବେଲୀର (Velir) ବା ସର୍ଦ୍ଦାରଙ୍କୁ ତା'ଠାରୁ ଅଧିକ ମହତ୍ତ୍ୱ ମିଳୁଥିଲା । ସମ୍ଭବତଃ, ମହାପାଷାଣିକ ସମାଧିରେ ବେଲୀର ସ୍ତରର ସର୍ଦ୍ଦାରଙ୍କୁ ସ୍ଥାନ ଦିଆଯାଉଥିଲା । ବେଲୀରଙ୍କ ଉପର ସ୍ତରର ସର୍ଦ୍ଦାରଙ୍କୁ ବେନ୍ତାର (Ventar) କୁହାଯାଉଥିଲା । ଚୋଳ, ଚେର ଓ ପାଣ୍ଡ୍ୟ ରାଜାମାନେ ଥିଲେ ବେନ୍ତାର ସ୍ତରର । ଉତ୍ପାଦନର ବିନିମୟ ଓ ପୁନର୍ବଣ୍ଟନ ବ୍ୟବସ୍ଥା ତିଣୋଟିଯାକ ସ୍ତରକୁ ପରସ୍ପର ମଧ୍ୟରେ ଯୋଡୁଥିଲା । ସେଠାକାର କେତେକ ପ୍ରଶାସନିକ ଉପାଦାନର ଉତ୍ତର ଭାରତର ଜନପଦୀୟ ବ୍ୟବସ୍ଥା ସହ ସାମଞ୍ଜସ୍ୟ ଥିଲା । କେତେକ ସର୍ଦ୍ଦାରତନ୍ତ୍ରରେ ଗଣସଂଘୀୟ ରାଜନୈତିକ ବ୍ୟବସ୍ଥା ରହିଥିଲା; ଆଉ କେତେକ ରାଜ୍ୟତନ୍ତ୍ରରେ ପରିଣତ ହେଲେ । ସର୍ଦ୍ଦାରତନ୍ତ୍ରରୁ ରାଜ୍ୟତନ୍ତ୍ରକୁ କ୍ରମବିକାଶ ପରବର୍ତ୍ତୀ ସମୟରେ ସଂଘଟିତ ହୋଇଥିଲା ।

ଦକ୍ଷିଣ ଭାରତରେ ରାଜ୍ୟତନ୍ତ୍ରର ବିକାଶ ପ୍ରକ୍ରିୟା ମନ୍ଥର ଗତିରେ ଚାଲିଥିଲା, କାରଣ କାରିଗରୀର ଅଭିବୃଦ୍ଧି ଆଶାଜନକ ନ ଥିଲା । ଏହାର ଅର୍ଥ, କାରିଗରମାନଙ୍କୁ ନଗରରେ କେନ୍ଦ୍ରୀଭୂତ ହେବାର ଆବଶ୍ୟକତା ପଡ଼ି ନ ଥିଲା । କାରିଗର ବର୍ଗର ଖାଦ୍ୟାନ୍ନର ଆବଶ୍ୟକତା ମେଣ୍ଟାଇବା ଲାଗି ଯେତେ ମାତ୍ରାରେ କୃଷି ଉତ୍ପାଦନର ଦରକାର ପଡୁଥିଲା, ତା'ର ମାତ୍ରା

ସୀମିତ ଥିଲା । ସମ୍ଭବତଃ, ବିନିମୟ ଏବଂ ତା' ପାଇଁ ଉଦ୍ଦିଷ୍ଟ ସାମଗ୍ରୀର ଦାୟିତ୍ୱ ବ୍ୟବସାୟୀମାନଙ୍କ ହାତରେ ରହିଥିଲା । ବିନିମୟ ସାମଗ୍ରୀରେ କଞ୍ଚାମାଲ ଏବଂ ଉଦ୍ୟାନ ଉତ୍ପାଦ ବି ସାମିଲ ଥିଲା । ଆରମ୍ଭରେ ଯେଉଁ ସାମଗ୍ରୀଗୁଡ଼ିକରୁ ବିନିମୟ ମାଧ୍ୟମରେ ଲାଭ ମିଳୁଥିଲା, ତନ୍ମଧ୍ୟରେ ଗୋଲମରିଚ ରହିଥିଲା । ତା' ବଦଳରେ ରୋମରୁ ସୁନା ଓ ରୁପା ମୋହର, କୋରାଲ ଏବଂ ମଦିରା ଆସୁଥିଲା । ଯେଉଁ ସ୍ଥାନଗୁଡ଼ିକରେ ଆସି ତାହା ପ୍ରଥମେ ଜମା ହେଉଥିଲା, ସେହି ସ୍ଥାନଗୁଡ଼ିକ ଧୀରେ ଧୀରେ ବାଣିଜ୍ୟ କେନ୍ଦ୍ରରେ ପରିଣତ ହେଲା । ଉତ୍ପାଦିତ ହେଉଥିବା ଧାନ ସର୍ଦ୍ଦାରତନ୍ତ୍ରର ସମାଜ ପାଇଁ ଯଥେଷ୍ଟ ଥିଲା । କୃଷିର ପ୍ରସାର ପାଇଁ ଯଥେଷ୍ଟ ଉଦ୍ୟମ ହେଉଥିବାର ଜଣାପଡ଼େ ନାହିଁ । ମହାପାଷାଣିକ ବସତିରେ ବ୍ୟବହାର ହୋଇଥିବା ଲୁହାରୁ ସ୍ଥାୟୀ ସମାଜରେ କୃଷି ପାଇଁ ସେଭଳି ଲୁହାର ବ୍ୟବହାର ହୋଇଥିବାର ପ୍ରମାଣ ମିଳେ ନାହିଁ । ଏହାର ବିପରୀତ, ଉତ୍ତର ଭାରତରେ ଲୁହା କୃଷିର ସଂପ୍ରସାରଣରେ ସାହାଯ୍ୟ କରିଥିଲା ବୋଲି ତର୍କ ଦିଆଯାଏ । ଏହାବ୍ୟତୀତ, ଦକ୍ଷିଣ ଭାରତରେ କୃଷି ଉତ୍ପାଦନ ବୃଦ୍ଧି ପାଇଁ ଲଙ୍ଗଳରେ ଲୁହା କସନାର ଦରକାର ପଡୁ ନ ଥିଲା, କାରଣ ସେଠାରେ ଗାଙ୍ଗେୟ ସମତଳ ତୁଳନାରେ ଜମି କମ୍ ଟାଣ । ଏହି ସ୍ଥିତିରେ, ନଗରୀକରଣ ଓ ରାଜ୍ୟ ଗଠନ ପାଇଁ ଆବଶ୍ୟକ ପ୍ରେରଣା ମିଳିଥିବ ବାଣିଜ୍ୟର ଆବଶ୍ୟକତାରୁ । ରାଜ୍ୟତନ୍ତ୍ରର ଉଦୟ ଥିଲା ଏକ କ୍ରମିକ ପ୍ରକ୍ରିୟା ।

ସାଧାରଣତଃ ଯେଉଁ ସମାଜରେ ବୀର-ପୂଜାର ପରମ୍ପରା ଅଧିକ, ସେଠାରେ କବି ଏବଂ ଭାଟମାନଙ୍କର ଖୁବ୍ ସମ୍ମାନ ଥାଏ । ଅବଶ୍ୟ ସେମାନଙ୍କ କର୍ତ୍ତୃତ୍ୱ ସ୍ପଷ୍ଟ ଦେଖାଯାଏନି । କବିମାନେ ବୀରଙ୍କର ପ୍ରଶସ୍ତି ଗାଥା ଗାନ କରନ୍ତି ଏବଂ ସେହି ମାଧ୍ୟମରେ ବୀରଙ୍କୁ ପ୍ରସିଦ୍ଧି ଓ ଅମରତ୍ୱ ପ୍ରଦାନ କରନ୍ତି । ପ୍ରତିଦାନରେ କବିଙ୍କୁ ପୁରସ୍କାର ମିଳେ, ଯାହା ଦାତାଙ୍କ ପାଖରେ ଥିବା ଧନସମ୍ପତ୍ତି ଉପରେ ନିର୍ଭର କରେ – ଭୋଜନରୁ ଆରମ୍ଭକରି ସ୍ୱର୍ଣ୍ଣପାତ୍ର ପର୍ଯ୍ୟନ୍ତ । ଏହିସବୁ ସମାଜରେ ଦାନ ଦେବା ଏକ ସ୍ୱୀକୃତ ପରମ୍ପରା । ସେଠାରେ ଅର୍ଥବ୍ୟବସ୍ଥା କୁଳସମ୍ବନ୍ଧ ସହିତ ଅନୁବନ୍ଧିତ ହୋଇ ରହିଥିଲା । ସର୍ଦ୍ଦାରର ସହଯୋଗ ପାଇଁ ନିୟୋଜିତ କୁଳସମ୍ବନ୍ଧୀମାନେ ଲୁଣ୍ଠନରେ ସକ୍ରିୟ ଭୂମିକା ନିର୍ବାହ କରୁଥିଲେ ଏବଂ ଲୁଣ୍ଠନ ଅର୍ଜିତ ଧନସମ୍ପତ୍ତିକୁ ଆଉ ବାକି କୁଳସମ୍ବନ୍ଧୀଙ୍କ ମଧ୍ୟରେ ବାଣ୍ଟୁଥିଲେ । ମୁଖ୍ୟତଃ ସମ୍ବନ୍ଧୀ ଜନ ହିଁ ଶ୍ରମ ଯୋଗାଉଥିଲେ । ଅଣ-ଜ୍ଞାତି ଲୋକଙ୍କୁ ଅନେକ ପରେ ମଜୁରିଆ ଭାବେ ନିଯୁକ୍ତ କରାଗଲା । ଜ୍ଞାତିଜନଙ୍କ ମାଧ୍ୟମରେ ଶ୍ରମକୁ ନିୟନ୍ତ୍ରଣ କରାଯାଉଥିଲା ଏବଂ ଏଥିପାଇଁ ପାରମ୍ପରିକ ରୀତିନୀତିକୁ ପାଳନ କରାଯାଉଥିଲା । ଅନ୍ୟପକ୍ଷରେ, ଅଣ-ଜ୍ଞାତି ଶ୍ରମ ପାଇଁ ପାଇଁ ବଳ ପ୍ରୟୋଗ କରାଯାଉଥିଲା । ଦାସତ୍ୱ ଏବଂ ଦାରିଦ୍ର୍ୟକୁ ଆଧାର କରି ଲୋକ ଶ୍ରମିକ ସଂଗ୍ରହ କରୁଥିଲେ । ଶ୍ରମିକ ଓ ମାଲିକ ମଧ୍ୟରେ କୌଣସି ନିବିଡ଼ ସମ୍ପର୍କ ନ ଥିଲା ।

ସଙ୍ଗମ କାବ୍ୟରେ ବର୍ଣ୍ଣାଶ୍ରମ ସମ୍ବନ୍ଧରେ ସିଧାସଳଖ ଉଲ୍ଲେଖ ନ ଥିଲେ ବି ବିବିଧ ବୃତ୍ତି ସମ୍ପର୍କରେ ଅନେକ ସୂଚନା ରହିଛି ।

ସମ୍ପତ୍ତି କେନ୍ଦ୍ରୀଭୂତ ହୋଇଥିବା ସ୍ଥାନରେ ସର୍ଦ୍ଦାର ନିଜ ନିବାସ ନିର୍ମାଣ କରି ରହିବାରୁ, ସେହି ସ୍ଥାନ ଧୀରେ ଧୀରେ ନଗରୀରେ ପରିଣତ ହେଲା । ବାଣିଜ୍ୟ ସାଙ୍ଗରେ ସେଠି ନଗରୀକରଣ ପାଇଁ ପ୍ରସ୍ତୁତି ଚାଲିଲା । ଏହି ପ୍ରକ୍ରିୟାରେ ବିକଶିତ ହୋଇଥିବା ନଗରୀଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲେ ଉରେୟୁର, ମଦୁରାଇ ଏବଂ କରୁର । ସେଠାରେ ସ୍ଥାନୀୟ ସ୍ତରରେ ଏବଂ ବାର୍ଟର (Barter) ବା ପ୍ରତ୍ୟକ୍ଷ ବିନିମୟ ମାଧ୍ୟମରେ ଲୁଣ, ଖାଦ୍ୟାନ୍ନ ଆଦି ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ଉପଲବ୍ଧ ହେଲା । ବନ୍ଦର ସ୍ଥଳୀମାନଙ୍କରେ ବ୍ୟବସାୟୀମାନେ ଏକତ୍ରିତ ହେଉଥିଲେ । ଫଳରେ ସେଠାରେ ରୋମ୍ ବାଣିଜ୍ୟରୁ ଆମଦାନି ହେଉଥିବା ସୁନା, ରୁପା, ମୁଦ୍ରା, ମଦିରା ଏବଂ କୋରାଲ ବିନିମୟରେ ଗୋଲମରିଚ, ରତ୍ନପଥର ଏବଂ ଲୁଗା ବିକ୍ରି ହେଉଥିଲା । ଏହି କାରଣରୁ ମୁଜିରିସ, ଆରିକାମେଡୁ ଏବଂ ପୁହର (କାବେରୀ ପଟ୍ଟିନମ)ର ଗୁରୁତ୍ୱ ବୃଦ୍ଧି ପାଇଲା । ପରବର୍ତ୍ତୀ ସମୟରେ ପୁହର ବିଭିନ୍ନ ଦିଗରେ ଚାଲିଥିବା ବାଣିଜ୍ୟର ଏକ କେନ୍ଦ୍ର ରୂପରେ ଧ୍ୟାନ ଆକର୍ଷଣ କଲା ।

ଇଜିପ୍ଟକୁ ରୋମ୍ ଜିଣିନେଲା ପରେ ଆଲେକ୍‌ଜାଣ୍ଡ୍ରିଆ ଓ ରୋମ୍ ମଧ୍ୟରେ ସିଧାସଳଖ ସମ୍ପର୍କ ସ୍ଥାପିତ ହେଲା । ସମ୍ଭବତଃ ଏଥିରୁ ଇଜିପ୍ଟର ଆରବ ସାଗର ଉପରେ ଆଗ୍ରହ ବୃଦ୍ଧି ପାଇଲା । ପୂର୍ବରୁ ଇଜିପ୍ଟର ଏଥିରେ ଆଗ୍ରହ ନ ଥିଲା । ଏଣିକି ସିନ୍ଧୁ ଅବବାହିକାରୁ ଆରମ୍ଭ କରି ଦକ୍ଷିଣ ଭାରତ ଯାଏଁ ବନ୍ଦର ସୃଷ୍ଟି ହେଲା । ଖ୍ରୀଷ୍ଟ ସମ୍ବତର ଆରମ୍ଭ ହେବା ଉତ୍ତାରୁ ଯବନ ବ୍ୟବସାୟୀମାନେ ଯେତେବେଳେ ଦକ୍ଷିଣ ଭାରତରେ ସକ୍ରିୟ ହେଲେ, ପ୍ରଶସ୍ତିମୂଳକ ଅଭିଲେଖରେ ଅନେକ ବିଶେଷଜ୍ଞ କାରିଗର ଏବଂ ବଣିକଙ୍କ ଉଲ୍ଲେଖ ଦେଖିବାକୁ ମିଳିଲା । ସୁନା, ରତ୍ନପଥର, ଲୁଗା, ଲୁହା ଆଦି ସାମଗ୍ରୀର ସେମାନେ ନିର୍ମାଣ କିମ୍ବା ବିକାକିଣା କରୁଥିଲେ । ଏହା ସର୍ଦ୍ଦାରତନ୍ତ୍ର ବ୍ୟବସ୍ଥାରେ ଏକ ଆଶୁ ପରିବର୍ତ୍ତନ ଆଣିଥିବ ବୋଲି ବିଶ୍ୱାସ କରାଯାଏ ।

ସଙ୍ଗମ କାବ୍ୟରେ ଯୁଦ୍ଧ ଓ ପ୍ରେମର ପ୍ରଭୂତ ବର୍ଣ୍ଣନା ରହିଛି, କାରଣ ଚେର, ଚୋଳ ଏବଂ ପାଣ୍ଡ୍ୟମାନଙ୍କ ମଧ୍ୟରେ ବାରମ୍ବାର ଯୁଦ୍ଧ ଓ କଳହ ଲାଗି ରହିଥିଲା । ସେମାନଙ୍କ ମଧ୍ୟରୁ କେତେକ ସର୍ଦ୍ଦାର ମହାଭାରତ ବର୍ଣ୍ଣିତ 'କୁରୁକ୍ଷେତ୍ର' ଯୁଦ୍ଧରେ ଅଂଶଗ୍ରହଣ କରିଥିବାର କୁହାଯାଏ । ଏହି ଧରଣର ବର୍ଣ୍ଣନା ପଛରେ ଉଦ୍ଦେଶ୍ୟ ଥାଏ ସେମାନଙ୍କ ପ୍ରାଚୀନତା ସିଦ୍ଧ କରିବା ଏବଂ ବୀରତ୍ୱକୁ ସ୍ୱୀକାର କରିବା । ଏଲାରାଙ୍କ ନେତୃତ୍ୱରେ ତାମିଲମାନେ ଉତ୍ତର ଶ୍ରୀଲଙ୍କାର ଏକ ଅଂଶ ଉପରେ ଆକ୍ରମଣ କରି ଅଧିକାର କରିନେଲେ । ମାତ୍ର ଏହି ବିଜୟ

ଦୀର୍ଘସ୍ଥାୟୀ ହୋଇପାରି ନ ଥିଲା । ସେମାନଙ୍କ ପରେ ରାଜା ଦତ୍ତୁଗାମିନି ବିତାଡ଼ିତ କଲେ, ଯାହାଫଳରେ ସେ ସିଂହଳର ବୀରଗାଥାର ଜଣେ ପ୍ରମୁଖ ନାୟକର ମାନ୍ୟତା ପାଇଲେ । ସିଂହଳ ବ୍ରାହ୍ମୀ ଭାଷାର ଲେଖନ ଥିବା ମୃଦ୍‌ଭାଣ୍ଡ ଭାରତ ଭୂଖଣ୍ଡର ତଟୀୟ କ୍ଷେତ୍ରରେ ଦେଖିବାକୁ ମିଳେ । ଏହା ଭାରତ ଓ ସିଂହଳ ମଧ୍ୟରେ ଥିବା ଆଦ୍ୟ ସମ୍ବନ୍ଧକୁ ଦର୍ଶାଏ । କୁହାଯାଏ, ଚେର ରାଜା ନେଦୁଚେରାଲ ଅଡ଼ନ ହିମାଳୟ ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡକୁ ଜିଣି ନେଇଥିଲେ । ମାତ୍ର ଏହା ଏକ କାବ୍ୟାତ୍ମକ ଅହଙ୍କାର ବ୍ୟତୀତ ଅନ୍ୟ କିଛି ନୁହେଁ । ତାଙ୍କ ସମ୍ବନ୍ଧରେ ଆହୁରି ମଧ୍ୟ କୁହାଯାଏ ଯେ ସେ ଏକ ଯବନ ଜାହାଜକୁ ପରାସ୍ତ କରି ଦେଇଥିଲେ । ବୋଧହୁଏ ଏହା ଥିଲା ଏକ ବାଣିଜ୍ୟ ପୋତ ଉପରେ ଆକ୍ରମଣ, ଯାହା ରୋମରୁ ଭାରତକୁ ଆସୁଥିଲା । ଆରମ୍ଭରେ ପଶ୍ଚିମରୁ ନୌବାଣିଜ୍ୟ ପାଇଁ ଆସୁଥିବା ସମସ୍ତଙ୍କୁ ଯବନ ବୋଲି କୁହାଯାଉଥିଲା । ଆଦ୍ୟ ଚୋଳ ବୀରଙ୍କ ମଧ୍ୟରେ କରିକେଲ କୁଆଡ଼େ ପାଣ୍ଡ୍ୟ, ଚେର ଏବଂ ଏକାଦଶଟି କ୍ଷୁଦ୍ର ଶାସକମାନଙ୍କର ସମ୍ମିଳିତ ବାହିନୀକୁ ଆକ୍ରମଣ କରି ପରାସ୍ତ କରି ଦେଇଥିଲେ ।

ସୁଦୂର ଦକ୍ଷିଣରେ ଏହି ସମୟରେ ସର୍ଦ୍ଦାରତନ୍ତ୍ରରୁ ରାଜ୍ୟତନ୍ତ୍ରକୁ ପରିବର୍ତ୍ତନ ଦେଖିବାକୁ ମିଳିଲା ଏବଂ ରାଜ୍ୟ ଗଠନ ହେଲା । ଯେଉଁ ଉତ୍‌ପ୍ରେରକ ଶକ୍ତିମାନେ ଗାଙ୍ଗେୟ ସମତଳରେ ରାଜ୍ୟ ଗଠନ ପାଇଁ ସହାୟକ ହୋଇଥିଲେ, ତା'ର ଦକ୍ଷିଣ ଭାରତୀୟ ସ୍ଥିତିରେ ଦେଖା ନ ଥିଲା । କୃଷି ପାଇଁ ଜଙ୍ଗଲ ସଫଳ କରାଯାଇଥିବାର କୌଣସି ପ୍ରମାଣ ଦକ୍ଷିଣରେ ମିଳେ ନାହିଁ, ଯଦିଓ ମହାପାଷାଣିକ ବସତିରେ ଧାନର କୃଷିରୁ କିଛି ବଳକା ଉତ୍ପାଦନ ହୋଇଥିବେ । ଲୁହାର ବ୍ୟବହାର ସେଠାରେ କିଛି ନୂଆ ନୁହେଁ । ମାତ୍ର ନଗରୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଭଳି ଏକ ପ୍ରମୁଖ ଉପାଦାନ ଭାବରେ ଏହାକୁ ଦକ୍ଷିଣରେ ଗଣାଯାଏ ନାହିଁ । ସର୍ଦ୍ଦାରତନ୍ତ୍ରର ସମାପ୍ତି ପାଇଁ ଆବଶ୍ୟକ କାରଣ ରୂପରେ ସେଠାରେ କାଲଭ୍ରମାନଙ୍କ ସହ ଶତ୍ରୁତାକୁ ଦେଖାଯାଏ । ସେମାନେ ପ୍ରଚଳିତ ବ୍ୟବସ୍ଥାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲେ । ମାତ୍ର ଅନ୍ୟ କାରଣମାନ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ହୋଇଥିବେ ।

ପରିବର୍ତ୍ତନ ଆଣିବାରେ ଦେଶାନ୍ତରୀ ବୌଦ୍ଧ ଓ ଜୈନ ଭିକ୍ଷୁମାନେ ସାହାଯ୍ୟ କଲେ, କାରଣ ମୌର୍ଯ୍ୟ ପ୍ରଶାସନ ଦ୍ୱାରା ଆପଣା ଯାଇଥିବା ମାର୍ଗକୁ ସେମାନେ ସୁଗମ କଲେ । କିଛି କାଳ ପରେ ସମ୍ଭବତଃ ଦାକ୍ଷିଣାତ୍ୟରୁ ଆସିଥିବା ବ୍ରାହ୍ମଣ ଅଧିବାସୀମାନେ ବାଣିଜ୍ୟ ଏବଂ ନୂତନ କୃଷି ପାଇଁ ରାସ୍ତା ଫିଟାଇଲେ । ଭିକ୍ଷୁମାନେ ହୁଏତ ମଠ-ବିହାର ସ୍ଥାପନ ନିମନ୍ତେ ରାଜାମାନଙ୍କର ସଂରକ୍ଷଣ ଚାହିଁଥିବେ । ସହରମାନ ଗଢ଼ିଉଠିବା ପରେ ସେମାନେ ବ୍ୟବସାୟୀ ଏବଂ ଧନାଢ଼୍ୟ କାରିଗରମାନଙ୍କ ପାଖରୁ ମଧ୍ୟ ସଂରକ୍ଷଣ ମାଗିଥିବେ । ପୂର୍ବ

ଭୂମଧ୍ୟସାଗରୀୟ କ୍ଷେତ୍ର ସହିତ ବାଣିଜ୍ୟ ବଢ଼ିବା ପରେ ମହାପାଷାଣ ତନ୍ତ୍ରର ବିସ୍ତାର ହୋଇଥିଲା । ଏହାଫଳରେ ସମ୍ପତ୍ତିର ସଂଗ୍ରହ ପ୍ରବୃତ୍ତିକୁ ବଳ ମିଳିଥିବ । ପରିବର୍ତ୍ତନ ପଛରେ ଆହୁରି ଅନେକ ସମ୍ଭାବ୍ୟ କାରଣ ରହିଥିଲା : ପ୍ରତ୍ୟକ୍ଷ ବିନିମୟରୁ ବାଣିଜ୍ୟକୁ ପରିବର୍ତ୍ତନ; ଦେୟମୁକ୍ତ ଜ୍ଞାତି ଆଧାରିତ କୃଷି ବଦଳରେ ଚାଷୀ ଆଧାରିତ ଦେୟମୁକ୍ତ କୃଷିର ଆରମ୍ଭ; ସର୍ଦ୍ଦାରଙ୍କ ଦ୍ୱାରା ଅଣ-ଜ୍ଞାତି ଶ୍ରମର ବ୍ୟବହାର ପାଇଁ ବ୍ୟବସ୍ଥା; ଏବଂ ଲୁଣ୍ଠନ ବ୍ୟତୀତ ଅନ୍ୟ ଉପାୟରେ ସର୍ଦ୍ଦାରମାନଙ୍କର ସମ୍ପତ୍ତି ଅର୍ଜନ ।

ଦକ୍ଷିଣରେ ରାଜ୍ୟର ଉଦୟ ହେଲା । ସେହି ସମୟରେ ବ୍ରାହ୍ମଣ ବସତିମାନ ପ୍ରତିଷ୍ଠା ହେଲା, ଯାହା ସ୍ଥାନୀୟ ସ୍ତରରେ ସଂସ୍କୃତର ବ୍ୟବହାରକୁ ପ୍ରୋତ୍ସାହିତ କଲା । ମାତ୍ର ଏହା ସହିତ ସଂସ୍କୃତଭାଷୀମାନଙ୍କୁ ତାମିଲ ମଧ୍ୟ ଶିକ୍ଷା ଓ ବୃତ୍ତିଗତ ସ୍ତରରେ ବ୍ୟବହାର କରିବାକୁ ପଡ଼ିଲା । ଅନେକ ସଂସ୍କୃତଜ୍ଞ ତାହା ସୁଚାରୁ ରୂପେ ସମ୍ପାଦନ ମଧ୍ୟ କଲେ । ସଂସ୍କୃତ ଓ ତାମିଲର ବ୍ୟବହାର ଦକ୍ଷିଣରେ ଏକ ଦ୍ୱି-ମାର୍ଗିକ ପ୍ରକ୍ରିୟା ଥିଲା । ସଂସ୍କୃତଜ୍ଞମାନଙ୍କୁ ତାମିଲ ଓ ତାମିଲଭାଷୀ ବିଦ୍ୱାନଙ୍କୁ ସଂସ୍କୃତ ଶିକ୍ଷା ଓ ବ୍ୟବହାର କରିବାକୁ ହେଲା । ଏହି ଐତିହାସିକ ସଂଘଟନକୁ ଯଥେଷ୍ଟ ଅଧ୍ୟୟନ କରାଯାଇ ନାହିଁ । ସେ ଯାହାହେଉ, ସଂସ୍କୃତିକରଣର ବିଶ୍ଳେଷଣ ପାଇଁ ଏହା ଏକ ଅତ୍ୟନ୍ତ ଉପାଦେୟ ତଥ୍ୟ । ଭାଷାର ପରିବର୍ତ୍ତନ ଏବଂ ଦେବୀ-ଦେବତା ତଥା କର୍ମକାଣ୍ଡର ସମାହାର ବ୍ୟତୀତ ଆହୁରି ଅନେକ କଥା ଏହି ପ୍ରକ୍ରିୟାରେ ମିଶି ରହିଥିଲା । ଏଥିପାଇଁ ଏହାକୁ ଏକ ନିରନ୍ତର ପ୍ରକ୍ରିୟା ଭାବରେ ଗ୍ରହଣ କରାଯିବା କଥା । ବଡ଼ କଥା ହେଲା, ଏହି ପ୍ରକ୍ରିୟା କେବଳ ଦକ୍ଷିଣରେ ନୁହେଁ, ଭାରତୀୟ ଉପମହାଦେଶର ଆହୁରି ଅନେକ କ୍ଷେତ୍ରରେ ସଂଘଟିତ ହୋଇଥିଲା ।

## ମାର୍ଗ ଏବଂ ବ୍ୟବସାୟ କେନ୍ଦ୍ରର ତନ୍ତ୍ର

ଏହି କାଳଖଣ୍ଡରେ ଭାରତ ଉପମହାଦେଶର ରାଜନୀତି ବହୁ ରଙ୍ଗରେ ରଙ୍ଗାୟିତ ବହୁ ଖଣ୍ଡର ସମାହାର ଏକ କେନଭାସ ତୁଲ୍ୟ ଦେଖାଯାଏ । ପ୍ରତ୍ୟେକ ଖଣ୍ଡର ଆକାର ଅନ୍ୟଠାରୁ ଭିନ୍ନ । କେତେକ ଖଣ୍ଡ କ୍ଷୁଦ୍ର । ମାତ୍ର ଆଉ କେତେକର ଧାରାରେ ବିଶାଳ ପ୍ରଦେଶର ଅବଧାରଣା ସୃଷ୍ଟି ହୁଏ, ଯଦିଓ ଉପଖଣ୍ଡଗୁଡ଼ିକ ଶିଥିଳଭାବେ ତହିଁରେ ସଂଯୋଜିତ ହୋଇଥାନ୍ତି । କାନଭାସରେ ବିଭିନ୍ନ ପ୍ରକାରର ରାଜନୈତିକ ବ୍ୟବସ୍ଥା ଦେଖିବାକୁ ମିଳେ – ରାଜତନ୍ତ୍ର, ଗୋଷ୍ଠୀତନ୍ତ୍ର ଓ ସର୍ଦ୍ଦାରତନ୍ତ୍ର । ଏହି କାରଣରୁ ସମଗ୍ର ଉପମହାଦେଶ ସମ୍ପର୍କରେ କୌଣସି ଐତିହାସିକ ସାଧାରଣ ସତ୍ୟରେ ଉପନୀତ ହେବା ନିଶ୍ଚିତରୂପେ ଏକ କାଠିକର କଥା । ମାତ୍ର ଏସବୁ କିସମର ବିବିଧତାକୁ ଯେଉଁ ଗୋଟାଏ ଚରିତ୍ର ସୂତ୍ର ପରି ସମନ୍ୱିତ

କରେ, ତାହା ହେଲା ବ୍ୟାପାର ଓ ବିନିମୟ । ପୁଣି ସେହି ବ୍ୟାପାର-ବିନିମୟ ମଧ୍ୟ ସମରୂପ ବିଶିଷ୍ଟ ନୁହେଁ । ସେ ଯାହାହେଉ, ବିଭିନ୍ନ ପ୍ରଦେଶରେ ଗତିବିଧି ଓ ରାଜନୈତିକ ଅସ୍ମିତା କେଉଁଭଳି ଭାବେ ପରସ୍ପର ସହିତ ସମନ୍ୱିତ ହୋଇ ରହିଥିଲେ, ତାହା ଅନୁଧ୍ୟାନଯୋଗ୍ୟ । ବିଭିନ୍ନ କିସମର ବ୍ୟବସାୟିକ କେନ୍ଦ୍ରର ବିକାଶ ହେଲା ଏବଂ ଦୀର୍ଘ ପଥ ମାଧ୍ୟମରେ ସମନ୍ୱୟ ପ୍ରତିଷ୍ଠା ହେଲା ।

ପୂର୍ବରୁ କଞ୍ଚାମାଲ ମିଳୁଥିବା ସ୍ଥାନରେ କିମ୍ବା ଯେଉଁଠି କାରିଗରୀ କାମ ହେବାର ପରମ୍ପରା ଥିଲା, ସେଇଠି ଉତ୍ପାଦନ କେନ୍ଦ୍ର ଥିଲା । କାରିଗରମାନେ ଆଖପାଖ ଅଞ୍ଚଳରୁ ଆସି ସେଇଠି ଏକତ୍ରିତ ହେଉଥିଲେ ଏବଂ ଉତ୍ପାଦନ ଓ ନିର୍ମାଣ କାର୍ଯ୍ୟ କରୁଥିଲେ । ମାତ୍ର ଏଣିକି କାରିଗରମାନେ ବଜାର ଥିବା କେନ୍ଦ୍ରମାନଙ୍କରେ ବସତି ବାନ୍ଧିଲେ । ଛୋଟ ଉତ୍ପାଦନ କେନ୍ଦ୍ର କଞ୍ଚାମାଲ ମିଳୁଥିବା କେନ୍ଦ୍ର ଓ ବିକ୍ରିର ସମ୍ଭାବନା ଥିବା କେନ୍ଦ୍ରରେ ରହିଥିଲା । ହେଲେ ବଡ଼ ବଡ଼ ବଜାର କେନ୍ଦ୍ର ରହିଲା ସହରରେ । କଞ୍ଚାମାଲକୁ ବୋହି ସୁଦୂରବର୍ତ୍ତୀ ଅଞ୍ଚଳକୁ ନେବା କାଠିକର ଥିଲା । ସୂତାକଟା ଓ ଲୁଗାବୁଣା, ସେ କପା ହେଉ ବା ରେଶମ, ତା' ପାଇଁ ଅନେକ ସ୍ଥାନୀୟ କୌଶଳ ଜଡ଼ିତ ଥିଲା । କୁହାଯାଏ, କପା ସାପର ଖୋଳ ପରି ସୂକ୍ଷ୍ମ ହେବା କଥା, ଅନ୍ୟଥା ତା'ର ସୂତା ଉପରକୁ ଦେଖାଯିବ । କପାକୁ ନରମ କରୁଥିବା ଧୁନକୀ (coton carder's bow), ଯାହା ଆଜି ବି ଅନେକ ସ୍ଥାନରେ ବ୍ୟବହୃତ ହୁଏ, କପାର ଗୁଣାତ୍ମକମାନ ବୃଦ୍ଧିରେ ସାହାଯ୍ୟ କରେ । ବିଭିନ୍ନ ଖଣିରେ, ଯାହା ବିକ୍ଷିପ୍ତ, ଲୁହା ବା ଲୁହାପଥର ମିଳୁଥିଲା । ତମ୍ବା ମିଳୁଥିଲା ରାଜସ୍ଥାନ, ଦାକ୍ଷିଣାତ୍ୟ ଏବଂ ହିମାଳୟର ପାଦଦେଶରୁ । ମୂଲ୍ୟବାନ ପଥର ମିଳୁଥିଲା ଉପଦ୍ୱୀପର ମାଳ ଅଞ୍ଚଳ ଓ ବନାଞ୍ଚଳରୁ । କସ୍ତୁରି ଓ କେସର, ଯାହାର ପ୍ରଭୂତ ବ୍ୟବହାର ରହିଥିଲା, ମିଳୁଥିଲା ହିମାଳୟର ତାଲୁ ଅଞ୍ଚଳରୁ । ପଞ୍ଜାବର ସଲ୍ଟ ରେଞ୍ଜ ବା ଲବଣ କ୍ଷେତ୍ରରୁ ଲୁଣ ମିଳୁଥିଲା । ମସଲା, ସୁନା, ବହୁମୂଲ୍ୟ ପଥର, ମଣି, ଚନ୍ଦନକାଠ ଓ ଏବୋନି ମିଳୁଥିଲା ଦକ୍ଷିଣ ଭାରତରୁ ।

ଏହି ସମୟରେ ଭାରତ ଭୂଖଣ୍ଡରେ ଅନେକ ନୂଆ ମାର୍ଗର ବିକାଶ ହୋଇଥିଲା । ତନ୍ମଧ୍ୟରୁ କେତେକ ମାର୍ଗ ମଧ୍ୟ ଏସିଆ ଓ ପଶ୍ଚିମ ଏସିଆ ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇ ରହିଥିଲା । ଶକ ଏବଂ କୁଶାଣମାନେ ରାଜନୈତିକ ନିୟନ୍ତ୍ରଣ ହାସଲ କରିବା ପରେ ମଧ୍ୟ-ଏସିଆ ଯୋଡ଼ିଗଲା ଭାରତ ସହିତ । ଥରେ ଯୋଗାଯୋଗ ସ୍ଥାପିତ ହେଲାପରେ ବ୍ୟାପାର ଚାଲୁଥିଲା; ତା'ପରେ ଆବଶ୍ୟକ ରହୁଥିଲା କେବଳ ବିନିମୟ ସାମଗ୍ରୀର । ଚୀନ୍‌ର ବଣିକମାନେ ପଶମ ଓ ଘୋଡ଼ା ଆଣୁଥିଲେ ବିକ୍ରି ପାଇଁ । ଭାରତର ବ୍ୟବସାୟୀମାନେ ମଧ୍ୟ ଘୋଡ଼ା ବ୍ୟବସାୟରେ ଆଗ୍ରହ ରଖୁଥିଲେ । ଯେଉଁ ସମୟରେ କୁଶାଣମାନଙ୍କର ଅଧୋପତନ ହେଲା, ସେହି ସମୟରେ ମଧ୍ୟ ଏସିଆରେ ରୋମ୍‌ର ବାଣିଜ୍ୟ କାରବାର ହ୍ରାସ ପାଇଲା । ଏହାର ପ୍ରଭାବ

ପଡ଼ିଲା ଉତ୍ତର-ପଶ୍ଚିମ ଭାରତର ବାଣିଜ୍ୟ କାରବାରରେ । ମାତ୍ର ପ୍ରଭାବ ଦୀର୍ଘକାଳୀନ ନ ଥିଲା । ଅନ୍ୟ କ୍ଷେତ୍ରଗୁଡ଼ିକର ଯେମିତି ଉପଦ୍ୱୀପର ତଟୀୟ କ୍ଷେତ୍ର, ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ର ସହିତ ବାଣିଜ୍ୟ କାରବାର ବୃଦ୍ଧି ପାଇଲା । ଦକ୍ଷିଣ-ପୂର୍ବ ଏସିଆ ସହିତ ଚାଲିଥିବା ପୂର୍ବୀୟ ବାଣିଜ୍ୟ ଅଧିକ ଲାଭକାରୀ ସିଦ୍ଧ ହେଲା ।

ମାର୍ଗ ସାଧାରଣତଃ ଉଚ୍ଚପଥ ଏବଂ ନଦୀ ଉପତ୍ୟକା ଦେଇ ଯାଉଥିଲା । ନଦୀଗୁଡ଼ିକରେ ପୋଲ ନ ଥିଲା, ମାତ୍ର ଡଙ୍ଗା ରହିଥିଲା । ମୁଖ୍ୟତଃ ଗ୍ରୀଷ୍ମ ଓ ଶୀତ ସମୟରେ ଯାତ୍ରା କରାଯାଉଥିଲା । ବର୍ଷାଋତୁ ଥିଲା ବଣିକ ପାଇଁ ବିଶ୍ରାମର ସମୟ । 'କାରାଭାନ' ବା କାଫିଲା (ବଣିକ ଦଳ) ପ୍ରାୟତଃ ଖୁବ୍ ବଡ଼ ଆକାରର ହେଉଥିଲା । ଅଧିକାଂଶ ସମୟରେ ସୁରକ୍ଷା ପାଇଁ ଅନେକ ସଂଖ୍ୟର୍କ ବଣିକ ଗୋଷ୍ଠୀବଦ୍ଧ ହୋଇ ଜିନିଷପତ୍ର ନେଇ ଯାତ୍ରା କରୁଥିଲେ । ସାଧାରଣତଃ ବଳଦ ଓ ଖଚରକୁ ଭାରବାହୀ ପଶୁ ଭାବରେ 'କାରଭାନ'ରେ ବ୍ୟବହାର କରାଯାଉଥିଲା । ମରୁଭୂମିରେ ଓଟର ବ୍ୟବହାର ରହିଥିଲା । ପାର୍ବତ୍ୟ କ୍ଷେତ୍ରରେ ଗଧକୁ ଭାରବାହୀ ପଶୁ ଭାବରେ ଉପଯୋଗ କରାଯାଉଥିଲା । କୌଟିଲ୍ୟଙ୍କ ପରାମର୍ଶ ଅନୁଯାୟୀ, ଖଣି ଅଞ୍ଚଳ ଦେଇ ଯାଉଥିବା ମାର୍ଗରେ ବଣିକମାନେ ଯିବା କଥା, କାରଣ ଏହି ମାର୍ଗ ଲୋକବହୁଳ ଅଞ୍ଚଳ ମଧ୍ୟଦେଇ ଯାଇଥାଏ ଏବଂ ଜନଶୂନ୍ୟ ରାସ୍ତା ତୁଳନାରେ ଅଧିକ ନିରାପଦ । ଏଥିରୁ ମନେହୁଏ ଯେ ଧାତୁ ଖନନ କାର୍ଯ୍ୟର ମାତ୍ରା ବୃଦ୍ଧି ପାଇଥିଲା । ବିଶେଷକରି ସୁନା ଏବଂ ମୂଲ୍ୟବାନ ପଥର କାରବାରର ମାତ୍ରା ଅଧିକ ହୋଇଥିଲା । ବୌଦ୍ଧଗ୍ରନ୍ଥଗୁଡ଼ିକରେ ଉତ୍ତରରୁ ଦକ୍ଷିଣକୁ ଯାଇଥିବା ଦୀର୍ଘ ମାର୍ଗ, ଯାହା ଶ୍ରାବସ୍ତୀରୁ ଆରମ୍ଭ ହୋଇ ପ୍ରତିଷ୍ଠାନ ପର୍ଯ୍ୟନ୍ତ ଯାଇଥିଲା ଏବଂ ଯେଉଁ ରାସ୍ତା ଉତ୍ତରରେ ନଦୀ ଉପତ୍ୟକାରେ ଯାଇଥିଲା, ତହିଁରେ ଲୋକ ନିୟମିତ ଯିବାଆସିବା କରୁଥିଲେ । ଯଦି ବିକଳ୍ପ ମାର୍ଗ ସୁଦୀର୍ଘ ହୋଇ ନ ଥାଏ, ତେବେ ମରୁପଥକୁ ବଣିକମାନେ ବାରଣ କରୁଥିଲେ ।

ତଟବର୍ତ୍ତୀ କ୍ଷେତ୍ରରେ ନୌପରିବହନର ବହୁଳ ପ୍ରସାର ରହିଥିଲା, କାରଣ ସ୍ଥଳପଥ ଅପେକ୍ଷା ଜଳପଥ କମ୍ ଖର୍ଚ୍ଚବହୁଳ ଥିଲା । ମାତ୍ର ଜଳପଥରେ ମଧ୍ୟ ଅନେକ ସମସ୍ୟା ରହିଥିଲା । ଜଳପଥ ଓ ସ୍ଥଳପଥ ମଧ୍ୟରେ ତୁଳନା କରି ଅର୍ଥଶାସ୍ତ୍ରରେ ଏକ ସୁନ୍ଦର ପରିଚ୍ଛେଦ ରହିଛି । ଗୋଟାଏ ବିନ୍ଦୁରେ ଅର୍ଥଶାସ୍ତ୍ରରେ କୁହାଯାଇଛି ଯେ ଜଳଯାତ୍ରା କମ୍ ଖର୍ଚ୍ଚବହୁଳ, ମାତ୍ର ଜଳଦସ୍ୟୁର ବିପଦ ଯୋଗୁଁ ଜାହାଜ ହାତଛଡ଼ା ହେବାର ଆଶଙ୍କା ରହିଥାଏ, ଯାହାଫଳରେ ଜଳଯାତ୍ରା ଅଧିକ ବ୍ୟୟବହୁଳ ହୋଇପଡ଼େ । ସମଗ୍ର ଇତିହାସରେ ଜଳଦସ୍ୟୁମାନଙ୍କୁ ନୌବାଣିଜ୍ୟ ପାଇଁ ଏକ ଅଭିଶାପ ସଦୃଶ ମନେକରାଯାଉଥିଲା । ସ୍ଥଳପଥରେ ଡକାୟତମାନଙ୍କ ପରି ସେମାନେ ବିପଦପୂର୍ଣ୍ଣ ଥିଲେ । ସମୁଦ୍ର ମଧ୍ୟଦେଇ ଯାଇଥିବା ମାର୍ଗ ଅପେକ୍ଷା ସର୍ବଦା ତଟୀୟ ମାର୍ଗକୁ ସୁରକ୍ଷିତ ମନେକରାଯାଉଥିଲା । ତଟୀୟ ମାର୍ଗରେ ସ୍ଥାନୀୟ

ବାଣିଜ୍ୟ ପାଇଁ ମଧ୍ୟ ଅବସର ରହୁଥିଲା । ତଟୀୟ ମାର୍ଗ କମ୍ ସମୟସାପେକ୍ଷ ଏବଂ ଅଧିକ ଲାଭକାରୀ । ହେଲେ ସମୁଦ୍ର ମଧ୍ୟମାର୍ଗରେ ଜାହାଜ ଅଧିକ ବେଗରେ ଯାଇପାରୁଥିଲା । କମ୍ ଓଜନର ତଟୀୟ ନୌକାରେ ମାଲ ପରିବହନ କରାଯାଉଥିଲା । ବଡ଼ ଜାହାଜ ନିର୍ମାଣ ପାଇଁ ବଡ଼ ବଡ଼ କାଠପଟାକୁ ଯୋଡ଼ି ଦିଆଯାଉଥିଲା । ସବୁଠାରୁ ବଡ଼ ଜାହାଜ ଲୋହିତ ସାଗରକୁ କିମ୍ବା ଦକ୍ଷିଣ-ପୂର୍ବ ଏସିଆକୁ ଲମ୍ବା ଯାତ୍ରାରେ ଯାଉଥିଲା । ପ୍ଲିନୀଙ୍କ ବିବରଣୀ ଅନୁଯାୟୀ, ଭାରତର ସବୁଠାରୁ ବଡ଼ ଜାହାଜର ଓଜନ ଥିଲା 75 ଟନ୍ । ଅନ୍ୟ ସ୍ରୋତସାମଗ୍ରୀରେ, 700 ଯାତ୍ରୀଙ୍କର ଗୋଟାଏ ଜାହାଜରେ ଯାତ୍ରା କରିବା କଥା ଉଲ୍ଲେଖ ଅଛି ।

ପୋତାଶ୍ରୟଗୁଡ଼ିକ ମଧ୍ୟରେ ସିନ୍ଧୁ ଅବବାହିକାରେ ଉତ୍ତର-ପଶ୍ଚିମ ପାଇଁ ଉପଯୋଗୀ ହେଉଥିବା ବାରବାରିକମ ଥିଲା ଅନ୍ୟତମ । ମାତ୍ର ମୁହାଣରେ ପଟୁମାଟି ଭର୍ତ୍ତି ହୋଇଯିବାରୁ ଏହି ବନ୍ଦରକୁ ସ୍ଥାନାନ୍ତରିତ କରିବାକୁ ପଡ଼ିଲା । ଅନ୍ତତଃ ବନ୍ଦରଟିର ପତନ ହେଲା । ବାରବାରିକମ ବନ୍ଦରର ପୃଷ୍ଠଦେଶ ବା 'ହିଣ୍ଟରଲେଣ୍ଡ' (hinterland) ଉତ୍ତରରେ ଗାନ୍ଧାର ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ଭୃଗୁକଚ୍ଛ ବା ଭାରୁକଚ୍ଛ, ଯାହାକୁ ଗ୍ରୀକ୍ ପୁସ୍ତକଗୁଡ଼ିକରେ ବେରିଗାଜା ବୋଲି କୁହାଯାଇଛି, ଥିଲା ପଶ୍ଚିମ କ୍ଷେତ୍ରର ନୌବାଣିଜ୍ୟ ପାଇଁ ଏକ ପ୍ରମୁଖ ବନ୍ଦର । ଆଧୁନିକ ଭରୁଚ ସହର ସହିତ ଏହାକୁ ଚିହ୍ନିତ କରାଯାଏ । ପୂର୍ବ ଶତାବ୍ଦୀରେ ଏହାର ପୃଷ୍ଠଦେଶ ଗାଙ୍ଗେୟ ସମତଳ ପର୍ଯ୍ୟନ୍ତ ବ୍ୟାପ୍ତ ରହିଥିଲା । ଭୃଗୁକଚ୍ଛରେ ପ୍ରବେଶ କରୁଥିବା ଜାହାଜଗୁଡ଼ିକୁ ଚାଳକ ନୌକାର ସହାୟତାରେ ପୋତାଶ୍ରୟକୁ ନିଆଯାଉଥିଲା । ଅନ୍ତତଃ ଗୋଟାଏ 'ଜାତକ କଥା'ରେ ବାଭେରୁ (ବେବିଲୋନ) ସହିତ ଯୋଗାଯୋଗ କଥା ଉଲ୍ଲିଖିତ ରହିଛି । ଆରବ ଉପସାଗରରୁ ଆସୁଥିବା ଜାହାଜଗୁଡ଼ିକ ପାଇଁ କାମ୍ବେ ଉପସାଗର ରହଣିସ୍ଥଳ ହେଉଥିଲା । ଏହି ବ୍ୟବସ୍ଥା ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଚାଲିଥିଲା । ମାତ୍ର ଆହୁରି ପଶ୍ଚିମରେ ସ୍ଥିତ ସୋପାରା ଏବଂ କଲ୍ୟାଣ ଆଦି ବନ୍ଦରରେ ମଧ୍ୟ ଅନେକ ପରିମାଣର ସାମଗ୍ରୀ ପହଞ୍ଚୁଥିଲା । ଏହି ବନ୍ଦରଗୁଡ଼ିକ ପଶ୍ଚିମ ଦାକ୍ଷିଣାତ୍ୟ ଏବଂ ମୁଜିରିସକୁ ସହାୟତା କରୁଥିଲା ଓ ଦକ୍ଷିଣର କେନ୍ଦ୍ରସ୍ଥଳଗୁଡ଼ିକୁ ଯୋଡୁଥିଲା । ପୂର୍ବତଟରେ ଥିବା ବନ୍ଦରଗୁଡ଼ିକ ଆରମ୍ଭରେ ନଦୀ ମୁହାଣରେ ରହିଥିଲେ । ବଡ଼ ବଡ଼ ବନ୍ଦରମାନ ଗାଙ୍ଗେୟ ସମତଳରେ ଥିଲେ । ତାମ୍ରଲିପ୍ତି ବା ତାମଲୁକ ଥିଲା ଏହି ଧରଣର ଏକ ବନ୍ଦର । ଗଙ୍ଗାନଦୀ ଦେଇ ଚାଲିଥିବା ନଦୀ ବାଣିଜ୍ୟ ଏବଂ ଉତ୍ତର-ପଶ୍ଚିମ ଦିଗରୁ ଗାଙ୍ଗେୟ ସମତଳକୁ ଆସୁଥିବା ବାଣିଜ୍ୟ ସାମଗ୍ରୀ ଥିଲା ତାମ୍ରଲିପ୍ତି ବନ୍ଦରର ମୁଖ୍ୟ ଉପଲକ୍ଷ୍ୟ । ଗଙ୍ଗା ଅବବାହିକାରେ ଖରୋଷ୍ଠୀ ଲିପିରେ ଲିଖିତ ଅଭିଲେଖମାନ କେବେ କେବେ ମିଳିଥାଏ । ବାଣିଜ୍ୟ ସମ୍ବନ୍ଧର ନିଦର୍ଶନ ରୂପେ ତାକୁ ଦେଖିହେବ । ସିଂହଳ ବ୍ରାହ୍ମୀ ଲିପିରେ ଲିଖିତ ଅଭିଲେଖ ସୁଦୂର ବାଲି ଦ୍ୱୀପରେ

ମଧ୍ୟ ଦେଖିବାକୁ ମିଳିଥାଏ । ଏହାକୁ ମଧ୍ୟ ନୌବାଣିଜ୍ୟିକ ସମ୍ବନ୍ଧର ସଂକେତ ବୋଲି କହିବାକୁ ହେବ ।

ମୌର୍ଯ୍ୟମାନେ ତକ୍ଷଶିଳାରୁ ପାଟଳିପୁତ୍ର ପର୍ଯ୍ୟନ୍ତ ଏକ ରାଜପଥ ନିର୍ମାଣ କରିଥିଲେ । ଶେରଶାହ, ମୋଗଲ ଏବଂ ଇଂରେଜମାନେ ପ୍ରାୟ ସେହି ରାଜପଥକୁ ପୁନର୍ନିର୍ମାଣ କରିଥିଲେ । ଇଂରେଜମାନେ ଏହାକୁ 'ଗ୍ରାଣ୍ଡ ଟ୍ରଙ୍କ ରୋଡ଼' ନାମରେ ନାମିତ କରିଥିଲେ । ସ୍ୱାଧୀନୋତ୍ତର ଭାରତରେ ଏହାକୁ ଏକନମ୍ବର ଜାତୀୟ ରାଜପଥ ବୋଲି କୁହାଗଲା । ଉଭୟ ସ୍ଥଳପଥ ଓ ନଦୀପଥରେ ପାଟଳିପୁତ୍ର ତାମ୍ରଲୁକ ସହିତ ଯୋଡ଼ି ହୋଇଥିଲା । ତାମ୍ରଲୁକରୁ ସମୁଦ୍ରପଥରେ ଶ୍ରୀଲଙ୍କା ଏବଂ ମ୍ୟାନମାରକୁ ଗମନାଗମନର ମାର୍ଗ ରହିଥିଲା । ଉତ୍ତର-ମୌର୍ଯ୍ୟ କାଳରେ ବ୍ୟବସାୟିକ ଆବଶ୍ୟକତା ଘନୀଭୂତ ହେବାରୁ ଦକ୍ଷିଣକୁ ମାର୍ଗମାନ ବିକଶିତ ହେଲା । ନଦୀ ଉପତ୍ୟକାରେ, ଯେଉଁଠି ସମ୍ଭବ, ସ୍ଥଳମାର୍ଗ ତିଆରି ହେଲା । ଦାକ୍ଷିଣାତ୍ୟର ଅଧିତ୍ୟକାରେ ଉତ୍ତର-ଦକ୍ଷିଣ ମଧ୍ୟରେ ସିଧା ସ୍ଥଳମାର୍ଗର ଯୋଗାଯୋଗ କାଠିକର ଥିଲା । ସେ କ୍ଷେତ୍ରରେ ଗୋଦାବରୀ ଓ କୃଷ୍ଣାନଦୀର ଉପତ୍ୟକା ମଧ୍ୟଦେଇ ପୂର୍ବ-ପଶ୍ଚିମ ମଧ୍ୟରେ ଯୋଗାଯୋଗର ସ୍ଥାପନ ସମ୍ଭବ ହେଲା । ଯେମିତି ଗାଙ୍ଗେୟ ସମତଳରେ, ସେମିତି ଦାକ୍ଷିଣାତ୍ୟର ଅଧିତ୍ୟକାରେ ଘନଜଙ୍ଗଲ ରହିଥିଲା, ଯାହା ଯାତାୟତକୁ ଆଶଙ୍କାପୂର୍ଣ୍ଣ କରିଦେଉଥିଲା । ତା' ତୁଳନାରେ ଉପତ୍ୟକା ଅଞ୍ଚଳରେ ଜଙ୍ଗଲ ସଫା ହୋଇଥିଲା ଓ ଜନବସତି ରହିଥିଲା । ଏହା ଯାତ୍ରାକୁ ନିରାପଦ କରୁଥିଲା ।

ଏସବୁ ସତ୍ତ୍ୱେ ଦାକ୍ଷିଣାତ୍ୟ ଥିଲା ଏକ ବଜାର ଓ ଉତ୍ପାଦନ କେନ୍ଦ୍ର । ପୁଣି ସେଠାକାର ବିଭିନ୍ନ ସ୍ଥାନରେ, ଯଥା- ତେର, ଭୋକାର୍ଦନ, କରାଡ଼, କୋଣ୍ଡପୁର, ଧରନୀକୋଟ ଏବଂ ଅମରାବତୀ, ଆଦିରେ, ବୌଦ୍ଧମଠମାନ ରହିଥିଲା । ଉତ୍ତରରେ ଥିବା ବିଦର୍ଭ ଏବଂ ଉତ୍ତର-ପଶ୍ଚିମ ଦାକ୍ଷିଣାତ୍ୟ ମଧ୍ୟ ସବୁ ଦୃଷ୍ଟିରୁ ପ୍ରସିଦ୍ଧ ଥିଲା । ଉଜ୍ଜୟିନୀ ଏବଂ ଅମରାବତୀ ମଧ୍ୟରେ ସ୍ଥଳପଥରେ ଯୋଗାଯୋଗ ରହିଥିଲା । ମଝିରେ ଥିଲା ଭୋକାର୍ଦନ, କୋଟଲିଙ୍ଗଳା, ଧୂଳିକଟ୍ଟା ତଥା ପେଡ଼ବୁଙ୍କୁର ସହର । ଏଥିମଧ୍ୟରୁ କେତେକ ସହରରେ ମହାପାଷାଣିକ ସ୍ଥଳୀ କିମ୍ବା ସ୍ତୁପ ଅଥବା ଗଡ଼ ପରିବେଷ୍ଟିତ ବସତିମାନ ରହିଥିଲା । ବୌଦ୍ଧବିହାର କେବେ କେବେ ମହାପାଷାଣିକ ସମାଧିସ୍ଥଳର ନିକଟରେ ରହିଥିଲା । ଯେଉଁଠି ବୌଦ୍ଧଭିକ୍ଷୁମାନେ ରହୁଥିଲେ, ତା'ର ଆଖପାଖରେ ଭିକ୍ଷାର୍ଜନ ପାଇଁ ଜନବସତି ରହିଥାଏ । ତେଣୁ ମହାପାଷାଣିକ ସମାଧିସ୍ଥଳ ସ୍ତୁପକୁ ବୈଧତା ପ୍ରଦାନ କରୁଥିଲା, କାରଣ ଉଭୟଟି ଥିଲା ମୂଳତଃ ସମାଧିସ୍ଥଳ ବା ସମାଧିସ୍ଥଳର ପ୍ରତୀକ, ଯଦିଓ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ରହିଥିଲା । ଅନ୍ୟ ଏକ ମାର୍ଗ ସେପଟେ ଭୃଗୁକଚ୍ଛ, ନାସିକ, କୋଣ୍ଡାପୁର, ନାଗାର୍ଜୁନକୋଣ୍ଡା ଏବଂ ଅମରାବତୀକୁ ସଂଯୋଜିତ

କରୁଥିଲା । ଏସବୁ ସ୍ଥାନର ପୁରାତତ୍ତ୍ୱରୁ ଜଣାପଡ଼େ ଯେ, ଏ ମଧ୍ୟରୁ କୌଣସିଟି ମାର୍ଗସ୍ଥିତ କେବଳ ସରାଇଘର ସଦୃଶ ନ ଥିଲା । ବରଂ ପ୍ରତ୍ୟେକଟି ସ୍ଥାନ କୃଷକ, ପଶୁଚାରକ ଏବଂ ଶିକାରୀ-ସଂଗ୍ରାହକ ପରିବେଷ୍ଟିତ ଥିଲା । ଏହା ସ୍ଥାନଟିକୁ ବଜାର ରୂପେ ବିକଶିତ ହେବାରେ ସାହାଯ୍ୟ କରୁଥିଲା ।

ପାହାଡ଼ରେ ଯେଉଁଠି ଘାଟୀ ଆରମ୍ଭ ହେଉଥିଲା ବା ଗୋଟିଏ ଘାଟୀ ଶେଷ ହେବାପରେ ଅନ୍ୟ ଘାଟୀ ଆରମ୍ଭ ହେବାର ଥିଲା, ସେଇଠି ଏକ ନୂଆ ମାର୍ଗକୁ ବାହାର କରାଯାଉଥିଲା । ଉଦାହରଣ ସ୍ୱରୂପ, ଉପଦ୍ୱୀପର ପଶ୍ଚିମରେ ମାଲାବାର ତଟରୁ ପାଲଘାଟ ଗେପ, କାବେରୀ ଉପତ୍ୟକା ଦେଇ ଏକ ମୁଖ୍ୟ ସ୍ଥଳମାର୍ଗ ପୂର୍ବତଟ ବସତି ଯାଏ ଯାଇଥିଲା । ମଝିରେ ଆରିକାମେଡୁ, କୋରକୈ ବା ଅଲଗଙ୍କୁଲମ ଅତିକ୍ରମ କରିବା ପୂର୍ବରୁ କୋଡୁମନାଲ ଓ କରୁର୍‌ରେ ଯାଇ ରାସ୍ତା ପହଞ୍ଚୁଥିଲା । ପୂର୍ବତଟରେ ଥିବା ସ୍ଥଳଗୁଡ଼ିକର ଶ୍ରୀଲଙ୍କାର ବସତି ସହିତ ଯୋଗାଯୋଗ ଥିଲା । ତଟୀୟ ମାର୍ଗଗୁଡ଼ିକ ଶୀଘ୍ର ବିକଶିତ ହେଉଥିଲା ଏବଂ ଉତ୍ତର-ଦକ୍ଷିଣ ମଧ୍ୟରେ ଯୋଗାଯୋଗ ରକ୍ଷା ପାଇଁ ମୁଖ୍ୟ ମାଧ୍ୟମ ହେଉଥିଲା । କେବେ କେବେ ସ୍ଥଳମାର୍ଗ ଅପେକ୍ଷା ତଟୀୟ ମାର୍ଗକୁ ଅଧିକ ସୁବିଧାଜନକ ମନେକରାଯାଉଥିଲା । ଆଗରୁ କୁହାଯାଉଥିଲା ଯେ, ରୋମ୍‌ରୁ ଆସୁଥିବା ମାଲବାହୀ ଜାହାଜରୁ ପଶ୍ଚିମ ତଟର ବନ୍ଦରରେ ମାଲ ଓହ୍ଲାଯାଉଥିଲା ଏବଂ ସେଠାରୁ ସ୍ଥଳପଥରେ ପୂର୍ବତଟକୁ ଜିନିଷ ଆସୁଥିଲା । ଏହି କାରଣରୁ ଆରିକାମେଡୁ ଆଦି ସ୍ଥାନ ବ୍ୟବସାୟିକ ଷ୍ଟେସନ ରୂପେ ବିକଶିତ ହୋଇଥିଲା । ରପ୍ତାନି ପାଇଁ ଉଦ୍ଦିଷ୍ଟ ସାମଗ୍ରୀକୁ ସ୍ୱତନ୍ତ୍ର ଭାବରେ ବୋଝେଇ କରି ପଠେଇ ଦିଆଯାଉଥିଲା, ଯାହା ଲୋହିତ ସାଗରରେ ପହଞ୍ଚୁଥିଲା । ଅନ୍ୟପକ୍ଷରେ, ଅନ୍ୟ ମାଲ ସବୁର ସ୍ଥାନୀୟ ସ୍ତରରେ ପରିବଣ୍ଟନ ହେଉଥିଲା । ମାତ୍ର ଆଜିକାଲି କୁହାଯାଉଛି ଯେ ବୋଧହୁଏ ସମସ୍ତ ବିପଦ ସତ୍ତ୍ୱେ ଜାହାଜ ଦକ୍ଷିଣ ଭାରତ ଓ ଶ୍ରୀଲଙ୍କା ମଧ୍ୟଦେଇ ପୂର୍ବତଟ ଯାଏଁ ଆସୁଥିଲା ।

ଭାରତର ଅନ୍ତର୍ଦ୍ଦେଶୀୟ ମାର୍ଗଗୁଡ଼ିକର ଖୁବ୍ ବ୍ୟବହାର ହେଉଥିଲା । ଫଳରେ ପଶ୍ଚିମ ଓ ମଧ୍ୟ-ଏସିଆ ପରି ସୁଦୂରବର୍ତ୍ତୀ କ୍ଷେତ୍ର ସହିତ ଯୋଗାଯୋଗ ସ୍ଥାପିତ ହୋଇପାରିଲା । ଏହା ପୁଣି ହେଲେନବାଦୀ ଜଗତ ସହିତ ସମ୍ପର୍କ ଗଢ଼ିବାରେ ସାହାଯ୍ୟ କଲା । ଉତ୍ତରରେ ସବୁଠାରୁ ଅଧିକ ବ୍ୟବହୃତ ହେଉଥିବା ରାଜପଥ ହେଲା ପଶ୍ଚିମ ଦିଗକୁ ତକ୍ଷଶିଳାରୁ ବେଗ୍ରାମ ଯାଇଥିବା ସ୍ଥଳମାର୍ଗ । ବେଗ୍ରାମରେ ରାସ୍ତା ଭାଗ ଭାଗ ହୋଇ ଭିନ୍ନ ଭିନ୍ନ ଦିଗକୁ ଯାଇଥିଲା । ଉତ୍ତର ମାର୍ଗ ବେକ୍‌ଟ୍ରିଆ, ଆମୁଦରିଆ (Oxus), କାସ୍ପିଆନ ସାଗର ଏବଂ କୋକେସର ଅତିକ୍ରମ କରି କୃଷ୍ଣସାଗରରେ ଯାଇ ପହଞ୍ଚୁଥିଲା । ଏକ ଅଧିକ ଦକ୍ଷିଣାଭିମୁଖୀ ମାର୍ଗ କାନ୍ଦାହାର ଓ ହେରାଟ ଦେଇ ଏକବତାନା ଯାଉଥିଲା ଏବଂ ସେଠାରୁ ଯାଇ ପୂର୍ବ ଭୂମଧ୍ୟସାଗରସ୍ଥିତ

ବନ୍ଦରରେ ଯାଇ ମିଶୁଥିଲା । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ରାଜପଥ କାନ୍ଦାହାରକୁ ପରସିପୋଲିସ ଏବଂ ସୁସା ସହିତ ଯୋଡୁଥିଲା । ଏହିସବୁ ମାର୍ଗ ଯୋଗୁଁ ବିଭିନ୍ନ କିସମର ସାମଗ୍ରୀ ବେଗ୍ରାମ ଭଳି ସହରକୁ ଆସୁଥିଲା । ଭାରତରୁ ହାତୀଦାନ୍ତର ସାମଗ୍ରୀ ଏବଂ ଚୀନ୍‌ର ସିଲ୍‌କ ବସ୍ତ୍ର ଥିଲା ବେଗ୍ରାମରେ ପହଞ୍ଚୁଥିବା ପଣ୍ୟଦ୍ରବ୍ୟର କେତୋଟି ନମୁନା । ବେକ୍‌ଟ୍ରିଆ ପାଖରେ ଥିବା ମାର୍ଜିଆନା ଥିଲା ଆଉ ଏକ ସାମୟିକ ରହଣିସ୍ଥଳ । ଏସିଆରୁ ଆମଦାନି ହୋଇଥିବା ରେଶମ ଭୂମଧ୍ୟ ସାଗରରେ ପହଞ୍ଚିବା ପୂର୍ବରୁ ଏଠାରେ ଅଟକୁଥିଲା । ମାର୍ଜିଆନାରେ ସ୍ୱାଭାବିକ ଭାବେ ଅନେକ ବୌଦ୍ଧବିହାର ରହିଥିଲା । ସ୍ଥଳପଥର ବାଣିଜ୍ୟ ପାଇଁ ଆଉ ଏକ କେନ୍ଦ୍ର ଥିଲା ଗାନ୍ଧାର । 'ସିଲ୍‌କ ରୁଟ' ବା ରେଶମ ମାର୍ଗ ତଥା ପୂର୍ବ ବାଇଜେଣ୍ଟାଇନ ବାଣିଜ୍ୟ କେନ୍ଦ୍ରର ଏହା ବହୁତ ସୁବିଧା ହାସଲ କରିଥିଲା । ଗାଙ୍ଗେୟ ସମତଳ ସହିତ ଥିବା ଏହାର ସମ୍ବନ୍ଧର ଫଳସ୍ୱରୂପ ତା'ର ପୃଷ୍ଠପ୍ରଦେଶ ଗଙ୍ଗା ଅବବାହିକା ପର୍ଯ୍ୟନ୍ତ ସଂପ୍ରସାରିତ ହୋଇଥିଲା । ଗାନ୍ଧାର ସମୟକ୍ରମେ ଅନେକ ସାମ୍ରାଜ୍ୟକୁ ସହ୍ୟ କରିଥିଲା –ଆକେମେନିଡ୍ ଏବଂ ମୌର୍ଯ୍ୟ ସାମ୍ରାଜ୍ୟ, ଉତ୍ତର-ପଶ୍ଚିମ କ୍ଷେତ୍ରର ନାନା କିସମର ରାଜ୍ୟତନ୍ତ୍ର । ତା' ସତ୍ତ୍ୱେ, ଗାନ୍ଧାର ତା'ର ସାଂସ୍କୃତିକ ବୈଶିଷ୍ଟ୍ୟ ବଜାୟ ରଖିଥିଲା । ଯେଉଁ ଦ୍ରବ୍ୟଗୁଡ଼ିକ ଏଠାକାର ବଜାରରେ ମିଳୁଥିଲା, ତନ୍ମଧ୍ୟରେ ଥିଲା ଭାରତରୁ ଆମଦାନି ହେଉଥିବା ଗୋଲମରିଚ, ବିଭିନ୍ନ କିସମର ବସ୍ତ୍ର, ଧାତୁଦ୍ରବ୍ୟ, ଗଣ୍ଡାର, ହାତୀ ଏବଂ ପଶ୍ଚିମରୁ ଆମଦାନି ହେଉଥିବା କଇଁଛ ଶାମୁକା ଆଦି ଜିନିଷ ।

ମଧ୍ୟ-ଏସିଆର ଗତିବିଧି ରାଜନୈତିକ ଦୃଷ୍ଟିରୁ ଯାଯାବରମାନଙ୍କର ଲୁଣ୍ଠନ ଏବଂ ଦେଶାନ୍ତରଣ ଦ୍ୱାରା ପରିଚାଳିତ ଥିଲା । ଇତିହାସ ଦୃଷ୍ଟିରୁ ସମାନଭାବେ ମହତ୍ତ୍ୱପୂର୍ଣ୍ଣ ଥିଲା 'ସିଲ୍‌କ ରୁଟ' ବା ରେଶମ ମାର୍ଗର ଉଦୟ ଓ ତା' ଯୋଗୁଁ ବୃଦ୍ଧି ପାଇଥିବା ବାଣିଜ୍ୟ । ତକଲାମାକନ ମରୁଭୂମି ଚାରିକଡ଼େ ମରୁଉଦ୍ୟାନମାନ ରହିଥିଲା, ଯାହା ମାର୍ଗରେ ସରାଇ ବା ରହଣିସ୍ଥଳ ରୂପେ କାର୍ଯ୍ୟ କରୁଥିଲା । ଚୀନ୍‌ର ଲୋୟାଙ୍ଗ ଏବଂ ଚାଙ୍ଗ-ଆନରୁ ଏହି ମାର୍ଗ ତୁନହୁଆଙ୍ଗ ପର୍ଯ୍ୟନ୍ତ ଯାଇଥିଲା । ତୁନହୁଆଙ୍ଗରୁ ଏହା ଦୁଇଭାଗ ହୋଇ ଗୋଟାଏ ଭାଗ ଉତ୍ତର ଦିଗରେ ତୁର୍ଫାନ, କ୍ୱାରାଶର ଓ କୁଚା ଦେଇ କାଶଗର ପର୍ଯ୍ୟନ୍ତ ଯାଇଥିଲା ଏବଂ ଦ୍ୱିତୀୟ ଭାଗ ଦକ୍ଷିଣରେ ନିୟା ଏବଂ ଖୋତାନ ହୋଇ କାଶଗରରେ ମିଶିଥିଲା । କାଶଗରରୁ ପୁଣି ବାକ୍‌ଟ୍ରା ବା ବଲ୍ଖ ଯାଇ ସେଠାରୁ ହୁଏତ ଇରାନ ଓ ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ରକୁ ସ୍ପର୍ଶ କରିଥିଲା, ଅଥବା ଦକ୍ଷିଣରେ ଭାରତ ପହଞ୍ଚିଥିଲା ।

ତାତ୍ପର୍ଯ୍ୟର ବିଷୟ ହେଲା ଯେ ଅଭ୍ୟନ୍ତରର ମରୁଉଦ୍ୟାନ ସହରଗୁଡ଼ିକରୁ ରାସ୍ତାମାନ ଆସି ଏହି ମୁଖ୍ୟ ମାର୍ଗରେ ମିଶିଥିଲା । 'ସିଲ୍‌କ ରୁଟ' ରାଜନୀତିର ନିୟନ୍ତା ଥିଲେ ସେହିମାନେ,

ଯେଉଁମାନେ ମାର୍ଗର ନିର୍ଦ୍ଧାରିତ ଭାଗକୁ ନିୟନ୍ତ୍ରଣ କରୁଥିଲେ । ମରୁଦ୍ୟାନ ବିନ୍ଦୁରେ ବଣିକ ଦଳର 'କାରାଭାନ'ର ପଶୁମାନଙ୍କୁ ବଦଳା ଯାଉଥିଲା ଏବଂ ସଶସ୍ତ୍ର ସୁରକ୍ଷାର ବ୍ୟବସ୍ଥା କରାଯାଉଥିଲା । ରାସ୍ତା ଖରାପ ଥିଲା । ପୁଣି ତାହା ଦୁର୍ଗମ ପାହାଡ଼ ଓ ମରୁପ୍ରାନ୍ତର ଦେଇ ଯାଉଥିଲା । ଯାତ୍ରାବେଳେ ଉଭୟ ଡକାୟତ ଏବଂ ଉତ୍କଟ ଜଳବାୟୁଗତ ସମସ୍ୟାର ସମ୍ମୁଖୀନ ହେବାକୁ ପଡୁଥିଲା ।

ଭାରତୀୟ ବଣିକମାନେ କାଶଗର, ୟାରକନ୍ଦ, ଖୋତାନ, ମିରାନ, କ୍ୱାରାଶର ଏବଂ ତୁର୍ଫାନ ଆଦି ଦୂରଦୂରାନ୍ତର ସହରମାନଙ୍କରେ ବାଣିଜ୍ୟ କେନ୍ଦ୍ର ଏବଂ ବଣିକ ବସତିମାନ ସ୍ଥାପନ କରିଥିଲେ । ବଣିକମାନଙ୍କ ବ୍ୟତୀତ ଏହି ବସତିମାନଙ୍କୁ ବୌଦ୍ଧ ପ୍ରଚାରକମାନେ ମଧ୍ୟ ନିୟମିତ ଯାତ୍ରା କରୁଥିଲେ । ବ୍ୟବସାୟୀମାନେ ଯାଉଥିଲେ ଲାଭର ଆକର୍ଷଣରେ ଏବଂ ଭିକ୍ଷୁମାନେ ଯାଉଥିଲେ ଧର୍ମପ୍ରଚାର ପାଇଁ । ଏହାଫଳରେ ଚୀନ୍ ସହିତ ମଧ୍ୟ-ଏସିଆର ଯୋଗାଯୋଗ ଅଧିକ ବିକଶିତ ହେଲା । ଗୋଟାଏ ଦୃଷ୍ଟିରୁ ଦେଖିଲେ, ଭାରତ ଓ ଚୀନ୍ ମଧ୍ୟରେ କୁଶାଣ ଶାସନ ଥିଲା ଏକ ଯୋଗସୂତ୍ର ସଦୃଶ । ଏହି ଯୋଗସୂତ୍ରକୁ ବୌଦ୍ଧ ମିସିନେରୀ ଗତିବିଧି ଅଧିକ ନିକଟତର କଲା । ରୋମ୍ ଅଞ୍ଚଳରୁ, ଏପରିକି ସୁଦୂର ଗୋବି ମରୁଭୂମି କ୍ଷେତ୍ରରୁ କେବେ କେବେ ବଣିକମାନେ ଆସୁଥିଲେ । ଖୁବ୍‌ଶୀଘ୍ର ଭାରତୀୟ ବ୍ୟବସାୟୀମାନେ ବୁଝିପାରିଲେ ଯେ ଚୀନ୍ ଏବଂ ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ର ଓ ବାଇଜେଣ୍ଟିଅମ ମଧ୍ୟରେ ବିଳାସ ସାମଗ୍ରୀର ମଧ୍ୟସ୍ଥି ଭାବରେ କାର୍ଯ୍ୟ କରିବା ପ୍ରଚୁର ଲାଭଜନକ ହେବ ।

ପହଲବମାନଙ୍କ ସହିତ ରୋମ୍‌ର କଳହ ଯୋଗୁଁ ଚୀନ୍‌ରୁ ଆସୁଥିବା ପଣ୍ୟଦ୍ରବ୍ୟକୁ କେବେ କେବେ ତକ୍ଷଶିଳା ଓ ଭୃଗୁକଚ୍ଛ ବାଟ ଦେଇ ଅଣାଯାଉଥିଲା । ଏହା ଉତ୍ତର-ପଶ୍ଚିମ ଭାରତର ସଂବୃଦ୍ଧିରେ ସାହାଯ୍ୟ କଲା । ଯବନ ଏବଂ ମଧ୍ୟ-ଏସିଆ ସହିତ ସ୍ଥଳମାର୍ଗର ବାଣିଜ୍ୟ ଉତ୍ତରର ଗିରିପଥଗୁଡ଼ିକ ମଧ୍ୟଦେଇ ସଞ୍ଚାଳିତ ହେଉଥିଲା । ମାର୍ଗ ମଝିରେ ଥିବା ତକ୍ଷଶିଳା ଓ ଐ ଖାନୁମ ଭଳି ସହର ଏଥିରୁ ଖୁବ୍ ଲାଭାନ୍ୱିତ ହେଲେ, ଯାହା ସେମାନଙ୍କ ବିଳାସପୂର୍ଣ୍ଣ ଜୀବନଶୈଳୀରୁ ଅନୁମାନ କରିହୁଏ । ପ୍ରତ୍ନତାତ୍ତ୍ୱିକ ଖନନରୁ ସେମାନଙ୍କ ସଂବୃଦ୍ଧି କଥା ସୁସ୍ପଷ୍ଟ ହୁଏ ।

ଏକ ଦକ୍ଷିଣ ମାର୍ଗ ପାରସ୍ୟ ଉପସାଗର ଓ ସିଲ୍ୟୁସିଆ ମଧ୍ୟଦେଇ ପଶ୍ଚିମ-ଏସିଆକୁ ଯାଇଥିଲା । ତହିଁରେ ଜାହାଜମାନ ବେବିଲୋନ ଏବଂ ଟାଇଗ୍ରୀସ-ଇଉଫ୍ରେଟିସ ଅବବାହିକା ପର୍ଯ୍ୟନ୍ତ ଯାତ୍ରା କରୁଥିଲେ । ସିରିଆର ପାଲମିରା ଓ ଜୋର୍ଡ଼ାନର ପେଟ୍ରା ସହର ପଶ୍ଚିମ-ଏସିଆର ମାର୍ଗକୁ ପୂର୍ବ ଭୂମଧ୍ୟସାଗରର ବନ୍ଦରଗୁଡ଼ିକ ସହିତ ସଂଯୋଜିତ କରୁଥିଲା । ଜାହାଜ ଆରବ ସାଗରକୁ ଅତିକ୍ରମ କରି ଅଦନ ଅଥବା ଡିଓସ୍କୁରାଇଡିସ (ସକୋତ୍ରାର

ଦ୍ୱୀପ ) ଯାଉଥିଲା ଏବଂ ସେଠାରୁ ଲୋହିତ ସାଗରରେ ପହଞ୍ଚୁଥିଲା । ଭାରତୀୟ ନୌତରିରେ ଚାଉଳ, ଗହମ ଏବଂ ବସ୍ତ୍ର ସକୋତ୍ରାକୁ ରପ୍ତାନି ହେଉଥିଲା । ମନେହୁଏ, ସେଠାରୁ ଅନ୍ୟାନ୍ୟ ସାମଗ୍ରୀ ମଧ୍ୟରେ କଇଁଛ ଶାମୁକା ନେଇ ଜାହାଜଗୁଡ଼ିକ ଲୋହିତ ସାଗରକୁ ଯିବାରେ କିଛି ପ୍ରତିବନ୍ଧକ ରହିଥିଲା । ଆଲେକ୍‌ଜାଣ୍ଡ୍ରିଆର ଜାହାଜ କେପଟେନ୍‌ମାନେ ଭାରତରୁ ସଂଗ୍ରହ କରିଥିବା ମାଲକୁ ଇଜିପ୍ଟ ପଟକୁ ଥିବା ଲୋହିତ ସାଗରର ବନ୍ଦରରେ ଉତୁରା ଯାଉଥିଲା । ଏହି ବନ୍ଦରଗୁଡ଼ିକ ମଧ୍ୟରେ ପ୍ରମୁଖ ଥିଲେ ବେରିନିସ ଓ ମାୟୋସ ହୋରମସ । ସେଠାରୁ ସ୍ଥଳପଥରେ ମାଲକୁ ନାଇଲ ନଦୀ ପର୍ଯ୍ୟନ୍ତ ନିଆଯାଉଥିଲା । ନାଇଲରୁ ପୁଣି ସ୍ରୋତର ଅନୁକୂଳରେ ଆଲେକ୍‌ଜାଣ୍ଡ୍ରିଆକୁ ମାଲ ଯାଉଥିଲା । ଆଲେକ୍‌ଜାଣ୍ଡ୍ରିଆ ଥିଲା ଭୂମଧ୍ୟସାଗରୀୟ ଜଗତର ଏକ ପ୍ରଧାନ ବିପଣି କେନ୍ଦ୍ର ।

ଆରବିଆର ଦକ୍ଷିଣ କ୍ଷେତ୍ରରେ ଉତ୍ତମ ଜଳସେଚନ ବ୍ୟବସ୍ଥା ଯୋଗୁଁ କୃଷିରେ ସଂବୃଦ୍ଧି ମିଳିଥିଲା । ପୁଣି ବ୍ୟବସାୟରୁ ଉପାର୍ଜନ ବୃଦ୍ଧି ପାଇଥିଲା । ଭାରତରୁ ଆମଦାନି ହେଉଥିବା ବାଣିଜ୍ୟ ସାମଗ୍ରୀ ମଧ୍ୟରେ ଥିଲା ତମ୍ବା, ଚନ୍ଦନକାଠ, ସାଗୁଆନ ଓ ଏବୋନି କାଠ । ଭାରତକୁ ରପ୍ତାନି ହେଉଥିବା ସାମଗ୍ରୀ ମଧ୍ୟରେ ରତ୍ନମଣି, ରଙ୍ଗ, ମଦିରା, ଖଜୁରି, ସୁନା ଏବଂ ସ୍ୱତନ୍ତ୍ର ଭାବେ ପ୍ରଶିକ୍ଷିତ ଦାସ । କେତେକ ବନ୍ଦର ପୂର୍ବରୁ ବ୍ୟବହାରରେ ରହିଥିଲା । ବାରବାରିକମରେ ଜାହାଜ ଏବଂ ବ୍ୟବସାୟୀମାନଙ୍କର ରୀତିମତ ଯାତାୟାତ ରହିଥିଲା । ସେଠାକୁ ଆମଦାନି ହେଉଥିବା ସାମଗ୍ରୀ ମଧ୍ୟରେ ଲାଇନେନ (linen), ଟୋପାଜ (topaz), କୋରାଲ (coral), ଷ୍ଟୋରେକ୍ସ (storax, ଯାହା ସୁଗନ୍ଧି ତିଆରି ପାଇଁ ବ୍ୟବହୃତ ହୋଇଥାଏ), ଫ୍ରାଙ୍କିନ୍‌ସେନ୍ସ (frankincense), କାଚ, ରୁପା, ସୁନା-ପଟି ଓ ମଦିରା ଅନ୍ତର୍ଭୁକ୍ତ ଥିଲା । ରପ୍ତାନି ସାମଗ୍ରୀ ମଧ୍ୟରେ ଥିଲା ନାନା କିସମର ମସଲା, କଇଁଛ, ଲାପିଜ-ଲାଜୁଲି, ମଖମଲ, ରେଶମସୂତା ଏବଂ ନୀଳ । ଗ୍ରୀକ୍ ସାହିତ୍ୟରେ ବେରିଗାଜା ନାମରେ ପରିଚିତ ଭୃଗୁକଚ୍ଛ ଥିଲା ପଶ୍ଚିମ ତଟର ଏକ ଅନ୍ୟତମ ବୃହତ୍ ଗୋଦାମ । ପଶ୍ଚିମ-ଏସିଆ ସହିତ ଚାଲିଥିବା ବିଶାଳ ନୌବାଣିଜ୍ୟର ଅଧିକାଂଶ ଭାଗ ଏହି ବନ୍ଦର ମଧ୍ୟଦେଇ ସଞ୍ଚାଳିତ ହେଉଥିଲା । ଭୃଗୁକଚ୍ଛକୁ ବିଭିନ୍ନ କିସମର ପଣ୍ୟଦ୍ରବ୍ୟ ଆମଦାନି ହୋଇ ଆସୁଥିଲା । ଉକ୍ତ ପଣ୍ୟଦ୍ରବ୍ୟ ମଧ୍ୟରେ ଅନ୍ୟତମ ଥିଲା : ମଦିରା, ଟିଣ, କୋରାଲ, ଟୋପାଜ, ଗଜ (gauze), ଷ୍ଟୋରେକ୍ସ, ବନମେଥି (sweet clover), କାଚ ରିଲଗର (realgar), ଅଞ୍ଜନ, ଔଷଧୀୟ ଦ୍ରବ୍ୟ ଏବଂ ସୁନା ଓ ରୁପାର ମୋହର । ସ୍ଥାନୀୟ ଶାସକମାନଙ୍କୁ ଉପହାର ରୂପରେ ମିଳୁଥିବା ସାମଗ୍ରୀ ମଧ୍ୟରେ ଥିଲା : ସୁନା ଓ ରୁପାର ଗହଣା, ଗାୟକ, ଯୁବକ, ଗୃହଦାସୀ, ମଦିରା ଏବଂ ଉଚ୍ଚକୋଟୀର ବସ୍ତ୍ର । ଭୃଗୁକଚ୍ଛରୁ ରପ୍ତାନି ହେଉଥିବା ସାମଗ୍ରୀ ମଧ୍ୟରେ ଅନ୍ୟତମ ଥିଲା : ସାଧାରଣ କିସମର ମସଲା, ସ୍ପାଇକେନାର୍ଡ଼ (spikenard), ମାଲାବାଥରମ (ଔଷଧ

ତିଆରିରେ ବ୍ୟବହୃତ ଏକ ସାମଗ୍ରୀ), ହୀରା, ନୀଳା ଏବଂ ମୂଲ୍ୟବାନ ପଥର । ଏଥିରୁ ଅନୁମିତ ହୁଏ ଯେ ନିୟମିତ ଢଙ୍ଗରେ ଔଷଧ ସମ୍ବନ୍ଧୀୟ ସୂଚନାର ମଧ୍ୟ ବିନିମୟ ହେଉଥିଲା ।

ଭାରତରୁ ପଶ୍ଚିମ ଏସିଆକୁ ଯାଉଥିବା ତଟୀୟ ମାର୍ଗ ଆଦୌ ସୁଗମ ନ ଥିଲା । କେବଳ ନିହାତି ଆବଶ୍ୟକ ପଦାର୍ଥର ବ୍ୟାପାର ପାଇଁ ତାକୁ ଚାଲୁ ରଖାଯାଇଥିଲା । ଆରବ ସାଗରକୁ ଅତିକ୍ରମ କରିବା ଲାଗି ସମୁଦ୍ର ମଧ୍ୟଦେଇ ଥିବା ମାର୍ଗକୁ ବ୍ୟବହାର କରାଯାଉଥିଲା । ଗ୍ରୀଷ୍ମଋତୁରେ ଦକ୍ଷିଣ-ପଶ୍ଚିମ ପଟରୁ ପ୍ରବାହିତ ହେଉଥିବା ମୌସୁମୀ ବାୟୁ ଏହି ଯାତ୍ରାକୁ ତଟୀୟ ଯାତ୍ରା ତୁଳନାରେ ସୁଗମ କରୁଥିଲା । ବୋଧହୁଏ, ସର୍ବପ୍ରଥମେ ଆରବମାନେ ନୌଯାତ୍ରା ପାଇଁ ଏହି ବାୟୁର ଉପଯୋଗ କରିଥିଲେ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ମଧ୍ୟକାଳରେ ଭୂମଧ୍ୟସାଗରୀୟ ଜଗତର ଅନ୍ୟାନ୍ୟ ନୌବଣିକମାନେ ଏହାର ଉପଯୋଗିତାକୁ ଅନୁଭବ କରିପାରିଲେ । ଗ୍ରୀକ୍ ସ୍ରୋତସାମଗ୍ରୀରେ ଉଲ୍ଲେଖ ରହିଛି ଯେ, 'ହିପାଲସ' (Hippalus)ର ଆବିଷ୍କାର ଯୋଗୁଁ ନୌଯାତ୍ରାରେ ଏକ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ସମ୍ଭବ ହେଲା । ଏଣିକି ସମୁଦ୍ର ମଝିରେ ପାରିହେବା ପାଇଁ ଜାହାଜମାନେ ମୌସୁମୀ ବାୟୁର ବ୍ୟବହାର କଲେ । ଏକଦା 'ହିପାଲସ'କୁ ଜଣେ ବ୍ୟକ୍ତି ମନେକରାଯାଉଥିଲା, ଯିଏ ମୌସୁମୀକୁ ଆବିଷ୍କାର କରିଥିଲା । ଏବେ କୁହାଯାଉଛି ଯେ, ମୌସୁମୀ ବାୟୁକୁ 'ହିପାଲସ' ମନେକରାଯାଉଥିଲା । ଲୋହିତ ସାଗରର ଦକ୍ଷିଣ ସୀମାନ୍ତରୁ ଆସୁଥିବା ଜାହାଜଗୁଡ଼ିକ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁର ପ୍ରବାହିତ ହେବାଯାକେ ଅପେକ୍ଷା କରୁଥିଲେ । ଭାରତପଟୁ ପ୍ରବାହିତ ଉତ୍ତର-ପୂର୍ବ ପ୍ରତ୍ୟାବର୍ତ୍ତନଶୀଳ ମୌସୁମୀ ପୁଣି ଜାହାଜଗୁଡ଼ିକୁ ଫେରିବାରେ ସାହାଯ୍ୟ କରୁଥିଲା । ନୌଚାଳନ ପାଇଁ ବାୟୁର ବ୍ୟବହାର ଯୋଗୁଁ ଇଜିପ୍ଟରୁ ଆସିଥିବା ନାବିକ ତଥା ବ୍ୟାପାରୀ ଭାରତ ଉପକୂଳରେ କିଛି ସମୟ ରହିଯାଉଥିଲେ । ସ୍ୱଳ୍ପପ୍ରବାସ ପରେ ସେମାନେ ଲୋହିତ ସାଗର ସ୍ଥିତ ବନ୍ଦରକୁ ଫେରୁଥିଲେ । ଏହି ସ୍ୱଳ୍ପପ୍ରବାସ ସ୍ଥାନୀୟ ଭାରତୀୟ ଓ ଯବନମାନଙ୍କ ମଧ୍ୟରେ ଯୋଗସୂତ୍ର ବୃଦ୍ଧି କରିବାରେ ଖୁବ୍ ସହାୟକ ସିଦ୍ଧ ହେଉଥିଲା ।

ଏକଦା ଯୁକ୍ତି ଦର୍ଶାଯାଉଥିଲା ଯେ, ଭାରତ ସହିତ ରୋମ୍‌ର ବ୍ୟାପାର ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା ପଶ୍ଚିମରେ । ଏହା ପରବର୍ତ୍ତୀ ସମୟରେ ମଧ୍ୟ ଅବ୍ୟାହତ ରହିଲା । ଯେଉଁ ସମୟରେ ଏହି ବ୍ୟାପାର କଥା ଜଣାପଡ଼ିଲା, ସେତେବେଳେ ଏହାର ଉଲ୍ଲେଖ ଥିବା ସ୍ରୋତସାମଗ୍ରୀ ଥିଲା ଗ୍ରୀକ୍ ଓ ଲାଟିନ୍‌ରେ । ତହିଁରେ ରୋମ୍ ସାମ୍ରାଜ୍ୟର ବାଣିଜ୍ୟରେ ଅଂଶଗ୍ରହଣକୁ ପ୍ରମୁଖତା ଦିଆଯାଇଥିଲା । ଏହା ପରେ ଉପଦ୍ୱୀପୀୟ ଭାରତର ଆର୍ଥିକ ମାନଚିତ୍ର, ବିଶେଷକରି ବାଣିଜ୍ୟକୁ ନେଇ ତଥ୍ୟ ପ୍ରମାଣ ବଦଳି ଯାଇଛି । ଏବର ତଥ୍ୟ ପ୍ରମାଣରୁ ସୁସ୍ପଷ୍ଟ ହୋଇଛି ଯେ ଉକ୍ତ ବାଣିଜ୍ୟ କାରବାରରେ ପ୍ରଭୂତ ମାତ୍ରାରେ ଭାରତର

ଯୋଗଦାନ ରହିଥିଲା । ଉପଦ୍ୱୀପରେ ଆଗରୁ ପ୍ରଚଳିତ ଥିବା ବିନିମୟ ତନ୍ତ୍ରକୁ ଲକ୍ଷ୍ୟକଲେ କହିହେବ ଯେ ପଶ୍ଚିମ-ଏସିଆ ଏବଂ ଇଜିପ୍ଟ ସହିତ ବାଣିଜ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆସି ନ ଥିବ । ଲୋହିତ ସାଗରର ବନ୍ଦର ସ୍ଥଳୀରେ ନିକଟରେ ହୋଇଥିବା ଖନନରୁ ତାମିଲ ବ୍ରାହ୍ମୀ ଏବଂ କେତେକ ପ୍ରାକୃତରେ ଲିଖିତ ଭାରତୀୟ ନାମର ଚିହ୍ନ ପ୍ରାପ୍ତ ହୋଇଛି । ଏଥିରୁ ପ୍ରମାଣ ମିଳେ ଯେ ଭାରତୀୟମାନଙ୍କର ସେଠାରେ ବାଣିଜ୍ୟିକ ଉପସ୍ଥିତି ରହିଥିଲା । ପୁଣି ଅନେକ ରୋମ୍ ସାମ୍ରାଜ୍ୟର ମୋହର ଆବିଷ୍କୃତ ହୋଇଛି; ଭାରତୀୟ ଉତ୍ପାଦନ ଓ ତା'ର ବିନିମୟର ପ୍ରମାଣ ରହିଛି; ଦାକ୍ଷିଣାତ୍ୟ ସ୍ଥିତ କେତେକ ବୌଦ୍ଧସ୍ଥଳୀରେ ଯବନମାନଙ୍କର ଅନୁଦାନର ପ୍ରମାଣ ମିଳିଛି । ଏଥିରୁ ସୁସ୍ପଷ୍ଟ ଯେ ଭାରତ ଓ ରୋମ୍ ମଧ୍ୟରେ ଚାଲିଥିବା ବାଣିଜ୍ୟରେ ଭାରତୀୟମାନଙ୍କର ଯଥେଷ୍ଟ ଉପସ୍ଥିତି ରହିଛି । ବାଣିଜ୍ୟରେ କେନ୍ଦ୍ର ଓ ଉପାନ୍ତର ଅବଧାରଣା ସ୍ଥାୟୀ ହୋଇ ନ ଥାଏ । ଆଜି ଯିଏ ବାଣିଜ୍ୟର କେନ୍ଦ୍ରରେ, କାଲି ସେ ଉପାନ୍ତରେ ରହିପାରନ୍ତି । ଯଦି ଆରମ୍ଭରେ ପୂର୍ବାଭିମୁଖୀ ବାଣିଜ୍ୟକୁ ଆଲେକ୍‌ଜାଣ୍ଡ୍ରିଆରୁ ପ୍ରୋତ୍ସାହନ ମିଳିଥିଲା, ତେବେ ଭାରତୀୟ ବାଣିଜ୍ୟ ତନ୍ତ୍ର ଏହି ସୁଯୋଗରୁ ଲାଭ ନେବାରେ ଆଦୌ ଅବହେଳା କରି ନ ଥିଲା ଏବଂ ଅଚିରେ ବାଣିଜ୍ୟର ଭାରତୀୟ ଅଂଶକୁ ନିଜ ଦଖଲକୁ ଆଣିଥିଲା ।

ପ୍ରଥମ ଶତାବ୍ଦୀର ମଧ୍ୟକାଳରେ ଗ୍ରୀକ୍ ଭାଷାରେ ଲିଖିତ 'ପେରିପ୍ଲସ' ହେଲା ଏକ ସମୁଦ୍ର-ଭୂଗୋଳ ଗ୍ରନ୍ଥ । ଏଥିରେ ଲୋହିତ ସାଗର ଏବଂ ଭାରତୀୟ ଉପକୂଳ ମଧ୍ୟରେ ରହିଥିବା ବନ୍ଦର ଓ ଜଳମାର୍ଗ, ବନ୍ଦରଗୁଡ଼ିକର ପୃଷ୍ଠପ୍ରଦେଶ ଏବଂ ବିନିମୟ ହେଉଥିବା ପଣ୍ୟସାମଗ୍ରୀର ଏକ ସାର-ସଂଗ୍ରହ ରହିଛି । ଗ୍ରନ୍ଥରେ ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ କିଛି ପରୋକ୍ଷ ଉଲ୍ଲେଖ ମଧ୍ୟ ରହିଛି । ପଣ୍ୟଦ୍ରବ୍ୟଗୁଡ଼ିକ ମଧ୍ୟରେ ଥିଲା : ବସ୍ତ୍ର, ଗୋଲମରିଚ, ମୂଲ୍ୟବାନ ପଥର ଏବଂ ହାତୀଦାନ୍ତର ଉପକରଣ । ଉପଦ୍ୱୀପରେ ଏହି ଦ୍ରବ୍ୟଗୁଡ଼ିକ ବଦଳରେ ବଣିକମାନେ ମୂଲ୍ୟବାନ ରୋମ୍‌ର ମୋହର, କୋରାଲ ଏବଂ ମଦିରା ଦେଉଥିଲେ । ଅବଶ୍ୟ ରୋମ୍‌ର ମୋହର ଥିଲା ମୁଖ୍ୟ ଆକର୍ଷଣ । ଖନନରୁ ମଦିରା ପାତ୍ରର ତଳ ଅଂଶରେ ବସିଯାଇଥିବା ମଦିରା ଚିହ୍ନ ମିଳିଛି । ମଦିରା ତିଆରି କରାଯାଉଥିବା ଉପକରଣର ଆବିଷ୍କାରରୁ ଜଣାପଡ଼େ ଯେ ଉଭୟ ସ୍ଥାନୀୟ ଲୋକ ଓ ଆଗନ୍ତୁକମାନେ ମଦିରା ଓ ମଦ (wine ଓ alcohol) ପାନ କରୁଥିଲେ । ଆଦ୍ୟକାଳୀନ ତାମିଲ ସାହିତ୍ୟରେ ଯବନ ମାଲବାହୀ ଜାହାଜଗୁଡ଼ିକ ମୁଜିରିସ ଆଦି ବନ୍ଦରରେ ପହଞ୍ଚିବାର ବର୍ଣ୍ଣନା ରହିଛି । ଜାହାଜରେ ଆସିଥିବା ମଦିରା କେଉଁ ମାନର ତାହା ଜାଣିବାକୁ ବିଶେଷ ଆଗ୍ରହ ରହୁଥିଲା । ରୋମ୍‌ର ସୁନାମୋହର ବଦଳରେ ସ୍ଥାନୀୟ ଗୋଲମରିଚ ବିନିମୟ କରିବାକୁ ଖୁବ୍ ଆଗ୍ରହ ପ୍ରକାଶ ପାଉଥିଲା, କାରଣ ଏହା ବିଶେଷ ଲାଭଜନକ ଥିଲା ।

ଏହି କାରଣରୁ ଦକ୍ଷିଣାତ୍ୟର ଆଭ୍ୟନ୍ତରୀଣ ପ୍ରଦେଶଗୁଡ଼ିକ ରାଜତନ୍ତ୍ରର କେନ୍ଦ୍ର ହେବା ସହିତ ବାଣିଜ୍ୟ ଉତ୍ପାଦନ କେନ୍ଦ୍ର ରୂପେ ମଧ୍ୟ ଖ୍ୟାତି ପାଇଥିଲେ । ପ୍ରମୁଖ ରାଜନୀତିକ ଏବଂ ବାଣିଜ୍ୟ ଉତ୍ପାଦନ କେନ୍ଦ୍ର ମଧ୍ୟରେ ଅନ୍ୟତମ ଥିଲା : ତେର, ନେଭାସା, ଭୋକାର୍ଦନ, କୋଣ୍ଡାପୁର, ସତ୍ତନିକୋଟ ଏବଂ ସନ୍ନତି । ପୌନି, ପୌନାର ଏବଂ ସନ୍ନତିରେ ବୌଦ୍ଧବିହାରମାନ ରହିଥିଲା । ପୂର୍ବ ଦାକ୍ଷିଣାତ୍ୟରେ ବାଣିଜ୍ୟର ବିକାଶ ହେଲା । ତା' ସହିତ ଥୋଟଲାକୋଣ୍ଡା, ଭଟ୍ଟିପ୍ରୋଲୁ, ଧରନିକୋଟା, ଅମରାବତୀ ଏବଂ ନାଗାର୍ଜୁନକୋଣ୍ଡା ଆଦି ସ୍ଥାନରେ ବୌଦ୍ଧଧର୍ମସ୍ଥଳୀମାନ ପ୍ରତିଷ୍ଠା ହେଲା । ପୂର୍ବ ତଟରେ ଥିବା ସହରମାନ ଅଭ୍ୟନ୍ତରର ସ୍ଥାନଗୁଡ଼ିକ ସହ ସ୍ଥଳ ମାର୍ଗରେ ସଂଯୋଜିତ ହୋଇଥିଲା । କୋଣ୍ଡାପୁର ଏବଂ ପେଦ୍ଦବଙ୍କୁର ଥିଲା ଏହିଭଳି ଦୁଇଟି ସହର, ଯାହା ପୁଣି ଉତ୍ତର ଓ ପଶ୍ଚିମ ଭାରତର ମାର୍ଗ ସହ ସଂଯୋଜିତ ହୋଇଥିଲା । କେତେକ ବାଣିଜ୍ୟ କେନ୍ଦ୍ର କୃଷ୍ଣା ନଦୀ ଉପତ୍ୟକାରେ ସୁନାଖଣି ନିକଟରେ ପ୍ରତିଷ୍ଠିତ ହୋଇଥିଲା । ଗାଙ୍ଗେୟ ସମତଳ ଏବଂ ମଧ୍ୟଭାରତର ନଗରୀଗୁଡ଼ିକରୁ ଦେଶାନ୍ତରଣ କରି ଦକ୍ଷିଣକୁ ଆସୁଥିବା ବୌଦ୍ଧ ଓ ଜୈନ ସନ୍ୟାସୀମାନଙ୍କ ପାଇଁ ଏଗୁଡ଼ିକ ଥିଲା ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ।

ମୁଚିରି ବା ମୁଜିରିସ ବୋଧହୁଏ କୋଡ଼ାଙ୍ଗଲୁର ବା କ୍ରେଙ୍ଗାନୋର (କୋଚି ନିକଟବର୍ତ୍ତୀ) ପାଖରେ ଅବସ୍ଥିତ ଥିଲା; ଗୋଲମରିଚ, ମସଲା ଏବଂ ବୈଦୁର୍ଯ୍ୟର ବ୍ୟାପାର ପାଇଁ ଏହା ପରିଚିତ ଥିଲା । ଏହି ନିକଟରେ ଆବିଷ୍କୃତ ହୋଇଥିବା ଦ୍ୱିତୀୟ ଶତାବ୍ଦୀର ଗ୍ରୀକ୍ ପେପିରସରେ ଆଲେକ୍‌ଜାଣ୍ଡ୍ରିଆର ଜଣେ ଆମଦାନି କରୁଥିବା ବଣିକ ଏବଂ ଜଣେ ମହାଜନ ମଧ୍ୟରେ ସ୍ୱାକ୍ଷରିତ ହୋଇଥିବା ଅନୁବନ୍ଧର ଉଲ୍ଲେଖ ରହିଛି । ଅନୁବନ୍ଧରେ ମୁଜିରିସରୁ ଆମଦାନି ହେଉଥିବା ଗୋଲମରିଚ ଏବଂ ମସଲା କଥା ରହିଛି । ଏଥିରୁ ଜଣାଯାଏ ଯେ ସେତେବେଳେ ପ୍ରଭୂତ ମାତ୍ରାରେ ପଣ୍ୟଦ୍ରବ୍ୟର ବାଣିଜ୍ୟ କାରବାର ହେଉଥିଲା । ମାଲବାର ସହିତ ଗୋଲମରିଚର କାରବାର କଥା ବହୁ ଶତାବ୍ଦୀ ଧରି ଉଲ୍ଲିଖିତ ହୋଇଛି । ପର୍ତ୍ତୁଗୀଜମାନଙ୍କ ସମୟ ଯାଏଁ ଗୋଲମରିଚର କାରବାର ଚାଲିଥିଲା । ମିଳିଥିବା ମୋହରରୁ ମଧ୍ୟ ପ୍ରମାଣ ମିଳେ ଯେ ମୁଜିରିସରୁ ପାଲଘାଟ ଗେପ ଓ କାବେରୀ ଉପତ୍ୟକା ମଧ୍ୟଦେଇ ପୂର୍ବତଟକୁ ଯୋଗାଯୋଗ ରହିଥିଲା । ମାର୍ଗ ମଧ୍ୟରେ ଥିବା ବୈଦୂର୍ଯ୍ୟ ଖଣି ମଧ୍ୟ ବ୍ୟବସାୟକୁ ଲାଭଜନକ କରୁଥିଲା ।

ପେରିପ୍ଲସରେ ବର୍ଣ୍ଣିତ ମାର୍ଗ ଉପଦ୍ୱୀପର ଦକ୍ଷିଣ ସୀମାନ୍ତରୁ ପୂର୍ବତଟ ପର୍ଯ୍ୟନ୍ତ ଯାଇଥିଲା । ସବୁ ବନ୍ଦର ମଧ୍ୟରୁ ଅଧିକ ବର୍ଣ୍ଣିତ ହୋଇଛି ଆରିକାମେଡୁ ସମ୍ପର୍କରେ । ପେରିପ୍ଲସରେ ଆରିକାମେଡୁକୁ ପେଡ଼ାଉକ କୁହାଯାଇଛି । ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାପଡ଼ିଛି

ଯେ ଏଠାରେ ଏକ ବଡ଼ ଜନବସତି ରହିଥିଲା, ଯାହାର ପୂର୍ବ ଭୂମଧ୍ୟ ସାଗରୀୟ କ୍ଷେତ୍ରରୁ ଆସୁଥିବା ବ୍ୟବସାୟୀମାନଙ୍କ ସହିତ ସମ୍ପର୍କ ଥିଲା । ଆରିକାମେଡୁ ଦକ୍ଷିଣ-ପୂର୍ବ ଭାରତର କେବଳ ଜାହାଜ ପୋତାଶ୍ରୟ ନ ଥିଲା । ସେଠାରୁ ସ୍ଥାନୀୟ ଭାବେ ଉପଲବ୍ଧ ପଣ୍ୟଦ୍ରବ୍ୟର ଭାରିମାତ୍ରାରେ ରପ୍ତାନି ହେଉଥିଲା । କେବଳ ସେତିକି ନୁହେଁ, ସ୍ୱତନ୍ତ୍ର ଭାବେ ରୋମ୍‌ର ଲୋକଙ୍କ ଅର୍ଡ଼ରରେ ବୁଣା ହୋଇଥିବା କପଡ଼ା ମଧ୍ୟ ଏଠାରୁ ଜାହାଜରେ ବୋଝେଇ ହୋଇ ରୋମ୍ ପଠାହେଉଥିଲା । ରୋମ୍‌ର ମାଟିପାତ୍ର, ଯେମିତି ଟେରା ସିଜିଲାଟା, ଅରେଟିନ ଭାଣ୍ଡ ଏବଂ କଳସକୁ ତଥା ବିଡ଼, କାଚ ଏବଂ ମୃଦଭାଣ୍ଡକୁ ଦେଖିଲେ ଅନୁମାନ କରିହୁଏ ଯେ ଅନ୍ତତଃ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରୁ ଏହି ବସତି ରହିଥିବ । ଆରମ୍ଭରେ ଏହା ସ୍ଥାନୀୟ ବଜାର ତନ୍ତ୍ର ସହିତ ଯୋଡ଼ି ହୋଇଥିଲା । ପରେ ଏହା ବ୍ୟାପକ ନୌବାଣିଜ୍ୟ ସହିତ ସଂଯୋଜିତ ହେଲା । ଡିଜାଇନ ହୋଇଥିବା ଏକ କୃଷ୍ଣ ମାଟିପାତ୍ର ସେତେବେଳେ ଖୁବ୍ ଲୋକପ୍ରିୟ ହୋଇଥିଲା ଏବଂ ତା'ର ନକଲ ଅନେକ ସ୍ଥାନରେ ଦେଖିବାକୁ ମିଳିଲା । ହେଣ୍ଡଲଯୁକ୍ତ ମାଟିପାତ୍ର (କପ୍ ସଦୃଶ)ରୁ ପ୍ରମାଣ ମିଳେ ଯେ କିଛି ମଦିରା ମଧ୍ୟ ଆମଦାନି ହେଉଥିଲା । ତା' ସହିତ ସ୍ୱତନ୍ତ୍ରଭାବେ ଯବନମାନେ ପାନ କରୁଥିବା ଓଲିଭ ତେଲ ଏବଂ ଗରୁମ (ମାଛ ସସ)ର କିଛି କିଛି ଆମଦାନି ରହିଥିଲା । ଏଭଳି ପାତ୍ରମାନ ଭୂମଧ୍ୟସାଗରୀୟ କ୍ଷେତ୍ରରେ ନିର୍ମିତ ବୋଲି ଚିହ୍ନ ରହିଛି । ମଦିରା ଦକ୍ଷିଣ ଇଟାଲୀ ଏବଂ ଗ୍ରୀକ୍ ଦ୍ୱୀପରୁ ଆମଦାନି ହେଉଥିଲା ବୋଲି ପ୍ରମାଣ ରହିଛି । କୋରକୈ ତଥା ଅଲଙ୍ଗକୁଲମ ଏବଂ କୋଡୁମନାଲର ଆଭ୍ୟନ୍ତରୀଣ ସ୍ଥଳୀର ମଧ୍ୟ ଏହି ଧରଣର ସମ୍ପର୍କ ରହିଥିଲା ।

ରୋମ୍‌ର ସାମଗ୍ରୀର କଂସା ଓ ମାଟିରେ ଅନୁକରଣ କରାଯାଉଥିଲା । ଉପଦ୍ୱୀପରେ ଖନନରୁ କଂସାରେ ତିଆରି ବରୁଣ ଏବଂ ପୋସଡ଼ସ ଆଦି ଦେବତାଙ୍କର ଲଘୁ ପ୍ରତିମା ମିଳିଛି । ଏଥିରୁ ସିଦ୍ଧ ହୁଏ ଯେ ଯବନମାନେ ଦକ୍ଷିଣ ଭାରତରେ ବସତି ସ୍ଥାପନ କରି ରହୁଥିଲେ । ଅବଶ୍ୟ ଭାରତୀୟ ବଣିକମାନେ ଏହିସବୁ ପ୍ରତିମାକୁ ସ୍ମୃତିଚିହ୍ନ ରୂପେ ରୋମ୍‌ରୁ ମଧ୍ୟ ଆଣିଥାଇ ପାରନ୍ତି । ରୋମ୍‌ର ମୋହରର ଛାପ ଥିବା 'ମାଟି ବୁଲେ' (clay bullae) ଅନେକ ସ୍ଥାନରେ ମିଳିଛି । ଏହି କିଛି ବର୍ଷ ତଳେ କେତେକ ମୋହର ମିଳିଛି । ତହିଁରେ ଆହତ ସିକା ମୋହରର ଅନୁକରଣ ଜଣାପଡୁଛି । ଏହିସବୁ ମୋହରରେ ସଙ୍ଗମ ପାଣ୍ଡ୍ୟ, ଚେର ଏବଂ ଚୋଳ ମୁଦ୍ରା ବୋଲି ଚିହ୍ନ ରହିଛି । ଅଧିକ ତାତ୍ପର୍ଯ୍ୟର କଥା ହେଲା ଯେ ରୋମ୍‌ର ମୁଦ୍ରାର ପ୍ରତିକୃତିକୁ ନକଲ କରି ସ୍ଥାନୀୟ ରାଜାମାନଙ୍କର ପ୍ରତିକୃତି ସମ୍ପନ୍ନ ମୁଦ୍ରା ପ୍ରଣୟନ କରାଯାଇଛି । ମୋହରର ମୁଦ୍ରଣରୁ ଲାଗେ ଯେ ବସ୍ତୁ-ବିନିମୟ ତୁଳନାରେ ଖୁବ୍ ପରିଷ୍କୃତ କିସମର ବିନିମୟ ବ୍ୟବସ୍ଥା ସେତେବେଳେ ପ୍ରଚଳିତ ଥିଲା ।

ରୋମ୍‌ର ବଜାରରେ ଯେଉଁ ଭାରତୀୟ ସାମଗ୍ରୀର ଚାହିଦା ଥିଲା, ତାକୁ ରୋମ୍‌ର ମୋହର ଦେଇ ବିନିମୟ କରାଯାଉଥିଲା । ଦାକ୍ଷିଣାତ୍ୟ ଏବଂ ଦକ୍ଷିଣ ଭାରତରେ ଯେଉଁ ମାତ୍ରାରେ ଏଭଳି ମୋହର ପ୍ରାପ୍ତ ହୋଇଛି, ତହିଁରୁ ଲାଗେ ଯେ ବାଣିଜ୍ୟର ପରିମାଣ କିଛି କମ୍ ହୋଇ ନ ଥିବ । ଅଧିକାଂଶ ମୋହର ହେଲା ପ୍ରାଚୀନ ରୋମ୍ ସମ୍ରାଟମାନଙ୍କର, ଯେମିତି ଅଗଷ୍ଟସ ଓ ଟିବେରିଅସଙ୍କର । ସମ୍ରାଟ ନିରୋଙ୍କର ଅବମୂଲ୍ୟିତ ମୋହରକୁ ଜମା ରଖିବା ପାଇଁ ପ୍ରୟାସ କରାଯାଇ ନ ଥିଲା । କେତେକ ମୋହରରେ ଗାର ଟଣାଯାଇଥିଲା ଅଥବା କଟାଦାଗ ଥିଲା । ଫଳରେ ସେଗୁଡ଼ିକର ବୋଧହୁଏ ପ୍ରଚଳନ ହୋଇପାରି ନ ଥିଲା । ରୋମ୍‌ର ଐତିହାସିକ ପ୍ଲିନୀ ଅଭିଯୋଗ କରିଥିଲେ ଯେ ପ୍ରାଚ୍ୟ ଜଗତ ସହିତ ବାଣିଜ୍ୟ ହେତୁ ରୋମ୍ ଉପାର୍ଜନ ବହୁମାତ୍ରାରେ ହ୍ରାସ ପାଉଥିଲା । ତାଙ୍କ ମତରେ ବର୍ଷକୁ 5,500 ଲକ୍ଷ ସେଷ୍ଟର ମୁଦ୍ରା ରୋମରୁ ଦୋହନ ହେଉଥିଲା, ତନ୍ମଧ୍ୟରୁ ଅନ୍ୟୂନ ଏକପଞ୍ଚମାଂଶ ଯାଉଥିଲା ଭାରତକୁ । ଭାରତରୁ ଆମଦାନି ବସ୍ତୁଗୁଡ଼ିକ ମଧ୍ୟରେ ମୁଖ୍ୟତଃ ବିଳାସ ସାମଗ୍ରୀ ରହିଥିଲା– ମସଲା, ରତ୍ନ, ବସ୍ତ୍ର, ହାତୀଦାନ୍ତର ଉପକରଣ ଏବଂ ଜନ୍ତୁ (ମାଙ୍କଡ଼, ଶୁଆ ଓ ମୟୂର) । ରୋମ୍‌ର ଅଭିଜାତ ବର୍ଗର ମନୋରଞ୍ଜନ ପାଇଁ ଜନ୍ତୁଗୁଡ଼ିକୁ ଭାରତରୁ ଆମଦାନି କରାଯାଉଥିଲା । ସେଥିପାଇଁ ବାଣିଜ୍ୟର ସନ୍ତୁଳନ ଭାରତ ପକ୍ଷରେ ରହିଥିଲା ବୋଲି କୁହାଯାଏ । ମାତ୍ର ଏବେ ତର୍କ ଦିଆଯାଉଛି ଯେ, ପ୍ଲିନୀଙ୍କ ହିସାବ ଯଦି ଠିକ୍, ପ୍ରାଚ୍ୟରୁ ଆମଦାନି ହେଉଥିବା ବସ୍ତୁଗୁଡ଼ିକ ଉପରେ ରୋମ୍ ଅଧିକୃତ ଇଜିପ୍ଟରେ ଉଚ୍ଚ ଦରରେ ବାଣିଜ୍ୟ ଶୁଳ୍କ ଏବଂ କର ଅସୁଲି ହେଉଥିବ । ଫଳରେ ଅର୍ଥର ଦୋହନକୁ ପରିପୂରଣ କରିବାରେ ଅସୁବିଧା ହେଉ ନ ଥିବ । ଆହୁରି ମଧ୍ୟ କୁହାଯାଉଛି ଯେ ଟିବେରିଅସ ଏବଂ ପରେ ପ୍ଲିନୀ ଭାରତକୁ ରୋମ୍‌ର ଆର୍ଥିକ ଦୋହନକୁ ନେଇ ଚିନ୍ତା ବ୍ୟକ୍ତ କରିଛନ୍ତି । ମାତ୍ର ଉଭୟଙ୍କର ଉଦ୍‌ବେଗ ଥିଲା ରୋମ୍‌ର ଅଭିଜାତ ବର୍ଗ ଦ୍ୱାରା କରାଯାଉଥିବା ଧନସମ୍ପତ୍ତିର ବିଜ୍ଞାପନକୁ ନେଇ । ସେହି ନୈତିକ ସଂକଟକୁ ପ୍ରକଟ କରିବାପାଇଁ ସେମାନେ ବାଣିଜ୍ୟକୁ ଉପଲକ୍ଷ୍ୟ କରିଥିଲେ । ସେ ଯାହାହେଉ, ଏହା ଅନସ୍ୱୀକାର୍ଯ୍ୟ ଯେ, ଭାରତ ଉପଦ୍ୱୀପର ସର୍ଦ୍ଦାର ଓ ବଣିକମାନଙ୍କ ପାଇଁ ଏହି ବାଣିଜ୍ୟ ଲାଭକାରୀ ସାବ୍ୟସ୍ତ ହୋଇଥିଲା । ଗୋଲମରିଚରୁ ମିଳୁଥିବା ଲାଭ ଅବାରିତ ଥିଲା । ଏପରିକି ପରବର୍ତ୍ତୀ ସମୟରେ ମଧ୍ୟ ଗୋଲମରିଚର ବାଣିଜ୍ୟ ଅବାଧ ଗତିରେ ଚାଲିଲା, କାରଣ ୟୁରୋପରେ ଗୋଲମରିଚ ଖାଦ୍ୟପଦାର୍ଥର ପରିରକ୍ଷକ (preservatives) ରୂପରେ ଏବଂ ଔଷଧରେ ବ୍ୟବହୃତ ହେଉଥିଲା । ଭାରତ-ରୋମ୍‌ର ବାଣିଜ୍ୟ ଯୋଗୁଁ ଭାରତୀୟ ଓ ଯବନ ବ୍ୟବସାୟୀଙ୍କ ମଧ୍ୟରେ କେଉଁପ୍ରକାର ସମ୍ପର୍କ ଗଢ଼ିଉଠିଥିଲା ଏବଂ ସେହି ସମ୍ପର୍କ କେଉଁଭଳି ଭାବେ ବ୍ୟାପକ ବାଣିଜ୍ୟର ଅଙ୍ଗ ହେଲା ତାକୁ ନେଇ ଆଧୁନିକ ସମୟରେ ଗବେଷକମାନେ ଅଧିକ ଆଗ୍ରହୀ ହେଉଛନ୍ତି ।

ବାଣିଜ୍ୟକୁ ନେଇ ରହିଥିବା ଜ୍ଞାନର ଅନ୍ୟ ଏକ ଉପାଦାନ ହେଲା ବ୍ୟବସାୟିକ ତନ୍ତ୍ରରେ କେନ୍ଦ୍ର ଓ ଉପାନ୍ତକୁ ନେଇ ଆଲୋଚନା ।

ପୂର୍ବ ଭୂମଧ୍ୟ କ୍ଷେତ୍ରର ଯବନ ବଣିକମାନେ ଉଭୟ ସାତବାହନ ରାଜ୍ୟରେ ଏବଂ ଅଧିକ ଦକ୍ଷିଣରେ ଯାଇ ବାଣିଜ୍ୟ କରୁଥିଲେ । ଦାକ୍ଷିଣାତ୍ୟର ବୌଦ୍ଧସ୍ଥଳୀମାନଙ୍କରେ ମିଳିଥିବା ପ୍ରଶସ୍ତିମୂଳକ ଅଭିଲେଖରୁ ସେମାନଙ୍କ ଉପସ୍ଥିତି ଜଣାପଡ଼େ । ପାଶ୍ଚାତ୍ୟର ବଣିକମାନେ ରୋମ୍‌ର ଲୋକ ନ ଥିଲେ । ସେମାନେ ଥିଲେ ଇଜିପ୍ଟର ଇହୁଦି ଏବଂ ଆଲେକ୍‌ଜାଣ୍ଡ୍ରିଆ ଓ ଭୂମଧ୍ୟ କ୍ଷେତ୍ରର ଗ୍ରୀକ୍‌ମାନେ । କେତେକ ଥିଲେ ଉତ୍ତର ଆଫ୍ରିକୀୟ । ଏ ସମସ୍ତ ଥିଲା ରୋମ୍ ସାମ୍ରାଜ୍ୟ ଅନ୍ତର୍ଗତ । ଏହିସବୁ ସମ୍ବନ୍ଧ ଯୋଗୁଁ ବୋଧହୁଏ ପରେ ଯୀଶୁଖ୍ରୀଷ୍ଟଙ୍କର ପରମଶିଷ୍ୟ ସେଣ୍ଟ ଥୋମାସ ଭାରତ ଆସିଥିଲେ ବୋଲି କିମ୍ବଦନ୍ତୀ ସୃଷ୍ଟି ହୋଇଥିଲା । ଅନ୍ୟ କେତେକ ଯବନ ଉତ୍ତର-ପଶ୍ଚିମର ଇଣ୍ଡୋ-ଗ୍ରୀକ୍ ଏବଂ ଶକମାନଙ୍କର ବଂଶଜ ହୋଇଥାଇ ପାରନ୍ତି ।

ଭାରତୀୟ ବ୍ୟବସାୟୀମାନେ ଦକ୍ଷିଣ-ପୂର୍ବ ଏସିଆକୁ ମଧ୍ୟ ବାଣିଜ୍ୟ ପାଇଁ ଚୟନ କରିଥିଲେ ଏବଂ ଏହା ପଛରେ ଆଂଶିକ ପ୍ରେରଣା ଥିଲା ରୋମ୍‌ର ବାଣିଜ୍ୟର । ଦକ୍ଷିଣ-ପୂର୍ବ ଏସିଆରୁ ଆସିଥିବା ସାମଗ୍ରୀ ମଧ୍ୟରେ ମୁଖ୍ୟତଃ ମସଲାର ଚାହିଦା ଥିଲା । ଖାସ୍‌କରି ମସଲା ଭାରତରେ ସହଜରେ ଉପଲବ୍ଧ ହେଉ ନ ଥିଲା । ଦକ୍ଷିଣ-ପୂର୍ବ ଏସିଆ ଏବଂ ଭାରତ ମଧ୍ୟରେ ସମୁଦ୍ରପଥ ହିଁ ସବୁଠାରୁ ସହଜ ମାର୍ଗ ଥିଲା । ମାତ୍ର ଏହା ଖୁବ୍ ବିପଦସଂକୁଳ ଥିଲା । ସୁବର୍ଣ୍ଣଦ୍ୱୀପର ବଣିକମାନଙ୍କ ଦୁଃସାହସିକ କାହାଣୀମାନ ଖୁବ୍ ପ୍ରଚଳିତ ଥିଲା, ଯାହା ବିପଦକୁ ଦର୍ଶାଏ । ସେତେବେଳେ ଜାଭା, ସୁମାତ୍ରା ଏବଂ ବାଲିକୁ ସୁବର୍ଣ୍ଣଦ୍ୱୀପ ବୋଲି କୁହାଯାଉଥିଲା । ଆଲେକ୍‌ଜାଣ୍ଡ୍ରିଆର ବଣିକମାନଙ୍କଠାରେ ମସଲାକୁ ବିକ୍ରି କଲାପରେ ଯେଉଁ ମାତ୍ରାରେ ଲାଭ ମିଳୁଥିଲା, ତାହା ବିପଦକୁ ନ ଡରି ଦକ୍ଷିଣ-ପୂର୍ବ ଏସିଆ ସହିତ ବାଣିଜ୍ୟ କରିବାକୁ ଭାରତୀୟମାନଙ୍କୁ ଉଦ୍‌ପ୍ରେରିତ କରୁଥିଲା । ଯେତେବେଳେ ରୋମ୍‌ର ବାଣିଜ୍ୟ ହ୍ରାସ ପାଇବାକୁ ବସିଲା, ଦକ୍ଷିଣ-ପୂର୍ବ ଏସିଆ ସହିତ ଭାରତର ବାଣିଜ୍ୟ ସଂପ୍ରସାରିତ ହେଲା ଏବଂ ପାଶ୍ଚାତ୍ୟ ବାଣିଜ୍ୟର ପଛୁଆଳ ହୋଇ ରହିଲା ନାହିଁ ।

ପ୍ରାରମ୍ଭିକ ଶତାବ୍ଦୀମାନଙ୍କରେ ଚୀନ୍ ଓ ଭାରତର ଦକ୍ଷିଣ-ପୂର୍ବ ଏସିଆ ସହିତ ସମ୍ବନ୍ଧ ସ୍ଥାପିତ ହୋଇଥିଲା । ସେତେବେଳେ ହାତୀଦାନ୍ତର ପାନିଆଁ, ମୁଦ୍ରିକାର ରତ୍ନମଣି ଏବଂ ବ୍ରାହ୍ମୀ ଲିପିରେ ଲିଖିତ ସିଲ୍‌ରୁ ଜଣାପଡ଼େ ଯେ ଭାରତୀୟ ବଣିକମାନେ ସେଠାରେ (ଦକ୍ଷିଣ-ପୂର୍ବ ଏସିଆରେ) ଥିଲେ । ଭାରତର ନିକଟବର୍ତ୍ତୀ କ୍ଷେତ୍ର, ଯେମିତି ମ୍ୟାନମାର ସ୍ଥିତ ପ୍ରୋମ ନିକଟରେ ଥିବା ଶ୍ରୀକ୍ଷେତ୍ର ଏବଂ ଏକ-ଏଯୋ ବନ୍ଦରରେ, ଭାରତୀୟମାନଙ୍କର

ଅଧିକ ଉପସ୍ଥିତି ଥିଲା । ଓକ ଏୟୋ ବନ୍ଦର ଶ୍ୟାମ ଉପସାଗର ନିକଟରେ ଚୀନ୍ ଓ ଭାରତ ମଧ୍ୟରେ ଅବସ୍ଥିତ ଥିଲା । ଦକ୍ଷିଣ-ପୂର୍ବ ଏସିଆରେ ନିକଟରେ କରାଯାଇଥିବା ପ୍ରତ୍ନତାତ୍ତ୍ୱିକ ଖନନରୁ ପୂର୍ବରୁ ମାର୍ଜିତ ସଂସ୍କୃତି ରହିଥିବାର ଏବଂ ଭାରତୀୟ ବଣିକମାନେ ଉକ୍ତ ସଂସ୍କୃତି ସହ ସମ୍ବନ୍ଧ ରଖିଥିବାର ଜଣାପଡ଼େ । ବେନ ଚିଆଙ୍ଗରେ ଧାନଚାଷ ହେଉଥିବାର ପ୍ରମାଣ ମିଳିଛି । କୃଷିରେ ମଇଁଷିର ଉପଯୋଗ ହେବାର ମଧ୍ୟ ପ୍ରମାଣ ରହିଛି । କେତେକ ସ୍ଥାନରେ ସମାଧିସ୍ଥଳ ମିଳିଛି । ତହିଁରେ ସମାଧି କଳସ ଏବଂ ଅନ୍ୟ କେତେକ ସ୍ଥାନରେ ମହାପାଷାଣ ଏବଂ କବରସ୍ଥଳୀ ଥିବାର ପ୍ରମାଣ ମିଳିଛି । ସୁସଜ୍ଜିତ କଂସା ଡ୍ରମ୍ ଏବଂ ଅନ୍ୟାନ୍ୟ କାଂସ୍ୟ ଶିଳ୍ପ ଅବଶେଷ ମିଳିଥିବା 'ଡଙ୍ଗ ସୋନ ସଂସ୍କୃତି' (Dong Son Culture)ରୁ ସେଠାରେ ମାର୍ଜିତ ତାମ୍ରପାଷାଣିକ ସମାଜର ଅବସ୍ଥିତି ଥିବା କଥା ଜଣାପଡ଼େ । ଗୋଟାଏ ବୃହତ୍ ଜନବସତିର ଉପକଣ୍ଠରେ ଅନେକଗୁଡ଼ିଏ ଜନବସତି ଥିବାର ଦେଖି ତର୍କ ଦିଆଯାଏ ଯେ ସେତେବେଳେ ସର୍ଦ୍ଦାରତନ୍ତ୍ର ରହିଥିଲା ଏବଂ ବସତିଗୁଡ଼ିକ ମଧ୍ୟରେ କିଛି ମାତ୍ରାରେ ବିକାକିଣା ଚାଲିଥିଲା । ଏଥିରୁ ଆଗନ୍ତୁକ ବ୍ୟବସାୟୀ ସହ ପ୍ରାରମ୍ଭିକ ବିନିମୟକୁ ପ୍ରୋତ୍ସାହନ ମିଳିଥିବ । ସମ୍ଭବତଃ, ଦକ୍ଷିଣ-ପୂର୍ବ ଏସିଆର ମୁଖ୍ୟ ଭୂମି ସହିତ ଅନ୍ତର୍ଦେଶୀୟ ବିନିମୟ ତନ୍ତ୍ରର ଲାଭ ହାସଲ କରାଯାଇଥିବ । ଏହି ଧାରାର ଦକ୍ଷିଣ ଭାରତ ସହିତ କିଛି କିଛି ସାମଞ୍ଜସ୍ୟ ରହିଛି । ବିନିମୟର କ୍ରମିକ ବିକାଶ ଯୋଗୁଁ ବ୍ୟବସାୟ ବୃଦ୍ଧି ପାଇଲା ଓ ପ୍ରାରମ୍ଭିକ କିସମର ସହରୀକରଣ ଆରମ୍ଭ ହେଲା ।

ଏହିସବୁ ସମ୍ବନ୍ଧରୁ ପ୍ରତୀୟମାନ ହେଉଥିବା ବୈଶିଷ୍ଟ୍ୟ ହେଲା ଯେ ସଂସ୍କୃତିର ନିର୍ମାଣରେ କେବଳ ଗୋଟାଏ ଧାରାର ଯୋଗଦାନ ନ ଥାଏ । ପ୍ରତ୍ୟେକ ଧାରା ଅନ୍ୟ ଧାରା ଉପରେ ଆଶ୍ରିତ ଏବଂ ଏହା ଦୂରଦୂରାନ୍ତରକୁ ସଂପ୍ରସାରିତ ହୋଇପାରେ । ପୁଣି ସଂସ୍କୃତିଗୁଡ଼ିକ ପରସ୍ପରଠାରୁ ସମ୍ପୂର୍ଣ୍ଣ ନିରୋଳାରେ ମଧ୍ୟ ରହନ୍ତି ନାହିଁ, କାରଣ ସେମାନଙ୍କର ଯାହା ସ୍ୱରୂପ, ତା' ପାଇଁ ପାରସ୍ପରିକ ସମ୍ବନ୍ଧ ଓ ସଂପୃକ୍ତି ରହିବା ଅତି ଆବଶ୍ୟକ ଅଟେ । ଏହି ସମସ୍ତ ଗତିବିଧିର ଫଳସ୍ୱରୂପ କ୍ଷେତ୍ରର ଅର୍ଥ ମଧ୍ୟ ବିସ୍ତୃତ ହୋଇଯାଏ । ଆମେ ଯେତେବେଳେ ଉତ୍ତର-ପଶ୍ଚିମ ଭାରତର କଥା କହୁ, ତେବେ ନିଶ୍ଚିତରୂପେ ଆଫଗାନିସ୍ତାନ ତଥା ମଧ୍ୟଏସିଆ ମଧ୍ୟ ତହିଁରେ ଅନ୍ତର୍ଭୁକ୍ତ ହୁଏ । ଉପଦ୍ୱୀପର ପଶ୍ଚିମ ଓ ପୂର୍ବ ତଟୀୟ କ୍ଷେତ୍ର ଭୂମଧ୍ୟସାଗରୀୟ କ୍ଷେତ୍ର ଓ ଦକ୍ଷିଣ-ପୂର୍ବ ଏସିଆ ସହିତ ସକ୍ରିୟରୂପେ ବାଣିଜ୍ୟ ଆରମ୍ଭ କରିଥିଲେ । ଏହି ଆଧାରରେ କହିହେବ ଯେ, ନିଜର ଭୌଗୋଳିକ ଅବସ୍ଥିତି ଏବଂ ଆର୍ଥିକ ଉଦ୍ୟମ ବଳରେ ପ୍ରଥମ ସହସ୍ରାବ୍ଦୀର ଆରମ୍ଭ କାଳରେ ଭାରତ ସକ୍ରିୟଭାବେ ବିଭିନ୍ନ ଗତିବିଧିରେ ଅଂଶଗ୍ରହଣ କରୁଥିଲା, ଯାହାକୁ ଆଜି ଆମେ ବିଶ୍ୱବାଣିଜ୍ୟ ରୂପେ ଅଭିହିତ କରିପାରିବା ।

# ୪

# ବଣିକ ସମୁଦାୟର ଉଦୟ

**ପ୍ରାୟ 200 ଖ୍ରୀ.ପୂ. – 300 ମସିହା**

## ବିନିମୟର ଅର୍ଥବ୍ୟବସ୍ଥା

ସଂଶିତ କାଳଖଣ୍ଡରେ ରାଜବଂଶଗୁଡ଼ିକ ଦୀର୍ଘସ୍ଥାୟୀ ନ ଥିଲେ । ତଥାପି ସେଗୁଡ଼ିକର ପରିବର୍ତ୍ତନର ଅନ୍ତଃମୂଳରେ ଯେଉଁ ଉପାଦାନଟି ସ୍ଥାୟୀ ଥିଲା, ତାହା ହେଲା ବାଣିଜ୍ୟ । ଶୁଙ୍ଗ, କଣ୍ୱ, ଇଣ୍ଡୋ-ଗ୍ରୀକ୍, ଶକ, କୁଶାଣ, ସାତବାହନ, ଇକ୍ଷ୍ୱାକୁ, ଚେର, ଚୋଳ ଏବଂ ପାଣ୍ଡ୍ୟମାନଙ୍କର ସମସ୍ତ ପ୍ରକାର ରାଜନୈତିକ ଗତି ଓ ଦୁର୍ଗତିର ପ୍ରକ୍ରିୟା ଚାଲିଥିବାବେଳେ ବ୍ୟବସାୟୀ ଓ କାରିଗରମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଉପସ୍ଥିତି ଦେଖିବାକୁ ମିଳିଥିଲା, ଯଦିଓ ତହିଁରେ ଆଞ୍ଚଳିକ ବିବିଧତା ରହିଥିଲା । ସେମାନଙ୍କ ମଧ୍ୟରେ ସମ୍ବନ୍ଧ ରାଜା, ସର୍ଦ୍ଦାର ଏବଂ ମଠ-ଆଶ୍ରମର ଉର୍ଦ୍ଧ୍ୱରେ ଗଢ଼ିଉଠୁଥିଲା । ସ୍ଥାନବିଶେଷରେ ରାଜା, ସର୍ଦ୍ଦାର ଆଦିଙ୍କର ଭୂମିକାରେ ମଧ୍ୟ ପାର୍ଥକ୍ୟ ଦେଖିବାକୁ ମିଳୁଥିଲା । ଏହି କାଳଖଣ୍ଡର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଉପାଦାନ ହେଲା ନଗରୀୟ ସଂସ୍କୃତିର ବର୍ଦ୍ଧିଷ୍ଣୁ କର୍ତ୍ତୃତ୍ୱ, ଯାହା ସହରର ଜୀବନ ସ୍ତରକୁ ଅଧିକ ସୁବିଧାଜନକ କଲା ।

ରାସ୍ତାଘାଟ ନିର୍ମାଣ କରି ତଥା ଅପେକ୍ଷାକୃତ ଅଭ୍ୟନ୍ତରର କ୍ଷେତ୍ରଗୁଡ଼ିକ ସହିତ ଯୋଗାଯୋଗ ସ୍ଥାପନ କରି ମୌର୍ଯ୍ୟ ପ୍ରଶାସନ ସାମ୍ରାଜ୍ୟର ଦ୍ୱାରକୁ ଉନ୍ମୁକ୍ତ କରିଦେଇଥିଲା । ପରବର୍ତ୍ତୀ କାଳରେ ଯେତେବେଳେ ଅଣ-ସ୍ଥାନୀୟ ଶାସକମାନେ ଉତ୍ତର-ପଶ୍ଚିମ ଭାରତକୁ ଅଧିକାରଭୁକ୍ତ କଲେ ଓ ଲୋକ ଦେଶାନ୍ତରଣ କଲେ, ତାହା ବ୍ୟବସାୟୀମାନଙ୍କ ପାଇଁ ଲାଭଜନକ ସିଦ୍ଧ ହେଲା, କାରଣ ସେମାନେ (ବ୍ୟବସାୟୀମାନେ) ନୂଆ ଜାଗାରେ ନିଜର କାୟା ବିସ୍ତାର କରିବାକୁ ଅବସର ପାଇଲେ । ପଶ୍ଚିମ-ଏସିଆ ଏବଂ ପୂର୍ବ-ଭୂମଧ୍ୟସାଗରୀୟ

କ୍ଷେତ୍ର ସହିତ ମୌର୍ଯ୍ୟ କାଳରେ ସମ୍ପର୍କ ସ୍ଥାପିତ ହୋଇଥିଲା । ଇଣ୍ଡୋ-ଗ୍ରୀକ୍ ରାଜାମାନେ ଉକ୍ତ ସମ୍ପର୍କକୁ ସୁଦୃଢ଼ କଲେ । ଶକ, ପହଲବ ଓ କୁଶାଣମାନେ ମଧ୍ୟ ଏସିଆକୁ ଭାରତୀୟ ବଣିକମାନଙ୍କ ପ୍ରଭାମଣ୍ଡଳ ଭିତରକୁ ଆଣିଲେ । ଏହା ଚୀନ୍ ସହିତ ବାଣିଜ୍ୟ କାରବାରକୁ ଅଭିବୃଦ୍ଧି କରାଇଲା । ମସଲା, କପଡ଼ା, ମୂଲ୍ୟବାନ ପଥର ଏବଂ ଅନ୍ୟ ବିଳାସପୂର୍ଣ୍ଣ ସାମଗ୍ରୀ ଯବନ ବ୍ୟବସାୟୀମାନଙ୍କୁ ପୂର୍ବ ଭୂମଧ୍ୟ କ୍ଷେତ୍ରରୁ ଦକ୍ଷିଣ ଓ ପଶ୍ଚିମ ଭାରତ ଆଡ଼କୁ ଆକୃଷ୍ଟ କଲା । ଏହା ଭାରତୀୟ ବ୍ୟବସାୟୀମାନଙ୍କୁ ଦକ୍ଷିଣ-ପୂର୍ବ ଏସିଆକୁ ଉଦ୍ୟମୀ ରୂପେ ଯାତ୍ରା କରିବାକୁ ଉତ୍ସାହିତ କଲା । ବଣିକ ସମୁଦାୟର ସଂବୃଦ୍ଧିର ମାତ୍ରା ଯେ ଖୁବ୍ ଅଧିକ ଥିଲା, ଏହାର ପ୍ରମାଣ ମିଳେ ମନ୍ଦିର ଆଦି ଧାର୍ମିକ ସଂସ୍ଥାକୁ ସେମାନେ ଦେଉଥିବା ଅନୁଦାନରୁ । ତତ୍କାଳୀନ ସାହିତ୍ୟରେ ମଧ୍ୟ ଧନୀ ବଣିକର ଅନେକ ବର୍ଣ୍ଣନା ରହିଛି । ଏହି କାରଣରୁ ବଣିକମାନେ ପୃଷ୍ଠପୋଷକତା ଦେଉଥିବା ଧର୍ମ, ବିଶେଷକରି ବୌଦ୍ଧଧର୍ମ ଓ ଜୈନଧର୍ମ ଉନ୍ନତିର ଚରମୋତ୍କର୍ଷରେ ପହଞ୍ଚିଥିଲା । ମାତ୍ର ଏହାର ଅର୍ଥ ନୁହେଁ ଯେ ଆର୍ଥିକ ଗତିବିଧି କେବଳ ବାଣିଜ୍ୟ ଯାଏଁ ସୀମିତ ଥିଲା ବା ଏହା ଯୋଗୁଁ କୃଷି ବ୍ୟାହତ ହେଲା । ବରଂ କୃଷି ରାଜସ୍ୱ ନିରନ୍ତର ବୃଦ୍ଧି ପାଉଥିଲା । କହିବାର ଅର୍ଥ ହେଲା ଯେ ଏହି କାଳାଂଶରେ (ଖ୍ରୀ.ପୂ. 200 – 300 ଖ୍ରୀଷ୍ଟାବ୍ଦ) ବାଣିଜ୍ୟ କାରବାର ନାଟକୀୟ ଭାବେ ବୃଦ୍ଧି ପାଇଲା ।

ଯେଉଁ ଅଞ୍ଚଳରେ କୃଷି କାର୍ଯ୍ୟ ଚାଲିଥିଲା, ସେଠାରେ ଜଙ୍ଗଲ ଜମି ଓ ଅନାବାଦୀ ଜମିକୁ ହଳ କରି କୃଷିଯୋଗ୍ୟ କରାଯାଉଥିଲା । ମନୁଙ୍କର 'ଧର୍ମଶାସ୍ତ୍ର' ଭଳି ରଚନା, ଯେଉଁଥିରେ କାଁଭାଁ କୃଷି ସମ୍ବନ୍ଧରେ ଉଲ୍ଲେଖ ରହିଛି, ତହିଁରେ ସ୍ପଷ୍ଟ ବର୍ଣ୍ଣନା ଅଛି ଯେ, ଯିଏ ପ୍ରଥମେ ହଳ କଲା, ଜମି ତା'ର । ଏହି ଉକ୍ତି ଜମିର ମାଲିକାନା ପ୍ରଶ୍ନ ସମ୍ବନ୍ଧରେ ଥିବା ପ୍ରତିଫଳନକୁ ଅଭିବ୍ୟକ୍ତ କରେ । ବ୍ୟକ୍ତିଗତ ମାଲିକାନା ଥିବା ଜମିର ମାତ୍ରା ବୃଦ୍ଧି ପାଇବାରୁ ଜମିର ମାଲିକାନା ପ୍ରଶ୍ନ ଅଧିକ ମହତ୍ତ୍ୱ ପାଇଲା । କୃଷିର କିସମ ଓ ଆବଶ୍ୟକତାକୁ ଦେଖି ଜମିର ଟେନ୍ୟୁର (tenure)ର ପ୍ରକାର ବୃଦ୍ଧି ପାଉଥିଲା । ସେଥିପାଇଁ ଟିକସର ବାରମ୍ବାର ଉଲ୍ଲେଖ ଦେଖିବାକୁ ମିଳେ । ବୌଦ୍ଧ ସଂଘକୁ ଅନୁଦାନ ଦିଆଯାଇଥିବା ଜମିର ଦାତା ରୂପରେ ଅଭିଲେଖଗୁଡ଼ିକରେ ବଡ଼ ବଡ଼ ଭୂସ୍ୱାମୀ ଗହପତିଙ୍କ ପ୍ରଶସ୍ତି ଦେଖିବାକୁ ମିଳେ । ସମ୍ଭବତଃ ଦାନର ଅର୍ଥ ଜମିର କାରବାର । ବୌଦ୍ଧବିହାର ଏବଂ ବ୍ରାହ୍ମଣମାନଙ୍କୁ ଜମି ଦାନ ଦିଆଯାଉଥିଲା, ଅବଶ୍ୟ କମ୍ ସ୍ତରରେ ଏହି ଅନୁଦାନ ଚାଲିଥିଲା । ମାତ୍ର ଭବିଷ୍ୟତରେ ଅନୁଦାନ ଯେ ବଡ଼ ସ୍ତରରେ ହେବ, ତା'ର ସଂକେତ ମିଳୁଥିଲା । 'ଅର୍ଥଶାସ୍ତ୍ର'ରେ ରାଜ୍ୟ କୃଷିର ପ୍ରବନ୍ଧନ କରେ ବୋଲି ଯେଉଁ ଉଲ୍ଲେଖ ରହିଥିଲା, ତା'ର ଆଉ ଏବର ସ୍ରୋତସାମଗ୍ରୀରେ ପ୍ରତିଫଳନ ଦେଖିବାକୁ ମିଳୁ ନ ଥିଲା । ଏଥିରୁ ଅନୁମାନ କରିହୁଏ ଯେ ଜମିର ବ୍ୟକ୍ତିଗତ ମାଲିକାନାରେ

ରହିବାର ପ୍ରବୃତ୍ତି ଉପରେ ଜୋର୍ ରହିଥିଲା । ପୁରାତତ୍ତ୍ୱରୁ ଯଦିଓ ବାଣିଜ୍ୟ ବିଷୟକ ବଳିଷ୍ଠ ତଥ୍ୟ ପ୍ରମାଣମାନ ମିଳୁଛି, କୃଷି ଥିଲା ଏହି ସମୟରେ ରାଜସ୍ୱର ଏକ ମହତ୍ତ୍ୱପୂର୍ଣ୍ଣ ସ୍ରୋତ ।

ଭୂରାଜସ୍ୱର ମହତ୍ତ୍ୱ କିଛି ପରିମାଣରେ ଜଳସେଚନ ପ୍ରଣାଳୀର ବିବିଧତା ଦ୍ୱାରା ନିର୍ଦ୍ଧାରିତ ହେଉଥିଲା । ପୂର୍ବରୁ ରହିଥିବା କେନାଲ ଏବଂ ବନ୍ଧମାନଙ୍କର ଅନୁରକ୍ଷଣ ଦାୟିତ୍ୱ ରହିଥିଲା ରାଜ୍ୟ ହାତରେ । ସୁଦର୍ଶନ ହ୍ରଦର ମରାମତି କରାଯାଇଥିଲା । କଳିଙ୍ଗରେ ନନ୍ଦରାଜାମାନେ କେନାଲ ନିର୍ମାଣ କରିଥିଲେ, ଯାହାକୁ ଏକ ଉଲ୍ଲେଖନୀୟ ପଦକ୍ଷେପ କୁହାଯିବ । କଥିତ ଅଛି ଯେ ଚୋଳ ରାଜା କରିକେଳ ଜଳସେଚନର ସୁବିଧା ପାଇଁ କାବେରୀ ନଦୀର ଧାରକୁ ଖୋଳି ଗଭୀର କରିଥିଲେ । ଆହ୍ଲାବାଦ ନିକଟସ୍ଥ ଶୃଙ୍ଗଭେରପୁରଠାରେ ଏକ ଦେଖିବାଭଳିଆ ଉଠାଜଳସେଚନ ପ୍ରଣାଳୀର ନମୁନା ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳିଛି । ଏହା ହୁଏତ ଜଳସେଚନ ପାଇଁ ବ୍ୟବହୃତ ହୋଇଥାଇ ନ ପାରେ । ମାତ୍ର ବିଭିନ୍ନ ଜଳସ୍ତରକୁ ଅନୁମାନ କରି ଜଳ ଉତ୍ତୋଳନ ପ୍ରଣାଳୀର ସୁବିଧା କରାଯାଇଥିଲା । ଏହା ଜଳସେଚନ ପ୍ରଣାଳୀକୁ ଆଧାରକରି ଅଥବା ଜଳସେଚନ ପ୍ରଣାଳୀର ପ୍ରଭାବରେ କରାଯାଇଥିଲା । ଜଳ ଉତ୍ତୋଳନର ଅନ୍ୟ ଏକ ପ୍ରଣାଳୀରେ କୂପ ଭିତରକୁ ଚକ ରଖି ପାଣି କଢ଼ାଯାଉଥିଲା । ଆରମ୍ଭରେ ଏହି ଜଳଯନ୍ତ୍ରରେ 'ଗିଅର୍'ର ବ୍ୟବହାର ନ ଥିଲା । 'ଜଳଯନ୍ତ୍ର'ର ନିର୍ମାଣରେ ନିଯୁକ୍ତ ପେଷାଦାର କାରିଗରମାନେ କ୍ଷୁଦ୍ର ଜଳସେଚନ ପ୍ରଣାଳୀର ବିକାଶ କରୁଥିଲେ । ତଥାପି ଅଧିକାଂଶ ଜଳସେଚନ ବ୍ୟବସ୍ଥା ହୁଏତ ଧନାଢ଼୍ୟ ଜମିମାଲିକମାନଙ୍କ ବ୍ୟକ୍ତିଗତ ନିୟନ୍ତ୍ରଣରେ ଥିଲା ଅଥବା ଗ୍ରାମର ମିଳିତ ସହଯୋଗରେ କାର୍ଯ୍ୟକାରୀ ହେଉଥିଲା । ଜଳାଶୟ, କୂପ ଏବଂ ବନ୍ଧର ଉଲ୍ଲେଖ ଦେଖିବାକୁ ମିଳେ । କୂଅ ଓ ଜଳାଶୟକୁ ବ୍ୟକ୍ତିଗତ ସ୍ତରରେ ଲୋକ ବୌଦ୍ଧବିହାରକୁ ଦାନ କରୁଥିବାର ମଧ୍ୟ ଉଲ୍ଲେଖ ରହିଛି ।

ଏଥିରୁ ଜଣାଯାଏ ଯେ ସମ୍ପଦ ଆକାରରେ ଜମି ବହୁପ୍ରକାରେ ବ୍ୟବହୃତ ହେଉଥିଲା । ଜମିକୁ ନୂଆ ପ୍ରକାରେ ବ୍ୟବହାର କରାଯାଉଥିଲା । ହେଲେ ଅଧିକାଂଶ କିସମର ବ୍ୟବହାର ଆଗରୁ ଚଳିଆସିଥିଲା । ଅନେକ ସ୍ଥାନରେ ନୂତନ ସ୍ରୋତରୁ ରାଜସ୍ୱ ଦେବା ସକାଶେ ବିନିମୟ ଓ ବ୍ୟବସାୟ କାରବାରର ବିକାଶ ଘଟିଥିଲା । ଯେଉଁଠି ବାଣିଜ୍ୟ-ବ୍ୟବସାୟର ସମ୍ଭାବନା ଥିଲା, ସେଇଠି ବାଣିଜ୍ୟ ଅର୍ଥବ୍ୟବସ୍ଥାର ପ୍ରମୁଖ ଅଙ୍ଗ ହୋଇଥିଲା । ପୂର୍ବରୁ ଚଳିଆସିଥିବା ପ୍ରତ୍ୟକ୍ଷ ବିନିମୟ ବି ଅବଲୁପ୍ତ ହୋଇ ନ ଥିଲା । ମାତ୍ର ତା' ସହିତ ନୂଆ ନୂଆ କିସମର ବିନିମୟ ପ୍ରଣାଳୀର ମଧ୍ୟ ବ୍ୟବହାର ହେଲା । ପୁଣି, ଉପହାର-ବିନିମୟ ବ୍ୟବସ୍ଥା ମଧ୍ୟ ରହିଥିଲା । ହେଲେ ତହିଁରେ ଲାଭ ଅପେକ୍ଷା ମର୍ଯ୍ୟାଦା କଥା ଅଧିକ ତୀବ୍ର ଭାବରେ ରହିଥିଲା । ବିଶେଷକରି ଯେଉଁ ସମାଜରେ କୁଳ ସର୍ଦ୍ଦାରଂର ଅଧିକ ମହତ୍ତ୍ୱ ଥିଲା,

ସେହି ସମାଜରେ ମର୍ଯ୍ୟାଦା ପ୍ରଶ୍ନ ବେଶି ଦେଖିବାକୁ ମିଳୁଥିଲା । ତା' ସତ୍ତ୍ୱେ ଉପହାର-ବିନିମୟର ଏକ ଆର୍ଥିକ ଭୂମିକା ମଧ୍ୟ ରହିଥିଲା ।

ଅନେକ ସମୟରେ ମୂର୍ତ୍ତ ପଦାର୍ଥର ବିନିମୟ ଅମୂର୍ତ୍ତ ପଦାର୍ଥ ସହିତ ମଧ୍ୟ ହେଉଥିଲା । ଅମୂର୍ତ୍ତ ପଦାର୍ଥର ଏଣିକି ଆନୁଷ୍ଠାନିକ ମହତ୍ତ୍ୱକୁ ଦେଖାଯାଉଥିଲା । ଉପହାର ବିନିମୟ ବ୍ୟବସ୍ଥା ମାଧ୍ୟମରେ ମଧ୍ୟଏସିଆର ସର୍ଦ୍ଦାରମାନଙ୍କ ମଧ୍ୟରେ ରେଶମର ଗାଣ୍ଠିମାନ ଆଦାନପ୍ରଦାନ କରାଯାଉଥିଲା । ଏହି ଉପହାର ଶେଷକୁ ବଜାରକୁ ଆସୁଥିଲା ଏବଂ ପଣ୍ୟଦ୍ରବ୍ୟ ରୂପେ ବିକ୍ରିବଟା ହେଉଥିଲା । ଯଜ୍ଞର କର୍ମକାଣ୍ଡରେ କିମ୍ବା ବୌଦ୍ଧସଂଘକୁ ଦିଆଯାଇଥିବା ଅନୁଦାନରେ କର୍ତ୍ତାର ସାମାଜିକ ମର୍ଯ୍ୟାଦା ଲାଭ ବା ଦାତାର ପୁଣ୍ୟ ଅର୍ଜନ ଥିଲା ଅମୂର୍ତ୍ତ ଉପଲବ୍ଧି । ମାତ୍ର ପୁରୋହିତକୁ ମିଳୁଥିବା ଦାନ କିମ୍ବା ସଂଘକୁ ଦିଆଯାଇଥିବା ଅନୁଦାନ ଥିଲା ମୂର୍ତ୍ତ ପଦାର୍ଥ । ପୂର୍ବରୁ ବୈଦିକ କର୍ମକାଣ୍ଡ ଅଥବା ଅନ୍ୟ କର୍ମକାଣ୍ଡ ସମ୍ପାଦନ ବେଳେ ଦାନ ଦିଆଯାଉଥିଲା । ବର୍ତ୍ତମାନ ସଂଘକୁ ଦାନ ଦିଆଗଲା । ମାତ୍ର ଦାତା ଓ ଗ୍ରହୀତା ମଧ୍ୟରେ ଯେଉଁ ସମ୍ବନ୍ଧ ତାହା ଉପାସକ ଓ ଉପାସ୍ୟ ମଧ୍ୟରେ ଥିବା ସମ୍ବନ୍ଧ ସଦୃଶ ହେଲା । ଏହି ପ୍ରବୃତ୍ତିର ଯେତେବେଳେ ବିସ୍ତାର ହେଲା, ତହିଁରେ ଅନ୍ୟ ପାଇଁ ପ୍ରଦାନ କରାଯାଇଥିବା ଦାନର ମଧ୍ୟ ସମାବେଶ ହେଲା । ଉଦାହରଣ ସ୍ୱରୂପ, ବ୍ୟକ୍ତି ନିଜ ମାତା-ପିତାଙ୍କ ଉଦ୍ଦେଶ୍ୟରେ ମଧ୍ୟ ଦାନ ଦେଲେ । ଅର୍ଥାତ୍ ମାତା-ପିତା ଦାନର ପୁଣ୍ୟ ଅର୍ଜନ କଲେ ।

ଏକ ଅଧିକ ଜଟିଳ ବିନିମୟର ସମ୍ବନ୍ଧ ଦେଖିବାକୁ ମିଳିଲା ପୁନଃବିତରଣ ପ୍ରଣାଳୀରେ । ଏହାର ମୂଳରେ ଥିଲା ଆର୍ଥିକ ଆବଶ୍ୟକତା । ଲୁଣ୍ଠନରୁ ପ୍ରାପ୍ତ ଧନସମ୍ପତ୍ତି କେତେକ ସମାଜରେ ରହିଥିଲା । ତାକୁ ବର୍ତ୍ତମାନ କୁଳ ସମାଜର ଲୋକେ ବିନିମୟ କରିବାକୁ ଲାଗିଲେ । ଲୁଣ୍ଠନର ପରମ୍ପରା ବନ୍ଦ ହେଲାପରେ ସୁଦ୍ଧା ଯୁଦ୍ଧ ଅଭିଯାନ ପଛରେ ଧନସମ୍ପତ୍ତି ଲୁଣ୍ଠନ ଏକ ଅନ୍ୟତମ ଉଦ୍ଦେଶ୍ୟ ହେଲା । ଧନସମ୍ପତ୍ତି ହାସଲ କରିବା ସକାଶେ ବିନିମୟ ବା ବେପାର ବଣିଜ ଥିଲା ଏକ ଶାନ୍ତିପ୍ରିୟ ଉପାୟ । ବଳକା ସାମଗ୍ରୀକୁ ସେହି ଉପାୟରେ ପରିବଣ୍ଟନ କରିବା ବି ସହଜ ହେଲା । ବାଣିଜ୍ୟରୁ ପ୍ରାପ୍ତ ଉପାର୍ଜନ ଯଦି ମାତ୍ରାଧିକ, ତାହା ନଗରୀକରଣ ଓ ରାଜ୍ୟବ୍ୟବସ୍ଥା ପ୍ରତିଷ୍ଠା କରିବାରେ ସାହାଯ୍ୟ କରୁଥିଲା । ରାଜ୍ୟର ବିକାଶ ସହିତ ରାଜକୋଷ ଓ ସାର୍ବଜନିକ କାର୍ଯ୍ୟ ପାଇଁ ବ୍ୟୟବରାଦ କରିବା ଜରୁରୀ ହେଲା । ଏହା ପୁନଃବିତରଣ ବ୍ୟବସ୍ଥାକୁ ଅଧିକ ଗତିଶୀଳ କଲା । ଏକ ନିର୍ଦ୍ଧାରିତ ବିନ୍ଦୁରେ ଧନ ଜମା ହେଉଥିଲା ଏବଂ ଉକ୍ତ ବିନ୍ଦୁରୁ ତାକୁ ବିତରଣ କରାଯାଉଥିଲା । ଯଦି ଧନର ସମ୍ବନ୍ଧ ରାଜ୍ୟ ସହିତ, ତେବେ ଏହି ନିର୍ଦ୍ଦିଷ୍ଟ ବିନ୍ଦୁ ହେବ ପ୍ରାୟତଃ ରାଜକୋଷ । ଗୋଟାଏ ସମୟରେ ଉଭୟ ପ୍ରକାରର ବିନିମୟ ସମାଜର ବିଭିନ୍ନ ସ୍ତରରେ ସହଅସ୍ତିତ୍ୱ ଲାଭ କରୁଥିଲା । ବଜାର

ମାଧ୍ୟମରେ ନିୟନ୍ତ୍ରିତ ବ୍ୟବସାୟ ଆରମ୍ଭ ହେବାର ଏହା ହେଲା ପୂର୍ବ ସ୍ଥିତି । ଏହାର ଆଧାର ଥିଲା ଚାହିଦା ଓ ଯୋଗାଣ । ଅର୍ଥାତ୍ ଯଦି ଚାହିଦା ଅଛି, ସାମଗ୍ରୀର ଯୋଗାଣ ହେବ । ଏହି କାଳଖଣ୍ଡରେ ମୁଦ୍ରା ଓ ମୌଦ୍ରିକ ଅର୍ଥବ୍ୟବସ୍ଥା (monetary economy)ର ପ୍ରଚଳନ ଥିଲା ବୋଲି କହିବା ସମ୍ଭବତଃ ଠିକ୍ ହେବ ନାହିଁ । ପରବର୍ତ୍ତୀ କାଳଖଣ୍ଡରେ ତା'ର ଅଭ୍ୟୁଦୟ ସ୍ପଷ୍ଟରୂପରେ ଦେଖିବାକୁ ମିଳିଲା । ପ୍ରାରମ୍ଭିକ କାଳରେ ମୁଦ୍ରା ଓ ବଜାରର ପ୍ରଚଳନ ଯଦିବା ବାଣିଜ୍ୟ ବ୍ୟବସାୟକୁ ପରିବର୍ଦ୍ଧିତ ହେବାରେ ସାହାଯ୍ୟ କଲା, ତାହା ଖୁବ୍ ସୁଦୃଢ଼ ନ ଥିଲା । ସାଙ୍ଗରେ ଏକଥା ବି ସତ ଯେ, ପୂର୍ବରୁ ଚାଲିଆସିଥିବା ବିନିମୟ ବ୍ୟବସ୍ଥା ମଧ୍ୟ ବନ୍ଦ ହୋଇଯାଇ ନ ଥିଲା ।

ଏହି କାଳଖଣ୍ଡର ଅନେକ ନଗରୀୟ କେନ୍ଦ୍ରର ପ୍ରତ୍ନତାତ୍ତ୍ୱିକ ଖନନ ହୋଇଛି । ତହିଁରୁ ଜଣାପଡ଼େ ଯେ ଜୀବନଶୈଳୀରେ କ୍ରମାଗତ ଉନ୍ନତି ହେଉଥିଲା । ତକ୍ଷଶିଳାର ଇଣ୍ଡୋ-ଗ୍ରୀକ୍ ନଗରୀ ସିରକପର ଖନନ ହୋଇଛି । ତହିଁରୁ ନଗରୀୟ ରୂପର ପ୍ରମାଣ ମିଳିଛି । ଏଠାରେ ବିଶିଷ୍ଟ ଲୋକଙ୍କର ବସତି ସାମାନ୍ୟ ଲୋକଙ୍କର ବସତିରୁ ଭିନ୍ନ ଥିଲା । ଆଜି ଆମେ ଉକ୍ତ ସହରର ଗଳିମାନଙ୍କରେ ବାଟ ଚାଲିପାରିବେ, ବାସଗୃହଗୁଡ଼ିକୁ ଦେଖିପାରିବେ ତଥା ସହଜରେ ତତ୍କାଳୀନ ସହରର ପୁନଃସଂଯୋଜନା କରିପାରିବେ । ବାଣିଜ୍ୟପଥର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ ଥିବାରୁ ବେକ୍ଟ୍ରିଆ ସହର ଏହାର ଯଥେଷ୍ଟ ଲାଭ ନେଇପାରିଥିଲା । ବେକ୍ଟ୍ରିଆ ସହରର ଯୋଜନାକୁ ସହଜରେ ଅନୁମାନ କରିହୁଏ, କାରଣ ସେଠାରେ ପାଚେରୀ ବେଷ୍ଟିତ 'ସିଟାଡେଲ' ଥିଲା ଶାସକବର୍ଗ ପାଇଁ ଉଦ୍ଦିଷ୍ଟ । ତା'ର ଆଖପାଖରେ ଏକ ବିଶାଳ ଜନବସତି ରହିଥିଲା । ଜନବହୁଳ ବସ୍ତି ଅଞ୍ଚଳରେ ଘର, ହସ୍ତଶିଳ୍ପ କେନ୍ଦ୍ର ଏବଂ ଧର୍ମବିହାରମାନ ରହିଥିଲା । ସହରର ଉପକଣ୍ଠ ଥିଲା ଆହୁରି ଦୂରରେ । ବେକ୍ଟ୍ରା ସହର (ଆଧୁନିକ ବଲ୍ଖ ସହର)ର ମୋଟ ଜନସଂଖ୍ୟା ପାଖାପାଖି ଏକଲକ୍ଷ ଥିଲା ବୋଲି ଅନୁମାନ କରାଯାଏ । ଉଭୟ ସିରକପ ଓ ବେକ୍ଟ୍ରା ସହରର ତଥା ଉପମହାଦେଶର ଅନ୍ୟାନ୍ୟ ସ୍ଥାନର ତତ୍କାଳୀନ ବୈଶିଷ୍ଟ୍ୟ ହେଲା ହସ୍ତଶିଳ୍ପ କେନ୍ଦ୍ରର ପ୍ରମୁଖତା । ବେକ୍ଟ୍ରା ପରି ମଥୁରା ସହର ମଧ୍ୟ ଦେଶାନ୍ତରୀ ଲୋକଙ୍କ ମାର୍ଗରେ ଅବସ୍ଥିତ ଥିଲା । ଦେଶାନ୍ତରୀ ଲୋକଙ୍କ ମଧ୍ୟରେ ଥିଲେ କଳା ଓ ଧାର୍ମିକ ସ୍ଥଳୀର ପୃଷ୍ଠପୋଷକତାରେ ଆଗ୍ରହୀ ଗୋଷ୍ଠୀ । କୁଶାଣମାନଙ୍କର ପୃଷ୍ଠପୋଷକତା ଲାଭ କରି ମଥୁରାର ପ୍ରମୁଖତା ବଜାୟ ରହିଲା, ଯଦିଓ ମଥୁରା ତୁଳନାରେ ଗାନ୍ଧାରର ନଗରୀଗୁଡ଼ିକୁ କୁଶାଣମାନେ ଅଧିକ ପୃଷ୍ଠପୋଷକତା ପ୍ରଦାନ କରିଥିଲେ । ମଥୁରାର ନିକଟରେ ସ୍ଥିତ ମାଟଠାରେ କୁଶାଣ ରାଜାମାନଙ୍କର ମୂର୍ତ୍ତି ସ୍ଥାପିତ କରାଯାଇଥିଲା, ଯାହା ମଥୁରାର ରାଜନୈତିକ ମହତ୍ତ୍ୱକୁ ରେଖାଙ୍କିତ କରେ ।

'ଶ୍ରେଣୀ'ର ଅଭ୍ୟୁଦୟ ହେବା ଯୋଗୁଁ ଉତ୍ପାଦନ ଓ ବିନିମୟ ବ୍ୟବସ୍ଥା ଅଧିକ ଗତିଶୀଳ ହେଲା । 'ଶ୍ରେଣୀ'କୁ ଇଂରାଜୀରେ 'ଗିଲ୍ଡ' ବୋଲି କୁହାଯାଉଛି । ଯଦିଓ 'ଶ୍ରେଣୀ'କୁ ବୁଝିବାଲାଗି 'ଗିଲ୍ଡ' ହେବ ଏକ ପାଖାପାଖି ଶବ୍ଦ, ତଥାପି ଏହା ୟୁରୋପୀୟ 'ଗିଲ୍ଡ'ଠାରୁ ଅନେକ ଦୃଷ୍ଟିରୁ ପୃଥକ୍ ଥିଲା । 'ଶ୍ରେଣୀ' ଥିଲା ବୃତ୍ତିନିପୁଣ ବଣିକ କିମ୍ବା କାରିଗରମାନଙ୍କର ଏକ ସଂଘ ସଦୃଶ । ଅବଶ୍ୟ ଏଥିରେ 'ଗିଲ୍ଡ'ର କେତେକ ଚରିତ୍ର ମଧ୍ୟ ଦେଖିବାକୁ ମିଳୁଥିଲା । ଏହି ଆଧାରରେ 'ଶ୍ରେଣୀ'କୁ 'ଗିଲ୍ଡ' ବୋଲି କୁହାଗଲେ ଅନୁଚିତ ହେବନାହିଁ । ବାଣିଜ୍ୟ ପାଇଁ ଆବଶ୍ୟକତା ଥିବା ସାମଗ୍ରୀର ଉତ୍ପାଦନରେ ଶ୍ରେଣୀ ବିଶେଷ ଭାବରେ ସହାୟକ ହୋଇଥିଲା । ଫଳରେ ସହରୀ ଜୀବନର ଏହା ଏକ ମହତ୍ତ୍ୱପୂର୍ଣ୍ଣ ଉପାଦାନ ସାବ୍ୟସ୍ତ ହେଲା । ଯେହେତୁ ପେଷାଦାର ଉତ୍ପାଦକ ସଂସ୍ଥା ବା ବାଣିଜ୍ୟ ଗୋଷ୍ଠୀ ସହିତ ପ୍ରତିଯୋଗିତା କରିବା ସହଜ ନ ଥିଲା, ତା'ର ବିକଳ୍ପ ଭାବରେ ଅଧିକାଂଶ କାରିଗର 'ଶ୍ରେଣୀ'ରେ ସାମିଲ ହେବାକୁ ପସନ୍ଦ କରୁଥିଲେ । ପ୍ରତିବଦଳରେ 'ଶ୍ରେଣୀ' ସେମାନଙ୍କୁ ମର୍ଯ୍ୟାଦା ଓ କିଛି ମାତ୍ରାରେ ସୁରକ୍ଷା ପ୍ରଦାନ କରୁଥିଲା । 'ମିଳିନ୍ଦ ପହ୍ନ' ଓ 'ମହାବସ୍ତୁ' ଆଦି ବୌଦ୍ଧଗ୍ରନ୍ଥରେ 75ରୁ ଊର୍ଦ୍ଧ୍ୱ କିସମର ବୃତ୍ତିର ଉଲ୍ଲେଖ କରାଯାଇଛି । ଏତେସଂଖ୍ୟକ ବୃତ୍ତି ହୁଏତ ରହିଥାଇ ପାରେ । ମାତ୍ର ପ୍ରତ୍ୟେକ ବୃତ୍ତିର କାରିଗର ପୃଥକ୍ ପୃଥକ୍ 'ଶ୍ରେଣୀ' ଗଠନ ସମ୍ଭବତଃ କରିଥାଇ ନ ପାରନ୍ତି । ଯଦି ଉତ୍ପାଦନରେ କୁଶଳତା ଆଣିବା ଏବଂ ଅଧିକ ଲାଭ ଅର୍ଜନ କରିବା ଲକ୍ଷ୍ୟ ଥିଲା, ତେବେ ହୁଏତ 'ଶ୍ରେଣୀ'ର ଗଠନ ସେହି କାରିଗରମାନଙ୍କ ମଧ୍ୟରେ ହୋଇଥିବ, ଯେଉଁମାନଙ୍କର ସାମଗ୍ରୀର ବଜାରରେ ଚାହିଦା ଥିବ । ଏକ ନିର୍ଦ୍ଦିଷ୍ଟ ସାମଗ୍ରୀର ଚାହିଦା ବୃଦ୍ଧି ପାଇଲେ 'ଶ୍ରେଣୀ' ଅଧିକ ଉତ୍ପାଦନ ପାଇଁ ମଜୁରିଆ ରଖିଥିବ ଅଥବା 'ଦାସ' ନିଯୁକ୍ତ କରିଥିବ । 'ଶ୍ରେଣୀ' ପରି ସଂଗଠନକୁ ରାଜ୍ୟବ୍ୟବସ୍ଥା ପକ୍ଷରୁ ପ୍ରତ୍ୟକ୍ଷ ପ୍ରୋତ୍ସାହନ ପ୍ରଦାନ କରାଯାଉଥିଲା, କାରଣ ତଦ୍ୱାରା ବ୍ୟବସାୟିକ ଉତ୍ପାଦନ ଓ ବିକ୍ରିରୁ ଆବଶ୍ୟକ ମାତ୍ରାରେ ରାଜସ୍ୱ ଆଦାୟ ହୋଇପାରୁଥିଲା ।

'ଅର୍ଥଶାସ୍ତ୍ର' ଅନୁଯାୟୀ, 'ଶ୍ରେଣୀ'ଗୁଡ଼ିକୁ ଯେକୌଣସି ଏକ କ୍ଷେତ୍ରରେ ପଞ୍ଜିକରଣ କରିବାକୁ ପଡୁଥିଲା । ଯଦି କୌଣସି କାରଣରୁ 'ଶ୍ରେଣୀ' ତା'ର କ୍ଷେତ୍ର ପରିବର୍ତ୍ତନ କରୁଥିଲା, ତା' ପାଇଁ ତାକୁ ଅନୁମତି ନେବାକୁ ପଡୁଥିଲା । ମାତ୍ର ବାସ୍ତବରେ ଏହି ନିର୍ଦ୍ଦେଶକୁ କଡ଼ାକଡ଼ି ଭାବେ ପାଳନ କରାଯାଉ ନ ଥିଲା ଭଳି ମନେହୁଏ । ଯେକୌଣସି ହସ୍ତଶିଳ୍ପରେ ନିୟୋଜିତ ଥିବା କାରିଗରମାନେ 'ଶ୍ରେଣୀ' ଗଠନ କରିପାରୁଥିଲେ । ଅଧିକ ଗୁରୁତ୍ୱପୂର୍ଣ୍ଣ ଶ୍ରେଣୀ ମଧ୍ୟରେ ରହିଥିଲା କମାର ଶ୍ରେଣୀ, ଧାତୁ କାରିଗରର ଶ୍ରେଣୀ, ବୁଣାକାର ଶ୍ରେଣୀ, ସ୍ୱର୍ଣ୍ଣକାର ଶ୍ରେଣୀ ତଥା ରତ୍ନପଥର କାରିଗର ଶ୍ରେଣୀ, କାଚ କାରିଗର ଶ୍ରେଣୀ, ହାତୀଦାନ୍ତର କାରିଗର ଶ୍ରେଣୀ

ଏବଂ ବଢ଼େଇ ଶ୍ରେଣୀ । ଏହାର ଅର୍ଥ ନୁହେଁ ଯେ ଘରୋଇ ଉଦ୍ୟୋଗଶୀଳତାର ଉପସ୍ଥିତି ନ ଥିଲା । ଉଦାହରଣ ସ୍ୱରୂପ, ସଦ୍ଦଲପୁତ୍ତ ନାମକ ଜଣେ ଧନାଢ଼୍ୟ କମାରର ଉଲ୍ଲେଖ ରହିଛି, ଯାହାର ଅନ୍ୟୂନ ପାଞ୍ଚଶହଟି କର୍ମଶାଳା ଥିଲା । ଉକ୍ତ ଧନିକ କମାର ନିଜ ସାମଗ୍ରୀର ପରିବଣ୍ଟନ ପାଇଁ ସ୍ୱ-ଉଦ୍ୟମରେ ବ୍ୟବସ୍ଥାମାନ କରିଥିଲେ । ସାମଗ୍ରୀ ପ୍ରେରଣ ପାଇଁ ତାଙ୍କ ପାଖରେ ଅନେକ ସଂଖ୍ୟକ ନୌକା ରହିଥିଲା । ଗଙ୍ଗାନଦୀ ଓ ତା'ର ଉପନଦୀ, ଶାଖାନଦୀମାନଙ୍କରେ, ଯାହାକୁ ଗଙ୍ଗାନଦୀ ବ୍ୟବସ୍ଥା (Ganges River System) ବୋଲି କୁହାଯାଏ, ତହିଁରେ ଉକ୍ତ ନୌକାଗୁଡ଼ିକର ନିୟମିତ ଯାତାୟାତ ହେଉଥିଲା ।

'ଶ୍ରେଣୀ' ଦ୍ୱାରା କାର୍ଯ୍ୟର ନିୟମ ତଥା ପ୍ରସ୍ତୁତ ସାମଗ୍ରୀର ମାନ ଏବଂ ମୂଲ୍ୟ ନିର୍ଦ୍ଧାରିତ ହେଉଥିଲା । ଉଦ୍ଦେଶ୍ୟ ଥିଲା ଉଭୟ କାରିଗର ଓ ଉପଭୋକ୍ତାର ସୁରକ୍ଷା । ଉତ୍ପାଦିତ ସାମଗ୍ରୀର ଗୁଣବତ୍ତା ଆଧାରରେ ମୂଲ୍ୟ ନିର୍ଦ୍ଧାରିତ ହେଉଥିଲା । ଅଥବା ତା' ପାଇଁ ଏକ ମାନଦଣ୍ଡ ସ୍ଥିରୀକୃତ ହୋଇଥିଲା । 'ଶ୍ରେଣୀ'ର ସଭ୍ୟମାନେ 'ଶ୍ରେଣୀଧର୍ମ' ପାଳନ କରିବାର ପାରମ୍ପରିକ ନିୟମ ରହିଥିଲା । ଏହା ଜାତି ନିୟମ ଆଧାରରେ ସ୍ଥିର ହୋଇଥିଲା ଏବଂ ତାକୁ ରାଜା ମଧ୍ୟ ମାନ୍ୟତା ଦେଉଥିଲେ । ଜାତି ତଥା ଶ୍ରେଣୀ ଭଳି ସଂସ୍ଥାର କାର୍ଯ୍ୟକଳାପରେ ପ୍ରାତିନିଧିକତାର କିଛି ଉପାଦାନ ମଧ୍ୟ ରହିଥିଲା, ଯଦିଓ ତାହା ଗୋଷ୍ଠୀ ବିଶେଷ ଯାଏଁ ସୀମିତ ଥିଲା । କେବେ କେବେ ଜାତି ଓ ଶ୍ରେଣୀର କାର୍ଯ୍ୟ ଓ ଅଧିକାର ପରସ୍ପରକୁ ଅତିକ୍ରମଣ ମଧ୍ୟ କରୁଥିଲେ । ସେତେବେଳେ ଜାତିର କାର୍ଯ୍ୟକୁ ଶ୍ରେଣୀ ସମ୍ପାଦନ କରୁଥିଲା । ଏହି ଧରଣର କାର୍ଯ୍ୟକଳାପ ମଧ୍ୟରେ ଅନ୍ୟତମ ଥିଲା ବିବାହ । ସେତେବେଳେ ବିବାହ ସମ୍ବନ୍ଧ ସ୍ଥିର କଲାବେଳେ 'ଶ୍ରେଣୀ'ର ଆନ୍ତଃବିବାହୀ (endogomous) ଏକକ ହେବାର ସମ୍ଭାବନା ରହିଥିଲା । ଶ୍ରେଣୀର ମୁଖ୍ୟ ଥିଲେ ଜ୍ୟେଷ୍ଠ; ଆବଶ୍ୟକ ପଡ଼ିଲେ ସେ ଅନ୍ୟାନ୍ୟ ସଂସ୍ଥା ସହିତ ଯୋଗସୂତ୍ର ରକ୍ଷା କରୁଥିଲେ । କେତେକ କ୍ଷେତ୍ରରେ ଶ୍ରେଣୀର କାର୍ଯ୍ୟକଳାପରେ ଗଣସଂଘର ଛାପ ଦେଖିବାକୁ ମିଳୁଥିଲା । ସଭ୍ୟମାନଙ୍କର ବ୍ୟକ୍ତିଗତ ଜୀବନରେ ମଧ୍ୟ ଶ୍ରେଣୀ ହସ୍ତକ୍ଷେପ କରୁଥିଲା । ଏହାର ଏକ ସଦ୍ୟତମ ଉଦାହରଣ ହେଲା ଯେ, ନିୟମତଃ ଜଣେ ବିବାହିତା ନାରୀ ଯଦି ବୌଦ୍ଧ ସଂଘରେ ଭିକ୍ଷୁଣୀ ରୂପେ ଯୋଗ ଦେବାକୁ ଚାହିଁବ, ତା' ପାଇଁ ତାକୁ ନିଜ ପତିଠାରୁ ତଥା 'ଶ୍ରେଣୀ'ଠାରୁ ଅନୁମତି ଆଣିବାକୁ ହେବ । 'ଶ୍ରେଣୀ'ର ସଭ୍ୟ ହେବା ପାଇଁ ଜାତି କଥା ରହିଥିଲା । ଅର୍ଥାତ୍ ପିତାଙ୍କ ବୃତ୍ତିରେ ଯେହେତୁ ସନ୍ତାନମାନେ ଯୋଗଦେବାର ପରମ୍ପରା ରହିଥିଲା, 'ଶ୍ରେଣୀ'କୁ ନିୟମିତ ଭାବେ ନୂଆ ସଭ୍ୟ ଆସୁଥିଲେ । ତାଲିମ ପାଉଥିବା କାରିଗରମାନେ ବଂଶଗତଭାବେ ଶ୍ରେଣୀରେ ଯୋଗ ଦେଉଥିଲେ । ମାତ୍ର ଯେତେବେଳେ ଜାତିର ବୃତ୍ତିରେ ଆର୍ଥିକ ପରିବର୍ତ୍ତନ ଆସିଲା.

ଅଥବା ଯେତେବେଳେ କୌଣସି ଏକ ଉତ୍ପାଦିତ ସାମଗ୍ରୀର ଚାହିଦା ହ୍ରାସ ପାଇଲା, ସେତେବେଳେ 'ଶ୍ରେଣୀ'କୁ ସଂକଟର ସମ୍ମୁଖୀନ ହେବାକୁ ପଡ଼ିଲା ।

ବ୍ୟକ୍ତିଗତ ସ୍ତରରେ ହେଉ ବା ଶ୍ରେଣୀ ମାଧ୍ୟମରେ ହେଉ କାରିଗର ବସ୍ତୁ ଉତ୍ପାଦନ କରୁଥିଲା ଏବଂ ସେହି ବସ୍ତୁ ବଣିକ ଦ୍ୱାରା ବଜାରକୁ ଆସୁଥିଲା । ବଣିକ ପାଇଁ ଆଜି ମଧ୍ୟ 'ବଣିଆ' ଶବ୍ଦର ପ୍ରୟୋଗ ହୋଇଥାଏ । ଦୂରଦୂରାନ୍ତରକୁ ବାଣିଜ୍ୟ ସାମଗ୍ରୀକୁ ପରିବହନ କରିବାର ଦାୟିତ୍ୱ ରହିଥିଲା 'ସାର୍ଥବାହମାନଙ୍କ' ହାତରେ । ସେମାନେ ଅନେକ ସମୟରେ ମିଳିତ ଭାବରେ ମାଲ ନେବାଆଣିବା କରୁଥିଲେ, ଯଦ୍ୱାରା ସେମାନଙ୍କୁ ଦସ୍ୟୁମାନଙ୍କ ଦାଉରୁ ରକ୍ଷା ମିଳୁଥିଲା । 'ଶ୍ରେଣୀ'ର ସହଯୋଗୀ ସଂସ୍ଥାମାନେ ମଧ୍ୟ ରହିଥିଲେ । ସେଗୁଡ଼ିକ 'ପୁଗ' (କର୍ପୋରେସନ), 'ଗୋଷ୍ଠୀ' (ସମିତି) ଏବଂ 'ନିଗମ' (ବିନିମୟସ୍ଥଳୀ) ଆଦି ନାମରେ ପରିଚିତ ଥିଲେ । ଏହି ସଂସ୍ଥାମାନେ ବାଣିଜ୍ୟରେ 'ଶ୍ରେଣୀ'କୁ ସହଯୋଗ କରୁଥିଲେ । ମାତ୍ର 'ଶ୍ରେଣୀ' ଭଳି ଶକ୍ତିଶାଳୀ ନ ଥିଲେ । ପ୍ରସିଦ୍ଧ 'ନିଗମ'ଗୁଡ଼ିକ ମଧ୍ୟରେ ଥିଲା : ତକ୍ଷଶିଳା, କୌଶାମ୍ବୀ ଏବଂ ଭଟ୍ଟିପ୍ରୋଲୁର ନିଗମ ।

ପ୍ରତ୍ନତାତ୍ତ୍ୱିକ ଖନନରୁ ଅନେକଗୁଡ଼ିଏ ସିଲ୍‌ମୋହର ପ୍ରାପ୍ତ ହୋଇଛି । ତହିଁରେ 'ଶ୍ରେଣୀ' ଓ 'ପୁଗ'ର ଚିହ୍ନ ରହିଛି । ଶ୍ରେଣୀର ପତାକା ଏବଂ ପ୍ରତୀକ ଚିହ୍ନକୁ ଉତ୍ସବ ଅବସରରେ ପ୍ରଦର୍ଶନ କରାଯାଉଥିଲା । ତହିଁରେ ବୌଦ୍ଧସ୍ତୁପ ସମ୍ପର୍କିତ ଚିହ୍ନମାନ ଖୋଦିତ ହୋଇଥିଲା । ପ୍ରତୀକ ଚିହ୍ନକୁ ପ୍ରଦର୍ଶନ କରିବା ପଛରେ ଅନ୍ୟତମ ଉଦ୍ଦେଶ୍ୟ ଥିଲା ଶ୍ରେଣୀର ବିଜ୍ଞାପନ । ପ୍ରଚାର ପାଇଁ ଶ୍ରେଣୀ ପକ୍ଷରୁ ଧାର୍ମିକ ଅନୁଷ୍ଠାନଗୁଡ଼ିକୁ ଦାନ ମଧ୍ୟ ପ୍ରଦାନ କରାଯାଉଥିଲା । ଏହାର ପ୍ରଶଂସାସୂଚକ ଉଦ୍ଧରଣମାନ ଅଭିଲେଖଗୁଡ଼ିକରେ ଦେଖିବାକୁ ମିଳିଥାଏ । ଏହାର ସ୍ପଷ୍ଟ ଉଦାହରଣ ଭରହୁତ ଏବଂ ସାଞ୍ଚିରେ ଥିବା ବୌଦ୍ଧସ୍ତୁପମାନଙ୍କରେ ଦେଖିବାକୁ ମିଳିଥାଏ । ସେଠାକାର ଭାସ୍କର୍ଯ୍ୟ କଳାକୃତିରେ ଧାନ୍ୟ-ବିକ୍ରେତା, ସ୍ୱର୍ଣ୍ଣକାର, ରୌପ୍ୟକାରମାନଙ୍କ ଦ୍ୱାରା ପ୍ରଦତ୍ତ ଦାନର ଉଲ୍ଲେଖ ଦେଖିବାକୁ ମିଳେ । ବିଦିଶାର ହାତୀଦାନ୍ତର କାରିଗରମାନଙ୍କର 'ଶ୍ରେଣୀ' ମଧ୍ୟ ସାଞ୍ଚିରେ ବାସ-ରିଲିଫ (bas-relief) ଉପରେ କାର୍ଯ୍ୟ କରିଥିଲେ । ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା ଯେ ଦାନ ଦେଇଥିବା ଗୋଷ୍ଠୀ କେବଳ ଆଖପାଖ ସହରରୁ ନ ଥିଲେ, ସେମାନେ ସୁଦୂର ଦାକ୍ଷିଣାତ୍ୟରୁ ଆସି ଦାନ ଦେଉଥିଲେ ।

ପଶ୍ଚିମ ଭାରତର ନାସିକ ସ୍ଥିତ ଏକ ଗୁମ୍ଫାରେ ଶକ ରାଜପରିବାର ଦ୍ୱାରା ପ୍ରଦତ୍ତ ଏକ ଅଭିଲେଖ ପ୍ରାପ୍ତ ହୋଇଛି । ବୁଣାକାର 'ଶ୍ରେଣୀ'ରେ ନିବେଶ କରାଯାଇଥିବା ଅର୍ଥରୁ ବହୁପରିମାଣରେ ପ୍ରାପ୍ତ ସୁଧକୁ ସଂଘ ପାଇଁ ପ୍ରଦାନ କରାଯାଇଥିବା କଥା ଏଥିରେ ଉଲ୍ଲେଖ ଅଛି । ନିମ୍ନରେ ଅଭିଲେଖକୁ ଉଦ୍ଧାର କରାଗଲା :

*"ବୟାଳିଶତମ ବର୍ଷର ବୈଶାଖ ମାସରେ ଦିନିକଙ୍କ ପୁତ୍ର ଓ କ୍ଷହରାତ କ୍ଷତ୍ରପ ରାଜା ନହପାନଙ୍କ ଜାମାତା ଉଶବଦତ୍ତ ଏହି ଗୁମ୍ଫାକୁ ସାମାନ୍ୟ ଭାବରେ ସଂଘକୁ ପ୍ରଦାନ କଲେ । ଏହାବ୍ୟତୀତ ସେ ସଂଘକୁ ଏକ ସ୍ଥାୟୀ ନିଧି ରୂପରେ ତିନିହଜାର-3000 କହାପଣ ଦାନ କଲେ । ଏହି ନିଧି ଗୁମ୍ଫା ନିବାସୀ ସଂଘର ଯେକୌଣସି ସଂପ୍ରଦାୟର ସଭ୍ୟ ଅଥବା ଅନ୍ୟ ନିବାସୀଙ୍କର ବସ୍ତ୍ର-ଧନ ଏବଂ ବାହାର ଜୀବନ ନିମିତ୍ତ ପ୍ରୟୋଜନ ଧନ ରୂପରେ ବ୍ୟୟ ହେବ । ଉକ୍ତ କହାପଣ ଗୋବର୍ଦ୍ଧନରେ ରହୁଥିବା 2000 ବୁଣାକାରଙ୍କ ଶ୍ରେଣୀରେ ନିବେଶ କରାଯାଇଛି । ଏହାର ସୁଧ ପରିମାଣ ହେଲା ଶତକଡ଼ା ଏକ ପ୍ରତୀକ (ମାସିକ) । ଅନ୍ୟ ଏକ ବୁଣାକାର ଶ୍ରେଣୀରେ, ଯାହାର ସଭ୍ୟ ସଂଖ୍ୟା 1000, ମଧ୍ୟ ଉକ୍ତ କହାପଣର ଏକ ଅଂଶକୁ ନିବେଶ କରାଯାଇଛି, ଯେଉଁଠି ସୁଧ ଦର ହେଲା 3/4 ପ୍ରତୀକ (ମାସିକ) । ଏହି କହାପଣକୁ ଫେରସ୍ତ ନିଆଯିବ ନାହିଁ । କେବଳ ତା'ର ସୁଧକୁ ଭୋଗ କରାଯିବ ।*

*ତନ୍ମଧ୍ୟରୁ ଏକ ପ୍ରତୀକ ପ୍ରତିଶତ ଉପରେ ଦୁଇହଜାର, 2000 ବସ୍ତ୍ର-ଧନ ଅଟେ । ତନ୍ମଧ୍ୟରୁ ବସ୍ସା (ବର୍ଷାଋତୁରେ, ଯେତେବେଳେ ଭିକ୍ଷୁମାନେ ବିହାରରେ ରହନ୍ତି)ରେ ରହୁଥିବା କୋଡ଼ିଏ ଜଣ ଭିକ୍ଷୁ, ଯେଉଁମାନେ ମୋ ଗୁମ୍ଫାରେ ଅବସ୍ଥାନ କରନ୍ତି, ବାର କହାପଣ ଲେଖା ବସ୍ତ୍ର-ଧନ ପ୍ରାପ୍ତ କରିବେ । ତିନି-ଚତୁର୍ଥାଂଶ ପ୍ରତୀକ ପ୍ରତିଶତ ସୁଧରେ ନିବେଶ ହୋଇଥିବା ଏକହଜାର କହାପଣରୁ କୁଶାଣ (ମାସିକ ଭତ୍ତା) ପାଇଁ ଅର୍ଥ ଦିଆଯିବ ଏବଂ କାପୁର ଜନପଦର ଚିଖଲପଦ୍ର ଗ୍ରାମରେ ଆଠହଜାର ନଡ଼ିଆଗଛ, 8000 ଗଣ୍ଡି ଦିଆଯାଇଛି । ଏହିସବୁ ରୀତି ଅନୁସାରେ ନଗର ଭବନର ପ୍ରଲେଖ କାର୍ଯ୍ୟାଳୟରେ ଘୋଷିତ ଓ ପଞ୍ଜିକୃତ କରାଗଲା ।"*

(Epigraphia India, VII, p.82, Tr. E. Senart,
*Nasik Cave Inscriptions*, Inscription No.12)

ଏହି ଧରଣର ଅଭିଲେଖରୁ ପରୋକ୍ଷ ଭାବରେ 'ଶ୍ରେଣୀ'ର ରାଜନୈତିକ ମହତ୍ତ୍ୱ ଜଣାପଡ଼େ । ନଗରୀୟ ସମାଜରେ ଶ୍ରେଣୀଗୁଡ଼ିକ ଖୁବ୍ ଶକ୍ତିଶାଳୀ ଥିଲେ । ତା' ସତ୍ତ୍ୱେ, 'ଶ୍ରେଣୀ' ମୁଖ୍ୟ ପ୍ରତ୍ୟକ୍ଷ ରୂପରେ ରାଜନୈତିକ ପ୍ରଭାବ ବିସ୍ତାର କରିବାକୁ କିମ୍ବା ପଦପଦବୀର ଅଧିକାରୀ ହେବାକୁ ପ୍ରୟାସ କରୁ ନ ଥିଲେ ବୋଲି ଅନୁମାନ କରାଯାଏ । ଏହାର ଗୋଟାଏ କାରଣ ହେଲା ଯେ ରାଜନୀତିକୁ ରାଜାଙ୍କର କ୍ଷେତ୍ର ମନେକରାଯାଉଥିଲା । ଅନ୍ତତଃ ତାତ୍ତ୍ୱିକ ଦୃଷ୍ଟିରୁ ଏହା ସତ ଥିଲା । ଏହା ନିଃସନ୍ଦେହ ଯେ, ରାଜକୁଳ ସହିତ ସମ୍ବନ୍ଧ ରକ୍ଷାକରି ସେମାନେ ରାଜନୈତିକ ଲାଭ ନେଉଥିଲେ । ମାତ୍ର ସେମାନଙ୍କର ରାଜନୈତିକ ମହତ୍ତ୍ୱାକାଂକ୍ଷା ଅବଲୁପ୍ତ ଅବସ୍ଥାରେ ରହୁଥିଲା । ଏହାର ଅନ୍ୟ ଏକ ସମ୍ଭାବ୍ୟ କାରଣ ହେଲା ଯେ କେତେକ

କ୍ଷେତ୍ରରେ ରାଜପରିବାରମାନେ ମଧ୍ୟ 'ଶ୍ରେଣୀ'ର ଆର୍ଥିକ ହିତାଧିକାରୀ ଥିଲେ । ବାଣିଜ୍ୟ ଉଦ୍ୟୋଗରେ ପୁଞ୍ଜିନିବେଶ କଲେ ଖୁବ୍ ଲାଭ ହେଉଥିଲା । ସମ୍ଭବତଃ ଏକ ନିର୍ଦ୍ଦିଷ୍ଟ ଅନୁପାତରେ ଜମିରୁ ଆଦାୟ ହେଉଥିବା ରାଜସ୍ୱ ତୁଳନାରେ ଏହା ଅଧିକ ଥିଲା । ରାଜପରିବାର ବାଣିଜ୍ୟ କାରବାରରେ ଅର୍ଥନିବେଶ କରୁଥିଲେ । ଫଳରେ ଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ରାଜାମାନେ ତତ୍ପର ରହୁଥିଲେ । ରାଜଅର୍ଥ ଏବଂ ରାଜାଙ୍କର ନିର୍ବିରୋଧ ଯୋଗୁଁ ଶ୍ରେଣୀ ମୁଖ୍ୟମାନେ ରାଜନୈତିକ ମହତ୍ତ୍ୱାକାଂକ୍ଷା ପାଳିବାର ଆବଶ୍ୟକତା ଅନୁଭବ କରୁ ନ ଥିଲେ । ତା'ଛଡ଼ା, ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଯଦି ରାଜନୈତିକ କ୍ଷମତା ପାଇଁ ଆକାଂକ୍ଷା ରଖିବ, ତା' ପାଇଁ ତାକୁ ଅନ୍ୟ ଶ୍ରେଣୀଗୁଡ଼ିକର ଅନୁରକ୍ତି ଲାଭ କରିବାକୁ ହେବ । ଅନ୍ୟଥା ରାଜନୈତିକ ମହତ୍ତ୍ୱାକାଂକ୍ଷା ସାକାର ହେବ ନାହିଁ । ଜାତି ନିୟମ ଯୋଗୁଁ ଶ୍ରେଣୀ-ଶ୍ରେଣୀ ମଧ୍ୟରେ ଏହି ଧରଣର ସହଯୋଗ ସହଜ ନ ଥିଲା । ଉଦାହରଣ ସ୍ୱରୂପ, ବିଭିନ୍ନ ଜାତି ମଧ୍ୟରେ ସ୍ଥାପିତ ଶ୍ରେଣୀରେ ପଂକ୍ତିଭୋଜନର ପରମ୍ପରା ନ ଥିଲା । ଯଦିବା ଉକ୍ତ ଜାତି ନିୟମକୁ କଡ଼ାକଡ଼ି ଭାବେ ପାଳନ କରା ନ ଯାଏ, ତେବେ ଆହୁରି ଅନେକ କାରଣ ଥିଲା, ଯାହା ଶ୍ରେଣୀ-ଶ୍ରେଣୀ ମଧ୍ୟରେ ରାଜନୈତିକ ସହଯୋଗ ସ୍ଥାପନରେ ବାଧକ ପ୍ରମାଣିତ ହେଉଥିଲା । ଦେବୋତ୍ତର ଦାନ ରାଜକୁଳ, ଶ୍ରେଣୀ ଓ ସଂଘ ମଧ୍ୟରେ ଏକ ସମ୍ବନ୍ଧ ସ୍ଥାପନ କରୁଥିଲା ଏବଂ ଏହି ସମ୍ବନ୍ଧ ସେମାନଙ୍କ ପାରସ୍ପରିକ ସମ୍ପର୍କକୁ ସମତୁଲ ଅବସ୍ଥାରେ ରଖୁଥିଲା । ଶ୍ରେଣୀର ଉଦ୍‌ଭବ ଥିଲା ଏକ ନଗରୀୟ ଲକ୍ଷଣ । ବିଲକ୍ଷଣଯୁକ୍ତ ସାମାଜିକ ସଂସ୍ଥା ରୂପରେ ଏହା ନଗରୀୟ ଜୀବନର ବର୍ଦ୍ଧିଷ୍ଣୁ ମହତ୍ତ୍ୱକୁ ପ୍ରତିପାଦିତ କରୁଥିଲା ।

ପୂର୍ବରୁ ଦର୍ଶିତ ଅଭିଲେଖ ଆଦିରୁ ବୁଣାକାର, କମାର ଇତ୍ୟାଦିଙ୍କର ଶ୍ରେଣୀମାନଙ୍କରେ କରାଯାଇଥିବା ଅର୍ଥନିବେଶ କଥା ସୁସ୍ପଷ୍ଟ ହୁଏ । ନିଶ୍ଚିତରୂପେ ଏହିସବୁ ବୃତ୍ତି ଅଧିକ ଲାଭଜନକ ଥିଲା ଏବଂ ସମାଜରେ ଗ୍ରହଣୀୟ ଥିଲା । ଅନ୍ୟଥା, ରାଜପରିବାର ଏବଂ ଉଚ୍ଚ ଜାତିର ଲୋକେ ତହିଁରେ ଅର୍ଥନିବେଶ କରୁ ନ ଥାନ୍ତେ । ପୁଣି, ତତ୍‌କାଳୀନ ସାଧାରଣ ପୋଥିପାଠରେ ଏହି ବୃତ୍ତିଗୁଡ଼ିକୁ ସମାଜର ନିମ୍ନବର୍ଗ ବୋଲି ଉଲ୍ଲେଖ କରାଯାଇଛି । ଧର୍ମଶାସ୍ତ୍ରମାନଙ୍କରେ ସେମାନଙ୍କୁ ଶୂଦ୍ର ବୋଲି ଉପେକ୍ଷା କରାଯାଇଛି । ଏମାନଙ୍କ ମଧ୍ୟରୁ କେତେକକୁ ସଂକୀର୍ଣ୍ଣ ଜାତି ବୋଲି ବ୍ୟାଖ୍ୟା କରାଯାଇଛି, ଯାହାର ଅର୍ଥ ହେଲା ଜାତି ଓ ବୃତ୍ତି ବାହାରେ ବିବାହ କରିଥିବା ଦମ୍ପତିଙ୍କ ଔରସରୁ ଜାତ ମିଶ୍ରିତ ଜାତିବିଶେଷ । ଏହି ଜାତିକୁ ସର୍ବନିମ୍ନରେ ରହିଥିବା ଅଶୁଦ୍ଧ ବର୍ଗର ସାମାନ୍ୟ ଉର୍ଦ୍ଧ୍ୱରେ ରଖାଯାଇଥିଲା । ଅନୁଲୋମ ବିବାହର ଉଦ୍ଧରଣ ରହିଛି । ଅନୁଲୋମର ଶବ୍ଦାର୍ଥ ହେଲା ଶରୀରର ଲୋମ ଦିଗ ଅନୁରୂପ । ଏଥିରେ ପୁରୁଷ ଉଚ୍ଚଜାତିର ଏବଂ ସ୍ତ୍ରୀ ନିମ୍ନ ଜାତିର । ଏହାର ବିପରୀତ ହେଲା ପ୍ରତିଲୋମ ବିବାହ । ବିଭିନ୍ନ ପୋଥିରେ

ଅନୁଲୋମ-ପ୍ରତିଲୋମକୁ ଭିନ୍ନ ଭିନ୍ନ ପ୍ରକାରେ ବ୍ୟାଖ୍ୟା କରାଯାଇଛି । ଅର୍ଥାତ୍ ଶବ୍ଦାର୍ଥ ଅନୁସାରେ ଏହାକୁ ବ୍ୟାଖ୍ୟା କରାଯାଉ ନ ଥିଲା । ତା’ ସତ୍ତ୍ୱେ ଏହା ଏକ ତତ୍ତ୍ୱ ରୂପେ କାର୍ଯ୍ୟ କରୁଥିଲା, ଯାହାର ଉଦ୍ଦେଶ୍ୟ ହେଲା କେତେକ ନିର୍ଦ୍ଦିଷ୍ଟ ଜାତିର ଲୋକଙ୍କୁ ଜାତି ମାନ୍ୟତାରୁ ବଞ୍ଚିତ କରିବା । ଯେମିତି ଧର୍ମଶାସ୍ତ୍ରର ଅନେକ ନିୟମ ସାମାଜିକ ଅବସ୍ଥାକୁ ବ୍ୟାଖ୍ୟା କରିବାପାଇଁ ଉଦ୍ଦିଷ୍ଟ ଥିଲା, ସେମିତି ମିଶ୍ରିତ ଜାତିର ଉଦ୍ଧରଣ ନିମ୍ନ ମର୍ଯ୍ୟାଦାପ୍ରାପ୍ତ ସାମାଜିକ ବର୍ଗକୁ ଉର୍ଦ୍ଧ୍ୱଗାମୀ ହେବାରୁ ବଞ୍ଚିତ କରିବା । ସେହି ଏକା ତର୍କରେ ଏହାକୁ ପ୍ରକାରାନ୍ତରେ କେତେକ ଶୂଦ୍ର ଜାତିର ଅବସ୍ଥାରେ ଉନ୍ନତିର ପରିଚାୟକ ମନେ କରାଯାଇପାରେ ।

ଧର୍ମଶାସ୍ତ୍ରୀୟ ପାଠର ଦୃଷ୍ଟିକୋଣ ଏବଂ ସାମାଜିକ ବାସ୍ତବିକତା ମଧ୍ୟରେ ସଙ୍ଗତିର ଅଭାବ ରହିଥିବା କଥା ଲକ୍ଷ୍ୟ କରିହୁଏ । ପାଠର ଦୃଷ୍ଟିକୋଣ ହେଲା ସମାଜରେ ବିଶେଷ ଅଧିକାର ପ୍ରାପ୍ତ ଏକ ସଂଖ୍ୟାନ୍ୟୂନ ଗୋଷ୍ଠୀର ସାମାଜିକ ବିଚାର । ଏହି ଆଧାରରେ ମୋଟ ସମାଜ ପ୍ରକୃତରେ ସେହିପ୍ରକାରେ କାର୍ଯ୍ୟ କରୁଥିଲା ବୋଲି କୁହାଯାଇ ନ ପାରେ । ଧର୍ମଶାସ୍ତ୍ରର ଏହି ଧରଣର ଅଯୌକ୍ତିକ ତତ୍ତ୍ୱକୁ ପ୍ରତିବାଦ କରି ହୁଏତ ଅନେକ ତଥାକଥିତ ‘ତଳ’ ଜାତିର ଲୋକ ବୌଦ୍ଧଧର୍ମର ସାମାଜିକ ଉଦାରତାର ଏବଂ ଉଦୀୟମାନ ଭାଗବତ ଧର୍ମର ଆଶ୍ରୟ ନେଉଥିଲେ । କେତେକ ଅତିଶୟୋକ୍ତିକୁ ବାଦ୍‌ଦେଲେ ଅଭିଲୈଖିକ ବର୍ଣ୍ଣନା ଥିଲା ଅଧିକ ବାସ୍ତବିକତାଯୁକ୍ତ । ଅତିଶେୟୋକ୍ତିପୂର୍ଣ୍ଣ ପୋଥିରେ କେତେକ ନିର୍ଦ୍ଦିଷ୍ଟ ବୌଦ୍ଧଗ୍ରନ୍ଥକୁ ସାମିଲ କରାଯାଇ ପାରିବ । ହୁଏତ ଶୂଦ୍ରମାନଙ୍କ ମଧ୍ୟରେ ସମସ୍ତେ ଦରିଦ୍ର ନ ଥିଲେ । ଯେମିତି କମାର ଉଦ୍ୟୋଗୀ ସଦ୍ଦଲପୁତ୍ର । ମାତ୍ର ଅଧିକାଂଶ ଶୂଦ୍ରଙ୍କୁ ସାମଗ୍ରିକ ଭାବରେ ସମାଜରେ ଉଚ୍ଚ ସ୍ଥାନ ମିଳି ନ ଥିଲା । ଧର୍ମଶାସ୍ତ୍ର ସମେତ ଅନେକ ପୋଥିପାଠରେ କେତେକ ଶୂଦ୍ରଙ୍କୁ ଦରିଦ୍ର ବୋଲି ଦର୍ଶାଯାଇଛି । ଦାରିଦ୍ର୍ୟର ଉଲ୍ଲେଖକୁ ଯଦି ଦୃଷ୍ଟିକୁ ନିଆଯିବ, ତେବେ ପ୍ରାରମ୍ଭିକ ସମାଜରେ ଦାରିଦ୍ର୍ୟ ନୂଆ କଥା ନ ଥିଲା ।

ଅଭିଲେଖରୁ ଆଉ ଏକ କଥା ଜଣାପଡ଼େ । ତାହା ଅନୁଯାୟୀ, ଶ୍ରେଣୀ କେବେ କେବେ ସାହୁକାର (ବେଙ୍କର), ବିତ୍ତଦାତା ଏବଂ ଟ୍ରଷ୍ଟି ରୂପରେ ମଧ୍ୟ କାର୍ଯ୍ୟ କରୁଥିଲା । ସାଧାରଣତଃ ଏହିସବୁ କାର୍ଯ୍ୟକଳାପ ପାଇଁ ଭିନ୍ନ ଏକ ଗୋଷ୍ଠୀ ରହିଥିଲା । ତାହା ଥିଲା ବଣିକମାନଙ୍କର ଗୋଷ୍ଠୀ । ତାକୁ ଶ୍ରେଷ୍ଠୀନ ବା ସେଠି ବୋଲି କୁହାଯାଉଥିଲା । ଆଜି ମଧ୍ୟ ସେଠି ଏବଂ ଚେଟ୍ଟିଆର ନାମରେ ସାମାଜିକ ବର୍ଗ ରହିଥିବାର ଦେଖାଯାଏ । ‘ସେଠି-ଗହପତି’ ଶବ୍ଦର ବ୍ୟବହାରରୁ ମନେହୁଏ ଧନିକ ଭୂ-ସ୍ୱାମୀ ପରିବାରମାନେ ବଳକା ସମ୍ପତ୍ତିକୁ ବାଣିଜ୍ୟ-ବ୍ୟବସାୟରେ ନିବେଶ କରୁଥିଲେ ଏବଂ ଆରମ୍ଭରେ ବଣିକ ବୃତ୍ତି କରୁଥିଲେ । ସେତେବେଳେ ସାହୁକାରୀ ବା ବେଙ୍କିଙ୍ଗ୍ ପୂର୍ଣ୍ଣକାଳୀନ ବୃତ୍ତି ନ ଥିଲା । ସାହୁକାରୀ ସହିତ

ସେଠିମାନଙ୍କର ଅନ୍ୟ ବୃତ୍ତିରେ ମଧ୍ୟ ଆଗ୍ରହ ରହିଥିଲା । ଯେତେବେଳେ ଧାତୁ ନିର୍ମିତ ମୋହର ଟଙ୍କାର ଉପଯୋଗ ବୃଦ୍ଧି ପାଇଲା ଏବଂ ବ୍ୟବସାୟ ପାଇଁ ବଜାରର ସଂପ୍ରସାରଣ ହେଲା, ବୃତ୍ତି ରୂପରେ ସାହୁକାରୀର ଚାହିଦା ବଢ଼ିଲା, କାରଣ କଉଡ଼ି ମୁଦ୍ରା ଓ ବାର୍ଟର (barter) ବ୍ୟବସ୍ଥା ଅର୍ଥନିବେଶ ପାଇଁ ବିଶେଷ ଉପଯୋଗୀ ନ ଥିଲା ।

ସୁଧଖୋରୀ ଥିଲା ସାହୁକାରୀର ଏକ ସ୍ୱୀକୃତ ଅଙ୍ଗ ଏବଂ ସାଧାରଣ ସୁଧର ପରିମାଣ ଥିଲା 12 ରୁ 15 ପ୍ରତିଶତ । ନୌ-ବାଣିଜ୍ୟ ପାଇଁ କରାଯାଉଥିବା ଋଣରୁ ଅଧିକ ସୁଧ ଅସୁଲ ହେଉଥିଲା । ଜଣେ ମାନ୍ୟତାପ୍ରାପ୍ତ ଧର୍ମଶାସ୍ତ୍ରକାରୀଙ୍କ ମତରେ, ଋଣଗ୍ରହିତାର ଜାତି ଅନୁସାରେ ସୁଧର ପରିମାଣ ନିର୍ଦ୍ଧାରିତ ହେଉଥିଲା । ଉଚ୍ଚ ଜାତିର ଋଣଗ୍ରହିତା ପ୍ରାୟତଃ 'ତଳ' ଜାତି ଅନୁପାତରେ କମ୍ ସୁଧ ଦେଉଥିଲେ । ଏହାଫଳରେ 'ତଳ' ଜାତି ଏବଂ ଆର୍ଥିକ ଦୃଷ୍ଟିରୁ ଦରିଦ୍ର ଗୋଷ୍ଠୀ ପକ୍ଷରେ ଋଣ ପରିଶୋଧ କରିବା କିମ୍ବା ବ୍ୟବସାୟିକ ଉଦ୍ୟୋଗ ପାଇଁ ଅର୍ଥ ବିନିଯୋଗ କରିବା ଅଧିକ କାଠିକର ହେଉଥିଲା । ଠିକ୍ ଏକା ରୀତିରେ, ଉଚ୍ଚ ଜାତିର ବ୍ୟକ୍ତି ପାଇଁ ବ୍ୟବସାୟରେ ନିବେଶ କରିବା ସହଜ ଥିଲା ।

ଉତ୍ତର-ମୌର୍ଯ୍ୟକାଳୀନ କାଳଖଣ୍ଡରେ ସିକ୍କା-ମୋହର ଟଙ୍କାର ଖୁବ୍ ମୁଦ୍ରଣ ଦେଖିବାକୁ ମିଳିଥିଲା । ଉତ୍ତର-ପଶ୍ଚିମ ଭାରତର ରାଜାମାନେ ଗ୍ରୀକ୍, ରୋମାନ ଏବଂ ଇରାନର ସିକ୍କା-ମୋହରର ଅନୁକରଣରେ ଟଙ୍କା ମୁଦ୍ରଣ କଲେ । ଅନ୍ୟମାନେ ମଧ୍ୟ ସ୍ଥାନୀୟ ସ୍ତରରେ ତା'ର ପ୍ରଣୟନ କଲେ । ଏହା ମୌର୍ଯ୍ୟକାଳୀନ ଆହତ-ସିକ୍କା-ମୋହର ଅପେକ୍ଷା ଉନ୍ନତମାନର ଥିଲା । ଅନ୍ୟତ୍ର ମୁଦ୍ରିତ ହୋଇଥିବା ଟଙ୍କାର ମଧ୍ୟ ଅବାଧ ପ୍ରସାରଣ ରହିଥିଲା । ଉଦାହରଣ ସ୍ୱରୂପ, ରୋମ୍ ସାମ୍ରାଜ୍ୟର ଦିନାରାଇ (dinarii) ମୁଦ୍ରାର ଭାରତରେ ବ୍ୟାପକ ପ୍ରଚଳନ ଥିଲା । ସିକ୍କା-ମୋହରର ପ୍ରସାରଣ ଯୋଗୁଁ ବସ୍ତୁ ଓ ପୁଞ୍ଜି ସମ୍ବନ୍ଧିତ ଆକଳନ (ସଟ୍ଟା) କରିବାର ସମ୍ଭାବନା ବୃଦ୍ଧି ପାଇଲା । ମାତ୍ର ମୁଦ୍ରାର ଏହି ରକମର ବର୍ଦ୍ଧିଷ୍ଣୁ ପ୍ରଚଳନ ସତ୍ତ୍ୱେ 'ବାର୍ଟର୍' ବା ବସ୍ତୁ ବିନିମୟ ବ୍ୟବସ୍ଥା ମଧ୍ୟ ଅବଲୁପ୍ତ ହୋଇ ନ ଥିଲା । ବିଶେଷକରି ଗ୍ରାମାଞ୍ଚଳରେ ଧାନ ଆଦି କୃଷିଜାତ ସାମଗ୍ରୀକୁ ବିନିମୟର ମାଧ୍ୟମ ରୂପେ ଉପଯୋଗ କରାଯାଉଥିଲା । ଭୃଗୁକଚ୍ଛରୁ ମୁଜିରିସ ପର୍ଯ୍ୟନ୍ତ ପଶ୍ଚିମ ତଟରେ ମଧ୍ୟ ସିକ୍କା-ମୋହରର ବିବିଧ ଉପଯୋଗ ରହିଥିଲା । ଏଥିରୁ ଜଣାପଡ଼େ ଯେ ସେତେବେଳେ ଭିନ୍ନ ଭିନ୍ନ ବ୍ୟାପାରିକ ଅର୍ଥବ୍ୟବସ୍ଥାର ପ୍ରଚଳନ ଥିଲା । ଏହିସବୁ ବିବିଧତାର ଅନେକ ବର୍ଣ୍ଣନ ପେରିପ୍ଲସ (Periplus)ରେ ଦେଖିବାକୁ ମିଳେ । ଅନେକ କିସମର ସିକ୍କା-ମୋହରର ସହରରେ ବ୍ୟବହାର ହେଉଥିଲା । ତନ୍ମଧ୍ୟରେ ସ୍ୱର୍ଣ୍ଣମୁଦ୍ରା (ନିଷ୍କ, ସୁବର୍ଣ୍ଣ ଏବଂ ପଳ) ରୌପ୍ୟମୁଦ୍ରା (ଶତମନ), ତାମ୍ରମୁଦ୍ରା (କାକିନୀ) ଏବଂ ସିସା (lead) ମୁଦ୍ରା ରହିଥିଲା । ସବୁଠାରୁ

ଅଧିକ ବ୍ୟବହାର ଥିଲା କର୍ଷାପଣ ବା ପଣ ମୁଦ୍ରାର । ବାଣିଜ୍ୟିକ ଉଦ୍ୟମର ଅଭିବୃଦ୍ଧି ସହିତ ମାପ-ଓଜନ ଅଧିକରୁ ଅଧିକ ବିଶଦ ଓ ଜଟିଳ ହେଲା ।

ଦକ୍ଷିଣ ଭାରତରେ ମିଳିଥିବା ଗଦା ଗଦା ରୋମାନ ସ୍ୱର୍ଣ୍ଣ ଓ ରୌପ୍ୟ ମୋହରକୁ ଦେଖିଲେ ମନେହୁଏ ତାକୁ ସୁନା-ରୁପାର କୋଷ ରୂପରେ କିମ୍ବା ଅତି ମୂଲ୍ୟବାନ ସିକ୍କା-ମୋହର ଭାବରେ ବ୍ୟବହାର କରାଯାଉଥିଲା, କାରଣ ଏହି ଅଞ୍ଚଳରେ ସୁନାର ସ୍ଥାନୀୟ ମୋହର ଉପଲବ୍ଧ ହେଉ ନ ଥିଲା । ଏହି ହେତୁ ସୁନା ଓ ରୁପା ମୋହର ଜମାକରି ରଖାଯାଉଥିଲା । ଉତ୍ତର ଓ ପଶ୍ଚିମ ଭାରତର ବିପରୀତ, ଆଉ କେତେକ ସ୍ଥାନରେ ମଧ୍ୟ ସ୍ଥାନୀୟ ମୁଦ୍ରାର ବିଶେଷ ପ୍ରସାରଣ ନ ଥିଲା । ଏସବୁ ସତ୍ତ୍ୱେ ସିକ୍କା-ମୋହର ମୁଦ୍ରା ସହ ଲୋକ ଅପରିଚିତ ନ ଥିଲେ । ଏହାର ପ୍ରମାଣ ମିଳେ ଉପଲବ୍ଧ ଆହତ ସିକ୍କା-ମୋହରରୁ ତଥା ରୋମ୍ ମୁଦ୍ରାର ଅନୁକରଣରେ ପ୍ରସ୍ତୁତ କମ୍ ମୂଲ୍ୟର ମୋହରରୁ । ଏହି ସମୟରେ ରୋମ୍ ରିପବ୍ଲିକ୍‌ର (ସାଧାରଣତନ୍ତ୍ର) ମୋହର ଅବଶ୍ୟ ମିଳିଛି । ମାତ୍ର ଅଧିକ ସଂଖ୍ୟକ ମୋହର ହେଲା ପୂର୍ବବର୍ତ୍ତୀ ସମ୍ରାଟମାନଙ୍କ ଦ୍ୱାରା ପ୍ରଚଳିତ ମୁଦ୍ରା, ଯାହା ଖ୍ରୀଷ୍ଟାବ୍ଦର ଆରମ୍ଭକାଳୀନ ସମୟର ଅଟେ । ଏହି ମୋହରର ମୂଲ୍ୟ ଅଧିକ, କାରଣ ଏଥିରେ ବ୍ୟବହୃତ ଧାତୁର ପରିମାଣ ଅଧିକ; ପୁଣି ଧାତୁ ଅଧିକ ମୂଲ୍ୟବାନ । ସ୍ଥାନୀୟ ସର୍ଦ୍ଦାରମାନେ ତାକୁ ଉପହାର ସାମଗ୍ରୀ ଭାବରେ ଅଥବା ସମ୍ଭାବିତ ପୁଞ୍ଜି ଭାବରେ ସାଇତି ରଖୁଥିଲେ ବୋଲି ଅନୁମାନ କରାଯାଏ ।

ଉତ୍ତର ଭାରତରେ ଉଚ୍ଚ-ମୂଲ୍ୟର ରୋମ୍ ସିକ୍କା-ମୋହର ଅପେକ୍ଷାକୃତ ଭାବେ କମ୍ ମିଳିଥାଏ । ଦକ୍ଷିଣରୁ ପ୍ରାପ୍ତ ଉକ୍ତ ମୋହରର ଏକଚତୁର୍ଥାଂଶ ହେବ ପ୍ରାୟ ଉତ୍ତରରେ ପ୍ରାପ୍ତ ମୋହରର ମୋଟ ପରିମାଣ । ଗୋଟାଏ ମତ ହେଲା ଯେ, ଉତ୍ତରରେ ରୋମ୍ ମୋହରକୁ ତରଳାଇ ନୂତନ ମୋହର ତିଆରି କରାଯାଉଥିଲା । ଯଦି ଏହା ଖୁବ୍ ବ୍ୟାପକ ମାତ୍ରାରେ ହୋଇଥାନ୍ତା, ତେବେ ସେ ନେଇ ଗ୍ରୀକ୍ ଓ ଲାଟିନ୍ ସୂତ୍ର-ସାମଗ୍ରୀରେ ନିଶ୍ଚିତରୂପେ ଉଲ୍ଲେଖ ରହିଥାନ୍ତା । କାରଣ ଉକ୍ତ ମୋହରର ବିଭିନ୍ନ ସ୍ଥାନରେ ବ୍ୟବହାର ହେଉଥିଲା । କୁଶାଣମାନଙ୍କ ଦ୍ୱାରା ଜାରି ହୋଇଥିବା ସ୍ୱର୍ଣ୍ଣମୁଦ୍ରାର ଓଜନ ରୋମ୍ ମୁଦ୍ରାର ଓଜନ ତୁଲ୍ୟ ଥିଲା । ଏହାଫଳରେ ରୋମାନ୍ ବାଣିଜ୍ୟ ଚାଲିଥିବା ସମସ୍ତ କ୍ଷେତ୍ରରେ ତାହା ବୈଧତା ପ୍ରାପ୍ତ ମୁଦ୍ରା ଭାବେ ବ୍ୟବହୃତ ହେଉଥିଲା । ଏକ ନିର୍ଦ୍ଦିଷ୍ଟ କିସମର ମୁଦ୍ରାର ଅନୁକରଣ କରିବା ପଛରେ ଫେଶନ କଦାପି କାରଣ ହୋଇ ନ ପାରେ । ବରଂ ବଡ଼ କାରଣ ଥିଲା ବିନିମୟର ମାଧ୍ୟମ ରୂପେ ତା'ର ସର୍ବତ୍ର ଗ୍ରହଣୀୟ ହେବା ।

## ସାଂସ୍କୃତିକ ଆଦାନ ପ୍ରଦାନ

ରୋମ୍ ନୌବାଣିଜ୍ୟରୁ ଉପଲବ୍ଧ ସିକ୍କା-ମୋହରକୁ ଦକ୍ଷିଣ ଭାରତରେ ଅଧିକ ସାଇତି ରଖାଯାଇଥିବାର ଦେଖାଯାଏ ସତ, ମାତ୍ର ଗ୍ରୀକ୍-ରୋମାନ ବିଚାର ଓ ଶିଳ୍ପ ତଥ୍ୟର ଅଧିକ ପ୍ରଭାବ ଦେଖିବାକୁ ମିଳେ ଉତ୍ତର ଭାରତରେ । ହେଲେନବାଦୀ ସଂସ୍କୃତିର ପଡ଼ୋଶୀ ରୂପେ ଉତ୍ତର-ପଶ୍ଚିମ ଭାରତ ଦୀର୍ଘକାଳ ଧରି ରହିଥିଲା । ଏହି ପ୍ରଭାବ ବାଣିଜ୍ୟିକ ସାମଗ୍ରୀର ବିନିମୟ ବୃଦ୍ଧି ପାଇବା ସହିତ ସମାନୁପାତରେ ବିଚାର ବିନିମୟ ବୃଦ୍ଧି ପାଇଲା । ଗୋଟାଏ ସ୍ତରରେ ଶବ୍ଦ, ବିଶେଷକରି ପ୍ରାଦ୍ୟୋଗିକୀ ଶବ୍ଦର ଆହରଣ ହେଲା । ଅନ୍ୟ ଏକ ସ୍ତରରେ ସୌନ୍ଦର୍ଯ୍ୟଶାସ୍ତ୍ରୀୟ ପ୍ରଭାବ ଦେଖିବାକୁ ମିଳେ । ବିଶେଷକରି ବୌଦ୍ଧ କଳା ଉପରେ ଏହି ପ୍ରଭାବ ଅନୁଭୂତ ହେଲା । ବୌଦ୍ଧଧର୍ମ ସମ୍ଭବତଃ ହେଲେନବାଦୀ ଗ୍ରୀକ୍‌ମାନଙ୍କ ମଧ୍ୟରେ ଅଧିକ ଲୋକପ୍ରିୟ ଥିଲା । ବ୍ରାହ୍ମଣୀୟ ଧର୍ମ ତୁଳନାରେ ବୌଦ୍ଧଧର୍ମ ମାଧ୍ୟମରେ ଅଧିକ ସହଜରେ ଏହା ଭାରତୀୟ ସମାଜରେ ସ୍ଥାନ ହାସଲ କରିବାର ସମ୍ଭାବନା ରହିଥିଲା । ଗ୍ରୀକ୍ ଭାଷାରେ ଲିଖିତ ମୁଦ୍ରାଲେଖରୁ ସଂକେତ ମିଳେ ଯେ, ସଂସ୍କୃତ ଓ ପ୍ରାକୃତ ଭାଷା ବ୍ୟତୀତ ଉତ୍ତର ଭାରତରେ ଗ୍ରୀକ୍ ଭାଷାର ମଧ୍ୟ ପ୍ରୟୋଗ ଜାରି ରହିଥିଲା । ଭାରତର ଲୋକକଥା ଏବଂ ପରୀକାହାଣୀ ପଶ୍ଚିମ ଆଡ଼କୁ ସଂପ୍ରସାରିତ ହେଲା । 'ପଞ୍ଚତନ୍ତ୍ର' ଆଦି କଥାସଂଗ୍ରହ ବିଭିନ୍ନ ପଡ଼ୋଶୀ ଭାଷାରେ ଅନୂଦିତ ହେଲା । ବିଭିନ୍ନ ନାମରେ ତାହା ୟୁରୋପୀୟ ସାହିତ୍ୟରେ ଦେଖିବାକୁ ମିଳିଲା । ସମ୍ଭବତଃ ଇଶପଙ୍କ ପରୀକାହାଣୀର କେତୋଟି ରୂପରେ ସେଗୁଡ଼ିକୁ ପ୍ରଚ୍ଛନ୍ନ ଭାବରେ ଦେଖିହୁଏ । ଭାରତୀୟ ସେନାର ଚାରୋଟି ପାରମ୍ପରିକ ଅଙ୍ଗକୁ (ଗଜାରୋହୀ, ରଥାରୋହୀ, ଅଶ୍ୱାରୋହୀ ଏବଂ ପଦାତିକ) ଚତୁରଙ୍ଗ ସେନା କୁହାଯାଏ । ସେହି ଚତୁରଙ୍ଗ ନାମରେ ଚାରିଜଣ ଖେଳାଳିଙ୍କ ମଧ୍ୟରେ ଏକ ଖେଳ ଚାଲେ । ଏହି ଚତୁରଙ୍ଗ ଖେଳ ଭାରତରୁ ଯାଇ ପଶ୍ଚିମ-ଏସିଆରେ ଏକ ଲୋକପ୍ରିୟ ଖେଳ ଭାବେ ପ୍ରସାରଣ ଲାଭ କଲା । ଏଥିରୁ ଆରମ୍ଭ ହେଲା ଚେସ୍ ଖେଳ ।

ଏହି ସମ୍ପର୍କର ଏକ ଦୀର୍ଘସ୍ଥାୟୀ ଫଳ ସ୍ୱରୂପ ଭୂମଧ୍ୟସାଗରୀୟ ସମାଜର ବିଭିନ୍ନ ରଚନାରେ ଭାରତର ବିସ୍ତୃତ ଉଦ୍ଧରଣ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, ଡିଓଡରସ (Diodorus)ଙ୍କ 'ଲାଇବ୍ରେରୀ ଅଫ୍ ହିଷ୍ଟ୍ରି', ଷ୍ଟ୍ରାବୋଙ୍କ ରଚିତ 'ଜିଓଗ୍ରାଫି', ଜ୍ୟେଷ୍ଠ ପ୍ଲିନୀଙ୍କ ରଚିତ 'ନେଚୁରାଲ ହିଷ୍ଟ୍ରି' ଏବଂ 'ଦ ପେରିପ୍ଲସ୍ ମେରିସ ଏରିଥ୍ରାଇ' ଏବଂ ଟଲେମୀଙ୍କ 'ଜିଓଗ୍ରାଫି'କୁ ନିଆଯାଇପାରେ । ପ୍ରଥମ ତିନୋଟି ରଚନାରେ ଭାରତ ସମ୍ବନ୍ଧରେ ବିସ୍ତୃତ ବିବରଣ ରହିଛି ବୋଲି କୁହାଯାଏ । ମାତ୍ର ଅବଶୋଷର କଥା, ସେସବୁ ମୂଳ କାବ୍ୟ ଭାରତରେ ଉପଲବ୍ଧ ନୁହେଁ । ମେଘାସ୍ଥିନିସ୍‌ଙ୍କ 'ଇଣ୍ଡିକା'ର ମଧ୍ୟ ତଦ୍ରୂପ ସ୍ଥିତି । ଯାହାକୁ

ମେଘାସ୍ଥିନିସଙ୍କ କୃତିର ଉଦ୍ଧରଣ ବୋଲି ଦାବି କରାଯାଏ, ତାହା ପ୍ରକୃତରେ 'ଇଣ୍ଡିକା'ର ସାରାଂଶ; ଉପର୍ଯ୍ୟୁକ୍ତ ତିନୋଟି ପାଠରେ ରହିଥିବା ତା'ର ଉଦ୍ଧରଣରେ ଅନେକ ପାର୍ଥକ୍ୟ ଦେଖିବାକୁ ମିଳେ । ଅନ୍ୟ ଲେଖକମାନେ ସମ୍ପୂର୍ଣ୍ଣ ନୂଆ ଭାବେ ଭାରତର ବର୍ଣ୍ଣନା କରିଛନ୍ତି । ସମ୍ବନ୍ଧିତ ବର୍ଣ୍ଣନାରେ ଆଲେକ୍‌ଜାଣ୍ଡାରଙ୍କ ଆକ୍ରମଣର କ୍ରମଶଃ ମହତ୍ତ୍ୱ ଊଣା ହୋଇଥିବାର ଦେଖାଯାଏ । ଏଣିକି ଗ୍ରୀକ୍-ରୋମ୍ ଜଗତରେ ଭାରତ ଏକ ବିସ୍ମୟର ଦେଶ ରୂପରେ ପରିଚିତି ପାଇଲା । ତା' ସହିତ ଏହା ବାଣିଜ୍ୟର ପ୍ରଚୁର ସମ୍ଭାବନା ଥିବା ଦେଶ ଭାବରେ ମଧ୍ୟ ପ୍ରସିଦ୍ଧି ଅର୍ଜନ କଲା । ୟୁରୋପୀୟ ବିଦ୍ୱାନମାନେ ଭାରତୀୟ ଜ୍ଞାନ ପରମ୍ପରାକୁ ନେଇ ଆଗ୍ରହ ପ୍ରକାଶ କଲେ । ମାତ୍ର ଭାରତ ସହିତ ପରିଚୟ ବୃଦ୍ଧି ପାଇବା ସତ୍ତ୍ୱେ 'ଇଣ୍ଡିକା'ରେ ରହିଥିବା ଭାରତ ସମ୍ବନ୍ଧୀୟ ଭ୍ରାନ୍ତିକୁ ସୁଧାରିବା ଲାଗି ସେମାନଙ୍କ ପକ୍ଷରୁ କୌଣସି ପ୍ରୟାସ କରାଗଲା ନାହିଁ । 'ଇଣ୍ଡିକା'ରେ ମେଘାସ୍ଥିନିସ ଭାରତୀୟ ସମାଜକୁ ଯେଉଁ ସାତ ଭାଗରେ ବିଭକ୍ତ କରିଥିଲେ, ତାକୁ ଏହି ଲେଖକମାନେ ଅକାଟ୍ୟ ବୋଲି ମାନି ନେଇଥିଲେ ।

ଅଧିକ ପ୍ରତ୍ୟକ୍ଷ ଓ ସ୍ପଷ୍ଟ ସମ୍ବନ୍ଧ ଦେଖିବାକୁ ମିଳିଲା କଳା କ୍ଷେତ୍ରରେ । ଏହାର ଫଳସ୍ୱରୂପ, ଆଫଗାନିସ୍ତାନ ଏବଂ ଉତ୍ତର-ପଶ୍ଚିମ ଭାରତରେ ଗାନ୍ଧାର କଳାର ଉଦୟ ହେଲା । ବିଭିନ୍ନ କଳାର ମିଶ୍ରଣରୁ ଗାନ୍ଧାର କଳାର ବିକାଶ ଘଟିଲା । ମିଶ୍ରଣ ହୋଇଥିବା କଳା ମଧ୍ୟରେ ଅନ୍ୟତମ ଥିଲା ଆଲେକ୍‌ଜାଣ୍ଡ୍ରିଆର ଗ୍ରୀକ୍-ରୋମାନ୍ ଶୈଳୀ । ବ୍ରୋଞ୍ଜ ମୂର୍ତ୍ତିକଳାର ସ୍ଥାପତ୍ୟ ସେଠାରୁ ଏସୀୟ ବାଣିଜ୍ୟ ପଥରେ ଆସି ହେଲେନବାଦୀ ଏବଂ ଭାରତୀୟ ମୂର୍ତ୍ତିକଳାକୁ ପ୍ରଭାବିତ କଲା । ଗାନ୍ଧାର କଳାର ଉଦୟ ସହିତ ବୌଦ୍ଧଧର୍ମରେ ଲୋକୋତ୍ତର ପ୍ରତିମା ଓ ସ୍ୱର୍ଗର କଳ୍ପନା ଦେଖିବାକୁ ମିଳିଲା । ମୂର୍ତ୍ତିକଳା ତଥା ଚିତ୍ରକଳାର ଅଭିବ୍ୟକ୍ତି ପାଇଁ ଏହି ତତ୍ତ୍ୱ ଖୁବ୍ ଉପଯୁକ୍ତ ସିଦ୍ଧ ହେଲା । ଗାନ୍ଧାର କଳାକୁ ପ୍ରଭାବିତ କରୁଥିବା ବିବିଧ କଳାତ୍ମକ ଶୈଳୀକୁ ଗାନ୍ଧାରକଳାର ସମରୂପ ଶୈଳୀ ରୂପରେ ନ ଦେଖି ସେଗୁଡ଼ିକର ବିବିଧତାକୁ ଦୃଷ୍ଟି ଦିଆଯିବା କଥା ଏବଂ ସେହି ଅନୁସାରେ ଉକ୍ତ କଳାଗୁଡ଼ିକର ଉପବିଭାଜନ କରାଯିବା କଥା ।

ଭାରତୀୟ ବିଚାରର ଛାପ କେତେକ ପଶ୍ଚିମ ଏସୀୟ ଧାର୍ମିକ ବିଶ୍ୱାସରେ ମଧ୍ୟ ପରିଲକ୍ଷିତ ହୋଇଥାଏ । ବିଶେଷକରି ମେନିକିୟନ (Manichaeans), ନୋଷ୍ଟିକ (Gnostics) ବା ଗୂଢ଼ଜ୍ଞାନବାଦୀ ଏବଂ ନବ-ପ୍ଲାଟୋବାଦୀ (Neo-Platonists)ଙ୍କ ସିଦ୍ଧାନ୍ତରେ ଏହା ଦେଖିବାକୁ ମିଳିଥାଏ । ଏମାନଙ୍କ ମଧ୍ୟରୁ ନବ-ପ୍ଲାଟୋବାଦୀମାନେ ୟୁରୋପ ଇତିହାସରେ ଦୀର୍ଘକାଳ ଧରି ମହତ୍ତ୍ୱ ଲାଭ କରିଥିଲେ । ସେମାନଙ୍କ ସିଦ୍ଧାନ୍ତକୁ ଇହୁଦି-ଖ୍ରୀଷ୍ଟିଆନ ପରମ୍ପରାର ବିକଳ୍ପ ରୂପେ ଦେଖାଯାଉଥିଲା । ଉକ୍ତ ସିଦ୍ଧାନ୍ତର କେତେକ ଉପାଦାନକୁ

ଏସୀୟ ଚିନ୍ତନ ତଥା ଆଚରଣର ପ୍ରତିଫଳନ ବୋଲି କୁହାଯିବ । ଯୀଶୁଖ୍ରୀଷ୍ଟଙ୍କ ଜୀବନର କେତେକ ଅନୁଭାଗ ସହିତ ଗୌତମ ବୁଦ୍ଧଙ୍କ ଜୀବନ ଚରିତରେ ସାମଞ୍ଜସ୍ୟ ରହିଛି । ଉଦାହରଣ ସ୍ୱରୂପ, ଅକାମ ଗର୍ଭାଧାନର ଅବଧାରଣା ଏବଂ ସୈତାନର ପ୍ରଲୋଭନ ଉଭୟ ବୁଦ୍ଧ ଓ ଯୀଶୁଙ୍କ ଜନ୍ମକୁ ନେଇ ରହିଥିବା ବିଶ୍ୱାସରେ ଦେଖିବାକୁ ମିଳେ । ଅପ୍ରତ୍ୟକ୍ଷ ରୂପରେ ବୌଦ୍ଧଧର୍ମର ପ୍ରଭାବ ଖ୍ରୀଷ୍ଟ ଧାରଣାରେ ରହିଛି ବୋଲି କହିଲେ ସମ୍ଭବତଃ ଅସ୍ୱାଭାବିକ ହେବ ନାହିଁ । ଏସେନିସ ସଂପ୍ରଦାୟ (Essenes)ର କେତେକ ଉପାସନାରୁ ଜଣାପଡ଼େ ଯେ ଉକ୍ତ ସଂପ୍ରଦାୟର ଲୋକ ଭାରତୀୟ ବିଶ୍ୱାସ ଓ ଆଚରଣ ସମ୍ବନ୍ଧରେ କିଛିଟା ପରିଚିତ ଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଯୀଶୁଖ୍ରୀଷ୍ଟ ମୂଳତଃ ଏସେନିସ ସଂପ୍ରଦାୟର ଥିଲେ ବୋଲି କୁହାଯାଏ । ଏହି କାଳଖଣ୍ଡର ଆଉ କେତୋଟି ଆଚାର-ବିଚାରର ସାଦୃଶ୍ୟ ପୂର୍ବ-ଭୂମଧ୍ୟସାଗରୀୟ କ୍ଷେତ୍ରରେ ମଧ୍ୟ ଦେଖିବାକୁ ମିଳିଥାଏ । ତନ୍ମଧ୍ୟରେ ସନ୍ୟାସ (ଯାହାକୁ ଆଲେକ୍‌ଜାଣ୍ଡ୍ରିଆର ପଲ୍ ଏବଂ ସେଣ୍ଟ୍ ଏଣ୍ଟୋନୀ ଗ୍ରହଣ କରିଥିଲେ ।) ସ୍ମାରକ-ଉପାସନା ଏବଂ ଜପାମାଳାର ବ୍ୟବହାର ଅନ୍ୟତମ ।

ଦୂତ ମାଧ୍ୟମରେ ସ୍ଥାପିତ ଯୋଗାଯୋଗ ଅଧିକ ପ୍ରତ୍ୟକ୍ଷ ସିଦ୍ଧ ହେଲା । ଏହିଭଳି ଜଣେ ଦୂତଙ୍କୁ ଖ୍ରୀ.ପୂ. 25 ରେ ଭାରତରୁ ରୋମକୁ ପ୍ରେରଣ କରାଯାଇଥିଲା । ସେ ଗୁଜରାଟର ଭୃଗୁକଚ୍ଛ ବନ୍ଦରରୁ ଯାତ୍ରା କରିଥିଲେ ବୋଲି କୁହାଯାଏ । ଭାରତୀୟ ରାଜା ଏହି ଦୂତଙ୍କ ହାତରେ ରୋମ୍ ସମ୍ରାଟଙ୍କ ପାଇଁ ଆବଶ୍ୟକ ସାମଗ୍ରୀ ରୂପରେ ଉଭୟ ମଣିଷ ଓ ପଶୁଙ୍କୁ ପ୍ରେରଣ କରିଥିଲେ । ପଶୁଙ୍କ ମଧ୍ୟରେ ଥିଲେ ବାଘ, ବଣ୍ୟମଇଁଷି, ସାପ ଓ କଚ୍ଛପ ଏବଂ ମଣିଷଙ୍କ ମଧ୍ୟରେ ଥିଲେ ଜଣେ ସାଧୁ ଏବଂ ଆଉ ଜଣେ ହାତ ନ ଥିବା ବାଳକ । ଉକ୍ତ ବାଳକଟି କୁଆଡ଼େ ନିଜ ଗୋଡ଼ ସାହାଯ୍ୟରେ ଧନୁତୀର ଚାଳନା କରିପାରୁଥିଲା । ଏହି ଶାନ୍ତିଦୂତ ଦଳକୁ ରୋମ୍‌ରେ ପହଞ୍ଚିବାକୁ ଚାରିବର୍ଷ ସମୟ ଲାଗିଥିଲା । ଏହାଦ୍ୱାରା ଭାରତ ଏକ ଚମତ୍କାର ଓ ମହାନ୍ ଦେଶ ବୋଲି ଥିବା ୟୁରୋପୀୟ ଧାରଣାକୁ ଅଧିକ ବଳ ମିଳିଥିବ ବୋଲି ମନେକରାଯାଏ ।

ୟୁରୋପ ସହିତ କେବଳ ଭାରତର ପ୍ରଭାବୋଦ୍ଦିପକ ଯୋଗାଯୋଗ ସ୍ଥାପିତ ହୋଇ ନ ଥିଲା । ତା' ସହିତ ଏହି କାଳରେ ଚୀନ୍ ସହ ମଧ୍ୟ ଭାରତର ସମ୍ବନ୍ଧ ପ୍ରତିଷ୍ଠା ହୋଇଥିଲା ଏବଂ ଦକ୍ଷିଣ-ପୂର୍ବ ଏସିଆରେ ଭାରତୀୟ ସଂସ୍କୃତିର ପ୍ରସାରଣ ଦେଖିବାକୁ ମିଳିଥିଲା । ଏହି ସମ୍ବନ୍ଧ ମୂଳରେ ମାଧ୍ୟମ ଥିଲା ବାଣିଜ୍ୟ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀରେ ଚୀନ୍‌ରେ ପ୍ରସ୍ତୁତ କେତେକ ସାମଗ୍ରୀର ଭାରତରେ ବ୍ୟବହାର ଦେଖିବାକୁ ମିଳିଲା । ଉକ୍ତ ସାମଗ୍ରୀଗୁଡ଼ିକର ନାମରେ 'ଚୀନ୍'ର ଉଲ୍ଲେଖ ରହିଥିଲା । ଯଥା : ଚୀନା ପଟ୍ଟା (ଚୀନୀ

ବସ୍ତ୍ର) ଏବଂ କିଚକ (ବାଉଁଶ) । ଚୀନୀ କି-ଚୋକ (Ki-chok)ରୁ କିଚକ ଶବ୍ଦ ଆନୀତ । ପ୍ରଥମ ଶତାବ୍ଦୀରେ ପ୍ରଥମ ବୌଦ୍ଧ ପ୍ରଚାରକ ଗୋଷ୍ଠୀ ଯେତେବେଳେ ଚୀନ୍‌ର ଲୋୟାଙ୍ଗଠାରେ ପ୍ରସିଦ୍ଧ ଶ୍ୱେତାଶ୍ୱ ବିହାରର (White Horse Monastery) ସ୍ଥାପନା କଲେ, ସେତେବେଳେ ସମ୍ବନ୍ଧ ସାମାନ୍ୟ ଭିନ୍ନ ପ୍ରକାରର ଥିଲା । ଚୀନ୍‌ରେ ବୌଦ୍ଧଧର୍ମର ପ୍ରଚାର ଆରମ୍ଭ ହେବାକୁ ଆହୁରି କିଛି ସମୟ ଲାଗିଲା । ୟାରକନ୍ଦ, ଖୋତାନ, କାଶଗର, ତାସକେଣ୍ଟ, ତୁର୍‌ଫାନ, ମୀରାନ, କୁଚା, କ୍ୱାରାଶର ଓ ତୁନହ୍ୱାଙ୍ଗ ଆଦି ମଧ୍ୟ-ଏସିଆର ମରୂଦ୍ୟାନଗୁଡ଼ିକ ଯେତେବେଳେ ସହର ଭାବରେ ବିକଶିତ ହେଲେ, ସେଠାରେ ବିହାର ଓ ସ୍ତୁପମାନ ସ୍ଥାପିତ ହେଲା ତଥା ବଣିକମାନଙ୍କର ରହଣିସ୍ଥଳ ନିର୍ମିତ ହେଲା । ଉକ୍ତ ସହରଗୁଡ଼ିକର ସାଜସଜ୍ଜା ପାଇଁ ଭାରତରୁ ମୂଲ୍ୟବାନ ପଥର ଏବଂ ଚୀନ୍‌ରୁ ରେଶମ ବସ୍ତ୍ରର ଲୋଡ଼ା ପଡ଼ିଲା । ଏହାର ଫଳସ୍ୱରୂପ ବ୍ୟାପାରରେ ଅଭିବୃଦ୍ଧି ଘଟିଲା । ଭାରତରୁ ପୋଥି, ଚିତ୍ରକଳା ଏବଂ କର୍ମକାଣ୍ଡୀ ବସ୍ତୁ ମଧ୍ୟ ଗଲା । ଅନେକ ଶତାବ୍ଦୀ ଧରି ଏହି ବୌଦ୍ଧବିହାରଗୁଡ଼ିକ ଚୀନ୍ ଓ ଭାରତରେ ବୌଦ୍ଧଧର୍ମର ବିକାଶ ନିମିତ୍ତ ନିବିଡ଼ ଭାବରେ କାର୍ଯ୍ୟ କଲେ । ଚୀନୀ ଭାଷା ଏବଂ ମଧ୍ୟ-ଏସିଆର ଭାଷାମାନଙ୍କରେ ଲିଖିତ ବୌଦ୍ଧଗ୍ରନ୍ଥଗୁଡ଼ିକର ଅନୁବାଦରୁ ଉତ୍ତରରେ ବ୍ୟାପ୍ତ ବୌଦ୍ଧଧର୍ମର ଇତିହାସ ସମ୍ବନ୍ଧରେ ଅନେକ ନୂଆ ଜ୍ଞାନ ପ୍ରାପ୍ତ ହୋଇଛି । ଏହି ବୌଦ୍ଧସ୍ଥଳୀମାନଙ୍କରେ ନୂଆ ନୂଆ ପୋଥିମାନ ମିଳିବାରେ ଲାଗିଛି । ଚୀନ୍‌ର ବୌଦ୍ଧମାନେ ବୌଦ୍ଧଧର୍ମ ସମ୍ପର୍କରେ ଅଧିକ ଜ୍ଞାନ ଅର୍ଜନ ପାଇଁ ମଧ୍ୟ-ଏସିଆକୁ ଯାତ୍ରା କରୁଥିଲେ । ଅଧିକ ଦୁଃସାହସୀ ବୌଦ୍ଧଧର୍ମୀମାନେ ଭାରତକୁ କଠିନ ଯାତ୍ରା କରି ବିଭିନ୍ନ ବିହାରରେ ସ୍ଥିତ ପାଠର ଅଧ୍ୟୟନ କଲେ ।

ନିକଟରେ ପ୍ରାପ୍ତ ବହୁ ମୂଲ୍ୟବାନ ବୌଦ୍ଧ ସ୍ରୋତ-ସାମଗ୍ରୀ ମଧ୍ୟରେ ଗାନ୍ଧାରରୁ ମିଳିଥିବା ବୌଦ୍ଧ 'ସ୍କ୍ରଲ୍' (Scroll) ଅନ୍ୟତମ । ବର୍ତ୍ତମାନ ଏହା 'ବ୍ରିଟିଶ ଲାଇବ୍ରେରୀ'ରେ ଗଚ୍ଛିତ ଅଛି । ଭୋଜପତ୍ରରେ ଲିଖିତ 'ସ୍କ୍ରଲ' ମାଟିପାତ୍ରରେ ଗଚ୍ଛିତ ରହିଛି । ତାକୁ ଅତି ସାବଧାନତାର ସହିତ ଖୋଲାଯାଏ, ପଠନ କରାଯାଏ ଏବଂ ସଂରକ୍ଷଣ କରି ରଖାଯାଏ । ଏହି ପୋଥି ପ୍ରାକୃତର ଗାନ୍ଧାରୀ ବୋଲିରେ ଏବଂ ଖରୋଷ୍ଠୀ ଲିପିରେ ଲିଖିତ । ଏଥିରୁ ଏକ ଦୃଢ଼ ଆଞ୍ଚଳିକ ପରମ୍ପରା ଅଭିବ୍ୟକ୍ତ ହୁଏ । ଉତ୍ତର ଭାରତରୁ ପ୍ରାପ୍ତ ମିଶ୍ରିତ ସଂସ୍କୃତରେ ଲିଖିତ ବୌଦ୍ଧକଥା ଏବଂ ପାଲିରେ ଲିଖିତ ଦକ୍ଷିଣରେ ପ୍ରସାରିତ ଥେରବାଦୀ ବୌଦ୍ଧ ପରମ୍ପରାର ଏକ ବିକଳ୍ପ ରୂପରେ ଉକ୍ତ ବୌଦ୍ଧ ପାଠଗୁଡ଼ିକୁ ଦେଖାଯାଇ ପାରିବ । ପ୍ରଥମ ଶତାବ୍ଦୀର ଏହି ରଚନାମାନ ଗାନ୍ଧାରର ହଡ଼୍‌ଡ଼ା ପୁସ୍ତକାଳୟରେ ରଖାଯାଇଥିଲା । ଏହା ହେଲା ବୌଦ୍ଧ ଧର୍ମଗ୍ରନ୍ଥର ଅଂଶବିଶେଷ । ଏଥିରେ ବୌଦ୍ଧଧର୍ମ ସମ୍ବନ୍ଧିତ କେତେକ କଥା ଓ କାହାଣୀ

ରହିଛି । ବୌଦ୍ଧଧର୍ମର ଧର୍ମଗୁପ୍ତକ ସଂପ୍ରଦାୟ ସହ ଏସବୁ ରଚନାର ସମ୍ବନ୍ଧ ରହିଛି । ଧର୍ମଗୁପ୍ତକ ସଂପ୍ରଦାୟର ସିଦ୍ଧାନ୍ତ ଅବଶ୍ୟ ମହାଯାନ ସିଦ୍ଧାନ୍ତକୁ ସ୍ୱୀକାର କରେ ନାହିଁ । ତା' ସତ୍ତ୍ୱେ ଏହା ମହାଯାନ ସିଦ୍ଧାନ୍ତର କେତୋଟି ଉପାଦାନକୁ ପାଳନ କରେ । ଉଦାହରଣ ସ୍ୱରୂପ, ମୈତ୍ରେୟଙ୍କ ଅବତାର ଗ୍ରହଣ କରିବା କଥାକୁ ଏହା ବିଶ୍ୱାସ କରେ । ବୌଦ୍ଧ ସ୍କ୍ରଲ୍‌କୁ ମାଟିପାତ୍ରରେ ଗୁନ୍ଧି ଭର୍ତ୍ତି କରାଯାଇଥିବାରୁ ମନେହୁଏ, ଉକ୍ତ 'ସ୍କ୍ରଲ୍'ର ଆଉ ଆବଶ୍ୟକତା ନ ଥିଲା ବୋଲି ମନେକରାଯାଉଥିଲା । ବୋଧହୁଏ ଅନ୍ୟ ଭୋଜପତ୍ରରେ ତାକୁ ନକଲ କରିବା ପରେ ମାଟିପାତ୍ରରେ ଭର୍ତ୍ତିକରି ରଖାଯାଇଥିଲା, କାରଣ ଏଭଳି ଗ୍ରନ୍ଥକୁ ଫିଙ୍ଗି ଦିଆଯାଏନି । ଏଗୁଡ଼ିକ ହେଲା ବୌଦ୍ଧଧର୍ମର ଏକ ସ୍ୱରୂପ ଏବଂ ବୌଦ୍ଧଧର୍ମ ସମ୍ବନ୍ଧିତ ପୋଥି । ତାହା ମଧ୍ୟ-ଏସିଆକୁ ସଂପ୍ରସାରିତ ହୋଇଥିଲା, ଯେଉଁଠି ବୌଦ୍ଧଧର୍ମାବଲମ୍ବୀଙ୍କ ମଧ୍ୟରେ ଗାନ୍ଧାରୀ ପ୍ରାକୃତର ବ୍ୟବହାର ରହିଥିଲା ।

ମସଲାର ଅନ୍ୱେଷଣ ପ୍ରକ୍ରିୟାରେ ଦକ୍ଷିଣ-ପୂର୍ବ ଏସିଆର ବନ୍ଦରମାନଙ୍କୁ ଭାରତର ନୌଯାତ୍ରା ଚାଲିଲା । ବଙ୍ଗୋପସାଗରରୁ ବନ୍ଦର ଦେଇ ସହଜରେ ପହଞ୍ଚି ପାରିବା ଭଳି ଦକ୍ଷିଣ-ପୂର୍ବ ଏସିଆର କେତେକ ସ୍ଥାନମାନଙ୍କରେ ବ୍ରାହ୍ମୀରେ ଲିଖିତ ମୃଦ୍‌ଭାଣ୍ଡ ଓ ରତ୍ନପଥର ମଣି ସବୁ ପ୍ରାପ୍ତ ହୋଇଛି । ଉକ୍ତ ସ୍ଥାନଗୁଡ଼ିକ ମଧ୍ୟରେ ଇରାବତୀ ନଦୀର ଅବବାହିକା, ମାଳୟ ପ୍ରାୟଦ୍ୱୀପ ଏବଂ ସୁଦୂରବର୍ତ୍ତୀ ମେକଂ ଅବବାହିକା ସ୍ଥିତ ଓସିୟୋ ଏବଂ ବାଲିଦ୍ୱୀପ ଅନ୍ୟତମ । ଏହି ସମ୍ବନ୍ଧର ଫଳସ୍ୱରୂପ, ଗାଙ୍ଗେୟ ଅବବାହିକା ନିକଟସ୍ଥ ମହାସ୍ଥାନ ଏବଂ ଚନ୍ଦ୍ରକେତୁଗଡ଼ ସହର ଖୁବ୍ ସଂବୃଦ୍ଧି ସମ୍ପନ୍ନ ହୋଇଥିଲା । ଠିକ୍ ସେହିଭଳି ପୂର୍ବ ତଟର କେତୋଟି ସହରରେ ସଂବୃଦ୍ଧି ଦେଖିବାକୁ ମିଳିଥିଲା । ଦକ୍ଷିଣ-ପୂର୍ବ ଏସିଆର ପ୍ରଚଳିତ କିମ୍ବଦନ୍ତୀମାନଙ୍କରେ ସେଠାକାର ରାଜ୍ୟଗୁଡ଼ିକର ଉତ୍ପତ୍ତିରେ ଭାରତର ରାଜା ଓ ବଣିକ୍‌ମାନଙ୍କର ଉଦ୍ଧରଣ ରହିଥାଏ । କୌଣ୍ଡିନୀୟ ନାମକ ଜଣେ ବ୍ରାହ୍ମଣ ଭାରତରୁ ଯାଇ କାମ୍ବୋଡ଼ିଆର ରାଜକୁମାରୀଙ୍କୁ ବିବାହ କରିଥିଲେ ଏବଂ ସେଠାରେ ଭାରତୀୟ ସଂସ୍କୃତିର ପ୍ରତିଷ୍ଠା କରିଥିଲେ ବୋଲି କୁହାଯାଏ । ଏହି କଥାରେ ସାଂସ୍କୃତିକ ବିସ୍ତୃତିକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରାଯାଇଛି । କଳିଙ୍ଗର ବଣିକମାନେ ବାଣିଜ୍ୟ କରିବାକୁ ଯାଇ ମ୍ୟାନ୍‌ମାରର ଇରାବତୀ ଅବବାହିକାରେ ବସତି ସ୍ଥାପନ କରିଥିଲେ ବୋଲି କୁହାଯାଏ । ଭାରତର ସାହିତ୍ୟରେ ଏହିସବୁ କ୍ଷେତ୍ରରେ ଭାରତୀୟମାନଙ୍କର ଯାତ୍ରା ବୃତ୍ତାନ୍ତ ଦେଖିବାକୁ ମିଳେ । କେତେକ ବୃତ୍ତାନ୍ତ ବିଚିତ୍ର ଓ କାଳ୍ପନିକ ହୋଇଥିବାର ମନେକରାଯାଏ । ସେଠାକାର ସ୍ଥାନୀୟ ଆଖ୍ୟାନରେ ଦକ୍ଷିଣ-ପୂର୍ବ ଏସିଆରେ ରାଜ୍ୟ ଗଠନ ମୂଳରେ ଭାରତୀୟ ବଣିକ ଓ ଭାରତୀୟ କର୍ମକାଣ୍ଡୀଙ୍କର ଯୋଗଦାନ ରହିଥିବା ଦେଖାଯାଏ । ଏହି ପ୍ରକ୍ରିୟାରେ ସ୍ଥାନୀୟ ସ୍ତରରେ

କେଉଁ ଗୋଷ୍ଠୀ ସହଯୋଗ କରିଥିଲେ, ତାକୁ ଚିହ୍ନଟ କରିବା ନିମିତ୍ତ ଅନେକ ଆଲୋଚନା ହୋଇଛି । ସମ୍ଭବତଃ ସେଠାରେ ମଧ୍ୟ ସର୍ଦ୍ଦାରତନ୍ତ୍ରରୁ ରାଜ୍ୟତନ୍ତ୍ରକୁ ପରିବର୍ତ୍ତନ ହେଲା ଏବଂ ଭାରତୀୟମାନଙ୍କର ଉପସ୍ଥିତି ଯୋଗୁଁ ଭାରତୀୟ ରୀତିନୀତି ଓ ବିଶ୍ୱାସର ତର୍ହିରେ ସମାୟୋଜନ ହେଲା । ଦକ୍ଷିଣ-ପୂର୍ବ ଏସିଆର ଅନେକ ସ୍ଥାନର ନାମ ଆଗରେ 'ସୁବର୍ଣ୍ଣ' ରହିଥିବାରୁ ମନେହୁଏ ଭାରତୀୟମାନଙ୍କର ଅବଧାରଣାରେ ଦକ୍ଷିଣ-ପୂର୍ବ ଏସିଆ ଥିଲା ବାଣିଜ୍ୟରୁ ପ୍ରଚୁର ଲାଭ ପ୍ରଦାନକାରୀ କ୍ଷେତ୍ର ।

## ଶିକ୍ଷା, ସାହିତ୍ୟ ଏବଂ ଜ୍ଞାନ-ବିଜ୍ଞାନ

ଅର୍ଥବ୍ୟବସ୍ଥାରେ ରହିଥିବା ଭୂମିକାକୁ ବାଦ୍‌ଦେଲେ, ଶ୍ରେଣୀମାନେ ଶିକ୍ଷାରେ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଦେଇଥିଲେ । ଅବଶ୍ୟ ସେତେବେଳେ ମଧ୍ୟ 'ଔପଚାରିକ' ଶିକ୍ଷା ବ୍ରାହ୍ମଣମାନଙ୍କ ହାତରେ ନିୟନ୍ତ୍ରିତ ହୋଇ ରହିଥିଲା । ବ୍ରାହ୍ମଣମାନଙ୍କ ବ୍ୟତୀତ ବୌଦ୍ଧଭିକ୍ଷୁ ଏବଂ ଅନ୍ୟାନ୍ୟ ବିହାରଗୁଡ଼ିକ ହାତରେ ମଧ୍ୟ ଶିକ୍ଷାର ନିୟନ୍ତ୍ରଣ ରହିଥିଲା । ଏକ ନିର୍ଦ୍ଦିଷ୍ଟ ହସ୍ତଶିଳ୍ପର କାରିଗରମାନଙ୍କ ପାଇଁ କେବଳ ଶ୍ରେଣୀର ଦ୍ୱାର ଉନ୍ମୁକ୍ତ ଥିଲା । ଏହାଫଳରେ ପ୍ରାଦ୍ୟୋଗିକୀ ଶିକ୍ଷାର କେନ୍ଦ୍ରଭାବେ ଶ୍ରେଣୀ ପରିଣତ ହେଲା । ଖନନ, ଧାତୁବିଜ୍ଞାନ, ବସ୍ତ୍ର ବୁଣିବା, କପଡ଼ା ରଙ୍ଗ କରିବା, ବଢ଼େଇ କାମ ଆଦି ବିଦ୍ୟାକୁ ଯଥୋଚିତ ଶ୍ରେଣୀ ପରିଚାଳନା କରୁଥିଲା । ଏହାର ସୁଫଳ ଦେଖିବାକୁ ମିଳିଥିଲା ସିକ୍କା-ମୋହର ମୁଦ୍ରାର ପ୍ରଣୟନରେ । ଠିକ୍ ସେହିଭଳି ପଥର-କଟାରେ, ପଥରକୁ ଚିକ୍କଣ କରିବାରେ ତଥା ଖୋଦନ କରିବାରେ ସେବେଳର କାରିଗରକୁ ପୂର୍ଣ୍ଣ ସଫଳତା ପ୍ରାୟ ମିଳିଥିଲା । ଇଞ୍ଜିନିୟରିଂ ଦକ୍ଷତା ବନ୍ଧ ଓ ଜଳାଶୟ ନିର୍ମାଣରେ ସୁସ୍ପଷ୍ଟ ହୋଇଥିଲା । ଆଜିପର୍ଯ୍ୟନ୍ତ ତା'ର ଅବଶେଷ ରହିଛି । ଏହା ସେବେଳର ଦକ୍ଷତାକୁ ଦର୍ଶାଏ । ଆରମ୍ଭରେ ପୂଜାବେଦୀ ଓ ଯଜ୍ଞକୁଣ୍ଡ ନିର୍ମାଣରେ ଜ୍ୟାମିତିର ବ୍ୟବହାର ହେଉଥିଲା । ପରେ ଅଧିକ ଜଟିଳ ସ୍ଥାପତ୍ୟମାନଙ୍କରେ ମଧ୍ୟ ତା'ର ଉପଯୋଗ ହେଲା । ପ୍ରଥମେ କାଠ ନିର୍ମିତ ଘର ତିଆରି କରାଯାଉଥିଲା । ପରେ ନିର୍ମାଣରେ ପଥରର ବ୍ୟବହାର ହେଲା, ଯେଉଁଥିପାଇଁ କି ଇଞ୍ଜିନିୟରିଂ ଏବଂ ସ୍ଥାପତ୍ୟର ନୂତନ ସମାବେଶର ଆବଶ୍ୟକତା ପଡ଼ିଲା । ଏହି ସମୟରେ ଧାର୍ମିକ ସ୍ଥଳୀର ନିର୍ମାଣ ଖୁବ୍ ଅଧିକ ମାତ୍ରାରେ ନିର୍ମାଣ ଦକ୍ଷତା ଓ ବିବିଧତାକୁ ସାହାଯ୍ୟ କରିଥିଲା ବୋଲି ଧାରଣା ସୃଷ୍ଟିହୁଏ ନାହିଁ, କାରଣ ବୌଦ୍ଧମାନେ ପ୍ରବେଶଦ୍ୱାର ଏବଂ ବାଡ଼ ପରିବେଷ୍ଟିତ ସ୍ତୁପ ଅଥବା ପାହାଡ଼ରେ ନିର୍ମିତ ଗୁମ୍ଫା ଘରେ ଆଶ୍ରୟ ନେଇ ସନ୍ତୁଷ୍ଟ ରହୁଥିଲେ । ଗୃହ ସ୍ଥାପତ୍ୟର ଅଭିବୃଦ୍ଧି ହେବାପରେ ହିଁ ସ୍ୱତନ୍ତ୍ରଭାବେ ନିର୍ମିତ ବିହାରମାନ ଦେଖିବାକୁ ମିଳିଥିଲା ।

ବିଶ୍ୱର ଅନ୍ୟାନ୍ୟ ଅଞ୍ଚଳରେ ଘଟିତ ହେଉଥିବା ପରିଘଟନା ସହିତ ପରିଚୟ ରହିଥିବାରୁ ଲୋକଙ୍କୁ ଜ୍ଞାନପ୍ରାପ୍ତ ହେଲା । ଏହାର ପ୍ରତିଫଳନ ଜ୍ୟୋତିର୍ବିଜ୍ଞାନ, ଗଣିତ ଏବଂ ଆୟୁର୍ବିଜ୍ଞାନରେ ଦେଖିବାକୁ ମିଳିଲା । ଗଭୀର ସମୁଦ୍ର ଯାତ୍ରା ପାଇଁ ତାରା ଓ ନକ୍ଷତ୍ରର ବସ୍ତୁନିଷ୍ଠ ଅଧ୍ୟୟନର ଆବଶ୍ୟକତା ପଡ଼ିଲା । ଗାଣିତିକ ଅଧ୍ୟୟନ ଓ ଜାତକଦେଖାରୁ ମଧ୍ୟ ଜ୍ୟୋତିର୍ବିଦ୍ୟାକୁ ପ୍ରୋତ୍ସାହନ ମିଳିଲା । ପଶ୍ଚିମ-ଏସିଆ ସହିତ ଭାରତର ଯୋଗାଯୋଗ ବୃଦ୍ଧି ପାଇବାରୁ ଜ୍ୟୋତିର୍ବିଜ୍ଞାନ ଓ ଜାତକ ସମ୍ବନ୍ଧୀୟ ଜ୍ଞାନର ବିନିମୟ ହେବାରେ ଲାଗିଲା । ଏଥିରେ ଆଲେକ୍‌ଜାଣ୍ଡ୍ରିଆରୁ ପ୍ରାପ୍ତ କେତେକ ପୋଥି ଖୁବ୍ କାମରେ ଆସିଲା । ଗ୍ରୀକ୍‌ରୁ ସଂସ୍କୃତକୁ ଅନୁଦିତ ହୋଇଥିବା ପୋଥି 'ୟୁଜିଧ୍ୱଜ' ଥିଲା ଏହି ଧରଣର ଏକ ପୁସ୍ତକ । ଜ୍ୟୋତିଷଶାସ୍ତ୍ର ସମ୍ବନ୍ଧୀୟ ହେଲେନବାଦୀ ବିଚାରକୁ ଭାରତରେ ବେଶ୍ ଲୋକପ୍ରିୟତା ମିଳିଥିଲା । ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ଭାରତରେ ବ୍ୟବହୃତ ହେଉଥିବା ପୂର୍ବବର୍ତ୍ତୀ ଜ୍ଞାନ ବ୍ୟବସ୍ଥାକୁ ଏଣିକି ଯଥେଷ୍ଟ ପ୍ରୋତ୍ସାହନ ମିଳୁଥିଲା । ଏହି ସମୟରେ ଜ୍ୟୋତିର୍ବିଜ୍ଞାନୀ ଓ ବ୍ରହ୍ମାଣ୍ଡ ବିଜ୍ଞାନୀ (Cosmologists)ମାନଙ୍କ ମଧ୍ୟରେ କାଳକୁ ନେଇ ରହିଥିବା ତତ୍ତ୍ୱ ସମ୍ବନ୍ଧରେ ସମ୍ବାଦ ହେଲା । ବ୍ରହ୍ମାଣ୍ଡ-ବିଜ୍ଞାନ (Cosmology)ରୁ ଉଦ୍‌ଭୂତ କାଳର ଚକ୍ରୀୟ ଅଭିଧାରଣାର ଅନ୍ତଃକ୍ରିୟା ଐତିହାସିକ କାଳର ରୈଖିକ ସ୍ୱରୂପ ସହିତ ଚାଲିଲା । ମାନବ କ୍ରିୟାକଳାପ ସମ୍ବନ୍ଧିତ ଅତୀତର ଘଟଣାଗୁଡ଼ିକ ସମ୍ବନ୍ଧରେ କାଳର ଏକ ପ୍ରଖରତର ଅବବୋଧ ରୈଖିକ କାଳ ରୂପରେ ସୁଦୃଶ୍ୟ ହେଲା । ଏହା ଐତିହାସିକ ଧରଣର ସାହିତ୍ୟ ସର୍ଜନାରେ ତଥା ଅନେକ ଅବ୍ଦରେ ନିହିତ ରହିଥିବାର ଦେଖାଯାଏ ।

କାଳକ୍ରମେ 'ଭିଷଜ' ବା ଗୁଣିଗାରେଡ଼ି ସ୍ଥାନରେ ଆୟୁର୍ବିଜ୍ଞାନର ଔପଚାରିକ ଅଧ୍ୟୟନକୁ ମହତ୍ତ୍ୱ ମିଳିଲା । ସଂସ୍କୃତରେ ରଚିତ ପୋଥି ଏହିପ୍ରକାର ଔପଚାରିକ ଅଧ୍ୟୟନକୁ ସାହାଯ୍ୟ କଲା । ଅବଶ୍ୟ ଏହା ସତ୍ତ୍ୱେ ଗୁଣିଗାରେଡ଼ି ଲୋପ ପାଇଲା ନାହିଁ । ଏହାର ଏକ ନିର୍ଦ୍ଧାରିତ ଗ୍ରାହକ ଗୋଷ୍ଠୀ ରହିଥିଲେ । ପୁଣି ଔପଚାରିକ ଶିକ୍ଷା ପରମ୍ପରାରେ ମଧ୍ୟ ତା' ପାଇଁ ସ୍ଥାନ ରହିଥିଲା । ବଡ଼ କଥା ହେଲା, ଅନୁଭୂତି ଆଧାରିତ ଜ୍ଞାନରେ ସୀମିତ ନ ରହି ଅଭ୍ୟାସ ତଥା ପରୀକ୍ଷଣ ଆଧାରିତ ଜ୍ଞାନକୁ ମଧ୍ୟ ମହତ୍ତ୍ୱ ଦିଆଯିବାକୁ ଲାଗିଲା । ଭାରତୀୟ ଆୟୁର୍ବିଜ୍ଞାନ ପଦ୍ଧତି କଫ, ପିତ୍ତ ଓ ବାୟୁ ଭଳି ତିନୋଟି ଗୁଣ ଉପରେ ଆଧାରିତ ଥିଲା । ଏହି ତିନୋଟି ଗୁଣର ଉଚିତ ସନ୍ତୁଳନ ହିଁ ସୁସ୍ଥ ଶରୀରର ରହସ୍ୟ ବୋଲି ମନେକରାଯାଉଥିଲା । ଶରୀର କ୍ରିୟା ସହ ସମ୍ବନ୍ଧିତ ପ୍ରକ୍ରିୟାର ମୂଳରେ ଥିଲା ପାଞ୍ଚୋଟି ବାୟୁ ଏବଂ ସେମାନଙ୍କର ଅନ୍ତଃକ୍ରିୟା । ଏହି କାଳଖଣ୍ଡରେ ଔଷଧ କୋଷ ଏବଂ ଆୟୁର୍ବୈଜ୍ଞାନିକ ବ୍ୟବହାର ସମ୍ବନ୍ଧରେ ଅନେକ ପ୍ରବନ୍ଧ ଲେଖାଯାଇଥିଲା । ତନ୍ମଧ୍ୟରେ ଚରକ ସଂହିତା ଥିଲା ଖୁବ୍ ପ୍ରସିଦ୍ଧ । ଶୁଶ୍ରୁତ ମଧ୍ୟ

ଶଲ୍ୟ ଚିକିତ୍ସା ସମ୍ବନ୍ଧରେ ଏକ ପୁସ୍ତକ ଲେଖିଥିଲେ । ଚିକିତ୍ସା-ବିଜ୍ଞାନ ସମ୍ବନ୍ଧୀୟ କେତେକ ଆଦ୍ୟ ରଚନା ମଧ୍ୟ-ଏସିଆରୁ ପ୍ରାପ୍ତ ହୋଇଛି । ସେଠାକାର ଜଳବାୟୁ ଶୁଷ୍କିଲା ଥିବାରୁ ଭୋଜପତ୍ରରେ ଲିଖିତ ଏହି ପାଣ୍ଡୁଲିପିଗୁଡ଼ିକ ଅଦ୍ୟାବଧି ବିନଷ୍ଟ ହୋଇନାହିଁ । ଯାହା ଜଣାପଡ଼େ, ଔଷଧୀୟ ଗୁଳ୍ମଲତା ସମ୍ବନ୍ଧୀୟ ଭାରତୀୟ ଜ୍ଞାନ ପଶ୍ଚିମର ଦେଶମାନଙ୍କୁ ସଂପ୍ରସାରିତ ହୋଇଥିଲା । ଗ୍ରୀକ୍ ବୋଟାନିଷ୍ଟ (ଉଦ୍ଭିଦ ବିଜ୍ଞାନୀ) ଥିଓଫ୍ରେଷ୍ଟସ ତାଙ୍କ ପୁସ୍ତକ 'ହିଷ୍ଟ୍ରି ଅଫ୍ ପ୍ଲାଣ୍ଟସ୍'ରେ (ଉଦ୍ଭିଦର ଇତିହାସ) ବିଭିନ୍ନ ଭାରତୀୟ ଗଛଲତାର ଔଷଧୀୟ ଗୁଣର ସବିସ୍ତୃତ ବର୍ଣ୍ଣନା କରିଛନ୍ତି ।

ଏହା ନିଃସନ୍ଦେହ ଯେ, ଔପଚାରିକ ଶିକ୍ଷାପ୍ରାପ୍ତ ବ୍ୟକ୍ତି ହିଁ ପୁସ୍ତକ ରଚନା କରୁଥିଲେ । ସାଙ୍ଗରେ ଏକଥା ବି ସତ ଯେ ଚିକିତ୍ସକମାନଙ୍କୁ ବ୍ରାହ୍ମଣୀୟ ରୀତିରେ ସାମାଜିକ ସ୍ତରର ତଳ ଦରଜା ପ୍ରଦାନ କରାଯାଉଥିଲା । ପୁଣି ମନୁଷ୍ୟ, ଘୋଡ଼ା ଏବଂ ହାତୀର ଚିକିତ୍ସା ସମ୍ବନ୍ଧୀୟ ରଚନାର ରଚନାକାରମାନଙ୍କୁ ବ୍ରାହ୍ମଣର ମର୍ଯ୍ୟାଦା ମିଳୁଥିଲା । ମାନବ ଶରୀରର ଅଧ୍ୟୟନ ଏବଂ ପଶୁ ଚିକିତ୍ସାର ଉପଯୋଗ ଯୋଗୁଁ ଚିକିତ୍ସା ବିଜ୍ଞାନ ରଢ଼ିବାଦରୁ ମୁକ୍ତ ହୋଇ ରହିଲା । ଭାରତୀୟ ସମାଜର ଏହା ଏକ ଅନ୍ତର୍ନିହିତ ବିରୋଧାଭାସ ସିଦ୍ଧ ହେଲା । କେତେକ ବୃତ୍ତିକୁ ତାତ୍ତ୍ୱିକ ଦୃଷ୍ଟିରୁ 'ତଳ' ମନେକରାଯାଉଥିଲା । ମାତ୍ର ସେଗୁଡ଼ିକର ଉପଯୋଗିତାକୁ ମହତ୍ତ୍ୱ ମିଳିଲା; ସେ ନେଇ ସଂସ୍କୃତରେ ପୁସ୍ତକମାନ ଲେଖାଗଲା, ଯାହାଫଳରେ ଉକ୍ତ ବୃତ୍ତିକୁ ମର୍ଯ୍ୟାଦାପ୍ରାପ୍ତ ହେଲା । ସ୍ୱାଭାବିକ ଭାବରେ ଔପଚାରିକ ଶିକ୍ଷା ସମ୍ପନ୍ନ ବ୍ୟକ୍ତିମାନେ ଏହିସବୁ ପୁସ୍ତକର ରଚୟିତା ଥିଲେ । ପ୍ରାୟ କ୍ଷେତ୍ରରେ ବ୍ରାହ୍ମଣମାନେ ଅଥବା ବ୍ରାହ୍ମଣମାନଙ୍କ ସହ ସମ୍ବନ୍ଧିତ ଲେଖକମାନେ ଏହି ପୁସ୍ତକଗୁଡ଼ିକୁ ଲେଖୁଥିଲେ । ମନେହୁଏ, କେତେକ ରଚୟିତା ସ୍ୱୟଂ ଉକ୍ତ ବୃତ୍ତିରେ ନିପୁଣ ଥିଲେ ।

ଭାଷା ବୈଜ୍ଞାନିକ ବିଶ୍ଳେଷଣର ପରିଣାମ ପାଣିନିଙ୍କ ସଂସ୍କୃତ ବ୍ୟାକରଣ ରୂପରେ ପରିଦୃଷ୍ଟ ହୁଏ । ଏହି ବ୍ୟାକରଣକୁ ଭାଷାର ଆଧାରଶିଳା ମନେକରାଯାଏ । ଏହି କାଳର ପ୍ରସିଦ୍ଧ ବ୍ୟାକରଣାଚାର୍ଯ୍ୟ ଥିଲେ ପତଞ୍ଜଳି । ସେ 'ମହାଭାଷ୍ୟ'ର ରଚୟିତା ଥିଲେ । 'ମହାଭାଷ୍ୟ' ହେଲା ପୂର୍ବରୁ ଲିଖିତ ବ୍ୟାକରଣ ଉପରେ ଏକ ଟୀକା । ଶବ୍ଦର ଉଦ୍ଭବ ଓ ସିନଟାକ୍ସ (Syntax)ର ଏହା ହେଉଛି ଏକ ପ୍ରଭାବୋଦ୍ଦିପକ ଅଧ୍ୟୟନ । ଏଥିରେ ଅଧିକ ଗୂଢ଼ ନିୟମଗୁଡ଼ିକୁ ଉଦ୍‌ଘାଟିତ କରାଯାଇଛି । ଏହାଛଡ଼ା ବ୍ୟାକରଣିକ ଉଦାହରଣ ମାଧ୍ୟମରେ 'ମହାଭାଷ୍ୟ' କିଛି ଐତିହାସିକ ତଥ୍ୟ ପ୍ରଦାନ କରେ । ଏହା ନିଃସନ୍ଦେହ ଯେ, ସଂସ୍କୃତ ଜ୍ଞାନ ରହିତ ଅଥଚ ସଂସ୍କୃତ ଜ୍ଞାନ ପାଇଁ ଆଶାୟୀ ମ୍ଳେଚ୍ଛମାନଙ୍କ ପାଇଁ ଏକ ବ୍ୟାକରଣର ଆବଶ୍ୟକତା ରହିଛି ବୋଲି ପତଞ୍ଜଳି ଅନୁଭବ କରିଥିଲେ । ସେହି ଦୃଷ୍ଟିରୁ ବିଚାର କଲେ, ବ୍ୟାକରଣ

ମାଧ୍ୟମରେ ଭାଷ୍ୟର ବିଶ୍ଳେଷଣକୁ ପ୍ରାଚୀନ ଭାରତୀୟ ବିଚାରର ଏକ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ବୋଲି କୁହାଯିବ । ଆଶ୍ଚର୍ଯ୍ୟର କଥା, ଗ୍ରୀକ୍ ରଚନାରେ ଅନେକ ଆଗ୍ରହ ଥିବା ସତ୍ତ୍ୱେ ଭାରତର କୌଣସି ବ୍ୟାକରଣାଚାର୍ଯ୍ୟ ସଂସ୍କୃତ ଓ ଗ୍ରୀକ୍ ମଧ୍ୟରେ ସାମ୍ୟ ଖୋଜି ନ ଥିଲେ ।

ସାହିତ୍ୟିକ ସୃଜନ କେବଳ 'ଧର୍ମଶାସ୍ତ୍ର' ଏବଂ ବ୍ୟାକରଣ ଯାଏଁ ସୀମିତ ନ ଥିଲା, କାରଣ ସେତେବେଳେ ପଦ୍ୟ ଓ ନାଟକର ମଧ୍ୟ ଖୁବ୍ ଲୋକପ୍ରିୟତା ରହିଥିଲା । ହାଳଙ୍କ ଦ୍ୱାରା ପ୍ରାକୃତରେ ଲିଖିତ 'ଗାଥାସପ୍ତସତି' ଥିଲା ଲଘୁ କବିତାର ଏକ ସଂଗ୍ରହ । ଏଥିରେ ଥିବା କବିତାଗୁଡ଼ିକ ପ୍ରେମରସ ପ୍ଲାବିତ ଅଟେ । କିଛି କବିତା ଭାବୁକତାପୂର୍ଣ୍ଣ ଏବଂ ଅନ୍ୟ କିଛି କବିତା ଅଶ୍ଳୀଳତାପୂର୍ଣ୍ଣ । ତଥାପି କାବ୍ୟର ପ୍ରତ୍ୟେକ କବିତା ବିଦ୍‌ବତ୍ତାପୂର୍ଣ୍ଣ ଏବଂ ଆନନ୍ଦଦାୟୀ । ସଂସ୍କୃତରେ ଲିଖିତ 'ବଜ୍ରସୂଚୀ' ହେଲା ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ କାବ୍ୟ । ଏହାର ରଚୟିତା ଅଶ୍ୱଘୋଷ ବୋଲି କୁହାଯାଏ । ବୌଦ୍ଧଗ୍ରନ୍ଥ ଭାବେ ପରିଚିତ ଏହି ଗ୍ରନ୍ଥ ଉଭୟ ବ୍ରାହ୍ମଣମାନଙ୍କର ଏବଂ ବ୍ରାହ୍ମଣମାନଙ୍କ ଦ୍ୱାରା ପରିଚାଳିତ ସାମାଜିକ ବ୍ୟବସ୍ଥାର ତୀବ୍ର ସମାଲୋଚନା ରହିଛି । ଯେଉଁ ରଚନା ପାଇଁ ଅଶ୍ୱଘୋଷ ପ୍ରସିଦ୍ଧି ଅର୍ଜନ କରିଥିଲେ, ତାହା ହେଲା 'ବୁଦ୍ଧଚରିତ' । ଏଥିରେ ଦୀର୍ଘ କବିତା ମାଧ୍ୟମରେ ବୁଦ୍ଧଙ୍କର ଜୀବନ ଚରିତର ଉଲ୍ଲେଖ ରହିଛି । ଐତିହାସିକ ଜୀବନୀ ରଚନାର ଉଦ୍‌ଭବରେ 'ବୁଦ୍ଧଚରିତ'ର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । ଅଶ୍ୱଘୋଷ ଖୁବ୍ ସୁନ୍ଦର ସଂସ୍କୃତର ପ୍ରୟୋଗ କରୁଥିଲେ । ବୌଦ୍ଧଧର୍ମ ସମ୍ବନ୍ଧୀୟ ଚିନ୍ତନ ପାଇଁ ଏହା ସ୍ୱୀକୃତ ଭାଷାର ମର୍ଯ୍ୟାଦା ଲାଭ କଲା । ସାହିତ୍ୟିକ ଓ ଦାର୍ଶନିକ ବିଚାର ଆଲୋଚନା ପାଇଁ ସୀମାନ୍ତ କ୍ଷେତ୍ର ବ୍ୟତୀତ ଅନ୍ୟ ସମସ୍ତ କ୍ଷେତ୍ରରେ ସଂସ୍କୃତ ସ୍ୱୀକୃତ ଭାଷା ହେଲା । ଏହି କାଳଖଣ୍ଡର ସମ୍ଭବତଃ ସବୁଠାରୁ ଅଧିକ ପ୍ରଭାବଶାଳୀ ଦାର୍ଶନିକ ନାଗାର୍ଜୁନ ସଂସ୍କୃତିରେ ଲେଖୁଥିଲେ । ବୌଦ୍ଧ ବିମର୍ଶରେ ତଥା ବ୍ରାହ୍ମଣୀୟ ଏବଂ ଅନ୍ୟ ଦର୍ଶନର ପ୍ରତ୍ୟୁତ୍ତରରେ ସେ ବ୍ୟାପକ ଭାବରେ ସଂସ୍କୃତର ଉପଯୋଗ କରୁଥିଲେ । ଅବଶ୍ୟ ସଂସ୍କୃତର ବ୍ୟାପକ ପ୍ରୟୋଗ ଯୋଗୁଁ ସ୍ଥାନୀୟ ଭାଷା କିମ୍ବା ସ୍ଥାନୀୟ ପ୍ରାକୃତର ଅଧୋଗତି ହୋଇ ନ ଥିଲା । ଅଭିଜାତ ବର୍ଗ ଏବଂ ଔପଚାରିକ ଶିକ୍ଷାପ୍ରାପ୍ତ ବର୍ଗର ସଂସ୍କୃତିଠାରୁ ଭିନ୍ନ ଭାବେ ଦେଖିବାର ପ୍ରବୃତ୍ତି ଏଣିକି ସୁସ୍ପଷ୍ଟ ହେଲା ।

ଅଶ୍ୱଘୋଷଙ୍କ ଦ୍ୱାରା ରଚିତ ନାଟକର କିଛି ଅଂଶ ମଧ୍ୟ-ଏସିଆସ୍ଥିତ ତୁରଫାନର ଏକ ସୁଦୂର ବୌଦ୍ଧବିହାରରୁ ପ୍ରାପ୍ତ ହୋଇଛି । ଦର୍ଶକ ଓ ପାଠକମାନଙ୍କର ଯେତିକି ରୁଚି ବୌଦ୍ଧ ବିଷୟରେ ଥିଲା, ସେତିକି ରୁଚି ସାହିତ୍ୟ ଶୈଳୀରେ ବି ରହିଥିବ । ଅନ୍ୟ ଜଣେ କୁଶଳି ନାଟ୍ୟକାର ଥିଲେ ଭାସ । ତାଙ୍କ ରଚିତ ନାଟକଗୁଡ଼ିକ ମଧ୍ୟରେ ପ୍ରସିଦ୍ଧ 'ସ୍ୱପ୍ନବାସବଦତ୍ତା' ଅନ୍ୟତମ । ନିଜ ରଚନାରେ ଭାସ ଦରବାରୀ ରୀତିର ଅଭିବ୍ୟକ୍ତ କରିବାକୁ

ପ୍ରୟାସ କରିଛନ୍ତି । ଭାସଙ୍କ ଜୀବନକାଳ ସମ୍ବନ୍ଧରେ ସଠିକ ପ୍ରମାଣ ଏପର୍ଯ୍ୟନ୍ତ ମିଳିନାହିଁ । କୁହାଯାଏ, ସେ କାଳିଦାସଙ୍କ ପୂର୍ବସୂରୀ ଥିଲେ ଏବଂ ଖ୍ରୀଷ୍ଟାବ୍ଦର ଆରମ୍ଭ କାଳରେ ସୃଜନ କାର୍ଯ୍ୟ କରିଥିଲେ । ସେ 'ମହାକାବ୍ୟ' ଏବଂ ଐତିହାସିକ ରୋମାଣ୍ଟିକ ବିଷୟଗୁଡ଼ିକରୁ ନିଜ ରଚନାର ପ୍ରସଙ୍ଗ ନେଉଥିଲେ । ତାଙ୍କ ରଚନାରେ ଥିବା ରାଜାଙ୍କ ଶୃଙ୍ଗାରିକ ପରାକ୍ରମର ବର୍ଣ୍ଣନରୁ ଦରବାରୀ ଲୋକ ଖୁବ୍ ଆନନ୍ଦ ଲାଭ କରୁଥିଲେ । ଭାସ ଦରବାରୀ ଲୋକଙ୍କର ଏକ ସୀମିତ ଗୋଷ୍ଠୀ ପାଇଁ ସାହିତ୍ୟ ରଚନା କରୁଥିଲେ । ତା'ର ବିପରୀତ, ଅଶ୍ୱଘୋଷଙ୍କ ନାଟକ ଧାର୍ମିକ ସଭାର ଅପେକ୍ଷାକୃତ ଅଧିକ ସଂଖ୍ୟକ ଦର୍ଶକଙ୍କ ପାଇଁ ଅଭିପ୍ରେତ ହେଉଥିଲା ।

ପୂର୍ବକାଳୀନ ରଚନାର ବିପରୀତ ଏହି ସମୟର ଅଧିକାଂଶ ରଚନା ବିଷୟ ଓ ଶୈଳୀ ଦୃଷ୍ଟିରୁ ସହରୀ ପୃଷ୍ଠଭୂମିର ଥିଲା । ଏତେବେଳକୁ ନଗରୀୟ ଜୀବନ ତା'ର ସ୍ୱତନ୍ତ୍ର ପରିଚୟ ସ୍ଥାପିତ କରିସାରିଥିଲା । ଏହା ତକ୍ଷଶିଳା, ମଥୁରା, ଶିଶୁପାଳଗଡ଼, ମହାସ୍ଥାନ, ନାଗାର୍ଜ୍ଜୁନକୋଣ୍ଡା ଏବଂ କାବେରୀପଟ୍ଟନମ୍ ଆଦି ବଡ଼ ବଡ଼ ନଗରୀର ଉଲ୍ଲେଖରୁ ସୁସ୍ପଷ୍ଟ ହୋଇଥାଏ । ବ୍ରାହ୍ମଣ୍ୟ ରଚନାରେ ନଗରୀୟ ଜୀବନର ବର୍ଣ୍ଣନା ହୁଏତ ଅସ୍ପଷ୍ଟ ଥିଲା ଅଥବା ତହିଁରେ ତା'ର ବିରୋଧ କରାଯାଇଥିଲା । ବିଶେଷକରି ଯେଉଁ ସହରରେ ବାଣିଜ୍ୟକେନ୍ଦ୍ର ରହିଥିଲା, ତାକୁ ବ୍ରାହ୍ମଣୀୟ ରଚନା ପସନ୍ଦ କରୁ ନ ଥିଲା । ନଗରକୁ ତହିଁରେ କେବଳ ରାଜଧାନୀ ଓ ଦରବାରର କେନ୍ଦ୍ର ରୂପରେ ଗ୍ରହଣ କରାଯାଇଥିଲା ।

## ସାମାଜିକ ରଙ୍ଗ-ରୂପ

ଏହି କାଳଖଣ୍ଡରେ ବାଣିଜ୍ୟର ଅଭିବୃଦ୍ଧି ଯୋଗୁଁ ତଥା ପଶ୍ଚିମ ଓ ମଧ୍ୟ-ଏସିଆରୁ ଲୋକମାନଙ୍କର ଆସିବା ଯୋଗୁଁ ଜନସଂଖ୍ୟାରେ ଏକ ସ୍ପଷ୍ଟ ପରିବର୍ତ୍ତନ ଦେଖିବାକୁ ମିଳିଲା । ଜନସଂଖ୍ୟାରେ ପୂର୍ବବର୍ତ୍ତୀ ଶାସକଗୋଷ୍ଠୀ ମଧ୍ୟ ନିଜ ବଂଶ ପରିଚୟକୁ ସାଙ୍ଗରେ ନେଇ ସାମିଲ ଥିଲେ । ଯେଉଁମାନେ ଜାତି ଆଧାରିତ ସମାଜରେ ଜନ୍ମିତ ନ ଥିଲେ, ସେମାନଙ୍କୁ ନେଇ ବ୍ରାହ୍ମଣ ତତ୍ତ୍ୱବିଦ୍‌ମାନେ ସମସ୍ୟାରେ ପଡ଼ିଥାନ୍ତେ, କାରଣ ସେହି ଧରଣର ଅ-ଜାତି ଜନ୍ମିତ ଲୋକଙ୍କୁ ବ୍ରାହ୍ମଣମାନେ ହୁଏତ ଉପେକ୍ଷା କରନ୍ତି ଅଥବା ସମାଜର 'ତଳ' ସ୍ତରରେ ସ୍ଥାନିତ କରନ୍ତି । ଏହାର ଅର୍ଥ ନୁହେଁ ଯେ ଜାତି ମାନ୍ୟତା ସହିତ ସେମାନେ ବୃତ୍ତି ପରିବର୍ତ୍ତନ କରୁଥିଲେ । ସାମାଜିକ ନିୟମର କଠୋର ଭାବେ ପାଳନ ହେଉଥିଲା ଏବଂ ପିତୃକେନ୍ଦ୍ରିକ ତତ୍ତ୍ୱ ସମ୍ବଳିତ ମନୁଙ୍କର 'ଧର୍ମଶାସ୍ତ୍ର'କୁ ପ୍ରାମାଣିକ ମନେକରାଯାଉଥିଲା ।

ବୌଦ୍ଧଗ୍ରନ୍ଥମାନଙ୍କରେ ଯେଉଁ କିସମର ନମନୀୟ ମନୋଭାବ ରହିଥିଲା, ତା'ର ପ୍ରତିକ୍ରିୟା ସ୍ୱରୂପ ବ୍ରାହ୍ମଣମାନେ ସୈଦ୍ଧାନ୍ତିକ ସ୍ତରରେ ସାମାଜିକ ସୋପାନୀକରଣ ପ୍ରକ୍ରିୟାକୁ

ତୀବ୍ରତର କଲେ । ଉଭୟ ଅଣ-ଭାରତୀୟମାନଙ୍କ ସହିତ ବାଣିଜ୍ୟ କରିବାରୁ ତଥା ଭାରତ ମଧ୍ୟରେ ନୂଆ କ୍ଷେତ୍ରମାନ ଉନ୍ମୁକ୍ତ ହେବା ଯୋଗୁଁ ଏଭଳି ହୋଇଥିଲା । ନୂଆ କ୍ଷେତ୍ରଗୁଡ଼ିକର ଦ୍ୱାର ଉନ୍ମୁକ୍ତ ହେବାପରେ ବିଭିନ୍ନ ପରମ୍ପରା ଓ ସଂସ୍କୃତିର ଲୋକଙ୍କ ମଧ୍ୟରେ ସମ୍ବନ୍ଧର ଆବଶ୍ୟକତା ପଡ଼ିଲା । ସ୍ଥାୟୀ ବର୍ଣ୍ଣ ପରିଚୟର ଏକ ମୌଳିକ ଆବଶ୍ୟକତା ହେଲା ଗୋଟାଏ ନିର୍ଦ୍ଦିଷ୍ଟ ସ୍ଥାନରେ ନିରନ୍ତର ଅବସ୍ଥାପିତ ହେବା, ଯଦ୍ୱାରା ସ୍ଥାନିକ ପରିଚୟ ସୃଷ୍ଟିହୁଏ । ଜନ୍ମ ଓ ବୃତ୍ତିକୁ ବାଦ୍ ଦେଲେ ଅବସ୍ଥାନର ଏହି ସ୍ଥିରତା ହେବ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଆବଶ୍ୟକତା । ମାତ୍ର ଯେତେବେଳେ ନୂତନ ବୃତ୍ତି, ଦେଶାନ୍ତରଣ ଏବଂ ସୁଦୂରବର୍ତ୍ତୀ ସ୍ଥାନର ପରିଚୟକୁ ଗୁରୁତ୍ୱ ଦିଆଗଲା, ବ୍ରାହ୍ମଣମାନଙ୍କୁ ବାଦ୍‌ଦେଲେ ଅନ୍ୟ ବର୍ଗରେ ବର୍ଣ୍ଣକୁ ପ୍ରମୁଖତା ଦେବା କାଠିକର ହୋଇପଡ଼ିଲା । ସହର ନିବାସୀଙ୍କ ପରିବର୍ତ୍ତନଶୀଳତା ଯୋଗୁଁ ଧର୍ମଶାସ୍ତ୍ରରେ ସହରୀ ଜୀବନ ପ୍ରତି ତିରସ୍କାର ଭାବ ପ୍ରଦର୍ଶନ କରାଯାଇଥିଲା । ସୈଦ୍ଧାନ୍ତିକ ଦୃଷ୍ଟିରୁ ଚାରୋଟିଯାକ ବର୍ଣ୍ଣକୁ ସଠିକ ଓ ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରାଯାଇଥିଲା । ଧର୍ମଶାସ୍ତ୍ରରେ ବର୍ଣ୍ଣଗୁଡ଼ିକର ନ୍ୟାୟପୂର୍ଣ୍ଣ ଆଚରଣ ଓ ଗତିବିଧି କ'ଣ ହେବା ଉଚିତ, ତା'ର ସବିସ୍ତୃତ ଉଦ୍ଧରଣ ରହିଥିଲା । ମାତ୍ର ବ୍ୟବହାରରେ ଦେଖିଲେ ଅନେକ ଅସଂଗତି ସୁସ୍ପଷ୍ଟ ଥିଲା ।

ଜନ୍ମ, ଜାତି ଏବଂ ସଂପ୍ରଦାୟ ଆଧାରିତ ଆଚରଣ ମଧ୍ୟରେ ପାରସ୍ପରିକ ନିର୍ଭରଶୀଳତା ରହିଥିବାରୁ ସୈଦ୍ଧାନ୍ତିକ ରୂପରେ ବୈଷ୍ଣବ କିମ୍ବା ଶୈବ ସଂପ୍ରଦାୟରେ ଧର୍ମାନ୍ତରିତ ହେବା ସହଜ ନ ଥିଲା । ମାତ୍ର ଏହି ସଂପ୍ରଦାୟମାନେ ଏହି ସମସ୍ୟାର ସମାଧାନ ବି ଖୋଜି ପାରିଥିଲେ । ଏକ ବଡ଼ ଅଣ-ହିନ୍ଦୁ ଗୋଷ୍ଠୀ ହିନ୍ଦୁ ଧର୍ମରେ ମିଶି ନିର୍ଦ୍ଦିଷ୍ଟ ଏକ ଜାତିର ମର୍ଯ୍ୟାଦା ବି ଲାଭ କରିପାରୁଥିଲେ; ମାତ୍ର ଜଣେ ବ୍ୟକ୍ତିବିଶେଷ ପାଇଁ ଧର୍ମାନ୍ତରଣ ସମସ୍ୟାମୂଳକ ଥିଲା, କାରଣ ତାକୁ ଜନ୍ମ ଆଧାରିତ ଉପଯୁକ୍ତ ଜାତି ମାନ୍ୟତା ମିଳିବା ସେ କ୍ଷେତ୍ରରେ ସମ୍ଭବ ହେଉ ନ ଥିଲା । ସେଥିପାଇଁ ବାହାରୁ ଆସୁଥିବା ଅଣ-ଭାରତୀୟ ସକାଶେ ବୌଦ୍ଧଧର୍ମରେ ସାମିଲ ହେବା ସହଜ ହେଉଥିଲା । ଅବଶ୍ୟ କିଛି ସେହି ଧରଣର ଲୋକ ଭାଗବତ ସଂପ୍ରଦାୟରେ ମଧ୍ୟ ସାମିଲ ହୋଇଥିଲେ । ଦାକ୍ଷିଣାତ୍ୟରେ ବୌଦ୍ଧସ୍ଥଳୀମାନଙ୍କରୁ ମିଳିଥିବା ପ୍ରଶସ୍ତିମୂଳକ ଅଭିଲେଖରୁ ଜଣାଯାଏ ଯେ ଯବନମାନେ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରୁଥିଲେ । ଏହି ପ୍ରକାରର ଏକ ଉଲ୍ଲେଖ ଅନୁସାରେ, ଜନୈକ ଥିୟୋଡୋରସ ଦତିୟପୁତ୍ର ଏକ ଅନୁଦାନ ଦେଇଥିଲେ । ଅନ୍ୟ ଏକ ଉଲ୍ଲେଖ ଅନୁଯାୟୀ, ଦତ୍ତିମିତି (ସମ୍ଭବତଃ ଅରାକୋସିୟାର ଦିମିତ୍ରିୟସ ସହର)ରୁ ଆସିଥିବା ଉତ୍ତର ଦେଶବାସୀ ଧମଦେବଙ୍କର ପୁତ୍ର ଯବନ ଇନ୍ଦ୍ରାଗ୍ନିଦତ୍ତ ମଧ୍ୟ ଏକ ଅନୁଦାନ ଦେଇଥିଲେ । ଯେହେତୁ ଏହି ସମୟରେ ବୌଦ୍ଧଧର୍ମ ଥିଲା ଉତ୍‌ଥାନୋନ୍ମୁଖ, ଲୋକ ବୌଦ୍ଧଧର୍ମରେ ଦୀକ୍ଷିତ ହେଉଥିଲେ ଏବଂ ସେହି ପ୍ରକ୍ରିୟାରେ ଭାରତୀୟ ସମାଜରେ ସହଜରେ ମିଶିଯାଇ ପାରୁଥିଲେ ।

ଏକଥା ଅନସ୍ୱୀକାର୍ଯ୍ୟ ଯେ ରଢ଼ିବାଦୀ ବ୍ରାହ୍ମଣ ତଥାକଥିତ ତଳ ପାହ୍ୟାର ଲୋକଙ୍କଠାରୁ ଦୂରତା ରକ୍ଷା କରୁଥିଲା । ମାତ୍ର ନୂତନ ଶାସକବର୍ଗ ସହିତ ସମ୍ବନ୍ଧ ସ୍ଥାପିତ କରିବାରେ ସେ ହେଳା କରୁ ନ ଥିଲା, କାରଣ ରାଜନୈତିକ କ୍ଷମତାସମ୍ପନ୍ନ ଶାସକକୁଳଙ୍କୁ ଅଜାତିରେ ରଖିବା ସହଜ ନ ଥିଲା । ଏହି ନୂତନ ରାଜବଂଶମାନଙ୍କୁ 'ପତିତ କ୍ଷତ୍ରିୟ'ର ମର୍ଯ୍ୟାଦା ଦିଆଗଲା, ଯାହାକୁ ଏକ କୂଟନୈତିକ ରିହାତି ବୋଲି କୁହାଯିବ । ଅବଶ୍ୟ ଏହି ଧରଣର କ୍ଷତ୍ରିୟ ପାଇଁ ବ୍ୟବହୃତ 'ବ୍ରତ୍ୟ' ବିଶେଷଣକୁ ଉକ୍ତ କ୍ଷତ୍ରିୟବର୍ଗ କଦାପି ପସନ୍ଦ କରୁ ନ ଥିବେ । 'ବ୍ରତ୍ୟ'ର ଅର୍ଥ ହେଲା 'ପତିତ' । ରାଜନୈତିକ ଓ ଆର୍ଥିକ କ୍ଷେତ୍ରରେ ପ୍ରମୁଖତା ଲାଭ କରିଥିବା ଏହି ଧରଣର ଲୋକଙ୍କର ଭାରତରେ ଉପସ୍ଥିତି ଯୋଗୁଁ ବର୍ଣ୍ଣ ବ୍ୟବସ୍ଥାର ସୈଦ୍ଧାନ୍ତିକ ଆଧାର ଦୋହଲିଗଲା । ଅବଶ୍ୟ ରାଜନୈତିକ ମଞ୍ଚରେ, ବିଶେଷକରି ରାଜପଦ ନିମନ୍ତେ ବର୍ଣ୍ଣ ବ୍ୟବସ୍ଥା ସତ୍ତ୍ୱେ, କାହାକୁ ବାରଣ କରାଯାଉ ନ ଥିଲା । ଯେଉଁମାନେ ତଳ ଜାତିର, ସେମାନେ ନିଃସନ୍ଦେହ ଉପର ସ୍ତରକୁ ଯିବାଲାଗି ଆଗନ୍ତୁକ ଶାସକବର୍ଗ ସହ ନିଜକୁ ଯୋଡ଼ିବାକୁ ପ୍ରୟାସ କରିଥିବେ । ବାଣିଜ୍ୟ ଓ ବ୍ୟାପାରରେ ସଂପ୍ରସାରଣ ଘଟିବା ଯୋଗୁଁ ଶ୍ରେଣୀର ସଂଖ୍ୟା ବୃଦ୍ଧି ହୋଇଥିବ । ଏଣିକି ଅନେକ କାରିଗରଙ୍କୁ ନିଯୁକ୍ତି ମିଳିଥିବ ଏବଂ ଅଧିକ ମାତ୍ରାର ସମ୍ବଳ ହାତକୁ ଆସିଥିବ । କାରିଗରମାନେ ପ୍ରାୟ କ୍ଷେତ୍ରରେ ଶୂଦ୍ର ଜାତିର ଥିଲେ । କେତେକ କାରିଗର ନିଜର ବୃତ୍ତି ଓ ଅବସ୍ଥିତି ପରିବର୍ତ୍ତନ କରି ଜାତି ମାନ୍ୟତାକୁ ବୃଦ୍ଧି କରିବାକୁ ଚେଷ୍ଟା କରୁଥିଲେ । 'ସଂକୀର୍ଣ୍ଣ ଜାତି' ନାମରେ ଏକ ସାମାଜିକ ଗୋଷ୍ଠୀ ଗଠନ କରି ମିଶ୍ରିତ ଜାତିକୁ ଅଧିକ ମାନ୍ୟତା ପ୍ରଦାନ ନ କରିବାକୁ ଚେଷ୍ଟା କରାଯାଇଥିଲା । ସୈଦ୍ଧାନ୍ତିକ ରୂପରେ 'ତଳ' ଜାତିକୁ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ବସତି ସ୍ଥାପନ କରିବାକୁ ପଡୁଥିଲା । ସେହି ରହଣି ସ୍ଥାନରୁ ସେମାନେ ନିଜର ବୃତ୍ତି ନିର୍ବାହ କରୁଥିଲେ । ଅଧିକାଂଶତଃ ସହରର ଉପକଣ୍ଠରେ ସେମାନଙ୍କର ବସତି ରହିଥିଲା । ଅସ୍ପୃଶ୍ୟମାନଙ୍କର ବସତି ସହର ସୀମାର ବାହାରେ ରହିଥିଲା ।

ସାମାଜିକ ସ୍ତରର ତଳେ ସ୍ଥାନ ପାଇଥିବା କେତେକ ଜାତି ନଗର ଜୀବନର ଚାହିଦାର ସୁବିଧା ନେଇ ନିଜ ମର୍ଯ୍ୟାଦାର ଅଭିବୃଦ୍ଧି ପାଇଁ ଉଦ୍ୟମ କରିଥିବେ ବୋଲି ଅନୁମାନ କରିହୁଏ । ଏହା ରଢ଼ିବାଦୀ ସାମାଜିକ ନିୟମ ଓ ଚଳଣିର ବ୍ୟାଖ୍ୟାତାମାନଙ୍କ ପାଇଁ ସମସ୍ୟା ସୃଷ୍ଟି କରିଥିବ । ଏହି କାରଣରୁ 'ଧର୍ମଶାସ୍ତ୍ର'ରେ ଅନ୍ୟମାନଙ୍କ ତୁଳନାରେ ବ୍ରାହ୍ମଣମାନେ ଜନ୍ମଗତ ଭାବେ ଉଚ୍ଚତର ବୋଲି ଦାବି କରାଗଲା । ସେଥିପାଇଁ ସେ ସମ୍ମାନର ଅଧିକାରୀ ବୋଲି କୁହାଗଲା । ପାଠରୁ ମନେହୁଏ, ଜାଣି ବ୍ରାହ୍ମଣମାନଙ୍କର ପଦମର୍ଯ୍ୟାଦାକୁ ଅନ୍ୟମାନେ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ବୋଧହୁଏ, ସାମାଜିକ ଗତିବିଧିରେ ଯେତେ ଅଧିକ

ନମନୀୟତା ଆସୁଥିଲା, ତତୋଽଧିକ ପରିମାଣରେ ଧର୍ମଶାସ୍ତ୍ରୀୟ ପାଠର ସାମାଜିକ ନିୟମ କଠୋର ହେଉଥିଲା । ଧର୍ମଶାସ୍ତ୍ର ପୂର୍ବରୁ 'ଧର୍ମସୂତ୍ର'ର ପ୍ରଣୟନ ଯେଉଁ ସମୟରେ ହେଉଥିଲା, ସେହି ସମୟରେ ଗାଙ୍ଗେୟ ସମତଳରେ ସହରୀକରଣ ଚାଲିଥିଲା ଏବଂ ତାହା ବେଦ ସମର୍ଥିତ ଲୋକାଚାରକୁ ଅସ୍ତବ୍ୟସ୍ତ କରିଦେଉଥିଲା । ଏହି ସମୟରେ 'ଅ-ସନାତନୀ' ସଂପ୍ରଦାୟମାନେ ମଧ୍ୟ ବ୍ରାହ୍ମଣୀୟ ଆଚାରବିଚାରକୁ ସଂଶୟ ଦୃଷ୍ଟିରେ ଦେଖୁଥିଲେ । ବ୍ରତ୍ୟ କ୍ଷତ୍ରିୟ' ବା 'ପତିତ କ୍ଷତ୍ରିୟ'ମାନଙ୍କର ଶାସନକାଳ ସମୟରେ ସମ୍ଭବତଃ ମନୁ ଧର୍ମଶାସ୍ତ୍ର ଲେଖିଥିଲେ । ଅନ୍ୟ ଧର୍ମଶାସ୍ତ୍ରଗୁଡ଼ିକ ତୁଳନାରେ ଏହି ମନୁସଂହିତା ଥିଲା ଅଧିକ ରକ୍ଷଣଶୀଳ । ଏହି ସମୟରେ ବ୍ୟବସାୟ ଓ ନୂତନ ବିଚାରମାନ ଭାରତ ଉପଦ୍ୱୀପର ଦ୍ୱାରକୁ ଉନ୍ମୁକ୍ତ କରୁଥିଲେ । ଉତ୍ତର ଗୁପ୍ତକାଳରେ ନୂତନ ଜାତି ଓ ନୂତନ ସଂପ୍ରଦାୟ ତଥା ରାଜ୍ୟର ତୀବ୍ର ବିକାଶ ଦେଖିବାକୁ ମିଳିଥିଲା । ଏହା ସ୍ଥାପିତ ବିଚାରକୁ ଉପେକ୍ଷା କଲା । ପରିଣାମ ସ୍ୱରୂପ, ଧର୍ମଶାସ୍ତ୍ରୀୟ ପୁସ୍ତକ ଓ ଟୀକା ରଚନା କ୍ଷେତ୍ରରେ ଖୁବ୍ ଅଭିବୃଦ୍ଧି ହେଲା ।

ସାଞ୍ଚି ଓ ଭରହୁତ ଆଦି ସ୍ତୁପ ସ୍ଥଳୀରୁ ଦାତାର ପ୍ରଶସ୍ତିମୂଳକ ଅଭିଲେଖମାନ ମିଳିଛି । ତାକୁ ଅଧ୍ୟୟନ କଲେ ସେତେବେଳର ଧନିକ ଓ ସମ୍ଭ୍ରାନ୍ତ ବର୍ଗର ଚିତ୍ର ଆଙ୍କିବା କଠିନ ହୁଏ ନାହିଁ । କେତେକ ବ୍ୟତିକ୍ରମକୁ ବାଦ୍ ଦେଲେ, ଏହି ଅଭିଲେଖଗୁଡ଼ିକୁ ପ୍ରାୟତଃ ଶ୍ରେଣୀ, କାରିଗର, ସାନ ସାନ ଜମିଦାର, ଭିକ୍ଷୁ ଓ ଭିକ୍ଷୁଣୀମାନେ ପ୍ରଦାନ କରିଥିଲେ । ଅଭିଲେଖରେ ଦାତାମାନେ ନିଜକୁ ନିଜର ବୃତ୍ତି ଓ ବସତିସ୍ଥଳ ଆଧାରରେ ପରିଚିତ କରିଥିଲେ । ବର୍ଣ୍ଣ ଓ ଜାତିର ଆଧାରରେ ସେମାନେ ସର୍ବଦା ନିଜକୁ ପରିଚିତ କରୁ ନ ଥିଲେ । ଦାତାମାନଙ୍କର ଭୌଗୋଳିକ ସୀମା ଦାକ୍ଷିଣାତ୍ୟ ଓ ତା'ର ଆଖପାଖ ଯାଏଁ ସୀମିତ ଥିଲା । ଅନେକ ଦାତା ଉଜ୍ଜୟିନୀ ଓ ଭୋଗବର୍ଦ୍ଧନ ପରି ବଡ଼ ନଗରୀର ଅଧିବାସୀ ଥିଲେ । ସାନ ସାନ ସ୍ଥାନରୁ ମଧ୍ୟ ଅନେକ ଦାତା ଥିଲେ । ଏବେ ନାମରୁ ଉକ୍ତ ସ୍ଥାନଗୁଡ଼ିକୁ ଚିହ୍ନିତ କରିବା ମଧ୍ୟ କଠିନ ହୋଇପଡ଼ିଛି । ଦାକ୍ଷିଣାତ୍ୟର ପ୍ରାୟ ଅର୍ଦ୍ଧାଂଶ ଦାନର ଅନୁଦାତା ଥିଲେ ଭିକ୍ଷୁ ଓ ଭିକ୍ଷୁଣୀମାନେ । କେଉଁ ସୂତ୍ରରୁ ସେମାନେ ଏତେ ଧନ ଅର୍ଜନ କରିଥିଲେ, ତାହା ବି ଏକ ପ୍ରଶ୍ନବାଚୀ । ଯେଉଁ ସମୟରେ ସେମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ କ'ଣ ସେତେବେଳେ ସେମାନେ ସେହିସବୁ ଧନ ପରିବାର କିମ୍ବା ବୃତ୍ତିରୁ ଅର୍ଜନ କରି ଆଣି ଆସିଥିଲେ ? ନା ଭିକ୍ଷୁ ବା ଭିକ୍ଷୁଣୀ ହେଲାପରେ ବି ସେମାନଙ୍କର ପାରିବାରିକ ସମ୍ପତ୍ତିରେ ଅଂଶଧନ ରହିଥିଲା ? ନା ସେମାନଙ୍କର ସଞ୍ଚିତ ସମ୍ପତ୍ତିକୁ ସେମାନେ ବାଣିଜ୍ୟରେ ବିନିଯୋଗ କରିଥିଲେ ଏବଂ ତହିଁରୁ ମିଳୁଥିବା ଲାଭାଂଶକୁ ସଂଘକୁ ଦାନ ଦେଉଥିଲେ ? ସ୍ଥାନ ଅନୁସାରେ ଦାତାର ଚରିତ୍ରରେ ପରିବର୍ତ୍ତନ ଦେଖିବାକୁ ମିଳୁଥିଲା । ଉଦାହରଣ ସ୍ୱରୂପ, ମଥୁରାରେ ବୌଦ୍ଧମାନଙ୍କ ଅପେକ୍ଷା

ଅଧିକ ସଂଖ୍ୟକ ଜୈନ ମହିଳା ଦାନ କରୁଥିଲେ । ମାତ୍ର ମଧ୍ୟଭାରତରେ ବୌଦ୍ଧସ୍ଥଳୀମାନଙ୍କରେ ଏହାର ଓଲଟା ସ୍ଥିତି ଦେଖିବାକୁ ମିଳୁଥିଲା ।

ଉଭୟ ଜୈନ ଓ ବୌଦ୍ଧ କେନ୍ଦ୍ରମାନଙ୍କରେ ବହୁଳ ସଂଖ୍ୟାରେ ଭିକ୍ଷୁଣୀମାନଙ୍କର ଉପସ୍ଥିତି ଦେଖିବାକୁ ମିଳିଥାଏ । ସେମାନଙ୍କ ପାଖରେ ଥିବା ବ୍ୟକ୍ତିଗତ ସମ୍ପତ୍ତି, ଯାହା ସେମାନେ ଦାନ କରିଥିଲେ, ତା'ର ପରିମାଣ ଥିଲା ସେମାନଙ୍କ ମୋଟ ସଂଖ୍ୟା ଭଳି ଚିତ୍ତାକର୍ଷକ । ଭିକ୍ଷୁ ଓ ଭିକ୍ଷୁଣୀର ଜୀବନକୁ ବୌଦ୍ଧସଂଘ ବୈକଳ୍ପିକ ଜୀବନ ରୂପେ ପରିବେଷିତ କରୁଥିଲା । ମାତ୍ର ଯେତେବେଳେ ସଂଘରେ ସଂବୃଦ୍ଧି ଆସିଲା, ତା'ର ଗତିବିଧି ଅନ୍ୟ ଅନୁଷ୍ଠାନଠାରୁ ପୃଥକ୍ ରହିଲା ନାହିଁ । ସଂଘରେ ଭିକ୍ଷୁଣୀମାନଙ୍କୁ ଭିକ୍ଷୁମାନଙ୍କ ଅପେକ୍ଷା ନିମ୍ନ ମର୍ଯ୍ୟାଦା ପ୍ରଦାନ କରାଯାଉଥିଲା । ଏହା ସତ୍ତ୍ୱେ, ବହୁସଂଖ୍ୟାରେ ମହିଳାମାନେ ସଂଘରେ ଯୋଗଦାନ କରୁଥିଲେ । ମହିଳାମାନଙ୍କ ପାଇଁ ସଂଘ ଥିଲା ଏକ ସାମାଜିକ ସୁରକ୍ଷା ପ୍ରଦାନ କରୁଥିବା ତଥା ସାମାଜିକ ସ୍ୱୀକୃତି ଲାଭ କରିଥିବା ଅନୁଷ୍ଠାନ । ପୁଣି ସଂଘରେ ଯୋଗଦେଇ ସେମାନେ ସମାଜ ପାଇଁ ଉପଯୋଗୀ ଏକ ଭୂମିକା ନିର୍ବାହ କରିପାରୁଥିଲେ, ଯାହା ଗୃହିଣୀ ରୂପରେ ସମ୍ଭବପର ହୋଇ ନ ଥାନ୍ତା । ଉଦାହରଣ ସ୍ୱରୂପ, ଜୈନ ଭିକ୍ଷୁଣୀମାନେ ସଂଘର ସଭ୍ୟ ଭାବରେ ନିଜର ବର୍ଚ୍ଚସ୍ୱ ବା କର୍ତ୍ତୃତ୍ୱ ଜାହିର କରୁଥିଲେ । ସଂଘରେ ଯୋଗଦେଇ ମହିଳାମାନେ ଗୃହିଣୀ କର୍ମରୁ ନିବୃତ୍ତି ପାଇପାରୁଥିଲେ । ଗୋଟାଏ ସ୍ତୋତ୍ରରେ ଏହାର ଉଲ୍ଲେଖ ମଧ୍ୟ ରହିଛି । ସ୍ତୋତ୍ର ଅନୁଯାୟୀ, ସଂଘ ସ୍ତ୍ରୀକୁ ପାକଶାଳା, ମୁସଳ (ଶସ୍ୟରୁ ଦାନା ବାହାର କରିବାପାଇଁ ବ୍ୟବହୃତ) ଓ ପତିରୁ ବିମୁକ୍ତି ଦିଏ । ଭିକ୍ଷୁଣୀକୁ ପୁନର୍ଜନ୍ମ ନେବାକୁ ପଡ଼େ ନାହିଁ । ମହିଳା ଦାତାମାନଙ୍କୁ କୌଟମ୍ବିକ ପରିଚୟ ଆଧାରରେ ଚିହ୍ନିତ କରାଯାଉଥିଲା, ଯେମିତି ଭଉଣୀ, କନ୍ୟା, ମାତା ଓ ପତ୍ନୀ । ମାତା ଓ ପତ୍ନୀର ଅଧିକ ଉଲ୍ଲେଖ ଅଭିଲେଖମାନଙ୍କରେ ଦେଖିବାକୁ ମିଳେ ।

ଭିକ୍ଷୁଣୀ ଯେଉଁଠି ଦାତା, ସେ କ୍ଷେତ୍ରରେ ସମ୍ପତ୍ତିର ସ୍ରୋତ କଥା ଅସ୍ପଷ୍ଟ ରହିଥିଲା । ଏହି ସମ୍ପତ୍ତି କ'ଣ ଭିକ୍ଷୁଣୀର ସ୍ତ୍ରୀ-ଧନ କି ? ସାଧାରଣତଃ ସ୍ତ୍ରୀ ତା' ମା' ପାଖରୁ, କୁଟୁମ୍ବର ଅନ୍ୟ ସ୍ତ୍ରୀଲୋକଙ୍କ ପାଖରୁ ତଥା ସମ୍ବନ୍ଧୀୟମାନଙ୍କଠାରୁ କିଛି କିଛି ଧନସମ୍ପତ୍ତି ଲାଭ କରିଥାଏ । ଏହି ଧନ ଉପରେ କେବଳ ତା'ର ନିଜସ୍ୱ ଅଧିକାର ରହିଥାଏ । ତେଣୁ ତାକୁ ସ୍ତ୍ରୀ-ଧନ କୁହାଯାଏ । ପୈତୃକ ସମ୍ପତ୍ତି ଉପରେ ଯେହେତୁ ସ୍ତ୍ରୀର ଅଧିକାର ନ ଥାଏ, ତେଣୁ ସ୍ତ୍ରୀ-ଧନକୁ ଏକ ରକମର ଭରଣା ବା କ୍ଷତିପୂରଣ ବୋଲି କୁହାଯିବ । ଅବଶ୍ୟ ଯେଉଁ ପରିବାରରେ ପୁରୁଷ ଉତ୍ତରାଧିକାରୀ ନ ଥାନ୍ତି, ସେଠାରେ କନ୍ୟାକୁ ପିତୃସମ୍ପତ୍ତି ପ୍ରାପ୍ତ ହୁଏ । ଧର୍ମଶାସ୍ତ୍ରରେ କାହାକୁ ସ୍ତ୍ରୀ-ଧନରେ ସାମିଲ କରାଯାଇ ପାରିବ, ସେ ନେଇ ଅନେକ ଆଲୋଚନା ରହିଛି ।

ଉକ୍ତ ଧନକୁ ମହିଳା ସ୍ୱେଚ୍ଛାରେ ଦାନ ଦେଇପାରିବ ନା ନାହିଁ – ସେ ନେଇ ମଧ୍ୟ ଉଲ୍ଲେଖ ରହିଛି । ସ୍ତ୍ରୀ-ଧନ ମହିଳାର ସାଧାରଣ ମାନ୍ୟତାରେ ବିଶେଷ ପ୍ରଭାବ ପକାଇ ପାରୁ ନ ଥିଲା, କାରଣ ଏଥିରେ ଥିବା ସମ୍ପତ୍ତି ପ୍ରାୟ କ୍ଷେତ୍ରରେ ବିକ୍ଷିପ୍ତ ଭାବରେ, ଚଳନ୍ତି ସମ୍ପତ୍ତି ରୂପରେ ବିବିଧ ପ୍ରକାରେ ସଂଗୃହିତ ହେଉଥିଲା । ବୌଦ୍ଧସ୍ତୁପକୁ ଦିଆଯାଇଥିବା ଏହି ଦାନରୁ ଜଣାପଡ଼େ ଯେ ମହିଳାମାନଙ୍କ ସମ୍ବନ୍ଧରେ ଏବଂ ସେମାନଙ୍କ ସମ୍ପତ୍ତି ଅଧିକାର ସମ୍ପର୍କରେ 'ଧର୍ମଶାସ୍ତ୍ର'ରେ ଯେଉଁସବୁ ଉଲ୍ଲେଖ ରହିଥିଲା, ତାକୁ ସର୍ବଦା ଅକ୍ଷରେ ଅକ୍ଷରେ ପାଳନ କରାଯାଉ ନ ଥିଲା । ତେଣୁ 'ଧର୍ମଶାସ୍ତ୍ର'କୁ ସେ ସମୟର ସାମାନ୍ୟ ବ୍ୟବହାର ଓ ସାମାଜିକ ନିୟମ ବୋଲି କହିହେବ ନାହିଁ । ଏହାର ଅର୍ଥ ନୁହେଁ ଯେ, ଅଭିଲେଖରେ ମହିଳାମାନଙ୍କୁ ଅପେକ୍ଷାକୃତ ଭାବେ ସ୍ୱାଧୀନ ବୋଲି ବର୍ଣ୍ଣନା କରାଯାଇଛି । ମାତ୍ର ଏକଥା ବି ସତ ଯେ ବ୍ୟବହାରତଃ ମହିଳାମାନଙ୍କର କ୍ରିୟାକଳାପ ତଥା ପରିବାରରେ ସେମାନଙ୍କର ଭୂମିକା ଏବଂ 'ଧର୍ମଶାସ୍ତ୍ର'ର ସେମାନଙ୍କ ପ୍ରତି କଠୋର ଦୃଷ୍ଟିକୋଣ ମଧ୍ୟରେ ଯଥେଷ୍ଟ ଅନ୍ତର ରହିଥିଲା । ଏଥିରୁ ଗୋଟାଏ କଥା ସିଦ୍ଧ ହୁଏ ଯେ, ପାଠର କଥନ, ଉଦ୍ଦେଶ୍ୟ ଏବଂ ପାଠକ-ଶ୍ରୋତା ସମ୍ବନ୍ଧରେ ନ ଜାଣି ପାଠକୁ ବୁଝିବା ସହଜ ହୁଏ ନାହିଁ ।

## ସ୍ଥାପତ୍ୟ ଓ ମୂର୍ତ୍ତିକଳା

ଉଭୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ତଥା କଳାତ୍ମକ ସୌନ୍ଦର୍ଯ୍ୟ ସାଧାରଣତଃ ବୌଦ୍ଧଧର୍ମର ଆବଶ୍ୟକତାରୁ ଜନ୍ମ ନେଲା । ତାକୁ ପୃଷ୍ଠପୋଷକତା ମିଳିଲା ଧନାଢ୍ୟ ବଣିକ, ଶ୍ରେଣୀ ଏବଂ ରାଜକୀୟ ଦାନରୁ । ବୌଦ୍ଧଧର୍ମର ସ୍ଥାପତ୍ୟଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା ବିହାର, ସ୍ତୁପ ଏବଂ ଚୈତ୍ୟ । କେତେକ ସ୍ଥାପତ୍ୟକୁ ସ୍ୱତନ୍ତ୍ରଭାବେ ନିର୍ମାଣ କରାଯାଇଥିଲା; ଅନ୍ୟ କେତେକକୁ ପର୍ବତ ବା ପ୍ରସ୍ତରମାଳାକୁ ଖୋଦନ କରି ସ୍ୱରୂପ ଦିଆଯାଇଥିଲା । କୌଣସି ଧାର୍ମିକ ସ୍ଥାନକୁ ବିଶିଷ୍ଟ ପରିଚୟ ଦେବାଲାଗି ବିଶାଳକାୟ ଭବନ ନିର୍ମାଣର ବିଚାର ଖୁବ୍ ପୁରୁଣା ନ ଥିଲା । ସ୍ତୁପ ଓ ଚୈତ୍ୟରେ କମ୍ ଆକାରରେ ପୂର୍ବରୁ ମଧ୍ୟ ପୂଜାର୍ଚ୍ଚନା ହେଉଥିଲା । ଯଜ୍ଞର ସମାପ୍ତି ପରେ ଯଜ୍ଞସ୍ଥଳୀର ଚିହ୍ନ ବି ରହୁ ନ ଥିଲା । ଧାର୍ମିକ ଆବଶ୍ୟକତା ଯୋଗୁଁ ଆଂଶିକ ଭାବରେ ନୂତନ ସ୍ଥାପତ୍ୟର ଗଠନ ହେଲା । ପୁଣି ତାକୁ ବାସଭବନରୁ ପୃଥକ୍ କରିବାର ଦରକାର ପଡ଼ିଲା । ଧାର୍ମିକ ସ୍ଥାପତ୍ୟରେ ପ୍ରଶସ୍ତିମୂଳକ ଅଭିଲେଖକୁ ଭଲଭାବେ ପ୍ରଦର୍ଶିତ କରିବାର ଦରକାର ପଡୁଥିଲା । ବୁଦ୍ଧଚରିତ ଓ ବୁଦ୍ଧବାଣୀକୁ ଠିକ୍‌ରୂପେ ପ୍ରଦର୍ଶିତ କରିବାର ଆବଶ୍ୟକତାକୁ ଅନୁଭବ କରାଗଲା । ଏସବୁ ବ୍ୟତୀତ ଧାର୍ମିକ ସ୍ଥାପତ୍ୟ ପରିସରରେ ନିର୍ଦ୍ଦିଷ୍ଟ ପର୍ବପର୍ବାଣି ଦିନ ବହୁସଂଖ୍ୟାରେ ଲୋକ ଏକତ୍ରିତ ହେଉଥିଲେ । ତା' ପାଇଁ ଅଧିକ

ବିଶାଳ ଭବନ ରହିବା କଥା । ଧାର୍ମିକ ପୀଠ ବିଶାଳ ଓ ଦର୍ଶନୀୟ ନ ହେଲେ କ୍ଷମତା ଓ ସମ୍ମାନକୁ ବା ପ୍ରଦର୍ଶିତ କରାଯିବ କେମିତି ? ଏହି କାରଣରୁ ସ୍ତୁପର ଆକାର କ୍ରମଶଃ ବୃଦ୍ଧି ପାଇଲା ।

ପ୍ରଥମେ କୌଶାମ୍ବୀ, ସାଞ୍ଚି ଏବଂ ଭରହୁତଠାରେ ସ୍ୱତନ୍ତ୍ର ଧାର୍ମିକ ପରିସର ନିର୍ମାଣର ପରମ୍ପରା ସୃଷ୍ଟି ହେଲା । ଯେତେବେଳେ ବୌଦ୍ଧଧର୍ମର ପ୍ରସାର ହେଲା, ବିହାର ପରିସରଗୁଡ଼ିକ ଅଧିକ ବଡ଼ ହେଲା । ଏହାର ଏକ ଉଦାହରଣ ହେଲା, ପେଶାୱାର ନିକଟବର୍ତ୍ତୀ ତଖ୍-ଇ-ବାହୀ । ଧାର୍ମିକ କାର୍ଯ୍ୟ ପାଇଁ ଗୁମ୍ଫାର ବ୍ୟବହାର ଆରମ୍ଭ ହେଲା ନିଛାଟିଆ ସ୍ଥାନର ଅନ୍ୱେଷଣରୁ । ଖୁବ୍ ଶୀଘ୍ର ଗୁମ୍ଫାର ବିକାଶ ହେଲା । ଅଥଚ ତହିଁରେ ଏକାନ୍ତ ଭାବ ଉହ୍ୟ ରହିଗଲା । ଯେଉଁଠି ବିହାରଗୁଡ଼ିକ ପାହାଡ଼ିଆ କ୍ଷେତ୍ରର କୌଣସି ବାଣିଜ୍ୟ ପଥରେ ରହିଥିଲା, ସେଇଠି ପଥରର ଚଟାଣକୁ ଖୋଦନ କରି ନିର୍ମାଣ କରିବା ସ୍ୱାଭାବିକ ଥିଲା । ଏହା ବିଶେଷକରି ଦାକ୍ଷିଣାତ୍ୟରେ ଦେଖିବାକୁ ମିଳେ, କାରଣ ସେଠାରେ ଚଟାଣକୁ କାଟିବା ସହଜ ହେଉଥିଲା । ବିହାରର ନିର୍ମାଣ କଲାବେଳେ ତହିଁରେ ଭିକ୍ଷୁମାନଙ୍କର ସମୂହ ଆବାସ ଯୋଜନା ରହୁଥିଲା । ତେଣୁ ତା'ର ବିକାଶ ଗୃହ-ସ୍ଥାପତ୍ୟକୁ ଆଧାର କରି ହୋଇଥିଲା । ବିହାରର ଏକ ବିଶାଳ ଅଗଣା ରହୁଥିଲା, ଯାହାର ଚାରିକଡ଼େ ଭିକ୍ଷୁମାନଙ୍କର ନିବାସକକ୍ଷ ନିର୍ମିତ ହେଉଥିଲା । ଅଗଣାରେ କେବେ କେବେ ମାଗୁଣି ମାଗିବା ଲାଗି ଉଦ୍ଦିଷ୍ଟ 'ଭୋଟିବ' (Votive) ସ୍ତୁପ ମଧ୍ୟ ସ୍ଥାପିତ ହେଉଥିଲା । ଭିକ୍ଷୁମାନଙ୍କର ସାମୂହିକ ସଭା ଓ ଭୋଜନସ୍ଥଳୀ ରୂପେ ମଧ୍ୟ ଉକ୍ତ ସ୍ତୁପକୁ ବ୍ୟବହାର କରାଯାଉଥିଲା ।

ବୌଦ୍ଧ ସ୍ତୁପର ଆରମ୍ଭକୁ ପ୍ରାକ୍-ବୌଦ୍ଧ ସମାଧି ସ୍ତୁପରେ ଦେଖାଯାଇପାରେ । ଆରମ୍ଭରେ ସ୍ତୁପକୁ ବୁଦ୍ଧଙ୍କର କୌଣସି ସ୍ମୃତିଚିହ୍ନ ଅଥବା କୌଣସି ବୌଦ୍ଧସନ୍ଥଙ୍କର ସ୍ମୃତିଚିହ୍ନକୁ ରଖି ଅର୍ଦ୍ଧଗୋଲକ ଆକାରରେ ନିର୍ମାଣ କରାଯାଉଥିଲା । ସ୍ମୃତିଚିହ୍ନକୁ ଏକ ଗୋଲକରେ ରଖାଯାଉଥିଲା ଏବଂ ଗୋଲକକୁ ସ୍ତୁପର କେନ୍ଦ୍ର ସ୍ଥିତ ଏକ କକ୍ଷରେ ରଖି ସ୍ତୁପ ନିର୍ମାଣ କରାଯାଉଥିଲା । ଅର୍ଦ୍ଧଗୋଲାକାର ସ୍ତୁପର ଏକ ଗୋଲାକାର ବାରଣ୍ଡା ରହିଥିଲା, ଯାହା ସ୍ତୁପକୁ ଭିତ୍ତି ପ୍ରଦାନ କରୁଥିଲା । ସ୍ତୁପର ସବା ଉପରେ ସମାନ କରିଦିଆଯାଉଥିଲା, ଯାହା ଏକ ଛୋଟ ବର୍ଗାକାର ବାରଣ୍ଡାର ରୂପ ନେଉଥିଲା । ବାରଣ୍ଡାରୁ ଏକ ଶାଫ୍ଟ (shaft) ପୁଣି କେନ୍ଦ୍ରରେ ସ୍ଥିତ ସ୍ମୃତିଚିହ୍ନ ଗୋଲକକୁ ଆସିଥିଲା । ବର୍ଗର କେନ୍ଦ୍ରରେ ଏକ ପିତଳ ସ୍ତମ୍ଭ ଥିଲା, ଯାହାର ଉପରେ ଅନେକଗୁଡ଼ିଏ ଛତ୍ର ରହିଥିଲା । ଉକ୍ତ ଅର୍ଦ୍ଧଗୋଲକର ଚାରିକଡ଼େ ବାଡ଼ ଦେଇ ରାସ୍ତା କରାଯାଇଥିଲା, ଯାହାକୁ ସାଂସାରିକରୁ ଆଧ୍ୟାତ୍ମିକ ଓ ଅଧିଭୌତିକକୁ ପୃଥକ୍ କରିବାପାଇଁ ଏକ ପ୍ରତୀକ ରୂପେ ଦେଖିହେବ । ଏହିସବୁ ବିଶେଷତ୍ୱର ଅନ୍ତଃକ୍ରିୟାରୁ

ଏକ ବ୍ରହ୍ମାଣ୍ଡୀୟ ବ୍ୟବସ୍ଥାର ଅର୍ଥ ଖୋଜିହୁଏ, ଯାହା ଲୌକିକ ଓ ଅଲୌକିକ ସୂତ୍ରବଦ୍ଧ କରେ । ମାତ୍ର ଏଭଳି ବିଶଦ ଅର୍ଥ ସମ୍ଭବତଃ ସ୍ତୁପ ନିର୍ମାଣବେଳେ ଦିଆଯାଇ ନ ଥିଲା । ସେତେବେଳେ ସ୍ମୃତିଚିହ୍ନକୁ ଶ୍ରଦ୍ଧାର ପ୍ରତୀକ ଭାବରେ ଅତି ଯତ୍ନରେ ରଖାଯାଉଥିଲା । ଅନେକ ଦୃଷ୍ଟିରୁ ଏହା ବୈଦିକ ଯଜ୍ଞସ୍ଥଳର ବିଲୋମ ଥିଲା । ବୈଦିକ ରୀତି ଅନୁସାରେ, ଯଜ୍ଞସ୍ଥଳକୁ ଅସ୍ଥାୟୀ ରୂପରେ ପବିତ୍ରତା ପ୍ରଦାନ କରାଯାଉଥିଲା । ହେଲେ ତା'ର ବିପରୀତ ସ୍ତୁପ ଥିଲା ଏକ ସ୍ଥାୟୀ ପବିତ୍ରସ୍ଥଳୀ । ଶାରୀରିକ ଅବଶେଷର ସମାଧିକରଣ ବେଦ ଦୃଷ୍ଟିରୁ ଏକ ସମ୍ପୂର୍ଣ୍ଣ ବିପରୀତ କଥା । ବ୍ରାହ୍ମଣୀୟ ଧର୍ମରେ ଦଗ୍ଧ ବସ୍ତୁକୁ ବିସର୍ଜିତ କରିବା ଉଚିତ । ଶୌଚତା ଦୃଷ୍ଟିରୁ ବ୍ରାହ୍ମଣୀୟ ଧର୍ମରେ ଦେହାବଶେଷକୁ ଉପାସନା କରିବା ବର୍ଜନୀୟ । ଏହାର ବିପରୀତ, ବୌଦ୍ଧଧର୍ମରେ ସ୍ମୃତିଚିହ୍ନ ବୁଦ୍ଧଦେବଂ କିମ୍ବା ଅନ୍ୟ ପୂଜ୍ୟ ବ୍ୟକ୍ତିର ଉପସ୍ଥିତିର ପ୍ରତୀକ ଓ ଉପାସ୍ୟ ହୁଏ ।



*ଏକ ବୌଦ୍ଧ ବିହାରର ନକ୍ସା*

ପବିତ୍ର ଓ ପାର୍ଥିବ ମଧ୍ୟରେ ପୃଥକତା ଦୈନନ୍ଦିନ ଜୀବନରେ ମଧ୍ୟ ପରିଦୃଷ୍ଟ ହୋଇଥାଏ । ଏହି ପାର୍ଥକ୍ୟକୁ ବାଡ଼ ଓ ସିଂହଦ୍ୱାରର ବାସ-ରିଲିଫ (bas-relief)ରେ ମଧ୍ୟ ଦେଖିହୁଏ । ନାଗରିକମାନଙ୍କୁ ଛାତର ବେଲକୋନିରେ ଛିଡ଼ା ହୋଇଥିବାର ଦର୍ଶାଯାଇଛି । ରାଜରାସ୍ତାରେ ଯାଉଥିବା ପଥିକମାନଙ୍କ ପ୍ରତି ସେମାନଙ୍କର ଜିଜ୍ଞାସା ଏବଂ ନଗରର ଦୃଶ୍ୟ ପ୍ରତି ଆଗ୍ରହକୁ ପ୍ରଦର୍ଶିତ କରାଯାଏ । ପାର୍ଥିବରୁ ପବିତ୍ରକୁ ପୃଥକ୍ କରିବାବେଳେ ଆନୁଷ୍ଠାନିକ




ପ୍ରସିଦ୍ଧ ସାଞ୍ଚି ସ୍ତୂପର ନକ୍ସା ଓ ଉତ୍ଥାପନ

ବିଶେଷତା ବ୍ୟତୀତ ସହର ଓ ତା'ର ପରିବେଶର ଅବଧାରଣା କଥା ବି ରହିଥିଲା । ମୂର୍ତ୍ତିକଳାର ନଗର ଦୃଶ୍ୟରେ ଯେଉଁ ପ୍ରାସାଦ, ବୁର୍ଜ, ବିଥି, ସିଂହଦ୍ୱାରର ପରିକଳ୍ପନା ରହୁଥିଲା, ତା'ର ଉଦ୍ଦେଶ୍ୟ ଥିଲା ସହରକୁ ଅନ୍ୟ କ୍ଷେତ୍ରରୁ ପୃଥକ୍‌ଭାବେ ପ୍ରଦର୍ଶିତ କରିବା । ଭବନର ଛାତ ଏହି ସ୍ଥାପତ୍ୟକୁ ପ୍ରଦର୍ଶିତ କରୁଥିଲା । କେତେକ ଭବନ ଏକାଧିକ ତଳ ବିଶିଷ୍ଟ ଥିଲା । ବୌଦ୍ଧ ଗଳ୍ପ-କଥା ଏହି କାଳର ସ୍ଥାପତ୍ୟର ଏକ ବିଶେଷତ୍ୱ ସିଦ୍ଧ ହେଲା । କାନ୍ଥରେ ବୁଦ୍ଧଙ୍କର ଜୀବନ ଗାଥା ଏବଂ ଜାତକ କଥାର ଚିତ୍ରାଙ୍କନ ସବୁ ସ୍ଥାନ ପାଇଲା । ଜାତକ କଥାର ଆଧାର ଥିଲା ଲୋକକଥା । ତାକୁ କୁଶଳତାର ସହିତ ବୁଦ୍ଧଙ୍କର ଜୀବନ ସହ ଯୋଡ଼ି ପୁନଃରଚିତ କରାଗଲା ଏବଂ ବୁଦ୍ଧଙ୍କର ପୂର୍ବଜନ୍ମର କଥା ବୋଲି ପରିବେଷଣ କରାଗଲା । ଏହିସବୁ ବର୍ଣ୍ଣନାରେ ସଜୀବତା ଓ ଲଘୁ ବିନୋଦ ମଧ୍ୟ ରହିଥିଲା, ଯାହାଫଳରେ ଚିତ୍ରର ଅବଲୋକନ ଏକ ସୁଖଦ ଅନୁଭବ ପ୍ରମାଣିତ ହେଉଥିଲା । ଏହାସହିତ ଏଥିରୁ ଦୈନନ୍ଦିନ ଜୀବନର ଅନେକ ମାର୍ମିକ ସତ୍ୟକୁ ବୁଝି ହେଉଥିଲା ।

ସ୍ତୁପର ଚାରିଗୋଟି ମୁଖ୍ୟ ବିନ୍ଦୁ ଉପରେ ସିଂହଦ୍ୱାରକୁ ପ୍ରବେଶ କରିବାପାଇଁ ରେଲିଂରେ ଗୋଟାଏ ବାଡ଼ ଦିଆଯାଇଥିଲା । ଏହା ସ୍ଥପତିକୁ ନିଜର କଳା ପ୍ରଦର୍ଶନ ପାଇଁ ଅଧିକ ଅବସର ପ୍ରଦାନ କରୁଥିଲା । ଆଜିପର୍ଯ୍ୟନ୍ତ ବଞ୍ଚି ରହିଥିବା ସ୍ତୁପ ରେଲିଂ ମଧ୍ୟରେ ଭରହୁତର ରେଲିଂ ଅନ୍ୟତମ । ଏହା ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର କଳାକୃତି । (ବର୍ତ୍ତମାନ ଏହା କଲିକତା ସଂଗ୍ରହାଳୟରେ ସଂରକ୍ଷିତ ।) ଏହି କାଳଖଣ୍ଡରେ ସାଞ୍ଚିସ୍ତୁପର ମରାମତି ତଥା ବିସ୍ତାର କରାଯାଇଥିଲା । ମରାମତି ପଛରେ ଉଦ୍ୟମ ରହିଥିଲା ବ୍ୟବସାୟୀ, କାରିଗର, କୃଷକ ଏବଂ ରାଜବଂଶର କେତେକ ଲୋକଙ୍କର । ଏମାନେ ସମସ୍ତେ ଥିଲେ ଦାକ୍ଷିଣାତ୍ୟ ଓ ମଧ୍ୟ-ଭାରତର ଲୋକ । ନିକଟରେ ପଞ୍ଜାବରେ ସଂଘୋଲଠାରେ ଏକ ସ୍ତୁପର ଆବିଷ୍କାର ହୋଇଛି । ସେଠାରେ ସ୍ତୁପର ରେଲିଂକୁ ଭଲଭାବେ ଆବୃତ୍ତ କରି ନିକଟସ୍ଥ ପଡ଼ିଆରେ ପୋତି ଦିଆଯାଇଥିଲା । ସମ୍ଭବତଃ ବୌଦ୍ଧଧର୍ମ ପ୍ରତି ଅସହିଷ୍ଣୁ ଲୋକଙ୍କ ଦାଉରୁ ରକ୍ଷା କରିବାପାଇଁ ଏପରି କରାଯାଉଥିଲା ।

ସ୍ତୁପ ଥିଲା ଏକ ଉପାସ୍ୟ ସଂରଚନା । କୌଣସି ନା କୌଣସି ବୌଦ୍ଧବିହାରର ଦେଖାରେଖାରେ ତାହା ରହୁଥିଲା । ତାକୁ ଏମିତି ଏକ ଜାଗାରେ ନିର୍ମାଣ କରାଯାଉଥିଲା, ଯେଉଁଠି ଲୋକ ସମାଗମ ସହଜରେ ହୋଇପାରିବ । ଅନେକ ସମୟରେ ଧାର୍ମିକ ସ୍ଥଳଗୁଡ଼ିକ ପୂର୍ବରୁ ଧାର୍ମିକ ଓ ପବିତ୍ର ଆଖ୍ୟା ପାଇଥିବା ସ୍ଥାନରେ ଅବସ୍ଥିତ ଥାଆନ୍ତି । ତେଣୁ ଧର୍ମକାର୍ଯ୍ୟ ଉଦ୍ଦେଶ୍ୟରେ ସେଠି ଲୋକ ସମାଗମ ହୁଏ । କେବେ କେବେ ବାଣିଜ୍ୟ ପଥର କେନ୍ଦ୍ରବିନ୍ଦୁରେ ଧାର୍ମିକ ସ୍ଥଳର ସଂରଚନା କରାଯାଏ । ଫଳରେ ଯାତ୍ରୀମାନେ ସେଠି ବିଶ୍ରାମ ପାଇଁ ରହିଥାନ୍ତି ।

ଚର୍ଚ୍ଚିତ ସ୍ତୁପମାନଙ୍କ ମଧ୍ୟରେ ଅମରାବତୀର ସ୍ତୁପ ଅନ୍ୟତମ । ଏହା ଏକ ବିଶାଳ ମହାପାଷାଣିକ ସମାଧିସ୍ଥଳର ନିକଟରେ ଅବସ୍ଥିତ ।

ଏମିତିରେ ସ୍ତୁପର ନିର୍ମାଣରେ ବିଶେଷ କିଛି ସ୍ଥାପତ୍ୟ ପାଇଁ ଅବସର ନ ଥାଏ । ଗାଁ ଓ ସହରର ଘରମାନଙ୍କରେ ବ୍ୟବହୃତ ହେଉଥିବା ଦ୍ୱାରବନ୍ଧ ଭଳି ସ୍ତୁପର କାଠ ନିର୍ମିତ ସିଂହଦ୍ୱାର ରହିଥାଏ । ଗୁମ୍ଫା ସ୍ଥାପତ୍ୟରେ ମଧ୍ୟ କାଠ କଳାର ଅନୁସରଣ କରାଯାଉଥିଲା । ପାହାଡ଼ିଆ କ୍ଷେତ୍ରରେ ବିଶାଳ ଗୁମ୍ଫାମାନ ଖୋଦନ ହେଉଥିଲା । ଏଥିରେ ବିହାର କିମ୍ବା ଚୈତ୍ୟ ପ୍ରକୋଷ୍ଠର ଯୋଜନାକୁ ଅନୁସରଣ କରାଯାଉଥିଲା । 'ଚୈତ୍ୟ' ଶବ୍ଦର ପ୍ରଚଳନ ପ୍ରାକ୍-ବୌଦ୍ଧକାଳୀନ ସମୟରୁ ରହିଥିଲା । ଆଦ୍ୟ ଗଣସଂଘମାନଙ୍କରେ ପୂଜାର୍ଚ୍ଚନା ପାଇଁ ଆବଦ୍ଧ ଧାର୍ମିକସ୍ଥଳୀର ଆବଶ୍ୟକତା ପଡୁଥିଲା । ପୃଷ୍ଠପୋଷକମାନଙ୍କର ଦାନରେ ଗୁମ୍ଫାର ଖୋଦନ କରାଯାଉଥିଲା । ଆଜିକାଲି ଯେମିତି ସ୍ୱତନ୍ତ୍ର ପରିସର ନିର୍ମାଣ ପାଇଁ ଯୋଜନା ହେଉଛି, ଠିକ୍ ସେହିଭଳି ଉଦ୍ୟମ ସେତେବେଳେ ମଧ୍ୟ ଗୁମ୍ଫା ନିର୍ମାଣରେ ହେଉଥିଲା । ଅନେକ ଗୁମ୍ଫା, ସ୍ତୁପ, ଉପାସନା ପ୍ରକୋଷ୍ଠ ଓ ବିହାର ନିର୍ମାଣ ପାଇଁ ଗୋଟାଏ ପାହାଡ଼ରେ ଯୋଜନା ହେଉଥିଲା । ଫଳରେ, ବିଶାଳ ଗୁମ୍ଫାମାନଙ୍କରେ ପଥର ଖୋଦନ କରି ସମ୍ପୂର୍ଣ୍ଣ ସଂରଚନା ରହିପାରୁଥିଲା । ପଶ୍ଚିମ ଦାକ୍ଷିଣାତ୍ୟ, ବିଶେଷକରି କାର୍ଲେ ଓ ବେଡ୍‌ସା ହେଲା ଏହି ଧରଣର ଜଟିଳ ସ୍ତୁପ । ଯେଉଁଠି ପଥର ଚଟ୍ଟାଣକୁ ସହଜରେ ଖୋଦନ କରାଯାଇ ପାରୁଥିଲା, ସେଠାରେ ଅଧିକ ସଂଖ୍ୟକ ସ୍ତୁପ ସଂରଚନାର ସମ୍ଭାବନା ରହୁଥିଲା । ଉଦାହରଣ ସ୍ୱରୂପ, ବିହାରର ବାରାବରରେ, ଓଡ଼ିଶାରେ ଓ ପଶ୍ଚିମ ଦାକ୍ଷିଣାତ୍ୟରେ ଅନେକ ଗୁମ୍ଫା ଓ ସ୍ତୁପ ନିର୍ମାଣ ସମ୍ଭବ ହୋଇପାରିଥିଲା । ଆଗ୍ରହପୂର୍ଣ୍ଣ ତଥ୍ୟ ହେଲା ଯେ ଦାକ୍ଷିଣାତ୍ୟର ଦକ୍ଷିଣ ଭାଗରେ (କେରଳରେ) ଅନେକ ମହାପାଷାଣିକ ଗୁମ୍ଫା ରହିଥିଲା । ତହିଁରେ ସମାଧି ଓ ସମାଧିସ୍ଥଳର ସାଜସଜ୍ଜାମାନ ଦେଖିବାକୁ ମିଳିଥାଏ ।

କାର୍ଲେଠାରେ ଏକ ସଂକୀର୍ଣ୍ଣ ପ୍ରବେଶ କ୍ଷେତ୍ର ମାଧ୍ୟମରେ ଗୁମ୍ଫା ଭିତରକୁ ପହଞ୍ଚି ହେଉଥିଲା । ଗୁମ୍ଫାରେ ପ୍ରବେଶ କଲାପରେ ଏକ ବିଶାଳ ଉପାସନା କକ୍ଷକୁ ଲୋକଙ୍କୁ ଆମନ୍ତ୍ରିତ କରି ନିଆଯାଉଥିଲା । ଏହି କକ୍ଷ ଥିଲା ଏକ ଆୟତାକାର କ୍ଷେତ୍ର । ତା'ର କୋଣରେ ଏକ ବିଶାଳ ଅର୍ଦ୍ଧଗୋଲାକାର ଉପାସ୍ୟ ସ୍ତୁପ ରହିଥିଲା । ଚୈତ୍ୟ ମହାକକ୍ଷରେ ଅର୍ଦ୍ଧଗୋଲାକାର ସ୍ତୁପଟି ଦେଖାଯାଉଥିଲା । ଧାଡ଼ି ଧାଡ଼ି ସ୍ତମ୍ଭ ଚୈତ୍ୟର ମଧ୍ୟ ଭାଗକୁ ପାର୍ଶ୍ୱକାନ୍ଥରୁ ଅଲଗା କରୁଥିଲା । କାର୍ଲେ କକ୍ଷର ସିଲିଂ କାଠର 'ରିବ୍' (rib) ଥିବା କମାଣର ଅନୁକରଣରେ ନିର୍ମିତ ହୋଇଛି । ଅବଶ୍ୟ ଏଠାରେ 'ରିବ୍'ର ଆବଶ୍ୟକତା ନ ଥିଲା ଭଳି ମନେହୁଏ । ଚୈତ୍ୟର ଉଭୟ ପାର୍ଶ୍ୱରେ ଭିକ୍ଷୁମାନଙ୍କ ରହଣି ପାଇଁ କକ୍ଷମାନ ନିର୍ମିତ



*କାର୍ଲେର ଚୈତ୍ୟ ମହାକକ୍ଷ : ନକ୍ସା ଓ ଉତ୍ଥାପନ*

ହୋଇଥିଲା । ଏହି କକ୍ଷମାନ ମଧ୍ୟ ଥିଲା ଗୋଟାଏ ଗୋଟାଏ ଗୁମ୍ଫା । ପରବର୍ତ୍ତୀ ସମୟର ପଥର ଖୋଦିତ ବୌଦ୍ଧ ସଂରଚନାଗୁଡ଼ିକ, ଯାହା ଏଲୋରା ଓ ଅଜନ୍ତାରେ ଦେଖିବାକୁ ମିଳେ, ଅଧିକ ଯୋଜନାବଦ୍ଧ ଓ ଅଧିକ କଳା-ସ୍ଥାପତ୍ୟପୂର୍ଣ୍ଣ ଥିଲା । ଏଲୋରାର ପରମ୍ପରାକୁ ପରେ ଜୈନ, ବୈଷ୍ଣବ ଓ ଶୈବମାନେ ନିଜ ନିଜ ଗୁମ୍ଫା-ମନ୍ଦିରରେ ପ୍ରଚଳିତ କରାଇଥିଲେ । ଜୈନ ଗୁମ୍ଫା ବିହାରଗୁଡ଼ିକ ବୌଦ୍ଧବିହାରର ସମସାମୟିକ ଥିଲା । ଓଡ଼ିଶାର ଉଦୟଗିରି ଓ ଖଣ୍ଡଗିରିରେ ଜୈନ ଭିକ୍ଷୁମାନଙ୍କ ନିମନ୍ତେ ଏଭଳି ଅନେକ ଗୁମ୍ଫା ନିର୍ମିତ ହୋଇଥିଲା । ଚେଦି ଶାସକମାନେ ଉକ୍ତ ନିର୍ମାଣ ପାଇଁ ପୃଷ୍ଠପୋଷକତା ପ୍ରଦାନ କରିଥିଲେ ।

ଗୁମ୍ଫା ବିହାର ଓ ଚୈତ୍ୟରେ ସ୍ଥାପତ୍ୟର ପ୍ରସାର ପାଇଁ ବିଶେଷ ଅବସର ନ ଥିଲା । ମାତ୍ର ବାଣିଜ୍ୟ ପଥକୁ ନିୟନ୍ତ୍ରିତ କରୁଥିବା ସ୍ଥଳୀମାନଙ୍କରେ ତଥା ଦାକ୍ଷିଣାତ୍ୟର ମାର୍ଗରେ ଅନେକ ସଂଖ୍ୟାରେ ସେଗୁଡ଼ିକ ରହିଥିଲା । ବାଗ, ନାସିକ, ଜୁନାର, କନ୍ହେରୀ, ଭାଜ, କୋଣ୍ଡନ ଏବଂ କାର୍ଲେ ହେଲା ସେହିଭଳି କେତୋଟି ସ୍ଥାନ । ପୂର୍ବ ଉପକୂଳରେ ଶୃଙ୍ଖଳାବଦ୍ଧ ଭାବେ ସଂସ୍ଥାପିତ ହୋଇଥିବା କେତୋଟି ସ୍ତୁପ ଓ ବିହାରସ୍ଥଳୀକୁ ଦେଖିଲେ ସେହିଭଳି ଏକ ବାଣିଜ୍ୟ ମାର୍ଗର ଅବସ୍ଥିତି କଥା କଳ୍ପନା କରିହୁଏ । ଖ୍ରୀଷ୍ଟାବ୍ଦର ଆରମ୍ଭ ଶତାବ୍ଦୀମାନଙ୍କରେ

ଅମରାବତୀ, ଘଣ୍ଟଶାଳା ଓ ନାଗାର୍ଜୁନକୋଣ୍ଡାଠାରେ ଅନେକ କଳାତ୍ମକ କାର୍ଯ୍ୟ ସଂଘଟିତ ହୋଇଥିବାର ଜଣାଯାଏ । ଏଥିରେ ମୁଖ୍ୟତଃ ବୌଦ୍ଧଧର୍ମ ସମ୍ପର୍କିତ କାରୁକାର୍ଯ୍ୟର ନିର୍ମାଣ ହୋଇଥିଲା । ମାତ୍ର ତା' ସହିତ ଅନ୍ୟ ସଂପ୍ରଦାୟର କଳାରେ ମଧ୍ୟ ଆଗ୍ରହ ଥିବା କଥା ଜଣାପଡୁଥିଲା । ଏହି ସମୟରେ 'ଏକମୁଖଲିଙ୍ଗମ୍'ର ନିର୍ମାଣ ଦେଖିବାକୁ ମିଳିଲା । ଏହି ଲିଙ୍ଗରେ ମାନବ ତତ୍ତ୍ୱର ସମାବେଶ କରାଗଲା । ଏକା ମାତ୍ରାରେ ମହତ୍ତ୍ୱପୂର୍ଣ୍ଣ ଥିଲା ସ୍ୱାତ ଉପତ୍ୟକା ଅଥବା ହିନ୍ଦୁକୁଶ ପାର ହୋଇ ଯାଇଥିବା ମାର୍ଗ । ସେଠାରେ ଥିବା ସ୍ତୁପସ୍ଥଳୀ ମଧ୍ୟରେ ଏକଦା ପ୍ରସିଦ୍ଧ ହଦ୍‌ଡା ଓ ବାମିୟାନର ବୌଦ୍ଧସ୍ଥଳ ରହିଥିଲା । ଏହି କିଛି ବର୍ଷ ତଳେ ଉଭୟ ବୌଦ୍ଧ କୀର୍ତ୍ତି ଧ୍ୱଂସ କରି ଦିଆଯାଇଥିଲା । ସ୍ତୁପ ଓ ବିହାରର ଏହି ରକମର ଅବସ୍ଥିତି ଯୋଗୁଁ ବୌଦ୍ଧବିହାରଗୁଡ଼ିକ ମଧ୍ୟ ବାଣିଜ୍ୟର ଅଂଶବିଶେଷ ହେଲେ । ଯାହାର ଦେବୋତ୍ତର ଜମି ଥିଲା, ସେ ସମ୍ପତ୍ତି ଉପରେ ଅଧିକାର ଦାବି କଲେ । ଏଥିପାଇଁ ସମ୍ପତ୍ତିର ରକ୍ଷଣାବେକ୍ଷଣର ଲୋଡ଼ା ପଡ଼ିଲା । ଏଥିରୁ ଆରମ୍ଭ ହେଲା ମଠ-ମହନ୍ତଙ୍କର ଜମିଦାରୀ, ଯାହା ପରବର୍ତ୍ତୀ ସମୟରେ ଭୟଙ୍କର ରୂପ ନେଲା ।

'ପୋଟ୍ରେଟ' ବା ପୂର୍ଣ୍ଣାବୟବ ମାନବ-ମୂର୍ତ୍ତି ନିର୍ମାଣର କଳାକୁ ରାଜାଶ୍ରୟ ପ୍ରାପ୍ତ ହୋଇଥିଲା । ଇଣ୍ଡୋ-ଗ୍ରୀକ୍ ସିକ୍କା-ମୋହରରେ ଅଙ୍କିତ ରାଜାଙ୍କର ଚିତ୍ରରୁ ଆରମ୍ଭ କରି କୁଶାଣମାନଙ୍କର ପୂର୍ଣ୍ଣାବୟବ ମୂର୍ତ୍ତିମାନ ନିର୍ମାଣ ହେବାକୁ ଲାଗିଲା । ଜୈନଧର୍ମର ଭକ୍ତମାନେ ସ୍ୱତନ୍ତ୍ର ଭାବରେ ଅବସ୍ଥାପିତ ଜୈନ ମୂର୍ତ୍ତିର ନିର୍ମାଣକୁ ପୃଷ୍ଠପୋଷକତା ପ୍ରଦାନ କଲେ । ବିଶେଷକରି ମଥୁରାର ଶିଳ୍ପୀମାନେ ଏହି କାର୍ଯ୍ୟରେ ସିଦ୍ଧହସ୍ତ ଥିଲେ । ବୁଦ୍ଧମୂର୍ତ୍ତି ପାଇଁ ମଧ୍ୟ ମଥୁରା ଏକ କେନ୍ଦ୍ର ହେଲା । ଜୈନମୂର୍ତ୍ତି ଭଳି ଏହାର ତିଆରି ହେଉଥିଲା । ଏହାର ପଛରେ ଥିଲା ହେଲେନବାଦୀ ପ୍ରଭାବ, ଯେଉଁଥିରେ ଦେବପ୍ରତିମା ନିର୍ମାଣର ବଳିଷ୍ଠ ପରମ୍ପରା ରହିଥିଲା । ଆଦ୍ୟକାଳୀନ ସ୍ତୁପ ସ୍ଥାପତ୍ୟରେ ବୁଦ୍ଧ ପ୍ରତିମାର ଚିହ୍ନବର୍ଣ୍ଣ ଦେଖିବାକୁ ମିଳେ ନାହିଁ । ତାଙ୍କ ଅବସ୍ଥିତିକୁ ପ୍ରଦର୍ଶିତ କରିବାପାଇଁ ପ୍ରତୀକ ରୂପରେ ଅଶ୍ୱକୁ (ତ୍ୟାଗର ପ୍ରତୀକ), ବୃକ୍ଷକୁ (ଜ୍ଞାନପ୍ରାପ୍ତିର ପ୍ରତୀକ), ଚକ୍ରକୁ (ବୁଦ୍ଧଙ୍କର ପ୍ରଥମ ଉପଦେଶର ପ୍ରତୀକ) ଏବଂ ସ୍ତୁପକୁ (ବୁଦ୍ଧଙ୍କର ମୃତ୍ୟୁ ଓ ନିର୍ବାଣର ପ୍ରତୀକ) ଦର୍ଶାଯାଉଥିଲା । ଏହିସବୁ ପ୍ରତୀକ ପରିବର୍ତ୍ତେ ଯେତେବେଳେ ପ୍ରତିମା ଉପାସ୍ୟ ରୂପେ ସ୍ଥାନ ପାଇଲା, ସ୍ଥାନୀୟ ଶୈଳୀକୁ ପ୍ରଶ୍ରୟ ମିଳିଲା । ଯେମିତି ଗାନ୍ଧାରର ବୁଦ୍ଧମୂର୍ତ୍ତି, ମଥୁରାର ବୁଦ୍ଧମୂର୍ତ୍ତି ବା ଅମରାବତୀର ବୁଦ୍ଧମୂର୍ତ୍ତି ।

ଏହି କାଳରେ ମୂର୍ତ୍ତିକଳାର ଆରମ୍ଭ ସ୍ଥାପତ୍ୟର ଅନୁସଙ୍ଗୀ ଭାବରେ ହୋଇଥିଲା । ମୁଖ୍ୟ ରୂପରେ ସାଜସଜ୍ଜା ପାଇଁ ମୂର୍ତ୍ତିକଳାକୁ ସିଂହଦ୍ୱାର, ରେଲିଂ ଏବଂ ପ୍ରବେଶଦ୍ୱାରରେ ଦେଖିବାକୁ ମିଳୁଥିଲା । ଭିତ୍ତି-ମୂର୍ତ୍ତିକଳା ସହିତ ସ୍ୱତନ୍ତ୍ର ରୂପରେ ମଧ୍ୟ ମୂର୍ତ୍ତି ନିର୍ମାଣ ହେବାକୁ

ଲାଗିଲା । ମୂର୍ତ୍ତି ମଧ୍ୟରେ ଥିଲେ ଯକ୍ଷ ଓ ଯକ୍ଷୀର ମୂର୍ତ୍ତି, ଯାହାକୁ ସ୍ୱତନ୍ତ୍ର ଭାବରେ ନିର୍ମାଣ କରାଯାଉଥିଲା । ଏହାଦ୍ୱାରା ପ୍ରତିମା ପୂଜାକୁ ପ୍ରୋତ୍ସାହନ ମିଳିଲା । ଧାର୍ମିକ ସଂପ୍ରଦାୟ ମଧ୍ୟରେ ପ୍ରତିମା ଦାନ ଏକ ପ୍ରଚଳିତ ପରମ୍ପରାରେ ପରିଣତ ହେଲା । ପ୍ରଥମେ ମଥୁରା ଆଦି ମୂର୍ତ୍ତିକଳା ପାଇଁ ପ୍ରସିଦ୍ଧ ସ୍ଥାନରୁ ମୂର୍ତ୍ତି ଭିନ୍ନ ଭିନ୍ନ ସ୍ଥଳକୁ ନିଆଯାଉଥିଲା । ପରେ ସ୍ଥାନୀୟ ସ୍ତରରେ ମୂର୍ତ୍ତିମାନ ନିର୍ମାଣ ହେଲା ଏବଂ ତହିଁରେ ସ୍ଥାନୀୟ ଶୈଳୀର ପ୍ରତିଫଳନ ଦେଖିବାକୁ ମିଳିଲା । ପୂର୍ବବର୍ତ୍ତୀ ମୂର୍ତ୍ତିକାରମାନେ ପଥରର ମୂର୍ତ୍ତି ନିର୍ମାଣ କଳା ସହ ବିଶେଷ ପରିଚିତ ନ ଥିଲେ । ସେମାନେ ଅପେକ୍ଷାକୃତ କୋମଳ ବସ୍ତୁରେ, ଯଥା- ହାତୀଦାନ୍ତ ଓ କାଠରେ ମୂର୍ତ୍ତି ତିଆରି କରିବାର ସିଦ୍ଧହସ୍ତ ଥିଲେ । ମାତ୍ର ଖ୍ରୀଷ୍ଟାବ୍ଦର ଆରମ୍ଭ ବେଳକୁ ଦକ୍ଷିଣର ମୂର୍ତ୍ତିକାରମାନେ ପଥରର କାମ କରିବାରେ ଧୂରୀଣ ହେଲେ । ପଶ୍ଚିମୋତ୍ତର ଭାରତର ଜଲାଲାବାଦ, ବେଗ୍ରାମ, ତକ୍ଷଶିଳା ଓ ସ୍ୱାତ ଉପତ୍ୟକାରେ ମୂର୍ତ୍ତିକାରମାନେ ପରସ୍ତ ପରସ୍ତ ହୋଇ ରହିଥିବା ପଥର ଚଟାଣରେ ମୂର୍ତ୍ତି ତିଆରି କରିବାକୁ ଅଧିକ ପସନ୍ଦ କରୁଥିଲେ । ମଥୁରା ଅଞ୍ଚଳରେ ନାଲି ବାଲିଗରଡ଼ା ପଥରରେ ବୋଧିସତ୍ତ୍ୱ ଓ ଜୈନ ତୀର୍ଥଙ୍କରମାନଙ୍କର ବହୁସଂଖ୍ୟାରେ ମୂର୍ତ୍ତି ତିଆରି ହେଉଥିଲା । ଏହାକୁ ଗୁପ୍ତକାଳୀନ ମୂର୍ତ୍ତିକଳାର ପୂର୍ବସୂରୀ ରୂପେ ଦେଖିହେବ । କୃଷ୍ଣାନଦୀ ଉପତ୍ୟକା ସ୍ଥିତ ଅମରାବତୀ, ନାଗାର୍ଜୁନକୋଣ୍ଡା, ଘଣ୍ଟଶାଳା ଓ ଜାଗେୟାପେଟା ଆଦି ସ୍ଥାନରେ ଉଭୟ ପଥର ଓ ଅନ୍ୟାନ୍ୟ ସ୍ଥାନୀୟ ଭାବେ ଉପଲବ୍ଧ ସାମଗ୍ରୀକୁ ମୂର୍ତ୍ତି ନିର୍ମାଣରେ ଉପଯୋଗ କରାଯାଉଥିଲା । ଏହା ମୂର୍ତ୍ତିକଳା ଶୈଳୀକୁ ସ୍ଥାନୀୟ ଓ ଅଧିକ ସୁନ୍ଦର କଲା ।

କଳାର ଅଭିବ୍ୟକ୍ତି ପାଇଁ ଏହି ସମୟରେ କେବଳ ପଥରକୁ ମାଧ୍ୟମ କରାଯାଇ ନ ଥିଲା । ପାନିଆଁ ଓ ଦର୍ପଣର ପୃଷ୍ଠଭାଗ ଆଦି ତିଆରି ପାଇଁ ହାତୀଦାନ୍ତର ବ୍ୟବହାର ହେଉଥିଲା । ହାତୀଦାନ୍ତରେ ତିଆରି କାରିଗରୀ କାମ ପଥର କାମଠାରୁ ଭିନ୍ନ ଥିଲା । ହାତୀଦାନ୍ତର କଳା ରତ୍ନପଥରର ଆଭୂଷଣ ପରି ଅଧିକ ମନଲୋଭା ହେଉଥିଲା । ଅସଲରେ, ଭାରତରେ ରତ୍ନପଥର ଖଚିତ ଆଭୂଷଣର ତିଆରି ଖୁବ୍ ଅଧିକ ମାତ୍ରାରେ ହେଉଥିଲା । ହାତୀଦାନ୍ତର କଳା ହେଲା ସ୍ୱର୍ଣ୍ଣକାରର କଳା ଭଳି । ଅଥଚ ସୁନାର କାମର ବେଶି ନମୁନା ଏହି ସମୟରେ ଦୃଷ୍ଟିକୁ ଆସେ ନାହିଁ, ଯଦିଓ ଗ୍ରନ୍ଥମାନଙ୍କରେ ସୁନାଗହଣାର ଯଥେଷ୍ଟ ଉଲ୍ଲେଖ ଦେଖିବାକୁ ମିଳିଥାଏ । ଅଧିକ ପ୍ରତ୍ନତାତ୍ତ୍ୱିକ ଖନନ ହେଲେ ହୁଏତ ସେହି ଧରଣର ଉତ୍କୃଷ୍ଟ ନମୁନା ସବୁ ମିଳିପାରିବ । ତଥାପି ତା'ର ସଂଖ୍ୟା ମଧ୍ୟ ଏସିଆରେ ଶକ ସମାଧି କ୍ଷେତ୍ରରେ ମିଳିଥିବା ସ୍ୱର୍ଣ୍ଣ ଅଳଙ୍କାର ତୁଳନାରେ ହୁଏତ କମ୍ ହେବ ।

ଗାନ୍ଧାରର କଳାକୁ ବୌଦ୍ଧ ପୃଷ୍ଠପୋଷକତା ପ୍ରାପ୍ତ ହୋଇଥିବାର ଅନେକ ପ୍ରମାଣ ମିଳେ । ଅବଶ୍ୟ ତହିଁରେ ଅନ୍ୟ ଦେବାଦେବୀ ଏବଂ ପ୍ରସଙ୍ଗକୁ ମଧ୍ୟ ଉପେକ୍ଷା କରାଯାଇ

ନ ଥିଲା । ବୁଦ୍ଧଙ୍କର ମାତାଙ୍କର ମୂର୍ତ୍ତି ଏଥେନ୍ସର ଏକ ଦେବୀ ତୁଲ୍ୟ ହୋଇଥିଲା । ବୁଦ୍ଧଙ୍କର ପ୍ରତିଛବିରେ ଏପୋଲୋ ଭଳି ମୁଖାକୃତି ରହିଛି । ବୁଦ୍ଧଙ୍କ ମୂର୍ତ୍ତି ତଳେ ଗ୍ରୀକ୍ ଦେବାଦେବୀଙ୍କୁ ପ୍ରଣତି ବାଢୁଥିବାର ଦର୍ଶାଯାଇଛି । ବିଭିନ୍ନ ଦୃଶ୍ୟରେ ଦର୍ଶାଯାଇଥିବା ସାମାନ୍ୟ ଲୋକଙ୍କର ସଂଖ୍ୟାରୁ ଗ୍ରୀକ୍-ରୋମାନ ପ୍ରଭାବର ସଂକେତ ମିଳେ । ଅବଶ୍ୟ ଏହି କ୍ଷେତ୍ରର ବାହାର ଭାରତ ଏବଂ ମଧ୍ୟ-ଏସିଆରେ ଶୈଳୀଗତ ବିବିଧତା ରହିଥିଲା । ପଲସ୍ତରା (stucho) ଥିଲା ସ୍ଥାପତ୍ୟର ଏକ ଲୋକପ୍ରିୟ ଶୈଳୀ । ହଦ୍ଦାରେ ଏବଂ ପରେ ଆଫଗାନିସ୍ତାନର ବାମିୟାନରେ ବିହାରମାନଙ୍କରେ ପଲସ୍ତରା କରି ବହୁସଂଖ୍ୟାରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପ୍ରତିମା ତିଆରି କରାଯାଇଥିଲା । ପ୍ରତିମାଗୁଡ଼ିକୁ ସ୍ଥାନୀୟ ସ୍ତରରେ ଉପଲବ୍ଧ ପଥରକୁ କାଟି ନିର୍ମାଣ କରାଯାଇଥିଲା । ହଦ୍ଦାର ପଲସ୍ତରା କଳା (stucho art)ର ଭବ୍ୟତା ସ୍ଥାନୀୟ କଳାକାରମାନଙ୍କର ଉଚ୍ଚ ଉପଲବ୍ଧିର ଦ୍ୟୋତକ ଥିଲା । ବାମିୟାନରେ ଏକ ପଥର ଚଟାଣରେ ବିଶାଳ ଆକାରର ସୁନ୍ଦର ମୂର୍ତ୍ତିମାନ ଖୋଦନ କରି ନିର୍ମାଣ କରାଯାଇଥିଲା । ମୂର୍ତ୍ତିକୁ ଦେଖିଲେ ଲାଗେ ଯେମିତି ଏହା ସମଗ୍ର ଭୂ-ଦୃଶ୍ୟକୁ ଆଚ୍ଛାଦିତ କରିଦେଉଥିଲା । ଅନେକ ସଂଖ୍ୟାରେ ମାତୃଦେବୀ ପ୍ରତିମାର ନିର୍ମାଣ ହୋଇଥିଲା । ପ୍ରତିମାର ଖୁବ୍ ଲୋକପ୍ରିୟତା ରହିଥିଲା । ଲୋକପ୍ରିୟତା ପଛରେ ଅନ୍ୟତମ କାରଣ ଥିଲା ମାତୃଦେବୀ ପ୍ରତିମାକୁ ଉର୍ବରତାର ଦେବୀ ମନେକରାଯାଉଥିଲା । ଲୌକିକ ଧର୍ମର କେତେକ ଉପାଦାନ ମଧ୍ୟ ବୌଦ୍ଧଧର୍ମର ଉପାସନାରେ ସ୍ଥାନ ପାଇଥିଲା । ଏହା ସ୍ତୁପର ପ୍ରତୀକାତ୍ମକ ମହତ୍ତ୍ୱରୁ ତଥା ସାଞ୍ଚି ଆଦି ସ୍ଥାନର ଦ୍ୱାରଦେଶରେ ଅଙ୍କିତ ନାରୀମୂର୍ତ୍ତିରୁ ଜଣାପଡ଼େ । ଅନେକ ସଂଖ୍ୟାରେ ସେଠାରେ ମୃଣ୍ମୟମୂର୍ତ୍ତି ବା ପୋଡ଼ା ମାଟିରେ ନିର୍ମିତ ମୂର୍ତ୍ତି (terracota) ମଧ୍ୟ ମିଳିଛି । ତହିଁରେ ଖେଳନା, କର୍ମକାଣ୍ଡରେ ବ୍ୟବହୃତ ଉପକରଣ ଓ ସାଜସଜ୍ଜାରେ ବ୍ୟବହୃତ ମୂର୍ତ୍ତି ରହିଛି । ଯେଉଁ ସାମାଜିକ ବର୍ଗ ଏହି କଳାର ପୃଷ୍ଠପୋଷକତା କରୁଥିଲା, ତାହା ରାଜନ୍ୟବର୍ଗ ନ ଥିଲା । ଏହି କାରଣରୁ ଲୌକିକ ଜୀବନର ଦୃଶ୍ୟ ପାଇବାରେ ଏହା ଖୁବ୍ ସାହାଯ୍ୟ କରେ ।

ଏହି ସମୟରେ ମନ୍ଦିରର ମଧ୍ୟ ବିକାଶ ଦେଖିବାକୁ ମିଳିଥିଲା । ଶୈବ ଓ ବୈଷ୍ଣବମାନେ ପୂଜା କରୁଥିବା ପ୍ରତିମାଗୁଡ଼ିକ ମନ୍ଦିରରେ ସ୍ଥାନ ପାଉଥିଲେ । ଯେଉଁସବୁ ସ୍ଥାନରେ ଆଦ୍ୟକାଳୀନ ମନ୍ଦିରର ଅବସ୍ଥିତି ଦେଖିବାକୁ ମିଳେ, ତନ୍ମଧ୍ୟରେ ଥିଲା ବେସନଗର, ନାଗାର୍ଜୁନକୋଣ୍ଡା, ସାଞ୍ଚି ଏବଂ ତକ୍ଷଶିଳା ନିକଟସ୍ଥ ଜଣ୍ଡିଆଲ । ଜଣ୍ଡିଆଲ ମନ୍ଦିରରେ ନିକଟରେ ଥିବା ହେଲେନବାଦୀ ମନ୍ଦିରର ଖୁବ୍ ପ୍ରଭାବ ଦେଖିବାକୁ ମିଳିଥିଲା । ହୁଏତ ସ୍ଥାନୀୟ ଲୋକ ମନ୍ଦିରକୁ ଏକ ଅଗ୍ନି ଉପାସନା କେନ୍ଦ୍ରରେ ପରିଣତ କରିଦେଇଥିଲେ । କୁଶାଣମାନେ ରାଜାଙ୍କୁ ଦେବତ୍ୱ ପ୍ରଦାନ କରି ତାଙ୍କର ଉପାସନା କରୁଥିଲେ । ସମ୍ଭବତଃ ଏହି ବିଚାରରୁ ମନ୍ଦିରର

ଅବଧାରଣାର ପ୍ରାରମ୍ଭ ହୋଇଥିବ । ବୌଦ୍ଧ କୀର୍ତ୍ତିରାଜିର ତୁଳନାରେ ତତ୍‌କାଳୀନ ମନ୍ଦିରଗୁଡ଼ିକ ଆକାରରେ କ୍ଷୁଦ୍ର ଓ ଅତି ସାଧାରଣ ଜଣାପଡୁଥିଲେ । କେବଳ ପ୍ରତିମା ନିମିତ୍ତ ଗୋଟାଏ କକ୍ଷ ରହୁଥିଲା । ପରବର୍ତ୍ତୀ ସମୟରେ ଏହି କ୍ଷୁଦ୍ର ମନ୍ଦିର ଭବ୍ୟ ରୂପ ଧାରଣ କଲା ।

## ଧାର୍ମିକ ବିଶ୍ୱାସ ଓ ଆଚରଣ : ଏକ ଅନ୍ତଃସମ୍ବନ୍ଧ

ଏହି ସମୟରେ ଅଧିକାଂଶ କ୍ରିୟାକଳାପର ପୃଷ୍ଠଭୂମିରେ ରହିଥିଲା ବୌଦ୍ଧଧର୍ମ । ପୁଣି ବୌଦ୍ଧଧର୍ମର ପୃଷ୍ଠପୋଷକତା କରୁଥିଲେ ଧନାଢ଼୍ୟ ଓ କ୍ଷମତାଶାଳୀ ବର୍ଗ । ବଣିକ ବର୍ଗ ଦ୍ୱାରା ସୃଷ୍ଟ ରୀତିନୀତିକୁ ମିଳିନ୍ଦପହ୍ନ, ମହାବସ୍ତୁ ତଥା ସଦ୍ଧର୍ମ-ପୁଣ୍ଡରିକ ଆଦି ବୌଦ୍ଧ ଗ୍ରନ୍ଥମାନଙ୍କରେ ଖୁବ୍ ସମର୍ଥନ ରହିଥିଲା । ସେଥିପାଇଁ ବିହାରମାନଙ୍କୁ ଯଥେଷ୍ଟ ଦାନ୍-ଅନୁଦାନ ମିଳୁଥିଲା; ବିଶାଳ ସ୍ତୁପମାନ ନିର୍ମିତ ହେଉଥିଲା ଏବଂ ସାନ ସାନ ସ୍ତୁପମାନଙ୍କର ନିୟମିତ ଜୀର୍ଣ୍ଣୋଦ୍ଧାର କରାଯାଉଥିଲା । ବୌଦ୍ଧସଂଘର ଧନସମ୍ପତ୍ତିର ଅଭାବ ନ ଥିଲା ଏବଂ ତାକୁ ସେହି ଅନୁପାତରେ ସମାଜରେ ସମ୍ମାନ ମଧ୍ୟ ମିଳୁଥିଲା । କେତେକ ବିହାର ପାଖରେ ପ୍ରଚୁର ଧନସମ୍ପତ୍ତି ରହିଥିଲା; ବିହାରରେ ଦାସ ନିଯୁକ୍ତି ହେଉଥିଲା; ସଂଘର ଜମିବାଡ଼ିରେ କାମ କରିବା ସକାଶେ ମଜୁରୀ ଦେଇ ମଜୁରିଆମାନଙ୍କୁ ନିଯୁକ୍ତ କରାଯାଉଥିଲା । ପାହାଡ଼ିଆ କ୍ଷେତ୍ରରେ ସ୍ତୁପ, ବିହାର ଆଦିର ନିର୍ମାଣ ପାଇଁ ବା ସ୍ୱତନ୍ତ୍ର ଭାବରେ ସେଗୁଡ଼ିକୁ ସ୍ଥାପନ କରିବାପାଇଁ ଆବଶ୍ୟକତା ଥିଲା ବୌଦ୍ଧଭିକ୍ଷୁମାନଙ୍କର ପ୍ରବନ୍ଧନ ଦକ୍ଷତା ଓ କୁଶଳତାର । ପାଣ୍ଠି ସଂଗ୍ରହ କରିବାକୁ ହେବ, କୁଶଳ ବିଶେଷଜ୍ଞଙ୍କଠାରୁ ପରାମର୍ଶ ନେବାକୁ ହେବ, ମଜୁରିଆଙ୍କ କାମ ବୁଝିବାକୁ ହେବ, ହିସାବପତ୍ର ତନଖି କରିବାକୁ ହେବ, ଇତ୍ୟାଦି ଇତ୍ୟାଦି । ଯା' ବାହାରେ ପୁଣି ଆଉ ଅନେକ କାମ ରହୁଥିଲା । କେତେକ ଭିକ୍ଷୁଙ୍କୁ କାମ ପରିଚାଳନା ନିମନ୍ତେ ସ୍ୱତନ୍ତ୍ର ପଦବୀ ପ୍ରାପ୍ତ ହୋଇଥିଲା । ମାତ୍ର ଅନେକ ଭିକ୍ଷୁ ତାଲିମପ୍ରାପ୍ତ ନ ଥିଲେ । ସେ କ୍ଷେତ୍ରରେ ସେମାନଙ୍କୁ କେବଳ କାମ ନିରୀକ୍ଷଣ କରିବାକୁ ଦାୟିତ୍ୱ ଦିଆଯାଇଥିଲା । ନିଶ୍ଚିତରୂପେ ଏଭଳି ନିରୀକ୍ଷକ ଭିକ୍ଷୁଙ୍କୁ ଅନ୍ୟ ବୌଦ୍ଧଧର୍ମାବଲମ୍ବୀମାନେ ମଧ୍ୟ ସାହାଯ୍ୟ କରୁଥିଲେ । ପୂର୍ବରୁ ବୌଦ୍ଧଭିକ୍ଷୁମାନେ ପୂର୍ବାହ୍ଣରେ ଭିକ୍ଷା ମାଗି ତହିଁରେ ପୂର୍ଣ୍ଣତଃ ଆଶ୍ରିତ ହୋଇ ରହୁଥିଲେ । ଏହାର ବିପରୀତ, ବିଶାଳ ଓ ସମ୍ପନ୍ନ ବିହାରମାନଙ୍କରେ ନିବାସ କରୁଥିବା ଭିକ୍ଷୁ ବିହାରର ଭୋଜନାଳୟରେ ନିୟମିତ ଭୋଜନ କରୁଥିଲେ ।

ବିହାରଗୁଡ଼ିକ ହୁଏତ ନଗର ଉପକଣ୍ଠରେ ନିର୍ମିତ ହୋଇଥିଲା, ଅଥବା ବଣିକ ଓ ତୀର୍ଥଯାତ୍ରୀମାନେ ଯାତ୍ରା କରୁଥିବା ମାର୍ଗ ପାର୍ଶ୍ୱରେ ନିର୍ମିତ ହୋଇଥିଲା । କଦାଚିତ୍

ସୌନ୍ଦର୍ଯ୍ୟପୂର୍ଣ୍ଣ ଏକାନ୍ତ ସ୍ଥାନମାନଙ୍କରେ ବି ବିହାରର ସ୍ଥାପନା କରାଯାଉଥିଲା । ନିଛାଟିଆ ଜାଗାରେ ରହିଥିବା ବିହାରଗୁଡ଼ିକର ଅଧିକ ଧନସମ୍ପତ୍ତି ଥିଲା, ଯାହାଫଳରେ ସେଠାରେ ନିବାସ କରୁଥିବା ଭିକ୍ଷୁମାନେ ଅଧିକ ବିଳାସ ଓ ସୁଖସୁବିଧାରେ ଜୀବନ ନିର୍ବାହ କରୁଥିଲେ । ଏହି ଦୃଷ୍ଟିରୁ ଦେଖିଲେ, ସାଧାରଣ ଲୋକଙ୍କଠାରୁ ସଂଘ କ୍ରମଶଃ ଦୂରେଇ ଯାଉଥିଲା । ଫଳରେ, ସାମାଜିକ ନୈତିକତାର ରକ୍ଷାକାରୀ ଭାବରେ ସଂଘର ଶକ୍ତି ହ୍ରାସ ହେଉଥିଲା । ଯଦି ବୁଦ୍ଧ ଜୀବିତ ଥାଆନ୍ତେ, ତେବେ ନିଶ୍ଚିତ ରୂପେ ସଂଘର ଏହି ଧରଣର ବିକାଶକୁ ନାପସନ୍ଦ କରିଥାନ୍ତେ ।

ବୌଦ୍ଧଧର୍ମର ଲୋକପ୍ରିୟତାର ଅନ୍ୟ ଏକ ଦିଗ ହେଲା ଯେ, ଏହା ଖୁବ୍‌ଶୀଘ୍ର ସ୍ଥାନୀୟ ରୀତିନୀତି ଓ ପରମ୍ପରାରେ ନିଜକୁ ମିଶେଇ ଦେଉଥିଲା । ମଥୁରା ଅଞ୍ଚଳରେ ଥିବା ଏକ ପରବର୍ତ୍ତୀକାଳୀନ କୁଶାଣ ବିହାରରୁ ପ୍ରାପ୍ତ ଅନୁଦାନ ସୂଚୀରୁ ଜଣାପଡ଼େ ଯେ ଅନୁଦାନକାରୀମାନେ ଉକ୍ତ କ୍ଷେତ୍ରରେ ପ୍ରଚଳିତ ଏକ ଲୋକପ୍ରିୟ ଉପାସନା ସହ୍ ସମ୍ବନ୍ଧିତ ଉର୍ବରତା ଦେବୀର ଉପାସକ ଥିଲେ । ଏହି ଉପାସନା ଥିଲା ନାଗ-ପୂଜା । ଏଥିରୁ ପ୍ରଶ୍ନ ଉଠେ, ମୂଳତଃ ନାଗ ଉପାସନା କେନ୍ଦ୍ର ଥିବା ସ୍ଥାନଟିକୁ ବୌଦ୍ଧ ବିହାରରେ ପରିଣତ କରିଦିଆଗଲା କି ? ସ୍ଥାନୀୟ ନାଗ ଉପାସନାକୁ ବୌଦ୍ଧଧର୍ମରେ ସାମିଲ କରିଦିଆଯାଇଥିଲା କି ? ତା' ସହିତ ମଥୁରା ଭଳି କେତେକ ସ୍ଥାନକୁ ପ୍ରାୟ ସବୁ ଧର୍ମରେ ପବିତ୍ର ମନେ କରାଯାଉଥିଲା । ପୁଣି ତା'ର ଯଥେଷ୍ଟ ରାଜନୈତିକ ଗୁରୁତ୍ୱ ଓ ବାଣିଜ୍ୟିକ ସମ୍ପଦ ବି ରହିଥିଲା । ଗୋଟାଏ ଧର୍ମସ୍ଥଳୀ ନିର୍ଦ୍ଧାରଣବେଳେ ଏହିସବୁ କାରଣ କାର୍ଯ୍ୟ କରୁଥିଲା, ଯଦିଓ ତା'ର ସାମାଜିକ କ୍ରିୟାକଳାପରେ ବିବିଧତା ରହୁଥିଲା । ବୌଦ୍ଧମାନେ ବିବିଧ ଗୋଷ୍ଠୀକୁ ଏକତ୍ରିତ କରୁଥିଲେ । ଯଦି ସେମାନେ ବର୍ଣ୍ଣ ଆଧାରିତ ନିୟମଗୁଡ଼ିକୁ ପାଳନ କରିଥାନ୍ତେ, ତେବେ ଗୋଷ୍ଠୀଗୁଡ଼ିକ ଏକଜୁଟ ହୋଇ ରହିପାରି ନ ଥାନ୍ତେ ।

ବୁଦ୍ଧଙ୍କର ଦୈବୀକରଣ (deification), ପ୍ରତିମା ପୂଜା, ବୋଧିସତ୍ତ୍ୱର ଅବଧାରଣା ଓ ପୁଣ୍ୟତ୍ୱକୁ ହସ୍ତାନ୍ତରଣ କରିବାର କଳ୍ପନା ବୌଦ୍ଧଶିକ୍ଷାର ମୂଳ ବିଚାରର ଅନ୍ତର୍ଭୁକ୍ତ ନ ଥିଲା । ଅବଶ୍ୟ ନାନା ଯୁକ୍ତିତର୍କ ପରେ ଅନେକ ବୌଦ୍ଧ ସଂପ୍ରଦାୟ ଏସବୁର ମହତ୍ତ୍ୱକୁ ସ୍ୱୀକାର କରିଥିଲେ । ସ୍ୱୟଂ ବୁଦ୍ଧ ଦୈବୀକରଣର ବିରୋଧ କରୁଥିଲେ । ତା' ସତ୍ତ୍ୱେ, ପ୍ରଥମ ଶତାବ୍ଦୀ ବେଳକୁ ପଥରରୁ ଖୋଦିତ ତାଙ୍କ ପ୍ରତିମୂର୍ତ୍ତିମାନ ରଙ୍ଗ ବୋଳାହୋଇ ପୂଜିତ ହେବାକୁ ଲାଗିଲେ । ବୋଧିସତ୍ତ୍ୱ ଥିଲା ବୁଦ୍ଧଙ୍କୁ ନେଇ ଆଉ ଏକ ନୂଆ ବିଚାର । ଯିଏ ନିଃସ୍ୱାର୍ଥପର ଭାବରେ ଜଗତର ମଙ୍ଗଳ ଲାଗି କାର୍ଯ୍ୟ କରେ ଏବଂ କାର୍ଯ୍ୟ ସମାପ୍ତି ପୂର୍ବରୁ 'ନିର୍ବାଣ' ମଧ୍ୟ କାମନା କରେ ନାହିଁ ତାକୁ ବୋଧିସତ୍ତ୍ୱ ବୋଲି ପରିଭାଷିତ କରାଯାଇଥିଲା । ଏହି ବିଚାର ଅନୁଯାୟୀ,

ବୁଦ୍ଧ ତାଙ୍କ ପୂର୍ବଜନ୍ମରେ ବୋଧିସତ୍ତ୍ୱ ଥିଲେ । ବାରମ୍ବାର ଜନ୍ମଗ୍ରହଣ କରି ସେ ଜଗତର ମଙ୍ଗଳ ଲାଗି କାର୍ଯ୍ୟ କରୁଥିଲେ ଓ ସେହି ପ୍ରକ୍ରିୟାରେ ପୁଣ୍ୟ ଅର୍ଜନ କରି ନିର୍ବାଣ ପାଇଁ ପ୍ରୟାସ କରୁଥିଲେ । ଏହି ପୁଣ୍ୟ ବ୍ୟକ୍ତିଗତ ଭାବରେ ବୋଧିସତ୍ତ୍ୱଙ୍କ ପାଇଁ ନ ଥିଲା, ବରଂ ସମାଜର ସାମୂହିକ ହିତ ପାଇଁ ଉଦ୍ଦିଷ୍ଟ ଥିଲା । ପୁଣି କୁହାଯାଇଥିଲା ଯେ, ପୁଣ୍ୟକୁ ହସ୍ତାନ୍ତରଣ କରାଯାଇ ପାରିବ । ଜଣେ ଆଉ ଜଣକ ପାଇଁ ପୁଣ୍ୟ କାର୍ଯ୍ୟ କରି ପ୍ରାପ୍ତ ପୁଣ୍ୟକୁ ଉକ୍ତ ବ୍ୟକ୍ତିକୁ ଅର୍ପଣ କରିପାରିବ । ସେହି ପ୍ରକ୍ରିୟାରେ ଧନାଢ଼୍ୟ ଲୋକ ସଂଘକୁ ଗୁମ୍ଫା ଦାନ କରି କିମ୍ବା ଅନ୍ୟମାନଙ୍କୁ ବିବିଧ ପ୍ରକାରର ଦାନ କରି ପୁଣ୍ୟ ଅର୍ଜନ କରିପାରିବେ ବୋଲି ବିଶ୍ୱାସ କରୁଥିଲେ । ଧାନଦେବା କଥା ଯେ ଧନ ଅର୍ଜନ ଓ ହସ୍ତାନ୍ତରଣ, ଯାହା ବାଣିଜ୍ୟିକ କ୍ରିୟାକଳାପର ଏକ ସାଧାରଣ କଥା, ତାହା ଧର୍ମ କ୍ଷେତ୍ରରେ ମଧ୍ୟ ଏଣିକି ପରିଲକ୍ଷିତ ହେଲା ।

ଏହିସବୁ ପରିବର୍ତ୍ତନ ଯୋଗୁଁ ବୌଦ୍ଧ ଭିକ୍ଷୁ ଓ ଉପାସକ (ଗୃହୀ ବୌଦ୍ଧ) ମଧ୍ୟରେ ଥିବା ପାରସ୍ପରିକ ନିର୍ଭରଶୀଳତାରେ ପରିବର୍ତ୍ତନ ଦେଖିବାକୁ ମିଳିଲା । ଏଣିକି ଉପାସକମାନେ ସଂଘର ପ୍ରତିଷ୍ଠା ଓ ରକ୍ଷଣାବେକ୍ଷଣରେ ମହତ୍ତ୍ୱପୂର୍ଣ୍ଣ ମନେକରାହେଲେ । ସାମାଜିକ ଦୃଷ୍ଟିରୁ ସ୍ୱୀକାର୍ଯ୍ୟ ହେବା ପାଇଁ ସଂଘକୁ ଉଭୟ ଧର୍ମପ୍ରାଣ ଓ ଧନାଢ଼୍ୟ ଲୋକଙ୍କର ସମର୍ଥନ ଲୋଡ଼ା ପଡ଼ିଲା । ସଂଘର ସମ୍ମାନ ବୃଦ୍ଧି ହେବା ସହିତ ପୃଷ୍ଠପୋଷକମାନଙ୍କର ମଧ୍ୟ ସମ୍ମାନ ବୃଦ୍ଧି ପାଇଲା, ସେମାନେ ଯେଉଁ ଜାତିର ବା ହୁଅନ୍ତୁ ପଛକେ । ଏହା ଥିଲା ପାରସ୍ପରିକ ଶକ୍ତି-ସମ୍ବର୍ଦ୍ଧନର ଏକ ମାଧ୍ୟମ । ଅନ୍ୟ ଧାର୍ମିକ ସଂପ୍ରଦାୟ କ୍ଷେତ୍ରରେ ମଧ୍ୟ ଏହା ଅଦେଖା-ଅଶୁଣା ନ ଥିଲା । ଅବଶ୍ୟ ବୌଦ୍ଧ ଓ ଜୈନ ଧର୍ମ ଏହି ପ୍ରସଙ୍ଗରେ ବୈଷ୍ଣବ ଓ ଶୈବ ସଂପ୍ରଦାୟଠାରୁ କିଛି ପୃଥକ୍ ଥିଲେ । ପାର୍ଥକ୍ୟ ପଛରେ କାରଣ ହେଲା ଯେ ବୈଷ୍ଣବ ଓ ଶୈବ ଧର୍ମରେ ଆନୁଷ୍ଠାନିକ ଭାବରେ ସନ୍ନ୍ୟାସ କଥା ନ ଥିଲା । ସନ୍ନ୍ୟାସୀମାନଙ୍କର ଆଶ୍ରମର ନିଶ୍ଚିତରୂପେ ବିହାର ସହିତ କେତେକ ସାମଞ୍ଜସ୍ୟ ଥିଲା ସତ, ହେଲେ ବୌଦ୍ଧ ଓ ଜୈନ ବିହାର ସ୍ୱତନ୍ତ୍ର ଅନୁଷ୍ଠାନ ରୂପେ କାର୍ଯ୍ୟ କରୁଥିଲା । ପାର୍ଥକ୍ୟର ଅନ୍ୟ ଏକ କାରଣ ହେଲା ଜାତି ବ୍ୟବସ୍ଥା । ବୈଷ୍ଣବ ଓ ଶୈବ ସଂପ୍ରଦାୟର ମୂଳାଧାର ଜାତିରେ ରହିଥିଲା । ଗୃହସ୍ଥମାନେ ଜାତି ଆଧାରରେ ସଂପ୍ରଦାୟର ସମର୍ଥନ କରୁଥିଲେ । ଏହାଫଳରେ ଧାର୍ମିକ ସଂପ୍ରଦାୟ ସ୍ୱୟଂ ଗୋଟାଏ ଗୋଟାଏ ଜାତିରେ ରୂପାନ୍ତରିତ ହେଉଥିଲେ । ସଂଘ ଗୃହସ୍ଥ ଉପରେ ନିର୍ଭରଶୀଳ ଥିଲା ଏବଂ ଗୃହସ୍ଥମାନେ ଅନୁକୂଳ ପ୍ରତିକ୍ରିୟା କରୁଥିଲେ । ଦାନ-ଅନୁଦାନର ସମ୍ବନ୍ଧ ପୁଣ୍ୟାର୍ଜନ ସହିତ ଯୋଡ଼ି ହୋଇଗଲା । ପ୍ରତ୍ୟେକ କାର୍ଯ୍ୟ ପାଇଁ ସ୍ୱାଭାବିକ ପାରିତୋଷିକ ହେଲା ପୁଣ୍ୟାର୍ଜନ ।

ଦାନର ମୂଳ ରହିଥିଲା ବୈଦିକ ଯଜ୍ଞ କର୍ମକାଣ୍ଡରେ । ଯଜ୍ଞ ସମ୍ପାଦନ କରୁଥିବା ପୁରୋହିତମାନଙ୍କୁ କର୍ତ୍ତା ଉପହାର ଦେଉଥିଲେ । ଏଥିରୁ ଆରମ୍ଭ ହେଲା ଦାନ । ମାତ୍ର କାଳକ୍ରମେ ବୈଦିକ ଯଜ୍ଞ ଆୟୋଜନ ହ୍ରାସ ପାଇଲା ଏବଂ ଉପହାରଗ୍ରହିତା ଭୂମିଦାନ ନେବାକୁ ଇଚ୍ଛା ପ୍ରକଟ କଲେ । ଭୂମି ଥିଲା ଏକ ସ୍ଥାୟୀ ସମ୍ପତ୍ତି । ଏହା ଆର୍ଥିକ ମୂଲ୍ୟର ପରିବର୍ତ୍ତନର ସଂକେତ ପ୍ରଦାନ କରୁଥିଲା । ଯଜ୍ଞର ପୁରୋହିତ ଓ ବସ୍ତୁ-ଗ୍ରହିତା ଅପେକ୍ଷା ଭୂସ୍ୱାମୀ ରୂପରେ ବ୍ରାହ୍ମଣମାନଙ୍କର ପରିଚୟ ଅଧିକ ନମନୀୟ ସିଦ୍ଧ ହେଲା ।

ବୌଦ୍ଧ ଓ ଜୈନମାନଙ୍କ ମଧ୍ୟରେ ଦାନ ଦେବା କେବଳ କ୍ଷତ୍ରିୟମାନଙ୍କ ଯାଏଁ ସୀମିତ ନ ଥିଲା । ଯେକୌଣସି ବ୍ୟକ୍ତି ଇଚ୍ଛାକଲେ ଦାନ ଦେଇପାରୁଥିଲା ଏବଂ ତା'ର ଦାନକୁ ସାଦରେ ଗ୍ରହଣ କରାଯାଉଥିଲା । ଦାତା ଗହପତି (ଭୂସ୍ୱାମୀ) ହୁଅନ୍ତୁ ବା ସେଠି (ଋଣଦାତା) ବା କାରିଗର ହୁଅନ୍ତୁ । ଦାନ କାଳକ୍ରମେ ନିବେଶର ରୂପ ନେଲା, କାରଣ ଦାତା ଦାନ ବଳରେ ପୁଣ୍ୟ ଅର୍ଜନ କଲା ଓ ଗ୍ରହିତା ସ୍ଥାୟୀ ସମ୍ପତ୍ତି ଲାଭ କଲା । ଦାନକୁ ମୁଖ୍ୟତଃ ବ୍ୟକ୍ତି ପ୍ରଦାନ କରୁଥିଲା । କେବଳ କେବେ କେବେ କୁଟୁମ୍ବ ଲୋକ ମିଶି ସାମୂହିକ ଭାବରେ ଦାନ ପ୍ରଦାନ କରୁଥିଲେ । କଦାପି ବଂଶ ବା ବିସ୍ତାରିତ କୁଟୁମ୍ବ ପକ୍ଷରୁ ଦାନ ଦିଆଯାଉ ନ ଥିଲା । ସଂଘର କେତେକ ଦାତା ଧର୍ମଶାସ୍ତ୍ରରେ ଶୂଦ୍ର ବୃତ୍ତି ନାମରେ ଚିହ୍ନିତ ବୃତ୍ତି ପାଳନ କରୁଥିଲେ । ସେମାନେ ମଧ୍ୟ ଦାନ ଦେବା ସ୍ଥିତିରେ ଥିଲେ । ସେଥିପାଇଁ କେତେକ ବ୍ରାହ୍ମଣ୍ୟ ଗ୍ରନ୍ଥରେ ବ୍ରାହ୍ମଣମାନଙ୍କୁ ଶୂଦ୍ରମାନଙ୍କଠାରୁ ମଧ୍ୟ ଦାନ ଗ୍ରହଣ କରିପାରିବେ ବୋଲି ରିହାତି ଦିଆଯାଇଥିଲା । ଅବଶ୍ୟ ଏଭଳି ଦାନୁଆ ବ୍ରାହ୍ମଣମାନଙ୍କୁ ଶ୍ରାଦ୍ଧକର୍ମରେ ଅନ୍ୟ ବ୍ରାହ୍ମଣମାନେ ସାମିଲ କରୁ ନ ଥିଲେ ।

ଗମନାଗମନ କ୍ଷେତ୍ରରେ ଅଭିବୃଦ୍ଧି ଘଟିବା ଫଳରେ ତୀର୍ଥଯାତ୍ରାରେ କ୍ରମୋନ୍ନତି ହେଲା । ନୂଆ ସ୍ଥାନଗୁଡ଼ିକୁ ତୀର୍ଥାଳୟରେ ସାମିଲ କରାଗଲା ଏବଂ ତୀର୍ଥାଟନରେ ନୂଆ ନୂଆ ରୀତିନୀତିକୁ ଅନ୍ତର୍ଭୁକ୍ତ କରାଗଲା । ଭାରତ ଉପମହାଦେଶର ବିଭିନ୍ନ ସ୍ଥାନକୁ ଏବଂ ବାହାରକୁ ଧର୍ମୋପଦେଶମାନଙ୍କୁ ପ୍ରେରଣ କରିବା ଫଳରେ ବୌଦ୍ଧଧର୍ମରେ ନୂଆ ବିଚାରମାନ ଆସିଲା । ଫଳରେ, ବୌଦ୍ଧଧର୍ମର ମୂଳ ସିଦ୍ଧାନ୍ତଗୁଡ଼ିକୁ ପୁନଃ ବ୍ୟାଖ୍ୟା କରାଗଲା, ଯାହା ଧର୍ମକୁ ଦୁଇଭାଗରେ ବିଭକ୍ତ କରିଦେଲା । ତନ୍ମଧ୍ୟରୁ ଗୋଟାଏ ହେଲା ହୀନଯାନ ଏବଂ ଅନ୍ୟଟି ମହାଯାନ । ଏହା ସାଂପ୍ରଦାୟିକ ପୃଥକୀକରଣରୁ ଭିନ୍ନ ଥିଲା । ଉଭୟ ଗୋଷ୍ଠୀ ମଧ୍ୟରେ ସୈଦ୍ଧାନ୍ତିକ ମତଭେଦ ଥିଲା । ତା'ଛଡ଼ା ଧନାଢ୍ୟ ଓ ଦରିଦ୍ର ଲୋକମାନଙ୍କର ପରସ୍ପର ବିରୋଧୀ ଆବଶ୍ୟକତାକୁ ବୌଦ୍ଧଧର୍ମରେ ପୂରଣ କରାଯାଇ ପାରିଲା ନାହିଁ । ଏହି ପରିବର୍ତ୍ତନ ପୂର୍ବରୁ ପ୍ରଚଳିତ ବୌଦ୍ଧଧର୍ମର ସଂରଚନାକୁ ଦୁର୍ବଳ କରିଦେବ ବୋଲି ଆଶଙ୍କା ବୃଦ୍ଧି ପାଇଲା ।

ସାଂପ୍ରଦାୟିକ ବିଭାଜନର ଧାରା ସେହି ଧର୍ମମାନଙ୍କରେ ଅଧିକ, ଯେଉଁ ଧର୍ମରେ ଧର୍ମର ଐତିହାସିକ ପ୍ରତିଷ୍ଠାତା ଓ ଅନୁଷ୍ଠାନଠାରେ ଧର୍ମର ମୂଳକୁ ଖୋଜାଯାଏ । ଯେଉଁ ଧର୍ମ କିମ୍ବଦନ୍ତୀ ଓ କର୍ମକାଣ୍ଡ ଆଧାରିତ, ସେହି ଧର୍ମରେ ବିଭାଜନ କମ୍ । ବୁଦ୍ଧଙ୍କର ମୂଳ ଉପେଦଶର ପ୍ରକୃତ ଅର୍ଥ କ'ଣ, ସେ ନେଇ ବୁଦ୍ଧଙ୍କର ନିଧନ ପରେ ପରେ ବାଦ-ବିବାଦ ଆରମ୍ଭ ହୋଇଗଲା । ଅବଶ୍ୟ ସବୁ ଧର୍ମରେ ଏଭଳି ହୋଇଥାଏ । ବୌଦ୍ଧ ସମ୍ମିଳନୀମାନ ଆୟୋଜିତ ହେଲା, ଉପଦେଶର ବିବିଧ ବ୍ୟାଖ୍ୟାକୁ ଚର୍ଚ୍ଚା କରାଗଲା । ଉଦ୍ଦେଶ୍ୟ ଥିଲା ବିବାଦକୁ ଦୂର କରିବା ଅଥବା ବିବାଦକୁ ହ୍ରାସ କରିବା । କୌଶାମ୍ବୀରେ ଥେରବାଦ ସଂପ୍ରଦାୟର ମୁଖ୍ୟ କେନ୍ଦ୍ର ଥିଲା । ଥେରବାଦୀମାନେ ବୁଦ୍ଧଙ୍କର ଶିକ୍ଷାସବୁକୁ ପାଲି ଭାଷାରେ ସଂକଳିତ କରିଥିଲେ । ଥେରବାଦ ଥିଲା ସବୁଠାରୁ ପ୍ରାଚୀନ ବୌଦ୍ଧ ସଂପ୍ରଦାୟ । ସେହି ଆଧାରରେ ବୁଦ୍ଧଙ୍କର ମୂଳ ଶିକ୍ଷା ସହିତ ଏହା ନିଜର ନିକଟତା ଦାବି କରେ । ଅନ୍ୟ ଏକ ବୌଦ୍ଧ ସଂପ୍ରଦାୟ ଥିଲା ସର୍ବସ୍ତିବାଦ । ଏହାର ପ୍ରତିଷ୍ଠା ହୋଇଥିଲା ମଥୁରାଠାରେ । ଏହା ମଥୁରାରୁ ସଂପ୍ରସାରିତ ହୋଇ ଉତ୍ତରରେ ଗାନ୍ଧାର, ମଧ୍ୟ-ଏସିଆ ଏବଂ ଆହୁରି ଆଗକୁ ବିସ୍ତାର ଲାଭ କଲା । ସର୍ବସ୍ତିବାଦୀମାନେ ବୁଦ୍ଧ ଶିକ୍ଷାସବୁକୁ ସଂସ୍କୃତରେ ବା ଯାହାକୁ କହନ୍ତି ମିଶ୍ରିତ ସଂସ୍କୃତରେ ସଂକଳିତ କଲେ । ସେମାନଙ୍କ ଗ୍ରନ୍ଥ ଗାନ୍ଧାରୀ ପ୍ରାକୃତରେ ବି ଲିଖିତ ହେଲା । ଏହି ଅନୁବାଦ ପ୍ରକ୍ରିୟାରେ ପୂର୍ବରୁ ରହିଥିବା ବୁଦ୍ଧବାଣୀରୁ କିଛି କିଛି ନ ଚାହିଁବା ସତ୍ତ୍ୱେ ବାଦ୍ ପଡ଼ିଥିବ । ମୂଳ ଭାଷାଠାରୁ ପୃଥକ୍ ଅନ୍ୟ କେଉଁ ଭାଷାରେ ପାଠକୁ ସଂଯୋଜିତ କଲେ ଏଭଳି ସମସ୍ୟା ସୃଷ୍ଟି ହୋଇଥାଏ । ଏହାବ୍ୟତୀତ, ବୌଦ୍ଧଧର୍ମ ସହିତ ନିଜକୁ ଖୋଜି ପାଉଥିବା ସମାଜଗୁଡ଼ିକରେ ଐତିହାସିକ ଦୃଶ୍ୟପଟ ବଦଳୁଥିଲା । ସେହି ପରିପ୍ରେକ୍ଷୀରେ ମୂଳ ଶିକ୍ଷାରେ କିଛି କିଛି ପରିବର୍ତ୍ତନ ଆଣିବା ମଧ୍ୟ ଆବଶ୍ୟକ ହୋଇଥିବ ।

କେତେକ ବୌଦ୍ଧ ପରମ୍ପରା ଅନୁଯାୟୀ, ଚତୁର୍ଥ ବୌଦ୍ଧ ସମ୍ମିଳନୀ ବା ସଂଗତି କନିଷ୍କଙ୍କ ସମୟରେ ଦ୍ୱିତୀୟ ଶତାବ୍ଦୀର ପ୍ରାରମ୍ଭରେ କାଶ୍ମୀରଠାରେ ଆୟୋଜିତ ହୋଇଥିଲା । ସେହି ସଂଗତିରେ ବୌଦ୍ଧମାନେ ହୀନଯାନ ଓ ମହାଯାନ ଭଳି ଦୁଇଟି ସଂପ୍ରଦାୟରେ ବିଭକ୍ତ ହୋଇଥିଲେ । ଏହି ସମ୍ମିଳନୀର ପ୍ରାମାଣିକତା ସନ୍ଦେହାସ୍ପଦ । ମାତ୍ର ଏଥିରେ ଦ୍ୱିରୁକ୍ତି ନାହିଁ ଯେ ଉତ୍ତର-ପଶ୍ଚିମ ଓ ମଧ୍ୟ-ଏସିଆରେ ସ୍ଥାନୀୟ ବୌଦ୍ଧ ପରମ୍ପରାକୁ ସ୍ୱୀକୃତି ମିଳିଥିଲା ଏବଂ ଉକ୍ତ ପରମ୍ପରାକୁ ମର୍ଯ୍ୟାଦା ଦେବାପାଇଁ ଉଦ୍ୟମ ହୋଇଥିଲା । ପାଟଳିପୁତ୍ରରେ ଅନୁଷ୍ଠିତ ହୋଇଥିବା ତୃତୀୟ ବୌଦ୍ଧ ସଂଗତିରେ ଥେରବାଦ ସଂପ୍ରଦାୟର ପ୍ରତିଷ୍ଠା ହୋଇଥିଲା । ଅଶୋକଙ୍କ ସମୟରେ ଅନୁଷ୍ଠିତ ଉକ୍ତ ସଂଗତିର ମଡେଲରେ ଚତୁର୍ଥ ସଂଗତି ଆୟୋଜନ କରିବାକୁ ସମ୍ଭବତଃ ପ୍ରୟାସ କରାଯାଇଥିଲା । ବୌଦ୍ଧମାନଙ୍କ ମଧ୍ୟରେ ଯେଉଁମାନେ ଅଧିକ

ରଢ଼ିବାଦୀ, ସେମାନେ ବୁଦ୍ଧଙ୍କର ମୂଳ ଶିକ୍ଷାସବୁ ହୀନଯାନରେ ସଂରକ୍ଷିତ ବୋଲି ଦାବି କଲେ । ସେମାନେ ଏକଥା ବି କହିଲେ ଯେ ମହାଯାନ ପନ୍ଥାରେ ନୂଆ ବିଚାରମାନ ରହିଛି, ଯାହାର ମୂଳଶିକ୍ଷା ସହିତ ମେଳ ଖାଉନାହିଁ । ପରିଶେଷରେ ମୋଟାମୋଟି ଭୌଗୋଳିକ କ୍ଷେତ୍ର ଆଧାରରେ ବୌଦ୍ଧଧର୍ମ ଦ୍ୱିଖଣ୍ଡିତ ହେଲା । ହୀନଯାନ ବୌଦ୍ଧଧର୍ମ ଶ୍ରୀଲଙ୍କା, ମ୍ୟାନମାର ଏବଂ ଦକ୍ଷିଣ-ପୂର୍ବ ଏସିଆର ଦେଶମାନଙ୍କରେ ରହିଲା ଏବଂ ମହାଯାନ ବୌଦ୍ଧଧର୍ମର କେନ୍ଦ୍ର ହେଲା ମଧ୍ୟ-ଏସିଆ, ତିବ୍ବତ, ଚୀନ୍ ଏବଂ ଜାପାନ । ଅବଶ୍ୟ ଉଭୟ ସଂପ୍ରଦାୟର ସଂପ୍ରସାରଣ କ୍ଷେତ୍ରରେ କିଛି କିଛି ଅତିକ୍ରମଣ ମଧ୍ୟ ଦେଖିବାକୁ ମିଳିଥିଲା ।

ସମସାମୟିକ କେତେକ ବୌଦ୍ଧ ଦାର୍ଶନିକଙ୍କର ବିଚାରର ପ୍ରଭାବ ପଡ଼ିଥିଲା ମହାଯାନ ସିଦ୍ଧାନ୍ତରେ । ଉକ୍ତ ଦାର୍ଶନିକମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ନାଗାର୍ଜୁନ, ଯିଏ ଉତ୍ତର ଦାକ୍ଷିଣାତ୍ୟର ଏକ ବ୍ରାହ୍ମଣ ପରିବାରରେ ଜନ୍ମହୋଇ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ଥିଲେ ଶୂନ୍ୟତା ସିଦ୍ଧାନ୍ତର ପ୍ରଣେତା । ଶୂନ୍ୟତା ସିଦ୍ଧାନ୍ତର ମର୍ମ ହେଲା ଆମେ ସମସ୍ତେ ଶୂନ୍ୟତାର ବେଷ୍ଟନୀ ମଧ୍ୟରେ ରହିଛନ୍ତି । ଯାହା ଆମ ଆଗରେ ପରିଦୃଷ୍ଟ ହେଉଛି, ତାହା ହେଲା କେବଳ ମାୟା । ମାତ୍ର ଏହି ଶୂନ୍ୟତା ହେଲା ନିର୍ବାଣ ବା ପୁନର୍ଜନ୍ମ ଚକ୍ରରୁ ବିମୁକ୍ତି । ପ୍ରତ୍ୟେକ ବୌଦ୍ଧଧର୍ମୀ ପାଇଁ ଏହି ନିର୍ବାଣ ବା ବିମୁକ୍ତି ହିଁ କାମ୍ୟ । ଏହିସବୁ ବିଚାରର ପୁନର୍ବିକାଶ ଘଟିଲା ଏବଂ ତା'ର ଫଳସ୍ୱରୂପ ବିବିଧ ପ୍ରକାରର ଦାର୍ଶନିକ ଚିନ୍ତନର ଜନ୍ମ ହେଲା । ଏହିସବୁ ଚିନ୍ତନ କେବେ କେବେ ପରସ୍ପର ବିରୋଧୀ ମଧ୍ୟ ପ୍ରତୀତ ହୁଅନ୍ତି । ଏଥିରେ ଆଦର୍ଶର ପ୍ରମୁଖତା ରହିଥିଲା । କେତେକ ତତ୍ତ୍ୱ ହେତୁବାଦ ଓ ତର୍କସଙ୍ଗତ ମଧ୍ୟ ଥିଲା । ହୁଏତ କେତେକ ତତ୍ତ୍ୱର ଶୂନ୍ୟର ଗାଣିତିକ ଅବଧାରଣା ସହିତ ସମ୍ପର୍କ ଥିଲା, କାରଣ ପରବର୍ତ୍ତୀ କାଳରେ '୦' ବା ଶୂନ୍ୟର ବହୁଳ ବ୍ୟବହାର ଦେଖିବାକୁ ମିଳିଥିଲା ।

ମହାଯାନ ବୌଦ୍ଧଧର୍ମର ଅନ୍ୟ ଉପାଦାନଗୁଡ଼ିକ ପୂର୍ବରୁ ସ୍ଥାପିତ ଶିକ୍ଷାରୁ ଉଦ୍‌ଭବ ହୋଇଥିଲା । ମାତ୍ର ତାକୁ ଖ୍ରୀଷ୍ଟଧର୍ମ, ଜୋରାଷ୍ଟ୍ର ଧର୍ମ ଏବଂ ମେନିକାଇଜିମ୍ (Menichaeism) ଆଦି ଧର୍ମ ସହିତ ସଂଗତି ରଖିବାକୁ ଅବସର ମିଳିଥିବାରୁ ତହିଁରେ ଯଥେଷ୍ଟ ବିକାଶ ଦେଖିବାକୁ ମିଳିଥିଲା । ମହାଯାନ ଉତ୍ତର ଭାରତରୁ ଆରମ୍ଭକରି ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ର ଓ ମଧ୍ୟ-ଏସିଆରେ ବିସ୍ତାରିତ ହୋଇଥିବାରୁ ଏହି କିସମର ସଂଗତି ସମ୍ଭବ ହୋଇପାରିଥିଲା । ମହାଯାନ ସିଦ୍ଧାନ୍ତରେ ପ୍ରକୃତ ସିଦ୍ଧାନ୍ତର ରକ୍ଷା ପାଇଁ ବୁଦ୍ଧ ମୈତ୍ରେୟଙ୍କର ଧରାପୃଷ୍ଠରେ ଅବତରଣକୁ ପ୍ରମୁଖତା ଦିଆଯାଏ । ଏହାସହିତ 'କଷ୍ଟଲାଘବକାରୀ ତ୍ରାତା'ର ଅବଧାରଣା ସୃଷ୍ଟିହୁଏ, ଯାହାକୁ ବୋଧିସତ୍ତ୍ୱ ସହିତ ତୁଳନା କରାଯାଇପାରେ । ବୋଧିସତ୍ତ୍ୱ ମଧ୍ୟ ନିଜେ କଷ୍ଟ ଭୋଗୀ ମାନବଜାତିର କଷ୍ଟ ଲାଘବ

କରିବାକୁ ଯତ୍ନଶୀଳ ଥିଲେ ବୋଲି ବିଶ୍ୱାସ କରାଯାଏ । ଆଶ୍ଚର୍ଯ୍ୟର କଥା, ପୂର୍ବ ଭୂମଧ୍ୟସାଗରୀୟ କ୍ଷେତ୍ରରେ ଯେଉଁ ନୂଆ ବିଶ୍ୱାସମାନ ବୌଦ୍ଧମାନଙ୍କ ଗହଣରେ ପରିଚିତ ଥିଲା, ସେଗୁଡ଼ିକ ଜୋରାଷ୍ଟ୍ରବାଦୀମାନଙ୍କୁ ଜଣାଥିଲା । ଜୋରାଷ୍ଟ୍ରବାଦୀଙ୍କ ପାଇଁ ତ୍ରାତା ଥିଲେ ଶାଓଶ୍ୟାନ୍ତ । ମହାଯାନ ବୌଦ୍ଧଧର୍ମ ବ୍ରହ୍ମାଣ୍ଡ ସିଦ୍ଧାନ୍ତ ଏବଂ ଯୁଗାନ୍ତ ସିଦ୍ଧାନ୍ତକୁ ମଧ୍ୟ ନିଜ ବିଚାରମାଳାରେ ସାମିଲ କରିଥିଲା । ବ୍ରହ୍ମାଣ୍ଡ ସିଦ୍ଧାନ୍ତ ଥିଲା ସ୍ୱର୍ଗଲୋକର ଏକ ଜଟିଳ ପ୍ରଣାଳୀ । ଏହି ସିଦ୍ଧାନ୍ତ ଅନୁସାରେ, ଥାକ ଥାକ ହୋଇ ଅନେକ ସ୍ୱର୍ଗଲୋକ ରହିଛି । ସେଠାରେ ରହିଛି ବୋଧିସତ୍ତ୍ୱଙ୍କର ନିବାସସ୍ଥଳୀ । ଏହାପରେ ବୋଧିସତ୍ତ୍ୱଙ୍କୁ ଦେବତାମ ନେଇକରି ତାଙ୍କର ଉପାସନା କରାଗଲା । ଏହି ସମୟର ସମସ୍ତ ଧର୍ମ ଲୋକପ୍ରିୟ ଧର୍ମକୁ ନିଜ ଭିତରେ ସମାହିତ କରି ଅଧିକ ସମର୍ଥନ ପାଇବା ପାଇଁ ପ୍ରୟାସ କରୁଥିଲେ । ବିଶେଷଭାବେ ଖ୍ୟାତି ପାଇଥିବା ଲୋକପ୍ରିୟ ଧର୍ମ ଥିଲା ଉର୍ବରତାର ଉପାସନା । ପ୍ରମୁଖ ଧର୍ମର ବ୍ରହ୍ମାଣ୍ଡ ସିଦ୍ଧାନ୍ତ ଓ କିମ୍ବଦନ୍ତୀକୁ ଆଧାରକରି ଅନେକ ସଂଖ୍ୟକ ଯକ୍ଷ, ଯକ୍ଷୀ, ନାଗ ଆଦିର ଅବଧାରଣାକୁ ସମାବେଶ କରାଯାଇଥିଲା । ଦେବୀ ଉପରେ ମଧ୍ୟ ଏହି ସମୟରେ ଯଥେଷ୍ଟ ଧ୍ୟାନ ରହିଥିଲା । କଦାଚିତ ଦେବୀମାନେ ପଶ୍ଚିମ ଏସିଆରୁ ଆମଦାନି ହୋଇ ଏଠାକାର ବିଶ୍ୱାସତନ୍ତ୍ରରେ ସମାବିଷ୍ଟ ହେଉଥିଲେ ।

ଧର୍ମରେ ସମ୍ପନ୍ନତା ଓ କ୍ଷମତା ପଶିଲେ ବେଳେବେଳେ ଧର୍ମ ଭାଗ ଭାଗ ହୋଇଯାଏ । ଜୈନଧର୍ମ ବିଶେଷକରି ନଗରର ବଣିକ ପରିବାରରେ ଲୋକପ୍ରିୟତା ହାସଲ କଲା । ଏଥିରେ ମଧ୍ୟ ଭାଗବଣ୍ଟା ହେଲା । ଜୈନଭିକ୍ଷୁମାନେ ଦିଗମ୍ବର ସ ଶ୍ୱେତାମ୍ବର ନାମକ ଦୁଇଟି ଭାଗରେ ବିଭକ୍ତ ହେଲେ । ଦିଗମ୍ବରମାନେ ଥିଲେ ଶୂନ୍ୟବସ୍ତ୍ରୀ ଓ ରଢ଼ିବାଦୀ; ଶ୍ୱେତାମ୍ବରମାନେ ଥିଲେ ଶୁକ୍ଳବସ୍ତ୍ରୀ ଏବଂ ଉଦାରବାଦୀ । ଜୈନମାନେ ମଗଧରୁ ପଶ୍ଚିମ ଦିଗରେ ଯାଇ ମଥୁରା, ରାଜସ୍ଥାନ, ଉଜ୍ଜୟିନୀ, ସୌରାଷ୍ଟ୍ର ଏବଂ ପଶ୍ଚିମ ଉପକୂଳରେ ସ୍ଥିତ ସୋପାରାରେ ପ୍ରତିଷ୍ଠା ଲାଭ କଲେ । ସେମାନଙ୍କର ଉପସ୍ଥିତି ବିଶେଷଭାବରେ ମଥୁରା ଓ ମଧ୍ୟଭାରତରେ ଅନୁଭୂତ ହେଲା । ମଥୁରା ଥିଲା ଏକ ରାଜନୈତିକ କେନ୍ଦ୍ର ଓ ବାଣିଜ୍ୟ ପେଣ୍ଠ । ମଧ୍ୟଭାରତ ଦେଇ ତହିଁରୁ ବହୁସଂଖ୍ୟକ ମାର୍ଗ ନିର୍ଗତ ହେଉଥିଲା । ରାଜସ୍ଥାନ ଓ ଗୁଜରାଟରେ ଜୈନଧର୍ମର ଉପସ୍ଥିତି ବେଶ୍ ପରିଦୃଷ୍ଟ ହେଲା । ଗୋଟାଏ ଜୈନ ଗୋଷ୍ଠୀ କଳିଙ୍ଗରେ ଅବସ୍ଥାନ କଲେ । ସେମାନଙ୍କୁ ରାଜା ଖାରବେଳ ସାହାଯ୍ୟ ସହଯୋଗ କଲେ । ଦକ୍ଷିଣରେ ଜୈନମାନେ କର୍ଣ୍ଣାଟକ ଓ ତାମିଲ ଦେଶରେ ନିଜକୁ ପ୍ରତିଷ୍ଠା କଲେ । ସୁନ୍ଦର ଭିତ୍ତିଚିତ୍ର ପାଇଁ ପ୍ରସିଦ୍ଧ ସିତ୍ତନବାସଲ ଆଦି ଜୈନସ୍ଥଳୀରେ ଆଶ୍ରମ ସ୍ଥାପିତ ହୋଇଥିଲା । ଶ୍ରବଣବେଲଗୋଲା ପରବର୍ତ୍ତୀ ସମୟରେ ଏକ ତୀର୍ଥସ୍ଥଳୀ ରୂପେ ଖ୍ୟାତିଲାଭ କଲା । ସେଠାରେ ଥିବା ମହାବୀର ଜୈନଙ୍କର ବିଶାଳ ମୂର୍ତ୍ତିକୁ ନିୟମିତ ଅନ୍ତରାଳରେ ଆନୁଷ୍ଠାନିକ ସ୍ନାନ କରାଯାଏ, ଯାହା ନିଶ୍ଚିତରୂପେ ଦର୍ଶନୀୟ

ଅଟେ । ମୋଟାମୋଟି ଭାବେ, ଜୈନଧର୍ମର ମଧ୍ୟ ସହଯୋଗୀ ଥିଲେ ବୌଦ୍ଧଧର୍ମକୁ ପୃଷ୍ଠପୋଷକତା ପ୍ରଦାନ କରୁଥିଲା ଭଳି ଏକ ସାମାଜିକ ଗୋଷ୍ଠୀ । ବୌଦ୍ଧଧର୍ମ ପରି ଜୈନଧର୍ମ ମଧ୍ୟ ନାନା ସଂକଟ ମଧ୍ୟଦେଇ ଗତି କରିଥିଲା । ମାତ୍ର ବୌଦ୍ଧଧର୍ମର ବିପରୀତ, ଏହା ସମୁଦାୟ ସହିତ ଯୋଡ଼ି ହୋଇଥିବା ଏକ ଧର୍ମ ଭାବରେ ନିଜର ଅସ୍ତିତ୍ୱ ବଜାୟ ରଖିଲା । ଏହି କାରଣରୁ ଜୈନଧର୍ମାବଲମ୍ବୀଙ୍କ ସଂଖ୍ୟା କମ୍ ହେବା ସତ୍ତ୍ୱେ, ସେମାନେ ନିଜର ଅସ୍ମିତା ବଜାୟ ରଖିଥିଲେ । ବୌଦ୍ଧଧର୍ମର ବିପରୀତ, ଏହା ଏକ ଅଖିଳ ଏସୀୟ ଧର୍ମରେ ପରିଣତ ହୋଇପାରି ନ ଥିଲା, କାରଣ ଅନ୍ୟ ସଂସ୍କୃତିରେ ଏହାର ଆନୁଷ୍ଠାନିକ ପାଳନ ଖୁବ୍ କାଠିକର ଥିଲା ।

ବୈଦିକ ବ୍ରାହ୍ମଣୀୟ ଧର୍ମର ଅନୁଗାମୀମାନେ ସଂଖ୍ୟାଗରିଷ୍ଠ ଦୃଷ୍ଟିରୁ ଆରମ୍ଭରେ କମ୍ ଥିଲେ ସିନା, ପ୍ରଭାବ ସେମାନଙ୍କର କିଛି ଊଣା ନ ଥିଲା । ବିଶେଷକରି ଶୁଙ୍ଗ, ସାତବାହନ ଏବଂ ଇକ୍ଷ୍ୱାକୁ ଆଦି ରାଜବଂଶ ଓ ରାଜସଭାରେ ସେମାନଙ୍କୁ ସମର୍ଥନ ମିଳୁଥିଲା । ସିଂହାସନ ଆରୋହଣବେଳେ ତଥା ରାଜତ୍ୱର ବୈଧତା ଦାବି କଲାବେଳେ ବୈଦିକ ଯଜ୍ଞର ବିଶେଷ ଭୂମିକା ରହିଥିଲା । ମାତ୍ର ବୈଦିକ ପରମ୍ପରାର ଚାବିକାଠି ରହିଥିଲା ବ୍ରାହ୍ମଣମାନଙ୍କ ହାତରେ । ଏହି ସମୟରେ ନିକଟରେ ବିକଶିତ ହୋଇଥିବା ଭାଗବତ ଓ ଶୈବ ସଂପ୍ରଦାୟ ସହିତ ବୈଦିକ ବ୍ରାହ୍ମଣୀୟ ଧର୍ମର ଅଳ୍ପମାତ୍ରାରେ ତାଳମେଳ ଥିଲା । ବୌଦ୍ଧଧର୍ମ ଓ ଜୈନଧର୍ମ ସହିତ ବ୍ରାହ୍ମଣୀୟ ଧର୍ମର ପ୍ରତିଯୋଗିତା ଚାଲିଥିଲା । ଉଭୟ ଗୋଷ୍ଠୀ ପୃଷ୍ଠପୋଷକତା ପାଇଁ ଲଢୁଥିଲେ । ପୁଣି ଉଭୟ ଗୋଷ୍ଠୀ ମଧ୍ୟରେ ଥିବା ଅନୁଗାମୀଙ୍କ ମଧ୍ୟରେ ବେସାମଞ୍ଜସ୍ୟ ରହିଥିଲା । କେତେକ ବୈଦିକ ଦେବତା, ଯେମିତି ବରୁଣ ଓ ମିତ୍ର, ନିରବରେ ତିରୋହିତ ହୋଇଗଲେ; ଇନ୍ଦ୍ର ଓ ଅଗ୍ନି ଆଦି କେତେକ ଦେବତା ସେମାନଙ୍କର ମହତ୍ତ୍ୱ ହରାଇଲେ; ପୁଣି କେତେକ ନୂତନ ଦେବତାଙ୍କର ଆବିର୍ଭାବ ହେଲା । ଏହି ନୂତନ ଦେବତାମାନେ ଥିଲେ ଅତିରିକ୍ତ ଗୁଣଯୁକ୍ତ । ସମୟକ୍ରମେ ବୈଦିକ ବ୍ରାହ୍ମଣଧର୍ମକୁ ଭାଗବତ ଓ ଶୈବଧର୍ମଠାରୁ ପୃଥକ୍ ମନେକରାଗଲା । ଆଜି ପୌରାଣିକ ହିନ୍ଦୁଧର୍ମ ବୋଲି ପରିଚୟ ଦେଉଥିବା ଭାଗବତ ଓ ଶୈବମାନେ ଏହି କାଳର ଉତ୍ତରାର୍ଦ୍ଧରେ ନିଜ ପୌରାଣିକ ସ୍ୱରୂପ ପ୍ରାପ୍ତ ହେଲେ ।

ଏହି ସମୟର ସନ୍ଦର୍ଭରେ 'ହିନ୍ଦୁଧର୍ମ' ଶବ୍ଦର ଉପଯୋଗ ଐତିହାସିକ ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣ ପ୍ରତୀତ ହେବ । ପ୍ରଥମ ସହସ୍ରାବ୍ଦୀର ପୂର୍ବାର୍ଦ୍ଧରେ 'ହିନ୍ଦୁ' ଶବ୍ଦର ପ୍ରୟୋଗ ହେଉ ନ ଥିଲା । ଆଜି ଯାହାକୁ 'ହିନ୍ଦୁ' ଧର୍ମ ବୋଲି କୁହାଯାଉଛି, ତା'ର ଅନୁଗାମୀମାନେ ଧର୍ମକୁ ସଂପ୍ରଦାୟ ଅର୍ଥରେ ସେତେବେଳେ ବ୍ୟବହାର କରୁଥିଲେ । ତେଣୁ ସେମାନେ ନିଜକୁ ବୈଷ୍ଣବ ଏବଂ ଶୈବ କିମ୍ବା ସଂକୀର୍ଣ୍ଣ ସାଂପ୍ରଦାୟିକ ଅର୍ଥରେ ଭାଗବତ, ପାଶୁପତ ଆଦି ନାମରେ ପରିଚିତ

କରାଉଥିଲେ । ଧର୍ମର ଚେତନା ସେତେବେଳେ ସଂପ୍ରଦାୟ ସ୍ତରରେ ରହିଥିଲା । ଅନେକ ସଂପ୍ରଦାୟକୁ ମିଶାଇ ଏକ ବିଶାଳ ଧର୍ମର ପରିକଳ୍ପନା ମନରେ ନ ଥିଲା । ତେଣୁ ଆଜି ଯେଉଁ ଅର୍ଥରେ ହିନ୍ଦୁଧର୍ମ କହିଲେ ଆମେ ବୁଝୁନ୍ତି, ତା'ଠାରୁ ଢେର୍ ପୃଥକ୍ ଥିଲା ତତ୍କାଳୀନ ଅବଧାରଣା ।

ଅଷ୍ଟମ ଶତାବ୍ଦୀ ପରେ ପ୍ରଥମେ ଆରବମାନେ 'ହିନ୍ଦୁ' ଶବ୍ଦର ବ୍ୟବହାର କଲେ । ତାଙ୍କ ପାଇଁ ହିନ୍ଦୁର ଅର୍ଥ ହେଲା ସିନ୍ଧୁନଦୀ ଆରପାରିରେ ବସତି ସ୍ଥାପନ କରିଥିବା ସମସ୍ତ ଜନସମୂହ । ପରବର୍ତ୍ତୀ ସମୟରେ 'ହିନ୍ଦୁମାନେ'ର ଅର୍ଥ ହେଲା ସେହି ଜନସମୂହ, ଯେଉଁମାନେ ଭାରତରେ ପ୍ରଚଳିତ ଥିବା ସ୍ଥାନୀୟ ଧର୍ମର ଅନୁଗାମୀ । ବୈଦିକ ବ୍ରାହ୍ମଣ ଧର୍ମରୁ ଅନ୍ୟମାନଙ୍କୁ ପୃଥକ୍ କରିବାକୁ ପୁଣି ନୂଆ ଏକ ଶବ୍ଦର ପ୍ରୟୋଜନ ହେଲା । ଫଳତଃ ପୌରାଣିକ ହିନ୍ଦୁ ଧର୍ମ ପଦର ପ୍ରୟୋଗ ହେବାକୁ ଲାଗିଲା । ଏହି ପରିବର୍ତ୍ତନ ପୁରାଣ ରଚନାରେ ଅନ୍ତର୍ନିହିତ ହୋଇ ରହିଛି । ଖ୍ରୀଷ୍ଟାବ୍ଦର ଆରମ୍ଭ କାଳରେ ପୁରାଣ ରଚନାର ଭିତ୍ତି ପଡ଼ିଲା । ପ୍ରତ୍ୟେକ ପୁରାଣ ହେଉଛି ଏକ ନିର୍ଦ୍ଦିଷ୍ଟ ଦେବତାଙ୍କର ଉପାସନା ବିଧି, ଯାହାକୁ ଉପାସକ ନିର୍ଦ୍ଦେଶିକା ରୂପେ ଉପଯୋଗ କରିପାରିବ । ଏକ ସାହିତ୍ୟିକ ବିଧା ଭାବରେ ପୁରାଣ ଦେବତାମାନଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ, ପୌରାଣିକ କଥା ଆଦିର ରଚନାକୁ ପ୍ରୋତ୍ସାହିତ କଲା । ପୂଜାର ବିଧି ଏବଂ ଦେବତାଙ୍କ ପବିତ୍ର ସ୍ଥାନର ଇତିହାସ କଥା ବି ପୁରାଣ ରଚନା ଯୋଗୁଁ ପ୍ରୋତ୍ସାହନ ପାଇଲେ । ପୁରାଣ ମଧ୍ୟରେ ଅଧିକ ପରିଚିତ ଥିଲା ଆଗମ ଓ ମହାତ୍ମ୍ୟ । ଏହି ରଚନା ପ୍ରକ୍ରିୟାରେ ଲୋକପ୍ରିୟ ବିଶ୍ୱାସ ଓ ଉପାସନାକୁ ଉଚ୍ଚଜାତିର ଗ୍ରନ୍ଥକାରମାନେ ନିଜ ନିଜ ଗ୍ରନ୍ଥରେ ସାମିଲ କରିନେଲେ । ବୈଦିକ ବ୍ରାହ୍ମଣ୍ୟଧର୍ମର ବିପରୀତ, ଏହି ପୁରାଣ ଧର୍ମରେ ପୁରୋହିତର ମଧ୍ୟସ୍ଥତା ଏକ ଆବଶ୍ୟକତା ନ ଥିଲା । ବରଂ ତାହା ବୈକଳ୍ପିକ ଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ କେହି କେହି ଧର୍ମକୁ ଇଷ୍ଟଦେବର ଉପାସନା ମାତ୍ର ବୋଲି ଭାବୁଥିଲେ, ସେମାନେ ପୁରୋହିତର ମଧ୍ୟସ୍ଥତାର ପ୍ରତିରୋଧ କଲେ ।

ଯେମିତି ବୈଦିକ ବ୍ରାହ୍ମଣ୍ୟ ଧର୍ମ, ଠିକ୍ ସେମିତି ବୈଷ୍ଣବ ଓ ଶୈବ ସଂପ୍ରଦାୟର କୌଣସି ଐତିହାସିକ ବ୍ୟକ୍ତି ପ୍ରତିଷ୍ଠାତା ନ ଥିଲେ । ଏଗୁଡ଼ିକ ଈଶ୍ୱର ମୁଖନିସୃତ ଇଲହାମୀ ଧର୍ମ (revealed religion) ନ ଥିଲେ, ବରଂ ଏହି ଧର୍ମଗୁଡ଼ିକର ଉଦୟ ଓ ବିକାଶ ନାନା କିସମର ଉପାସନା, ବିଶ୍ୱାସ ଓ କର୍ମକାଣ୍ଡରୁ ହୋଇଥିଲା । ତନ୍ମଧ୍ୟରୁ କେତେକ ଉପାସନା ଓ ବିଶ୍ୱାସ ବିଧି ବ୍ରାହ୍ମଣ୍ୟ ଉପାସନା ପଦ୍ଧତିରୁ ବାହାରିଥିଲା । ଅନ୍ୟ ଉପାସନା ଓ ବିଶ୍ୱାସ ବିଧିଗୁଡ଼ିକ ବିଭିନ୍ନ ସୂତ୍ରରୁ ଆସିଥିଲା । ଉଦାହରଣ ସ୍ୱରୂପ, ଲୌକିକ ବିଶ୍ୱାସରୁ କିଛି କିଛି ଉପାଦାନ ଆସିଥିଲା, ଯାହା ବୈଦିକ ବ୍ରାହ୍ମଣ୍ୟଧର୍ମ ପାଇଁ ଘୃଣ୍ୟ ହେବାର ବି ଆଶଙ୍କା

ରହିଥିଲା । ଲୋକ-ଉପାସନା ଅନେକ ସମୟରେ ପ୍ରମୁଖ ଧର୍ମ ସହିତ ସଂପୃକ୍ତ ହୋଇରହେ, କାରଣ ଉପାସନାକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ପୁରୋହିତମାନେ ରିହାତି ଦେବାଭଳି ତହିଁରୁ କିଛି କିଛି ଉପାଦାନକୁ ସ୍ୱୀକାର କରିନିଅନ୍ତି ।

ଏହି ଧରଣର ସଂପ୍ରଦାୟଗୁଡ଼ିକର ମୂଳ ଅନେକ ସମୟରେ ସଂପ୍ରଦାୟର ସାମାଜିକ ପରିଚୟରେ ନିହିତ ହୋଇ ରହିଥାଏ । ଅର୍ଥାତ୍ ସଂପ୍ରଦାୟ ତା'ର ପୂର୍ବର ବିଶ୍ୱାସକୁ ଧରି ଚାଲିଥାଏ, ଯେଉଁ ବିଶ୍ୱାସ ତା'ର ସମାଜ କୁଳ ଓ କୁଟୁମ୍ବ ଆଧାରରେ ଗଢ଼ିଉଠିଥିଲା । ସେହି ପୂର୍ବ ପରିଚୟରେ ପରିବର୍ତ୍ତନ ଆସିଲା, କାରଣ କୁଳ ଜାତିରେ ରୂପାନ୍ତରିତ ହେଲା । ଏହି ପରିବର୍ତ୍ତନ ସତ୍ତ୍ୱେ, କେତେକ ବିଶ୍ୱାସ ଓ କର୍ମକାଣ୍ଡ ନିଶ୍ଚୟ ଅଭ୍ୟାସବଶତଃ ରହିଯାଇଥିବେ । କୁଳ ବା କୁଟୁମ୍ବରେ ରହିଯାଇଥିବା ବିଶ୍ୱାସ ସ୍ଥାନରେ ଏଣିକି ଜାତିର ସଦସ୍ୟତା ଓ ପରିଚୟ ପ୍ରମୁଖତା ପାଇଲା । କୁଳପିରୋହିତର କର୍ମକାଣ୍ଡ ତୁଳନାରେ ଜାତି ଚେତନାରୁ ଉତ୍ପନ୍ନ କର୍ମକାଣ୍ଡ ଅଧିକ ଶକ୍ତିଶାଳୀ ହୋଇଥାଇପାରେ । ଏହି ପ୍ରକ୍ରିୟାରେ ଏକ ନୂତନ ପ୍ରକାରର ଉପାସନାର ବିକାଶ ହେଲା; ଏଥିରେ ଉପାସକ ଓ ଉପାସ୍ୟ ମଝିରେ ପୁରୋହିତର କୌଣସି ହସ୍ତକ୍ଷେପର ଆବଶ୍ୟକତା ନ ଥିଲା । ପରବର୍ତ୍ତୀ ସମୟରେ ଏହି ପ୍ରକ୍ରିୟା ଅଧିକ ସୁସ୍ପଷ୍ଟ ହେଲା । ମାତ୍ର ଏସବୁ ସତ୍ତ୍ୱେ ପୁରୋହିତର ହସ୍ତକ୍ଷେପ ଶେଷ ହେଲା ନାହିଁ । କିଛି ସମୟ ପାଇଁ ପୁରୋହିତ ଏହି ନୂତନ ଉପାସନା ବିଧିରୁ ଦୂରରେ ରହିଲା । ହେଲେ ପରେ ଉକ୍ତ ଉପାସନା ବିଧିକୁ ସେ ନିଜର କରିନେଲା ।

ଏହି ସମୟରେ ଆରାଧନାର ବିଧି ବୈଦିକ ଯଜ୍ଞଠାରୁ ଭିନ୍ନ ଥିଲା । ଏହା ପୂଜା ରୂପରେ ବିକଶିତ ହେଲା । ଆରାଧ୍ୟ ନିମନ୍ତେ ଅର୍ପଣ ରୂପରେ ପୂଜା ବୈଦିକ ଯଜ୍ଞ ଭଳି ରହିଥିଲା । ପ୍ରଭେଦ ହେଲା ଯେ, ପୂଜାରେ ଜୀବ ବଳି ଦେବା ଜରୁରି ନ ଥିଲା । ଦ୍ୱିତୀୟତଃ, ପୂଜାର ଆରାଧ୍ୟ ଦେବତା ମୂର୍ତ୍ତି ରୂପରେ ଏକ ପ୍ରତିମା ଭାବରେ ମନ୍ଦିରରେ ସ୍ଥାନିତ ହୋଇଥିଲେ । ଏହି ଉଭୟ ପରିବର୍ତ୍ତନ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଥିଲା । ଉପାସ୍ୟ ବସ୍ତୁ କିଛି ବି ହୋଇପାରେ – ପ୍ରତିମାରୁ ଆରମ୍ଭ କରି ପଥର ପର୍ଯ୍ୟନ୍ତ । ଏହା ଏକ ଅବଧାରଣାର ପ୍ରତିନିଧି ମଧ୍ୟ ହୋଇପାରେ, ଯେମିତି ଲିଙ୍ଗ ରୂପରେ ଶୈବ ଉପାସନା । ଏଥିରେ ଅନେକ ଲୋକପ୍ରିୟ ଉର୍ବରତାର ଉପାସନା ବିଧି ସମାହିତ ହୋଇ ରହିଯାଇଥିଲା । ଯେତେବେଳେ ପ୍ରତିମାଗୁଡ଼ିକ ମାନବାକୃତିକ ହେଲେ, ସେତେବେଳେ ମଧ୍ୟ ତହିଁରେ ଅନେକ ହାତ ଓ ଏକାଧିକ ମୁଖ ଯୋଡ଼ି ଦିଆଗଲା । ଏହା ପଛରେ ଉଦ୍ଦେଶ୍ୟ ଥିଲା ଆରାଧ୍ୟର ବିଭିନ୍ନ ବିଶେଷ ଗୁଣକୁ ପ୍ରଦର୍ଶିତ କରିବା ।

ମୂର୍ତ୍ତିପୂଜାର ହେଲେନବାଦୀ ଜଗତରେ ଖୁବ୍ ପ୍ରଚଳନ ରହିଥିଲା । ହେଲେ ଭାରତରେ ମୂର୍ତ୍ତିପୂଜାରେ କୌଣସି ଏକ ନିର୍ଦ୍ଦିଷ୍ଟ ଦେବତାଙ୍କ ଉପରେ ଧ୍ୟାନ କେନ୍ଦ୍ରିତ କରାଯାଉଥିଲା । ଏହା ଥିଲା ଭାରତୀୟ ମୂର୍ତ୍ତିପୂଜାର ବୈଶିଷ୍ଟ୍ୟ । କୁହାଯାଏ, ବୈଦିକ ବ୍ରାହ୍ମଣବାଦରେ ଅନ୍ୟ ଧାର୍ମିକ ସ୍ୱରୂପକୁ ବର୍ଜନ କରାଯାଏ । ତା'ର ବିପରୀତ, ଏହିସବୁ ସଂପ୍ରଦାୟ ନିଜର ନୂତନ ଧାର୍ମିକ ବିଧିରେ ପୂର୍ବର ଧାର୍ମିକ ଆଚରଣକୁ ଗ୍ରହଣ କରିନେଲେ । ନିଜ ମିଥକୀୟ ଶାସ୍ତ୍ରରେ ସେମାନେ ଅନ୍ୟ ଉପାସନାକୁ ସଂଲଗ୍ନିକୃତ କରିଦେଲେ । ଏହାଫଳରେ ବିବିଧ କିସମର ବିଶ୍ୱାସକୁ ଗ୍ରହଣ କରିବାକୁ ପଡ଼ିଲା । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେଲା ବିଷ୍ଣୁଙ୍କର ଅସଂଖ୍ୟ ଅବତାର କଥା । ଆଗରୁ ଏହାକୁ (ଅବଧାରଣାକୁ) ଆଦାନ-ପ୍ରଦାନର ସ୍ୱରୂପ ବୋଲି କୁହାଯାଉଥିଲା । ମାତ୍ର ଆଜିକାଲି ଏହାକୁ ବର୍ଣ୍ଣସମାଜ ବାହାରେ ଥିବା ଲୋକଙ୍କୁ ବର୍ଣ୍ଣସମାଜ ପ୍ରତି ଆକୃଷ୍ଟ କରିବାପାଇଁ ରଣନୀତି ଭାବେ ଦେଖାଯାଉଛି । ଉକ୍ତ ଗୋଷ୍ଠୀର ଲୋକଙ୍କୁ ବର୍ଣ୍ଣବ୍ୟବସ୍ଥାରେ ଏକ ସ୍ଥାନ ପ୍ରଦାନ କରାଯାଉଥିଲା ଏବଂ ମିଥକଶାସ୍ତ୍ର ଓ ଆରାଧ୍ୟ ସମୂହର ବିସ୍ତାର କରି ତହିଁରେ ସେମାନଙ୍କର କେତେକ ଧାର୍ମିକ ବିଶ୍ୱାସକୁ ସମାହିତ କରି ଦିଆଯାଉଥିଲା । ପ୍ରାୟ କ୍ଷେତ୍ରରେ, କେତେକ ବ୍ୟତିକ୍ରମକୁ ବାଦ୍‌ଦେଲେ, ଏହି ଗୋଷ୍ଠୀର ଲୋକଙ୍କୁ ବର୍ଣ୍ଣବ୍ୟବସ୍ଥାର ତଳ ସ୍ତରରେ ଅର୍ଥାତ୍ ଶୂଦ୍ର ସ୍ତରରେ ସ୍ଥାନ ଦିଆଯାଉଥିଲା । ବ୍ୟତିକ୍ରମରେ ରହୁଥିଲେ କେତେକ କର୍ମକାଣ୍ଡ ବିଶେଷଜ୍ଞ ଓ କୁଳସର୍ଦ୍ଦାର । ବର୍ଣ୍ଣବ୍ୟବସ୍ଥାର ଅଙ୍ଗ ହେଲାପରେ କିଛି ଲୋକ ବ୍ୟବସ୍ଥାର ବିରୋଧ ବି କରିଥିବେ, କାରଣ ସେମାନେ ପୂର୍ବରୁ କୁଳବ୍ୟବସ୍ଥାରେ ସମାନତା ଆଧାରରେ ସଭ୍ୟ ଥିଲେ ।

ଏକଥା ସତ ଯେ, ଯଦ୍ୟପି ଅନେକ ଦେବାଦେବୀଙ୍କର ଉପାସନା ହେଉଥିଲା, ମାତ୍ର ଅଳ୍ପ କେତେଜଣ ଦେବତାଙ୍କୁ ଉପାସନାରେ ପ୍ରମୁଖତା ମିଳୁଥିଲା । ଏହି ପ୍ରବୃତ୍ତି ଯୋଗୁଁ କେତେକ ସଂପ୍ରଦାୟରେ ଏକେଶ୍ୱରବାଦ କଥା ବିଚାରକୁ ଆସିଲା । ସେ ଯାହାହେଉ, ତ୍ରିଦେବର କଳ୍ପନାକୁ ମଧ୍ୟ ପ୍ରମୁଖତା ମିଳିଲା । ତ୍ରିଦେବରେ ବ୍ରହ୍ମାଙ୍କୁ ସ୍ରଷ୍ଟା, ବିଷ୍ଣୁଙ୍କୁ ସଂରକ୍ଷକ ଓ ଶିବଙ୍କୁ ବିନାଶକର୍ତ୍ତା ରୂପେ କଳ୍ପନା କରାଯାଇଥିଲା । ତ୍ରିଦେବଙ୍କ ମଧ୍ୟରେ ବିଷ୍ଣୁ ଓ ଶିବଙ୍କର ଅନେକ ସଂଖ୍ୟକ ଭକ୍ତ ରହିଥିଲେ । ପରବର୍ତ୍ତୀ ସମୟରେ ସେମାନେ ବୈଷ୍ଣବ ଓ ଶୈବ ନାମରେ ହିନ୍ଦୁ ବିଶ୍ୱାସତନ୍ତ୍ରର ପ୍ରମୁଖ ସଂପ୍ରଦାୟର ମର୍ଯ୍ୟାଦା ଲାଭ କଲେ । ଆଶ୍ଚର୍ଯ୍ୟର କଥା, ସ୍ରଷ୍ଟା ହେବା ସତ୍ତ୍ୱେ ବ୍ରହ୍ମା ପୃଷ୍ଠଭୂମିକୁ ତିରୋହିତ ହେଲେ ।

କଳ୍ପନା ଅନୁସାରେ, ବିଷ୍ଣୁ ସର୍ବଦା ସୃଷ୍ଟି ଉପରେ ଦୃଷ୍ଟି ରଖିଥାନ୍ତି ଏବଂ ଯେତେବେଳେ ପାପର ମାତ୍ରା ଅସୀମ ହୁଏ, ସେ ତା'ର ବିନାଶ ପାଇଁ ବିଭିନ୍ନ ଅବତାର ନିଅନ୍ତି । କୁହାଯାଏ, ସେ ଅନେକ ଅବତାର ଗ୍ରହଣ କରିଥିଲେ । ତନ୍ମଧ୍ୟରୁ ନଅଟି ଅବତାରକୁ ନେଇ ଲୋକଙ୍କ

ମଧ୍ୟରେ ସହମତି ରହିଛି । ଅବତାର ମଧ୍ୟରେ କିଛି ହେଲା ପଶୁ ଓ ଆଉ କିଛି ମନୁଷ୍ୟ ଅବତାର । ରାମାୟଣ ଓ ମହାଭାରତ ମହାକାବ୍ୟର ନାୟକ ରାମ ଓ କୃଷ୍ଣଙ୍କୁ ଗୋଟାଏ ଗୋଟାଏ ଅବତାର ରୂପେ ଗ୍ରହଣ କରାଯାଏ । ଏହି ମହାକାବ୍ୟ ଦୁଇଟି ପ୍ରଥମେ ଚାରଣ ଗାଥା ରୂପେ ଜନ୍ମ ନେଇଥିଲା । ତହିଁରେ କୁଳର ସର୍ଦ୍ଦାର ଓ ରାଜାଙ୍କର ବର୍ଣ୍ଣନା ରହିଥିଲା । ପରେ ତାକୁ ପବିତ୍ର ଧର୍ମଗ୍ରନ୍ଥର ମର୍ଯ୍ୟାଦା ମିଳିଲା । ଧାର୍ମିକ ସାହିତ୍ୟ ରୂପେ ତାକୁ ଉପଯୋଗ କରିବା ଉଦ୍ଦେଶ୍ୟରେ ତହିଁରେ ନାନା ସଂଶୋଧନ କରାଗଲା । ମହାକାବ୍ୟର ସଂଶୋଧନ ଓ ସମ୍ପାଦନ ପ୍ରକ୍ରିୟାରେ ଅନେକ ନୂଆ କଥା ଓ କାହାଣୀ ତହିଁରେ ଯୋଡ଼ି ଦିଆଗଲା । ଯୋଡ଼ାଯାଇଥିବା ଉପକଥା ମଧ୍ୟରେ ସର୍ବପ୍ରସିଦ୍ଧ ହେଲା ମହାଭାରତର ଭଗବତ କଥା । ଏହିପ୍ରକାର ପାଠର ଅନେକ ସ୍ତର ଦେଖିବାକୁ ମିଳିଥାଏ । ଏହା ସଙ୍କଳିତ ଉପାଦାନର ଇତିହାସକୁ ଅବଲୋକନ କରିବାପାଇଁ ସୁଯୋଗ ପ୍ରଦାନ କରେ । ଏହା ପାଠର ଭୂମିକାକୁ ମଧ୍ୟ ଚିହ୍ନିତ କରେ । ସେ ଯାହାହେଉ, ବିଷ୍ଣୁଙ୍କର ଦଶମ ଅବତାର ଏଯାଏଁ ଅବତରିତ ହୋଇନାହାନ୍ତି । ଶେଷ ଅବତାରରେ ବିଷ୍ଣୁ ବ୍ରାହ୍ମଣ କଳ୍କି ଅବତାରରେ ଅବତୀର୍ଣ୍ଣ ହେବେ । ସେ ଜଗତକୁ ଠିକଣା କରିବେ; ଅତ୍ୟାଚାରର ଇତି ହେବ; ବ୍ରାହ୍ମଣ୍ୟ ଧର୍ମର ବିପରୀତ କାର୍ଯ୍ୟ କରିଥିବା ଲୋକଙ୍କୁ ଦଣ୍ଡ ଦେବେ । ଦଣ୍ଡ ମଧ୍ୟରେ ପ୍ରଧାନ ହେଲା ତଳ ଜାତିର ଲୋକଙ୍କୁ ସମାଜରେ ଉଚ୍ଚ ମର୍ଯ୍ୟାଦା ପ୍ରଦାନ କରାଯିବ ।

ଅବତାରର କଳ୍ପନାରୁ ବୁଦ୍ଧଙ୍କର ପୁନର୍ଜନ୍ମ ଏବଂ ବୋଧିସତ୍ତ୍ୱଙ୍କର ଅବଧାରଣା କଥା ସ୍ମରଣକୁ ଆସେ । କଳ୍କିରେ ଆମେ ବୁଦ୍ଧ ମୈତ୍ରେୟୀଙ୍କର ଆଭାସ ପାଆନ୍ତି । ଗ୍ରନ୍ଥ ଅନୁଯାୟୀ, ବୁଦ୍ଧଙ୍କର ମୈତ୍ରେୟୀ ଅବତାର ମଧ୍ୟ ବାକୀ ଅଛି । ଯେତେବେଳେ ମୈତ୍ରେୟ ଅବତାର ନେଇ ବୁଦ୍ଧ ଉଭା ହେବେ, ସେତେବେଳେ ବୌଦ୍ଧ ବିଶ୍ୱାସ ଓ ଆଚରଣକୁ ସେ ପୁନଃପ୍ରତିଷ୍ଠା କରିବେ । ଅବଶ୍ୟ ପୂର୍ବକାଳୀନ ବୌଦ୍ଧଗ୍ରନ୍ଥମାନଙ୍କରେ ମଧ୍ୟ ମୈତ୍ରେୟଙ୍କର ଉଦ୍ଧରଣ ରହିଥିଲା । ମାତ୍ର ଏହି ସମୟରେ ତାକୁ ଖୁବ୍ ଲୋକପ୍ରିୟତା ପ୍ରାପ୍ତ ହେଲା । ଏହା ପଛରେ କାରଣ ହେଲା ଯେ, ଜଣେ ରକ୍ଷାକର୍ତ୍ତାଙ୍କ ବିନା ବୌଦ୍ଧଧର୍ମର କାଳେ ଅଧୋପତନ ହେବ । ଏକ ନୂଆ ଜୀବନଦର୍ଶନର ପ୍ରଣେତା ବୁଦ୍ଧ ଏଣିକି ଜଣେ ମସିହା, ପରମପୂଜ୍ୟ ଓ ଆରାଧ୍ୟର ମର୍ଯ୍ୟାଦା ଲାଭ କଲେ । ଅବତାର ଓ ତ୍ରାଣକର୍ତ୍ତାର ଅବଧାରଣାକୁ ଗୋଟାଏ ଧର୍ମର ଅନ୍ୟ ଧର୍ମ ଉପରେ ପ୍ରଭାବର ପରିଣାମ ରୂପେ ଦେଖାଯାଇ ପାରିବ ନାହିଁ । ଲୋକ ଦୂର-ଦୂରାନ୍ତରକୁ ଯାତ୍ରା କରୁଥିଲେ, ପରସ୍ପର ସହିତ ସମ୍ବାଦ ରଖୁଥିଲେ । ସେହି ବିଚାର ବିମର୍ଶର ପ୍ରତିଫଳନ ତତ୍‌କାଳୀନ ଧାର୍ମିକ ବିଚାରଧାରା ଉପରେ ଦେଖିବାକୁ ମିଳୁଥିଲା । ଫଳରେ ସମାଜର, ବିଶେଷକରି ଭାରତ, ମଧ୍ୟ-ଏସିଆ ଓ ପଶ୍ଚିମ ଏସିଆର ବିଚାର ଓ ବିଶ୍ୱାସରେ ଅନେକ ସାମଞ୍ଜସ୍ୟ ପରିଦୃଷ୍ଟ ହେଉଥିଲା ।

ପୌରାଣିକ ହିନ୍ଦୁ ଧର୍ମର ଶାସ୍ତ୍ରମାନଙ୍କରେ ଦେବୀମାନଙ୍କୁ ମଧ୍ୟ ଖୁବ୍ ମହତ୍ତ୍ୱ ମିଳିଥିଲା । ଦେବୀମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ଉର୍ବରତାର ପ୍ରତୀକ ମନେହେଉଥିବା ଦେବୀ । ସେମାନଙ୍କୁ ପ୍ରାଥମିକ ଓ ପ୍ରମୁଖ ଦେବୀ ରୂପେ ପୂଜା କରାଯାଉଥିଲା । କାଳକ୍ରମେ ଏହି ଦେବୀମାନେ ତନ୍ତ୍ର ସାଧନାର ଜଡ଼ ପ୍ରମାଣିତ ହୋଇଥିଲେ । ପ୍ରକୃତି ତଥା ପଶୁମାନଙ୍କୁ ଏହି ଦେବୀମାନଙ୍କର ପବିତ୍ର ଅଭିବ୍ୟଞ୍ଜନା ମନେକରାଯାଉଥିଲା । ବିଶେଷକରି ବୃକ୍ଷ, କୁଞ୍ଜ, ନଦୀ ଏବଂ ପାହାଡ଼ ଓ ତା' ସହିତ ଷଣ୍ଢ ଓ ନାଗକୁ ଦେବୀର ରୂପକ ଭାବରେ ଗ୍ରହଣ କରାଯାଉଥିଲା । ଦେବୀ ଉପାସନା ସହିତ ଅନେକ ଅର୍ଦ୍ଧ-ଦେବ ଓ ବିଭିନ୍ନ ପ୍ରକାରର ପରୀର ମଧ୍ୟ ଉଲ୍ଲେଖ କରାଯାଉଥିଲା ।

ପୁନର୍ଜନ୍ମରୁ ମୁକ୍ତି ପାଇଁ ଯେଉଁ ଚିନ୍ତା ଥିଲା, ତାହା କେତେକ ନୂତନ ଅବଧାରଣାକୁ ମହତ୍ତ୍ୱ ଦେଲା । କର୍ମ ଓ ସଂସାରର ବିଚାର ଥିଲା ସେମିତି ଦୁଇଟି ଅବଧାରଣା । ଏହାର ସୂତ୍ରପାତ ହୋଇଥିଲା ଉପନିଷଦରେ ଏବଂ ବିକାଶ ଘଟିଥିଲା ବୌଦ୍ଧ ଓ ଜୈନ ଶିକ୍ଷାରେ । କ୍ରମେ ଏହାକୁ ଖୁବ୍ ମହତ୍ତ୍ୱ ମିଳିଲା । ପ୍ରତିମାପୂଜା ବୈଦିକ ବ୍ରାହ୍ମଣ ଯୁଗରେ ଅବିଦିତ ଥିଲା । ପ୍ରତିମାପୂଜାରେ ବିଶେଷ ମହତ୍ତ୍ୱ ଆରାଧ୍ୟ ଓ ଆରାଧକ ଉପରେ ରହୁଥିଲା । ଆରାଧନାର ଉଦ୍ଦେଶ୍ୟ ଥିଲା ମୋକ୍ଷ । ଶ୍ରମଣ ଧର୍ମରେ ମୋକ୍ଷର ବିଚାରକୁ ପ୍ରମୁଖତା ମିଳିଲା ଏବଂ ମୋକ୍ଷ ହେଲା ସେତେବେଳେ ସବୁଠାରୁ ଲୋକପ୍ରିୟ ବିଚାର ।

ଆଉ ଏକ ବିଚାର ଅନୁଯାୟୀ, ଏହି ଧର୍ମର କର୍ମ ଆଗତ ଜନ୍ମର ଅବସ୍ଥାକୁ ନିର୍ଦ୍ଧାରିତ କରେ । ଏହାକୁ ପୂର୍ବାର୍ଜିତ ଫଳ ବା ପୂର୍ବଜନ୍ମର ଫଳ କୁହାଯାଏ । ଏହା ଭାଗ୍ୟବାଦ ନୁହେଁ, କାରଣ ବ୍ୟକ୍ତି ବିଚାର ପୂର୍ବକ ସତ୍କର୍ମ କରି ନିଜର ଭବିତବ୍ୟରେ ସଂଶୋଧନ ଆଣିପାରିବ । ଭାଗ୍ୟବାଦ ଅନୁସାରେ, କର୍ମ ଯଦି ଧର୍ମସମ୍ମତ, ତେବେ ତାହା ଶୁଦ୍ଧ । ବୈଦିକ ବ୍ରାହ୍ମଣ ଧର୍ମରେ ଏବଂ ଗୋଟାଏ ସୀମା ପର୍ଯ୍ୟନ୍ତ ପୌରାଣିକ ହିନ୍ଦୁଧର୍ମରେ ବ୍ରାହ୍ମଣ ଓ ଧର୍ମଶାସ୍ତ୍ର ହେଲେ ଧର୍ମର ନିୟନ୍ତା । ଉଭୟେ ବର୍ଣ୍ଣ-ଧର୍ମର ପାଳନକୁ ନୈତିକ ମନେକରୁଥିଲେ । ବୌଦ୍ଧ ଓ ଜୈନମାନେ ସାମାଜିକ ନୈତିକତାର ଏକ ଭିନ୍ନ ଅବଧାରଣା ଉପରେ ମହତ୍ତ୍ୱ ଦେଉଥିଲେ । ଉଦାହରଣ ସ୍ୱରୂପ, ବୌଦ୍ଧମାନେ ମଧ୍ୟମ ମାର୍ଗ ଉପରେ ମହତ୍ତ୍ୱ ଦେଉଥିଲେ, ଯାହାର ମୂଳ ବର୍ଣ୍ଣ-ଧର୍ମରେ ନ ଥିଲା । ଗୀତାର ଉପଦେଶ ହେଲା ଯେ, ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ଧର୍ମ ଅନୁଯାୟୀ କାର୍ଯ୍ୟ କରିବା ଉଚିତ; ଫଳ ଉପରେ ଆଶା ରଖିବା ଉଚିତ ନୁହେଁ । ଯେତେବେଳେ କୁରୁକ୍ଷେତ୍ର ଯୁଦ୍ଧର ଆରମ୍ଭରେ ଅର୍ଜୁନ ନିଜ କୁଟୁମ୍ବଜନଙ୍କର ବଧ ପାଇଁ ଅନାଗ୍ରହୀ, ବିଷାଦଗ୍ରସ୍ତ ହେଲେ, ସେତେବେଳେ ତାଙ୍କ ରଥର ସାରଥୀ ଶ୍ରୀକୃଷ୍ଣ ତାଙ୍କୁ ଏକଥା ବୁଝାଇଲେ । ଅର୍ଥାତ୍ ସେ (ଅର୍ଜୁନ) ହତ୍ୟା ଅପରାଧର ଫଳ ପାଇବେ ନାହିଁ,

କାରଣ ବଧ କରିବା ହେଲା ଯୁଦ୍ଧର ନିୟମ ଏବଂ କ୍ଷତ୍ରିୟ ନାୟକ ଅର୍ଜୁନ ଧର୍ମରକ୍ଷା ପାଇଁ ବଦ୍ଧପରିକର ଥିଲେ । ଯଦି ରଥର ସାରଥି ଗୌତମବୁଦ୍ଧ ହୋଇଥାନ୍ତେ, ନିଶ୍ଚିତରୂପେ ସନ୍ଦେଶ ଭିନ୍ନ ହୋଇଥାନ୍ତା – ଏହା ଅନସ୍ୱୀକାର୍ଯ୍ୟ ।

ଅନ୍ୟ ଏକ ଧର୍ମ ଅର୍ଥାତ୍ ଖ୍ରୀଷ୍ଟିଆନ ଧର୍ମ ଭାରତରେ ନୌବାଣିଜ୍ୟ ମାଧ୍ୟମରେ ପଶ୍ଚିମ ଦିଗରୁ ପ୍ରବେଶ କଲା । ଖ୍ରୀଷ୍ଟଧର୍ମର ଭାରତରେ ପ୍ରବେଶ ତିଥିକୁ ନେଇ ଗବେଷକମାନଙ୍କ ମଧ୍ୟରେ ଏଯାଏଁ ସହମତି ଆସି ନାହିଁ । ଖ୍ରୀଷ୍ଟଧର୍ମର ଭାରତରେ ପ୍ରବେଶ କଥା ଏକ କିମ୍ବଦନ୍ତୀରୁ ଜଣାଯାଏ । କିମ୍ବଦନ୍ତୀ ଅନୁସାରେ ସେଣ୍ଟ ଥୋମାସ ଦୁଇଥର ଧର୍ମପ୍ରଚାର ଉଦ୍ଦେଶ୍ୟରେ ଭାରତକୁ ଆସିଥିଲେ । ଏକଥା ଏଡ଼େସାର କେଥୋଲିକ ଚର୍ଚ୍ଚ ମଧ୍ୟ ଉଲ୍ଲେଖ କରିଥାଏ । ପ୍ରଥମଥର ସେ ଉତ୍ତର-ପଶ୍ଚିମର ପଲ୍ଲବ ରାଜା ଗଣ୍ଡଫେରସ୍‌କୁ ଭେଟିଥିଲେ । ଦ୍ୱିତୀୟଥର, ପ୍ରାୟ 52 ଖ୍ରୀଷ୍ଟାବ୍ଦରେ ସେ ମାଲାବାର ଉପକୂଳରେ ପହଞ୍ଚିଥିଲେ । କୁହାଯାଏ, ସେଣ୍ଟ ଥୋମାସ ଥିଲେ ଯୀଶୁଙ୍କର ପ୍ରତ୍ୟକ୍ଷ ଶିଷ୍ୟ । ପାରମ୍ପରିକ ଉଲ୍ଲେଖ ଅନୁଯାୟୀ, ସେ ମାଡ୍ରାସ ନିକଟସ୍ଥ ମାଇଲାପୁରରେ ସହୀଦ ହୋଇଥିଲେ । ମାତ୍ର ଏକଥାର କୌଣସି ଐତିହାସିକ ପ୍ରାମାଣିକତା ଉପଲବ୍ଧ ହୋଇ ନାହିଁ । ପୂର୍ବ ଭୂମଧ୍ୟସାଗରୀୟ ପରମ୍ପରାରୁ ପ୍ରାପ୍ତ ବୃତ୍ତାନ୍ତ ଅନୁସାରେ, ସେଣ୍ଟ ଥୋମାସ ସୋକୋଟ୍ରା ଦେଇ ମୁଜିରିସରେ ପହଞ୍ଚିଥିଲେ । ସେତେବେଳେ ଭାରତ ଓ ରୋମ୍ ମଧ୍ୟରେ ବାଣିଜ୍ୟ ପାଇଁ ଯେଉଁ ମାତ୍ରାରେ ନୌଯାତ୍ରା ଚାଲିଥିଲା, ତାକୁ ଧ୍ୟାନ ଦେଲେ ସେଣ୍ଟ ଥୋମାସଙ୍କର ଯାତ୍ରା ଅସମ୍ଭବ ମନେହୁଏ ନାହିଁ । ସେ ଯାହାହେଉ, ସେଣ୍ଟ ଥୋମାସଙ୍କର ସମ୍ବନ୍ଧ ସେତେବେଳେ ବାଣିଜ୍ୟରେ ସବୁଠାରୁ ଅଧିକ ସକ୍ରିୟ ଥିବା କ୍ଷେତ୍ର, ଉତ୍ତର-ପଶ୍ଚିମ ଭାରତ ଓ ଦକ୍ଷିଣ ଭାରତ ସହିତ ବୋଲି ଏହି ପରମ୍ପରାରେ ଦର୍ଶାଯାଏ । ଥୋମାସ କାନାଙ୍କ ନେତୃତ୍ୱରେ ପାରସ୍ୟବାସୀ ଖ୍ରୀଷ୍ଟଧର୍ମୀମାନଙ୍କର ଏକ ଗୋଷ୍ଠୀ କେରଳକୁ ଦେଶାନ୍ତରଣ କଲେ । ସ୍ଥାନୀୟ ରାଜା ସେମାନଙ୍କୁ ଭୂମିଦାନ ଦେଲେ । ଖ୍ରୀଷ୍ଟିଆନମାନଙ୍କର ଭାରତରେ ପ୍ରବେଶକୁ ସିରିଆନ ଖ୍ରୀଷ୍ଟିଆନ ଚର୍ଚ୍ଚର ପ୍ରତିଷ୍ଠା ସହିତ ଯୋଡ଼ି ଦେଖାଯାଏ ।

ଏହି କାଳଖଣ୍ଡର ସାମଗ୍ରିକ ଚିତ୍ର ଉପରେ ଦୃଷ୍ଟି ଦେଲେ ଜଣାଯାଏ ଯେ ବହୁତ ଭାରି ସଂଖ୍ୟାରେ ଲୋକ ବିଭିନ୍ନ ଦିଗରେ ଯାତାୟାତ କରୁଥିଲେ । କେବଳ ଯବନମାନେ ଭାରତ ସହିତ ବାଣିଜ୍ୟ କରୁ ନ ଥିଲେ । ବରଂ ଭାରତର ବିଭିନ୍ନ ଅଞ୍ଚଳର ବ୍ୟବସାୟୀ ମଧ୍ୟ-ଏସିଆ, ପଶ୍ଚିମ ଏସିଆ, ଲୋହିତ ସାଗରର ବନ୍ଦରଗୁଡ଼ିକରେ ତଥା ଦକ୍ଷିଣ-ପୂର୍ବ ଏସିଆକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । ଚିତ୍ରିତ ମୃଦ୍‌ଭାଣ୍ଡ, ଶିଳ୍ପାବଶେଷ ଏବଂ ଲିପିର ବ୍ୟାପକ ବିତରଣ ଓ ସଂପ୍ରସାରଣରୁ ଭାରତ ଭିତରେ ଏବଂ ବାହାରେ ଲୋକଙ୍କର

ଗମନାଗମନର ସଂକେତ ମିଳେ । ଅନେକ ଅଞ୍ଚଳରେ ବିଭିନ୍ନ ସମୁଦାୟର ଲୋକ ଏକାଠି ରହୁଥିଲେ । ସେମାନଙ୍କର ଅସ୍ମିତାରେ ବିବିଧତା ଥିଲା; ପୁଣି ବୃତ୍ତି, ଜାତି ମର୍ଯ୍ୟାଦା, ସାଂପ୍ରଦାୟିକ ସଂପୃକ୍ତି ଓ ସେମାନଙ୍କର ଭାଷାରେ ବିବିଧତା ରହିଥିଲା । ପରବର୍ତ୍ତୀ ସମୟରେ ଏହି ଅସ୍ମିତା ସବୁ ପ୍ରାଧାନ୍ୟ ଲାଭ କଲେ । ଧର୍ମଶାସ୍ତ୍ର ଏତେସବୁ ବିବିଧତାକୁ ନିୟନ୍ତ୍ରିତ କରିବ କ'ଣ, ବିବିଧତାର ଆକଳନ କରିବା ବି ତା' ପକ୍ଷେ କାଠିକର ଥିଲା । ଅବସର ମିଳିଲେ, ଏହି ଗ୍ରନ୍ଥଗୁଡ଼ିକ ସୈଦ୍ଧାନ୍ତିକ ଦସ୍ତାବିଜ ଉପରେ ନିଜର ପୂର୍ବାଗ୍ରହକୁ ଲାଗୁ କରୁଥିଲେ । କାହିଁ କେଉଁଠି ଗ୍ରନ୍ଥରେ ବର୍ଣ୍ଣର ଉଲ୍ଲେଖ ରହିଥିଲା, ମାତ୍ର ସେସବୁ ଉଚ୍ଚ ଜାତିର ପରିପ୍ରେକ୍ଷୀରେ । ତଥାକଥିତ ତଳ ଜାତିକୁ ମିଶ୍ରିତ ଜାତି ବା ବର୍ଣ୍ଣସଙ୍କର ବୋଲି କୁହାଯାଉଥିଲା । ତଳ ଜାତି ପ୍ରାୟ କ୍ଷେତ୍ରରେ ନିଜ ବୃତ୍ତି ଆଧାରରେ ପରିଚୟ ପାଉଥିଲେ । ପରିବର୍ତ୍ତନର ଯୁଗରେ ରକ୍ଷଣଶୀଳ... ରକ୍ଷିବାଦ ଘୋର ଅସୁରକ୍ଷାର ସମ୍ମୁଖୀନ ହେଉଥିଲା । ଧର୍ମଶାସ୍ତ୍ରର କଠୋରତା ଉକ୍ତ ଅସୁରକ୍ଷାର ମାତ୍ରାକୁ ଯେ ପରିବର୍ଦ୍ଧିତ କରୁଥିଲା, ତହିଁରେ ଦ୍ୱିରୁକ୍ତି ନାହିଁ ।

# ୨

# ସନ୍ଧିକାଳ

**ପ୍ରାୟ 300 – 700 ଖ୍ରୀଷ୍ଟାବ୍ଦ**

## ଶାସ୍ତ୍ରୀୟତାବାଦ (Classicism)

ଐତିହାସିକମାନେ ସୁବର୍ଣ୍ଣଯୁଗର କଥା ଲେଖିବାବେଳେ ଗୁପ୍ତଯୁଗକୁ ସେ ଧରଣର ଯୁଗ ରୂପେ ବର୍ଣ୍ଣନା କରିଥିଲେ । ଯେତେବେଳେ ଜୀବନର ସମସ୍ତ ବିଭାବ ସମୃଦ୍ଧିର ଚରମ ସୋପାନରେ ଉପନୀତ ହୁଏ, ସେତେବେଳେ ଗୋଟିଏ ସଭ୍ୟତାର ସବୁର୍ଣ୍ଣଯୁଗ ଚାଲିଛି ବୋଲି କୁହାଯାଏ । ଏଥିପାଇଁ ଗୁପ୍ତଯୁଗକୁ ଚୟନ କରିବାର କାରଣ ହେଲା ଏ ସମୟରେ ପ୍ରଭାବଶାଳୀ ସାହିତ୍ୟ ସୃଷ୍ଟି ହେଲା ଏବଂ ଉଚ୍ଚାଙ୍ଗ କଳାର ବିକାଶ ହେଲା । ବସ୍ତୁତଃ ବ୍ରାହ୍ମଣ୍ୟର ନବଜାଗରଣ ସମୟରେ ହିଁ ଏସବୁ ସଂଘଟିତ ହେଲା । ଯେହେତୁ ପ୍ରାରମ୍ଭରୁ ଭାରତୀୟ ସଭ୍ୟତା ହିନ୍ଦୁତ୍ୱ ଓ ସଂସ୍କୃତାଶ୍ରୟୀ, ତେଣୁ ପ୍ରାଥମିକ ପର୍ଯ୍ୟାୟରେ ଏହା ସୁବର୍ଣ୍ଣଯୁଗ ରୂପେ ଖ୍ୟାତି ଅର୍ଜନ କରିଥିଲା । ଉଚ୍ଚାଙ୍ଗ ସଂସ୍କୃତି ବିଭିନ୍ନ ଦରବାରର ସଭ୍ୟବର୍ଗଙ୍କ ସହ ଜଡ଼ିତ ଥିଲା ଏବଂ ସୃଜନଶୀଳ ସାହିତ୍ୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଦର୍ଶନ ତଥା ସେମାନଙ୍କ ଜୀବନଶୈଳୀରେ ଏହା ପ୍ରତିଫଳିତ ହେଉଥିଲା । ସୁବର୍ଣ୍ଣ ଯୁଗରେ ସଭ୍ୟ ବର୍ଗଙ୍କ ବ୍ୟତିରେକ ସାଧାରଣ ଲୋକେ ମଧ୍ୟ ପାର୍ଥିବ ଦିଗରୁ ସ୍ୱଚ୍ଛଳ ଥିଲେ ଏବଂ ସେମାନଙ୍କର କୌଣସି ବିଷୟରେ ଅଭିଯୋଗ କରିବା ଆବଶ୍ୟକ ନ ଥିଲା ବୋଲି କୁହାଯାଏ ।

ଏକ ସୁବର୍ଣ୍ଣଯୁଗ ନିର୍ଦ୍ୱନ୍ଦ୍ୱରେ ୟୁଟୋପୀୟ ହେବାକୁ ବାଧ୍ୟ । ଏହାକୁ ସୁଦୂର ଅତୀତରେ ଠାବ କରାଗଲା । ଭାରତର ଆଦ୍ୟ ଇତିହାସ ଉପରେ ଯେଉଁମାନେ ଗବେଷଣା କରୁଥିଲେ ସେମାନେ ଏଥିପାଇଁ ଏପରି ଏକ କାଳଖଣ୍ଡ ବାଛିଲେ ଯେଉଁ ସମୟରେ ହିନ୍ଦୁ ସଂସ୍କୃତି ପୂର୍ବାପେକ୍ଷା ଅଧିକ ଦୃଢ଼ତାର ସହ ପ୍ରତିଷ୍ଠିତ ହୋଇଥିଲା । ସୁଦୂର ଅତୀତର ଅନେକ

ସୁବିଧାଜନକ ଦିଗ ଅଛି । ଏହା ଅତୀତର ପୁନର୍ଗଠନ ଲାଗି କଳ୍ପନାକୁ ଅଧିକ ଅବସର ପ୍ରଦାନ କରେ । ଅଧୁନା ଐତିହାସିକମାନେ ସମାଜର ସମସ୍ତ ବିଭାବ ଉପରେ ଟିପ୍ପଣୀ କରୁଥିଲାବେଳେ, ସମଗ୍ର ସମାଜକୁ ଆଚ୍ଛନ୍ନ କରି ରଖିଥିବା ସୁବର୍ଣ୍ଣଯୁଗର ଅବଧାରଣାକୁ ନେଇ ପ୍ରଶ୍ନ ଉଠିବା ସ୍ୱାଭାବିକ । ଏହି ପ୍ରଶ୍ନ ପେରିକ୍ଲୀସ୍‌ଙ୍କ ଏଥେନ୍‌ସ, ଏଲିଜାବେଥ୍‌ଙ୍କ ଇଂଲଣ୍ଡ ତଥା ଅନ୍ୟାନ୍ୟ ସଂସ୍କୃତି ଲାଗି ପ୍ରଯୁଜ୍ୟ । ପ୍ରାକ୍-ଆଧୁନିକ କାଳର ଅନେକ ସମାଜ ଉନ୍ନତ ତଥା ଅପେକ୍ଷାକୃତ ଅନୁନ୍ନତ ଏହିପରି ଦୁଇଭାଗରେ ବିଭକ୍ତ ଥିଲା । ପ୍ରଥମୋକ୍ତ ଭାଗର ଲୋକମାନେ ଶେଷୋକ୍ତ ଭାଗର ଜୀବନଧାରଣର ଅବସ୍ଥାକୁ ନେଇ ଚିନ୍ତିତ ନ ଥିଲେ । ଏକ ସୁବର୍ଣ୍ଣଯୁଗର ବର୍ଣ୍ଣନାରେ ଧନୀକମାନଙ୍କ ଜୀବନ ପ୍ରତିଫଳିତ ହୋଇଥିଲା । ସେମାନଙ୍କର କାର୍ଯ୍ୟାବଳୀ ଏ ଯୁଗର ଗୁଣବତ୍ତା ନିର୍ଦ୍ଧାରଣ କରୁଥିଲା ।

ପୂର୍ବରୁ ସୁବର୍ଣ୍ଣଯୁଗ ଏବଂ ଶାସ୍ତ୍ରୀୟଯୁଗର ଅବଧାରଣା କିଛିଟା ଫେଣ୍ଟାଫେଣ୍ଟି ହୋଇଯାଉଥିଲା । ମାତ୍ର ବର୍ତ୍ତମାନ ସେ ଉଭୟଙ୍କୁ ସ୍ୱତନ୍ତ୍ର ଭାବେ ବିଚାର କରାଯାଉଛି ।

ଶାସ୍ତ୍ରୀୟତାର ଛାପଟିର ଏକ ଭିନ୍ନ ଅନ୍ତର୍ନିହିତ ଅର୍ଥ ଅଛି । ବିଭିନ୍ନ ସ୍ୱରୂପର ଆକଳନ ପାଇଁ ଏହା 'ମାନକ' (standard) ନିର୍ଦ୍ଧାରଣ କରିଥାଏ । ଏ କ୍ଷେତ୍ରରେ ଜରୁରୀ ହେଲା ବିଚକ୍ଷଣତାକୁ ଚିହ୍ନିବା ଏବଂ ଏକ ଦୃଷ୍ଟାନ୍ତମୂଳକ ମାନକ ପ୍ରସ୍ତୁତ କରିବା । ନୂତନତ୍ୱର ପ୍ରଚେଷ୍ଟା ପରିପକ୍ୱ ହୋଇ ଏକ ଔପଚାରିକ ଶୈଳୀରେ ପରିଣତ ହୁଏ ଏବଂ ଆଳଂକାରିକ ଆଙ୍ଗିକକୁ ଛାଡ଼ିବାର ପ୍ରବଣତାକୁ ଶାସ୍ତ୍ରୀୟତା ଗ୍ରହଣ କରିପାରେ ନାହିଁ । ଏବେ ଏହି ଅବଧାରଣା ମଧ ଅନେକ ଐତିହାସିକଙ୍କ ଲାଗି ଯଥେଷ୍ଟ ମନେହେଉ ନାହିଁ, କାରଣ ଔପଚାରିକ ଉପସ୍ଥାପନ ସ୍ଥାନ, ସମୟ ଏବଂ ବସ୍ତୁ ଆଧାରରେ ଭିନ୍ନ ଭିନ୍ନ ହେଉଛି । ଶାସ୍ତ୍ରୀୟତାବାଦର ଅନୁଚିନ୍ତା ମୁତାବକ କଳାତ୍ମକ ଏବଂ ସାହିତ୍ୟିକ ପରିପ୍ରକାଶଗୁଡ଼ିକୁ ଐତିହାସିକ ବିବର୍ତ୍ତନର ବୃହତ୍ତର ପ୍ରକ୍ରିୟାଠାରୁ ଅଲଗା କରି ଦେଖାଯାଇଛି । ଯେହେତୁ ଭାଷାଗତ ପରିପ୍ରକାଶ, କଳା, ଦର୍ଶନ, ଜ୍ଞାନ ଏପରିକି ବସ୍ତୁବାଦୀ ସଂସ୍କୃତି ଅନୁସାରେ ବିଚକ୍ଷଣତାର ମାନ ବଦଳିଥାଏ, ସେହି କାରଣରୁ ଏକାଧିକ ଶାସ୍ତ୍ରୀୟ କାଳର ଅବସ୍ଥିତି ସମ୍ପର୍କରେ ମଧ ଆଲୋଚନା କରାଯାଇ ପାରିଥାନ୍ତା । ଶାସ୍ତ୍ରୀୟତାବାଦର ଏକ ଦୀର୍ଘ ଗର୍ଭାଧାନ-କାଳ ଥିଲା ବୋଲି ମଧ କୁହାଗଲା ନାହିଁ ।

କଳାତ୍ମକ ଏବଂ ସାହିତ୍ୟିକ ପରିପ୍ରକାଶ ଅନ୍ତତଃପକ୍ଷେ ତିନୋଟି ଯୁଗରେ ପ୍ରଭାବଶାଳୀ ମାନ୍ୟତା ହାସଲ କରିପାରିଥିଲା । ସେଗୁଡ଼ିକ ହେଲା, ଉତ୍ତର-ମୌର୍ଯ୍ୟ ଏବଂ ଗୁପ୍ତଯୁଗ, ଚୋଳଯୁଗ ଏବଂ ମୋଗଲମାନଙ୍କ ସମୟ । ଗୁପ୍ତଯୁଗର ସଂସ୍କୃତିର ପୂର୍ବାଭାସ କେବଳ ଉତ୍ତର-ଭାରତରେ ସୀମିତ ନ ଥିଲା, କାରଣ ଦାକ୍ଷିଣାତ୍ୟରେ ସଂସ୍କୃତିର ଆଖିଦୃଶିଆ ବିବର୍ତ୍ତନ

ସମ୍ଭବ ହୋଇଥିଲା । ଏହା ମଧ୍ୟ ଯୁକ୍ତି କରାଯାଇ ପାରିବ ଯେ ଭାରତୀୟ ଉପମହାଦେଶର ପ୍ରତ୍ୟେକ ଆଞ୍ଚଳିକ ସଂସ୍କୃତିର ଏକ ସ୍ୱକୀୟ ଶାସ୍ତ୍ରୀୟ ଯୁଗ ଥିଲା । ଶାସ୍ତ୍ରୀୟ ଯୁଗର ଅବଧାରଣାକୁ ଅନ୍ତତଃ ଏହିପରି ଭାବେ ଦେଖିବା ଉଚିତ । ଏମିତି ଗୋଟିଏ କାଳଖଣ୍ଡ କେବେ ବି ଆସି ନ ଥିଲା ଯେତେବେଳେ ସମଗ୍ର ଉପମହାଦେଶରେ ଏକକ, ସାର୍ବଜନୀନ ସାଂସ୍କୃତିକ ଆଙ୍ଗିକ ପରିଦୃଷ୍ଟ ହୋଇଥିଲା । ତେଣୁ ଏଠାରେ ଏକ ବ୍ୟାପକ ପ୍ରସାରିତ ବିଚକ୍ଷଣତାର ସଂଜ୍ଞା ନିର୍ଣ୍ଣୟର କଥା ପଡ଼ିନାହିଁ; ବରଂ ମୂଲ୍ୟାୟନର ଆଧାର ରୂପେ ଗୃହୀତ ହେବାକୁ ଥିବା ସୀମିତ ବିଚକ୍ଷଣତାର କଥା ପଡ଼ିଛି । ଅନ୍ୟାନ୍ୟ ପ୍ରମୁଖ ପରିବର୍ତ୍ତନ ଆଡ଼କୁ ମନଯୋଗ ଦେଲାବେଳେ ଐତିହାସିକ ଦୃଷ୍ଟିକୋଣର କେନ୍ଦ୍ର ହିସାବରେ ସଂସ୍କୃତ ଆଧାରିତ ସଂସ୍କୃତି ଉପରେ ଦୃଷ୍ଟି ନିବଦ୍ଧ କରିବାକୁ ପଡୁଛି । ଏହା ବୌଦ୍ଧିକ ବିମର୍ଶର ଭାଷାରୂପେ ସଂସ୍କୃତ ଭାଷାର ବହୁଳ ଏବଂ ସ୍ୱାଭାବିକ ବ୍ୟବହାରକୁ ସୂଚିତ କରେ । ଯଦିଓ ଏହା ଦରବାର ଏବଂ ବିଜ୍ଞମାନଙ୍କ ସଂସ୍କୃତି ଭିତରେ ସୀମାବଦ୍ଧ ଥିଲା, ତଥାପି ଏହା ବିବିଧ କାର୍ଯ୍ୟକ୍ରମର ଅନ୍ତଃସ୍ୱର ରୂପେ ଫୁଟିଉଠିଥିଲା । ଜମି ସ୍ୱତ୍ୱପତ୍ରଠାରୁ ଆରମ୍ଭ କରି ଦାର୍ଶନିକ ବିମର୍ଶ ପର୍ଯ୍ୟନ୍ତ ଐତିହାସିକ ପରିବର୍ତ୍ତନର ବ୍ୟାପକ ପ୍ରସ୍ଥ ଉପରେ ଏହାର ପ୍ରଭାବ ଥିଲା ।

ଏ ସମୟର ସଂସ୍କୃତ ଆଧାରିତ ସଂସ୍କୃତିକୁ ବ୍ରାହ୍ମଣ୍ୟ ଅବଧାରଣାର ମୂଳରେ ସନ୍ଧାନ କରିବାର ଏକ ପ୍ରବଣତା ଦେଖାଦିଏ । ତେଣୁ ଏ କାଳଖଣ୍ଡକୁ ବ୍ରାହ୍ମଣ୍ୟବାଦର ନବଜାଗରଣ (renaissance) ବୋଲି ସୂଚିତ କରାଯାଏ । ତଥାପି ଏ ସମୟର ଅନ୍ତଃସ୍ୱରରେ ଏପରି କେତେକ କଥା ଅଛି ଯାହାକୁ ବିଶେଷତଃ ବୌଦ୍ଧଧର୍ମର ଶ୍ରମଣ ପରମ୍ପରାର ଆଧାରରେ ବୁଝିହେବ । ବୁଦ୍ଧଙ୍କ ପ୍ରତିମୂର୍ତ୍ତିମାନ ବେଶ୍ ପ୍ରଭାବଶାଳୀ ଥିଲେ । ବୌଦ୍ଧ ସଂସ୍କୃତ ସାହିତ୍ୟ ସୃଜନଶୀଳ ସାହିତ୍ୟକୁ ପ୍ରୋତ୍ସାହିତ କଲା । ଅନେକ ସମୟରେ ପ୍ରତିଷ୍ଠିତ ଚିନ୍ତାଧାରାକୁ ପ୍ରଶ୍ନ କରୁଥିବା ଆଦ୍ୟ ବୌଦ୍ଧ ଏବଂ ଶ୍ରମଣମାନଙ୍କୁ ଭିତ୍ତିକରି ଦାର୍ଶନିକ ଆଲୋଚନାମାନ ସମ୍ଭବ ହେଲା ।

ଗୁପ୍ତଯୁଗର ଶାସ୍ତ୍ରୀୟତା ଗୁପ୍ତ ଶାସନକାଳର କୌଣସି ନୂତନତ୍ୱରୁ ଉଦ୍‌ଭୂତ ହୋଇନାହିଁ, ବରଂ ପୂର୍ବରୁ ଆରମ୍ଭ ହୋଇଥିବା ଏକ ପ୍ରକ୍ରିୟା ଏ ସମୟକୁ ରୂପ ପରିଗ୍ରହ କରିଛି । ଉତ୍ତର ଭାରତରେ ପ୍ରାକ୍-ଗୁପ୍ତଯୁଗରେ ନୂତନ କଳାତ୍ମକ ଆଙ୍ଗିକଗୁଡ଼ିକର ସୂତ୍ରପାତ ହୋଇଥିଲା । ଉଦାହରଣ ସ୍ୱରୂପ, ବୌଦ୍ଧଧର୍ମ ଏବଂ ଅନ୍ୟାନ୍ୟ ସମାନ୍ତରାଳ ଧର୍ମ ପ୍ରତିଷ୍ଠିତ ଥିବାବେଳେ ବୈଷୟିକ ବିଷୟ ଏବଂ ବିଭିନ୍ନ ପ୍ରକାର ସୃଜନଶୀଳ ସାହିତ୍ୟକୁ ନେଇ ପୁସ୍ତକମାନ ରଚିତ ହୋଇଥିଲା । ଅଧିକାଂଶ ରଚନା ସଂସ୍କୃତ ଭାଷାରେ ଲିଖିତ ହୋଇଥିଲା । ତେବେ କେବଳ ଭାଷା ମାଧ୍ୟମରେ ଏ ଯୁଗର ନିର୍ଦ୍ଦିଷ୍ଟ ଗୁଣବତ୍ତା ନିର୍ଣ୍ଣୟ କରାଯାଇ ନ ଥିଲା । ସଂସ୍କୃତ

ଆଧାରିତ ସଂସ୍କୃତିର ପ୍ରସାର ପଛରେ ନିର୍ଦ୍ଦିଷ୍ଟ ପ୍ରକାରର ସାମାଜିକ ଏବଂ ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଥିଲା ଏବଂ ଏହାଦ୍ୱାରା ଗୋଷ୍ଠୀ ବିଭାଗୀକରଣ ମଧ୍ୟ ହୋଇଥିଲା । ଅନେକ ଶୈଳୀ, ଆଙ୍ଗିକ ଏବଂ ଅଞ୍ଚଳୀପ୍ରସାର ଆଧାରରେ ଶାସ୍ତ୍ରୀୟତାବାଦର ବିକାଶ ହୋଇଥିଲା । ତେଣୁ ଏହା ଏକ ବିକାଶଶୀଳ ବ୍ୟବସ୍ଥା ଥିଲା । ଏହାର ପ୍ରଚେଷ୍ଟା ଥିଲା ଏକ ସର୍ବସମ ଭବ୍ୟ ସଂସ୍କୃତ ଆଡ଼କୁ ରୂପାନ୍ତରଣ । କିନ୍ତୁ ଏହି ପ୍ରକ୍ରିୟା ଆହୁରି ଅନେକ କିଛିର ଉତ୍ପ୍ରେରକରେ ପରିଣତ ହେଲା । ତେଣୁ ଗୁପ୍ତଯୁଗ ଏକ ପୁନର୍ଜାଗରଣ ବା ନବଜାଗରଣର ସମୟ ନୁହେଁ, ବରଂ ଏହା ଥିଲା ପ୍ରଥମ ସହସ୍ରାବ୍ଦୀର ଉତ୍ତରଭାଗରେ ଉତ୍ତର ଭାରତୀୟ ସମାଜର ରୂପାନ୍ତରଣ ଦୃଷ୍ଟିକୋଣରୁ ଏକ ସନ୍ଧିକାଳ ।

ଉପର ଶ୍ରେଣୀମାନଙ୍କ ଦୃଷ୍ଟିକୋଣରୁ ଗୁପ୍ତଯୁଗକୁ ଶାସ୍ତ୍ରୀୟଯୁଗ କହିବା ଆପେକ୍ଷିକ ଭାବେ ଠିକ୍, କାରଣ ସେମାନଙ୍କ ସାହିତ୍ୟ ସନ୍ନିବେଶିତ ବର୍ଣ୍ଣନା ଏବଂ କଳାର ଉପସ୍ଥାପନା ମୁତାବକ ସେମାନେ ସ୍ୱଚ୍ଛଳ ଜୀବନ ବଞ୍ଚୁଥିଲେ । ପ୍ରତ୍ନତତ୍ତ୍ୱ ସୌଜନ୍ୟରୁ ଯେଉଁ ଯଥାର୍ଥ ଓ ଆକ୍ଷରିକ ପ୍ରମାଣ ମିଳେ, ତାହା ମୁତାବକ ସଂଖ୍ୟାଗରିଷ୍ଠ ଲୋକଙ୍କ ଜୀବନ-ଶୈଳୀ ଏତେ ଉନ୍ନତ ନ ଥିଲା । ବରଂ ପୂର୍ବବର୍ତ୍ତୀ କାଳରେ ହାରାହାରି ଜୀବନ ଧାରଣର ମାନ ଏ ସମୟ ଅପେକ୍ଷା ଉନ୍ନତ ଥିଲା ବୋଲି କେତେକ ସ୍ଥାନର ଖନନରୁ ଜଣାପଡ଼େ । ନଗରସ୍ଥଳୀ ଏବଂ ଗ୍ରାମୀଣ ବସତିଗୁଡ଼ିକର ଆନୁଭୂମିକ ଖନନ (Horizontal Excavations) କରି, ପୂର୍ବବର୍ତ୍ତୀକାଳ ସହିତ ଏହାର ତୁଳନାତ୍ମକ ବିଶ୍ଳେଷଣ କଲେ ଏହାକୁ ଦୃଢ଼ତାର ସହ ପ୍ରମାଣ କରିହେବ । ଖନନରୁ ମିଳିଥିବା ବସ୍ତୁବାଦୀ ସଂସ୍କୃତି ଏବଂ ସାହିତ୍ୟ ଓ କଳାରେ ପ୍ରତିଫଳିତ ସଂସ୍କୃତି ମଧ୍ୟରେ ଥିବା ପାର୍ଥକ୍ୟକୁ ଅନୁଧ୍ୟାନ କଲେ ତାହା ଶାସ୍ତ୍ରୀୟତାବାଦର ଛାୟାରେ ଥିବା ସାମାଜିକ ସ୍ଥିତି ସମ୍ପର୍କରେ ଯଥାର୍ଥ ଟିପ୍ପଣୀ ହେବ ।

## ଗୁପ୍ତ ଏବଂ ସେମାନଙ୍କର ଉତ୍ତରାଧିକାରୀଗଣ

ଗୁପ୍ତବଂଶର ଅଭ୍ୟୁଦୟ ଓ ପରିଚୟ ସମ୍ପର୍କୀୟ ତଥ୍ୟ ସୀମିତ । ମନେହୁଏ କେଉଁ ଅଜ୍ଞାତ ଭିତ୍ତିରୁ ଏହାର ଅଭ୍ୟୁଦୟ ଘଟିଛି । ପୂର୍ବରୁ ଚିନ୍ତା କରାଯାଉଥିଲା ଯେ ଏହି ବଂଶ ମଗଧର ଏକ ଛୋଟ ଅଞ୍ଚଳରେ ଶାସନ କରୁଥିଲା । ମାତ୍ର ସାଂପ୍ରତିକ ମତ ଅନୁସାରେ ପଶ୍ଚିମ ଗାଙ୍ଗେୟ ସମତଳ ସେମାନଙ୍କର ଶାସନାଧୀନ ଥିଲା । ନାମରୁ ଅନୁମାନ କରାଯାଏ ଯେ, ସେମାନେ ଜାତିରେ ବୈଶ୍ୟ ଥିଲେ । ମାତ୍ର କେତେକ ଐତିହାସିକ ସେମାନଙ୍କୁ ବ୍ରାହ୍ମଣର ମାନ୍ୟତା ଦିଅନ୍ତି । ବଂଶର ଜଣେ ପରବର୍ତ୍ତୀ ସମୟର ରାଜାଙ୍କ ପ୍ରଶସ୍ତିପତ୍ରରୁ, କୁଶାଣ ସାମ୍ରାଜ୍ୟର ପତନ ପରେ ଅନେକ ଛୋଟ ଛୋଟ ରାଜ୍ୟର ଅଭ୍ୟୁଦୟ ବିଷୟରେ ଅନୁମାନ

କରିହୁଏ । ଏହା ମଧ୍ୟ ସେହିପରି ଗୋଟିଏ ଛୋଟ ରାଜ୍ୟ ହୋଇଥିବ । ପ୍ରଥମ ଚନ୍ଦ୍ରଗୁପ୍ତ କ୍ଷମତାସୀନ ହେବାପରେ ଏହି ବଂଶ ଗରିମା ମଣ୍ଡିତ ହେଲା । ସେ ତାଙ୍କର ରାଜ୍ୟର ପରିସରକୁ ଏକ ସୀମିତ ଅଞ୍ଚଳରୁ ବ୍ୟାପକ କଲେ । ଏକଦା ଉତ୍ତର ବିହାରର ପୁରୁଣା ତଥା ପ୍ରତିଷ୍ଠିତ ଗଣସଂଘ ଏବଂ ଅଧୁନା ନେପାଳ ସହ ସଂଯୋଜିତ ଲିଚ୍ଛବି ବଂଶରେ ଚନ୍ଦ୍ରଗୁପ୍ତ ବିବାହ କଲେ । ଏହି ବିବାହ ଗୁପ୍ତବଂଶ ଉପରେ ଗ୍ରହଣଶୀଳତାର ମୋହର ଲଗାଇଦେଲା । ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ମୁଦ୍ରାରୁ ମିଳୁଥିବା ସୂଚନା ମୁତାବକ ଏହା ସେମାନଙ୍କ ଲାଗି ରାଜନୈତିକ ଦୃଷ୍ଟିକୋଣରୁ ଉପଯୋଗୀ ସାବ୍ୟସ୍ତ ହେଲା । ଗଙ୍ଗାର ଆଖପାଖ (ମଗଧ, ସାକେତ ଏବଂ ପ୍ରୟାଗ) ଅଞ୍ଚଳରୁ ତାଙ୍କର ଶାସନ ଆହୁରି ସୁଦୂରପ୍ରସାରୀ ହେଲା ଏବଂ ସେ ମହାରାଜାଧିରାଜ ଉପାଧି ଧାରଣ କଲେ । ଅବଶ୍ୟ ଏ ଉପାଧିର ବିଶେଷ ଗୁରୁତ୍ୱ ନ ଥିଲା, କାରଣ ସେତେବେଳକୁ ଅନେକ ପ୍ରମୁଖ ତଥା ଗୌଣ ଶାସକ ଏ ଉପାଧି ଧାରଣ କରୁଥିଲେ । ଗୁପ୍ତଯୁଗର 319-20 ମସିହାରେ ସେ ଗାଦିନସୀନ ହୋଇଥିବା ଅନୁମେୟ ।

ସମୁଦ୍ରଗୁପ୍ତ ଦାବି କରନ୍ତି ଯେ 335 ଖ୍ରୀଷ୍ଟାବ୍ଦ ବେଳକୁ ତାଙ୍କର ବାପା ତାଙ୍କୁ ଉତ୍ତରାଧିକାରୀ ରୂପେ ନିଯୁକ୍ତ କଲେ । ଏବେ ଆହ୍ଲାବାଦରେ ଥିବା ଏକ ଅଶୋକସ୍ତମ୍ଭରେ ଖୋଦିତ ତାଙ୍କ ସମ୍ପର୍କୀୟ ଦୀର୍ଘ ପ୍ରଶସ୍ତିପତ୍ର ତାଙ୍କ ଶାସନ ସମ୍ପର୍କରେ ମୌଳିକ ସୂଚନା ପ୍ରଦାନ କରିଥାଏ । ସେ ଅଶୋକଙ୍କ ଶିଳାଲେଖ ସମ୍ବଳିତ ସ୍ତମ୍ଭକୁ ବାଛିବା ମୂଳରେ ଥିବା କାରଣ କୌତୂହଳ ଉଦ୍ଦୀପକ ମନେହୁଏ । ହୁଏତ ସେ ଏକ ଐତିହାସିକ କ୍ରମିକତା ଦାବି କରିବାଲାଗି କିମ୍ବା ଅଶୋକଙ୍କ ମନୋବୃତ୍ତିର ବିପରୀତ ମନୋଭାବ ପ୍ରଦର୍ଶନ ଲାଗି ଏପରି କରିଥାଇ ପାରନ୍ତି । ପୁଣି, ପରବର୍ତ୍ତୀ ଶାସକମାନଙ୍କର ଲିପି ବହନକାରୀ ଏହି ସ୍ତମ୍ଭ ଏକ ଐତିହାସିକ ସ୍ମାରକରେ ପରିଣତ ହୋଇଛି ।

ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ଉତ୍ତରାଧିକାର ଜନିତ ସମସ୍ୟା ଏବଂ ଜଣେ ଅଜ୍ଞାତ ରାଜକୁମାର କଚଙ୍କ ମୁଦ୍ରା ଅନୁଧ୍ୟାନ କଲେ ଜଣାଯାଏ ଯେ ସମୁଦ୍ରଗୁପ୍ତଙ୍କର ଜଣେ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଯାହାଙ୍କୁ ସେ ଶେଷରେ ଦମନ କରିଥିଲେ । ଯାହା ମନେହୁଏ ସମୁଦ୍ରଗୁପ୍ତଙ୍କର ଇଚ୍ଛା ଥିଲା ରାଜାଙ୍କ ଦ୍ୱାରା କେନ୍ଦ୍ରୀୟ ଭାବେ ରାଜଧାନୀରୁ ନିୟନ୍ତ୍ରିତ ଏକ ବିସ୍ତୃତ ସାମ୍ରାଜ୍ୟ ପ୍ରତିଷ୍ଠା । ମୌର୍ଯ୍ୟମାନଙ୍କର ପୁନଃ ଅଭ୍ୟୁଦୟ ଘଟୁଥିଲା । ଯଦି ପ୍ରଶସ୍ତିପତ୍ରକୁ ଆକ୍ଷରିକ ଭାବେ ଠିକ୍ ବୋଲି ଧରାଯାଏ, ତେବେ ତାହା ମୁତାବକ ଉପମହାଦେଶରେ ସମୁଦ୍ରଗୁପ୍ତଙ୍କ ବିଜୟଯାତ୍ରା ସମୟରେ ଅନେକ ରାଜା ଓ ଅଞ୍ଚଳ ତାଙ୍କର ପଦାନତ ହୋଇଥିଲେ । ତତ୍କାଳୀନ ସମୟରେ ଏପ୍ରକାର ଦଖଲର ତାଲିକା ଦରବାରୀ ପ୍ରଶସ୍ତିର ଏକ ଅଙ୍ଗ ଥିଲା, ମାତ୍ର ଏ କ୍ଷେତ୍ରରେ ଦରବାରୀ କବିଙ୍କର ଅତିରଞ୍ଜନ ସୀମିତ ହୋଇଥିବା ଆଶା କରାଯାଏ । ଭୂଖଣ୍ଡ ଅଧିକାର

ଅପେକ୍ଷା ଶୁଭେଚ୍ଛା ଜ୍ଞାପନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥିବା ପରି ମନେହୁଏ । ମୁଖ୍ୟତଃ ଦିଲ୍ଲୀ ଏବଂ ଉତ୍ତର ଗାଙ୍ଗେୟ ସମତଳ ଅଞ୍ଚଳର ଚାରିଜଣ ଉତ୍ତରାଞ୍ଚଳ ରାଜାଙ୍କ ଉପରେ ସେ ବିଜୟ ହାସଲ କରିଥିଲେ । ଦକ୍ଷିଣ ଏବଂ ପୂର୍ବର ରାଜାମାନଙ୍କଠାରୁ ବଳପୂର୍ବକ ଅଧୀନତା ହାସଲ କରାଯାଇଥିଲା । ସେମାନଙ୍କୁ ବନ୍ଦୀ କରି ପରେ ଛାଡ଼ି ଦିଆଯାଇଥିଲା । ସୂଚିତ ସ୍ଥାନଗୁଡ଼ିକୁ ବିଚାରକୁ ନେଲେ ଜଣାଯାଏ ସମୁଦ୍ରଗୁପ୍ତ ପୂର୍ବ ଉପକୂଳରେ କାଞ୍ଚିପୁରମ୍ (ଆଧୁନିକ ଚେନ୍ନାଇ ନିକଟବର୍ତ୍ତୀ) ପର୍ଯ୍ୟନ୍ତ ଅଭିଯାନ କରିଥିଲେ । ଉତ୍ତର ଭାରତରେ ଆର୍ଯ୍ୟାବର୍ତ୍ତର ନଅଜଣ ରାଜାଙ୍କୁ ଅତ୍ୟନ୍ତ ହିଂସ୍ର ଭାବେ କ୍ଷମତାଚ୍ୟୁତ କରାଗଲା । ମଧ୍ୟଭାରତର ବନବାସୀମାନଙ୍କର ରାଜା ତଥା ଦାକ୍ଷିଣାତ୍ୟର ରାଜାମାନଙ୍କୁ ବଳପୂର୍ବକ ଦାସରେ ପରିଣତ କରାଗଲା । ଷଷ୍ଠ ଶତାବ୍ଦୀର ଏକ ଶିଳାଲେଖରେ ଜଣେ ସ୍ଥାନୀୟ ଶାସକଙ୍କ ଦ୍ୱାରା ମଧ୍ୟ ଭାରତର ଅଠରଟି ବନରାଜ୍ୟ ଶାସିତ ହେଉଥିବା କଥା ବର୍ଣ୍ଣିତ ହୋଇଛି । ଏସବୁ ଅଞ୍ଚଳ ବହୁପୂର୍ବରୁ ଦଖଲ ହୋଇଥିବା କଥା ଏଥିରୁ ପ୍ରମାଣିତ ହୁଏ । ପୂର୍ବ ଭାରତର ତଥା ନେପାଳ ଓ ପଞ୍ଜାବର ଛୋଟ ଛୋଟ ରାଜ୍ୟର ରାଜାମାନେ ଚୁକ୍ତିଦେୟ ବା ଭେଟି ଦେଉଥିବା କଥା କୁହାଯାଇଛି । ପୁରୁଣା ମାଳବ ଏବଂ ଯୁଧେୟାମାନଙ୍କ ସମେତ ରାଜସ୍ଥାନର ନଅଟି ପୁରୁଣା ଗଣସଂଘ ଗୁପ୍ତ ଆଧିପତ୍ୟ ଗ୍ରହଣ କରିବାକୁ ବାଧ୍ୟ ହେଲେ । ଏଥିସହିତ ଦୈବପୁତ୍ର ଶାହନୁଶାହୀ (ସ୍ୱର୍ଗର ପୁତ୍ର, ରାଜାମାନଙ୍କର ରାଜା, ଏକ କୁଶାଣ ପଦବୀ), ଶକ ତଥା ସିଂହଳ (ଶ୍ରୀଲଙ୍କା) ରାଜାଙ୍କ ପରି ଦୂରବର୍ତ୍ତୀ ରାଜାମାନେ ମଧ୍ୟ ଚୁକ୍ତିଦେୟ ପ୍ରଦାନ କଲେ । ସବୁ ଦ୍ୱୀପମାନଙ୍କର ଅଧିବାସୀମାନେ ମଧ୍ୟ ଦେୟ ପ୍ରଦାନ କରୁଥିଲେ ।

ସେତେବେଳେ ପ୍ରଶସ୍ତି ଦରବାରୀ ଭାଟମାନଙ୍କ ଦ୍ୱାରା କରାଯାଉଥିବା ରାଜାଙ୍କର ଗୁଣଗାନର ଏକ ପରମ୍ପରା ଥିଲା ଯାହା ପରବର୍ତ୍ତୀ ସମୟ ଲାଗି ଏକ ନମୁନାରେ ପରିଣତ ହେଲା । ଉଦ୍ଦେଶ୍ୟ ପ୍ରଣୋଦିତ ଏହି ପରିଚିତ ଧାରାର ପ୍ରଶସ୍ତି ସ୍ୱୀକାର କରିବାକୁ ସଂକୋଚ ରହିବା ସ୍ୱାଭାବିକ । ଅବଶ୍ୟ ଏଥିରେ ଐତିହାସିକ ତଥ୍ୟର ମୂଳ ରୂପ ଥାଏ ଏବଂ ସମୁଦ୍ରଗୁପ୍ତଙ୍କ ଅଭିଯାନର ତାଲିକା ମଧ୍ୟ ପ୍ରଭାବଶାଳୀ ଢଙ୍ଗରେ ରହିଥାଏ । ଦକ୍ଷିଣ ତଥା ଦାକ୍ଷିଣାତ୍ୟର ରାଜାମାନେ ସମୁଦ୍ରଗୁପ୍ତଙ୍କ ସାର୍ବଭୌମତ୍ୱର ଅଧୀନ ନ ହୋଇଥିଲେ ମଧ୍ୟ ଉତ୍ତରର ଅନେକ ଶାସକଙ୍କ ପରି ଚୁକ୍ତିଦେୟ ପ୍ରଦାନ କରୁଥିଲେ । ତାଙ୍କର ମୂଳ ଉଦ୍ଦେଶ୍ୟ ମୁତାବକ ଅଭିଯାନ ମାଧ୍ୟମରେ ଉତ୍ତର ଭାରତର କେତେକ ଅଞ୍ଚଳ ସେ ନିଜ ସାମ୍ରାଜ୍ୟଭୁକ୍ତ କଲେ; ଯେଉଁ ପରାଜିତ ଶାସକର ଭୂଖଣ୍ଡକୁ ସେ ନିଜ ସାମ୍ରାଜ୍ୟରେ ମିଶାଇଲେ ନାହିଁ, ତହିଁରୁ କର ଆଦାୟ କଲେ । ସମ୍ଭବତଃ ତାଙ୍କର ଅନୁମାନ ତୁଳନାରେ ସେ ଅଧିକ ଶକ୍ତିଶାଳୀ ପ୍ରତିପକ୍ଷଙ୍କୁ ସାମ୍ନା କଲେ । ପଶ୍ଚିମ ଭାରତରେ ଶକମାନେ ଅପରାଜେୟ ରହିବା ଏବଂ ଉତ୍ତର-ପଶ୍ଚିମାଞ୍ଚଳରେ

ତାଙ୍କର ନିୟନ୍ତ୍ରଣ ଦୃଢ଼ ନ ରହିବାର କାରଣରୁ ତାଙ୍କର ପ୍ରତ୍ୟକ୍ଷ ରାଜନୈତିକ ନିୟନ୍ତ୍ରଣ ଗାଙ୍ଗେୟ ସମତଳରେ ସୀମିତ ରହିଲା ।

ଅଶୋକଙ୍କ ଶିଳାଲେଖଗୁଡ଼ିକଠାରୁ ଏହି ଶିଳାଲେଖ ଲକ୍ଷଣୀୟ ଭାବେ ଭିନ୍ନ ଥିଲା । ମୌର୍ଯ୍ୟମାନେ ଢେର୍ ବେଶି ଭୂଖଣ୍ଡ ଉପରେ ନିୟନ୍ତ୍ରଣ ରଖିଥିଲେ ମଧ୍ୟ କ୍ଷମତା ସମ୍ପର୍କରେ ତାଙ୍କର ଦାବି ଥିଲା ବିନୟଭିତ୍ତିକ । ଅନ୍ୟପକ୍ଷରେ, ଅଶୋକ ସାମରିକ ଅଭିଯାନ ପ୍ରତି ବୀତସ୍ପୃହ ହେବା ଆରମ୍ଭ କରିଥିବାବେଳେ ସମୁଦ୍ରଗୁପ୍ତ ଏଥିରେ ମଜ୍ଜି ରହିଥିଲେ । ଛୋଟ ଅଞ୍ଚଳରୁ ଆରମ୍ଭକରି ରାଜ୍ୟ ପର୍ଯ୍ୟନ୍ତ ବ୍ୟାପ୍ତ ଏହି ଅଭିଯାନଗୁଡ଼ିକର ସଂଖ୍ୟା ଓ ବିବିଧତା ଆଗ୍ରହ ଉଦ୍ଦୀପକ । ସମୁଦ୍ରଗୁପ୍ତ ଅବବାହିକା ଏବଂ ଉତ୍ତର ରାଜସ୍ଥାନରେ ମୁଖ୍ୟମାନଙ୍କର କ୍ଷମତା ପ୍ରତିହତ କଲେ । ଏହାଫଳରେ ଯେତେବେଳେ ହୂନ୍‌ମାନେ ଉତ୍ତର-ପଶ୍ଚିମ ଭାରତ ଆକ୍ରମଣ କଲେ, ସେତେବେଳେ ପରବର୍ତ୍ତୀ ସମୟର ଗୁପ୍ତମାନେ ସମସ୍ୟାର ସମ୍ମୁଖୀନ ହେଲେ । ଗାଙ୍ଗେୟ ସମତଳର ସୀମାନ୍ତ ଅବବାହିକା ଏକ ଯୁଦ୍ଧ ନିରୋଧକ ସ୍ଥାନଭାବେ ସହାୟକ ହୋଇପାରିଲା ନାହିଁ । ଏତଦ୍‌ଭିନ୍ନ ସର୍ଦ୍ଦାରମାନଙ୍କର ଅପସାରଣ ଗଣସଂଘ ରାଜନୀତିର ବିଲୋପ ଘଟାଇଲା, ଯାହା ସହସ୍ରାବ୍ଦୀ ଧରି ରାଜତନ୍ତ୍ରର ଏକ ବିକଳ୍ପ ଥିଲା । ମଧ୍ୟ-ଗାଙ୍ଗେୟ ସମତଳ ଅନେକ ପୂର୍ବରୁ ନନ୍ଦ ଏବଂ ମୌର୍ଯ୍ୟ ରାଜତନ୍ତ୍ରର ଅଧୀନ ହୋଇସାରିଥିଲା । ଯାହା ମନେହୁଏ, ଗୁପ୍ତମାନେ ସୂଚନା ପ୍ରଦାନ ନ କରିବାରୁ ଗଣସଂଘ ହିସାବରେ ଲିଚ୍ଛବିର ପୂର୍ବାବସ୍ଥା ଏକପ୍ରକାର ବିସ୍ମୃତ ହୋଇଗଲା । ଜାତି ଏବଂ ବଂଶର ପ୍ରତିଯୋଗିତାରେ ତଥା ରାଷ୍ଟ୍ର ବ୍ୟବସ୍ଥା ନିର୍ମାଣରେ ସେମାନଙ୍କର ଭୂମିକାରେ ଲିଚ୍ଛବିମାନେ ଗୁପ୍ତମାନଙ୍କଠାରୁ ଆଗୁଆ ଥିଲେ । ଆଗ୍ରହର ବିଷୟ ହେଲା, ବାରମ୍ବାର ଆକ୍ରମଣର ଶରବ୍ୟ ହୋଇଥିଲେ ମଧ୍ୟ ଅଣ-ରାଜତାନ୍ତ୍ରିକ ରାଷ୍ଟ୍ରମାନ ବହୁ ଶତାବ୍ଦୀ ଧରି ତିଷ୍ଠି ରହିଥିଲେ ।

ଅଧିକ ଦାବିର ବୈଧତାକୁ ନେଇ ପ୍ରଶ୍ନବାଚୀ ସୃଷ୍ଟିହୁଏ । ପତନ ଉନ୍ମୁଖୀ କୁଶାଣମାନଙ୍କ ସହ ସମୁଦ୍ରଗୁପ୍ତଙ୍କ ସମ୍ପର୍କ ଅନିଶ୍ଚିତ ରହେ । ଶ୍ରୀଲଙ୍କା ସମ୍ପର୍କରେ ପରବର୍ତ୍ତୀ ସମୟର ଏକ ଚୀନା ଉତ୍ସରୁ ଜଣାପଡ଼େ ଯେ ସିଂହଳର ରାଜା ଉପହାର ପଠାଇବା ସହିତ ଗୟାଠାରେ ଏକ ବୌଦ୍ଧ ମଠ ନିର୍ମାଣ କରିବା ଲାଗି ଗୁପ୍ତ ରାଜାଙ୍କ ଅନୁମତି ଲୋଡ଼ିଥିଲେ । ଏପ୍ରକାରର ଏକ ଅନୁରୋଧକୁ ଦେୟ ପ୍ରଦାନ ଆକାରରେ ଦେଖାଯାଇ ପାରିବ ନାହିଁ । ସମ୍ଭବତଃ ଅନ୍ୟାନ୍ୟ ଦୂରବର୍ତ୍ତୀ ରାଜାମାନଙ୍କ ସହିତ ଏ ଧରଣର ସମ୍ପର୍କ ହିଁ ଥିଲା । 'ଦ୍ୱୀପ ବାସିନ୍ଦାଗଣ' କାହାକୁ ବୁଝାଏ ଏ ସମ୍ପର୍କରେ କୌଣସି ସ୍ପଷ୍ଟ ତଥ୍ୟ ମିଳେନା । ସମ୍ଭବତଃ ଏହା ଭାରତୀୟ ଆଧିପତ୍ୟ ଅଧୀନ ଦକ୍ଷିଣ-ପୂର୍ବ ଏସିଆକୁ ସୂଚାଉଥିବ, ଯେଉଁମାନଙ୍କ ସହ ଏହି ସମୟରେ ଯୋଗାଯୋଗ ଅଧିକ ହୋଇଥିଲା ।

ନିଜର ଅଭିଯାନଗୁଡ଼ିକ ସମ୍ପର୍କରେ ଘୋଷଣା କଲାବେଳେ ଅଶ୍ୱମେଧ ଆୟୋଜନ କରିବା ଲାଗି ସମୁଦ୍ରଗୁପ୍ତଙ୍କ ନିକଟରେ ଅନ୍ୟାନ୍ୟ ରାଜାମାନଙ୍କ ଅପେକ୍ଷା ଅଧିକ କାରଣ ଥିଲା । କୁହାଯାଏ ଏହାକୁ କିଛିଦିନ ଲାଗି ବିଳମ୍ବିତ କରାଯାଇଥିଲା । ହୁଏତ ଏହା ତାଙ୍କର ଅଣବ୍ରାହ୍ମଣ ଧର୍ମଗୁଡ଼ିକ ପ୍ରତି ସମର୍ଥନର ଏକ ସୂଚନା ହୋଇପାରେ । ପରବର୍ତ୍ତୀ ଶିଳାଲେଖଗୁଡ଼ିକରେ ତାଙ୍କର ବ୍ରାହ୍ମଣ ଓ ଗୋଧନର ସୁରକ୍ଷା ସମ୍ପର୍କୀୟ ଘୋଷଣା ଏକ ସୂତ୍ରରେ ପରିଣତ ହୋଇଗଲା । ତେବେ ସେ କେବଳ ଅଭିଯାନ ଓ ଲଢ଼େଇ ଲାଗି ବ୍ୟାକୁଳ ନ ଥିଲେ । କବିତା ଓ ସଙ୍ଗୀତର ପ୍ରେମୀ ହିସାବରେ ତାଙ୍କ ବ୍ୟକ୍ତିତ୍ୱର ଏକ ଅଧିକ ସଂସ୍କାର ସମ୍ପନ୍ନ ଦିଗ ଉନ୍ମୋଚିତ ହୁଏ । କେତେକ ମୁଦ୍ରାରେ ସେ ବୀଣା ବଜାଉଥିବାର ଚିତ୍ର ଏ କଥାକୁ ସମର୍ଥନ ଜଣାଏ, ଯଦିଓ ଏ ଧରଣର ପାରଦର୍ଶିତା ରାଜକୀୟତାର ଏକ ଅଙ୍ଗ ହିସାବରେ ପରିଚିତ ।

ସବୁ ଗୁପ୍ତରାଜାମାନଙ୍କ ମଧ୍ୟରୁ ସମୁଦ୍ରଗୁପ୍ତଙ୍କ ପୁଅ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କଠାରେ ଅଭୂତପୂର୍ବ ସାମରିକ ଦକ୍ଷତା ଏବଂ ନାୟକସୁଲଭ ଗୁଣାବଳୀ ପରିଲକ୍ଷିତ ହୋଇଥିଲା । 375ରୁ 415 ଖ୍ରୀଷ୍ଟାବ୍ଦଯାକ ଦୀର୍ଘ ଚାଳିଶ ବର୍ଷ ବ୍ୟାପି ତାଙ୍କର ଶାସନର ଆରମ୍ଭ ଥିଲା ରହସ୍ୟମୟ । ଦୁଇ ଶତାବ୍ଦୀ ପରେ ରଚିତ ନାଟକ 'ଦେବୀ-ଚନ୍ଦ୍ର-ଗୁପ୍ତ'ରୁ ସମୁଦ୍ରଗୁପ୍ତଙ୍କ ମୃତ୍ୟୁ ଏବଂ ତାଙ୍କର ପୁତ୍ର ରାମଗୁପ୍ତଙ୍କ କ୍ଷମତାସୀନ ହେବା ସମ୍ପର୍କରେ ସୂଚନା ମିଳେ । କାହାଣୀ ଅନୁସାରେ ରାମଗୁପ୍ତ ଯୁଦ୍ଧରେ ଶକମାନଙ୍କ ଦ୍ୱାରା ପରାଜିତ ହେଲେ ଏବଂ ତାଙ୍କର ପତ୍ନୀ ଧ୍ରୁବଦେବୀଙ୍କୁ ସମର୍ପଣ କରିବାକୁ ସମ୍ମତି ଦେଲେ । ତାଙ୍କର ସାନଭାଇ ଚନ୍ଦ୍ର ଏଥିରେ କ୍ରୋଧାନ୍ୱିତ ହେଲେ; ରାଣୀଙ୍କ ଛଦ୍ମବେଶ ଧାରଣ କରି, ଶକ ରାଜାଙ୍କ ଅବସ୍ଥିତି ବିଷୟରେ ଜାଣି ତାଙ୍କୁ ହତ୍ୟା କଲେ । ଏହି କାର୍ଯ୍ୟ ଫଳରେ ସେ ଜନତାର ସ୍ନେହଭାଜନ ହେଲେ । ମାତ୍ର ତାଙ୍କ ଭାଇ ରାମ ଏବଂ ତାଙ୍କ ମଧ୍ୟରେ ଶତ୍ରୁତା ସୃଷ୍ଟି ହେଲା । ଚନ୍ଦ୍ର ଶେଷରେ ରାମଙ୍କୁ ହତ୍ୟା କରି ଧ୍ରୁବଦେବୀଙ୍କୁ ବିବାହ କଲେ । ରାମଗୁପ୍ତଙ୍କ ସମୟର ମୁଦ୍ରା ଆବିଷ୍କାର ଏବଂ ଧ୍ରୁବଦେବୀଙ୍କୁ ଚନ୍ଦ୍ରଗୁପ୍ତଙ୍କ ପତ୍ନୀ ହିସାବରେ ସୂଚାଉଥିବା ଶିଳାଲେଖ ଏ କାହାଣୀର ସତ୍ୟାସତ୍ୟ ପ୍ରତିପାଦନ କରେ । ପୁନଶ୍ଚ ଚନ୍ଦ୍ରଗୁପ୍ତ ତାଙ୍କର ମୁଖ୍ୟ ଯୁଦ୍ଧ ଶକମାନଙ୍କ ବିରୁଦ୍ଧରେ ଲଢ଼ିଥିଲେ । ତେବେ କାହାଣୀର ନାୟକୀୟ ବିଭାବ ହୁଏତ ଏକ ଅଗ୍ରହଣୀୟ ଘଟଣାକୁ ଲୁଚାଇବାର ପ୍ରୟାସ ହୋଇପାରେ, ଯାହା ପ୍ରାୟତଃ ଦରବାରୀ ସାହିତ୍ୟରେ ଘଟିଥାଏ । ଏହି ନାଟକ ଐତିହାସିକ ଜୀବନୀମାନଙ୍କରେ ବହୁଧା ବର୍ଣ୍ଣିତ ଏକ କାହାଣୀ ଉପରେ ଆଧାରିତ । ଏଥିରେ ସାନଭାଇର ସିଂହାସନ ଆରୋହଣକୁ ଯଥାର୍ଥତା ପ୍ରଦାନ କରାଯାଇଥାଏ ।

ପଶ୍ଚିମ ଭାରତ ଦଖଲ କରିବାର ଅଭିଯାନକୁ ସ୍ୱତନ୍ତ୍ର ରୌପ୍ୟମୁଦ୍ରା ପ୍ରଚଳନ ମାଧ୍ୟମରେ ସ୍ମରଣ କରାଯାଇଛି । ଏହାଫଳରେ ଭାରତର ପଶ୍ଚିମ ସୀମାନ୍ତ ଯେ ସୁରକ୍ଷିତ ରହିଲା ତାହା

ନୁହେଁ । ଗୁପ୍ତମାନଙ୍କ ହାତରେ ବନ୍ଦରମାନ ଥିବାରୁ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ସହ ବାଣିଜ୍ୟ ମଧ୍ୟ ସହଜ ହେଲା । ପୂର୍ବରୁ ସାତବାହନମାନଙ୍କ ଦ୍ୱାରା ଶାସିତ ପଶ୍ଚିମ ଦାକ୍ଷିଣାତ୍ୟ ବକଟକ ବଂଶଦ୍ୱାରା ଶାସିତ ହେଉଥିଲା । ବକଟକମାନେ ଦାକ୍ଷିଣାତ୍ୟରେ ଦୁର୍ଦ୍ଦମନୀୟ ଶକ୍ତି ରୂପେ ପ୍ରତିଭାତ ହେଉଥିଲେ । ଗୁପ୍ତମାନଙ୍କ ସହ ସମ୍ପର୍କ ରଖିଥିବା ଗୋଟିଏ ଶାଖା ରାମଟେକ୍ ସହ ଜଡ଼ିତ ଥିଲେ; ସେଇଠି ସେମାନେ ଅନେକ ମନ୍ଦିର ତୋଳାଇଥିଲେ ଏବଂ ଅନ୍ୟ ଶାଖାଟି ବସ୍ତଗୁଲ୍ମ ସହ ସମ୍ପର୍କ ରକ୍ଷା କରିଥିଲା । ତାଙ୍କ ଦ୍ୱାରା ମଞ୍ଜୁର କରାଯାଇଥିବା ଜମି ବିଷୟକ ତଥ୍ୟ ଧାରଣ କରିଥିବା ଶିଳାଲେଖରୁ କେତେକ ଦୂରବର୍ତ୍ତୀ ଅଞ୍ଚଳ ସମ୍ପର୍କରେ ସୂଚନା ମିଳେ ଯେଉଁଠି ହୁଏତ ବସତି ସ୍ଥାପନ ହୋଇଥିଲା । ଏଥିରୁ କେତେକ ଜମିଗ୍ରହୀତାଙ୍କ ସମ୍ପର୍କରେ ମଧ୍ୟ ସୂଚନା ମିଳେ । ଏହି ଜମିଗ୍ରହୀତାମାନେ ଥିଲେ ଆଦିବାସୀ । ଯଦିଓ ବକଟକ ଏକ ସ୍ୱାଧୀନ ଶକ୍ତି ହିସାବରେ ରହିଲା, ତଥାପି ଚନ୍ଦ୍ରଗୁପ୍ତଙ୍କର ଝିଅ ଏବଂ ବକଟକ ରାଜା ଦ୍ୱିତୀୟ ରୁଦ୍ରସେନଙ୍କ ମଧ୍ୟରେ ବିବାହ ଦାକ୍ଷିଣାତ୍ୟ ସହ ଗୁପ୍ତମାନଙ୍କ ସମ୍ବନ୍ଧକୁ ସୁଦୃଢ଼ କଲା । ସିଂହାସନ ଆରୋହରଣ କରିବାର ପାଞ୍ଚ ବର୍ଷ ପରେ ଦ୍ୱିତୀୟ ରୁଦ୍ରସେନ ମୃତ୍ୟୁବରଣ କରିବାରୁ ତାଙ୍କର ବିଧବା ତଥା ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ଝିଅ ପ୍ରଭାବତୀ ପ୍ରାୟ 390 ରୁ 410 ଖ୍ରୀଷ୍ଟାବ୍ଦ ଯାଏ ରାଜପ୍ରତିନିଧି ହିସାବରେ କାର୍ଯ୍ୟ କଲେ, କାରଣ ତାଙ୍କର ପୁଅମାନେ ସେତେବେଳକୁ ନାବାଳକ ଥିଲେ । ଏହାଫଳରେ ବକଟକ ରାଜ୍ୟ ଗୁପ୍ତମାନଙ୍କର ନିକଟତର ହେଲା । ଦ୍ୱିତୀୟ ଚନ୍ଦ୍ରଗୁପ୍ତ କିମ୍ବଦନ୍ତୀ ପ୍ରସିଦ୍ଧ ବିକ୍ରମାଦିତ୍ୟ (ପରାକ୍ରମର ସୂର୍ଯ୍ୟ) ନାମ ଧାରଣ କରି ଦୃଢ଼ ନ୍ୟାୟବତ୍ତାର ସହ କାର୍ଯ୍ୟ କଲେ । ଏହି ଗୁପ୍ତ ରାଜା ସାହିତ୍ୟ ଓ କଳାର ପୃଷ୍ଠପୋଷକତା ପାଇଁ ଖୁବ୍ ସ୍ମରଣୀୟ ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ପୁତ୍ର ତଥା ଉତ୍ତରାଧିକାରୀ କୁମାର ଗୁପ୍ତ (ପ୍ରାୟ 415–54 ଖ୍ରୀଷ୍ଟାବ୍ଦ)ଙ୍କ ସମୟରେ ଦକ୍ଷିଣ-ପଶ୍ଚିମରୁ ଆକ୍ରମଣର ସୂଚନା ମିଳିଲା । ମାତ୍ର ପଞ୍ଚମ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଏହି ବିପଦ ଦୂରବର୍ତ୍ତୀ ହୋଇ ରହିଲା । ମଧ୍ୟ-ଏସିଆର ଶ୍ୱେତ ହୂନ୍‌ମାନଙ୍କର ଏକ ଶାଖା ହେପ୍‌ଥାଲାଇଟ୍‌ସ (Hephthalites), ଯେଉଁମାନେ ଭାରତୀୟମାନଙ୍କ ମଧ୍ୟରେ ହୂନ୍ ଭାବରେ ପରିଚିତ, ସେମାନେ ପୂର୍ବବର୍ତ୍ତୀ ଶତାବ୍ଦୀରେ ବ୍ୟାକ୍‌ଟ୍ରିଆ ଦଖଲ କରିଥିଲେ । ଏବେ ସେହିମାନେ ହିନ୍ଦୁକୁଶ ପର୍ବତମାଳା ଅତିକ୍ରମ କରିବାର ଧମକ ଦେଉଥିଲେ । ଭାରତୀୟ ସୀମା ପ୍ରତି ହୂନ୍‌ମାନଙ୍କର ଆକ୍ରମଣ ଆଶଙ୍କା ପରବର୍ତ୍ତୀ ଶହେ ବର୍ଷ ପର୍ଯ୍ୟନ୍ତ ବଜାୟ ରହିଲା । ଗୁପ୍ତ ଏବଂ ସେମାନଙ୍କର ଉତ୍ତରାଧିକାରୀମାନେ ସେମାନଙ୍କୁ ଅଟକାଇ ରଖିବାକୁ କଠିନ ପରିଶ୍ରମ କଲେ । ସେମାନେ କିଛି ମାତ୍ରାରେ ଏଥିରେ ସଫଳ ମଧ୍ୟ ହେଲେ । ଯେତେବେଳେ ଶେଷରେ ହୂନ୍‌ମାନେ ସୀମାନ୍ତ ଅତିକ୍ରମ କରିବାରେ ସଫଳ ହେଲେ, ସେତେବେଳକୁ ଏମାନେ ଯଥେଷ୍ଟ ଦୁର୍ବଳ ହୋଇଆସିଥିଲେ । ତେଣୁ

ଭାରତକୁ ରୋମ ସାମ୍ରାଜ୍ୟର ଦଶା ଭୋଗ କରିବାରୁ ରକ୍ଷା କରିପାରିଲେ ନାହିଁ । ଏହା ବଡ଼ ଗ୍ରହଣଯୋଗ୍ୟ ଭାବେ କୁହାଯାଏ ଯେ ମଧ୍ୟ-ଏସିଆର ଯାଯାବରମାନଙ୍କୁ ଭାରତୀୟ ଓ ଚୀନାମାନେ ଦୃଢ଼ଭାବେ ପ୍ରତିରୋଧ କରିଥିଲେ । ଏହା ଏକ ଆଂଶିକ କାରଣ ଯେଉଁଥିପାଇଁ ସେମାନେ ୟୁରୋପୀୟମାନଙ୍କ ପ୍ରତି ଭୟଙ୍କର ଭାବେ ଆକ୍ରମଣଶୀଳ ହୋଇଉଠିଲେ । ହୁନ୍‌ମାନଙ୍କର ଆଗମନକୁ ଉତ୍ତର ଭାରତର ରାଜନୀତିରେ କେନ୍ଦ୍ର ଏସିଆର ହସ୍ତକ୍ଷେପର ଅନ୍ୟତମ ଉଦାହରଣ ରୂପେ ନେଇ ହେବ । ଶକ ଏବଂ କୁଶାଣମାନେ ଏହି ଧାରାର ଅନୁସରଣ କଲେ । ପରବର୍ତ୍ତୀ ସମୟରେ ତୁର୍କମାନେ ମଧ୍ୟ ଏହାର ପୁନରାବୃତ୍ତି କଲେ । ପାର୍ଥକ୍ୟ ଏତିକି ଯେ ଶକ ଏବଂ କୁଶାଣମାନଙ୍କ କ୍ଷେତ୍ରରେ ଏହା ଥିଲା ମଧ୍ୟ-ଏସିଆରୁ ଉତ୍ତର ଭାରତ ପର୍ଯ୍ୟନ୍ତ ସେମାନଙ୍କ ଶାସନର ସଂପ୍ରସାରଣ, ମାତ୍ର ହୁନ୍ ଏବଂ ତୁର୍କମାନେ ପ୍ରାରମ୍ଭିକ ଅବସ୍ଥାରେ କେବଳ ଲୁଣ୍ଠନର ଆଗ୍ରହ ନେଇ ଭାରତ ଆସିଥିଲେ ।

କୁମାରଗୁପ୍ତଙ୍କ ଉତ୍ତରାଧିକାରୀମାନେ, କୁମାରଗୁପ୍ତଙ୍କ ଭଳି, ସାମ୍ରାଜ୍ୟକୁ ସୁରକ୍ଷା ପ୍ରଦାନ କରିପାରିଲେ ନାହିଁ । ପ୍ରତ୍ୟେକ ପର୍ଯ୍ୟାୟର ହୁନ୍ ଆକ୍ରମଣ ଗୁପ୍ତମାନଙ୍କୁ ଦୁର୍ବଳରୁ ଦୁର୍ବଳତର କରିଚାଲିଲା । ସ୍କନ୍ଦଗୁପ୍ତ ମଧ୍ୟ ମ୍ଲେଚ୍ଛ ବା ବର୍ବରମାନଙ୍କ ସହ ଲଢ଼େଇ କଲେ । ମାତ୍ର ତାଙ୍କୁ ଦରବାରର ଦ୍ୱନ୍ଦ୍ୱ ଏବଂ ଗୁପ୍ତ ସାମ୍ରାଜ୍ୟର ମହାନଗରଗୁଡ଼ିକ ସହ ଦୁର୍ବଳଭାବେ ସଂଯୋଜିତ ଦେଶୀୟ ରାଜ୍ୟଗୁଡ଼ିକର ବିଖଣ୍ଡନ ଇତ୍ୟାଦି ଘରୋଇ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଲା । ଉଚ୍ଚ ମୂଲ୍ୟ ସମ୍ବଳିତ ଗୁପ୍ତ ମୁଦ୍ରା ପ୍ରଚଳନ ପ୍ରସଙ୍ଗରେ ରାଜକୋଷରେ ବିତ୍ତୀୟ ସଙ୍କଟ ପଡ଼ିଥିବା କଥା ମଧ୍ୟ କୁହାଯାଏ । ଏହି ମୁଦ୍ରା ରୋମାନମାନଙ୍କ ହାତରୁ ଖସି ଭାରତୀୟମାନଙ୍କଠାରେ ପହଞ୍ଚିଥିବାରୁ ଏହାର ଅବମୂଲ୍ୟାୟନ ଘଟିଥିବା କଥା ମଧ୍ୟ କୁହାଯାଏ । ପ୍ରାୟ 460 ଖ୍ରୀଷ୍ଟାବ୍ଦ ବେଳକୁ ସେ ଗୁପ୍ତ ବାହିନୀକୁ ନେଇ ଆଗୁସାର ହେଲେ; 467 ଖ୍ରୀଷ୍ଟାବ୍ଦ ହେଉଛି ସ୍କନ୍ଦଗୁପ୍ତଙ୍କ ସମ୍ପର୍କରେ ବର୍ଣ୍ଣିତ ଶେଷ ସମୟ । ତାଙ୍କର ଦେହାନ୍ତ ପରେ ଗୁପ୍ତମାନଙ୍କ କେନ୍ଦ୍ରୀୟ ଆଧିପତ୍ୟ ଦ୍ରୁତଗତିରେ ଲୋପ ପାଇବାକୁ ଲାଗିଲା । ତାଙ୍କର ଉତ୍ତରାଧିକାରୀ ପରବର୍ତ୍ତୀ ରାଜାମାନଙ୍କ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ମିଳେ ନାହିଁ । ଏହି ରାଜାମାନଙ୍କ ନାମ ସମ୍ବଳିତ ପ୍ରଶାସନିକ କାର୍ଯ୍ୟାଳୟର ମୋହର ଆବିଷ୍କୃତ ହୋଇଛି, ମାତ୍ର ଉତ୍ତରାଧିକାର କ୍ରମରେ ଲକ୍ଷଣୀୟ ଭିନ୍ନତା ଏହି ରାଜବଂଶର ଶେଷ ଅବସ୍ଥା ସମ୍ପର୍କରେ ଦ୍ୱନ୍ଦ୍ୱ ସୃଷ୍ଟି କରେ । ପଞ୍ଚମ ଶତାବ୍ଦୀରେ ହୁନ୍‌ମାନେ ସଫଳତାର ସହ ଉତ୍ତର ଭାରତରେ ପ୍ରବେଶ କରିବା ଶେଷରେ ଏକ ଚରମ ଆଘାତ ସଦୃଶ କାର୍ଯ୍ୟ କଲା । ପରବର୍ତ୍ତୀ ପଚାଶ ବର୍ଷ ଭିତରେ ଗୁପ୍ତ ଶକ୍ତି କ୍ଷୟପ୍ରାପ୍ତ ହେଲା ଏବଂ ତା'ପରେ ଏହାର ଗୁରୁତ୍ୱ କେତେକ ଛୋଟ ଛୋଟ ରାଜ୍ୟ ଉପରେ ସୀମିତ ରହିଲା ।

ବୃହତ୍ତର ହୁନ୍ ସାମ୍ରାଜ୍ୟ ପାରସ୍ୟଠାରୁ ଖୋଟାନ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ଏବଂ ଏହାର ରାଜଧାନୀ ଥିଲା ଆଫଗାନିସ୍ତାନ୍‌ର ବାମିଆନ୍ । ଭାରତରେ ଗୁରୁତ୍ୱ ଅର୍ଜନ କରିଥିବା ପ୍ରଥମ ହୁନ୍ ରାଜା ହେଲେ ତୋରାମାନା । ତାଙ୍କର ସାମ୍ରାଜ୍ୟ ଉତ୍ତର ଭାରତ ଏବଂ କେନ୍ଦ୍ର ଭାରତର୍ ଏରାନ୍ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ତୋରାମାନାଙ୍କ ପୁତ୍ର ମିହିରକୁଳ (520 ଖ୍ରୀଷ୍ଟାବ୍ଦ) ହୁନ୍‌ମାନଙ୍କର ପାରମ୍ପରିକ ଭାବମୂର୍ତ୍ତିର ପ୍ରତୀକ ଥିଲେ । ସେ ସମୟରେ ଉତ୍ତର ଭାରତରେ ପରିଭ୍ରମଣ କରୁଥିବା ଜଣେ ଚୀନ୍ ପରିବ୍ରାଜକ ତାଙ୍କୁ ଅଶିଷ୍ଟ ବ୍ୟବହାର ସମ୍ପନ୍ନ ତଥା ପ୍ରଚଳିତ ବିଶ୍ୱାସର ବିରୋଧୀ ବ୍ୟକ୍ତି ହିସାବରେ ଚିତ୍ରଣ କରିଛନ୍ତି । ସେ ବୌଦ୍ଧଧର୍ମ ପ୍ରତି ବୈର ମନୋଭାବ ପୋଷଣ କରୁଥିଲେ ଏବଂ ତା'ର ପ୍ରତିଫଳନ ଘଟୁଥିଲା ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ହତ୍ୟା କରିବା ଏବଂ ବିହାର ଧ୍ୱଂସ କରିବା ଇତ୍ୟାଦି କାର୍ଯ୍ୟରେ । ଦ୍ୱାଦଶ ଶତାବ୍ଦୀର ଐତିହାସିକ କହ୍ଲଣଙ୍କ ମତାନୁସାରେ ଶୈବ ବ୍ରାହ୍ମଣମାନେ ମଧ୍ୟ ଏହିଭଳି ବୌଦ୍ଧଧର୍ମ ପ୍ରତି ବୈର ମନୋଭାବ ଦେଖାଉଥିଲେ । ରାଜତରଙ୍ଗିଣୀରେ ବ୍ରାହ୍ମଣମାନଙ୍କର ଲୋଭର ସୂଚନା ଦେବାକୁ ଯାଇ ସେମାନେ ଆଗ୍ରହର ସହ ହୁନ୍ ଶାସକମାନଙ୍କଠାରୁ ଜମି ଅନୁଦାନ ଗ୍ରହଣ କରୁଥିବା କଥା ବର୍ଣ୍ଣନା କରିଛନ୍ତି । କେନ୍ଦ୍ର ଭାରତରେ ଉପଲବ୍ଧ ଶିଳାଲେଖ ଅନୁସାରେ ଗୁପ୍ତମାନେ ତଥାପି ହୁନ୍‌ମାନଙ୍କୁ ପ୍ରତିରୋଧ କରିବା ଲାଗି ବିଳମ୍ବିତ ପ୍ରଚେଷ୍ଟା କରୁଥାନ୍ତି । ଶେଷରେ ମିହିରକୁଳ ସମତଳ ଅଞ୍ଚଳରୁ କାଶ୍ମୀରକୁ ବିତାଡ଼ିତ ହେଲେ । ସେଠାରେ ସେ ପ୍ରାୟ 542 ଖ୍ରୀଷ୍ଟାବ୍ଦରେ ଶେଷନିଃଶ୍ୱାସ ତ୍ୟାଗ କଲେ । ଏହାପରେ ହୁନ୍‌ମାନଙ୍କ ରାଜନୈତିକ ପ୍ରଭାବ ଗୌଣ ହୋଇଗଲା । ମାତ୍ର ବିଶେଷଭାବେ ପ୍ରଭାବଶାଳୀ ନ ହେଲେ ମଧ୍ୟ ହୁନ୍‌ମାନଙ୍କ ଜନିତ ବିପଦ ଆଉ ଏକ ଶତାବ୍ଦୀ ପର୍ଯ୍ୟନ୍ତ ଜାରି ରହିଲା । ଗୁପ୍ତମାନଙ୍କର ଶକ୍ତି ଧୀରେ ଧୀରେ ଦୁର୍ବଳ ହେଉଥିଲା ଏବଂ ହୁନ୍‌ମାନେ ଅବକ୍ଷୟର ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲେ ।

ହୁନ୍‌ମାନଙ୍କର ପ୍ରଭାବ କେବଳ ଏତିକିରେ ସୀମିତ ନ ଥିଲା । ହୁନ୍ ସୈନ୍ୟବାହିନୀ ଗଠନ ପ୍ରକ୍ରିୟାରେ ଅନେକ ଲୋକ ମଧ୍ୟ-ଏସିଆରୁ ଆସି ଭାରତରେ ଅବସ୍ଥାପିତ ହେଲେ, କେହି କେହି ପାର୍ବତ୍ୟାଞ୍ଚଳରେ ଗ୍ରାମୀଣ ଜୀବନଯାପନ କଲେ ଏବଂ ଅନ୍ୟମାନେ ଭିନ୍ନ ଭିନ୍ନ ପ୍ରକାରର ବୃତ୍ତିରେ ନିୟୋଜିତ ହେଲେ । ବସ୍ତୁତଃ ଉତ୍ତର ଭାରତରେ ଏକ ସାମ୍ରାଜ୍ୟବାଦୀ ସଂରଚନା ଗଠନର ଯୋଜନା ଧୂଳିସାତ୍ ହେଲା, କାରଣ ଛୋଟ ଛୋଟ ରାଜ୍ୟଗୁଡ଼ିକ ନିଜର ସଂରକ୍ଷଣ ଲାଗି ହୁନ୍‌ମାନଙ୍କୁ ଦୂରେଇ ରଖିବା ସକାଶେ ଶକ୍ତି ଓ ସାମର୍ଥ୍ୟ ବ୍ୟୟ କଲେ । ସ୍ଥାନୀୟ କ୍ଷେତ୍ରରୁ ଅନେକ ପ୍ରତିରୋଧ ମୁଣ୍ଡ ଟେକୁଥିଲା । ବେଳେବେଳେ ଛୋଟ ଛୋଟ ରାଜ୍ୟମାନ ସମର୍ଥ ରକ୍ଷାକାରୀଙ୍କ ଛତ୍ରତଳେ ଏକତ୍ର ମିଳିତ ହୋଇ ଆତ୍ମରକ୍ଷା ପାଇଁ ପ୍ରଚେଷ୍ଟା କରୁଥିଲେ । ଏପରି କ୍ଷେତ୍ରରେ ସୁରକ୍ଷା ପ୍ରଦାନକାରୀଙ୍କର ସୁରକ୍ଷା ପ୍ରଦାନ ସାମର୍ଥ୍ୟ ପୂର୍ବବର୍ତ୍ତୀ

ଶାସକଙ୍କ ପ୍ରତି ତାଙ୍କର ବଶମ୍ୱଦତା ପରିବର୍ତ୍ତେ ସ୍ୱକୀୟ ସାମରିକ ପାରଦର୍ଶିତା ଉପରେ ନିର୍ଭର କରୁଥିଲା । ତେଣେ ହୂନ୍‌ମାନେ ଅନେକ ସ୍ଥାନରେ ଉତ୍ତର ଭାରତୀୟ ଜୀବନଧାରଣର ରୀତି ଭାଙ୍ଗିବାରେ ସମର୍ଥ ହେଲେ । ଷଷ୍ଠ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ତୁର୍କ, ସସାନ ଓ ପାରସ୍ୟବାସୀମାନେ ବ୍ୟାକ୍‌ଟ୍ରିଆରେ ସେମାନଙ୍କୁ ଆକ୍ରମଣ ନ କରିବାଯାଏ, ହୂନ୍‌ମାନଙ୍କ ଆକ୍ରମଣର ଧାରା ଅବ୍ୟାହତ ରହିଥିଲା । ତୁର୍କମାନେ ପାରସ୍ୟ ଆକ୍ରମଣ କଲେ କିନ୍ତୁ ବ୍ୟାକ୍‌ଟ୍ରିଆକୁ ନିଜ ଦଖଲରେ ରଖିଲେ । ଉତ୍ତର ଭାରତ ବିଳୟରେ ତୁର୍କମାନଙ୍କୁ ଆଉଟିକେ ନିକଟରୁ ଅଭିଜ୍ଞତାରେ ଆଣିଲା ।

## ହର୍ଷ

ଗୁପ୍ତମାନଙ୍କର ପତନଠାରୁ ଆରମ୍ଭ କରି ପ୍ରାକ୍ ସପ୍ତମ ଶତାବ୍ଦୀରେ ହର୍ଷଙ୍କର ଅଭ୍ୟୁଦଥାନ ପର୍ଯ୍ୟନ୍ତ ଉତ୍ତର ଭାରତରେ ଚାରୋଟି ରାଜ୍ୟ ପ୍ରଭାବଶାଳୀ ଭାବେ କ୍ଷମତା ଅଧିକାର କରିଥିଲେ । ସେଗୁଡ଼ିକ ହେଲେ ମଗଧର ଗୁପ୍ତ, କନୌଜର ମୁଖାରି, ଥାନେସରର ପୁଷ୍ୟଭୂତି ଏବଂ ବଲ୍ଲଭୀର ମୈତ୍ରକ । ମଗଧର ଗୁପ୍ତମାନେ ମୂଳ ଗୁପ୍ତ ସାମ୍ରାଜ୍ୟର ଅଂଶ ନ ଥିଲେ । ସେମାନେ ଥିଲେ ସମାନ ନାମଧାରୀ ଏକ ଗୌଣ ବଂଶ । ପ୍ରଥମେ ମୁଖାରିମାନେ ପଶ୍ଚିମ ଗାଙ୍ଗେୟ ସମତଳ ଅଞ୍ଚଳର କନୌଜ ପାଖାପାଖି ଭୂଖଣ୍ଡ ଅଧିକାର କରିଥିଲେ । ଏ ପ୍ରକ୍ରିୟାରେ ସେମାନେ ଧୀରେ ଧୀରେ ମଗଧର ଗୁପ୍ତମାନଙ୍କୁ ସେମାନଙ୍କ ରାଜ୍ୟରୁ ବିତାଡ଼ିତ କରିଥିଲେ । ମୂଳତଃ ସେମାନେ କରଦ ଶାସକ ଥିଲେ ଏବଂ ପରେ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କଲେ । ନିଜର ଉପାଧି ମହାରାଜରୁ ମହାରାଜାଧିରାଜକୁ ପରିବର୍ତ୍ତନ କରିବା ନିଃସନ୍ଦେହରେ ଗୁପ୍ତମାନଙ୍କର ଅନୁକରଣକୁ ସୂଚାଏ । ପୁଷ୍ୟଭୂତିମାନେ ଉତ୍ତର ଦିଲ୍ଲୀର ଥାନେ ଅଞ୍ଚଳରେ ଶାସନ କରୁଥିଲେ । ଶେଷ ମୁଖାରି ରାଜାଙ୍କ ମୃତ୍ୟୁ ପରେ ମୁଖାରି ବଂଶ ସହ ଏକ ବୈବାହିକ ସମ୍ବନ୍ଧ ଫଳରେ ଦୁଇଟି ରାଜ୍ୟର ଏକତ୍ରୀକରଣ ଘଟିଲା । ଏହି ରାଜ୍ୟମାନ ବସ୍ତୁତଃ ପୁଷ୍ୟଭୂତି ବଂଶର ହୋଇଥିଲେ ମଧ୍ୟ ହର୍ଷଙ୍କ ଦ୍ୱାରା ଶାସିତ ହେଉଥିଲା । ଗୁପ୍ତଙ୍କ ଅଧୀନରେ ପ୍ରଶାସନିକ କାର୍ଯ୍ୟାଳୟ ସମ୍ଭାଳୁଥିବା ମୈତ୍ରକମାନେ ଗୁଜରାଟର ସୌରାଷ୍ଟ୍ର ଅଞ୍ଚଳରେ ଶାସନ କରୁଥିଲେ ଏବଂ ସେମାନଙ୍କର ରାଜଧାନୀ ବଲ୍ଲଭୀକୁ ଶିକ୍ଷା ଓ ବାଣିଜ୍ୟର ଏକ ପ୍ରମୁଖ କେନ୍ଦ୍ରରେ ପରିଣତ କରିଥିଲେ । ଏହି ଚାରୋଟି ବଂଶର ବଳୟ ବାହାରେ ଅପେକ୍ଷାକୃତ ଗୌଣ ରାଜ୍ୟମାନ ତିଷ୍ଠିଥିଲା । ସେଗୁଡ଼ିକ ହେଲା– ଓଡ଼ିଶାରେ ମାନସ ଏବଂ ଶୈଳୋଦ୍ଭବ, ଆସାମରେ ବର୍ମନ ଏବଂ ଔଲିକର ତଥା ଅନ୍ୟମାନେ । ସେମାନଙ୍କ ବିଷୟରେ ଭୂମିଦାନ ସମ୍ପର୍କୀୟ ଶିଳାଲେଖରୁ ସୂଚନା ମିଳିଥାଏ । ଚାରି ପ୍ରମୁଖ ରାଜବଂଶ ମଧ୍ୟରୁ ମୈତ୍ରକମାନେ

ଦୀର୍ଘକାଳ ଧରି ଶାସନ କରିଥିଲେ । ଆରବ ଆକ୍ରମଣରେ ଦୁର୍ବଳ ହେବା ପୂର୍ବରୁ ସେମାନେ ଅଷ୍ଟମ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଶାସନ କରିଥିଲେ ।

ପ୍ରଭାକର ବର୍ଦ୍ଧନ ଗାଦିନସୀନ ହେବାପରେ ପୁଷ୍ୟଭୂତି ବଂଶ ପ୍ରଭାବଶାଳୀ ହୋଇଉଠିଲେ । ତାଙ୍କୁ ନିମ୍ନମତେ ବର୍ଣ୍ଣନା କରାଯାଇଛି ।

*"ହୁନ୍ ମୃଗମାନଙ୍କ ଲାଗି ସିଂହ, ସିନ୍ଧୁଭୂମିର ରାଜାଙ୍କ ପାଇଁ ଜ୍ୱର କମ୍ପ ସୃଷ୍ଟିକାରୀ, ଗୁଜୁରାଟର ନିଦ୍ରାଭଙ୍ଗକାରୀ, ଗାନ୍ଧାରର ଅଧିପତି ସୁଗନ୍ଧଯୁକ୍ତ ଗଜଙ୍କ ଲାଗି ଭୟାବହ ମହାମାରୀ, ଲାଟମାନଙ୍କର ଅରାଜକତାର ଅପହର୍ତ୍ତା, ମାଲୱାର ଗୌରବ ଲତିକାର ହନନକାରୀ ।"*

–(Banabhatta, *Harshacharita*, tr. E.B. Cowell, P.101)

ପ୍ରଭାକର ବର୍ଦ୍ଧନଙ୍କ ରାଜ୍ୟ ବିସ୍ତାରର ଆକାଂକ୍ଷା ତାଙ୍କର କନିଷ୍ଠ ପୁତ୍ର ହର୍ଷବର୍ଦ୍ଧନଙ୍କ ଦ୍ୱାରା ପୂରଣ ହୋଇଥିଲା । ସେ ସାଧାରଣରେ ହର୍ଷ ନାମରେ ପରିଚିତ ଥିଲେ ।

ହର୍ଷ ୬୦୬ ଖ୍ରୀଷ୍ଟାବ୍ଦରେ ତାଙ୍କର ଶାସନ ଆରମ୍ଭ କଲେ । ତାଙ୍କ ଆଦ୍ୟ ଜୀବନର ନିଖୁଣ ତଥା ବିସ୍ତୃତ ବର୍ଣ୍ଣନା ତାଙ୍କର ଜ୍ଞାନୀ, ପ୍ରଥାବିରୋଧୀ (bohemian) ବନ୍ଧୁ ବାଣଭଟ୍ଟଙ୍କ ଦ୍ୱାରା ରଚିତ 'ହର୍ଷ ଚରିତ'ରୁ ମିଳେ । ଏହା ଥିଲା ବିଧିବଦ୍ଧ ଭାବେ ରଚିତ ଜଣେ ରାଜାଙ୍କର ପ୍ରଥମ ଜୀବନୀ ଚରିତ ଯାହା ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ବିଭାଗ ଉନ୍ମୋଚନ କରିଥିଲା । ପରବର୍ତ୍ତୀ ସମୟରେ ଏ ଧରଣର ରଚନା ଜାରି ରହିଲା । ପ୍ରଶସ୍ତିମୂଳକ ଶୈଳୀ ସତ୍ତ୍ୱେ ଏହି ଜୀବନୀଗୁଡ଼ିକରେ କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା ସମ୍ପର୍କରେ ସୂଚନା ଦିଆଯାଉଥିଲା । ଅବଶ୍ୟ ଏଥିପାଇଁ ମୂଳ ଢାଞ୍ଚାଠାରୁ ଲେଖା ଟିକେ ଅଲଗା ହେଉଥିଲା । ଶାସନକାଳର ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକୁ ନେଇ ସମସାମୟିକ ଅବବୋଧ ସମ୍ପର୍କରେ ଏଥିରୁ ସୂଚନା ମିଳୁଥିଲା । ଅବଶ୍ୟ ଏଥିପାଇଁ ଆଧୁନିକ ଇତିହାସ ରଚନାର ମାନ ଦୃଷ୍ଟିରୁ ତାକୁ ନ ବୁଝି ସେ ସମୟର ଐତିହାସିକ ଅବବୋଧ ଦୃଷ୍ଟିରୁ ବୁଝିବା ବାଞ୍ଛନୀୟ । ଏ କ୍ଷେତ୍ରରେ ଜୀବନୀ ରଚନାର ତୁରନ୍ତ କାରଣ ହେଲା ସାନଭାଇର ଶାସନକୁ ବୈଧତା ପ୍ରଦାନ । ସାନଭାଇ ହୁଏତ ବଡ଼ଭାଇର ଶତ୍ରୁ ହୋଇପାରିଥାନ୍ତା – ଏ ଆଶଙ୍କା ସ୍ୱାଭାବିକ । ଏହା ଜ୍ୟୋଷ୍ଠାଧିକାରର ପବିତ୍ରତା ଉପରେ ଏକ ପ୍ରଶ୍ନବାଚୀ ।

ଜୀବନୀଚରିତର ଏକ ବିରୋଧାଭାସ ହେଉଛି ଚୀନା ବୌଦ୍ଧ ସନ୍ନ୍ୟାସୀ ହୁଏନ୍‌ସାଂଙ୍କ ବିବରଣୀ । ସେ ହର୍ଷଙ୍କ ଶାସନକାଳରେ ଭାରତ ଆସିଥିଲେ । ତାଙ୍କର ଭ୍ରମଣ ବୃତ୍ତାନ୍ତରେ ପୂର୍ବବର୍ତ୍ତୀ ଚୀନା ପରିବ୍ରାଜକ ଫାହିୟାନ୍‌ଙ୍କ ତୁଳନାରେ ବ୍ୟାପକ ଓ ବିସ୍ତୃତ ବର୍ଣ୍ଣନା ଉପଲବ୍ଧ

ହୁଏ । ମାଣ୍ଡାରିନ୍ ବଂଶ ସମ୍ଭୂତ ହୁଏନ୍‌ସାଂ ମୂଳତଃ ଜଣେ କନ୍‌ଫୁସୀୟ ଥିଲେ ଯିଏ ପରେ ଜଣେ ଉତ୍ସାହୀ ବୌଦ୍ଧରେ ପରିଣତ ହୋଇଥିଲେ । ତେଣୁ ତାଙ୍କର ପର୍ଯ୍ୟବେକ୍ଷଣ ଓ ବର୍ଣ୍ଣନା ବିସ୍ତୃତ ତଥା ଟିକିନିଖି । ତାଙ୍କ ବିବରଣୀ ମୁଖ୍ୟତଃ ବର୍ଣ୍ଣନାତ୍ମକ । ତେଣୁ ସେଥିରୁ ତାଙ୍କ ଅବବୋଧର କିଛି ସୂକ୍ଷ୍ମ କଥା ବାଦ୍ ପଡ଼ିଯିବା ସ୍ୱାଭାବିକ ।

ହର୍ଷଙ୍କର ଏକଚାଳିଶ ବର୍ଷର ଶାସନକାଳ ଭିତରେ ଜଳନ୍ଧର (ପଞ୍ଜାବରେ ଅବସ୍ଥିତ), କାଶ୍ମୀର, ନେପାଳ ଇତ୍ୟାଦି ତାଙ୍କର କରଦ ରାଜ୍ୟରେ ପରିଣତ ହୋଇଥିଲା ଏବଂ ପୂର୍ବରେ ଶାସନ କରୁଥିବା ବଲ୍ଲଭୀ ଏବଂ ଶଶାଙ୍କ ତାଙ୍କ ପ୍ରତି ଶତ୍ରୁଭାବାପନ୍ନ ଥିଲେ । ହର୍ଷ ଦାକ୍ଷିଣାତ୍ୟ ଆଡ଼କୁ ତାଙ୍କ ରାଜ୍ୟ ବିସ୍ତାର କରିବାରେ ଅସମର୍ଥ ହୋଇଥିଲେ । ପଶ୍ଚିମ ଦାକ୍ଷିଣାତ୍ୟର ଚାଲୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀଙ୍କଠାରୁ ତାଙ୍କର ପରାଜୟ ଥିଲା ଏକ ପ୍ରମୁଖ ପରାଜୟ । ସେ ତାଙ୍କର ରାଜଧାନୀ ଥାନେଶ୍ୱରରୁ କନୌଜ ଉଠାଇ ନେଇଥିଲେ । ପ୍ରଥମ ରାଜଧାନୀ ପ୍ରତି ଉତ୍ତର-ପଶ୍ଚିମ ଦିଗରୁ ବିପଦର ଆଶଙ୍କା ଥିଲା । ଦ୍ୱିତୀୟଟି ପଶ୍ଚିମ ଗାଙ୍ଗେୟ ଅବବାହିକାର କୃଷି ସମୃଦ୍ଧ ଅଞ୍ଚଳରେ ଅବସ୍ଥିତ ଥିଲା, ଯାହା ଫଳରେ ସେ ସମତଳ ଅଞ୍ଚଳ ଉପରେ ନିୟନ୍ତ୍ରଣ ରଖିବା ସହିତ ପଶ୍ଚିମ ଭାରତ ସହିତ ପ୍ରତ୍ୟକ୍ଷ ଯୋଗାଯୋଗ ରକ୍ଷା କରିପାରିଲେ ଏବଂ ଦକ୍ଷିଣ ଓ ପୂର୍ବକୁ ଥିବା ପଥ ସହିତ ମଧ୍ୟ ସଂଯୁକ୍ତ ହୋଇପାରିଲେ । ହର୍ଷ ଶକ୍ତିଶାଳୀ ଥିଲେ, ନିଜ ଶାସନାଧୀନ ଅଞ୍ଚଳ ସହ ଘନିଷ୍ଠ ସମ୍ପର୍କ ରଖିବା ଏବଂ କରଦ ରାଜ୍ୟର ଶାସକମାନଙ୍କ ପ୍ରତି ସଜାଗ ଦୃଷ୍ଟି ରଖିବା ଲାଗି ସେ ସେଇସବୁ ଅଞ୍ଚଳକୁ ଯାତ୍ରା କରୁଥିଲେ ।

ଜଣେ ରାଜା ଏବଂ ପ୍ରଶାସକ ଭାବେ ନିଜର ଦାୟିତ୍ୱ ନିର୍ବାହ କରିବା ସହିତ ହର୍ଷ ତିନୋଟି ନାଟକ ରଚନା କରିଛନ୍ତି ବୋଲି କୁହାଯାଏ । ସେଥିରୁ ଦୁଇଟି ହେଲା ଶାସ୍ତ୍ରୀୟ ଶୈଳୀରେ ରଚିତ ହାସ୍ୟରସାତ୍ମକ ନାଟକ ଏବଂ ଅନ୍ୟଟି ହେଲା ଧାର୍ମିକ ଚିନ୍ତା ସମ୍ବଳିତ ବୌଦ୍ଧ ଚିନ୍ତନ ଭିତ୍ତିକ । ସେ ଉପରୋକ୍ତ ପୁସ୍ତକଗୁଡ଼ିକର ପ୍ରକୃତ ରଚୟିତା ନା ସେଗୁଡ଼ିକ ତାଙ୍କ ନାମରେ କରିଦିଆଯାଇଛି ଏହାକୁ ନେଇ କିଛିଟା ଅନିଶ୍ଚିତତା ଅଛି । ଗୁରୁତ୍ୱପୂର୍ଣ୍ଣ କଥା ହେଲା, କେବଳ ସାହିତ୍ୟିକ ପାରଦର୍ଶିତା ନୁହେଁ, ସ୍ୱତନ୍ତ୍ର ଲେଖକୀୟତାକୁ ମଧ୍ୟ ରାଜାମାନଙ୍କ ସହ ସଂଯୋଜିତ କରାଯାଉଥିଲା ।

ହର୍ଷଙ୍କ ଶାସନକାଳର ଶେଷଭାଗ ସମ୍ପର୍କରେ ଚୀନା ଉତ୍ସମାନଙ୍କରୁ ସୂଚନା ମିଳେ । ତାଙ୍କର ସମସାମୟିକ, ତାଇ ସୁଂ ର ସମ୍ରାଟ ତାଂ ଓ 643 ରେ ପ୍ରଥମେ ପୁଣି 647 ଖ୍ରୀଷ୍ଟାବ୍ଦରେ ତାଙ୍କ ଦରବାରକୁ ରାଜଦୂତ ପ୍ରେରଣ କରିଥିଲେ । ଦ୍ୱିତୀୟଥର ବେଳକୁ ଚୀନା ରାଜଦୂତ ଦେଖିଲେ ଯେ ହର୍ଷ ସେହି ପାଖାପାଖି ସମୟରେ ଦେହତ୍ୟାଗ କରିଛନ୍ତି ଏବଂ ଜଣେ

ଅଯୋଗ୍ୟ ରାଜା ସିଂହାସନ ଆରୋହଣ କରିଛନ୍ତି । ଚୀନା ରାଜଦୂତ ତୁରନ୍ତ ନେପାଳ ଏବଂ ଆସାମ ଯାତ୍ରାକରି ସୈନ୍ୟ ସଂଗ୍ରହ କଲେ ଏବଂ ସେମାନଙ୍କ ସହାୟତାରେ ହର୍ଷଙ୍କ ସମର୍ଥକମାନେ ସିଂହାସନାରୁଢ଼ ରାଜାଙ୍କୁ ପରାସ୍ତ କଲେ । ତାଙ୍କୁ ଏକ ବନ୍ଦୀ ଭାବରେ ଚୀନ୍‌କୁ ନିଆଗଲା । ବନ୍ଦୀ ରାଜାର ନାମ ତାଇ ସୁଂ ଙ୍କ ସମାଧିର ବେଦୀ ଉପରେ ଲେଖାଯାଇଛି । ହର୍ଷଙ୍କ ସାମ୍ରାଜ୍ୟ ଖୁବ୍ ଦ୍ରୁତଗତିରେ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇଗଲା । ତାଙ୍କର ଉତ୍ତରାଧିକାରୀ ଜଣେ କେହି କାଶ୍ମୀରରେ ଶାସନ କରୁଥିବା କର୍କୋଟ ବଂଶର ଉଚ୍ଚାକାଂକ୍ଷା ସହ ଛନ୍ଦି ହୋଇପଡ଼ିଲେ ଏବଂ ଅଷ୍ଟମ ଶତାବ୍ଦୀରେ ଲଳିତାଦିତ୍ୟ କନୌଜର ଯଶୋବର୍ମନଙ୍କ ଉପରେ ଆକ୍ରମଣ କଲେ । ଛୋଟ ଛୋଟ ରାଜ୍ୟ ସମୂହୟର ଦୁର୍ବଳତା ହର୍ଷ ଉପଲବ୍ଧି କରିଥିଲେ ଏବଂ ପଡ଼ୋଶୀ ରାଜ୍ୟଗୁଡ଼ିକୁ ଦଖଲ କରି ଏକ ବୃହତ୍ତର ସଂରଚନା ଗଠନ କରିବାରେ ସମର୍ଥ ହୋଇଥିଲେ । ତେବେ ସେ ସମୟର ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତି ଯୋଗୁଁ ଏହା ତିଷ୍ଠି ରହିପାରିଲା ନାହିଁ ।

## ପରିବର୍ତ୍ତନଶୀଳ ରାଜନୈତିକ ବ୍ୟବସ୍ଥାର ସୂଚକ

ଗୁପ୍ତରାଜାମାନେ ମହାରାଜାଧିରାଜ, ପରମେଶ୍ୱର ଇତ୍ୟାଦି ବଡ଼ ବଡ଼ ରାଜକୀୟ ଉପାଧିମାନ ଧାରଣ କରିଥିଲେ । ତେବେ ପରବର୍ତ୍ତୀ ଶାସକମାନଙ୍କ କ୍ଷେତ୍ରରେ ଏହି ଉପାଧିଗୁଡ଼ିକ ଅତିରଞ୍ଜନ ପରି ମନେହେଉଥିଲା, କାରଣ ପୂର୍ବ ଶତାବ୍ଦୀଗୁଡ଼ିକର ମହାନ୍ ରାଜାମାନଙ୍କ ତୁଳନାରେ ଏମାନଙ୍କର ରାଜନୈତିକ କ୍ଷମତା ସୀମିତ ଥିଲା । ଏହି ପ୍ରକାରର ମହାର୍ଘ ଉପାଧି ଉତ୍ତର-ପଶ୍ଚିମ ତଥା ଅନ୍ୟାନ୍ୟ ଦୂରବର୍ତ୍ତୀ ଶାସକମାନଙ୍କ କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ ହୋଇଛି ଏବଂ ସେମାନଙ୍କଠାରେ ଦିବ୍ୟତ୍ୱ ଆରୋପ କରାଯାଇଛି । ଏ ପ୍ରକାରର ଫେସନବାଜି ବୌଦ୍ଧଧର୍ମର ପୃଷ୍ଠପୋଷକମାନଙ୍କ କ୍ଷେତ୍ରରେ ମଧ୍ୟ ପରିଦୃଷ୍ଟ ହୁଏ । ଉଦାହରଣ ସ୍ୱରୂପ, ଓଡ଼ିଶାର ଭୌମକର ରାଜବଂଶର ରାଜାମାନେ ନିଜକୁ 'ପରମୋପାସକ' ଭାବରେ ଅଭିହିତ କରିଛନ୍ତି । ରାଜକୀୟ କ୍ଷମତା ଉପରେ ପ୍ରଦତ୍ତ ବକ୍ତବ୍ୟମାନ ସବୁ ସମୟରେ ଆଳଂକାରିକ ହୋଇଛି । କେହି କେହି ବୈଦିକ ବ୍ରାହ୍ମଣ୍ୟବାଦ ଭିତ୍ତିକ ବଳି କର୍ମକାଣ୍ଡ ଉପରେ ଆସ୍ଥା ପ୍ରକଟ କରିଛନ୍ତି ତ ଆଉ କେହି କେହି ସଦ୍ୟ ଉଦ୍ଭାବିତ ବ୍ୟବସ୍ଥା ଉପରେ । ପରବର୍ତ୍ତୀ ବ୍ୟବସ୍ଥାଗୁଡ଼ିକ ଭିତରୁ ଗୋଟିଏ ହେଉଛି 'ମହାଦାନ' । ଯେଉଁମାନେ କର୍ମକାଣ୍ଡ କରୁଥିଲେ ଓ ଶାସକଙ୍କୁ ମାନ୍ୟତା ପ୍ରଦାନ କରୁଥିଲେ ସେମାନଙ୍କ ପ୍ରସଙ୍ଗରେ 'ମହାଦାନ' ଶବ୍ଦର ବାରମ୍ବାର ବ୍ୟବହାର କରାଯାଇଛି ।

ଗୁପ୍ତଙ୍କ ନିୟନ୍ତ୍ରଣାଧୀନ ଗାଙ୍ଗେୟ ସମତଳରେ ରାଜା ଥିଲେ ପ୍ରଶାସନର କେନ୍ଦ୍ର । ଯୁବରାଜ, ମନ୍ତ୍ରୀ ଏବଂ ଉପଦେଷ୍ଟାମାନେ ତାଙ୍କର ସହାୟତା କରୁଥିଲେ । ପ୍ରଦେଶମାନଙ୍କର ଭାଇସ୍‌ରାୟ ପରି ଯୁବରାଜମାନେ କ୍ଷମତା ଉପଭୋଗ କରୁଥିଲେ । ପ୍ରତ୍ୟେକ ରାଜ୍ୟ (ଦେଶ, ରାଷ୍ଟ୍ର ବା ଭୁକ୍ତି) କେତେଗୁଡ଼ିଏ ଜିଲ୍ଲା (ପ୍ରଦେଶ ବା ବିଷୟ)ରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ଜିଲ୍ଲାର ସ୍ୱକୀୟ ପ୍ରଶାସନିକ ଅଧିକାରୀ ରହୁଥିଲେ । ମାତ୍ର ସମସ୍ତ ବ୍ୟବହାରିକ ଦୃଷ୍ଟିକୋଣରୁ ସ୍ଥାନୀୟ ପ୍ରଶାସନ କେନ୍ଦ୍ରଠାରୁ ଦୂରବର୍ତ୍ତୀ ଥିଲା । କେନ୍ଦ୍ରୀୟ କର୍ତ୍ତୃତ୍ୱର ନୀତି ବା ଆଦେଶ ସହିତ ସମ୍ବନ୍ଧିତ ନ ଥିଲେ, ନୀତି ବା ବ୍ୟକ୍ତିଗତ ସ୍ତରୀୟ ନିଷ୍ପତ୍ତିଗୁଡ଼ିକ ସ୍ଥାନୀୟ ସ୍ତରରେ ନିଆଯାଉଥିଲା । ଜିଲ୍ଲା ଦାୟିତ୍ୱରେ ଥିବା ଅଧିକାରୀଗଣ (ଆୟୁକ୍ତକ, ବିଷୟପତି) ଏବଂ ତାଙ୍କଠାରୁ ଉଚ୍ଚ ପ୍ରାଦେଶିକ ଅଧିକାରୀଗଣ (କୁମାରାମାତ୍ୟ ଉପାଧିଧାରୀ) ସ୍ଥାନୀୟ ପ୍ରଶାସନ ଏବଂ କେନ୍ଦ୍ର ମଧ୍ୟରେ ଯୋଗସୂତ୍ର ରକ୍ଷା କରୁଥିଲେ । ସ୍ଥାନୀୟ ଗୁରୁତ୍ୱ ଆଧାରରେ କେତେକ କାର୍ଯ୍ୟାଳୟରେ ମୌରସୀ ବା ବଂଶାନୁଗତିକ ପ୍ରଶାସନ ଚାଲୁଥିଲା । ଅମଲାତନ୍ତ୍ରର ପ୍ରାଧାନ୍ୟ ନିମ୍ନରେ ଗ୍ରାମ ପରିଷଦର ସଭ୍ୟଗଣ (ଅଷ୍ଟକୁଳ ଅଧିକରଣ) ତଥା ଗୋଷ୍ଠୀର ବରିଷ୍ଠ (ମହତ୍ତର) ତଥା ଗ୍ରାମ ମୁଖ୍ୟ ବା ଗ୍ରାମ ଅଧ୍ୟକ୍ଷଙ୍କ ସ୍ଥାନ ଥିଲା । ପ୍ରଶାସନିକ ଏକକ ଲାଗି ବ୍ୟବହୃତ ପଦଗୁଡ଼ିକର ସ୍ୱକୀୟ ପ୍ରତୀକାତ୍ମକ ଅର୍ଥ ଥିଲା । ଏହି ପ୍ରତୀକଗୁଡ଼ିକ ଆହାର, ଭୋଗ, ଭୁକ୍ତି ଇତ୍ୟାଦି ଆଧାରରେ ସୂଚିତ ହେଉଥିଲା ।

ଏହା ମୌର୍ଯ୍ୟ ପ୍ରଶାସନ ତୁଳନାରେ ଲକ୍ଷଣୀୟ ଭାବେ ଭିନ୍ନ ଥିଲା । ଯେଉଁଠି ଅଶୋକ ନିଜେ ସୂଚନା ଲାଭ କରିବା ଉପରେ ଗୁରୁତ୍ୱ ଆରୋପ କରୁଥିଲେ ସେ କ୍ଷେତ୍ରରେ ଗୁପ୍ତମାନେ ତା'ର ଦାୟିତ୍ୱ କୁମାରାମାତ୍ୟ ଏବଂ ଆୟୁକ୍ତଙ୍କ ଉପରେ ଛାଡ଼ିଦେଇ ନିଶ୍ଚିନ୍ତ ରହୁଥିଲେ । ପ୍ରଶାସନର ଏକ ନକ୍‌ସା ଅର୍ଥଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ଏହା ଏକ 'ମାନକ' ପାଠ । ତେବେ ଶିଳାଲେଖ ଓ ମୋହରରୁ ଜଣାଯାଏ ଯେ, ଗୁପ୍ତ ପ୍ରଶାସନ ଆହୁରି ବିକେନ୍ଦ୍ରିତ ଥିଲା । ଅଧିକାରୀମାନେ ଏକାଧିକ କାର୍ଯ୍ୟାଳୟରେ କାର୍ଯ୍ୟ କରିପାରୁଥିଲେ । ହର୍ଷଙ୍କ ଗସ୍ତଗୁଡ଼ିକ ରାଜକୀୟ ନିରୀକ୍ଷକଙ୍କ ଗସ୍ତ ଭଳି ଥିଲା । କାରଣ ସେ ସମୟରେ ପ୍ରଶାସନ କର ଆଦାୟ ବିଷୟରେ ବୁଝୁଥିଲେ, ଅଭିଯୋଗ ଶୁଣୁଥିଲେ ଏବଂ ଦାନ ଖଇରାତ୍ କରୁଥିଲେ ।

ଗ୍ରାମ, ପଲ୍ଲୀ, ବସ୍ତି, ଗୁଲ୍‌ମା (ଏକ ସାମରିକ ବସତି), କ୍ଷେତକ ଇତ୍ୟାଦି ବିଭିନ୍ନ ପ୍ରକାରର ଗାଁ ଥିଲା । ଗ୍ରାମ ମୁଖିଆ ଓ ଗ୍ରାମ କମିଟୀ ସେଗୁଡ଼ିକୁ ନିୟନ୍ତ୍ରଣ କରୁଥିଲେ । ଏମାନଙ୍କ ମଧ୍ୟରୁ କେହି କେହି ଗ୍ରାମ ଅଧ୍ୟକ୍ଷ ବା କୁଟୁମ୍ବୀ ପଦରେ ଅଧିଷ୍ଠିତ ହେଉଥିଲେ । ନଗର ପ୍ରଶାସନ କ୍ଷେତ୍ରରେ ପ୍ରତ୍ୟେକ ନଗରରେ ନଗର ନିଗମର ସଭାପତି ନଗରଶ୍ରେଷ୍ଠୀ, ବଣିକମାନଙ୍କର ମୁଖ୍ୟ ପ୍ରତିନିଧି ସାର୍ଥବହ, କାରିଗରମାନଙ୍କର ପ୍ରତିନିଧି ପ୍ରଥମ କୁଳିକ,

ଲିପିକମାନଙ୍କର ମୁଖ୍ୟ ପ୍ରଥମ କାୟସ୍ଥ ପ୍ରଭୃତିଙ୍କୁ ନେଇ ଏକ ପରିଷଦ ଗଠନ କରାଯାଉଥିଲା । ଏହି ପରିଷଦ ଏବଂ କମିଟୀ ମଧ୍ୟରେ ଥିବା ପାର୍ଥକ୍ୟ ମେଘାସ୍ଥିନିସ୍‌ ତଥା କୌଟିଲ୍ୟଙ୍କ ଦ୍ୱାରା ପ୍ରଦର୍ଶିତ ହୋଇଛି । ପୂର୍ବବର୍ତ୍ତୀ ସରକାରଗୁଡ଼ିକ କମିଟୀ ନିଯୁକ୍ତ କରୁଥିଲେ ଅଥଚ ଗୁପ୍ତ ବ୍ୟବସ୍ଥାରେ ଯେଉଁ ପରିଷଦ ଗଠିତ ହୋଇଥିଲା ସେଥିରେ ସ୍ଥାନୀୟ ପ୍ରତିନିଧିଗଣ ସ୍ଥାନ ପାଉଥିଲେ । ଏହି ପ୍ରତିନିଧିମାନଙ୍କ ନିମନ୍ତେ ବାଣିଜ୍ୟିକ ସ୍ୱାର୍ଥ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ।

ମୌର୍ଯ୍ୟ ପ୍ରଶାସନର ପ୍ରାଥମିକ କାର୍ଯ୍ୟ ଥିଲା ପ୍ରଚଳିତ ଅର୍ଥବ୍ୟବସ୍ଥାରୁ ରାଜସ୍ୱ ଆଦାୟ ଏବଂ ତା' ପାଇଁ ରାଷ୍ଟ୍ରର ସହାୟତାରେ କୃଷି ବିକାଶ ଓ ସଂପ୍ରସାରଣ । ଅନ୍ୟପକ୍ଷରେ ଗୁପ୍ତ ତଥା ତା'ର ସମସାମୟିକ ସାମ୍ରାଜ୍ୟର ପ୍ରାଥମିକ ପ୍ରଚେଷ୍ଟା ଥିଲା କୃଷିଭିତ୍ତିକ ଅର୍ଥନୀତିର ପୁନର୍ଗଠନ । ଏଥିପାଇଁ ଲୋକମାନଙ୍କୁ ଜମି ଦିଆଯାଉଥିଲା ଏବଂ ସେମାନେ ଏ କ୍ଷେତ୍ରରେ ଗ୍ରାମାଞ୍ଚଳରେ ଉତ୍ପ୍ରେରକ ରୂପେ କାର୍ଯ୍ୟ କରିବେ ବୋଲି ଆଶା କରାଯାଉଥିଲା । ନୂଆ ଲୋକ ଆଣିବା ପରିବର୍ତ୍ତେ ଅଧିଷ୍ଠିତ ଗୋଷ୍ଠୀକୁ କୃଷକରେ ପରିଣତ କରିବା ସକାଶେ ଚେଷ୍ଟା କରାଯାଉଥିଲା । ଜମି ଅନୁଦାନ ମାଧ୍ୟମରେ ସେମାନେ ରାଜାନୁରକ୍ତି ହାସଲ କରିବେ । ଫଳରେ ଉଦ୍ଦେଶ୍ୟ ପୂରଣ ହେବ ବୋଲି ଆଶା ରଖାଯାଉଥିଲା । ଜମିଦାନକୁ ମହାଦାନ କହିବା ଯଥାର୍ଥ ଥିଲା । ଏହାର ଉଦ୍ଦେଶ୍ୟ ଥିଲା ଉର୍ବର, ଜଳସେଚିତ ଭୂମିରେ କୃଷିର ଉନ୍ନତି ତଥା ପତିତ ଭୂମିରେ ବସତି ସ୍ଥାପନ ନିମନ୍ତେ ଉତ୍ସାହ ପ୍ରଦାନ । ସୀମାବର୍ତ୍ତୀ ଅଞ୍ଚଳଗୁଡ଼ିକୁ ବୃହତ୍ତର କୃଷିଭିତ୍ତିକ ଅର୍ଥନୀତିର ଅଂଶରେ ପରିଣତ କରିବାଲାଗି ଉଦ୍ୟମ ହୋଇଥିଲା । ଏଥିପାଇଁ ଗଙ୍ଗାର ନିକଟବର୍ତ୍ତୀ ଅଞ୍ଚଳରେ ପ୍ରାଥମିକ ପର୍ଯ୍ୟାୟରେ ଭୂମିଦାନ କରାଯାଇ ନ ଥିଲା, ବରଂ ଦୂରବର୍ତ୍ତୀ ଅଞ୍ଚଳରେ ଭୂମି ମଞ୍ଜୁର କରାଯାଇଥିଲା କୃଷିଭିତ୍ତିକ ବସତି ସ୍ଥାପନ ଲାଗି କ୍ରମେ ରାଷ୍ଟ୍ର ଉପରେ ଆଉ ବେଶି ଚାପ ଦିଆଗଲା ନାହିଁ । ଆଶା କରାଗଲା ଯେ ଏଥିଲାଗି ଭୂମି ଗ୍ରହୀତାମାନେ ପଦକ୍ଷେପ ନେବେ ।

ଧାର୍ମିକ ଏବଂ କର୍ମକାଣ୍ଡ ବିଶାରଦ ତଥା ଅଧିକାରୀମାନଙ୍କୁ ଜମି ଅନୁଦାନ ଦିଆଗଲା । ସେମାନେ ଖଜଣା ଦେଉ ନ ଥିଲେ । ଫଳରେ ରାଷ୍ଟ୍ରର ରାଜସ୍ୱରେ ଅଭିବୃଦ୍ଧି ଘଟିଲା ନାହିଁ । ବରଂ ଏହାଫଳରେ ସ୍ଥାନୀୟ ସ୍ତରରେ ରାଜସ୍ୱ ଚାହିଦାରେ କେତେକ ଅଦଳବଦଳ ଘଟିଲା ଏବଂ ଗ୍ରାମାଞ୍ଚଳରେ କେତେକ ସମୃଦ୍ଧିସମ୍ପନ୍ନ କେନ୍ଦ୍ର ସୃଷ୍ଟି ହେଲା । ଏହାକୁ ଅନୁକରଣ କଲେ ବ୍ୟାପକ ସ୍ତରରେ ସମୃଦ୍ଧି ସାଧନ ହୋଇପାରିବ ବୋଲି ମନେକରାଗଲା । ଯଦି ବ୍ରାହ୍ମଣ (କର୍ମକାଣ୍ଡ ବିଶାରଦ ବା ପ୍ରଶାସକ ହିସାବରେ)ଙ୍କୁ ପତିତ ଭୂମି ବା ଜଙ୍ଗଲ ଜମି ଦିଆଗଲା ସେ କୃଷି ପ୍ରବର୍ତ୍ତନ ନିମନ୍ତେ ନିଷ୍ଠାପର ଉଦ୍ୟମ ଆରମ୍ଭ କରିଦେଲେ । କୃଷିଭିତ୍ତିକ

ପୁସ୍ତିକା 'କୃଷି ପରାଶର' ସହାୟତାରେ ବ୍ରାହ୍ମଣମାନେ କୃଷିକାର୍ଯ୍ୟ ପର୍ଯ୍ୟବେକ୍ଷଣରେ ଧୂରନ୍ଧର ସିଦ୍ଧ ହେଲେ । ଏହି ପୁସ୍ତିକା ହୁଏତ ସେ ସମୟରେ ବା ତା'ର ପୂର୍ବବର୍ତ୍ତୀ କାଳରେ ରଚିତ ହୋଇଥିଲା । କେତେକ ପୁସ୍ତକରେ ନିହାତି ଆବଶ୍ୟକ ନ ପଡ଼ିଲେ ବ୍ରାହ୍ମଣମାନେ କୃଷି କରିବା ନିଷେଧ ବୋଲି କୁହାଯାଇଛି । ତେବେ ଏଥିପାଇଁ କୃଷିରେ ବ୍ରାହ୍ମଣମାନଙ୍କର ଧୁରୀଣତା ପ୍ରଭାବିତ ହୋଇନାହିଁ ।

ଧର୍ମାନୁଷ୍ଠାନ ନିମନ୍ତେ ସୁଧ ବ୍ୟୟିତ ହେବାର ଥିଲେ ମଧ ନିଗମ ବା ଶ୍ରେଣୀଗୁଡ଼ିକୁ (guild) ଦାନ କରାଯାଇ ବାଣିଜ୍ୟିକ କାର୍ଯ୍ୟକଳାପକୁ ପ୍ରୋତ୍ସାହିତ କରାଯାଉଥିଲା । ଏଥିପାଇଁ ନଗର ପରିଷଦ ତଥା ନିବେଶ ତଥା ଲାଭକ୍ଷମ ସ୍ଥାନରେ ବାଣିଜ୍ୟିକ ନିବେଶକାରୀମାନଙ୍କୁ ଅବସ୍ଥାପନ କରାଯାଉଥିଲା । ବାଣିଜ୍ୟରୁ ରାଷ୍ଟ୍ର ପାଇଁ କ୍ରମେ ଅଧିକ ଟିକସ ଆଦାୟ ହୋଇ ଆସିଲା । ଏହାଫଳରେ ଅଧିକାରୀମାନଙ୍କ ପ୍ରଭୁତ୍ୱ ବଢ଼ିଲା । ଯଦିଓ ପ୍ରଥମ ପର୍ଯ୍ୟାୟରେ କମ୍ ଭୂମି ଅନୁଦାନରେ ଦିଆଯାଉଥିଲା, ଅଷ୍ଟମ ଶତାବ୍ଦୀ ବେଳକୁ ଏହାର ପରିମାଣ ବଢ଼ିଲା । ଫଳରେ ଏପରି ଏକ ରାଜନୈତିକ ବ୍ୟବସ୍ଥା ବିକଶିତ ହେଲା, ଯାହା ପ୍ରାକ୍ ଗୁପ୍ତକାଳଠାରୁ ଭିନ୍ନ ଥିଲା ।

ପଡ଼ୋଶୀ ରାଜ୍ୟ ଦଖଲ କରୁଥିବା ରାଜାମାନେ ପରାସ୍ତ ରାଜାଙ୍କୁ କରଦ ବା ଅଧସ୍ତନ ଶାସକରେ ପରିଣତ କରୁଥିଲେ । ଆଧୁନିକ ଲେଖାରେ ସେଗୁଡ଼ିକୁ ସାମନ୍ତ ରାଜ୍ୟ ଭାବେ ଅଭିହିତ କରାଯାଇଛି । ଏହି ଶାସକମାନଙ୍କ ସହ ଆପୋଷ ଆଲୋଚନା ମଧ କରାଯାଉଥିଲା । ପଡ଼ୋଶୀ ଅର୍ଥରେ ବ୍ୟବହାର କରାଯାଉଥିବା 'ସାମନ୍ତ' ଶବ୍ଦଟିର ଅର୍ଥ ଶେଷରେ 'କରଦ ଶାସକ'ରେ ପରିଣତ ହୋଇଗଲା । ଏହାଫଳରେ ରାଜା ଏବଂ ସ୍ଥାନୀୟ ଶାସକଙ୍କ ମଧରେ ଥିବା ସମ୍ପର୍କ ଆହୁରି ନିର୍ଣ୍ଣାୟକ ହେଲା । ଯେତେବେଳେ ରାଜାଙ୍କ ଦାବି ଏବଂ ସାମନ୍ତମାନଙ୍କ ଅଭିଳାଷ ମଧରେ ଦ୍ୱନ୍ଦ୍ୱ ଉପୁଜିଲା, ସେତେବେଳେ ଏହି ସମ୍ପର୍କ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ମନେହେଲା । ଯେଉଁଠି ସାମନ୍ତମାନେ ସବଳ ଥିଲେ, ସେପରି ସ୍ଥାନରେ ରାଜା ଦୁର୍ବଳ ହୋଇପଡ଼ିଲେ । କିନ୍ତୁ ନିଜର ସମ୍ମାନ ବଚାୟ ରଖିବାକୁ ଯାଇ ରାଜା ସାମନ୍ତମାନଙ୍କ ସହ ସମ୍ପର୍କ ରଖି ସାମନ୍ତ ଚକ୍ର ଗଠନ କଲେ । ସାମନ୍ତ ବୋଇଲେ ସମର୍ଥ ମିତ୍ର ନା ଶତ୍ରୁ ! ସେମାନଙ୍କୁ ନେଇ ଏହିପରି ଏକ ଦ୍ୱନ୍ଦ୍ୱାସ୍ପଦ ଧାରଣା ମନରେ ରହିଲା ।'

ଭୂମି ଅନୁଦାନ ଫଳରେ କରଦ ଶାସକମାନଙ୍କ ପରି ଆଉ ଏକ ମଧସ୍ଥ ବର୍ଗ ସୃଷ୍ଟି ହେଲା । ଧାର୍ମିକ କାର୍ଯ୍ୟ ଲାଗି ଉଦ୍ଦିଷ୍ଟ ଅନୁଦାନ ମନ୍ଦିର, ମଠ ତଥା ବ୍ରାହ୍ମଣମାନଙ୍କୁ ମିଳିଲା । ମନ୍ଦିରକୁ ମିଳୁଥିବା ଅନୁଦାନ ଫଳରେ ଏହାର ପରିଚାଳକମାନେ କ୍ଷମତାସମ୍ପନ୍ନ ହୋଇଉଠିଲେ । ମନ୍ଦିର ପରିଚାଳନା ନିମନ୍ତେ ଗ୍ରାମଦାନ ମଧ କରାଗଲା । ମନ୍ଦିର ଏକ

ପବିତ୍ର କ୍ଷେତ୍ର ରୂପେ ପରିଗଣିତ ହେଉଥିବାରୁ ସ୍ଥାନୀୟ ପ୍ରଶାସନରେ ମଧ୍ୟ ଏହା ହସ୍ତକ୍ଷେପ କରିବାର ଅଧିକାର ପାଇଲା । ଏକଦା ଭୂମି ଅନୁଦାନକୁ ସ୍ୱତନ୍ତ୍ର ଗୁରୁତ୍ୱ ପ୍ରଦାନ କରାଯାଇ ଥିବାରୁ ବ୍ରାହ୍ମଣମାନେ ଏକ ସୁବିଧାଭୋଗୀ ସ୍ଥିତିରେ ଥିବେ । ଅଗ୍ରହାର ଭଳି କରମୁକ୍ତ ଅନୁଦାନ, ବ୍ରହ୍ମଦେୟ ଏବଂ ମନ୍ଦିର ତଥା ମଠ ଲାଗି ଉଦ୍ଦିଷ୍ଟ ଭୂମି ଅନୁଦାନଗୁଡ଼ିକ ନିଷ୍କର ଥିଲା । ପ୍ରାୟତଃ ବ୍ରାହ୍ମଣମାନେ ବେଦପ୍ରବୀଣ ଥିଲେ ଅଥବା ଜ୍ୟୋତିଷ ଭଳି ବିଷୟରେ ବିଶେଷ ଜ୍ଞାନସମ୍ପନ୍ନ ଥିଲେ । କଳିଯୁଗର ମନ୍ଦ ପ୍ରଭାବ ଖଣ୍ଡନ ଲାଗି ବ୍ରାହ୍ମଣମାନଙ୍କୁ ଉପହାର ପ୍ରଦାନ କରାଯାଉଥିଲା । ଜ୍ୟୋତିଷବିଦ୍ୟା ଉପରେ ଆସ୍ଥା ଏକ ସାଧାରଣ କଥା ଥିଲା । ଯଦିଓ ଏହି ଅନୁଦାନ ସର୍ବକାଳୀନ ନ ଥିଲା ତଥାପି ଅନୁଦାନ ପ୍ରାପ୍ତ ବ୍ୟକ୍ତିର ପିଢ଼ି ପରେ ପିଢ଼ି ଏହାକୁ ମୌରସୀ ବା ଉତ୍ତରାଧିକାରରେ ପ୍ରାପ୍ତ ସମ୍ପତ୍ତି ଭାବେ ଭୋଗ କଲେ । ମୂଳ ଅନୁଦାନ ଦାତା ଯଦି ସ୍ୱତନ୍ତ୍ର ବ୍ୟବସ୍ଥା ନ କରିଥାନ୍ତି ତେବେ ଅନୁଦାନ ଫେରାଇ ନେବାର କ୍ଷମତା ରାଜାଙ୍କ ପାଖରେ ରହୁଥିଲା । ତେବେ ଅନୁଦାନ ପ୍ରତ୍ୟାହାର କରିନେବା ଫଳରେ ରାଜନୈତିକ ବିରୋଧୀ ସୃଷ୍ଟି ହେବାର ଆଶଙ୍କା ମଧ୍ୟ ରହୁଥିଲା । ଅନେକ ଶିଳାଲେଖରେ ଏକ ନିର୍ଦ୍ଦିଷ୍ଟ ସୂତ୍ରଭିତ୍ତିକ ବାକ୍ୟ ରହୁଥିଲା । ତାହା ହେଲା ଅନୁଦାନ ଅପେକ୍ଷା ଅନୁଦାନର ସଂରକ୍ଷଣର ଯୋଗ୍ୟତା ଗୁରୁତ୍ୱପୂର୍ଣ୍ଣ ।

ଧର୍ମାନୁଷ୍ଠାନଗୁଡ଼ିକୁ ପ୍ରାପ୍ତ ହେଉଥିବା ଅର୍ଥ ଅପେକ୍ଷା ଭୂମି ଅନୁଦାନ କ୍ରମଶଃ ଅଧିକ ହେଲା । ଜମି ହେଲା ଦୀର୍ଘସ୍ଥାୟୀ । ଏହାକୁ ମଧ୍ୟ ପିଢ଼ି ପରେ ପିଢ଼ି ଭୋଗ କରିହେବ । ଏ ପ୍ରକାରର ଅନୁଦାନ ଜମିଦାରୀବାଦର ବିକାଶରେ ସହାୟକ ହେଲା । ଅବଶ୍ୟ ମଠଗୁଡ଼ିକ ଏ ଦୃଷ୍ଟିରୁ ପଛୁଆ ନ ଥିଲେ । କୃଷିଭିତ୍ତିକ ଅବସ୍ଥାନ ପ୍ରତିଷ୍ଠା ତୁଳନାରେ ରାଜସ୍ୱ ଗ୍ରହଣ ସହଜ ଥିଲା । ଭୂମି ଅନୁଦାନ ଦାତାର ଅଧିକ ମହତ୍ତ୍ୱ ପ୍ରକଟ କରୁଥିଲା । ତେଣୁ ବୌଦ୍ଧମାନଙ୍କ ଭିତରେ ମଧ୍ୟ ଟଙ୍କା ଓ ଅନ୍ୟାନ୍ୟ ଅନୁଦାନ ପରିବର୍ତ୍ତେ, ଭୂମି ଅନୁଦାନ ପାଇଁ ଅଧିକ ଆଗ୍ରହ ସୃଷ୍ଟି ହୋଇଥିଲା । ସପ୍ତମ ଶତାବ୍ଦୀରେ ଯେତେବେଳେ ବୌଦ୍ଧଧର୍ମର ପ୍ରସାର ଏତେ ବ୍ୟାପକ ହୋଇ ନ ଥିଲା, ସେତେବେଳେ ନିର୍ଦ୍ଦିଷ୍ଟ ଅଞ୍ଚଳମାନଙ୍କରେ ବୌଦ୍ଧମାନଙ୍କୁ ଅନୁଦାନ ପ୍ରଦାନ କରାଯାଉଥିଲା । ବୃହତ୍ତର ବୌଦ୍ଧ ମଠଗୁଡ଼ିକ ଗ୍ରାମ ଅନୁଦାନ ଗ୍ରହଣ କରୁଥିଲେ, କାରଣ ନୂତନ ସ୍ଥାନରେ ଉପନିବେଶ ପ୍ରତିଷ୍ଠା କରିବା ଅପେକ୍ଷା ପ୍ରତିଷ୍ଠିତ ଗ୍ରାମର ପ୍ରଶାସନ ସୁବିଧାଜନକ ଥିଲା । କୁହାଯାଏ, ନାଳନ୍ଦାକୁ ଶହେ ବା ଦୁଇଶହ ଗ୍ରାମର ରାଜସ୍ୱ ମିଳୁଥିଲା ।

ଏ ସମୟର ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ଥିଲା ଅଧିକାରୀମାନଙ୍କୁ କଦବା କେମିତି ଜମି ଅନୁଦାନ ପ୍ରଦାନ । ଅବଶ୍ୟ ଏ ଧରଣର ଅନୁଦାନ ସାମରିକ ତଥା ପ୍ରଶାସନିକ ସେବା କ୍ଷେତ୍ରରେ ଦରମାର ଏକ ବିକଳ୍ପ ଥିଲା । ଏ ସମୟର ଭୂମି ଅନୁଦାନ ଶିଳାଲେଖ

ତଥା ହୁଏନ୍‌ସାଂଙ୍କ ବିବରଣୀରୁ ଏହାର ସୂଚନା ମିଳିଥାଏ । ଏ ପ୍ରକାର ଅନୁଦାନ ସୀମିତ ସଂଖ୍ୟକ ଥିଲା । ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ସମସ୍ତ ଅନୁଦାନ ଯେ କେବଳ ଧାର୍ମିକ ଥିଲା ତାହା ନୁହେଁ, କାରଣ ଅନେକ ଶିକ୍ଷିତ ବ୍ରାହ୍ମଣ ମଧ୍ୟ କାର୍ଯ୍ୟାଳୟରେ ନିଯୁକ୍ତ ଥିଲେ । ବଶମ୍ୱଦତା ଏବଂ ସୁରକ୍ଷା ପ୍ରଦାନ କ୍ଷେତ୍ରରେ ଏକ ସାମରିକ ସେବକ ଗୋଷ୍ଠୀ (vassalage)ର ଉଦାହରଣ ବିରଳ ପ୍ରାୟ ।

ଭୂମି ଓ ଗ୍ରାମ ଅନୁଦାନ ରାଜାଙ୍କ ଆଧିପତ୍ୟ ଦୁର୍ବଳ କରିଥିବ । ଯଦିଓ ପ୍ରାଥମିକ ପର୍ଯ୍ୟାୟରେ କମ୍ ଭୂମି ଦିଆଯାଉଥିଲା ପରବର୍ତ୍ତୀ କାଳରେ ବାରମ୍ବାର ବ୍ୟାପକ ଭୂମି ଅନୁଦାନ କରାଗଲା । ଏ ପ୍ରକାରର ଅନୁଦାନ ମାଲିକକୁ କେନ୍ଦ୍ରୀୟ ପ୍ରଭୁତ୍ୱର ନିୟନ୍ତ୍ରଣରୁ ଦୂରେଇ ରଖିଲା । ଫଳରେ ପ୍ରଶାସନ ବେଶିରୁ ବେଶି କେନ୍ଦ୍ରଚ୍ୟୁତ ହେଲା । ଯେଉଁମାନେ ରାଜସ୍ୱ ପ୍ରଦାୟକ ଅଧିକ ଭୂମି ଅନୁଦାନ ଲାଭ କଲେ ସେମାନେ ଯଥେଷ୍ଟ କ୍ଷମତା ଓ ସମ୍ବଳ ଆହରଣ କରିବା ସହିତ ଶାସକ ବଂଶ ପ୍ରତି ଏକ ବିପଦ ରୂପେ ଉଭା ହେଲେ । ଏଥିସହିତ ଯଦି ସେମାନେ ଅଭିଜାତ ଗୋଷ୍ଠୀ, ବନାଞ୍ଚଳ ସର୍ଦ୍ଦାର ଓ କୃଷକ ଶ୍ରେଣୀ ଆଦିର ସମର୍ଥନ ଲାଭକରି ଲଢ଼େଇ କରିବାକୁ ସମର୍ଥ ହେଲେ, ତେବେ ରାଜାଙ୍କ ପ୍ରଭୁତ୍ୱକୁ ପରାହତ କରି ସେମାନେ ରାଜା ହୋଇପାରିଲେ, ରାଜ୍ୟର କୌଣସି ଏକ କ୍ଷୁଦ୍ର ଅଂଶରେ ହେଉ ପଛେ ।

ଧାର୍ମିକ ଦୃଷ୍ଟିକୋଣରୁ ଲାଭବାନ୍ ବ୍ରାହ୍ମଣମାନଙ୍କୁ ଭୂମି ଅନୁଦାନ ଦେବା ପଛରେ ପ୍ରତ୍ୟାଶା ଥିଲା ଯେ ସେମାନେ ରାଜବଂଶର ବୈଧତାକୁ ଯଥାର୍ଥତା ପ୍ରଦାନ କରିବେ ଏବଂ ସଠିକ୍ କର୍ମକାଣ୍ଡ ମାଧ୍ୟମରେ ରାଜାଙ୍କ ପ୍ରତି ଥିବା ସମ୍ଭାବ୍ୟ ବିପଦକୁ ଟଳାଇ ପାରିବେ । ପୂର୍ବବର୍ତ୍ତୀ କାଳରେ ନାୟକମାନଙ୍କର ବଂଶ ସହ ଯୋଗସୂତ୍ର ପ୍ରଦର୍ଶନ ସାଧାରଣ ବଂଶଙ୍କ ଲାଗି ଉପଯୋଗୀ ସାବ୍ୟସ୍ତ ହେଉଥିଲା । ଯଦି ଅନୁଦାନ ଯଥେଷ୍ଟ ହୋଇଥାଏ ତେବେ କ୍ଷମତା ଓ ସମ୍ବଳ ଆହରଣ କରି ଅନୁଦାନ ଗ୍ରହୀତା ଏକ ରାଜବଂଶର ଆଦିପୁରୁଷ ବୋଲାଇ ପାରୁଥିଲା ।

ଯେଉଁ କ୍ଷେତ୍ରରେ ଅନୁଦାନ ଗ୍ରହୀତା ନିଜ ଧର୍ମର ପ୍ରଚାର ଓ ପ୍ରସାର କରିବାକୁ ଚାହୁଁଥିଲେ ସେପରି ସ୍ଥଳେ ଅନୁଦାନଗୁଡ଼ିକ ଧର୍ମାନ୍ତରୀକରଣ ପ୍ରକ୍ରିୟାର ଏକ ଅଂଶ ହୋଇପାରୁଥିଲା । ବ୍ରାହ୍ମଣମାନଙ୍କର ବେଦ ପ୍ରବୀଣତାକୁ ନେଇ ଅନେକ ଅନୁଦାନ ଦିଆଯାଉଥିଲା । ମାତ୍ର ଯେତେବେଳେ ବ୍ରାହ୍ମଣମାନେ ବନାଞ୍ଚଳ ତଥା ଗ୍ରାମାଞ୍ଚଳରେ ବସବାସ କଲେ, ସେ ସବୁ ଅଞ୍ଚଳର ସ୍ୱକୀୟ ଧର୍ମବିଶ୍ୱାସ ଓ କର୍ମକାଣ୍ଡ ଥିବାରୁ ସେତେବେଳେ ବ୍ରାହ୍ମଣଙ୍କ ଜୀବନଧାରା ସହିତ ସ୍ଥାନୀୟବାସୀମାନଙ୍କର ସଂଘାତ ସୃଷ୍ଟି ହୋଇଥିବ । ସେ ସମୟରେ ଉଭୟ ପକ୍ଷ ମଧ୍ୟରେ ଏକ ଗ୍ରହଣଯୋଗ୍ୟ ବୁଝାମଣା ଆବଶ୍ୟକ ପଡ଼ିଥିବ । ଏଭଳି ପରିସ୍ଥିତିରେ

ପୁରାଣ ପ୍ରବୀଣ ସଂପ୍ରଦାୟ ହୁଏତ ବୈଦିକ ବ୍ରାହ୍ମଣ୍ୟବାଦ ଏବଂ ସ୍ଥାନୀୟ ଧର୍ମଧାରା ଭିତରେ ଏକ ଉପଯୋଗୀ ମଧ୍ୟସ୍ଥି ଭାବେ ଉଭା ହୋଇଥିବେ । ଯଦିବା ବ୍ରାହ୍ମଣମାନେ ପୂଜକମାନଙ୍କ କର୍ମକାଣ୍ଡ ଆପଣାଇଥିବେ, ତେବେ ତାଙ୍କୁ ସ୍ଥାନୀୟ ଦେବାଦେବୀ ଓ କିମ୍ବଦନ୍ତୀ ସହ ସମନ୍ୱିତ ହୋଇ ସ୍ଥିତିସ୍ଥାପକ ତଥା ପ୍ରସାରଣଶୀଳ ପୌରାଣିକ ସଂପ୍ରଦାୟ ତୁଲ୍ୟ କାର୍ଯ୍ୟ କରିବାକୁ ପଡ଼ିଥିବ ।

ଏହାଫଳରେ ଜାତି ଓ ବର୍ଣ୍ଣ ବ୍ୟବସ୍ଥାର ବାହକ ହେବାଲାଗି ଏକ ସାମାଜିକ ସଂଗଠନ ଆବଶ୍ୟକ ପଡ଼ିଥିବ । ଷଷ୍ଠ ଶତାବ୍ଦୀର ଶିଳାଲେଖରୁ ପ୍ରମାଣ ମିଳେ ଯେ ଅଠରଟି ବନାଞ୍ଚଳ ରାଜନୈତିକ ସଂରଚନା ଥିଲା ଯାହାର ସୂତ୍ରଧରମାନେ ନିଜକୁ ପରିବ୍ରାଜକ ରାଜା ବୋଲି କହୁଥିଲେ । ଏଥିରୁ ସେହି ପୂର୍ବପୁରୁଷମାନଙ୍କ ବିଷୟରେ ସୂଚନା ମିଳେ ଯେଉଁମାନେ ଅନୁଦାନ ଆକାରରେ ଭୂମିଲାଭ କରିଥିବେ । ବ୍ରହ୍ମ-କ୍ଷାତ୍ର ବଂଶସମ୍ଭୂତ ଏହିଭଳି କେତେକ ରାଜାଙ୍କ ବିଷୟରେ ଜଣାଯାଏ, ଯେଉଁମାନଙ୍କର ପୂର୍ବପୁରୁଷ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ସମ୍ମିଶ୍ରଣରୁ ସମ୍ଭବ ହୋଇଥିବେ । ବନବାସୀମାନଙ୍କୁ କୌଣସି ଏକ ଜାତି ରୂପେ ଚିହ୍ନେଣ କରିବା ମାଧ୍ୟମରେ ପରିବର୍ତ୍ତନର ପ୍ରକ୍ରିୟା ଆରମ୍ଭ ହୋଇଥିବ । ରାଜବଂଶଗୁଡ଼ିକର ଅଭ୍ୟୁତ୍ଥାନ କିମ୍ବଦନ୍ତୀରେ ମ୍ଳେଛ ଗୋଷ୍ଠୀମାନେ ଅଂଶୀଦାର ହୋଇଥିବେ । ଶୈଳୋଦ୍ଭବ କିମ୍ବଦନ୍ତୀରେ ପୁଳିନ୍ଦ ଏବଂ ଗୁହିଲା କିମ୍ବଦନ୍ତୀରେ ଭୀଲମାନଙ୍କର ସଂପୃକ୍ତି ଏହାର ଉଦାହରଣ । ସମ୍ଭବତଃ ଏମାନେ ବନବାସୀଙ୍କର ମୁଖିଆ ବା ସର୍ଦ୍ଦାର ଥିଲେ ଏବଂ ଅନୁଦାନ ଗ୍ରହୀତାମାନଙ୍କ ସହ ମେଣ୍ଟ କରିଥିଲେ । ପରସ୍ପର ସହ ବୈବାହିକ ସମ୍ବନ୍ଧ ସ୍ଥାପନ କରି ହୁଏତ ସେମାନେ ରାଜ୍ୟ ପ୍ରତିଷ୍ଠା କରିଥିବେ କିମ୍ବା ପ୍ରତିଷ୍ଠା ପ୍ରକ୍ରିୟା ସହ ଜଡ଼ିତ ହୋଇଥିବେ । ମଧ୍ୟ-ଭାରତରେ ଅବସ୍ଥିତ ପ୍ରାରମ୍ଭିକ ପର୍ଯ୍ୟାୟର ଅନେକ ମନ୍ଦିର ପୌରାଣିକ ଦେବାଦେବୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ । ବନାଞ୍ଚଳ ସହିତ ଭାବ ବିନିମୟ ଯୋଗୁଁ ଏପରି ହୋଇଥିବା ସମ୍ଭବ । ଦେବତାମାନଙ୍କର ଅବତାର, ବିଶେଷକରି ବିଷ୍ଣୁଙ୍କର ବରାହ ଅବତାର କେନ୍ଦ୍ରୀୟ ଭାରତରେ ପରିଦୃଷ୍ଟ ହୁଏ । ଆଦିବାସୀ ସଂପ୍ରଦାୟ ଓ ପୌରାଣିକ ଧର୍ମ ମଧ୍ୟରେ ଏକ ବୁଝାମଣାରୁ ହୁଏତ ଏହା ସମ୍ଭବ ହୋଇଥାଇ ପାରେ ।

ଧୀରେ ଧୀରେ ଭୂମି ଅନୁଦାନ ଫଳରେ ରାଜନୈତିକ ବ୍ୟବସ୍ଥା ନୂତନ ଅଞ୍ଚଳମାନଙ୍କରେ ଧର୍ମାନ୍ତରଣ ମାଧ୍ୟମରେ କୃଷକ ଓ କୃଷିଭିତ୍ତିକ ହୋଇଉଠିଲା । ତତ୍ତ୍ୱ ଦୃଷ୍ଟିରୁ ରାଷ୍ଟ୍ର ଅଧିକାରଭୁକ୍ତ ପତିତ ଜମିରେ ଜଙ୍ଗଲ ଓ ତୃଣଭୂମି ଥିଲା । ଉଦ୍ଦେଶ୍ୟ ହେଲା ଯେ ଅନୁଦାନ ଗ୍ରହଣକାରୀ ଏହାକୁ ସଫାକରି ବସତି ସ୍ଥାପନ କରିବ ଏବଂ ଚାଷ ମାଧ୍ୟମରେ ରାଜସ୍ୱ ଉପାର୍ଜନ କରିବ । ଅନୁଦାନ ସମୟରେ ପରିତ୍ୟକ୍ତ ହୋଇପଡ଼ିଥିଲେ ମଧ୍ୟ

ଚାଷୋପଯୋଗୀ ଜମି କର୍ଷିତ ହୋଇସାରିଥିଲା । ଫସଲର କିସମ ସେଠାରେ ପ୍ରାୟତଃ ପୂର୍ବବତ୍ ରହିଲା । ହୁଏନ୍‌ସାଂଙ୍କ ବିବରଣୀ ମୁତାବକ ଉତ୍ତର-ପଶ୍ଚିମରେ ଚିନି ଏବଂ ଗହମ ଚାଷ କରାଯାଉଥିଲା ଏବଂ ମଗଧ ତଥା ଆଉ ଟିକେ ପୂର୍ବକୁ ଧାନଚାଷ କରାଯାଉଥିଲା । ହୁଏନ୍‌ସାଂ ଅନେକ ପ୍ରକାରର ଫଳ ଓ ପନିପରିବା ଚାଷ ସମ୍ପର୍କରେ ମଧ୍ୟ ଉଲ୍ଲେଖ କରିଛନ୍ତି ।

କର୍ଷିତ ଜମିର ପୁଣି ଜଳସେଚନ ଆଧାରରେ ବର୍ଗୀକରଣ ହେଉଥିଲା । ପଶ୍ଚିମ ଭାରତରେ ଗ୍ରାମ ଓ ଜମି ଦାନ ସଙ୍ଗେ ସଙ୍ଗେ ବାମ୍ପି ବା ପାହାଚ-କୂପ ଦାନ କରାଯାଉଥିବା କଥା ମଧ୍ୟ ଶିଳାଲେଖରେ ଉଲ୍ଲେଖ ଅଛି । କୃଷକମାନଙ୍କ ଦ୍ୱାରା ଗଠିତ ଏବଂ ପରିଚାଳିତ ଜଳଚକ୍ର (water-wheel) ଗ୍ରାମାଞ୍ଚଳ ଦୃଶ୍ୟପଟରେ ଏକ ପରିଚିତ ଦୃଶ୍ୟ । ଗୋଟିଏ ସ୍ଥାନରେ ଏ ପ୍ରକାରର ଚକ୍ରକୁ ପାତ୍ରମାନଙ୍କର ମାଳା ରୂପେ ବର୍ଣ୍ଣନା କରାଯାଇଛି । ସ୍ଥାନୀୟ ପ୍ରଚେଷ୍ଟାରେ ଅଥବା ଅନୁଦାନ ପ୍ରାପ୍ତ ବ୍ୟକ୍ତିଙ୍କ ଉଦ୍ୟମରେ ଉଠାଜଳସେଚନ, ପୁଷ୍କରିଣୀ ବା ଛୋଟ ନଦୀବନ୍ଧ ଯୋଜନା ଇତ୍ୟାଦିର ବ୍ୟବସ୍ଥା ହେଉଥିଲା । କେତେକ ଶିଳାଲେଖରେ ଏ ପ୍ରକାରର କାର୍ଯ୍ୟକୁ ଶିଳାଲେଖକଙ୍କ ପିତୃପୁରୁଷଙ୍କ ଲାଗି ଉଦ୍ଦିଷ୍ଟ ପୁଣ୍ୟ କାର୍ଯ୍ୟ ରୂପେ ବର୍ଣ୍ଣନା କରାଯାଇଛି । ଏକ ଅବଧାରଣା ଥିଲା ଯେ କ୍ଷୁଦ୍ର ଅନୁଦାନ ସ୍ଥାନୀୟ ଗୋଷ୍ଠୀର ଅସ୍ତିତ୍ୱ ଓ ତା'ର ମଙ୍ଗଳ ଲାଗି ସହାୟକ ହେବ । ମୌର୍ଯ୍ୟ ଶାସକଙ୍କ ଦ୍ୱାରା ନିର୍ମିତ ସୁଦର୍ଶନ ହ୍ରଦରେ ଅବସ୍ଥିତ ବନ୍ଧ ରୁଦ୍ରଦମନଙ୍କ ଦ୍ୱାରା ମରାମତି କରାଯାଇଥିଲା । ଏହାର ପୁନଃମରାମତି କରାଯାଇ ଏହାକୁ ବ୍ୟବହାର ଯୋଗ୍ୟ କରାଗଲା । ଏହା ସ୍ୱତନ୍ତ୍ର ଭାବେ କୁହାଯାଇଛି ଯେ ନବୀକରଣର ସମସ୍ତ ଖର୍ଚ୍ଚ ପ୍ରଶାସନ ବହନ କରିଥିଲା । ଏଥିପାଇଁ କୌଣସି ଅତିରିକ୍ତ ଟିକସ ବା ଦେୟ ଲାଗୁ କରାଯାଇ ନ ଥିଲା । ସାଧାରଣତଃ ଏପରି କ୍ଷେତ୍ରରେ ଉପଭୋକ୍ତାଠାରୁ ଅତିରିକ୍ତ ଟିକସ ଏବଂ ଶ୍ରମ ଦାବି କରାଯାଇଥାଏ ।

କେତେକ ପ୍ରଶାସନିକ ଏବଂ ନ୍ୟାୟିକ ଅଧିକାର ବଳରେ ଅନୁଦାନ ଗ୍ରହୀତା ରାଜସ୍ୱ ଉପରେ ଅଧିକାର ଲାଭ କରୁଥିଲେ । ପରବର୍ତ୍ତୀ କାଳରେ ଏଥିରେ ଅଭିବୃଦ୍ଧି ଘଟିଲା ଏବଂ ଏହା ଅନୁଦାନ ଅନ୍ତର୍ଭୁକ୍ତ ହେଲା । ଗ୍ରାମ ଏବଂ ଚାଷୋପଯୋଗୀ ଜମି ଅନୁଦାନ କ୍ଷେତ୍ରରେ ଭୂମି ସମେତ ସେଥିରେ କାମ କରୁଥିବା କୃଷକ ମଧ୍ୟ ବଦଳ କରାହେଉଥିଲେ । ଏହାଫଳରେ ଏକ ଅନୁବନ୍ଧିତ ଚାଷୀ ଗୋଷ୍ଠୀ ସୃଷ୍ଟି ହେଲେ ଯେଉଁମାନଙ୍କ ସଂଖ୍ୟା କ୍ରମେ ବଢ଼ିଚାଲିଲା । ମାତ୍ର ଏହା ଦାସବୃତ୍ତି ନ ଥିଲା, କାରଣ ଚାଷୀ ଓ ଅନୁଦାନ ଗ୍ରହୀତା ମଧ୍ୟରେ ଥିବା ଚୁକ୍ତିଭିତ୍ତିକ ସମ୍ପର୍କର ରୂପରେଖ କୃଷି ଦାସବୃତ୍ତିର ଢାଞ୍ଚାଠାରୁ ଭିନ୍ନ ଥିଲା । ସେମାନଙ୍କର ଶ୍ରମ ମଧ୍ୟ କୃଷିଦାସମାନଙ୍କ ତୁଲ୍ୟ ନ ଥିଲା । ବଦଳ ହେଉଥିବା ଚାଷୀ ନିଜ ଜମି ବ୍ୟତିରେକେ ଅନୁଦାନ ଗ୍ରହୀତାଙ୍କ ଜମିଚାଷ କରିବା ନିହାତି ଭାବେ ଆବଶ୍ୟକ ନ ଥିଲା । ତାଙ୍କର ଭୂମିକା ଥିଲା

ପୂର୍ବରୁ ସେ ଟିକସ ଆକାରରେ ରାଜ୍ୟକୁ ଯାହା ଦେଉଥିଲେ ତାହା ଅନୁଦାନ ଗ୍ରହୀତାଙ୍କୁ ପ୍ରଦାନ କରିବା । ଅନୁଦାନର ସୀମା ଭିତରେ ଅନୁଦାନ ଗ୍ରହୀତା ଅନ୍ୟାନ୍ୟ ଦାବି ମଧ୍ୟ କରିପାରୁଥିଲେ । ଅନୁଦାନ ଗ୍ରହୀତାକୁ ସୈନ୍ୟ ଯୋଗାଣ କରିବାକୁ ପଡୁ ନ ଥିଲା । ତା' ସହିତ ଅଧିକାରୀମାନଙ୍କୁ ରସଦ୍ ଯୋଗାଇବାକୁ ପଡୁ ନ ଥିଲା । ନୂଆ ଟିକସ ଓ ଭିଷ୍ଟି ଦେୟ ଲାଗୁ କରିବାର ଅଧିକାର ମଧ୍ୟ ସେ ଲାଭ କରୁଥିଲେ । ଧୀରେ ଧୀରେ ବ୍ୟାପକ ଭୂମି ମାଲିକାନା ସତ୍ତ୍ୱେ ସ୍ୱଚ୍ଛ କୃଷି ଉତ୍ପାଦନ ହେଉଥିବା କଥାଟି ଦୃଷ୍ଟିଗୋଚର ହେଲା । ଚାଷୀମାନଙ୍କ ଉପରେ ସବୁ ସମୟରେ ଅର୍ଥନୈତିକ ବାଧ୍ୟବାଧକତା ରହୁ ନ ଥିଲା । ବଳକା ଉତ୍ପାଦନ ପାଇଁ ମଧ୍ୟ ଚାପ ପ୍ରୟୋଗ କରାଯାଇ ପାରୁଥିଲା । ଏକ ଅନୁକ୍ରମ ଭିତ୍ତିକ ସମାଜ ଏହାକୁ ଅନୁମୋଦନ କରୁଥିଲା । ଫଳରେ ଜାତିଭେଦକୁ ନେଇ ଅତିରିକ୍ତ ନିୟନ୍ତ୍ରଣ ସମ୍ଭବ ହୋଇପାରୁଥିଲା ।

ଅନୁଦାନ ସମ୍ପର୍କୀୟ ବିବରଣୀ ଅନେକ ସମୟରେ ତମ୍ବାପଟା ଉପରେ ଖୋଦିତ ହେଉଥିଲା । ଏହା ଉଭୟ ପାର୍ଶ୍ୱରୁ ଦୁଇଟି ବଳୟ ସହ ସଂଯୁକ୍ତ ଥିଲା ଏବଂ ଏଥିରେ ଦାତାଙ୍କ ମୋହର ଚିହ୍ନ ରହୁଥିଲା । ଏହା ଅନୁଦାନ ସମ୍ପର୍କୀୟ ଆଇନସିଦ୍ଧ ବିବରଣୀ ହୋଇଥିବାରୁ ଅନୁଗୃହୀତ ପରିବାରକୁ ଏହାକୁ ନିଜ ପାଖରେ ସାଇତି ରଖିବାକୁ ପଡୁଥିଲା ଏବଂ ମାଲକାନା ବା ସ୍ୱତ୍ତ୍ୱାଧିକାର ଦାବି କଲାବେଳେ ଏହାକୁ ଦେଖାଇବାକୁ ହେଉଥିଲା । ବେଳେବେଳେ ଏକ ପଥରଖଣ୍ଡ ଉପରେ ଅନୁଦାନ ବିଷୟରେ ଖୋଦେଇ ହେଉଥିଲା ଏବଂ ସ୍ଥାନୀୟ ମନ୍ଦିର ଭଳି ଏକ ନିରାପଦ ଓ ସର୍ବସାଧାରଣ ସ୍ଥାନରେ ତାକୁ ରଖାଯାଉଥିଲା । ବକଟକ ରାଣୀ ପ୍ରଭାବତୀ ଗୁପ୍ତଙ୍କ ଦ୍ୱାରା ମଞ୍ଜୁର କରାଯାଇଥିବା ନିମ୍ନୋକ୍ତ ଅନୁଦାନ ଓ ସମ୍ପର୍କୀୟ 'ମାନକ' ଏକ ଉଦାହରଣ ।

*"ସଫଳତା । ଭାଗବତ ନନ୍ଦିବର୍ଦ୍ଧନଙ୍କ ଉପରେ ବିଜୟ ହାସଲ କରିଛନ୍ତି । ଗୁପ୍ତବଂଶର ପ୍ରଥମ ଦେଦୀପ୍ୟମାନ ମହାରାଜ ଘଟୋତ୍କଚ ଉପସ୍ଥିତ ଅଛନ୍ତି । ତାଙ୍କର ଦୀପ୍ତିମନ୍ତ ସୁପୁତ୍ର ପ୍ରଥମ ଚନ୍ଦ୍ରଗୁପ୍ତ । ତାଙ୍କର ବିଚକ୍ଷଣ ପୁତ୍ର ହେଲେ ରାଣୀ କୁମାରଦେବୀଙ୍କ ଗର୍ଭସମ୍ଭୂତ ମହାରାଜାଧିରାଜ ସମୁଦ୍ରଗୁପ୍ତ । ସେ ହେଉଛନ୍ତି ଅନେକ ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିଥିବା ଲିଚ୍ଛବି ବଂଶର କନ୍ୟାଙ୍କର ପୁତ୍ର । ତାଙ୍କର ବିଚକ୍ଷଣ ପୁତ୍ର ହେଉଛନ୍ତି ମହାରାଜାଧିରାଜ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଯାହାଙ୍କୁ ସେ ଆନ୍ତରିକ ଭାବେ ସମର୍ଥନ କରନ୍ତି । ସେ ହେଉଛନ୍ତି ଭାଗବତଙ୍କର ଜଣେ ପରମ ଭକ୍ତ ଏବଂ ଧରାପୃଷ୍ଠରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା । ସେ ସମସ୍ତ ରାଜାଙ୍କର ମୂଳୋତ୍ପାଟନ କରିଛନ୍ତି । ତାଙ୍କର ଖ୍ୟାତି ଚାରି ମହାସାଗରର ଜଳ ଆସ୍ୱାଦନ କରିଛି । ସେ ହଜାର ହଜାର କୋଟି ଗୋଦାନ ଏବଂ ସୁବର୍ଣ୍ଣ ଦାନ କରିଛନ୍ତି ।*

*ତାଙ୍କର ଦେଦୀପ୍ୟମତି କନ୍ୟା ପ୍ରଭାବତୀ ଗୁପ୍ତ ଧାରଣ ଗୋତ୍ର ସମ୍ଭୂତ । ସେ ପୁଣି ନାଗବଂଶଜ ରାଣୀ କୁବେରନାଗଙ୍କ ଗର୍ଭରୁ ଜାତ । ସେ ଭାଗବତଙ୍କର ପରମ ଭକ୍ତ । ସେ ଥିଲେ ଦେଦୀପ୍ୟମାନ ବକଟକ ମହାରାଜ ଦ୍ୱିତୀୟ ରୁଦ୍ରସେନଙ୍କ ପାଟରାଣୀ । ସେ ହେଲେ ଦୀପ୍ତିମନ୍ତ ଦିବାକର ସେନଙ୍କର ମାତା । ନିଜର ଉତ୍ତମ ସ୍ୱାସ୍ଥ୍ୟ ବିଷୟରେ ଘୋଷଣା କଲା ଉତ୍ତାରୁ ସେ ବିଲାବନକର ପୂର୍ବକୁ, ଶ୍ରୀର୍ଷଗ୍ରାମର ଦକ୍ଷିଣକୁ, କଦପିଞ୍ଜନର ପଶ୍ଚିମକୁ ସିଦିବିବାରକର ଉତ୍ତରକୁ ଅବସ୍ଥିତ ସୁପ୍ରତିଷ୍ଠ ଅହର ଅନ୍ତର୍ଗତ ଦଂଗୁନା ଗ୍ରାମର ଗୃହସ୍ଥ ଗ୍ରାମବାସୀ ଏବଂ ବ୍ରାହ୍ମଣମାନଙ୍କୁ ନିମ୍ନମତେ ଆଦେଶ ପ୍ରଦାନ କରୁଅଛନ୍ତି : ଆପଣମାନଙ୍କୁ ଗୋଚର ଥାଉ କି କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦ୍ୱାଦଶ ଦିବସରେ ଆମର ଧାର୍ମିକ ଉନ୍ନତି ଦୃଷ୍ଟେ ଭାଗବତ ଭକ୍ତ ଆଚାର୍ଯ୍ୟ ଚନାଲସ୍ୱାମୀଙ୍କୁ ପାଣି ଟେକି ଏହି ଗ୍ରାମ ଦାନ କରୁଅଛୁ । ଭାଗବତଙ୍କ ପାଦଚିହ୍ନ ଉଦ୍ଦେଶ୍ୟରେ ସମର୍ପିତ ଏହି ଗ୍ରାମ ପୂର୍ବରୁ ଦାନ କରାଯାଇ ନ ଥିଲା । ତାଙ୍କର ଆଦେଶକୁ ସମ୍ମାନର ସହ ଶିରୋଧାର୍ଯ୍ୟ କରିବାଲାଗି ତୁମମାନଙ୍କୁ ଆଦେଶ ଦିଆଗଲା ।*

*ପୂର୍ବ ରାଜାଙ୍କ ଅନୁମୋଦନ ମାଧମରେ ଚତୁର୍ବିଦ୍ୟ ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ଅଗ୍ରହାର ଅନୁଦାନ ପରି ଏ କ୍ଷେତ୍ରରେ ନିମ୍ନୋକ୍ତ ରିହାତି ଉପଲବ୍‌ଧ ହେବ । ଏ ଗ୍ରାମକୁ ସୈନ୍ୟ, ସିପାହୀ ପ୍ରବେଶ କରିବେ ନାହିଁ । ପରିଭ୍ରମଣକାରୀ ଅଧିକାରୀମାନଙ୍କୁ ଏଠାରୁ ଘାସ, କୋଇଲା କିମ୍ବା ନିଭୃତ ଆସନ ମିଳିବ ନାହିଁ । ଏମାନଙ୍କୁ ମଦ୍ୟ କିଣା ଏବଂ ଲୁଣ ମରାରେ କର ଛାଡ଼ କରାଯିବ । ଖଣି ଏବଂ ଖଜୁରିଗଛ ବ୍ୟବହାର ନିଷ୍କର କରାଯିବ, ଫୁଲ ଏବଂ କ୍ଷୀର ଯୋଗାଣ କ୍ଷେତ୍ରରେ ରିହାତି ମିଳିବ । ଗୁପ୍ତ ଧନ, ସଞ୍ଚିତ ଧନ ଏବଂ ପ୍ରମୁଖ ତଥା ଗୌଣ ଟିକସରେ ଏମାନଙ୍କର ଅଧିକାର ରହିବ ।*

*ଏହି ଅନୁଦାନକୁ ଭବିଷ୍ୟତର ରାଜାମାନେ ବଜାୟ ରଖିବେ । ଯଦି କେହି ଆମର ପୁରୁଖାମାନଙ୍କର ଅବମାନନା କରିଛି ବୋଲି ତା ବିରୁଦ୍ଧରେ ବ୍ରାହ୍ମଣମାନେ ଅଭିଯୋଗ କରିବେ, ତେବେ ତାକୁ ଦଣ୍ଡିତ କରାଯିବ ଏବଂ ତା ଉପରେ ଜୋରିମାନା ଧାର୍ଯ୍ୟ କରାଯିବ । ଏହି ଅଧିନିୟମ ତ୍ରୟୋଦଶ ରେନାଲ୍ (Regnal) ବର୍ଷରେ ଲେଖାଗଲା ଏବଂ ଚକ୍ର ଦାସଙ୍କ ଦ୍ୱାରା ଖୋଦିତ ହେଲା ।"*

–The Poona Plates of Prabhavatigupta in V.V. Mirashi (ed.) *Inscriptions of the Vakatakas*, CII, V.P.5 ff

ଭୂରାଜସ୍ୱ ରାଜ୍ୟ ଆୟର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଥିଲା । ବସ୍ତୁତଃ ଏହା ଉତ୍ପାଦର ଏକଷଷ୍ଠାଂଶ, ବେଳେବେଳେ ଏକଚତୁର୍ଥାଂଶ ପରିମାଣର ଥିଲା । ଏକଷଷ୍ଠାଂଶ ଏକ ପାରମ୍ପରିକ ହିସାବ ଥିଲା । ସଂସାର ତ୍ୟାଗୀଙ୍କ ବୈରାଗ୍ୟରୁ ମଧ୍ୟ ରାଜାଙ୍କୁ ଏହା ପ୍ରାପ୍ତ ହେଉଥିଲା

ବୋଲି କୁହାଯାଉଥିଲା । ରାଜସ୍ୱର ପରିମାଣରେ ପରିବର୍ତ୍ତନ ଅନ୍ୟାନ୍ୟ ଟିକସ ଉପରେ ନିର୍ଭରଶୀଳ ଥିଲା । କୃଷି, ଜଳସେଚନ ସୁବିଧା ଭଳି କ୍ଷେତ୍ରରେ ଅନ୍ୟାନ୍ୟ ଟିକସ ଲାଗୁ ହେଉଥିଲା । ଜମି ଅନୁଦାନ ବୃଦ୍ଧି ପାଇବା ସହିତ ରାଷ୍ଟ୍ରର ରାଜସ୍ୱରେ କିଛିଟା କ୍ଷତି ହୋଇଥିବ । ମାତ୍ର ପ୍ରଚଳିତ ବ୍ୟବସ୍ଥାରେ ଅନ୍ୟ ପ୍ରକାରର କ୍ଷତିପୂରଣ ମଧ୍ୟ ରହିଥିଲା । ଅନୁଦାନକାରୀମାନଙ୍କ ମାଧ୍ୟମରେ ସମର୍ଥନର ବଳୟ ସୃଷ୍ଟିହେବା, ଦୂରବର୍ତ୍ତୀ ଅଞ୍ଚଳକୁ ଶାସକ ବଂଶର ବୈଧତା ବ୍ୟାପ୍ତ ହେବା, ଅନୁଦାନରେ ଦିଆଯାଇଥିବା ପତିତଭୂମି ମାଧ୍ୟମରେ ରାଷ୍ଟ୍ରର ବିନାଖର୍ଚ୍ଚରେ ନୂଆ ଚାଷୋପଯୋଗୀ ଜମି ସୃଷ୍ଟିହେବା (ଗଙ୍ଗାର ନିମ୍ନ ଅବବାହିକାର ପୂର୍ବକୁ ଏଭଳି ଘଟିଛି) ଇତ୍ୟାଦି ହେଲେ କ୍ଷତିପୂରଣର ରୂପରେଖ ସୂଚକ ।

ସବୁ ସମୟ ପରି ଏ ସମୟରେ ମଧ୍ୟ ଭୂମି ପରିମାପରେ ବିବିଧତା ଥିଲା । ହାତ, ବାହୁ, କହୁଣୀ, ଲଙ୍ଗଳ ଇତ୍ୟାଦିର ଦୈର୍ଘ୍ୟ ଆଧାରରେ ପରିମାପ ଲାଗି ବିଭିନ୍ନ ପଦ ବ୍ୟବହାର କରାଯାଉଥିଲା । ଆଉ ଏକ ପରିମାପ ବ୍ୟବସ୍ଥାରେ ବ୍ୟବହାର କରାଯାଉଥିଲା । ତାହା ହେଲା ନିର୍ଦ୍ଦିଷ୍ଟ ପରିମାଣର ବିହନ ବା ନିର୍ଦ୍ଦିଷ୍ଟ ସମୟରେ ବଳଦଙ୍କ ଦ୍ୱାରା ଚଷାଯାଉଥିବା ଜମିର ପରିମାଣକୁ ଆଧାର କରି ଏକକ ନିର୍ଣ୍ଣୟ ହେଉଥିଲା । ଏ ଧରଣର ପରିମାଣକୁ କୁଲ୍ୟବପ, ଦ୍ରୋଣବପ, ନିବର୍ତ୍ତନ ଆଦି କୁହାଯାଉଥିଲା । ଏକ ନିବର୍ତ୍ତନ କହିଲେ କେଉଁଠି ଏକ ଏକରରୁ କମ୍ ତ କେଉଁଠି ଚାରି ଏକରକୁ ବୁଝାଏ । ଅଧିକାଂଶତଃ, ଏକ ଏକରକୁ ନିବର୍ତ୍ତନ କୁହାଯାଉଥିଲା ଏବଂ ଛଅ ନିବର୍ତ୍ତନ ଜଣେ ଗୃହସ୍ଥ ଲାଗି ଯଥେଷ୍ଟ ବୋଲି ମନେ କରାଯାଉଥିଲା । ଆଉ କେତେକ ସ୍ଥଳରେ ଅନୁଦାନର ପରିମାଣ ବ୍ୟାପକ ଥିଲା । ଜଣେ ବଣିକ ଗୋଟିଏ ଗ୍ରାମର ଅର୍ଦ୍ଧେକ କିଣି ବ୍ରାହ୍ମଣକୁ ଦାନ କଲେ – ଏହି ବକ୍ତବ୍ୟରୁ ପରିମାଣର ବ୍ୟାପକତା ଅନୁମେୟ । ଯଦି ଏହି ବାକ୍ୟଟିକୁ ଆକ୍ଷରିକ ଭାବେ ସତ୍ୟ ବୋଲି ଧରାଯାଏ ତେବେ ଅଧିକାର ଓ କୃତଜ୍ଞତା ଦୃଷ୍ଟିକୋଣରୁ ଏହା ଅନେକ ଜଟିଳ ମନେହେବା ସ୍ୱାଭାବିକ । ଜମିର ମୂଲ୍ୟ ପ୍ରାୟତଃ ବଦଳୁଥିଲା । ପତିତ ଜମି ତୁଳନାରେ ଜଳସେଚନ ସୁବିଧା ଥିବା ଚାଷଜମିର ଦର ଅଧିକ ହେଉଥିଲା । ଗୋଟିଏ କ୍ଷେତ୍ରରେ ବଙ୍ଗ ପ୍ରଦେଶରେ ଖଣ୍ଡେ ଜମିର ମୂଲ୍ୟ ଥିଲା ଚାରି ସ୍ୱର୍ଣ୍ଣମୁଦ୍ରା (ଦିନାର୍) ଯାହା ଚଉଷଠି ରୌପ୍ୟମୁଦ୍ରା ସହ ସମମୂଲ୍ୟ ସମ୍ପନ୍ନ ଥିଲା । କୁହାଯାଏ ଯେ, ଏହି ଜମିର ପରିମାଣ ପ୍ରାୟ ୧୨ରୁ ୧୬ ଏକର । ହେଲେ ଆକଳନରେ ଭିନ୍ନତା ରହୁଥିଲା । ଧାର୍ମିକ କଲ୍ୟାଣ ଉଦ୍ଦେଶ୍ୟରେ ଦାନ କରିବା ନିମନ୍ତେ ଜମି କିଣାଯିବା କଥା ଅଭିଲେଖରେ ଉଲ୍ଲେଖ ଅଛି । ତେବେ ଆଉ କେତେକ ପାଠରେ ନିବେଶ ଉଦ୍ଦେଶ୍ୟରେ ଜମି କିଣାଯିବାର ଉଦାହରଣ ମଧ୍ୟ ରହିଛି ।

## ନଗର ଜୀବନ

ରାଜ୍ୟର ରାଜସ୍ୱ ଭୂମି ଏବଂ ବାଣିଜ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରୁ ଆସୁଥିବା ଟିକସ ଉପରେ ନିର୍ଭର କରୁଥିଲା । ଗୋଟିଏ ଶକ୍ତିଶାଳୀ ରାଜ୍ୟ ବିଭିନ୍ନ ପ୍ରକାର କାର୍ଯ୍ୟକଳାପର ପୃଷ୍ଠପୋଷକତା କରୁଥିବାରୁ ପରିଚାଳନା ପ୍ରକ୍ରିୟା ଖର୍ଚ୍ଚବହୁଳ ଥିଲା । ତେଣୁ ଅର୍ଥନୀତି ଉପରେ ଚାପ ପଡ଼ିବା ସ୍ୱାଭାବିକ । ପରବର୍ତ୍ତୀ କାଳର ଗୁପ୍ତ ମୁଦ୍ରାର ଅବମୂଲ୍ୟାୟନ ଫଳରେ ଆର୍ଥିକ ସଂକଟ ଉପୁଜିଥିବା ସମ୍ପର୍କରେ ବିବରଣୀ ଅଛି । ହୁଏନ୍‌ସାଂଙ୍କ ବିବରଣୀ ମୁତାବକ, ହର୍ଷ ନିଜ ରାଜ୍ୟର ସମୁଦାୟ ଆୟକୁ ଚାରିଭାଗରେ ବିଭକ୍ତ କରିଥିଲେ : ସରକାରୀ ଖର୍ଚ୍ଚ ଲାଗି ଏକଚତୁର୍ଥାଂଶ, ଚାକିରିଆମାନଙ୍କ ଦରମା ଲାଗି ଏକଚତୁର୍ଥାଂଶ, ବୌଦ୍ଧିକ ଉତ୍କର୍ଷକୁ ପୁରସ୍କୃତ କରିବାଲାଗି ଏକଚତୁର୍ଥାଂଶ ଏବଂ ଉପହାର ଲାଗି ଶେଷ ଚତୁର୍ଥାଂଶ ଅର୍ଥ ବ୍ୟବସ୍ଥା ରହିଥିଲା । ତେବେ ଏ ପ୍ରକାରର ଖର୍ଚ୍ଚ ବିଭାଜନ ଯେତେ ଆଦର୍ଶଭିତ୍ତିକ ହେଲେ ମଧ୍ୟ ଅର୍ଥନୈତିକ ଦୃଷ୍ଟିକୋଣରୁ ବାସ୍ତବରେ ସମ୍ଭବ ହୋଇ ନ ଥିବ ବୋଲି ମନେକରାଯାଏ ।

ଯୁକ୍ତି ଦର୍ଶାଯାଏ ଯେ ଏ ସମୟ ବେଳକୁ ନଗର କେନ୍ଦ୍ରଗୁଡ଼ିକ ଅବକ୍ଷୟମୁଖୀ ହୋଇପଡ଼ିଥିଲେ । ଗୁପ୍ତକାଳର ଅର୍ଥନୀତିର ସାମନ୍ତବାଦୀ ଚରିତ୍ର ଆଡ଼କୁ ଏଥିପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରାଯାଏ । ସହରଗୁଡ଼ିକ ଯେ କେବଳ ବିଲୟମୁଖୀ ହୋଇଥିଲେ ତାହା ନୁହେଁ ଅନେକ ସ୍ଥାନରେ ବାଣିଜ୍ୟିକ କାର୍ଯ୍ୟ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା । କୁଶାଣ ସମୟର ଖନନରୁ ପରିସ୍ଥିତି ଆଉ ଟିକେ ଉନ୍ନତ ଥିବାର ସୂଚନା ମିଳେ । ଉପଦ୍ୱୀପ ଅଞ୍ଚଳରେ ନୌବାଣିଜ୍ୟ ବଳବତ୍ତର ଥିଲା, ହେଲେ ଏହାର ପ୍ରଭାବ ଖୁବ୍ ସୀମିତ ଥିଲା । ହୁନ୍‌ମାନେ ରୋମ ସାମ୍ରାଜ୍ୟ ଆକ୍ରମଣ କଲାପରେ, କେବଳ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ନୁହେଁ, ଭୂମଧ୍ୟ ସାଗରର ପୂର୍ବାଞ୍ଚଳରେ ଥିବା ବାଣିଜ୍ୟିକ ପରିପଥକୁ ନେଇ ସମସ୍ୟା ସୃଷ୍ଟି ହୋଇଥିବ । ସହରଗୁଡ଼ିକର ସୁପରିଚାଳନା ନିମନ୍ତେ କୃଷି ଉତ୍ପାଦର ଅଭାବ ଲାଗି ଜଳବାୟୁ ପରିବର୍ତ୍ତନ, ପରିବେଶର ଶୁଷ୍କତା, ଗ୍ରାମାଞ୍ଚଳରେ ଘଟୁଥିବା ନାନାଦି ସମସ୍ୟା ତଥା ଉର୍ବରତା ହ୍ରାସ ଇତ୍ୟାଦିକୁ କାରଣ ରୂପେ ନିଆଯାଏ । ବୃଷ୍ଟି ହ୍ରାସ ତଥା ନିର୍ବନିକରଣର କୁପ୍ରଭାବ କୃଷିଭିତ୍ତିକ ଉତ୍ପାଦନକୁ ପ୍ରଭାବିତ କରିଥିବ । ଫଳରେ ସହର ଲାଗି ଗ୍ରାମାଞ୍ଚଳରୁ ମିଳୁଥିବା କୃଷିଭିତ୍ତିକ ସମର୍ଥନ ଦୁର୍ବଳ ହୋଇପଡ଼ିଥିବ । ଏହି ମିଳିତ ପରିବର୍ତ୍ତନର ଆଧାରରେ ସହରାଞ୍ଚଳର ଅବକ୍ଷୟ ପ୍ରସଙ୍ଗକୁ ଆଲୋଚନା କରିହେବ ।

ଲିଖିତ ତଥା ପ୍ରତ୍ନତାତ୍ତ୍ୱିକ ତଥ୍ୟକୁ ନିରୀକ୍ଷଣ କରି ସହର ଜୀବନର ଆକଳନ କରିବାରେ ସମସ୍ୟା ରହିଛି । ସହର ଜୀବନରେ ଧନସମ୍ପଦ ଜନିତ ସମୃଦ୍ଧି ପ୍ରତିଫଳିତ ହେଉଥିବାରୁ ମନକୁ ତା ସମ୍ପର୍କରେ ଏକ ଉତ୍ତମ ଚିତ୍ର ଆସେ । ମାତ୍ର ଗ୍ରାମୀଣ ଜୀବନର

ଚିତ୍ର ସାଧାରଣ ଲୋକଙ୍କ ଜୀବନ ଉପରେ ପର୍ଯ୍ୟବେଶିତ, ତେଣୁ ଭିନ୍ନ । ଉପଲବ୍ଧ ଲିଖିତ ତଥ୍ୟରୁ ବିଭିନ୍ନ ସ୍ତରର ସାମାଜିକ ଅବସ୍ଥା ସମ୍ପର୍କରେ ସୂଚନା ମିଳେ, ତେବେ ପ୍ରତ୍ନତାତ୍ତ୍ୱିକ ତଥ୍ୟରୁ ଅଧିକ କିଛି ନିର୍ଣ୍ଣୟ ଆହରଣ କରିବା ଲାଗି ଆମକୁ ଆନୁଭୂମିକ ଖନନକୁ ଅପେକ୍ଷା କରିବାକୁ ପଡ଼ିପାରେ । ପୂର୍ବରୁ ଯୁକ୍ତି ଉପସ୍ଥାପନ କରାଯାଉଥିଲା ଯେ ନଗରବାଦର ପୁନରାବର୍ତ୍ତନ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମ୍ଭବ ହୋଇ ନ ଥିଲା । କିନ୍ତୁ ନବମ ଓ ଦଶମ ଶତାବ୍ଦୀରେ ସହର ଥିବାର ପ୍ରମାଣ ମିଳିବା ପରେ ଏହି କାଳଖଣ୍ଡକୁ କମ୍ କରିଦିଆଯାଇଛି । ଏହି ଅବକ୍ଷୟ ସାରା ଉପମହାଦେଶରେ ଘଟିଥିଲା ନା କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସୀମିତ ଥିଲା ଏ ପ୍ରଶ୍ନ ମଧ୍ୟ ଏକ ସମସ୍ୟା ସୃଷ୍ଟି କରେ । ଗାଙ୍ଗେୟ ସମତଳରେ ନଗରଗୁଡ଼ିକର ଅବକ୍ଷୟର ପ୍ରମାଣ ଲକ୍ଷଣୀୟ ଭାବେ ଆଲୋଚିତ ହୋଇଛି । ମାତ୍ର ଅନ୍ୟ କେତେକ ଅଞ୍ଚଳରେ ଘଟିଥିବା ଏ ଧରଣର ଅବକ୍ଷୟ ସେତେ ବେଶି ଆଲୋଚିତ ହୋଇପାରି ନାହିଁ ।

କେତେକ ସହରର ବିଲୟ ଘଟିଛି । ମାତ୍ର ଏହା ଏକ ଉପମହାଦେଶୀୟ ସମସ୍ୟା ନ ଥିଲା । ତେବେ ବିଲୟର କାରଣ ଭିନ୍ନ ଭିନ୍ନ କ୍ଷେତ୍ରରେ ଅଲଗା । ପରିବେଶ ଜନିତ ପରିବର୍ତ୍ତନ ସହିତ ଆର୍ଥିକ ପରିବର୍ତ୍ତନ ମଧ୍ୟ ଏହାର ଅନ୍ୟତମ କାରଣ ହୋଇପାରେ । ଯଦି ନୂତନ ସମ୍ବଳର ବିନିଯୋଗ ଆରମ୍ଭ ହୋଇଥିବ ଏବଂ ବିବରଣର ନୂତନ ବିନିମୟ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିବ ତେବେ ଏକଦା ଗୁରୁତ୍ୱପୂର୍ଣ୍ଣ ସ୍ଥାନକୁ ଏଡ଼ାଇ ବାଣିଜ୍ୟ ପଥ ଅନ୍ୟ ଆଡ଼କୁ ନିର୍ଦ୍ଦେଶିତ ହେବା ସ୍ୱାଭାବିକ । ପୂର୍ବ ଗାଙ୍ଗେୟ ସମତଳରେ ନୂତନ ସହରମାନ ଗଢ଼ିଉଠିଲା । ଅନ୍ୟତ୍ର କାନ୍ୟକୁବ୍ଜ/କନୌଜ ଏକ ପ୍ରଭାବଶାଳୀ କୃଷିଭିତ୍ତିକ କେନ୍ଦ୍ର ରୂପେ ଗଢ଼ିଉଠିଲା, ଯାହା ସହରର ଅଭିବୃଦ୍ଧି ଲାଗି ସହାୟକ ଥିଲା । କୃଷିଜାତ ଦ୍ରବ୍ୟର ବିପଣନ ଲାଗି ଏକ ଅଧିକ୍ ବିନିମୟକ୍ଷମ କେନ୍ଦ୍ରର ଆବଶ୍ୟକତା ଯୋଗୁଁ ଏହା ସମ୍ଭବ ହେଲା । ବକଟକ କାଳରେ ଦାକ୍ଷିଣାତ୍ୟର ପୌନାର ବିକଶିତ ହୋଇଉଠିଲା । ବାଣିଜ୍ୟିକ ଗୁରୁତ୍ୱ ଦୃଷ୍ଟିକୋଣରୁ ବଲ୍ଲଭୀ ବିକଶିତ ହେଲା । ବସ୍ତୁତଃ ଏହା ଆରବସାଗରୀୟ ବାଣିଜ୍ୟ ସହ ଜଡ଼ିତ ହୋଇଉଠିଲା । ଆରବ ଉପଦ୍ୱୀପର ସ୍ୱଚ୍ଛଳ ବ୍ୟବସାୟୀମାନେ ସାଗରର ସେପାରିକୁ ବ୍ୟବସାୟ ସଂପ୍ରସାରଣ କରିବାକୁ ଚାହୁଁଥିଲେ ।

ଏହା ଭିତରେ ଭାରତୀୟ ବଣିକମାନେ ମଧ୍ୟ-ଏସିଆ ଏବଂ ଦକ୍ଷିଣ-ପୂର୍ବ ଏସିଆରେ ଅଧିକ ସଫଳକାମ ହୋଇ ଉଠୁଥାନ୍ତି । ଉଭୟ ଅଞ୍ଚଳରେ ଭାରତୀୟ ବାଣିଜ୍ୟ କେନ୍ଦ୍ର ପ୍ରତିଷ୍ଠା ଫଳରେ ପ୍ରାଥମିକ ଅବସ୍ଥାରେ ଆୟ ଏହି ଆଡ଼େ ନିବେଶିତ ହୋଇଥିଲା । ଭାରତୀୟ ମଧ୍ୟସ୍ଥିମାନେ ଏ ଅଞ୍ଚଳରେ ଉନ୍ନତି କରିବା ପର୍ଯ୍ୟନ୍ତ, ଭାରତୀୟ ନଗରଗୁଡ଼ିକରେ ସମ୍ପଦ ହ୍ରାସ ପାଇଁ ଉପରୋକ୍ତ କାରଣ ହିଁ ଦାୟୀ ଥିଲା । ଉପମହାଦେଶର କେତେକ ଭାଗରେ

ପୂର୍ବକାଳରୁ ଆରମ୍ଭ ହୋଇଥିବା ଅର୍ଥନୈତିକ ପ୍ରଗତିର ଗୁପ୍ତଯୁଗ ଥିଲା ଚୂଡ଼ାନ୍ତ ପର୍ଯ୍ୟାୟ । ଷଷ୍ଠ ଶତାବ୍ଦୀର ଅନ୍ୟ ଭାଗରେ ଅନ୍ୟ ଲୋକମାନେ ବାଣିଜ୍ୟିକ ଯୋଗସୂତ୍ର ସ୍ଥାପନ କଲେ । ପଶ୍ଚିମ ଉପକୂଳରେ ବଣିକମାନେ ସକ୍ରିୟ ହୋଇଉଠିଲେ, ଅନ୍ୟପକ୍ଷରେ ଆରବ ବଣିକମାନଙ୍କ ସହ ଯୋଗାଯୋଗ ବିନିମୟର ଏକ ନୂତନ ରୂପରେଖ ନିର୍ଣ୍ଣୟ କଲା ।

ବାଣିଜ୍ୟ ସମ୍ପଦର ଉତ୍ସ ଥିଲା ଖଣିଜ ତଥା ପ୍ରାଣୀଜ ଓ ଉଦ୍ଭିଦଜାତ ଉତ୍ପାଦ । କାରିଗରୀ ଦ୍ୱାରା ଏଗୁଡ଼ିକୁ ପଣ୍ୟଦ୍ରବ୍ୟରେ ପରିଣତ କରାଯାଉଥିଲା । କର୍ଣ୍ଣାଟକରୁ ସୁନା ଖନନ କରାଯାଉଥିଲା, ମାତ୍ର ଦୂରବର୍ତ୍ତୀ ଉତ୍ତରାଞ୍ଚଳର ପାର୍ବତ୍ୟ ଝରଣାରେ ଏହାକୁ ଧୌତ କରାଯାଉଥିଲା । ଗୁପ୍ତଯୁଗର ସ୍ୱର୍ଣ୍ଣମୁଦ୍ରାଗୁଡ଼ିକରେ ଉଚ୍ଚମାନର କାରିଗରୀ ଓ ଚମତ୍କାର ଅଳଙ୍କରଣର ପ୍ରମାଣ ମିଳେ, ପ୍ରତ୍ୟେକ ସ୍ୱର୍ଣ୍ଣମୁଦ୍ରା ସତେଯେପରି ଏକ କ୍ଷୁଦ୍ର ସ୍ଥାପତ୍ୟ । ଏହି ମୁଦ୍ରାରୁ କେତେକ ସଞ୍ଚିତ ଥିବା ଅବସ୍ଥାରେ ଓ ଆଉ କେତେକ ତିଆରି ହେବା ସ୍ଥିତିରେ ରହିଥିବା ଅବସ୍ଥାରେ ଉଦ୍ଧାର କରାଯାଇଛି । ଏଥିରୁ ଅନୁମାନ କରାଯାଏ ଯେ ଏଗୁଡ଼ିକୁ ବାଣିଜ୍ୟିକ ଉଦ୍ଦେଶ୍ୟ ପରିବର୍ତ୍ତେ ଉପହାର ଦେବାଲାଗି ତିଆରି କରାଯାଉଥିଲା । ତେବେ ସେ ଯାହାହେଉ ସେମାନେ ପ୍ରାରମ୍ଭିକ ଅବସ୍ଥାରେ କୁଶାଣ କାଳର ଓଜନ ମାନକ ବ୍ୟବହାର କରୁଥିଲେ ଏବଂ ସମ୍ଭବତଃ ମୁଦ୍ରାଗୁଡ଼ିକୁ କେନ୍ଦ୍ର-ଏସିଆ ଏବଂ ଉତ୍ତର ଭାରତରେ ବାଣିଜ୍ୟ ଉଦ୍ଦେଶ୍ୟରେ ବ୍ୟବହାର କରୁଥିଲେ । ଘୋଡ଼ା ଏବଂ ରେଶମ ବ୍ୟବସାୟ ଲାଗି ଉଚ୍ଚ ମୂଲ୍ୟ ସମ୍ବଳିତ ମୁଦ୍ରା ଉପଯୋଗୀ ସାବ୍ୟସ୍ତ ହେଉଥିଲା ଏବଂ ଏକ ଇଣାଶୁଣା ଓଜନ ମାନକ ବାଣିଜ୍ୟ ଲାଗି ସହାୟକ ହେଉଥିଲା । ଯଦିଓ ଭାରତର ମୁଦ୍ରା ଆଳଙ୍କାରିକମାନଙ୍କୁ ନକ୍ସା ଚିତ୍ରଣର କଳା ଆକୃଷ୍ଟ କରି ନ ଥିଲା ତଥାପି ଗୁପ୍ତଯୁଗର ମୁଦ୍ରାଗୁଡ଼ିକରେ ଶାସକମାନଙ୍କ କାର୍ଯ୍ୟକଳାପର ନାନ୍ଦନିକ ଛାପ ସମ୍ବଳିତ ସୂଚନା ଦେଖିବାକୁ ମିଳେ । ତନ୍ମଧ୍ୟରୁ କେତେକରେ ରାଜତ୍ୱର ପ୍ରତୀକ ପ୍ରଦର୍ଶିତ ହୋଇଛି, ଯେଉଁଗୁଡ଼ିକ ବର୍ତ୍ତମାନ କେବଳ ପ୍ରାଚୀନ କର୍ମକାଣ୍ଡ । ମୋହରଗୁଡ଼ିକ ସୂଚନାର ଆଉ ଏକ ଉତ୍ସ ଥିଲେ । ଏଗୁଡ଼ିକରେ କ୍ରମତାଲିକା ରହୁଥିଲା ଏବଂ ଏଗୁଡ଼ିକ ତମ୍ବାପଟା ଅଭିଲେଖ ସହସଂଯୋଜିତ ହୋଇ ରହୁଥିଲେ ।

ଘରେ ବ୍ୟବହାର୍ଯ୍ୟ ଦ୍ରବ୍ୟ, ବାସନକୁସନ ଓ ଅସ୍ତ୍ରଶସ୍ତ୍ର ନିର୍ମାଣରେ ବ୍ୟବହୃତ ହେଉଥିବାରୁ ତମ୍ବା ଏବଂ ଲୁହାର ଖନନ ଜାରି ରହିଥିଲା । ଲୁହାର ପରିଶୋଧନ ଫଳରେ ଇସ୍ପାତର ବ୍ୟବହାର ବ୍ୟାପକ ହେଲା । ଏ ସମୟର ସବୁଠାରୁ ପ୍ରଭାବିତ କଲାଭଳି ଧାତବ କୀର୍ତ୍ତି ହେଲା ଏକ ଲୌହ ସ୍ତମ୍ଭ ଯାହା ବର୍ତ୍ତମାନ ଦିଲ୍ଲୀର ମେହେରୌଲିଠାରେ ରଖାଯାଇଛି । 23 ଫୁଟ ଉଚ୍ଚତା ବିଶିଷ୍ଟ ଏହି ସ୍ତମ୍ଭ ଉତ୍କୃଷ୍ଟ ଧାତୁରେ ନିର୍ମିତ ଯେଉଁଥିରେ ସହଜରେ କଳଙ୍କି ଲାଗେ ନାହିଁ । ଏଥିରେ ଚନ୍ଦ୍ର ନାମ ଧେୟ ଜଣେ ରାଜାଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି,

ଯାହାଙ୍କୁ କେହି କେହି ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବୋଲି ଚିହ୍ନିତ କରନ୍ତି । ସମାନଭାବେ ଆକର୍ଷଣୀୟ ହେଉଛି ତମ୍ବା ନିର୍ମିତ ପୂର୍ଣ୍ଣାବୟବ ବୁଦ୍ଧ ମୂର୍ତ୍ତି । ଦୁଇ ଭାଗରେ ବିଭକ୍ତ ଏହି ମୂର୍ତ୍ତି ଏବେ ବର୍ମିଂହାମ୍ ସଂଗ୍ରହାଳୟରେ ଅଛି । ଧନୀକମାନଙ୍କ ମଧ୍ୟରେ ପାଲିସ୍‌କରା ଧାତବ ଦର୍ପଣମାନ ମଧ୍ୟ ଲୋକପ୍ରିୟ ଥିଲା ।

ହାତୀଦାନ୍ତରେ ନିର୍ମିତ କାରୁକାର୍ଯ୍ୟ ଉଚ୍ଚସ୍ତରର ଥିଲା । ଏଥିରେ ଅଳଙ୍କାର ନିର୍ମାଣ ଲାଗି ସୂକ୍ଷ୍ମତା ଓ କୌଶଳ ପ୍ରଯୁକ୍ତ ହେଉଥିଲା । ଦୂରବର୍ତ୍ତୀ ବଜାରରେ ମୁକ୍ତାର ଚାହିଦା ଥିବାବେଳେ ପଶ୍ଚିମ ଭାରତରେ ମୁକ୍ତା ଚାଷ ଉତ୍କର୍ଷ ଲାଭ କରିଥିଲା । ସୂର୍ଯ୍ୟକାନ୍ତ ମଣି, କ୍ୱାର୍ଜ, ରଙ୍ଗପଥର, କାର୍‌ନେଲିଆନ, ନୀଳକାନ୍ତମଣି ଇତ୍ୟାଦି ମୂଲ୍ୟବାନ ପଥର କାଟିବା, ତାକୁ ମସୃଣ କରି ପ୍ରସ୍ତୁତ କରିବା ପ୍ରକ୍ରିୟା ମଧ୍ୟ ସୁଦୂରବର୍ତ୍ତୀ ବାଣିଜ୍ୟ ଲାଗି ସହାୟକ ଥିଲା । ଜପାମାଳି ପ୍ରସ୍ତୁତି କାର୍ଯ୍ୟ ଉଜ୍ଜୟିନୀ ଓ ଭୋକର୍‌ଦାନ ଇତ୍ୟାଦି ସହରରେ କରାଯାଉଥିଲା । ମୋହର ସବୁ ପଥର ଏବଂ ହାତୀଦାନ୍ତରୁ କଟାଯାଉଥିଲା, କେତେକ ମୋହର ତମ୍ବାରେ ଖୋଦିତ ହେଉଥିଲା । ଅଳ୍ପ କେତେକ ମୃଣ୍ମୟପାତ୍ରର କାର୍ଯ୍ୟ ମଧ୍ୟ ଆବିଷ୍କୃତ ହୋଇଅଛି । ପାତ୍ର ନିର୍ମାଣ ଏକ ମୌଳିକ କାରିଗରୀ ଥିଲା, ଯଦିଓ ସୁନ୍ଦର ତଥା ଚିକ୍କଣ କଳା ପାଲିସକରା ଦ୍ରବ୍ୟ ଆଉ ବ୍ୟବହୃତ ହେଉ ନ ଥିଲା । ଏହା ପରିବର୍ତ୍ତେ ଲାଲ ରଙ୍ଗର ପାତ୍ର ବ୍ୟବହାର କରାଯାଉଥିଲା, ଯାହାର ଗଢ଼ଣ ଧାତବ ତୁଲ୍ୟ ଥିଲା ।

ବୟନଶିଳ୍ପ ନିର୍ମିତ ସାମଗ୍ରୀ ଲାଗି ଘରୋଇ ସ୍ତରରେ ଏକ ବଡ଼ ବଜାର ଥିଲା । ଭାରତ ଭିତରେ ଉତ୍ତର ଓ ଦକ୍ଷିଣାଞ୍ଚଳ ମଧ୍ୟରେ ବସ୍ତ୍ର ବ୍ୟବସାୟ ଚାଲୁଥିଲା ଏବଂ ଏସୀୟ ବଜାରରେ ଭାରତୀୟ ବସ୍ତ୍ରର ଢେର୍ ଚାହିଦା ଥିଲା । ରେଶମ୍, ମସ୍‌ଲିନ୍, କ୍ୟାଲିକୋ, ଲାଇନେନ୍, ପଶମ ତଥା କାର୍ପାସ ଆଦି ବିପୁଳ ପରିମାଣରେ ଉତ୍ପାଦିତ ହେଉଥିଲା; ରେଶମ ବସ୍ତ୍ର ବୟନର ଏକ ପ୍ରମୁଖ କେନ୍ଦ୍ର ଥିଲା ପଶ୍ଚିମ ଭାରତ । ପରବର୍ତ୍ତୀ ସମୟରେ ଗୁପ୍ତ ଯୁଗରେ ରେଶମ ଉତ୍ପାଦନ କମିଗଲା, କାରଣ ପଶ୍ଚିମ ଭାରତର ରେଶମ ବସ୍ତ୍ର ବୟନକାରୀମାନଙ୍କ ମଧ୍ୟରୁ ଅନେକ ଦେଶ ଭିତରେ ଅନ୍ୟତ୍ର ଦେଶାନ୍ତରଣ କରି ଭିନ୍ନ ବୃତ୍ତି ଖୋଜିଲେ ।

ଦ୍ରବ୍ୟ ନିର୍ମାଣ ତଥା ବାଣିଜ୍ୟିକ କାର୍ଯ୍ୟକଳାପରେ ବ୍ୟବସାୟିକ ସଂଘ 'ଶ୍ରେଣୀ' (Guild)ର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । କେତେକ ବ୍ୟାପାରରେ ସେମାନେ ନିଜର ସ୍ୱାୟତ୍ତତା ବଜାୟ ରଖିଥିଲେ । ଉଦାହରଣ ସ୍ୱରୂପ, ଆଭ୍ୟନ୍ତରୀଣ ସଙ୍ଗଠନରେ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ନିୟମ କାର୍ଯ୍ୟକାରୀ ହେଉଥିଲା । ସ୍ଥାପତ୍ୟ ନିର୍ମାଣଠାରୁ ଆରମ୍ଭକରି ତେଲ ପେଡ଼ା ପର୍ଯ୍ୟନ୍ତ କାର୍ଯ୍ୟକୁ ଆନୁଷ୍ଠାନିକ ରୂପ ଦେବା ଏବଂ ବାଣିଜ୍ୟ ସଂଗଠନ ଆଧାରରେ ଏକ

ନିଗମ ଗଠନ କରିବା ଫଳରେ ଯେଉଁ ଲାଭ ମିଳୁଥିଲା ତାହା କେବଳ ବାଣିଜ୍ୟିକ କ୍ଷେତ୍ରରେ ସୀମିତ ନ ଥିଲା । ଏହି ବ୍ୟବସାୟୀ ସଂଘ ଏକ ନିର୍ଦ୍ଦିଷ୍ଟ ଜାତି ଭଳି ସମାଜକୁ ଆର୍ଥିକ ଓ ସାମାଜିକ ସହାୟତା ପ୍ରଦାନ କରୁଥିଲା । ବଣିକ ସଂଘ ପ୍ରତିନିଧି ଏବଂ ବଣିକମାନେ ନଗର ପ୍ରଶାସନ କମିଟିରେ ନିୟମିତ ସଦସ୍ୟ ରହିପାରୁଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ କୌଣସି ବୃତ୍ତିକୁ ତଳୁଆ କରି ଦେଖୁଥିବା ଧର୍ମଶାସ୍ତ୍ରର କର୍ତ୍ତୃତ୍ୱ ସବୁରି ଉପରେ ଚଳୁ ନ ଥିଲା । ଅର୍ଥାତ୍ ନଗର ଜୀବନ ତଥା ବାଣିଜ୍ୟିକ ବ୍ୟବସ୍ଥା ଉପରେ ଧର୍ମଶାସ୍ତ୍ର ଏତେ ଗୁରୁତ୍ୱ ପ୍ରଦାନ କରୁ ନ ଥିଲା । ନଗର ଜୀବନର ପ୍ରଶାସନ ସହ ଜଡ଼ିତ ରାଜକୀୟ ତଥା ନିଗମ ଅଧ୍ୟକ୍ଷମାନେ ସବୁ ସମୟରେ ବ୍ରାହ୍ମଣ୍ୟ ବିଧିବିଧାନ ମାନିନେଉ ନ ଥିଲେ । ଏହାର ମୂଳସୂତ୍ର ପ୍ରାକ୍ ଗୁପ୍ତଯୁଗରେ ନିହିତ ଥିଲା । ଶାସ୍ତ୍ରର ପାଠ ଓ ବାସ୍ତବ ଜୀବନ ମଧ୍ୟରେ ନିରନ୍ତର ଭାବେ ଏକ ଦ୍ୱନ୍ଦ୍ୱ ଚାଲିଥିଲା । ଏଥିଲାଗି ଜାତିର ଅପରିବର୍ତ୍ତନୀୟ କାର୍ଯ୍ୟ ସମ୍ବନ୍ଧରେ ଏକ ସରଳ ନିର୍ଣ୍ଣୟରେ ଉପନୀତ ହେବା ସମ୍ଭବପର ନ ଥିଲା ।

କେଉଁ ଉଦ୍ଦେଶ୍ୟ ଲାଗି ଜଣେ ଋଣ କରୁଛି, ତା ଉପରେ ସୁଧର ହାର ନିର୍ଭର କରୁଥିଲା । ଅତୀତରେ ଦରିଆପାରି ବ୍ୟବସାୟ ଉପରେ ଲାଗୁ ହେଉଥିବା ସୁଧର ହାର 20 ଶତକଡ଼ା କମାଇ ଦିଆଯାଇ ଥିବାରୁ ଦରିଆପାରି ବାଣିଜ୍ୟ ଉପରେ ଅଧିକ ଆସ୍ଥା ସୃଷ୍ଟି ହୋଇଥିବାର ପ୍ରମାଣ ମିଳେ । ଉଭୟ ପକ୍ଷର ସହମତିରେ ନିୟମ ସମ୍ମତ ସୁଧଠାରୁ ଅଧିକ ହାରର ସୁଧ ଧାର୍ଯ୍ୟ କରାଯାଇପାରୁଥିଲା । କିନ୍ତୁ ଏହି ପରିମାଣକୁ କ୍ୱଚିତ୍ ସମ୍ପୂର୍ଣ୍ଣ ମୂଳଠାରୁ ଅଧିକ ହେବାକୁ ଦିଆଯାଉଥିଲା । ସୁଧ ହାରରେ ହ୍ରାସରୁ ଜଣାଯାଏ ଯେ, ଅଧିକ ଦ୍ରବ୍ୟ ଉପଲବ୍ଧ ହେଉଥିଲା ଏବଂ ଲାଭର ପରିମାଣ ହ୍ରାସ ପାଇଥିଲା ।

ସମୁଦ୍ରଗୁପ୍ତଙ୍କର ପୂର୍ବ ଏବଂ ଦକ୍ଷିଣ ଅଭିଯାନ ତଥା ହର୍ଷଙ୍କର ବାରମ୍ବାର ଗସ୍ତ ଲାଗି ତଥା ମାଲ ପରିବହନ ପାଇଁ ଯଥାଯଥ ଗମନାଗମନ ବ୍ୟବସ୍ଥାର ଆବଶ୍ୟକତା ପଡ଼ିଥିବ । ସଡ଼କ ଉପରେ ବଳଦଗାଡ଼ି ଯିବା ସାଧାରଣ କଥା ଥିଲା । ଯଦି ରାସ୍ତା ଅଗମ୍ୟ ହୋଇଥାଏ ତେବେ ଜଙ୍ଗଲି ପ୍ରାଣୀମାନଙ୍କ (terrain pack) ସହାୟତା ନିଆଯାଉଥିଲା । ଘଞ୍ଚ ଜଙ୍ଗଲ ଅଞ୍ଚଳରେ ହାତୀମାନଙ୍କୁ କାମରେ ଲଗାଯାଉଥିଲା । ଗଙ୍ଗା, ନର୍ମଦା, ଗୋଦାବରୀ, କୃଷ୍ଣା ଏବଂ କାବେରୀ ପ୍ରଭୃତି ବୃହତ୍ତର ନଦୀଗୁଡ଼ିକର ନିମ୍ନାଞ୍ଚଳକୁ ଜଳପଥ ରୂପରେ ବ୍ୟବହାର କରାଯାଉଥିଲା । ତାମ୍ରଲିପ୍ତ ଏବଂ ଘଣ୍ଟଶାଳା ପରି ପୂର୍ବ ଉପକୂଳର ବନ୍ଦରଗୁଡ଼ିକ ସହାୟତାରେ ଉତ୍ତର ଭାରତର ପୂର୍ବ ଉପକୂଳ ଏବଂ ଦକ୍ଷିଣପୂର୍ବ ଏସିଆ ସହିତ ତଥା ପଶ୍ଚିମ ଉପକୂଳର ପୂର୍ବ ଭୂମଧ୍ୟସାଗରୀୟ ଅଞ୍ଚଳ ତଥା ପଶ୍ଚିମ ଏସିଆ ସହିତ ବାଣିଜ୍ୟ ଜାରି ରହିଥିଲା । ନୌବାଣିଜ୍ୟ ସହ ଜଡ଼ିତ ଭାରତୀୟ ଉପଦ୍ୱୀପର ବନ୍ଦର ତଥା ଉତ୍ପାଦନ କେନ୍ଦ୍ରଗୁଡ଼ିକ ସେ ଯାଏଁବତ୍ ବିଲୟମୁଖୀ ହୋଇ ନ ଥିଲେ । ତେବେ ସେଗୁଡ଼ିକ ଗୁପ୍ତ ନିୟନ୍ତ୍ରଣ ବହିର୍ଭୂତ ଥିଲେ ।

ମସଲା, ଗୋଲମରିଚ, ଚନ୍ଦନକାଠ, ମୁକ୍ତା, ମୂଲ୍ୟବାନ୍ ପଥର, ଅତର, ନୀଳ ତଥା ଅନ୍ୟାନ୍ୟ ଦ୍ରବ୍ୟର ରପ୍ତାନୀ ଜାରି ରହିଥିଲା । ତେବେ ଆମଦାନୀ କରାଯାଉଥିବା ପଣ୍ୟଦ୍ରବ୍ୟ ପୂର୍ବ ଦ୍ରବ୍ୟ ତୁଳନାରେ ଭିନ୍ନ ଥିଲା । ଘୋଡ଼ା ଆମଦାନୀରେ ଲକ୍ଷଣୀୟ ଅଭିବୃଦ୍ଧି ଘଟିଥିଲା । ଘୋଡ଼ାମାନଙ୍କୁ ଇରାନ ଏବଂ ବ୍ୟାକ୍‌ଟ୍ରିଆରୁ ଉତ୍ତର-ପଶ୍ଚିମ ଭାରତରେ ଅବସ୍ଥିତ କେନ୍ଦ୍ର ତଥା ସମୁଦ୍ରପଥରେ ଆରବର ପଶ୍ଚିମ ଉପକୂଳକୁ ଅଣାଯାଉଥିଲା । ପ୍ରତିକୂଳ ଜଳବାୟୁ ତଥା ଉପଯୁକ୍ତ ଚାରଣଭୂମି ଅଭାବରୁ ଭାରତରେ ଜାତିଆ ଘୋଡ଼ା ପ୍ରଜନନ ସମ୍ଭବ ହେଉ ନ ଥିଲା । ତେଣୁ ସବୁ ସମୟରେ ଉତ୍ତମ ମାନର ପଶୁସମ୍ପଦ ଆମଦାନୀ କରାଯାଉଥିଲା । ଭାରତୀୟ ସୈନ୍ୟବାହିନୀର ଅଶ୍ୱାରୋହୀ ଦଳ ଉପରେ ଏହାର ପ୍ରଭାବ ପଡ଼ିଥିବ । ବସ୍ତୁତଃ ଏହି କାରଣରୁ ହିଁ ମଧ୍ୟ-ଏସିଆର ଅଶ୍ୱାରୋହୀମାନେ ତୁଳନାତ୍ମକ ଭାବେ ଭାରତୀୟମାନଙ୍କ ଠାରୁ ଅଧିକ ପ୍ରଭାବଶାଳୀ ହୋଇଥିବେ ବୋଲି ଅନୁମାନ କରାଯାଏ ।

ଏହି ସମୟରେ ଭାରତୀୟ ଜାହାଜଗୁଡ଼ିକ ଆରବ ସାଗର ଏବଂ ଭାରତ ମହାସାଗର ଭିତର ଦେଇ ନିୟମିତ ଯାତାୟତ କରୁଥିଲେ ଏବଂ ଚୀନ୍ ସାଗର ଭିତରେ ପ୍ରବେଶ କରିବାର ସାହସ ପ୍ରଦର୍ଶନ କରୁଥିଲେ । ଯେଉଁ 'କଳା ଯବନମାନଙ୍କ ଦ୍ୱୀପ' ସମ୍ପର୍କରେ ଉଲ୍ଲେଖ ଅଛି ତାହା ହୁଏତ ମାଡାଗାସ୍କର ବା ଜାଞ୍ଜିବର ହୋଇପାରେ । ପୂର୍ବ ଆଫ୍ରିକା ଉପକୂଳ ସହିତ ଭାରତର ଯୋଗାଯୋଗ ଖ୍ରୀ.ପୂ. ପ୍ରଥମ ସହସ୍ରାବ୍ଦ ବେଳକୁ ଆରମ୍ଭ ହୋଇଥିବା ଆଶା କରାଯାଏ ଏବଂ ବର୍ଣ୍ଣିତ ସମୟ ବେଳକୁ ଏହି ଯୋଗାଯୋଗ ବାଣିଜ୍ୟ ମାଧ୍ୟମରେ ବିକଶିତ ହୋଇଥିବ । ଏ ଧରଣର ଗତିବିଧି ସତ୍ତ୍ୱେ ସାମାଜିକ ପ୍ରଥା ଓ ସାମାଜିକ ନିୟମର ଦଣ୍ଡଧାରୀଗଣ ଉଚ୍ଚବର୍ଣ୍ଣର ଲୋକମାନଙ୍କୁ କଳାପାଣି ପାରି ହେବା ଏବଂ ସମୁଦ୍ର ଯାତ୍ରା କରିବାକୁ ନିଷେଧ କରୁଥିଲେ । ଦୂର ଦେଶ ପରିଭ୍ରମଣକୁ ବିରୋଧ କରିବା ମୂଳରେ ଥିଲା ମ୍ଳେଚ୍ଛମାନଙ୍କଠାରୁ ସଂକ୍ରମଣର ଭୟ । (ଯେଉଁମାନେ ଜାତି ବଳୟର ବାହାରେ ଥିଲେ ସେମାନଙ୍କୁ ଧାର୍ମିକ ଦିଗରୁ ଅଶୁଦ୍ଧ କୁହାଯାଉଥିଲା।) ଦୂର ଦେଶକୁ ଗଲେ କର୍ମକାଣ୍ଡ ଏବଂ ଜାତିଭିତ୍ତିକ ନିୟମଗୁଡ଼ିକୁ ପାଳନ କରିବା ମଧ୍ୟ କାଠିକର ଥିଲା । ପୁଣି, କାହାକୁ ବାସନ୍ଦ କରାଗଲେ ବ୍ରାହ୍ମଣମାନେ ପରୋକ୍ଷଭାବେ ଅତିରିକ୍ତ ଲାଭ ପାଉଥିଲେ । କାହା ଉପରେ ବାସନ୍ଦ ଲାଗୁ ହେଲେ ବୈଶ୍ୟ ଗୋଷ୍ଠୀର ଆର୍ଥିକ କ୍ଷମତା ତାତ୍ତ୍ୱିକ ଦିଗରୁ ପ୍ରଭାବିତ ହେଉଥିଲା । ତେବେ ବ୍ୟବସାୟ ଲାଗି ଏହା ବାଧକ ହୋଇପାରୁ ନଥିଲା । ଆଗ୍ରହୀ ବ୍ୟବସାୟୀ ବ୍ରାହ୍ମଣ ହୁଅନ୍ତୁ ବା ଅବ୍ରାହ୍ମଣ, ଏ ଧରଣର ବ୍ୟବସ୍ଥା ପୁଞ୍ଜିନିବେଶକାରୀ ମନୋଭାବକୁ ପ୍ରତିହତ କରିପାରୁ ନ ଥିଲା । ବାଣିଜ୍ୟରେ ନିୟୋଜିତ ଅନେକ ଲୋକ ବୌଦ୍ଧ ଧର୍ମାବଲମ୍ବୀ ଥିଲେ । ସେମାନେ ବ୍ରାହ୍ମଣ୍ୟ ନୀତିନିୟମକୁ ବିଶେଷ ଗୁରୁତ୍ୱ ପ୍ରଦାନ କରୁ ନ ଥିଲେ । ଜୈନମାନେ କଠୋର ଧାର୍ମିକ ବିଧିବିଧାନ ଆଚରଣ କରୁଥିବାରୁ ବହୁଳ ସଂଖ୍ୟାରେ ଦୂର ସ୍ଥାନକୁ ଯାତାୟତ କରୁ ନ ଥିଲେ ।

ଆଗ ତୁଳନାରେ ଅଧିକାଂଶ ନଗର ଯୋଜନାରେ ବିଶେଷ କିଛି ପରିବର୍ତ୍ତନ ଘଟି ନ ଥିଲା । ନଗରାଞ୍ଚଳ ବିସ୍ତୃତ ଓ ବ୍ୟାପକ ଥିଲା ଏବଂ ଏହାର ଶେଷରେ ଦୁଇ ସଡ଼କ ପରସ୍ପରକୁ ଛେଦ କରୁଥିଲେ । ଉତ୍ପାଦିତ ଏବଂ ବିକ୍ରୟ କରାଯାଉଥିବା ପଣ୍ୟଦ୍ରବ୍ୟର ପ୍ରକାରଭେଦ ଅନୁସାରେ ରାସ୍ତା ପାର୍ଶ୍ୱରେ ବଜାର ଏବଂ ଦୋକାନମାନ ଖୋଲୁଥିଲେ । ଘରଗୁଡ଼ିକର ବାଲ୍‌କୋନି ଥିଲା ଯେଉଁଠାରୁ ରାସ୍ତାର ଦୃଶ୍ୟ ଦେଖିହେଉଥିଲା । ସହରର ଧନିକ ସଂପ୍ରଦାୟଙ୍କର ଘର ଇଟାରେ ତିଆରି ହେଉଥିଲା । ଅପେକ୍ଷାକୃତ କମ୍ ସମୃଦ୍ଧ ସଂପ୍ରଦାୟର ଲୋକମାନଙ୍କର ଘର କାଠ ଏବଂ ବାଉଁଶ ବତାରେ ନିର୍ମିତ ହେଉଥିଲା । ଘରଗୁଡ଼ିକ ସହରର ଏକ ମୁଖ୍ୟ ବିନ୍ଦୁ ଆଡ଼କୁ ପ୍ରଲମ୍ବିତ ହୋଇ ରହୁଥିଲେ; ନଗରରେ ଯଥେଷ୍ଟ ନାଳ ତଥା କୂଅ ଥିଲା । ତେବେ ଏହି ସଂସ୍କୃତିରେ ଜୀବନ ଧାରଣରେ ବ୍ୟାପକ ବିବିଧତା ପରିଲକ୍ଷିତ ହେଉଥିଲା । ଆରାମଦାୟକ ଜୀବନ ବିତାଉଥିବା ସହର ବାସିନ୍ଦାର ସହର ସୀମାରେ ରହୁଥିବା ନ୍ୟୂନ ଲୋକମାନଙ୍କ ସହିତ କୌଣସି ଭାବ ବିନିମୟ ନ ଥିଲା । ଏ ଅବସ୍ଥା ଆଜିର ବିଧିବଦ୍ଧ ଭାବେ ନିର୍ମିତ ହୋଇ ନ ଥିବା ସହରର ଅବସ୍ଥା ସହ ତୁଳନୀୟ । ତେବେ ଗାଁର ଜୀବନଧାରଣର ମାନରେ ଅପେକ୍ଷାକୃତ କମ୍ ବୈଷମ୍ୟ ପରିଲକ୍ଷିତ ହେଉଥିଲା ।

କାମସୂତ୍ରର ବର୍ଣ୍ଣନା ଅନୁସାରେ ବିଳାସୀ ଜୀବନଯାପନ କରୁଥିବା ଜଣେ ସ୍ୱଚ୍ଛଳ ନାଗରିକର ଜୀବନ ସ୍ୱଚ୍ଛନ୍ଦ ଥିଲା ଏବଂ ଯେଉଁମାନଙ୍କ ହାତରେ ଅବସର ଥିଲା ସେମାନେ ଜୀବନର ପରିମାର୍ଜନରେ ବ୍ୟାପୃତ ରହୁଥିଲେ । ଜୀବନଧାରଣର ମାନ ବିଳାସମୟ ନ ଥିଲେ ମଧ ଆରାମଦାୟକ ଥିଲା । ତେଣୁ କବିତା, ଚିତ୍ର, ସଙ୍ଗୀତଗାନ ଇତ୍ୟାଦିରେ ପାରଦର୍ଶିତା ଲାଗି ସହରର ଯୁବସମାଜ ଭିତରେ ଅନୁକୂଳ ମାନସିକତା ସୃଷ୍ଟି ହୋଇଥିଲା । ସଭ୍ୟ ଜୀବନର ସୂଚକ, ସହରୀ ଜୀବନରେ ଏକ ଶୃଙ୍ଗାରୀ ଭାବଦ୍ୟୋତକ ରଚନା ଅପ୍ରତ୍ୟାଶିତ ନ ଥିଲା । ପ୍ରେମ କଳାରେ ଯୁବକମାନଙ୍କର ପ୍ରଶିକ୍ଷିତ ହେବାର ଆବଶ୍ୟକତା ଥିଲା । କାମସୂତ୍ରରେ ଏ ବିଷୟରେ ଖୁବ୍ ସରଳଭାବେ ଚର୍ଚ୍ଚା କରାଯାଇଛି । ସ୍ଥଳବିଶେଷରେ ଏହାର କଳ୍ପନା ଶକ୍ତିରେ ପାଠକ ଚକିତ ହୁଏ ଏବଂ ଏହା ଆଧୁନିକ ସମୟର ଏ ଧରଣର ରଚନା ସହ ତୁଳନୀୟ ଲାଗେ । ଅଧିକ ଭାବବାଦୀ ନ ହୋଇ କିମ୍ବା ନିନ୍ଦାସୂଚକ ଧାରଣା ପୋଷଣ ନ କରି କାମବିଳାସିନୀ ହେବା ନଗର ଜୀବନର ଏକ ସ୍ୱାଭାବିକ ବିଭାବ ଥିଲା । କାମବିଳାସିନୀଙ୍କୁ ଦିଆଯାଇଥିବା ପ୍ରଶିକ୍ଷଣକୁ ଲକ୍ଷ୍ୟକଲେ ଏପ୍ରକାର ବୃତ୍ତିର ଚାହିଦା ବେଶି ଥିଲାଭଳି ମନେହୁଏ । ପରିଚୟ ଦୃଷ୍ଟିରୁ ସେ ବେଶ୍ୟା ଭଳି ନୁହେଁ । ବରଂ ଜାପାନର ଗେଇସା ବା ଗ୍ରୀସ୍‌ର ହେତାଇରା ପରି ସେ ସଂସ୍କୃତିସମ୍ପନ୍ନା ସାମାଜିକ ସାଥୀ ଥିଲେ ।

## ସାମାଜିକ ରୀତିନୀତି (Social mores)

କାମସୂତ୍ରର ବର୍ଣ୍ଣନା ଅନୁସାରେ କୃଷକର ଜୀବନ ସ୍ୱଚ୍ଛଳ ସହରୀ ଜୀବନ ତୁଲ୍ୟ ଥିଲା । ଅଧିକାଂଶ ଲୋକଙ୍କ ଲାଗି ଜୀବନ ଏହି ଧରଣର ଥିଲା । ଦାରିଦ୍ର୍ୟ ଓ ଦୁର୍ଭିକ୍ଷ ପ୍ରସଙ୍ଗରେ ଜାଣିବାପାଇଁ ଜ୍ୟୋତିଷବିଦ୍ୟାର ସହାୟତା ନିଆଯାଉଥିଲା । ବାରମ୍ବାର ଗୋଟିଏ କଥା କୁହାଯାଉଥିଲା ଯେ କଳିଯୁଗ ବା ଅଧୋପତନର ଯୁଗରେ ଆଉ ଭଲ କିଛି ପ୍ରତ୍ୟାଶା କରିବା କଥା ନୁହେଁ । କାଳିଦାସଙ୍କ ଶକୁନ୍ତଳା ନାଟକର କାହାଣୀରେ ଏକ ଅଦ୍ଭୁତ ଘଟଣା ବର୍ଣ୍ଣିତ ହୋଇଅଛି । ରାଜାଙ୍କ ସନ୍ତକ ମୁଦ୍ରିକା ଗିଳିଥିବା ମାଛକୁ ଯେଉଁ କେଉଟ ଧରିଥିଲା ତାକୁ ରାଜାଙ୍କ ଅଧିକାରୀମାନଙ୍କ ପାଖକୁ ଅଣାଯାଇ ପଚରାଉଚରା କରାଗଲା । ଜଣେ ନିମ୍ନସ୍ତରର ଲୋକ ହିସାବରେ ଚୋର ରୂପେ ଦଣ୍ଡ ପାଇବା ଲାଗି କେଉଟ ଜଣକ ପ୍ରସ୍ତୁତ ରହିଲା । ମାତ୍ର ଯେତେବେଳେ ରାଜା ତାକୁ ପୁରସ୍କାର ସ୍ୱରୂପ ଟଙ୍କାଥଳି ପ୍ରଦାନ କଲେ, ସେ ତାକୁ ତା'ର ଉତ୍ପୀଡ଼କମାନଙ୍କ ସହ ଭାଗ କଲା । ଅଧିକାରୀ ତାକୁ ମଦ ଦୋକାନକୁ ଯିବାପାଇଁ ପ୍ରସ୍ତାବ ଦେବାରୁ ଉକ୍ତ କେଉଟ ଖୁସିର ସହ ରାଜି ହୋଇଗଲା । ଜଣେ ଅଧିକାରୀ ତଳ ଜାତିର କେଉଟ ସହ ମଂ  ପିଇବା ଧର୍ମଶାସ୍ତ୍ରର ବିରୁଦ୍ଧାଚରଣ ଅଟେ । ଏଥିରୁ ଏକଥା ପ୍ରମାଣିତ ହୁଏ କି ଶାସ୍ତ୍ରବର୍ଣ୍ଣିତ ନିୟମ ତୁଳନାରେ ସମାଜ ଅପେକ୍ଷାକୃତ ରଢ଼ି ମୁକ୍ତ ଥିଲା । ବାଣଙ୍କ ହର୍ଷଚରିତରେ ସୈନିକମାନେ ଗଲାପରେ ସାଧାରଣ ଗରିବ ଲୋକେ ରାଜାଙ୍କ ଶିବିର ନିକଟରେ ବଳି ପଡ଼ିଥିବା ଶସ୍ୟ ଗୋଟାଇବାର ବର୍ଣ୍ଣନା ଅଛି । ରାଜାଙ୍କ ହାତୀମାନେ ଗରିବ ଲୋକମାନଙ୍କ କୁଡ଼ିଆ ଦଳିଦେବା ଏବଂ ସେମାନେ ଗୃହହୀନ ହେବା କଥା ମଧ ସେ ବର୍ଣ୍ଣନା କରିଛନ୍ତି । ଲୋକମାନେ ସେତେବେଳେ ସୈନିକମାନଙ୍କୁ ଲକ୍ଷ୍ୟକରି କାଦୁଅ ପିଣ୍ଡୁଳା ଫିଙ୍ଗିବା ଛଡ଼ା ଅନ୍ୟ କିଛି କରିପାରି ନାହାନ୍ତି ।

ନିମ୍ନ ଜାତି ଏବଂ ଅସ୍ପୃଶ୍ୟମାନଙ୍କ ସମାଜରୁ ଭିନ୍ନ ଭିନ୍ନ ପ୍ରକାରର ଦାସ ଅଣାଯାଉଥିଲା । ପୂର୍ବକାଳ ଅପେକ୍ଷା ଏ ସମୟର ଧର୍ମଶାସ୍ତ୍ରରେ ଦାସମାନଙ୍କ ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା ହୋଇଛି । ଯଦିଓ ପୃଥିବୀର ଅନ୍ୟ ଭାଗରେ ପ୍ରାଚୀନ କାଳରେ ବ୍ୟବହୃତ ହେଉଥିବା ଦାସମାନଙ୍କ ଶ୍ରମ ଅନୁପାତରେ ଏଠାକାର ଦାସର ଶ୍ରମ କମ୍ ଥିଲା, ତଥାପି ଦାସମାନଙ୍କ ଶ୍ରମର ବ୍ୟାପକ ବ୍ୟବହାର କରାଯାଉଥିଲା । ଠିକା ଶ୍ରମ ସମ୍ପର୍କରେ ବ୍ୟାପକ ଉଲ୍ଲେଖରୁ ଜଣାଯାଏ ଯେ ପୂର୍ବାପେକ୍ଷା ଏହାର ବ୍ୟବହାର ଅଧିକ ହୋଇଥିଲା । ଯୁଦ୍ଧବନ୍ଦୀ, ଗୋତିଶ୍ରମିକ, ଦାସ ଔରସରୁ ଦାସୀ ଗର୍ଭରୁ ଜନ୍ମିତ ସନ୍ତାନ ତଥା ବୈରାଗ୍ୟର ଶପଥ ନେଇଥିବା ବ୍ୟକ୍ତିମାନଙ୍କୁ ଦାସରେ ପରିଣତ କରାଯାଉଥିଲା । ବହୁଳ ସଂଖ୍ୟକ ଦାସ ଘରୋଇ କାର୍ଯ୍ୟରେ ବିନିଯୁକ୍ତ

ହେଉଥିଲେ । କୃଷିକ୍ଷେତ୍ରରେ କାମ କରିବାଲାଗି ଗୋତିଶ୍ରମିକ, ଠିକାଶ୍ରମିକ, କିସ୍ତି ଆକାରରେ ନିର୍ଦ୍ଧାରିତ କାର୍ଯ୍ୟ ଲାଗି ବିନିଯୁକ୍ତ ହେବାକୁ ଥିବା ଶ୍ରମିକ, ବାଧ ଶ୍ରମିକ ଇତ୍ୟାଦି ବିଭିନ୍ନ ପ୍ରକାରର ଶ୍ରମିକ ବ୍ୟବହୃତ ହେଉଥିଲେ । ଜାତିପ୍ରଥା ଜନିତ ସମସ୍ୟା ହେତୁ ଅସ୍ପୃଶ୍ୟମାନେ ଘରୋଇ କାର୍ଯ୍ୟରେ ବିନିଯୁକ୍ତ ହୋଇପାରୁ ନ ଥିଲେ । ଏକ ଜାତିଭିତ୍ତିକ ସମାଜରେ କାର୍ଯ୍ୟ କରିବାକୁ ବାଧ ହେଉଥିବା ଅସ୍ପୃଶ୍ୟମାନେ ସ୍ଥାୟୀଭାବେ ଭୂମିହୀନ ଶ୍ରମିକ ହୋଇ ରହିଥିଲେ । ଏଥିପାଇଁ ଆଉ କିଛି ନୁହେଁ ତାଙ୍କର ଜାତିଭିତ୍ତିକ ଅସାମର୍ଥ୍ୟ ଦାୟୀ ଥିଲା ।

405ରୁ 411 ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତ ଭ୍ରମଣରେ ଆସିଥିବା ଚୀନା ବୌଦ୍ଧ ସନ୍ୟାସୀ ଫାହିୟାନ୍ ବୌଦ୍ଧ ପାଣ୍ଡୁଲିପିମାନ ସଂଗ୍ରହ କରି ତଥା ବୌଦ୍ଧବିହାରରେ ଅଧ୍ୟୟନ କରି ଲୋକମାନେ ସୁଖୀ ଥିଲେ ବୋଲି ବର୍ଣ୍ଣନା କରିଛନ୍ତି । ସେ ଏକଥା ମଧ ଲେଖିଛନ୍ତି ଯେ ଅସ୍ପୃଶ୍ୟମାନେ ସହରର ଗଳିରେ ଗଲାବେଳେ ତାଳି ଶବ୍ଦ କରି ନିଜର ଉପସ୍ଥିତି ଜଣାଉଥିଲେ, ଯଦ୍ୱାରା କି ଲୋକେ ସେମାନଙ୍କ ଉପସ୍ଥିତି ସମ୍ପର୍କରେ ସଚେତନ ହୋଇପାରିବେ । ଯଦି ଜଣେ ଅସ୍ପୃଶ୍ୟ ବ୍ୟକ୍ତି ସବର୍ଣ୍ଣର ନିକଟକୁ ଚାଲିଆସୁଥିଲା, ତେବେ ସବର୍ଣ୍ଣ ବ୍ୟକ୍ତିକୁ କର୍ମକାଣ୍ଡ ମୁତାବକ ପ୍ରାୟଶ୍ଚିତ କରିବାକୁ ପଡୁଥିଲା । ପରେ ଏସବୁ ସାଧାରଣ ଅଭ୍ୟାସରେ ପରିଣତ ହୋଇସାରିଥିଲା । ହୁଏନ୍‌ସାଂ କହିଛନ୍ତି, କଂସେଇ, କେଉଟ, ନାଟୁଆ, ଘାତକ ଏବଂ ଝାଡୁଦାର ପ୍ରଭୃତିଙ୍କୁ ନଗର ବାହାରେ ରହିବାକୁ ବାଧ କରାଯାଉଥିଲା । ସେମାନଙ୍କ ଘର ଚିହ୍ନଟ କରାଯାଉଥିଲା ଯେମିତିକି ସେମାନଙ୍କୁ ଏଡ଼ାଇହେବ । ତଥାପି ଚୀନ୍‌ର ବୌଦ୍ଧ ସନ୍ନ୍ୟାସୀଙ୍କ ମତରେ ଏସବୁ ସମାଜର ପରିପୂରକ ଥିଲା, କାରଣ ଭାରତ ସେମାନଙ୍କ (ବୌଦ୍ଧ ସନ୍ୟାସୀଙ୍କ) ଲାଗି 'ପଶ୍ଚିମର ସ୍ୱର୍ଗ', ବୁଦ୍ଧଙ୍କର ପୁଣ୍ୟଭୂମି ଥିଲା । ହୁଏତ କେବଳ ଅବଚେତନରେ ସେମାନେ ଅନ୍ୟ ସ୍ଥାନ ସହ ଭାରତର ତୁଳନା କରୁଥିଲେ ।

ଲିଙ୍ଗ ଭିତ୍ତିକ ସମ୍ପର୍କର ଆଧାରରେ ସମାଜ ସଂରଚନା ବିଷୟରେ ମଧ ସୂଚନା ମିଳିଥାଏ । ସାହିତ୍ୟ ଏବଂ କଳାରେ ନାରୀମାନଙ୍କୁ ଆଦର୍ଶ ଭିତ୍ତିକ ଦୃଷ୍ଟିରେ ଦେଖାଯାଇଛି । ସେମାନଙ୍କର ଏଭଳି କେତେକ ଚିତ୍ରକଳ୍ପ ସୃଷ୍ଟି କରାଯାଇଛି, ଯାହା ପାଠକ ତଥା ଦର୍ଶକ ଲାଗି ଆକର୍ଷଣୀୟ ମନେହେବ । ମାତ୍ର ଏସବୁ ପୁରୁଷ ଦୃଷ୍ଟିକୋଣରୁ ଆଦର୍ଶ ନାରୀର ରୂପରେଖ । ଏହାଫଳରେ ନାରୀର ସ୍ଥାନ ତଳୁଆ ହୋଇଥିଲା । ଉଚ୍ଚଜାତିର ସ୍ତ୍ରୀଲୋକମାନଙ୍କ ପାଇଁ ଅଳ୍ପ କେତେ ପ୍ରକାରର ଶିକ୍ଷା ଅନୁମୋଦନ କରାଯାଉଥିଲା, ଯାହାଫଳରେ ସେମାନେ ସୀମିତ ଯୋଗ୍ୟତା ଅର୍ଜନ କରିପାରିବେ । ମାତ୍ର ସେମାନଙ୍କୁ କୌଣସି ଆଲୋଚନାରେ ଭାଗ ନେବା ଲାଗି ଅଥବା ବୃତ୍ତିଗତ କ୍ଷେତ୍ରରେ ବିଚକ୍ଷଣ ହେବାଲାଗି ଉତ୍ସାହ ପ୍ରଦାନ କରାଯାଉ ନ ଥିଲା ।

ସମ୍ପତ୍ତି ଉପରେ ନାରୀମାନଙ୍କର ଅଧିକାର ବା ବଂଶାନୁକ୍ରମିକ ହକ୍ ସୀମିତ ଥିଲା । ଜାତି, ପ୍ରଥା ଏବଂ ଧର୍ମାନୁସାରେ ଏହା ପୁଣି ଭିନ୍ନ ଭିନ୍ନ ହେଉଥିଲା । ସାମାଜିକ ଅଭ୍ୟାସଗୁଡ଼ିକ ସମତା ଆଧାରିତ ନ ଥିଲା ଯଦିଓ ଏଥିପାଇଁ ବ୍ୟବସ୍ଥା କରାଯାଇଥିଲା । ମାତୃବଂଶ ଭିତ୍ତିକ ବ୍ୟବସ୍ଥାର ବଂଶାନୁକ୍ରମ ପିତୃକୈନ୍ଦ୍ରିକ ବ୍ୟବସ୍ଥାଠାରୁ ଭିନ୍ନ ଥିଲା । କେତେକ କ୍ଷେତ୍ରରେ ସମ୍ପତ୍ତି ପାଇବା ଲାଗି ଭାଇ ଓ ଭଉଣୀର ସନ୍ତାନମାନଙ୍କ ମଧ୍ୟରେ ବିବାହ କରିଦିଆଯାଉଥିଲା । ଉତ୍ତର ଭାରତର ଭବ୍ୟ ସମାଜରେ ଯାହା ଏକଦା ଭାଇ ଓ ଭଉଣୀମାନଙ୍କ ସନ୍ତାନମାନଙ୍କ ମଧ୍ୟରେ ବିବାହ ବ୍ୟବସ୍ଥା ରୂପେ ତିଷ୍ଠିଥିଲା, ପିତୃକୈନ୍ଦ୍ରିକ ବ୍ୟବସ୍ଥାକୁ ସମର୍ଥନ କରୁଥିବା ପାଠ୍ୟ ଯୋଗୁଁ ତାକୁ ସାମାଜିକ ଗତିଶୀଳତା ପାଇଁ ଅଧିକ ଦୃଢ଼ଭାବେ ଗ୍ରହଣ କରାଗଲା ।

ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ଉଚ୍ଚଜାତିର ନାରୀମାନଙ୍କ କ୍ଷେତ୍ରରେ କମ୍ ବୟସରେ ବିବାହକୁ ପ୍ରୋତ୍ସାହିତ କରାଯାଉଥିଲା । ସ୍ଥଳବିଶେଷରେ ଯୌବନପ୍ରାପ୍ତି ପୂର୍ବରୁ ମଧ୍ୟ ସେମାନଙ୍କୁ ବାହା କରାଇ ଦିଆଯାଉଥିଲା । ଜଣେ ବିଧବାକୁ କଠୋର ଆତ୍ମନିଗ୍ରହ ଭିତରେ ଚଳିବାକୁ ପଡୁଥିଲା । ଯଦି ସେ କ୍ଷତ୍ରିୟ ବଧୂ ହୋଇଥାଏ ତେବେ ତାକୁ ତା'ର ସ୍ୱାମୀର ଚିତାଗ୍ନିରେ ଝାସ ଦେବାକୁ ପଡୁଥିଲା । (ବିଶେଷକରି ଯଦି ସ୍ୱାମୀର ମୃତ୍ୟୁ ଗରିମାମଣ୍ଡିତ ହୋଇଥାଏ ।) ଏହାଫଳରେ ସେ ସତୀ ହେଉଥିଲା । ପ୍ରାଚୀନ ଇତିହାସରେ ଏହି ବ୍ୟବସ୍ଥା 510 ଖ୍ରୀଷ୍ଟାବ୍ଦ ବେଳେ ପ୍ରଚଳିତ ଥିବା କଥା ବର୍ଣ୍ଣିତ ହୋଇଛି । ଏ ସମ୍ପର୍କୀୟ ସୂଚନା ଇରାନ୍‌ର ଏକ ଅଭିଲେଖରୁ ମିଳେ । ପରବର୍ତ୍ତୀ ସମୟରେ ସତୀ ହେବା ଘଟଣା ବଢ଼ିଚାଲିଲା । ଏହାସହିତ ଆଉ ଏକ ବିତର୍କ ଜାରି ରହିଲା – ଜଣେ ବିଧବା ପୁନର୍ବିବାହ କରିପାରିବ କି ନାହିଁ । କେହି କେହି ଯୁକ୍ତି କଲେ ଯେ ଯଦି ତା'ର ସ୍ୱାମୀ ହଜିଯାଏ, ମୃତ୍ୟୁବରଣ କରେ, ନପୁଂସକ ହୋଇଯାଏ, ସମାଜ ତ୍ୟାଗ କରିଦିଏ ବା ସମାଜରୁ ବାସନ୍ଦ ହୋଇଯାଏ, ତେବେ ସେ କ୍ଷେତ୍ରରେ ପୁନର୍ବିବାହ ଲାଗି ଅନୁମତି ଦେବା ଉଚିତ । ଅନ୍ୟମାନେ ଏ ପ୍ରକାରର ଅନୁଚିନ୍ତାର ବିରୋଧ କଲେ । ଜଣେ ନାରୀକୁ ସତୀ ହେବା ଲାଗି ପ୍ରବର୍ତ୍ତାଇବା ସମସ୍ୟାର ଏକ ସମାଧାନ ହୋଇଥାଇ ପାରେ । ଏହାସହିତ ତାଳଦେଇ ଅନ୍ୟ ଗୋଷ୍ଠୀମାନଙ୍କ ପରି ଏକ ନବ୍ୟ କ୍ଷତ୍ରିୟ ସଂସ୍କୃତି ଦାନା ବାନ୍ଧିଲା । ଆକ୍ଷରିକ ଭାବରେ ଏଥିଲାଗି କେତେକ ନିୟମ ପ୍ରବର୍ତ୍ତନ କରାଗଲା । ଯଦି ବିଧବାମାନଙ୍କ ପୁନର୍ବିବାହ ପ୍ରଚଳିତ ଥିବା ଏକ ସମାଜରୁ କୌଣସି ପରିବାର ଆସିଥାଏ ତେବେ ସେ କ୍ଷେତ୍ରରେ ଅନେକ ପ୍ରତିବନ୍ଧକ ଉପୁଜୁଥିଲା ।

ଅଳ୍ପ କେତେଜଣ ସ୍ୱାଧୀନଚେତା ମନୋଭାବ ସମ୍ପନ୍ନା ମହିଳା ସାଧାରଣ ନାରୀର ଘରୋଇ କାର୍ଯ୍ୟଠାରୁ ଦୂରେଇ ରହିଥିଲେ । ସେମାନେ ସନ୍ନ୍ୟାସିନୀ ହେଉଥିଲେ, ଉଚ୍ଚଶ୍ରେଣୀର ଲୋକଙ୍କ ଲାଗି ବେଶ୍ୟା ପାଲଟଥିଲେ ଅଥବା କଳାକାରମାନଙ୍କ ଦଳରେ ଯୋଗ ଦେଉଥିଲେ ।

କାରିଗର, ବଣିକ ତଥା ଛୋଟ ଜମିଦାରଙ୍କର ଦୁନିଆ ଦରବାର ପରିସର ଏବଂ ଆଭିଜାତ୍ୟଠାରୁ ଭିନ୍ନ ଥିଲା । ପୂର୍ବ ବର୍ଗର ଲୋକେ ଶ୍ରମଣ ଧର୍ମ ଗ୍ରହଣ କରୁଥିବାବେଳେ ପରବର୍ତ୍ତୀ ବର୍ଗର ଲୋକେ ଅନ୍ତତଃପକ୍ଷେ ତତ୍ତ୍ୱ ଦୃଷ୍ଟିରୁ ଧର୍ମଶାସ୍ତ୍ରର ଅନୁସରଣ କରୁଥିଲେ । ନୂଆ ହୋଇ ସୃଷ୍ଟି ହୋଇଥିବା ଜାତି ତା'ର ପୂର୍ବ ଜାତିର ଅଭ୍ୟାସ ଜାରି ରଖିଥିଲାବେଳେ ଉଭୟ ଭିତରେ ବୈଧାନିକ ଦ୍ୱନ୍ଦ୍ୱ ଉପୁଜିଥିବ । କେହି କେହି ସମାଜରେ ନାରୀର ଉନ୍ମୁକ୍ତ ଅଂଶଗ୍ରହଣ ସପକ୍ଷରେ ଯୁକ୍ତି ବାଢ଼ିଥିବେ । ମଧ୍ୟ-ଭାରତର 'ଉଚ୍ଚକଳ୍ପ'ର ଶାସକମାନେ ଅଭିଲେଖର ବଂଶାବଳୀ ବିଭାଗରେ ପ୍ରତ୍ୟେକ ଶାସକଙ୍କର ମା'ଙ୍କର ନାମ ଟିକିନିଖି ଭାବେ ବର୍ଣ୍ଣନା କରୁଥିଲେ । ଏକ ସମସାମୟିକ ଧର୍ମଶାସ୍ତ୍ର 'ନାରଦ ସ୍ମୃତି'ର ଉପଦେଶ ମୁତାବକ, ନିୟମ ତୁଳନାରେ ପ୍ରଥାଗୁଡ଼ିକୁ ଦିଆଯାଉଥିବା ରିହାତି ଏକ ଗୁରୁତ୍ୱପୂର୍ଣ୍ଣ କଥା ଥିଲା ।

ତତ୍‌କାଳୀନ ଏକ ଅଭିଲେଖରୁ ଜଣାପଡ଼େ ଯେ ଜାତିମାନଙ୍କ ମଧ୍ୟରେ ଗତିଶୀଳତା ଗୃହୀତ ହେଉଥିଲା । ପଶ୍ଚିମ ଭାରତର ରେଶମ ବୁଣାକାର ସମିତି ଏ କ୍ଷେତ୍ରରେ ଏକ ଆଗ୍ରହୋଦ୍ଦୀପକ ଉଦାହରଣ । ଯେତେବେଳେ ସେମାନେ ନିଜକୁ ରେଶମ ଉତ୍ପାଦନ ମାଧ୍ୟମରେ ଚଳାଇ ପାରିଲେ ନାହିଁ ସମିତି ସଭ୍ୟମାନେ ପଶ୍ଚିମ ଭାରତରେ ଲାଟରୁ ମଧ୍ୟପ୍ରଦେଶର ମାଣ୍ଡାସର ଅଞ୍ଚଳକୁ ଯାତ୍ରା କଲେ । ସେମାନଙ୍କ ମଧ୍ୟରୁ କେହି କେହି ତୀରନ୍ଦାଜ, ସୈନିକ, ଚାରଣ ଏବଂ ପଣ୍ଡିତ ହେଲେ ଯାହା ଉଚ୍ଚଜାତିର ବୃତ୍ତି ଥିଲା । ବୃତ୍ତି ପରିବର୍ତ୍ତନ ସତ୍ତ୍ୱେ ମୂଳ ସମିତି ପ୍ରତି ଆନୁଗତ୍ୟ ବଜାୟ ରହୁଥିଲା, ଅନ୍ତତଃ ଗୋଟିଏ ପିଢ଼ି ପର୍ଯ୍ୟନ୍ତ । ସୂର୍ଯ୍ୟ ଉପାସକ ହୋଇଥିବାରୁ ସେମାନେ ସୂର୍ଯ୍ୟମନ୍ଦିର ନିର୍ମାଣ ଲାଗି ଅର୍ଥ ଦାନ କରିଥିଲେ । ମନ୍ଦିର ଭିତରେ ଥିବା 436 ଖ୍ରୀଷ୍ଟାବ୍ଦର ଏକ ଦୀର୍ଘ ଅଭିଲେଖ ଏହି ସମିତିର ଇତିହାସ ବିଷୟରେ ସୂଚନା ଦିଏ । ଶିଳାଲେଖର ଭାଷାରେ କାଳିଦାସଙ୍କ ଭାଷାର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

ଏହି ସମୟରେ ଅନେକ ଧର୍ମଶାସ୍ତ୍ର ରଚିତ ହୋଇଥିଲା । ମାତ୍ର ସେମାନେ ପ୍ରଚାର କରୁଥିବା ମତବାଦରେ ସମତା ନ ଥିଲା । ଜାତି ଓ ଲିଙ୍ଗକୁ ନେଇ କେହି ଉଦାରତା ପ୍ରଦର୍ଶନ କରୁ ନ ଥିଲେ, ଅବଶ୍ୟ ରକ୍ଷଣଶୀଳତାର ହାର ଭିନ୍ନ ଭିନ୍ନ ଥିଲା । ଏମାନଙ୍କ ମଧ୍ୟରୁ ଯାଜ୍ଞବଲ୍କ୍ୟ, ବୃହସ୍ପତି, ନାରଦ ଏବଂ କାତ୍ୟାୟନଙ୍କର ଶାସ୍ତ୍ର ଅଧିକ ପରିଚିତ ଥିଲା । ପରବର୍ତ୍ତୀ ଦୁଇଜଣ ନ୍ୟାୟିକ ପ୍ରକ୍ରିୟାର ତତ୍ତ୍ୱ ବିଧାନକୁ ବର୍ଣ୍ଣନା କରିଛନ୍ତି । ବିଚାରକମାନଙ୍କୁ ରାଜା ନିଯୁକ୍ତି ଦେଉଥିଲେ । କେତେକ ମାମଲାରେ ଆବଶ୍ୟକତା ମୁତାବକ ବିଚାରକ, ମନ୍ତ୍ରୀ, ମୁଖ୍ୟ ପୂଜକ, ବ୍ରାହ୍ମଣ ଓ କରଧାର୍ଯ୍ୟକାରୀଙ୍କ ସହାୟତାରେ ରାଜା ନିଜେ ଆବେଦନ ଲାଗି ସର୍ବୋଚ୍ଚ ନ୍ୟାୟାଳୟ ପାଲଟୁଥିଲେ । ବିଭିନ୍ନ ବୃତ୍ତିର ପ୍ରତିନିଧି ବିଶେଷକରି ବଣିକମାନେ ମଧ୍ୟ ରାଜାଙ୍କୁ ଉପଦେଶ ପ୍ରଦାନ କରିପାରୁଥିଲେ । ଧର୍ମଶାସ୍ତ୍ର, ସାମାଜିକ ବିଧାନ, ରାଜାଙ୍କ

ଶିଳାଲେଖ ଇତ୍ୟାଦି ଆଧାରରେ ବିଚାର କରାଯାଉଥିଲା । ଏ କ୍ଷେତ୍ରରେ ସାମାଜିକ ବିଧାନକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ତଥ୍ୟ, ସାକ୍ଷୀ କିମ୍ବା ବିଚାରାଧୀନ ବସ୍ତୁର ମାଲିକାନାକୁ ପ୍ରମାଣ ଆକାରରେ ନିଆଯାଉଥିଲା । କୌଣସି ତିକ୍ତ ଅନୁଭବ କେବଳ ଏକ ପ୍ରମାଣ ଆକାରରେ ଗୃହୀତ ହେଉ ନ ଥିଲା, ବରଂ ତାହା ଅନୁମୋଦିତ ଥିଲା । କାତ୍ୟାୟନ ତାଙ୍କ ଶାସ୍ତ୍ରରେ ଜାତି ଅନୁସାରେ ଦଣ୍ଡବିଧାନ ବ୍ୟବସ୍ଥା ଗ୍ରହଣ କରିଥିଲେ । ଉଚ୍ଚ ଜାତିର ଲୋକେ ସବୁଠାରୁ କମ୍ ଦଣ୍ଡ ପାଉଥିଲେ । ତେବେ କେତେକ ପରିସ୍ଥିତିରେ ଏହାର ଓଲଟା ମଧ୍ୟ ଘଟୁଥିଲା ।

ଫାହିୟାନଙ୍କ ମତରେ, ନିରାମିଷ ଭୋଜନ ସମସ୍ତଙ୍କ ଲାଗି ବାଧ୍ୟତାମୂଳକ ଥିଲା । ତେବେ ଅନ୍ୟ ସୂତ୍ରଗୁଡ଼ିକରୁ ଜଣାଯାଏ ଯେ ସାଧାରଣ ଭାବେ, ବିଶେଷକରି ଭବ୍ୟ ସମାଜରେ ମାଂସ ଭକ୍ଷଣ ନିୟମିତ ଥିଲା । ବଳଦର ମାଂସକୁ ବଳବର୍ଦ୍ଧକ ବୋଲି ଡାକ୍ତରୀ ଘୋଷଣା କରାଯାଇଥିଲା । ଯେମିତି ପାନ, ସେମିତି ଦେଶୀ ବା ବିଦେଶୀ ଉଭୟ କିସମର ମଦ୍ୟ ଲୋକମାନଙ୍କର ପ୍ରିୟ ଥିଲା । ମନୋରଞ୍ଜନ ଲାଗି ଥିଏଟର ମାଧ୍ୟମରେ ବହୁତ ଦର୍ଶକ ହେଉଥିଲେ । କେହି କେହି ଦରବାର ପରିସରରୁ ଆସୁଥିଲେ, ତ ଅନ୍ୟମାନେ ସହରରୁ ଆସୁଥିଲେ । ବିଶେଷ ଦିନମାନଙ୍କରେ ଲୋକନୃତ୍ୟ ଏବଂ ସଙ୍ଗୀତ ପରିବେଷଣ କରାଯାଉଥିଲା । ଗଞ୍ଜା ଲଢ଼େଇ, ମେଣ୍ଢା ଲଢ଼େଇ, ଚଢ଼େଇ ଲଢ଼େଇ (ଗ୍ରାମାଞ୍ଚଳରେ ଲୋକପ୍ରିୟ) ଭଳି ଜୁଆଖେଳ ମଧ୍ୟ ଲୋକମାନଙ୍କ ମଧ୍ୟରେ ଖୁବ୍ ଆକର୍ଷଣ ସୃଷ୍ଟି କରିଥିଲା ।

## ଜ୍ଞାନ ବିଜ୍ଞାନ

ବ୍ରାହ୍ମଣ ଆଶ୍ରମ, ଋଷି ଆଶ୍ରମ, ବୌଦ୍ଧ ଏବଂ ଜୈନ ବିହାରଗୁଡ଼ିକରେ ଔପଚାରିକ ଶିକ୍ଷା ମିଳୁଥିଲା । ଆଶ୍ରମରେ କେବଳ ଉଚ୍ଚଜାତିର ଲୋକଙ୍କୁ ଶିକ୍ଷାଲାଭ ପାଇଁ ସୁଯୋଗ ମିଳୁଥିଲା । ବିହାରଗୁଡ଼ିକରେ ଛାତ୍ରତ୍ୱର ସମୟ ଅନେକ ବର୍ଷ ଥିଲା । ତେବେ ସମସ୍ତେ ଯେ ଶିକ୍ଷା ଲାଗି ଦୀର୍ଘ ସମୟ ବିତାଉଥିଲେ ତାହା ନୁହେଁ । ଶିକ୍ଷକ ଓ ଛାତ୍ରକୁ ନେଇ ଶିକ୍ଷା ଏକ ବ୍ୟକ୍ତିଭିତ୍ତିକ ଅଭିଜ୍ଞତା ଥିଲା । ଶିକ୍ଷା ବ୍ୟବସ୍ଥାରେ ବେଦର ଶ୍ଳୋକ ମୁଖସ୍ଥ କରିବା, ଧର୍ମଶାସ୍ତ୍ର ବିଷୟରେ ଜ୍ଞାନ ଆହରଣ, ବ୍ୟାକରଣ, ଅଳଂକାର, ଗଦ୍ୟ ଓ ପଦ୍ୟ ରଚନା, ତର୍କଶାସ୍ତ୍ର ତଥା ଆଧିଭୌତିକ ବିଷୟ ଇତ୍ୟାଦି ସହ ପରିଚିତ ହେବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ମାତ୍ର ସଂସ୍କୃତ ଶିକ୍ଷାରେ ଜ୍ୟୋତିର୍ବିଜ୍ଞାନ, ଗଣିତ, ଔଷଧ ଏବଂ ଜ୍ୟୋତିଷବିଦ୍ୟା ଇତ୍ୟାଦି ଅନେକ କଥା ଅନ୍ତର୍ଭୁକ୍ତ ଥିଲା ।

ଚିକିତ୍ସା ବିଦ୍ୟା ସହିତ ତିର୍ଯ୍ୟକ୍ ଭାବେ ପଶୁ ଚିକିତ୍ସା ଉପରେ ମଧ୍ଯ ଗୁରୁତ୍ୱ ଆରୋପ କରାଯାଉଥିଲା । ଏହି ଚିକିତ୍ସା ଘୋଡ଼ା ଓ ହାତୀ ଉପରେ ଗୁରୁତ୍ୱ ଦେଉଥିଲା, କାରଣ ଏମାନେ ସୈନ୍ୟବାହିନୀ ଲାଗି ଗୁରୁତ୍ୱପୂର୍ଣ୍ଣ ଥିଲେ । କେତେକ ବିଷୟରେ ସଂସ୍କୃତ ପାଠରେ ଉଭୟ ତାତ୍ତ୍ୱିକ ଏବଂ ବ୍ୟବହାରିକ ପ୍ରୟୋଗ ରହୁଥିଲା । ସାଧାରଣତଃ କୌଣସି ବୃତ୍ତିର ଅଭ୍ୟାସ ଶିକ୍ଷାର ଏକ ସ୍ୱତନ୍ତ୍ର ରୂପ ଭାବେ ଗୃହୀତ ହେଉଥିଲା । ଏହାକୁ ପ୍ରକୃତ ବୃତ୍ତିଧାରୀମାନେ ପରିଚାଳନା କରୁଥିଲେ । ଏକ ନିର୍ଦ୍ଦିଷ୍ଟ ବିଷୟରେ ସଂସ୍କୃତରେ ଲେଖା ପ୍ରସ୍ତୁତ କରିବାରୁ ଏହାର ଗୁରୁତ୍ୱ ଜଣାପଡୁଥିଲା । ବରାହ ମିହିର କୃଷିକାର୍ଯ୍ୟ ବିଷୟକ ଅନେକ ବିଭାବ ତଥା ନୀଳଚାଷ ଭଳି ନୂତନ ଫସଲ, ବର୍ଷାପାତର ପ୍ରଭାବ ଏବଂ ଜଳସେଚନର ପଦ୍ଧତି ଇତ୍ୟାଦି ଉପରେ ଆଲୋଚନା କରିଛନ୍ତି । ମାନସାର ଏବଂ କୃଷି ପରାଶର ଭଳି ପୁସ୍ତକରେ ଏହି ଆଲୋଚନା ଜାରି ରହିଛି ।

ବୌଦ୍ଧବିହାରଗୁଡ଼ିକ ଶିକ୍ଷାର୍ଥୀମାନଙ୍କୁ ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ରଖୁଥିଲେ । କିନ୍ତୁ ଯେଉଁମାନଙ୍କର ସନ୍ନ୍ୟାସୀ ହେବାର ଥିଲା ସେମାନେ ଆହୁରି ଅଧିକ ବର୍ଷ ରହୁଥିଲେ । ନୂଆ ଶିକ୍ଷାର୍ଥୀ ପାଇଁ ଶିକ୍ଷାଦାନ ଏକ ମୌଖିକ ପଦ୍ଧତିରେ ଆରମ୍ଭ କରାଯାଉଥିଲା, ମାତ୍ର ତା'ପରେ ଲେଖାଲେଖି ପଦ୍ଧତି ପ୍ରୟୋଗ କରାଯାଉଥିଲା । ମଠ ବା ବିହାରର ପାଠାଗାରରେ ଗୁରୁତ୍ୱପୂର୍ଣ୍ଣ ପାଣ୍ଡୁଲିପିମାନ ଥିଲା, ନଷ୍ଟ ହେବାର ଅବସ୍ଥା ଆସିଲେ ତା'ର ନକଲ କରିଦିଆଯାଉଥିଲା । ବିହାରର ନାଳନ୍ଦା ଉତ୍ତରରେ ଏକ ପ୍ରମୁଖ ବୌଦ୍ଧବିହାର ତଥା ଶିକ୍ଷାକେନ୍ଦ୍ର ଥିଲା । ଚୀନ୍ ତଥା ଦକ୍ଷିଣପୂର୍ବ ଏସିଆ ଭଳି ଦୂରବର୍ତ୍ତୀ ସ୍ଥାନରୁ ଆକୃଷ୍ଟ ହୋଇ ଛାତ୍ରମାନେ ଏଠାକୁ ଆସୁଥିଲେ । ଏହାକୁ ଦାନ ଆକାରରେ ମିଳିଥିବା ଅନେକ ଗ୍ରାମର ଆୟ ଯୋଗୁଁ ଏହାର ପରିଚାଳନା ସମ୍ଭବ ହେଉଥିଲା । ନାଳନ୍ଦାର ଖନନରୁ ବିହାରର ବହୁଳ ସୁଗଠିତ ବାସଗୃହ ଏବଂ ପ୍ରାର୍ଥନାକକ୍ଷ ଆବିଷ୍କୃତ ହୋଇଛି ।

ଜ୍ୟୋତିଷ ବେଦାଙ୍ଗରେ ଭାରତୀୟ ଜ୍ୟୋତିର୍ବିଜ୍ଞାନର ପ୍ରାରମ୍ଭିକ ପ୍ରତିପାଦନ ମାନ ଲିପିବଦ୍ଧ ହୋଇଛି । ତହିଁର କିଛି ଅଂଶ ବିଶାଳ ଯଜ୍ଞ ପାଇଁ ଉଦ୍ଦିଷ୍ଟ ଥିଲା । ଗ୍ରୀକ୍ ଦୁନିଆ ସହ ସମ୍ପର୍କ ଯୋଗୁଁ ଭାରତକୁ ଅନେକ ପ୍ରକାର ନୂଆ ବ୍ୟବସ୍ଥା ଆହରିତ ହୋଇଛି । ସେଥିରୁ କେତେକ ଭାରତୀୟ ଜ୍ୟୋତିର୍ବିଜ୍ଞାନର ଅଙ୍ଗ ପାଲଟି ଯାଇଛି । ପୁଣି ଚନ୍ଦ୍ରାୟଣ ଓ ନକ୍ଷତ୍ରପୁଞ୍ଜ ଉପରେ ଆଧାରିତ ଜ୍ୟୋତିର୍ବିଜ୍ଞାନ ପରିବର୍ତ୍ତିତ ହୋଇ ଗ୍ରହମାନଙ୍କ ଉପରେ ଗୁରୁତ୍ୱ ଆରୋପ କରାଗଲା । ଗ୍ରୀକ୍ ଏବଂ ଭାରତୀୟ ଜ୍ୟୋତିବିଜ୍ଞାନୀଙ୍କ ମଧ୍ୟରେ ହୋଇଥିବା ସଂଳାପରୁ ଏହା ଜଣାପଡ଼େ । ନୂତନ ଜ୍ୟୋତିର୍ବିଜ୍ଞାନରେ ଏକ ପରିବର୍ତ୍ତନ ପରିଲକ୍ଷିତ ହେଲା ଏବଂ ଏହାଫଳରେ ସମ୍ଭବ ହୋଇଥିବା ନୂଆ ନୂଆ ତଥ୍ୟରାଜି ୟୁରେସୀୟ ଜଗତରେ ଜ୍ୟୋତିର୍ବିଜ୍ଞାନ

ଏବଂ ଗଣିତକୁ ପ୍ରଭାବିତ କଲା । ଏଥିରୁ କେତେକ ସୂଚନା ପରବର୍ତ୍ତୀ ପର୍ଯ୍ୟାୟର ବୃହତ୍ତର ପାଠରୁ ଦେଖିବାକୁ ମିଳେ; କିନ୍ତୁ କେତେକ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ପାଠ ସ୍ୱତନ୍ତ୍ରଭାବେ ଆଲୋଚିତ ହୋଇଛି । ଭାରତର ପ୍ରମୁଖ ଦ୍ରାଘିମା ଉଜ୍ଜୟିନୀ ଜ୍ୟୋତିର୍ବିଜ୍ଞାନ ଅଧ୍ୟୟନର ପ୍ରଧାନ କେନ୍ଦ୍ର ହୋଇଉଠିଲା ।

499 ଖ୍ରୀଷ୍ଟାବ୍ଦରେ ଆର୍ଯ୍ୟଭଟ୍ଟ ନୂତନ ଅଧ୍ୟୟନର ସମସ୍ୟାଗୁଡ଼ିକୁ ସମାଧାନ କରିବାରେ ପ୍ରଥମ ଜ୍ୟୋତିର୍ବିଜ୍ଞାନୀ ଥିଲେ । ସେ 'ପାଇ'ର ମୂଲ୍ୟ 3.1416 ଏବଂ ସୌର ବର୍ଷର ଦୈର୍ଘ୍ୟ 365.3586805 ବୋଲି ଗଣନା କଲେ, ଯାହା ସାଂପ୍ରତିକ ମୂଲ୍ୟର ନିକଟବର୍ତ୍ତୀ । ତାଙ୍କ ମତରେ ପୃଥିବୀ ଏକ ଗୋଲକ ଯାହା ନିଜର ଅକ୍ଷ ଚାରିପଟେ ଘୂରୁଛି । ଏହାର ଛାୟା ଚନ୍ଦ୍ର ଉପରେ ପଡ଼ିଲେ ଚନ୍ଦ୍ରଗ୍ରହଣ ହେଉଛି । ଚନ୍ଦ୍ରଗ୍ରହଣର ଏପ୍ରକାର କାରଣ ବ୍ୟାଖ୍ୟା ବିବାଦାସ୍ପଦ ଥିଲା, କାରଣ ସେତେବେଳକୁ ଚନ୍ଦ୍ରଗ୍ରହଣ ଦିନ ଚନ୍ଦ୍ରକୁ ଏକ ରାକ୍ଷସ ଗିଳୁଥିବା କଥା କୁହାଯାଉଥିଲା । ରାକ୍ଷସ ତତ୍ତ୍ୱକୁ ପରବର୍ତ୍ତୀ ସମୟରେ ଲାଲା ନାମକ ଜଣେ ଜ୍ୟୋତିର୍ବିଜ୍ଞାନୀ ଖଣ୍ଡନ କରିଥିଲେ । ଆର୍ଯ୍ୟଭଟ୍ଟ ଏବଂ ତାଙ୍କ ଚିନ୍ତନର ଅନୁଗାମୀମାନଙ୍କୁ ସମସାମୟିକ ଭାରତୀୟ ଜ୍ୟୋତିର୍ବିଜ୍ଞାନୀଙ୍କ ତୁଳନାରେ ଅଧିକ ବିଜ୍ଞାନସିଦ୍ଧ ବୋଲି ଧରାଯାଏ । ଜ୍ୟୋତିର୍ବିଜ୍ଞାନ ସନ୍ଦର୍ଭରେ ଆର୍ଯ୍ୟଭଟ୍ଟଙ୍କର ଅବଦାନ ଉଲ୍ଲେଖଯୋଗ୍ୟ ଏବଂ ଏହା ବୈଦିକ ଜ୍ୟୋତିର୍ବିଜ୍ଞାନ ଭଳି ପୂର୍ବବର୍ତ୍ତୀ ତତ୍ତ୍ୱଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପରବର୍ତ୍ତୀ ସମୟରେ କେହି କେହି ଏହି ଅନୁଚିନ୍ତାର ବିରୋଧ କଲେ । ଉଦାହରଣ ସ୍ୱରୂପ, ବ୍ରହ୍ମଗୁପ୍ତ ରକ୍ଷଣଶୀଳମାନଙ୍କୁ ଅସନ୍ତୁଷ୍ଟ କରିବାକୁ ଇଚ୍ଛା କଲେ ନାହିଁ ।

ଆର୍ଯ୍ୟଭଟ୍ଟଙ୍କର ଜଣେ ଘନିଷ୍ଠ ସମସାମୟିକ ବରାହମିହିର ଜାତକ ଅଧ୍ୟୟନ ଓ ଜ୍ୟୋତିଷବିଦ୍ୟାରେ ଅଧିକ ଆଗ୍ରହ ପ୍ରଦର୍ଶନ କଲେ, ଯାହା ଜ୍ୟୋତିର୍ବିଜ୍ଞାନ ଏବଂ ଗଣିତର ଅଂଶ ଥିଲା । ଏପ୍ରକାରର କଥାକୁ ହୁଏତ ଆର୍ଯ୍ୟଭଟ୍ଟ ପ୍ରଶ୍ନ କରିଥିବେ, କାରଣ ବରାହମିହିର ଜ୍ୟୋତିର୍ବିଜ୍ଞାନ ଅପେକ୍ଷା ଜ୍ୟୋତିଷବିଦ୍ୟାକୁ ଅଧିକ ଗୁରୁତ୍ୱ ଦେଉଥିଲେ । ଯଦିଓ ଏ ଦୁଇ ପାଠ ଭିତରେ ଏତେ ତୀବ୍ର ବିଭେଦ ନ ଥିଲା । ହେଲେ ଗୋଟିକୁ ଗୁରୁତ୍ୱ ପ୍ରଦାନ ଫଳରେ ପ୍ରଭେଦ ସ୍ପଷ୍ଟ ହୋଇଉଠିଲା । ଜ୍ୟୋତିଷବିଦ୍ୟା ଆର୍ଯ୍ୟଭଟ୍ଟଙ୍କ ତତ୍ତ୍ୱର ବୈଧତାକୁ ଅସ୍ୱୀକାର କଲା । ବରାହମିହିରଙ୍କ ପଞ୍ଚସିଦ୍ଧାନ୍ତିକା ସମସାମୟିକ ଜ୍ୟୋତିର୍ବିଜ୍ଞାନର ପାଞ୍ଚ ପ୍ରକାରର ଚିନ୍ତନକୁ ସ୍ଥାନ ଦେଲା ଯେଉଁଥିରୁ ଦୁଇଟି ଗ୍ରୀକ୍ ଜ୍ୟୋତିର୍ବିଜ୍ଞାନର ପାଖାପାଖି ଥିଲା । ଏହିସବୁ ବ୍ୟବସ୍ଥାର ଅନୁସନ୍ଧାନ ରୁଦ୍ଧଦ୍ୱାର ଭିତରେ ହେଉ ନ ଥିଲା । ଭାରତୀୟ ଏବଂ ଆରବ୍ୟ ଜ୍ୟୋତିର୍ବିଜ୍ଞାନୀ ଏବଂ ଗଣିତଜ୍ଞଙ୍କ ମଧ୍ୟରେ ନିୟମିତ ସଂଳାପ ଚାଲିଥିଲା । ପୂର୍ବବର୍ତ୍ତୀ ସମୟରେ

ଗ୍ରୀକ୍ ଓ ଭାରତୀୟ ଜ୍ୟୋତିର୍ବିଜ୍ଞାନୀଙ୍କ ମଧ୍ୟରେ ଚାଲିଥିବା ଆଲୋଚନା ଭଳି ଏ ଆଲୋଚନା ଜାରି ରହିଥିଲା । ଗଣିତ, ଜ୍ୟୋତିର୍ବିଜ୍ଞାନ ଏବଂ ବିଶେଷଭାବେ ଔଷଧ କ୍ଷେତ୍ରରେ ଭାରତୀୟମାନେ ଉତ୍କର୍ଷ ଲାଭ କରିଥିଲେ । ବାଗଦାଦରେ ଖଲିଫାଙ୍କ ତତ୍ତ୍ୱାବଧାନରେ ଗଢ଼ିଉଠିଥିବା ଅଧ୍ୟୟନ କେନ୍ଦ୍ରଗୁଡ଼ିକରେ ଏହାର ସମାଦର ଥିଲା । ବସ୍ତୁତଃ ଭାରତୀୟ ବିଦ୍ୱାନମାନେ ସେଠାରେ ରହୁଥିଲେ । ଏ ପ୍ରକାରର ଜ୍ଞାନ ବ୍ୟବସ୍ଥାର ପ୍ରମୁଖ ଲକ୍ଷଣ ଥିଲା ଅନୁଚିନ୍ତାର ଆଦାନ ପ୍ରଦାନ, ଯଦିଓ କେତେକ କ୍ଷେତ୍ରରେ ଭାରତୀୟ ଚିନ୍ତକମାନେ ଅନେକ ନୂଆ କଥା କରି ଦେଖାଇଥିଲେ ।

ବୈଷୟିକ ଜ୍ଞାନ ମୁଖ୍ୟତଃ ଶ୍ରେଣୀ ପାଖରେ ଥିଲା । କାରିଗରର ପୁଅମାନେ ବଂଶାନୁକ୍ରମିକ ଭାବେ ବ୍ୟବସାୟର ପ୍ରଶିକ୍ଷଣ ହାସଲ କରୁଥିଲେ । ଏହି କେନ୍ଦ୍ରଗୁଡ଼ିକର ଔପଚାରିକ ଶିକ୍ଷାନୁଷ୍ଠାନ ସହିତ ଭାବ ବିନିମୟ ନ ଥିଲା । ତେବେ ଜ୍ଞାନର କେତେକ ସ୍ୱତନ୍ତ୍ର କ୍ଷେତ୍ରରେ ମତ ବିନିମୟ ଘଟୁଥିଲା । ଗଣିତ ଅଧ୍ୟୟନ ମାଧ୍ୟମରେ ଦୁଇ ପ୍ରକାରର ଶିକ୍ଷା ମଧ୍ୟରେ ଏକ ଯୋଗସୂତ୍ର ସମ୍ଭବ ହୋଇଥିଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ଏ ସମୟରେ ଗାଣିତିକ ଜ୍ଞାନ ବିସରଣ ଅତ୍ୟନ୍ତ ଗାଢ଼ ତଥା ସକ୍ରିୟ ଭାବେ ସମ୍ଭବ ହୋଇଥିଲା । ଆରବ ବିଦ୍ୱାନମାନଙ୍କ ମତରେ ଗ୍ରୀକ୍ ସୂତ୍ର ତୁଳନାରେ ଭାରତୀୟମାନଙ୍କର ଗାଣିତିକ ଜ୍ଞାନ ଅଧିକ ଥିଲା । ଏକଦା ସଂଖ୍ୟାବାଚକ ଚିହ୍ନର ପ୍ରଚଳନ ଥିଲା । ସେଗୁଡ଼ିକୁ ୟୁରୋପରେ ଆରବ୍ୟ ଅଙ୍କ ଭାବେ ପ୍ରବେଶ କରାଗଲା । ଅସଲରେ ଆରବ୍ୟମାନେ ସେ ସବୁକୁ ଭାରତରୁ ଆହରଣ କରିଥିଲେ । ଏକଥା ସେମାନେ ବ୍ୟବହାର କରୁଥିବା ହିନ୍ଦାସା ଶବ୍ଦରୁ ଜଣାପଡ଼ିଥାଏ । ରୋମାନ ସଂକେତଗୁଡ଼ିକ ପରିବର୍ତ୍ତେ ଏଗୁଡ଼ିକୁ ବ୍ୟବହାର କରାଗଲା । ଦଶମିକ ସ୍ଥାନୀୟମାନ ବ୍ୟବସ୍ଥା ଭାରତୀୟ ଗଣିତଜ୍ଞମାନଙ୍କ ଦ୍ୱାରା ନିୟମିତ ଭାବେ ବ୍ୟବହୃତ ହୋଇଆସୁଥିଲା । ସପ୍ତମ ଶତାବ୍ଦୀର ଅଭିଲେଖରେ ଶୂନ୍ୟର ବ୍ୟବହାର ସମ୍ପର୍କୀୟ ବର୍ଣ୍ଣନାରୁ ଏହା ଜଣାଯାଏ । ପରବର୍ତ୍ତୀ ସମୟରେ ଯାହାକୁ ବୀଜଗଣିତ ବୋଲି କୁହାଗଲା, ତାକୁ ମଧ୍ୟ ଆରବବାସୀଙ୍କ ମଧ୍ୟରେ ପ୍ରଚଳନ କରାଯାଇଥିଲା ।

ଔଷଧ ଲାଗି ଥିବା ଆଗ୍ରହ ରସାୟନଶାସ୍ତ୍ର ପାଇଁ ଏକ ତିର୍ଯ୍ୟକ୍ ଆଗ୍ରହ ସୃଷ୍ଟି କରିଥିଲା । ଏଥିପାଇଁ ଜ୍ଞାନର ପରୀକ୍ଷାମୂଳକ ବହୁବିଧ ରୂପ ସମ୍ପର୍କରେ ଜାଣିବା ଆବଶ୍ୟକ ହୋଇପଡ଼ିଲା । କେବଳ ପଦାର୍ଥର ଅଧ୍ୟୟନ ନୁହେଁ ମନ ଓ ବସ୍ତୁର ରୂପାନ୍ତର ସମ୍ବନ୍ଧୀୟ ଧାର୍ମିକ ବିଶ୍ୱାସ ଓ ପ୍ରଭାବ ବିଷୟରେ ଜାଣିବା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । ଚୀନାମାନେ ରସାୟନ ଶାସ୍ତ୍ରରେ ବ୍ୟାପକ କାର୍ଯ୍ୟ କରିଥିଲେ ଏବଂ ଏ କ୍ଷେତ୍ରରେ ଭାରତୀୟ ସୂତ୍ରରୁ ମିଳିଥିବା ସୂଚନା ଗୁରୁତ୍ୱପୂର୍ଣ୍ଣ ଥିଲା ।

ବୌଦ୍ଧିକ ଜୀବନର ଏକ ଲକ୍ଷଣୀୟ ବିଭାବ ଥିଲା ବୌଦ୍ଧବାଦରୁ ଆରମ୍ଭକରି ବ୍ରାହ୍ମଣ୍ୟବାଦ ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରର ଚିନ୍ତକମାନଙ୍କ ମଧ୍ୟରେ ପ୍ରାଣବନ୍ତ ଦାର୍ଶନିକ ବିତର୍କ । ଧୀରେ ଧୀରେ ଏହି ବିତର୍କ ଉତ୍ତମଭାବେ ସଂଜ୍ଞାୟିତ ଦାର୍ଶନିକ ବ୍ୟବସ୍ଥାରେ ପରିଣତ ହେଲା । ତନ୍ମଧ୍ୟରୁ ଛ'ଟି ଦାର୍ଶନିକ ବ୍ୟବସ୍ଥାକୁ ସାଧାରଣତଃ ମାନ୍ୟତା ମିଳିଥାଏ । ଯଦିଓ ସେଗୁଡ଼ିକର ଅୟମାରମ୍ଭ ଗୁପ୍ତଯୁଗର ପୂର୍ବବର୍ତ୍ତୀ ସମୟର ଦାର୍ଶନିକ ଅନୁଚିନ୍ତା ଭିତରୁ ସମ୍ଭବ ହୋଇଥିଲା, ତଥାପି ସେଗୁଡ଼ିକ କେତେକ ଗୁରୁତ୍ୱପୂର୍ଣ୍ଣ ବିଭାବ ଓ ବିଧି ଗୁପ୍ତ ସମୟରେ ହିଁ ବିକଶିତ ହୋଇଥିଲା । ବୌଦ୍ଧ ଶିକ୍ଷକମାନଙ୍କ ସହ ବିତର୍କ କଲାବେଳେ ତର୍କ ଆଧାରିତ ନ୍ୟାୟଶାସ୍ତ୍ର ବ୍ୟବହାର କରାଯାଉଥିଲା । ବୌଦ୍ଧ ଶିକ୍ଷକମାନେ ସେମାନଙ୍କର ଅଧିକ ଜ୍ଞାନ ଓ ତର୍କପ୍ରୟୋଗ ଲାଗି ନିଜକୁ ଗର୍ବିତ ମନେକରୁଥିଲେ । ବୈଶେଷିକ ଯୁକ୍ତି ଦର୍ଶାଉଥିଲା ଯେ ଅନେକ ପରମାଣୁ ଦ୍ୱାରା ଏ ବିଶ୍ୱ ଗଠିତ ହୋଇଛି । ମାତ୍ର ଏ ପରମାଣୁମାନେ ଆତ୍ମାଠାରୁ ଭିନ୍ନ, ତେଣୁ ଆତ୍ମା ଓ ପଦାର୍ଥର ଭିନ୍ନ ଭିନ୍ନ ବିଶ୍ୱ ରହିଛି । ସାଂଖ୍ୟ ଭଳି ନାସ୍ତିକ ଦର୍ଶନ ଏହି ସୃଷ୍ଟି ପଛରେ ଥିବା ପଚିଶଟି ବିଧି ସମ୍ପର୍କରେ ସୂଚନା ପ୍ରଦାନ କରେ । ପଦାର୍ଥ ଓ ଆତ୍ମା ମଧ୍ୟରେ ଥିବା ଦ୍ୱିବିଧତା ସମ୍ପର୍କରେ ଅବଗତି ହାସଲ କରାଯାଇଥିଲା । ସାଂଖ୍ୟ ଦାର୍ଶନିକମାନେ ସତ୍ତ୍ୱ (virtue), ରଜ (passion) ଏବଂ ତମ (dullness) ଇତ୍ୟାଦି ତ୍ରିଗୁଣ ତତ୍ତ୍ୱର ସମର୍ଥକ ଥିଲେ ଏବଂ ଏଗୁଡ଼ିକ ମଧ୍ୟରେ ଭାରସାମ୍ୟ ରହିଲେ ଜୀବନ ସ୍ୱାଭାବିକ ହେବ ବୋଲି କହୁଥିଲେ । ସେ ସମୟର ଚିକିତ୍ସା ପାଠର ରସସ୍ରୋତ ତତ୍ତ୍ୱ ଦ୍ୱାରା ହୁଏତ ଏ ଦାର୍ଶନିକମାନେ ପ୍ରଭାବିତ ହୋଇଥିବେ । ଯୋଗ ଦର୍ଶାଉଥିଲା ଯେ ଶରୀର ଏବଂ ଇନ୍ଦ୍ରିୟ ଉପରେ ଯଥାର୍ଥ ନିୟନ୍ତ୍ରଣ ଚରମ ବାସ୍ତବତାର ଉପଲବ୍ଧି ଲାଗି ପ୍ରାକ୍ ପ୍ରସ୍ତୁତି ହିସାବରେ କାର୍ଯ୍ୟ କରିବ । ଯୋଗର ଅଗ୍ରଗତି ଲାଗି ଶରୀର ଗଠନ ଉପରେ ଜ୍ଞାନ ହାସଲ ଜରୁରୀ ଥିଲା । ତେଣୁ ଯୋଗାଭ୍ୟାସ ସହ ଜଡ଼ିତ ଲୋକମାନେ କିଛିଟା ଚିକିତ୍ସା ଜ୍ଞାନ ହାସଲ କରୁଥିଲେ । ବ୍ରାହ୍ମଣ୍ୟ ଶକ୍ତିର ଉତ୍ସ ବେଦ ଅବହେଳିତ ହେଉଛି ବୋଲି ଏକ ଅବଧାରଣାରୁ ମିମାଂସା ଆରମ୍ଭ ହେଲା । ଏହାର ସମର୍ଥକମାନେ ବେଦର ଚୂଡ଼ାନ୍ତ ନିୟମ ଉପରେ ଗୁରୁତ୍ୱ ଆରୋପ କଲେ ଏବଂ ବୈଦିକୋତ୍ତର କାଳର ବିଚାରକୁ ଅଗ୍ରାହ୍ୟ କଲେ । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ଯେତେବେଳେ ଅଣବ୍ରାହ୍ମଣ୍ୟବାଦୀ ଚିନ୍ତନ ତୀବ୍ର ହେଲା ସେତେବେଳେ ତାକୁ ଅଗ୍ରାହ୍ୟ କରିବାରେ ବେଦାନ୍ତର ଭୂମିକା ନିର୍ଣ୍ଣାୟକ ଥିଲା । ବେଦାନ୍ତ ମଧ୍ୟ ବେଦକୁ ତା'ର ଉତ୍ସ ବୋଲି ମାନେ ଏବଂ ସର୍ବତ୍ର ପରମାତ୍ମାଙ୍କ ଅବସ୍ଥିତି ସମ୍ପର୍କୀୟ ମତ ଉପସ୍ଥାପନ କରେ । ଏହା ଆହୁରି ମଧ୍ୟ କହେ ଯେ ଅସ୍ତିତ୍ୱର ଚରମ ଉଦ୍ଦେଶ୍ୟ ହେଉଛି ଶାରୀରିକ ମୃତ୍ୟୁ ପରେ ଆତ୍ମା ସହିତ ପରମାତ୍ମାର ମିଳନ ।

ଏହି ସବୁ ଚିନ୍ତନ ଗୋଷ୍ଠୀ ଏକକ ଭାବେ ନିରୋଳାରେ ଗଢ଼ିଉଠି ନ ଥିଲା । ଭିନ୍ନ ଭିନ୍ନ ଚିନ୍ତନ ଗୋଷ୍ଠୀ ଓ ସଂପ୍ରଦାୟ ମଧ୍ୟରେ ବିତର୍କ, ଆଲୋଚନା, ପରସ୍ପରର ମତ ଗ୍ରହଣ ଓ ଖଣ୍ଡନ ମାଧ୍ୟମରେ ସେଗୁଡ଼ିକର ଜନ୍ମ ଓ ବିକାଶ ହୋଇଥିଲା । ଯେକୌଣସି ଆଲୋଚନାରେ ଏକ ଗୁରୁତ୍ୱପୂର୍ଣ୍ଣ ପଦ୍ଧତି ଥିଲା ଦ୍ୱନ୍ଦାତ୍ମକ ପ୍ରକ୍ରିୟାର ଜାଗରଣ । ସମର୍ଥନକାରୀ ଯୁକ୍ତି ସହ ପ୍ରଥମେ ଏକ ପ୍ରସଙ୍ଗକୁ ଉପସ୍ଥାପନ କରାଯାଉଥିଲା, ଯାହାକୁ ପରେ ବିଶଦ ଯୁକ୍ତି ମାଧ୍ୟମରେ ଖଣ୍ଡନ କରାଯାଉଥିଲା । ଅନ୍ୟ କ୍ଷେତ୍ରରେ ପ୍ରଥମ ପ୍ରସଙ୍ଗଟିର ନକାରାତ୍ମକ ଦିଗ ଉପସ୍ଥାପନ କରାଯାଇ ପରେ ତାହା ଖଣ୍ଡନ କରାଯାଉଥିଲା । ଶେଷରେ ଉଭୟ ମତାମତକୁ ନେଇ ଏକ ସାରାଂଶ ନିର୍ଣ୍ଣିତ ହେଉଥିଲା । ସହମତି ହେବା ନ ହେବା ଥିଲା ଅତିରିକ୍ତ । ଏହା କେବଳ ଏକ ଯୌକ୍ତିକ ପ୍ରକ୍ରିୟା ନ ଥିଲା, ଦାର୍ଶନିକ ଅବବୋଧର ଗାମ୍ଭୀର୍ଯ୍ୟ ଏହି ଅନୁଚିନ୍ତା ଓ ବିତର୍କକୁ ଏକ ମୁକ୍ତ ରୂପ ଦେଇଥିଲା । ସ୍ଥଳବିଶେଷରେ ଏପ୍ରକାରର ବିତର୍କ ଅବିଜ୍ଞେୟବାଦ ବା ନାସ୍ତିକତାବାଦ ଆଡ଼କୁ ମୁହାଁଉଥିଲା । ସ୍ପଷ୍ଟଭାବରେ କହିଲେ ବିତର୍କଭୁକ୍ତ ହୋଇଥିବା ନୂଆ ଜ୍ଞାନ ବ୍ୟବସ୍ଥାଠାରୁ ଦାର୍ଶନିକ ଅନୁଚିନ୍ତା ଦୂରେଇ ରହିପାରି ନ ଥିଲା । ଏହି ପର୍ଯ୍ୟାୟରେ ଶେଷ ଦୁଇ ଚିନ୍ତନ ଗୋଷ୍ଠୀ ବସ୍ତୁତଃ ଆଧିଭୌତିକ ଥିଲେ, ପ୍ରଥମ ଚାରୋଟି ଅଭିଜ୍ଞତାସିଦ୍ଧ ବିଶ୍ଳେଷଣ ସହ ଦୃଢ଼ଭାବେ ସଂଯୁକ୍ତ ଥିଲେ । ନ୍ୟାୟଶାସ୍ତ୍ର ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଉଥିଲା, କାରଣ ଅନେକ ବୌଦ୍ଧ ଚିନ୍ତନର କେନ୍ଦ୍ରରେ ଏହା ଅବସ୍ଥାପିତ ଥିଲା । ତର୍କଶାସ୍ତ୍ରର ଦାର୍ଶନିକମାନଙ୍କ ମଧ୍ୟରେ ଶତାବ୍ଦୀ ଶତାବ୍ଦୀ ଧରି ବିତର୍କ ଜାରି ରହିଥିଲା । ସେହି ସମୟରେ ବେଦାନ୍ତକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ଏହାକୁ ଭାରତର ପ୍ରାକ୍ ଆଧୁନିକ କାଳୀନ ଶ୍ରେଷ୍ଠତମ ଦାର୍ଶନିକ ଚିନ୍ତନ ବୋଲି କୁହାଯାଉଥିଲା । ସେତେବେଳେ ଦିବ୍ୟ ଉତ୍ସ ନିସୃତ ବେଦର କାଳଖଣ୍ଡ ବହୁତ ପ୍ରାଚୀନ ହୋଇପଡ଼ିଥିଲା । ପୂଜକର ଜ୍ଞାନ ଓ ଅନୁମୋଦନ ଭିତ୍ତିରେ ଏହା ବିଶେଷଭାବେ ସୂତ୍ରଭିତ୍ତିକ ହୋଇଯାଇଥିଲା । ବେଦ ସମ୍ବନ୍ଧୀୟ ନିବେଦନରୁ ଏହା ବୈଦିକ ଜ୍ଞାନ ବୋଲି ଦୃଢ଼ ପ୍ରତୀୟମାନ ହେଉ ନ ଥିଲା । ଏହା ଅବଶ୍ୟ ବୈଧତା ଲାଭ କରିବା ସକାଶେ ଏକ ମାର୍ଗ ହୋଇଥାଇ ପାରେ ।

ଶାସ୍ତ୍ରୀୟତାର ଛାପ ପ୍ରସ୍ତୁତିରେ ସହାୟକ ନୂତନ ଜ୍ଞାନ ବ୍ୟବସ୍ଥା ଏକ ଇଚ୍ଛାମୁତାବକ କାର୍ଯ୍ୟ ନ ଥିଲା । ତାହା ଅନେକ ପ୍ରାକ୍ ପରିସ୍ଥିତିରୁ ଉଦ୍‌ଭୂତ ହୋଇଥିଲା । ରକ୍ଷଣଶୀଳତା ଏବଂ ବୈଷମ୍ୟ ମଧ୍ୟରେ ସଂଘର୍ଷ ଏବଂ ଦାର୍ଶନିକ ସନ୍ଦେହବାଦର ଅବବୋଧରୁ ଏହା ସୃଷ୍ଟି ହୋଇଥିଲା । ଯତ୍ନଶୀଳ ପର୍ଯ୍ୟବେକ୍ଷଣର ସାମର୍ଥ୍ୟ, ଦୂରବୀକ୍ଷଣର ବିନା ସହାୟତାରେ ପ୍ରସ୍ତୁତ ଅନେକ ଜ୍ୟୋତିର୍ବିଜ୍ଞାନ ତତ୍ତ୍ୱରୁ ପ୍ରମାଣିତ ହୁଏ । ଅନେକ ତତ୍ତ୍ୱ ମଧ୍ୟରୁ ଗ୍ରହଣର କାରଣକୁ ଉଦାହରଣ ଭାବେ ନିଆଯାଉ । ଏହାର କାରଣ ସନ୍ଧାନ କଲାବେଳେ ବିଦ୍ୱାନ୍‌ମାନେ

ଯୁକ୍ତିବାଦିତା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି, ଯଦିଓ ଅନ୍ୟ କେହି କେହି ପୁରାଣ କଥା ବା କିମ୍ବଦନ୍ତୀର ସାହାଯ୍ୟ ନେଇଛନ୍ତି । ଜ୍ୟୋତିଷବିଦ୍ୟାଭ୍ୟାସ ଆଶ୍ଚର୍ଯ୍ୟଜନକ ନ ଥିଲା । ଯେଉଁମାନେ ଜ୍ଞାନର ଯୁକ୍ତିଭିତ୍ତିକ ମୂଳଦୁଆକୁ ଅସ୍ୱୀକାର କରୁଥିଲେ ସେମାନେ ଏପରି ବାଟରେ ଯିବା ସ୍ୱାଭାବିକ । ବୈଦିକ ବ୍ରାହ୍ମଣ୍ୟବାଦର ବିଶ୍ୱଦୃଷ୍ଟି ନୂତନ ସୂତ୍ରମାନଙ୍କ ଦ୍ୱାରା ଖଣ୍ଡିତ ହେଉଥିଲା । ଏଥିରୁ କେତେକ କ୍ଷେତ୍ରରେ ବୌଦ୍ଧ ତଥା ଅନ୍ୟାନ୍ୟ ଦାର୍ଶନିକମାନଙ୍କ ସହ ବିତର୍କ ସ୍ୱାଭାବିକ ଥିଲା । ରକ୍ଷଣଶୀଳତା ଏବଂ ବହୁବିଧତାବାଦ ମଧ୍ୟରେ ଥିବା ଦ୍ୱନ୍ଦ୍ୱ କେବଳ ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ସୀମାବଦ୍ଧ ଥିଲା ତାହା ନୁହେଁ, ବରଂ ଏହା ଜ୍ଞାନର ବିଭିନ୍ନ କ୍ଷେତ୍ରକୁ ବ୍ୟାପିଯାଇଥିଲା ।

ଜ୍ୟୋତିର୍ବିଜ୍ଞାନ ଏବଂ ଗଣିତ ସ୍ୱାଭାବିକ ଭାବରେ କାଳ ଏବଂ ବ୍ରହ୍ମାଣ୍ଡଶାସ୍ତ୍ରରେ ଆଗ୍ରହ ଲାଗି ଉତ୍ସାହ ପ୍ରଦାନ କଲା । ବ୍ରହ୍ମାଣ୍ଡଶାସ୍ତ୍ରର ଦୃଷ୍ଟିକୋଣରୁ ସମୟକୁ ଏକ ଚକ୍ର ଭାବରେ ଅଭିହିତ କରାଯାଇଥିଲା । ଚକ୍ରାକାର ସମୟକୁ ନେଇ ଅନ୍ତତଃପକ୍ଷେ ଦୁଇଟି ମତ ଥିଲା । ଉଭୟରେ ଅଧିବର୍ଷ କଳ୍ପନା ଅନ୍ତର୍ଭୁକ୍ତ । ସାଧାରଣ ଭାବେ ବ୍ୟବହୃତ ତତ୍ତ୍ୱ ହେଲା ମହାଯୁଗ ଏବଂ କମ୍ ବ୍ୟବହୃତ ହେଉଥିବା କଥାଟି ହେଲା 'ମନ୍ୱନ୍ତର' । ସେ ଉଭୟ ବେଳେବେଳେ ମିଶିଯାଉଥିଲେ । ଏହି ଚକ୍ରକୁ କଳ୍ପ କୁହାଯାଉଥିଲା ଏବଂ ଏହା 4,320,000 ମାନବ ବର୍ଷ ସଙ୍ଗେ ସମାନ ବୋଲି ଧାରଣା ଥିଲା । ଏହି ତତ୍ତ୍ୱମାନଙ୍କ ମଧ୍ୟରୁ ଦ୍ୱିତୀୟ ତତ୍ତ୍ୱ ଅନୁସାରେ ଏହି ଚକ୍ର ଚଉଦଟି ମନ୍ୱନ୍ତର ବିଶିଷ୍ଟ । ପ୍ରତ୍ୟେକଟି ଭିତରେ ଦୀର୍ଘ ପାର୍ଥକ୍ୟ ଅଛି । ପ୍ରତ୍ୟେକ ମନ୍ୱନ୍ତର ଶେଷରେ ପୁଣିଥରେ ବିଶ୍ୱର ସର୍ଜନା ହୁଏ ଏବଂ ତାହା ମନୁଙ୍କ ଦ୍ୱାରା ଶାସିତ ହୁଏ । ସଂପ୍ରତି ଆମେ ବର୍ତ୍ତମାନ ସେହି ଚକ୍ରର ଚଉଦ ପର୍ଯ୍ୟାୟରୁ ସପ୍ତମରେ ଅଛେ । ପ୍ରତ୍ୟେକଟି ପୁଣି 71ଟି ମହାଯୁଗରେ ବିଭକ୍ତ ।

ଏହାକୁ ବୁଝିବାର ଅନ୍ୟ ରୂପଟି ସଂଖ୍ୟା ଦିଗରୁ ଆଉ ଟିକେ ସ୍ପଷ୍ଟ । ମହାଯୁଗ ଏ କ୍ଷେତ୍ରରେ ଚାରିଟି ଯୁଗରେ ବିଭକ୍ତ ଏବଂ ପ୍ରତ୍ୟେକଟି ପୁଣି ଏକ ଚକ୍ର । ଏହି ଚାରି ଯୁଗ ହେଲେ ସତ୍ୟ, ତ୍ରେତୟା, ଦ୍ୱାପର ଓ କଳି । ଏହି ଯୁଗମାନ କ୍ରମାନ୍ୱୟରେ 4,800 ବର୍ଷ, 3,600 ବର୍ଷ, 2,400 ବର୍ଷ ଏବଂ 1,200 ବର୍ଷ ସମ୍ବଳିତ । ମାନବ ବର୍ଷ ସହ ସେଗୁଡ଼ିକର ତୁଳନା ନିମନ୍ତେ ପ୍ରତ୍ୟେକକୁ 360 ରେ ଗୁଣନ କରିବାକୁ ହେବ । ଏହାର ଅବକ୍ଷୟ ଗାଣିତିକ ରୀତି (Arithmatic progression) ଅନୁସାରେ ହୋଇଥାଏ ଏବଂ ତାହା ସହ ତାଳ ଦେଇ ଜୀବନର ମାନରେ ମଧ୍ୟ ଅବକ୍ଷୟ ଦେଖାଦେଇଥାଏ । ସଂପ୍ରତି ଏହି ଯୁଗମାନଙ୍କ ମଧ୍ୟରୁ ଆମେ ଚତୁର୍ଥ ଯୁଗ କଳିଯୁଗରେ ଅଛେ । ଏହା ଖ୍ରୀ.ପୂ. 3102 ରୁ ଆରମ୍ଭ ହୋଇଥିବା କଥା କୁହାଯାଏ । କଳିଯୁଗରେ ଦୁନିଆ ମନ୍ଦ ଓ ଦୁଷ୍ଟ ଶକ୍ତି ଦ୍ୱାରା କବଳିତ !

କଳିଯୁଗର ପରବର୍ତ୍ତୀ ପର୍ଯ୍ୟାୟକୁ ଧର୍ମଶାସ୍ତ୍ର ବର୍ଣ୍ଣିତ ସାମାଜିକ ମୂଲ୍ୟବୋଧର ଅବକ୍ଷୟ ସମୟ ଭାବେ ଚିହ୍ନିତ କରାଯାଇଥାଏ । ଏ କାଳରେ ନୀଚ ଜାତିର ଲୋକେ ଉଚ୍ଚ ଜାତିର ମାନ୍ୟତା ପାଇବେ ବୋଲି କୁହାଯାଏ । ପୃଥିବୀ ଏକପ୍ରକାର ଓଲଟା ଗତି ସମ୍ବଳିତ ହେବ ଏବଂ ସେହି ଅନୁସାରେ ବିପରୀତ ମୂଲ୍ୟବୋଧ ପ୍ରତିଫଳିତ ହେବ । ଯେହେତୁ ବର୍ତ୍ତମାନ କଳିଯୁଗ ଚାଲିଛି, ଶତାବ୍ଦୀ ଶତାବ୍ଦୀ ଧରି ଏହାର ଗୁଣବତ୍ତା ଦୃଶ୍ୟମାନ ହେଉଛି । ଯେଉଁମାନେ ପ୍ରଚଳିତ ସମୟକୁ ଦୁଃସମୟ ବୋଲି ମନେକରନ୍ତି, ସେମାନଙ୍କ ଲାଗି ଏହା ମନ୍ଦର ଏକ ରୂପକରେ ପରିଣତ ହୋଇଛି । ପୃଥିବୀ ବିଷ୍ଣୁଙ୍କର ଦଶମ ଅବତାର କଳ୍କୀଙ୍କୁ ଅପେକ୍ଷା କରିଛି, ଯିଏ ଆବିର୍ଭୂତ ହୋଇ ମୂଲ୍ୟବୋଧର ପୁନଃପ୍ରତିଷ୍ଠା କରିବେ । ଚକ୍ରାକାର ସମୟବୋଧ ମଧ୍ୟ ପୁନର୍ଜନ୍ମକୁ ବୁଝାଇବା ଲାଗି ଏକ ଯଥାଯଥ ମାର୍ଗ ।

ଜ୍ୟୋତିର୍ବିଜ୍ଞାନ ଏବଂ ଗଣିତରେ ହିସାବ କିତାବ ଲାଗି ଦୀର୍ଘ ସମୟର ଆବଶ୍ୟକତା ରହିଛି ଏବଂ ଦୀର୍ଘ ସମୟକୁ ସହଜରେ ଚକ୍ରଭାବେ ଅଭିହିତ କରାଯାଏ । ମାତ୍ର ସମୟକୁ ବୁଝିବା ଓ ବୁଝାଇବାର ଏହା ଏକମାତ୍ର ମାର୍ଗ ନୁହେଁ । ଅତୀତକୁ ମନେପକାଇବା ଅଥବା ବର୍ତ୍ତମାନ ଆଧାରରେ ଐତିହାସିକ ଘଟଣାବଳୀ ସମ୍ପର୍କରେ ଦାବି ଉପସ୍ଥାପନ କରିବା କ୍ଷେତ୍ରରେ ସମୟକୁ ରୈଖୀୟ ରୂପରେ ଦେଖାଯାଇଥାଏ । ପୁରାଣଗୁଡ଼ିକ ଯାହାକୁ ମୁଖ୍ୟ ଚରିତ୍ର ମନେକରନ୍ତି ତଥା ଯେଉଁଗୁଡ଼ିକୁ ଅତୀତର ରାଜବଂଶ ବୋଲି କହନ୍ତି, ସେମାନଙ୍କର ବଂଶାବଳୀ ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ତାଲିକାଭୁକ୍ତ ପିଢ଼ି ବାସ୍ତବ ବା କଳ୍ପନା ଯାହା ହୋଇଥାଉ ନା କାହିଁକି ତଦ୍ୱାରା ରୈଖୀୟ ସମୟର ଧାରଣା ବଳବତ୍ତର ହୁଏ । ଏଥିପାଇଁ ବ୍ୟବହୃତ ହେଉଥିବା ବଂଶ ଶବ୍ଦଟି ବାଉଁଶ ବା ବେତ ଲାଗି ମଧ୍ୟ ବ୍ୟବହାର କରାଯାଇଥାଏ ଯାହାର ପ୍ରତ୍ୟେକ ଭାଗ ଗୋଟିଏ ଗୋଟିଏ ଗଣ୍ଠିରୁ ବିକଶିତ ହୋଇଥାଏ । ପିଢ଼ି ଅନୁଯାୟୀ ସମୟକୁ ବୁଝିବା ଲାଗି ଏହା ଏକ ଉପଯୁକ୍ତ ସାଦୃଶ୍ୟ । ବର୍ଷରୁ ଆରମ୍ଭକରି ଯୁଗ ଇତ୍ୟାଦିର ବର୍ଣ୍ଣନା ମଧ୍ୟ ରୈଖୀୟ ସମୟର ସୂଚକ ଅଟେ । ତେଣୁ ଏଥିରୁ ଜଣାଯାଏ ଉଭୟ ରୈଖୀୟ ସମୟ (ସମୟ ପ୍ରବାହ) ଏବଂ ଚକ୍ରାକାର ସମୟର (ସମୟ ଚକ୍ର) ବ୍ୟବହାର କରାଯାଏ । ବେଳେବେଳେ ପ୍ରଥମଟି ଦ୍ୱିତୀୟର ଅନ୍ତର୍ଗତ ହୋଇଥାଏ । ତେବେ ଉଭୟଙ୍କର ଐତିହାସିକ ଏବଂ ସାମାଜିକ ପ୍ରୟୋଜନ ଭିନ୍ନ ଭିନ୍ନ ଅଟେ ।

## ସୃଜନଶୀଳ ସାହିତ୍ୟ

ଏହି ସମୟର ଅନେକ ସୃଜନଶୀଳ ସାହିତ୍ୟ ପରବର୍ତ୍ତୀ କାଳରେ ନାଟକ, କବିତା ଓ ସାହିତ୍ୟିକ ତତ୍ତ୍ୱର ଅନୁଶୀଳନ ନିମନ୍ତେ ଉତ୍ସ ରୂପେ କାର୍ଯ୍ୟ କଲା । ଭରତମୁନିଙ୍କ

ନାଟ୍ୟଶାସ୍ତ୍ରର ଉଦ୍‌ପ୍ରେରକ ଭୂମିକାକୁ ଦୃଷ୍ଟିରେ ରଖି କେହି କେହି ଏହାକୁ ନୃତ୍ୟ, ନାଟକ ଏବଂ କବିତାର ଏକ ଭିତ୍ତି ରଚନା ହିସାବରେ ଗ୍ରହଣ କରିଛନ୍ତି । ସାହିତ୍ୟ ସମାଲୋଚନାର କାର୍ଯ୍ୟ ହେଲା ଧ୍ୱନି ଏବଂ ଅର୍ଥ, ମିଜାଜ ଏବଂ ଉଜ୍ଜୀବନ ମଧ୍ୟରେ ସମ୍ବନ୍ଧର ଅନ୍ୱୟ ସାଧନ । ଏହି ଆଲୋଚନା ପରବର୍ତ୍ତୀ କାଳରେ ରସ ତତ୍ତ୍ୱର ବିକାଶରେ ସହାୟକ ହେଲା । ଏଥିରେ ଦର୍ଶାଗଲା ଯେ ଗୋଟିଏ ସୃଜନଶୀଳ କାର୍ଯ୍ୟ ଯେତେ ବେଶି ପ୍ରତିକ୍ରିୟା ଉଜ୍ଜୀବିତ କରିପାରିବ, ତାହା ସେତେ ବେଶି ସଫଳ ।

ସଂସ୍କୃତର ପଦ୍ୟ ଓ ଗଦ୍ୟ ମୁଖ୍ୟତଃ ଭବ୍ୟ ସମାଜର ସାହିତ୍ୟ ଥିଲା । ଏହା ଦରବାର, ଅଭିଜାତ ବର୍ଗ, ନଗରର ଧନିକ ସଂପ୍ରଦାୟ ସହ ଜଡ଼ିତ ଥିଲା । କାଳିଦାସ ଜଣେ ଅସାଧାରଣ କବି ଏବଂ ନାଟ୍ୟକାର ଥିଲେ । ତାଙ୍କର ରଚନାମାନ ବହୁଳଭାବେ ସମ୍ମାନିତ ଏବଂ ପରବର୍ତ୍ତୀ କାଳର କବିତାରେ ତା'ର ପ୍ରଭାବ ପ୍ରତିଧ୍ୱନିତ । ଦୃଶ୍ୟ ଏବଂ ଆବେଗ ଆଧାରରେ ରଚିତ ମେଘଦୂତ ତାଙ୍କର ଏକ ଦୀର୍ଘ ଗୀତିକାବ୍ୟ । ତାଙ୍କର ନାଟକ 'ଅଭିଜ୍ଞାନଶାକୁନ୍ତଳମ୍' ଏକ ଉଲ୍ଲେଖନୀୟ କୃତି ହିସାବରେ ସାହିତ୍ୟ ସମାଲୋଚକମାନଙ୍କ ଦ୍ୱାରା ଆଦୃତ । ଉଭୟ ସଂସ୍କୃତ ସାହିତ୍ୟ ତତ୍ତ୍ୱ ଏବଂ ପରେ ୟୁରୋପରେ ଏହା ବ୍ୟାପକ ଭାବେ ଚର୍ଚ୍ଚିତ ହୋଇଛି । ଜର୍ମାନ ରୋମାଣ୍ଟିକବାଦ ବା ସ୍ୱଚ୍ଛନ୍ଦତାବାଦକୁ (Romanticism) ଏହା ବ୍ୟାପକଭାବେ ପ୍ରଭାବିତ କରିଛି । କାଳିଦାସଙ୍କ ପରେ ପରେ ସଂସ୍କୃତ ସାହିତ୍ୟରେ ସୃଜନଶୀଳତା ବ୍ୟାପକଭାବେ ପ୍ରସ୍ଫୁଟିତ ହେଲା । ଭାରବୀଙ୍କ 'କିରାତାର୍ଜୁନୀୟ', ମାଘଙ୍କର 'ଶିଶୁପାଳ ବଧ' ଏବଂ 'ଭଟ୍ଟି' କାବ୍ୟ ଏବଂ ପରବର୍ତ୍ତୀ କାଳରେ ଭବଭୂତିଙ୍କ 'ମାଳତୀ-ମାଧବ' ହେଲେ କେତୋଟି ବେଶ୍ ଉଲ୍ଲେଖନୀୟ କୃତି । ଏଗୁଡ଼ିକର ବିଷୟବସ୍ତୁ ମହାକାବ୍ୟିକ ଥିଲା ବା ପରିଚିତ କାହାଣୀ ଥିଲା ଯାହା ଦରବାରୀ ଶୈଳୀରେ ବର୍ଣ୍ଣିତ ହୋଇଥିଲା ଏବଂ ବହୁବିଧ ସାହିତ୍ୟିକ ଉତ୍କର୍ଷରେ ପରିପୂର୍ଣ୍ଣ ଥିଲା । ଭର୍ତ୍ତୃହରି ଏବଂ ଅମରୁଙ୍କ କବିତାଗୁଡ଼ିକ ଅଧିକ ଶୃଙ୍ଗାର ଭାବଦ୍ୟୋତକ ଥିଲା । ନାଟକଗୁଡ଼ିକ ମୁଖ୍ୟତଃ ସ୍ୱଚ୍ଛନ୍ଦତାବାଦୀ ହାସ୍ୟରସାତ୍ମକ (Romantic comedy) ଥିଲା । ଥିଏଟରର ଉଦ୍ଦେଶ୍ୟ ମନୋରଞ୍ଜନ ହୋଇଥିବାରୁ ଦୁଃଖାନ୍ତକ ବିଷୟବସ୍ତୁକୁ ବାଦ୍ ଦିଆଯାଉଥିଲା । ଶୂଦ୍ରକଙ୍କ ଦ୍ୱାରା ରଚିତ 'ମୃଚ୍ଛକଟିକ' ନଗର ଜୀବନ ଉପରେ ଧାରଣା ପ୍ରଦାନ କରେ । ବିଶାଖାଦତ୍ତ ରଚିତ 'ମୁଦ୍ରାରାକ୍ଷସ'ରେ ଅତୀତର ରାଜନୈତିକ ଘଟଣାବଳୀକୁ ନେଇ ନାଟ୍ୟରୂପ ପ୍ରଦାନ କରାଯାଇଥିଲା । ଏହି ନାଟକରେ ମୌର୍ଯ୍ୟମାନେ ନନ୍ଦମାନଙ୍କୁ କ୍ଷମତାଚ୍ୟୁତ କରିବାର କଥା ବର୍ଣ୍ଣିତ ହୋଇଥିଲା । ସେହିପରି 'ଦେବୀ ଚନ୍ଦ୍ରଗୁପ୍ତ'ରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର କ୍ଷମତାଲିପ୍ସା କଥା ବର୍ଣ୍ଣନା କରାଯାଇଛି । ଉଭୟ କ୍ଷେତ୍ରରେ ଦରବାର ତରଫରୁ ପଚରାଯାଇଥିବା ପ୍ରଶ୍ନ ଅଛି । କିନ୍ତୁ ଏ ରଚନାଗୁଡ଼ିକ ସ୍ୱତନ୍ତ୍ର ଓ ଭିନ୍ନ । ଏଥିରେ

ଲେଖକଙ୍କର ଐତିହାସିକ ଘଟଣାକ୍ରମକୁ ବଦଳାଇ ପାରିବାର ସମ୍ବେଦନଶୀଳତା ପରିଲକ୍ଷିତ ହୁଏ ।

ଜଣେ ଯୁବକ ରାଜପୁତ୍ରଙ୍କୁ ଶିକ୍ଷିତ କରିବା ଲାଗି ବର୍ଣ୍ଣିତ 'ପଞ୍ଚତନ୍ତ୍ର' ନୀତିକଥା ବିଭିନ୍ନ ରୂପାନ୍ତରରେ ବିସ୍ତୃତ ଓ ବ୍ୟାପକ ହୋଇଛି ଏବଂ ଅନୁବାଦ ମାଧ୍ୟମରେ ପାଶ୍ଚାତ୍ୟକୁ ଯାଇଛି । ସୁବନ୍ଧୁଙ୍କର 'ବାସବଦତ୍ତା' ତା'ର ସାହିତ୍ୟିକ ଗୁଣବତ୍ତା ଲାଗି ପ୍ରଖ୍ୟାତ ହୋଇପାରିଛି । ବାଣଙ୍କ 'ହର୍ଷଚରିତ' ଉଭୟ ଜୀବନୀ ଏବଂ ସଂସ୍କୃତ ଗଦ୍ୟର ଏକ ନମୁନା ରୂପେ ପ୍ରତିଷ୍ଠା ଅର୍ଜନ କରିଛି । ତାଙ୍କର ଅତି କଳ୍ପନାତ୍ମକ ବର୍ଣ୍ଣନା 'କାଦମ୍ବରୀ'ର ବିଷୟବସ୍ତୁ ଏତେ ଚମତ୍କାର ଯେ ଜଣେ ଏହାର ବର୍ଣ୍ଣନା ପ୍ରକ୍ରିୟା ଭିତରେ ଆତ୍ମବିସ୍ମୃତ ହୋଇଯିବ । ଭାମହଙ୍କ ରଚନା ମାଧ୍ୟମରେ ସାହିତ୍ୟିକ ସମାଲୋଚନା ଏକ ସ୍ୱରୂପ ପ୍ରାପ୍ତ ହେଲା । ଲକ୍ଷ୍ୟ କରିବା କଥା ଯେ ଏହିସବୁ ନିବିଡ଼ ସୃଜନଶୀଳ ସାହିତ୍ୟ ରୂପର ଗୁରୁତ୍ୱପୂର୍ଣ୍ଣ ବିଭାବମାନ ଧାର୍ମିକ ଅନୁଚିନ୍ତାର ପ୍ରକ୍ଷେପ ସହ ଜଡ଼ିତ ନ ଥିଲା । କତିପୟ ଆଧୁନିକ ବ୍ୟାଖ୍ୟାକାର ଏହାକୁ ସ୍ୱୀକାର କରିଛନ୍ତି । ସମାଜର ଏକ ନିର୍ଦ୍ଦିଷ୍ଟ ବର୍ଗର ହେଉ ପଛେ ଏଥିରେ ମଣିଷର ବ୍ୟବହାର ପ୍ରତିଫଳିତ ହୋଇଥିଲା । ଐତିହାସିକ ଘଟଣାକ୍ରମ ପ୍ରାୟତଃ ରାଜଦରବାର ଆଧାରିତ ଥିଲା, ଅବଶ୍ୟ କେହି କେହି ଦରବାରକୁ ଏକ ରୂପକ ଭାବେ ନିଆଯାଇଥିଲା ବୋଲି ଆଖ୍ୟାୟିତ କରିଥାନ୍ତି ।

ଶାସ୍ତ୍ରୀୟ ସଂସ୍କୃତ ଶାସକଙ୍କ ଦରବାରର ଭାଷା ରୂପେ ଲୋକପ୍ରିୟ ହେଲା । ଦରବାରରେ ପ୍ରଚଳିତ ଭାଷା ହୋଇଥିବାରୁ ଏବଂ ଅଭିଲେଖଗୁଡ଼ିକ ଏହି ଭାଷାରେ ରଚିତ ହୋଇଥିବାରୁ ତା'ର ଏଭଳି ଲୋକପ୍ରିୟତା ସମ୍ଭବ ହେଲା । ତେଣୁ ଏହା କର୍ମକାଣ୍ଡଙ୍କର ଭାଷାଠାରୁ ଭିନ୍ନ ହେଲା । ଏହାକୁ ଖୁବ୍‌ଶୀଘ୍ର ବ୍ୟାକରଣବିତ୍‌ମାନେ ଜାଣିପାରିଲେ । ସଂସ୍କୃତର ପ୍ରାଧାନ୍ୟ ଗୁପ୍ତଯୁଗରୁ ଆରମ୍ଭ ହୋଇ ଦ୍ୱିତୀୟ ସହସ୍ରାବ୍ଦର ପ୍ରାରମ୍ଭକାଳ ପର୍ଯ୍ୟନ୍ତ ବଜାୟ ରହିଲା । ଏହାପରେ ଆଞ୍ଚଳିକ ଭାଷାଗୁଡ଼ିକ ବ୍ୟାପକ ଭାବେ ବ୍ୟବହୃତ ହେଲେ । ତୁର୍କ ଏବଂ ମୋଗଲ ଯୁଗରେ ଦରବାରର ଭାଷା ଥିଲା ପାର୍ସୀ । ସଂସ୍କୃତର ଗୁରୁତ୍ୱ ରାଜନୀତି ଏବଂ ସଂସ୍କୃତି ଆଧାରିତ ଥିଲା ଏବଂ ଭବ୍ୟ ସମାଜର ପୃଷ୍ଠପୋଷକତା ଉପଭୋଗ କରୁଥିଲା । ମାତ୍ର ସ୍ଥାନୀୟ ଭାଷା ଏବଂ ସଂସ୍କୃତିଗୁଡ଼ିକ ପରିତ୍ୟକ୍ତ ହୋଇ ନ ଥିଲେ । ବିଭିନ୍ନ ପରିସ୍ଥିତିରେ ପ୍ରାକୃତର ବ୍ୟବହାରରେ ତା'ର ଝଲକ ବାରିହେଉଥିଲା । କେତେକ ଅଭିଲେଖ ଏବଂ ଧାର୍ମିକ ସଂପ୍ରଦାୟର ଭାଷା ଏହାର ଉଦାହରଣ ଅଟେ । 'ନାଟ୍ୟଶାସ୍ତ୍ର'ରେ ଅନେକ ଭାଷା ଓ ଉପଭାଷାର ବର୍ଣ୍ଣନା ଅଛି; ପୁଣି, କୌଣସି କୌଣସି ଭାଷା ନୀଚ ଜାତିର ଲୋକେ ବା 'ଚାଣ୍ଡାଳମାନେ' କହୁଥିବାର ସୂଚନା ରହିଛି । ଯେହେତୁ ନୀଚ ଜାତିର ଲୋକେ ଉଚ୍ଚ ଜାତିର ଲୋକଙ୍କ ଲାଗି କାମ କରୁଥିଲେ, ସେହେତୁ ଦୁଇଟି ଭିନ୍ନ ଭାଷାର ବ୍ୟବହାର ରହିବା ସ୍ୱାଭାବିକ ।

ଉଚ୍ଚ ଜାତିର ଲୋକେ ପ୍ରାକୃତ ଭାଷା ବ୍ୟବହାର ନ କରନ୍ତୁ ବୋଲି କୁହାଯାଉଥିଲା, କାରଣ ତାହା ଥିଲା ମ୍ଲେଚ୍ଛମାନଙ୍କର ଭାଷା । ଉଚ୍ଚ ସଂସ୍କୃତି ପାଇଁ 'ମାର୍ଗ' ଏବଂ ଲୋକ ସଂସ୍କୃତି ପାଇଁ 'ଦେଶୀ' ପରି ପଦ ବ୍ୟବହାର କରି ଉଚ୍ଚାଙ୍ଗ ସଂସ୍କୃତି ଓ ଲୋକପ୍ରିୟ ସ୍ଥାନୀୟ ସଂସ୍କୃତି ମଧ୍ୟରେ ଥିବା ଫରକକୁ ସୁସ୍ପଷ୍ଟ କରାଗଲା । ସଂସ୍କୃତ ଏଣିକି ବିଦ୍ୱାନ ପରମ୍ପରାର ଭାଷାରେ ପରିଣତ ହୋଇଉଠିଲା । ନିଃସନ୍ଦେହରେ ବ୍ରାହ୍ମଣ ଏବଂ ବୌଦ୍ଧବିହାରଗୁଡ଼ିକର ପୃଷ୍ଠପୋଷକତା ଏହାକୁ ଉତ୍ସାହିତ କଲା ।

ସଂସ୍କୃତ ସମେତ, ପ୍ରାକୃତ (ସଂସ୍କୃତଠାରୁ ଅଧିକ ଲୋକପ୍ରିୟ 'ବୋଲି') ସାହିତ୍ୟ ମଧ୍ୟ ଦରବାରର ବାହାର ପରିସରରୁ ପୃଷ୍ଠପୋଷକତା ହାସଲ କଲା । ପ୍ରାକୃତ ସାହିତ୍ୟ ଜୈନପାଠ୍ୟ ସହ ସଂପୃକ୍ତ ହୋଇ ଶୈଳୀ ଦୃଷ୍ଟିରୁ ଅଧିକ ପାଣ୍ଡିତ୍ୟପୂର୍ଣ୍ଣ ହୋଇଉଠିଲା । ବିମଳସୁରୀ ବିରଚିତ ରାମକଥାର ଜୈନ ରୂପାନ୍ତର ହେଲା – 'ପୌମଚର୍ଯ୍ୟମ' । ଏଥିରେ ବାଲ୍ମିକୀଙ୍କଠାରୁ କେବଳ ଭିନ୍ନ ମତମାନ ପୋଷଣ କରାଯାଇଛି ତାହା ନୁହେଁ, ତା' ସହିତ ମହାକାବ୍ୟିକ ରଚନାକୁ ଲୋକପ୍ରିୟ ସାହିତ୍ୟ ଭାବେ ଦୋହରାଇ କୁହାଯାଇଛି । ଏ ସମୟର ସଂସ୍କୃତ ନାଟକଗୁଡ଼ିକର ଏକ ଲକ୍ଷଣୀୟ ଗୁଣ ହେଲା ଉଚ୍ଚମାନ୍ୟତା ସମ୍ପନ୍ନ ଚରିତ୍ରମାନେ ସଂସ୍କୃତ କହନ୍ତି ଏବଂ ଅନ୍ୟପକ୍ଷରେ ନିମ୍ନ ବା ଅଜ୍ଞାତମାନ୍ୟତାର ଚରିତ୍ର ଏବଂ ସମସ୍ତ ନାରୀ ଚରିତ୍ର ପ୍ରାକୃତ ଭାଷା କହନ୍ତି । ମାନ୍ୟତା ଏବଂ ଲିଙ୍ଗ ମଧ୍ୟ ଭାଷା ସହ ଜଡ଼ିତ ଥିଲା ।

## ସ୍ଥାପତ୍ୟ, କଳା ଏବଂ ପୃଷ୍ଠପୋଷକତା

ଏ ଯୁଗର ଅଳ୍ପ କେତେକ ମନ୍ଦିର ସ୍ଥାପତ୍ୟ କେବଳ ବର୍ତ୍ତି ରହିଛି । ମନ୍ଦିର ଧ୍ୱଂସ ସମ୍ପର୍କୀୟ ଏକ ନିର୍ଦ୍ଧାରିତ ଉତ୍ତର ହେଲା ପାଞ୍ଚ ଶତାବ୍ଦୀ ପରେ ବିଗ୍ରହ ଧ୍ୱଂସକାରୀ ମୁସଲମାନମାନେ ଏହାକୁ ଧ୍ୱଂସ କରିଦେଇଛନ୍ତି । ମାତ୍ର ଗୁପ୍ତଯୁଗର ମନ୍ଦିରଗୁଡ଼ିକ ଏତେ ବେଶି ଆକର୍ଷଣୀୟ ନ ଥିଲେ, ସ୍ଥାପତ୍ୟ ଆସ୍ତେ ରୂପ ପରିଗ୍ରହ କରୁଥିଲା । କେବଳ ଧାର୍ମିକ ଭିତ୍ତି ବ୍ୟତିରେକେ, ଏପର୍ଯ୍ୟନ୍ତ ମନ୍ଦିର ରାଜନୈତିକ କ୍ଷମତାର କେନ୍ଦ୍ର ବା ସମ୍ପଦ ଠୁଳ ହେବାର ଜାଗାରେ ପରିଣତ ହୋଇ ନ ଥିଲା । ତେଣୁ ତାକୁ ଆକ୍ରମଣର ଶରବ୍ୟ ହେବାର ନ ଥିଲା । କଳାତ୍ମକ ତଥା ନାନ୍ଦନିକ ଦୃଷ୍ଟିକୋଣରୁ ସବୁଠାରୁ ମୁଗ୍ଧକର କାର୍ଯ୍ୟ ଥିଲା ପଥରକଟା ହୋଇ ଗଢ଼ାଯାଇଥିବା ଅଜନ୍ତା ଓ ଏଲୋରାର ବୌଦ୍ଧ ଗୁମ୍ଫା । ପରବର୍ତ୍ତୀ ସମୟରେ ଏହି କୀର୍ତ୍ତି ଏଲୋରା, ଏଲିଫାଣ୍ଟା ଏବଂ ଔରଙ୍ଗାବାଦର ପଥର କଟାହୋଇ ଗଢ଼ାଯାଇଥିବା ବୈଷ୍ଣବ ଏବଂ ଶୈବ ମନ୍ଦିରର ପ୍ରେରଣା ହେଲା । ଶେଷୋକ୍ତ କୀର୍ତ୍ତି ସମ୍ଭବତଃ କ୍ଷମତାର

ପରିଚାୟକ ନ ହୋଇ ବିଶ୍ୱାସର ପ୍ରତିଫଳକ ପାଲଟିଥିଲା । ତେଣୁ ସେ କ୍ଷେତ୍ରରେ ଭଙ୍ଗାରୁଜା ହେଲା ନାହିଁ ।

ସିନ୍ଧୁ ପ୍ରଦେଶ ଭଳି କେତେକ ସ୍ଥାନରେ ନୂତନ ବୌଦ୍ଧ ସ୍ତୁପମାନ ନିର୍ମାଣ କରାଗଲା । ଅନ୍ୟପକ୍ଷରେ ସାରନାଥ ଭଳି କେତେକ ସ୍ଥାନରେ ସେଗୁଡ଼ିକର ନବୀକରଣ ହେଲା । ଓଡ଼ିଶାରେ ବୌଦ୍ଧ ସ୍ତୁପ ଏବଂ ବିହାରମାନ ନିୟମିତ ଭାବେ ନିର୍ମିତ ହୋଇଚାଲିଲା । ଏଥିମଧ୍ୟରୁ ସବୁଠାରୁ ଆକର୍ଷଣୀୟ ଥିଲା ଲଳିତଗିରି, ରତ୍ନଗିରି ଏବଂ ଉଦୟଗିରି । ଏହି କୀର୍ତ୍ତିଗୁଡ଼ିକରେ ଶାସକ ଏବଂ ବଣିକମାନଙ୍କର ପୃଷ୍ଠପୋଷକତା ସ୍ପଷ୍ଟ ପ୍ରତିଫଳିତ ହୁଏ । ଅଜନ୍ତା ଏବଂ ଏଲୋରାରେ ଥିବା ବୌଦ୍ଧବିହାର ଏବଂ ଚୈତ୍ୟ ପାହାଡ଼ର ପାର୍ଶ୍ୱ ଏବଂ ଏହା ମଝିରେ ଥିବା ସଂକୀର୍ଣ୍ଣ ସ୍ଥାନକୁ ଖୋଦେଇ କରି ନିର୍ମାଣ କରାଯାଇଛି । ଅଜନ୍ତାର ଗୁମ୍ଫାଗୁଡ଼ିକ ଭାସ୍କର୍ଯ୍ୟ ଦ୍ୱାରା ସୁସଜ୍ଜିତ ହୋଇଛି । କେତେକ ପ୍ରାଚୀର ଚିତ୍ରରେ ବୁଦ୍ଧଙ୍କ ଜୀବନୀ, ଜାତକ କାହାଣୀ ତଥା ଅନ୍ୟାନ୍ୟ ଲୋକପ୍ରିୟ କାହାଣୀମାନ ଅଙ୍କିତ ହୋଇଛି । ଏହି ଚିତ୍ରାବଳୀରୁ ସମସାମୟିକ ଜୀବନର ଏକ ଦୃଶ୍ୟମାନ ଛାପ ଉପଲବ୍ଧି କରିହେଉଛି । ସମାଜର କିଛି ଭାଗ କାନ୍ଥରୁ ବାହାରି ଆସୁଥିବାର ଦୃଶ୍ୟ ସ୍ତୁପ ସ୍ଥାନରେ ଅଳ୍ପ ବାହାରି ଆସିଥିବା ପଥରରେ ଖୋଦିତ ଭାସ୍କର୍ଯ୍ୟର ପରିପୂରକ ଭଳି ମନେହୁଏ । ଏହିସବୁ ପ୍ରାଚୀର ଚିତ୍ରରେ ପ୍ରତିଫଳିତ ବାସ୍ତବତାର ଗୁଣ ଦୈନନ୍ଦିନ କାର୍ଯ୍ୟାବଳୀକୁ ଲକ୍ଷଣୀୟ ଭାବେ ପ୍ରତିଫଳିତ କରାଇଛି । ମଣିଷର ଅବସ୍ଥା ମଧ୍ୟ ପ୍ରତିଫଳିତ ହୋଇଛି । ଶୈଳୀ ଏବଂ ନାନ୍ଦନିକତା ଦୃଷ୍ଟିକୋଣରୁ ଏହା ଖୁବ୍ ମନୋମୁଗ୍ଧକର ହୋଇପାରିଛି ।

ଚିତ୍ରକଳା ସମ୍ବନ୍ଧରେ ସାହିତ୍ୟିକ ବର୍ଣ୍ଣନା ବ୍ୟାପକ ଏବଂ ଏହାକୁ ଏକ ପାରଦର୍ଶିତା ବୋଲି ଗ୍ରହଣ କରାଯାଇଛି । ଏହି ଗୁମ୍ଫା ଭଳି ପବିତ୍ର ସ୍ଥଳରେ ଯେଉଁ ନାନ୍ଦନିକ ଗୁଣ ପ୍ରସ୍ଫୁଟିତ ହୋଇଛି ତାହା ତୁଳନାରେ ପୂର୍ବବର୍ତ୍ତୀ କାଳର ଶୈବ ଏବଂ ବୈଷ୍ଣବ ମନ୍ଦିରଗୁଡ଼ିକର ଦୃଶ୍ୟ ମଳିନ ମନେହୁଏ । ଏ ଯୁଗର ସବୁଠାରୁ ଛାପ ସୃଷ୍ଟିକାରୀ କଳାକୃତି ବୌଦ୍ଧ କଳା ଏବଂ ତାକୁ ସହାୟତା କରୁଥିବା ପୃଷ୍ଠପୋଷକତାରେ ନିହିତ ଅଛି । ସୂକ୍ଷ୍ମତମ ଶୈଳୀଗତ ଗୁଣ ଯୋଗୁଁ ଅଜନ୍ତାର ଚିତ୍ରଗୁଡ଼ିକ ଶ୍ରେଷ୍ଠ ସ୍ଥାନୀୟ । ଯଦିଓ ଏଗୁଡ଼ିକ ଉପରେ ବକଟକ-ଗୁପ୍ତ ରାଜନୈତିକ ପ୍ରଭାବ ପଡ଼ିଥାଇ ପାରେ, ତଥାପି ଏଥିରେ ଉପଦ୍ୱୀପର ବୌଦ୍ଧ କଳା ଗଭୀରଭାବେ ଜଡ଼ିତ ହୋଇ ରହିଛି ।

ସାଞ୍ଚି ଭଳି ପ୍ରାଥମିକ ପର୍ଯ୍ୟାୟର ମନ୍ଦିରଗୁଡ଼ିକ ଏକ କୋଠରୀ ବିଶିଷ୍ଟ ଏବଂ ତା ମଧ୍ୟରେ ମୂର୍ତ୍ତି ଅବସ୍ଥାପିତ ହେଉଥିଲା । ଏହି ଧରଣର ମନ୍ଦିରଗୁଡ଼ିକ ଆଇହୋଲ, ତିଗୋୱା, ଭୁମରା, ନାଚନା, କୋଠାରା, ଲଡ଼ଖାନ ଏବଂ ଦେଓଗଡ଼ ପ୍ରଭୃତି ଅଞ୍ଚଳର ପ୍ରାଣକେନ୍ଦ୍ର

ଥିଲା । କେତେକ କ୍ଷେତ୍ରରେ ସ୍ଥାନଟି ମୂଳତଃ ପବିତ୍ର ଥିଲା । ଉଦାହରଣ ସ୍ୱରୂପ, ଆଇହୋଲଠାରେ ବୃହଦ୍ ପଥରଖଣ୍ଡ ସମ୍ବଳିତ କବର ସ୍ଥଳୀ ଥିଲା । ଉପଦ୍ୱୀପର ସେଜର୍ଲା ଏବଂ ଟେର୍ ଅଞ୍ଚଳର ଆଦ୍ୟ ସମୟର ମନ୍ଦିରଗୁଡ଼ିକର ଯୋଜନା ଓ ପ୍ରବେଶପଥ ଅନୁଧ୍ୟାନ କଲେ ମନେହୁଏ ବୌଦ୍ଧ ଚୈତ୍ୟଗୁଡ଼ିକୁ ପରେ ମନ୍ଦିରରେ ପରିଣତ କରିଦିଆଯାଇଛି । ଏକ ପ୍ରତିଷ୍ଠିତ ପୁଣ୍ୟପୀଠକୁ ନୂତନ ଧର୍ମ ଦ୍ୱାରା ବ୍ୟବହାର କରାଯିବା ଅସ୍ୱାଭାବିକ ନଥିଲା । ସେହି ସ୍ଥାନଗୁଡ଼ିକୁ ଧୀରେ ଧୀରେ ରୂପାନ୍ତରିତ କରାଯାଉଥିଲା କିମ୍ବା ବଳପ୍ରୟୋଗ ପୂର୍ବକ ବଦଳାଇ ଦିଆଯାଉଥିଲା । ଯେତେବେଳେ ମନ୍ଦିରଗୁଡ଼ିକର ପରିଚାଳନା ନିମନ୍ତେ ଜମି ଅନୁଦାନ ବ୍ୟବସ୍ଥା ଆରମ୍ଭ ହେଲା, ତାହା ମନ୍ଦିର ଲାଗି ଅର୍ଥାଗମର ଏକ ପ୍ରମୁଖ ଉତ୍ସ ହୋଇଉଠିଲା । ଏ ମନ୍ଦିରଗୁଡ଼ିକରେ ସାଧାରଣତଃ ବିଷ୍ଣୁ, ଶିବ, ପାର୍ବତୀ, ଦୁର୍ଗା ଏବଂ ବରାହ ପ୍ରମୁଖ ପୌରାଣିକ ଦେବତାମାନେ ପୂଜା ପାଉଥିଲେ । ଦେଓଗଡ଼ର ଦଶାବତାର ମନ୍ଦିର ନାମରୁ ଜଣାଯାଏ ଯେ ତାହା ବିଷ୍ଣୁଙ୍କର ଅବତାରମାନଙ୍କ ଲାଗି ଉଦ୍ଦିଷ୍ଟ ଏକ ପ୍ରାଚୀନ ମନ୍ଦିର ।

ଶୈବ ବା ବୈଷ୍ଣବ ମନ୍ଦିରଗୁଡ଼ିକର ସ୍ଥାପତ୍ୟ ଗର୍ଭଗୃହ ବା ଦେବତାଙ୍କ ଆବାସସ୍ଥଳୀକୁ ଘେରି ନିର୍ମିତ ହେଉଥିଲା । ଛୋଟ ମନ୍ଦିରମାନଙ୍କ କ୍ଷେତ୍ରରେ ଗର୍ଭଗୃହ ଭିତରକୁ ଏକ ଅଳିନ୍ଦ ଦେଇ ପ୍ରବେଶ କରିବାକୁ ହେଉଥିଲା । ତେଣୁ ମୂର୍ତ୍ତି ଏବଂ ଏହା କେଉଁଠାରେ ସ୍ଥାପନ କରାଯାଉଛି ତା ମଧ୍ୟରେ ଏକ ସମ୍ବନ୍ଧ ଥିବା ସ୍ୱାଭାବିକ । ମନ୍ଦିରର ସଂପ୍ରସାରଣବେଳେ ଦେବତାଙ୍କ ମୂର୍ତ୍ତି ଥିବା ସ୍ଥାନକୁ ଏକ ପ୍ରବେଶ ପ୍ରକୋଷ୍ଠ ଦେଇ ଯିବାକୁ ପଡୁଥିଲା । ଏହି ପ୍ରକୋଷ୍ଠ ହଲ୍‌ପଟୁ ଆରମ୍ଭ ହୋଇ ଅଳିନ୍ଦ ଆଡ଼କୁ ଖୋଲାଯାଉଥିଲା । ଏହା ଚାରିପଟେ ଏକ ବେଢ଼ା ବେଷ୍ଟିତ ଅଗଣା ରହୁଥିଲା, ଯାହା ଉପରେ ପୁନଶ୍ଚ ଦେବାଳୟମାନ ଗଢ଼ିବା ସମ୍ଭବପର ହେଉଥିଲା ।

ଦାକ୍ଷିଣାତ୍ୟରେ ବୌଦ୍ଧମାନେ ପଥର କାଟି ଚୈତ୍ୟ ଖୋଳିବା କାର୍ଯ୍ୟ ଜାରି ରଖିଥିଲେ । ଜୈନ, ଶୈବ ଏବଂ ବୈଷ୍ଣବମାନେ ପରବର୍ତ୍ତୀ ଶତାବ୍ଦୀରେ ଏହାର ଅନୁକରଣ କରି ଚାଲିଥିଲେ । ବୌଦ୍ଧ ଗୁମ୍ଫା ନିକଟରେ ମନ୍ଦିର ଖୋଳି ଏହି କାର୍ଯ୍ୟ ସମ୍ପାଦନ କରାଯାଉଥିଲା । ପଥରରୁ କଟାହେବା ପରି ନ ହୋଇ ମୁକ୍ତଭାବେ ନିର୍ମିତ ମନ୍ଦିରଗୁଡ଼ିକ ମଧ୍ୟ ସାଧାରଣ ଭାବେ ପଥରରେ ଗଢ଼ାଯାଉଥିଲା (ଅବଶ୍ୟ ଭିତରଗାଓଁରେ ଏକ ପ୍ରାଚୀନ ଇଟା ନିର୍ମିତ ମନ୍ଦିର ଅଛି) । ଖୋଲା ସ୍ଥାନରେ ମନ୍ଦିର ନିର୍ମାଣକୁ ଅଧିକ ପସନ୍ଦ କରାଯିବାର କାରଣ ହେଲା– ଏଥିପାଇଁ ନିହାତି ଭାବେ ପାର୍ବାତ୍ୟାଞ୍ଚଳର ଆବଶ୍ୟକତା ନ ଥିଲା; ଗୁମ୍ଫା ଖନନ ଲାଗି ଯଥାଯୋଗ୍ୟ ପଥର ସନ୍ଧାନ କରିବା ମଧ୍ୟ ଜରୁରୀ ନ ଥିଲା । ଏହା ଛଡ଼ା ପଥର

କଟାଯାଇ ନିର୍ମାଣ କରାଯାଉଥିବା ମନ୍ଦିରର ସଂପ୍ରସାରଣ ସୀମାବଦ୍ଧ ଥିଲା । କ୍ରମେ କ୍ରମେ ଦେବତାଙ୍କ ମୂର୍ତ୍ତି ପାର୍ଶ୍ୱଦେବତା ତଥା ଅନ୍ୟାନ୍ୟ ମୂର୍ତ୍ତି ଦ୍ୱାରା ପରିବେଷ୍ଟିତ ହୋଇଉଠିଲା । ତେଣୁ ଖୋଲାରେ ମନ୍ଦିର ନିର୍ମାଣ ଶୈଳୀରେ ଆହୁରି ସମୃଦ୍ଧ ଭାସ୍କର୍ଯ୍ୟ ଓ ଅଳଙ୍କାର ପରିଲକ୍ଷିତ ହେଲା ।




*ଦେଓଗଡ଼ ବିଷ୍ଣୁ ମନ୍ଦିରର ନକ୍ସା*

ଉଚ୍ଚ ନାନ୍ଦନିକ ଚେତନା ପ୍ରତିଫଳିତ ଶାସ୍ତ୍ରୀୟ ଭାସ୍କର୍ଯ୍ୟ ବିଶେଷ ଭାବରେ ସାରନାଥ, ମଥୁରା, କୁଶୀନଗର ଏବଂ ବୋଧଗୟାର ବୁଦ୍ଧ ମୂର୍ତ୍ତିରେ ପରିଦୃଷ୍ଟ ହେଲା । ଏହାଫଳରେ ଅଧିକ ଗୁରୁତ୍ୱପୂର୍ଣ୍ଣ ବୈଷ୍ଣବ ଏବଂ ଶୈବ ଦେବତାମାନଙ୍କର ଚମତ୍କାର ମୂର୍ତ୍ତି ପ୍ରତିଷ୍ଠାର ଇଚ୍ଛା ନିଃସନ୍ଦେହରେ ଉତ୍ସାହିତ ହେଲା । ଏହି ପ୍ରତିମୂର୍ତ୍ତିଗୁଡ଼ିକ ଅନେକତ୍ର ପ୍ରତିନିଧି ସ୍ଥାନୀୟ ହେବା ପରିବର୍ତ୍ତେ ପ୍ରତୀକାତ୍ମକ ହୋଇଉଠିଲେ । ଯଦିଓ ଏହି ଦେବମୂର୍ତ୍ତିଗୁଡ଼ିକ ମାନବ ରୂପ ସମ୍ପନ୍ନ ଥିଲେ, ତଥାପି ତାଙ୍କର ଚାରି, ଆଠ ବା ଆହୁରି ଅଧିକ ଭୁଜ ରହୁଥିଲା । ପ୍ରତ୍ୟେକ ଭୁଜ ଦେବତାଙ୍କର ଏକ ଏକ ସ୍ୱତନ୍ତ୍ର ଗୁଣର ପ୍ରତୀକ ଥିଲା । ବୈଷ୍ଣବ ପ୍ରତିନିଧିମାନେ ହୁଏତ ଦେବତା ଥିଲେ ଅଥବା ଅବତାର ଥିଲେ । ଏହି କାରଣରୁ ବ୍ୟାପକ ମୂର୍ତ୍ତି ନିର୍ମାଣ ସମ୍ଭବ



ନାଗର ଶୈଳୀର ମନ୍ଦିର : ଏକ ନକ୍‌ସା

ହେଉଥିଲା । ଅଧିକାଂଶ ସମୟରେ ଏକ ଲିଙ୍ଗ ମାଧ୍ୟମରେ ଶିବ ପ୍ରତୀକିତ ହେଉଥିଲେ । ତେଣୁ ଏ କ୍ଷେତ୍ରରେ ଭାସ୍କର୍ଯ୍ୟ ପ୍ରଦର୍ଶନର ସୁଯୋଗ ସୀମିତ ଥିଲା । ତେବେ ମୁଖଲିଙ୍ଗ ଭଳି ବ୍ୟତିକ୍ରମ କ୍ଷେତ୍ରରେ ଲିଙ୍ଗ ଦେହରେ ମୁହଁ ବା ସମଗ୍ର ଶରୀର ଅଙ୍କିତ ହୋଇପାରୁଥିଲା । ଅବଶ୍ୟ ଅନ୍ୟାନ୍ୟ ମାନବ ସ୍ୱରୂପୀ ଦେବତାମାନଙ୍କର ମୂର୍ତ୍ତି ମଧ୍ୟ ନିର୍ମାଣ କରାଯାଉଥିଲା । ପୌରାଣିକ ଧର୍ମର ଗୁଣ ଥିଲା ମୂର୍ତ୍ତି ନିର୍ମାଣ । ଏହି ସୂତ୍ରେ ପିତୁଳା ପୂଜାକୁ ବାଦ୍ ଦେଇଥିବା ବୈଦିକ ବ୍ରାହ୍ମଣ୍ୟବାଦଠାରୁ ଏହା ଭିନ୍ନ ଥିଲା ।

ମୂର୍ତ୍ତି ନିର୍ମାଣର ଆଉ ଏକ ଲୋକପ୍ରିୟ ମାଧ୍ୟମ ଥିଲା ପୋଡ଼ା ମାଟି ବା ଟେରାକୋଟା ଯାହା ଲୋକମାନଙ୍କ ଲାଗି ଅଧିକ ଉପଲବ୍ଧ ଥିଲା । ପଥର ଭାସ୍କର୍ଯ୍ୟ ଲାଗି ଧନିଙ୍କ ବର୍ଗର ପୃଷ୍ଠପୋଷକତା ଆବଶ୍ୟକ ଥିଲା । ମାତ୍ର ଇତିହାସ ସାରା ସାଧାରଣ ଲୋକଙ୍କ ଲାଗି ପୋଡ଼ାମାଟି ଥିଲା ସହଜଲଭ୍ୟ । ଏବେ ସେଗୁଡ଼ିକୁ ଏକ ଲୋକପ୍ରିୟ ସଂସ୍କୃତି ନିର୍ମାଣର ସୂତ୍ରଭାବେ ଗମ୍ଭୀରଭାବେ ଗ୍ରହଣ କରାଗଲା । ତହିଁରେ ଉଭୟ ଦେବତା ଏବଂ ମାନବ ସ୍ୱରୂପ ପ୍ରସ୍ତୁତ କରାଗଲା । କେତେକ ରୂପରେ ଏହି ମାଧ୍ୟମକୁ ବୈଷୟିକ ଦିଗରୁ ବ୍ୟବହାର କରିବାର ଲକ୍ଷଣୀୟ ସାଫଲ୍ୟ ଜଣାପଡ଼ିଲା । ପୋଡ଼ାମାଟିରେ ଗଢ଼ା ରୂପ ଗାଙ୍ଗେୟ ସମତଳ ଏବଂ ପୂର୍ବ ଭାରତରେ ବହୁସଂଖ୍ୟାରେ ମିଳିଲା । ସେଥିରୁ କେତେକ ଜୈବ ମୃତ୍ତିକାରେ ନିର୍ମିତ ହୋଇଥିଲା ଏବଂ ସେହି କାରଣରୁ ବହୁଳ ସଂଖ୍ୟାରେ ଉତ୍ପାଦିତ ହେଉଥିଲା । ଏଥିରେ ତିଆରି କେତେକ ସ୍ୱରୂପକୁ ଧାର୍ମିକ ବିଧିବିଧାନରେ ବ୍ୟବହାର କରାଯାଉଥିଲା । ମାତ୍ର ଏହାର ଅନେକ ସ୍ୱରୂପ ସାଧାରଣ ପ୍ରକୃତିର ଥିଲା ଏବଂ ଖେଳନା ତଥା ସାଜସଜ୍ଜା ଉପକରଣ ଆକାରରେ ତାକୁ ବ୍ୟବହାର କରାଯାଉଥିଲା । ଏଥିରେ ଗଠିତ ବୃହତ୍ତର ରୂପଗୁଡ଼ିକ ଦେବତାମାନଙ୍କର ପ୍ରତିକୃତି ଥିଲା । ଏଥିମଧ୍ୟରୁ ଦର୍ଶନୀୟ ପ୍ରତିମା ଥିଲା ଗଙ୍ଗା ଏବଂ ଯମୁନାଙ୍କର ନଦୀ ଦେବୀ ରୂପ ।

## ଧାର୍ମିକ ସିଦ୍ଧାନ୍ତ

ଏହି କାଳଖଣ୍ଡ ବେଳକୁ ଭାରତୀୟ ଉପମହାଦେଶ ଅନେକ ପ୍ରକାର ଧର୍ମକୁ ନିଜ ଭିତରେ ସ୍ଥାନ ଦେଇସାରିଥାଏ । ତାତ୍ତ୍ୱିକ ଦୃଷ୍ଟିକୋଣରୁ ବୌଦ୍ଧଧର୍ମ ବୈଦିକ ବ୍ରାହ୍ମଣ୍ୟବାଦର ପ୍ରତିପକ୍ଷ ଥିଲା । ମାତ୍ର ଶୈବଧର୍ମ ସହିତ ଏହି ବିବାଦ ଅନେକ ସମୟରେ ପ୍ରତ୍ୟକ୍ଷ ସଂଘର୍ଷର ରୂପ ନେଉଥିଲା । ତେବେ ଧାର୍ମିକ ବିଧିବିଧାନ ଏବଂ ତା'ର ଅଭ୍ୟାସରେ ଅନ୍ୟ ଧର୍ମର ପ୍ରଭାବ ସ୍ୱାଭାବିକ ଭାବେ ପଡୁଥିଲା । ବୌଦ୍ଧଧର୍ମର ପ୍ରଭାବ ଭାରତର ସୀମାନ୍ତ ବାହାରେ

ମଧ୍ୟ-ଏସିଆ, ଚୀନ୍ ଏବଂ ଦକ୍ଷିଣ-ପୂର୍ବ ଏସିଆ ଉପରେ ପଡ଼ିସାରିଥିଲା । ସେହି ଅଞ୍ଚଳର ସମସାମୟିକ ଧାର୍ମିକ କ୍ରିୟାକଳାପରେ ନୂତନଭାବେ ପ୍ରତିଷ୍ଠିତ ବୌଦ୍ଧ ଧର୍ମର ପ୍ରଭାବ ପରିଲକ୍ଷିତ ହେଲା । ଏହି କାରଣରୁ ପ୍ରାଚୀନ ଶିକ୍ଷାଗୁଡ଼ିକର ପୁନଃ ସୂତ୍ର ନିର୍ଦ୍ଧାରଣ ଆବଶ୍ୟକ ହୋଇପଡ଼ିଲା ।

ଜୈନଧର୍ମ ପଶ୍ଚିମ ଭାରତର ବଣିକ ସଂପ୍ରଦାୟର ସମର୍ଥନ ଆଡ଼କୁ ଢଳିଲା । କର୍ଣ୍ଣାଟକ ତଥା ଦକ୍ଷିଣର ସ୍ଥାନୀୟ ରାଜଦରବାରର ପୃଷ୍ଠପୋଷକତା ଉପରେ ଏହା ନିର୍ଭରଶୀଳ ହେଲା । ଷଷ୍ଠ ଶତାବ୍ଦୀର ପ୍ରଥମ ଭାଗରେ ବଲ୍ଲଭୀଠାରେ ଦ୍ୱିତୀୟ ଜୈନ ପରିଷଦର ବୈଠକ ବସିଲା ଏବଂ ସେଠାରେ ଜୈନ ଧର୍ମର 'କୋଟି' ପ୍ରତିଷ୍ଠିତ ହେଲା ଯାହା ଏଯାବତ୍ ତିଷ୍ଠିରହିଛି । ଅନେକ ଅଞ୍ଚଳରେ ସଭ୍ୟ ଶିକ୍ଷିତଙ୍କର ସମ୍ମାନଜନକ ଭାଷା ଭାବରେ ସଂସ୍କୃତର ବ୍ୟବହାର ବୃଦ୍ଧି ପାଇଲା । ଏହାକୁ ବ୍ୟବହାର କରୁଥିବା ଧର୍ମ ଉପରେ ମଧ୍ୟ ଏହାର ସମାନ ପ୍ରଭାବ ପଡ଼ିଲା । ଏହା ଧର୍ମ ଶିକ୍ଷକମାନଙ୍କ ଅନୁସରଣକାରୀଙ୍କ ସଂଖ୍ୟାକୁ ବଢ଼ିବାକୁ ଦେଲା ନାହିଁ । ଜୈନମାନେ ମଧ୍ୟ ଅନେକ ବିଗ୍ରହ ସୃଷ୍ଟି କଲେ । ସିଧା ଦଣ୍ଡାୟମାନ ମହାବୀରଙ୍କର ଦୃଢ଼ ରୂପ ଅଥବା ଚକା ପକାଇ ବସିଥିବା ରୂପ ଜୈନ ଶିକ୍ଷକମାନଙ୍କୁ ପ୍ରକଟିତ କରିବାର ସ୍ୱରୂପରେ ପରିଣତ ହେଲା ।

ଅନେକ ଅଞ୍ଚଳରେ ବିଶେଷ ଗୁରୁତ୍ୱ ହାସଲ କରି ନଥିବା ସଂସ୍କୃତିମାନ ସହସ୍ରାବ୍ଦୀର ମଧ୍ୟଭାଗ ବେଳକୁ ଦୃଢ଼ ହୋଇଉଠିଲେ । ଏହା ପ୍ରଜନନ କ୍ଷମତାଧାରିଣୀ ନାରୀ ଦେବୀଉ ପୂଜା ଉପରେ ଗୁରୁତ୍ୱ ଆରୋପ କଲା । ଦେବୀମାନେ ଅନେକ ଧାର୍ମିକ କର୍ମକାଣ୍ଡର ନାଭି କେନ୍ଦ୍ର ହୋଇ ରହିଲେ । ସେମାନଙ୍କ ଠାରେ କେତେକ ଯାଦୁକରୀ ଗୁଣବତ୍ତା ସଂଯୋଜିତ ହେଲା ଯାହା ପରବର୍ତ୍ତୀ ସମୟରେ ତନ୍ତ୍ରବିଦ୍ୟାର ମୂଳଦୁଆ ଭଳି କାର୍ଯ୍ୟ କଲା । ସର୍ବବ୍ୟାପି ଦେବୀଙ୍କର ପୂଜା ମାଧ୍ୟମରେ ଦେବୀପୂଜା ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । ତାଙ୍କୁ କର୍ମର ପ୍ରେରଣା ଏବଂ ଶିବଙ୍କର କ୍ଷମତା ଓ ଶକ୍ତି ବୋଲି କୁହାଗଲା । କୁହାଗଲା ଯେ ନାରୀ ସହ ମିଳନ ମାଧ୍ୟମରେ ହିଁ ପୁରୁଷ କ୍ରିୟାଶୀଳ ହୋଇପାରିବ । ଏହି ଅନୁଚିନ୍ତା କେତେ ପ୍ରଭାବଶାଳୀ ଥିଲା ତାହା ଯୋଗିନୀମାନଙ୍କ ଉଦ୍ଦେଶ୍ୟରେ ନିବେଦିତ ମନ୍ଦିରରୁ ଅନୁମାନ କରିହେବ । ଯାଦୁକରୀ କ୍ଷମତାଧାରୀ ସତ୍ତାମାନଙ୍କୁ ଯୋଗିନୀ କୁହାଯାଉଥିଲା । ପରବର୍ତ୍ତୀ କାଳରେ ମଧ୍ୟ ଦକ୍ଷିଣ ଭାରତରେ ଏହି ମନ୍ଦିରମାନ ତିଷ୍ଠି ରହିଥିଲା । ଏଗୁଡ଼ିକର ସଂରଚନା ବୃତ୍ତାକାର ଥିଲା । ବିଭିନ୍ନ ଯୋଗିନୀଙ୍କ ଭାସ୍କର୍ଯ୍ୟ ସମ୍ବଳିତ ବୃତ୍ତାକାର କାନ୍ଥ ଆକାଶ ଆଡ଼କୁ ଉନ୍ମୁକ୍ତ ହୋଇ ରହିଥିଲା । ଦେବୀ ପୂଜା ସମ୍ବନ୍ଧୀୟ ଆଖ୍ୟାନମାନ ଦେବୀ ମହାତ୍ମ୍ୟ ନାମକ ପୁସ୍ତକରେ ଏକତ୍ର କରାଯାଇଥିଲା ଯାହା ପରବର୍ତ୍ତୀ କାଳରେ ଖ୍ୟାତି ଅର୍ଜନ କରିଥିଲା ।

'ଶକ୍ତି-ଶାକ୍ତ' ପରମ୍ପରା କେବଳ ଯେ ଅନେକ ଧର୍ମ ସଂପ୍ରଦାୟରେ ସଂଗୁପ୍ତ ବିଶ୍ୱାସ ହୋଇ ରହିଲା ତାହା ନୁହେଁ, ବରଂ ଧୀରେ ଧୀରେ ତାହା ଏକ ଗୁରୁତ୍ୱପୂର୍ଣ୍ଣ ଧାର୍ମିକ ମାନ୍ୟତା ହାସଲ କଲା । ପୁରୁଷ ଦେବତାମାନଙ୍କର ପତ୍ନୀ ଦେବତାଙ୍କ ଡାହାଣ ପାଖରେ ଶୋଭା ପାଉଥିଲେ । ବିଷ୍ଣୁଙ୍କ ପାଖରେ ଲକ୍ଷ୍ମୀ ଏବଂ ଶିବଙ୍କ ପାଖରେ ପାର୍ବତୀ, କାଳୀ ଏବଂ ଦୁର୍ଗା ଯଥାକ୍ରମେ ତାଙ୍କର ପତ୍ନୀ ଭାବରେ ରହିଥାନ୍ତି । ଦେବୀମାନଙ୍କର ପୂଜାରୁ ଏହି ପରମ୍ପରା ସୃଷ୍ଟି ହେଲା । ସମ୍ଭବତଃ ହରପ୍ପା ଯୁଗରୁ ଏହା ଭାରତୀୟ ଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇ ରହିଅଛି । ଯେହେତୁ ଏହାକୁ ଅବଦମିତ କରି ହେଲା ନାହିଁ, ସେବାୟତଙ୍କ ସହାୟତା ଓ ଆଶୀର୍ବାଦ ମାଧମରେ ଏହା ଏକ ଲୋକପ୍ରିୟ ବିଶ୍ୱାସ ଓ କର୍ମକାଣ୍ଡରେ ପରିଣତ ହେଲା । ତଥାପି ଶତାବ୍ଦୀ ଶତାବ୍ଦୀ ଧରି ଦେବୀଙ୍କର ପୂଜାପାର୍ବଣକୁ ସାମାଜିକ ସ୍ତରରେ ନାରୀମାନଙ୍କୁ ଅବଦମିତ କରି ରଖିବାର ଏକ ବିପରୀତ ବିଭାବ ହିସାବରେ ଦେଖିହେବ ।

ତାନ୍ତ୍ରିକ ବିଶ୍ୱାସ ଏବଂ କର୍ମକାଣ୍ଡ ବୌଦ୍ଧ ଧର୍ମକୁ ମଧ ପ୍ରଭାବିତ କରିଥିଲା । ପୂର୍ବଭାରତରୁ ବଜ୍ରଯାନ ନାମକ ଏକ ନୂତନ ବୌଦ୍ଧ ସଂପ୍ରଦାୟ ସୃଷ୍ଟି ହୋଇଥିଲା । ବଜ୍ରଯାନୀମାନେ ବୁଦ୍ଧଙ୍କ ମୂର୍ତ୍ତି ସହିତ ତାଙ୍କର ନାରୀ ସହଗାମିନୀଙ୍କୁ ପ୍ରତିଷ୍ଠା କଲେ । ଏହାଙ୍କର ନାମ ହେଲା ତାରା । ତାଙ୍କୁ ରକ୍ଷାକାରିଣୀ ଭାବରେ ମଧ ଅଭିହିତ କରାଗଲା । ଏହି ପରମ୍ପରା ନେପାଳ ଏବଂ ତିବ୍ବତରେ ବେଶ୍ ଲୋକପ୍ରିୟ । ଉପମହାଦେଶରେ ସପ୍ତମ ଶତାବ୍ଦୀ ବେଳକୁ କେତେକ ଅଞ୍ଚଳରେ ବୌଦ୍ଧଧର୍ମର ଅବକ୍ଷୟ ଆରମ୍ଭ ହୋଇଯାଇଥିଲା । ଏ ପ୍ରକାରର ଅବକ୍ଷୟକୁ ହୁଏନ୍‌ସାଂ ବୋଧଗୟା, ସାରନାଥ ଏବଂ ଅନ୍ୟାନ୍ୟ କେତେକ ସ୍ଥାନରେ ଅବଲୋକନ କରିଛନ୍ତି । ଶଶାଙ୍କ ଭଳି କେତେକ ରାଜାଙ୍କର ବିଦ୍ୱେଷ ସମ୍ପର୍କରେ ମଧ ସେ ବର୍ଣ୍ଣନା କରିଛନ୍ତି । ହର୍ଷ ବୌଦ୍ଧଧର୍ମର ଜଣେ ବଡ଼ ପୃଷ୍ଠପୋଷକ ଥିଲେ । ସେ ଏହାର ପ୍ରତିଦ୍ୱନ୍ଦ୍ୱୀ ଶୈବଧର୍ମର ମଧ ପୃଷ୍ଠପୋଷକ ପାଲଟିଥିଲେ । ବିହାର ଏବଂ କୀର୍ତ୍ତିସ୍ତମ୍ଭଗୁଡ଼ିକୁ ବିଚାରକୁ ନେଲେ ପୂର୍ବଭାରତରେ ବୌଦ୍ଧଧର୍ମର ଲୋକପ୍ରିୟତା ସହଜରେ ଅନୁମେୟ ।

ବୌଦ୍ଧଧର୍ମ ଏବଂ ବୈଦିକ ବ୍ରାହ୍ମଣ୍ୟବାଦ ଅଧ୍ୟୁଷିତ ଧାର୍ମିକ ପରମ୍ପରାଠାରୁ ଭିନ୍ନ ଧର୍ମ ରୂପେ ବୈଷ୍ଣବବାଦ ଏବଂ ଶୈବବାଦର ଆବିର୍ଭାବ ମୂଳରେ ତିନୋଟି ଗୁରୁତ୍ୱପୂର୍ଣ୍ଣ ବିଭାବ ଅଛି । ପୂଜାକୁ ଦେବମୂର୍ତ୍ତି କେନ୍ଦ୍ରକରି ଗଢ଼ିଉଠିଲା ଏବଂ ଏହି ପୂଜା ବୈଦିକ ବଳିଠାରୁ ଭିନ୍ନ ଥିଲା । ତେବେ ଦେବତାଙ୍କୁ କେତେବେଳେ ଖାଦ୍ୟ ତ ଆଉ କେତେବେଳେ ପଶୁ ନୈବେଦ୍ୟ ଆକାରରେ ଅର୍ପଣ କରିବା ପୂଜାନୀତିର ଏକ ଅଂଶ ହୋଇ ରହିଲା । ପୂଜାର ଏକ ସମାନ୍ତରାଳ ନୀତି ବୌଦ୍ଧଧର୍ମରେ ମଧ ଅଛି ବୋଲି କେହି କେହି ଯୁକ୍ତି ଉପସ୍ଥାପନ କରିଥାନ୍ତି । ବୈଦିକ ବ୍ରାହ୍ମଣ୍ୟବାଦର ବଳି ନୀତିରେ ପୂଜକର ଗୁରୁତ୍ୱ ତୁଳନାରେ ଉପରବର୍ଣ୍ଣିତ

ପୂଜାବେଳେ ଗୁରୁତ୍ୱ କମିଆସିଲା । ଧୀରେ ଧୀରେ ଏହା ଭକ୍ତି ପରମ୍ପରାରେ ପରିଣତ ହୋଇ ପୌରାଣିକ ଧର୍ମର ଏକ ବ୍ୟାପକ ରୂପ ଭାବେ ପ୍ରତିଷ୍ଠିତ ହେଲା । ବ୍ୟକ୍ତି ଲାଗି ଗୁରୁତ୍ୱପୂର୍ଣ୍ଣ ହେଲା ଜଣେ ଦେବତାଙ୍କର ପୂଜା । ବିଶ୍ୱାସ କରାଗଲା ଯେ ଭକ୍ତି ମାଧ୍ୟମରେ ହିଁ ବ୍ୟକ୍ତି ପୁନର୍ଜନ୍ମରୁ ମୁକ୍ତ ହେବାର ଅଭୀପ୍ସା ପୋଷଣ କରିପାରିବ । ବୈଦିକ ଧର୍ମ କର୍ମକାଣ୍ଡଗୁଡ଼ିକୁ ଉତ୍ତମରୂପେ ସଂଜ୍ଞାୟିତ କରିଥିଲା ଏବଂ ଏହା ସମ୍ପୂର୍ଣ୍ଣରୂପେ ଉଚ୍ଚ ଜାତି ଲାଗି ଉଦ୍ଦିଷ୍ଟ ଥିଲା । ପୌରାଣିକ ଧର୍ମର ଆବେଦନ ବ୍ୟାପକ ହେଲା । ଯେତେ କମ୍ ହେଉ ପଛେ ନୈବେଦ୍ୟ ଅର୍ପଣ, ଉପବାସ କରିବା ଏବଂ ଶପଥ ରଖିବା, ଗୋଷ୍ଠୀବଦ୍ଧ ହୋଇ କୌଣସି ତୀର୍ଥସ୍ଥାନକୁ ଯାତ୍ରା କରିବା ଏବଂ ସ୍ଥାନୀୟ କିମ୍ବଦନ୍ତୀଗୁଡ଼ିକରେ ଆସ୍ଥା ସ୍ଥାପନ କରିବା ମାଧ୍ୟମରେ ବିନା ବ୍ୟୟରେ ଏହି ଧର୍ମର ପ୍ରସାର ଘଟିଚାଲିଲା । ଏଥିରେ ବ୍ୟକ୍ତିର ଧର୍ମରେ ଅଂଶଗ୍ରହଣକୁ ପ୍ରାଧାନ୍ୟ ଦିଆଗଲା । ଏହାର ସଭ୍ୟମାନେ ଜନ୍ମ ଦୃଷ୍ଟିକୋଣରୁ ନୁହେଁ, ବରଂ ବିଶ୍ୱାସ ଦୃଷ୍ଟିକୋଣରୁ ଏକାଠି ହେଲେ । ସ୍ଥଳବିଶେଷରେ ଏହା କିଛିଟା ଆବଦ୍ଧ ମନେହେଲା ।

ଏହି ଧର୍ମରେ ଦେବତାଙ୍କ ସହିତ ବ୍ୟକ୍ତିର ସମ୍ପର୍କ ଉପରେ ଗୁରୁତ୍ୱ ଆରୋପ, ବିରୋଧୀ ଓ ଉଦାରବାଦୀ ଧର୍ମରେ ଜାତି ବା ସଂପ୍ରଦାୟ ପରିବର୍ତ୍ତେ ବ୍ୟକ୍ତି ଉପରେ ଗୁରୁତ୍ୱ ଆରୋପ ତୁଲ୍ୟ ଅଟେ । ଏଥିରୁ ମନେହୁଏ ଯଦିଓ ଗୁପ୍ତୋତ୍ତର କାଳରେ ଔପଚାରିକ ବୌଦ୍ଧଧର୍ମ ପ୍ରଭାବ ହରାଇଲା, ତଥାପି ଏହାର ଶ୍ରମଣ ପରମ୍ପରା ପୌରାଣିକ ସଂପ୍ରଦାୟ ଉପରେ ତା'ର ଛାପ ରଖିଗଲା । ଶ୍ରମଣ ଧର୍ମରେ ବ୍ୟକ୍ତିକୁ କେନ୍ଦ୍ରୀୟ ମାନ୍ୟତା ପ୍ରଦାନ କରି କିଛିମାତ୍ରାରେ ତାହା ଗୋଷ୍ଠୀଗତ ଭାବରେ ଚାଲୁଥିଲା । ଐତିହାସିକ ଦୃଷ୍ଟିକୋଣରୁ ଏହି ଧର୍ମଗୁଡ଼ିକ ନଗରକୈନ୍ଦ୍ରିକ ଥିଲେ ଏବଂ ସମାଜ ଭିତରେ ରହି ତା'ର ପ୍ରବାହର ଧାରା ପରିବର୍ତ୍ତନ ଚାହୁଁଥିଲେ । ଏହିପରି, ଅଥଚ କିଛିଟା ଜଟିଳ ଏକ ଢାଞ୍ଚା ପ୍ରଥମ ଶତାବ୍ଦୀର ଆଦ୍ୟ ଭାଗରେ ପରିଦୃଷ୍ଟ ହେଲା । ଶକ୍ତିଶାଳୀ ରାଷ୍ଟ୍ର ଯୋଗୁଁ ଛୋଟ ରାଜ୍ୟଗୁଡ଼ିକ ଅସୁରକ୍ଷିତ ମଣିବାରୁ ଏପରି ହୋଇଥିବା ସମ୍ଭବ । ବହୁବିଧ ପରମ୍ପରା ଏବଂ ଦେବତା ସମ୍ବଳିତ ବୈଷ୍ଣବବାଦ ଏବଂ ଶୈବଧର୍ମ ବ୍ୟକ୍ତିଗତ ସ୍ତରରେ ପୂଜାର ଏକ ଢାଞ୍ଚା ଆକାରରେ ଭକ୍ତି ପରମ୍ପରାକୁ ପ୍ରୋତ୍ସାହିତ କଲା ।

ଯଦିଓ ସଠିକ୍ ସମୟ କହିବା କଷ୍ଟକର, ତେବେ ଏହି ସମୟରେ କେତେକ ପୁରାଣ ରଚିତ ହୋଇଥିଲା । ସେଗୁଡ଼ିକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ଶାସ୍ତ୍ର ଆକାରରେ ପଠିତ ହେଉଥିଲା । ଏହାକୁ ପାଠକରି ଉକ୍ତ କିମ୍ବଦନ୍ତୀ ବିଷୟରେ ତଥା ଯେଉଁ ଦେବତାକୁ ସଂପୃକ୍ତ ପୁରାଣ ଉତ୍ସର୍ଗୀତ ତାଙ୍କ ପୂଜାବିଧାନ ସମ୍ପର୍କରେ ଜ୍ଞାନ ଆହରଣ କରାଯାଉଥିଲା । ପୌରାଣିକ ଧର୍ମର

ଶାସ୍ତ୍ର ହିସାବରେ ସେଗୁଡ଼ିକ ଶ୍ରମଣ ଧର୍ମପ୍ରତି ସମାଲୋଚନାଶୀଳ ଥିଲେ । ଅବଶ୍ୟ କେତେକ ନୂତନ ସଂପ୍ରଦାୟ ଶ୍ରମଣମାନଙ୍କର ସଂଗଠନ ଏବଂ କୌଶଳକୁ ଅନୁକରଣ ମଧ୍ୟ କରୁଥିଲେ । କେତେକ ସ୍ତରରେ ସଂପ୍ରଦାୟର ଧର୍ମ ପ୍ରଚାର ନିମନ୍ତେ ସେମାନେ ମୌଖିକ ପରମ୍ପରା ଅବଲମ୍ବନ କରୁଥିଲେ । ଯେଉଁମାନେ ଶାସ୍ତ୍ର ପଢ଼ିପାରୁ ନ ଥିଲେ ସେମାନଙ୍କ ଲାଗି ପୁରାଣ ଆବୃତ୍ତି କରାଯାଉଥିଲା । ଏଥିରେ ସନ୍ଦେହ ନାହିଁ ଯେ ଏହି ଆବୃତ୍ତିକୁ ମଧ୍ୟ ଅନେକ ଶ୍ରୋତାଙ୍କ ପାଇଁ ବ୍ୟାଖ୍ୟା କରିବାର ଦରକାର ପଡୁଥିଲା ।

ଅତୀତ ପ୍ରସଙ୍ଗରେ ଦାବି ଉପସ୍ଥାପନ କଲାବେଳେ ପୁରାଣଗୁଡ଼ିକ ବିଶ୍ୱ ସୃଷ୍ଟି ସହ ଆରମ୍ଭ ହୋଇଛି ବୋଲି କୁହାଗଲା ଏବଂ ତାକୁ ଐତିହାସିକ ଅତୀତ ଭାବେ ଉପସ୍ଥାପନ କରାଗଲା । ପୁରାତନ କ୍ଷତ୍ରୀୟ ବଂଶ ଏବଂ ପରବର୍ତ୍ତୀ କାଳର ରାଜବଂଶଗୁଡ଼ିକୁ ପୁରାଣ ଅତୀତ ସହ ସଂଯୋଜିତ କଲା । ଶାସ୍ତ୍ରର କ୍ଷମତା ବଢ଼ାଇବା ଲାଗି ଭବିଷ୍ୟବାଣୀ ଶୈଳୀରେ ବଂଶଗୁଡ଼ିକର ଉତ୍ତରାଧିକାର ସମ୍ପର୍କରେ ସୂଚନା ଦିଆଯାଇଛି । ଗୁପ୍ତମାନଙ୍କ ସମୟରେ ଏହି ତାଲିକା ବନ୍ଦ ହୋଇଥିବାରୁ ଏହା ସେହି ସମୟରେ ରଚିତ ବୋଲି ଧରାଯାଏ । 'ବିଷ୍ଣୁ ପୁରାଣ'ରେ ଅତୀତର ବଂଶାବଳୀ ଏବଂ ରାଜବଂଶ ସମ୍ପର୍କରେ 'ବଂଶାନୁଚରିତ' ନାମକ ଏକ ବିଭାଗ ଅଛି । ଏହାକୁ ଅତୀତର ଏକ ବିବରଣୀ ଆକାରରେ ଉପସ୍ଥାପନ କରାଯାଇଛି । କିନ୍ତୁ ଏଥିରୁ କୌଣସିଟିକୁ ବି ଇତିହାସ ଆକାରରେ ଗ୍ରହଣ କରିହେବ ନାହିଁ । ଏକ ଐତିହାସିକ ପରମ୍ପରା ସୃଷ୍ଟି କରିବାଲାଗି ଏହା ଏକ ପ୍ରଚେଷ୍ଟା ଥିଲା । ଏଥିରେ ଅତୀତକୁ ଏକ ନିର୍ଦ୍ଦିଷ୍ଟ ଢାଞ୍ଚାରେ ଅବଲୋକନ କରାଯାଇଛି । ଏଥିରୁ ଅଧିକାଂଶ କଳ୍ପିତ, ଯଦିଓ ସ୍ମୃତିରେ ଥିବା ଇତିହାସ ଏଥିରେ ପ୍ରକ୍ଷିପ୍ତ ଭାବେ ରହିଛି । କଳ୍ପନା ମିଶ୍ରିତ ହୋଇଥିଲେ ମଧ୍ୟ ଅତୀତକୁ ଏ ପ୍ରକାରେ ମନେରଖିବାର ଢଙ୍ଗଟି ରୈଖୀୟ ଭାବେ ସମୟକୁ ଚିହ୍ନାଏ ଏବଂ ଇତିହାସ ବିଷୟରେ ସୂଚନା ପ୍ରଦାନ କରେ । ସୂର୍ଯ୍ୟ ଏବଂ ଚନ୍ଦ୍ର ବଂଶର ରୂପରେଖ, ରାଜବଂଶର ବର୍ଣ୍ଣନା ଇତ୍ୟାଦିକୁ ପର୍ଯ୍ୟବେକ୍ଷଣ କରି ଯିଏ ସଂଯୋଗ ବାହାର କରିପାରିବ ସେ ଅବଶ୍ୟ ଏଥିରୁ କିଛି ସୂତ୍ର ପାଇପାରିବ । ଏହି ତଥ୍ୟ ଏକ ଧାର୍ମିକ ପାଠରେ ରେଖା ଦ୍ୱାରା ବୈଧତାପ୍ରାପ୍ତ ହୁଏ ଏବଂ ଏହା ଯେ ପରେ ପରିଚିତି ହାସଲ କରିବ ତାହା ନିଶ୍ଚିତ କରାଏ ।

ତେଣୁ ଯାହା ଏକଦା ଅତୀତର ଲୋକପ୍ରିୟ ସ୍ମୃତି ହୋଇଥିଲା ତାହା ପୁନର୍ଲିଖନ ଓ ସଂଶୋଧନ ମାଧ୍ୟମରେ ଅତୀତର ଏକ ବ୍ରାହ୍ମଣ୍ୟବାଦୀ ଉପସ୍ଥାପନରେ ପରିଣତ ହେଲା । ଯେଉଁ ସୂତ ବା ଭାଟମାନେ କବିତା ଏବଂ ବର୍ଣ୍ଣନାରେ ସେମାନଙ୍କ ପୃଷ୍ଠପୋଷକମାନଙ୍କୁ ଅମର କରିଦେଇଥିଲେ, ସେମାନଙ୍କୁ ନୀଚ ଜାତିର ମାନ୍ୟତା ଦିଆଗଲା ଏବଂ ସେମାନଙ୍କ ମୌଖିକ ପରମ୍ପରାକୁ ପୁଣି ଲେଖାଲେଖି କରି ଅନ୍ୟ ଉଦ୍ଦେଶ୍ୟରେ ବ୍ୟବହାର କରାଗଲା ।

ନୂତନଭାବେ ଯେଉଁ ବଂଶଗୁଡ଼ିକର ଅଭ୍ୟୁଦୟ ଘଟୁଥିଲା ବ୍ରାହ୍ମଣମାନେ ତାକୁ କ୍ଷତ୍ରିୟର ମାନ୍ୟତା ପ୍ରଦାନ କରୁଥିଲେ । ସେମାନଙ୍କୁ ପ୍ରାଚୀନ କାଳର ନାୟକମାନଙ୍କ ସହ ଯୋଡ଼ି, ସେମାନେ ଯେ ପୁରୁଣା ପ୍ରସିଦ୍ଧ କ୍ଷତ୍ରିୟ ବଂଶ ଅବତଂଶ ତାହା ଦେଖାଇବାର ଚେଷ୍ଟା ଚାଲିଥିଲା । ତେଣୁ ଖୁବ୍‌ଶୀଘ୍ର ରାଜବଂଶଗୁଡ଼ିକ ନିଜକୁ ସୂର୍ଯ୍ୟବଂଶୀ ବା ଚନ୍ଦ୍ରବଂଶୀ ବୋଲି ବର୍ଣ୍ଣନା କରିବା ଆରମ୍ଭ କରିଦେଲେ । ରାଜପରିବାର ମୂଳତଃ ଯାହା ହୋଇଥାଉ ନା କାହିଁକି ପୁରାଣକାରମାନେ ନୂତନ ରାଜବଂଶଗୁଡ଼ିକୁ କ୍ଷତ୍ରିୟ ମାନ୍ୟତା ଦ୍ୱାରା ବୈଧ କରିବାରେ ଲାଗିପଡ଼ିଲେ । ଯେଉଁମାନେ ଏହି କାର୍ଯ୍ୟ କଲେ ସେମାନଙ୍କୁ ଉତ୍ତମଭାବେ ପୁରସ୍କୃତ କରାଗଲା । ଐତିହାସିକ ଦିଗରୁ ଠିକ୍ ହୋଇଥାଉ ବା ନ ଥାଉ ଅନେକ ସମାଜରେ ଅତୀତକୁ ଏକ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରିବା ଫେସନରେ ପରିଣତ ହୋଇଯାଇଥିଲା । ଏହି କାର୍ଯ୍ୟ ରାଜାଙ୍କର ଜୀବନୀ ଲେଖିବା ସଦୃଶ ଥିଲା ଏବଂ କାଳାନୁକ୍ରମିକ ବିବରଣୀ ଲେଖା ସହ ସମାନ୍ତରାଳ ଥିଲା ।

ପୌରାଣିକ ଧର୍ମ ଖୁବ୍ ସହଜରେ ନୂତନ ଦେବାଦେବୀ, କିମ୍ବଦନ୍ତୀ ଏବଂ କର୍ମକାଣ୍ଡକୁ ଆପଣେଇ ପାରୁଥିଲା । ଯେତେବେଳେ ଗୋଟିଏ ସୀମାନ୍ତରିତ ସମାଜ ଜାତିଭିତ୍ତିକ ସମାଜ ଭିତରେ ହଜିଯିବା ଭଳି ଅବସ୍ଥା ହେଉଥିଲା ଏବଂ ସେହି ସମାଜର ଦେବତାଙ୍କୁ ଖାପଖୁଆଇ ନେବା ଆବଶ୍ୟକ ଥିଲା ସେତେବେଳେ ଏହି ବ୍ୟବସ୍ଥା ଉପଯୋଗୀ ସାବ୍ୟସ୍ତ ହେଉଥିଲା । ଏହି କାଳଖଣ୍ଡରେ କେବଳ ଗଣସଂଘଗୁଡ଼ିକର ଉନ୍ମୂଳନ ଘଟିଲା ତାହା ନୁହେଁ, ଧୀର ମନ୍ଥର ପ୍ରକ୍ରିୟାରେ ଜଙ୍ଗଲ ତଥା ଅନ୍ୟାନ୍ୟ ସୀମାନ୍ତରିତ ସମାଜଗୁଡ଼ିକ ମଧ୍ୟ ଜାତିଭିତ୍ତିକ ସମାଜରେ ପରିଣତ ହୋଇଚାଲିଲା । ଯେଉଁ ଜଙ୍ଗଲ ଅଦମନୀୟତା ଏବଂ ଅଜ୍ଞାତ ବନ୍ୟତାର ପ୍ରତୀକ ଥିଲା, ଆଉ ଟିକେ ଭାବବାଦୀ ହୋଇ ଯାହା ମଧ୍ୟରେ ସଂସାରତ୍ୟାଗୀ ସନ୍ନ୍ୟାସୀମାନେ ରହନ୍ତି ବୋଲି ଧାରଣା ପ୍ରଦାନ କରାଯାଉଥିଲା, ସେହି ଜଙ୍ଗଲ ସଫା କରାଯାଇ କୃଷକମାନଙ୍କ ଲାଗି ଚାଷଜମି ପ୍ରସ୍ତୁତ କରାଗଲା । ଏହି ପ୍ରକ୍ରିୟା ସମ୍ଭବତଃ ଜରୁରୀ ଥିଲା, କାରଣ କେତେକ ଅଞ୍ଚଳରେ ଚାଷଜମି ଉପରେ ଚାପ ପଡ଼ିବା ଆରମ୍ଭ ହୋଇଯାଇଥିଲା । କେତେକ ଅଭିଲେଖରେ ଜଙ୍ଗଲର ରାଜାଙ୍କୁ ପରାସ୍ତ କରି ରାଜବଂଶ ପ୍ରତିଷ୍ଠା କରାଯିବା କଥା ବର୍ଣ୍ଣିତ ହୋଇଛି । 'ହର୍ଷଚରିତ'ରେ ଏକ ଶବର ଗ୍ରାମର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଶବରମାନେ ମୁଖ୍ୟତଃ ଜଙ୍ଗଲୀ ଲୋକ, ତେବେ ତହିଁରେ ସେମାନେ କୃଷକ ଭାବେ ଜୀବନ ବିତାଉଛନ୍ତି ବୋଲି ଉଲ୍ଲେଖ ଅଛି ।

ପ୍ରାଚୀନ କାଳରେ ସାମାଜିକତାର ସୁରକ୍ଷା ଏକ ପବିତ୍ର ନିୟମ ଭାବେ ସମ୍ମାନ ଲାଭ କରୁଥିଲା । ଯେଉଁମାନେ ଜାତିଭିତ୍ତିକ ସମାଜର ଅଙ୍ଗ ହେବାକୁ ଅନୁମତି ପାଉ ନ ଥିଲେ ସେମାନଙ୍କ ଲାଗି ବେଶ୍ କଠୋର ନିୟମ ସବୁ ଥିଲା । ସୌଭାଗ୍ୟବଶତଃ ବହୁଳଭାବେ

ତତ୍ତ୍ୱଭିତ୍ତିକ ନିୟମଗୁଡ଼ିକୁ କାମରେ ଲଗାଇବା କାଠିକର ବୋଲି ଅନେକ ଲୋକ ମନେକରୁଥିଲେ । କେହି କେହି ମଣିଷର ଚାରି ଲକ୍ଷ୍ୟ – ଧର୍ମ, ଅର୍ଥ, କାମ ଓ ମୋକ୍ଷର ସଂଶ୍ଳାୟନ କରୁଥିଲେ । ପ୍ରଥମ ତିନୋଟିର ଉଚିତ ସନ୍ତୁଳନ ମଣିଷକୁ ଚତୁର୍ଥଟିରେ ପହଞ୍ଚାଏ ବୋଲି କୁହାଯାଉଥିଲା । ଏହି ସନ୍ତୁଳନର ବର୍ଣ୍ଣନା ସମାଜର କାନୁନ୍ ନିର୍ମାତାଙ୍କ ହାତରେ ଛାଡ଼ି ଦିଆଯାଇଥିଲା । କିନ୍ତୁ ସାଂସାରିକ ଜୀବନର ଦାବି ପୂରଣ ଲାଗି ଅଭ୍ୟାସଗତଭାବେ ଯଥେଷ୍ଟ ପ୍ରଚେଷ୍ଟା କରାଯାଉଥିଲା ।

## ଭାରତ ଏବଂ ଏସିଆ

ବାଣିଜ୍ୟ ସହ ସଂଯୁକ୍ତ ହୋଇ ଧର୍ମ ଭାରତୀୟ ଜୀବନଧାରାକୁ ଭାରତ ବାହାରକୁ ନେଲା । ଏ କ୍ଷେତ୍ରରେ ବୌଦ୍ଧଧର୍ମ କରି ଭାରତୀୟ ସଂସ୍କୃତିକୁ ଏସିଆର ବିଭିନ୍ନ ଅଞ୍ଚଳରେ ପହଞ୍ଚାଇଲା । ବୌଦ୍ଧ ଧର୍ମ ମଧ-ଏସିଆରେ ସମର୍ଥନ ଲାଭ କଲା । ସ୍ଥାନୀୟ ଶାସକ ଏବଂ ବଣିକମାନେ ବିହାର ଗଠନରେ ପୃଷ୍ଠପୋଷକତା କଲେ । ଅବଶ୍ୟ ସେଗୁଡ଼ିକ ବାଣିଜ୍ୟ କେନ୍ଦ୍ରରେ ପରିଣତ ହେଲା । ହାଡ୍ଡା ଏବଂ ବାମିଆନ୍‌ର ମନୋମୁଗ୍ଧକର ପୀଠସ୍ଥଳୀରେ ଭାରତ ଓ ଆଫଗାନିସ୍ଥାନର ସଂସ୍କୃତି ମଧ୍ୟରେ ଘନିଷ୍ଠତା ବୃଦ୍ଧି ପାଇଲା । ଭାରତୀୟ ଲିପି ଶିକ୍ଷା ଏବଂ ଭାରତୀୟ ଭାଷା ବ୍ୟବହାର ଭାରତୀୟ ବଣିକମାନଙ୍କ ଲାଗି ସହାୟତାପ୍ରଦ ହୋଇଥିବ; ଏହା ସାକ୍ଷରତା ଲାଗି ମଧ ଉପଯୋଗୀ ସାବ୍ୟସ୍ତ ହୋଇଥିବ । ଭାରତୀୟମାନେ ମଧ ଏସିଆରେ ଅବସ୍ଥାପିତ ହେବା ଆରମ୍ଭ କଲେ । ସେମାନଙ୍କ ମଧରୁ ବୌଦ୍ଧ ଦାର୍ଶନିକ କୁମାରଜୀବ ଚତୁର୍ଥ ଶତାବ୍ଦୀରେ କୁଚା ଅଞ୍ଚଳରେ ବାସ କରୁଥିଲେ । ନିକଟବର୍ତ୍ତୀ ତିବ୍ବତ ଅଞ୍ଚଳରେ ସପ୍ତମ ଶତାବ୍ଦୀରେ ଶାସନ କରୁଥିବା ରାଜା ଷ୍ଟଂଗ-ସାଂ-ଗାମ୍ପୋଙ୍କ ପ୍ରଚେଷ୍ଟାରେ ବୌଦ୍ଧ ଧର୍ମ ପ୍ରତି ଆଗ୍ରହ ସୃଷ୍ଟି କରାଯାଇଥିଲା । ଶକ୍ତିଶାଳୀ ରାଜବଂଶଗୁଡ଼ିକ କେନ୍ଦ୍ରୀୟ ଶାସନ ନ ମାନୁଥିବା ପରିସ୍ଥିତିରେ ରାଜପଦର ମୂଳଦୁଆ ଦୃଢ଼ କରିବା ପାଇଁ ସେ ବୌଦ୍ଧଧର୍ମକୁ ବ୍ୟବହାର କଲେ । ଏହାଫଳରେ ସେ ତିବ୍ବତ ବାହାରେ ଥିବା ଦୁନିଆ ସହ ଯୋଗାଯୋଗ କରିବା ଲାଗି ସମର୍ଥ ହେଲେ ।

ଭାରତୀୟ ବୌଦ୍ଧମାନେ ପୁନଶ୍ଚ ଚୀନ୍ ଅଭିମୁଖୀ ହେଲେ । 378 ଖ୍ରୀଷ୍ଟାବ୍ଦ ବେଳକୁ ରାଜ୍ୟର ସମର୍ଥନରେ ବୌଦ୍ଧଧର୍ମ ଚୀନ୍‌ର ଗୃହୀତ ଧର୍ମରେ ପରିଣତ ହେଲା । ତା' ସତ୍ତ୍ୱେ ଏହାର ଦୁର୍ଦ୍ଦଶା ଯୋଗ ଥିଲା । କାରଣ ପରବର୍ତ୍ତୀ ଶତାବ୍ଦୀରେ ବୌଦ୍ଧମାନଙ୍କୁ ନିର୍ଯାତନା ଦିଆଗଲା । ଚୀନା ବୌଦ୍ଧ ସନ୍ନ୍ୟାସୀମାନେ ମୂଳ ବୌଦ୍ଧଶାସ୍ତ୍ରର ନକଲ ପାଇବା ଲାଗି

ଆଗ୍ରହୀ ଥିଲେ । ଫାହିୟାନ୍, ସୁଂ ୟୁଂ, ହୁଏନ୍‌ସାଂ ଏବଂ ପରେ ୟି ଢିଂ (ୟି ଢିଂଗ) ପ୍ରମୁଖ ପରିବ୍ରାଜକ ରୂପେ ଆସି ଭାରତରେ କାର୍ଯ୍ୟ କରିଥିଲେ । ପ୍ରଥମ ପର୍ଯ୍ୟାୟରେ ଯେଉଁମାନେ ଆସିଥିଲେ ସେମାନେ ମଧ୍ୟ-ଏସିଆ ଯାତ୍ରାର ବିପଦ ଓ ଭୟାବହତାକୁ ସାହସର ସହିତ ସମ୍ମୁଖୀନ ହୋଇଥିଲେ । ସେମାନଙ୍କ ବର୍ଣ୍ଣନା ମୁତାବକ ବିଚାର କଲେ, କେବଳ ମରୁଦ୍ୟାନ ଅଞ୍ଚଳକୁ ବାଦ୍‌ଦେଲେ, ଏହା ଏକ ଅନାକର୍ଷଣୀୟ ଅଞ୍ଚଳ ଥିଲା । କ୍ରମେ ଚୀନା ସଂସ୍କୃତିରେ ଭାରତୀୟ ଉପାଦାନଗୁଡ଼ିକର ପ୍ରବେଶ ଘଟିଲା । ସବୁଠୁ ଦୃଶ୍ୟମାନ କଥାଟି ହେଲା, ବୌଦ୍ଧ ବିହାରଗୁଡ଼ିକର ଭାସ୍କର୍ଯ୍ୟ ଓ ଅଙ୍କନରେ ଭାରତୀୟ ଜ୍ଞାନ କୌଶଳର ପ୍ରାରମ୍ଭିକ ବ୍ୟବହାର । ନାନ୍ଦନିକ ପରିପ୍ରକାଶ ଦିଗରୁ ସବୁଠାରୁ ଲକ୍ଷଣୀୟ ହେଲା ତୁଂ ହୁଆଂଠାରେ ଉପଲବ୍‌ଧ ଅଙ୍କନ । ଏହାକୁ ଚୀନା ଅଙ୍କନର ଏକ ଐତିହାସିକ ଅଭିଲେଖାଗାର ବୋଲି କୁହାଯାଏ । ମୀରାନ୍, କୁଚା ଏବଂ ତୁର୍ଫାନ୍ ଭଳି ଅନ୍ୟାନ୍ୟ ବିହାରଗୁଡ଼ିକରେ ମଧ୍ୟ କାନ୍ଥରେ ଅଙ୍କିତ ଚିତ୍ରମାନ ପରିଦୃଷ୍ଟ ହୋଇଥାଏ । ଏହି ଭାବ ବିନିମୟ ମାଧ୍ୟମରେ ଜ୍ୟୋତିର୍ବିଜ୍ଞାନ, ରସାୟନଶାସ୍ତ୍ର ଏବଂ ଚିକିତ୍ସାବିଦ୍ୟା ମଧ୍ୟ ସମୃଦ୍ଧ ହେଲା । ଦକ୍ଷିଣ ଚୀନ୍ ପର୍ଯ୍ୟନ୍ତ ଭାରତୀୟ ନୌବାଣିଜ୍ୟର ସଂପ୍ରସାରଣ ଚୀନ୍-ଭାରତ ମଧ୍ୟରେ ଯୋଗସୂତ୍ର ବଢ଼ାଇଲା । ତାଂଗ୍ ଶାସନ କାଳରେ (୬18-907 ଖ୍ରୀଷ୍ଟାବ୍ଦ) ଭାରତୀୟ ବଣିକମାନେ କ୍ୟାଣ୍ଟନ୍‌ଠାରେ ରହୁଥିଲେ । ସପ୍ତମ ଶତାବ୍ଦୀର ତାଂଗ୍ ମୁଦ୍ରା ଦକ୍ଷିଣ ଭାରତରୁ ମିଳିଛି । କ୍ରମେ ବୌଦ୍ଧ ଧର୍ମ ଚୀନ୍‌ରୁ ଜାପାନ ଅଭିମୁଖେ ଗଲା ।

ମଧ୍ୟ-ଏସିଆ ସହ ବାଣିଜ୍ୟ କ୍ରମେ ପୂର୍ବ ଭୂମଧ୍ୟ ସାଗର ଆଡ଼କୁ ପ୍ରସାରିତ ହେଲା । ଫଳରେ ପଶ୍ଚିମ ଏସିଆ ସହ ସଂପୃକ୍ତି ବଢ଼ିଲା । ଆରବୀୟ ଉପଦ୍ୱୀପ ଇଥିଓପିଆ-ବାଇଜାଣ୍ଟାଇନ୍ ବାଣିଜ୍ୟ ସହ ଜଡ଼ିତ ଥିଲା । ଆରବର ଓଟ ଆରୋହୀ ଯାଯାବରମାନେ ଏହି କ୍ଷେତ୍ରରେ ବାହକ ଭୂମିକା ତୁଲାଉଥିଲେ । ଏହି ବାଣିଜ୍ୟର ସମ୍ପଦ ଏବଂ କାର୍ଯ୍ୟାବଳୀ ଇସ୍‌ଲାମ୍‌ର ଅଭ୍ୟୁଦୟ ଲାଗି ବିନିଯୁକ୍ତ ହେଉଥିଲା ।

ପୂର୍ବ ଭୂମଧ୍ୟ ସାଗର ସହିତ ବାଣିଜ୍ୟର ଚାହିଦା ବଢ଼ିବା ହେତୁ ଦକ୍ଷିଣପୂର୍ବ ଏସିଆକୁ ନେଇ ଭାରତୀୟ ଉତ୍ସାହ ବୃଦ୍ଧି ପାଇଲା । ଏପରି ହେବାର କାରଣ ଏହି ଅଞ୍ଚଳରୁ ମସଲା, ସ୍ୱଚ୍ଛ ମୂଲ୍ୟବାନ ପଥର ଇତ୍ୟାଦି ଆବଶ୍ୟକୀୟ ପଣ୍ୟଦ୍ରବ୍ୟ ମିଳୁଥିଲା । ଥରେ ଦକ୍ଷିଣ-ପୂର୍ବ ଏସିଆର ସାମର୍ଥ୍ୟ ଆବିଷ୍କାର କଲାପରେ ଉଭୟ ବୌଦ୍ଧ ଏବଂ ହିନ୍ଦୁ ଭାରତୀୟ ବଣିକମାନେ ସେମାନଙ୍କ ସହିତ ଯୋଗସୂତ୍ର ଆରମ୍ଭ କଲେ । ବାଣିଜ୍ୟ ଫଳରେ ସେଠି ବସତି ସ୍ଥାପନ କଥା ଉଠିଲା ଏବଂ ଘନିଷ୍ଠ ଭାବ ବିନିମୟ ସମ୍ଭବ ହେଲା । ଅଧୁନାତନ ଥାଇଲାଣ୍ଡ, କାମ୍ବୋଡ଼ିଆ ଏବଂ ଜାଭାର ସ୍ଥାନୀୟ ଜୀବନରେ ଭାରତୀୟ ସଂସ୍କୃତିର ଛାପ ପଡ଼ିଲା ।

ଚୀନ୍‌ର ସେ ସମୟର ବାର୍ଷିକ ବିବରଣୀରୁ ଦକ୍ଷିଣ-ପୂର୍ବ ଏସିଆରେ ଭାରତର କାର୍ଯ୍ୟକଳାପ ସମ୍ପର୍କରେ ସୂଚନା ମିଳେ । ସେହି ବିବରଣୀ ମୁତାବକ ଫୁନାନ (ମେକଂ ତ୍ରିକୋଣଭୂମି) ଥିଲା କାର୍ଯ୍ୟକଳାପର ପ୍ରଥମ କେନ୍ଦ୍ର । ଏହା ପୂର୍ବ ଉପକୂଳର ନୌବାଣିଜ୍ୟ କେନ୍ଦ୍ରଗୁଡ଼ିକ ସହ ଜଡ଼ିତ ଥିବାରୁ ମାଳୟ ଉପଦ୍ୱୀପରେ ଛୋଟକାଟର ବସତି ସ୍ଥାପନ ଆରମ୍ଭ ହୋଇଗଲା । ଜାହାଜମାନ ତାମ୍ରଲିପ୍ତ ଓ ଅମରାବତୀରୁ ମିଆଁମାର୍‌, ମର୍ତ୍ତବନ ଓ ଇଣ୍ଡୋନେସିଆ ଅଭିମୁଖେ ଚାଲିଲା । ଦକ୍ଷିଣ ଭାରତର ବନ୍ଦରଗୁଡ଼ିକରୁ ଟେନାସାରିମ୍‌, ତ୍ରାଙ୍ଗ, ମଲାକା ପ୍ରଣାଳୀ ଏବଂ ଜାଭା ଅଭିମୁଖେ ଜାହାଜ ଚଳାଚଳ କଲା । ପଶ୍ଚିମ ଉପକୂଳର ବନ୍ଦରଗୁଡ଼ିକ ମଧ୍ୟ ଏହି ବାଣିଜ୍ୟରେ ଅଂଶଗ୍ରହଣ କଲେ ।

ଭାରତୀୟ ଯୋଗସୂତ୍ରର ଢଙ୍ଗ ବଣିକମାନେ ଆସିଥିବା ଅଞ୍ଚଳ ଏବଂ ଯେଉଁ ସମାଜ ସହ ବାଣିଜ୍ୟ କରୁଥିଲେ ତା ସହ ସମ୍ବନ୍ଧର ପ୍ରକାର ଅନୁସାରେ ଭିନ୍ନ ଭିନ୍ନ ହେଉଥିଲା । ଏହି ପ୍ରକ୍ରିୟାଟି ସମ୍ଭବତଃ ଉପମହାଦେଶରେ ସୀମାବର୍ତ୍ତୀ ସମାଜଗୁଡ଼ିକର ମୁଖ୍ୟସ୍ରୋତର ସମାଜ ସହ ସମ୍ପର୍କ ଭଳି ଥିଲା । ତେବେ ଜାତିପ୍ରଥା ଉପରେ ବିଶେଷ ଗୁରୁତ୍ୱ ନ ଦେଇ ଭାରତ ଉଦ୍‌ଭୁତ ସମାଜ ବ୍ୟବସ୍ଥା ଚାଲୁ ରହିଲା । ସଂସ୍କୃତ ଭବ୍ୟ ସମାଜର ଭାଷାକୁ ପ୍ରଭାବିତ କଲା । କାରଣ ଭାରତୀୟ ଅଧିକାରୀମାନଙ୍କ ଦ୍ୱାରା ପ୍ରବର୍ତ୍ତନ କରାଯାଇଥିବା ଔପଚାରିକ କର୍ମକାଣ୍ଡଗୁଡ଼ିକର ଭାଷା ସମ୍ଭବତଃ ସଂସ୍କୃତ ଥିଲା । ଏହି ଅଞ୍ଚଳରୁ କେତେକ ଚମତ୍କାର ସଂସ୍କୃତ ଅଭିଲେଖ ଆବିଷ୍କୃତ ହୋଇଛି । ଭୌଗୋଳିକ ସ୍ଥାନଗୁଡ଼ିକର ନାମ ଭାରତୀୟ ସାଂସ୍କୃତିକ ପରମ୍ପରାରୁ ଆହରଣ କରିଦିଆଗଲା । ଉଦାହରଣ ସ୍ୱରୂପ, ପ୍ରାଚୀନ ଥାଇଲାଣ୍ଡର ରାଜଧାନୀ 'ଆୟୁଥିଆ' ନାମଟି ରାମଙ୍କ ରାଜଧାନୀ ଅଯୋଧ୍ୟାରୁ ଆହରଣ କରାଯାଇଛି । ଭାରତୀୟ ମହାକାବ୍ୟଗୁଡ଼ିକର ଲୋକପ୍ରିୟତାର ଅନେକ ଉଦାହରଣ ମଧ୍ୟରୁ ଏହା ଗୋଟିଏ । ଏଠାକାର ମୂର୍ତ୍ତିଗୁଡ଼ିକରେ ଭାରତୀୟ ମୂର୍ତ୍ତିକଳା ସହିତ ସ୍ଥାନୀୟ କଳାର ସମନ୍ୱୟ ଦେଖିବାକୁ ମିଳେ । ବୌଦ୍ଧଧର୍ମ ଏବଂ ପୌରାଣିକ ଧର୍ମର ସମନ୍ୱୟର ଆଧାରରେ ଉଦ୍‌ଭୂତ ସ୍ଥାପତ୍ୟ ଦକ୍ଷିଣ-ପୂର୍ବ ଏସିଆର ପ୍ରତିନିଧି ସ୍ଥାନୀୟ କଳା ହିସାବରେ ଅନେକ ସ୍ଥାନରେ ଫୁଟିଉଠିଛି । ପରବର୍ତ୍ତୀ ସମୟରେ କାମ୍ବୋଡ଼ିଆର ଅଙ୍କୋରବଟ ଏବଂ ବାୟନ, ଜାଭା ସ୍ଥିତ ବୋର୍‌ବୁଦୁରର ସ୍ତୁପ ଏବଂ ପ୍ରମ୍ବନମ୍‌ର ମନ୍ଦିରରେ ଏହି ସ୍ଥାପତ୍ୟର ବିବର୍ତ୍ତିତ ରୂପ ଦେଖିବାକୁ ମିଳେ ।

ଏହି ସମାଜମାନଙ୍କରେ ମୂଳ ଭାରତୀୟ ସଂସ୍କୃତିର ଅନେକ ଛାପ ରହିଛି । ଏ ଅଞ୍ଚଳରେ କେତେକ ଉନ୍ନତ ବୈଷୟିକ ଜ୍ଞାନକୌଶଳ ଉପଲବ୍ଧ ହେବା ଏବଂ ଏଠାକାର ସ୍ଥାନୀୟ ଭବ୍ୟ ସମାଜ ନୂତନ ଢାଞ୍ଚା ଆଦରିନେବା ଭିତରେ ଭାରତୀୟ ପ୍ରଭାବକୁ ବୁଝିହୋଇଯାଏ । ଭାରତୀୟ ବଣିକମାନଙ୍କର ଉପସ୍ଥିତି ମଧ୍ୟ ପରିବର୍ତ୍ତନର ବାହକ ହେଲା ।

ସେମାନଙ୍କ ଦ୍ୱାରା ଏକ ବିନିମୟୀ ଅର୍ଥବ୍ୟବସ୍ଥା ପ୍ରଚଳିତ ହେବା ଫଳରେ ସେମାନେ ଲାଭବାନ୍ ହେଲେ ଏବଂ କ୍ଷମତାର ବିଭିନ୍ନ ସ୍ତରରେ ଅଂଶଗ୍ରହଣ କଲେ । ତେବେ ଏ ସମୟର ଦକ୍ଷିଣ-ପୂର୍ବ ଏସିଆକୁ 'ବୃହତ୍ତର ଭାରତ' ବୋଲି କହିବା ଅପ୍ରଯୁଜ୍ୟ ହେବ । ଜୀବନର ସମସ୍ତ ବିଭାବରେ ସ୍ଥାନୀୟ ସଂସ୍କୃତି ଦୃଶ୍ୟମାନ ହୁଏ । ରାମାୟଣର ଜାଭା ରୂପାନ୍ତରରେ ମୂଳ ଭାରତୀୟ କାହାଣୀର କେବଳ ଛାଞ୍ଚ ମାତ୍ର ଅଛି । ବାକୀ ସବୁ ଜାଭାର ପାରମ୍ପରିକ କିମ୍ବଦନ୍ତୀର ସମାହାର । କାମ୍ବୋଡ଼ିଆର ଖାମେର ଶାସକଙ୍କ ଭିତରେ ପ୍ରଚଳିତ ଦେବତା-ରାଜା ଅବଧାରଣା ଏକ ପ୍ରାକ୍-ଭାରତୀୟ ଉତ୍ସରୁ ଆନୀତ । ଅବଶ୍ୟ ପରବର୍ତ୍ତୀ ସମୟରେ ଭାରତୀୟ ଅବଧାରଣାମାନ ମଧ୍ୟ ଆସିଲା ।

ସପ୍ତମ ଏବଂ ଅଷ୍ଟମ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ-ପୂର୍ବ ଏସିଆରେ ବୌଦ୍ଧଧର୍ମର ଅସ୍ତିତ୍ୱ ତିବ୍ବତରେ ବୌଦ୍ଧଧର୍ମର ପ୍ରସାରର ସମସାମୟିକ ହୋଇପାରେ । ଉଭୟ କ୍ଷେତ୍ରରେ ସ୍ଥାନୀୟ ପରିବର୍ତ୍ତନ ଏତେ ଦୃଢ଼ ଯେ କାମ୍ବୋଡ଼ିଆ ଏବଂ ଜାଭାରେ ବୌଦ୍ଧଧର୍ମର ରୂପରେଖ ତିବ୍ବତର ବୌଦ୍ଧଧର୍ମଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଦରବାର ପରିସରରେ ଭାରତୀୟ ବା ଚୀନା ଜିନିଷର ଅନୁକରଣ ସହଜରେ ଲକ୍ଷଣୀୟ । କିନ୍ତୁ ଏହି ଦେଶମାନଙ୍କରେ ଅବଶିଷ୍ଟ ସମାଜର ଯେତେ ଆମଦାନୀ କରା ପ୍ରଥା ମିଶିଥିଲେ ମଧ୍ୟ ସ୍ୱକୀୟ ଅସ୍ମିତାର ଛାପ ସୁସ୍ପଷ୍ଟ ।

ସଂସ୍କୃତ ଆଧାରିତ ସଂସ୍କୃତି ସୂଚାଏ ଯେ ତାହା କେବଳ ସଂସ୍କୃତ ଭାଷାର ବ୍ୟାପକ ବ୍ୟବହାର ନୁହେଁ । ଏହା ଏକ ନୂତନ କ୍ରମର ବୈଧୀକରଣର ପ୍ରଥମ ସୋପାନକୁ ସୂଚାଏ । ଏହା ଭୂମିବନ୍ତ ମଧ୍ୟସ୍ଥିମାନଙ୍କର ଓ କ୍ଷତ୍ରିୟ ତଥା ନୂତନ ଧାର୍ମିକ ସଂପ୍ରଦାୟମାନଙ୍କର ସମାଜ ଓ ସଂସ୍କୃତିକୁ ବୁଝାଏ । ମାତ୍ର ଏସବୁ ଚକ୍ରବାକଠାରୁ ଢେର୍ ଦୂରରେ ଥିଲା ନୂତନ ଜ୍ଞାନ ବ୍ୟବସ୍ଥାର ଚମତ୍କାର ଉପଯୋଗ ଏବଂ ସାହିତ୍ୟ କ୍ଷେତ୍ରରେ ସୃଜନଶୀଳତା । ସଂସ୍କୃତ ଭାଷା ଭାରତୀୟ ଶିକ୍ଷଣକୁ ଦ୍ରୁତ ବିକାଶଶୀଳ ଏସୀୟ ଜ୍ଞାନ ବିନିମୟରେ ପରିଣତ କଲା ଏବଂ ସଂସ୍କୃତ ଏସିଆର ବିଭିନ୍ନ ଭାଗରେ ନିଜର ଅସ୍ତିତ୍ୱ ଜାହିର୍ କଲା ।

ଏହା ହେଲା ଏକ ସନ୍ଧିକାଳ । ଏଥିରେ ପୂର୍ବବର୍ତ୍ତୀ ସମୟର କିଛି ଉପାଦାନ ରହିଥିଲା । ଆଉ ଯାହା କିଛି ଥିଲା ତାହା ପରବର୍ତ୍ତୀ ସମୟରେ ଏକ ନିର୍ଦ୍ଧାରିତ ରୂପ ପରିଗ୍ରହ କଲା । ମୌଖିକ ପରମ୍ପରାଗୁଡ଼ିକ ଲିଖିତ ପାଠରେ ପରିଣତ ହେଲା ଏବଂ ଏଥିରେ କେତେକ ପ୍ରକ୍ଷେପ ସଂଯୋଜିତ ହେଲା । ଏଥିରେ ଯାହା ଅବିଦିତ ଓ ଅପ୍ରକାଶ୍ୟ ରହିଲା, ତାହା ହେଲା ଉଚ୍ଚ ଜାତିର ଦୃଢ଼ୀକରଣ ଏବଂ ତାକୁ ପ୍ରଭାବଶାଳୀ କରି ତା ହାତରେ କ୍ଷମତା ପ୍ରଦାନ । ଗୁପ୍ତୋତ୍ତର କାଳରେ ବ୍ରାହ୍ମଣମାନଙ୍କୁ ଜମି ଅନୁଦାନ ପ୍ରଦାନ କରିବାର ପରମ୍ପରା ବୃଦ୍ଧି ପାଇଲା ଯେଉଁଥିରୁ ସମାଜରେ ବ୍ରାହ୍ମଣମାନଙ୍କ ଗୁରୁତ୍ୱ ସମ୍ପର୍କରେ ଧାରଣା କରିହୁଏ ।

ବ୍ରାହ୍ମଣମାନେ ବୈଦିକ ବ୍ରାହ୍ମଣ୍ୟବାଦ ମୁତାବକ ବଂଶାନୁକ୍ରମ ଦେଖାଇ ନିଜର ସ୍ଥିତି ସୁଦୃଢ଼ କଲେ । ଏହାଫଳରେ ବୈଦିକ ବ୍ରାହ୍ମଣ୍ୟବାଦର ପ୍ରତିରୋଧୀ ରକ୍ଷଣଶୀଳତା ବର୍ଜିତ ଗୋଷ୍ଠୀ ସୀମାନ୍ତରିତ ହୋଇଗଲେ । ବୈଦିକ ବ୍ରାହ୍ମଣବାଦରେ ବ୍ରାହ୍ମଣମାନଙ୍କର ଜ୍ଞାନ ଉପରେ ଏକାଧିପତ୍ୟ ଥିଲା ବୋଲି କୁହାଯାଇଥିଲା ଯାହା କ୍ଷମତାର ଅତିରିକ୍ତ ଉତ୍ସ ଥିଲା । ତେବେ ସେ ଯାହାହେଉ, ପୌରାଣିକ ସଂପ୍ରଦାୟର ପ୍ରତିଷ୍ଠା ଫଳରେ ସାମାଜିକ ଏବଂ ଧାର୍ମିକ ଜୀବନରେ ଆଉ ଏକ ପ୍ରଶ୍ନ ଯୋଡ଼ିଗଲା । ଏହା ଉଭୟ ବୈଦିକ ବ୍ରାହ୍ମଣ୍ୟବାଦ ବା ଶ୍ରମଣବାଦଠାରୁ ଭିନ୍ନ ଥିଲା ।

ଦରବାରୀ ଉଚ୍ଚାଙ୍ଗ ସଂସ୍କୃତି ଏବଂ ଲୋକସଂସ୍କୃତି ଭିତରେ ଥିବା ପ୍ରଭେଦ ଏହି ସମୟରେ ଅଧିକ ତୀବ୍ର ଭାବେ ପ୍ରକଟିତ ହେଲା । ଏହି ପ୍ରଭେଦ ଫଳରେ ସାଂସ୍କୃତିକ ଚୁକ୍ତିର ଭିନ୍ନ କ୍ଷେତ୍ର ସୃଷ୍ଟି ହେଲା ଏବଂ ଗୋଟିକର ଉପାଦାନ ଅନ୍ୟ ଗୋଟିକୁ ରୂପାନ୍ତରିତ ହେବା ଲାଗି ଏକ ସାମାଜିକ ପରିବର୍ତ୍ତନ ଜରୁରୀ ହୋଇପଡ଼ିଲା । ଯାହା ଶକ୍ତିଶାଳୀ କେବଳ ତାହାହିଁ ସଂସ୍କୃତିକୁ ବୁଝାଏ ନାହିଁ । ବରଂ ଯାହା ରାସ୍ତା ପାର୍ଶ୍ୱରେ ଅବହେଳିତ ହୋଇ ପଡ଼ିରହିଲା ତାହା ମଧ୍ୟ ସଂସ୍କୃତି ବୋଲି ଏକ ଉନ୍ନତ ଅବବୋଧ ସୃଷ୍ଟି ହେଲା । ଭାରତୀୟ ଇତିହାସର ଆଦ୍ୟକାଳ ଲାଗି ଐତିହାସିକ ଉତ୍ସ ସୀମିତ ଥିଲା । ଏହା ମୁଖ୍ୟତଃ ଭବ୍ୟ ଗୋଷ୍ଠୀର ଲେଖା ଉପରେ ଆଧାରିତ ଥିଲା । ଏହି କାରଣରୁ ଦରବାରୀ ଏବଂ ଲୋକପ୍ରିୟ ସଂସ୍କୃତିର ସମନ୍ୱୟ ପ୍ରକ୍ରିୟା ମାଧ୍ୟମରେ ଏକ ଶକ୍ତିଶାଳୀ ସଂସ୍କୃତିର ଗଠନ ସମ୍ଭବ ବୋଲି କୁହାଗଲା । ଲୋକପ୍ରିୟ ସଂସ୍କୃତି ସହ ଜଡ଼ିତ ଲୋକମାନେ ଅନ୍ୟ ଭାଷା କହୁଥିଲେ । ସେମାନଙ୍କର ନାରୀମାନେ ପିତୃସତ୍ତାତ୍ମକ ଅଭିଜାତ ଗୋଷ୍ଠୀର ନାରୀମାନଙ୍କ ତୁଳନାରେ ଅଧିକ ମୁକ୍ତ ଥିଲେ । ସେମାନଙ୍କ ପ୍ରଥା ଓ କର୍ମକାଣ୍ଡ ମଧ୍ୟ ଭିନ୍ନ ଭିନ୍ନ ଥିଲା । ଯଦି ଅଭିଜାତ ସମାଜ କହୁଥିଲା ଯେ ବର୍ଣ୍ଣ ବିଭାଗୀକରଣକୁ ଅପରିବର୍ତ୍ତନୀୟ ରୂପେ ପ୍ରସ୍ତୁତ କରୁଥିଲେ, ତେବେ ଜଣେ ସନ୍ଦେହ କରିବା ସ୍ୱାଭାବିକ ଯେ ଏହା ଏତେ ବ୍ୟାପକ ଭାବେ ପାଳିତ ହେଉ ନ ଥିଲା । ସଂଖ୍ୟାଧିକଙ୍କ ଲାଗି ଜାତି ଦୃଷ୍ଟିରୁ ବର୍ଗୀକରଣ ଅଧିକ ବାସ୍ତବ ଥିଲା । ଯଦି ଅଜ୍ଞାତ ସାମାଜିକ ଭିତ୍ତିର ପରିବାରରୁ କେହି ରାଜା ହେବାକୁ ଚାହୁଁଥିଲେ, ତେବେ ତାଙ୍କର ଏକ ବଂଶାବଳୀ ପ୍ରସ୍ତୁତ ହେଉଥିଲା । ଭାଟ ବା ଚାରଣଙ୍କଠାରୁ ତଥ୍ୟ ସଂଗ୍ରହ କରି ବ୍ରାହ୍ମଣମାନେ ଏହାକୁ ବୈଧତା ପ୍ରଦାନ କରୁଥିଲେ । ସଂସ୍କୃତର ପ୍ରସାର ଏକ ନୂତନ କ୍ରମକୁ ବୈଧତା ପ୍ରଦାନ କରୁଥିଲା ।

ଏଥିପାଇଁ ନ୍ୟାୟାଳୟର ଆଦେଶ, ରାଜା ଏବଂ ଅନ୍ୟାନ୍ୟ କାର୍ଯ୍ୟକର୍ତ୍ତାଙ୍କ ନିର୍ଦ୍ଦେଶ ତଥା ଦୂରବର୍ତ୍ତୀ ସ୍ଥାନରେ ଥିବା ସେମାନଙ୍କ ସହଯୋଗୀଙ୍କ ଦ୍ୱାରା ଅଭିଲେଖ ସ୍ଥାପନ ଆଦି ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ ହେଲା । ଏଣିକି ଅଭିଲେଖ ହେଲା ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଉତ୍ସ ।

ଏଥିରୁ ଜମି ଅନୁଦାନ, ବାଣିଜ୍ୟ, ପ୍ରଶାସନିକ ବ୍ୟବସ୍ଥା, ଧାର୍ମିକ ଦେବୋତ୍ତର ଇତ୍ୟାଦି ସାମାଜିକ ଏବଂ ଅର୍ଥନୈତିକ ବିଷୟକ ସୂଚନା ମିଳିପାରୁଥିଲା । ଶାସ୍ତ୍ରର ସମାନ୍ତରାଳ ଉତ୍ସ ଭାବେ ସେଗୁଡ଼ିକ ବେଶିରୁ ବେଶି ଆବଶ୍ୟକ ହୋଇଉଠୁଥିଲେ ।

ରାଜନୈତିକ ଦିଗରୁ ଏହି ସମୟରେ ଗଣସଂଘ ଏବଂ ବନବାସୀ ଶାସକ ବଂଶଙ୍କ ଉପରେ ରାଜତନ୍ତ୍ରର ବିଜୟ ଘଟିଥିଲା । ପୂର୍ବରୁ ଅଣକ୍ଷତ୍ରିୟ ବଂଶଜ ରାଜାମାନେ କ୍ଷତ୍ରିୟ ମାନ୍ୟତା ହାସଲ ଲାଗି ଚେଷ୍ଟା କରୁ ନ ଥିଲେ । ମାତ୍ର ଗୁପ୍ତୋତ୍ତର କାଳରୁ ରାଜତନ୍ତ୍ର ଲାଗି ଏହା ଏକ ସାଧାରଣ କଥାରେ ପରିଣତ ହୋଇଗଲା । ଏକାଧିକ ଦିଗରୁ ଏହି କ୍ଷତ୍ରିୟମାନଙ୍କର ନୂତନତ୍ୱ ପ୍ରତିପାଦିତ ହେଲା । କାରଣ ସେମାନେ କ୍ଷତ୍ରିୟର ସଂଜ୍ଞା ପାଇଁ ନୂତନ ଶୈଳୀ ଗ୍ରହଣ କଲେ । ପୂର୍ବକାଳର କ୍ଷତ୍ରିୟମାନଙ୍କ ନିମିତ୍ତ ନିଜର ମୂଳ ସନ୍ଧାନ ଲାଗି ବ୍ରାହ୍ମଣମାନଙ୍କ ସହାୟତା ଆବଶ୍ୟକ ହେଉଥିଲା । ସେହି ପ୍ରକାରର ସହାୟତାକୁ କେବଳ ଚିହ୍ନଟ କରାଯାଉ ନ ଥିଲା, ତା' ସହିତ ପୁରସ୍କୃତ ମଧ୍ୟ କରାଯାଉଥିଲା ।

ସେ ସମୟରେ ରାଜତ୍ୱର ଆଦର୍ଶ ଥିଲା ସଫଳ ସାମରିକ ଅଭିଯାନ ଏବଂ ଅନେକ ରାଜାଙ୍କ ଉପରେ ଆଧିପତ୍ୟ ହାସଲ । ପ୍ରଶ୍ନ ଉଠେ, ଏହାଦ୍ୱାରା ରାଜାକୁ ବୈଦିକ ଅନୁଚିନ୍ତା ମୁତାବକ ଦିଗ୍‌ବିଜୟୀ ବା ଚାରି ଦିଗ ଉପରେ ବିଜୟ ଲାଭ କରିବାରୁ ଚକ୍ରବର୍ତ୍ତୀ କହିବାର ପ୍ରକ୍ରିୟାକୁ ପୁନଃପ୍ରଚଳନ କରିବାର କ'ଣ ଚେଷ୍ଟା ହୋଇଥିଲା ? ନା ଉତ୍ତର-ପଶ୍ଚିମର ପୁରୁଣା ଶାସକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଢାଞ୍ଚାର ଏହା ପ୍ରତିଧ୍ୱନି ଥିଲା ? ରାଜାଙ୍କର କୌଣସି ଦେବତାଙ୍କ ସହ ଆତ୍ମୀକରଣ ଉଭୟ ବୈଦିକ ଉତ୍ସରୁ ଏବଂ କୁଶାଣମାନଙ୍କର ରାଜାଙ୍କ ସମ୍ପର୍କୀୟ ଅବଧାରଣାରୁ ଆସିଥାଇପାରେ । ବୈଦିକ କାଳରୁ ରହିଥିବା ଚକ୍ରବର୍ତ୍ତୀ ଧାରଣାକୁ ବୌଦ୍ଧମାନଙ୍କ ଦ୍ୱାରା ଓଲଟାଇ ଦିଆଯାଇଥିଲା । ବୌଦ୍ଧମାନଙ୍କ ମତେ ସାମରିକ ଅଭିଯାନ ନୁହେଁ, ବରଂ ଯେଉଁ ରାଜା ଧର୍ମଚକ୍ର ପ୍ରତିଷ୍ଠା ମାଧ୍ୟମରେ ଆଗକୁ ବଢ଼ନ୍ତି, ସେ ହିଁ ପ୍ରକୃତ ଚକ୍ରବର୍ତ୍ତୀ । ମୌର୍ଯ୍ୟୋତ୍ତର କାଳରେ ବୌଦ୍ଧ ପାଠମାନଙ୍କରେ ଅଶୋକଙ୍କୁ ଚକ୍ରବର୍ତ୍ତୀର ମାନ୍ୟତା ପ୍ରଦାନ କରାଯାଇଛି । ଏହା ନିଶ୍ଚିତ ଯେ ଅଶୋକ ଗୁପ୍ତରାଜାମାନଙ୍କ ଲାଗି ଆଦର୍ଶ ନମୁନା ନ ଥିଲେ । ଯେଉଁ ଗୁପ୍ତରାଜାମାନେ ପରମଭଟ୍ଟାରକ ଉପାଧି ଧାରଣ କରୁଥିଲେ, ସେମାନେ ବୈଷ୍ଣବ ଥିଲେ ଏବଂ ନିଜକୁ ଧର୍ମର ସୁରକ୍ଷାଦାତା ବୋଲି ଦାବି କରୁଥିଲେ । ଏହା ବୌଦ୍ଧ ଏବଂ ଜୈନମାନଙ୍କର ଧର୍ମ ନ ଥିଲା, ବରଂ ଥିଲା ବର୍ଣ୍ଣାଶ୍ରମ ଧର୍ମ ।

ଏ ସମୟର ଏକ ଅଭିନବ ବିଚାରଧାରା ଥିଲା ପ୍ରତିନିଧିମାନଙ୍କ ଜରିଆରେ କ୍ଷମତା ବିସ୍ତାର ଲାଗି ରାଜତ୍ୱର ବୈଧୀକରଣରେ ସହାୟକମାନଙ୍କୁ ଜମି ଅନୁଦାନ । ଅର୍ଥଶାସ୍ତ୍ରରେ ଯୁକ୍ତି ଦର୍ଶାଯାଇଛି ଯେ ଅନୁଦାନରେ ପ୍ରଦତ୍ତ କ୍ଷେତ୍ରଗୁଡ଼ିକରେ କୃଷିକାରୀମାନଙ୍କର ବସତି

ନ ଥିଲା । ନୂତନ ବସତିଗୁଡ଼ିକ ରାଜାଙ୍କ ସମର୍ଥନର କେନ୍ଦ୍ର ହେବାର ଦରକାର ଥିଲା । ଏହି ବସତିଗୁଡ଼ିକ ଜାତି ମାନ୍ୟତାର ସଂପ୍ରସାରଣ ଲାଗି ସହାୟକ ଥିଲା । ଏଠାରେ ଭବ୍ୟ ଗୋଷ୍ଠୀକୁ ବର୍ଣ୍ଣର ମାନ୍ୟତା ଦିଆଯାଉଥିଲା ଏବଂ ଅନ୍ୟମାନେ ଥିଲେ ଜାତି ।

ଏହା ବୈଦିକ ବ୍ରାହ୍ମଣ୍ୟବାଦର ପୁନରାବର୍ତ୍ତନ ଥିଲା ନା ନବଜାଗରଣ ଥିଲା ? ଅଥବା ଏଥିରୁ ଏକଥା ସୂଚିତ ହୁଏ ଯେ ବୈଦିକ ବ୍ରାହ୍ମଣବାଦର ପୌରାଣିକ ହିନ୍ଦୁବାଦରେ ପରିଣତ ହେଲା । ରାଜାଙ୍କ ଅନୁଚିନ୍ତା ମୁତାବକ ବୈଦିକ ବ୍ରାହ୍ମଣବାଦର କ୍ରିୟାକର୍ମକୁ ଉତ୍ସାହିତ କରାଯାଇଥିଲା ଏବଂ ଏହାର ସୁରକ୍ଷା ଲାଗି ଜମି ଅନୁଦାନ କରାଯାଉଥିଲା । ଶେଷତଃ ଏହା ପୌରାଣିକ ହିନ୍ଦୁଧର୍ମ ଲାଗି ପଥ ଉନ୍ମୋଚନ କରିଦେଲା । କିନ୍ତୁ ଏଥିପାଇଁ ବୈଷ୍ଣବ ଏବଂ ଶୈବ ପୂଜକମାନଙ୍କ ପରି ବ୍ରାହ୍ମଣମାନଙ୍କୁ ମଧ୍ୟ ନିଜଆଡୁ କିଛିଟା ବୁଝାମଣା କରିବାକୁ ପଡୁଥିଲା । ଉଦାହରଣ ସ୍ୱରୂପ, ବ୍ରାହ୍ମଣମାନେ ମନ୍ଦିର ପୂଜକ ହେଉଥିଲେ ଯଦିଓ ସେମାନଙ୍କୁ ବୈଦିକ କ୍ରିୟାକର୍ମର ବିଶେଷଜ୍ଞମାନଙ୍କଠାରୁ ନିମ୍ନ ସ୍ତରର ମାନ୍ୟତା ପ୍ରଦାନ କରାଯାଉଥିଲା । ବଳି ଭିତ୍ତିକ କର୍ମକାଣ୍ଡ ସମ୍ପାଦନ କରିବାରେ ଏକ ଆକର୍ଷଣ ରହିଥିଲା । ଏହାକୁ ହୁଏତ ସମ୍ପୂର୍ଣ୍ଣ ଫଳପ୍ରଦ ପ୍ରକ୍ରିୟା ରୂପେ ଦେଖାଯାଉ ନ ଥିଲା, ତେବେ ସର୍ଦ୍ଦାରତନ୍ତ୍ର ବ୍ୟବସ୍ଥାରୁ ରାଜତନ୍ତ୍ର ଆଡ଼କୁ ବିବର୍ତ୍ତିତ ହେଉଥିବା ପ୍ରକ୍ରିୟାର ଏହା ଥିଲା ଏକ ପ୍ରାରମ୍ଭିକ ସୂଚନା । ପୁନଶ୍ଚ ରାଜାମାନେ ବର୍ତ୍ତମାନ ମହାକାବ୍ୟ ଏବଂ ନାୟକ ଭିତ୍ତିକ ପରମ୍ପରାରୁ ଚିତ୍ରକଳ୍ପମାନ ଆହରଣ କଲେ । ସେମାନଙ୍କ ଉପରେ ଗାନ କରାଯାଉଥିବା ପ୍ରଶସ୍ତିରେ ମହାଭାରତର ନାୟକମାନଙ୍କ ପ୍ରଶସ୍ତି ପ୍ରତିଧ୍ୱନିତ ହେଲା । ପ୍ରଶ୍ନ ଉଠେ, ପୌରାଣିକ ଧର୍ମର ପୃଷ୍ଠପୋଷକ ହିସାବରେ ଗୁପ୍ତମାନେ ବୈଦିକ ବ୍ରାହ୍ମଣ୍ୟବାଦର କେତେକ କର୍ମକାଣ୍ଡକୁ ପୌରାଣିକ ହିନ୍ଦୁଧର୍ମରେ ପ୍ରବେଶ କରାଇ ତାକୁ ଏକାଧିକ ଉତ୍ସ ଦ୍ୱାରା ବୈଧ ପ୍ରମାଣ କରିବାକୁ ଚେଷ୍ଟା କରୁଥିଲେ କି ?

ଏ କ୍ଷେତ୍ରରେ ଅନ୍ୟାନ୍ୟ କାରଣ ମଧ୍ୟ ଥାଇପାରେ । ଯେଉଁ ରାଜବଂଶଗୁଡ଼ିକର ମୂଳ ଅଜ୍ଞାତ, ସେମାନେ ଅବଦମନକାରୀ ନ ହେଲେ ମଧ୍ୟ ସାମର୍ଥ୍ୟ ସମ୍ପନ୍ନ ସଂପ୍ରଦାୟଗୁଡ଼ିକର ପୃଷ୍ଠପୋଷକତା ମାଧ୍ୟମରେ ବୈଧତା ହାସଲ କରିବାର ଚେଷ୍ଟା କରିଥିବେ । ପୌରାଣିକ ହିନ୍ଦୁଧର୍ମ ଏବଂ ବୈଦିକ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକ ହେବାର ଇଚ୍ଛା କରିବା ମାଧ୍ୟମରେ ଏହି ରାଜାମାନେ ବୌଦ୍ଧଧର୍ମର ପୃଷ୍ଠପୋଷକମାନଙ୍କଠାରୁ ବୈଧତା ଆଶା କରୁଥିଲେ । ଯଦି ଅଶୋକ ବୌଦ୍ଧ ଚକ୍ରବର୍ତ୍ତୀର ନମୁନା ହୁଅନ୍ତି, ତେବେ ସମୁଦ୍ରଗୁପ୍ତଙ୍କୁ ବ୍ରାହ୍ମଣ୍ୟ ଆଧାରରେ ଚକ୍ରବର୍ତ୍ତୀ ବୋଲି କୁହାଯାଇ ପାରିବ । ଏହି ଦୃଷ୍ଟିକୋଣରୁ ପୌରାଣିକ ଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ଜମି ଅନୁଦାନ । ଏହା ମାଧ୍ୟମରେ କ୍ଷେତ୍ର ବିସ୍ତାର ଘଟିବା ସହିତ ଅନେକ ନୂଆ ଏବଂ ଅଜ୍ଞାତ ରାଜବଂଶ କ୍ଷତ୍ରିୟ ମାନ୍ୟତା ଦାବି କଲେ ।

# 10

# ଉପଦ୍ୱୀପ : ଆଞ୍ଚଳିକ ରାଜ୍ୟର ଅଭ୍ୟୁଦୟ

**500 – 900 ଖ୍ରୀଷ୍ଟାବ୍ଦ ପ୍ରାୟ**

## ପଲ୍ଲବ, ଚାଲୁକ୍ୟ, ରାଷ୍ଟ୍ରକୂଟ

ଉତ୍ତର ଭାରତରେ ଗୁପ୍ତ ଏବଂ ସେମାନଙ୍କ ଉତ୍ତରାଧିକାରୀମାନଙ୍କ ଅନ୍ତେ ଐତିହାସିକ ଆଗ୍ରହ ଦାକ୍ଷିଣାତ୍ୟର ଦକ୍ଷିଣ ଆଡ଼କୁ ମୁହଁ ଘୂରାଏ । ଉକ୍ତ ଅଞ୍ଚଳକୁ ତାମିଲହମ୍ ବୋଲି କୁହାଯାଏ । ସେହି ସମୟର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଘଟଣା ବିନ୍ଧ୍ୟର ଦକ୍ଷିଣ ପଟେ ଘଟେ । ଏ ଘଟଣା ସମ୍ପୂର୍ଣ୍ଣ ରାଜନୈତିକ ନ ଥିଲା । ଦକ୍ଷିଣ ଭାରତର ଅନୁଷ୍ଠାନଗୁଡ଼ିକ ସେତେବେଳେ ପ୍ରତିଷ୍ଠିତ ହେଉଥାନ୍ତି ଏବଂ ଏହି ପ୍ରକ୍ରିୟା ନିୟମିତଭାବେ ଚାଲିଥାଏ । ପୂର୍ବବର୍ତ୍ତୀ କାଳର ସର୍ଦ୍ଦାରତନ୍ତ୍ର ଏବଂ କ୍ଷୁଦ୍ର ରାଜ୍ୟ ଭିତ୍ତିକ ରାଜନୀତି ବୃହତ୍ତର ରାଜ୍ୟ ଆଡ଼କୁ ଉନ୍ମୋଚିତ ହେଉଥାଏ । ଦକ୍ଷିଣ ଭାରତର ପରିବର୍ତ୍ତନ ସହିତ ଏଠି କେତେକ ସମାନ୍ତରାଳ ପରିବର୍ତ୍ତନ ମଧ୍ୟ ଘଟୁଥାଏ । ତେବେ ଉଭୟ ପ୍ରକ୍ରିୟା ଭିତରେ ଲକ୍ଷଣୀୟ ଫରକ ମଧ୍ୟ ଥାଏ । ଉପଦ୍ୱୀପର ଦରବାରରେ ସ୍ଥାନୀୟ ସଂସ୍କୃତିଗୁଡ଼ିକର କର୍ତ୍ତୃତ୍ୱ ଏବଂ ସଂସ୍କୃତଭିତ୍ତିକ ସଂସ୍କୃତିର ପ୍ରସାରଣ ଭିତରେ ଥିବା ଦ୍ୱନ୍ଦ୍ୱ ପ୍ରତିଫଳିତ ହେଉଥାଏ । ଏହି ପ୍ରକ୍ରିୟା ଅନେକ କ୍ଷେତ୍ରରେ ପରିଲକ୍ଷିତ ହେଉଥାଏ, ତେବେ ଅଭିଲେଖଗୁଡ଼ିକର ଭାଷାରେ ଏହା ସ୍ପଷ୍ଟଭାବେ ଉକୁଟି ଉଠୁଥାଏ । ପୂର୍ବବର୍ତ୍ତୀ ଅଭିଲେଖଗୁଡ଼ିକ ତାମିଲ ଭାଷାରେ ରଚିତ ହୋଇଥିଲା । ପରେ ପ୍ରାକୃତ ଏବଂ ସଂସ୍କୃତକୁ ମଧ୍ୟ ବ୍ୟବହାର କରାଯାଉଥିଲା । ମାତ୍ର ଦକ୍ଷିଣରେ ଶୀଘ୍ର ତାମିଲର ଆଧିପତ୍ୟ ବୃଦ୍ଧି ପାଇଲା । ପ୍ରମୁଖ ପାଠ ତାମିଲରେ ଏବଂ ସୂତ୍ରଭିତ୍ତିକ ବିଭାଗଗୁଡ଼ିକ ସଂସ୍କୃତରେ ଲେଖାଯିବା ପର୍ଯ୍ୟନ୍ତ ଏହି ପ୍ରକ୍ରିୟା ଜାରି ରହିଲା । ସେହିପରି ଉପଦ୍ୱୀପର ଅନ୍ୟାନ୍ୟ ଭାଗରେ ଅଭିଲେଖ ଲାଗି ସଂସ୍କୃତ ଏବଂ କନ୍ନଡ଼ ଭାଷା ବ୍ୟବହାର କରାଯାଉଥିଲା । ଏହାର ସମାନ୍ତରାଳ ଭାବେ ଏବଂ କିଛି ବିପରୀତଧର୍ମୀ ପ୍ରକ୍ରିୟା ଭାବେ ବୈଦିକ ବ୍ରାହ୍ମଣ୍ୟବାଦ ଏବଂ ତାମିଲ ଭକ୍ତି

ଆନ୍ଦୋଳନ ଜାରି ରହିଥିଲା । ପଶ୍ଚିମ ଦାକ୍ଷିଣାତ୍ୟର ରାଜ୍ୟଗୁଡ଼ିକ ବିଚାରର ଆଦାନ-ପ୍ରଦାନ ମାଧ୍ୟମରେ ଉତ୍ତର ଏବଂ ଦକ୍ଷିଣ ମଧ୍ୟରେ ସୌହାର୍ଦ୍ଦ୍ୟ ସ୍ଥାପନ ଲାଗି ଏକ ଐତିହାସିକ ଭୂମିକା ତୁଲାଉଥିଲେ । ମାତ୍ର ସ୍ଥାପତ୍ୟର ଇତିହାସରୁ ଏହା ସ୍ପଷ୍ଟ ହେଲା ଯେ ଏହି ଭୂମିକା ଏକ ନିଷ୍କ୍ରିୟ ଭୂମିକା ନ ଥିଲା । ଦାକ୍ଷିଣାତ୍ୟ ଶୈଳୀ ବା ବେସରାର ପ୍ରଭାବ ଯେମିତି ସ୍ପଷ୍ଟ ଥିଲା, ସେମିତି ଉତ୍ତରର ଶୈଳୀ ବା ନାଗର ଏବଂ ଦକ୍ଷିଣର ଶୈଳୀ ବା ଦ୍ରାବିଡ଼ ମଧ୍ୟ ପରିଦୃଷ୍ଟ ହେଉଥିଲା ।

ଦାକ୍ଷିଣାତ୍ୟର ଏବଂ ତା'ର ଅଧିକ ଦକ୍ଷିଣର ରାଜନୈତିକ ଇତିହାସ ଦୁଇ ଭୌଗୋଳିକ ଭୂଖଣ୍ଡ ପଶ୍ଚିମ ଦାକ୍ଷିଣାତ୍ୟ ଏବଂ ତାମିଲହାମ୍ ଭିତରେ ଥିବା ଦୀର୍ଘ ବର୍ଷର ଦ୍ୱନ୍ଦ୍ୱ ଉପରେ ଗୁରୁତ୍ୱ ଆରୋପ କରେ । ଗୋଟିଏ ପାଖରେ ସମୁଦ୍ର ଉପକୂଳରେ ପର୍ବତ ବେଷ୍ଟିତ ବିସ୍ତୀର୍ଣ୍ଣ ମାଳ ଅଞ୍ଚଳ ଅନ୍ୟପକ୍ଷରେ ଚେନ୍ନାଇର ଦକ୍ଷିଣକୁ ଅବସ୍ଥିତ ଉର୍ବର ସମତଳ ଅଞ୍ଚଳ । ଏହି ଅଞ୍ଚଳର ଅଧିକାଂଶ ନଦୀ ପଶ୍ଚିମରୁ ବାହାରି ବଙ୍ଗୋପସାଗରରେ ମିଶିଛନ୍ତି । ଉପଦ୍ୱୀପର ପଶ୍ଚିମସ୍ଥ ମାଳଭୂମି ରାଜ୍ୟ ଏବଂ ଉପକୂଳୀୟ ରାଜ୍ୟରେ ବିଭାଜନ ହେତୁ ଜଳପଥ ବିଶେଷତଃ ଗୋଦାବରୀ ଓ କୃଷ୍ଣା ନଦୀ ଉପରେ କବ୍ଜା କରିବା ଲାଗି ଆଗ୍ରହ ବୃଦ୍ଧି ପାଇଲା । ଗୋଦାବରୀ ଓ କୃଷ୍ଣାର ତ୍ରିକୋଣଭୂମିରେ ଅବସ୍ଥିତ ବେଙ୍ଗି ଓ ଉର୍ବର ରାଇଚୁର ଦୋଆବ ଓ ତଳିଅଞ୍ଚଳ ବାରମ୍ବାର ବିବାଦର କାରଣ ହେଉଥିଲା । ବିବାଦ ଯେତିକି ରାଜନୈତିକ ଥିଲା ସେତିକି ଅର୍ଥନୈତିକ ମଧ୍ୟ ଥିଲା । ବସ୍ତୁତଃ କେତେକ ଭାଗ୍ୟବାନ ବଂଶର ଶାସନକାଳକୁ ବାଦ୍‌ଦେଲେ, ଅନ୍ୟ ସମୟରେ ଶତାବ୍ଦୀ ଶତାବ୍ଦୀ ଧରି ଏହି ବିବାଦ ଲାଗିରହିଥିଲା । ଯାହା ସାମ୍ରାଜ୍ୟ ଉତ୍‌ଥାନ ପତନର ଏକ ଜଟିଳ ପ୍ରକ୍ରିୟା ଭଳି ମନେହୁଏ, ଭୌଗୋଳିକ ପରିପ୍ରେକ୍ଷୀରେ ଦେଖିଲେ ତାହା ଏତେ ଜଟିଳ ମନେହୁଏ ନାହିଁ । ତ୍ରିକୋଣଭୂମିଗୁଡ଼ିକ ପ୍ରମୁଖ କୃଷି କ୍ଷେତ୍ର ଥିଲା ଏବଂ ପୂର୍ବ ଉପକୂଳ ସକ୍ରିୟ ବାଣିଜ୍ୟ ବ୍ୟବସ୍ଥାର କେନ୍ଦ୍ର ଥିଲେ । ଏଠାରେ ଅନେକ ବୌଦ୍ଧପୀଠ ମଧ୍ୟ ରହିଥିଲେ । ବ୍ୟାପକ ଉର୍ବର କୃଷିକ୍ଷେତ୍ରର ଅଭାବରୁ କୃଷିଭିତ୍ତିକ ରାଜ୍ୟଗୁଡ଼ିକ ରାଜନୀତି ଦିଗରୁ କମ୍ ପ୍ରଭାବଶାଳୀ ଥିଲେ । ତେଣୁ ଛୋଟ ଆଞ୍ଚଳିକ ରାଜ୍ୟ ଗଠନ ପୂର୍ବ ସମୟରୁ ଦକ୍ଷିଣରେ ଏକ ନିୟମିତ କଥା ଥିଲା । ତେଣୁ ଉପଦ୍ୱୀପର ରାଜ୍ୟଗୁଡ଼ିକ ସମ୍ଭବତଃ ଉତ୍ତରର ବହୁ ପୂର୍ବରୁ ଆଞ୍ଚଳିକ ଆନୁଗତ୍ୟ ଅଭିମୁଖୀ ଥିଲେ ।

ପଶ୍ଚିମ ଦାକ୍ଷିଣାତ୍ୟର ବକଟକମାନେ ଚାଲୁକ୍ୟମାନଙ୍କୁ ବାଟ ଛାଡ଼ିଦେଲେ । ସେମାନଙ୍କର କେନ୍ଦ୍ର ଥିଲା ବାତାପି/ବାଦାମି । ପୂର୍ବ ଦାକ୍ଷିଣାତ୍ୟରୁ ଦକ୍ଷିଣ ପର୍ଯ୍ୟନ୍ତ ଏକ ରାଜ୍ୟ ମଣ୍ଡଳରେ ଶାଳଙ୍କାୟନମାନେ ଶାସନ କରୁଥିବା ରାଜ୍ୟ, ପୂର୍ବ ଚାଲୁକ୍ୟ, କ୍ରିଷ୍ଣା-ଗୁଣ୍ଟୁର ଅଞ୍ଚଳର ଇକ୍ଷ୍ୱାକୁ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ନାଗାର୍ଜୁନକୋଣ୍ଡା ଏବଂ ଧରଣୀକୋଟା

ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ଥିଲା ଏବଂ ବିଷ୍ଣୁକୁଣ୍ଡିମାନେ ନିକଟବର୍ତ୍ତୀ ଅଞ୍ଚଳରେ ଶାସନ କରୁଥିଲେ । କର୍ଣ୍ଣାଟକ ଉପରେ ନିୟନ୍ତ୍ରଣ କଦମ୍ବ, ନୋଳମ୍ବ ଏବଂ ଗଙ୍ଗମାନଙ୍କ ମଧ୍ୟରେ ବାଣ୍ଟି ହୋଇଯାଇଥିଲା । ପୁନଶ୍ଚ ଏହା ଥିଲା ବଣପର୍ବତ ଅଞ୍ଚଳର ଲୋକ ଏବଂ ସମତଳ ଅଞ୍ଚଳ ବାସିନ୍ଦାଙ୍କ ମଧ୍ୟରେ ଏକ ଛକାପଞ୍ଝାର କାଳ । ଦୁର୍ଗ ତିଆରି ଲାଗି ଗ୍ରାନାଇଟ୍ ପାହାଡ଼ ଉପଯୋଗୀ ଭିତ୍ତି ଦେଲା । କଦମ୍ବମାନଙ୍କର ଶାସନ କୋଙ୍କଣ ପର୍ଯ୍ୟନ୍ତ ସଂପ୍ରସାରିତ ହେଲା ଏବଂ ପୂର୍ବ ଗଙ୍ଗମାନେ ଓଡ଼ିଶାରେ ଶାସନ କଲେ । ପୂର୍ବ ଦାକ୍ଷିଣାତ୍ୟର ସୀମାନ୍ତରେ ସରବପୁରୀୟ ଏବଂ ପାଣ୍ଡୁବଂଶୀମାନେ ଶାସନ କରୁଥିଲେ । ବ୍ରାହ୍ମଣମାନଙ୍କ ଦ୍ୱାରା କେତେକ ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ସେମାନେ ଏକଦା ଅନୁଦାନ ଆକାରରେ ଯେଉଁ ଜମିଗ୍ରହଣ କରିଥିଲେ ତାକୁ କେନ୍ଦ୍ରରେ ରଖି ଛୋଟ ଛୋଟ ରାଜ୍ୟମାନ ଗଢ଼ିଉଠିଥିଲା । ତେଣୁ କେହି କେହି ନିଜକୁ 'ବ୍ରହ୍ମ-କ୍ଷାତ୍ର' ଜାତିର ବୋଲି ଦାବି କରୁଥିଲେ । ଏହା କହିଲେ ବ୍ରାହ୍ମଣମାନେ କ୍ଷତ୍ରିୟ କର୍ମ କରୁଛନ୍ତି ବୋଲି ବୁଝାଯାଉଥିଲା ଅଥବା ସେମାନଙ୍କ ପୂର୍ବପୁରୁଷ ଉଭୟ ବ୍ରାହ୍ମଣ ଏବଂ କ୍ଷତ୍ରିୟ ଥିଲେ ବୋଲି ଧରିନିଆଯାଉଥିଲା ।

ପୁନଶ୍ଚ ଦକ୍ଷିଣର ତାମିଲମ୍ ଅଞ୍ଚଳରେ ଚେର, ଚୋଳ ଏବଂ ପାଣ୍ଡ୍ୟମାନଙ୍କର ନିଜ ନିଜ ଅଞ୍ଚଳରେ ନିୟନ୍ତ୍ରଣ କାଳାଭ୍ରମାନଙ୍କର ଅଭ୍ୟୁତ୍ଥାନ ଯୋଗୁଁ ଦୁର୍ବଳ ହୋଇପଡ଼ିଥିଲା । କାଳାଭ୍ରମାନଙ୍କର ମୂଳ ବିଷୟରେ କୌଣସି ତଥ୍ୟ ନାହିଁ । ତେଣୁ ଏହା ହେବ ଅଜ୍ଞାତ ବଂଶର ଅନ୍ୟତମ ଉଦାହରଣ । ବସ୍ତୁତଃ ଏପ୍ରକାର ବଂଶର ଅଭ୍ୟୁଦୟ ଉପମହାଦେଶରେ ଏକ ଧାରାରେ ପରିଣତ ହୋଇଯାଇଥିଲା । କାଳାଭ୍ରମାନେ ପାହାଡ଼ି ଆଦିବାସୀ ବୋଲି କୁହାଯାଏ । ମାତ୍ର ସେମାନେ ଖୁବ୍‌ଶୀଘ୍ର ପ୍ରତିଷ୍ଠିତ ହେଲେ ଏବଂ ବୌଦ୍ଧ ତଥା ଜୈନମାନଙ୍କର ପୃଷ୍ଠପୋଷକତା କରିପାରିଲେ । ସମ୍ଭବତଃ ସେଥିପାଇଁ ସେମାନେ ପରବର୍ତ୍ତୀ ପାଠମାନଙ୍କରେ ତିରସ୍କୃତ ହୋଇଛନ୍ତି, କାରଣ ତନ୍ମଧ୍ୟରୁ କେତେକ ପାଠ ବ୍ରାହ୍ମଣମାନଙ୍କ ଦ୍ୱାରା ରଚିତ । ଏହି ପରିବର୍ତ୍ତନ ବଂଶ ଭିତ୍ତିକ ସମାଜ ବ୍ୟବସ୍ଥାକୁ ଭାଙ୍ଗିବା ଲାଗି ଉତ୍ସାହ ପ୍ରଦାନ କଲା । ରାଜତନ୍ତ୍ର ମାଧ୍ୟମରେ ଏହା ଏକ ନୈର୍ବ୍ୟକ୍ତିକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରାଇଲା । ପଲ୍ଲବ ଏବଂ ପାଣ୍ଡ୍ୟମାନେ ହେଲେ ପୂର୍ବର ଏବଂ ଚେରା-ପେରୁମଲମାନେ ହେଲେ କେରଳର ପ୍ରମୁଖ ରାଜବଂଶ ।

ଷଷ୍ଠ ଶତାବ୍ଦୀର ମଧ୍ୟଭାଗର ପରବର୍ତ୍ତୀ କାଳରୁ ଆରମ୍ଭକରି ପ୍ରାୟ ତିନିଶହ ବର୍ଷ ପର୍ଯ୍ୟନ୍ତ ତିନୋଟି ପ୍ରମୁଖ ରାଜ୍ୟ ମଧ୍ୟରେ କଳହ ଲାଗିରହିଲା । ସେମାନେ ହେଲେ ବାଦାମୀର ଚାଲୁକ୍ୟ, କାଞ୍ଚିପୁରମ୍‌ର ପଲ୍ଲବ ଏବଂ ମଦୁରାଇର ପାଣ୍ଡ୍ୟ । ଏମାନେ ସମସ୍ତେ ଚାହୁଁଥିଲେ ଉର୍ବର ଭୂମି ଉପରେ ଅଧିକାର । ଚାଲୁକ୍ୟମାନେ ପ୍ରଥମେ କଦମ୍ବ ଶାସକମାନଙ୍କ ଅଧସ୍ତନ

ହିସାବରେ ପ୍ରାଧାନ୍ୟ ହାସଲ କଲେ ଏବଂ ପରେ ସ୍ୱତନ୍ତ୍ର ହୋଇଗଲେ । ଉତ୍ତର କର୍ଣ୍ଣାଟକର ବାତାପି/ବାଦାମୀ ଏବଂ ତା'ର ନିକଟବର୍ତ୍ତୀ ଆଇହୋଲ କ୍ଷେତ୍ରରେ ଚାଲୁକ୍ୟମାନଙ୍କର ଘାଟି ଥିଲା । ସେଠାରୁ ଉତ୍ତର ଆଡ଼କୁ ଯାଇ ସେମାନେ ଗୋଦାବରୀର ଉପର ପାଖରେ ଥିବା କେନ୍ଦ୍ରକୁ ଭିତ୍ତିକରି ଗଢ଼ିଉଠିଥିବା ବକଟକମାନଙ୍କର ପୂର୍ବବର୍ତ୍ତୀ ରାଜ୍ୟକୁ ଦଖଲ କଲେ । ସେମାନେ ମଧ୍ୟ କେତେକ ପଶ୍ଚିମ ଉପକୂଳୀୟ ଅଞ୍ଚଳ ଦଖଲ କଲେ । ବର୍ଣ୍ଣିତ କାଳଖଣ୍ଡରେ ସେମାନେ ଆରବ ସାଗର ସେପାରିକୁ ବ୍ୟବସାୟ କରିବାକୁ ଯାଉଥିବା ବଣିକମାନଙ୍କର ପୃଷ୍ଠପୋଷକତା କରୁଥିବାର ଅନୁମାନ କରାଯାଏ । ନର୍ମଦା ନିକଟରେ ଚାଲୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀଙ୍କ ଦ୍ୱାରା ହର୍ଷଙ୍କର ପରାଜୟ ଫଳରେ ଉତ୍ତର ଭାରତ ଉପରେ ସେମାନଙ୍କର ଅଧିକାର ସାବ୍ୟସ୍ତ ହେଲା । ଏହି ଘଟଣା ପରବର୍ତ୍ତୀ ଚାଲୁକ୍ୟ ଅଭିଲେଖଗୁଡ଼ିକରେ ଏକ ଗରିମା ମଣ୍ଡିତ ଘଟଣା ଆକାରରେ ବର୍ଣ୍ଣିତ ହୋଇଅଛି । ତୃତୀୟ ଖ୍ରୀଷ୍ଟାବ୍ଦରେ ସାତବାହନ ରାଜ୍ୟର ପୂର୍ବଭାଗ, କୃଷ୍ଣା ଏବଂ ଗୋଦାବରୀର ତ୍ରିକୋଣଭୂମି ଇକ୍ଷ୍ୱାକୁ ବଂଶ ଦ୍ୱାରା ଅଧିକୃତ ହେଲା । ପଲ୍ଲବମାନେ ଏହି ଅଞ୍ଚଳ ଦଖଲ କଲାପରେ ସେଠାରୁ ଇକ୍ଷ୍ୱାକୁ ବଂଶର ଶାସନ ଲୋପ ପାଇଲା । ପଲ୍ଲବମାନେ ମଧ୍ୟ କଦମ୍ବ ଶାସନର ଅବସାନ ଘଟାଇଲେ ଏବଂ ସେମାନଙ୍କ ରାଜ୍ୟ ଅଧିକାର କଲେ । ଏହା ଚାଲୁକ୍ୟ ସାମ୍ରାଜ୍ୟର ଦକ୍ଷିଣକୁ ଅବସ୍ଥିତ ଥିଲା ।

ପଲ୍ଲବମାନଙ୍କର ଅଭ୍ୟୁଦୟ ଏପର୍ଯ୍ୟନ୍ତ ବିତର୍କର ବିଷୟ ହୋଇ ରହିଛି । କେତେ ବର୍ଷ ତଳେ ପଲ୍ଲବ ଶବ୍ଦଟି 'ପହଲବ' (Pahlava) ଶବ୍ଦରୁ ଆନୀତ ବୋଲି କୁହାଯାଉଥିଲା । ତେଣୁ ଧାରଣା ହେଲା ଏମାନେ ପାର୍ଥିଆନ୍ । କୁହାଗଲା, ଏମାନେ ମୂଳତଃ ପାର୍ଥୀୟ, ଦ୍ୱିତୀୟ ଖ୍ରୀଷ୍ଟାବ୍ଦରେ ଶକ ଏବଂ ସାତବାହନଙ୍କ ଲଢ଼ାଇ ସମୟରେ ପଶ୍ଚିମ ଭାରତରୁ ଉପଦ୍ୱୀପର ପୂର୍ବ ଉପକୂଳକୁ ସେମାନେ ଆସିଥିଲେ । ଏହା ସତ ମନେହେଉ ନାହିଁ, କାରଣ ପଲ୍ଲବମାନେ ଦକ୍ଷିଣକୁ ଯାତ୍ରା କରିବାର ବର୍ଣ୍ଣନା କେଉଁଠାରେ ଦେଖିବାକୁ ମିଳୁ ନାହିଁ । ଆଉ ଏକ ପରମ୍ପରାରେ ସେମାନଙ୍କ ନାମକୁ ନେଇ ଏକ ଭାବବାଦୀ କାହାଣୀ ସନ୍ନିବେଶିତ ହୋଇଛି । କାହାଣୀ ଅନୁଯାୟୀ, ଜଣେ ଯୁବରାଜ ପାତାଳର ଏକ ନାଗକନ୍ୟାର ପ୍ରେମରେ ପଡ଼ିଲେ । ଯେତେବେଳେ ସେ ତାଙ୍କୁ ଛାଡ଼ିଯିବାକୁ ବାହାରିଲେ, ସେ ତାକୁ କହିଲେ ଯେ ସେ ତା'ର ସନ୍ତାନର ଦେହକୁ ଗୋଟିଏ ଲତାରେ ବା ପଲ୍ଲବରେ ବାନ୍ଧି ଝୁଲାଇ ରଖିଥିବେ । ତା'ହେଲେ ସେ ପିଲାଟିକୁ ଚିହ୍ନିପାରିବେ ଏବଂ ତାକୁ ରାଜ୍ୟରୁ ଅର୍ଦ୍ଧେକ ପ୍ରଦାନ କରିବେ । ରାଜକନ୍ୟା ତାହାହିଁ କଲେ ଏବଂ ସନ୍ତାନଟି ଯଥାରୀତି ପରିଚିତ ହେଲା ଏବଂ ପଲ୍ଲବ ରାଜ୍ୟର ପ୍ରତିଷ୍ଠା ହେଲା । ଏଠାରେ ପଲ୍ଲବ କହିଲେ କୋମଳ କିଶଳୟକୁ ସୂଚାଉଛି । ଯେଉଁ ଭୂଖଣ୍ଡ ଉପରେ ପଲ୍ଲବମାନେ ଶାସନ କରୁଥିଲେ ତାହାର ନାମ ହେଲା ତୋଣ୍ଡାଇନାଡୁ ଏବଂ ଏହି ନାମଟି

ମଧ୍ୟ କିଶଳୟ ସହ ଜଡ଼ିତ । ନାଗ ମୁଖ୍ୟମାନେ ହେଉଛନ୍ତି ସ୍ଥାନୀୟ କ୍ଷମତାର ପ୍ରତୀକ । ହୁଏତ କାହାଣୀଟି ଆଦ୍ୟକାଳର ପଲ୍ଲବମାନଙ୍କର ରାଜ୍ୟର ପ୍ରତିଫଳକ ହୋଇଥିବ; ସେମାନେ ଅନେକ ସର୍ଦ୍ଦାରଙ୍କ ସହଯୋଗରେ ରାଜପଦ ପ୍ରାପ୍ତ ହୋଇଥିବେ । ଏହି କିମ୍ବଦନ୍ତୀଟି କେବଳ ଯେ ପଲ୍ଲବ ରାଜାମାନଙ୍କ କ୍ଷେତ୍ରରେ ଲାଗୁ ହୁଏ ତାହା ନୁହେଁ, କାମ୍ବୋଡ଼ିଆର ଖାମେର ରାଜାଙ୍କ କ୍ଷେତ୍ରରେ ମଧ୍ୟ ଏପ୍ରକାର କିମ୍ବଦନ୍ତୀ ଶୁଣାଯାଏ । ସମ୍ଭବତଃ ଏହା ପଲ୍ଲବ ରାଜବଂଶଠାରୁ ଉଦ୍ଧୃତ ହୋଇଥିବ । ଉପମହାଦେଶର ରାଜବଂଶଗୁଡ଼ିକର ସୃଷ୍ଟି ପଛରେ ପ୍ରଚଳିତ କିମ୍ବଦନ୍ତୀରେ ଅନେକ କ୍ଷେତ୍ରରେ ମାନ୍ୟତାଗତ ଅସ୍ପଷ୍ଟତା ପରିଦୃଷ୍ଟ ହୁଏ । ଏହି ଅସ୍ପଷ୍ଟତାକୁ ସ୍ପଷ୍ଟ କରିବାଲାଗି କର୍ମକାଣ୍ଡ ବିଶେଷଜ୍ଞଙ୍କ ସହାୟତାରେ କେତେକ କର୍ମକାଣ୍ଡ ପ୍ରସ୍ତୁତ କରାଯାଏ ଏବଂ ଉଚ୍ଚ ମାନ୍ୟତା ପ୍ରଦାନ କରିବାଲାଗି ତହିଁରେ ବଂଶାବଳୀ ସଂଯୋଗ କରାଯାଏ । ପରବର୍ତ୍ତୀ ସମୟର ଜଣେ ରାଜାଙ୍କର ଏକ ଅଭିଲେଖରେ ବର୍ଣ୍ଣିତ ଜୀବନୀ ଅନୁସାରେ, ବ୍ରାହ୍ମଣ ଅଶ୍ୱତ୍ଥାମା ଏବଂ ଅପ୍ସରା ମାତାଙ୍କ ଔରସରୁ ପଲ୍ଲବ ବଂଶ ସୃଷ୍ଟି ହୋଇଛି ।

ଆହୁରି ମଧ୍ୟ କୁହାଯାଏ ଯେ ମୂଳ ପଲ୍ଲବମାନେ ହେଲେ ରାଜା ଅଶୋକ ବର୍ମନ୍‌ଙ୍କର ପୂର୍ବପୁରୁଷ । ଅଶୋକ ବର୍ମନ ସମ୍ଭବତଃ ମୌର୍ଯ୍ୟ ରାଜା ଅଶୋକ ହୋଇପାରନ୍ତି । ବୌଦ୍ଧ ପରମ୍ପରା ଅନୁସାରେ ସେ କାଞ୍ଚିପୁରମ୍ ପରିସରରେ ସ୍ତୁପ ନିର୍ମାଣ କରିଥିଲେ । ଏତେବେଳକୁ ସେ ବୌଦ୍ଧଧର୍ମର ଚକ୍ରବର୍ତ୍ତୀ ହୋଇପଡ଼ିଥିଲେ ଏବଂ ବହୁତ ସମ୍ମାନ ଲାଭ କରୁଥିଲେ । ବୌଦ୍ଧଧର୍ମ ପରମ୍ପରା ସହ ସଂଯୁକ୍ତ ହେବାର ଉଦ୍ଦେଶ୍ୟ ଥିଲା ସଂପୃକ୍ତ ଅଞ୍ଚଳରେ ପ୍ରଚଳିତ ଥିବା ବୌଦ୍ଧ ପରମ୍ପରା ସହିତ ସମ୍ବନ୍ଧିତ ହେବା । ଆଉ ଏକ ଅଭିଲେଖରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ ଆଖ୍ୟାୟିତ କରାଯାଇଛି ।

ପଲ୍ଲବମାନଙ୍କର ସର୍ବପୁରାତନ ବିବରଣୀ ହେଉଛି ସେମାନେ କାଞ୍ଚିପୁରମ୍‌ରେ ଏକ ସ୍ଥାନୀୟ ରାଜବଂଶ ଥିବାବେଳେ ଜାରି କରାଯାଇଥିବା ଅଭିଲେଖ । ଯେତେବେଳେ ପଲ୍ଲବମାନେ ତାମିଲନାଡୁ ଉପରେ ନିୟନ୍ତ୍ରଣ ହାସଲ କଲେ ସେତେବେଳେ ପରବର୍ତ୍ତୀ ଅଭିଲେଖମାନ ଜାରି କରାଗଲା । ତେଣିକି ଏହା ସେ ଅଞ୍ଚଳର ଏକ ଗୁରୁତ୍ୱ ସମ୍ପନ୍ନ ରାଜବଂଶ ଭାବରେ ଗଣ୍ୟ ହେଲା । ପୂର୍ବକାଳର ଐତିହାସିକମାନେ ସେମାନଙ୍କୁ 'ସାମ୍ରାଜ୍ୟବାଦୀ ପଲ୍ଲବ' ବୋଲି କହିଲେ । ଆଦ୍ୟକାଳର ଏକ ଅଭିଲେଖ ଅନୁସାରେ ପଲ୍ଲବ ରାଜାମାନେ ନାନାଦି ପ୍ରକାରର ବୈଦିକ ଯଜ୍ଞ ସମ୍ପାଦନ କରୁଥିଲେ । ସେମାନେ ଅଶ୍ୱମେଧ ଯଜ୍ଞ ମଧ୍ୟ କରୁଥିଲେ । ସ୍ଥାନୀୟ ଲୋକଙ୍କ ଲାଗି ଅପେକ୍ଷାକୃତ ନୂଆ ଏହି ଉତ୍ସବଗୁଡ଼ିକ ସମ୍ଭବତଃ ପ୍ରତୀକାତ୍ମକ ଥିଲା । ସାଂସ୍କୃତିକ ସଂସ୍କୃତିର କର୍ମକାଣ୍ଡ ସହ ସଂଶ୍ଲିଷ୍ଟ କ୍ଷମତାର ଦ୍ୟୋତକ ପରି ଏହା ମନେହୋଇଥିବ । ଇକ୍ଷ୍ୱାକୁ ରାଜାମାନେ ପତିତ ଭୂମିକୁ ପରିଷ୍କାର କରିବା ଏବଂ ସେଠାରେ

ବସତି ସ୍ଥାପନ କରାଇବା ଲାଗି ହଳ ବଳଦ ବଣ୍ଟନ କରିଥିବା କଥା କୁହାଯାଏ । ଆଦ୍ୟକାଳର ପଲ୍ଲବମାନେ ହୁଏତ ସମାନ ପ୍ରକାର ପ୍ରଚେଷ୍ଟା କରିଥିବେ । କୃଷି କର୍ମର ରୂପାନ୍ତରଣ ମାଧ୍ୟମରେ ରାଜସ୍ୱ ବୃଦ୍ଧି କରିବାର ଚେଷ୍ଟା କରିଥିବେ । ପଲ୍ଲବ ସାମ୍ରାଜ୍ୟ ଧନୀ ହିସାବରେ ପ୍ରସିଦ୍ଧ ଥିଲା । ତେଣୁ ସମସ୍ତଙ୍କର ଶରବ୍ୟ ହେଉଥିଲା । ପଲ୍ଲବ ସୂତ୍ର ଅନୁସାରେ ସେମାନଙ୍କର ଅଧସ୍ତନ ଶାସକମାନେ ଥିଲେ ଶବର, ନିଷାଦମାନଙ୍କର ମୁଖ୍ୟ ଉଦୟନ ଏବଂ ପୃଥିବୀ ବ୍ୟାଘ୍ର । ଶେଷୋକ୍ତ ଗୋଷ୍ଠୀଟି ଶିକାରୀମାନଙ୍କର ଏକ ଗୋଷ୍ଠୀଗତ ନାମ । ସେମାନେ ଜଙ୍ଗଲରେ ବାସ କରୁଥିଲେ ଏବଂ କୃଷିକର୍ମକୁ ଆଦରି ନେଇଥିଲେ ଏବଂ ଜାତିଭିତ୍ତିକ ସମାଜଠାରୁ ଅଲଗା ଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ପଲ୍ଲବମାନେ ଜଙ୍ଗଲ ଅଞ୍ଚଳ ଦଖଲ କରିଥିଲେ ଏବଂ ତାକୁ ସଫାକରି ଚାଷୋପଯୋଗୀ କରିଥିଲେ । ପୁଣି କାଠ, ହାତୀ ଏବଂ ଅର୍ଦ୍ଧମୂଲ୍ୟବାନ ପଥର ପରି ଜଙ୍ଗଲଜାତ ଦ୍ରବ୍ୟମାନ ମଧ୍ୟ ଆହରଣ କରୁଥିଲେ । ଏହି ମୁଖିଆମାନଙ୍କର ସଂସ୍କୃତ ଭିତ୍ତିକ ନାମ ଗ୍ରହଣରୁ ସେମାନେ ପୂର୍ବରୁ ସଂସ୍କୃତଚ୍ୟୁତ ହୋଇଥିବା ଏବଂ ଏବେ ସଂସ୍କୃତିକୃତ ହୋଇଥିବା କଥା ସୂଚିତ ହୁଏ ।

ପରବର୍ତ୍ତୀ ଗୋଷ୍ଠୀର ପଲ୍ଲବ ଶାସକମାନଙ୍କ ମଧ୍ୟରୁ ପ୍ରଥମ ମହେନ୍ଦ୍ରବର୍ମନ (ଖ୍ରୀଷ୍ଟାବ୍ଦ 600-630) ପଲ୍ଲବମାନଙ୍କର ରାଜନୈତିକ କ୍ଷମତା ବୃଦ୍ଧି ପାଇଁ ଦାୟୀ । ସେ ମଧ୍ୟ ତାମିଲ ସଂସ୍କୃତିର ମଧ୍ୟସ୍ଥି ଏବଂ ପୃଷ୍ଠପୋଷକ ହିସାବରେ ଭୂମିକା ତୁଲାଇଥିଲେ । ଚାଲୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀ ଏବଂ ଥାନେଶ୍ୱରର ହର୍ଷଙ୍କର ସେ ସମସାମୟିକ ଥିଲେ । ହର୍ଷଙ୍କ ଭଳି ସେ ମଧ୍ୟ ଜଣେ ନାଟ୍ୟକାର ଏବଂ କବି ଥିଲେ । 'ମତ୍ତବିଳାସ-ପ୍ରହସନ' ନାମକ ଏକ ହାସ୍ୟରସାତ୍ମକ ନାଟକର ସେ ରଚୟିତା ଥିଲେ । ବିଶେଷତଃ ଦରବାରୀ ସଂସ୍କୃତିର ପ୍ରତିଫଳନ ରୂପେ ରାଜାମାନଙ୍କୁ ସାହିତ୍ୟିକ ପାରଦର୍ଶିତା ସହ ସଂଯୋଜିତ କରିବା ସଂସ୍କୃତ ଶିକ୍ଷାର ଅନ୍ୟତମ ଦିଗ ଥିଲା । ତାଙ୍କ ଶାସନକାଳରେ ମହାବଳୀପୁରମ୍/ମାମାଲ୍ଲପୁରମ୍ ସମେତ କେତେକ ସୂକ୍ଷ୍ମ ଏବଂ କ୍ଷୁଦ୍ର ପଥରକଟା ମନ୍ଦିର ଖୋଦିତ ହୋଇଥିଲା । ମହେନ୍ଦ୍ରବର୍ମନ ତାଙ୍କର ଜୀବନ ଜଣେ ଜୈନଧର୍ମାବଲମ୍ବୀ ଭାବେ ଆରମ୍ଭ କରିଥିଲେ; କିନ୍ତୁ ପରେ ଆପ୍ପାରଙ୍କ ଦ୍ୱାରା ଶୈବଧର୍ମକୁ ଧର୍ମାନ୍ତରିତ ହୋଇଥିଲେ । କୁହାଯାଏ ଯେ ଏହି ଧର୍ମାନ୍ତରଣ ଫଳରେ ତାମିଲନାଡୁରେ ଜୈନଧର୍ମ ପ୍ରତି ଥିବା ପୃଷ୍ଠପୋଷକତା ଦୁର୍ବଳ ହୋଇପଡ଼ିଲା ।

କେବଳ ହାସ୍ୟରସାତ୍ମକ ନାଟକ ଲିଖନ ଏବଂ ମନ୍ଦିର ନିର୍ମାଣକୁ ପୃଷ୍ଠପୋଷକତା ପ୍ରଦାନ କରିବାରେ ତାଙ୍କର ପାରଦର୍ଶିତା ସୀମିତ ନ ଥିଲା । ଯୁଦ୍ଧ ମଧ୍ୟ ସେ ଲଢୁଥିଲେ । ତାଙ୍କର ଉତ୍ତରର ସମସାମୟିକ ହର୍ଷ ଖୁବ୍ ସୁଦୂରରେ ଥିଲେ । ମାତ୍ର ନିକଟରେ ଥିଲେ ସଦ୍ୟ ପ୍ରତିଷ୍ଠିତ ଚାଲୁକ୍ୟ ବଂଶ, ଯାହା ସହ ବିବାଦର ଅବକାଶ ରହିଥିଲା । ଦ୍ୱିତୀୟ ପୁଲକେଶୀ ପଲ୍ଲବମାନଙ୍କର ଉଚ୍ଚାକାଂକ୍ଷାକୁ ପ୍ରତିହତ କରିବାକୁ ଶପଥବଦ୍ଧ ଥିଲେ ଏବଂ ନିଜ ରାଜ୍ୟ

ବେଙ୍ଗୀକୁ ସେମାନଙ୍କ ନିୟନ୍ତ୍ରଣର ବଳୟଠାରୁ ଦୂରରେ ରଖିବାକୁ ଚାହୁଁଥିଲେ । ଚାଲୁକ୍ୟ ଏବଂ ପଲ୍ଲବଙ୍କ ମଧ୍ୟରେ ଏକ ଦୀର୍ଘସୂତ୍ରୀ ଯୁଦ୍ଧ ଆରମ୍ଭ ହୋଇଥିଲା । ଉଭୟ ରାଜବଂଶର ଅବକ୍ଷୟ ହେବା ଯୋଗୁଁ ଏହି ଯୁଦ୍ଧ ହୁଏତ କେତେ ବର୍ଷ ଲାଗି ଥମିଯାଇଥିଲା, ମାତ୍ର ଉତ୍ତରାଧିକାରୀମାନଙ୍କର ଅଭ୍ୟୁଦୟ ସହିତ ପୁଣି ଯୁଦ୍ଧ ଆରମ୍ଭ ହେଲା । ପଶ୍ଚିମ ଦାକ୍ଷିଣାତ୍ୟ ଉପରେ ନିୟନ୍ତ୍ରଣ ହାସଲ କରିବା ସତ୍ତ୍ୱେ ଦ୍ୱିତୀୟ ପୁଲକେଶୀଙ୍କ ଉଚ୍ଚାକାଂକ୍ଷା ଥମିଲା ନାହିଁ । କଦମ୍ବ ଏବଂ ଗଙ୍ଗମାନଙ୍କୁ ପରାସ୍ତ କରି ଦକ୍ଷିଣକୁ ତଡ଼ିଦେବାକୁ ଉଦ୍ୟମ କରି ସେ ତାଙ୍କର ସୈନ୍ୟବାହିନୀର ଶକ୍ତି ପରୀକ୍ଷା କଲେ । ଏହାପରେ ସେ ଆନ୍ଧ୍ର ଉପରେ ସମଭାବରେ ସଫଳ ଅଭିଯାନ ଆରମ୍ଭ କରିଦେଲେ । ସେ ନର୍ମଦା କୂଳରେ ହର୍ଷଙ୍କ ସୈନ୍ୟବାହିନୀର ସାମ୍ନା କଲେ ଏବଂ ସେମାନଙ୍କୁ ପରାସ୍ତ କଲେ । ପୁଣି ପଶ୍ଚିମ ଭାରତର ଲାଟ, ମାଲୱା ଏବଂ ଗୁଜୁରାଟ ଉପରେ ଚାପ ପକାଇ ସେମାନଙ୍କର ଆନୁଗତ୍ୟ ହାସଲ କଲେ । ବାଦାମୀକୁ ପ୍ରତ୍ୟାବର୍ତ୍ତନ କରି ସେ ଏଥର ପଲ୍ଲବ ରାଜା ମହେନ୍ଦ୍ରବର୍ମନଙ୍କ ବିରୁଦ୍ଧରେ ସଫଳ ଅଭିଯାନ ଚଳାଇଲେ । ଫଳସ୍ୱରୂପ ପଲ୍ଲବ ରାଜ୍ୟର ଉତ୍ତରାଞ୍ଚଳର କିଛି ଅଂଶ ଚାଲୁକ୍ୟମାନଙ୍କ ଦଖଲକୁ ଆସିଲା । ଦ୍ୱିତୀୟ ପୁଲକେଶୀଙ୍କ କୃତିତ୍ୱ ବୟାନ କରୁଥିବା ଆଇହୋଲର ଏକ ଶିଳାଲେଖ ହେଉଛି ସଂଗ୍ରହାଳୟର ପାଠ ମଧ୍ୟରେ ଉପଲବ୍ଧ ଏକ ଚମତ୍କାର ସାହିତ୍ୟିକ ଦସ୍ତାବିଜ ।

ପଲ୍ଲବମାନଙ୍କ ପରାଜୟ କଦାପି ବିନା ପ୍ରତିଶୋଧରେ ଗଲା ନାହିଁ । ମହେନ୍ଦ୍ରବର୍ମନ ମୃତ୍ୟୁବରଣ କଲେ । ମାତ୍ର ତାଙ୍କର ଉତ୍ତରାଧିକାରୀ ପ୍ରଥମ ନରସିଂହ ବର୍ମନ ହୃତଭୂଖଣ୍ଡ ପୁନର୍ଦଖଲ କରିବାଲାଗି ବଦ୍ଧପରିକର ଥିଲେ । ଏହା କରିବାରେ ସେ ସଫଳ ହେଲେ । ନରସିଂହ ବର୍ମନ ଚାଲୁକ୍ୟ ରାଜଧାନୀ ଦଖଲ କଲେ । ସେହି ନଗର ଦଖଲ କରିବା ଫଳରେ ତାଙ୍କର ବାତାପିକୋଣ୍ଡା ଉପାଧି ଧାରଣ ଯଥାର୍ଥ ହେଲା । ମହାବଳୀପୁରମ୍ ପୁଣିଥରେ ସୁଦୃଶ୍ୟ ମନ୍ଦିରମାନଙ୍କ ଦ୍ୱାରା ଶୋଭିତ ହେଲା । ପରବର୍ତ୍ତୀ ପଦକ୍ଷେପ ଚାଲୁକ୍ୟମାନଙ୍କ ତରଫରୁ ନିଆଯିବାର ଥିଲା । ମାତ୍ର ଚାଲୁକ୍ୟ ବଂଶର ବାର ବର୍ଷର ବିରତି ସେମାନଙ୍କୁ ଯୁଦ୍ଧରୁ ବିରତ ରଖିଲା । ଏ ଭିତରେ ପଲ୍ଲବମାନେ ସେମାନଙ୍କର ସମର୍ଥକ ଶ୍ରୀଲଙ୍କାର ରାଜାଙ୍କୁ ସହାୟତା ଦେବାଲାଗି ଏକ ନୌ-ଯୁଦ୍ଧରେ ସଂପୃକ୍ତ ହେଲେ । ଶ୍ରୀଲଙ୍କାର ରାଜା ଯିଏ ନିକଟରେ ନିଜର ସିଂହାସନ ହରାଇଥିଲେ, ବସ୍ତୁତଃ ତାହା ଫେରିପାଇବାରେ ସଫଳ ହେଲେ । ତାମିଲନାଡୁ ଏବଂ ଶ୍ରୀଲଙ୍କା ମଧ୍ୟରେ ଭାବ ବିନିମୟ ସେମାନଙ୍କ ମଧ୍ୟରେ ପ୍ରାଗୈତିହାସିକ ବସତିଗତ ସାଦୃଶ୍ୟ ଯୋଗୁଁ ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । ଏହି ସମ୍ପର୍କ ସମଗ୍ର ଇତିହାସ ବ୍ୟାପି ଜାରି ରହିଛି, ଯାହା ଦୁଇ ପଡ଼ୋଶୀଙ୍କ କ୍ଷେତ୍ରରେ ସାଧାରଣତଃ ଘଟିଥାଏ ।

ଚାଲୁକ୍ୟମାନେ ଏକ ବିଭାଜିତ ରାଜ୍ୟକୁ ଏକତ୍ର କରିବାର ଚେଷ୍ଟା କରୁଥାନ୍ତି । ଉଦ୍ଦେଶ୍ୟ ଥାଏ, ସେମାନଙ୍କ ଅଧସ୍ତନମାନଙ୍କ ଉଚ୍ଚାକାଂକ୍ଷାକୁ ପ୍ରତିହତ କରିବା । ଖ୍ରୀ. ୬୫୫ରେ ପୁଲକେଶୀଙ୍କର ଗୋଟିଏ ପୁଅ ଏକରକମ ଏକତା ଆଣିବାରେ ସମର୍ଥ ହେଲା । ପଲ୍ଲବମାନେ ଦଖଲ କରିନେଇଥିବା ଭୂଖଣ୍ଡ ପୁନଃ ଦଖଲ କରିବାରେ ସମର୍ଥ ହେବାପରେ ଚାଲୁକ୍ୟମାନଙ୍କ ଆଧିପତ୍ୟ ଫେରିଆସିଲା । ନର୍ମଦା ନଦୀର ଉତ୍ତରକୁ ଥିବା ଚାଲୁକ୍ୟ ପ୍ରଦେଶ ଜଣେ ଯୁବରାଜଙ୍କ ଦ୍ଵାରା ଶାସିତ ହେଉଥିଲା । ସେ ଥିଲେ ମୂଳ ପରିବାରର ଯାହାଙ୍କର ପର ପିଢ଼ି ଲାଟ ଚାଲୁକ୍ୟ ନାମରେ ଅଭିହିତ ହୋଇଥିଲେ । ଏ ପ୍ରକାରର ନାମକରଣ ସେମାନେ ଶାସନ କରୁଥିବା ଅଞ୍ଚଳ ଆଧାରରେ ହୋଇଥିଲା । ସେମାନେ ବଶମ୍ବଦ ଥିଲେ ଏବଂ କୌଣସି ସମସ୍ୟା ସୃଷ୍ଟି କରୁ ନ ଥିଲେ । ବର୍ତ୍ତମାନ ଚାଲୁକ୍ୟ ରାଜା ପଲ୍ଲବମାନଙ୍କ ଉପରେ ସମ୍ପୂର୍ଣ୍ଣ ଧ୍ୟାନ କେନ୍ଦ୍ରୀଭୂତ କରିବାକୁ ସମର୍ଥ ହେଲେ । ସେତେବେଳକୁ ପଲ୍ଲବମାନେ ଯୁଦ୍ଧର ନବୀକରଣ ଲାଗି ପ୍ରସ୍ତୁତ ହେଉଥାନ୍ତି । ଏକ ଦୀର୍ଘ ସାମରିକ ଅଭିଯାନ ପରେ ପଲ୍ଲବମାନେ ପୁଣିଥରେ ବାତାପି ଅଞ୍ଚଳ ଦଖଲ କଲେ । କାଞ୍ଚି ପରିସରରେ ଖୋଦିତ ଏକ ପଲ୍ଲବ ଅନୁଦାନର ବର୍ଣ୍ଣନାରୁ ଜଣାଯାଏ ଉଭୟ ପକ୍ଷର ବ୍ୟାପକ କ୍ଷୟକ୍ଷତି ହୋଇଥିଲା । ନିଃସନ୍ଦେହରେ ପରିସ୍ଥିତି ଏପରି ହିଁ ଥିଲା । ପଲ୍ଲବ ଏବଂ ଚାଲୁକ୍ୟମାନଙ୍କର ସୈନ୍ୟବାହିନୀ ପରସ୍ପର ସହ ତୁଳନୀୟ ଥିଲେ । ତେଣୁ ସ୍ୱଳ୍ପ ପାର୍ଥକ୍ୟରେ ବିଜୟ ନିର୍ଦ୍ଧାରଣ ହେଉଥିଲା । ଦଖଲ କଲାପରେ ବିଜିତ ଅଞ୍ଚଳକୁ କବ୍‌ଜା କରି ରଖିବା ଉଭୟଙ୍କ ପକ୍ଷେ ଅସମ୍ଭବ ହେଉଥିଲା । ଏଥିରୁ ଉଭୟ ପକ୍ଷର ସାମରିକ ସାମର୍ଥ୍ୟ ଏବଂ ରାଜନୈତିକ ଆଧିପତ୍ୟ ମଧ୍ୟରେ ଥିବା ସନ୍ତୁଳନ ସ୍ଥିତି ଦୃଷ୍ଟିକୁ ଆସେ ।

ଅନେକତ୍ର ରାଜସିଂହ ନାମରେ ଆଖ୍ୟାୟିତ ଦ୍ଵିତୀୟ ନରସିଂହ ବର୍ମନଙ୍କ କୃତି ମଧ୍ୟରୁ ମହାବଳୀପୁରମ୍‌ଠାରେ ନିର୍ମିତ ଅତି ସୂକ୍ଷ୍ମ ତଟଦେଶୀୟ ମନ୍ଦିର ଏବଂ କାଞ୍ଚିପୁରମ୍‌ରେ ଅବସ୍ଥିତ ଅଧୁନା କୈଳାସନାଥ ନାମରେ ପ୍ରସିଦ୍ଧ ମନ୍ଦିର ଅନ୍ୟତମ । ଶେଷୋକ୍ତ ଉଦାହରଣଟି ଏକଦା ବୌଦ୍ଧ ଆଧିପତ୍ୟ ସମ୍ପନ୍ନ ଧାର୍ମିକ କେନ୍ଦ୍ରରେ ଏକ ପରିବର୍ତ୍ତନକୁ ସୂଚାଏ । ପ୍ରମୁଖ ସାମରିକ ଅଭିଯାନଗୁଡ଼ିକ ପରେ ବିଜେତା ରାଜା ରାଜକୀୟ ମନ୍ଦିରଗୁଡ଼ିକରୁ ପ୍ରସିଦ୍ଧ ମୂର୍ତ୍ତିଗୁଡ଼ିକ ପୁରସ୍କାର ଆକାରରେ ନେଇ ଯାଉଥିଲେ । ବିଜେତାର ରାଜଧାନୀର ମନ୍ଦିରଗୁଡ଼ିକରେ କାମ କରିବା ଲାଗି ମିସ୍ତ୍ରୀ, ନିର୍ମାତା ଏବଂ କାରିଗରମାନଙ୍କୁ ମଧ୍ୟ ବହୁବାର ନିଆଯାଉଥିଲା । ସେହି କାରଣରୁ କଳାତ୍ମକ ଶୈଳୀ ଅନେକ କ୍ଷେତ୍ରରେ ମିଶାମିଶି ଭଳି ମନେହେଉଥିଲା ।

ତେବେ ଏହି ସମୃଦ୍ଧ ଏବଂ ଶାନ୍ତିମୟ ସମୟ 731 ବେଳକୁ ଶେଷ ହୋଇଆସିଥିଲା । ଚାଲୁକ୍ୟ ଏବଂ ଗଙ୍ଗମାନେ ଏକତ୍ର ହୋଇ ପଲ୍ଲବମାନଙ୍କୁ ଆକ୍ରମଣ କଲେ । ଗାଦିନସୀନ

ରାଜା ମୃତ୍ୟୁବରଣ କଲେ । କୌଣସି ପ୍ରତ୍ୟକ୍ଷ ଉତ୍ତରାଧିକାରୀ ନ ଥିବାରୁ ମନ୍ତ୍ରୀ ପରିଷଦ ପୂଜକ ଗୋଷ୍ଠୀ ସହ ପରାମର୍ଶ କରି ରାଜବଂଶର ଏକ ଶାଖା ପରିବାରର ଜଣେ ସଦସ୍ୟଙ୍କୁ ଅଭିଷିକ୍ତ କରାଇଲେ । ସେ ଦ୍ୱିତୀୟ ନନ୍ଦିବର୍ମନ ନାମରେ ଶାସନ ପରିଚାଳନା କଲେ । ବାଳୁତ ରାଜାଙ୍କୁ ଦରବାରରେ ଭାଗବତ ଗୋଷ୍ଠୀର ସମର୍ଥନ ମିଳିଲା । ଏହା ପୂର୍ବରୁ ଶୈବ ଗୋଷ୍ଠୀ କ୍ଷମତାଶାଳୀ ଥିଲେ । ଚାଲୁକ୍ୟମାନେ କାଞ୍ଚି ଦଖଲ କରି ସ୍ୱଭାବସୁଲଭ ଢଙ୍ଗରେ ସେମାନଙ୍କ ପୂର୍ବ ପରାଜୟର ପ୍ରତିଶୋଧ ନେଲେ । ବର୍ତ୍ତମାନ ପଲ୍ଲବମାନେ ପ୍ରତିଆକ୍ରମଣ କରିବେ ବୋଲି ଆଶା କରାଯାଉଥିଲା । ମାତ୍ର ଏ କ୍ଷେତ୍ରରେ ପରିସ୍ଥିତିରେ ପରିବର୍ତ୍ତନ ପରିଲକ୍ଷିତ ହେଲା । ପଲ୍ଲବମାନଙ୍କର ଦକ୍ଷିଣ ଦିଗର ପଡ଼ୋଶୀମାନେ ବିବାଦରେ ଯୋଗ ଦେଲେ । ମଦୁରାଇର ପାଣ୍ଡ୍ୟମାନେ ପଲ୍ଲବମାନଙ୍କ ପ୍ରତି ସମ୍ବେଦନଶୀଳ ନ ଥିଲେ । ଅବଶ୍ୟ ସେମାନଙ୍କର ଶତ୍ରୁତା ଚାଲୁକ୍ୟମାନଙ୍କ ପରି ଗୁରୁତର ନ ଥିଲା । ଷଷ୍ଠ ଶତାବ୍ଦୀ ବେଳକୁ ପାଣ୍ଡ୍ୟମାନେ ଦକ୍ଷିଣ ତାମିଲନାଡୁରେ ସେମାନଙ୍କ ସ୍ଥିତି ସୁଦୃଢ଼ କରିସାରିଥିଲେ । ସେମାନେ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଅଞ୍ଚଳକୁ ନିୟନ୍ତ୍ରଣରେ ରଖିଥିଲେ । ଅନ୍ୟାନ୍ୟ ଶକ୍ତି ସହିତ ସମ୍ବନ୍ଧ ଅନୁସାରେ ସେମାନଙ୍କର ପ୍ରଭାବ ବଦଳୁଥିଲା । ପାଣ୍ଡ୍ୟମାନେ ସେମାନଙ୍କ ଉତ୍ତରର ପଡ଼ୋଶୀମାନଙ୍କୁ ସମସ୍ୟାରେ ପକାଇଲେ ମଧ୍ୟ ସେମାନଙ୍କୁ ସମୂଳେ ବିନାଶ କରିପାରିଲେ ନାହିଁ ।

କେରଳର ପଶ୍ଚିମ ଉପକୂଳରେ ଅନେକ କୃଷି ସମୃଦ୍ଧ ଅଞ୍ଚଳରେ ବ୍ରାହ୍ମଣ ବସତିମାନ ଗଢ଼ିଉଠିଲା । ଏହା ପେରିୟାର ଉପତ୍ୟକାର ମାକୋଟାଇ ରାଜ୍ୟ ଲାଗି ସମର୍ଥନର ଉତ୍ସରେ ପରିଣତ ହେଲା । ତେବେ କେରଳର ସମ୍ପଦ ଓ ସାମର୍ଥ୍ୟ ନୌବାଣିଜ୍ୟରୁ ଆସୁଥିଲା । କେରଳରେ ମଧ୍ୟ ବ୍ରାହ୍ମଣମାନେ ବହିରାଗତ ଥିଲେ ଏବଂ ଅପରିଚିତ ସଂସ୍କୃତି ଭିତରେ ସେମାନଙ୍କୁ କାମ କରିବାକୁ ପଡୁଥିଲା । ସ୍ୱାଭାବିକଭାବେ ସ୍ଥାନୀୟ ଲୋକମାନଙ୍କୁ ବ୍ରାହ୍ମଣ ସ୍ତରକୁ ଉନ୍ନୀତ କରିବା ଅପରିହାର୍ଯ୍ୟ ଥିଲା । ପୁଣି ସ୍ଥାନୀୟ ବ୍ୟବସ୍ଥା ସହ ତାଳମେଳ ମଧ୍ୟ ରଖିବାର ଥିଲା । ନମ୍ବୁଦ୍ରି ବ୍ରାହ୍ମଣ ଏବଂ ନାୟାର ଜମିଦାରଙ୍କ ମଧ୍ୟରେ ସମ୍ପର୍କ ଆଧାରରେ ମାତୃବଂଶୀୟ ବ୍ୟବସ୍ଥା ସହ ସମଯୋଜନ ଏକ ଭିନ୍ନ ରୂପ ନେଲା ଯାହା ଉପମହାଦେଶର ଅନ୍ୟ ଭାଗରେ ମଧ୍ୟ ପରିଲକ୍ଷିତ ହୋଇଥିଲା ।

ଦକ୍ଷିଣ ଭାରତର ପୂର୍ବ ଏବଂ ପଶ୍ଚିମ ଉପକୂଳ ମଧ୍ୟରେ ଯୋଗାଯୋଗ କେରଳର ପଲ୍ଲବ ଏବଂ ପେରୁମଲ ବଂଶ ମଧ୍ୟରେ ଥିବା ସମ୍ପର୍କ ମାଧ୍ୟମରେ ଜାରି ରହିଲା । ଉଦ୍ଦେଶ୍ୟ ଥିଲା ପଶ୍ଚିମ ଏସିଆ ସହ ବାଣିଜ୍ୟିକ ସମ୍ପର୍କ । ଅନ୍ୟମାନେ ମଧ୍ୟ ଏହି ବାଣିଜ୍ୟରେ ହାତ ଦେବା ଲାଗି ଉତ୍ସୁକ ଥିଲେ । ପୂର୍ବ ରୋମ୍ ସାମ୍ରାଜ୍ୟ ସହ ବ୍ୟବସାୟ ହ୍ରାସ ପାଇଥିଲା ।

ମାତ୍ର ୟୁରୋପରେ ଗୋଲମରିଚ ଓ ମସଲାର ଚାହିଦା ଢେର୍ ଅଧିକ ଥିଲା । ଆରବ୍ୟ ବଣିକମାନେ ବାଇଜାଣ୍ଟିୟମ ବଜାରକୁ ପଣ୍ୟଦ୍ରବ୍ୟମାନ ଯୋଗାଉଥିଲେ । ମାଲବାର ଏବଂ କୋଙ୍କଣ ଉପକୂଳରେ ଆରବ୍ୟମାନଙ୍କର ବସତି ଥିଲା ଯେଉଁମାନେ ବାଣିଜ୍ୟର ଅଂଶ ଥିଲେ । ଅନ୍ୟ ବଣିକମାନଙ୍କର ରୋମ୍ ସହିତ ଯେଉଁଭଳି ବାଣିଜ୍ୟ ଥିଲା ସେଭଳି ନୁହେଁ, ବରଂ ଆରବ୍ୟ ବଣିକମାନେ ଅଷ୍ଟମ ଏବଂ ନବମ ଶତାବ୍ଦୀରୁ ଦକ୍ଷିଣ ଏବଂ ପଶ୍ଚିମ ଉପକୂଳରେ ସ୍ଥାୟୀଭାବେ ବସବାସ କରିବା ଆରମ୍ଭ କଲେ । ସେମାନଙ୍କୁ ସ୍ୱାଗତ କରାଗଲା, ବାଣିଜ୍ୟ କେନ୍ଦ୍ର ପ୍ରତିଷ୍ଠା ଲାଗି ଜମି ଦିଆଗଲା ଏବଂ ଅବାଧ ଭାବରେ ସେମାନଙ୍କୁ ସ୍ୱ-ଧର୍ମଭାବ ଜାରି ରଖିବାର ସୁଯୋଗ ଦିଆଗଲା । ପୂର୍ବରୁ ଦକ୍ଷିଣ ଭାରତରେ ଖ୍ରୀଷ୍ଟିଆନ୍‌ମାନଙ୍କୁ ମଧ ଏହିପ୍ରକାର ସୁଯୋଗ ମିଳିଥିଲା । ସେମାନଙ୍କୁ ନୂଆ ଲୋକ ବୋଲି ମନେ କରାଯାଉ ନଥିଲା । ପ୍ରାକ୍ ଇସଲାମୀୟ ସମୟରେ ମଧ ପଶ୍ଚିମ ଉପକୂଳ ଏବଂ ଆରବ୍ୟ ଉପଦ୍ୱୀପ ମଧରେ ଯାତାୟତ ଥିଲା । ବର୍ତ୍ତମାନର ମୋପିଲା ବା ମାଲବାର ମୁସଲମାନ୍‌ମାନେ ଏହିମାନଙ୍କର ଉତ୍ତର ପିଢ଼ି । ଠିକ୍ ସେହିପରି କୋଙ୍କଣର ଜୈନ ବ୍ୟବସାୟୀ ଗୋଷ୍ଠୀମାନଙ୍କ ମଧ୍ୟରୁ ନବାୟତମାନଙ୍କର ଅଭ୍ୟୁଦୟ ଘଟିଥିଲା ।

ପଶ୍ଚିମ ଉପକୂଳରେ ଆରବମାନଙ୍କ ବସତିର ସବୁଠୁ ଆଗ୍ରହୋଦ୍ଦୀପକ ବିଭାବ ହେଲା ସେମାନେ ଯେଉଁ ସ୍ଥାନୀୟ ଗୋଷ୍ଠୀ ସହ ଘନିଷ୍ଠ ଯୋଗାଯୋଗରେ ଥିଲେ ସେମାନଙ୍କଠାରୁ କେତେକ ପ୍ରଥାସିଦ୍ଧ ନିୟମ ଓ ପୂଜା ବିଧାନ ଆହରଣ କରିଥିଲେ । ତେଣୁ ଗୁଜୁରାଟର ଭୋରା ଅଞ୍ଚଳର ଖୋଜା, କୋଙ୍କଣର ନବାୟତ ଏବଂ ମାଲବାରର ମୋପିଲାମାନେ ଭିନ୍ନ ଭିନ୍ନ ପ୍ରକାରର ମୁସଲମାନ୍ ଥିଲେ । ଉଦାହରଣ ସ୍ୱରୂପ, ମାତୃବଂଶୀୟତା ଏବଂ ମାତୃସ୍ଥାନୀୟତା ମୋପିଲା ମୁସଲମାନ୍‌ଙ୍କର ଏକ ସ୍ୱତନ୍ତ୍ର ଗୁଣ, ଯାହା ଅନ୍ୟ ମୁସଲମାନଙ୍କଠାରେ ଦେଖାଯାଏ ନାହିଁ । ଏଇ ପ୍ରଥା ସ୍ଥାନୀୟ ନାୟାର୍‌ମାନଙ୍କ ପରମ୍ପରାରୁ ଆସିଥାଇପାରେ, କାରଣ ରକ୍ଷଣଶୀଳ ମୁସଲମାନ୍‌ମାନଙ୍କ ଲାଗି ଏହା ସହଜ ଗ୍ରାହ୍ୟ ନୁହେଁ । ମୂଳତଃ ବଣିକ ହୋଇଥିବାରୁ ପଶ୍ଚିମ ଉପକୂଳରେ ବସତି ସ୍ଥାପନ କରିଥିବ ଆରବୀ ମୁସଲମାନଗଣ ପ୍ରାଥମିକ ପର୍ଯ୍ୟାୟରେ ରାଜନୈତିକ କ୍ଷମତା ହାସଲ ପାଇଁ କିମ୍ବା ଇସଲାମକୁ ବ୍ୟାପକ ଧର୍ମାନ୍ତରଣ ଲାଗି ମନ ବଳାଇ ନ ଥିଲେ । ସ୍ଥାନୀୟ ସମାଜ ସହିତ ସମଯୋଜନ ତେଣୁ ବାଧ୍ୟତାମୂଳକ ଥିଲା । ଭାରତରେ ବସତି ସ୍ଥାପନ କରିଥିବା ଆରବମାନଙ୍କୁ ଆରବର ଲେଖକମାନେ 'ବୟାସିରାହ' ରୂପେ ଆଖ୍ୟାୟିତ କରିଛନ୍ତି । ଏଥିରୁ ସେମାନେ ଦକ୍ଷିଣ ଆରବର ଲୋକ ବୋଲି ଅନୁମାନ କରାଯାଇପାରେ ।

ସପ୍ତମ ଶତାବ୍ଦୀରେ ଆରବ ସୈନ୍ୟବାହିନୀ ପାରସ୍ୟ ଦଖଲ କଲେ । କେତେକ ଜୋରେଷ୍ଟ୍ରାରିଆନ୍ ଏହି ସମୟରେ ଇସଲାମକୁ ଧର୍ମାନ୍ତରିତ ହେଲେ ଏବଂ ଆଉ କେତେଜଣ ପ୍ରାକ୍ ଅଷ୍ଟମ ଶତାବ୍ଦୀରୁ ଭାରତକୁ ସ୍ଥାନାନ୍ତରିତ ହେବାକୁ ପସନ୍ଦ କଲେ । ସେମାନେ ମଧ୍ୟ ପଶ୍ଚିମ ଭାରତକୁ ଆସିଲେ ଯେଉଁଠି ସେମାନଙ୍କର ବାଣିଜ୍ୟିକ ଯୋଗାଯୋଗ ଥିଲା । ମୁମ୍ବାଇର ଉତ୍ତରକୁ ସେମାନେ ଏକ ବଡ଼ ବସତି ସ୍ଥାପନ କଲେ, ଯେପରି 'ସଂଜାନ' । ସେମାନଙ୍କର ପର ପିଢ଼ି ଏକ ଗୋଷ୍ଠୀ ଗଠନ କଲେ ଯାହାକୁ ପରବର୍ତ୍ତୀ ସମୟରେ 'ପାର୍ସି' ବୋଲି କୁହାଗଲା । ଏହି ଗୋଷ୍ଠୀ ନିଜଠାରେ ସେମାନଙ୍କ ମୂଳ ଭୂମି ଏବଂ ଭାଷାର ପ୍ରତିଫଳନ ଘଟାଇଲା । ଅନେକ ଲୋକ ଗ୍ରାମାଞ୍ଚଳରେ ବାଣିଜ୍ୟ କେନ୍ଦ୍ରର ପାଖାପାଖି ବସତି ସ୍ଥାପନ କଲେ । ଅନ୍ୟମାନେ ସେ ସମୟର ବାଣିଜ୍ୟିକ ପରିପଥରେ ବେଶ୍ କ୍ରିୟାଶୀଳ ଥିଲେ । ନବମ ଶତାବ୍ଦୀରେ ରାଷ୍ଟ୍ରକୂଟ ପ୍ରଶାସନ ଲାଗି କାମ କରୁଥିବା ଆରବ ଅଧିକାରୀ ସଂଜାନ ଅଞ୍ଚଳରେ ନିଯୁକ୍ତି ପାଉଥିଲେ, ଯାହା ପଶ୍ଚିମ ଏସିଆ ସହ ବାଣିଜ୍ୟିକ ସମ୍ପର୍କ ଲାଗି ଗୁରୁତ୍ୱପୂର୍ଣ୍ଣ ଥିଲା । ସମୁଦାୟ ବ୍ୟବସ୍ଥା ଶାନ୍ତିପୂର୍ଣ୍ଣ ମନେହେଉଥିଲା । ଆରବର ଲୋକମାନଙ୍କଠାରୁ ଭୟ ପାଇ ଜେରୋଷ୍ଟାରିଆନ୍‌ମାନେ ପଳାଇ ଯାଇଥିଲେ । ଭାରତକୁ ସ୍ଥାନାନ୍ତରିତ ହୋଇଥିବା ଅନେକ ଜୋରେଷ୍ଟୋରିଆନ୍ କେବଳ ଧାର୍ମିକ ନିପୀଡ଼ନରୁ ନୁହଁ, ହୁଏତ ବାଣିଜ୍ୟିକ ଆଗ୍ରହରୁ ଯୋଗସୂତ୍ର ସ୍ଥାପନ କରିଥାଇ ପାରନ୍ତି ।

ତେବେ ଆରବମାନେ ଅଷ୍ଟାଦଶ ଶତାବ୍ଦୀରେ ସିନ୍ଧୁପ୍ରଦେଶ ଦଖଲ କଲେ ଏବଂ ପଶ୍ଚିମ ଭାରତରେ ସେମାନଙ୍କର ଭିତ୍ତି ସ୍ଥାପନ କଲେ । ଏହି ଉଭୟ କାର୍ଯ୍ୟ ପଶ୍ଚିମ ଉପକୂଳର ବନ୍ଦର ଉପରେ କବ୍‌ଜା କରିବା ଲାଗି ଏବଂ ଚାଲୁକ୍ୟ ଭୂଖଣ୍ଡ ଆଡ଼କୁ ଆଗେଇବା ପାଇଁ ଉତ୍ସାହିତ କଲା । ଲାଟ ଚାଲୁକ୍ୟମାନେ ସେମାନଙ୍କୁ ପଛକୁ ହଟାଇଦେଲେ । ତେଣୁ ତାଙ୍କର ଦକ୍ଷିଣ ଦିଗର ପଡ଼ୋଶୀଙ୍କୁ ଅସ୍ତ୍ରଶସ୍ତ୍ର ଦିଗରୁ ପ୍ରସ୍ତୁତ ହେବାକୁ ସମୟ ମିଳିଗଲା । ଆରବମାନଙ୍କ ତରଫରୁ ଥିବା ବିପଦ ଟଳିଗଲା । କିନ୍ତୁ ଚାଲୁକ୍ୟମାନେ ଆଉ ଏକ ଗୁରୁତର ବିପଦର ସମ୍ମୁଖୀନ ହେଲେ । ଦନ୍ତୀଦୁର୍ଗ ନାମକ ସେମାନଙ୍କର ଜଣେ ଅଧସ୍ତନ ଯିଏ ଏକଦା ପ୍ରଶାସନର ଉଚ୍ଚ ଅଧିକାରୀ ଥିଲେ, ସେ ସ୍ୱାଧୀନତା ଘୋଷଣା କଲେ । ଧୀରେ ଧୀରେ ତାଙ୍କ ପରିବାର ଚାଲୁକ୍ୟମାନଙ୍କୁ କ୍ଷମତାଚ୍ୟୁତ କରି ରାଷ୍ଟ୍ରକୂଟ ନାମକ ଏକ ନୂତନ ରାଜବଂଶ ପ୍ରତିଷ୍ଠା କଲେ । ଏହି ପରିବାର ଗୁଲବର୍ଗା ଅଞ୍ଚଳରେ ଅବସ୍ଥାପିତ ଥିଲେ ଏବଂ ସେମାନଙ୍କ କ୍ଷେତ୍ର ମାନ୍ୟାଖେତଠାରେ ଅବସ୍ଥିତ ଥିଲା । ଦନ୍ତୀଦୁର୍ଗ ନନ୍ଦୀବର୍ମନଙ୍କର ଶ୍ୱଶୁର ଥିଲେ, ଯିଏ ନିଜ କ୍ୱାଇଁଙ୍କୁ କାଞ୍ଚି ଫେରିପାଇବାରେ ସହାୟତା କଲେ । ଏହି କାର୍ଯ୍ୟର ସ୍ମୃତିରକ୍ଷା ପାଇଁ ପଲ୍ଲବ ରାଜା କୈଳାସନାଥ ମନ୍ଦିରର ପ୍ରତିଦ୍ୱନ୍ଦ୍ୱୀ ଭାବରେ ବୈକୁଣ୍ଠ ପେରୁମଲ ମନ୍ଦିର ନିର୍ମାଣ

କରାଇଥିଲେ । ମନ୍ଦିରଟି ରାଜାଙ୍କର ନିର୍ବାସନ ଶେଷ ଏବଂ କ୍ଷମତାକୁ ପ୍ରତ୍ୟାବର୍ତ୍ତନର ସୂଚକ ହେଲା । ପଲ୍ଲବମାନେ ପ୍ରାୟ ଏକ ଶତାବ୍ଦୀ କାଳ ଚାଲୁକ୍ୟମାନଙ୍କ କବଳରୁ ବର୍ତ୍ତି ରହିଲେ । ମାତ୍ର ନବମ ଶତାବ୍ଦୀରେ ସେମାନଙ୍କ ଆଧିପତ୍ୟ କ୍ଷୁଣ୍ଣ ହେଲା । ଜଣେ ଅଧସ୍ତନ କାର୍ଯ୍ୟକର୍ତ୍ତା ଶେଷ ପଲ୍ଲବ ରାଜାଙ୍କୁ ହତ୍ୟା କରିବାରୁ ପଲ୍ଲବ ବଂଶ ବିଲୁପ୍ତ ହେଲା ।

ରାଷ୍ଟ୍ରକୂଟ ସାମ୍ରାଜ୍ୟ ଅନ୍ୟ ରାଜ୍ୟଗୁଡ଼ିକର ଦୁର୍ବଳତାର ଫାଇଦା ଉଠାଇଲା । ପଲ୍ଲବମାନଙ୍କର ପତନ ଘଟୁଥିଲା ଏବଂ ତାଙ୍କର ଚୋଳ ଉତ୍ତରାଧିକାରୀମାନେ ଏଯାବତ୍ ଦୃଶ୍ୟପଟ୍ଟକୁ ଆସି ନ ଥିଲେ । ଦାକ୍ଷିଣାତ୍ୟର ବ୍ୟାପାରରେ ହସ୍ତକ୍ଷେପ କରିବା ଲାଗି ଉତ୍ତର ଭାରତରେ ଯଥେଷ୍ଟ ଶକ୍ତିଶାଳୀ କେହି ନ ଥିଲେ । ରାଷ୍ଟ୍ରକୂଟମାନଙ୍କର ଭୌଗୋଳିକ ଅବସ୍ଥିତି ସେମାନଙ୍କୁ ଯୁଦ୍ଧରେ ବ୍ୟାପୃତ କରାଉଥିଲା ଏବଂ ଉଭୟ ଉତ୍ତର ତଥା ଦକ୍ଷିଣର ରାଜ୍ୟଗୁଡ଼ିକ ସହ ମେଣ୍ଟ ଗଠନ ଲାଗି ବାରମ୍ବାର ଆଗ୍ରହୀ କରାଉଥିଲା । ରାଷ୍ଟ୍ରକୂଟମାନେ ସଫଳ ଭାବରେ କନୌଜ ରାଜନୀତିରେ ହସ୍ତକ୍ଷେପ କଲେ । ଯଦିଓ ସେମାନେ ଦଶମ ଶତାବ୍ଦୀର ଆଦ୍ୟ ଭାଗରେ କିଛି କାଳ ଲାଗି କନୌଜକୁ ନିଜ ଦଖଲରେ ରଖିପାରିଥିଲେ, ଏହି ଅଭିଯାନ ସେମାନଙ୍କ ଲାଗି କ୍ଷତିକାରକ ସାବ୍ୟସ୍ତ ହେଲା ।

ରାଷ୍ଟ୍ରକୂଟମାନଙ୍କର ପଶ୍ଚିମ ସମୁଦ୍ରତଟର ଏକ ବିସ୍ତୃତ ଅଞ୍ଚଳ ଉପରେ ନିୟନ୍ତ୍ରଣ ଥିଲା । ତେଣୁ ଏହି ସୂତ୍ରେ ପଶ୍ଚିମ ଏସିଆ ଏବଂ ଆରବ ସହିତ ବାଣିଜ୍ୟ ଯୋଗାଯୋଗ ମଧ୍ୟ ସହଜ ହେଲା । ଆରବମାନଙ୍କୁ ସେମାନେ ତାଜିକ୍ ବୋଲି କହୁଥିଲେ । ସେମାନଙ୍କୁ ଉପକୂଳ ଅଞ୍ଚଳରେ ଥିବା ପ୍ରଶାସନିକ ଜିଲ୍ଲାଗୁଡ଼ିକରେ ଅଧିକାରୀ, ଏପରିକି ଶାସକ ଭାବେ ମଧ୍ୟ ନିଯୁକ୍ତି ଦେଉଥିଲେ । ସେମାନଙ୍କ ମଧ୍ୟରୁ ମଧୁମତୀ (ସମ୍ଭବତଃ ମହମ୍ମଦ ନାମର ସଂସ୍କୃତ ରୂପ) ନାମଧେୟ ଜଣେ ଗଭର୍ଣ୍ଣର ଏକ ଧନୀ ବ୍ରାହ୍ମଣ ମଠକୁ ଜମି ଅନୁଦାନ ଦେଇଥିଲେ । ସେହି ଅଭିଲେଖ ଅନୁସାରେ ସେ ରାଷ୍ଟ୍ରକୂଟମାନଙ୍କ ତରଫରୁ ଅନେକ ବନ୍ଦର ଅଧିକାରୀଙ୍କ ଉପରେ ନିୟନ୍ତ୍ରଣ ରଖିଥିଲେ ।

ଦନ୍ତୀଦୁର୍ଗ ପ୍ରାୟ 753 ଖ୍ରୀଷ୍ଟାବ୍ଦରେ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ତାଙ୍କର ଉତ୍ତରାଧିକାରୀ ପ୍ରଥମ କୃଷ୍ଣ ଏଲୋରାର ଦର୍ଶନୀୟ ପଥରକଟା ମନ୍ଦିର - କୈଳାସ ମନ୍ଦିର ନିର୍ମାଣ କରି ଯଶ ଅର୍ଜନ କରିଥିଲେ । ରାଷ୍ଟ୍ରକୂଟ ରାଜାମାନଙ୍କ ମଧ୍ୟରୁ ସର୍ବାଗ୍ରେ ସ୍ମରଣୀୟ ହେଲେ ଅମୋଘବର୍ଷ । ତାଙ୍କର ଦୀର୍ଘ ଶାସନକାଳ (୪14-୫0) ସାମରିକ ଦିଗରୁ ପ୍ରଭାବଶାଳୀ ନ ଥିଲା, ଯଦିଓ ସେ ମାନ୍ୟକ୍ଷେତରେ ଥିବା କେନ୍ଦ୍ର ଅଞ୍ଚଳକୁ ସୁଦୃଢ଼ କରି ରଖିଥିଲେ । ଜୈନ ଏବଂ ଶୈବ ଧର୍ମ ପ୍ରତି ତାଙ୍କର ପୃଷ୍ଠପୋଷକତା ଉଭୟଙ୍କୁ ଯଥାଯୋଗ୍ୟ ସହାୟତା ପ୍ରଦାନ କରିଥିଲା । ସେ 'କବିରାଜ ମାର୍ଗ' ନାମକ ଏକ କନ୍ନଡ଼ କାବ୍ୟତତ୍ତ୍ୱର ରଚୟିତା

ଥିଲେ । ରାଜପୁରୁଷମାନଙ୍କର ସାହିତ୍ୟ ଆଗ୍ରହର ଏହା ହେବ ଅନ୍ୟତମ ନମୁନା । ଦଶମ ଶତାବ୍ଦୀର ଶାସକ ତୃତୀୟ କୃଷ୍ଣ ଥିଲେ ପ୍ରମୁଖ ରାଷ୍ଟ୍ରକୂଟ ଶାସକମାନଙ୍କ ମଧ୍ୟରୁ ଶେଷତମ ।

ଅମୋଘବର୍ଷଙ୍କର ଏକ ମୁଖ୍ୟ ସମସ୍ୟା ଥିଲା ତାଙ୍କ ସାର୍ବଭୌମତ୍ୱର ଅଧୀନରେ ଥିବା ଅଧସ୍ତନ ଶାସକମାନଙ୍କ ତରଫରୁ ବିଦ୍ରୋହର ପଦଧ୍ୱନି । ଏହି ସମସ୍ୟା କେବେ ବି ଦୂର ହେଲା ନାହିଁ । ଅଧସ୍ତନ ମାନ୍ୟତାକୁ ଖସି ଆସିଥିବା ଚାଲୁକ୍ୟମାନେ ପୁଣିଥରେ ସେମାନଙ୍କୁ ଅଡୁଆରେ ପକାଉଥାନ୍ତି । ଖୁବ୍‌ଶୀଘ୍ର ସେମାନେ ରାଷ୍ଟ୍ରକୂଟମାନଙ୍କୁ କ୍ଷମତାଚ୍ୟୁତ କରି ନିଜକୁ ଶାସକ ପଦରେ ଅଧିଷ୍ଠିତ କରି ଚକ୍ରକୁ ଘେରାଏ ଆବର୍ତ୍ତନ ଦେବା ଅପେକ୍ଷାରେ ଥିଲେ । ଶିଳାହାର ନାମକ ଆଉ ଏକ ପରିବାରର ଉଚ୍ଚାକାଂକ୍ଷା ରୂପ ପରିଗ୍ରହ କରୁଥାଏ, ଯଦିଓ ସେମାନେ ମଧ୍ୟ ରାଷ୍ଟ୍ରକୂଟମାନଙ୍କର ଅଧସ୍ତନ ଥିଲେ । ଏହି ସମୟରେ ତାମିଲନାଡୁରେ ଚୋଳମାନଙ୍କର ଅଭ୍ୟୁଦୟ ରାଷ୍ଟ୍ରକୂଟ ସାମ୍ରାଜ୍ୟର ସ୍ୱାଧୀନତା ପ୍ରତି ଆଉ ଏକ ବିପଦ ହେଲା । ଦଶମ ଶତାବ୍ଦୀର ପ୍ରଥମ ଭାଗ ବେଳକୁ ରାଷ୍ଟ୍ରକୂଟମାନେ ଗାଦିନସୀନ ଥିବା ଏବଂ ସେମାନଙ୍କ ଜଣେ ରାଜା କାଞ୍ଚି ବିଜେତା ଉପାଧି ଧାରଣ କରିଥିବା କଥା ଜଣାଯାଏ । ମାତ୍ର ଏହି ଦାବି ସ୍ୱଳ୍ପକାଳ ପାଇଁ ସ୍ଥାୟୀ ଥିଲା । ଦଶମ ଶତାବ୍ଦୀର ଶେଷବେଳକୁ କାଞ୍ଚିର ନୂତନ ଶାସକ ଏବଂ ଚାଲୁକ୍ୟମାନେ ମିଶି ରାଷ୍ଟ୍ରକୂଟ ସାମ୍ରାଜ୍ୟର ଅନ୍ତ ଘଟାଇ ସାରିଥାନ୍ତି । ଚାଲୁକ୍ୟମାନଙ୍କର ଦ୍ୱିତୀୟ ବଂଶ ରାଷ୍ଟ୍ରକୂଟ ସାମ୍ରାଜ୍ୟରେ ଶାସନ କରୁଥାନ୍ତି ।

## ଉପଦ୍ୱୀପର ରାଜ୍ୟ ବ୍ୟବସ୍ଥା

ରାଜବଂଶଗୁଡ଼ିକ ପରସ୍ପରର ପ୍ରତିସ୍ପର୍ଦ୍ଧୀ ହୁଅନ୍ତି, ଯେତେବେଳେ ସେମାନେ (ଉପଦ୍ୱୀପରେ ଘଟିଲା ପରି) ସମକକ୍ଷ ହୋଇଥାନ୍ତି । ଏକ ଅପେକ୍ଷାକୃତ ଦୁର୍ବଳ ଶାସନ ବ୍ୟବସ୍ଥା ଅବସ୍ଥାପିତ ଥିଲେ ଗ୍ରାମ ଏବଂ ଜିଲ୍ଲା ପ୍ରଶାସନରେ ସ୍ଥାନୀୟ ସ୍ୱାୟତ୍ତତାର ଦାବି ଆରମ୍ଭ ହୁଏ । ରାଜଧାନୀର ବେଶୀ ହସ୍ତକ୍ଷେପ ଅସ୍ୱୀକାର କରାଯାଏ । ଏହି ସ୍ୱାୟତ୍ତତା ରାଜ୍ୟକୁ ତା'ର ପ୍ରଭୁତ୍ୱରୁ ବଞ୍ଚିତ କରେ ନାହିଁ । ବରଂ ଏହା ପରିବର୍ତ୍ତେ ପ୍ରଶାସନିକ ପ୍ରସଙ୍ଗ ଏବଂ ରାଜସ୍ୱ ସଂଗ୍ରହ କାର୍ଯ୍ୟ ସହଜ ହୋଇଉଠେ । ଏହା ତାମିଲନାଡୁରେ ଅନେକ ମାତ୍ରାରେ ଚାଲିଥିଲା । ଏ ପରମ୍ପରା ସକ୍ରିୟଭାବେ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଜାରି ରହିଥିଲା ।

ରାଜାମାନେ ବଡ଼ ବଡ଼ ଉପାଧି ଧାରଣ କରୁଥିଲେ । ମହାରାଜାଧିରାଜ ସେହିପରି ଏକ ବେଶ୍ ସୁପରିଚିତ ଉପାଧି ଥିଲା । ଏ ଉପାଧି ଉତ୍ତରରୁ ଆହରିତ ହୋଇଥିଲା । ଅନ୍ୟ ଉପାଧିଗୁଡ଼ିକ ସ୍ଥାନୀୟ ଉଦ୍‌ଭାବନ ଥିଲା ଯଥା- ଧର୍ମ-ମହାରାଜା । ଏହାର ଅର୍ଥ ହେଲା

ଧର୍ମ ଅନୁସାରେ ଶାସନ କରୁଥିବା ମହାନ୍ ରାଜା । କଳିଯୁଗରେ ଧର୍ମ ଲୋପ ପାଉଛି ବୋଲି ବିଶ୍ୱାସ କରାଯାଉଥିବାରୁ ଧର୍ମକୁ ସୁରକ୍ଷା ଦେବା ରାଜାମାନଙ୍କର କର୍ତ୍ତବ୍ୟ ମନେ କରାଯାଉଥିଲା । ଏକ ଅଧିକ ଅସ୍ୱାଭାବିକ ଉପାଧି ଥିଲା ଅଗ୍ନିଚୋମ-ବାଜପେୟ-ଅଶ୍ୱମେଧ-ଯଜ୍ଞ । ଯିଏ ଅଗ୍ନିଷ୍ଟୋଟକ, ଅଶ୍ୱମେଧ ଏବଂ ବାଜପେୟ ଯଜ୍ଞ କରିଥିବ ତାଙ୍କ ଲାଗି ଏ ଉପାଧି ଉଦ୍ଦିଷ୍ଟ ଥିଲା । ବେଳେବେଳେ ମନେହୁଏ ରାଜପଦ ଲାଗି ଅଭିପ୍ରେତ ବୈଦିକ ଅଭ୍ୟାସର ଧ୍ରୁବୀକରଣ ଦିଗରେ ଏହା ଏକ ସଚେତନ ପ୍ରୟାସ । ଏଣିକି ଅନେକ ଅଭିଲେଖରେ ରାଜାଙ୍କର ପ୍ରଶସ୍ତି ଉପଲବ୍ଧ ହେଲା । ଏହା ପଛରେ ଥିବା ରାଜନୈତିକ ଉଦ୍ଦେଶ୍ୟ ହେଲା ରାଜତନ୍ତ୍ରର ଦୃଢ଼ୀକରଣ । ଏହା ରାଜାଙ୍କୁ ଅସାଧାରଣ ଭାବେ ପ୍ରଦର୍ଶିତ କରିଥିଲା ।

ତତ୍ତ୍ୱ ଅନୁସାରେ ରାଜା ଥିଲେ ନ୍ୟାୟ ବିଷୟକ ଚରମ ନିଷ୍ପତ୍ତି ଗ୍ରହୀତା । ତେବେ ସ୍ଥାନୀୟ ସ୍ତରରେ ହିଁ ବିବାଦଗୁଡ଼ିକର ସମାଧାନ ଘଟୁଥିଲା । ମନ୍ତ୍ରୀମାନଙ୍କର ଏକ ଗୋଷ୍ଠୀ ତାଙ୍କୁ ସହାୟତା ପ୍ରଦାନ କରୁଥିଲେ । ପଲ୍ଲବମାନଙ୍କ ପରବର୍ତ୍ତୀ କାଳରେ ରାଷ୍ଟ୍ରର ନୀତି ନିର୍ଦ୍ଧାରଣରେ ମନ୍ତ୍ରିପରିଷଦ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଉଥିଲା । କେହି କେହି ମନ୍ତ୍ରୀ ଅର୍ଦ୍ଧ-ରାଜକୀୟ ଉପାଧିମାନ ଧାରଣ କରୁଥିଲେ । ହୁଏତ ସେମାନେ କରଦ ରାଜାମାନଙ୍କ ମଧ୍ୟରୁ କିମ୍ବା ବିପୁଳ ଭୂସମ୍ପତ୍ତିର ମାଲିକମାନଙ୍କ ମଧ୍ୟରୁ ବଛାହୋଇ ଆସୁଥିଲେ, କାରଣ ରାଜସ୍ୱ ଉପରେ ଅର୍ଥନୈତିକ ଏବଂ ପ୍ରଶାସନିକ ନିୟନ୍ତ୍ରଣ ଥିବାରୁ ସେମାନେ କ୍ଷମତାକେନ୍ଦ୍ରର ନିକଟବର୍ତ୍ତୀ ହୋଇପାରୁଥିଲେ । ସେମାନଙ୍କ ମଧ୍ୟରୁ କେହି କେହି ହୁଏତ ପ୍ରାଥମିକ ପର୍ଯ୍ୟାୟରେ ଅଧିକ ଜମିର ରୟତ ହୋଇଥିବେ ଏବଂ ଧୀରେ ଧୀରେ ଆଧିପତ୍ୟ ଜାହିର୍ କରିବା ଅବସ୍ଥାରେ ପହଞ୍ଚିଥିବେ । ଯେଉଁମାନେ ସ୍ଥାନୀୟ ସ୍ତରରେ କ୍ଷମତା ନିୟନ୍ତ୍ରଣ କରୁଥିଲେ ଏବଂ ରାଜାଙ୍କ ସହ ଅଧସ୍ତନ ହିସାବରେ ସମ୍ବନ୍ଧିତ ଥିଲେ, ସେମାନଙ୍କ ଲାଗି 'ସାମନ୍ତ' ପଦଟି ବ୍ୟବହାର କରାଯାଉଥିଲା । ମାତ୍ର ପରିତାପର ବିଷୟ ହେଲା ପୂର୍ବର ଐତିହାସିକ ଲିଖନରେ ଏହାକୁ ୟୁରୋପୀୟ ସାମନ୍ତ (Feudatory)ର ସଦୃଶ ବୋଲି ବର୍ଣ୍ଣନା କରାଯାଇଛି । ସାଦୃଶ୍ୟ ବ୍ୟତିରେକେ ସାରା ଉପମହାଦେଶରେ ସ୍ଥାନ ଏବଂ କାଳ ଭିତ୍ତିରେ ଏହି ସାମନ୍ତ ନାମଧାରୀ ବ୍ୟକ୍ତିମାନେ ଉପଭୋଗ କରୁଥିବା କ୍ଷମତାର ରୂପ ଭିନ୍ନ ଭିନ୍ନ । ତେଣୁ ପ୍ରକାରଭେଦ ସ୍ପଷ୍ଟକରି କହିବା ଢେର୍ ଜରୁରୀ ।

କେତେକ ପ୍ରଶାସନିକ ଏକକର ନାମକରଣ ମୌର୍ଯ୍ୟଯୁଗର ଅହର, ବିଷୟ, ରାଷ୍ଟ୍ର ଇତ୍ୟାଦିର ଆଧାରରେ କରାଯାଇଛି । ତାମିଲନାଡୁରେ ମୌଳିକ ଏକକ ହେଉଛି ନାଡୁ । ସ୍ଥାନୀୟ ସ୍ୱାୟତ୍ତ ଅନୁଷ୍ଠାନମାନଙ୍କ ସହ ଉପଦେଷ୍ଟା ରୂପେ କାର୍ଯ୍ୟ କରୁଥିବା ପ୍ରାଦେଶିକ ସ୍ତରର ପ୍ରଶାସନିକ ଅଧିକାରୀମାନଙ୍କର ଏକ ପ୍ରକାରର ଅନୁକ୍ରମ ରହୁଥିଲା । ବର୍ଣ୍ଣିତ ସମୟରେ

ଉତ୍ତର ଭାରତ ତୁଳନାରେ ଦକ୍ଷିଣରେ ଏହି ପ୍ରକାରର ଅନେକ ଅନୁଷ୍ଠାନ ଥିଲା । ସେଗୁଡ଼ିକ ସ୍ଥାନୀୟ ଜାତି, ବୃତ୍ତି ଏବଂ ଧର୍ମ ସଂପ୍ରଦାୟର ସମ୍ବନ୍ଧ ଆଧାରରେ ଗଠିତ ହୋଇଥିଲା । ତା'ର କାର୍ଯ୍ୟକାରିତା ଲାଗି ବାରମ୍ବାର ସଭାସମିତି କରାଯାଉଥିଲା । ଅନେକ ସ୍ତରରେ ଭିନ୍ନ ଭିନ୍ନ ପ୍ରକାରର ପରିଷଦ ଗଠିତ ହେଉଥିଲା । ଏଥିରେ ବଣିକ ସଂଘ, କାରିଗର, ତନ୍ତୀ, ତେଲି, ଛାତ୍ର, ସନ୍ନ୍ୟାସୀ ଏବଂ ପୂଜକ ପ୍ରଭୃତି ପରିଷଦ ଗଠନ କରିପାରୁଥିଲେ । ଯୋଗ୍ୟ ବିବେଚିତ ବ୍ୟକ୍ତିମାନଙ୍କୁ ନେଇ ସଂଗଠନ କରାଯାଉଥିଲା ଏବଂ ସେମାନେ ଆଧୁନିକ କମିଟିମାନଙ୍କ ସଦୃଶ କାର୍ଯ୍ୟ କରୁଥିଲେ । ପ୍ରତ୍ୟେକ ଗୋଷ୍ଠୀର କାର୍ଯ୍ୟ ସ୍ୱତନ୍ତ୍ର ପ୍ରକାରର ଥିଲା ।

ଗାଁର ମୁଖ୍ୟ ପରିଷଦ ଥିଲା ସଭା । ଏହା ମନ୍ଦିର ସମ୍ପତ୍ତି, ବିଭିନ୍ନ ପ୍ରକାରର ଦେବୋତ୍ତର ବିଷୟ, ଜଳସେଚନ, ଜମିକର୍ଷଣ, ଦୋଷୀକୁ ଦଣ୍ଡ ପ୍ରଦାନ, ଜନଗଣନା ଏବଂ ଅନ୍ୟାନ୍ୟ ଦରକାରୀ ବିବରଣୀ ଇତ୍ୟାଦି ସମସ୍ତ ବିଷୟକୁ ନିଜ କାର୍ଯ୍ୟର ପରିସରଭୁକ୍ତ କରିପାରୁଥିଲା । ସଭା ଏକ ଔପଚାରିକ ଅନୁଷ୍ଠାନ ଥିଲା । ମାତ୍ର ଏହା ସେ ଅଞ୍ଚଳର ଅଣବ୍ରାହ୍ମଣ କୃଷକମାନଙ୍କ ଦ୍ୱାରା ନିୟନ୍ତ୍ରିତ ନେତାମାନଙ୍କର ଏକ ସଂଗଠନ ଉର୍ (Ur)ର ସହଯୋଗରେ କାର୍ଯ୍ୟ କରୁଥିଲା । 'ଉର୍' ବାହାରେ ଥିଲେ ଚେରିମାନେ ଯେଉଁମାନଙ୍କର ଅବସ୍ଥାନ ଜାତିର ସୀମାନ୍ତ ବାହାରେ ଥିଲା । ନାଡୁ ପ୍ରଶାସନ ସହିତ ମିଶି ଭୂମିମାଲିକମାନଙ୍କର ଏକ ପରିଷଦ କାର୍ଯ୍ୟ କରୁଥିଲା । ବଣିକମାନଙ୍କର ସମାଜକୁ ନଗରମ୍ କୁହାଯାଉଥିଲା । ମୁଖ୍ୟତଃ ବ୍ରାହ୍ମଣ ଅଧ୍ୟୁଷିତ ଗ୍ରାମଗୁଡ଼ିକର ସମାବେଶ ଏବଂ ପରିଷଦର କାର୍ଯ୍ୟାବଳୀ ସମ୍ପର୍କୀୟ ବିବରଣୀ ମିଳିପାରିଛି । ଅନ୍ୟ ଗ୍ରାମମାନଙ୍କର ସମାବେଶର ବିବରଣୀ ସଂରକ୍ଷିତ ହୋଇପାରି ନାହିଁ । ଏଥିରୁ ଗୋଟିଏ ନିଷ୍କର୍ଷ ବାହାରୁଛି ଯେ ଏହି ସ୍ୱୟଂଶାସିତ ଅନୁଷ୍ଠାନଗୁଡ଼ିକ ପୂର୍ବୋକ୍ତ ଗ୍ରାମଗୁଡ଼ିକରେ ସୀମାବଦ୍ଧ ଥିଲା । ତେବେ ଏଥିରୁ ନିର୍ଦ୍ଦିଷ୍ଟ ଭାବେ ଏହାହିଁ ବୁଝାପଡୁଛି ବୋଲି କହିହେବ ନାହିଁ । ଯଦି ଗ୍ରାମ ସମାବେଶ ନିର୍ଦ୍ଦିଷ୍ଟ କେତେକ ଗ୍ରାମ ଲାଗି ଉପଯୋଗୀ ସାବ୍ୟସ୍ତ ହୋଇଥିବ, ତେବେ ସେ ଅଞ୍ଚଳର ଅନ୍ୟାନ୍ୟ ଗ୍ରାମଗୁଡ଼ିକରେ ମଧ୍ୟ ଏହା ଆହୁରି ସାଧାରଣ ଭାବେ ଗଢ଼ିଉଠିଥିବ । ଗ୍ରାମ ସମାବେଶ ଏବଂ ଦାପ୍ତରିକ ପ୍ରଶାସନ ମଧ୍ୟରେ ଯୋଗସୂତ୍ର ଥିଲେ ଗ୍ରାମର ମୁଖିଆ, ଯିଏକି ଉଭୟ ଦିଗରୁ ଗ୍ରାମର ନେତା ଏବଂ ସରକାରଙ୍କ ଲାଗି ମଧ୍ୟସ୍ଥିର ଭୂମିକା ତୁଲାଉଥିଲେ ।

ପୁନଶ୍ଚ ଦାକ୍ଷିଣାତ୍ୟର ଉତ୍ତରରେ ପ୍ରଶାସନିକ ଅନୁଷ୍ଠାନଗୁଡ଼ିକର କମ୍ ସ୍ୱାୟତ୍ତତା ଥିଲା । ଚାଲୁକ୍ୟମାନଙ୍କ ଅଞ୍ଚଳରେ ସରକାରୀ ଅଧିକାରୀମାନେ ନିର୍ଘଣ୍ଟଗତ ଭାବେ ପ୍ରଶାସନରେ ଜଡ଼ିତ ରହୁଥିଲେ । ଏପରିକି ଗ୍ରାମ ସ୍ତରରେ ମଧ୍ୟ । ଗ୍ରାମ ସମାବେଶ ଅଧିକାରୀଙ୍କ ପିତୃସୁଲଭ ଦୃଷ୍ଟି ତଳେ କାର୍ଯ୍ୟ କରୁଥିଲା । ମୁଖିଆ ହିସାବରେ ଗ୍ରାମ ମୁଖ୍ୟର

ଭୂମିକା ଔପଚାରିକ ପ୍ରକୃତିର ଥିଲା । ଅଷ୍ଟମ ଶତାବ୍ଦୀର ପରେ ଦାକ୍ଷିଣାତ୍ୟର କତିପୟ ଶାସକ ପ୍ରଶାସନିକ ବିଭାଜନ ବ୍ୟବସ୍ଥା ଆଦରିନେଲେ, ଯେଉଁଥିରେ ଦଶବାରଟି ଗ୍ରାମକୁ ନେଇ ଗଢ଼ାହୋଇଥିବା ଏକ ଗୋଷ୍ଠୀକୁ ନେଇ ଏକ ବୃହତ୍ତର ଏକକ ଗଠନ କରାଗଲା ।

ପୂର୍ବରୁ ପତିତ ଜମି ବୋଲି କୁହାଯାଉଥିବା ସ୍ଥାନରେ କୃଷିର ପ୍ରବର୍ତ୍ତନ ଫଳରେ ରାଜସ୍ୱ ବୃଦ୍ଧି ପାଇଲା ତଥା ରାଜନୈତିକ କ୍ଷମତାର ସଂପ୍ରସାରଣ ହେଲା । କୃଷି ପ୍ରବର୍ତ୍ତନ ନିମନ୍ତେ ଏକ ଉପାୟ ଥିଲା ବ୍ରାହ୍ମଣ ଏବଂ ମନ୍ଦିରକୁ ଅନୁଦାନ ପ୍ରଦାନ । ଏହା ପୂର୍ବବର୍ତ୍ତୀ ସମୟଠାରୁ ଭିନ୍ନ ଥିଲା । ପ୍ରାରମ୍ଭିକ ଅବସ୍ଥାରେ ଯେକୌଣସି ସ୍ଥାନରୁ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ଗୋଟିଏ ସ୍ଥାନରେ ବସବାସ କରିବାକୁ କୁହାଯାଉଥିଲା ଏବଂ ଏହି ପ୍ରକ୍ରିୟାରେ ଜମିରେ ଚାଷ କରିବାକୁ କୁହାଯାଉଥିଲା । ଯେଉଁ ଅଞ୍ଚଳରେ ପୂର୍ବରୁ କୃଷକମାନଙ୍କ ଅବସ୍ଥିତି ନ ଥିଲା ସେ ଅଞ୍ଚଳରେ ସ୍ଥାନୀୟ ସମାଜଗୁଡ଼ିକୁ କୃଷକରେ ପରିଣତ କରିବା ଏହି ପ୍ରକ୍ରିୟାର ଅନ୍ତର୍ଗତ ଥିଲା । ସ୍ଥାନାନ୍ତରିତ କୃଷକମାନଙ୍କର ବସତି ସ୍ଥାପନ ବିଷୟରେ କୌଣସି ଲିଖିତ ବିବରଣୀ ନାହିଁ, ଯଦିଓ ଅନୁକୂଳ ସମୟରେ ସେମାନେ ଆସିପାରୁଥିଲେ । ସାଙ୍ଗରେ ସେମାନେ କେବଳ ନିଜର ଶ୍ରମ ଆଣୁଥିଲେ । ବ୍ରାହ୍ମଣ ଅନୁଦାନଗ୍ରହୀତାମାନଙ୍କଠାରୁ ଶାସକମାନେ ଆଦର୍ଶଗତ ସମର୍ଥନ ପାଉଥିଲେ, ମାତ୍ର ତାହା ସେମାନେ ପ୍ରଦର୍ଶିତ କରୁ ନ ଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ସହସ୍ରାବ୍ଦୀରେ ରାଷ୍ଟ୍ର ଗଠନ ହେବା କାଳରେ ପ୍ରତିଧ୍ୱନିତ ହୋଇଥିବା ବୈଦିକ ଯଜ୍ଞ ବ୍ୟବସ୍ଥା ଶେଷୋକ୍ତ କଥାଟିରେ ଅନ୍ତର୍ଭୁକ୍ତ ଥିଲା । ସର୍ଦ୍ଦାରତନ୍ତ୍ରରୁ ରାଜତ୍ୱକୁ ଉତ୍ତରଣ ପ୍ରକ୍ରିୟାରେ ଏହି କର୍ମକାଣ୍ଡଗୁଡ଼ିକୁ ବିସ୍ତୃତ ରୂପେ ସମ୍ପାଦନ କରିବାକୁ ପଡୁଥିଲା । ତାହା ମଧ୍ୟ ଦିବ୍ୟତ୍ୱ ସହିତ ଯୋଗସୂତ୍ରର ଦାବିକୁ ଅନୁମୋଦନ କରୁଥିଲା । ଯେକୌଣସି ମାର୍ଗରେ ହେଉ ଏହା ଥିଲା ପୂର୍ବବର୍ତ୍ତୀ ସମୟର ଏକ ପୁନଃ ପ୍ରସାରଣ ଏବଂ ଐତିହାସିକ ପରମ୍ପରାର ପ୍ରଚଳନ । ଥରେ ରାଜ୍ୟତନ୍ତ୍ର ଭଲରେ ପ୍ରତିଷ୍ଠିତ ହୋଇଗଲା ପରେ କର୍ମକାଣ୍ଡଗୁଡ଼ିକୁ ଆଉ ଏତେ ବେଶି ଦୋହରାଯାଉ ନ ଥିଲା କିମ୍ବା ଦୃଢ଼ୀକରଣର ଉପସ୍ଥାପନ ଆକାରରେ ପ୍ରକାଶ କରାଯାଉ ନ ଥିଲା ।

ଧୀରେ ଧୀରେ ସର୍ଦ୍ଦାରମାନଙ୍କ ଦ୍ୱାରା ପ୍ରଚଳିତ ଶାସନ ଭୂମି ମଧ୍ୟସ୍ଥିମାନଙ୍କ ଶାସନରେ ପରିଣତ ହେଲା । ମନ୍ଦିରମାନଙ୍କ ମାଧ୍ୟମରେ ମଧ୍ୟ ସମାନ ପ୍ରକାରର କାର୍ଯ୍ୟ କରାଗଲା । ଯେଉଁ ଅଞ୍ଚଳରେ ବାରମ୍ବାର ଜମି ଅନୁଦାନ ଦିଆଯାଉଥିଲା ସେଠାକାର ଅର୍ଥବ୍ୟବସ୍ଥାର ପୁନର୍ଗଠନ ହେଉଥିଲା । ଏଥିରେ ବ୍ରାହ୍ମଣମାନଙ୍କ ଦ୍ୱାରା ବୈଧୀକରଣ ଏବଂ ମନ୍ଦିର ସହ ସଂପୃକ୍ତ ବ୍ୟବସ୍ଥାନ (Network)ର ସମର୍ଥନ ଆଶା କରାଯାଉଥିଲା । ବର୍ଣ୍ଣ ନିୟମର ପ୍ରଚଳନ କରାଗଲା, ତେବେ କେବଳ ବ୍ରାହ୍ମଣମାନଙ୍କ କ୍ଷେତ୍ରରେ ଏହା ସଫଳ ହେଲା । ଅନ୍ୟମାନଙ୍କ

କ୍ଷେତ୍ରରେ ଏହାର ସଫଳତା ସୀମିତ ଥିଲା । ବ୍ରାହ୍ମଣମାନଙ୍କର ରକ୍ଷଣଶୀଳତାକୁ ସମର୍ଥନ ସମ୍ଭବତଃ ବେଲାଳମାନଙ୍କ ଉପରେ ସେମାନଙ୍କ ନିର୍ଭରଶୀଳତା ସହ ସମ୍ପର୍କିତ ଥିଲା । ବେଲାଳ ବା ଅନ୍ୟ ଭୂମିମାଲିକ ତଥା କୃଷକଗଣ ସାଂସ୍କୃତିକ ଦିଗରୁ ସ୍ୱତନ୍ତ୍ର ଥିଲେ । ବ୍ରାହ୍ମଣମାନେ ସେମାନଙ୍କୁ ଶୂଦ୍ରର ମାନ୍ୟତା ଦେଇ ଅଧସ୍ତନ କରି ରଖିବାର ଚେଷ୍ଟା କଲେ । ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁମାନେ ଜମିମାଲିକ ଥିଲେ ସେମାନଙ୍କର ମଧ୍ୟ କିଛି କ୍ଷମତା ରହିଥିଲା ।

ଘରୋଇ ମାଲିକାନାରେ ଥିବା ଜମିକୁ ବାଦ୍‌ଦେଲେ ଅବଶିଷ୍ଟ ଜମିକୁ ରାଜ୍ୟର ଜମି ବୋଲି କୁହାଯାଉଥିଲା । ରାଜା ତାଙ୍କର ଅଧିକାରୀମାନଙ୍କୁ ରାଜସ୍ୱ ଅନୁଦାନ ଦେଇପାରୁଥିଲେ, ବ୍ରାହ୍ମଣମାନଙ୍କୁ ଜମି ଅନୁଦାନ ଦେଇପାରୁଥିଲେ ଅଥବା କ୍ଷୁଦ୍ରଚାଷୀ ତଥା ଜମିଦାର ଯେଉଁମାନେ ଟିକସ ଦେଉଥିଲେ ସେମାନଙ୍କ ଦ୍ୱାରା ଜମି ଚାଷ କରାଉଥିଲେ । ପରବର୍ତ୍ତୀ ସ୍ଥିତିରେ ରୟତମାନେ ସ୍ଥାୟୀ ନ ଥିଲେ । ଘରୋଇ ଜମିମାଲିକମାନେ ଜମି କ୍ରୟବିକ୍ରୟ କରିପାରୁଥିଲେ ଏବଂ ଧାର୍ମିକ ଉଦ୍ଦେଶ୍ୟ ଲାଗି ଏହାକୁ ଉପହାର ଆକାରରେ ମଧ୍ୟ ଦେଇପାରୁଥିଲେ । ମୁଖ୍ୟତଃ ଦରମା ବଦଳରେ ଅଧିକାରୀମାନଙ୍କୁ ଜମିର ଅନୁଦାନ କିମ୍ବା ରାଜସ୍ୱ ପ୍ରଦାନ କରାଯାଉଥିଲା । ଅନୁଦାନ ଗ୍ରହୀତାଙ୍କ ଲାଗି ସୈନ୍ୟ ଯୋଗାଣ କିମ୍ବା ରାଷ୍ଟ୍ରକୁ ରାଜସ୍ୱର ଶତାଂଶ ପ୍ରଦାନ ମଧ୍ୟ ବାଧ୍ୟତାମୂଳକ ନ ଥିଲା ।

ଅନୁଦାନଗୁଡ଼ିକ ଚିରସ୍ଥାୟୀ ଥିଲା ଏବଂ ସେଗୁଡ଼ିକର ସମୟାନୁସାରେ ମାତ୍ରା ବୃଦ୍ଧି ପାଉଥିଲା । ଯଦିଓ ଅନୁଦାନଗୁଡ଼ିକ କୃଷି ଆୟୋଜନ ନିମନ୍ତେ ଏକ ଗୁରୁତ୍ୱପୂର୍ଣ୍ଣ ଆନ୍ଦୋଳନ ବୋଲି ଏକ ଧାରଣା ଥିଲା, ତଥାପି ସବୁ କ୍ଷେତ୍ର ଲାଗି ଏହା ସମାନ ନ ଥିଲା । ଉପମହାଦେଶର ଅନ୍ୟ ସବୁ ସ୍ଥାନ ଭଳି, ଜମିଗୁଡ଼ିକ ଅନୁଦାନର ଅଙ୍ଗ ହେବା ପୂର୍ବରୁ, ସେଠାରେ କୃଷକମାନେ ରହିଥିଲେ । ଆକଳନ ଏବଂ କର ପ୍ରଦାନ ସମ୍ବନ୍ଧରେ ରାଜ୍ୟ ଏବଂ କୃଷକ ମଧ୍ୟରେ ହେଉଥିବା ଚୁକ୍ତିକୁ ପ୍ରତିଷ୍ଠିତ ବ୍ୟବସ୍ଥାକୁ ଜାରି ରଖିବା ନିମନ୍ତେ ଜାରି କରାଯାଉଥିଲା । ପୁଣି ଏକ ନୂତନ ବ୍ୟବସ୍ଥା ଲାଗି ତା'ର ଆବଶ୍ୟକ ଥିଲା । ଏପ୍ରକାର ଚୁକ୍ତି କୃଷକ ତୁଳନାରେ ସ୍ୱାଭାବିକଭାବେ ରାଷ୍ଟ୍ର ଲାଗି ଅଧିକ ଲାଭଦାୟକ ହେଉଥିଲା । ଯଦି ଏହିପରି ଜମି ରାଜକୀୟ ଅନୁଦାନର ଅଂଶ ହେଉଥିଲା, ତେବେ ସେ କ୍ଷେତ୍ରରେ ସର୍ତ୍ତଗୁଡ଼ିକ ଅଧିକ ଜଟିଳ ହୋଇଉଠୁଥିଲା । ରାଜ୍ୟ ଓ କୃଷକ ମଧ୍ୟରେ ଜଣେ ମଧ୍ୟବର୍ତ୍ତୀ ବ୍ୟକ୍ତିର ହସ୍ତକ୍ଷେପକୁ ଅନୁମୋଦନ ମିଳିବା ପରେ ଏପରି ସମସ୍ୟା ସୃଷ୍ଟି ହେଉଥିଲା । ଏହି ଅନୁଦାନର ମାଲିକାନା ହସ୍ତାନ୍ତର କରିବା କିମ୍ବା ତାକୁ ବଂଶାନୁକ୍ରମିକ କରିବାଲାଗି ମଧ୍ୟବର୍ତ୍ତୀ ବ୍ୟକ୍ତିର ଅଧିକାର ଅନୁଦାନର ସର୍ତ୍ତ ଉପରେ ନିର୍ଭରଶୀଳ ଥିଲା ।

ଗ୍ରାମର ମାନ୍ୟତା ଏବଂ କାର୍ଯ୍ୟକାଳ ଭିନ୍ନ ଭିନ୍ନ ଥିଲା । କ୍ରମେ ଏହା ତିନି ପ୍ରକାରର ହେଲା । ଭିନ୍ନ ଭିନ୍ନ ଜାତିର ଲୋକ ଥିବା ଗାଁଗୁଡ଼ିକ କୃଷି କରୁଥିବା ଜମିର ପରିମାଣ ଅନୁସାରେ ଟିକସ ଦେବା ଏବଂ ତତ୍‌ସହିତ ତା'ର ଉତ୍ପାଦିତ ଦ୍ରବ୍ୟ ପୁଣି ଅନ୍ୟାନ୍ୟ ଉପରୁ ଟିକସ ପ୍ରଦାନ କରିବା ବ୍ୟବସ୍ଥାଟି ଅଧିକ ପ୍ରଚଳିତ ଥିଲା । ଆଉ ଗୋଟିଏ ପ୍ରକାରେ, ବ୍ୟକ୍ତି ବା ସାଧାରଣତଃ ବ୍ରାହ୍ମଣମାନଙ୍କ ଭଳି ନିର୍ଦ୍ଦିଷ୍ଟ ଗୋଷ୍ଠୀଙ୍କୁ ବିଭିନ୍ନ ପ୍ରକାରର ଅନୁଦାନ ପ୍ରଦାନ କରାଯାଉଥିଲା, ଯଦିଓ କାହାକୁ ଅନୁଦାନ ଦେବା କଥା ରାଜା ନିଜେ ସ୍ଥିର କରୁଥିଲେ । ଯେତେବେଳେ ସମୁଦାୟ ଗୋଟିଏ ଗ୍ରାମ କିମ୍ବା ଗ୍ରାମର କିଛି ପରିମାଣର ଜମି ଜଣେ ବ୍ରାହ୍ମଣ କିମ୍ବା ଏକ ବ୍ରାହ୍ମଣ ଗୋଷ୍ଠୀକୁ ଦାନ କରାଯାଉଥିଲା ସେତେବେଳେ 'ବ୍ରହ୍ମଦେୟ' ଗ୍ରାମମାନ ସୃଷ୍ଟି ହେଉଥିଲା । ଏହି ଅନୁଦାନଗ୍ରହୀତାମାନେ ଆଶାନୁରୂପ ଉନ୍ନତି କରୁଥିଲେ, କାରଣ ସାଧାରଣତଃ ବ୍ରାହ୍ମଣମାନଙ୍କୁ ଟିକସ ଦେବାକୁ ପଡୁ ନ ଥିଲା ଏବଂ ଚାଷଜମିର ପରିମାଣ ସ୍ୱାଭାବିକ ପରିମାଣଠାରୁ ଢେର୍ ଅଧିକ ଥିଲା । ବ୍ରାହ୍ମଣ ବସତି ସମ୍ପନ୍ନ ଗ୍ରାମକୁ 'ଅଗ୍ରହାର' ଅନୁଦାନ ପ୍ରଦାନ କରାଯାଉଥିଲା । ବ୍ରାହ୍ମଣମାନଙ୍କୁ ଜମି ପ୍ରଦାନ କରାଯାଉଥିଲା ଏବଂ ତାହା କରମୁକ୍ତ ଥିଲା, ତେବେ ବ୍ରାହ୍ମଣମାନେ ଇଚ୍ଛା କଲେ ସ୍ଥାନୀୟ ଅଞ୍ଚଳରେ ମୁକ୍ତ ଶିକ୍ଷା ଯୋଗାଇ ପାରୁଥିଲେ । ତୃତୀୟ ପ୍ରକାରଟି ହେଲା ଦେବତାଙ୍କୁ ପ୍ରଦତ୍ତ ଦେବଦେୟ ବା ଦେବଦାନ । ଏହି ପ୍ରକାରର ଜମି ବା ଗ୍ରାମ ପ୍ରଥମ ପ୍ରକାର ଭଳି ପରିଚାଳିତ ହେଉଥିଲା । ପ୍ରଭେଦ ଏତିକି ଯେ ତା'ର କୃଷକମାନେ ମନ୍ଦିରର ରୟତ ରୂପେ ପରିଗଣିତ ହେଉଥିଲେ । ଏହି ଗ୍ରାମଗୁଡ଼ିକରୁ ମିଳୁଥିବା ରାଜସ୍ୱ ମନ୍ଦିରକୁ ଦାନ କରାଯାଉଥିଲା ଏବଂ ତାହାକୁ ରାଷ୍ଟ୍ର ପରିବର୍ତ୍ତେ ମନ୍ଦିରର କର୍ତ୍ତୃପକ୍ଷ ଗ୍ରହଣ କରୁଥିଲେ । ଗ୍ରାମବାସୀମାନଙ୍କ ଲାଗି ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ମାଧ୍ୟମରେ ମନ୍ଦିର କର୍ତ୍ତୃପକ୍ଷମାନେ ଗ୍ରାମର ସହାୟତା କରୁଥିଲେ । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ଯେତେବେଳେ ମନ୍ଦିରଗୁଡ଼ିକ ଗ୍ରାମ୍ୟ ଜୀବନର କେନ୍ଦ୍ରୀୟ ଅନୁଷ୍ଠାନ ହୋଇଉଠିଲା ସେତେବେଳେ ଶେଷୋକ୍ତ ପ୍ରକାରର ଗ୍ରାମଗୁଡ଼ିକର ଗୁରୁତ୍ୱ ବୃଦ୍ଧି ପାଇଲା । ପଲ୍ଲବମାନଙ୍କ ଶାସନକାଳରେ ପ୍ରଥମ ଦୁଇ ପ୍ରକାରର ଗ୍ରାମ ଅଧିକ ଥିଲା ।

ଗାଁରେ ଗ୍ରାମବାସୀମାନଙ୍କର ଘର, ବଗିଚା, ଜଳସେଚନ ଲାଗି ଉଦ୍ଦିଷ୍ଟ ପୁଷ୍କରିଣୀ, କୂଅ, ଗୁହାଳ, ପତିତ ଜମି, ଗାଁ ଚାରିପାଖରେ ଥିବା ଜଙ୍ଗଲ, ଗାଁ ଜମି ଉପର ଦେଇ ପ୍ରବାହିତ ଝରଣା, ମନ୍ଦିର ଏବଂ ମନ୍ଦିରର ଜମି, ମଶାଣି ଏବଂ କୃଷି ଅନ୍ତର୍ଭୁକ୍ତ ଶୁଷ୍କ ତଥା ଆର୍ଦ୍ର (ଜଳସେଚିତ) ଭୂମି ଇତ୍ୟାଦି ଥିଲା । ସର୍ବସାଧାରଣର ମାଲିକାନାରେ ଥିବା ଜମିର ଧାନ ଅମଳ ଇତ୍ୟାଦି ସ୍ୱତନ୍ତ୍ର କାର୍ଯ୍ୟରେ ବ୍ୟବହାର କରାଯାଉଥିଲା । ଧାନ ଥିଲା ଏକ ନିୟମିତ ଫସଲ । ଏହାକୁ ବିନିମୟ ବା ବଦଳର ଏକକ ଭାବେ ବ୍ୟବହାର କରାଯାଉଥିଲା ।

ପୁଣି ଅଧିକ ଅମଳ ହେଲେ ବାଣିଜ୍ୟିକ ଫସଲ ରୂପେ ବ୍ୟବହାର କରାଯାଉଥିଲା । ବ୍ୟାପକଭାବେ ନଡ଼ିଆ ଚାଷ କରାଯାଉଥିଲା । ଏହି ଗଛର ଉତ୍ପାଦ ବ୍ୟାପକ ବ୍ୟବହାରରେ ଲାଗୁଥିଲା । ଉଭୟ ତାଳ ଏବଂ ଗୁଆ ମଧ୍ୟ ଚାଷ କରାଯାଉଥିଲା । ମୁଖ୍ୟତଃ ରପ୍ତାନୀ ଉଦ୍ଦେଶ୍ୟରେ ଗୁଆ ଚାଷ କରାଯାଉଥିଲା । ଆମ୍ବତୋଟା ଏବଂ କଦଳୀବାରି ଗାଁ ଦୃଶ୍ୟପଟ୍ଟର ଏକ ପରିଚିତ ଅଙ୍ଗ ଥିଲା । କପାମଞ୍ଜି ଏବଂ ପୋଲାଙ୍ଗ (gingelly)ରୁ ପେଡ଼ାଯାଉଥିବା ତୈଳର ଢେର୍ ଚାହିଦା ଥିଲା ।

ଏରିପଟି (eripatti) ବା ପୁଷ୍କରିଣୀ ଜମି ନାମକ ଏକ ସ୍ୱତନ୍ତ୍ର ପ୍ରକାରର ଜମି ସମ୍ବନ୍ଧରେ ଉଲ୍ଲେଖ ମିଳିଛି । ବ୍ୟକ୍ତିଗତ ଭାବେ ପ୍ରଦତ୍ତ ଏହି ଜମିର ରାଜସ୍ୱ ଗ୍ରାମ ପୁଷ୍କରିଣୀର ରକ୍ଷଣାବେକ୍ଷଣ ଲାଗି ବ୍ୟୟ କରାଯାଉଥିଲା । ଗ୍ରାମବାସୀମାନେ ଜଳସେଚନ ଲାଗି ପୁଷ୍କରିଣୀ ଉପରେ କେତେଦୂର ନିର୍ଭରଶୀଳ ଥିଲେ ତାହା ଏଥିରୁ ଜଣାପଡ଼େ । କୂଅରୁ ପାଣି ନେଇ ଜଳସେଚନରେ ଲଗାଇବାର ଗୁରୁତ୍ୱ ଏହାପରେ ବୁଝାଗଲା । ବର୍ଷାଜଳ ଯୋଗୁଁ ଜଳାଶୟରେ ଅଧିକ ଜଳ ସଞ୍ଚିତ ହୋଇ ରହୁଥିବାରୁ ଏହି ପାଣିକୁ ଜଳାଭାବ ସମୟରେ ଜଳସେଚନ ନିମନ୍ତେ ବ୍ୟବହାର କରାଯାଇପାରୁଥିଲା । ପଥର ବା ଇଟା ବେଢ଼ା ପରିବେଷ୍ଟିତ ପୁଷ୍କରିଣୀର ଖନନ ଓ ରକ୍ଷଣାବେକ୍ଷଣ ଗ୍ରାମବାସୀଙ୍କର ମିଳିତ ସହଯୋଗରେ ସମ୍ଭବ ହେଉଥିଲା । ଏହାର ଜଳ କୃଷକମାନେ ଭାଗ କରି ବ୍ୟବହାର କରୁଥିଲେ । ପଲ୍ଲବକାଳର ଗ୍ରାମ ବିଷୟକ ଅଭିଲେଖରୁ ଏ ପ୍ରକାରର ପୁଷ୍କରିଣୀର ଅବସ୍ଥିତି ସମ୍ପର୍କରେ ସୂଚନା ମିଳେ । ଲିଫ୍ଟ ସାହାଯ୍ୟରେ ପୁଷ୍କରିଣୀର ଜଳ କେନାଲକୁ ନିଆଯାଉଥିଲା ଏବଂ ଜଳସ୍ତର ନିୟନ୍ତ୍ରିତ ରଖିବା ତଥା ଉଚ୍ଚ ସ୍ଥାନରେ ଜଳାଧିକ୍ୟ ଉପରେ ଅଙ୍କୁଶ ଲଗାଇବା ଲାଗି ସେଗୁଡ଼ିକୁ ପଥର ସ୍ଲୁଇସ୍ ସହ ସଂଯୁକ୍ତ କରାଯାଉଥିଲା । ଗ୍ରାମ ଦ୍ୱାରା ନିଯୁକ୍ତିପ୍ରାପ୍ତ ଏକ ସ୍ୱତନ୍ତ୍ର ପୁଷ୍କରିଣୀ କମିଟି ଜଳସେଚନ ଲାଗି ଉଦ୍ଦିଷ୍ଟ ଜଳବଣ୍ଟନର ପର୍ଯ୍ୟବେକ୍ଷଣ କରୁଥିଲେ । ଜଣେ ନିର୍ଦ୍ଦିଷ୍ଟ କୃଷକଙ୍କୁ ଅଧିକ ପରିମାଣର ଜଳର ଆବଶ୍ୟକତା ହେଲେ, ତା ଉପରେ ଅଧିକ କର ଧାର୍ଯ୍ୟ କରାଯାଉଥିଲା ।

ଭୂମିର ସ୍ୱତ୍ୱାଧିକାର ଏବଂ ତା ଉପରେ ଧାର୍ଯ୍ୟ କରାଯାଉଥିବା କର ସମ୍ପର୍କୀୟ ସୂଚନା ଅନୁଦାନ ବିବରଣୀରେ ବିସ୍ତୃତଭାବେ ବର୍ଣ୍ଣିତ ହୋଇଛି । ଏ ଧରଣର ବିବରଣୀମାନ ଏପର୍ଯ୍ୟନ୍ତ ତମ୍ବାପଟା ଉପରେ ରହିଛି । ଗାଁରେ ଦୁଇ ପ୍ରକାରର କର ଧାର୍ଯ୍ୟ କରାଯାଉଥିଲା । ଚାଷୀମାନେ ଜମିର ଉତ୍ପାଦନର ଏକଷଷ୍ଠାଂଶ ବା ଏକ ଦଶମାଂଶ ରାଜସ୍ୱ ଆକାରରେ ରାଜ୍ୟକୁ ପ୍ରଦାନ କରୁଥିଲେ । ଏହା ଗ୍ରାମବାସୀମାନଙ୍କ ଦ୍ୱାରା ସଂଗୃହୀତ ହୋଇ ରାଜ୍ୟ ତରଫରୁ ନିଯୁକ୍ତ ସଂଗ୍ରହକାରୀଙ୍କ ପାଖରେ ପୈଠ କରାଯାଉଥିଲା । ଦ୍ୱିତୀୟ ପ୍ରକାରର କର ଥିଲା ସ୍ଥାନୀୟ କର । ଏହାକୁ ମଧ୍ୟ ଗ୍ରାମରେ ହିଁ ସଂଗ୍ରହ କରାଯାଉଥିଲା । ମାତ୍ର

ଏହାକୁ ମରାମତି ଏବଂ ଜଳସେଚନ କାର୍ଯ୍ୟଠାରୁ ଆରମ୍ଭ କରି ମନ୍ଦିରର ନବୀକରଣ ଓ ସଜ୍ଜୀକରଣ ଇତ୍ୟାଦି ଗ୍ରାମର ଆଭ୍ୟନ୍ତରୀଣ କାର୍ଯ୍ୟରେ ବିନିଯୋଗ କରାଯାଉଥିଲା । ରାଜ୍ୟର ଜମି ଉପରେ ଧାର୍ଯ୍ୟ କରାଯାଇଥିବା କର କମ୍ ଥିଲା ଏବଂ ଅନ୍ୟାନ୍ୟ ଉତ୍ସରୁ ଅତିରିକ୍ତ କର ସଂଗ୍ରହ କରାଯାଇ ରାଜସ୍ୱ ଭରଣା କରାଯାଉଥିଲା । ଗୋସମ୍ପଦ, ତାଡ଼ି ପ୍ରସ୍ତୁତକାରୀ, ବିବାହ ଉତ୍ସବ, କୁମ୍ଭକାର, ବଣିଆ, ଧୋବା, ବୟନକାରୀ, ତନ୍ତୀ, ଦଲାଲ, ପତ୍ରବାହକ ଏବଂ ଘିଅ ପ୍ରସ୍ତୁତକାରୀ ଗଉଡ଼ ପ୍ରଭୃତିଙ୍କ ଉପରେ ଏହି ଅତିରିକ୍ତ କର ଧାର୍ଯ୍ୟ କରାଯାଉଥିଲା । ଦୁର୍ଭାଗ୍ୟକୁ କରର ଶତାଂଶ ସବୁ କ୍ଷେତ୍ରରେ ସୂଚିତ ହୋଇ ନାହିଁ । ନିଃସନ୍ଦେହରେ କରଧାର୍ଯ୍ୟ ବସ୍ତୁ ଅନୁସାରେ ଭିନ୍ନ ଭିନ୍ନ ହୋଇଥିବ । ରାଜସ୍ୱର ପ୍ରମୁଖ ଭାଗ ପ୍ରାୟତଃ ଗ୍ରାମୀଣ ଉତ୍ସ ଏବଂ ବ୍ୟବସାୟିକ କ୍ଷେତ୍ରରୁ ଆଦାୟ କରାଯାଉଥିଲା । ଏଯାବତ୍ ନଗରର ଅନୁଷ୍ଠାନଗୁଡ଼ିକ ଉପରେ ଏଥିପାଇଁ ଏତେ ଗୁରୁତ୍ୱ ଆରୋପ କରାଯାଇ ନ ଥିଲା ।

ଜମି ଅନୁଦାନ ସମ୍ପର୍କରେ ଖୋଦିତ ଏବଂ ତମ୍ବା ପଟାରେ ସଂରକ୍ଷିତ ଏକ ବିବରଣୀ ନିମ୍ନରେ ଉଦ୍ଧାର କରାଯାଇଛି । ଯେଉଁ ଏଗାରଟି ପଟା ଉପରେ ଏହା ଖୋଦନ କରାଯାଇଥିଲା ସେଗୁଡ଼ିକ 1879 ମସିହାରେ ପଣ୍ଡିଚେରୀ ନିକଟବର୍ତ୍ତୀ ଏକ ଗ୍ରାମର ପରିସରରୁ ଉଦ୍ଧାର କରାଯାଇଛି । ଏହି ତମ୍ବାପଟାଗୁଡ଼ିକ ତମ୍ବାର ବଳୟରେ ସଂଯୁକ୍ତ କରାଯାଇଥିଲା । ଏଗୁଡ଼ିକର ଉଭୟ ପାର୍ଶ୍ୱ ଝୁଲେଇ କରାଯାଇ ଏଥିରେ ପଲ୍ଲବମାନଙ୍କର ପ୍ରତୀକ ଷଣ୍ଢ ଏବଂ ଲିଙ୍ଗ ସମ୍ବଳିତ ରାଜକୀୟ ମୋହର ଲଗାଯାଇଛି । ଏଥିରେ ନନ୍ଦିବର୍ମନ (753 ଖ୍ରୀଷ୍ଟାବ୍ଦ)ଙ୍କ ଶାସନର ବାଇଶିତମ ବର୍ଷରେ କରାଯାଇଥିବା ଏକ ଗ୍ରାମ ଅନୁଦାନ ସମ୍ପର୍କୀୟ ବିବରଣୀ ଲିପିବଦ୍ଧ ହୋଇଛି । ରାଜାଙ୍କ ଏକ ସଂସ୍କୃତ ଭାଷାର ପ୍ରଶସ୍ତି ସହିତ ଏହା ଆରମ୍ଭ ହୋଇଛି, ତା'ପରେ ଅନୁଦାନର ବିସ୍ତୃତ ବିବରଣୀ ତାମିଲରେ ଲେଖାଯାଇଛି ଏବଂ ଉପସଂହାରରେ ରହିଛି ଏକ ସଂସ୍କୃତ ପଦ୍ୟ । ଏହି ଅନୁଦାନ ରାଜାଙ୍କର ଜଣେ ଶୁଭାନୁଧ୍ୟାୟୀ ଯିଏ ତାଙ୍କ ଲାଗି ବିଭିନ୍ନ ଧାର୍ମିକ କର୍ମକାଣ୍ଡ କରିଥିବେ, ତାଙ୍କୁ ହିଁ ଦିଆଯାଇଥିବା ମନେହୁଏ । ଅନୁଦାନଗ୍ରହୀତା ଭାଗବତ ସଂପ୍ରଦାୟର ମଧ୍ୟ ହୋଇଥାଇ ପାରନ୍ତି । ରାଜାଙ୍କ ଦ୍ୱାରା ନିର୍ମିତ ମନ୍ଦିର ତାଙ୍କର ଶୁଭାନୁଧ୍ୟାୟୀ ପ୍ରତି ସମ୍ମାନ ପ୍ରଦର୍ଶନର ପ୍ରତୀକ ଏବଂ ତାଙ୍କ ରାଜନୈତିକ ଆଧିପତ୍ୟର ସୂଚକ ହୋଇଥିବ । ନିମ୍ନରେ ପ୍ରଦତ୍ତ ଉଦ୍ଧୃତି ତାମିଲ ରଚନାର ଅଂଶବିଶେଷ । ଲକ୍ଷ୍ୟ କରିବାର କଥା ଯେ ଏହି ଅନୁଦାନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭାଗଗୁଡ଼ିକ ସଂସ୍କୃତ ପରିବର୍ତ୍ତେ ତାମିଲରେ ଲେଖାଯାଇଛି ।

*"ଏହି ପ୍ରଶସ୍ତିର ରଚୟିତା ହେଲେ ତ୍ରିବିକ୍ରମ । ଉପରେ ରାଜାଙ୍କ ଶାସନକାଳର ଦ୍ୱାବିଂଶତମ ବର୍ଷର ଏକ ଆଦେଶ ଅଛି । ଉରୁକାଟ୍ଟୁକୋଟମ୍‌ର ଅଧିବାସୀମାନେ ଏହାକୁ ଦେଖିବା ହୁଅନ୍ତୁ । ଆମ ଦେଶର କୋଡୁକାଲି ଗ୍ରାମକୁ ଅନୁଦାନ ଆକାରରେ ଦେବା ନିମନ୍ତେ*

ରାଜା ସ୍ଥିର କଲାପରେ ଜାରି ହୋଇଥିବା ଆଦେଶନାମା ପାଠକରି, ବୃଦ୍ଧ ଯୁବରାଜଙ୍କ ଅନୁରୋଧ କ୍ରମେ ପୂର୍ବବର୍ତ୍ତୀ ମାଲିକମାନଙ୍କଠାରୁ ଜମି ଦଖଲ କରି, ଘୋରଶ୍ରମଣଙ୍କୁ ଜମିର ପ୍ରଭାବକ ହିସାବରେ ନିଯୁକ୍ତ କରି, ମନ୍ଦିର ଏବଂ ବ୍ରାହ୍ମଣମାନଙ୍କୁ ପୂର୍ବବର୍ତ୍ତୀ ଅନୁଦାନ ବହିର୍ଭୁକ୍ତ କରି, କୃଷକମାନଙ୍କର ଘରଗୁଡ଼ିକୁ ଦୁଇଟି ପଟିରେ [ଜମିର ଏକ ମାପ] ସୀମିତ ରଖି – ଭରଦ୍ୱାଜ ଗୋତ୍ର ସମ୍ଭୂତ, ପୁନି ନିବାସୀ ଛାନ୍ଦୋଗ୍ୟସୂତ୍ର ଅଭ୍ୟାସକାରୀ, ସେଚ୍ଚିଙ୍ଗା ସୋମଯଜ୍ଞୀ [ସୋମଯଜ୍ଞ କରୁଥିବା ସେଚ୍ଚିରଙ୍ଗା] ଙ୍କୁ ବ୍ରହ୍ମଦେୟ ପ୍ରଦାନାର୍ଥେ ଆମେ ବାସିନ୍ଦାମାନେ ନାଡୁ [ଜିଲ୍ଲା] ର ମୁଖିଆ ନିର୍ଦ୍ଦେଶ କରିବା ମୁତାବକ ସୀମା ଆଡ଼କୁ ଗଲୁ, ଗ୍ରାମକୁ ଦକ୍ଷିଣର ବାମକୁ ପ୍ରଦକ୍ଷିଣ କଲୁ, ସିଝୁବୁଦା (milk bush) ରୋପଣ କଲୁ ଏବଂ ତା ଚାରିପାଖରେ ପଥର ରଖିଲୁ । ଏହି ଗ୍ରାମର ସୀମାଗୁଡ଼ିକ ହେଲା ନିମ୍ନ ପ୍ରକାରର । ପୂର୍ବସୀମା ପାଲାୟୁରର ପଶ୍ଚିମ ସୀମାରେ ଅବସ୍ଥିତ । ପଶ୍ଚିମ ସୀମା ମାନାରପକ୍କମଙ୍କର ପଶ୍ଚିମ ସୀମା ଏବଂ କୋଲିପକ୍କମଙ୍କ ସୀମାବର୍ତ୍ତୀ ଅଟେ । ଉତ୍ତର ସୀମା ଭେଲିମାନାଲୁରଙ୍କ ଦକ୍ଷିଣ ସୀମାକୁ ଲାଗି ରହିଅଛି । ଦାନଗ୍ରହୀତା ଏହି ଚାରି ସୀମା ମଧ୍ୟରେ ଅବସ୍ଥିତ ଖାଲଜମି ଏବଂ ଡିପଜମି ଉପଭୋଗ କରିବେ । ଯେଉଁଠି ଏଣ୍ଡୁଅମାନେ ଦୌଡ଼ନ୍ତି ଏବଂ କଇଁଛ ଘୁଷୁଡ଼େ ତାକୁ ଉପଭୋଗ କରିବେ । ଦାନଗ୍ରହୀତା ସେୟାରୁ, ଭେକା ଏବଂ ତିରାଇୟାନ୍ ପୁଷ୍କରିଣୀରୁ ଜଳ ପାଇବା ଲାଗି ନଦୀ ପ୍ରଣାଳୀ ଏବଂ ପ୍ଲବନ ପ୍ରଣାଳୀମାନ ଖୋଳାଇବା ଲାଗି ଅନୁମତି ପ୍ରାପ୍ତ ହେବେ । ଯେଉଁମାନେ ବଡ଼ ଜଳପାତ୍ରରେ ଏଥିରୁ ପାଣି ନେଇ ବ୍ୟବହାର କରିବେ ବା ଶାଖା ପ୍ରଣାଳୀ ମାଧ୍ୟମରେ ବା ଉତ୍ତୋଳକ ସହାୟତାରେ ପାଣି ନେଇ ବ୍ୟବହାର କରିବେ ରାଜା ସେମାନଙ୍କଠାରୁ ଜୋରିମାନା ଆଦାୟ କରିପାରିବେ । ସେ [ଦାନଗ୍ରହୀତା] ଏବଂ ତାଙ୍କର ଉତ୍ତରାଧିକାରୀମାନେ ଘର, ବଗିଚା ଇତ୍ୟାଦି ଉପଭୋଗ କରିପାରିବେ ଏବଂ ପୋଡ଼ା ଖପରରେ ଘର ତଥା ଦୀର୍ଘ କକ୍ଷ ନିର୍ମାଣ କରିପାରିବେ । ଏହି ସୀମାବର୍ତ୍ତୀ ଜମିକୁ ଆମେ ନିଷ୍କର ରୂପେ ଦାନ କରୁଅଛୁ । ସେ କରମୁକ୍ତ ଭାବରେ ଏ ଗ୍ରାମରେ ଉପଲବ୍ଧ ସବୁ ସୁବିଧା ଉପଭୋଗ କରିପାରିବେ । ତେଲକଳ, ତନ୍ତ, କୂପ ଖନନକାରୀଙ୍କ ଦେୟ, ରାଜାଙ୍କ ଦେୟ, ବ୍ରାହ୍ମଣଙ୍କ ଦେୟ, ସେନ୍‌ଗୋଡ଼ି [ଏକ ବୃକ୍ଷ ବିଶେଷ] ଦେୟ, କଲ୍ଲୁର ଦେୟ, କାନିକ୍କୁ ଦେୟ, ଶସ୍ୟ ଦେୟ, ମୁଖିଆଙ୍କ ଭାଗ, କୁମ୍ଭକାରଙ୍କ ଦେୟ, ଧାନ ଉଡ଼ାଇବା ଦେୟ, ଘିଅର ମୂଲ୍ୟ, ଲୁଗାପଟାର ମୂଲ୍ୟ, ଶିକାରୀ, ବାର୍ତ୍ତାବହ, ନର୍ତ୍ତକୀଙ୍କ ପାଇଁ ଦେୟ, ଶ୍ରେଷ୍ଠ ଗାଈ ଓ ଉତ୍ତମ ଷଣ୍ଢଙ୍କ ଲାଗି ଦେୟ, ଜିଲ୍ଲା ଦେୟ, ତୁଳା ସୂତା, ଚାକର, ତାଳଗୁଡ଼ ଦେୟ, ମନ୍ତ୍ରୀ ଓ ଲେଖାକାରଙ୍କ ଜୋରିମାନା, ଜଳ-କଇଁ ଲଗାଇବାର ଟିକସ, କଇଁର ଭାଗ, ବିଭିନ୍ନ ପ୍ରକାର ପୁରୁଣା ଗଛର ଗଣ୍ଠିର ଚୌଠ ଦେୟ ଏବଂ ଗୁଆ, ତାଳ, ନଡ଼ିଆ ଗଛ, ଯାହା ପୁରୁଣା, ତା'

*ପାଇଁ ଦେୟ ଇତ୍ୟାଦି ତାଙ୍କୁ ଦେବାକୁ ପଡ଼ିବ ନାହିଁ । ଏହି ଅନୁଦାନ ସ୍ଥାନୀୟ କର୍ତ୍ତୃପକ୍ଷ, ମନ୍ତ୍ରୀ ଏବଂ ସଚିବଙ୍କ ଉପସ୍ଥିତିରେ ପ୍ରଦତ୍ତ ହେଲା ।''*

(Kasakkudi Plates of Nandivarman, Tr. E. Hultzsch,
*South Indian Inscriptions*, 11.3, pp. 360 ff.)

ଏହି ବ୍ୟବସ୍ଥାରେ ବ୍ରାହ୍ମଣମାନଙ୍କର କାର୍ଯ୍ୟ କେବଳ ଆଳଙ୍କାରିକ ଭାବେ କର୍ମକାଣ୍ଡ କରିବାରେ ସୀମିତ ନ ଥିଲା । ଏହା ବାହାରେ ବ୍ରାହ୍ମଣ ଅନୁଦାନଗ୍ରହିତାମାନେ ବାସିନ୍ଦା, ଉପନିବେଶ ସ୍ଥାପନକାରୀ, ପୁଞ୍ଜି ନିବେଶକର ଭୂମିକା ତୁଲାଉଥିଲେ । ଅନୁଦାନ ଅନୁସାରେ ଏହିସବୁ ଭୂମିକାମାନ ସ୍ୱାଭାବିକ ଥିଲେ ମଧ୍ୟ ସବୁ ସମୟରେ ଏଗୁଡ଼ିକୁ ଚିହ୍ନଟ କରି ହେଉ ନ ଥିଲା । ବ୍ରାହ୍ମଣ ବସତି ଏବଂ ତା'ର ନିକଟରେ ଗଢ଼ିଉଠିଥିବା ମନ୍ଦିର ମଧ୍ୟ ରାଜ୍ୟର ପ୍ରତିନିଧିର ଭୂମିକା ନିର୍ବାହ କରୁଥିଲା, ଯଦିଓ ସେମାନଙ୍କୁ ରାଜ୍ୟର ଅଧିକାରୀମାନଙ୍କ ସହ ମିଶି ଏକତ୍ର କାମ କରିବାକୁ ହେଉଥିଲା । ସେମାନଙ୍କୁ ଦିଆଯାଇଥିବା ଜମି ତଥା ଅନ୍ୟାନ୍ୟ ସମ୍ବଳଗୁଡ଼ିକର କାର୍ଯ୍ୟଗୁଡ଼ିକ ସଂଗଠିତ କରିବାରେ ସେମାନେ ଏକ ପ୍ରଶାସନିକ ଉପସଂରଚନାର ଭୂମିକା ତୁଲାଉଥିଲେ । ରାଜ ପ୍ରଶାସନ ବହୁବିଧ ଅର୍ଥବ୍ୟବସ୍ଥା ମଧ୍ୟରେ ସଂହତି ସ୍ଥାପନ କରି ତାକୁ କୃଷିଭିତ୍ତିକ ଅର୍ଥବ୍ୟବସ୍ଥାରେ ପରିଣତ ଅନୁଦାନ ପ୍ରସୂତ କୃଷି ଅର୍ଥବ୍ୟବସ୍ଥାକୁ ଏହି ପ୍ରକ୍ରିୟାରେ ସହାୟତା କରୁଥିଲେ । ଦାନଗ୍ରହୀତାମାନେ ରାଜସ୍ୱ ସଂଗ୍ରହ କରୁଥିଲେ ଏବଂ କୃଷିର ପୁନଃ ସଂପ୍ରସାରଣକୁ ପ୍ରୋତ୍ସାହିତ କରୁଥିଲେ । ଏଥିମଧ୍ୟରୁ କେତେକ ମଧ୍ୟ ରାଜ୍ୟକୁ ରାଜସ୍ୱ ପ୍ରଦାନ କରୁଥିଲେ । ଏଥିସହିତ ସେମାନେ ଜଳସେଚନର ଯଥାରୀତି ପରିଚାଳନାର ଦାୟିତ୍ୱ ନେଉଥିଲେ – ବିଶେଷତଃ ପୁଷ୍କରିଣୀ, କୂଅ ଏବଂ ପ୍ରଣାଳୀଗୁଡ଼ିକର ରକ୍ଷଣାବେକ୍ଷଣ ସ୍ଥାନୀୟ ଗ୍ରାମସଭା ଦ୍ୱାରା କରାଯାଉଥିଲା ।

ଆଦର୍ଶଗତ ଦିଗରୁ ବ୍ରାହ୍ମଣ୍ୟବାଦର ଅନୁଚିନ୍ତନ ତଥା ବ୍ରାହ୍ମଣର ଭୂମିକା ଥିଲା ଶାସକ ବଂଶକୁ ବୈଧତା ପ୍ରଦାନ କରିବା ମାଧ୍ୟମରେ ରାଜତନ୍ତ୍ରର ଦୃଢ଼ୀକରଣ, ସ୍ଥାନବିଶେଷରେ ରାଜପରିବାର ଉପରେ କ୍ଷତ୍ରିୟ ମାନ୍ୟତା ଆରୋପଣ ତଥା ଉପସ୍ଥିତ ସାମାଜିକ ଗୋଷ୍ଠୀକୁ ଜାତିଗତ ମାନ୍ୟତା ପ୍ରଦାନ । ଯେତେ ଯେତେ କ୍ଷେତ୍ରରେ ରାଜବଂଶଗୁଡ଼ିକ ବ୍ରହ୍ମକ୍ଷାତ୍ର ମୂଳ ସମ୍ଭୂତ ବୋଲି ଦାବି କରିଛନ୍ତି ସେଥିରୁ ଏହି କାଳଖଣ୍ଡରେ ଉପଦ୍ୱୀପରେ ରାଜନୈତିକ କ୍ଷମତା ଏବଂ ବ୍ରାହ୍ମଣ୍ୟ ଅନୁଚିନ୍ତାର ସହାବସ୍ଥାନର ସୂଚନା ମିଳେ । ଧୀରେ ଧୀରେ ବ୍ରାହ୍ମଣ ଏବଂ ଅଣବ୍ରାହ୍ମଣ ମାନ୍ୟତା ଏ ଅଞ୍ଚଳରେ ବର୍ଗୀକରଣର ମୂଳାଧାର ହେଲା । ଭିନ୍ନ ଭିନ୍ନ ମାନ୍ୟତାର ଏକତ୍ର ସହାବସ୍ଥାନ ଲାଗି ଏହା ବର୍ଣ୍ଣ ସଂଗଠନର ବିଧିବିଧାନକୁ ମୂଳ ବୋଲି ଧରିଥିଲା । ଅବଶ୍ୟ ଏହା ଚତୁର୍ଦ୍ଧା ବିଭକ୍ତ ବର୍ଣ୍ଣ ବ୍ୟବସ୍ଥାର ଧ୍ରୁବୀକରଣ କରିପାରୁ ନ ଥିଲା । ଉଚ୍ଚ ମାନ୍ୟତା ହାସଲ କରିବାର ଅନ୍ୟାନ୍ୟ ମାର୍ଗ ସବୁ ମଧ୍ୟ ଥିଲା । ଉଦାହରଣ ସ୍ୱରୂପ,

ଯୁଦ୍ଧରେ କିମ୍ବା ଗ୍ରାମକୁ ସୁରକ୍ଷା ପ୍ରଦାନ କରି ଜଣେ ବୀରର ମୃତ୍ୟୁ ହେଲେ ତାଙ୍କ ଆତ୍ମୀୟ ସ୍ୱଜନ ମାନ୍ୟତା ଏବଂ ଭୂମି ଦାବି କରିପାରୁଥିଲେ ।

କୃଷିର ବିସ୍ତାର ଫଳରେ ପଶୁ ପାଳନ ଭଳି କାର୍ଯ୍ୟ ଯେ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ତାହା ନୁହେଁ । ନିର୍ଦ୍ଦିଷ୍ଟ ଅଞ୍ଚଳରେ ଗୋପାଳନ ଏକ ମୁଖ୍ୟ କାର୍ଯ୍ୟ ଥିଲା, ଏକଥା ପୂର୍ବକାଳର 'ବୀରଗଲ' (ବୀରପଥର)ରୁ ସୂଚିତ ହୁଏ । ଲୋକମାନେ ଆକ୍ରମଣକାରୀ ପଶୁ ବା ମଣିଷଙ୍କ କବଳରୁ ଗୋରୁମାନଙ୍କୁ ସୁରକ୍ଷା ପ୍ରଦାନ କରୁଥିବା କଥା ଏଥିରୁ ସୂଚିତ ହୁଏ ଏବଂ ଏହା ଏକ ସ୍ମାରକୀ ରୂପେ ମଧ୍ୟ କାର୍ଯ୍ୟ କରେ । ଏ ପ୍ରକାରର ବର୍ଣ୍ଣନା ପ୍ରଥମ ପର୍ଯ୍ୟାୟରେ ଏକ ସରଳ ଉପସ୍ଥାପନ ପରି ମନେହେଲା । ମାତ୍ର ସହସ୍ରାବ୍ଦୀର ଶେଷବେଳକୁ ଏହା ବିସ୍ତୃତ ଓ ବ୍ୟାପକ ହୋଇଉଠିଲା । ବାରମ୍ବାର ଆକ୍ରମଣର କଥା ବର୍ଣ୍ଣନା କରାଗଲା, ଯେଉଁ କ୍ଷେତ୍ରରେ ଗ୍ରାମବାସୀଙ୍କ ପ୍ରଚେଷ୍ଟା ମାଧ୍ୟମରେ ହିଁ ଆକ୍ରମଣର ପ୍ରତିରୋଧ କରାଯାଉଥିଲା । ଗୋଟିଏ ଗ୍ରାମ ନିଜର ସମ୍ବଳ ବିନିଯୋଗ ପୂର୍ବକ ନିଜକୁ ସୁରକ୍ଷା ପ୍ରଦାନ କରିବା କଥାରୁ ସେ ସମୟରେ ବିକେନ୍ଦ୍ରିତ ପ୍ରଶାସନ ଥିବା କଥା ଜଣାଯାଏ । ପ୍ରଥମ ସହସ୍ରାବ୍ଦୀର ବିଳମ୍ବିତ ଭାଗରେ ଏ ପ୍ରକାରର ପଥର ବହୁଭାବେ ସ୍ଥାପିତ ହୋଇଥିବା କଥା ପରିଲକ୍ଷିତ ହୁଏ । ନିରୋଳା ଅଞ୍ଚଳରେ ଗୋଟିକିଆ ସ୍ମାରକୀ ପଥର ଦୃଷ୍ଟିଗୋଚର ହୁଏ ଯେଉଁଥିରେ ଜଣେ ଯୋଦ୍ଧା ଠିଆ ହୋଇଥିବାର କିମ୍ବା ଘୋଡ଼ା ସହିତ ଥିବାର ଦୃଶ୍ୟ ଥାଏ । ଯେଉଁଠି ଏହିପରି ଅନେକ ସ୍ମାରକ ଦେଖାଯାଏ ସେ କ୍ଷେତ୍ରରେ ସେଗୁଡ଼ିକୁ ଗ୍ରାମର ପରିସର ଭିତରକୁ ଅଣାଯାଇଥିବା କିମ୍ବା ଉଚ୍ଚ ଜାତିର ଲୋକେ ବ୍ୟବହାର କରୁଥିବା ମନ୍ଦିର ନିକଟକୁ ଅଣାଯାଇଥିବା ଜଣାଯାଏ । କେତେକ ସ୍ମାରକୀରେ ସଂଘର୍ଷରେ ମୃତ୍ୟୁବରଣ କରିଥିବା ବୀରମାନଙ୍କୁ ପ୍ରଶଂସା କରାଯାଇଛି । ମାତ୍ର ବୀରତ୍ୱ ଧୀରେ ଧୀରେ କେବଳ ରକ୍ଷଣାତ୍ମକ କାର୍ଯ୍ୟରେ ସୀମିତ ରହିଛି । ସେଗୁଡ଼ିକ ସୀମାନ୍ତ ଅଞ୍ଚଳରେ, ଯଥା ଜଙ୍ଗଲ ଜମି କ୍ଷେତ୍ରରେ, ବେଶି ଘଟୁଥିଲା ଯେଉଁଠି ରାଜ୍ୟର ଶକ୍ତି ଟିକେ ଦୁର୍ବଳ । କୃଷି ଦିଗରୁ ଉର୍ବର ଅଞ୍ଚଳରେ ବୀରଗଲ ବା ବୀରପଥରର ସଂଖ୍ୟା କମ୍ । ମହାରାଷ୍ଟ୍ର ଏବଂ କର୍ଣ୍ଣାଟକର ଅର୍ଦ୍ଧଶୁଷ୍କ ଅଞ୍ଚଳମାନଙ୍କରେ ଗୋ-ସମ୍ପଦ ଉପରେ ଆକ୍ରମଣକୁ ବାରମ୍ବାର ପ୍ରତିହତ କରିବାକୁ ପଡୁଥିଲା । ଏହି ଆକ୍ରମଣରେ କୃଷି ବସତି ମାଧ୍ୟମରେ ଜଙ୍ଗଲ ଲୋକେ ବିଚ୍ଛିନ୍ନ ହୋଇପଡୁଥିବା କଥା ପ୍ରତିଫଳିତ ହୋଇଥାଇ ପାରେ । ଗୋଆ ଭଳି ଉପକୂଳୀୟ ଅଞ୍ଚଳରେ ସାମୁଦ୍ରିକ ସଂଘର୍ଷର ଅବତାରଣା ଦସ୍ୟୁମାନଙ୍କ ଆକ୍ରମଣ ସମ୍ପର୍କରେ ସୂଚନା ପ୍ରଦାନ କରେ ।

ବୀରଗଲ ବା ବୀରପଥରର ସଜ୍ଜୀକରଣରେ ଗୋଟିକିଆ ଆୟତାକାର (panel) ଅଂଶ ତିନି ବା ଚାରିଟି ଆୟତାକାର ଅଂଶ ଦ୍ୱାରା ବିସ୍ଥାପିତ ହେଉଥିଲା । ସବା ଉପରେ ଥିବା ଆୟତାକାର ଅଂଶ ବୀରଙ୍କର ସଂପ୍ରଦାୟର ପ୍ରତୀକକୁ ସୂଚାଉଥିଲା । ଶୈବମାନଙ୍କ

ଲାଗି ପ୍ରତୀକ ଥିଲା ଶିବଙ୍କ ପୁତ୍ର କାର୍ତ୍ତିକେୟଙ୍କ ମୂର୍ତ୍ତି, ଲିଙ୍ଗ ଏବଂ ଯୋନି; ଜୈନମାନଙ୍କ ଲାଗି ମହାବୀରଙ୍କର ଏକ କ୍ଷୁଦ୍ର ମୂର୍ତ୍ତି । ସର୍ବତ୍ର ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କର ମୂର୍ତ୍ତି ରହୁଥିଲା ଯାହା ଚିରନ୍ତନତାର ପ୍ରତୀକ ଥିଲା । ପରବର୍ତ୍ତୀ ଆୟତାକାର ଅଂଶ ବା ପାନେଲ୍‌ରେ ବୀରଙ୍କୁ ଦିଆଯାଇଥିବା ପ୍ରତିଶ୍ରୁତି ପାଳନର କଥା ରହୁଥିଲା । ଏହି ପ୍ରତିଶ୍ରୁତି ହେଉଛି ଅପ୍‌ସରାମାନଙ୍କ ଦ୍ୱାରା ତାଙ୍କୁ ଅମରାବତୀକୁ ନିଆଯିବା । ସବାତଳ ଆୟତାକାର ଅଂଶରେ ଯେଉଁ ଘଟଣାରୁ ବୀରଙ୍କର ମୃତ୍ୟୁ ଘଟିଛି ତା'ର ବର୍ଣ୍ଣନା ରହୁଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ ବୀରଙ୍କର ପତ୍ନୀ ସ୍ୱାମୀଙ୍କ ଚିତାରେ ଝାସ ଦେଇ ସତୀ ହେବାକୁ ଚାହୁଁଥିଲେ, ସେତେବେଳେ ତାଙ୍କର ମୃତ୍ୟୁକୁ ମଧ୍ୟ ଏକ ସ୍ମାରକୀ ମାଧ୍ୟମରେ ଗରିମା ମଣ୍ଡିତ କରାଯାଉଥିଲା । ଆୟତାକାର ପଥରଖଣ୍ଡ ଉପରେ ଖୋଦିତ ସ୍ଥାପତ୍ୟ ଅତି ସରଳ ଥିଲା । ସେଠାରେ ସାଧାରଣତଃ ଚୁଡ଼ି ସମନ୍ୱିତ ଡାହାଣ ହାତ ଖୋଦିତ ହେଉଥିଲା । ଯାହା ଥିଲା ବିବାହର ପ୍ରତୀକ । ରାଜକୀୟ ସୈନ୍ୟବାହିନୀ ଦ୍ୱାରା ସୁରକ୍ଷା ପାଉ ନ ଥିବା ବସତିଗୁଡ଼ିକରେ ଏକ ନାୟକୀୟ ପରମ୍ପରାର ଅଭ୍ୟାସ ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା ।

ରାଜାଙ୍କ ରାଜସ୍ୱର କିଛି ଭାଗ ସୈନ୍ୟବାହିନୀ ଲାଗି ଖର୍ଚ୍ଚ କରାଯାଉଥିଲା । ରାଜାଙ୍କ ସୈନ୍ୟବାହିନୀ ସହିତ ଆଉ ଏକ ଶୁଳ୍କ ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ସୈନ୍ୟବାହିନୀରେ ସାଧାରଣତଃ ପଦାତିକ ସୈନ୍ୟ, ଅଶ୍ୱାରୋହୀ ଏବଂ ଏକ ଗଜାରୋହୀ ରହୁଥିଲେ । ଅଶ୍ୱାରୋହୀ ବାହିନୀର ରକ୍ଷଣାବେକ୍ଷଣ ବ୍ୟୟବହୁଳ ଥିଲା । ସହଜରେ ଘୋଡ଼ା ମିଳୁ ନ ଥିବାରୁ ଏବଂ ଉତ୍ତର ଭାରତ ବା ପଶ୍ଚିମ ଏସିଆରୁ ଘୋଡ଼ା ଆମଦାନୀ କରିବା ବ୍ୟୟସାପେକ୍ଷ ହୋଇଥିବାରୁ ଏପରି ସମସ୍ୟା ଉପୁଜୁଥିଲା । ପଲ୍ଲବମାନେ ନାଗାପଟ୍ଟନମ୍‌ଠାରେ ପୋତାଶ୍ରୟ ନିର୍ମାଣ କରିଥିଲେ । ସେମାନେ ଏକ ନୌବାହିନୀର ବିକାଶ ଘଟାଇଥିଲେ ଏହାକୁ ନିର୍ବିଚାରରେ ଦକ୍ଷିଣ ଭାରତର ପରବର୍ତ୍ତୀ ସମୟରେ ଚୋଳଯୁଗର ନୌସାମର୍ଥ୍ୟ ସହ ତୁଳନା କରାଯାଇଛି । ମହାବଲୀପୁରମ୍‌ରେ ନିକଟରେ ଆବିଷ୍କୃତ ସମ୍ଭାବ୍ୟ ନୌଘାଟି ମଧ୍ୟ ଜଳପଥର କାର୍ଯ୍ୟକଳାପ ସମ୍ପର୍କରେ ସୂଚନା ଦିଏ ।

ଦକ୍ଷିଣପୂର୍ବ ଏସିଆ ସହ ଚାଲିଥିବା ନୌବାଣିଜ୍ୟରେ ନୌବାହିନୀ ସହାୟତା କରୁଥିଲା । ଏତେବେଳକୁ ସେଠାରେ କମ୍ବୁଜ ଏବଂ ଫୁନାନ୍ (କାମ୍ବୋଡ଼ିଆ); ଚମ୍ପା (ଭିଏତ୍‌ନାମ୍); ଏବଂ ଶ୍ରୀବିଜୟ (ଦକ୍ଷିଣ ମାଳୟ ଉପଦ୍ୱୀପ, ଜାଭା ଏବଂ ସୁମାତ୍ରା) ଇତ୍ୟାଦି ଅନେକ ରାଜ୍ୟ ଥିଲା । ଏଗୁଡ଼ିକ ସମସ୍ତେ ଭାରତ ସହିତ ଯୋଗାଯୋଗ ରକ୍ଷା କରିଥିଲେ ଏବଂ ଦକ୍ଷିଣ ଭାରତୀୟ ବଣିକମାନଙ୍କର ବାଣିଜ୍ୟପଥ ସମ୍ପର୍କରେ ମଧ୍ୟ ଅବଗତ ଥିଲେ । ପଶ୍ଚିମ ଉପକୂଳରେ ମୁଖ୍ୟତଃ ଆରବମାନଙ୍କ ଭଳି ମଧ୍ୟବର୍ତ୍ତୀ ବଣିକମାନଙ୍କ ଦ୍ୱାରା ଧୀରେ

ଧୀରେ ନୌବାଣିଜ୍ୟର ସୂତ୍ରପାତ ଘଟିଥିଲା । ଧୀରେ ଧୀରେ ଭାରତୀୟ ବଣିକମାନେ ପଣ୍ୟଦ୍ରବ୍ୟଗୁଡ଼ିକୁ ପଶ୍ଚିମରେ ଥିବା ଦେଶମାନଙ୍କୁ ବହନକାରୀ ରୂପେ ପହଞ୍ଚାଇବା ପରିବର୍ତ୍ତେ ଯୋଗାଣକାରୀରେ ପରିଣତ ହେଲେ । ତେବେ ଦକ୍ଷିଣପୂର୍ବ ଏସିଆ ସହ ସାଂସ୍କୃତିକ ଯୋଗାଯୋଗ ଯେ କେବଳ ଜାରି ରହିଲା ତାହା ନୁହେଁ, ବରଂ ବୃଦ୍ଧି ପାଇଲା ।

ବାଣିଜ୍ୟ ଚାଲୁ ରହିବା ଦ୍ୱାରା ନଗରୀକରଣକୁ ପ୍ରୋତ୍ସାହନ ମିଳିଲା । ଉପକୂଳୀୟ ଅଞ୍ଚଳରେ ନୌବାଣିଜ୍ୟ ସମେତ ଉପଦ୍ୱୀପର ଆଭ୍ୟନ୍ତରୀଣ ଅଞ୍ଚଳରେ ବାଣିଜ୍ୟିକ ଅନୁବନ୍ଧନ ସୃଷ୍ଟି ହେଲା । ଗାଙ୍ଗେୟ ସମତଳର ନଗରୀଗୁଡ଼ିକ ସ୍ୱଳ୍ପକାଳ ଲାଗି ଅବକ୍ଷୟମୁଖୀ ହୋଇଥିଲେ, ମାତ୍ର ଅନ୍ୟାନ୍ୟ ଅଞ୍ଚଳର ନଗରଗୁଡ଼ିକରେ ବାଣିଜ୍ୟ ଭଲଭାବେ ଚାଲୁଥିଲା । ପୂର୍ବବର୍ତ୍ତୀ ସମୟରେ ଭାରତୀୟ ବନ୍ଦରରେ ପହଞ୍ଚୁଥିବା କେତେକ ଦ୍ରବ୍ୟକୁ ଉପହାର ବିନିମୟ ଆକାରରେ ବ୍ୟବହାର କରାଯାଉଥିଲା । ଏହା ସର୍ଦ୍ଦାରତନ୍ତ୍ର ପାଇଁ ଆବଶ୍ୟକ ଥିଲା । କୃଷି ଏବଂ ବାଣିଜ୍ୟ ରାଜସ୍ୱ ଆଧାରରେ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ସମ୍ଭବତଃ ଉପହାର ବିନିମୟର ଭୂମିକାକୁ ସୀମିତ କରିଦେଲା । ସମ୍ପଦର ଅଭିବୃଦ୍ଧି ଏବଂ ତା'ର ବର୍ଗୀକରଣ ଫଳରେ ଜଣାଗଲା ଯେ ଉପହାର ପରିବର୍ତ୍ତେ ବାଣିଜ୍ୟ ମାଧ୍ୟମରେ ହିଁ ବିନିମୟ ସମ୍ଭବ ହୋଇଥାଏ ।

ପୂର୍ବରୁ ଉପଦ୍ୱୀପର ଦୁଇ ପ୍ରମୁଖ ଅଞ୍ଚଳ, ଦାକ୍ଷିଣାତ୍ୟ ଏବଂ ଦକ୍ଷିଣ, ଭିତରେ ପ୍ରଭେଦ ଥିଲା । ଦାକ୍ଷିଣାତ୍ୟରୁ ମିଳିଥିବା ଦେବୋଦ୍ଦେଶ୍ୟରେ ସମର୍ପିତ ଅଭିଲେଖରୁ କାରିଗର, ବଣିକଶ୍ରେଣୀ, ବେପାରୀ ଏବଂ ଜମିମାଲିକମାନଙ୍କ ସମ୍ପର୍କରେ ସୂଚନା ମିଳିଥାଏ । ଅନ୍ୟପକ୍ଷରେ ତାମିଲ ବ୍ରାହ୍ମୀ ଅଭିଲେଖରୁ ବ୍ୟକ୍ତିଗତ ତଥା ବଣିକମାନଙ୍କ ଦାନ ସମ୍ପର୍କରେ ସୂଚନା ମିଳେ । ଏଥିରେ ଜମିମାଲିକମାନଙ୍କର ଦାନ ସମ୍ବନ୍ଧରେ କ୍ୱଚିତ ସୂଚନା ଦିଆଯାଇଛି । ଯେତେବେଳେ ଜମି ଆର୍ଥିକ ସ୍ଥିତିର ଏକ ଗୁରୁତ୍ୱପୂର୍ଣ୍ଣ କାରକ ହେଲା, ସେତେବେଳେ ଏହି ପରିବର୍ତ୍ତନ ଭଲଭାବେ ପରିଲକ୍ଷିତ ହେଲା ।

ଦାକ୍ଷିଣାତ୍ୟ ଅଭିଲେଖରେ ଅନେକଗୁଡ଼ିଏ ସହରର କଥା ଲିପିବଦ୍ଧ ହୋଇଛି । ସେଗୁଡ଼ିକ ମଧ୍ୟରୁ ବନବାସୀ, କୋହ୍ଲାପୁର, ବାତାପି ଆଇହୋଲ୍, ପଟ୍ଟଦାକଲ୍ ଏବଂ ଶ୍ରବଣ ବେଲଗୋଲା ଗୁରୁତ୍ୱପୂର୍ଣ୍ଣ । ପୁଲିଗେର ଭଳି କେତେକ ସ୍ଥାନ ମୂଳତଃ ସାମରିକ ଶିବିର ଥିଲା ଯାହା କାଳକ୍ରମେ ପ୍ରଶାସନିକ ଏବଂ ବାଣିଜ୍ୟ କେନ୍ଦ୍ରରେ ପରିଣତ ହେଲା । ଅନ୍ୟଗୁଡ଼ିକ ଆରମ୍ଭରୁ ପ୍ରଶାସନିକ କେନ୍ଦ୍ର ଥିଲେ ଅଥବା ସ୍ଥାନୀୟ ଧାର୍ମିକ କାର୍ଯ୍ୟକଳାପର କେନ୍ଦ୍ର ଥିଲେ । ଉଭୟ ପ୍ରକାର ସ୍ଥାନର ନଗର ପରି ଲକ୍ଷଣ ଥିଲା ଏବଂ ସେମାନଙ୍କ ମଧ୍ୟରେ ଏକ ବିନିମୟୀ ସମ୍ପର୍କ ମଧ୍ୟ ଥିଲା । ଟଙ୍କାପଇସା ନେଣଦେଣ ସମ୍ପର୍କରେ ବିବରଣୀ ଅଛି, ହେଲେ ଅଧିକ ସଂଖ୍ୟାରେ ମୁଦ୍ରା ତିଆରି ହେଉ ନ ଥିବା ଜଣାପଡ଼ିଛି । ସମ୍ଭବତଃ କୃଷିର ଅଧିକ ସଂପ୍ରସାରଣ

ଯୋଗୁଁ ଏପରି ଘଟିଥାଇ ପାରେ । ଏହି ସଂପ୍ରସାରଣ ଫଳରେ ବିନିମୟ କେନ୍ଦ୍ରମାନଙ୍କର ଅଭିବୃଦ୍ଧି ସାଧିତ ହୋଇଥାଇ ପାରେ, ଯଦିଓ ତହିଁରେ ସ୍ଥାନୀୟ ଉତ୍ପାଦଗୁଡ଼ିକର ହିଁ ବିନିମୟ କରାଯାଇଥିବ ।

ଶିଳାପଦୀଗରାମ ଏବଂ ମଣିମେଗାଲାଇରେ ନଗର ଜୀବନର ବର୍ଣ୍ଣନା ସହର ଜୀବନର ଗୁରୁତ୍ୱକୁ ସୂଚାଏ । ପୁହାର, ପୁମ୍ପୁହାର ନାମରେ ପରିଚିତ କାବେରୀପଟ୍ଟନମ୍ ବନ୍ଦର ଓ ନୌଘାଟି ଭିତ୍ତିକ ଅଞ୍ଚଳ ଥିଲା । ଏଠାରେ ବଣିକମାନେ ବାସ କରୁଥିଲେ ଏବଂ ନଗରର ଏକ ସ୍ୱତନ୍ତ୍ର ଅଞ୍ଚଳରେ ଯବନମାନେ ବାସ କରୁଥିଲେ । ଗ୍ରାମାଞ୍ଚଳରୁ ନୌକା ସାହାଯ୍ୟରେ ପୁହାରକୁ ଧାନ ଅଣାଯାଉଥିଲା । ଧାନ ବିନିମୟରେ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଅଣାଯାଇ କାଞ୍ଚିପୁରମ, ଉରାଇୟୁର ଏବଂ ମଦୁରାଇ ଇତ୍ୟାଦି ଅନ୍ତର୍ଦ୍ଦେଶୀୟ ବିପଣନ କେନ୍ଦ୍ରଗୁଡ଼ିକୁ ପଠାଯାଉଥିଲା । ପୁହାରର ବାଣିଜ୍ୟିକ ଉତ୍ପାଦନ ଅନ୍ୟାନ୍ୟ ସ୍ଥାନଗୁଡ଼ିକର ସମ୍ବଳ ସହ ମଧ୍ୟ ଜଡ଼ିତ ଥିଲା । ପାଲଘାଟରୁ ବୈଦୁର୍ଯ୍ୟ (beryl), ଆହୁରି ଦକ୍ଷିଣାଞ୍ଚଳରୁ ମୋତି, ଅନ୍ତର୍ଦ୍ଦେଶୀୟ ଜଙ୍ଗଲରୁ ଚନ୍ଦନକାଠ, ଶିଶୁକାଠ ଏବଂ ଅନ୍ୟାନ୍ୟ କେନ୍ଦ୍ରଗୁଡ଼ିକରୁ ବୟନ ଦ୍ରବ୍ୟ ଇତ୍ୟାଦି ଆସୁଥିଲା । ପୁହାର ସ୍ୱଚ୍ଛଳ ଜୀବନଶୈଳୀ ସମ୍ପନ୍ନ ଏକ ପ୍ରାଣଚଞ୍ଚଳ ସହର ଥିଲା ।

## ସାହିତ୍ୟିକ ସଂସ୍କୃତି

ଏହି ସମୟର ଆଦ୍ୟ ଭାଗରେ ଜୈନ ଏବଂ ବୌଦ୍ଧମାନଙ୍କ ଦ୍ୱାରା ଶିକ୍ଷା ପ୍ରଦାନ କରାଯାଉଥିଲା । ସେମାନଙ୍କ ଶିକ୍ଷା ନଗର ଜୀବନକୁ ଆଚ୍ଛନ୍ନ କରି ରଖିଥିଲା । ତେବେ ଧୀରେ ଧୀରେ ବ୍ରାହ୍ମଣମାନେ ସେମାନଙ୍କୁ ଟପିଗଲେ । ଜୈନମାନଙ୍କର 'ଆଦିପୁରାଣ' ଓ 'ଯଶତିଳକ' ପରି ସଂସ୍କୃତରେ ରଚିତ ଧାର୍ମିକ ସାହିତ୍ୟ ଥିଲା । ସେମାନେ ପ୍ରାକୃତ ବ୍ୟବହାର କରୁଥିଲେ ଏବଂ ପରେ ତାମିଲ୍ ମଧ୍ୟ ବ୍ୟବହାର କଲେ । ସେମାନେ ଧାର୍ମିକ ଶିକ୍ଷା ସମେତ ନୂତନ ଶିକ୍ଷା ପ୍ରଦାନ ଲାଗି ମଦୁରାଇ, କାଞ୍ଚିପୁରମ୍ ଏବଂ ଶ୍ରବଣ ବେଲଗୋଲା ଇତ୍ୟାଦି ସ୍ଥାନରେ କେତେକ କେନ୍ଦ୍ର ବିକଶିତ କରାଇଲେ । ଅନେକ ଜୈନ ସନ୍ନ୍ୟାସୀ ପାହାଡ଼ର ଗୁମ୍ଫାରେ ଜଙ୍ଗଲରେ ଏକାନ୍ତରେ ନିଜ ନିଜର ସାଧନା କରୁଥିଲେ । ଗୁମ୍ଫା ଭିତରୁ ପଡୁକୋଟାଇର ସୀତାନବସଲ ଗୁମ୍ଫା ବେଶ୍ ସୁନ୍ଦର । ଏଠାରେ ଏକଦା କାନ୍ଥରେ ଅଙ୍କିତ ଚମତ୍କାର ଚିତ୍ରଗୁଡ଼ିକର ଛାପ ଏବେ ମଧ୍ୟ ଦେଖିବାକୁ ମିଳେ । ବୌଦ୍ଧ ଶିକ୍ଷାର କେନ୍ଦ୍ର ଥିଲା ବୌଦ୍ଧବିହାର । ଏହି ବିହାରଗୁଡ଼ିକ କାଞ୍ଚିପୁରମ୍, କୃଷ୍ଣା ଏବଂ ଗୋଦାବରୀ ନଦୀର ଅବବାହିକା ଅଞ୍ଚଳରେ ଅବସ୍ଥିତ ଥିଲା । ଯେହେତୁ ସେ ସମୟରେ ବୌଦ୍ଧ ସମ୍ପ୍ରଦାୟ ଏବଂ ବୈଷ୍ଣବଧର୍ମ

ତଥା ଶୈବଧର୍ମ ମଧ୍ୟରେ ପ୍ରଚଣ୍ଡ ଦ୍ୱନ୍ଦ୍ୱ ଲାଗିରହିଥିଲା, ସେହି କାରଣରୁ ବୌଦ୍ଧ କେନ୍ଦ୍ରଗୁଡ଼ିକରେ ଧର୍ମଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ଆତ୍ମଜ୍ଞାନ ବା ବ୍ରହ୍ମବିଦ୍ୟାର ସୂକ୍ଷ୍ମ ଖିଅଗୁଡ଼ିକ ଉପରେ ଆଲୋଚନା ହେଉଥିଲା । ଏବେଳକୁ ବୌଦ୍ଧମାନେ ରାଜପୃଷ୍ଠପୋଷକତା ହରାଇଥିବାରୁ ଅନ୍ୟମାନେ ସୁବିଧାଜନକ ସ୍ଥିତିରେ ରହୁଥିଲେ । ପୃଷ୍ଠପୋଷକତା ଭଣା ହେବାରୁ ଜୈନଧର୍ମର ଲୋକପ୍ରିୟତା ମଧ୍ୟ ଶୈବଧର୍ମ ତୁଳନାରେ କମିଆସିଲା । ଯେତେବେଳେ ପଲ୍ଲବରାଜା ପ୍ରଥମ ମହେନ୍ଦ୍ରବର୍ମନ୍ ଜୈନଧର୍ମରୁ ଆଗ୍ରହ ତୁଟାଇ ଶୈବଧର୍ମ ଆଡ଼କୁ ଆକୃଷ୍ଟ ହେଲେ, ସେତେବେଳେ ଜୈନମାନେ ବହୁମୂଲ୍ୟ ରାଜକୀୟ ପୃଷ୍ଠପୋଷକତାରୁ ବଞ୍ଚିତ ହେଲେ । ରାଜକୀୟ ପୃଷ୍ଠପୋଷକତାରେ ଏ ପ୍ରକାରର ପରିବର୍ତ୍ତନ ସ୍ୱାଭାବିକ ନ ଥିଲା । କାରଣ ଅଧିକାଂଶ ଶାସକ କୌଶଳରେ ନିଜର ପୃଷ୍ଠପୋଷକତାକୁ ବାଣ୍ଟିବାକୁ ଚାହୁଁଥିଲେ । ତେଣୁ ଏହା କୌଣସି ବ୍ୟକ୍ତିଗତ ଦୁର୍ବଳତା କାରଣରୁ ହୋଇଥାଇପାରେ ଅଥବା ରାଜସମର୍ଥକ ବା ରାଜସ୍ୱ ପ୍ରଦାୟକ ହିସାବରେ ଗୋଟିଏ ଗୋଷ୍ଠୀର ଗୁରୁତ୍ୱ ହ୍ରାସ ଯୋଗୁଁ ହୋଇଥାଇପାରେ ବୋଲି ଅନୁମାନ କରାଯାଏ ।

ଘଟିକା, ମହାବିଦ୍ୟାଳୟ ଏବଂ ବ୍ରାହ୍ମଣ୍ୟ ଆଧାରିତ ଶିକ୍ଷା ଦେଉଥିବା କେନ୍ଦ୍ରଗୁଡ଼ିକ ସାଧାରଣତଃ ମନ୍ଦିର ସହ ଜଡ଼ିତ ଥିଲେ । ଏହି ମହାବିଦ୍ୟାଳୟଗୁଡ଼ିକ ପ୍ରଥମେ ଦ୍ୱିଜ ଜାତିର ଲୋକମାନଙ୍କ ଲାଗି ଉନ୍ମୁକ୍ତ ଥିଲା । ଯଦିଓ କଦବା କେମିତି ବଣିକମାନେ ଏହାକୁ ଅର୍ଥଦାନ କରୁଥିଲେ, ତଥାପି ଏଗୁଡ଼ିକୁ ଉଚ୍ଚଶିକ୍ଷା ପ୍ରଦାନ କରୁଥିବା ବ୍ରାହ୍ମଣ ଅନୁଷ୍ଠାନ ବୋଲି ଧରାଯାଉଥିଲା । ବହୁଳ ରାଜକୀୟ ପୃଷ୍ଠପୋଷକତା ଯୋଗୁଁ ରାଜନୈତିକ କାର୍ଯ୍ୟକଳାପ ଲାଗି ଏଠାରେ ସୁଯୋଗ ସୃଷ୍ଟି ହେଉଥିଲା । ସେ ଦିଗରୁ ଏହି କେନ୍ଦ୍ରଗୁଡ଼ିକ ରାଜତନ୍ତ୍ରଠାରୁ ଅଥବା ରାଜପରିବାରର ଅପ୍ରଭାବିତ ସଭ୍ୟମାନଙ୍କଠାରୁ ସମର୍ଥନ ଲାଭ କରି ରାଜନୈତିକ ବିରୋଧୀମାନଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରୁଥିଲେ । ନାଳନ୍ଦା ତୁଲ୍ୟ ଖ୍ୟାତି ଅର୍ଜିଥିବା କାଞ୍ଚିପୁରମ୍‌ର ମହାବିଦ୍ୟାଳୟ ଏବଂ ବିହାର ବା ମଠଗୁଡ଼ିକ ବ୍ୟତିରେକେ ଆହୁରି ଅନେକ ସଂସ୍କୃତ ମହାବିଦ୍ୟାଳୟ ମଧ୍ୟ ଥିଲା । ଅଷ୍ଟମ ଶତାବ୍ଦୀ ବେଳକୁ ବ୍ରାହ୍ମଣ୍ୟବାଦ ଏବଂ ପୌରାଣିକ ହିନ୍ଦୁଧର୍ମ ଦ୍ୱାରା ସମର୍ଥିତ ମଠଗୁଡ଼ିକ ବୌଦ୍ଧ ଏବଂ ଜୈନ ବିହାରଗୁଡ଼ିକର ସମାନ୍ତରାଳ ଅନୁଷ୍ଠାନ ରୂପେ ପ୍ରତିଷ୍ଠା ପାଇଲେ । ଏଗୁଡ଼ିକ ଥିଲା ଆଶ୍ରୟସ୍ଥଳ, ଖାଦ୍ୟ ବିତରଣ କେନ୍ଦ୍ର, ଶୈକ୍ଷିକ କେନ୍ଦ୍ରର ଏକ ସମାହାର ଏବଂ ଯେଉଁ ନିର୍ଦ୍ଦିଷ୍ଟ ସଂପ୍ରଦାୟ ଏହା ସହ ଜଡ଼ିତ ଥିଲା ତା'ର ପରୋକ୍ଷରେ ଏଠାରେ ପ୍ରଚାର ହିଁ ହେଉଥିଲା । ମଠଗୁଡ଼ିକ ସ୍ୱାଭାବିକ ଭାବେ ଅଧିକ ଉପଯୋଗୀ ହେଉଥିଲେ, କାରଣ ତୀର୍ଥଯାତ୍ରୀମାନେ ସେଠାରେ ଏକତ୍ରିତ ହେଉଥିଲେ ଏବଂ ପ୍ରଭାବଶାଳୀ ଧାର୍ମିକ ଆଲୋଚନା ହେଉଥିଲା ।

ଅନୁଷ୍ଠାନଗୁଡ଼ିକରେ ମାଧ୍ୟମ ରୂପେ ସଂସ୍କୃତ ଭାଷା ବ୍ୟବହୃତ ହେଉଥିଲା ଏବଂ ଅଗ୍ରହାର, ଘଟିକା ତଥା ମଠ ମାଧ୍ୟମରେ ଏହାର ପ୍ରସାର ଘଟୁଥିଲା । ଏହା ମଧ୍ୟ ଦରବାରର ଭାଷା ଥିଲା । ଫଳରେ ଏହାକୁ ସାହିତ୍ୟିକ ପରିମଣ୍ଡଳରେ ବ୍ୟବହାର କରାଗଲା । ଏ ସମୟର ଦୁଇଟି ପ୍ରମୁଖ ସାହିତ୍ୟିକ କୃତି ହେଲା– ମହାଭାରତରୁ ଆନୀତ ଅର୍ଜୁନ ଓ ଶିବଙ୍କ ମଧ୍ୟରେ ହୋଇଥିବା ପ୍ରତିଯୋଗିତା ଆଧାରିତ କାହାଣୀ, ଭାରବୀ ବିରଚିତ 'କୀରାତାର୍ଜୁନୀୟ' ଏବଂ ଅନ୍ୟଟି ଦଣ୍ଡିଙ୍କ 'ଦଶକୁମାର ଚରିତ' । ଦଣ୍ଡିଙ୍କ କାହାଣୀ ଉପମହାଦେଶର କୋଣ ଅନୁକୋଣରେ ସୁପରିଚିତ । ଏଥିରେ ଜୀବନର ସମସ୍ତ ବିଭାବରୁ ସଂଗୃହୀତ ଚରିତ୍ରମାନେ ସନ୍ନିବେଶିତ । ଅତ୍ୟନ୍ତ ବୁଦ୍ଧିମତ୍ତାର ସହ ବର୍ଣ୍ଣିତ ଏହି କାହାଣୀରେ ଅତି ଧାର୍ମିକ ଭାବର ଅନୁପସ୍ଥିତି ସ୍ପଷ୍ଟଭାବେ ପରିଲକ୍ଷିତ ହୁଏ । କିନ୍ତୁ ସଚେତନ ସାହିତ୍ୟିକ ଶ୍ରମ ମଧ୍ୟ ଏକ ପ୍ରସାଧନୀ ସୁଲଭ କାର୍ଯ୍ୟ କରୁଥିଲା । ବସ୍ତୁତଃ ଏହା ଥିଲା ଭାଷା ଉପରେ ନିଜର ଦକ୍ଷତା ପ୍ରଦର୍ଶନରେ ଉତ୍ତମ ଉଦାହରଣ । ବେଳେବେଳେ କବିତାମାନ ଏପରି ରଚିତ ହେଉଥିଲା ଯେ ତାହାକୁ ଏକ ଦିଗରୁ ଏବଂ ତା'ର ବିପରୀତ ଦିଗରୁ ପାଠ କରିହେଉଥିଲା । ଉଭୟପଟୁ ପାଠ କଲେ ଦୁଇ ଭିନ୍ନ ପ୍ରକାରର ଅର୍ଥ ବୁଝାପଡୁଥିଲା । ଉଦାହରଣ ସ୍ୱରୂପ, ଏକ ପାର୍ଶ୍ୱରୁ ଅଧ୍ୟୟନରୁ ରାମାୟଣର କାହାଣୀ ମିଳୁଥିବାବେଳେ ଅନ୍ୟ ପାର୍ଶ୍ୱରୁ ମିଳୁଥିଲା ମହାଭାରତ । ଯେଉଁମାନେ ଏ ଧରଣର ଉଚ୍ଚ ସାହିତ୍ୟିକ ଉତ୍କର୍ଷ ହାସଲ କରିଥିଲେ, ସେମାନେ ଦକ୍ଷିଣର ତାମିଲ, କନ୍ନଡ଼ ଏବଂ ଦାକ୍ଷିଣାତ୍ୟର ତେଲୁଗୁ ଭାଷାର ସାହିତ୍ୟକୁ ହେୟଜ୍ଞାନ କରୁଥିଲେ ।

ଏହି ସମୟରେ କନ୍ନଡ଼ ସାହିତ୍ୟର ଅସ୍ତିତ୍ୱ ବିଷୟରେ ସୂଚନା ମିଳେ । ତେବେ ସେଥିରୁ ବେଶି କିଛି ଅବଶିଷ୍ଟ ନାହିଁ । ବାଦାମୀଠାରୁ ମିଳିଥିବା ସପ୍ତମ ଶତାବ୍ଦୀର ଜଣେ ଚାଲୁକ୍ୟ ରାଜାଙ୍କ ଅଭିଲେଖରେ କନ୍ନଡ଼ ଭାଷାକୁ ସ୍ଥାନୀୟ ପ୍ରାକୃତ ବା ପ୍ରାକୃତିକ ଭାଷା ରୂପେ ବର୍ଣ୍ଣନା କରାଯାଇଛି ଏବଂ ସଂସ୍କୃତକୁ ସଂସ୍କୃତିର ଭାଷା ବୋଲି କୁହାଯାଇଛି । ଦୁଇ ଭାଷା ମଧ୍ୟରେ ଥିବା ସମ୍ପର୍କ ଏଥିରୁ ସ୍ପଷ୍ଟଭାବେ ବାରି ହୋଇପଡୁଛି । ଏହି ସମ୍ପର୍କକୁ ପରେ ଦେଶୀ ବା ସ୍ଥାନୀୟ ଲୋକପ୍ରିୟ ସାହିତ୍ୟ ଏବଂ ମାର୍ଗ ବା ମୁଖ୍ୟ ସ୍ରୋତର ସାହିତ୍ୟ ବୋଲି ସଂସ୍କୃତରେ ବର୍ଣ୍ଣନା କରାଯାଇଛି । ଭାଷାର ସାମାଜିକ ପ୍ରସଙ୍ଗ ସମ୍ପର୍କୀୟ ସଚେତନତା ଏବଂ ସାହିତ୍ୟ ଏହି ବିଭାଜନ ମାଧ୍ୟମରେ ସ୍ପଷ୍ଟଭାବେ ଉକୁଟି ଉଠିଛି । ଏକ ଶତାବ୍ଦୀ ପରେ ଜଣେ ଚାଲୁକ୍ୟ ରାଜା କାଞ୍ଚିପୁରମ୍‌ଠାରେ କନ୍ନଡ଼ରେ ଏକ ଅଭିଲେଖ ଖୋଦନ କରାଇଲେ । ନବମ ଶତାବ୍ଦୀର କନ୍ନଡ଼ କାବ୍ୟତତ୍ତ୍ୱ 'କବିରାଜ ମାର୍ଗ' ଏକ ଉଲ୍ଲେଖନୀୟ କୃତି ।

ଏବେଳକୁ ତାମିଲରେ ଉଭୟ ଗୀତିକବିତା ଏବଂ ମହାକାବ୍ୟମାନ ରଚିତ ହେଲାଣି । ଜୈନଧର୍ମର ପ୍ରେରଣାର ଆଧାରରେ ପୂର୍ବକାଳରୁ ରଚିତ ଦାର୍ଶନିକ ଭାବାପନ୍ନ କବିତା

ସେତେବେଳକୁ ଜ୍ଞାତ ଥିଲା ଏବଂ ଆଲୋଚିତ ହେଉଥିଲା । 'କୁରାଲ' ଏବଂ 'ନଲଡ଼ିଆର୍' ଏହି ଧରଣର କବିତା । 'ଶୀଲାପଦିଗରାମ' ଏବଂ 'ମଣିମେଗାଲାଇ' ଦୁଇ ତାମିଲ ମହାକାବ୍ୟ; ଯାହାଦ୍ୱାରା ଏକ ପରିପକ୍ୱ ଅବାଧ ତାମିଲ କାବ୍ୟଶୈଳୀର ଭିତ୍ତି ସ୍ଥାପିତ ହେଲା । ଏଗୁଡ଼ିକୁ ପ୍ରଥମ ସହସ୍ରାବ୍ଦୀର ମଧ୍ୟଭାଗର ରଚନା ବୋଲି ଧରାଯାଏ । 'ଇଲାଙ୍ଗୋ ଆଡ଼ିଗଲ୍'ର ପ୍ରଥମ ଲେଖକ ହେଲେ ଏକ ରାଜପରିବାରର ସଦସ୍ୟ । ସେ ଶ୍ରମଣମାନଙ୍କୁ ନେଇ ପକ୍ଷପାତ ନୀତି ଅବଲମ୍ୱନ କରୁଥିଲେ । କବିତାରେ ଅହିଂସା ଏବଂ କର୍ମର ମିଳିତ ଅବତାରଣା କରାଯାଇଥିଲା । ଏଥିରେ ବିଭିନ୍ନ ଧାର୍ମିକ ମତର ସଂଗ୍ରହ ପ୍ରକାଶିତ ହୋଇଥିବା ଜଣାଯାଏ । ବଣିକକୁଳ ସମ୍ଭୂତ କଚ୍ଚନଙ୍କ ଦ୍ୱାରା ରଚିତ ଧାରାବାହିକୀରେ କାହାଣୀ ଏବଂ ମନୋଭାବରେ ଏକ ନିରବଚ୍ଛିନ୍ନତା ପରିଲକ୍ଷିତ ହୁଏ । ଏହି କବିତାଗୁଡ଼ିକର କଥାବସ୍ତୁ ଖଡ଼୍‌ଗଧାରୀ ନାୟକର କାହାଣୀ ସମ୍ୱଳିତ ପୂର୍ବବର୍ତ୍ତୀ କବିତାଗୁଡ଼ିକଠାରୁ ଭିନ୍ନ । ପ୍ରଥମଟିର କେନ୍ଦ୍ରୀୟ ଚରିତ୍ର ହେଉଛି ନାୟିକା କନକୀ ଯାହାର ନାୟିକାସୁଲଭ ହିଂସା ଓ ଆକ୍ରୋଶ ମଦୁରାଇ ନଗରୀ ପାଇଁ ଏକ ଅସ୍ୱାଭାବିକ ଅଭିଶାପର ରୂପ ନେଇଛି । ଶେଷରେ ସେ ବସ୍ତୁତଃ ଦେବୀ ପତ୍ନୀରେ ପରିଣତ ହୋଇଛି । ଯଦିଓ ଏଇ କବିତାଗୁଡ଼ିକୁ ମହାକାବ୍ୟ କୁହାଯାଇଛି ତଥାପି ଏଗୁଡ଼ିକର କଥାବସ୍ତୁ ମହାକାବ୍ୟଗୁଡ଼ିକର ଚିରାଚରିତ କଥାବସ୍ତୁଠାରୁ ଭିନ୍ନ । ବିଭିନ୍ନ ସ୍ଥାନରେ ବିରଚିତ ଧାରାବାହିକ ଜୈନ ରାମାୟଣରେ ମଧ୍ୟ ଦାର୍ଶନିକ ଉପାଦାନମାନ ରହିଛି । ବ୍ରାହ୍ମଣ୍ୟଧାରା ଦ୍ୱାରା ଯେଉଁମାନେ ପ୍ରଭାବିତ ସେମାନଙ୍କ ଲାଗି ଏହା ଏକ ବିକଳ୍ପ ପାଠ ।

ଉଭୟ ଦୀର୍ଘ ତାମିଲ କବିତା ଗ୍ରାମାଞ୍ଚଳର ତଥା କାବେରୀପଟ୍ଟନମ୍ ସହରାଞ୍ଚଳର ଚିତ୍ରକଳ୍ପ ବର୍ଣ୍ଣନାରେ ସମୃଦ୍ଧ । ଏଥିରେ ମଧ୍ୟ ଦୈନନ୍ଦିନ ଜୀବନ ବର୍ଣ୍ଣିତ ହୋଇଛି ଏବଂ ଏଗୁଡ଼ିକ ଭାବଦ୍ୟୋତକ । ଶିଳାପଦୀଗରାମର ଏକ ଅନୂଦିତ ଅଂଶ ନିମ୍ନରେ ପ୍ରଦତ୍ତ ହେଲା ।

*''ପୁଷ୍କରିଣୀରୁ ମୁଣ୍ଡ ଟେକିଥିବା ସତେଜ ପଦ୍ମର ଗହନତାରେ*
*ଚମତ୍କାର ଧାନକ୍ଷେତ ଏବଂ ଆଖୁର ସାଦର ସ୍ପର୍ଶ ମଧ୍ୟରେ*
*କିଛି ଶୁଣାଗଲା*
*ଯେପରି ଶୁଭେ ଯୁଦ୍ଧକ୍ଷେତ୍ରରେ*
*ଯେଉଁଠି ଦୁଇଜଣ ରାଜା ବିଜୟ ପାଇଁ ଲଢ଼ନ୍ତି ।*
*ଜଳପକ୍ଷୀ, ଚିତ୍କାରରତ ସାରସ,*
*ଲାଲ ପାଦ ସମ୍ପନ୍ନ ହଂସ, ନୀଳ ପାଦ ଥିବା ହେରନ୍*
*ବନ୍ୟ ପକ୍ଷୀ, ପାଣିକୁଆ, ବୃହତ୍ ହେରନ୍, ସ୍ନାଇପ୍*
*ତଥା ଅନ୍ୟାନ୍ୟ ପକ୍ଷୀଙ୍କ ଚିତ୍କାର,*
*କୋଳାହଳ ରୂପେ ଶୁଭେ ।*

*ମଇଁଷିମାନେ ପ୍ରବେଶ କରନ୍ତି ଏବଂ*
*ହଳ ହୋଇ ନଥିବା ପଙ୍କରେ ନିମଜ୍ଜିତ ହୁଅନ୍ତି,*
*ଶରୀରର କେଶ ପରିଷ୍କୃତ ହୋଇ ନଥାଏ*
*ଆଖି ଥାଏ ଲାଲ*
*ସେମାନେ ଆସନ୍ତି*
*କୁଟାଗଦାରେ କୁଣ୍ଡାଇ ହେଉଥିବା ପିଠି ଘଷନ୍ତି ।*
*ଦେହରେ ମୋଡ଼ି ହୋଇଥିବା ଖିଅରୁ ମୁକ୍ତ ହୁଅନ୍ତି*
*ଶସ୍ୟ ଥିବା ଡବାରୁ ଶସ୍ୟ ବୁଣି ହୋଇଯାଏ*
*କଉଡ଼ି ଭଳି ଦିଶୁଥିବା ଧାନ ସବୁ ବିଞ୍ଚିହୋଇ ପଡ଼େ ।*
*ପଡ଼ୋଶୀମାନଙ୍କର ଉଚ୍ଚ ସ୍ୱର ଶୁଭେ*
*କୃଷକମାନେ ଦୃଢ଼ ବାହୁମାନ ଛନ୍ଦି ଠିଆ ହୋଇଥାନ୍ତି*
*ନୀଚ ଜାତିର ନାରୀଟିଏ ନୂଆ ଶୈଳୀରେ*
*ଗୀତଟିଏ ଗାଉଥାଏ,*
*ବିଲରେ କାମ ସାରି ଫେରିବା ପରେ*
*ସେ ଟିକେ କଡ଼ା ମଦ ପିଇଦେଇଥାଏ,*
*ତା'ର ଆଖି ଲାଲ ମହୁରାଳି ମାଛ ପରି ପ୍ରଶସ୍ତ ଦିଶୁଥାଏ ।*
*ସେମାନେ କହୁଥାନ୍ତି ଅଶାଳୀନ କଥା ଏବଂ ଚାହୁଁଥାନ୍ତି,*
*ଲୁଗାପଟା ଏବଂ ବକ୍ଷଦେଶରେ କାଦୁଅର ଛିଟା, ବାହୁରେ ବାହୁଟି*
*ସେମାନେ ଦିଶୁଥାନ୍ତି ଏକକ ଭାବେ ସୁନ୍ଦର*
*କେଶରେ ଖୋଷିଥାନ୍ତି ସୁବାସିତ ଫୁଲ*
*ସେମାନେ ଲଙ୍ଗଳ ପାଖରେ ଠିଆହୋଇ*
*ହାତଯୋଡ଼ି ପୂଜା କଲାବେଳେ*
*ହଳୁଆର ପ୍ରଶସ୍ତି ସୂଚକ ଗୀତ ଶୁଭେ ।*
*ଫୁଲରେ ଶୋଭିତ ଧରା*
*ଉଜ୍ଜ୍ୱଳ ଧାନରେ ପରିପୂର୍ଣ୍ଣ*
*ନୀଳପଦ୍ମ ତଥା ଦ୍ରାକ୍ଷାଲତା ପରି ସବୁଜ ଘାସରେ*
*ଦିଶେ ସୁଶୋଭନ ।"*

(Illango Adigal, Shilappadigaram, Tr. R. Parthasarathy, *The Lady of an Anklet*, pp. 98-99)

ନଗରର ବର୍ଣ୍ଣନା 'ମଣିମେଖାଲାଇ'ରୁ ଆନୀତ ଯେଉଁଥିରେ ପୁହାରକୁ ଜଣେ ନାରୀ ସହ ତୁଳନା କରାଯାଇଛି :

*''ସ୍ୱଚ୍ଛ ଜଳରେ ପୂର୍ଣ୍ଣ ପରିଖା, ଅସଂଖ୍ୟ ଫୁଲରେ ଅଳଂକୃତ, ସହସ୍ର ପକ୍ଷୀଙ୍କ କାକଳିର ସଙ୍ଗୀତରେ ନିନାଦିତ ହୋଇ ତାଙ୍କର ବଳାଗଣି ବେଷ୍ଟନ କରୁଛି । ମୀନାର ଶୋଭିତ ଚତୁଃପାର୍ଶ୍ୱର କାନ୍ଥସବୁ ତାଙ୍କର ହୀରକ ଖଚିତ ମେଖଳା । ଉଡ୍ଡୀୟମାନ ପତାକା ଶୋଭିତ ତୋରଣମାନ ତାଙ୍କର ଗଳାହାର ମଣ୍ଡିତ ସ୍କନ୍ଧଦେଶ । ପରସ୍ପରକୁ ମୁଖ କରି ଦଣ୍ଡାୟମାନ କଳ୍ପତରୁ ମନ୍ଦିର ଏବଂ ବଜ୍ର ମନ୍ଦିର ତାଙ୍କର ଦୁଇ ଚମତ୍କାର ଉଦ୍ଦୀପକ ବକ୍ଷୋଜ । ନଗର ମଣ୍ଡନ କରୁଥିବା ସହସ୍ର ବର୍ଷର ପୁରୁଣା, ଅନୁପମ ତଥା ବିରାଟ ପ୍ରାସାଦ (ଅର୍କିଡ଼ ପତ୍ରର ମାଳା ଶୋଭିତ ଚୋଳ ରାଜାଙ୍କର ଆବାସସ୍ଥଳୀ) ହେଉଛି ତାଙ୍କର ମୁଖ । ପୂର୍ବ ଦିଗରୁ ଉଦିତ ପୂର୍ଣ୍ଣଚନ୍ଦ୍ର ଏବଂ ପଶ୍ଚିମ ଦିଗର ଅସ୍ତଗାମୀ ସୂର୍ଯ୍ୟ ତାଙ୍କର ରୂପା ଏବଂ ସୁନାର କର୍ଣ୍ଣକୁଣ୍ଡଳ ।''* (Cattan, Manimekhalai, Tr. A. Danielou, p.22)

ତାମିଲ୍ ଶାସ୍ତ୍ରୀୟତାରେ ପ୍ରେମର ଆବେଗର ବିଭିନ୍ନ ପରିପ୍ରକାଶ ଘଟିଛି, ଯା'ର ରୂପରେଖ ସଙ୍ଗମ ଯୁଗର କବିତାରେ ମଧ୍ୟ ଦେଖିବାକୁ ମିଳେ । ତାମିଲର ବିକାଶ କବି, ଶ୍ଲୋକକାର ଏବଂ ପ୍ରବକ୍ତାମାନଙ୍କର ଏକ ଗୋଷ୍ଠୀ ଦ୍ୱାରା ଲୋକପ୍ରିୟ ହୋଇଥିବା ଏକ ଧାର୍ମିକ ଆନ୍ଦୋଳନ ଦ୍ୱାରା ବହୁଗୁଣିତ ହେଲା । ଏହି ବ୍ୟକ୍ତିମାନଙ୍କୁ ଆଧୁନିକ କାଳର ଅଧ୍ୟୟନରେ ସନ୍ଥ ବା ତାମିଲ ଭକ୍ତ ସଂପ୍ରଦାୟ ରୂପେ ଆଖ୍ୟାୟିତ କରାଯାଇଥାଏ । ସେମାନଙ୍କ ରଚନାରେ ତାମିଲର ବ୍ୟବହାର ବୃଦ୍ଧି ପାଇଲା, ଯାହାଫଳରେ ଅନ୍ୟାନ୍ୟ ଦକ୍ଷିଣାଞ୍ଚଳର ଭାଷା ତୁଳନାରେ ତାମିଲ୍‌ର ବିବର୍ତ୍ତନ ତ୍ୱରାନ୍ୱିତ ହେଲା । (ଭକ୍ତି ଭାବର କବି ଏବଂ ଶିକ୍ଷକମାନଙ୍କ ଲାଗି ସନ୍ଥ ଶବ୍ଦ ବ୍ୟବହାର କରାଗଲା । ଏ କ୍ଷେତ୍ରରେ ଭକ୍ତି ହେଲା ଧର୍ମର ପ୍ରାଥମିକ ପରିପ୍ରକାଶ । ଏହି ଶବ୍ଦଟିକୁ ଖ୍ରୀଷ୍ଟଧର୍ମାବଲମ୍ବୀ ସନ୍ଥ (saint) ତୁଲ୍ୟ ଦେଖିବା ଅନୁଚିତ । ଏ କ୍ଷେତ୍ରରେ ସନ୍ଥ କହିଲେ ଆକର୍ଷକ ବ୍ୟକ୍ତିତ୍ୱକୁ ବୁଝାଏ ଯିଏ ନୂତନ ନୀତିକଥା ଶିକ୍ଷା ଦେବାଲାଗି ଆଦିଷ୍ଟ, ଯିଏ କବିତା ରଚନା କରିପାରନ୍ତି ଏବଂ ଯାହାଙ୍କ ଚାରିପାଖେ ବହୁଳ ଅନୁଗାମୀ ଗୋଷ୍ଠୀ ଏକତ୍ରିତ ହୁଅନ୍ତି ।)

## ଦାର୍ଶନିକ ଏବଂ ଧାର୍ମିକ ପରିବର୍ତ୍ତନ

ବଣିକମାନଙ୍କର ପରିପଥ, ସୈନ୍ୟବାହିନୀଗୁଡ଼ିକର ନିୟମିତ ଗନ୍ତବ୍ୟପଥ ଏବଂ ବ୍ରାହ୍ମଣ ବାସିନ୍ଦାମାନଙ୍କ ମାଧ୍ୟମରେ ଉତ୍ତର ଏବଂ ଦକ୍ଷିଣର ସଂସ୍କୃତି ମଧ୍ୟରେ ବିନିମୟ

ସମ୍ଭବ ହେଲା ଏବଂ ଏଗୁଡ଼ିକର ସମ୍ମିଶ୍ରଣରେ କେତେକ ନୂତନ ଢାଞ୍ଚା ପ୍ରସ୍ତୁତ ହେଲା । ଏତଦ୍ଦ୍ୱାରା ଉତ୍ତରର କେତେକ ଅନୁଚିନ୍ତା ଏବଂ ଅନୁଷ୍ଠାନ ରୂପ ପରିଗ୍ରହ କଲା, ଆଉ କେତେକ ପ୍ରତ୍ୟାଖ୍ୟାନ ହେଲା ଅଥବା ରୂପାନ୍ତରିତ ହେଲା । ଏଥିରୁ କେତେକ ଉଦ୍‌ପ୍ରେରକ ଭାବେ କାର୍ଯ୍ୟ କଲା ଏବଂ ନୂତନ ଢାଞ୍ଚାମାନ ଗଠନ କଲା । ତାମିଲମ୍‌ରେ ବସତି ସ୍ଥାପନ କରିଥିବା ବ୍ରାହ୍ମଣମାନେ ନିଜକୁ ପବିତ୍ର (sacrosant) ବୈଦିକ ପରମ୍ପରାର ରକ୍ଷକ ଭାବରେ ଦେଖିଲେ । ଉତ୍ତରର ଅବଦାନ ପରିପ୍ରେକ୍ଷୀରେ ଏହାର ଗୁରୁତ୍ୱ କେତେ, ତାହା ତର୍କସାପେକ୍ଷ, କାରଣ ବେଦର କିଛି ଭାଗ ଉପଦ୍ୱୀପର ବେଦ ଅଧ୍ୟୟନ କେନ୍ଦ୍ରଗୁଡ଼ିକରେ ରଚିତ ହୋଇଥିଲା ଏବଂ ପୁନର୍ଲିଖିତ ହୋଇଥିଲା । ଗ୍ରହଣ ଓ ଉପଯୋଜନ ମାଧ୍ୟମରେ ଆଧିପତ୍ୟ ସମ୍ପନ୍ନ ଭାଷା ଭାବରେ ସଂସ୍କୃତର ଗୁରୁତ୍ୱ ପୂର୍ବ ଭଳି ଅବ୍ୟାହତ ରହିଥିଲା । ତେବେ ଉପଦ୍ୱୀପରେ ତା'ର ଆଧିପତ୍ୟ ଚରମ ସ୍ତରରେ ନ ଥିଲା, କାରଣ ମୂଳ ଦ୍ରାବିଡ଼ରୁ ବିକଶିତ ଭାଷାମାନ ବେଶ୍ ଆଧିପତ୍ୟ ସମ୍ପନ୍ନ ଥିଲେ ଏବଂ ସେଗୁଡ଼ିକର ବ୍ୟାପକ ବ୍ୟବହାର ହେଉଥିଲା । ଶିକ୍ଷିତ ବ୍ରାହ୍ମଣମାନେ ଅଧିକ ଭ୍ରାମ୍ୟମାଣ ହୋଇପଡ଼ିଥିଲେ । ସେମାନେ ନୂତନ ପୃଷ୍ଠପୋଷକ ସନ୍ଧାନରେ ଥିଲେ, କାରଣ ଶକ, ଇଣ୍ଡୋଗ୍ରୀକ୍, କୁଶାଣ ଏବଂ ହୁନ୍ ପ୍ରଭୃତି ଉତ୍ତରର ମ୍ଳେଚ୍ଛ ଶାସକମାନେ ବୌଦ୍ଧଧର୍ମ, ଜୈନଧର୍ମ ତଥା ନୂତନଭାବେ ମୁଣ୍ଡ ଟେକିଥିବା ପୌରାଣିକ ଧର୍ମର ପୃଷ୍ଠପୋଷକତା କରୁଥିଲେ । ମାତ୍ର ପଶ୍ଚିମ ଭାରତର ଶାସକଗଣ ବିଶେଷକରି, କ୍ଷତ୍ରପମାନେ, ଅଭିଲେଖରେ ସଂସ୍କୃତ ଭାଷା ବ୍ୟବହାର କରିବାରେ ପ୍ରଥମ ଥିଲେ ଏବଂ ସେମାନେ ବ୍ରାହ୍ମଣମାନଙ୍କର ପୃଷ୍ଠପୋଷକ ଥିଲେ ।

ବୈଦିକ ପରମ୍ପରାର ରକ୍ଷକ ହିସାବରେ ବ୍ରାହ୍ମଣମାନେ ଧୀରେ ଧୀରେ ଉପଦ୍ୱୀପର ରାଜାମାନଙ୍କର ସମର୍ଥନ ହାସଲ କଲେ । ରାଜାମାନେ ଅନ୍ୟ ଶାସକମାନଙ୍କ ଭଳି ଏକ ରକ୍ଷଣଶୀଳ ପରମ୍ପରା ସହ ଜଡ଼ିତ ହୋଇ ଏକପ୍ରକାର ସମ୍ମାନ ହାସଲ କରିବାକୁ ଚାହୁଁଥିଲେ । ଏ କ୍ଷେତ୍ରରେ ବ୍ରାହ୍ମଣମାନେ ଥିଲେ ସେହି ପରମ୍ପରାର ବ୍ୟାଖ୍ୟାକାର । ରାଜାମାନଙ୍କ ଦ୍ୱାରା କର୍ମକାଣ୍ଡ ପାଳନ ଏକ ଉଚ୍ଚ ମାନ୍ୟତାର ସଂକେତ ଥିଲା । ବ୍ରାହ୍ମଣମାନେ ଦେବତାମାନଙ୍କ ସହ ଯୋଗାଯୋଗର ମାଧ୍ୟମ ବୋଲି ନିଜକୁ ଦାବି କରୁଥିଲେ । ଅଦୃଶ୍ୟ ଶକ୍ତିମାନଙ୍କୁ କାମରେ ଲଗାଇ ପାରିବାରେ ସେମାନଙ୍କ ସମ୍ଭାବ୍ୟ ସାମର୍ଥ୍ୟ ତଥା ରାଜାଙ୍କର ମଙ୍ଗଳ ନିମନ୍ତେ ଉଚ୍ଚାରିତ ହେବାକୁ ଥିବା ମନ୍ତ୍ର ଉପରେ ସେମାନଙ୍କର ସଠିକ ଜ୍ଞାନ ଅଛି ବୋଲି ଦାବି ହେତୁ, ଅନ୍ୟମାନଙ୍କ ତୁଳନାରେ ରାଜା ସେମାନଙ୍କ ଦ୍ୱାରା ବେଶି ପ୍ରଭାବିତ ହେଉଥିଲେ । କର୍ମକାଣ୍ଡ ମାଧ୍ୟମରେ ପ୍ରଭୁତ୍ୱ ଓ କ୍ଷମତା ହାସଲ କରିବାର ବ୍ୟାପକ ବିଶ୍ୱାସ ଥିଲା ଏବଂ ଏଥିରେ ସ୍ୱର୍ଗୀୟ ଲାଭ ମିଳିବାର ଅତିରିକ୍ତ ପ୍ରତିଶ୍ରୁତି ମଧ୍ୟ ଥିଲା । ବୈଦିକ ଅଭ୍ୟାସମାନ ଜାରି ରହିଥିଲେ ମଧ୍ୟ

କର୍ମକାଣ୍ଡମାନ 'ଆଗମ' ଆଧାରରେ କରାଯାଉଥିଲା । ଏହି ପ୍ରସଙ୍ଗଗୁଡ଼ିକରେ ଉଭୟ ପରମ୍ପରାର ସମ୍ମିଶ୍ରଣ ସାଧିତ ହୋଇଥିଲା ।

ବୈଦିକ ପରମ୍ପରା କେବଳ କର୍ମକାଣ୍ଡରେ ସୀମିତ ନ ଥିଲା । ବୈଦିକ ରଚନାଗୁଡ଼ିକ ଉପରେ ରଚିତ ଟୀକା ଦାର୍ଶନିକ ଅନୁଚିନ୍ତା ସମ୍ପର୍କୀୟ ଆଲୋଚନାକୁ ଉତ୍ସାହିତ କରୁଥିଲା । ଏତେବେଳକୁ ଉପମହାଦେଶର ବିଭିନ୍ନ ଭାଗରେ ଦାର୍ଶନିକ ଚିନ୍ତନଗୁଡ଼ିକର ବିକାଶ ଘଟିବା ଆରମ୍ଭ ହୋଇଥିଲା । କତିପୟ ଦାର୍ଶନିକ ବୈଦିକ ଅନୁଚିନ୍ତନର ପୁନଃପ୍ରତିଷ୍ଠା ଲାଗି ଉତ୍କଣ୍ଠିତ ଥିଲେ । ଏଥିସହିତ ସମତାଳରେ ମଠ ଏବଂ ଘଟିକାମାନ ଗଢ଼ିଉଠିଥିବ । କିନ୍ତୁ ଏହି ପୁନଃପ୍ରତିଷ୍ଠା ସମୟରେ କିଛି ପରିବର୍ତ୍ତନ ସାଧିତ ହୋଇଥିବ । ବୈଦିକ ଅନୁଚିନ୍ତନର ଦାର୍ଶନିକ ଅବୋଧତାକୁ ହ୍ରାସ କରିବାର ଚେଷ୍ଟା କରାଯାଇଥିବ, ଯାହାଫଳରେ ଏହାକୁ ଶିକ୍ଷିତମାନଙ୍କ ଗ୍ରହଣଯୋଗ୍ୟ କରି ହେବ । ଏ କ୍ଷେତ୍ରରେ ଶଙ୍କରାଚାର୍ଯ୍ୟ ଯଥୋଚିତ ପ୍ରଚେଷ୍ଟା କରିଥିଲେ । ସେ ଏଥିପାଇଁ ବୌଦ୍ଧ, ଜୈନ ତଥା ଲୋକପ୍ରିୟ ଭକ୍ତି ସଂପ୍ରଦାୟ ଆଡୁ ବ୍ରାହ୍ମଣ୍ୟବାଦ ପ୍ରତି ଥିବା ବିପଦର ସମ୍ମୁଖୀନ ହୋଇଥିଲେ ।

କେରଳ ଜନ୍ମିତ ଶଙ୍କରାଚାର୍ଯ୍ୟ ସମ୍ଭବତଃ ଅଷ୍ଟମ-ନବମ ଶତାବ୍ଦୀରେ ଲେଖାଲେଖି କରିଥିଲେ ଏବଂ ଶିକ୍ଷାଦାନ କରିଥିଲେ । ଅବଶ୍ୟ ତାଙ୍କର ସମୟକୁ ନେଇ ଦ୍ୱନ୍ଦ୍ୱ ଅଛି ଏବଂ ସେ ହୁଏତ ଆଉ ଟିକେ ପରବର୍ତ୍ତୀ କାଳର ହୋଇପାରନ୍ତି । ବୈଦିକ ବ୍ୟବସ୍ଥା ସମ୍ବନ୍ଧରେ ତାଙ୍କର ଅଧ୍ୟୟନ ଲାଗି ତଥା ବେଦାନ୍ତ ଦର୍ଶନର ନୂତନ ବ୍ୟାଖ୍ୟାକାର ହିସାବରେ ସେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ସେ ଉପନିଷଦ ଉପରେ ବ୍ୟାଖ୍ୟା ରଚନା କରିଥିଲେ ଆତ୍ମା ଏବଂ ବ୍ରହ୍ମ ମଧ୍ୟରେ ଯଜ୍ଞ ବା ଯଥାର୍ଥ ଜ୍ଞାନ ମାଧ୍ୟମରେ ସମ୍ପର୍କ ସ୍ଥାପନ କରିବାର ମାର୍ଗ ଦର୍ଶାଇ ସେ ଉପନିଷଦ ସମ୍ପର୍କରେ ବୃହତ୍ତର ଆଗ୍ରହ ସୃଷ୍ଟି କରିଥିଲେ ।

ଶଙ୍କର ଏକେଶ୍ୱରବାଦ ସପକ୍ଷରେ ଯୁକ୍ତି ବାଢ଼ିଥିଲେ । ଏଥିରେ ବାସ୍ତବତାକୁ ଅଦ୍ୱୈତ ଭାବରେ ଦେଖାଯାଏ । ଆମ ଚାରିପାଖର ଦୃଶ୍ୟମାନ ଜଗତ ହେଉଛି ମାୟା ବା ଭ୍ରାନ୍ତିପୂର୍ଣ୍ଣ । ଏହାର ଊର୍ଦ୍ଧ୍ୱରେ ଅବସ୍ଥିତ ସତ୍ୟକୁ ମଣିଷର ଇନ୍ଦ୍ରିୟ ମାଧ୍ୟମରେ ଅନୁଭବ କରିହେବ ନାହିଁ । କେବଳ ବୈରାଗ୍ୟ ମାଧ୍ୟମରେ ହିଁ ଜଣେ ଇନ୍ଦ୍ରିୟମାନଙ୍କ ଉପରେ ନିୟନ୍ତ୍ରଣ ହାସଲ କରିପାରିବ ଏବଂ ସେଗୁଡ଼ିକୁ ଏପରି ଦିଗ ନିର୍ଦ୍ଦେଶ ପ୍ରଦାନ କରିପାରିବ ଯାହାଫଳରେ ଚରମ ସତ୍ୟର ଝଲକ ଅନୁଭବ କରିହେବ । ସେ ଅଦରକାରୀ ଏବଂ ଅର୍ଥହୀନ କର୍ମକାଣ୍ଡର ବିରୋଧ କରୁଥିଲେ ଏବଂ ନିଜେ ନିଜର ମଠ ସ୍ଥାପନ କରିଥିଲେ । ସେହି ମଠଗୁଡ଼ିକର ପୂଜାପଦ୍ଧତି ବେଶ୍ ସରଳ ଥିଲା ଏବଂ ସେଠାରେ ବିଧିବଦ୍ଧ ଭାବରେ ବେଦାନ୍ତ ଶିକ୍ଷା ଦିଆଯାଉଥିଲା । ଏହି ମଠଗୁଡ଼ିକ ବିହାର ସହିତ ସମାନ୍ତର ଥିଲେ । ହିମାଳୟର ବଦ୍ରିନାଥ, ଓଡ଼ିଶାର ପୁରୀ,

ପଶ୍ଚିମ ଉପକୂଳର ଦ୍ୱାରକା ଏବଂ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦକ୍ଷିଣର ଶୃଙ୍ଗେରୀଠାରେ ଏହି ମଠମାନ ସ୍ଥାପନ କରାଯାଇଥିଲା । ଏହି ସବୁ ସ୍ଥାନକୁ ବହୁଳ ସଂଖ୍ୟାରେ ତୀର୍ଥଯାତ୍ରୀ ଆସୁଥିଲେ ଏବଂ ଏଗୁଡ଼ିକ ଉପମହାଦେଶର ଚାରିକୋଣରେ ଅବସ୍ଥିତ ବୋଲି ଗୃହୀତ ହୁଏ । ଶଙ୍କରାଚାର୍ଯ୍ୟଙ୍କ ମଠ ସମ୍ବନ୍ଧୀୟ ଅଭିଲେଖମାନ ପରବର୍ତ୍ତୀ ସମୟରେ ପ୍ରସ୍ତୁତ ହୋଇଥିବାରୁ ଏଥିରେ କେତେକଚେ କାଳାନୁକ୍ରମିକତା ଜନିତ ସମସ୍ୟା ପରିଲକ୍ଷିତ ହୋଇଥାଏ । ଏଥିପାଇଁ ମଠର କାଳାନୁକ୍ରମିକତାକୁ ନେଇ ଅନେକ ବିତର୍କ ସୃଷ୍ଟି ହୋଇଛି । ଏହି ଅନୁଷ୍ଠାନଗୁଡ଼ିକୁ ବିପୁଳ ପରିମାଣର ଦାନ ମିଳୁଥିଲା । ତେଣୁ ଖୁବ୍ ଶୀଘ୍ର ଅନେକ ସ୍ଥାନରେ ଏହାର ଶାଖାମାନ ଖୋଲିଗଲା । ସେଗୁଡ଼ିକ ଶଙ୍କରଙ୍କ ଶିକ୍ଷାର କେନ୍ଦ୍ରରେ ପରିଣତ ହେଲା । ଏକ ଧାର୍ମିକ ସଂଗଠନ ରୂପେ ଏହାକୁ ଦୃଷ୍ଟିରେ ରଖି ଏହା ଉପରେ ନିୟନ୍ତ୍ରଣ ହାସଲ କରିବା ଲାଗି ଆଧିପତ୍ୟର ଅଭ୍ୟୁଦୟ ହେଲା । ମାତ୍ର ଏହା ରାଜ୍ୟର ଏକ ସମାନ୍ତରାଳ ରୂପ ନେଇପାରିଲା ନାହିଁ, ଯଦିଓ ଏହା ପ୍ରଶାସନିକ ବ୍ୟାପାରରେ କିଛିଟା ପ୍ରଭାବଶାଳୀ ସିଦ୍ଧ ହେଲା ।

ଶଙ୍କରାଚାର୍ଯ୍ୟ ଅନେକ ଶିକ୍ଷାକେନ୍ଦ୍ର ପରିଦର୍ଶନ କରିଥିବା କଥା କୁହାଯାଏ ଏବଂ ମଣ୍ଡନ ମିଶ୍ର, କୁମାରୀଲ ଭଟ୍ଟ, ପ୍ରଭାକର ତଥା ଅନେକ ବୌଦ୍ଧ ଓ ଜୈନ ବିଦ୍ୱାନଙ୍କ ସହ ବିତର୍କ କରିଥିବା କଥା କୁହାଯାଏ । ନିଜ ସଂପ୍ରଦାୟର ସନ୍ନ୍ୟାସୀମାନଙ୍କୁ ପ୍ରଚାରର ମନୋଭାବ ନେଇ ତାଙ୍କ ଶିକ୍ଷାର ପ୍ରସାର କରାଇବା ଲାଗି ସେ ଉତ୍ସାହିତ କରୁଥିଲେ । ଶଙ୍କର ପ୍ରବର୍ତ୍ତନ କରିଥିବା ଦାର୍ଶନିକ ରୂପ ଏବଂ ଆନୁଷ୍ଠାନିକ ସଂଗଠନ ବୌଦ୍ଧମାନଙ୍କ ସହ ସମାନ୍ତରାଳ କିମ୍ବା ସେମାନଙ୍କର ଅନୁକରଣ । ଏହା ଥିଲା ସେମାନଙ୍କୁ ସେମାନଙ୍କ ପଦ୍ଧତିରେ ଦମନ କରିବାର ଏକ ଆନ୍ଦୋଳନ । ଉଦାହରଣ ସ୍ୱରୂପ, ଲାମା ତାରାନାଥଙ୍କ ଦ୍ୱାରା ରଚିତ ଷଷ୍ଠ ଶତାବ୍ଦୀର ତିବ୍ବତୀୟ ବୌଦ୍ଧଧର୍ମର ଇତିହାସ ବର୍ଣ୍ଣନା । ସେଥିରେ ବର୍ଣ୍ଣିତ ହୋଇଛି ଯେ ବୌଦ୍ଧ ଅନୁଚିନ୍ତାର ବିକାଶ ସହିତ ବୌଦ୍ଧଧର୍ମ ଯେ ଏକ ଆହ୍ୱାନ ଏହା ଶଙ୍କର ଅନୁଭବ କରୁଥିଲେ । ଅଣବୌଦ୍ଧ ସୂତ୍ରରୁ ଶଙ୍କରଙ୍କ ରଚନାର ସମାଲୋଚନା ଦ୍ୱାଦଶ ଶତାବ୍ଦୀର ରାମାନୁଜଙ୍କ ଯାଏଁ ପ୍ରଲମ୍ବିତ ।

ବିଦ୍ୱାନମାନଙ୍କ ମଧ୍ୟରେ ବିତର୍କ ଓ ଆଲୋଚନା ହେବା ଏକ ସାଧାରଣ କଥା । ସାଧାରଣ କ୍ଷେତ୍ରରେ ସେମାନଙ୍କର ଭୂମିକା ପୂର୍ବକାଳର ଶ୍ରମଣ ପରମ୍ପରା ସହ ଜଡ଼ିତ । ଏହା ଥିଲା ଟୀକା ଏବଂ ବ୍ୟାଖ୍ୟାର ଯୁଗ, ଯେଉଁ ସମୟରେ ଏହା ଏକ ପ୍ରତିଷ୍ଠିତ ପରମ୍ପରା ଥିଲା । ଏହି ପ୍ରଥା ବର୍ତ୍ତମାନ ସାମାଜିକ ଗୋଷ୍ଠୀମାନଙ୍କ ମଧ୍ୟରେ ପୁନଃ ବ୍ୟାଖ୍ୟାୟିତ ହେଉଅଛି । ଯେଉଁ କ୍ଷେତ୍ରରେ ଚିନ୍ତନର ରୂପରେଖ ପୂର୍ବବର୍ତ୍ତୀ ଧାରାଠାରୁ ଭିନ୍ନ ହେଉଥିଲା, ସେହି କଥାର ଏକ ଐତିହାସିକ ଗୁରୁତ୍ୱ ରହୁଥିଲା । ଉଦାହରଣ ସ୍ୱରୂପ, ଆଇନ୍‌ର ସୂତ୍ର

କ୍ରମାଗତ ପରିବର୍ତ୍ତିତ ହେଉଥାଏ ଏବଂ ଶ୍ରେଣୀ, ଜାତି ତଥା ପରିବାରର ପ୍ରଥାସିଦ୍ଧ ଆଇନ୍ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥାଏ ।

ନିଜର ପ୍ରତିପକ୍ଷମାନଙ୍କ ସହିତ ବିତର୍କ ଲାଗି ଶଙ୍କରଙ୍କର ଉତ୍ସାହ ଏବଂ ସେମାନଙ୍କର ଯୁକ୍ତିଭିତ୍ତିକ ପ୍ରତିକ୍ରିୟା ଏକ ନୂତନ ପରମ୍ପରା ସୃଷ୍ଟି କଲା, ଯାହାଫଳରେ ଅନୁମାନ ଆଧାରିତ ଚିନ୍ତନକୁ ନେଇ ଅନେକ ଦାର୍ଶନିକ କେନ୍ଦ୍ରର ଉଦ୍ଭବ ଘଟିଲା । ଅବଶ୍ୟ ସ୍ଥଳବିଶେଷରେ ଏହା ରକ୍ଷଣଶୀଳ ଭାବନା ଉଦ୍ରେକ କରାଇଲା । ଶଙ୍କରଙ୍କ ଦର୍ଶନର ପରିସର ଭିତରେ ମଧ୍ୟ ନକାରାତ୍ମକ ପ୍ରତିକ୍ରିୟାର ସମ୍ଭାବନା ଥିଲା । ଏଥିରୁ ପ୍ରମୁଖ ଯୁକ୍ତିଟି ହେଲା– ଯଦି ଆମ ଚତୁର୍ପାର୍ଶ୍ୱରେ ଜଗତ ମାୟା ବା ଭ୍ରାନ୍ତି, ତେବେ ଏହା କିପରି କାର୍ଯ୍ୟ କରେ ତାହା ଜାଣିବାର କିମ୍ବା ତା'ଠାରୁ ଜ୍ଞାନ ଆହରଣ କରିବାର କ'ଣ ବା ଆବଶ୍ୟକତା ଅଛି ।

ଦକ୍ଷିଣରେ କେବଳ ଯେ ବୈଦିକ ସଂସ୍କୃତି ଏବଂ ତା'ର ଅଭ୍ୟାସ ଜାରି ରହିଥିଲା ତାହା ନୁହେଁ । ବୈଦିକ ଶିକ୍ଷାର ବିରୋଧୀ ବା ଅଣବୈଦିକ ଶିକ୍ଷାରେ ବିଶ୍ୱାସୀ ଗୋଷ୍ଠୀମାନ ମଧ୍ୟ ବିକଶିତ ହୋଇଥିଲେ ଏବଂ ନିଜ ଉପସ୍ଥିତି ଜାହିର କରିଥିଲେ । ଜୈନଧର୍ମ ଏବଂ ବୌଦ୍ଧଧର୍ମକୁ ବାଦ୍‌ଦେଲେ ସେ ସମୟରେ ଭାଗବତ ଏବଂ ପାଶୁପତ ଗୋଷ୍ଠୀଗୁଡ଼ିକ ମଧ୍ୟ ରହିଥିଲେ । ସେମାନେ ଯଥାକ୍ରମେ ବିଷ୍ଣୁ ଏବଂ ଶିବଙ୍କର ଉପାସନା କରୁଥିଲେ । ସେମାନଙ୍କ ସଂପ୍ରଦାୟର କର୍ମକାଣ୍ଡ ଆଗମରେ ବର୍ଣ୍ଣିତ ହୋଇଅଛି । ସବୁ କ୍ଷେତ୍ରରେ ବ୍ୟକ୍ତିଗତ ଉପାସନାରେ ଗୁରୁତ୍ୱ ଆରୋପ କରାଯାଇଛି । ପୂଜା ବିଧାନ ଆକାରରେ ସାଧାରଣତଃ ପଶୁବଳି ପରିବର୍ତ୍ତେ ଫୁଲ, ଫଳ ଏବଂ ଶସ୍ୟ ଅର୍ପଣ କରାଯାଉଥିଲା । ମନ୍ତ୍ରର ମହତ୍ତ୍ୱ ଆଧାରରେ କର୍ମକାଣ୍ଡ ବିଧାନ କରାଯାଉଥିଲା ଏବଂ ମନ୍ଦିର ମଧ୍ୟରେ ଥିବା ଦେବମୂର୍ତ୍ତିର ଅର୍ଚ୍ଚନା କରାଯିବା ସଙ୍ଗେ ସଙ୍ଗେ ଏଥିସହ ଜଡ଼ିତ ଅନ୍ୟାନ୍ୟ ବିଧି ମଧ୍ୟ ସମ୍ପାଦନ କରାଯାଉଥିଲା । ପୂଜକର ମାର୍ଗଦର୍ଶନ ମୁତାବକ ରାଜାଙ୍କ ଦ୍ୱାରା ପାଳିତ ହେଉଥିବା ଅନ୍ୟାନ୍ୟ କର୍ମକାଣ୍ଡ ଏବଂ ଜଟିଳ ବୈଦିକ ବିଧିବିଧାନ ତୁଳନାରେ ଏହା ଥିଲା ସହଜ ଓ ସରଳ ପୂଜା ପଦ୍ଧତି । ତେଣୁ ଏହା ଲୋକମାନଙ୍କ ମେଳରେ ଖୁବ୍ ଆଦୃତ ହେଲା ।

ଯଦିଓ ରକ୍ଷଣଶୀଳ ବ୍ରାହ୍ମଣମାନେ ପ୍ରାଥମିକ ପର୍ଯ୍ୟାୟରେ ଭକ୍ତି ଆନ୍ଦୋଳନକୁ ଏକ ପ୍ରକାର ଖାରଜ କରିଦେଲେ, ତଥାପି ଏହା ଦକ୍ଷିଣରେ ଅନ୍ୟାନ୍ୟ ଧର୍ମ ସଂପ୍ରଦାୟ ତୁଳନାରେ ଅଧିକ ଲୋକପ୍ରିୟ ପ୍ରମାଣିତ ହେଲା । ଦରବାରୀ ପୃଷ୍ଠପୋଷକମାନେ ମଧ୍ୟ ଏକଥା ହୃଦୟଙ୍ଗମ କରିପାରିଲେ । ତାମିଲ ଭକ୍ତି ଆନ୍ଦୋଳନ ଅଭୀଷ୍ଟ ଦେବତା ବୈଷ୍ଣବ ଓ ଶୈବବାଦ ଦ୍ୱାରା ପ୍ରଭାବିତ ଥିଲା । କେତେକ ସଂପ୍ରଦାୟ ବୌଦ୍ଧ ଏବଂ ଜୈନଧର୍ମ ପ୍ରତି ଶତ୍ରୁଭାବାପନ୍ନ ଥିଲେ । ତେବେ ଏଥିରେ ସନ୍ଦେହ ନାହିଁ ଯେ ସେମାନେ ମଧ୍ୟ ଏହି ଧର୍ମଗୁଡ଼ିକ ଦ୍ୱାରା ପ୍ରଭାବିତ

ହୋଇଥିଲେ । ଏହି ସଂପ୍ରଦାୟଗୁଡ଼ିକୁ ପରବର୍ତ୍ତୀକାଳୀନ 'ଭକ୍ତି ଆନ୍ଦୋଳନ'ର ପୂର୍ବଧୂରୀ କୁହାଯାଉଥିଲା ।

ଭିନ୍ନ ଭିନ୍ନ ସମୟରେ ଉପମହାଦେଶର ଭିନ୍ନ ଭିନ୍ନ ପ୍ରକାରର ସଂପ୍ରଦାୟ ଭିତ୍ତିକ ଆନ୍ଦୋଳନକୁ ଏହି ସର୍ବବ୍ୟାପୀ ଛାପ ମାଧ୍ୟମରେ ପ୍ରକାଶ କରାଯାଉଥିଲା । ଏମାନଙ୍କ ମଧ୍ୟରେ ଯଦିଓ ଅନେକ ସାଦୃଶ୍ୟ ଥିଲା ତଥାପି କୌଣସି ଦୃଷ୍ଟିରୁ ସେମାନେ ସମ୍ପୂର୍ଣ୍ଣ ସମାନ ନ ଥିଲେ । ଭକ୍ତି ପରମ୍ପରାର ଅନେକ ଦୃଷ୍ଟିକୋଣ ଥିଲା ଯେଉଁଗୁଡ଼ିକୁ ଭିନ୍ନ ଭିନ୍ନ ଭାବରେ ଦେଖିବାର ଆବଶ୍ୟକତା ଥିଲା । ଏକ ବ୍ୟାପକ ଆଧାର ବିଶିଷ୍ଟ ପରମ୍ପରା ହିସାବରେ ଏହା ସାରା ଭାରତବର୍ଷରେ କେତେକ ପ୍ରମୁଖ ଗୁଣବତ୍ତାର ପ୍ରବଳ ପ୍ରସାର କରାଇଲା । ଏଥିରୁ ଏହା ଉପଲବ୍ଧ ହେଲା ଯେ ଏକ ଛୋଟ ମାନ୍ୟତା-ନିର୍ଦ୍ଧାରକ ଗୋଷ୍ଠୀରେ ଔପଚାରିକତାବାଦ (formalism)ର ଆବଶ୍ୟକତା ଅଛି, ମାତ୍ର ସଂଖ୍ୟାଗରିଷ୍ଠଙ୍କ ଲାଗି ଧର୍ମ ହେଉଛି ପାରସ୍ପରିକ ଦ୍ୱନ୍ଦ୍ୱ, ସମଯୋଜନ, ସ୍ଥାନୀୟ କ୍ଷେତ୍ରରେ ସୀମିତ ପ୍ରତିଯୋଗିତା ଏବଂ ଧାର୍ମିକ ବିଶ୍ୱାସ ଓ ଅଭ୍ୟାସ ସହ ଜଡ଼ିତ ଆବେଗ ଏବଂ ମାନସିକ ପ୍ରତିକ୍ରିୟାର ପରୀକ୍ଷା ନିରୀକ୍ଷାର କ୍ଷେତ୍ର । ସାଂପ୍ରଦାୟିକତା ଭିତ୍ତିକ ଅସ୍ମିତା ହେଉଛି ଏକ ଚିହ୍ନି ହେଲାଭଳି ଅସ୍ମିତା । ଧର୍ମର ଆବଶ୍ୟକୀୟ ଉପାଦାନମାନ ଏହି ଶେଷୋକ୍ତ ଗୋଷ୍ଠୀର ପରିଚାଳନା – ସେମାନଙ୍କର ସଂଗଠନା, ଉପାସନାର ସ୍ୱରୂପ ଏବଂ ଉପାସନାସ୍ଥଳୀ ଉପରେ ଆଧାରିତ । ଯେଉଁମାନେ ଧର୍ମକୁ କେବଳ ଅନେକ ଶାସ୍ତ୍ର ମାଧ୍ୟମରେ ଚିହ୍ନିବାକୁ ଚେଷ୍ଟା କରନ୍ତି, ସେମାନେ ଏ କଥାକୁ ନଜର ଅନ୍ଦାଜ କରିଯାନ୍ତି ।

ଯୁକ୍ତି କରାଯାଇପାରେ ଯେ ବୈଷ୍ଣବଧର୍ମ ଏବଂ ଶୈବଧର୍ମ ହେଲେ ଦୁଇଟି ଆନ୍ଦୋଳନର ଧାର୍ମିକ ରୂପ, ତାହା ଯେକୌଣସି ପ୍ରକାରେ ମୁଣ୍ଡ ଟେକିଥାନ୍ତା । ଏହି ଦୃଷ୍ଟିକୋଣରୁ ଦେଖିଲେ, ରକ୍ଷଣଶୀଳତା ଏବଂ ସାମାଜିକ ବୈଷମ୍ୟ ଆଧାରିତ ବୈଦିକ ବ୍ରାହ୍ମଣ୍ୟବାଦର ସବୁକିଛିକୁ ସମରୂପରେ ଗ୍ରହଣ କରିବାର ପ୍ରଚେଷ୍ଟା ବିରୁଦ୍ଧରେ ଏଗୁଡ଼ିକ ଥିଲା ସ୍ଥାନୀୟ ଆବେଗ ଓ ପ୍ରବଣତାର ପ୍ରଶ୍ନ । ଭକ୍ତି ଆନ୍ଦୋଳନରେ ବୌଦ୍ଧ ଏବଂ ଜୈନମାନେ କମ୍ ଲୋକପ୍ରିୟ ଥିଲେ, କାରଣ ସେମାନେ ଉପାସନାର ଏକ ରୂପ ଆକାରରେ ବୈରାଗ୍ୟ ଅଭ୍ୟାସ କରି ଶରୀରକୁ ଏକପ୍ରକାର ସମ୍ବେଦନହୀନ କରିପକାଇଥିଲେ । ମାତ୍ର ଏହା ପ୍ରମୁଖ କାରଣ ନ ଥିଲା, କାରଣ କେତେଜଣ ପ୍ରମୁଖ ଧର୍ମ ଶିକ୍ଷକ ଜୈନଧର୍ମରୁ ଧର୍ମାନ୍ତରିତ ହୋଇଥିଲେ । ଜୈନଧର୍ମ ଏବଂ ତାମିଲ ଭକ୍ତି ଆନ୍ଦୋଳନ ମଧ୍ୟରେ ଥିବା ସମ୍ବନ୍ଧ ବିଷୟରେ ଯଥାଯଥ ଅନୁସନ୍ଧାନ କରାଯାଇ ନାହିଁ । ଏହି ଆନ୍ଦୋଳନ ରୂପ ପରିଗ୍ରହ କରିବା ଅପ୍ରତ୍ୟାଶିତ ନ ଥିଲା, କାରଣ ଏଥିପୂର୍ବରୁ ଏହାର ଦୀର୍ଘ ପ୍ରସ୍ତୁତିପର୍ବ ରହିଥିଲା । ବିଶେଷତଃ ଯଦି ଏହାର ଅଭ୍ୟୁଦୟର 'ସଙ୍ଗମ' କାଳର ପ୍ରେମ କବିତା ସହ ସମ୍ପର୍କ ଥାଏ, ତେବେ କଥା ଆଉ ଟିକେ

ସ୍ପଷ୍ଟ ହେବ । ସେଥିରୁ ହିଁ ପ୍ରେମ କବିତା ଓ ଭକ୍ତିର ଅଭ୍ୟୁଦୟ ହୋଇଥିବା କଥା କୁହାଯାଏ । ପ୍ରେମିକ ଭାବରେ ସ୍ୱୟଂ ଦେବତା ପବିତ୍ରତା ଏବଂ ଶୃଙ୍ଗାର ଆଧାରିତ ଶକ୍ତିଶାଳୀ କବିତାର ପ୍ରେରଣା ହୋଇଥିବେ ।

ଭକ୍ତି କବିତାରେ ବ୍ୟକ୍ତିର ପୁନର୍ଜନ୍ମରୁ ମୁକ୍ତି ନିମନ୍ତେ ପ୍ରଚେଷ୍ଟା ପ୍ରତିଫଳିତ ହୋଇଥାଏ । ଏଥିରେ ମୁକ୍ତି ଲାଗି ଭକ୍ତିକୁ ପନ୍ଥା ହିସାବରେ ଗ୍ରହଣ କରାଯାଇଥାଏ ଏବଂ ହିଂସା ଏଡ଼ାଇବା ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଦେବତାଙ୍କ ଠାରେ ପ୍ରେମ ନିବେଦିତ ହୋଇଥାଏ । ପୁରୁଷ ବା ନାରୀର ଇଷ୍ଟ ଦେବତାଙ୍କ ସହ ପ୍ରେମ ଆଧାରିତ ସମ୍ପର୍କ ଏବଂ ଦେବତାଙ୍କ ଆଶୀର୍ବାଦକୁ ଭିତ୍ତିକରି ଭକ୍ତିଭାବ ଗଢ଼ିଉଠିଥାଏ । ପୂର୍ବବର୍ତ୍ତୀ ଧାର୍ମିକ ଅନୁଚିନ୍ତନରେ ଏ ପ୍ରକାରର ସୂତ୍ର ଏତେ ଦୃଢ଼ଭାବରେ ପ୍ରତିଫଳିତ ହୋଇ ନ ଥିଲା । ଅସମ୍ପୂର୍ଣ୍ଣତା ଅନୁଭବ କରୁଥିବା ଉପାସକ ତା'ର ଦେବତାଙ୍କ ଲାଗି ପ୍ରେମ ଘୋଷଣା କରେ ଏବଂ ଦେବତା ମଧ୍ୟ ତା ସହିତ ପରିପୂରକ ସମ୍ପର୍କକୁ ଅନୁମୋଦନ କରନ୍ତି । 'ମୁରୁଗନ୍'କୁ ଉତ୍ସର୍ଗ କରାଯାଇଥିବା, ତାମିଲ କାବ୍ୟ ପରମ୍ପରାର ଏହିପରି ଏକ କବିତାରେ ଉପରୋକ୍ତ କଥା ଅତ୍ୟନ୍ତ ଚମତ୍କାର ଭାବେ ବର୍ଣ୍ଣିତ ହୋଇଛି ।

ଯେତେବେଳେ ତୁମେ ତାଙ୍କ ଶ୍ରୀମୁଖ ଦେଖ
ତାଙ୍କୁ ଆନନ୍ଦରେ ପ୍ରଶଂସା କର,
ହାତଯୋଡ଼ି ପୂଜା କର ତାଙ୍କୁ, ତାଙ୍କ ନିକଟରେ ମଥାନତ କର
ଯେପରିକି ତାଙ୍କର ପାଦ
ସ୍ପର୍ଶ କରିବ ତୁମର ମୁଣ୍ଡ,
ସ୍ୱର୍ଗ ଆଡ଼କୁ ଉତ୍ତୋଳିତ ତାଙ୍କର ରୂପ
ପବିତ୍ର ଏବଂ ଶକ୍ତିଶାଳୀ,
ମାତ୍ର ତାଙ୍କର ଦୃଢ଼ ମୁଖ ଥିବ ଲୁକ୍‌କାୟିତ
ସେ ତୁମକୁ ଦେଖାଇବେ
ଏକ ସୁବାସିତ, ସୁନ୍ଦର, ଯୁବସୁଲଭ ସ୍ୱରୂପ
ତାଙ୍କର କଥାରେ ଭରିଥିବ୍ ପ୍ରେମ ଓ ଆଶିଷ
ଭୟ କର ନାହିଁ – ମୁଁ ଜାଣିଥିଲି ତୁମେ ଆସୁଅଛ ।

(Pattupattu, 'Tirumuruganarrupadi', 285-90, in A.L. Basham,
*The Wonder That Was India*, p.330)

ବୈଷ୍ଣବ ଏବଂ ଶୈବ କବି, ଅଲୱାର ଏବଂ ନୟନାରମାନଙ୍କ କବିତା ତଥା ଶ୍ଳୋକ ମାଧ୍ୟମରେ ତାମିଲ ଭକ୍ତିବାଦ ଲୋକପ୍ରିୟତାର ଶୀର୍ଷରେ ପହଞ୍ଚିଲା । ଶିବ ଏବଂ ବିଷ୍ଣୁଙ୍କୁ

ନିବେଦିତ ଶ୍ଳୋକଗୁଡ଼ିକ 'ତିରୁମୁରାଇ' ଏବଂ 'ନଳଇରା ଦିବ୍ୟପ୍ରବନ୍ଧମ୍' ନାମକ ଦୁଇଟି ଭିନ୍ନ ଗ୍ରନ୍ଥରେ ସଂରକ୍ଷିତ ହୋଇଛି । ଶୈବ କବିମାନଙ୍କ ମଧ୍ୟରୁ ଅପ୍ପାର ସର୍ବାଧିକ ଲୋକପ୍ରିୟ ଥିଲେ । (ତାଙ୍କ ଦ୍ୱାରା ରାଜା ମହେନ୍ଦ୍ର ବର୍ମନ ଧର୍ମାନ୍ତରିତ ହୋଇଥିବା କଥା କୁହାଯାଏ) ସମ୍ବନ୍ଦର, ମାଣିକ୍କବସାଗର ଏବଂ ସୁନ୍ଦରମୂର୍ତ୍ତି ଆଦି ଶୈବକବି ମଧ୍ୟ ପୂର୍ବରୁ ଜୈନ ଧର୍ମାବଲମ୍ବୀ ଥିଲେ । ବେଶ୍ ପରିଚିତ ବୈଷ୍ଣବ ଅଲ୍‌ୱାର କବି ଥିଲେ ନମ୍ମଲବର, ତିରୁମଙ୍ଗାଇ ଅଲଭର ଏବଂ ବହୁଧା ସମ୍ମାନିତ ନାରୀକବି ଅନ୍ଦାଲ । ବୈଦିକ ଦେବତାମାନଙ୍କୁ ଏମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାନ କରାଗଲା ବା ନଜରଅନ୍ଦାଜ କରିଦିଆଗଲା । ଏହି ସମୟରେ ଉପାସନାର ଆଭିମୁଖ୍ୟ ଉପରେ ଗୁରୁତ୍ୱ ଦିଆଯିବା ପରିବର୍ତ୍ତେ ଉପାସନାରେ ନିହିତ ସମ୍ପର୍କ ଉପରେ ଗୁରୁତ୍ୱ ଦିଆଗଲା । ମାଣିକ୍କବସାଗର ତାଙ୍କ ଶ୍ଳୋକରେ ଏହାକୁ ନିମ୍ନମତେ ବର୍ଣ୍ଣନା କରୁଛନ୍ତି :

ଇନ୍ଦ୍ର, ବିଷ୍ଣୁ ବା ବ୍ରହ୍ମାଙ୍କର
ଦିବ୍ୟ ଆନନ୍ଦ ମୁଁ ଖୋଜେନା,
ମୁଁ ସନ୍ଥମାନଙ୍କର ପ୍ରେମ ଲୋଡ଼େ
ଯଦିଓ ତାହା ଦ୍ୱାରା ମୋର ଘର ବିଧ୍ୱସ୍ତ ହୁଏ,
ମୁଁ ରୌରବ ନର୍କକୁ ଯାଏଁ ପଛେ
ତୁମର ଆଶିଷ ମୋ ସହିତ ପୂର୍ଣ୍ଣରୂପେ ଥାଉ,
ତୁମ ବିନା ଆଉ କେଉଁ ଦେବତା ବା ଖୋଜିବି ?
ମୋର ସଦ୍‌ଗୁଣ, ତ୍ୟାଗ ତିତୀକ୍ଷା
ଜ୍ଞାନ, ଆତ୍ମସଂଯମ ବୋଲି କିଛି ନାହିଁ
କଣ୍ଢେଇଟିଏ ମୁଁ
ଅନ୍ୟର ଇଚ୍ଛାରେ ନାଚେ, କୁଦେ, ଲୋଟିପଡ଼େ ।
କିନ୍ତୁ ପ୍ରେମାବେଗର ଆକୁଳତାରେ
ସେ ପୂର୍ଣ୍ଣ କରିଛନ୍ତି ମୋର ପ୍ରତି ଅଙ୍ଗ ଅବୟବ
ଯେତେବେଳେ ଫେରିବାର ପଥ ନାହିଁ
ମୁଁ ହୁଏତ ଆରୋହଣ କରିବି ସେଠିକୁ
ତାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ କରି
ସେ ମୋତେ ଆପଣାଇଛନ୍ତି
ହାୟ ! ମୁଁ କେବେ ତାଙ୍କ ନିକଟକୁ ଯିବି... ?

(P. Kingsbury and G.E. Philips,
*Hymns of the Tamil Saivite Saints*, pp. 89, 127)

ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ରଚିତ ନମ୍ମଲଵରଙ୍କ କବିତାଗୁଡ଼ିକରେ ଦେବତାଙ୍କ ପ୍ରତି ଆହୁରି ଦୃଢ଼ ଅଙ୍ଗୀକାର ପ୍ରତିଫଳିତ ହୋଇଛି । ତହିଁରେ ଔପଚାରିକ ଧର୍ମ ପ୍ରତି କୌଣସି କୋହଳ ମନୋଭାବ ପୋଷଣ କରାଯାଇ ନାହିଁ ।

ଲିଙ୍ଗର କିମ୍ବଦନ୍ତୀରେ ବିଶ୍ୱାସୀଗଣ
ହେ ଜୈନମାନେ
ହେ ବୌଦ୍ଧଗଣ
ତୁମେ ସବୁ ତର୍କର ଉଦ୍‌ଗାତା
ଏପରିକି ନିଜର ଦେବତା ହୋଇଛ,
ମାତ୍ର ସେଠାରେ ଠିଆ ହୋଇଛନ୍ତି
ଆମର ପ୍ରଭୁ ।
ଆସ ତାଙ୍କୁ କୁର୍କୁରଠାରେ ଦେଖିଯାଅ
ଯେଉଁଠି ସମୃଦ୍ଧ ଧାନ୍ୟର କାନ ସାହାଯ୍ୟରେ
ଉତ୍ସବ ସୁଲଭ ମେରିଗାଈର (yak) ଲାଞ୍ଜ ପରି
ତାଙ୍କୁ ବ୍ୟଜନ କରାଯାଏ
ଏହି ସ୍ଥାନରେ ବିନା ମିଥ୍ୟାରେ
ତାଙ୍କର ସ୍ତବ କର ।

ଆଉ ଠାଏ ସେ କହୁଛନ୍ତି–

ମୁଁ କେବଳ
ମୋ ପ୍ରଭୁଙ୍କର ତୋଟା ଓ ପର୍ବତ କଥା କହିଲି
ସେ ଆସିଲେ
ଏବଂ ମୋ ହୃଦୟ ପୂର୍ଣ୍ଣ କଲେ,
ମୋର ପ୍ରଭୁ
ଯେ ସେଦିନ ମୋତେ
ଚିରଦିନ ଲାଗି ଭସାଇ ନେଲେ ଆନନ୍ଦ ଆଡ଼କୁ
ମୋତେ ତାଙ୍କ ଆଡ଼କୁ ଡାକିନେଲେ
ଏବଂ ମୋ ମାଧ୍ୟମରେ
ତାମିଲ୍‌ରେ ତାଙ୍କ ନିଜର ଗୀତ ଗାଇଲେ,
ମୁଁ କ'ଣ ଅବା କହିବି
ଯେଉଁଠି ପ୍ରଥମ ଦ୍ରବ୍ୟ ହେଲା

ଉତ୍ତୋଳିତ ଶିଖା
ବନ୍ଦ କରିବା ଲାଗି
ମୁଁ କ'ଣ ବା କହିବି ।

ତାଙ୍କର ମାତା (ପ୍ରଭୁଙ୍କ ପ୍ରେମିକା ରୂପୀ କବିଙ୍କ ମାତା) କ'ଣ କହୁଛନ୍ତି ଶୁଣନ୍ତୁ :

ହେ ନାରୀମାନେ
ତୁମର ମଧ ଝିଅ ଅଛନ୍ତି
ତୁମେ ସେମାନଙ୍କ ଲାଳନ କରୁଛ;
ମୁଁ କିପରି ମୋର
ବିଚାରି କନ୍ୟା କଥା କହିବି ?
ସେ ଶଙ୍ଖ* ବିଷୟରେ କହେ
କହେ ଚକ୍ର* ବିଷୟରେ
ସେ ତା'ର କେଶ ଭିତରର
ତୁଳସୀ ବିଷୟରେ କହେ
ମୁଁ କ'ଣ କରିବି ?

–(A.K. Ramanujam, *Hymns for the Drowning*, pp. 57, 78ff., 35)

ଅପ୍ପାର କହୁଛନ୍ତି :

ଥରେ ସେ ମୋତେ
ଉଲଗ୍ନ ଜୈନମାନଙ୍କ ସହିତ
ପ୍ରଧାବିତ କରାଇଲେ,
ତା' ପରେ ତାଙ୍କର ସୁବର୍ଣ୍ଣ ଚରଣ ପାଇଁ
ମଧୁର ଗୀତ ବୋଲାଇଲେ,
କୁରନକୁଟୁତୁରାଇଙ୍କ ପ୍ରଭୁ !
ମୋତେ କର୍ମ କବଳରୁ ରକ୍ଷା କଲେ
ଏବଂ ତାଙ୍କର ପ୍ରକୃତ ଭକ୍ତଙ୍କ ସହ
ଯୋଗ କରାଇଲେ ।

– (Indira V. Peterson, *Poems to Shiva*, p.289)

---

*ଶଙ୍ଖ ଏବଂ ଚକ୍ର ହେଲା ବିଷ୍ଣୁଙ୍କର ପ୍ରତୀକ ।

ଯଦିଓ କବିତାଗୁଡ଼ିକର ଗାୟକମାନଙ୍କ ମଧ୍ୟରୁ ଅନେକ ବ୍ରାହ୍ମଣ ଥିଲେ, ତଥାପି ସେମାନଙ୍କ ମଧ୍ୟରେ କାରିଗର ଏବଂ କୃଷକଭାବେ କାର୍ଯ୍ୟ କରୁଥିବା 'ନୀଚ' ଜାତିର ଲୋକ ମଧ୍ୟ ଥିଲେ । ସମସ୍ତେ ସଙ୍ଗୀତର ରଚୟିତା ନ ଥିଲେ, ତେବେ ସମସ୍ତେ ରଚନା ସହ ଉତ୍ତମ ରୂପେ ପରଚିତ ଥିଲେ । ସେମାନେ ତାମିଲ୍ ଦେଶର ବିଭିନ୍ନ ଭାଗରୁ ଆସିଥିଲେ ଏବଂ ଢେର୍ ବାଟ ଅତିକ୍ରମ କରି ଆସିଥିଲେ । ଏହି ଗୋଷ୍ଠୀର ସବୁଠାରୁ ମୌଳିକ କଥା ଥିଲା ଏହି ପ୍ରକ୍ରିୟାରେ ନାରୀ କବିମାନଙ୍କର ସକ୍ରିୟ ଅଂଶଗ୍ରହଣ ଏବଂ 'ପୁଲାୟିଆର' ବା ଜାତିଚ୍ୟୁତଙ୍କର ଉପସ୍ଥିତି ।

ପ୍ରସିଦ୍ଧ ନାରୀକବି ଅନ୍ଦାଲ୍‌ଙ୍କର କବିତାମାନ ସେତେବେଳେ ବହୁଳଭାବେ ଆବୃତି କରାଯାଉଥିଲା । ଅନ୍ଦାଲ ନିଜକୁ ବିଷ୍ଣୁଙ୍କର ପ୍ରେମିକା ରୂପେ ଦେଖୁଥିଲେ ଏବଂ ତାଙ୍କର ପଦ୍ୟାବଳୀରେ ସେହି ପ୍ରେମ ପ୍ରତିଫଳିତ ହେଉଥିଲା । କେତେ ଶତାବ୍ଦୀ ପରେ ଉତ୍ତର ଭାରତରେ ସମଭାବରେ ପ୍ରସିଦ୍ଧି ଅର୍ଜନ କରିଥିବା ଭକ୍ତିଭାବର କବି ମୀରାବାଈଙ୍କ ପଦ୍ୟଗୁଡ଼ିକର ଏହା ଥିଲା ଏକ ପୂର୍ବବର୍ତ୍ତୀ ପ୍ରତିଫଳନ । ତାଙ୍କ କ୍ଷେତ୍ରରେ ବିଷ୍ଣୁଙ୍କର ଅବତାର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମର ପରିପ୍ରକାଶ ଘଟିଥିଲା । 'କରାଇକ୍କଲମନିୟାର'ଙ୍କ ଉଚ୍ଚାରଣମାନ ବୈରାଗ୍ୟ ଭାବଦ୍ୟୋତକ ଥିଲା । ତାମିଲ୍ ଭକ୍ତି ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ନାରୀମାନେ ସେମାନଙ୍କର ସାମାଜିକ ବନ୍ଧନମାନ ଛିନ୍ନ କରିଥିଲେ । ତେବେ ଆଉ କୌଣସି ବିକଳ୍ପ ବ୍ୟବସ୍ଥା ସେମାନେ ଆଦରି ନ ଥିଲେ କିମ୍ବା ସନ୍ୟାସିନୀ ହୋଇ ନ ଥିଲେ । ସେମାନେ ନିଜର କବିତା କ୍ରିୟାଶୀଳତା ତଥା ଯୌନଉଦ୍ଦୀପନାର ପରିଶୋଧନ ମାଧ୍ୟମରେ ସମାଜ ଭିତରେ ଥାଇ ଏକ ବିକଳ୍ପର ସମ୍ଭାବନା ସୃଷ୍ଟି କରିଥିଲେ । ଏହା କିଛିମାତ୍ରାରେ ପିତୃତାନ୍ତିକ ସମାଜ ପ୍ରତି ଏକ ଆହ୍ୱାନ ସଦୃଶ ଥିଲା । ତେବେ ଏହାର ରୂପରେଖ ଦେବତାଙ୍କ ପ୍ରତି ଭକ୍ତି ଉପରେ ପର୍ଯ୍ୟବସିତ ଥିଲା । ନିଜର ଗୋଟିଏ କବିତାରେ ନମ୍ମଲବାର ନିଜର ଆରାଧ୍ୟ ପୁରୁଷ ଦେବତାଙ୍କ ସହ ନାରୀ ରୂପେ ସମ୍ପର୍କ ଯୋଡ଼ିବାର କଳ୍ପନା କରିଛନ୍ତି । ମାତ୍ର ଜଣେ ପୁରୁଷ କବିର କୌଣସି ଦେବୀଙ୍କ ପ୍ରତି ପ୍ରେମାନୁରାଗ ଉତ୍ସାହ ଲାଭ କରିପାରୁ ନ ଥିଲା । ଯଦିଓ ବ୍ୟାପକ ଦେବୀ ପୂଜା ହେଉଥିଲା, ତଥାପି ଦେବୀମାନେ ଏହି କବିତାମାନଙ୍କରେ କ୍ୱଚିତ୍ ଭକ୍ତିର କେନ୍ଦ୍ର ରୂପେ ପରିଗଣିତ ହେଉଥିଲେ ।

ପ୍ରଥମ ସହସ୍ରାବ୍ଦୀର ପରବର୍ତ୍ତୀ ଭାଗରେ 'ଅଲ୍‌ୱାର' ଏବଂ 'ନୟନାର'ମାନଙ୍କର ଧର୍ମ କାହିଁକି ଏତେ ଲୋକପ୍ରିୟ ହେଲା, ତାହାକୁ ନେଇ ଏବେ ବି ପ୍ରଶ୍ନବାଚୀ ରହିଛି । ଏହାର କାରଣ ଔପଚାରିକ ସଂସ୍କୃତ ଆଧାରିତ ସଂସ୍କୃତି ଏବଂ ଭବ୍ୟ ସମାଜରେ ପ୍ରଚଳିତ ଧର୍ମାଭ୍ୟାସ ବିରୁଦ୍ଧରେ ପ୍ରତିକ୍ରିୟା ହୋଇଥାଇ ପାରେ । ବୈଦିକ ବ୍ରାହ୍ମଣ୍ୟବାଦ ସହିତ ଭକ୍ତି

ପରମ୍ପରାର ସମ୍ବନ୍ଧ ପୂର୍ବବର୍ତ୍ତୀ ଶ୍ରମଣ ସଂପ୍ରଦାୟ ସମ୍ପର୍କ ସଦୃଶ ମନେହୁଏ । ନିମ୍ନ ଜାତିମାନଙ୍କୁ ସମାଜରୁ ବାଦ୍‌ଦେବା କଥା ଭଳି, ବ୍ରାହ୍ମଣମାନଙ୍କର କର୍ମକାଣ୍ଡ ଏବଂ ନିଜକୁ ଦେବତାମାନଙ୍କର ଘନିଷ୍ଠ ବୋଲି ଉପସ୍ଥାପନ କରିବା କଥାଟି ଗ୍ରହଣଯୋଗ୍ୟ ନ ଥିଲା । କିନ୍ତୁ ତାମିଲ ଭକ୍ତିବାଦ ମଧ୍ୟ ଶ୍ରମଣ ପରମ୍ପରାକୁ ନେଇ ନିର୍ଦ୍ଧାରିତ ମତପୋଷଣ କରିପାରୁ ନ ଥିଲା ଏବଂ ଶ୍ରମଣମାନଙ୍କ ପ୍ରତି ବୈର ମନୋଭାବ ସମ୍ପନ୍ନ ଥିଲା । ବୈଷ୍ଣବ ଏବଂ ଶୈବମାନଙ୍କ ଦୃଷ୍ଟିକୋଣରୁ ଶ୍ରମଣୀୟ-ବିଶ୍ୱାସ ଏକ ବିରୋଧଯୋଗ୍ୟ ଧର୍ମଧାରଣା ଥିଲା । ଦେବତାକୁ ମନ୍ଦିର ମଧ୍ୟସ୍ଥ ମୂର୍ତ୍ତି ଆକାରରେ ଦେଖି ତାଙ୍କୁ ବିଶ୍ୱାସର କେନ୍ଦ୍ରରେ ସ୍ଥାନ ଦେବା ପୌରାଣିକ ହିନ୍ଦୁଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ବିଭାବ ଥିଲା । ଭକ୍ତି ଆନ୍ଦୋଳନର ଏହା ସହିତ ସ୍ୱାଭାବିକ ଯୋଗସୂତ୍ର ରହିଥିଲା ।

ଏହା ମଧ୍ୟ କୁହାଯାଏ ଯେ ରାଜ୍ୟ-ବ୍ୟବସ୍ଥାରେ ପରିବର୍ତ୍ତନ ସହିତ ଏହି ଆନ୍ଦୋଳନ ସମାନ୍ତରାଳ ଥିଲା । ରାଜା ଥିଲେ ବଶମ୍ୱଦତାର କେନ୍ଦ୍ର ଏବଂ ମଧ୍ୟସ୍ଥ ବ୍ୟକ୍ତି; ଅଧସ୍ତନମାନଙ୍କଠାରୁ ସେ ଭକ୍ତିର ପ୍ରତ୍ୟାଶା ରଖୁଥିଲେ । ଅନ୍ୟପକ୍ଷରେ ଦେବତାମାନେ ଉପାସକମାନଙ୍କଠାରୁ ସମାନ ଆବେଗପ୍ରବଣତା ପ୍ରାପ୍ତ ହେଉଥିଲେ । ବଶମ୍ୱଦତାକୁ ଦୃଷ୍ଟିରେ ରଖି, ଅବ୍ୟକ୍ତ ସାଦୃଶ୍ୟ କାରଣରୁ ଭକ୍ତି ସଂପ୍ରଦାୟକୁ ପୃଷ୍ଠପୋଷକତା ଯୋଗାଇଦେବା ଲାଗି ଶାସକମାନେ ଆଗ୍ରହୀ ହୋଇଉଠିଥିବେ । ଯେଉଁ ଧର୍ମଗୁଡ଼ିକରେ ମନ୍ଦିର ଲାଗି ସ୍ଥାନ ନାହିଁ କିମ୍ବା ରାଜାଙ୍କର ଦିବ୍ୟତାକୁ ସ୍ୱୀକାର କରାଯାଏ ନାହିଁ, ସେଗୁଡ଼ିକ ତୁଳନାରେ ଏହାର ସନ୍ଦେଶ ପ୍ରତ୍ୟକ୍ଷ ଥିଲା । ମାତ୍ର ରାଜ୍ୟ ସହିତ ମନ୍ଦିର, ଦେବତାଙ୍କ ସହିତ ରାଜାଙ୍କର ସମୀକରଣ ବଡ଼ ଜଟିଳ ପରିସ୍ଥିତି ସୃଷ୍ଟି କରୁଥିଲା । ତାମିଲନାଡୁର ରାଜନୀତି କ୍ଷେତ୍ରରେ ଯେଉଁ ପରିବର୍ତ୍ତନମାନ ଘଟିଲା ତାହା ଏହି ସମୟରେ ଉପମହାଦେଶର ଅନ୍ୟାନ୍ୟ ଭାଗରେ ମଧ୍ୟ ସଂଘଟିତ ହେଲା ଯାହାକୁ ଭକ୍ତି ଆନ୍ଦୋଳନ କୁହାଯାଏ, ତାହା ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକରେ ଆଉ ଟିକେ ବିଳମ୍ବରେ ପ୍ରକଟିତ ହେଲା । ଏକ ବ୍ୟାପକ ସାମାଜିକ ପରିସର ଭକ୍ତି ଆନ୍ଦୋଳନକୁ ପ୍ରେରଣା ଯୋଗାଇଲା । କିନ୍ତୁ ଏହି ଶିକ୍ଷା ମୁତାବକ, ପ୍ରସ୍ତାବିତ ବ୍ୟକ୍ତିଗତ ମୁକ୍ତି ଐତିହାସିକ ପରିବର୍ତ୍ତନ ସହିତ ତାଳ ଦେଇ ସଂଘଟିତ ହୋଇଥିବ । ତାମିଲନାଡୁରେ ଏହାଫଳରେ କେତେକ କୃଷକ ଏବଂ କାରିଗର ଗୋଷ୍ଠୀର ଗତିଶୀଳତା ଉର୍ଦ୍ଧ୍ୱମୁଖୀ ହୋଇଥିବ । ଅନୁଚିନ୍ତା ଏବଂ କାର୍ଯ୍ୟ କ୍ଷେତ୍ରରେ ନଗରଗୁଡ଼ିକରେ ଉପଲବ୍ଧ ସ୍ୱାଧୀନତା ଏଥିରେ ସହାୟକ ହୋଇଥିବ ।

କେତେକ ପରମ୍ପରା ଅନୁସାରେ, ତାମିଲ ସମାଜ ବସ୍ତୁତଃ ବୌଦ୍ଧଧର୍ମକୁ ପ୍ରତ୍ୟାଖ୍ୟାନ କଲା ଏବଂ ଜୈନଧର୍ମ ପ୍ରତି ତା'ର ପୃଷ୍ଠପୋଷକତା ହ୍ରାସ ପାଇଲା । ବହୁବର୍ଣ୍ଣିତ ଗୋଟିଏ ଘଟଣା ମୁତାବକ, କେତେଜଣ ଜୈନ ସନ୍ନ୍ୟାସୀ ଏକ ଶୈବ ମଠ ଆକ୍ରମଣ କଲାପରେ

ବିତର୍କ ଲାଗି ସହମତ ହେଲେ ଏବଂ ବିତର୍କରେ ପରାସ୍ତ ହେଲାପରେ ଶୂଳି ଦଣ୍ଡ ଲାଗି ସହମତି ପ୍ରଦାନ କଲେ । ଶୂଳିପ୍ରାପ୍ତ ଲୋକଙ୍କ ସଂଖ୍ୟା ଆଠହଜାର ବୋଲି କୁହାଯାଏ । ଯେଉଁ ସମୟରେ ଶାସକମାନେ ଜୈନଧର୍ମରୁ ଶୈବଧର୍ମକୁ ଧର୍ମାନ୍ତରିତ ହେଉଥିଲେ ସେ ସମୟରେ ଏପରି ଏକ କାହାଣୀ ଅସ୍ୱାଭାବିକ ମନେହୁଏ । ଏହି ପରମ୍ପରା ଅନୁଯାୟୀ, ଭାରତର ଅନ୍ୟାନ୍ୟ ଭାଗରେ ଘଟିବା ପରି ସାଧାରଣତଃ ଶୈବ ଏବଂ ଶ୍ରମଣ ସଂପ୍ରଦାୟ ମଧ୍ୟରେ ଶତ୍ରୁତା ଥିଲା । ଧୀରେ ଧୀରେ ଉପଦ୍ୱୀପରେ ଜୈନଧର୍ମ ପ୍ରସୂତ ଗୋଷ୍ଠୀ ଦକ୍ଷିଣରେ ଅଳ୍ପ କେତେକ ଅଞ୍ଚଳ ସମେତ କର୍ଣ୍ଣାଟକରେ ସୀମାବଦ୍ଧ ହୋଇଗଲା । ଜାତିଗତ ସଂରଚନାର ଆଧାରରେ ପ୍ରତିଷ୍ଠିତ ସମାଜ ବ୍ୟବସ୍ଥାକୁ ସେମାନେ ପ୍ରତ୍ୟାଖ୍ୟାନ କରିବାର ଦମ୍ଭ ପୋଷଣ କଲେ; ତେବେ ଏହି ପ୍ରତ୍ୟାଖ୍ୟାନ କେବଳ ନୀତିଗତ ସ୍ତରରେ ସୀମିତ ରହିଲା । ଏହାଦ୍ୱାରା ସମାଜରେ କୌଣସି ମୌଳିକ ପରିବର୍ତ୍ତନ ସାଧିତ ହୋଇପାରିଲା ନାହିଁ ।

ମୂଳତଃ ଲୋକ ଦେବତା ରୂପେ ପରିଚିତ ହିଁ କାଳକ୍ରମେ ମୁଖ୍ୟ ସ୍ରୋତର ଦେବତାରେ ପରିଣତ ହେଲେ । କରୁଣା ବିଗଳିତ ଦେବବିଗ୍ରହ ପ୍ରାୟତଃ ବୌଦ୍ଧ (ବିଶେଷକରି ପରମକାରୁଣିକ ବୋଧିସତ୍ତ୍ୱ) ଚେତନାର ପ୍ରତିଫଳନରେ ଗଠିତ ହେଲା । ଯଦିଓ ଦକ୍ଷିଣର ଖ୍ରୀଷ୍ଟିଆନ୍‌ମାନଙ୍କର ମଧ୍ୟ ଏ କ୍ଷେତ୍ରରେ ଅବଦାନ ଥାଇପାରେ । ଭକ୍ତି ସଂପ୍ରଦାୟର ଗୁରୁତ୍ୱପୂର୍ଣ୍ଣ ବିଭାବ – ମଣିଷର ଅପୂର୍ଣ୍ଣତାର ଅନୁଭବ, ବୈଦିକ ପରମ୍ପରା ଅପେକ୍ଷା ବୌଦ୍ଧ ପରମ୍ପରା ଦ୍ୱାରା ବେଶି ପ୍ରଭାବିତ ହୋଇଥିବା ସମ୍ଭବ । ବହୁବିଧ ସଂପ୍ରଦାୟର ଅଧୋପତନ ସହିତ ଭକ୍ତି ସଂପ୍ରଦାୟର ଅଭ୍ୟୁତ୍ଥାନ ଘଟିଲା, ଯେଉଁଥିପାଇଁ ସେମାନେ ଅନୁଗାମୀ ପ୍ରାପ୍ତ ହେବାରୁ ବଞ୍ଚିତ ହେଲେ ।

ଗୋଟିଏ ସ୍ତରରେ ତାମିଲ ଭକ୍ତି ସଂପ୍ରଦାୟ ସଂସ୍କୃତ ଆଧାରିତ ସଂସ୍କୃତିର ପ୍ରତିରୋଧ କଲା । ବ୍ରାହ୍ମଣମାନେ ରାଜପୃଷ୍ଠପୋଷକତା ଉପଭୋଗ କଲାବେଳେ ଏହି ସଂପ୍ରଦାୟକୁ ବିପୁଳ ଜନସମର୍ଥନ ମିଳିଲା । ଅବଶ୍ୟ ପରେ ଏହି ସଂପ୍ରଦାୟ ରାଜପୃଷ୍ଠପୋଷକତା ଲାଭ କଲା । ଯେତେବେଳେ ସେମାନଙ୍କର ଅନୁଗାମୀଙ୍କ ସଂଖ୍ୟାରେ ବୃଦ୍ଧି ଘଟିଲା, ଧାର୍ମିକ ପ୍ରତିବଦ୍ଧତା ବାଦ୍ ଆଂଶିକଭାବେ ରାଜନୈତିକ ଆବଶ୍ୟକତା ଦୃଷ୍ଟିରୁ ସେମାନଙ୍କୁ ରାଜପୃଷ୍ଠପୋଷକତା ପ୍ରାପ୍ତ ହେଲା । ଲୋକପ୍ରିୟ ଆନ୍ଦୋଳନଗୁଡ଼ିକର ସାମର୍ଥ୍ୟ ସମ୍ପର୍କରେ ଏକ ସ୍ଥିର ସଚେତନତା ରାଜକ୍ଷମତାର ଏକ ଆବଶ୍ୟକ ପ୍ରତିସ୍ପର୍ଦ୍ଧୀ ଦିଗ ଥିଲା । ଲୋକପ୍ରିୟ ଆନ୍ଦୋଳନ ସହ ସଂପୃକ୍ତି ଏକ ବଶମ୍ୱଦତାର ପରିସର ସୃଷ୍ଟି କଲା । ତେଣୁ ଏ କ୍ଷେତ୍ରରେ ଯଦି ଆନ୍ଦୋଳନ ବ୍ୟାପକ ହେଉଥିଲା ତେବେ ଭୂଖଣ୍ଡ ଦିଗରୁ ସଂପ୍ରସାରଣ ମଧ୍ୟ ସମ୍ଭବ ଥିଲା । ତାମିଲ ଭକ୍ତି ଆନ୍ଦୋଳନର ମୂଳ ସ୍ଥାନୀୟ ଅଞ୍ଚଳରେ ନିହିତ ଥିଲା । ତେଣୁ କିଛି

ମାତ୍ରାରେ ଏହା ରାଜନୈତିକ ଆଧିପତ୍ୟ ଲାଗି ଉପଯୋଗୀ ଥିଲା । ଅନ୍ୟପକ୍ଷରେ, ବୈଦିକ ବ୍ରାହ୍ମଣ୍ୟବାଦ ବ୍ୟାପକ କର୍ମକାଣ୍ଡ ମାଧ୍ୟମରେ ସଂସ୍କୃତର ପ୍ରସାର ଘଟାଉଥିଲା । ମାତ୍ର ଉକ୍ତ ସଂପ୍ରଦାୟଗୁଡ଼ିକ ନିଜର ଭାବଧାରାକୁ ସାଧାରଣ କ୍ଷେତ୍ରରେ ବୋଧଗମ୍ୟ ହେଲାଭଳି କଥିତ ଭାଷା ବ୍ୟବହାର କରି ପ୍ରଚାର କରୁଥିଲେ । ବ୍ରାହ୍ମଣମାନେ ଜାତିପ୍ରଥାକୁ ଆହୁରି ଗୁରୁତ୍ୱ ଦେଲାବେଳେ, ତାମିଲ କବିମାନେ କେବଳ ଜାତିଗତ କାରଣରୁ କାହାରିକୁ ବାଦ୍ ଦେଉ ନ ଥିଲେ, ବରଂ ନିମ୍ନ ଜାତିର ଲୋକମାନଙ୍କୁ ସ୍ୱାଗତ କରୁଥିଲେ ।

ବ୍ରାହ୍ମଣମାନଙ୍କ ପୃଷ୍ଠପୋଷକତାରେ, ଆର୍ଥିକ ସହାୟତା ପ୍ରାପ୍ତ ହୋଇ ସଂଗଠିତ ଧର୍ମ ବେଶ୍ ସୁରକ୍ଷିତ ଥିଲା । ଏହି ଆର୍ଥିକ ସହାୟତା ରାଜପରିବାର, ଧନୀ ଭୂମିମାଲିକ ତଥା ବଣିକଙ୍କଠାରୁ ପ୍ରାପ୍ତ ହେଉଥିଲା । ସ୍ଥାନୀୟ ମନ୍ଦିର ବା ଦେବତାଙ୍କ ଆବାସସ୍ଥଳୀ ଧାର୍ମିକ କାର୍ଯ୍ୟକଳାପର କେନ୍ଦ୍ର ଥିଲା । କେହି କେହି କର୍ମକାଣ୍ଡ ଏବଂ ଉତ୍ସବ ମାଧ୍ୟମରେ ବ୍ରାହ୍ମଣ୍ୟବାଦ ଏବଂ ଭକ୍ତି ଆନ୍ଦୋଳନ ମଧ୍ୟରେ, ସୀମିତ ହେଉ ପଛେ, ସମନ୍ୱୟ ଆଣିବାଲାଗି ପ୍ରଚେଷ୍ଟା କରୁଥିଲେ । ଏହି କିସମର ପ୍ରଚେଷ୍ଟା ଲାଗି ମନ୍ଦିର ଥିଲା ଆବଶ୍ୟକ କ୍ଷେତ୍ର । ମନ୍ଦିରର ଅନେକ ପ୍ରକାରର କାର୍ଯ୍ୟାଧିକାରୀ ଥିଲେ । ସେମାନଙ୍କ ମଧ୍ୟରୁ ସବୁଠାରୁ ପ୍ରଭାବଶାଳୀ ଥିଲେ ବେଦ ଏବଂ ଅନ୍ୟାନ୍ୟ ସଂସ୍କୃତ ଶିକ୍ଷାରେ ପ୍ରବୀଣ ସ୍ମାର୍ତ୍ତ ବ୍ରାହ୍ମଣମାନେ । ଅନେକ ସଂଖ୍ୟକ ବ୍ରାହ୍ମଣ ସ୍ଥାନୀୟ ପୂଜକ ରୂପେ ନିଯୁକ୍ତି ପାଉଥିଲେ । ସେମାନଙ୍କର ବେଦ ଓ ପୁରାଣ ସମ୍ପର୍କରେ ସୀମିତ ଜ୍ଞାନ ଥିଲା ଏବଂ ସେମାନେ ଅନେକ କର୍ମକାଣ୍ଡ କରୁଥିଲେ । ଯେଉଁଠାରେ ସ୍ଥାନୀୟ ସଂସ୍କୃତିର କେନ୍ଦ୍ରକୁ ଆଧାର କରି ମନ୍ଦିର ଗଢ଼ିଉଠୁଥିଲା ସେ କ୍ଷେତ୍ରରେ ପୂଜକମାନେ ଦେବତାଙ୍କ ପୂଜାରେ ସ୍ଥାନୀୟ ପଦ୍ଧତି ଓ ସ୍ଥାନୀୟ କିମ୍ବଦନ୍ତୀର ପ୍ରଚଳନ କରାଉଥିଲେ । ସଂପ୍ରଦାୟ ଭିତ୍ତିକ ଆଗମ ପାଠରେ ଏହାକୁ ଅନ୍ତର୍ଭୁକ୍ତ କରାଯିବା ପରେ ଏହା ଉପରେ ଯଥାର୍ଥତାର ମୋହର ବାଜୁଥିଲା । ଏହାଫଳରେ ସ୍ଥଳପୁରାଣ ଏବଂ ମହାତ୍ମ୍ୟ ମାଧ୍ୟମ ଦେଇ ମନ୍ଦିରକୁ ଏକ ଆରୋପିତ ଇତିହାସ ମିଳିଯାଉଥିଲା । ତାମିଲ ଭକ୍ତିଧାରାର କବିମାନେ ଇଷ୍ଟ ଦେବତା ଏବଂ ତାଙ୍କର ମୂର୍ତ୍ତିକୁ ସମ୍ବୋଧନ କରୁଥିଲେ । ସେମାନଙ୍କର ଅନୁଗାମୀ ବଢ଼ିବା ସହିତ ରଚନାଗୁଡ଼ିକ ଭକ୍ତି ପୂଜାର ଅଂଶବିଶେଷ ହୋଇଉଠୁଥିଲା । ଏହି ତଫାତ୍‌ରୁ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ସଂଘାତ ଉପୁଜି ଥାଇପାରେ । ଗୋଟିଏ ସ୍ତରରେ ଭକ୍ତିବାଦ ସ୍ଥାନୀୟ ସଂସ୍କୃତି, ପୂଜାର ସ୍ୱରୂପ ଏବଂ ଭାଷା ଉପରେ ଗୁରୁତ୍ୱ ଆରୋପ କରୁଥିଲା । ଆଉ ଏକ ସ୍ତରରେ ଉପମହାଦେଶର ଅନ୍ୟାନ୍ୟ ଅଞ୍ଚଳରେ ଜଣାଶୁଣା ଦେବତାମାନଙ୍କର ପୂଜା କରିବା ମାଧ୍ୟମରେ ଏହା ପୌରାଣିକ ହିନ୍ଦୁଧର୍ମକୁ ସମାଂଗୀକୃତ (homogenizing) କରିବାରେ ଆଂଶିକ ସହଯୋଗ କରୁଥିଲା ।

## ମନ୍ଦିରର ଭୂମିକା

ମନ୍ଦିର ପରିଚାଳନା ଦେବୋତ୍ତର ବ୍ୟବସ୍ଥା ମାଧ୍ୟମରେ ହେଉଥିଲା । ଏହା ଗ୍ରାମ ଏବଂ ଚାଷଜମି ମାଧ୍ୟମରେ ହେଉ ଅଥବା ପୁଞ୍ଜିନିବେଶ ମାଧ୍ୟମରେ ହେଉ । ରାଜପରିବାରର ସଦସ୍ୟ, ବିତ୍ତମାନ ମଧ୍ୟସ୍ଥି, ବଣିକ ବା ଶ୍ରେଣୀ ଦାତାର ଭୂମିକା ନିର୍ବାହ କରୁଥିଲେ । ମନ୍ଦିରର ଛୋଟ ଛୋଟ ଉପକରଣ, ଯଥା- କ୍ଷୁଦ୍ର ମୂର୍ତ୍ତି, ଦୀପ, ତେଲ ଇତ୍ୟାଦି, ଗୋଷ୍ଠୀର ଅପେକ୍ଷାକୃତ ନିମ୍ନ ବର୍ଗର ବ୍ୟକ୍ତିମାନଙ୍କର ବ୍ୟକ୍ତିଗତ ଦାନ ମାଧ୍ୟମରେ ଉପଲବ୍ଧ ହେଉଥିଲା । ମନ୍ଦିରର ସାହାଯ୍ୟକାରୀଗଣ ବିଭିନ୍ନ ପ୍ରକାରର ଥିଲେ । ସବୁଠାରୁ ପବିତ୍ରତମ ସ୍ଥାନ ଗର୍ଭଗୃହରେ ହେବାକୁ ଥିବା କର୍ମକାଣ୍ଡମାନ ବ୍ରାହ୍ମଣମାନଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା । ଅନ୍ୟପକ୍ଷରେ ଅଲଗା ଜାତି (ସାଧାରଣତଃ ନିମ୍ନ ଜାତି)ର ଲୋକେ ମନ୍ଦିରର ଉତ୍ସବଗୁଡ଼ିକରେ ସଙ୍ଗୀତ କାର୍ଯ୍ୟକ୍ରମ କରିବା, ଦୀପ ଜଳାଇବା, ବିଗ୍ରହମାନଙ୍କର ପୂଜା ଲାଗି ଫୁଲ ଓ ଫୁଲମାଳ ଯୋଗାଇବା ଏବଂ ମନ୍ଦିର ପରିଷ୍କାର ରଖିବା ଇତ୍ୟାଦି କାର୍ଯ୍ୟ ସମ୍ପାଦନ କରୁଥିଲେ । କିନ୍ତୁ କୁମ୍ଭକାର, ମୋଚି ତଥା ଅନ୍ୟାନ୍ୟ ଜାତିଚ୍ୟୁତମାନଙ୍କୁ ଧାର୍ମିକ ପଦ୍ଧତି ଦୃଷ୍ଟିକୋଣରୁ ମ୍ଳେଚ୍ଛ ଜାତି ବୋଲି ଗଣାଯାଉଥିଲା । ସେମାନଙ୍କୁ ମନ୍ଦିର ମଧ୍ୟକୁ ପ୍ରବେଶ କରିବାକୁ ଦିଆଯାଉ ନ ଥିଲା, କାରଣ ସେମାନଙ୍କ ଉପସ୍ଥିତିରେ ମନ୍ଦିର ଦୂଷିତ ହୋଇଯିବ ବୋଲି କୁହାଯାଉଥିଲା । ମନ୍ଦିରକୁ ଆସୁଥିବା ଦାନ ଏବଂ ପରିଚାରକମାନଙ୍କ ସଂଖ୍ୟା ଅଧିକ ହେବାରୁ ସ୍ୱାଭାବିକ ଭାବେ ଏହାର ପ୍ରଶାସନ ଓ ନିରୀକ୍ଷଣ ଲାଗି ଔପଚାରିକ ପରିଚାଳନା କମିଟି ନିଯୁକ୍ତ କରାଯାଉଥିଲା । ବ୍ରାହ୍ମଣ, ଧାର୍ମିକ ଦିଗରୁ ପରିଶୁଦ୍ଧ ଶୂଦ୍ର ଜମିମାଲିକ ବା ବେଲାଳ ଏବଂ କେତେଜଣ ଅଧିକାରୀ ପରିଚାଳନା କମିଟିର ଅନ୍ତର୍ଭୁକ୍ତ ଥିଲେ ।

ତାମିଲ କବିମାନେ ସେମାନଙ୍କର ଶ୍ଳୋକ ଏବଂ ସଙ୍ଗୀତକୁ ଲୋକପ୍ରିୟ କରାଇଦେଲେ ଯେଉଁଗୁଡ଼ିକ କ୍ରମେ ମନ୍ଦିର କର୍ମକାଣ୍ଡ ସହ ଯୋଡ଼ି ହୋଇପଡ଼ିଲା । ପରବର୍ତ୍ତୀ ସମୟରେ ଏହା ଗଭୀରଭାବେ ପ୍ରଭାବିତ କଲାଭଳି ସଙ୍ଗୀତ ସୃଷ୍ଟି ପାଇଁ ପ୍ରେରଣାପ୍ରଦ ହେଲା । ବୀଣା ଥିଲା ସମ୍ଭବତଃ ଅନେକତ୍ର ବ୍ୟବହୃତ ଯନ୍ତ୍ର । ପ୍ରାରମ୍ଭିକ ପର୍ଯ୍ୟାୟରେ ଏହା ଥିଲା ନାସ୍‌ପାତି ଆକାରର ଏକ ଯନ୍ତ୍ର । ପରବର୍ତ୍ତୀ ସମୟରେ ଏହା ଆଜିର ପରିଚିତ ସ୍ୱରୂପ ନେଲା – ଯେଉଁଥିରେ ଉଭୟ ପାର୍ଶ୍ୱରେ ଲାଉତୁମ୍ବା ଏବଂ ମଝିରେ ଅଙ୍ଗୁଳିଚାଳନା ଲାଗି ତା'ର ରହେ । ନୃତ୍ୟ ଏବଂ ସଙ୍ଗୀତ ଦେବତାଙ୍କର ସେବା ଆକାରରେ ମନ୍ଦିର କର୍ମକାଣ୍ଡର ଅନ୍ତର୍ଭୁକ୍ତ ହେଲା । ପଲ୍ଲବମାନଙ୍କ ସମୟ ତଥା ତା'ର ପରବର୍ତ୍ତୀ କାଳରୁ ସ୍ୱଚ୍ଛଳ ମନ୍ଦିରଗୁଡ଼ିକ ପାଇଁ ପ୍ରଶିକ୍ଷିତ ନର୍ତ୍ତକୀ, ଗାୟକ ଏବଂ ସଙ୍ଗୀତଜ୍ଞମାନଙ୍କର ବ୍ୟବସ୍ଥା କରାଗଲା । ଲୋକନୃତ୍ୟ ଧାରାରୁ ଉଦ୍‌ଭୁତ ହୋଇ ମନ୍ଦିର ନୃତ୍ୟର ରୂପରେଖ ସମ୍ଭ୍ରାନ୍ତ ଏବଂ ଶୈଳୀ ମଣ୍ଡିତ ହୋଇଉଠିଲା

ଏବଂ ପରବର୍ତ୍ତୀ କାଳରେ ତା'ର ବିଷୟବସ୍ତୁ ଧର୍ମଭାବାପନ୍ନ ହେଲା । ଏଥିରୁ ହିଁ ସାରା ଭାରତର ବଡ଼ ବଡ଼ ମନ୍ଦିରମାନଙ୍କରେ ଦେବଦାସୀ ପ୍ରଥାର ପ୍ରଚଳନ ହେଲା । ଏହାର ପ୍ରଶିକ୍ଷଣ ଜଟିଳ କୌଶଳ ଆଧାରିତ ଏବଂ ଆୟାସସାଧ ଥିଲା, ପୁଣି ସେମାନଙ୍କୁ ବିଭିନ୍ନ ପ୍ରକାରର ନୃତ୍ୟ, ଗୀତ ଏବଂ ସଙ୍ଗୀତ ପରିବେଷଣ କରିବାକୁ ହେଉଥିଲା । ସେମାନଙ୍କ ମଧ୍ୟରୁ କେହି କେହି ଭକ୍ତି କବିତା ରଚନା କଲେ । ମୂଳତଃ ସେମାନେ ସମ୍ପାଦନ କରୁଥିବା ନୀତିରେ ନାରୀଠାରେ ନିହିତ ସ୍ୱତନ୍ତ୍ର କ୍ଷମତା ସମ୍ପର୍କୀୟ ସୂଚନା ରହୁଥିଲା, ଯାହାର ବିଭିନ୍ନ ବିଭାବ କର୍ମକାଣ୍ଡ ଏବଂ ନୃତ୍ୟରେ ପରିପ୍ରକାଶ ଲାଭ କରିଛି । ମାତ୍ର ବେଳେବେଳେ ଏହା ଲକ୍ଷ୍ୟଚ୍ୟୁତ ହୋଇ ମନ୍ଦିରର ସ୍ୱଚ୍ଛଳ କାର୍ଯ୍ୟକର୍ତ୍ତା ଏବଂ ଉପାସକମାନଙ୍କ ମନୋରଞ୍ଜନାର୍ଥେ ବିନିଯୁକ୍ତ ହେଉଥିଲା । ଯେଉଁ ସ୍ଥାନରେ ଏଥିରେ ଅବକ୍ଷୟ ଘଟୁଥିଲା ସେହି ସ୍ଥାନରେ ନିଃସନ୍ଦେହରେ ନାରୀମାନଙ୍କ ଅଭିନୟରେ ଦେବତାଙ୍କ ପ୍ରତି କୌଣସି ଶ୍ରଦ୍ଧାଞ୍ଜଳି ପରିପୁଷ୍ଟ ହେଉ ନ ଥିଲା ।

ବୌଦ୍ଧମାନଙ୍କ ଦ୍ୱାରା ପ୍ରଚଳିତ ଗୁମ୍ଫା-ମନ୍ଦିର ଖନନ ପ୍ରକ୍ରିୟା ଯଥାରୀତି ଚାଲୁ ରହିଥିଲା । ବ୍ରାହ୍ମଣ ଏବଂ ବୌଦ୍ଧମାନଙ୍କ ପୃଷ୍ଠପୋଷକମାନେ ଦାକ୍ଷିଣାତ୍ୟର ପାର୍ବତ୍ୟାଞ୍ଚଳ ଏବଂ ଆହୁରି ଦକ୍ଷିଣକୁ ଅନେକ ସ୍ଥାନରେ ଉପାସନା ପୀଠ ଏବଂ ମନ୍ଦିର ଖନନ କରିବା ମାଧ୍ୟମରେ ପରସ୍ପର ସହ ପ୍ରତିଦ୍ୱନ୍ଦ୍ୱିତା କରିଚାଲିଲେ । ଏହି ଗୁମ୍ଫାଗୁଡ଼ିକ ମଧ୍ୟରୁ ଅଜନ୍ତା ଏବଂ ଏଲୋରା ସବୁଠାରୁ ମନୋମୁଗ୍ଧକର । ଶେଷୋକ୍ତ ସ୍ଥଳୀରେ ଶିବ ଏବଂ ବିଷ୍ଣୁଙ୍କ ମନ୍ଦିର ଖନନ, ପଥର କାଟି ନିର୍ମାଣ କରାଯାଇଥିବା ଜୈନ ମନ୍ଦିର ପୂର୍ବବର୍ତ୍ତୀ କାଳରେ ବୌଦ୍ଧମାନଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଗୁମ୍ଫା ଦେବସ୍ଥଳୀ (ଖୋଦିତ)ର ଅନୁକରଣ ଅଟେ ।

କେତେକ ବୌଦ୍ଧ ଗୁମ୍ଫାର କାନ୍ଥରେ ଅଙ୍କିତ ଚିତ୍ରରେ ବୌଦ୍ଧ ବିଚାର ରେଖାଙ୍କିତ ହୋଇଛି । ଏହି ଅଙ୍କନଗୁଡ଼ିକରେ ବୌଦ୍ଧ ବିଚାରର ପରିଚିତ କଥାବସ୍ତୁ ସ୍ଥାନିତ ହୋଇଛି । ପୁଣି ସମକାଳର ଧନିକ ବର୍ଗର ଜୀବନ ଉପରେ ରେଖାପାତ ମଧ୍ୟ କରାଯାଇଛି । ଏହି ବିରାଟ ଗୁମ୍ଫାଗୁଡ଼ିକରେ ଆଲୋକର ଅଭାବ ଏବଂ କାର୍ଯ୍ୟ କରିବାର ପ୍ରତିକୂଳ ପରିସ୍ଥିତିକୁ ବିଚାରକୁ ନେଲେ ଗଭୀରଭାବେ ଖୋଦିତ ଗୁମ୍ଫାର କାନ୍ଥରେ ଅଙ୍କନ କରିବା ଏବଂ ପଥର ଦେହରେ ଭାସ୍କର୍ଯ୍ୟ ଫୁଟାଇବା କୌଣସି ସହଜ କଥା ନୁହେଁ । ଅଙ୍କନ କରାଯିବା ପୂର୍ବରୁ ଏହି ଚିତ୍ରଗୁଡ଼ିକର ଶୈଳୀ ପାଇଁ ଏକ ଭିତ୍ତି ପ୍ରସ୍ତୁତ କରିବା ଜରୁରୀ ହେଉଥିଲା । ପଥର ଚୂର୍ଣ୍ଣ, ମାଟି ଅଥବା ଗୋବରକୁ ନଡ଼ା ଏବଂ ପାଣିଆ ଗୁଡ଼ ସହ ମିଶାଇ ଯେଉଁ ଲେପ ପ୍ରସ୍ତୁତ କରାଯାଉଥିଲା, ତାକୁ କାନ୍ଥରେ ଲେପି ଭିତ୍ତି ପ୍ରସ୍ତୁତ କରାଯାଉଥିଲା । ଏହାକୁ ବଡ଼ ଯତ୍ନର

ସହ ଚିକ୍କଣ କରାଯାଉଥିଲା । ଯଦି ଏହା ତଥାପି ଓଦା ରହୁଥିଲା, ତେବେ ଏହା ଉପରେ ପତଳା ଚୂନପାଣି ପରସ୍ତେ ଦିଆଯାଉଥିଲା । ଭିତ୍ତି ଶୁଖିଗଲା ପରେ ରଙ୍ଗ ପ୍ରୟୋଗ କରାଯାଉଥିଲା ଏବଂ ତାକୁ ମାଜି ପରିଚ୍ଛନ୍ନ କରି ଉଜ୍ଜ୍ୱଳ କରାଯାଉଥିଲା । ଖଣିଜ ପଦାର୍ଥ ଏବଂ ଉଦ୍ଭିଦରୁ ରଙ୍ଗ ପ୍ରସ୍ତୁତ କରାଯାଉଥିଲା । ଆଜି ବି ସେଠାରେ କେତେକ ରଙ୍ଗର ମୂଳ ଚମକ ବିଲୁପ୍ତ ହୋଇନାହିଁ ।

କେବଳ ଗୁମ୍ଫା ମନ୍ଦିର ନୁହେଁ, ଦକ୍ଷିଣରେ ମୁକ୍ତ ଭାବେ ଉଭା ମନ୍ଦିରଗୁଡ଼ିକରେ ମଧ୍ୟ କାନ୍ଥ ଚିତ୍ର ଉପଲବ୍‌ଧ ଥିଲା । ପୂର୍ବୋକ୍ତ କ୍ଷେତ୍ରରେ କେତେକ କାନ୍ଥ ଚିତ୍ର ସନ୍ନ୍ୟାସୀମାନଙ୍କ ଦ୍ୱାରା ଅଙ୍କିତ ହୋଇଥିଲା, ଯଦିଓ ଏଥିରେ ପରିଦୃଷ୍ଟ ହେଉଥିବା ପେଷାଦାର ବିଚକ୍ଷଣତାରୁ ଏହା କଳାକାରମାନଙ୍କ ଦ୍ୱାରା ଅଙ୍କିତ ହେଲାଭଳି ଜଣାଯାଏ । କାନ୍ଥ-ଚିତ୍ର ଯେ କେବଳ ମନ୍ଦିରରେ ଅଙ୍କିତ ହେଉଥିଲା ତାହା ନୁହେଁ, ସାହିତ୍ୟିକ ବର୍ଣ୍ଣନା ମୁତାବକ ଘରୋଇ ସ୍ଥାପତ୍ୟଗୁଡ଼ିକରେ ମଧ୍ୟ ତାହା ଅଙ୍କିତ ହେଉଥିଲା, ତେବେ ଦୁର୍ଭାଗ୍ୟକୁ ସେ ସବୁ ଏବେ କାଳଗ୍ରାସରୁ ବର୍ତ୍ତି ନାହିଁ ।

ପଥର କଟାହୋଇ ଗଢ଼ାହୋଇଥିବା ମନ୍ଦିରରେ ପରବର୍ତ୍ତୀ ସମୟରେ କୌଣସି ଭାସ୍କର୍ଯ୍ୟ ଯୋଗ କରିବା ସମ୍ଭବପର ନ ଥିଲା । ତେଣୁ କେଉଁଠି କ'ଣ ଖୋଦିତ ହେବ ତା'ର ଅବସ୍ଥିତି ଅଗ୍ରୀମଭାବେ ଯୋଜନା କରିବାକୁ ପଡୁଥିଲା । ପଥର କାଟିବାବେଳେ ଚରମ ସତର୍କତା ଓ ସଂଯମ ଅବଲମ୍ବନ କରିବାକୁ ପଡୁଥିଲା, କାରଣ ସାମାନ୍ୟ ତ୍ରୁଟି ହେଲେ ଭାସ୍କର୍ଯ୍ୟ କିମ୍ବା ସମ୍ପୂର୍ଣ୍ଣ ସ୍ଥାପତ୍ୟଟି ନଷ୍ଟ ହୋଇଯିବାର ସମ୍ଭାବନା ଥିଲା । ପଥରରୁ ଖୋଦିତ ହୋଇଥିବା ମନ୍ଦିରର ପ୍ରଚଳନ ପଲ୍ଲବ ଯୁଗରେ ଆରମ୍ଭ ହୋଇଥିଲା । ଏଗୁଡ଼ିକ ବୌଦ୍ଧ ଗୁମ୍ଫା ଉପାସନାସ୍ଥଳୀ ସହ ତୁଳନୀୟ ଥିଲା । ତେବେ ଏଗୁଡ଼ିକ ଅପେକ୍ଷାକୃତ ଛୋଟ ଥିଲା ଏବଂ ଏକ କଳାକୌଶଳର ପ୍ରାଥମିକ ରୂପକୁ ସୂଚାଉଥିଲା । ମହାବଳୀପୁରମ୍‌ର ବୃହଦ୍ ପଥରଖଣ୍ଡମାନଙ୍କରେ ଖୋଦିତ ମନ୍ଦିରଗୁଡ଼ିକ ଗ୍ରାନାଇଟ୍ ପଥରରୁ ଖୋଦିତ ହୋଇଥିଲା । ଗମ୍ବୁଜାକାର ଛାତ ଓ ଧନୁ ପରି ତୋରଣ ଭିତ୍ତିକ ପ୍ରବେଶ ପଥ ତହିଁରେ ଦଣ୍ଡାୟମାନ । ଏହା ସମକାଳର ଅନ୍ୟାନ୍ୟ ସ୍ଥାପତ୍ୟ ଶୈଳୀ ସଦୃଶ ଅଟେ । ଗାଁର ଛୋଟ କୁଡ଼ିଆଁଠାରୁ ଆରମ୍ଭ କରି ବୃହଦ୍ ଓ ପ୍ରଶସ୍ତ ଘର ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ସ୍ଥାପତ୍ୟ ଏହି ଶୈଳୀର ଅନ୍ତର୍ଭୁକ୍ତ ଥିଲା । ଏହା ଥିଲା ଘରୋଇ ସ୍ଥାପତ୍ୟରୁ ଅଧିକ ଜଟିଳ ମନ୍ଦିର ଶୈଳୀକୁ ପରିବର୍ତ୍ତନରେ ଏକ ସନ୍ଧିକ୍ଷଣ ।

ବମ୍ବେ ନିକଟବର୍ତ୍ତୀ ଏଲିଫାଣ୍ଟା ଦ୍ୱୀପରେ ଅବସ୍ଥିତ ପଥର-ଖୋଦିତ ମନ୍ଦିରମାନେ ଖୁବ୍ ପ୍ରଭାବଶାଳୀ ଶୈଳୀ ସମ୍ପନ୍ନ ଅଟନ୍ତି । ମାତ୍ର ସବୁଠାରୁ ଚମତ୍କାର ଉଦାହରଣ ହେଲା

ଏଲୋରାର କୈଳାସନାଥ ମନ୍ଦିର । ଏହା ହେଉଛି ପଥର ଖୋଦନରୁ ଅବାଧଭାବେ ଦଣ୍ଡାୟମାନ ଶୈଳୀକୁ ପରିବର୍ତ୍ତନର ଏକ ସନ୍ଧିକ୍ଷଣ । ଏହା ଅଷ୍ଟମ ଶତାବ୍ଦୀରେ ରାଷ୍ଟ୍ରକୂଟ ରାଜାଙ୍କ ପୃଷ୍ଠପୋଷକତାରେ ନିର୍ମିତ ହୋଇଥିଲା ବା ଖୋଦିତ ହୋଇଥିଲା । କାର୍ଯ୍ୟ ଶେଷ ହେଲାବେଳକୁ ଏହା ଥିଲା ପାର୍ବତ୍ୟାଞ୍ଚଳର ପଥର ଖୋଦିତ ମୁକ୍ତଭାବେ ଦଣ୍ଡାୟମାନ ତଥା ଆକାଶ ଆଡ଼କୁ ଉତ୍ତୋଳିତ ଏକ ମନ୍ଦିର । ଏକ ମୁକ୍ତଭାବେ ଦଣ୍ଡାୟମାନ ମନ୍ଦିରର ଯୋଜନାକୁ ଏ କ୍ଷେତ୍ରରେ ସକଳ ନିଷ୍ଠାର ସହ କାର୍ଯ୍ୟକ୍ଷମ କରିବା ଲାଗି ଚେଷ୍ଟା କରାଯାଇଥିଲା । ଏଥେନ୍ସରେ ଅବସ୍ଥିତ ପାର୍ଥେନନ୍ ଯେତିକି ଜାଗା ଉପରେ ଅବସ୍ଥିତ, ଏଲୋରାର କୈଳାସନାଥ ମନ୍ଦିର ମଧ୍ୟ ସେତିକି କ୍ଷେତ୍ର ଉପରେ ଅଧିଷ୍ଠିତ ଏବଂ ତାହା ଗ୍ରୀକ୍‌ର କୀର୍ତ୍ତିଠାରୁ ଦେଢ଼ଗୁଣ ଉଚ୍ଚ । ପଥରକଟାଳୀଙ୍କ ସଂଖ୍ୟା, ସେଥିରେ ନିଯୁକ୍ତ ଶ୍ରମିକ ଏବଂ ମନ୍ଦିର ଖୋଦନରେ ନିୟୋଜିତ ଖର୍ଚ୍ଚ ନିଶ୍ଚିତରୂପେ ବିପୁଳ ପରିମାଣର ହୋଇଥିବ । ଏହା ହୁଏତ ଏକ ପ୍ରମୁଖ ସାମରିକ ଅଭିଯାନର ବ୍ୟୟ ସହ ସମାନ ହୋଇଥିବ । ଏହା ମଧ୍ୟ କୁହାଯାଇଛି ଯେ, ପାହାଡ଼ କାଟି ମନ୍ଦିର ତିଆରି କରିବା ସର୍ବଦା ସମାନ ଆୟତନ ବିଶିଷ୍ଟ ମୁକ୍ତଭାବେ ଠିଆ ମନ୍ଦିର ତୋଳିବାଠାରୁ କମ୍ ଖର୍ଚ୍ଚ ସାପେକ୍ଷ । ଏ ପ୍ରକାରର ଅଟକଳର ମୂଳରେ ଅଛି ପଥର କାଟି ଗଢ଼ା ହୋଇଥିବା ଦେବାଳୟ ଏବଂ ମନ୍ଦିରର ଦୀର୍ଘକାଳ ବ୍ୟାପି ରହିଥିବା ଲୋକପ୍ରିୟତା । ପଥର ସଂରଚନାର ମନ୍ଦିର ଷଷ୍ଠ ଶତାବ୍ଦୀର ବିଳମ୍ବିତ ଭାଗରେ ଆଇହୋଲ୍‌ଠାରେ ନିର୍ମିତ ହୋଇଥିଲା । ସପ୍ତମ ଶତାବ୍ଦୀରେ ମହାବଳୀପୁରମ୍‌ର ପ୍ରସିଦ୍ଧ ଉପକୂଳ ମନ୍ଦିର ଏବଂ କାଞ୍ଚିପୁରମ୍‌ର ମନ୍ଦିରମାନ ନିର୍ମିତ ହୋଇଥିଲା । ମାତ୍ର ଏକ ସ୍ଥାପତ୍ୟ ରୂପ ହିସାବରେ ପଥର କଟା ମନ୍ଦିର ନିର୍ମାଣ ଚୋଳଯୁଗ ପର୍ଯ୍ୟନ୍ତ ଚାଲିଥିଲା ।

କର୍ଣ୍ଣାଟକର ଆଇହୋଲ, ପଟ୍ଟଦ୍‌କଲ ଏବଂ ବାଦାମୀ ଇତ୍ୟାଦି ସ୍ଥାନରେ ଥିବା ମନ୍ଦିର ଅପେକ୍ଷାକୃତ ସରଳରୁ ଆରମ୍ଭକରି ଜଟିଳ ରୂପ ସମ୍ପନ୍ନ ଏବଂ ବିକଶିତ ଦାକ୍ଷିଣାତ୍ୟ ଶୈଳୀର ନମୁନା । ଚାଲୁକ୍ୟ ଯୁଗର ମନ୍ଦିରମାନ ଗୁପ୍ତଯୁଗର ଦେବାଳୟର ବିବର୍ତ୍ତନ ମାଧ୍ୟମରେ ସମ୍ଭବ ହେଲା । ମାତ୍ର ସେମାନଙ୍କର ପରିପକ୍ୱତାର ଉତ୍କର୍ଷ କାଳରେ ଉଭୟ ଉତ୍ତର ଅର୍ଥାତ୍ ନାଗର ଶୈଳୀ ଏବଂ ଦକ୍ଷିଣର ସ୍ଥାପତ୍ୟ ଅର୍ଥାତ୍ ଦ୍ରାବିଡ଼ ଶୈଳୀ ସହ ଯୋଗସୂତ୍ର ରହିଥିଲା । ଆଇହୋଲ୍‌ର ଦୁର୍ଗାମନ୍ଦିର ଶୈଳୀ ଦୃଷ୍ଟିକୋଣରୁ ବୌଦ୍ଧମାନଙ୍କର ଚୈତ୍ୟ ଗଠନ ଯୋଜନା ସଦୃଶ ଅଟେ, କାରଣ ଏହା ଏକ ଗମ୍ବୁଜାକାର ମନ୍ଦିର । ତେବେ ସେ ଧରଣର ମନ୍ଦିରରେ ଥିବା ଗମ୍ବୁଜାକାର ଛାତ ଏଥିରେ ପରିଲକ୍ଷିତ ହୁଏ ନାହିଁ । ଏକ ପ୍ରାଚୀନ ପୁଣ୍ୟପୀଠ ହୋଇଥିବାରୁ ଆଇହୋଲ ଏକ ମନ୍ଦିର ନଗରୀରେ ପରିଣତ ହେଲା । ସେଠାରେ ବେଢ଼ାଗୁଡ଼ିକ ମଧ୍ୟରେ ପ୍ରାଗୈତିହାସିକ କୀର୍ତ୍ତିମାନ ଅଛି ଏବଂ ପୂର୍ବକାଳର ବୌଦ୍ଧଯୁଗୀୟ କାର୍ଯ୍ୟକଳାପ

ସମ୍ବନ୍ଧୀୟ ସୂଚନା ଅଛି । ଏହା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିପଣନ କେନ୍ଦ୍ର ଥିଲା । ଏହାର ନାମ ଉପଦ୍ୱୀପର ଏକ ଗୁରୁତ୍ୱପୂର୍ଣ୍ଣ ଶ୍ରେଣୀର ନାମ ଅନୁସାରେ ରଖାଯାଇଛି ।

ଜଣେ ଯଦି ଲଡ଼ ଖାନ୍ ମନ୍ଦିରର ଯୋଜନା ଓ ଉଚ୍ଚତା ସହିତ ବିରୂପାକ୍ଷ ମନ୍ଦିରର ତୁଳନା କରିବ, ତେବେ ସ୍ଥାପତ୍ୟର ଶୈଳୀ କେତେ ଦ୍ରୁତଗତିରେ ପରିବର୍ତ୍ତିତ ହେଉଥିଲା ତାହା ଜାଣିପାରିବ । ଆଇହୋଲ ଭଳି ସ୍ଥାନମାନଙ୍କରେ ଗୁପ୍ତୋତ୍ତର ଶୈଳୀର ମନ୍ଦିରମାନ ଦେଖିବାକୁ ମିଳେ ଯେଉଁଥିରେ ଦ୍ରାବିଡ଼ ଶୈଳୀର ଉପାଦାନ ମଧ୍ୟ ଲକ୍ଷ୍ୟଣୀୟ । ଶୈଳୀଗୁଡ଼ିକର ମିଶ୍ରଣ ଟିକେ ଅଧିକ ସ୍ପଷ୍ଟ । ଶୈଳୀ ପରିବର୍ତ୍ତନରେ ଦାକ୍ଷିଣାତ୍ୟ, ଦକ୍ଷିଣ ଭାରତ ଏବଂ ଗାଙ୍ଗେୟ ସମତଳ ମଧ୍ୟରେ ଥିବା ସମ୍ବନ୍ଧ ଯେ କେବଳ ପ୍ରତିଫଳିତ ହୁଏ, ତାହା ନୁହେଁ, କୌଣସି ଅଞ୍ଚଳର ରାଜନୈତିକ ରୂପରେଖର ବିବର୍ତ୍ତନ ମଧ୍ୟ ମନ୍ଦିର ନିର୍ମାଣ ମାଧ୍ୟମରେ ପ୍ରକାଶିତ ହୁଏ । ଛୋଟରୁ ବଡ଼ ରାଜ୍ୟ, କମ୍‌ରୁ ଅତ୍ୟଧିକ ରାଜସ୍ୱ ସମ୍ପନ୍ନ ରାଜ୍ୟ, ସମସ୍ତେ ଏଥିରେ ମନ ଦେଲେ, କାରଣ ମନ୍ଦିର ନିର୍ମାଣ ଲାଗି ଖର୍ଚ୍ଚ ଏକ ଈର୍ଷଣୀୟ ପୃଷ୍ଠପୋଷକତା ବୋଲି ଧରାଯାଉଥିଲା ଏବଂ ତା'ର ଉପଯୋଗିତା ଅଧିକ ବୋଲି ବିଚାର କରାଯାଉଥିଲା । ଏତେବେଳକୁ ମନ୍ଦିରଗୁଡ଼ିକ କେବଳ ଉପାସନା ପୀଠଠାରୁ ·ଅଧିକ କିଛିରେ ପରିଣତ ହୋଇସାରିଥିଲା, କାରଣ ସେଗୁଡ଼ିକ କ୍ଷମତା ଓ ଆଧିପତ୍ୟର କେନ୍ଦ୍ର ରୂପେ ପରିଗଣିତ ହେଉଥିଲା । ପୁଣି ମନ୍ଦିର ନିର୍ମାଣ ପଛରେ ବ୍ୟାପକ ଅର୍ଥର ପ୍ରଶ୍ନ ମଧ୍ୟ ଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା, କେବଳ ରାଜପରିବାରର ସଦସ୍ୟ ବା ମନ୍ତ୍ରୀମାନେ ଯେ ମନ୍ଦିର ନିର୍ମାଣ ଲାଗି ଆର୍ଥିକ ପୃଷ୍ଠପୋଷକତା ଯୋଗାଉଥିଲେ ତାହା ନୁହେଁ, ସ୍ୱଚ୍ଛଳ ବଣିକମାନେ ମଧ୍ୟ ଏ କାର୍ଯ୍ୟ ଲାଗି ଆଗେଇ ଆସୁଥିଲେ ।

ଦାକ୍ଷିଣାତ୍ୟର ଆଇହୋଲ, ବାଦାମୀ ଏବଂ ପଟ୍ଟଡକଲ ଏବଂ ତାମିଲ ଦେଶର କାଞ୍ଚିପୁରମ୍ ତଥା ମହାବଳୀପୁରମ୍‌ରେ ସ୍ଥିତ ମୁକ୍ତଭାବେ ଦଣ୍ଡାୟମାନ ମନ୍ଦିରଗୁଡ଼ିକରେ ଭାସ୍କର୍ଯ୍ୟର ପରିସ୍ଫୁଟନ ଲାଗି ସୁଯୋଗ ଥିଲା । ଦାକ୍ଷିଣାତ୍ୟର ଭାସ୍କର୍ଯ୍ୟ ଶୈଳୀ ଗୁପ୍ତଯୁଗର ଶୈଳୀ ସହ ସମ୍ବନ୍ଧିତ ଥିଲା । ପଲ୍ଲବ ଭାସ୍କର୍ଯ୍ୟ ବୌଦ୍ଧ ପରମ୍ପରାରୁ ବିଶେଷତଃ ଅମରାବତୀ ଢାଞ୍ଚାରୁ ବେଶ୍ କିଛି ଅନୁଗୃହୀତ ହୋଇଥିଲା । ସାମଗ୍ରିକ ଭାବେ ଏହା କୀର୍ତ୍ତିସୁଲଭ ଏବଂ ରୈଖୀୟ ରୂପ ସମ୍ବଳିତ ଥିଲା । ଏଥିରେ ଦାକ୍ଷିଣାତ୍ୟ ଭାସ୍କର୍ଯ୍ୟର ଆଳଂକାରିକତାକୁ ପରିହାର କରାଯାଇଥିଲା । ତଥାପି ଦାକ୍ଷିଣାତ୍ୟ ଏବଂ ତାମିଲନାଡୁର ସ୍ଥାପତ୍ୟ ତଥା ଭାସ୍କର୍ଯ୍ୟ କେବଳ ଉତ୍ତରର ପରମ୍ପରାର ଦ୍ୟୋତକ ନ ଥିଲା । ସ୍ୱ ସ୍ୱ ଗୁଣବତ୍ତାକୁ ନେଇ ସେଗୁଡ଼ିକୁ ସ୍ପଷ୍ଟଭାବରେ ଚିହ୍ନି ହେଉଥିଲା । ମୂଳ ରୂପକୁ ପ୍ରାଚୀନ ପରମ୍ପରାରୁ ଆହରଣ କରାଯାଇଥିଲା, ତେବେ ଚୂଡ଼ାନ୍ତ ପରିଣତି ନିର୍ବିବାଦରେ ସ୍ଥାନୀୟ ପ୍ରେରଣାକୁ ପ୍ରତିଫଳନ କରୁଥିଲା ।




ବିରୂପାକ୍ଷ ମନ୍ଦିର

ପଲ୍ଲବ ଯୁଗର ରାଜପରିବାର ଦ୍ୱାରା ନିର୍ମିତ ମନ୍ଦିରଗୁଡ଼ିକରେ ବିଭିନ୍ନ ବାଗରେ ରାଜକୀୟ ଆଧିପତ୍ୟ ପ୍ରକଟିତ ହେଉଥିଲା । ଏଥିରେ ରାଜାଙ୍କ ଇତିହାସ ବର୍ଣ୍ଣନା କରୁଥିବା ଦୀର୍ଘ ଅଭିଲେଖ ରହୁଥିଲା । କ୍ଷେତ୍ର ବିଶେଷରେ ରାଜାଙ୍କ ଜୀବନୀ ଓ ତ୍ୟାଗ ବିଷୟକ ଚିତ୍ର ଖୋଦନ କରାଯାଉଥିଲା । ବୈକୁଣ୍ଠ ପେରୁମଲ ମନ୍ଦିରରେ ଏହି ଖୋଦନ ଉପଲବ୍ଧ । ଏହି ପ୍ରକାରର ଉକ୍ତି କର୍ମକାଣ୍ଡର ବିପରୀତ ଏବଂ ରାଜନୈତିକ ଶକ୍ତିର ପ୍ରତିସ୍ପର୍ଦ୍ଧୀ କାରକଗୁଡ଼ିକୁ ଅଙ୍ଗୁଳି ନିର୍ଦ୍ଦେଶ କଲା । ମାତ୍ର ଏହା କର୍ମକାଣ୍ଡ ଓ ରାଜନୈତିକ ସାର୍ବଭୌମତ୍ୱକୁ ଭିନ୍ନ କରିବାର ସୂଚନା ଦେଇପାରିଲା ନାହିଁ ।

ଅନ୍ୟାନ୍ୟ କଥାବସ୍ତୁଗୁଡ଼ିକ ପୁରାଣ, ରାମାୟଣ ଏବଂ ମହାଭାରତ ସୂତ୍ରେ ପରିଚିତ ଦେବତାମାନଙ୍କୁ ନେଇ ଗଠିତ କିମ୍ବଦନ୍ତୀ ଓ ଅତିକଥା ଆଧାରିତ ଥିଲା । କିଛି ମାତ୍ରାରେ ସେଗୁଡ଼ିକ ପୂର୍ବବର୍ତ୍ତୀ ବୌଦ୍ଧ ପର୍ଯ୍ୟଟନସ୍ଥଳୀରୁ ବାହାରି ଆସିଥିବା ପଥର କାରୁକାର୍ଯ୍ୟର ନିମ୍ନ-ମୂର୍ତ୍ତିକଳା ଭଳି ମନେହେଉଥିଲେ, ଯେଉଁଥିରେ ବୁଦ୍ଧଙ୍କ ଜୀବନ କାହାଣୀ ତଥା ଜାତକ କଥାର ବିଷୟବସ୍ତୁ ଖୋଦିତ ହୋଇଥିଲା । ଯେଉଁ କ୍ଷେତ୍ରରେ କିମ୍ବଦନ୍ତୀମାନ ଲୋକମାର୍ଗରୁ ଆହରିତ ହୋଇଥାନ୍ତି ଏବଂ ଦେବାଦେବୀଙ୍କର ସ୍ୱତନ୍ତ୍ର କିମ୍ବଦନ୍ତୀ ସହିତ ସମନ୍ୱିତ ହୋଇଯାନ୍ତି, ସେ କ୍ଷେତ୍ରରେ ରାଜକୀୟ ମନ୍ଦିର କାନ୍ଥରେ ଯେତେ ଫିକା ଭାବେ ଦୃଶ୍ୟମାନ ହେଲେ ମଧ୍ୟ ତାହା ପୌରାଣିକ ପରମ୍ପରା ସହ ଏକୀଭୂତ ବୋଲି ଧାରଣା ମିଳିଥାଏ । ମନ୍ଦିର କାନ୍ଥରେ ମହାକାବ୍ୟର କାହାଣୀର ଉପସ୍ଥାପନା ଫଳରେ ପରିଦର୍ଶକମାନେ କିମ୍ବଦନ୍ତୀଗୁଡ଼ିକ ସହିତ ପରିଚିତ ହୋଇଥିବେ । ଏସବୁ ସେ ସମୟରେ ପେଷାଦାର ଆବୃତ୍ତିକାର ଏବଂ କଥକ (ପୁରାଣକ ଏବଂ କଥାକାର)ଙ୍କ ଦ୍ୱାରା ବର୍ଣ୍ଣିତ ହୋଇଥିବ । ମହାବଲ୍ଲୀପୁରମ୍‌ର ଆକର୍ଷଣୀୟ ଭାସ୍କର୍ଯ୍ୟ ହେଲା ଉପରିଭାଗର କାରୁକାର୍ଯ୍ୟ । ଏଥିରେ ବିଭିନ୍ନଭାବେ ସଂଯୋଜିତ ବହୁବିଧ ପ୍ରାଣୀଙ୍କ ସମାବେଶ ଖୋଦିତ ହୋଇଛି । ଏହାକୁ ଗଙ୍ଗାର ଅବତରଣର କାହାଣୀ ଅଥବା ମହାକାବ୍ୟର କାହାଣୀ ସହିତ ସଂଯୋଜିତ କରି ଦେଖିହେବ । ପ୍ରାଣୀ ଏବଂ ସେମାନଙ୍କ ଆପେକ୍ଷିକ ଆକାର ଚିତ୍ରଣ ବ୍ୟତିରେକ ଏଥିରେ କେତେକ ହାସ୍ୟୋଦ୍ଦୀପକ ଦୃଶ୍ୟ ମଧ୍ୟ ଖୋଦିତ ହୋଇଛି । ଉଦାହରଣ ସ୍ୱରୂପ ଗୋଟିଏ ବିରାଡ଼ି ସନ୍ନ୍ୟାସୀଙ୍କ ଭଳି ମୁଦ୍ରାରେ ବସିଛି, ମାତ୍ର ତା'ର ଦୃଷ୍ଟି ଏକ ନିକଟବର୍ତ୍ତୀ ମୂଷା ଉପରେ ନିବଦ୍ଧ ରହିଛି । ଉପରିଭାଗର କାରୁକାର୍ଯ୍ୟରେ କେବଳ ପୁରାଣ କଥା ବର୍ଣ୍ଣିତ ହେଉଥିଲା ତା ନୁହେଁ, ବରଂ କିମ୍ବଦନ୍ତୀର ଚରିତ୍ରମାନଙ୍କୁ ସାଂପ୍ରତିକତାରେ ମଣ୍ଡିତ କରିବାର ପ୍ରଚେଷ୍ଟା ମଧ୍ୟ କରାଯାଉଥିଲା । ସଭ୍ୟ ବର୍ଗଙ୍କ ନିକଟରୁ ସଂସ୍କୃତ ଆଧାରିତ ସଂସ୍କୃତିକୁ ଦୃଢ଼ ସମର୍ଥନ ମିଳୁଥିଲେ ମଧ୍ୟ ଆଞ୍ଚଳିକତା ଧୀରେ ଧୀରେ ରୂପ ପରିଗ୍ରହ କରୁଥିଲା । ଏହା ଆଞ୍ଚଳିକ ସଂସ୍କୃତିଗୁଡ଼ିକର ଅଭ୍ୟୁଦୟର

ଏକ କ୍ରମିକ ମାର୍ଗରେ ପରିଣତ ହେଲା । ପରିବର୍ତ୍ତନର ରୂପରେଖ ସମ୍ପୂର୍ଣ୍ଣ ସମାନ ନ ହେଲେ ମଧ୍ୟ ଜମି ଅନୁଦାନ, ବୈଚାରିକ ସମ୍ମିଶ୍ରଣ ତଥା ଲୋକପ୍ରିୟ ଶିକ୍ଷଣ ଇତ୍ୟାଦିରେ ଅନେକ ସାଦୃଶ୍ୟ ପରିଲକ୍ଷିତ ହେଉଥିଲା । ଧାର୍ମିକ ବିବିଧତା ଭିନ୍ନ ଭିନ୍ନ ବାଟରେ ପ୍ରକାଶ ପାଉଥିଲା । ଗୋଟିଏ ସ୍ତରରେ ବ୍ରାହ୍ମଣମାନଙ୍କ ମଧ୍ୟରେ, ବ୍ରାହ୍ମଣ ଏବଂ ଶ୍ରମଣମାନଙ୍କ ମଧ୍ୟରେ ଅନେକ ସମୟରେ ଏକ ପ୍ରକାରର ଦାର୍ଶନିକ ବିତର୍କ ଚାଲିଥିଲା । ଅନ୍ୟ ଏକ ସ୍ତରରେ ଭକ୍ତି ଶିକ୍ଷା ବୈଦିକ ବ୍ରାହ୍ମଣ୍ୟବାଦକୁ ଆହ୍ୱାନ ଜଣାଉଥିଲା ଏବଂ ଏପରି ଧାର୍ମିକ କାର୍ଯ୍ୟାବଳୀ ଉପରେ ଗୁରୁତ୍ୱ ଆରୋପ କରୁଥିଲା, ଯେଉଁଠି ଉପାସକ ଓ ଦେବତା ମଧ୍ୟରେ ଥିବା ସମ୍ପର୍କ ନିଗୂଢ଼ । ଏହାର ପରିଣତିରେ ମୂର୍ତ୍ତି, ମନ୍ଦିର, ତୀର୍ଥ ଏବଂ ପୁଣ୍ୟକ୍ଷେତ୍ରମାନ ଗଢ଼ିଉଠୁଥିଲା । ଏହି ପରିବର୍ତ୍ତନଗୁଡ଼ିକ ସମୟର ପରିବର୍ତ୍ତନ ସହ ତାଳ ଦେଇ ସଂଘଟିତ ହେଉଥିଲା ଏବଂ ସାମାଜିକ ଗୋଷ୍ଠୀଗୁଡ଼ିକର ଏକ ନୂତନ କ୍ରମ ଲାଗି କାର୍ଯ୍ୟ କରୁଥିଲା । ଏହାଫଳରେ ସେତେବେଳେ ଏକ ଶକ୍ତିଶାଳୀ ସାଂସ୍କୃତିକ ଗତିବିଧିର ସୂତ୍ରପାତ ଘଟିଲା ।

# 11

# ଉପଦ୍ୱୀପ : ଆଧିପତ୍ୟ ଏବଂ ସଂରଚନାର ପ୍ରତିଷ୍ଠା

**900 – 1300 ଖ୍ରୀଷ୍ଟାବ୍ଦ ପ୍ରାୟ**

## ଉପଦ୍ୱୀପର ରାଜନୀତି

ପ୍ରଥମ ସହସ୍ରାବ୍ଦୀର ଉତ୍ତର ଭାଗରେ ଭାରତୀୟ ଉପମହାଦେଶରେ ଏକ ପରିବର୍ତ୍ତିତ ପରିସ୍ଥିତି ପରିଲକ୍ଷିତ ହେଲା । ପୂର୍ବରୁ ପରିଚୟ ଦାବି କରୁଥିବା ଆଞ୍ଚଳିକ ରାଜ୍ୟଗୁଡ଼ିକ ଏବେ ରୂପ ପରିଗ୍ରହ କରୁଥାନ୍ତି ଏବଂ ସେମାନଙ୍କ ଅସ୍ମିତାର ଛାପ ସ୍ୱଷ୍ଟ ହୋଇଉଠୁଥାଏ । ରାଜବଂଶଗୁଡ଼ିକ ପରିବର୍ତ୍ତିତ ହେଉଥାନ୍ତି; ତେବେ ଉତ୍ତରାଧିକାରୀ ରାଜ୍ୟଗୁଡ଼ିକ କେତେକ ଆପେକ୍ଷିକ ଶାନ୍ତ ଅଞ୍ଚଳକୁ ନିଜ ନିୟନ୍ତ୍ରଣରେ ରଖିଥାନ୍ତି । ଏହି ଧାରାରେ କିଛି ମାତ୍ରାରେ ରାଜନୈତିକ ବିକେନ୍ଦ୍ରୀକରଣ, କୃଷି ବିସ୍ତାର ଉପରେ ଗୁରୁତ୍ୱ ପ୍ରଦାନ, ଠାଏ ଠାଏ ଥିବା ସୀମାନ୍ତରିତ ଗୋଷ୍ଠୀକୁ ଜାତି ରୂପେ ଚିହ୍ନଟ, ବୈଦିକ ବ୍ରାହ୍ମଣ୍ୟବାଦ ଏବଂ ପୌରାଣିକ ତଥା ଶ୍ରମଣ ଧର୍ମ ମଧ୍ୟରେ ଦ୍ୱନ୍ଦ୍ୱ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା ଏବଂ ଏସବୁର ଭିତ୍ତି ଉପରେ ରୂପ ନେଉଥିବା ଏକ ନୂତନ ସଂସ୍କୃତି ଉକୁଟି ଉଠୁଥିଲା । ସମାନ ଢାଞ୍ଚା ସତ୍ତ୍ୱେ ପ୍ରତ୍ୟେକ ଅଞ୍ଚଳର ଦୃଢ଼ ସ୍ୱକୀୟ ଅସ୍ମିତା ବଜାୟ ରହିଥିଲା । ଏହାର ଅର୍ଥ ନୁହେଁ ଯେ ଏହି ଆଞ୍ଚଳିକ ରୂପଗୁଡ଼ିକ ମଧ୍ୟରେ କୌଣସି ବିରୋଧାଭାସ ଥିଲା ।

ଉପଦ୍ୱୀପର ଚିତ୍ରପଟ୍ଟ ଚୋଳମାନଙ୍କ ଅଧୀନରେ ଗଠିତ ତାମିଲ ଅସ୍ମିତା ଦ୍ୱାରା ଅବଦମିତ ହୋଇ ରହିଥିଲା । ଏହି ସମୟର ଅଭିଲେଖରେ ଦକ୍ଷିଣ ଭାରତର ଇତିହାସ ବ୍ୟାପକଭାବେ ଆଲୋଚିତ ହୋଇଛି । ଚୋଳ ରାଜ୍ୟର ପ୍ରକୃତି ସମ୍ପର୍କରେ ବହୁବିଧ ତଥ୍ୟ ଏବଂ ଅନେକ ନୂଆ ବ୍ୟାଖ୍ୟା ଦୃଷ୍ଟିକୁ ଆସିଛି । ଯଦି ଜଣେ ଏ ଯୁଗ ଉପରେ ମୋହର ମାରିବାକୁ ଉଚିତ ମଣେ, ତେବେ ଏହାକୁ ଅନ୍ୟ ଏକ ଶାସ୍ତ୍ରୀୟ ଯୁଗ ହିସାବରେ ଉପସ୍ଥାପନ କରିହେବ । ଚୋଳ ଯୁଗର ଶାସ୍ତ୍ରୀୟତା ରାଜନୈତିକ ଆଧିପତ୍ୟ ଉପରେ ଯେତେ ବେଶି

ପର୍ଯ୍ୟବସିତ ନୁହେଁ, ସେତେ ବେଶି ଏ ସମୟରେ ପ୍ରତିଷ୍ଠିତ ଅନୁଷ୍ଠାନ ଏବଂ ବିଭିନ୍ନ ସ୍ୱରୂପର ସଂସ୍କୃତିର ଆହରଣ ଉପରେ ଆଧାରିତ । ଏହି ସମୟରେ ସାମାଜିକ ଅନୁଷ୍ଠାନ, ଧର୍ମ ବା ଚାରୁକଳା ଇତ୍ୟାଦି ସାଂସ୍କୃତିକ ଜୀବନର ଅନେକ କ୍ଷେତ୍ରରେ ଯେଉଁସବୁ ମାନକ ପ୍ରତିଷ୍ଠା କରାଗଲା, ତାହା ଦକ୍ଷିଣ ଭାରତର ଜୀବନଯାପନର ଢାଞ୍ଚାକୁ ବହୁଳଭାବେ ପ୍ରଭାବିତ କଲା ଏବଂ ଉପଦ୍ୱୀପର ବିଭିନ୍ନ ସ୍ଥାନର ଜୀବନଯାପନର ଢାଞ୍ଚା ଉପରେ ମଧ୍ୟ ପ୍ରଭାବ ପକାଇଲା । ଦକ୍ଷିଣପୂର୍ବ ଏସିଆର ବାଣିଜ୍ୟ ଏବଂ ସାଂସ୍କୃତିକ ଢାଞ୍ଚା ଉପରେ ପୂର୍ବ ସମୟ ଅପେକ୍ଷା ଏହି ସମୟରେ ସକ୍ରିୟ ହସ୍ତକ୍ଷେପ ସମ୍ଭବ ହେଲା । ନବମ ଶତାବ୍ଦୀରେ ପଲ୍ଲବମାନେ ସେମାନଙ୍କର ଦକ୍ଷିଣର ପଡ଼ୋଶୀ ପାଣ୍ଡ୍ୟ ଏବଂ ଚୋଳମାନଙ୍କ ଭଳି କରଦ ଶାସକମାନଙ୍କର ମିଳିତ ଆକ୍ରମଣର ଶିକାର ହେଲେ । ପଲ୍ଲବମାନେ ବ୍ରାହ୍ମଣମାନଙ୍କୁ ଜମି ଅନୁଦାନ ଦେବା ଫଳରେ ତାମିଲନାଡୁର ରାଜ୍ୟମାନଙ୍କରେ ଏକ କୃଷି ଆଧାରିତ ମୂଳଦୁଆ ଅଧିକ ବ୍ୟବସ୍ଥିତ ଭାବେ ପଡ଼ିବା ଆରମ୍ଭ ହୋଇଥିଲା । ନୂତନ ଭାବେ ପ୍ରସ୍ତୁତ କୃଷି କ୍ଷେତ୍ରର ବିସ୍ତାର ଚାରଣଭୂମି ଓ ଜଙ୍ଗଲକୁ ନିଜ ଅନ୍ତର୍ଭୁକ୍ତ କଲା । କେତେବେଳେ ବୈଷ୍ଣବ ଏବଂ ଶୈବ ସଂପ୍ରଦାୟ ସହ ସମାନ୍ତରାଳ ଭାବେ ଏବଂ ଆଉ କେତେବେଳେ ମିଳିତ ଭାବେ ସଂଯୋଜିତ ହୋଇ ବ୍ରାହ୍ମଣ ବସତିଗୁଡ଼ିକ ବୈଦିକ ବ୍ରାହ୍ମଣ୍ୟବାଦର ପ୍ରତିଷ୍ଠା କଲେ ।

ଚୋଳମାନେ ଦକ୍ଷିଣରେ କ୍ଷମତାଶାଳୀ ହୋଇଉଠିଲେ । ସେମାନଙ୍କ ନିୟନ୍ତ୍ରଣରେ ଥିବା କେନ୍ଦ୍ରୀୟ ଅଞ୍ଚଳ ଥିଲା ଚୋଳମଣ୍ଡଳମ୍ । ଏହା ଥିଲା ତାଞ୍ଜାଭୁରଠାରୁ ଆରମ୍ଭକରି ପୂର୍ବ ଉପକୂଳ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ, ଯାହାକୁ ପରବର୍ତ୍ତୀ କାଳରେ କରମଣ୍ଡଳ ବୋଲି କୁହାଗଲା । ସେମାନଙ୍କର ପ୍ରାଥମିକ ବିବାଦ ଥିଲା ପତନୋନ୍ମୁଖୀ ରାଷ୍ଟ୍ରକୂଟମାନଙ୍କ ସହ, ଯେଉଁମାନଙ୍କ ସ୍ଥାନ ସେତେବେଳକୁ ଚାଲୁକ୍ୟମାନଙ୍କର ଏକ ପୁନଃଅଭ୍ୟୁତ୍ଥିତ ଶାଖା ମାଡ଼ିବସିଥାଏ । ଏବେ ଉତ୍ତର କାଳର ଚାଲୁକ୍ୟ ଭାବେ ପରିଚିତ ଏହି ଚାଲୁକ୍ୟମାନେ ପଶ୍ଚିମ ଦାକ୍ଷିଣାତ୍ୟ ସମ ମାନ୍ୟତା ସମ୍ପନ୍ନ କେତେକ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇସାରିଥାଏ ଏବଂ ସେଗୁଡ଼ିକ ମଧ୍ୟରୁ କେତେକଙ୍କ ସହ ଚାଲୁକ୍ୟମାନେ କେବେ କେମିତି ଲଢ଼େଇରେ ବ୍ୟାପୃତ ଥାଆନ୍ତି । ରାଜନୈତିକ ସମ୍ବନ୍ଧ କେବଳ ଯେ ଉତ୍ତର ଚାଲୁକ୍ୟମାନଙ୍କ ମଧ୍ୟରେ ଥିଲା ତାହା ନୁହେଁ, ଦେବଗିରି (ଔରଙ୍ଗାବାଦ ଅଞ୍ଚଳର ଉତ୍ତର ଦାକ୍ଷିଣାତ୍ୟ)ର ଯାଦବ ଏବଂ ୱାରଙ୍ଗଲ (ଆନ୍ଧ୍ରପ୍ରଦେଶରେ ଅବସ୍ଥିତ)ର କ୍ଷତ୍ରିୟମାନଙ୍କ ଭିତରେ ମଧ୍ୟ ରହିଥିଲା । ପୁନଶ୍ଚ ଆହୁରି ଦକ୍ଷିଣକୁ ଗଙ୍ଗ (ଦକ୍ଷିଣ କର୍ଣ୍ଣାଟକ)ମାନଙ୍କ ସହିତ ଏବଂ ପରେ ଦ୍ୱାରସମୁଦ୍ର (କର୍ଣ୍ଣାଟକରେ ଅବସ୍ଥିତ)ର ହୟଶାଳ ତଥା ମଦୁରାଇର ପାଣ୍ଡ୍ୟ ଏବଂ କେରଳର ଚେରମାନଙ୍କ ସହିତ ପ୍ରତିଯୋଗିତା ଲାଗି ରହିଥିଲା । ଶେଷବେଳକୁ ଚୋଳ ଭୂଖଣ୍ଡ ଉପରେ ହୟଶାଳମାନଙ୍କର ଏବଂ ପାଣ୍ଡ୍ୟମାନଙ୍କର ଅଚାନକ ଆକ୍ରମଣ ଯୋଗୁଁ ଚୋଳମାନେ ଦୁର୍ବଳ ହୋଇପଡ଼ିଥିଲେ ।

ଚୋଳ ସର୍ଦ୍ଦାରମାନଙ୍କ ସମ୍ପର୍କରେ ଜାଣିବାକୁ 'ସଙ୍ଗମ କବିତା'ଗୁଡ଼ିକରେ ଥିବା ଖ୍ରୀଷ୍ଟଯୁଗକୁ ଯିବାକୁ ହେବ । ନବମ ଶତାବ୍ଦୀର ମଧ୍ୟଭାଗ ବେଳକୁ ଚୋଳବଂଶର ମୁଖ୍ୟ ବୋଲି ଦାବି କରୁଥିବା ଜଣେ ବ୍ୟକ୍ତି ତାମିଲମ୍‌ର ହୃଦ୍‌କେନ୍ଦ୍ର ତାଞ୍ଜାଭୁର ଅଞ୍ଚଳ ଦଖଲ କଲେ । ସେ ନିଜକୁ ଏକ ସ୍ୱାଧୀନ ରାଜ୍ୟର ଶାସକ ବୋଲି ଘୋଷଣା କଲେ ଏବଂ ନିଜକୁ ସୂର୍ଯ୍ୟବଂଶ ସମ୍ଭୂତ ବୋଲି କହି ମାନ୍ୟତା ଦାବି କଲେ । ଚୋଳବଂଶର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ଶାସକ 'ପ୍ରଥମ ପରାନ୍ତକ' 907 ଖ୍ରୀଷ୍ଟାବ୍ଦରେ କ୍ଷମତାକୁ ଆସିଲେ ଏବଂ ପ୍ରାୟ ଅର୍ଦ୍ଧଶତାବ୍ଦୀ କାଳ ଶାସନ କଲେ । ପାଣ୍ଡ୍ୟମାନଙ୍କ ବିରୁଦ୍ଧରେ ଅଭିଯାନ କରି ଏବଂ ସେମାନଙ୍କର ରାଜଧାନୀ ମଦୁରାଇ ଅଧିକାର କରି ସେ ତାଙ୍କ ରାଜ୍ୟର ଦକ୍ଷିଣ ସୀମାନ୍ତକୁ ସୁରକ୍ଷିତ ରଖିଲେ । ଏହାଫଳରେ ତାଙ୍କର ଶ୍ରୀଲଙ୍କା ସହିତ ଯୋଗାଯୋଗ ସୃଷ୍ଟି ହେଲା, ଯାହା ସହିତ ପାଣ୍ଡ୍ୟମାନଙ୍କର ଘନିଷ୍ଠ ସମ୍ବନ୍ଧ ରହିଥିଲା । ଶତ୍ରୁତା କେତେ ଦଶନ୍ଧି ପର୍ଯ୍ୟନ୍ତ ଚାଲିଲା । ପରାନ୍ତକ ଶାସନର ଉତ୍ତର ଭାଗରେ ଚୋଳମାନେ ରାଷ୍ଟ୍ରକୂଟମାନଙ୍କ ହାତରୁ ପରାଜୟ ଲଭିଲେ । ସେମାନେ ନିକଟରେ ଅଧିକୃତ ଚୋଳ ସାମ୍ରାଜ୍ୟର ଉତ୍ତରାଞ୍ଚଳର ଜିଲ୍ଲାଗୁଡ଼ିକୁ ଦଖଲ କଲେ । ପରବର୍ତ୍ତୀ ତିରିଶ ବର୍ଷ ଭିତରେ ଦୁର୍ବଳ ରାଜାମାନଙ୍କ ଯୋଗୁଁ ଚୋଳ ସାମ୍ରାଜ୍ୟର ପତନ ଆରମ୍ଭ ହେଲା । ତେବେ ଏହି ପରିସ୍ଥିତି ଘଟଣାକ୍ରମେ ବଦଳିବାକୁ ଆରମ୍ଭ କଲା । ଦାକ୍ଷିଣାତ୍ୟରେ ରାଷ୍ଟ୍ରକୂଟମାନେ ଚାଲୁକ୍ୟମାନଙ୍କ ଉତ୍ପୀଡ଼ନର ଶିକାର ହେଉଥାନ୍ତି । ରାଷ୍ଟ୍ରକୂଟମାନେ ଏକଦା ସେମାନଙ୍କର ଅଧସ୍ତନ ଥିଲେ ଏବଂ ପରେ ସେମାନଙ୍କର ଅଧିପତି ହେଲେ । ଗୋଳମାଳିଆ ପରିସ୍ଥିତି ଭିତରେ ଚୋଳମାନଙ୍କର ଯେଉଁସବୁ ଭୂଖଣ୍ଡ ରାଷ୍ଟ୍ରକୂଟମାନେ ମାଡ଼ିବସିଥିଲେ ଧୀରେ ଧୀରେ ସେଗୁଡ଼ିକ ସେମାନେ ପୁଣି ଦଖଲ କଲେ । ପ୍ରଥମ ରାଜରାଜ (985–1014)ଙ୍କର ସିଂହାସନ ଆରୋହଣ ଏବଂ ତାଙ୍କର ପୁତ୍ର ତଥା ଉତ୍ତରାଧିକାରୀ ରାଜେନ୍ଦ୍ରଙ୍କ ଯୋଗୁଁ ଚୋଳମାନେ ପୁଣିଥରେ ଦୃଢ଼ଭାବେ କ୍ଷମତାରେ ଅଧିଷ୍ଠିତ ହେଲେ । ଏହାଫଳରେ ଦୃଢ଼ତା ଓ ସ୍ଥିରତା ହାସଲ କରିବାଲାଗି ଚୋଳ ସାମ୍ରାଜ୍ୟକୁ ଅର୍ଦ୍ଧଶତାବ୍ଦୀ ଧରି ସମୟ ମିଳିଲା ।

ପିତା ପ୍ରଥମ ରାଜରାଜ ଏବଂ ପୁତ୍ର ରାଜେନ୍ଦ୍ର ଚୋଳଙ୍କ ଶାସନକାଳରେ ପ୍ରାୟ ପ୍ରତ୍ୟେକ ଦିଗକୁ ବ୍ୟାପକ ସାମରିକ ଅଭିଯାନ କରାଯାଇଥିଲା । କେରଳ ଏବଂ ଶ୍ରୀଲଙ୍କାରେ ଚେର ତଥା ପାଣ୍ଡ୍ୟମାନଙ୍କ ସାମ୍ମୁଖ୍ୟ ଉପରେ ରାଜରାଜ ଆକ୍ରମଣ କରିଥିଲେ । ଉଦ୍ଦେଶ୍ୟ ଥିଲା ପଶ୍ଚିମ ଏସିଆ ସହିତ ଏମାନଙ୍କ ବାଣିଜ୍ୟିକ ଆଧିପତ୍ୟ ଭଙ୍ଗ କରିବା । ସେତେବେଳକୁ ଆରବମାନେ ଭାରତର ପଶ୍ଚିମ ଉପକୂଳରେ ବଣିକ ହିସାବରେ ନିଜକୁ ପ୍ରତିଷ୍ଠିତ କରିସାରିଥିଲେ । କେହି କେହି ତ ମାଲବାର ଏବଂ କୋଙ୍କଣର ସ୍ଥାନୀୟ ସମାଜ ସହିତ ସମନ୍ୱିତ ହୋଇଯାଇଥିଲେ । ଦକ୍ଷିଣପୂର୍ବ ଏସିଆର ବାଣିଜ୍ୟରେ ଆରବମାନଙ୍କ ପରି ସମର୍ଥ

ପ୍ରତିଯୋଗୀଙ୍କ ସମ୍ବନ୍ଧରେ ଚୋଳମାନେ ସଚେତନ ଥିଲେ । ତେଣୁ ସେମାନେ ମାଲବାରକୁ ନିୟନ୍ତ୍ରଣକୁ ଆଣି ଏହି ପ୍ରତିଯୋଗିତାର ମୂଳ ଉପରେ ଆଘାତ କରିବାକୁ ଚେଷ୍ଟା କଲେ । କେତେ ଦିନ ପରେ ରାଜରାଜ ମାଲଡିଭ ଦ୍ୱୀପ ଉପରେ ନୌବାହିନୀ ଆକ୍ରମଣ କରାଇଲେ ଯାହା ଆରବମାନଙ୍କ ବାଣିଜ୍ୟର ଏକ ପେଣ୍ଠସ୍ଥଳୀ ଥିଲା । ଚୋଳମାନେ ଯଦିଓ ଆରବମାନଙ୍କ ବାଣିଜ୍ୟ ଉପରେ ପ୍ରତ୍ୟକ୍ଷ ଆକ୍ରମଣ କରିବାକୁ ଅସମର୍ଥ ଥିଲେ, ତଥାପି ଶ୍ରୀଲଙ୍କା ଉପରେ ଆକ୍ରମଣ କରି ତା'ର ତତ୍କାଳୀନ ରାଜଧାନୀ ଅନୁରାଧାପୁରକୁ ଧ୍ୱସ୍ତବିଧ୍ୱସ୍ତ କରି ପୋଲ୍ଲନରୁବା ଆଡ଼କୁ ଅଗ୍ରସର ହେଲେ । ସମାନ ସମୟରେ ଦାକ୍ଷିଣାତ୍ୟର ଶାସକମାନଙ୍କ ଉପରେ ଆକ୍ରମଣ ଦ୍ରୁତଗତିରେ ଚାଲିଥିଲା । ସମୃଦ୍ଧ ବେଙ୍ଗି ପ୍ରଦେଶକୁ ନେଇ ପୁରୁଣା ଦିନର ପଲ୍ଲବ-ଚାଳୁକ୍ୟ ବିବାଦର ପ୍ରତିଧ୍ୱନି ଏବେ ଯୁଦ୍ଧକ୍ଷେତ୍ରରେ ଶୁଣାଗଲା । ଏହି ସମୟରେ କେତେକ ଅଞ୍ଚଳରେ ଚୋଳ ଏବଂ ପରବର୍ତ୍ତୀ କାଳର ଚାଳୁକ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିରହିଥିଲା ।

ପ୍ରଥମ ରାଜେନ୍ଦ୍ର ପିତାଙ୍କ ସହ ମିଶି ଦୁଇବର୍ଷ ପର୍ଯ୍ୟନ୍ତ ଶାସନ କଲେ ଏବଂ 1014 ରେ ତାଙ୍କର ଉତ୍ତରାଧିକାରୀ ରୂପେ ସିଂହାସନ ଆରୋହଣ କଲେ । ଚାଲୁକ୍ୟମାନଙ୍କର ଦକ୍ଷିଣ ପ୍ରଦେଶ, ସମୃଦ୍ଧ ରାଇଚୁର୍ ଦୋଆବ ଏବଂ ବେଙ୍ଗି ଦଖଲ ମାଧ୍ୟମରେ ସଂପ୍ରସାରଣ ନୀତି ଜାରି ରହିଥାଏ । ଶ୍ରୀଲଙ୍କା ଏବଂ କେରଳ ବିରୁଦ୍ଧରେ ମଧ୍ୟ ନୂଆକରି ଆକ୍ରମଣ କରାଗଲା । ପୁଣି, ରାଜେନ୍ଦ୍ରଙ୍କ ଆକାଂକ୍ଷା ଉତ୍ତର ଆଡ଼କୁ ପରିବ୍ୟାପ୍ତ ହେଲା । ଓଡ଼ିଶା ଦେଇ ଗଙ୍ଗା କୂଳରେ ପହଞ୍ଚିବା ଲାଗି ସେ ଏକ ଅଭିଯାନ ଆରମ୍ଭ କଲେ । କୁହାଯାଏ ଯେ ଗଙ୍ଗାନଦୀର ପବିତ୍ର ଜଳ ଚୋଳ ରାଜଧାନୀକୁ ଅଣାଗଲା । ଅଭିଯାନ ମାଧ୍ୟମରେ ଜଳ ଆଣିବା ଉତ୍ତର ଭାରତ ଉପରେ ନିୟନ୍ତ୍ରଣର ପ୍ରତୀକ ରୂପେ ଦେଖାଗଲା । ଏହାଦ୍ୱାରା 700 ବର୍ଷ ପୂର୍ବେ ସମୁଦ୍ରଗୁପ୍ତଙ୍କ ଦକ୍ଷିଣ ଅଭିଯାନର ଏକ ସମାନ୍ତରାଳ ପରିସ୍ଥିତି ସୃଷ୍ଟି ହେଲା । କିନ୍ତୁ ରାଜେନ୍ଦ୍ର ଉତ୍ତରାଞ୍ଚଳ ଉପରେ ବେଶି କାଳ ଧରି ନିୟନ୍ତ୍ରଣ ରକ୍ଷା କରିପାରିଲେ ନାହିଁ ।

ରାଜେନ୍ଦ୍ରଙ୍କ ଦରିଆପାରି ଅଭିଯାନ ପଛରେ ଆହୁରି ବେଶି ଉଚ୍ଚାକାଂକ୍ଷା ଜଡ଼ିତ ଥିଲା । ସେ ଦକ୍ଷିଣପୂର୍ବ ଏସିଆରେ ଶ୍ରୀବିଜୟ ରାଜ୍ୟ ବିରୁଦ୍ଧରେ ଉଭୟ ପଦାତିକ ଏବଂ ନୌବାହିନୀକୁ ବିନିଯୋଗ କଲେ । କୁହାଯାଏ ଯେ ଏକ ଦରିଆପାରି ସାମ୍ରାଜ୍ୟ ପ୍ରତିଷ୍ଠାର କାମନାରୁ ଏପରି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନିଆଗଲା । ଯଦି ଏକଥା ସତ ହୋଇଥାଏ ତେବେ ଏହି ଅଭିଯାନକୁ ଉପକୂଳ ଅଞ୍ଚଳରେ ଭାରତୀୟ ଉପନିବେଶୀକରଣର ପ୍ରତିଫଳନ ଏବଂ ତଟର ଦୂରବର୍ତ୍ତୀ କ୍ଷେତ୍ର ଦଖଲ ପାଇଁ ଇଚ୍ଛା ପୋଷଣ ରୂପେ ଦେଖାଯିବ । ଯେହେତୁ ଏହା ଘଟିଲା ନାହିଁ, ଏ ଯୁଦ୍ଧର କାରଣ ହୁଏତ ଭାରତର ବାଣିଜ୍ୟିକ ସ୍ୱାର୍ଥର ସୁରକ୍ଷାରେ ନିହିତ ଥିବ ବୋଲି ଅନୁମାନ କରାଗଲା । ଦଶମ ଶତାବ୍ଦୀ ବେଳକୁ ଚୀନ୍ ଏବଂ ଦକ୍ଷିଣ ଭାରତର

ବଣିକମାନଙ୍କ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ଥିଲା । ଶ୍ରୀବିଜୟ (ଦକ୍ଷିଣ ମାଳୟ ଉପଦ୍ୱୀପ ଏବଂ ସୁମାତ୍ରା) ରାଜ୍ୟର ଦଖଲରେ ଥିବା ସମୁଦ୍ର ପଥ ଦେଇ ଜାହାଜମାନ ଯାତାୟତ କରୁଥିଲା, ଯାହା ମଲକ୍କା ଓ ସୁନ୍ଦା ପ୍ରଣାଳୀ ଉପରେ ନିୟନ୍ତ୍ରଣ ରଖିଥିଲା । ଶ୍ରୀବିଜୟର ଶାସକମାନେ ଉପଲବ୍ଧି କଲେ ଯେ ଯଦି ଶ୍ରୀବିଜୟର ଚୀନ-ଭାରତ ବାଣିଜ୍ୟ ବନ୍ଦ ହୋଇଯାଏ, ତେବେ ସ୍ଥାନୀୟ ବଣିକମାନଙ୍କ ଲାଗି ତାହା ଲାଭପ୍ରଦ ହେବ । କାରଣ ସ୍ଥାନୀୟ ମଧ୍ୟସ୍ଥିମାନେ ପଣ୍ୟଦ୍ରବ୍ୟଗୁଡ଼ିକ ତା'ର ସ୍ୱାଭାବିକ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରିବେ । କିନ୍ତୁ ଯେତେବେଳେ ଶ୍ରୀବିଜୟ ଭୂଖଣ୍ଡରେ ଥିବା ଭାରତୀୟ ବଣିକମାନଙ୍କୁ ଧମକ ଦିଆଗଲା, ସେତେବେଳେ ଚୋଳମାନେ କ୍ରୋଧାନ୍ୱିତ ହେଲେ । ଏହି ବାଣିଜ୍ୟରେ ହୁଏତ ସେମାନଙ୍କର କିଛି ସ୍ୱକୀୟ ପୁଞ୍ଜିନିବେଶ ହୋଇଥିବ । ତେଣୁ ଏହାର ପରିଣତି ହେଲା ଶ୍ରୀବିଜୟ ଉପରେ ଆକ୍ରମଣ । ନିଜର ବାଣିଜ୍ୟିକ ସ୍ୱାର୍ଥ ଦୃଷ୍ଟିକୋଣରୁ ଚୀନ-ଭାରତ ବାଣିଜ୍ୟରେ ଶ୍ରୀବିଜୟର ହସ୍ତକ୍ଷେପ ଯଥାର୍ଥ ଥିଲା । ମାତ୍ର ଏ କ୍ଷେତ୍ରରେ ସାମରିକ ଶକ୍ତି ଦ୍ୱାରା ପ୍ରସଙ୍ଗର ପରିଣତି ନିର୍ଦ୍ଧାରିତ ହେଲା । ଅଭିଯାନ ଏହି ଦୃଷ୍ଟିରୁ ସଫଳ ହେଲା ଯେ ମଲକ୍କା ପ୍ରଣାଳୀ ସମେତ କୂଟନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଅନେକ ସ୍ଥାନ ଚୋଳମାନଙ୍କ ନିୟନ୍ତ୍ରଣକୁ ଆସିଲା ଏବଂ ଅନ୍ତତଃପକ୍ଷେ କେତେ ସମୟ ଲାଗି ଶ୍ରୀବିଜୟ ଭୂଖଣ୍ଡ ଦେଇ ଭାରତୀୟ ଜାହାଜ ଚଳାଚଳ ଏବଂ ବାଣିଜ୍ୟ ନିରାପଦରେ ଚାଲିଲା ।

ପ୍ରଥମ ରାଜେନ୍ଦ୍ରଙ୍କ ଉତ୍ତରାଧିକାରୀ ଉପଦ୍ୱୀପ ମଧ୍ୟରେ ଘଟୁଥିବା ବିବାଦ ଉପରେ ମନଯୋଗ ଦେଲେ । ବେଙ୍ଗି ପ୍ରଦେଶ ଉପରେ ନିୟନ୍ତ୍ରଣ ହାସଲ କରିବାଲାଗି ପ୍ରତିଯୋଗିତା ପୁଣି ଆରମ୍ଭ ହୋଇଗଲା । ତେଣୁ ପ୍ରଥମେ ଚାଲୁକ୍ୟମାନଙ୍କ ଉପରେ ଦୃଷ୍ଟି କେନ୍ଦ୍ରୀଭୂତ ହେଲା । ପରସ୍ପରର ଭୂଖଣ୍ଡ ଉପରେ ବାରମ୍ବାର ପୂର୍ବରୁ ପ୍ରଚଳିତ ତଡ଼ିତ୍ ଆକ୍ରମଣ କରାଗଲା । ଚାଲୁକ୍ୟ ଭୂଖଣ୍ଡ ଉପରେ ଚୋଳମାନଙ୍କର ଏକ ଆକ୍ରମଣରେ କଲ୍ୟାଣୀଠାରେ ଅବସ୍ଥିତ ଚାଲୁକ୍ୟ ରାଜଧାନୀ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଚାଲୁକ୍ୟ ରାଜା 1050 ରେ ଏହାର ପ୍ରତିଶୋଧ ନେଲେ । ସମ୍ଭବତଃ ରାଜପରିବାରମାନଙ୍କ ମଧ୍ୟରେ ଆତ୍ମୀୟତାର ସମ୍ପର୍କ ହେତୁ ଚୋଳରାଜା ପ୍ରଥମ କୁଳତୁଙ୍ଗ (1070-1118)ଙ୍କ ଶାସନ କାଳରେ ଶତ୍ରୁତା କିଛି ମାତ୍ରାରେ କମ୍ ହେଲା । ଏଥିଯୋଗୁଁ ଏହି ସମ୍ବନ୍ଧରେ ଏକ ନୂତନତ୍ୱ ପରିଦୃଷ୍ଟ ହେଲା । ଏହି ସମୟରେ ପାଣ୍ଡ୍ୟ, ଚେର ଏବଂ ଶ୍ରୀଲଙ୍କା ପ୍ରଭୃତି ଦକ୍ଷିଣର ଦୂରବର୍ତ୍ତୀ ଶତ୍ରୁମାନେ ଶତ୍ରୁଭାବାପନ୍ନ ହୋଇ ରହିଲେ । ରାଜେନ୍ଦ୍ରଙ୍କ ଦ୍ୱାରା ଲଭିଥିବା ପରାଜୟକୁ ନେଇ ବ୍ୟଥିତ ଥିଲେ ମଧ୍ୟ ଶ୍ରୀବିଜୟରେ ଶାନ୍ତି ବିରାଜମାନ କରୁଥିଲା । ଏହାଫଳରେ ଦକ୍ଷିଣ ଭାରତର ବାଣିଜ୍ୟରେ ଉନ୍ନତି ପରିଲକ୍ଷିତ ହେଲା ଏବଂ ଚୀନ୍ ସହିତ ଯୋଗାଯୋଗ ଆହୁରି ଉନ୍ନତ ହେଲା । କୁଳତୁଙ୍ଗ ଚୀନ୍‌କୁ 1077 ମସିହାରେ 72 ଜଣ ବଣିକ ସମ୍ବଳିତ ଏକ ଦୂତ ଦଳ ପ୍ରେରଣ କଲେ ।

ପ୍ରଥମ ରାଜରାଜ ଏବଂ ରାଜେନ୍ଦ୍ର ବିଶ୍ୱାସ କରୁଥିଲେ ଯେ ସେମାନଙ୍କର ରାଜନୈତିକ ମାନ୍ୟତା ରାଷ୍ଟ୍ରକୂଟ ଅମୋଘବର୍ଷ ଏବଂ ହୟଶାଳ ବିଷ୍ଣୁବର୍ଦ୍ଧନଙ୍କଠାରୁ ଢେର୍ ଉଚ୍ଚ । ଚୋଳମାନେ ବ୍ୟବହାର କରୁଥିବା ସାଧାରଣ ଉପାଧି ତ୍ୟାଗ କରି ସେମାନେ ଚକ୍ରବର୍ତ୍ତୀଗଳ (ସମ୍ରାଟ, ଉତ୍ତରର ଚକ୍ରବର୍ତ୍ତୀଙ୍କ ସମତୁଲ) ବଡ଼ ଉପାଧିମାନ ଧାରଣ କଲେ । ମୃତ ଶାସକଙ୍କ ପ୍ରତିମୂର୍ତ୍ତି ପୂଜା ଏବଂ ମୃତ ରାଜାଙ୍କ ସ୍ମୃତି କୀର୍ତ୍ତି ରୂପେ ମନ୍ଦିର ନିର୍ମାଣ କଲେ । ଏହାଦ୍ୱାରା ରାଜାଙ୍କୁ ଦେବତା ପର୍ଯ୍ୟାୟକୁ ଉନ୍ନୀତ କରିବାର ସଂସ୍କୃତି ପ୍ରୋତ୍ସାହିତ ହେଲା । ରାଜାଙ୍କର ପାରିବାରିକ ପ୍ରଶସ୍ତି ବ୍ୟାପକ ଭାବେ ଚାଲିଲା ଏବଂ ରାଜପୃଷ୍ଠପୋଷକତା ବିପୁଳ ହେଲା । ଉତ୍ତର ଭାରତର ରାଜନୀତିରେ ପୁରୋହିତଙ୍କର ଯେଉଁ ଭୂମିକା ଥିଲା ଚୋଳ ଶାସନ କାଳରେ ସେଥିରେ କିଛିଟା ପରିବର୍ତ୍ତନ ହେଲା । ଚୋଳମାନଙ୍କର ରାଜଗୁରୁ ଜାଗତିକ ପ୍ରସଙ୍ଗଠାରୁ ଆରମ୍ଭ କରି ଧାର୍ମିକ ପ୍ରସଙ୍ଗ ଯାଏ ସବୁ ବ୍ୟାପାରରେ ଜଣେ ବିଶ୍ୱସ୍ତ ଉପଦେଷ୍ଟା ଭାବେ ପରିଗଣିତ ହେଲେ । ଶୈବଧର୍ମ ପ୍ରତି ସେମାନଙ୍କର ସମର୍ଥନ ଭିତ୍ତିରେ ଚିଦାମ୍ବରମ୍‌ଠାରେ ଅବସ୍ଥିତ ମନ୍ଦିର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥଳୀରେ ପରିଣତ ହେଲା ଏବଂ ନଟରାଜ-ଶିବ ହେଲେ ଆରାଧ୍ୟ ମୂର୍ତ୍ତି ତଥା 'ପେରିୟା ପୁରାଣମ୍' ହେଲା ସମ୍ମାନିତ ଶାସ୍ତ୍ର ।

ଦ୍ୱାଦଶ ଶତାବ୍ଦୀର ଉତ୍ତର ଭାଗ ବେଳକୁ ଚୋଳମାନଙ୍କର ପ୍ରଭାବ ନିଷ୍ପ୍ରଭ ହୋଇଆସିଲା । ପଡ଼ୋଶୀମାନେ ରାଜ୍ୟର ପ୍ରାନ୍ତବର୍ତ୍ତୀ ଭୂଖଣ୍ଡକୁ ଦଖଲ କରିନେଲେ । କେନ୍ଦ୍ରୀୟ ନିୟନ୍ତ୍ରଣ ଦୁର୍ବଳ ହୋଇପଡ଼ିବାରୁ ଦାକ୍ଷିଣାତ୍ୟରେ ଅଧସ୍ତନ ଶାସକମାନଙ୍କର କ୍ଷମତା ବୃଦ୍ଧି ପାଇଲା । ପୁନଃ ପୁନଃ ସାମରିକ ଅଭିଯାନ ଯୋଗୁଁ ଚୋଳମାନଙ୍କର ସମ୍ବଳ ନିଃଶେଷ ହୋଇଯାଇଥିଲା । ସେମାନେ ଶେଷରେ ନିଜର ଆଧିପତ୍ୟ ଜାହିର୍ କରିବାରେ ସମର୍ଥ ହେଲେ, ତେବେ ଏହା ସମ୍ଭବ ହେଲା ନିଜର ସ୍ଥିରତା ବିନିମୟରେ । ପୁନଶ୍ଚ ଚୋଳମାନଙ୍କର ଚାଲୁକ୍ୟମାନଙ୍କ ସହ ସମ୍ବନ୍ଧ ତୁଟିଯିବାରୁ ଫଳ ଖୋଦ୍ ଚୋଳମାନଙ୍କ ଲାଗି ବୁମେରାଂ ସାବ୍ୟସ୍ତ ହେଲା । ଏହାଫଳରେ ଚାଲୁକ୍ୟମାନେ ସେମାନଙ୍କ କରଦ ଶାସକମାନଙ୍କ ଉପରୁ ନିୟନ୍ତ୍ରଣ ହରାଇଲେ । ତେଣୁ ସେହି କରଦ ଶାସକମାନେ ସ୍ୱାଧୀନ ରାଜ୍ୟମାନ ପ୍ରତିଷ୍ଠା କରି ପୂର୍ବାପେକ୍ଷା ଆହୁରି ପ୍ରଚଣ୍ଡଭାବେ ଚୋଳ ସାମ୍ରାଜ୍ୟ ଉପରେ ଆକ୍ରମଣ କରିବା ଲାଗି ପ୍ରସ୍ତୁତି ଚଳାଇଲେ ।

ଏମାନଙ୍କ ମଧ୍ୟରୁ ଯାଦବ, ହୟଶାଳ ଏବଂ କାକତୀୟମାନେ ସର୍ବାପେକ୍ଷା ଶକ୍ତିଶାଳୀ ଥିଲେ । ଯାଦବମାନଙ୍କ ସାମର୍ଥ୍ୟ ଦାକ୍ଷିଣାତ୍ୟ ଭିତରେ ସୀମିତ ଥିଲା ଏବଂ ଚୋଳମାନଙ୍କର ଚୂଡ଼ାନ୍ତ ବିଖଣ୍ଡନରେ ସେମାନଙ୍କର ଭୂମିକା ଅପେକ୍ଷାକୃତ ଗୌଣ ଥିଲା । ହୟଶାଳ ଏବଂ କାକତୀୟମାନେ ଦ୍ୱାଦଶ ଶତାବ୍ଦୀ ପରଠାରୁ ସକ୍ରିୟ ହୋଇଉଠିଲେ । କାକତୀୟମାନେ ଚାଲୁକ୍ୟମାନଙ୍କଠାରୁ ସ୍ୱାଧୀନ ହେବା ଜନିତ ଆନନ୍ଦ ଉପଭୋଗ କଲେ । କେବଳ

ଚୋଳମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବା ସମୟ ବ୍ୟତୀତ ଅନ୍ୟ ସମୟରେ ସେମାନେ ଏହି ସ୍ଥିତିରେ ଥିଲେ । ଯେତେବେଳେ କାକତୀୟମାନେ ହାନମକୋଣ୍ଡା ଦୁର୍ଗରୁ ନିକଟବର୍ତ୍ତୀ ସମତଳ ଅଞ୍ଚଳକୁ ଆସିଲେ ଏବଂ ୱାରଙ୍ଗଲ୍‌ଠାରେ ସେମାନଙ୍କର ରାଜଧାନୀ ପ୍ରତିଷ୍ଠା କଲେ ସେତେବେଳେ ସେମାନଙ୍କ ସାମର୍ଥ୍ୟ ଆଖିଦୃଶିଆ ହେଲା । ତ୍ରୟୋଦଶ ଶତାବ୍ଦୀର ରାଜା ଗଣପତିଦେବ ଏବଂ ତାଙ୍କର ଉତ୍ତରାଧିକାରିଣୀ ପୁତ୍ରୀ ରୁଦ୍ରାମ୍ବାଦେବୀଙ୍କର କାର୍ଯ୍ୟ ହେଲା ନଗର ନିର୍ମାଣ ଏବଂ ତହିଁରେ କ୍ଷମତାର ଅଧିଷ୍ଠାନ । ଅନେକ ବୃତ୍ତାକାର ପ୍ରାଚୀର ନିର୍ମାଣ କରି ନଗରକୁ ନିବୁଜ ରଖାଯାଇଥିଲା । ନଗର ଏବଂ ରାଜାଙ୍କ ଦ୍ୱାରା ନିର୍ମିତ ମନ୍ଦିର ରହିଥିବା ସ୍ଥାନ ଥିଲା ନଗରର ହୃଦ୍‌କେନ୍ଦ୍ର ଯେଉଁଠାରୁ ମୁଖ୍ୟ ଦିଗଗୁଡ଼ିକ ଉଦ୍ଦେଶ୍ୟରେ ପ୍ରଲମ୍ବିତ ରାସ୍ତା ପରସ୍ପରକୁ ଛେଦ କରୁଥିଲେ । ଏହା ରାଜଧାନୀ-ନଗର ନିର୍ମାଣ ଯୋଜନାର ବାସ୍ତବ ରୂପ ହୋଇଥିବ । କାକତୀୟମାନେ ବନ୍ଦର ଅଞ୍ଚଳରୁ ମିଳୁଥିବା ଫାଇଦା ସମ୍ପର୍କରେ ଉତ୍ତମରୂପେ ଅବଗତ ଥିଲେ । ତେଣୁ ସେମାନେ ବେଙ୍ଗି ଦଖଲ କରିବାକୁ ଚାହୁଁଥିଲେ । ଏହାଫଳରେ ସେମାନେ ବ୍ୟାପକ ସାମୁଦ୍ରିକ ଅଞ୍ଚଳ ହାସଲ କରିପାରିବେ ବୋଲି ଆଶା କରିଥିଲେ ।

ପଶ୍ଚିମ ଦିଗରୁ ଚୋଳମାନଙ୍କ ଉପରେ ସବୁଠାରୁ ପ୍ରମୁଖ ଥିଲା ହୟଶାଳ ମାନଙ୍କର ଆକ୍ରମଣ । ଚୋଳମାନେ ସେମାନଙ୍କର ପ୍ରତିରୋଧ କରିବାରେ ସମର୍ଥ ହେଲେ । ମାତ୍ର ସେମାନଙ୍କ ପୁରାତନ ଶତ୍ରୁ ମଦୁରାଇର ପାଣ୍ଡ୍ୟମାନେ ଏହାକୁ ପୁଣି ଶତ୍ରୁତା କରିବାଲାଗି ଏକ ଉତ୍ତମ ସୁଯୋଗ ବୋଲି ମନେକଲେ । ତେଣୁ ଚୋଳମାନଙ୍କର ସାମର୍ଥ୍ୟ ପଶ୍ଚିମ ଏବଂ ଦକ୍ଷିଣ ଏହିପରି ଦୁଇ ସୀମାନ୍ତକୁ ବିଭକ୍ତ ହୋଇ ନିୟୋଜିତ ହେଲା । ହୟଶାଳମାନଙ୍କର ଅଭ୍ୟୁଦୟ ବହୁ ଦିଗରୁ ଦାକ୍ଷିଣାତ୍ୟର ତତ୍‌କାଳୀନ କେତେକ ରାଜବଂଶର ପ୍ରତିନିଧିତ୍ୱ କଲା । ଏହି ବଂଶ ପାର୍ବତ୍ୟାଞ୍ଚଳର ସର୍ଦ୍ଦାର ହିସାବରେ ଜୀବନ ଆରମ୍ଭ କରିଥିଲେ ଏବଂ ଏମାନଙ୍କର ରାଜସ୍ୱର ଉତ୍ସ ଥିଲା ଦସ୍ୟୁବୃତ୍ତି, ଯାହା ଥିଲା ଉଚ୍ଚ ମାଳ ଅଞ୍ଚଳର ଏକ ଅବ୍ୟର୍ଥ ଉତ୍ସ । ରାଜବଂଶ ପରିବର୍ତ୍ତନକୁ ନେଇ ଦେଖାଦେଉଥିବା ରାଜନୈତିକ ଦ୍ୱନ୍ଦ୍ୱ କାରଣରୁ ପାହାଡ଼ିଆ ଲୋକେ ସୁରକ୍ଷା ପାଇବା ଲାଗି ଉତ୍କଣ୍ଠିତ ଥିଲେ । ପୂର୍ବବର୍ତ୍ତୀ ହୟଶାଳ ଶାସକଙ୍କୁ ସେମାନଙ୍କର ସମର୍ଥନ ଫଳରେ ହୟଶାଳମାନେ ସମତଳ ଅଞ୍ଚଳକୁ ଯିବାକୁ ସମର୍ଥ ହେଲେ ଏବଂ 'କର' ଆକାରରେ ଏକ ଅଧିକ ବିଶ୍ୱସନୀୟ ରାଜସ୍ୱର ଉତ୍ସ ପ୍ରାପ୍ତ ହେଲେ । ପାର୍ବତ୍ୟାଞ୍ଚଳର ସର୍ଦ୍ଦାରମାନଙ୍କ ଆକ୍ରମଣରୁ ବର୍ତ୍ତିବା ଲାଗି ସମତଳ ଅଞ୍ଚଳର ଲୋକେ କର ଦେବା ଆରମ୍ଭ କରିଥିଲେ । ନିୟମିତ କର ପ୍ରଦାନ ଫଳରେ ଗ୍ରହୀତାମାନଙ୍କର ଆଧିପତ୍ୟର ବୈଧତା ପ୍ରତିଷ୍ଠିତ ହେଲା । ଅନେକ ସମୟରେ କର ପ୍ରଦାନର ଅର୍ଥ ଥିଲା ରାଜନୈତିକ ବଶମ୍ୱଦତା । ତେଣୁ ପାର୍ବତ୍ୟାଞ୍ଚଳର ପୂର୍ବବର୍ତ୍ତୀ ସର୍ଦ୍ଦାରମାନେ ଧୀରେ ଧୀରେ ଛୋଟ ଛୋଟ ରାଜ୍ୟର

ଅଧିକାରୀ ହେଲେ ଏବଂ ତାହାରି ଆଧାରରେ ସେମାନେ ରାଜବଂଶ ପ୍ରତିଷ୍ଠା କଲେ । ଏହି କିସମର ସମସ୍ତ ରାଜବଂଶ ଅବଶ୍ୟ ତିଷ୍ଠିପାରିଲା ନାହିଁ । ପୁରୁଣା ରାଜ୍ୟଗୁଡ଼ିକ ଏଥିରୁ କେତେକ ଭୂଖଣ୍ଡକୁ ନିଜ ଅଧିକାରଭୁକ୍ତ କରିନେଲେ ।

ହୟଶାଳ ବଂଶ ପାଇଁ ବିଷ୍ଣୁବର୍ଦ୍ଧନ ଏକ ରାଜ୍ୟ ପ୍ରତିଷ୍ଠା କଲେ । ଯେତେବେଳେ ହୟଶାଳମାନେ ବିଧି ଦୃଷ୍ଟିରୁ ଚାଲୁକ୍ୟମାନଙ୍କ ଅଧୀନସ୍ଥ ଥିଲେ, ସେ ସମୟରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେ ରାଜ୍ୟ ଶାସନ କରୁଥିଲେ । ରାଜ୍ୟର କେନ୍ଦ୍ର ଥିଲା ଆଧୁନିକ ମହୀଶୂର ନିକଟବର୍ତ୍ତୀ ଦ୍ୱାର ସମୁଦ୍ର । ବିଷ୍ଣୁବର୍ଦ୍ଧନ ତାଙ୍କର ରାଜଧାନୀ ଚାରିପଟେ ନିଜର ସ୍ଥିତି ସୁଦୃଢ଼ କରି ରାଜନୈତିକ ସ୍ୱାଧୀନତା ଲାଗି ପ୍ରସ୍ତୁତି ଚଳାଇଲେ । ବୈଷ୍ଣବ ଦାର୍ଶନିକ ରାମାନୁଜଙ୍କ ଶିକ୍ଷା ପ୍ରତି ନିଜର ଆଗ୍ରହ ହେତୁ ମଧ୍ୟ ବିଷ୍ଣୁବର୍ଦ୍ଧନ ସ୍ମରଣୀୟ । ରାମାନୁଜ ବିଷ୍ଣୁବର୍ଦ୍ଧନଙ୍କୁ ବୈଷ୍ଣବ ଧର୍ମ ପାଇଁ ଜୈନଧର୍ମ ଛାଡ଼ିବାକୁ ପ୍ରବର୍ତ୍ତାଇବା କଥା କୁହାଯାଏ । ବିଷ୍ଣୁବର୍ଦ୍ଧନଙ୍କ ନାତି ଦ୍ୱିତୀୟ ବଲ୍ଲାଳଙ୍କ ପର୍ଯ୍ୟନ୍ତ ହୟଶାଳ ରାଜ୍ୟର ଦୃଢ଼ୀକରଣ ଜାରି ରହିଲା ଏବଂ ପରିଣତି ସ୍ୱରୂପ ଦକ୍ଷିଣ ଦାକ୍ଷିଣାତ୍ୟ ଉପରେ ହୟଶାଳମାନଙ୍କ ଆଧିପତ୍ୟ ବଜାୟ ରହିଲା ।

ତ୍ରୟୋଦଶ ଶତାବ୍ଦୀରେ ଚୋଳମାନଙ୍କ କ୍ଷମତା ଦୁର୍ବଳ ହୋଇଉଠିଲା । ଜଣେ କରଦ ରାଜାଙ୍କ ଦ୍ୱାରା ଧରା ହୋଇ ଯାଉଥିବା ଚୋଳ ରାଜାଙ୍କୁ ଉଦ୍ଧାର କରିଥିବା କଥା ଜଣେ ହୟଶାଳା ରାଜା ଦାବି କରନ୍ତି । ଏହି କରଦ ରାଜା ରାଜ୍ୟ ଆକ୍ରମଣ କଲେ ଏବଂ ଶିବମନ୍ଦିର ତଥା ବିଷ୍ଣୁଙ୍କ ଲାଗି ଉଦ୍ଦିଷ୍ଟ ପବିତ୍ର ସ୍ଥଳୀଗୁଡ଼ିକୁ ଧ୍ୱଂସ କଲେ । ଆଉ ଏକ ଅଭିଲେଖ ଅନୁସାରେ, ହୟଶାଳ ବାହିନୀ ଗ୍ରାମଗୁଡ଼ିକ ଉପରେ ଆକ୍ରମଣ କଲେ, ଜଙ୍ଗଲ କାଟି ପଦା କଲେ, ସମୁଦ୍ର ଉପକୂଳରେ ଥିବା ବନ୍ଦରଗୁଡ଼ିକୁ ପୋଡ଼ିଦେଲେ ଏବଂ ନାରୀମାନଙ୍କୁ ଧରିନେଲେ । ତେବେ ଉତ୍ତର ଦିଗରେ ହୟଶାଳମାନଙ୍କର ବିରୋଧୀ ଥିଲେ ଦେବଗିରିର ଯାଦବମାନେ । ସେମାନେ ଚାଲୁକ୍ୟମାନଙ୍କ ଭୂଖଣ୍ଡ ଅଧିକାର କରି ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ । ତ୍ରୟୋଦଶ ଶତାବ୍ଦୀ ବେଳକୁ ଯାଦବମାନେ ଗୁଜୁରାଟ ଉପରେ ତାଙ୍କର ଦାବି ଉପସ୍ଥାପିତ କଲେ, ମାତ୍ର ତାକୁ ବେଶି କାଳ ନିଜ ଦଖଲରେ ରଖିପାରିଲେ ନାହିଁ । ଉତ୍ତର ଭାରତ ରାଜନୀତିରେ ତୁର୍କ ଏବଂ ଦିଲ୍ଲୀର ଆଫଗାନ ସୁଲତାନ ପ୍ରଭୃତି ଦାକ୍ଷିଣାତ୍ୟର ବ୍ୟାପାରରେ ହସ୍ତକ୍ଷେପ କରିବା ପର୍ଯ୍ୟନ୍ତ ଯାଦବ ଏବଂ ହୟଶାଳମାନେ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ତିଷ୍ଠି ରହିଲେ । ହସ୍ତକ୍ଷେପ ଅନ୍ୟାନ୍ୟ ରାଜବଂଶ ଉପରେ ଏବଂ ଭିନ୍ନ ଭିନ୍ନ ରାଜନୈତିକ ସାମ୍ମୁଖ୍ୟରେ ମଧ୍ୟ କରାଗଲା । ଆହୁରି ଦକ୍ଷିଣବର୍ତ୍ତୀ ପାଣ୍ଡ୍ୟମାନେ ଚୋଳମାନଙ୍କୁ ପଛରେ ପକାଇ ତାମିଲ ଦେଶରେ ଆଧିପତ୍ୟ ଜାହିର୍ କଲେ । ପରବର୍ତ୍ତୀ ଶତାବ୍ଦୀରେ ମଧ୍ୟ ଏହି

ସ୍ଥିତି ଜାରି ରହିଥାନ୍ତା ଯଦି ସେମାନେ ଦାକ୍ଷିଣାତ୍ୟର ଶାସକମାନଙ୍କ ଆକ୍ରମଣର ଶିକାର ହୋଇ ନ ଥାନ୍ତେ । ପାଣ୍ଡ୍ୟମାନେ ସ୍ଥାନୀୟ ଶାସକ ହୋଇ ରହିଲେ ଏବଂ ଏ ଅଞ୍ଚଳର ପରିବର୍ତ୍ତନଶୀଳ ରାଜନୀତି ଦ୍ୱାରା ପ୍ରଭାବିତ ହେଲେ । 1288 ଏବଂ 1293 ରେ ମାର୍କୋପୋଲୋ ପାଣ୍ଡ୍ୟ ସାମ୍ରାଜ୍ୟକୁ ଆସିଥିବା କଥା କୁହାଯାଏ । ସେ ଏ ଭୂମିର ସମୃଦ୍ଧି ଏବଂ ବାଣିଜ୍ୟିକ ଉତ୍କର୍ଷ ସମ୍ପର୍କରେ ବିଶଦ ବର୍ଣ୍ଣନା ପ୍ରଦାନ କରିଛନ୍ତି ।

ବିପରୀତ ଦିଗର ଉପକୂଳ କେରଳରେ ଶାନ୍ତଭାବେ ରାଜନୈତିକ ପରିବର୍ତ୍ତନମାନ ଘଟୁଥାଏ । ଚେର ରାଜ୍ୟର ଚୋଳମାନଙ୍କ ସହିତ କେବେ ବନ୍ଧୁତା ଓ କେବେ ଶତ୍ରୁତା ଜାରି ରହିଥାଏ । ମାତ୍ର ଏହାର ଶାସକମାନଙ୍କର ଆକାଂକ୍ଷା ତ୍ରୟୋଦଶ ଶତାବ୍ଦୀର ଶେଷରେ ରବିବର୍ମନ କୁଳଶେଖରଙ୍କ ରାଜତ୍ୱ କାଳରେ ପ୍ରତିଭାତ ହେଲା । ବିଫଳ ହୋଇଥିଲେ ମଧ୍ୟ ସେ ଦକ୍ଷିଣର ରାଜ୍ୟଗୁଡ଼ିକର ଧ୍ୱଂସାବଶେଷ ଉପରେ ଏକ ବୃହତ୍ତର ରାଜ୍ୟ ପ୍ରତିଷ୍ଠା ଲାଗି ପ୍ରଚେଷ୍ଟା କରିଥିଲେ । ତେବେ ଭୂଖଣ୍ଡ ଦଖଲ ଅଭିଯାନ କରିବାପାଇଁ ଆଦୌ ଅର୍ଥନୈତିକ ଚାପ ନ ଥିଲା । ମାଲବାର ଉପକୂଳ ସ୍ୱାଭାବିକ ଭାବେ ସମୃଦ୍ଧ ଥିଲା ଏବଂ ପଶ୍ଚିମ ଏସିଆ ସହିତ ବାଣିଜ୍ୟିକ ସମ୍ପର୍କ ଯୋଗୁଁ ଯଥେଷ୍ଟ ଆୟ ହେଉଥିଲା ।

ଏହି ସମୟରେ ହିଁ ପଶ୍ଚିମ ଦିଗରୁ ଆଉ ଗୋଟିଏ ଗୋଷ୍ଠୀର ଲୋକେ ଭାରତକୁ ଆସିଲେ । ସାଧାରଣତଃ ଦଶମ ଏବଂ ଏକାଦଶ ଶତାବ୍ଦୀର ଏକ ତମ୍ବା-ପଟା ଅନୁଶାସନ ଅନୁସାରେ ଜୋସେଫ୍ ରବାନ୍ ନାମକ ଜଣେ ଇହୁଦୀ ବ୍ୟବସାୟୀଙ୍କୁ ଜମି ଅନୁଦାନ ଦିଆଯାଇଥିବା କଥା ଉଲ୍ଲେଖ ଅଛି, ଯେଉଁଥିରୁ ଭାରତରେ ପୁରୁଣା ଦିନରୁ ଇହୁଦୀ ଗୋଷ୍ଠୀର ବସତି ସମ୍ପର୍କରେ ସୂଚନା ମିଳେ । ଅବଶ୍ୟ ପରମ୍ପରା ମୁତାବକ ଏହାଠୁ ଆହୁରି ପୂର୍ବ ଶତାବ୍ଦୀରେ କୋଚିଠାରେ ପୂର୍ବବର୍ତ୍ତୀ ଇହୁଦୀ ବସତି ଥିବାର ସୂଚନା ମିଳେ । ଏହା ସିରିଆନ୍ ଖ୍ରୀଷ୍ଟିୟାନ୍‌ମାନଙ୍କର ଏଠାରେ ପହଞ୍ଚିବାର କାଳାନୁକ୍ରମିକତା ଭିତ୍ତିକ ଅନିଶ୍ଚିତତାକୁ ନେଇ ଏକ ସମାନ୍ତରାଳ ସୂଚନା ଉପସ୍ଥାପନ କରେ । ଶେଷୋକ୍ତ ଗୋଷ୍ଠୀର ଆଲେକ୍‌ଜାଣ୍ଡ୍ରିଆର ଇହୁଦୀ ବ୍ୟବସାୟୀ ଗୋଷ୍ଠୀ ବା ଆଡ଼େନ ଏବଂ ମାଙ୍ଗାଲୋର ଭଳି ପଶ୍ଚିମ ଉପକୂଳର ଦକ୍ଷିଣଭାଗର ବନ୍ଦରଗୁଡ଼ିକ ସହିତ ସମ୍ପର୍କ ଥିବା ଅନୁମାନ କରାଯାଏ । ବାଣିଜ୍ୟ ଆଧାରରେ ହିଁ ଭାରତରେ ଏହି ବସତିମାନ ସ୍ଥାପିତ ହୋଇଥିଲା । କାଇରୋ ଜେନିଜା ବିବରଣୀରେ ଅନେକ ଚିଠିପତ୍ର ଅଛି ଯାହା ଉଭୟ ବ୍ୟକ୍ତିଗତ ଏବଂ ବ୍ୟବସାୟିକ । ପ୍ରଥମ ସହସ୍ରାବ୍ଦୀର ଶେଷଆଡ଼କୁ ଭାରତ ସହିତ ସକ୍ରିୟ ବାଣିଜ୍ୟିକ ସମ୍ପର୍କ ରଖିଥିବା ଇହୁଦୀ ବଣିକମାନଙ୍କ ଦ୍ୱାରା ଏହି ଚିଠିମାନ ଲିଖିତ । ଭାରତୀୟମାନେ ହୁଏତ ବ୍ୟବସାୟରେ ଅଂଶୀଦାର ଥିଲେ ଅଥବା ଇହୁଦୀ ବଣିକମାନଙ୍କର ପ୍ରତିନିଧିତ୍ୱ କରୁଥିଲେ । ଇହୁଦୀମାନଙ୍କ ମଧ୍ୟରୁ ଅନେକ

ଭାରତରେ ସମୟ ବିତାଇଥିଲେ ଏବଂ ସ୍ଥାନୀୟ ଅଞ୍ଚଳରେ ବିବାହ ମଧ୍ୟ କରିଥିଲେ । ଏହି ବଣିକ ଗୋଷ୍ଠୀ ସହ ଜଡ଼ିତ କୋଡୁଙ୍ଗାଲୁର ବା କ୍ରାଙ୍ଗାନୋରକୁ କେହି କେହି ବିଦ୍ୱାନ୍ ରୋମ୍ ବାଣିଜ୍ୟ ସହ ସଂଶ୍ଳିଷ୍ଟ ପ୍ରାଚୀନ ବନ୍ଦର ମୁଜିରିସ୍ ବୋଲି ଠଉରାଇଥାନ୍ତି । ପାଶ୍ଚାତ୍ୟର ପୂର୍ବତନ ବଣିକମାନେ ବ୍ୟବହାର କରୁଥିବା ଅଞ୍ଚଳରେ ପରବର୍ତ୍ତୀ କାଳର ପାଶ୍ଚାତ୍ୟ ବଣିକମାନେ ଯେଉଁଭଳି ବାରମ୍ବାର ନିଜର ବ୍ୟବସାୟ ଅଧିଷ୍ଠାନ କରାଉଥିଲେ, ତାହା ବେଶ୍ ଲକ୍ଷଣୀୟ । ଏହା ନିଃସନ୍ଦେହରେ କାକତାଳୀୟ ନ ଥିଲା । ବନ୍ଦର ଏବଂ ଜାହାଜ ସୁବିଧା ହାସଲ କରିବା ଲାଗି ଏପରି ହୋଇଥିବା ସ୍ୱାଭାବିକ । ନୂତନ ଗୋଷ୍ଠୀଗୁଡ଼ିକର ଆବିର୍ଭାବ ପଶ୍ଚିମ ଉପକୂଳ ଏବଂ ଏସିଆର ବାଣିଜ୍ୟ ଦିଗରୁ ସକ୍ରିୟ ଅଞ୍ଚଳ ମଧ୍ୟରେ ଥିବା ବ୍ୟବସାୟିକ ସମ୍ପର୍କର ଏକ ଅଙ୍ଗ ଥିଲା । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ୟୁରୋପରେ ଇହୁଦୀମାନଙ୍କ ଉପରେ ଅତ୍ୟାଚାର ହେବା କାରଣରୁ ଅନେକ ଇହୁଦୀ କେରଳ ଆସିଥିଲେ । ବ୍ୟବସାୟିକ ସମ୍ପର୍କ ଆଧାରରେ ଆଗରୁ ପରିଚିତ ଥିବା ହେତୁ ଇହୁଦୀମାନେ ଏକ ଅଙ୍ଗ ଭାବରେ ଏଠାରେ ସମନ୍ୱିତ ହୋଇଗଲେ ।

ପଶ୍ଚିମ ଦାକ୍ଷିଣାତ୍ୟର ପୁଣି ଉତ୍ତରକୁ ରାଷ୍ଟ୍ରକୂଟମାନେ ଧୀରେ ଧୀରେ ସେମାନଙ୍କର ସାମନ୍ତ ଶୀଳହାରମାନଙ୍କ ଦ୍ୱାରା ସମସ୍ୟାରେ ପଡୁଥାନ୍ତି । ଶୀଳହାରମାନେ 'ପଶ୍ଚିମର ଅଧୀଶ୍ୱର' ଉପାଧି ଧାରଣ କରିଥାନ୍ତି ଯେଉଁଥିରୁ ପଶ୍ଚିମ ଏସିଆରେ ସେମାନଙ୍କର ବାଣିଜ୍ୟିକ ଆଧିପତ୍ୟର ସୂଚନା ମିଳିଥାଏ । ଏହି ଆଧିପତ୍ୟ ଏତେ ଦୃଢ଼ ଥିଲା ଯେ ଗୋଟିଏ ଘଟଣାରେ ଏକ ବଣିକ ଗୋଷ୍ଠୀକୁ ସେମାନଙ୍କୁ ପ୍ରଦତ୍ତ ଗ୍ରାମର ରାଜସ୍ୱରୁ ରାଜପରିବାରକୁ ନିୟମିତଭାବେ ଆଖିଦୃଶିଆ ଅଙ୍କର ଅର୍ଥ ପ୍ରଦାନ କରିବାକୁ ପଡୁଥିଲା । ଗୋଟିଏ ଅଭିଲେଖର ବର୍ଣ୍ଣନା ମୁତାବକ କୋଙ୍କଣର ବାଣିଜ୍ୟିକ ପରିସର ରାଜସ୍ଥାନ ଭଳି ବିସ୍ତୃତ ଥିଲା । ଶୀଳହାରମାନେ ବାଣିଜ୍ୟରେ ଏକାଧିପତ୍ୟ ହାସଲ କରିବାକୁ ଚାହୁଁଥିବାରୁ ଆରବମାନଙ୍କୁ ପ୍ରଶାସନର ଉଚ୍ଚସ୍ଥାନରେ ନିଯୁକ୍ତି ଦେବା ବନ୍ଦ କରିଦେଲେ ।

ପ୍ରମୁଖ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିବା ବଂଶଗୁଡ଼ିକ ବ୍ୟତିରେକେ ଦାକ୍ଷିଣାତ୍ୟର ଛୋଟ ଛୋଟ ଅଞ୍ଚଳରେ ଅପେକ୍ଷାକୃତ କ୍ଷୁଦ୍ର ଶାସକମାନେ ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ କେହି କେହି ପ୍ରମୁଖ ରାଜବଂଶ ଅବତଂଶ ବୋଲି ଦାବି କରୁଥିଲେ । ଏମାନେ ପ୍ରଥମେ ପୂର୍ବବର୍ତ୍ତୀ ରାଜ୍ୟର ଶାସକଙ୍କ ଅଧସ୍ତନ ହିସାବରେ ବା ଭୂମି ଅଧିକାରୀ ହିସାବରେ ଜଙ୍ଗଲ ସଫାକରି, ନୂତନ ଜମି ପ୍ରତିଷ୍ଠା, କୃଷି ବିସ୍ତାର ଏବଂ ଜଳସେଚନ ଲାଗି ସରୋବର ଖନନ କାର୍ଯ୍ୟ କରି ଜୀବନ ଆରମ୍ଭ କରିଥିଲେ । କେହି କେହି ସମ୍ଭବତଃ ଜଙ୍ଗଲ ଅଧିବାସୀ ଗୋଷ୍ଠୀର ସର୍ଦ୍ଦାର ଥିଲେ । ପରେ କୃଷି କର୍ମ କରି ଜାତି ବଦଳାଇ ସେମାନେ ଉଚ୍ଚ ମାନ୍ୟତା ଦାବି କରୁଥିଲେ ।

ସେମାନେ ନିଜକୁ ସୂର୍ଯ୍ୟବଂଶୀ ଅଥବା ଚନ୍ଦ୍ରବଂଶୀ ବୋଲି କହି କ୍ଷତ୍ରିୟ ମାନ୍ୟତା ଦାବି କରୁଥିଲେ । ଜମି ଉପରେ ଅଧିକାର ଦାବି କରି ସେମାନଙ୍କୁ ଶାସକ ବଂଶ ସହ ସମ୍ପର୍କ ମଧ୍ୟ ରକ୍ଷା କରିବାକୁ ପଡୁଥିଲା । ଯେଉଁମାନେ ପ୍ରଶାସନିକ କାର୍ଯ୍ୟ କରୁଥିଲେ, ରାଜବଂଶ ତରଫରୁ ସେମାନଙ୍କୁ ଉପାଧି ଓ ପାହ୍ୟା ପ୍ରଦାନ କରାଯାଉଥିଲା । ବିଭିନ୍ନ ଉତ୍ପାଦିତ ଦ୍ରବ୍ୟରେ ଟିକସ ସଂଗ୍ରହ କରାଯାଉଥିଲା ଏବଂ କେନ୍ଦ୍ର ପ୍ରଶାସନ ନିକଟକୁ ତାକୁ ପ୍ରେରଣ କରାଯାଉଥିଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଭୂମି ଅଧିକାରୀମାନଙ୍କୁ ଅଧିକ ଅର୍ଥ ଦେବାଲାଗି କୃଷକମାନେ ବାରମ୍ବାର ପ୍ରଚଣ୍ଡ ଚାପର ସମ୍ମୁଖୀନ ହେଉଥିଲେ ।

ପ୍ରଥମ ସହସ୍ରାବ୍ଦୀର ଉତ୍ତର ଭାଗରେ ଉପଦ୍ୱୀପର ଅନେକ ଅଞ୍ଚଳରେ କୃଷିଭିତ୍ତିକ ବ୍ୟବସ୍ଥାରେ ପରିବର୍ତ୍ତନ ପରିଦୃଷ୍ଟ ହୋଇଥିଲା । ପରିବର୍ତ୍ତନର ଢାଞ୍ଚା ଉତ୍ତରାଞ୍ଚଳର ଢାଞ୍ଚା ସଦୃଶ ଥିଲା; ଦକ୍ଷିଣ ଭାରତରେ ତାମିଲମ୍‌ରେ ଚାଲିଥିବା ଢାଞ୍ଚାରେ ବିବିଧତା ଥିଲା । ଏହା ଏହି ଅଞ୍ଚଳ ଉପରେ ବିଶଦ ଗବେଷଣାରୁ ଜଣାପଡ଼େ । ଦକ୍ଷିଣର ରାଜନୈତିକ ଶକ୍ତିମାନଙ୍କୁ ଏତେ ମାତ୍ରାରେ ଅର୍ଥନୈତିକ ସହାୟତା ପ୍ରଦାନ କରାଯାଇଥିଲା ଯେ ଉପଦ୍ୱୀପର ଅନ୍ୟ ଭାଗଗୁଡ଼ିକ ସହିତ ଏହାକୁ ନେଇ ଏକ ତୁଳନାତ୍ମକ ଅଧ୍ୟୟନ କରାଯାଇପାରେ ।

## ଏକ କୃଷିଭିତ୍ତିକ ବ୍ୟବସ୍ଥାର ସଂରଚନା

**ଚୋଳ ସାମ୍ରାଜ୍ୟକୁ** ପ୍ରାରମ୍ଭିକ ପର୍ଯ୍ୟାୟରେ ଏକ କେନ୍ଦ୍ରଭିତ୍ତିକ ଅମଲାତାନ୍ତ୍ରିକ ରାଜ୍ୟ ହିସାବରେ ବର୍ଣ୍ଣନା କରାଯାଇଛି । ବସ୍ତୁତଃ ଭାରତବର୍ଷର ସବୁ ବୃହତ୍ ସାମ୍ରାଜ୍ୟର ହାରାହାରି ବର୍ଣ୍ଣନା ଏହିପରି ହିଁ କରାଯାଇଥାଏ । ସଂପ୍ରତି ଐତିହାସିକମାନେ ରାଜ୍ୟ ଗଠନ ହେବାର ବିଭିନ୍ନ ମାର୍ଗ ଏବଂ ରାଜନୈତିକ ପରିବର୍ତ୍ତନ ସହ ଜଡ଼ିତ ସାମାଜିକ ଏବଂ ଅର୍ଥନୈତିକ ସୂତ୍ର ସମ୍ପର୍କରେ ଅବଗତ ହେବା ନିମନ୍ତେ ପ୍ରଚେଷ୍ଟା ଚଳାଇଛନ୍ତି । ଚୋଳ ସାମ୍ରାଜ୍ୟ ଏହି ଦୃଷ୍ଟିରୁ ଅଧ୍ୟୟନର ଏକ ବିଷୟ ହୋଇପଡ଼ିଛି । ବିଖଣ୍ଡନୀୟ ରାଜ୍ୟ (Segmentary State)ର ଅବଧାରଣା ଉପରେ ବ୍ୟାପକ ସ୍ତରରେ ବହୁଳ ଭାବରେ ଆଲୋଚନା କରାଯାଇଛି; ମାତ୍ର ଏ ସମ୍ପର୍କରେ ଏବଂ ଉପଦ୍ୱୀପର ରାଜ୍ୟଗୁଡ଼ିକରେ ସାମନ୍ତବାଦର ସ୍ୱରୂପ ଉପରେ ବିଶେଷ ଗଭୀର ଅଧ୍ୟୟନ ହୋଇନାହିଁ । ପ୍ରଥମ ଅଧ୍ୟାୟରେ ସୂଚିତ ହୋଇଛି ଯେ ଖଣ୍ଡିତ ରାଜ୍ୟର ନମୁନା ଏହାର ଦ୍ୱୈତ ସାର୍ବଭୌମତ୍ୱ (ରାଜନୈତିକ ଏବଂ କର୍ମକାଣ୍ଡ ଭିତ୍ତିକ) ଯୋଗୁଁ ଗ୍ରହଣଯୋଗ୍ୟ ନ ଥିଲା । କେନ୍ଦ୍ରୀୟ, ମଧ୍ୟବର୍ତ୍ତୀ ଏବଂ ସୀମାନ୍ତ – ଏହି ତିନି ଆଲୋଚନାଭୁକ୍ତ ଅଞ୍ଚଳ ଉପରୁ କ୍ରମେ ରାଜନୈତିକ ନିୟନ୍ତ୍ରଣ କୋହଳ **ହୋଇ ତା** ସ୍ଥାନରେ କର୍ମକାଣ୍ଡ ଭିତ୍ତିକ ସାର୍ବଭୌମତ୍ୱ ବଢ଼ିଚାଲିଲା । ଏହାର ହାର କମ୍‌ରୁ ଅଧିକ ହେଲା । ଅଭିଲେଖଗୁଡ଼ିକ

ରାଜନୈତିକ ସାର୍ବଭୌମତ୍ୱ ପରିବର୍ତ୍ତେ କର୍ମକାଣ୍ଡ ଭିତ୍ତିକ ସାର୍ବଭୌମତ୍ୱର ଦ୍ୟୋତକ ହେଲେ । ତେବେ କର୍ମକାଣ୍ଡରେ କିଛିଟା ପ୍ରତୀକବାଦ ଥିଲା ଏବଂ କର୍ମକାଣ୍ଡ ଭିତ୍ତିକ ପ୍ରତୀକବାଦରୁ ରାଜନୈତିକ ସାର୍ବଭୌମତ୍ୱ ଦୁର୍ବଳ ହେବା କଥା ସୂଚିତ ହେଉ ନ ଥିଲା । ଚୋଳ ରାଜ୍ୟରେ ଯେଉଁ ପରିବର୍ତ୍ତନ ଫଳରେ କ୍ଷମତାର ଦୃଢ଼ୀକରଣ ସମ୍ଭବ ହେଲା ତାହା ବିଖଣ୍ଡନୀୟ ରାଷ୍ଟ୍ରର ସମର୍ଥନ କରୁ ନ ଥିଲା । ପ୍ରଶାସନର ଉଚ୍ଚସ୍ତରରେ ବ୍ୟବହୃତ ଉପାଧି, ପ୍ରଶାସନିକ ଏକକଗୁଡ଼ିକୁ ଭୂଖଣ୍ଡ ଦୃଷ୍ଟିରୁ ଚିହ୍ନିବା, ଟିକସର ମାନକୀକରଣ କରିବା, ଧୀରେ ଧୀରେ ସର୍ଦ୍ଦାରମାନଙ୍କୁ ଉଚ୍ଚ ମାନ୍ୟତାର ଅଧିକାରୀଙ୍କ ଦ୍ୱାରା ବିସ୍ଥାପନ କରିବା ହେଲା ଏହାର ଉଦାହରଣ । ଖଣ୍ଡିତ ରାଜ୍ୟର ତତ୍ତ୍ୱ ବଣିକସଂଘଗୁଡ଼ିକର ପ୍ରଭାବ ହ୍ରାସକାରୀ ଥିଲା । କେତେକ ବଣିକସଂଘ ପ୍ରଶାସନିକ ଏକକର ନିୟନ୍ତ୍ରଣ ବାହାରେ କାର୍ଯ୍ୟ କରୁଥିଲେ, ପୁଣି ଉପଦ୍ୱୀପ ତଥା ଦକ୍ଷିଣପୂର୍ବ ଏସିଆକୁ ଯେଉଁ ବାଣିଜ୍ୟ ବ୍ୟାପିଥିଲା ତା ମାଧ୍ୟମରେ ଆଖିଦୃଶିଆ ବାଣିଜ୍ୟ ରାଜସ୍ୱ ମିଳୁଥିଲା । ତାମିଲ ଭକ୍ତି ଆନ୍ଦୋଳନର ପ୍ରସାର ଏବଂ ତା ଫଳରେ ହୋଇଥିବା ଧାର୍ମିକ ପରିବର୍ତ୍ତନ ଯୋଗୁଁ ମନ୍ଦିର ତଥା ପବିତ୍ର ସ୍ଥାନଗୁଡ଼ିକର ଗୁରୁତ୍ୱ ବଢ଼ିଯାଇଥିଲା । ତେବେ ଧାର୍ମିକ-ରାଜନୈତିକ ଅନୁଷ୍ଠାନ ରୂପେ କାର୍ଯ୍ୟ କରୁଥିବା ମନ୍ଦିରଗୁଡ଼ିକ କ୍ଷେତ୍ରରେ ରାଜପୃଷ୍ଠପୋଷକତା ହାସଲ ଲାଗି ପ୍ରତିଯୋଗିତା ଓ ବିବାଦ ଲାଗି ରହୁଥିବାରୁ ସେଗୁଡ଼ିକ ରାଜନୀତି ବର୍ଜ୍ଜିତ ନ ଥିଲେ । ଫଳରେ ଏହା ସ୍ପଷ୍ଟ ହେଉଥିଲା ଯେ କର୍ମକାଣ୍ଡ ଭିତ୍ତିକ ସାର୍ବଭୌମତ୍ୱ ରାଜନୈତିକ ସାର୍ବଭୌମତ୍ୱଠାରୁ ସ୍ୱତନ୍ତ୍ର ନ ଥିଲା ।

ଆଉ ଏକ ତତ୍ତ୍ୱ ଅନୁସାରେ ଚୋଳମାନେ ଯେଉଁ ଅଭିଯାନ ମାଧ୍ୟମରେ ସମ୍ପଦ ଆହରଣ କରିଥିଲେ ବସ୍ତୁତଃ ତାହା ଥିଲା ଡକାୟତ ସୁଲଭ ଆକ୍ରମଣ । କୃଷି ବା ବାଣିଜ୍ୟ କାର୍ଯ୍ୟରୁ ଆଦାୟ କରାଯାଉଥିବା ରାଜସ୍ୱର ଏକ ପ୍ରଭାବଶାଳୀ ବ୍ୟବସ୍ଥାରୁ ଏହା ସମ୍ଭବ ବୋଲି କେହି ଗ୍ରହଣ କଲେ ନାହିଁ । ବସ୍ତୁତଃ ସମସ୍ତ ଅଭିଯାନ ଗୋଟିଏ ସ୍ତରରେ ଲୁଟ୍‌ତରାଜ ଲାଗି ଉଦ୍ଦିଷ୍ଟ ଆକ୍ରମଣ । ମାତ୍ର ଏ ପ୍ରକାର ଆକ୍ରମଣ ମାଧ୍ୟମରେ କେବଳ ଚୋଳ ସାମ୍ରାଜ୍ୟ ଭଳି ଏକ ଜଟିଳ ରାଷ୍ଟ୍ର ତିଷ୍ଠି ରହିଥିବା ଅସମ୍ଭବ ଥିଲା ।

ସାମନ୍ତବାଦୀ ରାଜ୍ୟର ନମୁନା ଦକ୍ଷିଣ ଭାରତର ସାମାଜିକ ଏବଂ ଅର୍ଥନୈତିକ ଇତିହାସର ଅଧ୍ୟୟନକୁ କିଛିଟା ଉତ୍ସାହିତ କରିଥିବ । ମାତ୍ର ଏ କ୍ଷେତ୍ରରେ ଆହୁରି ଗବେଷଣା ଆବଶ୍ୟକ । କୃଷିଭିତ୍ତିକ ପରିବର୍ତ୍ତନକୁ ପ୍ରାଥମିକତା ପ୍ରଦାନ କରୁଥିବା ତତ୍ତ୍ୱଗୁଡ଼ିକ ସାମନ୍ତବାଦ ସହ ଜଡ଼ିତ ବିଭିନ୍ନ ପ୍ରକଳ୍ପରୁ ହିଁ ମୂଳତଃ ଉଦ୍‌ଭୂତ । ଯଦିଓ ଅନେକ ଦୃଷ୍ଟିକୋଣରୁ ଏହି ପରିସ୍ଥିତି ସାମନ୍ତବାଦର ପାଖାପାଖି, ତଥାପି ଭାରତୀୟ ଇତିହାସ ଏ କାଳଖଣ୍ଡ ଉପରେ 'ସାମନ୍ତବାଦ'ର ମୋହର ଲଗାଇବା କଥାଟି ବିତର୍କର ଅପେକ୍ଷା ରଖେ । ତେବେ ଏହି

ବିତର୍କ ଫଳରେ ସାମାଜିକ ଏବଂ ଅର୍ଥନୈତିକ ପରିବର୍ତ୍ତନକୁ ଆହୁରି ଭଲଭାବରେ ବୁଝିହୁଏ । ସାମନ୍ତୀୟ ବା ସାମନ୍ତବାଦୀ ପଦଗୁଡ଼ିକୁ ୟୁରୋପୀୟ ଇତିହାସରେ ବ୍ୟବହୃତ ଏହି ପଦଗୁଡ଼ିକର ପରିପ୍ରେକ୍ଷୀରେ ପ୍ରୟୋଗ କରାଯାଇ ପାରିବ ନାହିଁ । ଏଥିପାଇଁ ୟୁରୋପର କେଉଁ ଅଞ୍ଚଳ ସମ୍ପର୍କରେ ନିର୍ଦ୍ଦିଷ୍ଟ ଭାବେ ଆଲୋଚନା କରାଯାଉଛି, ତାହା ସ୍ପଷ୍ଟ କରିବାକୁ ପଡ଼ିବ । ଏ କ୍ଷେତ୍ରରେ କେତେକ ସାଦୃଶ୍ୟ ଅଛି, କେତେକ ପ୍ରଭେଦ ମଧ୍ୟ ରହିଛି । ତଥ୍ୟ ପରିପ୍ରେକ୍ଷୀରେ ଏହି ପଦଗୁଡ଼ିକର ସ୍ୱତନ୍ତ୍ର ପ୍ରୟୋଗ ସମ୍ପର୍କରେ ସ୍ପଷ୍ଟୀକରଣ ଦେଲେ ତାହା ସହାୟକ ହୋଇପାରିବ । ଉଦାହରଣ ସ୍ୱରୂପ– କେବଳ ଶାସକ ହିଁ ରାଜନୈତିକ କ୍ଷମତା ନିୟନ୍ତ୍ରଣର ସୂତ୍ରଧର ବୋଲି ଉତ୍‌ଥାପନ କଲାବେଳେ ସ୍ଥାନୀୟ ସଂଗଠନଗୁଡ଼ିକର ଆପେକ୍ଷିକ ସ୍ୱାୟତ୍ତତାକୁ ମନଯୋଗ ସହକାରେ ଦେଖିବାକୁ ପଡ଼େ । ବର୍ତ୍ତମାନ ମୁଣ୍ଡ ଟେକୁଥିବା କୃଷିଭିତ୍ତିକ ଏବଂ ବାଣିଜ୍ୟିକ ସଂରଚନାର ଚିତ୍ର ଏବଂ କ୍ଷମତାସୀନମାନଙ୍କର ଆଧିପତ୍ୟ ସହିତ ତା'ର ସମ୍ପର୍କ ଏକ ମୌଳିକ ପ୍ରଶ୍ନ ।

ରାଜାଙ୍କୁ ସେବା ଯୋଗାଇ ଧାର୍ମିକ ଦିଗରୁ ଲାଭବାନ୍ ହୋଇଥିବା ବା ବ୍ୟକ୍ତିକୁ ଜମି ଅନୁଦାନ ଦେବା ମାଧ୍ୟମରେ ଯେଉଁ ପରିବର୍ତ୍ତନ ଆସିଲା, ତାକୁ ଆଧାର କରି ଅନେକ ବିତର୍କର ସୂତ୍ରପାତ ହେଲା ‹ ଅନୁଦାନ କରାଯାଉଥିବା ଜମି ଅନେକ ସମୟରେ 'ଆର୍ଦ୍ର ଭୂମି' ଥିଲା ଏବଂ ପୂର୍ବରୁ ଜଳସେଚିତ ହୋଇ କୃଷିର ପରିସରଭୁକ୍ତ ହୋଇଥିଲା । ବେଳେବେଳେ ପତିତ ଜମିକୁ ମଧ୍ୟ ଅନୁଦାନ ଆକାରରେ ଦିଆଯାଉଥିଲା । ଯେଉଁ କ୍ଷେତ୍ରରେ କୃଷି କାର୍ଯ୍ୟ ପୂର୍ବରୁ ଜମିକୁ ପରିଷ୍କାର କରାଯାଉଥିଲା ଏବଂ ଜଳସେଚନ ଲାଗି ସରୋବର ଖନନ କରାଯାଉଥିଲା, ସେହି କ୍ଷେତ୍ରରେ ଏସବୁ ଆଖିଦୃଶିଆ ଭାବେ କରାଯାଉଥିଲା । ଫଳରେ ସେ ସ୍ଥାନର ଭୂ-ଚିତ୍ର ସମ୍ପୂର୍ଣ୍ଣ ବଦଳି ଯାଉଥିଲା । ଉର୍ବର ଏବଂ ଉତ୍ତମ ଭାବେ ଜଳସେଚିତ କାବେରୀ ଉପତ୍ୟକା ଭଳି ଆର୍ଦ୍ର ଅଞ୍ଚଳରେ ଜନସଂଖ୍ୟାର ସାନ୍ଦ୍ରତା ଏହା ପ୍ରତି ଲୋକଙ୍କର ପସନ୍ଦର ଏକ ପ୍ରମାଣ । ପରବର୍ତ୍ତୀ କାଳୀନ ଚୋଳମାନଙ୍କ ଶାସନକାଳରେ ଯେଉଁଠିକୁ ସାଧାରଣ ଭାବରେ ଜଳସେଚନ ବ୍ୟବସ୍ଥା ସଂପ୍ରସାରିତ ହୋଇପାରିଥିଲା, ସେଭଳି 'ଶୁଷ୍କ ଅଞ୍ଚଳ'କୁ ଅନୁଦାନ ଆକାରରେ ଦିଆଗଲା । ସର୍ବଦା ଗୋଟାଏ ସ୍ଥାନର ଅର୍ଥନୈତିକ ଉପଯୋଗିତା ପାଇଁ ଉକ୍ତ ସ୍ଥାନର ପରିବେଶଗତ ସ୍ଥିତି ଗୁରୁତ୍ୱପୂର୍ଣ୍ଣ । ବ୍ରାହ୍ମଣ ଏବଂ ବେଲାଳ ଏହିପରି ଦୁଇଟି ଭୂମି ଅଧିକାରୀ ଗୋଷ୍ଠୀ ଥିଲେ । ବେଲାଳ ଗୋଷ୍ଠୀର କିଛି ଲୋକ ଧନାଢ଼୍ୟ ଥିଲେ, ପୁଣି କିଛି ଲୋକ କମ୍ ବିତ୍ତ ସମ୍ପନ୍ନ ମଧ୍ୟ ଥିଲେ । ଏହି ଦୁଇ ପ୍ରକାରର ଲୋକମାନଙ୍କର ରୟତ ଏବଂ କୃଷିକାରୀମାନଙ୍କ ଉପରେ ଉଚ୍ଚାଧିକାର ରହୁଥିଲା, ଯଦିଓ ରୟତମାନଙ୍କ ଅଧିକାରର ପରିସର କୌଣସି ସହଜ ଅବଧାରଣାକୁ ଜଟିଳ କରିଦେବା ପରି ସ୍ୱାଭାବିକ

ଥିଲା । କେତେକ କ୍ଷେତ୍ରରେ ରୟତମାନଙ୍କୁ ବେଦଖଲ କରାଯାଉଥିଲା ଏବଂ ପୂର୍ବରୁ ମିଳିଥିବା ଜମିର ଅନୁଦାନକୁ ବାତିଲ କରିଦିଆଯାଉଥିଲା । କାରିଗର ଏବଂ କୃଷିକାରୀମାନେ ନିମ୍ନ ସ୍ତରରେ ଅନ୍ୟ ଏକ ଗୋଷ୍ଠୀ ଭାବରେ ରହିଥିଲେ ।

ବ୍ରହ୍ମଦେୟ ଏବଂ ଅଗ୍ରହାର ମାଧମରେ ସଂସ୍କୃତାଶ୍ରୟୀ ସଂସ୍କୃତି ପ୍ରଚଳିତ ହେଲା, ଯାହାଫଳରେ ଧର୍ମଶାସ୍ତ୍ରର ଆଧାରରେ ସମାଜର ସଂଗଠନ କରାଗଲା । ଅବସ୍ଥିତ କୃଷିଭିତ୍ତିକ ଗୋଷ୍ଠୀ ସହିତ ବ୍ରହ୍ମଦେୟ ଏବଂ ଅଗ୍ରହାରର ସମନ୍ୱୟ ଫଳରେ ଏକ ପ୍ରକାର ନୂତନତ୍ୱର ଅଭ୍ୟୁଦୟ ଘଟିଲା । ପୂର୍ବରୁ ରହିଥିବା କୃଷକ ଏବଂ ନୂତନ ଜମିମାଲିକଙ୍କ ମଧ୍ୟରେ ଭାବ ବିନିମୟ ଆବଶ୍ୟକ ହୋଇପଡ଼ିଲା । ଶେଷୋକ୍ତ ଗୋଷ୍ଠୀ ପକ୍ଷରେ ରାଜାଙ୍କ ସହାୟତା ଥିଲା । ପୁଣି, କୃଷିର ଉନ୍ନତି ପାଇଁ ସେମାନଙ୍କଠାରେ ଅଗ୍ରଣୀ ସ୍ଥାନ ଏବଂ ବୈଷୟିକ କୌଶଳ ଉପଲବ୍ଧ ଥିଲା । ତେଣୁ କୃଷକ ତଥା ନିକଟରେ କୃଷକ ମାନ୍ୟତା ହାସଲ କରିଥିବା ଲୋକମାନଙ୍କ ତୁଳନାରେ ସେମାନଙ୍କର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଲା ।

ବ୍ରହ୍ମଦେୟ ଅନୁଦାନ ବ୍ୟବସ୍ଥା ପଲ୍ଲବମାନଙ୍କ ସମୟରେ ଯେଉଁଭଳି ଚାଲୁଥିଲା ସେଥିରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ । ସୁନ୍ଦର ଚୋଳଙ୍କ ଦ୍ୱାରା ପ୍ରଦତ୍ତ ଆନବିଲ ଅନୁଦାନର ବିବରଣୀ ମୁତାବକ ବ୍ରାହ୍ମଣ ଅନିରୁଦ୍ଧ ବ୍ରହ୍ମାଧିରାଜଙ୍କୁ ଜମି ପ୍ରଦାନ କରାଯାଇଥିଲା । ଏଥିରୁ ଚୋଳମାନଙ୍କ ସମୟରେ ମଧ୍ୟ ଅନୁଦାନ ପ୍ରଚଳିତ ଥିବାର ପ୍ରମାଣ ମିଳିଥାଏ ।

*''ଆମେ ମାଟି ପିଣ୍ଡି ଠିଆ କରାଇ ପୁଣି ସାତପେଣୀ ପୋତି ସୀମା ନିର୍ଦ୍ଧାରଣ କରିବା ମାଧମରେ ଜମିକୁ ଚିହ୍ନଟ କଲୁ । ଏହି ଜମିରେ ଫଳ ଦେଉଥିବା ଗଛ, ଜଳ, ବଗିଚା, ଊର୍ଦ୍ଧ୍ୱଗାମୀ ଗଛ, ନିମ୍ନଗାମୀ କୂପ, ଖୋଲା ସ୍ଥାନ, ବାଛୁରୀ ଚରିବା ପାଇଁ ଗୋଚର, ଗ୍ରାମୀଣ ଭୂଚିତ୍ର, ଉଇହୁଙ୍କା, ପିଣ୍ଡୀ [ଗଛ ଚାରିପଟେ ନିର୍ମିତ] , କେନାଲ, ଖାଲୁଆ ସ୍ଥାନ, ନଦୀ ଏବଂ ତା'ର ପଟୁମାଟି, ପୁଷ୍କରିଣୀ, ଶସ୍ୟାଗାର, ମାଛ ପୋଖରୀ, ଫାଟ ଓ ତତ୍‌ସନ୍ନିହିତ ମହୁପେଣା ଓ ଗଭୀର ସରୋବରମାନ ଅଛି । ଯେଉଁ ପର୍ଯ୍ୟନ୍ତ ଏଣ୍ଡୁଅ ଧାଏଁ ଏବଂ କଇଁଛ ଘୁଷୁରେ ସେସବୁ ଏହାର ଅନ୍ତର୍ଗତ । ଏଠାରୁ ନ୍ୟାୟ ଟିକସ, ପାନପତ୍ର ଉପରେ ଟିକସ ମିଳେ । ବୟନକାରୀଙ୍କଠାରୁ ଲୁଗା ଏବଂ [ସୁନାର] କଣମ୍ ମିଳେ । ...ପୁରୁଣା ରୟତ ବେଦଖଲ ହୋଇସାରିଥିବାରୁ ଏ ସବୁକୁ ରାଜା ନେଇପାରିବେ ଏବଂ ଉପଭୋଗ କରିପାରିବେ । ଏସବୁ ଏହି ଲୋକକୁ ଅର୍ପଣ କରାଗଲା । ସେ ଏଠାରେ ନିଜ ଇଚ୍ଛାରେ ପୋଡ଼ା ଇଟାର ଦୀର୍ଘ କକ୍ଷ ଏବଂ ଉପର ମହଲା ନିର୍ମାଣ କରିପାରିବ, ଛୋଟବଡ଼ କୂପ ଖନନ କରିପାରିବ, କାଠ ଏବଂ ସାତପେଣୀ ପୋତିପାରିବ । ଜଳସେଚନର ଆବଶ୍ୟକତାକୁ ଚାହିଁ ପ୍ରଣାଳୀ ଖନନ କରିପାରିବ, ଉଦବୃତ୍ତ ଜଳ ନଷ୍ଟ ନ କରି ତାକୁ ସଞ୍ଚୟ କରିବ ।*

*ଏଠାରୁ କେହି ପାଣି ନେଇପାରିବେ ନାହିଁ । ବିଜ୍ଞତାର ସହ ପୁରୁଣା କ୍ରମ ବଦଳିଲା, ପୁରୁଣା ନାମ, ପୁରୁଣା ଟିକସ ଉଠିଲା । କରୁଣାକରମଙ୍ଗଳମ୍ ନାମରେ ଏକଭୋଗ ବ୍ରହ୍ମଦେୟ ପ୍ରଦତ୍ତ ହେଲା ।''*

(The Anbil Plates of Sundara Chola, in K.A. Nilakantha Sastri, *The Cholas* (Madras, 1955), p.577)

ଜଳସେଚନର ଆକଳନ କୃଷିବିଦ୍ୟା ସମ୍ବନ୍ଧୀୟ ଜ୍ଞାନର ଅନ୍ତର୍ଭୁକ୍ତ ଥିଲା । ଗ୍ରାମରେ ଉପଲବ୍ଧ ସ୍ଥାନୀୟ ବିଶେଷଜ୍ଞମାନଙ୍କ ସହାୟତାରେ ପୁଷ୍କରିଣୀ, ସ୍ଲୁଇସ୍ ଥିବା ଜଳାଶୟ, କେନାଲ ଏବଂ କୂଅମାନ ନିର୍ମାଣ କରାଯାଉଥିଲା ଓ ସେଗୁଡ଼ିକର ରକ୍ଷଣାବେକ୍ଷଣ କରାଯାଉଥିଲା । ନଦୀ ଉପରେ ନଦୀବନ୍ଧ ଏବଂ ଆନିକଟ୍ ନିର୍ମାଣ ଭଳି ଚୋଳମାନଙ୍କର ଜଳସେଚନ ସମ୍ବନ୍ଧୀୟ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ପ୍ରତ୍ୟକ୍ଷଭାବେ ରାଜ୍ୟର ନିୟନ୍ତ୍ରଣରେ ଥିଲା । ଜଳସେଚନ ବ୍ୟବସ୍ଥା ସ୍ଥାନୀୟ ବା କେନ୍ଦ୍ରୀୟ ନିୟନ୍ତ୍ରଣାଧୀନ ଥାଉ ପଛେ, ଏଥିପାଇଁ ଆବଶ୍ୟକ ସଂଗଠିତ ଶ୍ରମଶକ୍ତି ପାଇଁ ଗ୍ରାମ ବା ଗ୍ରାମ ବାହାର ଅଞ୍ଚଳ ଉପରେ ନିର୍ଭର କରିବାକୁ ପଡୁଥିଲା । ସମ୍ଭବତଃ ଜମିମାଲିକମାନଙ୍କର କୃଷକମାନଙ୍କ ଉପରେ ଯଥେଷ୍ଟ ନିୟନ୍ତ୍ରଣ ଥିଲା ଯାହାଫଳରେ ସେମାନେ ବଳ ପ୍ରୟୋଗ ପୂର୍ବକ ଶ୍ରମ ଆଦାୟ କରିପାରୁଥିଲେ । ଭୂମିହୀନ କିମ୍ବା ନିମ୍ନଜାତିର ଲୋକେ ଦୀର୍ଘକାଳ ଲାଗି ଶ୍ରମଦାନ କରୁଥିଲେ । ଏହି ପ୍ରକାରର ଅର୍ଦ୍ଧଦାସ ଗୋଷ୍ଠୀ ଉପମହାଦେଶର ବିଭିନ୍ନ ଭାଗରେ ଦୀର୍ଘକାଳ ଧରି ଉପଲବ୍ଧ ହେଉଥିଲେ । ଏମାନଙ୍କୁ ଗୋତି ଶ୍ରମିକ, ଦାସ ଶ୍ରମିକ, କ୍ରୀତଦାସ (ଅଡିମାଇ) ଇତ୍ୟାଦି କୁହାଯାଉଥିଲା । ଅନ୍ୟାନ୍ୟ ସମାଜଗୁଡ଼ିକର ଦାସପ୍ରଥା ସହ ଏହା ତୁଳନୀୟ ନ ହେଲେ ମଧ୍ୟ ଗୋତି ପ୍ରଥାରେ ଯେଉଁ ସର୍ତ୍ତ ରଖାଯାଉଥିଲା, ତଦନୁସାରେ ଲୋକଟି ତା'ର ସ୍ୱାଧୀନତା ଫେରି ପାଇବାକୁ ଅସମର୍ଥ ହେଉଥିଲା । ଚୁକ୍ତିବଦ୍ଧ ଲୋକମାନେ ଅନୁଦାନ ମାଧ୍ୟମରେ ଜମିର ମାଲିକାନା ବଦଳ ହେଲେ ନିଜେ ବଦଳ ହେଉଥିଲେ । ଚୋଳ ଶାସନର ପରବର୍ତ୍ତୀ ଭାଗରେ ଯେତେବେଳେ ଭୂମି ଉପରେ ଗ୍ରାମର ନିୟନ୍ତ୍ରଣ ପରିବର୍ତ୍ତେ ବ୍ୟକ୍ତିଗତ ମାଲିକାନା ବେଶିରୁ ବେଶି ଜାହିର୍ ହୋଇଥିଲା, ସେତେବେଳେ ଏହି ବ୍ୟବସ୍ଥା ନିଃସନ୍ଦେହରେ ଆହୁରି ଦୃଢ଼ୀଭୂତ ହେଲା ।

ଭାରତୀୟ ଇତିହାସରେ କୃଷକ ଆନ୍ଦୋଳନର ନଜିର କ୍ୱଚିତ୍ ଉପଲବ୍ଧ ହୋଇଥାଏ । ପୂର୍ବବର୍ତ୍ତୀ କାଳର ସୂତ୍ର ମୁତାବକ ଅସନ୍ତୁଷ୍ଟ କୃଷକମାନେ ତତ୍କାଳୀନ ଶାସକଙ୍କ ନିୟନ୍ତ୍ରଣ ବାହାରେ ଥିବା କୌଣସି ସ୍ଥାନକୁ ବା ପଡ଼ୋଶୀ ରାଜ୍ୟକୁ ସ୍ଥାନାନ୍ତରଣରେ ଚାଲିଯାଉଥିଲେ । ଅବଶ୍ୟ ଏ ପ୍ରକାରର ସ୍ଥାନାନ୍ତରଣ ଲାଗି ଅନୁମତି ମିଳୁ ନ ଥିଲା । ଏହା ଏକ ସମ୍ଭାବ୍ୟ

ପ୍ରତିରୋଧ ହୋଇଥିବ, ଯାହା ଫଳରେ ଶାସକଙ୍କର ରାଜସ୍ୱରେ ହ୍ରାସ ଘଟିଥିବ । ମାତ୍ର ଜମି ଉପଲବ୍ଧ ଥିଲାବେଳେ ହିଁ ଏ ପ୍ରକାରର ପ୍ରତିରୋଧ ସମ୍ଭବ ହୋଇପାରୁଥିଲା । ଦ୍ୱିତୀୟ ସହସ୍ରାବ୍ଦୀର ପ୍ରାରମ୍ଭିକ ଭାଗରୁ ସାଧାରଣତଃ ପ୍ରଶାସନର କେତେକ ବିଭାବକୁ ବିରୋଧ କରି ମୁଣ୍ଡ ଟେକିଥିବା କେତୋଟି ବିଦ୍ରୋହ ସମ୍ପର୍କରେ ସୂଚନା ମିଳିଥାଏ । ସମ୍ଭବତଃ ଏଣିକି ସହଜରେ କୃଷିଯୋଗ୍ୟ ଜମି ଉପଲବ୍ଧ ହେଉ ନ ଥିଲା ଅଥବା ଛୋଟ ରାଜ୍ୟଗୁଡ଼ିକର ସଂଖ୍ୟା ବଢ଼ିଯାଇଥିଲା ।

ଚୋଳ ପ୍ରଶାସନ ପାଇଁ ଗ୍ରାମ ପରିଷଦଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଯେଉଁମାନେ ସ୍ୱାଭାବିକଭାବେ ଗ୍ରାମରେ ରହୁଥିଲେ, ସେମାନେ ଉର୍ (Ur) ନାମକ ଏକ ପରିଷଦରେ ଏକାଠି ହେଉଥିଲେ । ଅନ୍ୟପକ୍ଷରେ ବ୍ରହ୍ମଦେୟ ଗ୍ରାମଗୁଡ଼ିକରେ 'ସଭା' ନାମକ ଆଉ ଟିକେ ଉନ୍ନତ ଶବ୍ଦର ବ୍ୟବହାର ପ୍ରଚଳିତ ଥିଲା । ଦରବାରର ଅଧିକାରୀମାନେ ସଭାରେ ଉପସ୍ଥିତ ରହୁଥିଲେ, ତେବେ ସେଥିରେ ଆଧିପତ୍ୟପୂର୍ଣ୍ଣ ଭୂମିକା ତୁଲାଉଥିଲେ । ଏହି କାରଣରୁ ଉପର ସ୍ତରରେ ରାଜନୈତିକ ପରିବର୍ତ୍ତନ ଘଟିଲେ ମଧ୍ୟ, ବିଶେଷ ହସ୍ତକ୍ଷେପ ବିନା ସ୍ଥାନୀୟ ଅଭିବୃଦ୍ଧି ଏବଂ ବିକାଶ ସମ୍ଭବ ହୋଇପାରୁଥିଲା । ଗ୍ରାମ ସ୍ତରରେ ଉପଲବ୍ଧ ଏ ପ୍ରକାରର ସ୍ୱାୟତ୍ତତା ଲକ୍ଷଣୀୟ ।

ବଡ଼ ଗ୍ରାମଗୁଡ଼ିକୁ ସାହିରେ ବିଭକ୍ତ କରାଯାଉଥିଲା । ପ୍ରତ୍ୟେକ ସାହିର ଘରମାନଙ୍କୁ ନେଇ ଏକ ଛୋଟ ପରିଷଦ ଗଠନ କରାଯାଉଥିଲା । ଗାଁଗୁଡ଼ିକର ରୂପରେଖକୁ ନଜର କଲେ ପାଖାପାଖି ଏକା ପ୍ରକାରର ବୃତ୍ତି ସମ୍ପନ୍ନ ଲୋକମାନଙ୍କ ଭିତରେ ଗୋଟିଏ ସାହିରେ ରହିବାର ମନୋବୃତ୍ତି ଥିଲା ବୋଲି ଜଣାଯାଏ । ବଢ଼େଇ, କମାର, କୁମ୍ଭାର ପ୍ରଭୃତି ବୃତ୍ତିଗତ ଗୋଷ୍ଠୀର ପ୍ରତିନିଧି ସମାନ ସାହିରେ ରହୁଥିଲେ । କୃଷକ ପରିବାରଗୁଡ଼ିକର ମୁଖ୍ୟ ବା ବେଲାଳମାନଙ୍କ ସହ ପରାମର୍ଶ କରି ପରିଷଦ ଦ୍ୱାରା ଉତ୍ପାଦନ ନିୟନ୍ତ୍ରଣ କରାଯାଉଥିଲା, କାରଣ ସେମାନେ ଥିଲେ ଏହାର ସଦସ୍ୟ । ଏହାଫଳରେ ଅନେକ ବିଷୟରେ ଆଲୋଚନା ଆବଶ୍ୟକ ପଡୁଥିଲା । ଜଳସେଚନ ବ୍ୟବସ୍ଥା ପ୍ରତିଷ୍ଠା ଭଳି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ମଧ୍ୟ ଏ ଆଲୋଚନାର ପରିସରଭୁକ୍ତ ଥିଲା । ଜମି ଉପରେ ଅଧିକାର ସମ୍ପର୍କରେ ସ୍ପଷ୍ଟ ଅବଧାରଣା ପ୍ରସ୍ତୁତ ହୋଇଥିଲା ଏବଂ ଏହି ଅଧିକାର ମୌରସୀ ଭିତ୍ତିକ ଥିଲା ।

ଗୋଟିଏ ନାଡୁ ବା ନିର୍ଦ୍ଦିଷ୍ଟ ଭୂଖଣ୍ଡ ଭିତରେ ଗ୍ରାମଗୁଡ଼ିକୁ ନେଇ ଏକ ଗୋଷ୍ଠୀ ଗଠନ କରାଯାଇଥିଲା । ବ୍ରହ୍ମଦେୟଗୁଡ଼ିକର କୃଷିଭିତ୍ତିକ ସଂଗଠନ, ମନ୍ଦିର, ନଗରମ୍ ଭଳି ବିନିମୟ କେନ୍ଦ୍ର ସହ ଜଡ଼ିତ ବାଣିଜ୍ୟିକ ସଂଗଠନମାନ ନାଡୁ ମଧ୍ୟରେ ଥାଇ କାର୍ଯ୍ୟ କରୁଥିଲେ । ଅବଶ୍ୟ କେହି କେହି ନାଡୁକୁ ଏଡ଼ାଇ ଯାଇ ଅନ୍ୟତ୍ର ସମ୍ବନ୍ଧ ରଖୁଥିଲେ । କୃଷିଜାତ ଦ୍ରବ୍ୟକୁ

ନେଇ କାରବାର କରୁଥିବା ସଂଗଠନ ବେଲାଳର ସଭ୍ୟମାନେ (ଯଥା- ଚିତ୍ରମେଳି ପେରିୟାନାଡୁ ଯେଉଁମାନଙ୍କ ସମ୍ପର୍କରେ ଦ୍ୱାଦଶ ଶତାବ୍ଦୀ ପରଠାରୁ ସୂଚନା ଦିଆଯାଇଛି) ଏହି କ୍ଷେତ୍ରକୁ ଅଧିକ ବ୍ୟାପକ ଭାବେ ଏଡ଼ାଇଲେ । ନାଡୁ ଏକ ସ୍ୱାୟତ୍ତ ତଥା ସୀମାନ୍ତବର୍ତ୍ତୀ ଅଞ୍ଚଳ ନ ଥିଲା, ବରଂ ଏହା କେନ୍ଦ୍ରୀୟ ନିୟନ୍ତ୍ରଣରେ ଥିଲା । ଏଥିଯୋଗୁଁ କେନ୍ଦ୍ର ନାଡୁଗୁଡ଼ିକୁ ନେଇ ପୁନଶ୍ଚ ଗୋଷ୍ଠୀ କରିବାରେ ସମର୍ଥ ହେଲା । ନାଡୁଗୁଡ଼ିକ ସମ ଆକାର ବିଶିଷ୍ଟ ନ ଥିଲେ । ନାଡୁକୁ ନେଇ ଗଠିତ ନୂତନ ଏକକମାନ ହେଲେ ବାଲାନାଡୁ ଏବଂ ମଣ୍ଡଳମ୍ । ଏପ୍ରକାରର ପୁନରାୟୋଜନ ଭୂଖଣ୍ଡ ଉପରେ ନିୟନ୍ତ୍ରଣର ସୂଚକ ଥିଲା ।

ଦୂରବର୍ତ୍ତୀ ଦକ୍ଷିଣାଞ୍ଚଳର ତାମ୍ରପର୍ଣ୍ଣି ଉପତ୍ୟକା ପରି ବାଲାନାଡୁର କୃଷି ସଂପ୍ରସାରଣ ବ୍ୟବସ୍ଥା ଭୂମି ଅନୁଦାନ ଗ୍ରହଣ କରିଥିବା ବ୍ରାହ୍ମଣ ବାସିନ୍ଦାଙ୍କ ସହ ଜଡ଼ିତ ହୋଇପଡ଼ିଲା । ଯେଉଁ କ୍ଷେତ୍ରରେ ଜମିରେ ଚାଷ କରାଯାଇଥିଲା ସେହି କ୍ଷେତ୍ରରେ କୃଷକ ଏବଂ ଅନୁଦାନ ଗ୍ରହୀତା ମଧ୍ୟରେ ଏକ ଚୁକ୍ତି ହେଉଥିଲା । ଏଥିରେ ସ୍ୱାଭାବିକ ଭାବେ ଗ୍ରହୀତା ସୁବିଧାଜନକ ସ୍ଥିତିରେ ରହୁଥିଲା । ମଣ୍ଡଳମ୍ ଭଳି ଅନ୍ୟାନ୍ୟ ଅନୁଷ୍ଠାନଗୁଡ଼ିକ ରାଜସ୍ୱ ଦାବି ନିର୍ଦ୍ଧାରଣ, ପ୍ରଶାସନିକ ନିୟନ୍ତ୍ରଣ ଏବଂ ସେ ଅଞ୍ଚଳରେ ନଗରଗୁଡ଼ିକର ଆବଶ୍ୟକତାକୁ ନେଇ ସହଯୋଗ କରୁଥିଲେ । କୃଷକ, ବନବାସୀ ଏବଂ ନିକଟସ୍ଥ ପାର୍ବତ୍ୟାଞ୍ଚଳର ଲୋକମାନେ ମଣ୍ଡଳମ୍‌ର ଅଂଶ ଥିଲେ ।

ଚୋଳମାନଙ୍କ ସମୟରେ ଅର୍ଥବ୍ୟବସ୍ଥାର ପୁନର୍ଗଠନରେ ବ୍ରହ୍ମଦେୟ ଏବଂ ମନ୍ଦିରର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଏହାର କାରଣ କେବଳ ସେମାନଙ୍କ କର୍ମକାଣ୍ଡ ଭିତ୍ତିକ ଆଧିପତ୍ୟ ନ ଥିଲା, ବରଂ ଉତ୍ପାଦକତା ଉପରେ ସେମାନଙ୍କର ପ୍ରଶାସନିକ ଏବଂ କାର୍ଯ୍ୟଗତ ନିୟନ୍ତ୍ରଣର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । କର୍ମକାଣ୍ଡ ଯେତେ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ତାହା ସାମାଜିକ ଶୂନ୍ୟତା ଭିତରେ ତିଷ୍ଠିପାରେ ନାହିଁ । ବରଂ ଏହା ସାମାଜିକ, ଅର୍ଥନୈତିକ ବାସ୍ତବତା ଏବଂ ଆକାଂକ୍ଷା ସହ ଜଡ଼ିତ । ଖୋଦ୍ ଅନୁଦାନ ଗ୍ରହୀତାମାନେ ଅନୁଦାନ ଲାଗି ରାଜାଙ୍କ ନିକଟରେ ଉତ୍ତରଦାୟୀ ଥିଲେ । ରାଜାଙ୍କ ଅଧିକାରୀମାନେ ମନ୍ଦିର ସମ୍ବଳର ତନଖି କରୁଥିଲେ ଏବଂ ଏହାର ହିସାବପତ୍ର ନିରୀକ୍ଷଣ କରୁଥିଲେ । ବୌଦ୍ଧବିହାରଗୁଡ଼ିକ ପରି ମନ୍ଦିରଗୁଡ଼ିକ ମଧ୍ୟ ସେ କ୍ଷେତ୍ରରେ ତିଷ୍ଠିପାରୁଥିଲା, ଯେଉଁଠି କୃଷିଜାତ ସମ୍ବଳ ଉପରେ ନିୟନ୍ତ୍ରଣ ଥିଲା ଏବଂ ବଜାର ଭଳି କାର୍ଯ୍ୟ କରୁଥିବା ନିୟମିତ ମେଳା ଓ ଉତ୍ସବ ମାଧ୍ୟମରେ ରାଜସ୍ୱ ସଂଗ୍ରହ କରାଯାଇପାରୁଥିଲା । ଏଥିଯୋଗୁଁ କୃଷି ଏବଂ ଜଳସେଚନ ଉପରେ ମନ୍ଦିରର ନିୟନ୍ତ୍ରଣ ଆବଶ୍ୟକ ପଡ଼ିଲା, ପୁଣି ବାଣିଜ୍ୟିକ କାରବାରରେ ଅଂଶଗ୍ରହଣ କରିବା ଆବଶ୍ୟକ ହେଲା ।

ସ୍ଥାନୀୟ ପରିସ୍ଥିତି ଅନୁସାରେ ଏହି ପରିଷଦଗୁଡ଼ିକର କାର୍ଯ୍ୟ ଭିନ୍ନ ଭିନ୍ନ ହେଲା । ଉର ଅନୁଷ୍ଠାନଟି ଗ୍ରାମର ସମସ୍ତ ପ୍ରାପ୍ତବୟସ୍କ ପୁରୁଷଙ୍କ ଲାଗି ଖୋଲା ରହୁଥିଲା, ମାତ୍ର ଘରର ମୁଖିଆମାନଙ୍କ ଭଳି ବୟସ୍କ ଲୋକେ ଏଥିରେ ଅଧିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ହାସଲ କରୁଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେଜଣ ଏକ କାର୍ଯ୍ୟନିର୍ବାହୀ କମିଟି ଗଠନ କରି ଏହାର ନିର୍ଘଣ୍ଟ ନିର୍ଦ୍ଧାରଣ କରୁଥିଲେ । 'ସଭା'ରେ ମଧ୍ୟ ସମାନ ବ୍ୟବସ୍ଥା ଥିଲା । ତେବେ ଏଥିସହିତ ସଭାର ସଦସ୍ୟମାନଙ୍କୁ ନେଇ ସ୍ୱତନ୍ତ୍ର କାର୍ଯ୍ୟ ଉଦ୍ଦେଶ୍ୟରେ ଛୋଟ ଛୋଟ କମିଟିମାନ ଗଢ଼ାଯାଉଥିଲା । 'ସଭା' ଗଠନ ଲାଗି ଯୋଗ୍ୟ ଲୋକମାନଙ୍କ ମଧ୍ୟରୁ ସଦସ୍ୟ ନିର୍ବାଚନ କରାଯାଉଥିଲା । ଅବଶ୍ୟ ଆବଶ୍ୟକତା ପଡ଼ିଲେ ସଭାର କାର୍ଯ୍ୟକାରିତାକୁ ନେଇ ସଂଶୋଧନ ମଧ୍ୟ କରାଯାଇ ପାରୁଥିଲା । ଉତ୍ତରମେରୁର୍ (ଏକ ବ୍ରହ୍ମଦେୟ ଗ୍ରାମ)ଠାରେ ଅବସ୍ଥିତ ଏକ ମନ୍ଦିର ନିକଟରୁ ପ୍ରାପ୍ତ ଏକ ଅଭିଲେଖରେ ଗୋଟିଏ 'ସଭା' କିପରି କାର୍ଯ୍ୟ କରେ, ସେ ସମ୍ପର୍କୀୟ ବିଶଦ ବିବରଣୀ ବର୍ଣ୍ଣିତ ହୋଇଛି । ଏହା ଦଶମ ଶତାବ୍ଦୀର ଉଲ୍ଲେଖ । ଏଥିରେ ଯାହା ଖୋଦିତ ହୋଇଛି ତାହା ନିମ୍ନରେ ପ୍ରଦତ୍ତ ହେଲା :

*''ତିରିଶଟି ୱାର୍ଡ଼ [ସାହି] ରହିବ । ଏହି ତିରିଶଟି ୱାର୍ଡ଼ରେ ରହୁଥିବା ଲୋକମାନେ ଏକତ୍ରିତ ହୋଇ ନିମ୍ନୋକ୍ତ ଯୋଗ୍ୟତା ସମ୍ପନ୍ନ ଲୋକମାନଙ୍କୁ ସମସ୍ତଙ୍କ ଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା କରିବେ ।*

*ସେ ଏକଚତୁର୍ଥାଂଶରୁ ଅଧିକ କରଯୁକ୍ତ ଜମିର ମାଲିକ ହୋଇଥିବେ । ସେ ତାଙ୍କ ନିଜ ଜମି ଉପରେ ନିର୍ମିତ ଘରେ ବସବାସ କରୁଥିବେ । ତାଙ୍କର ବୟସ ପଞ୍ଚତିରିଶରୁ ଉର୍ଦ୍ଧ୍ୱ ଏବଂ ସତୁରିରୁ କମ୍ ହୋଇଥିବ । ସେ ମନ୍ତ୍ର ଏବଂ ବ୍ରାହ୍ମଣ [ବେଦ ସୂତ୍ରରୁ] ଜାଣିଥିବେ ।*

*ସେ ଏକଅଷ୍ଟମାଂଶ ଜମିର ମାଲିକ ହୋଇଥିଲେ ମଧ୍ୟ ଯଦି ଗୋଟିଏ ବେଦ ତଥା ଚାରିଟିରୁ ଗୋଟିଏ ଭାଷ୍ୟ ଆୟତ୍ତ କରିଥାନ୍ତି ତେବେ ତାଙ୍କୁ ଚୟନ କରାଯାଇ ପାରିବ ।*

*ଉପରୋକ୍ତ ଯୋଗ୍ୟତା ସମ୍ପନ୍ନ ଲୋକମାନଙ୍କ ମଧ୍ୟରୁ ଯେଉଁମାନେ ବ୍ୟବସାୟରେ ଧୁରୀଣ ଥିବେ ଏବଂ ସଦ୍‌ଗୁଣ ସମ୍ପନ୍ନ ହୋଇଥିବେ ସେମାନଙ୍କୁ ନିଆଯିବ ଏବଂ ଯିଏ ସତ୍ ଅର୍ଜନର ଅଧିକାରୀ ହୋଇଥିବ, ଯାହାର ମନ ନିର୍ମଳ ଥିବ ଏବଂ ଯିଏ ପୂର୍ବ ତିନିବର୍ଷ ଧରି କୌଣସି କମିଟିରେ ନ ଥିବ ସେ ମଧ୍ୟ ବଛାଯାଇ ପାରିବେ । ଯିଏ କୌଣସି କମିଟିରେ ଥିବେ, ମାତ୍ର ହିସାବପତ୍ରର ବିବରଣୀ ଦେଇ ନ ଥିବେ, ସେ ଏବଂ ତା'ର ନିମ୍ନୋକ୍ତ ସମ୍ପର୍କୀୟଗଣ, କାହାରି ବି ନାମ ଟିକେଟ ଉପରେ ଲେଖାଯାଇ ପାରିବ ନାହିଁ :*

*ତା'ର ମାତାଙ୍କର ସାନ ଏବଂ ବଡ଼ ଭଉଣୀଙ୍କର ପୁଅ ।*

*ତା'ର ପିତୃକୁଳର ଖୁଡ଼ୀ ଏବଂ ମାତୃକୁଳର ଖୁଡ଼ୀଙ୍କର ପୁଅ ।*

*ତା'ର ମାତାଙ୍କ ଔରସରୁ ଜନ୍ମିତ ଭାଇ ।*

*ତା'ର ପିତାଙ୍କ ଔରସଜାତ ଭାଇ ।*

*ତା'ର ଭାଇ ।*

*ତା'ର ଶ୍ୱଶୁର ।*

*ତା'ର ସ୍ତ୍ରୀର ନିଜ ଭାଇ ।*

*ତା'ର ନିଜ ଭଉଣୀର ସ୍ୱାମୀ ।*

*ତା'ର ନିଜ ଭଉଣୀର ପୁଅ ।*

*ତା'ର ଜାମାତା ।*

*ତା'ର ପିତା ।*

*ତା'ର ପୁତ୍ର ।*

*ଯଦି କାହା ବିରୁଦ୍ଧରେ ନିଷିଦ୍ଧ ସଙ୍ଗମ କିମ୍ବା ପଞ୍ଚମହାପାପରୁ ପ୍ରଥମ ଚାରିଟିର ଅଭିଯୋଗ ଥିବ [ପଞ୍ଚ ମହାପାପ ହେଲା- ବ୍ରାହ୍ମଣ ହତ୍ୟା, ମଦ୍ୟପାନ, ଚୋରି, ବ୍ୟଭିଚାର ଏବଂ ଅପରାଧୀମାନଙ୍କ ସହ ସମ୍ପର୍କ] , ଯାହାର ଉପରୋକ୍ତ ସମ୍ପର୍କୀୟମାନେ ଏସବୁ ସହ ଜଡ଼ିତ ଥିବେ, ସେମାନେ ଅନେକଙ୍କ ଦ୍ୱାରା ନିର୍ବାଚିତ ହେବାକୁ ଯୋଗ୍ୟ ବିବେଚିତ ହେବେ ନାହିଁ । ନିମ୍ନ ସ୍ତରର ଲୋକଙ୍କ ସହ ସମ୍ବନ୍ଧ ଥିବାରୁ ଯିଏ ଜାତିଚ୍ୟୁତ ବା ବାସନ୍ଦ ହୋଇଥିବ ସେ ପ୍ରାୟଶ୍ଚିତ ଉତ୍ସବ ପାଳନ ନ କଲା ପର୍ଯ୍ୟନ୍ତ ତା'ର ନାମ ଚୟନ କରାଯାଇ ପାରିବ ନାହିଁ ।*

*ଯିଏ ସମ୍ପୂର୍ଣ୍ଣ କଷ୍ଟସହିଷ୍ଣୁ...*

*ଯିଏ ଅନ୍ୟର ସମ୍ପଦ ଅପହରଣ କରିଥିବ...*

*ଯିଏ ଅମେଧ ଭକ୍ଷଣ କରିଥିବ...*

*ଯିଏ ପାପ କରିଥିବ ଏବଂ ଶୁଦ୍ଧି ନିମନ୍ତେ ପ୍ରାୟଶ୍ଚିତ ଉତ୍ସବ ପାଳନ କରି ନଥିବ... ସେ ସମସ୍ତଙ୍କୁ ବାଦ୍ ଦେଇ ତିରିଶଟି ୱାର୍ଡ଼ ପାଇଁ ଟିକେଟ୍ ଉପରେ ଅନ୍ୟମାନଙ୍କର ନାମ ଉଲ୍ଲେଖ କରାଯିବ । ଏହି ବାରଟି ପଥରେ ଥିବା ପ୍ରତ୍ୟେକ ୱାର୍ଡ଼ ତିରିଶ ୱାର୍ଡ଼ ଲାଗି ସ୍ୱତନ୍ତ୍ର ଟିକେଟ ବ୍ୟବସ୍ଥା କରିବେ ଏବଂ ସେଗୁଡ଼ିକୁ ସ୍ୱତନ୍ତ୍ର ବିଡ଼ା କରାଯିବ । ବିଡ଼ାଗୁଡ଼ିକୁ ଏକ ପାତ୍ର ଭିତରେ ରଖାଯିବ । ଟିକେଟଗୁଡ଼ିକୁ ବାହାର କରାଗଲାବେଳେ ଯୁବକ ଏବଂ ବୃଦ୍ଧ ସଭ୍ୟମାନଙ୍କୁ ନେଇ ପରିଷଦର ଏକ ପୂର୍ଣ୍ଣାଙ୍ଗ ବୈଠକ ଆୟୋଜନ କରାଯିବ । ସେହି ଦିନ ଗ୍ରାମରେ ଉପଲବ୍ଧ ଥିବା ସମସ୍ତ ମନ୍ଦିର ପୂଜକ କୌଣସି ବ୍ୟତିକ୍ରମ ବିନା ମହା ପରିଷଦ*

ବୈଠକ ଚାଲୁଥିବା ସ୍ଥାନର ଆଭ୍ୟନ୍ତରୀଣ କକ୍ଷରେ ବସିବେ । ମନ୍ଦିର ପୂଜକମାନଙ୍କ ମଧ୍ୟରୁ ଯିଏ ବୟୋଜ୍ୟେଷ୍ଠ ସେ ଠିଆହେବେ ଏବଂ ସମସ୍ତଙ୍କୁ ଦେଖାଗଲା ଭଳି ପାତ୍ରଟିକୁ ଉଠାଇ ଧରିବେ । ଭିତରେ କ'ଣ ଅଛି ଜାଣି ନ ଥିବା ଏବଂ ପାଖରେ ଠିଆହୋଇଥିବା ଜଣେ ବାଳକ ଗୋଟିଏ ୱାର୍ଡ୍‌ର କାଗଜ ଉଠାଇନେଇ ଆଉ ଗୋଟିଏ ଖାଲି ପାତ୍ରରେ ରଖିବ ଏବଂ ତାହାକୁ ହଲାଇ ଦିଆଯିବ । ଏହି ପାତ୍ର ମଧ୍ୟରୁ ଗୋଟିଏ ଟିକେଟ କଢ଼ାଯିବ ଏବଂ ମଧ୍ୟସ୍ଥି ନିର୍ଣ୍ଣୟ କରାଯିବ । ଦିଆଯାଉଥିବା ଟିକେଟ୍‌ର ଦାୟିତ୍ୱ ଗ୍ରହଣ କଲାବେଳେ ମଧ୍ୟସ୍ଥି ତାଙ୍କର ପାଞ୍ଚ ଆଙ୍ଗୁଠି ଖୋଲା ରଖି ହାତପାପୁଲି ମାଧ୍ୟମରେ ତାହାକୁ ଗ୍ରହଣ କରିବେ । ତା'ପରେ ସେ ଗ୍ରହଣ କରିଥିବା ଟିକେଟକୁ ପଢ଼ିବେ । ଅନ୍ତଃସ୍ଥ କକ୍ଷରେ ଥିବା ସମସ୍ତ ପୂଜକ ସେ ଟିକେଟକୁ ପଢ଼ିବେ । ପଢ଼ାହୋଇଥିବା ନାମଟି ଗୃହୀତ ହେବ । ଏହିପରି ତିରିଶଟି ୱାର୍ଡ୍ ପାଇଁ ଜଣେ ଜଣେ ବ୍ୟକ୍ତିଙ୍କର ନାମ ଚୟନ କରାଯିବ ।

ବଛା ହୋଇଥିବା ତିରିଶ ଜଣଙ୍କ ମଧ୍ୟରୁ ଯେଉଁମାନେ ପୂର୍ବରୁ ବଗିଚା କମିଟି, ପୁଷ୍କରିଣୀ କମିଟିର ସଦସ୍ୟ ଥିବେ, ଶିକ୍ଷା ଏବଂ ବୟସ ଦୃଷ୍ଟିରୁ ଅଗ୍ରଣୀ ହୋଇଥିବେ, ସେମାନଙ୍କୁ ବାର୍ଷିକ କମିଟି ଲାଗି ବଛାଯିବ । ଅନ୍ୟମାନଙ୍କ ମଧ୍ୟରୁ ବାର ଜଣଙ୍କୁ ନେଇ ବଗିଚା କମିଟି ଏବଂ ବାକି ଛଅ ଜଣଙ୍କୁ ନେଇ ପୁଷ୍କରିଣୀ କମିଟି ଗଠନ କରାଯିବ । ଏହି ତିନି କମିଟିରେ ଥିବା ମହାନ୍ ବ୍ୟକ୍ତିମାନେ ସମ୍ପୂର୍ଣ୍ଣ 360 ଦିନ ପାଇଁ କାର୍ଯ୍ୟାଳୟ ମଣ୍ଡନ କରିବେ ଏବଂ ପରେ ଅବସର ଗ୍ରହଣ କରିବେ । କମିଟିର କୌଣସି ସଦସ୍ୟ ଦୋଷୀ ସାବ୍ୟସ୍ତ ହେଲେ ତାଙ୍କୁ ତୁରନ୍ତ ବହିଷ୍କାର କରାଯିବ । ଏହି ସଦସ୍ୟମାନେ ଅବସର ଗ୍ରହଣ କଲାପରେ ନୂତନ କମିଟି ନିଯୁକ୍ତି ପାଇଁ ବାରଟି ମାର୍ଗରେ ନ୍ୟାୟ ପର୍ଯ୍ୟବେକ୍ଷଣ ପାଇଁ କାମ କରୁଥିବା କମିଟିର ସଦସ୍ୟମାନେ ମଧ୍ୟସ୍ଥିଙ୍କ ସହାୟତାରେ ପରିଷଦର ବୈଠକ ଡକାଇବେ । ପାତ୍ର ଭିତରୁ ଟିକେଟ ଉଠାଣ ମାଧ୍ୟମରେ କମିଟି ନିଯୁକ୍ତ କରାଯିବ...

ପାଞ୍ଚ ପ୍ରସ୍ତୀ କମିଟି ଏବଂ ସୁବର୍ଣ୍ଣ କମିଟି ଗଠନ ଲାଗି ତିରିଶ ୱାର୍ଡ୍‌ରେ ଟିକେଟଗୁଡ଼ିକରେ ନାମ ଲେଖି ପାତ୍ର ଭିତରେ ରଖାଯିବ [ପୂର୍ବ ବର୍ଣ୍ଣିତ ପ୍ରକ୍ରିୟା ଦୋହାରାଯିବ] । ଯିଏ ଗଧ ପିଠିରେ ବସିଥିବ [ଦଣ୍ଡ ପାଇଥିବ] ଅଥବା ଜାଲିଆତି କରିଥିବ ତାକୁ ଅନ୍ତର୍ଭୁକ୍ତ କରାଯିବ ନାହିଁ ।

ସଚ୍ଚୋଟ ମାର୍ଗରେ ଉପାର୍ଜନ କରିଥିବା ମଧ୍ୟସ୍ଥି ହିଁ ଗ୍ରାମର ଖର୍ଚ୍ଚ ହିସାବପତ୍ରର ବିବରଣୀ ଲେଖିବ । ମୁଖ୍ୟ କମିଟିର ମହତ୍ ଲୋକମାନଙ୍କ ନିକଟରେ ହିସାବର ବିବରଣୀ ଉପସ୍ଥାପନ କରି ସେ ସଚ୍ଚୋଟ ବୋଲି ଘୋଷିତ ନ ହେବା ପର୍ଯ୍ୟନ୍ତ ସେହି କାର୍ଯ୍ୟାଳୟରେ କୌଣସି ଲେଖାକାର ନିଯୁକ୍ତ କରାଯିବ ନାହିଁ । ସେ ଲେଖିଥିବା ଖର୍ଚ୍ଚ ହିସାବ ସେ ନିଜେ

*ପୈଠ କରିବ । ତା'ର ହିସାବ ଚୂଡ଼ାନ୍ତ କରିବାପାଇଁ କୌଣସି ଲେଖାକାର ବଛାଯିବ ନାହିଁ । ତେଣୁ ଏହି ବର୍ଷଠାରୁ ଯାବତ୍ ଚନ୍ଦ୍ରାର୍କେ ସମସ୍ତଙ୍କ ଦ୍ୱାରା କମିଟି ନିଯୁକ୍ତ କରାଯିବ...*

*ଆମେ ଉତ୍ତରମେରୁରର ପରିଷଦ ଚତୁର-ବେଦୀ-ମଙ୍ଗଳମ୍ ଆମ ଗ୍ରାମର ସମୃଦ୍ଧି ପାଇଁ ଖଳମାନଙ୍କର ବିନାଶ ଏବଂ ବାକି ଲୋକଙ୍କର ଉନ୍ନତି ଲାଗି ଏହି ବ୍ୟବସ୍ଥା କରୁଅଛୁ । ପରିଷଦରେ ଉପସ୍ଥିତ ମହତ୍ ବ୍ୟକ୍ତିମାନଙ୍କର ଆଦେଶ ମୁତାବକ ମୁଁ ମଧ୍ୟସ୍ଥି କଡ଼ାଦିପୋଟନ ଶିବକ୍କୁରୀ-ମଲ୍ଲ-ମଙ୍ଗଳ-ପ୍ରିୟଂ, ତେଣୁ ଏହି ବିଧାନ ଲେଖୁଅଛି ।''*

(Archaeological Survey of India Report (1904-5), p.138 ff.)

ଅନ୍ୟାନ୍ୟ ଅଭିଲେଖଗୁଡ଼ିକରେ ମଧ୍ୟ ସମାନ ପ୍ରକାରର ସାଧାରଣ ପ୍ରକ୍ରିୟାର ସୂଚନା ଦିଆଯାଇଛି । ଅବଶ୍ୟ ସ୍ଥଳବିଶେଷରେ ଯୋଗ୍ୟତା, ଆବଶ୍ୟକତା ଏବଂ ଖର୍ଚ୍ଚ ବରାଦରେ ବିଭିନ୍ନତା ପରିଦୃଷ୍ଟ ହୋଇଛି । ସମୟକୁ ସମୟ ସଂଶୋଧନ ମାଧ୍ୟମରେ ନିୟମ ଗଠନ ଏବଂ ତ୍ରୁଟୀକୁ ସର୍ବନିମ୍ନ ସ୍ତରରେ ରଖିବାର ପ୍ରଚେଷ୍ଟା ଏହି ଅଭିଲେଖଗୁଡ଼ିକର ଲକ୍ଷଣୀୟ ଦିଗ । ଢୋଲବାଦନ ଦ୍ୱାରା ପରିଷଦର ବୈଠକ ଡକାଯାଉଥିଲା ଏବଂ ସାଧାରଣତଃ ମନ୍ଦିର ପ୍ରାଙ୍ଗଣରେ ବୈଠକ ବସୁଥିଲା । ଗ୍ରାମପରିଷଦଗୁଡ଼ିକ ମଧ୍ୟରେ ବିନିମୟ ଏବଂ ସହଯୋଗ ସ୍ୱାଭାବିକ ଭାବେ ଚାଲୁଥିଲା ।

ସରକାର ପରିଚାଳନାର ଖର୍ଚ୍ଚ ସଂଗ୍ରହ ଗ୍ରାମ ପରିଷଦର ଦାୟିତ୍ୱ ଥିଲା । ପରିସ୍ଥିତିକୁ ଚାହିଁ ଜମି ଏବଂ ଉତ୍ପାଦିତ ଦ୍ରବ୍ୟ ଉପରେ ଟିକସ ଲାଗୁ କରାଯାଉଥିଲା । କେତେକ କ୍ଷେତ୍ରରେ ସମଗ୍ର ଗ୍ରାମଠାରୁ ଏକ ମିଳିତ ରକମ ସଂଗ୍ରହ କରାଯାଉଥିଲା । ଏହା ସମେତ କେତେକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଲାଗି ପରିଷଦ ତରଫରୁ ଶୁଳ୍କ ଧାର୍ଯ୍ୟ କରାଯାଉଥିଲା । ଉଦାହରଣ ସ୍ୱରୂପ, ପାଣିଟାଙ୍କି ପ୍ରତିଷ୍ଠା । ରାଜ୍ୟ ପାଇଁ ଆଦାୟ କରାଯାଉଥିବା ଟିକସଠାରୁ ଏହି ସ୍ଥାନୀୟ ପାଣ୍ଠିକୁ ଅଲଗା ରଖାଯାଉଥିଲା । ପରିଷଦର କାର୍ଯ୍ୟ ଥିଲା, ଦାତବ୍ୟ ବିଷୟକ ଏକ ଟିକସ ସମ୍ବନ୍ଧୀୟ ବିବରଣୀ ରକ୍ଷା ଏବଂ ଜଳସେଚନ ଅଧିକାର କାର୍ଯ୍ୟକାଳ ବ୍ୟବସ୍ଥା ଇତ୍ୟାଦିକୁ ନେଇ ଉପୁଜୁଥିବା କୃଷି ଆଧାରିତ ବିବାଦଗୁଡ଼ିକର ସମାଧାନ । ବୃହତ୍ତର ପରିଷଦଗୁଡ଼ିକରେ ଅଳ୍ପ କେତେଜଣ ବେତନଭୋଗୀ ଅଧିକାରୀଙ୍କୁ ନିଯୁକ୍ତି ଦିଆଯାଉଥିଲା । ମାତ୍ର କ୍ଷୁଦ୍ର ପରିଷଦ କ୍ଷେତ୍ରରେ ଅଧିକାଂଶ କାର୍ଯ୍ୟ ସ୍ୱେଚ୍ଛାସେବା ମାଧ୍ୟମରେ ସମ୍ପାଦିତ ହେଉଥିଲା । ନାଡୁ ସ୍ତରରେ ସ୍ୱତନ୍ତ୍ର ଉଦ୍ଦେଶ୍ୟରେ ପେଷାଦାର କର୍ମକର୍ତ୍ତାଙ୍କୁ ନିଯୁକ୍ତି ଦିଆଯାଉଥିଲା । ବେଲାଳମାନଙ୍କ ମଧ୍ୟରୁ ଉତ୍ତମ ବ୍ୟକ୍ତିମାନଙ୍କୁ ବାଛି ଉଚ୍ଚ ଅଧିକାରୀ ପଦ ଦିଆଯାଉଥିଲା । ଏହାଫଳରେ ରାଜ୍ୟ ଏବଂ ସ୍ଥାନୀୟ ପ୍ରଶାସନ ମଧ୍ୟରେ ଏକ ଯୋଗସୂତ୍ର ତିଆରି ହେବା ସଙ୍ଗେ ସଙ୍ଗେ ଉପରକୁ ଉଠିବାର ସମ୍ଭାବନା ଦେଖାଦେଉଥିଲା ଏବଂ ସ୍ଥଳବିଶେଷରେ ରାଜନୈତିକ ଆକାଂକ୍ଷା

ସମ୍ପନ୍ନ ଲୋକମାନଙ୍କ ଲାଗି ଏକ ଭିତ୍ତି ମିଳିଯାଉଥିଲା । ଚୋଳ ଶାସନର ପରବର୍ତ୍ତୀ ଭାଗରେ ଟିକସର ମାତ୍ରା ବୃଦ୍ଧି ପାଇବା ସହିତ ରାଜସ୍ୱ ଅଧିକାରୀମାନଙ୍କ କାର୍ଯ୍ୟ ବଢ଼ିଗଲା । ଗ୍ରାମ୍ୟ ସ୍ତରର ସ୍ୱାୟତ୍ତତା ଯୋଗୁଁ ପ୍ରଶାସନିକ ଏବଂ ରାଜନୈତିକ ଢାଞ୍ଚାର ଉପର ସ୍ତରରେ ପରିବର୍ତ୍ତନ ହେଲାବେଳେ ଗ୍ରାମର ନିର୍ଘଣ୍ଟ ଆଧାରିତ ଜୀବନରେ ବିଶେଷ ହସ୍ତକ୍ଷେପ ସମ୍ଭବ ହୋଇପାରିଲା ନାହିଁ ।

ଟିକସ ଦେବାର ପଦ୍ଧତି ଭଳି ସମ୍ପଦ ଉପରେ ଥିବା ଅଧିକାରର ସ୍ୱରୂପ ମଧ୍ୟ ଭିନ୍ନ ଭିନ୍ନ ଥିଲା । ବ୍ୟକ୍ତିଗତ ଅଥବା ଗ୍ରାମ ତରଫରୁ ମିଳିତଭାବେ ଯଦି ଟିକସ ଦିଆଯାଉଛି ତାହା ଉପରେ ମାଲିକାନା ଓ ଅଧିକାରର ସ୍ୱରୂପ ନିର୍ଭର କରୁଥିଲା । ବେଳେବେଳେ କୌଣସି ସେବାର ବିନିମୟରେ ଆଂଶିକ ବା ସମ୍ପୂର୍ଣ୍ଣ ରୂପେ କରଛାଡ଼ କରାଯାଉଥିଲା । ଦେବତାଙ୍କ ସ୍ନାନ ବିଧିବେଳେ ଆବଶ୍ୟକ ଜଳ ଯୋଗାଇଦେବା ଭଳି କାର୍ଯ୍ୟ ପାଇଁ ଏ ପ୍ରକାରର ରିହାତି ମିଳୁଥିଲା ଯାହା ସାଧାରଣତଃ କ୍ୱଚିତ୍ ସମ୍ଭବ ହେଉଥିଲା । ପରବର୍ତ୍ତୀ ଶତାବ୍ଦୀଗୁଡ଼ିକରେ ସାମରିକ ସେବା ଏହି ଟିକସର ଅନ୍ତର୍ଭୁକ୍ତ ହେଲା । ମନ୍ଦିର ସମ୍ବନ୍ଧୀୟ ସେବା ଲାଗି ଜଣକୁ ଦେବତାଙ୍କ ନିକଟବର୍ତ୍ତୀ ରହିବା ଆବଶ୍ୟକ ହେଉଥିଲା, ମାତ୍ର ସାମରିକ ସେବା ନିମ୍ନଜାତିର ଲୋକମାନଙ୍କ ଦ୍ୱାରା ମଧ୍ୟ ସମ୍ଭବ ହୋଇପାରୁଥିଲା । ବ୍ରହ୍ମଦେୟ ଅନୁଦାନର ଗ୍ରହୀତା ଏବଂ ଅନୁଦାନ ଗ୍ରହଣ କରିଥିବା ମନ୍ଦିର ଇତ୍ୟାଦି କ୍ଷେତ୍ରରେ ଅଧିକାରର ପ୍ରଶ୍ନ ଉଠିଲାବେଳେ ସେମାନଙ୍କୁ ନିୟମିତ ମାଲିକ ଭାବେ ଗଣନା କରାଯାଉଥିଲା । ଯେଉଁ ଜମି ଲାଗି କର ଦିଆଯାଉଥିଲା ଏବଂ ଯାହା ଲାଗି ଦିଆଯାଉ ନ ଥିଲା, ତା ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହିଥିଲା । ଦ୍ୱିତୀୟ କ୍ଷେତ୍ରରେ କୃଷି ଶ୍ରମିକମାନେ କେବଳ ମଜୁରି ପାଇବା ଲାଗି କାମ କରୁଥିଲେ । ସବୁଠୁ ବଡ଼ ପାର୍ଥକ୍ୟ ହେଲା, ଜଣେ ଶ୍ରମିକ ଗ୍ରାମ ପରିଷଦର ସଭ୍ୟ ହୋଇପାରୁ ନ ଥିଲା କିମ୍ୱା ସ୍ଥାନୀୟ ପ୍ରଶାସନରେ ଦାୟିତ୍ୱପୂର୍ଣ୍ଣ ଭୂମିକା ତୁଲାଇପାରୁ ନ ଥିଲା । ଅନେକ ଶ୍ରମିକଙ୍କୁ ମନ୍ଦିର ଜମିରେ ନିଯୁକ୍ତି ଦିଆଯାଉଥିଲେ ମଧ୍ୟ ନିମ୍ନ ଜାତିର ହୋଇଥିବାରୁ ସେମାନଙ୍କୁ ମନ୍ଦିର ପ୍ରବେଶ ଲାଗି ଅନୁମତି ଦିଆଯାଉ ନ ଥିଲା । କୃଷକ ଓ ଶ୍ରମିକମାନଙ୍କର ନିୟମିତ କାମ ଥିଲା, ପତିତ ଜମି ଉପରେ ଅଧିକାର ଦାବି ଏବଂ ଜଙ୍ଗଲ ସଫା କରି ଜମି ପ୍ରସ୍ତୁତି କରିବା । ଏହି କାର୍ଯ୍ୟକୁ ଶାସକମାନେ ଉତ୍ସାହିତ କରୁଥିଲେ । କାରଣ ଏହାଫଳରେ କୃଷି ଉପଯୋଗୀ ଜମିର ପରିମାଣ ବୃଦ୍ଧି ପାଉଥିଲା । କେବଳ ଉଚ୍ଚ ଭୂମି ଅଞ୍ଚଳକୁ ବାଦ୍ ଦେଲେ ଅନ୍ୟତ୍ର ଗୋପାଳନ ଏକ ପାର୍ଶ୍ୱ ପେଷାରେ ପରିଣତ ହୋଇଥିଲା ।

ଚୋଳ ରାଜ୍ୟର ଆୟର ଏକ ପ୍ରମୁଖ ଉତ୍ସ ଥିଲା ଜମି ଏବଂ ତହିଁରୁ ଉତ୍ପାଦିତ ଦ୍ରବ୍ୟ ଉପରେ ଅର୍ଥ ବା ଦ୍ରବ୍ୟ ଆକାରରେ କର ଧାର୍ଯ୍ୟ । ଖଣି, ଜଙ୍ଗଲ, ଲବଣ, ବୃତ୍ତିକର, ରାସ୍ତା

ପରିବହନ ଶୁଳ୍କ, ନ୍ୟାୟପାଳିକା ଦ୍ୱାରା ଧାର୍ଯ୍ୟ ଜୋରିମାନା ଏବଂ ଏହାର ସମତୁଲ - ବେଠି ଇତ୍ୟାଦି ଅନ୍ୟାନ୍ୟ ଟିକସ ମଧ୍ୟ ସଂଗ୍ରହ କରାଯାଉଥିଲା । ଜମିର ଗୁଣ ଏବଂ ଏହାକୁ ଜଳସେଚିତ କରିବାର ସୁବିଧାକୁ ଦୃଷ୍ଟିରେ ରଖି ଜମି ଉପରେ କର ଧାର୍ଯ୍ୟ କରାଯାଉଥିଲା । ଯଦିଓ ଭିନ୍ନ ଭିନ୍ନ ପ୍ରକାରର ଫସଲ ଅମଳ ହେଉଥିଲା, ତେବେ ଦୁଇ ବା ତିନି ଫସଲି ଧାନ ଅମଳ ହେଲେ ଜମିକୁ ସ୍ୱାଭାବିକ ବୋଲି ଧରାଯାଉଥିଲା । ଉତ୍ପାଦନର ଏକତୃତୀୟାଂଶ ପର୍ଯ୍ୟନ୍ତ ଟିକସ ଧାର୍ଯ୍ୟ କରାଯାଉଥିଲା, ଯାହା ଯେକୌଣସି ମାନ ଅନୁସାରେ ଢେର୍ ଅଧିକ ଥିଲା । ସ୍ଥଳବିଶେଷରେ ରାଜାଙ୍କ ଅନୁମୋଦନ କ୍ରମେ କେତେକ ବିଶେଷ ପରିସ୍ଥିତିରେ କର ଛାଡ଼ ବା କମ୍ ମଧ୍ୟ କରାଯାଉଥିଲା ।

ଟିକସ ଉଦ୍ଦେଶ୍ୟରେ ଜମିର ସ୍ଥାୟୀ ଆକଳନ କରାଯାଉଥିଲା, ତେବେ ଏଥିରେ ନିୟମିତତା ନ ଥିଲା । ଆକଳନ ନିମନ୍ତେ ନିୟମିତ ବ୍ୟବଧାନରେ ଜମିର ସର୍ବେକ୍ଷଣ କରାଯିବା ଆବଶ୍ୟକ ଥିଲା । ଜମିକର ଏବଂ ତତ୍‌ସହିତ ସ୍ଥାନୀୟ ଦେ'ଣା ଇତ୍ୟାଦି ପରିଷଦ ବା ମନ୍ଦିର ଦ୍ୱାରା ଧାର୍ଯ୍ୟ କରାଯାଉଥିଲା । ନିଶ୍ଚିତରୂପେ, ଏଥିଯୋଗୁଁ କୃଷକମାନଙ୍କ ଉପରେ ପ୍ରବଳ ଚାପ ପଡ଼ିଥିବ, କାରଣ ଟିକସ ଦେବାପାଇଁ ଖୁବ୍ କମ୍ ବିକଳ୍ପ ଥିଲା । ତତ୍ତ୍ୱ ଦୃଷ୍ଟିକୋଣରୁ କୃଷକ କଷ୍ଟକର ପରିସ୍ଥିତିରେ କର ଛାଡ଼ କରିବା କିମ୍ବା ସେଥିରେ ରିହାତି ଦେବାଲାଗି ରାଜାଙ୍କ ନିକଟରେ ଆବେଦନ କରିଥିବ ଅଥବା ଆଉ ଏକ ଅଞ୍ଚଳକୁ ପଳାୟନ କରିଥିବ । ଶେଷୋକ୍ତ କଥାଟି ଏକ ଚରମ ପଦକ୍ଷେପ କାରଣ ଜମି ମିଳୁଥିଲେ ମଧ୍ୟ କୃଷକମାନଙ୍କ କ୍ଷେତ୍ରରେ ସ୍ଥାନାନ୍ତରଣ ଏକପ୍ରକାର ନିଷେଧ ଥିଲା । ଗୋଟିଏ ଏକକ ହିସାବରେ ଗାଁର ଆକଳନ କଲାବେଳେ କରଧାର୍ଯ୍ୟ ଲାଗି ଅଯୋଗ୍ୟ ଜମିର ଦେ'ଣା ଗ୍ରାମର ସମଗ୍ର ରାଜସ୍ୱରୁ କାଟି ଦିଆଯାଉଥିଲା । କରଧାର୍ଯ୍ୟ ପାଇଁ ଅଯୋଗ୍ୟ ଜମି ଥିଲା ବାସସ୍ଥାନ ସମ୍ବଳିତ ଅଞ୍ଚଳ, ମନ୍ଦିର, ପୁଷ୍କରିଣୀ, ଜଳସେଚନ ଲାଗି ଉଦ୍ଦିଷ୍ଟ କେନାଲ, କାରିଗର ଏବଂ ଜାତିଚ୍ୟୁତ ଲୋକମାନଙ୍କର ଆବାସସ୍ଥଳୀ ତଥା ଶ୍ମଶାନ ।

କର୍ଣ୍ଣାଟକର ହୟଶାଳ ସାମ୍ରାଜ୍ୟରେ ଗ୍ରାମାଞ୍ଚଳର ଭୂମି ଅଧିକାରୀମାନେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ଭାବେ ପରିଗଣିତ ହେଉଥିଲେ । ସେମାନଙ୍କୁ ଗଭୁଣ୍ଡା/ଗୌଡ଼ ଏବଂ ହେଗ୍‌ଡ଼େ ବୋଲି କୁହାଯାଉଥିଲା । ଗ୍ରାମାଞ୍ଚଳରେ ଜମି କିଣାବିକା, ଜଳସେଚନ ପରିଚାଳନା, କର ଆଦାୟ ଏବଂ ଗ୍ରାମ ପରିଷଦର କାର୍ଯ୍ୟ ପରିପ୍ରେକ୍ଷୀରେ ଏମାନଙ୍କ ସମ୍ପର୍କରେ ଉଲ୍ଲେଖ ଅଛି । ଗଙ୍ଗମାନଙ୍କ ଅଭିଲେଖରେ ସେମାନଙ୍କ ସମ୍ପର୍କରେ ସୂଚନା ଦିଆଯାଇଛି, ଯେଉଁଥିରେ ସେମାନେ ପରିବାର ତଥା ମୂଳ ବାସିନ୍ଦାମାନଙ୍କର ମୁଖ୍ୟ ଥିଲେ ବୋଲି କୁହାଯାଇଛି । ସେମାନଙ୍କର ସ୍ଥିତି ଏବଂ ମାନ୍ୟତା ସେମାନଙ୍କ ନାମ ପୂର୍ବବର୍ତ୍ତୀ ଶବ୍ଦରୁ ସୂଚିତ ହୁଏ । ଉଦାହରଣ ସ୍ୱରୂପ,

ପ୍ରଜା ଗଭୁଣ୍ଡା ଯାହାର ଆକ୍ଷରିକ ଅର୍ଥ ହେଲା ସାଧାରଣ ଜନତାଙ୍କର ଗଭୁଣ୍ଡା । ଏମାନଙ୍କର ଅର୍ଥନୈତିକ ଏବଂ ସାମାଜିକ ମାନ୍ୟତା ବିତ୍ତବାନ୍ ପ୍ରଭୁ-ଗଭୁଣ୍ଡା (ଆକ୍ଷରିକ ଅର୍ଥରେ ପ୍ରଭୁ)ମାନଙ୍କଠାରୁ ଯଥେଷ୍ଟ କମ୍ ଥିଲା । ସେମାନଙ୍କର ସଂଖ୍ୟା ଭିନ୍ନ ଭିନ୍ନ ଥିଲା ଏବଂ ତାହା ସେମାନଙ୍କର ଦ୍ୱୈତ ଭୂମିକା – ଗ୍ରାମର ପ୍ରତିନିଧି ଏବଂ ରାଜ୍ୟ ଦ୍ୱାରା ନିଯୁକ୍ତି ପ୍ରାପ୍ତ ବ୍ୟକ୍ତି । ଆବଶ୍ୟକବେଳେ ସୈନ୍ୟ ସଂଗ୍ରହ କରିବା ଭଳି କେତେକ ନ୍ୟାୟପାଳିକା ସୁଲଭ କାର୍ଯ୍ୟ ମଧ୍ୟ ସେମାନଙ୍କୁ କରିବାକୁ ପଡୁଥିଲା । ପ୍ରାରମ୍ଭିକ ପର୍ଯ୍ୟାୟରେ ବ୍ରାହ୍ମଣ ଏବଂ ପତିତ ଭୂମିକୁ ଚାଷୋପଯୋଗୀ କରିବା ସେମାନଙ୍କର କାର୍ଯ୍ୟଭୁକ୍ତ ଥିଲା । ଏଥିପାଇଁ ଜଳସେଚନ ଉଦ୍ଦେଶ୍ୟରେ ଟାଙ୍କି ନିର୍ମାଣ ଏବଂ ତା'ର ରକ୍ଷଣାବେକ୍ଷଣ ମଧ୍ୟ ଆବଶ୍ୟକ ଥିଲା । ବନବାସୀମାନେ କୃଷି ବୃତ୍ତି ଆଦରିନେବା ଏବଂ ଦଶମ ଶତାବ୍ଦୀର ଅଭିଯାନ ପରେ ତାମିଲ ଅଞ୍ଚଳର କୃଷକମାନେ ଦେଶାନ୍ତରିତ ହୋଇ ଆସିବା ଫଳରେ କୃଷକମାନଙ୍କର ସଂଖ୍ୟା ବୃଦ୍ଧି ଘଟିଲା ।

ଭୂମି ଅଧିକାରୀମାନଙ୍କର ମାନ୍ୟତାର ବିକାଶ ଏକ ସାଧାରଣ ଢାଞ୍ଚା ଅନୁସାରେ ହେଉଥିଲା । ମଧ୍ୟସ୍ଥ ଭୂମି ଅଧିକାରୀମାନେ ଏବଂ ସାମନ୍ତମାନେ କୃଷି ବିସ୍ତାର ଏବଂ ଜଳସେଚନ ଉଦ୍ଦେଶ୍ୟରେ ଗଠିତ ଟାଙ୍କି ମାଧ୍ୟମରେ ନିକଟବର୍ତ୍ତୀ ଅଞ୍ଚଳର ପରିବେଶରେ ପରିବର୍ତ୍ତନ ଆଣୁଥିଲେ । ବେଳେବେଳେ ଗ୍ରାମର ସୁରକ୍ଷା ପାଇଁ ଜୀବନ ଦେଇଥିବା ଜଣେ ବୀରର ପରିବାରକୁ ଜମି ଅନୁଦାନ ଦିଆଯାଉଥିଲା । ସ୍ଥାନୀୟ ଅଞ୍ଚଳରେ ନିଜର କୁଳଦେବତାଙ୍କର ପ୍ରତିଷ୍ଠା ମାଧ୍ୟମରେ ଭୂମି ଅଧିକାରୀଙ୍କର ଅସ୍ମିତା ଆହୁରି ଗୌରବ ମଣ୍ଡିତ ହେଉଥିଲା । ଏହା ଥିଲା ପୌରାଣିକ ହିନ୍ଦୁ ଧର୍ମରେ ନୂତନ ଦେବତାମାନଙ୍କର ପ୍ରଚଳନ ଏବଂ ହିନ୍ଦୁ ଦେବତାମାନଙ୍କର ପ୍ରତିଷ୍ଠା । ଏହା କେବଳ ମାତ୍ର ଏକ ଧାର୍ମିକ କାର୍ଯ୍ୟ ନ ଥିଲା । ଏହାକୁ ଭୁଲ୍ କ୍ରମେ କର୍ମକାଣ୍ଡୀୟ ସାର୍ବଭୌମତା ବୋଲି ବୁଝିବା ମଧ୍ୟ ଅନୁଚିତ । ଏହା ଜମି ଅନୁଦାନ ସହିତ ସଂଯୁକ୍ତ ଥିଲା ଏବଂ ପ୍ରଶାସନିକ ଅଧିକାରର ହସ୍ତକ୍ଷେପ ତଥା ଅସ୍ମିତା ଦୃଷ୍ଟିକୋଣରୁ ସମାନ ଭାବେ ଗୁରୁତ୍ୱପୂର୍ଣ୍ଣ ଥିଲା । ବ୍ରାହ୍ମଣ ବସତି ସ୍ଥାପନ ଏବଂ ଅଗ୍ରହାର ସୃଷ୍ଟି ଫଳରେ ଦୃଶ୍ୟପଟରେ ପୁଣି ପରିବର୍ତ୍ତନ ଆସିଲା । କଦବା କେମିତି ଅବସ୍ଥାପିତ ବ୍ରାହ୍ମଣ ଏବଂ କୃଷିକାରୀଙ୍କ ମଧ୍ୟରେ କିଛିଟା ଦ୍ୱନ୍ଦ୍ୱ ଉପୁଜୁଥିଲା ଏବଂ ରାଜସ୍ୱ ଆଦାୟର ରୂପରେଖ ନିର୍ଣ୍ଣୟ କରିଦିଆଯାଉଥିଲା । ଉପଦ୍ୱୀପରେ କୃଷକମାନଙ୍କ ପ୍ରତିରୋଧ ସମ୍ପର୍କରେ ତ୍ରୟୋଦଶ ଶତାବ୍ଦୀରୁ ସୂଚନା ମିଳିଥାଏ । ଅବଶ୍ୟ ସ୍ଥଳବିଶେଷରେ ଏହା ପଛରେ ଧାର୍ମିକ କାରଣ ରହୁଥିଲା । ରାଜ୍ୟ ପ୍ରଶାସନ ଏବଂ ସ୍ଥାନୀୟ ଭୂମି ଅଧିକାରୀଙ୍କ କ୍ଷମତା ମଧ୍ୟରେ ସନ୍ତୁଳନ ସହ ରାଜକୀୟ କ୍ଷମତାର ସହାୟତା ଲାଗି କୃଷିର ଆବଶ୍ୟକତା ତତ୍‌କାଳୀନ ରାଜ୍ୟଗୁଡ଼ିକର ଗୁଣବତ୍ତାରେ ପରିଣତ ହୋଇଥିଲା ।

ୱାରଙ୍ଗଲ (ଆନ୍ଧ୍ରପ୍ରଦେଶ) ଭଳି ଯେଉଁ ଅଞ୍ଚଳରେ ଜମି କମ୍ ଉର୍ବର ଥିଲା, ସେ କ୍ଷେତ୍ରରେ କୃଷିର ବିସ୍ତାର ଲାଗି ପତିତ ଜମିର ସଫେଇ ଓ ସରୋବର ତଥା କେନାଲ ଖନନରେ ବହୁତ ଅର୍ଥ ବିନିଯୋଗ କରିବାକୁ ପଡୁଥିଲା । ପରିତ୍ୟକ୍ତ ଗ୍ରାମଗୁଡ଼ିକୁ କାକତୀୟ ଶାସକମାନେ ପୁଣି ଦାବି କରୁଥିଲେ; ଜଙ୍ଗଲର ଜବରଦଖଲ ବା ଉପନିବେଶୀକରଣ ମାଧ୍ୟମରେ ନୂତନ ଗ୍ରାମମାନ ପ୍ରତିଷ୍ଠା କରାଯାଉଥିଲା । କାକତୀୟ ତଥା ସେମାନଙ୍କର କରଦ ଶାସକମାନେ ବିଶେଷ ଭାବରେ ବ୍ରାହ୍ମଣମାନଙ୍କୁ ଜମି ଅନୁଦାନ ଦେଇ ଏହାକୁ ସକ୍ରିୟ ଭାବେ ଉତ୍ସାହିତ କରୁଥିଲେ ।

ଏହାର ବିରୋଧାଭାସ ରୂପେ କେରଳରେ ଉର୍ବର ତଥା ଆର୍ଦ୍ର ଭୂମିରେ ବସତି ସ୍ଥାପିତ ହେଉଥିଲା । ପ୍ରଥମ ସହସ୍ରାବ୍ଦୀର ଆଦ୍ୟଭାଗର ବତିଶଟି ବ୍ରାହ୍ମଣ ବସତି ଏହି ସମୟ ବେଳକୁ ବୃଦ୍ଧି ପାଇଥିଲା । ଶାସକ ଏବଂ ବ୍ରାହ୍ମଣମାନଙ୍କ ମଧ୍ୟରେ ସମ୍ପର୍କ କାରଣରୁ ବହୁଳ ସଂଖ୍ୟକ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା । ପ୍ରତ୍ୟେକ ମନ୍ଦିରର ନିୟନ୍ତ୍ରଣରେ ଆଖିଦୃଶିଆ ପରିମାଣର ଜମି ଥିଲା । କେତେକ କ୍ଷେତ୍ରରେ ଦୁଇ ପ୍ରକାରର ବ୍ରାହ୍ମଣଙ୍କ ମଧ୍ୟରେ ପ୍ରଭେଦ ସ୍ପଷ୍ଟ ହୋଇଥିଲା । ବୈଦିକ ବ୍ରାହ୍ମଣମାନେ ପୂର୍ବବର୍ତ୍ତୀ ଅନୁଦାନ ମୁତାବକ ଜମିର ଅଧିକାରୀ ହୋଇଥିବାବେଳେ, ପୂଜାରୀମାନେ ମନ୍ଦିରରେ କାର୍ଯ୍ୟ କରି ଅର୍ଥ ଉପାର୍ଜନ କରୁଥିଲେ । ବଣିକ ତଥା ପ୍ରଶାସକମାନଙ୍କ ଭଳି ଅବ୍ରାହ୍ମଣ ବିତ୍ତବାନ ବ୍ୟକ୍ତିମାନେ ମନ୍ଦିର ପରିଚାଳନା କରୁଥିଲେ । ମନ୍ଦିରର ଜମି ଚାଷ କରୁଥିବା ରୟତମାନେ କିଛିଟା ଆଧିପତ୍ୟ ପ୍ରଦର୍ଶନ କରୁଥିଲେ । ଏଥିସହିତ ମନ୍ଦିର ଦ୍ୱାରା ନିଯୁକ୍ତ କାରିଗରମାନେ ସମାନ୍ତରାଳ ଭାବେ ଅବସ୍ଥାନ କରୁଥିଲେ । ବ୍ରାହ୍ମଣ ତଥା ସମ୍ଭ୍ରାନ୍ତ ମାନ୍ୟତା ଦାବି କରୁଥିବା ନାୟାର୍ ଜାତିର ଲୋକମାନଙ୍କ ଭିତରେ ଥିବା ସମ୍ବନ୍ଧ ମାଧ୍ୟମରେ ବିଭିନ୍ନ ସ୍ତରର କୃଷିଭିତ୍ତିକ କାର୍ଯ୍ୟ ନିୟନ୍ତ୍ରିତ ହେଉଥିଲା । ମନ୍ଦିରର ସମ୍ପତ୍ତି ଏତେ ବେଶି ଥିଲା ଯେ ବିପଦ ସମୟରେ ସାମରିକ ସହାୟତା ପାଇବା ପାଇଁ କେତେକ ମନ୍ଦିର ତରଫରୁ ସମରକଳା ବିଶାରଦମାନଙ୍କୁ ନିଯୁକ୍ତି ଦିଆଯାଉଥିଲା । ଉଭୟ ଗ୍ରାମ ପରିଷଦ ଏବଂ ପରିଚାଳନା ସମିତି ଉପରେ ମନ୍ଦିର ନିୟନ୍ତ୍ରଣ ଦୃଢ଼ ଥିଲା; ବିଶେଷକରି ରୟତ ଏବଂ କାରିଗରମାନଙ୍କର କାର୍ଯ୍ୟ ପର୍ଯ୍ୟବେକ୍ଷଣ ସମୟରେ ଏହା ସୁସ୍ପଷ୍ଟ ହେଉଥିଲା ।

ସ୍ଥାନୀୟ ସାମରିକ ବ୍ୟକ୍ତିତ୍ୱମାନଙ୍କ ସମ୍ପର୍କରେ ଏବେ ବେଶି ବେଶି ସୂଚନା ମିଳିଲା ଏବଂ ‘ବୀରବଲ’ ବା ବୀର-ପ୍ରସ୍ତରଗୁଡ଼ିକର ସଂଖ୍ୟା ମଧ୍ୟ ବଢ଼ି ବଢ଼ି ଚାଲିଲା । କେତେକ କ୍ଷେତ୍ରରେ ଛୋଟ ଦେବାଳୟର ଅନୁକୃତି ନିର୍ମାଣ ହେଲା ଏବଂ ସ୍ଥାପତ୍ୟ ନିର୍ମାଣକାରୀ ଗୋଷ୍ଠୀ କ୍ରମେ ଅଧିକରୁ ଅଧିକ ପେଷାଦାର ହୋଇଉଠିଲେ । ସେମାନଙ୍କ ପ୍ରତି ସମାଦର

ବୀରମାନଙ୍କର ମାନ୍ୟତାକୁ ଫିକା କରିଦେଲା । କେତେକ କ୍ଷେତ୍ରରେ ବୀର ଯଦି ଭୂମି ଅଧିକାରୀ ପରିବାରର କିମ୍ବା ତାଙ୍କର ଆତ୍ମୀୟସ୍ୱଜନ, ତେବେ ସେ ଉଚ୍ଚ ମାନ୍ୟତାର ଅଧିକାରୀ ହୋଇପାରୁଥିଲେ । ପୂର୍ବୋକ୍ତ କ୍ଷେତ୍ରରେ ତାଙ୍କର ଆତ୍ମୀୟ ସ୍ୱଜନଙ୍କର ରାଜନୈତିକ କ୍ଷମତା ଅଭୀପ୍ସା ଉଭୟ ଭୂମି ଅଧିକାରୀର ମାନ୍ୟତା ଏବଂ ମୃତ ବୀର ସହ ସମ୍ବନ୍ଧ ଦିଗରୁ ସମର୍ଥନ ଲାଭ କରୁଥିଲା । ଏହି ବୀର ପରମ୍ପରା କ୍ରମେ ଆହୁରି ବ୍ୟାପକ ହେଲା । ବିଶ୍ୱାସ କରାଗଲା ଯେ ଜଣେ ବୀର ମୃତ୍ୟୁବରଣ କଲାପରେ ସ୍ୱାଭାବିକଭାବେ ସ୍ୱର୍ଗକୁ ଯିବେ ଏବଂ ଯଦି ତାଙ୍କର ପତ୍ନୀ ସତୀ ହୁଅନ୍ତି, ତେବେ ସେ ମଧ୍ୟ ଦେବୀରେ ପରିଣତ ହେବେ । ଏ ଧରଣର କାର୍ଯ୍ୟ ମାଧ୍ୟମରେ ଜଣେ ବ୍ୟକ୍ତି ଯାହା ହାସଲ କରେ ତା' ଉପରେ ବ୍ୟାପକ ଗୁରୁତ୍ୱ ଦିଆଗଲା । କେତେକ କ୍ଷେତ୍ରରେ ଏହା ଗ୍ରାମଗୁଡ଼ିକର ସ୍ୱାବଲମ୍ବନଶୀଳତାକୁ ଦର୍ଶାଇଲା । ଉପକୂଳ ଅଞ୍ଚଳର ସ୍ମାରକୀଗୁଡ଼ିକରେ ସମୁଦ୍ରପଥରୁ ବା ସମୁଦ୍ରରେ ଆକ୍ରମଣର ପ୍ରତିରୋଧର ବିବରଣୀ ରହିଥିଲା । ଘଟଣାକ୍ରମେ ବୀରପ୍ରସ୍ତରଗୁଡ଼ିକରେ ଥିବା ଜାହାଜ ବିଷୟକ ସୂଚନା ଜାହାଜ ନିର୍ମାଣର ବୈଷୟିକ କୌଶଳ ସମ୍ବନ୍ଧରେ ଆଭାସ ଦିଏ । ପୂର୍ବବର୍ତ୍ତୀ କାଳର ଭାସ୍କର୍ଯ୍ୟ ତୁଳନାରେ ଏହି ସମୟରେ ଅଧିକ ବିକାଶ ହୋଇଥିଲା । ତେଣୁ ଏ କାଳର ବୀର-ପ୍ରସ୍ତରଗୁଡ଼ିକୁ ସ୍ଥାନୀୟ ସ୍ତରରେ କ୍ଷମତାର ଢାଞ୍ଚା ଉପରେ ଏକ ବିବରଣୀ ଆକାରରେ ଦେଖିହେବ । ଯେଉଁ କ୍ଷେତ୍ରରେ ରାଜ୍ୟ ତରଫରୁ କୌଣସି ସୂଚନା ଉପଲବ୍ଧ ନୁହେଁ ବା ସୂଚନା ପ୍ରଦାନକୁ ଅଦରକାରୀ ମନେକରାଯାଇଛି, ସେ କ୍ଷେତ୍ରରେ ଏହା ବେଶ୍ ଉପଯୋଗୀ ସାବ୍ୟସ୍ତ ହୁଏ ।

ସମ୍ପଦ ଠୁଳ କରିବାର ପ୍ରବଣତା ଗ୍ରାମ୍ୟ ଜୀବନର ଲକ୍ଷଣ ନ ଥିଲା । କେତେକ ବିତ୍ତବାନ୍ ଗ୍ରାମକୁ ବାଦ୍ ଦେଲେ ଅଧିକାଂଶ ଗ୍ରାମର ଲୋକମାନଙ୍କ ପାଖରେ ଠୁଳ କରିବାଲାଗି ବିଶେଷ ସମ୍ପତ୍ତି ନ ଥିଲା । ଯାହା ହାରାହାରି ଉତ୍ପାଦନ ହେଉଥିଲା ସେଥିରେ ପରିବାରର ଖାଇବା ପିନ୍ଧିବା ଖର୍ଚ୍ଚ ଚଳିବା ପରେ ପ୍ରାୟ କିଛି ବଳୁ ନ ଥିଲା । ଖାଦ୍ୟ ବେଶ୍ ସରଳ ଥିଲା; ଯଥା- ଭାତ, ପନିପରିବା ଇତ୍ୟାଦି । କିନ୍ତୁ ଜାତି ଅନୁସାରେ ଖାଦ୍ୟରେ ପରିବର୍ତ୍ତନ ସମ୍ଭବ ହେଉଥିଲା । ଏକଦା ମାଂସ ଭକ୍ଷଣ କରୁଥିବା ବ୍ରାହ୍ମଣମାନେ ଏବେ ସାଧାରଣଭାବେ ନିରାମିଷାଶୀରେ ପରିଣତ ହୋଇଯାଇଥିଲେ । କେତେକ ଉଚ୍ଚ ଜାତିରେ ଆମିଷ ଭକ୍ଷଣ ପ୍ରଥାସିଦ୍ଧ ହୋଇଯାଇଥିଲା । ପଇସା ଖର୍ଚ୍ଚ କରିବାକୁ ସାମର୍ଥ୍ୟ ଥିଲେ, ଅନ୍ୟମାନେ ସବୁ ପ୍ରକାରର ମାଂସ ଭକ୍ଷଣ କରିପାରୁଥିଲେ । ଘର ତିଆରି ଶସ୍ତା ଥିଲା, କାରଣ ଜଳବାୟୁ ଏପରି ଥିଲା ଯେ ବଡ଼ ଘର କରି ହେଉ ନ ଥିଲା । ଅବଶ୍ୟ ଧନୀ ଲୋକମାନେ ଉତ୍ତମଭାବେ ନିର୍ମିତ ଘରେ ବାସ କରୁଥିଲେ । ଗ୍ରାମ୍ୟ ସମାଜର ଧନୀ ସଦସ୍ୟମାନେ ଜମି ଉପରେ ପୁନଃ

ଅଧିକାର ସାବ୍ୟସ୍ତ, ଜଳସେଚନରେ ଉନ୍ନତି କିମ୍ବା ବ୍ୟବସାୟ ଭଳି ଅର୍ଥନୈତିକ ଦିଗରୁ ଉପଯୋଗୀ ଯୋଜନାରେ ଅର୍ଥ ବିନିଯୋଗ କରୁଥିଲେ । ମନ୍ଦିର ନିର୍ମାଣ ପାଇଁ କିମ୍ବା ମଠ ପାଇଁ ଅର୍ଥ ଦାନ ଏକ ଧାର୍ମିକ କାର୍ଯ୍ୟ ଭାବେ ବିବେଚିତ ହେଉଥିଲା । ସମ୍ପଦକୁ ଏଭଳି ବାବଦରେ ଖର୍ଚ୍ଚ କରାଯାଉଥିଲା, ଯେଉଁ ବାଟରେ ମାଲିକର ମର୍ଯ୍ୟାଦା ବଢ଼ିବ ।

## ସହର ଏବଂ ବଜାର

ନଗର କେନ୍ଦ୍ରଗୁଡ଼ିକର ମୁଖ୍ୟ ସ୍ଥାନଗୁଡ଼ିକ ସାଧାରଣତଃ ଗ୍ରାମାଞ୍ଚଳର ବିନିମୟ କେନ୍ଦ୍ରଗୁଡ଼ିକୁ ଆଧାର କରି ଗଢ଼ିଉଠିଥିଲା । ସେଠାକୁ ସ୍ଥାନୀୟ ଉତ୍ପାଦିତ ଦ୍ରବ୍ୟମାନ ଅଣାଯାଉଥିଲା । ପ୍ରଶାସନିକ କେନ୍ଦ୍ର ଏବଂ ତୀର୍ଥସ୍ଥଳୀଗୁଡ଼ିକରେ ବିପୁଳ ଜନଗହଳି ହେଉଥିଲା । ନିୟମିତ ଭାବେ ମେଳା ବା ପର୍ବ ଅନୁଷ୍ଠିତ ହେଉଥିବା ସ୍ଥାନଗୁଡ଼ିକରେ ପଣ୍ୟଦ୍ରବ୍ୟ ବିନିମୟ କରାଯାଉଥିଲା । ଗ୍ରାମ୍ୟ ବଜାରକୁ ସର୍ଦ୍ଦାର ଏବଂ ପ୍ରଶାସକମାନେ ରାଜସ୍ୱର ଉତ୍ସ ମନେ କରୁଥିଲେ । ନିୟମିତ ନିରୀକ୍ଷଣ ଗସ୍ତର ଏକ ଅଙ୍ଗ ଥିଲା ସାମରିକ ଶିବିର । ଯଦି ଗୋଟିଏ ସ୍ଥାନରେ ବର୍ଷ ପରେ ବର୍ଷ ଏକାପ୍ରକାରର କାର୍ଯ୍ୟକଳାପ ଚାଲୁଥିଲା ତେବେ ତାହା ସହରର ଏକ ପୂର୍ବ ରୂପ ଆକାରରେ ପ୍ରତୀୟମିତ ହେଉଥିଲା । ଦଶମ ଶତାବ୍ଦୀର ପୂର୍ବରୁ ଅବସ୍ଥିତ ସହରଗୁଡ଼ିକ ଏ ସମୟରେ ସଂଘଟିତ ବାଣିଜ୍ୟ ବିସ୍ତାରର ପରିଣତି ଥିଲା । କର୍ଣ୍ଣାଟକ ଏବଂ ତାମିଲନାଡୁରେ ସହରକୁ ପଟ୍ଟନମ୍ କୁହାଯାଉଥିଲା । ତାହା ବାଣିଜ୍ୟକେନ୍ଦ୍ର ଏବଂ ନୌଚଳାଚଳ ସହ ଜଡ଼ିତ ଥିଲା । କେତେକ କ୍ଷେତ୍ରର ପ୍ରମୁଖ ବୃତ୍ତିଟି କ'ଣ ତାହା ନାମରୁ ଜଣାପଡ଼ିଯାଉଥିଲା ଯେପରି ବଣିକମାନଙ୍କ ସହରର ନାମ ବନଜୁପାଟ୍ଟଣା । ଏହା ପୂର୍ବରୁ ଉକ୍ତ ସ୍ଥାନଗୁଡ଼ିକ ସ୍ଥାନୀୟ ପ୍ରଶାସନ ବା ତୀର୍ଥସ୍ଥଳୀ ରୂପେ ପରିଚିତ ଥିଲେ । ଉଦାହରଣ ସ୍ୱରୂପ, ସପ୍ତମ ଶତାବ୍ଦୀରେ ଶ୍ରବଣବେଲ୍‌ଗୋଲା ଏକ ତୀର୍ଥକେନ୍ଦ୍ର ରୂପେ ପରିଚିତ ଥିଲା ଏବଂ ଦ୍ୱାଦଶ ଶତାବ୍ଦୀ ବେଳକୁ ଏହା ବଣିକମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ବସତି ହୋଇଉଠିଲା ଯେଉଁଠି କତିପୟ ଜୈନ ବସତି ମଧ୍ୟ ଥିଲା । ବାଣିଜ୍ୟ ପ୍ରତିଷ୍ଠାନ ଏବଂ ବଣିକମାନେ ପ୍ରାୟତଃ ଗ୍ରାମ୍ୟ ବିନିମୟ କେନ୍ଦ୍ର ବା ପ୍ରଶାସନରୁ ନିଜର କାର୍ଯ୍ୟ ଆରମ୍ଭ କରୁଥିଲେ ।

ଉତ୍ତର ଚାଲୁକ୍ୟମାନଙ୍କ କ୍ଷେତ୍ରରେ ସମାନ୍ତରାଳ ପ୍ରକ୍ରିୟା ଘଟିଲା । ବଣିକ ଏବଂ ଧନୀ ଭୂମିଅଧିକାରୀମାନେ ନଗରର ପ୍ରଶାସନ ଉପରେ ଆଧିପତ୍ୟ ଜାହିର୍ କଲେ । ସ୍ଥଳବିଶେଷରେ ସାପ୍ତାହିକ ଗ୍ରାମ ବଜାର ସହର ରୂପେ ବିକଶିତ ହେଲା । କେତେକ ଘଟଣାରେ ଗଭୁଣ୍ଡା ଏବଂ ହେଗ୍‌ଡ଼େମାନେ ନଗର ଉପରେ ଆଧିପତ୍ୟ ହାସଲ କ[illegible] । ଉପମହାଦେଶର

ଅନେକ ଗାଁରେ ବ୍ୟାପକ ଭାବେ ପରିଚିତ ଏକ ପଦ ହେଲା ମହାଜନ । ମହାଜନ କହିଲେ ଧନୀ ବ୍ରାହ୍ମଣମାନଙ୍କୁ ବୁଝାଉଥିଲା, ଯେଉଁମାନେ ଭୂମି ଅଧିକାରୀ ହିସାବରେ ଏକ ଧର୍ମନିରପେକ୍ଷ ଭୂମିକା ତୁଲାଉଥିଲେ । ବସ୍ତୁତଃ ସେମାନେ ବାଣିଜ୍ୟ ଏବଂ ନଗରର ପ୍ରଶାସନ ସହ ମଧ୍ୟ ଜଡ଼ିତ ଥିଲେ । ଯେଉଁମାନେ ନଗର ପ୍ରଶାସନର ଉପର ସ୍ତରରେ କାର୍ଯ୍ୟ କରୁଥିଲେ, ସେମାନେ ଭୂମି ଅଧିକାରୀମାନଙ୍କଠାରୁ ଆଦାୟ କରାଯାଉଥିବା ଶୁଳ୍କର କିଛି ଅଂଶ ରଖିବାକୁ ଅନୁମତି ପ୍ରାପ୍ତ ହେଉଥିଲେ । ସହରଗୁଡ଼ିକର ପରିବର୍ତ୍ତନରେ ଅନିଶ୍ଚିତତା ଲାଗି ରହିଥିଲା; ମାତ୍ର ଦଶମ ଶତାବ୍ଦୀ ବେଳକୁ ପୂର୍ବାନୁମାନ ମୁତାବକ ଅଭିବୃଦ୍ଧି ସାଧିତ ହେଲା ।

ବିପଣନ କେନ୍ଦ୍ର ବା ନଗରମ୍‌ଠାରେ ବଣିକମାନେ ଏକାଠି ହେଉଥିଲେ; ସେଠାରେ ସେ ଅଞ୍ଚଳର ଉତ୍ପାଦିତ ଦ୍ରବ୍ୟ ବିନିମୟ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା ଏବଂ ତା'ର ମନ୍ଦିର ସହ ମଧ୍ୟ ଯୋଗସୂତ୍ର ରହିଥିଲା । 'ନଗରତ୍ତର' ଦ୍ୱାରା ଏହା ପ୍ରଶାସିତ ହେଉଥିଲା ଏବଂ ଦରିଆପାରି ବ୍ୟବସାୟରୁ ହୋଇଥିବା ଲାଭ ଉପରେ ଟିକସ ଧାର୍ଯ୍ୟ କରାଯାଉଥିଲା । ବଣିକ ତଥା ବଣିକଶ୍ରେଣୀଗୁଡ଼ିକ ମାହାସୁଲ୍ ତଥା ଶୁଳ୍କ ପ୍ରଦାନ କରୁଥିଲେ । ଏହି ଟିକସ ସମ୍ପର୍କରେ ଅଭିଲେଖରେ ବିଶଦ ବର୍ଣ୍ଣନା କରାଯାଇଛି ଏବଂ ସ୍ଥାନୀୟରୁ କେନ୍ଦ୍ରୀୟ ସ୍ତର ପର୍ଯ୍ୟନ୍ତ କରାଯାଉଥିବା ବିଭିନ୍ନ ସ୍ତରର ଟିକସ ସଂଗ୍ରହ ଉପରେ ମଧ୍ୟ ସୂଚନା ପ୍ରଦାନ କରାଯାଇଛି । କର୍ଣ୍ଣାଟକରୁ ମିଳିଥିବା ଅଭିଲେଖଗୁଡ଼ିକରେ ଘୋଡ଼ା ଆମଦାନୀ, ସୁନା ନିର୍ମିତ ଉପକରଣ, ବସ୍ତ୍ର ଏବଂ ଅତର, ଗୋଲମରିଚ, ଧାନ, ମସଲା, ପାନପତ୍ର, ତାଳପତ୍ର, ନଡ଼ିଆ ଏବଂ ଚିନି ଉପରେ ମାହାସୁଲ ଧାର୍ଯ୍ୟ କରାଯାଉଥିବା କଥା ଉଲ୍ଲେଖ ଅଛି । ଏହି ଉତ୍ପାଦିତ ଦ୍ରବ୍ୟଗୁଡ଼ିକ ଉପଦ୍ୱୀପର ବିଭିନ୍ନ ଅଞ୍ଚଳରୁ ଅଣାଯାଉଥିଲା । ତେଣୁ ଏହା କେବଳ ଏକ ଆଞ୍ଚଳିକ ବ୍ୟବସାୟଠାରୁ ଅଧିକ ଥିଲା । ଏକାଦଶ ଶତାବ୍ଦୀ ପରଠାରୁ ବ୍ୟବସାୟିକ ନିଗମଗୁଡ଼ିକ ନିର୍ଦ୍ଦିଷ୍ଟ ଭାବେ ଦୃଷ୍ଟିଗୋଚର ହେଲା । ଅମଲାତନ୍ତ୍ରରେ ଥିବା ଅନୁକ୍ରମ ସମ୍ପର୍କରେ ମଧ୍ୟ ଲିପିବଦ୍ଧ ହୋଇଛି । ଗ୍ରାମରୁ ନଗରକୁ ରୂପାନ୍ତର ହେଉଥିବାବେଳେ ସ୍ଥଳବିଶେଷରେ ସ୍ଥାନୀୟ ପ୍ରଶାସନ ଦ୍ୱାରା ଟିକସରେ ରିହାତି ପ୍ରବର୍ତ୍ତନ କରାଯାଇଛି; ମାତ୍ର ବଣିକରୁ ଲାଭ ହେଲାବେଳେ ମାହାସୁଲ, ଶୁଳ୍କ ଦେୟ ଇତ୍ୟାଦି ଲାଗୁ କରାଯାଇଛି ।

ଦରିଆପାରି ବାଣିଜ୍ୟ ଚୋଳମାନଙ୍କର ସାମର୍ଥ୍ୟ ଅନ୍ତର୍ଗତ ଥିଲା । ପୂର୍ବ ଉପକୂଳରେ ଅବସ୍ଥିତ ନାଗାପଟ୍ଟନମ୍, ମହାବଲ୍ଲୀପୁରମ୍, କାବେରୀପଟ୍ଟନମ୍, ସାଲିୟୁର ଏବଂ କୋର୍‌କୈ ଇତ୍ୟାଦି ସ୍ଥାନଗୁଡ଼ିକରେ ଦକ୍ଷିଣ ଭାରତରୁ ପୂର୍ବଏସିଆ ସହିତ ବ୍ୟବସାୟ ନିୟନ୍ତ୍ରଣ ଲାଗି ବ୍ୟାପକ ପ୍ରତିଷ୍ଠାନମାନ ରହିଥିଲା । ରାଜାଙ୍କ ନାମାନୁସାରେ ବିଶାଖାପଟ୍ଟନମ୍‌ର ନାମ ଦିଆଯାଇଥିଲା କୁଲତୁଙ୍ଗ ଚୋଳପଟ୍ଟନମ୍ । ଏକାଦଶ ଶତାବ୍ଦୀର ଆଦ୍ୟ ଭାଗରେ ଚୋଳ

ଦରବାରକୁ ଆଗମନ କରିଥିବା ଏକ କାମ୍ବୋଡ଼ୀୟ ପ୍ରତିନିଧି ଦଳ ମାଧ୍ୟମରେ ପୂର୍ବଏସିଆ ସହିତ ବାଣିଜ୍ୟ ପ୍ରକ୍ରିୟା ଉତ୍ସାହ ଲାଭ କଲା । ଏହି ଶତାବ୍ଦୀଗୁଡ଼ିକରେ ଚୀନ୍ ସହିତ ନୌବାଣିଜ୍ୟ ଅପ୍ରତ୍ୟାଶିତ ଭାବେ ବୃଦ୍ଧି ହେଲା । ଚୀନ୍‌ରେ ଏହା ରାଜ୍ୟର ଏକଚାଟିଆ କାରବାରରେ ପରିଣତ ହେଲା; ଚୀନା ସରକାର ଏଥିରୁ ମିଳୁଥିବା ଆୟ ହରାଇବାକୁ ପ୍ରସ୍ତୁତ ନ ଥିଲେ । ଚୀନ୍‌ର ସୁଂଗ୍ ଶାସନ କାଳର କେତେଗୁଡ଼ିଏ ସୂତ୍ରରୁ ଦକ୍ଷିଣ ଚୀନ୍‌ର ବନ୍ଦରଗୁଡ଼ିକରେ ଭାରତୀୟ ବଣିକମାନଙ୍କର ଉପସ୍ଥିତି ବିଷୟକ ସୂଚନା ମିଳେ । ବଣିଜ ବ୍ୟତିରେକେ ଭାରତୀୟ ଜ୍ୟୋତିଷଶାସ୍ତ୍ର ଏବଂ ରସାୟନ ବିଦ୍ୟାରେ ଚୀନା ବିଦ୍ୱାନମାନଙ୍କର ଆଗ୍ରହ ଜାରି ରହିଥିଲା ଏବଂ 'ଭାରତ ପରିଭ୍ରମଣ କଲେ ପଥର ଏବଂ ଧାତୁ ଇତ୍ୟାଦି ମୂଲ୍ୟହୀନ ଦ୍ରବ୍ୟଗୁଡ଼ିକ ମୂଲ୍ୟବାନ୍ ଦ୍ରବ୍ୟରେ ରୂପାନ୍ତରିତ ହୋଇଯାଏ' ଭଳି ଏକ ଅଦ୍ଭୁତ ଓ ଅତିରଞ୍ଜିତ କାହାଣୀ ଚୀନ୍‌ର ଅନେକ ପାଠରେ ସ୍ଥାନିତ ହୋଇଥିଲା ।

ମଧ୍ୟଏସିଆ ମଙ୍ଗୋଲମାନଙ୍କ ନିୟନ୍ତ୍ରଣାଧୀନ ଥିବାରୁ ଚୀନ୍‌ର ବାଣିଜ୍ୟ ଦ୍ରବ୍ୟ ଦକ୍ଷିଣ ଚୀନ୍‌ରୁ ପଶ୍ଚିମଏସିଆ ଏବଂ ୟୁରୋପକୁ ସମୁଦ୍ର ପଥରେ ବୋହି ନିଆଯାଉଥିଲା । ଦକ୍ଷିଣ ଭାରତ ଚୀନ୍‌କୁ ବସ୍ତ୍ର, ମସଲା, ଔଷଧୀୟ ବୃକ୍ଷ, ରତ୍ନ, ହାତୀଦାନ୍ତ, ଶିଙ୍ଗ, ଶିଶୁକାଠ ଏବଂ କର୍ପୂର ଇତ୍ୟାଦି ରପ୍ତାନି କରୁଥିଲା । ସମାନ ଧରଣର ପଣ୍ୟଦ୍ରବ୍ୟମାନ ଧୋଫର ଏବଂ ଅଡେନ ଇତ୍ୟାଦି ବନ୍ଦର ଦେଇ ପାଶ୍ଚାତ୍ୟକୁ ରପ୍ତାନୀ କରାଯାଉଥିଲା । ଏଥିସହିତ ସିରାଫକୁ ମଧ୍ୟ ଜାହାଜ ମାଧ୍ୟମରେ ମୂଲ୍ୟବାନ କାଠ, ଅତର, ଚନ୍ଦନକାଠ ଏବଂ ମସଲା ଇତ୍ୟାଦି ପଠାଯାଉଥିଲା । ଏହି ବ୍ୟବସାୟର ଲକ୍ଷ୍ୟସ୍ଥଳ ଥିଲା ପାରସ୍ୟ, ଆରବ ଏବଂ ଇଜିପ୍ଟ । ସେହି ଦେଶମାନଙ୍କ ମାଧ୍ୟମରେ ପାଶ୍ଚାତ୍ୟ ଦେଶମାନଙ୍କ ସହ ବାଣିଜ୍ୟ ସମ୍ଭବ ହେଉଥିଲା । ପାରସ୍ୟ ଉପସାଗରରେ ଥିବା ସିରାଫ ଏ କ୍ଷେତ୍ରରେ ଏକ ଗୋଦାମର ଭୂମିକା ତୁଲାଉଥିଲା । ଆରବ ସାଗର ସେପାରିର କାଇରୋ ତଥା ଆଲେକ୍‌ଜାଣ୍ଡ୍ରିଆ ମଧ୍ୟ ଏହି ବାଣିଜ୍ୟ ସହ ସଂଶ୍ଳିଷ୍ଟ ଥିଲେ । ମାଲବାର ଉପକୂଳର କୁଇଲନ୍ ଚେରମାନଙ୍କର ପାଶ୍ଚାତ୍ୟ ସହ ବାଣିଜ୍ୟ ପାଇଁ ଏକ ମାର୍ଗ ରୂପେ ସହାୟକ ହୋଇଥିଲା ।

ଅନ୍ୟମାନଙ୍କ ପରି ଭାରତ ପରିଦର୍ଶନରେ ଆସିଥିଲେ ବୋଲି ଦାବି କରିଥିବା ମାର୍କୋପୋଲୋ ବ୍ୟାପକ ଘୋଡ଼ା ବ୍ୟବସାୟ ଚାଲିଥିବା ସମ୍ପର୍କରେ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଏହାଫଳରେ ଆରବର ଓ ଦକ୍ଷିଣ ଭାରତର ବ୍ୟବସାୟୀମାନଙ୍କର ଭାଗ୍ୟ ଖୋଲିଗଲା । ଉଭୟ ଗୋଷ୍ଠୀର ଘୋଡ଼ା ଆମଦାନୀ କ୍ଷେତ୍ରରେ ଏକାଧିପତ୍ୟ ଥିଲା । ବହୁବିଧ କାରଣରୁ ଭାରତରେ ଜାତିଆ ଘୋଡ଼ା ପ୍ରଜନନ ସମ୍ଭବ ହୋଇପାରୁ ନ ଥିଲା । ଜଳବାୟୁ, ମୃତ୍ତିକାର ଅବସ୍ଥା ଏବଂ ପ୍ରାକୃତିକ ପରିବେଷ୍ଟନୀ ହୁଏତ ଏଥିଲାଗି କାରଣ ହୋଇଥିବ । ତେଣୁ ଏହି

ସର୍ବୋଚ୍ଚ ବ୍ୟୟବହୁଳ ପଣ୍ୟଦ୍ରବ୍ୟକୁ ସବୁ ସମୟରେ ଆମଦାନୀ କରାଯାଉଥିଲା । ମାର୍କୋପୋଲୋ ଲେଖିଛନ୍ତି :

*''ମୁଁ କହିବାକୁ ଚାହେଁ ଯେ ଏ ଦେଶରେ ଘୋଡ଼ା ପ୍ରଜନନ କରାଯାଏ ନାହିଁ । ତେଣୁ ସମଗ୍ର ବର୍ଷର ରାଜସ୍ୱ କିମ୍ବା ତା'ର ସିଂହଭାଗ ଘୋଡ଼ା କିଣିବାରେ ଖର୍ଚ୍ଚ ହୋଇଯାଏ ଏବଂ ଏହା କିପରି ହୁଏ ତାହା ମଧ୍ୟ ମୁଁ ଆପଣମାନଙ୍କୁ କହିବି । ଆପଣମାନେ ଜାଣିରଖନ୍ତୁ ଯେ ହୋରମୁଜ, କାଇସ୍, ଧୋଫାର, ସିର୍ ଏବଂ ଅଡ଼େନ ଇତ୍ୟାଦି ଯେଉଁ ପ୍ରଦେଶଗୁଡ଼ିକରେ ଯୁଦ୍ଧ ତଥା ଅନ୍ୟାନ୍ୟ ବ୍ୟବହାର ପାଇଁ ବହୁଳ ସଂଖ୍ୟକ ଘୋଡ଼ା ଉତ୍ପାଦିତ ହୁଅନ୍ତି । ସେଠାକାର ବଣିକମାନେ ଉତ୍ତମ ଘୋଡ଼ାମାନ ଖରିଦ କରନ୍ତି, ସେଗୁଡ଼ିକୁ ଜାହାଜରେ ଲଦି ଏହି ରାଜା ଏବଂ ତାଙ୍କର ଚାରି ରାଜା ଭାଇଙ୍କ ନିକଟକୁ ରପ୍ତାନୀ କରନ୍ତି । ଯେଉଁମାନଙ୍କର ଦାମ୍ 100 ମାର୍କର ରୂପା, ସେମାନଙ୍କ ମଧ୍ୟରୁ ଅନେକ ଘୋଡ଼ା 500 ସଗ୍ଗି ସୁନାରେ ବିକ୍ରି ହୁଅନ୍ତି । ମୁଁ ଆପଣଙ୍କୁ ଭରସା ଦେଇ କହିପାରେ ଯେ ଏହି ରାଜା ପ୍ରତିବର୍ଷ ସେଥିରୁ 2000 ଘୋଡ଼ା କିଣନ୍ତି; ତାଙ୍କର ଭାଇ ମଧ୍ୟ ସେମିତି ଘୋଡ଼ା କିଣନ୍ତି । ବର୍ଷ ଶେଷକୁ ସେମାନଙ୍କ ମଧ୍ୟରୁ ଶହେ ଘୋଡ଼ା ମଧ୍ୟ ବଞ୍ଚିରହନ୍ତି ନାହିଁ । ସେ ଘୋଡ଼ାମାନେ ଅପବ୍ୟବହାର କାରଣରୁ ମୃତ୍ୟୁବରଣ କରନ୍ତି, କାରଣ ରାଜାମାନଙ୍କର ପଶୁଡାକ୍ତର ନ ଥାନ୍ତି ଅଥବା ସେମାନେ ଘୋଡ଼ାଙ୍କର ଚିକିତ୍ସା କିପରି ହେବ ଜାଣି ନ ଥାନ୍ତି । ମୁଁ କହିବାକୁ ଚାହେଁ ଯେ ଯେଉଁ ବଣିକମାନେ ଘୋଡ଼ା ରପ୍ତାନି କରନ୍ତି ସେମାନେ ପଶୁଡାକ୍ତର ପଠାନ୍ତି ନାହିଁ ବା ପଠାଇବାକୁ ଚାହାନ୍ତି ନାହିଁ । ସେମାନେ ଖୁସିର ସହ ଚାହାଁନ୍ତି ଯେ ରାଜାଙ୍କ ପାଖରେ ଥିବା ଘୋଡ଼ାମାନଙ୍କ ମଧ୍ୟରୁ ଅନେକ ମୃତ୍ୟୁବରଣ କରନ୍ତୁ ।''*

(Macro Polo, *Travels* (Pelican edition), p.237)

ମାର୍କୋପୋଲୋଙ୍କ ସାମାନ୍ୟ ଅତିରଞ୍ଜନକୁ ବାଦ୍‌ଦେଲେ ଏହି ମନ୍ତବ୍ୟରେ ଯେ କିଛିଟା ସତ୍ୟ ଅଛି, ଏହା ନିଃସନ୍ଦେହ । ଘୋଡ଼ା ଏବଂ ହାତୀଙ୍କର ଚିକିତ୍ସା ପାଇଁ ପଶୁଡାକ୍ତରଖାନା ଥିଲା । ଅଶ୍ୱାରୋହୀ ଏବଂ ଗଜାରୋହୀ ଥିଲେ ସେନାବାହିନୀର ଏହା ଏକ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ । ଏ ବିଷୟରେ ସଂସ୍କୃତ ପୁସ୍ତକମାନ ମଧ୍ୟ ରଚିତ ହୋଇଥିଲା । ଯଦି ଘୋଡ଼ାମାନେ ଏତେ ସଂଖ୍ୟାରେ ମରିବା ସତ ହୋଇଥାଏ, ତେବେ ତା'ର କାରଣ ଅନ୍ୟ କେଉଁଠି ରହିଥିବ ।

ସମ୍ଭବତଃ ଉପକୂଳ ଅଞ୍ଚଳର ଦସ୍ୟୁମାନେ ନୌବାଣିଜ୍ୟ ଲାଗି ଏକ ପ୍ରତିବନ୍ଧକ ସିଦ୍ଧ ହୋଇଥିଲେ । 'ସଙ୍ଗମ' କବିତାରେ ଦସ୍ୟୁମାନେ ଯବନମାନଙ୍କ ଜାହାଜ ଆକ୍ରମଣ କରିବା ଏବଂ ସେହିଭଳି ଅନ୍ୟାନ୍ୟ ଘଟଣା ବର୍ଣ୍ଣିତ ହୋଇଛି । ପଶ୍ଚିମ ଉପକୂଳରେ ବେଳେବେଳେ ସ୍ଥାନୀୟ ସର୍ଦ୍ଦାରମାନଙ୍କ ଦ୍ୱାରା ରାଷ୍ଟ୍ରକୂଟ ରାଜ୍ୟରେ ସକ୍ରିୟ ବଣିକମାନଙ୍କୁ ଲୁଣ୍ଠନ କରିବା

ପାଇଁ ଡକାୟତି ଆୟୋଜନ କରାଯାଉଥିଲା । କୋଙ୍କଣ ଅଞ୍ଚଳରୁ ମିଳିଥିବା ବୀରପ୍ରସ୍ତରରୁ ଦସ୍ୟୁମାନଙ୍କୁ ବୀର ତଡ଼ିବାର ରେଖାଚିତ୍ର ଦେଖିବାକୁ ମିଳିଥାଏ । ଆରବସାଗର, ବଙ୍ଗୋପସାଗର ଏବଂ ଦକ୍ଷିଣ ଚୀନ୍ ସାଗରର ଉପକୂଳ ଅଞ୍ଚଳରେ ଏ ପ୍ରକାରର ଅନେକ ଘଟଣା ଘଟୁଥିଲା । ଏହାର ବିରୋଧାଭାସ ସ୍ୱରୂପ, ଏ ପ୍ରକାରର ସମସ୍ୟା ନ ଥିବା ବନ୍ଦରଗୁଡ଼ିକ ବାଣିଜ୍ୟ ପାଇଁ ବେଶି ସହାୟକ ହେଉଥିଲେ ଏବଂ ଫଳସ୍ୱରୂପ ବଣିକ ସଂଗଠନଗୁଡ଼ିକ ବିପୁଳ ଲାଭ କରୁଥିଲେ । ଆନ୍ଧ୍ର ଉପକୂଳର ମୋଟୁପଲ୍ଲୀ ବନ୍ଦରରୁ ବଣିଜ କରୁଥିବା ବଣିକମାନଙ୍କୁ ସୁରକ୍ଷା ଦେବାପାଇଁ ତ୍ରୟୋଦଶ ଶତାବ୍ଦୀରେ କାକତୀୟ ରାଜା ଏକ ସ୍ୱତନ୍ତ୍ର ଅଧାଦେଶ ପ୍ରବର୍ତ୍ତନ କରିଥିବା କଥା ଜଣାଯାଏ । ସଂସ୍କୃତ ଏବଂ ତେଲୁଗୁ ଅଭିଲେଖ ଅନୁସାରେ ବଣିକମାନଙ୍କଠାରୁ ଏକ ନିର୍ଦ୍ଧାରିତ ମାହାସୁଲ ଆଦାୟ କରାଯାଉଥିଲା ଏବଂ ସେମାନଙ୍କର ନିରାପତ୍ତା ନିଶ୍ଚିତ କରାଯାଉଥିଲା । ମାର୍କୋପୋଲୋଙ୍କ ଅନୁସାରେ ମୋଟୁପଲ୍ଲୀରୁ ଅତ୍ୟନ୍ତ ସୂକ୍ଷ୍ମ କିସମର ହୀରା ଏବଂ ମସ୍‌ଲିନ୍ ରପ୍ତାନି କରାଯାଉଥିଲା । ପୂର୍ବବର୍ତ୍ତୀ ସମୟର ପରମ୍ପରା ଅନୁସାରେ ବୃହତ୍ତର ସଂଗଠନଗୁଡ଼ିକ ସେମାନଙ୍କ ପଣ୍ୟଦ୍ରବ୍ୟ ଏବଂ ବଣିକମାନଙ୍କୁ ସୁରକ୍ଷା ଦେବାଲାଗି ନିଜର ବାହିନୀ ରଖୁଥିଲେ ।

ଅଧିକାଂଶ ଉତ୍ପାଦନ ସ୍ଥାନୀୟ ବ୍ୟବହାରରେ ଲାଗୁଥିଲା । କିନ୍ତୁ ବାଣିଜ୍ୟ, ବିଶେଷତଃ ଦରିଆପାରି ବାଣିଜ୍ୟ, ସ୍ଥାପିତ ବଜାରକୁ ଏକ ଅତିରିକ୍ତ ପ୍ରୋତ୍ସାହନ ପ୍ରଦାନ କଲା । ହାତୀ, ଘୋଡ଼ା, ମସଲା, ଅତର, ମୂଲ୍ୟବାନ୍ ପଥର ଏବଂ ଉତ୍ତମମାନର ବସ୍ତ୍ର ଇତ୍ୟାଦି ପଣ୍ୟଦ୍ରବ୍ୟର ବ୍ୟାପକ କାରବାର ହେଉଥିବାବେଳେ ଧାତୁ ନିର୍ମିତ ଦ୍ରବ୍ୟ, ଅଳଙ୍କାର ପାତ୍ର ଏବଂ ଲୁଣ (ସମୁଦ୍ରଜଳରୁ କଡ଼େଇରେ ପ୍ରସ୍ତୁତ) ଇତ୍ୟାଦିର ବ୍ୟବସାୟ ଗୌଣ ଥିଲା । ବଣିକ ସଂଘ ରୂପେ ପରିଚିତ 'ଶ୍ରେଣୀ' ଅଧିକାଂଶ ବାଣିଜ୍ୟର ନିୟନ୍ତ୍ରଣ କରୁଥିଲା । ବଣିକମାନେ ସାମୂହିକ ଭାବେ ବ୍ୟବସାୟ କରନ୍ତୁ ବା ନ କରନ୍ତୁ, ମାତ୍ର ଏକ ସଂଗଠନ ଅନ୍ତର୍ଗତ ଥିଲେ । ମଣିଗ୍ରାମମ୍, ଆୟଭୋଲ୍, ନାନାଦେଶୀ, ନଗରତ୍ତର, ଅଞ୍ଜୁବନମ୍ ଏବଂ ବଳଞ୍ଜିୟର ଇତ୍ୟାଦି ସମ୍ପର୍କରେ ଅନେକତ୍ର ସୂଚନା ଦିଆଯାଇଛି । ଏ ସମସ୍ତେ ଏକା ଅଞ୍ଚଳରେ ଏକା ପଣ୍ୟଦ୍ରବ୍ୟ କାରବାର କରୁ ନ ଥିଲେ । ଆୟଭୋଲ୍ ତୁଳନାରେ ମଣିଗ୍ରାମମ୍ ଏକ ଛୋଟ ସଂଗଠନ ଥିଲା । ଅନ୍ୟପକ୍ଷରେ ଅଞ୍ଜୁବନମ୍ କେରଳ ଅଞ୍ଚଳରେ ସକ୍ରିୟ ଥିଲା । ଦୂରବର୍ତ୍ତୀ ଅଞ୍ଚଳ ସହ ଯୋଗାଯୋଗ ଏବଂ କାର୍ଯ୍ୟାବଳୀକୁ ବିଚାରକୁ ନେଲେ ଆୟଭୋଲ୍‌ର ଅଭ୍ୟୁଦୟ ଆଇହୋଲ ଅଞ୍ଚଳରୁ ଘଟିଥିଲା । ବ୍ରାହ୍ମଣ ଓ ମହାଜନଙ୍କୁ ନେଇ ଗଠିତ ଏହି ସଂଗଠନ ଦାକ୍ଷିଣାତ୍ୟର ଚୋଳକେନ୍ଦ୍ରଗୁଡ଼ିକର ବାଣିଜ୍ୟ ସହ ଜଡ଼ିତ ଥିଲା । କ୍ଷେତ୍ରବିଶେଷରେ ଏହି ବ୍ରାହ୍ମଣମାନେ ଅଗ୍ରହାର ଲାଭ କରିଥିଲେ ଏବଂ ବାଣିଜ୍ୟରେ ନିବେଶ ପାଇଁ ସେମାନଙ୍କ ପାଖରେ ଅର୍ଥ

ଥିଲା । ବ୍ରାହ୍ମଣମାନଙ୍କ ଲାଗି ବ୍ୟବସାୟ ଏବଂ ସମୁଦ୍ରଯାତ୍ରା ନିଷିଦ୍ଧ ହୋଇଥିଲେ ମଧ୍ୟ ସେମାନେ ଏହାକୁ ଏଡ଼ାଇ ଯାଉଥିଲେ । ସଂଗଠନର ସଭ୍ୟମାନଙ୍କୁ ଆୟଭୋଲ୍‌ର 500 ସ୍ୱାମୀ ବୋଲି କୁହାଯାଉଥିଲା । ସେମାନେ ସଭ୍ୟମାନଙ୍କର ପ୍ରଥାସିଦ୍ଧ ନିୟମକୁ ସୁରକ୍ଷା ପ୍ରଦାନ କରୁଥିବାର ଦାବି କରୁଥିଲେ । ଉପଦ୍ୱୀପ ଅଞ୍ଚଳର ବାଣିଜ୍ୟରେ ହସ୍ତକ୍ଷେପ ହେଲେ ଦରିଆପାରି ବାଣିଜ୍ୟରେ ମଧ୍ୟ ହସ୍ତକ୍ଷେପ ହେବ ବୋଲି ଆଶଙ୍କା କରାଯାଉଥିଲା । ଦକ୍ଷିଣପୂର୍ବ ଏସିଆର ଅଭିଲେଖରେ ଏହି ପ୍ରକାରର ସଂଗଠନ ବିଷୟରେ ସୂଚନା ପ୍ରଦତ୍ତ ହୋଇଛି । ଅର୍ଥନୈତିକ ଜୀବନ ଉପରେ ବାଣିଜ୍ୟ ସଂଗଠନମାନଙ୍କର କ୍ଷମତା କଥା ରାଜ୍ୟର ସୀମା ଅତିକ୍ରମ କରି ଯେକୌଣସି ଅଞ୍ଚଳକୁ ସେମାନେ ଯାଇପାରୁଥିବା ଉଲ୍ଲେଖରୁ ସୁସ୍ପଷ୍ଟ ହୁଏ । ସେମାନେ ମନ୍ଦିର ନିର୍ମାଣ ପାଇଁ ତଥା ରାଜାଙ୍କୁ ଋଣ ଦେବାଭଳି ସ୍ଥାନୀୟ ପ୍ରକଳ୍ପଗୁଡ଼ିକୁ ଅର୍ଥ ଯୋଗାଉଥିଲେ ।

ସ୍ଥାନୀୟ ବଣିକମାନଙ୍କର ସଂଗଠନ ନଗରମ୍ ସମ୍ଭବତଃ ଉତ୍ପାଦନସ୍ଥଳୀ ସହ ଜଡ଼ିତ ବୃହତ୍ତର ସଂଗଠନ ସହ ସମ୍ବନ୍ଧିତ ଥିଲା । ବଣିକମାନେ ସେ ସ୍ଥାନରୁ ପଣ୍ୟଦ୍ରବ୍ୟ ଆଣି ଏକ ବ୍ୟାପକ କ୍ଷେତ୍ରରେ ବିତରଣ କରୁଥିଲେ । ଦରିଆପାରି ବାଣିଜ୍ୟ ଲାଗି ସେମାନଙ୍କୁ ରାଜ୍ୟର ସମର୍ଥନ ଏକ ସର୍ତ୍ତ ନ ଥିଲା । ମାତ୍ର ଆବଶ୍ୟକ ସମୟରେ ପ୍ରଭାବଶାଳୀ ଭାବେ ହସ୍ତକ୍ଷେପ କରିପାରିବା ସ୍ଥିତିରେ ରାଜ୍ୟ ହସ୍ତକ୍ଷେପ କରୁଥିଲା । ଶ୍ରୀବିଜୟର ଘଟଣା ଭଳି ସେସବୁ କ୍ଷେତ୍ରରେ ରାଜ୍ୟ ସହାୟତା କରୁଥିଲା । ଏପରି କ୍ଷେତ୍ରରେ କଞ୍ଚାମାଲ ବା ବିପଣନ କେନ୍ଦ୍ରଗୁଡ଼ିକୁ ଆୟତ୍ତ କରିବା ହସ୍ତକ୍ଷେପର ଉଦ୍ଦେଶ୍ୟ ନ ଥିଲା । ବରଂ ବାଣିଜ୍ୟ କ୍ଷେତ୍ରରେ ଥିବା ପ୍ରତିବନ୍ଧକଗୁଡ଼ିକୁ ହଟାଇବା ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ହୁଏତ ରାଜା ଏବଂ ଉଚ୍ଚ ପଦାଧିକାରୀମାନେ ଏହି ବାଣିଜ୍ୟରେ ପୁଞ୍ଜିନିବେଶ କରୁଥିଲେ କିମ୍ୱା ଆବଶ୍ୟକ ସମୟରେ ସମର୍ଥନ ଯୋଗାଇଦେବା ଲାଗି ବଣିକ ସଂଘ ତରଫରୁ ବିଶେଷ ଉପହାରମାନ ପ୍ରାପ୍ତ ହେଉଥିଲେ ।

ବୃହତ୍ ବଣିକ ସଂଗଠନଗୁଡ଼ିକର ବିପୁଳ ସମ୍ପଦ ଏବଂ ବାଣିଜ୍ୟିକ ବିସ୍ତାରକୁ ଲକ୍ଷ୍ୟ କଲେ ସେମାନେ ବୃହତ୍ତର ରାଜନୈତିକ କ୍ଷମତା ପାଇଁ ପ୍ରତ୍ୟାଶା ପୋଷଣ ନ କରିବା କଥାଟି ଆଶ୍ଚର୍ଯ୍ୟଜନକ ମନେହୁଏ । ସମ୍ଭବତଃ ଏହି ବଣିକ ସଂଘଗୁଡ଼ିକର ବ୍ରାହ୍ମଣ ସଦସ୍ୟମାନେ ରାଜାଙ୍କ ଆଧିପତ୍ୟକୁ ଆହ୍ୱାନ ଜଣାଇବାକୁ ଅନୁଚିତ ମନେକରିଥିବେ, କାରଣ ସେମାନେ ରାଜାଙ୍କ ଦ୍ୱାରା ପ୍ରଦତ୍ତ ଜମିରୁ ପୁଞ୍ଜି ଯୋଗାଡ଼ କରୁଥିଲେ । ପୁଣି ରାଜାଙ୍କ ବିରୁଦ୍ଧରେ ଗଲେ ସେହି ଅନୁଦାନ ପ୍ରତ୍ୟାହୃତ ହୋଇଯିବାର ଆଶଙ୍କା ମଧ୍ୟ ଥିଲା । ପେଷାଦାର ସଂଗଠନଗୁଡ଼ିକର ଉଚ୍ଚାକାଂକ୍ଷାରେ ଗଠିତ ଏକ ସ୍ୱାଧୀନ କ୍ଷମତା ଭିତ୍ତିର ସାମର୍ଥ୍ୟ ବୃଦ୍ଧିରେ

ସହାୟକ ନଗରଗୁଡ଼ିକ ବୃହତ୍ତର ସ୍ୱାଧୀନତା ଲାଭ ପାଇଁ ଆଗ୍ରହୀ ନ ଥିଲା ଭଳି ମନେହୁଏ । ଏତେବେଳକୁ ରାଜନୈତିକ କର୍ତ୍ତୃତ୍ୱର ବୈଧ ରୂପ ଆକାରରେ ରାଜତନ୍ତ୍ର ଦୃଢ଼ଭାବେ ଅଧିଷ୍ଠିତ ହୋଇସାରିଥିଲା । ଅଧିକନ୍ତୁ, ଅନେକ ବଣିକ ସଂଘର ଦରିଆପାରି ବାଣିଜ୍ୟିକ ଆଗ୍ରହ ଥିବାରୁ ସେମାନେ ଚୋଳ ସାମ୍ରାଜ୍ୟର ସାମରିକ ଏବଂ ନୌସାମର୍ଥ୍ୟ ଉପରେ ନିର୍ଭରଶୀଳ ହୋଇ ରହିଥିଲେ । ଯେଉଁମାନେ ବ୍ୟବସ୍ଥାକୁ ବୈଧ କରିଥିଲେ ସେମାନେ ଶ୍ରେଣୀର ରାଜନୈତିକ କ୍ଷମତା କମାଇବା ଲାଗି ଚେଷ୍ଟା କରୁଥିଲେ । ବାଣିଜ୍ୟିକ ସମୃଦ୍ଧି ଉପରେ ବିଶେଷଭାବେ ନିର୍ଭରଶୀଳ ଛୋଟ ଛୋଟ ନୌବାଣିଜ୍ୟ ଭିତ୍ତିକ ରାଜ୍ୟଗୁଡ଼ିକରେ ଶ୍ରେଣୀଗୁଡ଼ିକ ଅଧିକ କ୍ଷମତାଶାଳୀ ହୋଇଉଠିଥିବା ସ୍ୱାଭାବିକ ।

ଗ୍ରାମାଞ୍ଚଳରେ ବିନିମୟର ମାଧ୍ୟମ ରୂପେ 'ବାର୍ଟର' ବା ଅଦଳାବଦଳି ବ୍ୟବସ୍ଥା ଜାରି ରହିଥିଲା । ମୁଖ୍ୟତଃ ଧାନ, ଗୃହପାଳିତ ପଶୁ ଏବଂ ଲୁଗାପଟା ଅଦଳାବଦଳି ହେଉଥିଲା । ତମ୍ବାମୁଦ୍ରାର ପ୍ରଚଳନ ଥିଲା ଏବଂ ତାହା ବଜାରରେ ଚଳୁଥିଲା । ଅଧିକ ଦାମ୍‌ର ଦ୍ରବ୍ୟ କିଣା, ଦୂରଗାମୀ ବାଣିଜ୍ୟ ଏବଂ କଦବା କେମିତି ଟିକସ ଆଦି ଦେବାଲାଗି ସୁନା ବା ରୁପାମୁଦ୍ରାକୁ ସଞ୍ଚୟ କରାଯାଉଥିଲା । ଚୋଳମାନେ ମଝିରେ ମଝିରେ କିଛି ପରିମାଣର ରୁପାମୁଦ୍ରା ତିଆରି କରୁଥିଲେ । ମାତ୍ର ସୁନାମୁଦ୍ରାର ମୂଲ୍ୟ ଥିଲା ସର୍ବାଧିକ । ଦାକ୍ଷିଣାତ୍ୟର ଗଦ୍ୟାନ୍ (Gadyana) ସହ ତୁଳନୀୟ ସୁନାର କଳଞ୍ଜୁ (Kalanju)ର ବଡ଼ ଧରଣର ନେଣଦେଣ କ୍ଷେତ୍ରରେ ବ୍ୟବହାର କରାଯାଉଥିଲା ଏବଂ କ୍ଷୁଦ୍ରତର କ୍ଷେତ୍ରରେ ବ୍ୟବହାର କରାଯାଉଥିଲା କସୁ (Cashu) । ଦେଶର ବିଭିନ୍ନ ଭାଗରେ ବଣିକ 'ଶ୍ରେଣୀ'ର କେନ୍ଦ୍ର ବା ଭିତ୍ତିଥିଲା । ଏହାର ସବୁଠାରୁ ବଡ଼ ଉପଯୋଗିତା ଥିଲା ଯେ ପୂର୍ବକାଳ ପରି ବଚନପତ୍ର (promissory note)ର ବ୍ୟବହାର ଦୂରଗାମୀ ବାଣିଜ୍ୟକୁ ପ୍ରୋତ୍ସାହିତ କରୁଥିଲା ।

ସୁନାମୁଦ୍ରାର ପ୍ରସାର ପ୍ରତିବନ୍ଧକହୀନ ଥିଲା, ଯଦିଓ ଏକାଦଶ ଶତାବ୍ଦୀର ପରବର୍ତ୍ତୀ କାଳରେ ମିଶ୍ରଣ ଫଳରେ ଏହାର ମାନ ନିକୃଷ୍ଟ ହୋଇଯାଇଥିଲା । ତେବେ ଏହା ତର୍କସାପେକ୍ଷ, କାରଣ ବିଭିନ୍ନ ଅଞ୍ଚଳର ସ୍ୱର୍ଣ୍ଣମୁଦ୍ରାରେ ଭିନ୍ନ ଭିନ୍ନ ପରିମାଣର ସୁନା ରହୁଥିଲା । ଓଜନ ଏବଂ ମାନକରେ ବିଭିନ୍ନତା ହେତୁ ପରିଷଦର ସୁବର୍ଣ୍ଣ-କମିଟି ସୁନା ଏବଂ ସ୍ୱର୍ଣ୍ଣମୁଦ୍ରାର ନିୟମିତ ମୂଲ୍ୟାୟନ କରିବାକୁ ବାଧ ହେଉଥିଲେ । ମୁଦ୍ରାର ବ୍ୟବହାର ଯୋଗୁଁ ଉଚ୍ଚସୁଧରେ ଋଣ ପ୍ରଦାନ ଅର୍ଥ ରୋଜଗାରର ଏକ ମାର୍ଗରେ ପରିଣତ ହେଲା । ଏଭଳି କାର୍ଯ୍ୟରେ ବ୍ରାହ୍ମଣ ଏବଂ ମନ୍ଦିର ପରିଚାଳକମାନେ ମଧ୍ୟ ବ୍ୟାପୃତ ହେଲେ । ସମ୍ଭବତଃ ଧର୍ମର ପ୍ରଚାର ପ୍ରସାର ଓ ସମୃଦ୍ଧିରେ ଏହା ସହାୟକ ହେଉଥିବାରୁ ଏହାକୁ ଯଥାର୍ଥ ମନେକରାଗଲା ।

## ସଂସ୍ଥା ରୂପରେ ମନ୍ଦିର

ଏହି ସମୟରେ ମନ୍ଦିର ନିର୍ମାଣର ସଂଖ୍ୟାରେ ବୃଦ୍ଧି ଘଟିଲା । କେବଳ ପୂଜାପୂଜିରେ ଆଗ୍ରହ ଯୋଗୁଁ ଏହା ସମ୍ଭବ ହେଲା ବୋଲି ଭାବିବା ଅସ୍ୱାଭାବିକ । ମନ୍ଦିର ଦ୍ୱାରା ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ ସାଧିତ ହେଉଥିଲା । ରାଜକୀୟ ଅନୁଦାନରେ ନିର୍ମିତ ମନ୍ଦିରଗୁଡ଼ିକ କେବଳ ଯେ ଦରବାର ସହିତ ଘନିଷ୍ଠଭାବେ ସଂପୃକ୍ତ ଥିଲେ ତାହା ନୁହେଁ, ସେଗୁଡ଼ିକ ବିକଳ୍ପ ଦରବାର (Surrogate Court) ରୂପେ ମଧ୍ୟ ଗଣା ହେଉଥିଲେ । ଏହାଫଳରେ ସେମାନେ ରାଜ୍ୟ ଭିତରର ଯେକୌଣସି ସ୍ଥାନରୁ ସମ୍ବଳ ଆହରଣ କରିପାରୁଥିଲେ । ଉଦାହରଣ ସ୍ୱରୂପ, ତାଞ୍ଜାଭୁର ମନ୍ଦିର ଶ୍ରୀଲଙ୍କାର ଗ୍ରାମଗୁଡ଼ିକରୁ ରାଜସ୍ୱ ଆଦାୟ କରିପାରୁଥିଲା । ଏହି କାରଣରୁ ସ୍ଥାନୀୟ ଘଟଣାବଳୀ ଉପରେ ହସ୍ତକ୍ଷେପ କରିବାଲାଗି ଦରବାରରେ ବେଶି ଜୋର୍ ଦିଆଯାଉଥିଲା । ଅବଶ୍ୟ ଅନେକ କ୍ଷେତ୍ରରେ ଦରବାରଠାରୁ ଦୂରତ୍ୱ ତଥା ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ବ୍ୟାପକ ଆଧିପତ୍ୟ ହେତୁ ସ୍ଥାନୀୟ ମତାମତ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ଅଲୱାର ଏବଂ ନୟନାର୍‌ମାନଙ୍କ ଶ୍ଳୋକରେ ରାଜା ଓ ଦେବତାଙ୍କ ମଧ୍ୟରେ ଥିବା ସମାନ୍ତରତା ଉପରେ ଗୁରୁତ୍ୱ ଆରୋପ କରାଯାଇଛି ଏବଂ ଜଣଙ୍କୁ ସନ୍ତୁଷ୍ଟ କଲେ, ଅନ୍ୟ ଜଣେ ସନ୍ତୁଷ୍ଟ ହେବେ ବୋଲି କୁହାଯାଇଛି । ମନ୍ଦିରଗୁଡ଼ିକୁ ପ୍ରାସାଦୋପମ କରାଯାଉଥିଲା ଏବଂ ଦେବତାଙ୍କର ଦୈନିକ ରୀତିନୀତି ରାଜାଙ୍କ ଅନୁକରଣରେ କରାଯାଉଥିଲା । ପୂଜକମାନଙ୍କ ସେବା ଏବଂ ଭୋଗରାଗ ତଥା ଦାନ ଉପରେ ମନ୍ଦିର ନିର୍ଭର କରୁଥିଲା ।

ରାଜାଙ୍କ ଅନୁଦାନରେ ସାଧାରଣତଃ ରାଜଧାନୀରେ ମନ୍ଦିର ନିର୍ମିତ ହେଉଥିଲା ଏବଂ ଦରବାର ସହିତ ତା'ର ନିବିଡ଼ ସମ୍ପର୍କ ମଧ୍ୟ ରହୁଥିଲା । ଏକାଦଶ ଶତାବ୍ଦୀରେ ରାଜାଙ୍କ ରାଜତ୍ୱକାଳର ଶ୍ରେୟ ସ୍ୱରୂପ ତାଞ୍ଜାଭୁର୍‌ର ରାଜରାଜେଶ୍ୱର ମନ୍ଦିର ଏବଂ ଗଙ୍ଗାଇକୋଣ୍ଡାଚୋଲପୁରମ୍‌ର ରାଜେନ୍ଦ୍ରେଶ୍ୱର ମନ୍ଦିର ନିର୍ମାଣ ଏହାର ଉଦାହରଣ । ତାଞ୍ଜାଭୁର ମନ୍ଦିରଟି ଏକ ଆଧିପତ୍ୟ ସମ୍ପନ୍ନ ଅଞ୍ଚଳରେ ଅବସ୍ଥିତ ଏବଂ ଉତ୍ସବ ପାଳନ କରାଯାଉଥିବା କେନ୍ଦ୍ରର ଚତୁର୍ଦ୍ଦିଗକୁ ଏହାର ପରିମଣ୍ଡଳ ପରିବ୍ୟାପ୍ତ । ବେଳେବେଳେ ମନ୍ଦିରରେ ରାଜାଙ୍କ ଉପରେ ଦୃଷ୍ଟି କେନ୍ଦ୍ରୀଭୂତ କରିବା ଲାଗି ପୂଜାମାନ ଆୟୋଜନ କରାଯାଉଥିଲା, ତେଣୁ ରାଜପଦ ସହିତ ଦିବ୍ୟତ୍ୱର ଛାପ ଯୋଡ଼ି ହୋଇଯାଉଥିଲା । କେତେବେଳେ ସୂକ୍ଷ୍ମ ସ୍ତରରେ ତ କେତେବେଳେ ବା ସ୍ୱାଭାବିକ ରୂପେ ଆଧିପତ୍ୟର ଆଉ ଏକ ସୂତ୍ର ରୂପେ କର୍ମକାଣ୍ଡ ପ୍ରତିଭାତ ହେଉଥିଲା । ଯେତେବେଳେ ଏହା ସ୍ୱୟଂ ସମର୍ଥ ହେଉ ନ ଥିଲା ସେତେବେଳେ ନିଜକୁ ଅଧିକ କାର୍ଯ୍ୟକ୍ଷମ ଶକ୍ତିର ଉତ୍ସ ଦ୍ୱାରା ଅଧିଷ୍ଠିତ କରାଉଥିଲା । କର୍ମକାଣ୍ଡର ରୂପରେଖ ଆକ୍ଷରିକ ଅର୍ଥରେ କ୍ଷମତାକୁ ସୂଚାଉ ନ ଥିଲେ; ସାଂକେତିକ ଭାବେ କ୍ଷମତାର ପ୍ରତିଫଳନ

କରାଉଥିଲେ । ପୌରାଣିକ ହିନ୍ଦୁ ଧର୍ମରେ ବୈଦିକ ଯଜ୍ଞରେ ରାଜା ନିଜେ ପୃଷ୍ଠପୋଷକ ସାଜିବା ଜରୁରୀ ନ ଥିଲା; ମାତ୍ର ସେ ଦେବତାଙ୍କ ସ୍ୱରୂପ ହୋଇ କର୍ମକାଣ୍ଡ ପ୍ରକ୍ରିୟାରେ ଅଂଶଗ୍ରହଣ କରୁଛନ୍ତି ବୋଲି ମନେ କରାଯାଉଥିଲା । ଏହାଫଳରେ ଉପାସକଙ୍କର ଭକ୍ତିଭାବ ବୃଦ୍ଧି ପାଉଥିଲା । ତେଣୁ ରାଜା ସବୁ ସମୟରେ ଛାୟାଦେବତା ସାଜିବା ଜରୁରୀ ନ ଥିଲା । ଯଦି ସେ ଜଣେ ଆଦର୍ଶ ଭକ୍ତ ପାଲଟିଯାଉଥିଲେ, ତେବେ ତାହାହିଁ ଯଥେଷ୍ଟ ମନେହେଉଥିଲା । ଧାର୍ମିକ ଅବଧାରଣା ବ୍ୟତିରେକେ ରାଜା ଏବଂ ଦରବାର ଉଭୟ ଭକ୍ତିର ରାଜନୈତିକ ଫାଇଦା ସମ୍ପର୍କରେ ନିଃସନ୍ଦେହରେ ଅବଗତ ଥିଲେ ।

ଏହି ସବୁ ସଂରଚନାଗୁଡ଼ିକରେ ଦେବତାଙ୍କର ଆଭାସୀ ଉପସ୍ଥିତି ଯୋଗୁଁ ମନ୍ଦିର ଏକ ପବିତ୍ର ସ୍ଥାନ ରୂପେ ବିବେଚିତ ହେଉଥିଲା, ଯେଉଁଠାରେ ଭକ୍ତ ଏବଂ ଦେବତାଙ୍କର ସମ୍ପର୍କ ପ୍ରତିଷ୍ଠା ଲାଭ କରୁଥିଲା । ମାତ୍ର ଏହି ସ୍ଥାନ ଏବଂ ଏଠାକାର କର୍ମକାଣ୍ଡରେ ଆଧିପତ୍ୟ, ଅଧିକାର ସାବ୍ୟସ୍ତ ଏବଂ କର୍ତ୍ତବ୍ୟବୋଧକୁ ନେଇ ବିଭିନ୍ନ ପ୍ରଶ୍ନ ଜଡ଼ିତ ଥିଲା । ପୌରାଣିକ ହିନ୍ଦୁଧର୍ମର ମନ୍ଦିରଗୁଡ଼ିକ ଏକ ବୃହତ୍ତର ଗୋଷ୍ଠୀକୁ ସାମାଜିକ ଏବଂ ରାଜନୈତିକ ଦୃଷ୍ଟିକୋଣରୁ ଗ୍ରହଣ କଲା । ଅବଶ୍ୟ ତଳ ସ୍ତରର ସାମାଜିକ ଗୋଷ୍ଠୀମାନେ ଏହାର ବହିର୍ଭୂତ ଥିଲେ । ଏକ ମନ୍ଦିର ଶିଳାଲେଖରୁ ଜଣାଯାଇଛି ଯେ ମନ୍ଦିରର ପରିଚାଳକମାନେ ରାଜନୈତିକ ତଥା ଅର୍ଥନୈତିକ ସ୍ୱାର୍ଥର ପ୍ରତିନିଧିତ୍ୱ କରିବା ସଙ୍ଗେ ସଙ୍ଗେ ଧାର୍ମିକ ବ୍ୟାପାରରେ ମଧ୍ୟ ଆଗ୍ରହ ପ୍ରଦର୍ଶନ କରୁଥିଲେ । ଦାନର ମୂଳ ଉଦ୍ଦେଶ୍ୟ ଦେବତାଙ୍କ ସନ୍ତୋଷ ସାଧନ ହୋଇଥିଲେ ମଧ୍ୟ ରାଜକୀୟ ଅନୁଦାନ ସମ୍ପଦ ବିତରଣ ଏବଂ ସମର୍ଥକ ହାସଲର ଏକ ଉପାୟ ଥିଲା । ଉପହାର ପ୍ରଦାନ ଏବଂ ଅନୁଦାନର ପରମ୍ପରା ଦୀର୍ଘକାଳରୁ ଚାଲିଆସୁଥିଲା । ଉପହାରର ସ୍ୱରୂପ ଯଦିଓ ବଦଳି ଯାଇଥିଲା, ତଥାପି ଏହାର ଉଦ୍ଦେଶ୍ୟ ସମାନ ଥିଲା ।

ରାଜପରିବାରର ଅନୁଦାନ ସହିତ ଅନ୍ୟାନ୍ୟ ଉତ୍ସର ସହାୟତାରେ ନିର୍ମିତ ମନ୍ଦିରଗୁଡ଼ିକ କେବଳ ଧାର୍ମିକ କାରଣରୁ ନୁହେଁ, ବରଂ ଅର୍ଥନୈତିକ, ରାଜନୈତିକ ଏବଂ ସାଂସ୍କୃତିକ ଆବଶ୍ୟକତା ଦୃଷ୍ଟିକୋଣରୁ ମଧ୍ୟ ଜଟିଳ ଅନୁଷ୍ଠାନରେ ପରିଣତ ହୋଇଉଠୁଥିଲା । ଗ୍ରାମାଞ୍ଚଳରେ ଅବସ୍ଥିତ ବଡ଼ ମନ୍ଦିରଗୁଡ଼ିକର କାର୍ଯ୍ୟକାରିତାକୁ ଦେଖିଲେ ଏହା ସହଜରେ ବୁଝିହୋଇଯାଏ । ସଭ୍ୟ ବର୍ଗଙ୍କ ଅଧିକାରରେ ଥିବା ଜମି ଦାନ କରାଯାଉଥିଲା, ନତୁବା ବିକଳ୍ପ ସ୍ୱରୂପ ଜମି କିଣାଯାଇ ମନ୍ଦିରକୁ ଦାନ କରାଯାଉଥିଲା । ଚୋଳମାନଙ୍କର ଶେଷ କାଳଖଣ୍ଡରେ ଯେତେବେଳେ ଉଭୟ ମନ୍ଦିର ଏବଂ ବଣିକମାନେ ଜମି କିଣିଲେ, ସେତେବେଳେ ମନ୍ଦିରର ଅର୍ଥନୈତିକ ଭୂମିକା ସ୍ପଷ୍ଟ ହୋଇଉଠିଲା । ଏକ ଅନୁଷ୍ଠାନ ହିସାବରେ ମନ୍ଦିର ବହୁବିଧ ନିର୍ଘଣ୍ଟ ଆଧାରିତ ବିନିମୟସ୍ଥଳୀ ହେଲା । ଯେଉଁମାନଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ

ଭାବେ ମନ୍ଦିର ନିଯୁକ୍ତି ଦେଉଥିଲା, ସେମାନଙ୍କ ପାଇଁ ମନ୍ଦିର ଆକର୍ଷଣର କେନ୍ଦ୍ରରେ ପରିଣତ ହେଲା । ପୁଣି, ଏହା ଜଣେ ଜମିଦାରର କର୍ତ୍ତୃତ୍ୱର ପ୍ରତୀକର ପରିଣତ ହୋଇଥିଲା ଯିଏ ଗ୍ରାମୀଣ ଲୋକଙ୍କ ଜୀବନରେ ହସ୍ତକ୍ଷେପ କରିପାରିବ । ମନ୍ଦିର ଏକ ଗ୍ରାମୀଣ ବ୍ୟାଙ୍କ ହିସାବରେ ମଧ୍ୟ ପ୍ରତିଭାତ ହେଉଥିଲା । ପୁଣି ଏକ ନିର୍ଦ୍ଦିଷ୍ଟ ଧାର୍ମିକ ସଂପ୍ରଦାୟର କେନ୍ଦ୍ର ହିସାବରେ ଏହା ବିଭିନ୍ନ ପ୍ରକାର ବୈଧିକରଣର ସ୍ଥଳୀ ହୋଇଥିଲା । ଗ୍ରାମାଞ୍ଚଳରେ ମନ୍ଦିର ଥିଲା ଗ୍ରାମ ପରିଷଦର ବୈଠକସ୍ଥଳୀ ତଥା ଉଚ୍ଚଜାତିର ବାଳକମାନଙ୍କ ଲାଗି ଔପଚାରିକ ଶିକ୍ଷାର ସ୍ଥଳୀ ।

ବୈଦିକ ଶିକ୍ଷାର ବିଶେଷଜ୍ଞ ବ୍ରାହ୍ମଣମାନଙ୍କ ଲାଗି ବ୍ରହ୍ମଦେୟ ଥିଲା ଏକ ଅନୁଦାନ ସ୍ୱରୂପ । ମନ୍ଦିରଗୁଡ଼ିକ ପୌରାଣିକ ଧର୍ମର ବିଶ୍ୱାସ ଏବଂ ଅଭ୍ୟାସ ସହିତ ନିବିଡ଼ ଭାବେ ଜଡ଼ିତ ଥିଲା । ଉଭୟ ବିରୋଧୀ ଭାବର ସହାବସ୍ଥାନ ଫଳରେ କର୍ମକାଣ୍ଡର ଗୁରୁତ୍ୱ ବୃଦ୍ଧି ହେଲା । ମାତ୍ର ଅନ୍ୟ ଏକ ସ୍ତରରେ ଉଭୟଙ୍କ ମଧ୍ୟରେ ବିଭାଜକ ରେଖା ମଧ୍ୟ ଟାଣି ହୋଇଗଲା । ସ୍ଥାନୀୟ ସଂସ୍କୃତିଗୁଡ଼ିକର ଆତ୍ମୀକରଣ ଫଳରେ ନୂତନ କର୍ମକାଣ୍ଡ ଏବଂ ଦେବାଦେବୀମାନେ ମନ୍ଦିରରେ ସନ୍ନିଳିତ ହେଲେ । ମନ୍ଦିର କର୍ମକାଣ୍ଡରେ ଏଗୁଡ଼ିକର ପ୍ରଚଳନ କରାଯାଇଥିଲେ ଏବଂ ନୂତନ କିମ୍ବଦନ୍ତୀମାନ ଗଠନ ସମ୍ଭବ ହୋଇଥିଲେ, ଏଗୁଡ଼ିକ ଅଧିକ ମର୍ଯ୍ୟାଦାବନ୍ତ ହୋଇଥାନ୍ତେ । ଏହାମଧ୍ୟରେ ସୀମାନ୍ତରିତ ଗୋଷ୍ଠୀ ଯଥା ଅସ୍ପୃଶ୍ୟ ଏବଂ ନୀଚ ଜାତିର ସଂସ୍କୃତିକୁ ସ୍ଥାନ ମିଳିଲା ନାହିଁ । ତେଣୁ ସେମାନଙ୍କର ଉପାସନାର ସ୍ଥଳୀ ବି ଅଲଗା ହେଲା ।

ମନ୍ଦିରର ସ୍ଥାପତ୍ୟ ଓ ତା'ର ରୂପରେଖ ପୂର୍ବବର୍ତ୍ତୀ କୀର୍ତ୍ତିଗୁଡ଼ିକଠାରୁ ଅଲଗା ହୋଇଗଲା । ପଥରରୁ କଟାହୋଇ ଗଢ଼ାହୋଇଥିବା ମନ୍ଦିର ପରିବର୍ତ୍ତେ ଅବାଧଭାବେ ଦଣ୍ଡାୟମାନ ମନ୍ଦିରମାନ ଗଢ଼ିଉଠିଲା । ଆନୁଷ୍ଠାନିକ କାର୍ଯ୍ୟ ମାଧ୍ୟମରେ ଗଠିତ ହୋଇ ଏଗୁଡ଼ିକ ପ୍ରଥମେ କ୍ଷୁଦ୍ର ହୋଇଥିଲେ ମଧ୍ୟ ପରେ ବୃହଦାକାରରେ ପରିଣତ ହେଲେ । ଚୋଳମାନଙ୍କର ଉତ୍ତରକାଳରେ ବିସ୍ତୃତ ଅଞ୍ଚଳରେ ବଡ଼ ବଡ଼ ମନ୍ଦିରମାନ ଗଢ଼ିଉଠିଲା । ଏକାଧିକ ବେଢ଼ା ସମ୍ବଳିତ ପ୍ରମୁଖ ମନ୍ଦିର ପରିସର ଭିତରେ ଆହୁରି ଅନେକ ଛୋଟ ଛୋଟ ଦେବାଳୟ ରହିଲା । ସଂପୃକ୍ତ ଅଞ୍ଚଳରେ ବ୍ରହ୍ମଦେୟର ଉପସ୍ଥିତି ହେତୁ ମନ୍ଦିର ଉପରେ ବ୍ରାହ୍ମଣମାନଙ୍କର ନିୟନ୍ତ୍ରଣ ପ୍ରୋତ୍ସାହିତ ହେଲା, ଯଦିଓ ମନ୍ଦିର ପାଇଁ ସ୍ୱତନ୍ତ୍ର ଅନୁଦାନର ବ୍ୟବସ୍ଥା ଥିଲା । ଏ ଅଞ୍ଚଳଗୁଡ଼ିକ ବାଣିଜ୍ୟ, ବିନିମୟ ତଥା ପ୍ରଶାସନିକ କେନ୍ଦ୍ରରେ ପରିଣତ ହେଲା । ପୂର୍ବୋକ୍ତ କ୍ଷେତ୍ରରେ ଏହାପ୍ରତି ବଣିକମାନେ ଆକୃଷ୍ଟ ହେଲେ ଯେଉଁମାନଙ୍କ ମଧ୍ୟରୁ କେହି କେହି ବ୍ରାହ୍ମଣମାନଙ୍କ ସହିତ ମିଶି ମନ୍ଦିର ପରିଚାଳନାରେ ଭାଗ ନେଲେ । ବଣିକ

ତଥା ବଣିକ ସଂଘମାନଙ୍କ ଅନୁଦାନରେ ନଗରରେ ଛୋଟ ଛୋଟ ମନ୍ଦିରମାନ ଗଢ଼ିଉଠିଲା; ସେଗୁଡ଼ିକର ରକ୍ଷଣାବେକ୍ଷଣ କରାଗଲା । ନଗରର ଅଧିବାସୀମାନଙ୍କର ଏକ ଗୋଷ୍ଠୀ ସହିତ ମନ୍ଦିରଗୁଡ଼ିକ ଜଡ଼ିତ ହୋଇ ରହିଲେ । ବୌଦ୍ଧ ସ୍ତୁପଗୁଡ଼ିକ ଭଳି ସମୃଦ୍ଧ ମନ୍ଦିରଗୁଡ଼ିକ ପଛରେ ବ୍ୟାପକ ଭୌଗୋଳିକ ଅଞ୍ଚଳର ଲୋକମାନଙ୍କର ପୃଷ୍ଠପୋଷକତା ଥିବା କଥା ବଣିକ ଓ ଭୂମି ଅଧିକାରୀମାନଙ୍କଠାରୁ ତଥା ମନ୍ଦିର ଲାଭ କରିଥିବା ଦାନରୁ ଜଣାପଡ଼େ ।

ଦାନ ସୂତ୍ରରେ ମିଳିଥିବା ସମ୍ପଦ ଓ ଜମି, ଗ୍ରାମ ପରିଷଦର ଅବଦାନ, ଅନୁଦାନ ଆକାରରେ ମିଳିଥିବା ଟିକସ, ଭକ୍ତମାନଙ୍କର ଦାନ ଏବଂ ଗ୍ରାମାଞ୍ଚଳରେ ବ୍ୟାଙ୍କର ହିସାବରେ କାର୍ଯ୍ୟ କରିଥିବାରୁ ମିଳିଥିବା ଲାଭ ଉପରେ ମନ୍ଦିରର ଆୟ ନିର୍ଭରଶୀଳ ଥିଲା । କର୍ମକାଣ୍ଡ ସମାହିତ କରୁଥିବା ପୂଜକ, ବିବରଣୀ ରକ୍ଷକ, ପରିଚାଳନା ଦାୟିତ୍ୱ ତୁଲାଉଥିବା ପ୍ରଶାସକ ତଥା ଲେଖାକାର ପ୍ରଭୃତି ସମସ୍ତଙ୍କ ଦାୟିତ୍ୱ ମନ୍ଦିର ଗ୍ରହଣ କରୁଥିଲା । ଏହା ବାଦ୍, ମନ୍ଦିର ଭବନର ସେବା ଓ ତା'ର ସୁରକ୍ଷା ସହ ଜଡ଼ିତ ବ୍ୟକ୍ତିମାନଙ୍କ କଥା ମଧ୍ୟ ମନ୍ଦିରକୁ ବୁଝିବାକୁ ପଡୁଥିଲା । ମନ୍ଦିରର ମାଲିକାନାରେ ଥିବା ପଶୁମାନଙ୍କର ଦାୟିତ୍ୱ ଜଣେ ପେଷାଦାର ରଖୁଆଳ ତୁଲାଉଥିଲା । ଆଉ ଟିକେ ତଳସ୍ତରର କର୍ମକାଣ୍ଡ ସହ ଜଡ଼ିତ ଲୋକମାନେ ହେଲେ ରାନ୍ଧୁଣିଆ, ମାଳାକାର, ସଙ୍ଗୀତଜ୍ଞ, ନର୍ତ୍ତକ ତଥା ଦେବଦାସୀ ପ୍ରଭୃତି । ଭକ୍ତିର ନିଦର୍ଶନ ସ୍ୱରୂପ ମନ୍ଦିର ଲାଗି ମୁକ୍ତ ସେବା ଯୋଗାଇଦେବାକୁ ଅନେକଙ୍କୁ ଉତ୍ସାହିତ କରାଯାଉଥିଲା; ମାତ୍ର ଅନେକ ନିଜର ଗୁଜୁରାଣ ମେଣ୍ଟାଇବା ଲାଗି ମନ୍ଦିର ଉପରେ ନିର୍ଭର କରୁଥିଲେ । ମନ୍ଦିରର ଉଦ୍‌ବୃତ୍ତ ସମ୍ବଳ ଲାଭ କରିବା ଆଶାରେ କାଂସ୍ୟ କାରିଗର, ପଥର କଟାଳୀ ଏବଂ ବୟନକାରୀମାନଙ୍କ ପରି ବ୍ୟବସାୟୀ ତଥା କାରିଗର ମଧ୍ୟ ମନ୍ଦିର ପ୍ରତି ଆକୃଷ୍ଟ ହେଉଥିଲେ ।

ଦୀର୍ଘକାଳ ଧରି ଏକ ବଡ଼ ମନ୍ଦିର ନିର୍ମାଣ ପ୍ରକ୍ରିୟାରେ ନିର୍ମାଣ ଉପାଦାନ ତଥା ଶ୍ରମ ବ୍ୟବସ୍ଥା, କୁଶଳୀ କାରିଗର ଏବଂ ଏହାର ଦୀର୍ଘକାଳ ରକ୍ଷଣାବେକ୍ଷଣର ଭାର ବହନ କରୁଥିବା ବ୍ୟକ୍ତିମାନଙ୍କର ସଂପୃକ୍ତି ରହୁଥିଲା । ଫଳରେ ସେ ଅଞ୍ଚଳର ଅର୍ଥନୈତିକ ଯୋଗସୂତ୍ରରେ ପରିବର୍ତ୍ତନ ପରିଲକ୍ଷିତ ହେଉଥିଲା । ଯେତେବେଳେ ମନ୍ଦିରର ରକ୍ଷଣାବେକ୍ଷଣ ପାଇଁ ମିଳୁଥିବା ବ୍ୟାପକ ପୃଷ୍ଠପୋଷକତା ବନ୍ଦ ହୋଇଯାଏ, ମନ୍ଦିରର ମରାମତି ସମ୍ଭବ ହୁଏ ନାହିଁ; ସ୍ଥଳବିଶେଷରେ ଏହା ପରିତ୍ୟକ୍ତ ମଧ୍ୟ ହୋଇଯାଏ । ରକ୍ଷଣାବେକ୍ଷଣର ଦାୟିତ୍ୱ ନେଇଥିବା ବ୍ୟବସ୍ଥା ଭୁଶୁଡ଼ି ପଡ଼ିଲେ ମନ୍ଦିର ଧ୍ୱଂସ ହୋଇଯାଏ । ଅର୍ଥାତ୍ କେବଳ ଯେ ଅଭିଯାନ ବା ଉଦ୍ଦେଶ୍ୟମୂଳକ ଧ୍ୱଂସସାଧନ ଦ୍ୱାରା ଏହା କ୍ଷୟ ପାଏ, ତାହା ନୁହେଁ । ତେଣୁ ଅନ୍ୟାନ୍ୟ କୀର୍ତ୍ତି ଭଳି ଏକ ମନ୍ଦିରର ପତନ ପଛରେ ମଧ୍ୟ କାରଣ ସ୍ୱରୂପ ବହୁବିଧ ପରିବର୍ତ୍ତନ ରହିଥାଏ ।

ମନ୍ଦିରର ରକ୍ଷଣାବେକ୍ଷଣ ଯେକୌଣସି ବୃହତ୍ତର ଅନୁଷ୍ଠାନର ରକ୍ଷଣାବେକ୍ଷଣ ସହ ତୁଳନୀୟ । ଦଶ ବର୍ଷର ସମୟ ନେଇ ତିଆରି ହୋଇଥିବା ତାଞ୍ଜାଭୁରର ମନ୍ଦିର ସେହି କାଳଖଣ୍ଡର ସବୁଠାରୁ ବିତ୍ତ ସମ୍ପନ୍ନ ମନ୍ଦିର ଥିଲା । ଏହାର ହାରାହାରି ଆୟ ଥିଲା 500 ପାଉଣ୍ଡ ଟ୍ରୟର ସୁନା, 250 ପାଉଣ୍ଡ ଟ୍ରୟର ମୂଲ୍ୟବାନ୍ ପଥର ଏବଂ 600 ପାଉଣ୍ଡ ଟ୍ରୟର ରୁପା । ଏସବୁ ଆୟ ଦାନ, ଟିକସ ଏବଂ ତିନିଶହ ଗ୍ରାମରୁ ଆଦାୟ କରାଯାଉଥିବା ରାଜସ୍ୱ ଦ୍ୱାରା ସମ୍ଭବ ହୋଇଥିଲା । ମନ୍ଦିରରେ ନିଯୁକ୍ତି ପାଇଥିବା ଛଅଶହ କର୍ମଚାରୀଙ୍କର ଦାୟିତ୍ୱ ମଧ୍ୟ ମନ୍ଦିର ତୁଲାଉଥିଲା । ସେମାନଙ୍କ ମଧ୍ୟରେ ଦେବଦାସୀ ଥିଲେ; 212 ପରିଚାରକ, ଯଥା- କୋଷାଧ୍ୟକ୍ଷ, ଲେଖାକାର, ବିବରଣୀ ଲେଖକ ଏବଂ ଜଗୁଆଳୀ, 57 ଜଣ ସଙ୍ଗୀତଜ୍ଞ ଏବଂ ଶାସ୍ତ୍ର ପାଠକ, ପୁନଶ୍ଚ ବିଭିନ୍ନ ଧରଣର କାରିଗର (ଯଥା- ବଢ଼େଇ, ବଣିଆ, ଦର୍ଜି, ପିତ୍ତଳ କାମ କରୁଥିବା ଲୋକ ଏବଂ ମନ୍ଦିର ଉପରେ ନିର୍ଭରଶୀଳ ଶହ ଶହ ପୂଜକ) ଅନ୍ତର୍ଭୁକ୍ତ ଥିଲେ । ମନ୍ଦିର କର୍ତ୍ତୃପକ୍ଷଙ୍କ ଲାଗି ଆୟର ସ୍ରୋତ ବଜାୟ ରଖିବା ଏକ ଆବଶ୍ୟକତା ଥିଲା । ବିଭିନ୍ନ ବାଣିଜ୍ୟିକ ସଂସ୍ଥାରେ ପୁଞ୍ଜିଲଗାଣ, ବ୍ୟାଙ୍କର ହିସାବରେ ଭୂମିକା ନିର୍ବାହ, ଗ୍ରାମ ପରିଷଦକୁ ଋଣ ପ୍ରଦାନ, ବାର୍ଷିକ 12ରୁ 15 ଶତକଡ଼ା ହାରରେ ସୁଧ ଅସୁଲି ତଥା ଅନ୍ୟାନ୍ୟ ସଂଥାଗୁଡ଼ିକୁ ଋଣ ଦେବା ମାଧ୍ୟମରେ ମନ୍ଦିରଗୁଡ଼ିକ ନିଜ ଆୟର ଉତ୍ସ ଠିକ୍ ରଖୁଥିଲେ । ଏହି ପ୍ରକ୍ରିୟାରେ ମନ୍ଦିରଗୁଡ଼ିକ ବିତ୍ତ ସମ୍ପନ୍ନ ବୌଦ୍ଧ ବିହାରଗୁଡ଼ିକର ପରମ୍ପରାକୁ ଅନୁସରଣ କରୁଥିଲେ ।

## ଜାତି ଏବଂ ସଂପ୍ରଦାୟ

ଉଚ୍ଚ ବର୍ଗର ମଙ୍ଗଳ କାମନାକୁ ପ୍ରାଥମିକ ଗୁରୁତ୍ୱ ଦେଉଥିବାରୁ ବ୍ରହ୍ମଦେୟ ବ୍ୟବସ୍ଥା ରାଜନୈତିକ ସମନ୍ୱୟର ଏକ କାରକ ରୂପେ କାର୍ଯ୍ୟ କଲା । ଏହି ବ୍ୟବସ୍ଥା ମୁତାବକ କେତେକ ଅଞ୍ଚଳରେ ନୂଆକରି ବର୍ଣ୍ଣ ବ୍ୟବସ୍ଥା ପ୍ରବେଶ କଲା ଏବଂ ଆଉ କେତେକ କ୍ଷେତ୍ରରେ ଏହା ପୂର୍ବାପେକ୍ଷା ଅଧିକ ସୁଦୃଢ଼ ହେଲା । ପୂର୍ବ ସମୟରେ ପାର୍ଥକ୍ୟ ସତ୍ତ୍ୱେ ସମାଜରେ ଯେଉଁ ପରିଜନ ସମ୍ପର୍କ ଥିଲା, ତାହା ବଦଳରେ ଜାତି ପ୍ରଥାର ପ୍ରବର୍ତ୍ତନ ପାଇଁ ରାସ୍ତା ଖୋଲିଗଲା । ଯଦିଓ ସାମାଜିକ ବର୍ଗୀକରଣ ଜାତିର ଆଧାରରେ ହୋଇଥିଲା, ଆଞ୍ଚଳିକ ପରିସ୍ଥିତି ଅନୁସାରେ ସମଯୋଜନ ଲାଗି କେତେକ ଗୋଷ୍ଠୀକୁ ଗ୍ରହଣ କରିବା ବା ବର୍ଜନ କରିବା ଭିତ୍ତିରେ କାର୍ଯ୍ୟ କରାଗଲା । ଜାତି ବ୍ୟବସ୍ଥା ମୁତାବକ ଶୂଦ୍ରମାନଙ୍କର ସମତୁଲ ବେଲାଳମାନେ ବ୍ରାହ୍ମଣମାନଙ୍କ ପରେ ଦ୍ୱିତୀୟ ସ୍ଥାନ ହାସଲ କଲେ । ତେବେ ବେଲାଳମାନଙ୍କର

ଆର୍ଥିକ ସ୍ଥିତିର ପରିସର ବ୍ୟାପକ ଥିଲା । ସମାଜର ବାକି ଲୋକମାନେ ଧୀରେ ଧୀରେ ଜାତି ବ୍ୟବସ୍ଥା ଭିତରେ ଫେଣ୍ଟି ହୋଇଗଲେ ।

ବୈଦିକ ବ୍ରାହ୍ମଣ୍ୟବାଦର ଅବକ୍ଷୟ ଘଟିଥିଲା ସତ, ମାତ୍ର ଏହା ତଥାପି ବ୍ରାହ୍ମଣ ଓ ରାଜାମାନଙ୍କ ଦ୍ୱାରା ଆଦୃତ ହେଉଥିଲା । ଏହାର ଗୁରୁତ୍ୱ ଓ ସ୍ୱାତନ୍ତ୍ର୍ୟ ଉପର ଜାତିମାନଙ୍କ କ୍ଷେତ୍ରରେ ସୀମିତ ଥିଲା । ଶୈବ ଓ ବୈଷ୍ଣବ ସଂପ୍ରଦାୟମାନଙ୍କର ଅଭ୍ୟୁଦୟ ସହିତ ମନ୍ଦିରର ଗୁରୁତ୍ୱ ବୃଦ୍ଧି ପାଇଲା । ବ୍ରାହ୍ମଣ ଏବଂ ଧନୀ ବେଲାଳମାନେ ମନ୍ଦିରଗୁଡ଼ିକର ପରିଚାଳନା କରୁଥିଲେ (ବିଶେଷତଃ ଗ୍ରାମୀଣ କ୍ଷେତ୍ରରେ) । ଏହି ଅସ୍ମିତା ପୂର୍ବରୁ ଆରମ୍ଭ ହୋଇଥିବା ବ୍ୟବସ୍ଥା ଅନୁସାରେ ସମାଜକୁ ବ୍ରାହ୍ମଣ ଓ ଶୂଦ୍ର ଏହିପରି ଦୁଇ ସାମାଜିକ ଗୋଷ୍ଠୀରେ ବିଭାଜିତ କରାଇଲା । ମନ୍ଦିର ଏବଂ ଶୈବ ମଠଗୁଡ଼ିକ ମଧ ବୌଦ୍ଧ ଏବଂ ଜୈନ ଅନୁଷ୍ଠାନଗୁଡ଼ିକର ଧାରା ଅନୁସରଣ କଲେ ଏବଂ ବଣିକମାନଙ୍କର ପୃଷ୍ଠପୋଷକତା ଦାବି କଲେ । ପୃଷ୍ଠପୋଷକତା ଲାଗି ପ୍ରତିଯୋଗିତା ହେବାଫଳରେ ବିଭିନ୍ନ ସଂପ୍ରଦାୟ ମଧରେ ଭିନ୍ନ ଭିନ୍ନ ସମ୍ବନ୍ଧ ପ୍ରତିଷ୍ଠିତ ହେଲା ଏବଂ ବେଳେବେଳେ ପରିସ୍ଥିତି ହିଂସ୍ର ତଥା ଶତ୍ରୁଭାବାପନ୍ନ ହୋଇଉଠିଲା । ବୌଦ୍ଧ ଏବଂ ଶୈବମାନଙ୍କ ମଧରେ ଥିବା ପୁରୁଣା ଶତ୍ରୁତା ଜୈନ ଏବଂ ଶୈବମାନଙ୍କ ମଧରେ ଶତ୍ରୁତା ଆଡ଼କୁ ସଂପ୍ରସାରିତ ହେଲା । ଶିବଭକ୍ତମାନଙ୍କର ଜୀବନୀ ସମ୍ବଳିତ ଦ୍ୱାଦଶ ଶତାବ୍ଦୀର ରଚନା 'ପେରିଆ ପୁରାଣମ୍' ଏହି ଶତ୍ରୁତା ବୃଦ୍ଧିରେ ସହାୟକ ହେଲା । ଏଥିସହିତ ଜୈନ ମନ୍ଦିରଗୁଡ଼ିକ ବଦଳାଇ ଶୈବମାନଙ୍କ ବ୍ୟବହାର ଉପଯୋଗୀ କରିବାର ଚେଷ୍ଟା କରାଗଲା । କୁହାଗଲା ଯେ ଶିବଙ୍କ ସହ ଜଡ଼ିତ ହୋଇ ରାଜାମାନେ ଅଧିକ ଗୌରବ ଅର୍ଜନ କରିଛନ୍ତି । ଚିତ୍ର ଏବଂ ସ୍ଥାପତ୍ୟରେ ରାଜାଙ୍କୁ ପ୍ରଭୁଙ୍କର ଜଣେ ସମ୍ଭ୍ରାନ୍ତ ସେବକ ରୂପେ ପ୍ରଦର୍ଶନ କରାଗଲା । ରାଜାମାନେ ଅନେକ କ୍ଷେତ୍ରରେ ବିସ୍ତାରିତ ହେଉଥିବା ଧର୍ମର ପୃଷ୍ଠପୋଷକତା କରୁଥିଲେ । ଅନେକ ଅଞ୍ଚଳରେ ଏହି ସୁବିଧା ଶୈବଧର୍ମକୁ ପ୍ରାପ୍ତ ହେଉଥିଲା । ନୀତିନିୟମରେ ପରିବର୍ତ୍ତନ ଘଟାଇ ବହୁଳ ସଂଖ୍ୟକ ଉପାସକଙ୍କୁ ନିଜଆଡ଼କୁ ଆକୃଷ୍ଟ କରିବାକୁ ଚେଷ୍ଟା କରୁଥିବା ଏବଂ ପୃଷ୍ଠପୋଷକତା ଲାଗି ପ୍ରତିଯୋଗିତା ଚଳାଇଥିବା ବୈଷ୍ଣବମାନଙ୍କ ସହିତ ମଧ ବେଳେବେଳେ ସଂଘର୍ଷ ହେଉଥିଲା । ଭାଗବତ ପୁରାଣରେ ବୈଷ୍ଣବମାନଙ୍କର ବିଶ୍ୱଦୃଷ୍ଟି ପ୍ରତିଫଳିତ ହୋଇଛି । ପୌରାଣିକ ଧର୍ମଗୁଡ଼ିକର ଉପାସନା ପଦ୍ଧତିମାନ 'ଆଗମ'ଗୁଡ଼ିକରେ ସୂଚିତ ହୋଇଅଛି ।

ଦ୍ୱାଦଶ ଶତାବ୍ଦୀ ବେଳକୁ ବିତ୍ତବାନ୍ ବେଲାଳମାନେ ମନ୍ଦିରର କ୍ଷମତାଶାଳୀ କାର୍ଯ୍ୟକର୍ତ୍ତାରେ ପରିଣତ ହେଲେ । ସାମାଜିକ ସମ୍ପର୍କରେ ଜାତି ସଚେତନତା ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରୁଥାଏ, ତେବେ କାର୍ଯ୍ୟ କ୍ଷେତ୍ରରେ ବର୍ଣ୍ଣ ବ୍ୟବସ୍ଥା ଏତେ ଗୁରୁତ୍ୱପୂର୍ଣ୍ଣ ହୋଇ ନଥାଏ । ଜାତିପ୍ରଥାର ସୂତ୍ର ମୁତାବକ ସମାଜ ବ୍ରାହ୍ମଣ ଏବଂ ଅବ୍ରାହ୍ମଣ ଏହିପରି ଦୁଇ

ଭାଗରେ ବିଭକ୍ତ ହୋଇଥାଏ । ଅବ୍ରାହ୍ମଣମାନଙ୍କୁ କ୍ଷତ୍ରିୟ, ବୈଶ୍ୟ ଏହିଭଳି ସ୍ପଷ୍ଟଭାବେ ବିଭକ୍ତ କରାଯାଇ ନ ଥାଏ, ତେବେ ଶୂଦ୍ରମାନେ ସ୍ପଷ୍ଟଭାବେ ବାରିହୋଇ ପଡୁଥାନ୍ତି । ଶୂଦ୍ରମାନଙ୍କୁ ପୁଣି ଦୁଇଭାଗରେ ବିଭକ୍ତ କରାଯାଇଥାଏ; ଯଥା- ପରିଚ୍ଛନ୍ନ ଶୂଦ୍ର, ଯେଉଁମାନେ ଛୁଇଁଲେ ଜଣେ ଅପବିତ୍ର ହେବନାହିଁ, ଏବଂ ଅପରିଚ୍ଛନ୍ନ ଶୂଦ୍ର, ଯେଉଁମାନଙ୍କୁ ମନ୍ଦିର ପ୍ରବେଶ ନିଷେଧ କରାଯାଏ । କାରିଗର ଏବଂ ହସ୍ତଶିଳ୍ପୀମାନଙ୍କୁ ନେଇ ମଧ୍ୟ ଜାତି ବିଭାଜନ କରାଯାଇଥାଏ । ଦାସତ୍ୱ ପ୍ରଥା ଏକ ପ୍ରତିଷ୍ଠିତ ବ୍ୟବସ୍ଥା ଥିଲା । କେତେକ ଦାସ କୃଷି ଏବଂ ହସ୍ତଶିଳ୍ପ ଉତ୍ପାଦନ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଘରୋଇ କାର୍ଯ୍ୟରେ ନିଯୁକ୍ତ ହେଉଥିଲେ । କେତେକ ଦାସଙ୍କୁ ମନ୍ଦିରକୁ ବିକ୍ରି କରିଦିଆଯାଉଥିଲା । ଯେଉଁମାନେ ଦରିଦ୍ର ଥିଲେ ଅଥବା ଦୁର୍ଭିକ୍ଷ ସମୟରେ ଚଳଣି ପାଇଁ ଯେଉଁମାନଙ୍କର ଆୟ ନ ଥିଲା, ବିଶେଷ ଭାବରେ ସେମାନଙ୍କୁ ଏ ଦଶା ଭୋଗ କରିବାକୁ ପଡୁଥିଲା ।

ମନ୍ଦିର ମଧ୍ୟ ସାମାଜିକ ପରିବର୍ତ୍ତନର ଏକ ଆଧାର ରୂପେ କାର୍ଯ୍ୟ କରୁଥିଲା । ଆନ୍ଧ୍ରର ଉପକୂଳ ଅଞ୍ଚଳରେ ଦ୍ରାକ୍ଷାରାମ ମନ୍ଦିରକୁ ବହୁଳ ସଂଖ୍ୟାରେ ଗାଈ ଦାନ ଦିଆଯାଇଥିଲା । ଦୁଗ୍ଧ ଉତ୍ପାଦନରୁ ମିଳୁଥିବା ଅର୍ଥ ଓ ଗୋରୁଗୋଠ ମନ୍ଦିର ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ସ୍ଥାନୀୟ ବୟା ଆଦିବାସୀ ଗୋଷ୍ଠୀ ଏହାର ଯତ୍ନ ନେଉଥିଲେ । ସମୟକ୍ରମେ ମନ୍ଦିର ସମ୍ପତ୍ତିର ଯତ୍ନ ନେଉଥିବାରୁ ବୟାମାନେ ଜାତିଚ୍ୟୁତ ସ୍ଥିତିରୁ ଶୂଦ୍ରକୁ ଉନ୍ନୀତ ହେଲେ । ଶୂଦ୍ର ହିସାବରେ ସେମାନେ ପ୍ରଶାସନର ନିମ୍ନ ଅଳିନ୍ଦରେ ପ୍ରବେଶ କଲେ ଏବଂ ଧୀରେ ଧୀରେ ଉଚ୍ଚ କାର୍ଯ୍ୟାଳୟରେ ସ୍ଥାନ ଲାଭ କଲେ ।

ନୂତନ କାର୍ଯ୍ୟାବଳୀ ଫଳରେ ବହୁପ୍ରକାରର ସାମଗ୍ରୀ ସୃଷ୍ଟିହେଲା, ଯେଉଁଗୁଡ଼ିକର ବିନିମୟ ଜରୁରୀ ହୋଇପଡ଼ିଲା । ସ୍ୱାଭାବିକ ଭାବେ ଯେଉଁମାନେ କଞ୍ଚାମାଲ ଯୋଗାଉଥିଲେ, ପରିମାର୍ଜିତ ଦ୍ରବ୍ୟ ଉତ୍ପାଦନ କରୁଥିଲେ ଏବଂ ସେଗୁଡ଼ିକର ବିତରଣ କରୁଥିଲେ, ସେମାନଙ୍କର ସାମାଜିକ ଗୁରୁତ୍ୱ ବୃଦ୍ଧି ପାଇଲା । ଏହା ଜାତିଭିତ୍ତିକ ସମାଜ ବ୍ୟବସ୍ଥାର ସାମର୍ଥ୍ୟକୁ ପ୍ରଭାବିତ କଲା । ଏହାଫଳରେ ଦୁଇଟି ନୂଆ ଗୋଷ୍ଠୀର ଉଦ୍‌ଭବ ହେଲା, ଯେଉଁ ଦୁଇଟିକୁ ଦକ୍ଷିଣ ଏବଂ ବାମ ପାର୍ଶ୍ୱର ଗୋଷ୍ଠୀ ବା 'ବଳଙ୍ଗଇ' ଏବଂ 'ଇଡ଼ଙ୍ଗଇ' ବୋଲି କୁହାଗଲା । ଏହା ଥିଲା ଅଣବ୍ରାହ୍ମଣ ଏବଂ ଅଣବେଲାଳ ଗୋଷ୍ଠୀ ମଧ୍ୟରେ ଏକ ବିଭାଜନ । କୃଷି ଶ୍ରମିକମାନେ ଏଥିରେ ସାମିଲ୍ ଥିଲେ; ସେମାନେ ଉଚ୍ଚ ଜାତିମାନଙ୍କର ସେବା କରୁଥିଲେ । ଏହି ବିଭାଜନ ଚୋଳମାନଙ୍କ ଶାସନକାଳରେ ଆରମ୍ଭ ହୋଇଥିଲା, ତେବେ ତ୍ରୟୋଦଶ ଶତାବ୍ଦୀ ପରେ ଏହା ସ୍ପଷ୍ଟ ହୋଇଉଠିଲା । ଯେହେତୁ ଡାହାଣ ହାତକୁ ବାମ ହାତଠାରୁ ଉନ୍ନତ ବୋଲି ମନେ କରାଯାଉଥିଲା, ସେହି କାରଣରୁ ଯେଉଁମାନେ ଉଚ୍ଚ ମାନ୍ୟତା ହାସଲ କରିବାକୁ ଚାହୁଁଥିଲେ

ସେମାନେ ବାମରୁ ଡାହାଣ ହାତ ଆଡ଼କୁ ଯିବାକୁ ଚେଷ୍ଟା କଲେ । ବେଳେବେଳେ ଏହା ସ୍ୱତନ୍ତ୍ର ସଂଗଠନର ରୂପ ନେଲା ଏବଂ କମାର, ବଢ଼େଇ ପ୍ରଭୃତି କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀଗତ ଗୋଷ୍ଠୀ ଲାଗି ସ୍ୱତନ୍ତ୍ର ସୁବିଧାର ବ୍ୟବସ୍ଥା କରାଇଲା । କେତେକ କୃଷିଭିତ୍ତିକ ଗୋଷ୍ଠୀ ମଧ୍ୟ ଏହି ଯୋଜନାର ଅଂଶ ହେଲେ । ବାଣିଜ୍ୟ ଲାଗି ଆବଶ୍ୟକ ହେଉଥିବା ଦ୍ରବ୍ୟ ଉତ୍ପାଦନରେ ସହାୟତା କରୁଥିବା କାରିଗରମାନଙ୍କ ସମ୍ପର୍କରେ ବଣିକ ସଂଘଗୁଡ଼ିକ ଅଧିକ ସଚେତନ ହେଉଥିଲେ । ଏହା ଏକ ନୂଆ ପ୍ରକାରର ଜାତି ଗୋଷ୍ଠୀବଦ୍ଧତା ସୃଷ୍ଟିକଲା, ଯେଉଁଥିରେ ବଣିକ ଏବଂ କାରିଗରମାନଙ୍କର ଯୋଗସୂତ୍ର ଉଭୟପକ୍ଷ ଲାଗି ଉପଯୋଗୀ ସାବ୍ୟସ୍ତ ହେଲା । ବାମ-ହାତ ଏବଂ ଡାହାଣ-ହାତ ଆକାରର ବିଭାଜନ ଏବଂ ଉଭୟଙ୍କ ସହ ସଂଯୋଜିତ ମାନ୍ୟତା ଜାତିଗତ ଶତ୍ରୁତା ଆଡ଼କୁ ଇଙ୍ଗିତ କଲା ।

ଅର୍ଥନୈତିକ ସ୍ୱାର୍ଥ ବେଳେବେଳେ ବର୍ଣ୍ଣ ବ୍ୟବସ୍ଥାକୁ ଏଡ଼ାଇଯାଏ । ବ୍ରାହ୍ମଣ ବଣିକମାନେ ବିନା ଦ୍ୱିଧାରେ ସମୁଦ୍ର ପାରି ହୋଇ ଯାଉଥିଲେ । ଅନ୍ୟପକ୍ଷରେ, ଯେଉଁମାନେ ଦରବାର ପାଇଁ କାର୍ଯ୍ୟ କରୁଥିଲେ ସେମାନଙ୍କୁ କଦବା କେମିତି ସ୍ୱତନ୍ତ୍ର ସୁବିଧା ପ୍ରଦାନ କରାଯାଉଥିଲା । ରାଜା ରାଜେନ୍ଦ୍ରଙ୍କର ତମ୍ବାପଟା ଅଧାଦେଶର ଖୋଦନକାରୀ, ରାଜପରିବାର ଲାଗି ବସ୍ତ୍ରବୟନ କରୁଥିବା କାଞ୍ଚିପୁରମ୍‌ର ବୁଣାକାର, ରାଜାଙ୍କ ପ୍ରାସାଦ ବା ମନ୍ଦିରରେ କାମ କରୁଥିବା ପଥର ମିସ୍ତ୍ରୀମାନେ ଏହି ସୁବିଧା ଲାଭ କରୁଥିଲେ । ସେମାନଙ୍କୁ କେତେକ ଦେୟରୁ ମୁକ୍ତ କରାଯାଇଥିଲା । ଯଦିଓ ତନ୍ତୀମାନଙ୍କ ଭଳି କେହି କେହି ନିମ୍ନ ମାନ୍ୟତା ସମ୍ପନ୍ନ ଥିଲେ, ତଥାପି ସେମାନେ ନିଜ ଜାତିର ଅନ୍ୟମାନଙ୍କ ତୁଳନାରେ ଅଧିକ ସମ୍ମାନ ପ୍ରାପ୍ତ ହେଉଥିଲେ । କେତେକ କ୍ଷେତ୍ରରେ ମିଶ୍ର ଜାତିର ଉଦାହରଣ ଦେଖିବାକୁ ମିଳେ । ଏଥିରୁ ପ୍ରମାଣିତ ହୁଏ ଯେ ଯଦିଓ ଜାତିପ୍ରଥାର କଠୋରତା ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା, ବାସ୍ତବ କ୍ଷେତ୍ରରେ କଠୋରତାରେ କିଛିଟା ହ୍ରାସ ମଧ୍ୟ ସମ୍ଭବ ହେଉଥିଲା ।

ମନ୍ଦିରଗୁଡ଼ିକୁ ମିଳିଥିବା ଦାନର ବିବରଣୀ ଅନୁଧ୍ୟାନ କଲେ ଢେର୍ ସଂଖ୍ୟକ ମହିଳା ଭକ୍ତମାନେ ଦାନ କରୁଥିବା କଥା ଜଣାପଡ଼େ । ନବମ ଏବଂ ଦଶମ ଶତାବ୍ଦୀରେ ଏହା ଅଧିକ ଥିଲା । ଏହା ପରେ ଏଥିରେ ହ୍ରାସ ଘଟିଲା ଏବଂ ତ୍ରୟୋଦଶ ଶତାବ୍ଦୀବେଳକୁ ଏହା ସମ୍ପୂର୍ଣ୍ଣ ଊଣା ହୋଇଗଲା । ଏମାନେ ଥିଲେ ଆର୍ଥିକ ଦିଗରୁ ସ୍ୱଚ୍ଛଳ ପରିବାରର ମହିଳା । ଅବଶ୍ୟ ଦେବଦାସୀମାନଙ୍କର ଦାନ ସମ୍ପର୍କରେ ମଧ୍ୟ ଲିପିବଦ୍ଧ ହୋଇଛି ।

ଉନ୍ନତ ଏବଂ ସ୍ୱଚ୍ଛଳ ମନ୍ଦିର ସହ ସଂଯୋଜିତ ଦେବଦାସୀ ପ୍ରଥାକୁ ମନ୍ଦିରର ଅତିରିକ୍ତ ଆୟର ଏକ ଉତ୍ସ ରୂପେ ଦେଖାଯାଏ । ଯେଉଁ କ୍ଷେତ୍ରରେ ଦେବଦାସୀମାନେ କେବଳ

ମନ୍ଦିର ପରିଚାରିକା ସ୍ତରକୁ ଅବତରିତ ହୋଇଥିଲେ, ସେ କ୍ଷେତ୍ରରେ ସେମାନଙ୍କୁ ସହଜ ସଦ୍‌ଗୁଣ ସମ୍ପନ୍ନର ମାନ୍ୟତା ପ୍ରଦାନ କରାଯାଉଥିଲା । ଅନ୍ୟ ଯେଉଁମାନେ ଅଧିକ କୁଶଳୀ ଥିଲେ, ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖାଯାଉଥିଲା । ସେମାନଙ୍କର ଚାତୁର୍ଯ୍ୟ ଯୋଗୁଁ ସେ ଧରଣର ନାରୀମାନଙ୍କୁ ଯିବା ଆସିବାରେ କିଛି ମାତ୍ରାରେ ସ୍ୱାଧୀନତା ଦିଆଯାଇଥିଲା । ସେମାନେ ଅନ୍ୟାନ୍ୟ ନଗର ମହିଳାମାନଙ୍କ ତୁଳନାରେ ନିଜକୁ ସାମାଜିକ ପ୍ରଥାଠାରୁ ଅଧିକ ଦୂରରେ ରଖିପାରୁଥିଲେ । ଏହାର ଗୋଟିଏ କାରଣ ହେଲା ସେମାନେ ଶିକ୍ଷିତା ଥିଲେ, କଳା, ବିଶେଷକରି ସଙ୍ଗୀତ ଏବଂ ନୃତ୍ୟରେ ପେଷାଦାର ପ୍ରଶିକ୍ଷଣ ଗ୍ରହଣ କରିଥିଲେ । ରାଜପରିବାରର ମହିଳାମାନେ ମଧ୍ୟ ଶିକ୍ଷାପ୍ରାପ୍ତ ହେଉଥିଲେ, ଯାହାଫଳରେ ସେମାନଙ୍କର ଆତ୍ମବିଶ୍ୱାସ ବୃଦ୍ଧି ପାଉଥିଲା ।

ଉପଦ୍ୱୀପ ଅଞ୍ଚଳରେ ରାଜକୀୟ ପୃଷ୍ଠପୋଷକତାର ଏକ ଲକ୍ଷଣୀୟ ବିଭବ ଥିଲା ଅନେକ ସମୟରେ ରାଣୀମାନଙ୍କର ପୃଷ୍ଠପୋଷକ ସାଜିବା ଏବଂ ପ୍ରଶାସନରେ ସକ୍ରିୟ ଆଗ୍ରହ ପ୍ରଦର୍ଶନ କରିବା । ଇକ୍ଷ୍ୱାକୁ, ପଲ୍ଲବ, ଗଙ୍ଗ, ଚୋଳ ଏବଂ ଚାଲୁକ୍ୟ ବଂଶର ଉତ୍ତରକାଳର ଶାସନରେ ଏହା ପରିଦୃଷ୍ଟ ହୋଇଥିଲା । ଏକାଦଶ ଶତାବ୍ଦୀରେ ଚାଲୁକ୍ୟ ଦରବାରରେ ବିହ୍ଲଣଙ୍କ ଦ୍ୱାରା ରଚିତ 'ବିକ୍ରମଦେବ ଚରିତ' ଭଳି ରାଜଦରବାରର ସାହିତ୍ୟରେ ନାରୀମାନଙ୍କୁ ଅବସରବାଦୀ, ଭାବବିଳାସୀ ଭାବରେ ଉପସ୍ଥାପନ କରାଯାଇଛି ଏବଂ ସେମାନେ ରାଜ୍ୟ ବ୍ୟାପାରରେ ସଂଶ୍ଳିଷ୍ଟ ହୁଅନ୍ତି ନାହିଁ ବୋଲି ମଧ୍ୟ କୁହାଯାଇଛି । କିନ୍ତୁ ସମସାମୟିକ ଚାଲୁକ୍ୟ ଅଭିଲେଖ ଅନୁସାରେ ରାଣୀମାନେ କେବଳ ଯେ ପୃଷ୍ଠପୋଷକତା ପ୍ରଦାନ କରୁଥିଲେ ତାହା ନୁହେଁ, କେତେକ ସ୍ୱତନ୍ତ୍ର ଅଞ୍ଚଳରେ ପ୍ରଶାସିକାର କାର୍ଯ୍ୟ ମଧ୍ୟ ତୁଲାଉଥିଲେ । ସେମାନେ ନେଉଥିବା ନିଷ୍ପତ୍ତିର ଗୁରୁତ୍ୱ ରହୁଥିଲା ଏବଂ ସେମାନଙ୍କର ଶାସନ ସୁଦୃଢ଼ ଥିଲା ।

ଅନ୍ୟପକ୍ଷରେ, କୃଷକ ପରିବାରର ମହିଳାମାନଙ୍କର ଚଳାଚଳ ସୀମିତ ଥିଲା । ସେମାନେ ପାରିବାରିକ ବୃତ୍ତିର ଅଂଶୀଦାର ରୂପେ କାର୍ଯ୍ୟ କରୁଥିଲେ । ବିଷ୍ଣୁ ଏବଂ ଶିବଙ୍କର ଉପାସନା ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଶ୍ଳୋକର କବୟିତ୍ରୀ ଏବଂ ଗାୟିକା, ଯେଉଁମାନେ ପାରମ୍ପରିକ ପ୍ରତିବନ୍ଧକକୁ ପ୍ରତ୍ୟାଖ୍ୟାନ କରୁଥିଲେ, ସେମାନେ ସବୁଠାରୁ ସ୍ୱାଧୀନ ମହିଳା ଥିଲେ । ଦ୍ୱାଦଶ ଶତାବ୍ଦୀର ଆକ୍‌କାମହାଦେବୀଙ୍କ କବିତାରେ କୁହାଯାଇଥିଲା ଯେ ଏହି ପ୍ରତ୍ୟାଖ୍ୟାନ ସେମାନଙ୍କ ଭକ୍ତିର ଏକ ଅଂଶ । ମାତ୍ର ସେମାନେ ଯଥାର୍ଥ ଉପାସିକା ରୂପେ ଗୃହୀତ ହୋଇଥିବାରୁ ଏବଂ ବୈରାଗ୍ୟ ସେମାନଙ୍କ ଉପାସନାର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇଥିବାରୁ ସେମାନଙ୍କୁ ଏହି ସ୍ୱାଧୀନତା ପ୍ରଦାନ କରାଯାଇଥିଲା ।

## ଭାଷା ଏବଂ ସାହିତ୍ୟ

ସଂସ୍କୃତରେ ଔପଚାରିକ ଶିକ୍ଷା ପାଇଁ ମନ୍ଦିର ଏକ ପୀଠ ରୂପେ କାର୍ଯ୍ୟ କରି ଚାଲିଥିଲା । ଛୋଟ ଛୋଟ ଗ୍ରାମ୍ୟ ମନ୍ଦିରଗୁଡ଼ିକରେ ମନ୍ଦିର ପୂଜକମାନେ ପିଲାମାନଙ୍କୁ ଶିକ୍ଷା ଦେଉଥିଲେ ଅଥବା ବୃହତ୍ତର ମନ୍ଦିର ସଂଲଗ୍ନ ଘଟିକା ବା ମହାବିଦ୍ୟାଳୟରେ ପିଲାମାନଙ୍କୁ ଉଚ୍ଚ ପର୍ଯ୍ୟାୟର ଶିକ୍ଷା ପ୍ରଦାନ କରାଯାଉଥିଲା । ଏହି ଆଧାରରେ ଶିକ୍ଷିତ ବ୍ରାହ୍ମଣମାନେ ମନ୍ଦିର ପୂଜକ ହିସାବରେ ନିଯୁକ୍ତି ଲାଭ କରୁଥିଲେ ଅଥବା ଶିକ୍ଷାଲାଭ କରି ସେ ଅଞ୍ଚଳର ପ୍ରଶାସନ ସହ ଜଡ଼ିତ ହେଉଥିଲେ । ଜୈନ ଏବଂ ବୌଦ୍ଧ ମଠଗୁଡ଼ିକରେ ମଧ୍ୟ ନୂଆ ସନ୍ନ୍ୟାସୀମାନଙ୍କୁ ଶିକ୍ଷା ପ୍ରଦାନ କରାଯାଉଥିଲା, ମାତ୍ର ମଠଗୁଡ଼ିକର ସଂଖ୍ୟା ହ୍ରାସ ପାଇବାରୁ ସେମାନଙ୍କ ପ୍ରଭାବ ଊଣା ହୋଇଆସିଲା । ଶିକ୍ଷାଦାନର ମାଧ୍ୟମ ସଂସ୍କୃତ ହୋଇଥିବାରୁ ଔପଚାରିକ ଶିକ୍ଷା ଦୈନନ୍ଦିନ ଜୀବନଠାରୁ ଦୂରେଇଗଲା । ଶ୍ରେଣୀ ଏବଂ କାରିଗରମାନଙ୍କ ଗୋଷ୍ଠୀରେ ଶିକ୍ଷାନବୀଶମାନଙ୍କୁ ଦିଆଯାଉଥିବା ପ୍ରଶିକ୍ଷଣ ମାଧ୍ୟମରେ ପେଷାଦାର ଶିକ୍ଷା ଚାଲୁରହିଥିଲା । ଏହାସହିତ ଯେଉଁ କ୍ଷେତ୍ରରେ ପ୍ରଶିକ୍ଷଣ ପ୍ରବୀଣତା ପାଇଁ ଦାବି ସମ୍ମିଳିତ ହୋଇ ରହୁଥିଲା ଏବଂ ସଂସ୍କୃତରେ କିଛିଟା ପ୍ରଶିକ୍ଷଣ ମିଳୁଥିଲା, ସେ କ୍ଷେତ୍ରରେ ବୃତ୍ତିନିପୁଣତାର ମାନ୍ୟତା ବୃଦ୍ଧି ପାଉଥିଲା । ଭକ୍ତି କବିତାର ମୌଖିକ ସୂଚନା ଜଣାଇଦିଏ ଯେ ଦର୍ଶକମାନେ ନିହାତି ସାକ୍ଷର ହେବା ଜରୁରୀ ନ ଥିଲା ।

ଏ କାଳଖଣ୍ଡରେ ଆଞ୍ଚଳିକ ଭାଷାର ବ୍ୟାପକ ବ୍ୟବହାର ହେଲା । ପୁଣି, ବହୁବିଧ ଉଦ୍ଦେଶ୍ୟରେ ପ୍ରଯୁକ୍ତ ହେବାଲାଗି ତା'ର ବ୍ୟବହାର ହେଲା । ଏହି ପରିବର୍ତ୍ତନ ପାଇଁ ଭକ୍ତି ଆନ୍ଦୋଳନରୁ ପ୍ରେରଣାଶକ୍ତି ମିଳିଲା, ଯେଉଁଥିରେ ଦେବତାଙ୍କ ସହ ଘନିଷ୍ଠତା ପାଇଁ ଏହି ଭାଷାକୁ ବ୍ୟବହାର କରାଯାଉଥିଲା । ଅନ୍ୟ ଏକ ସ୍ତରରେ ସ୍ଥାନ ଏବଂ ଜମି ଅନୁଦାନର ବିବରଣୀ କାର୍ଯ୍ୟାଳୟ ସ୍ତରରେ ଆଞ୍ଚଳିକ ଭାଷାରେ ହିଁ ରଖାଯାଉଥିଲା । ପ୍ରଥମେ ତାଳପତ୍ର ଉପରେ ଗ୍ରନ୍ଥଗୁଡ଼ିକୁ ଲିପିବଦ୍ଧ କରାଯାଇ ପରେ ସେଗୁଡ଼ିକୁ ଏକତ୍ର ବାନ୍ଧି ଦିଆଯାଉଥିଲା । ବହି ଫିଟାଇବା ପରେ ପୁଣି ଯାହା ନୂଆ ତାହା ଯୋଗ କରିବାକୁ ପଡୁଥିଲା । ଗ୍ରନ୍ଥମାନ ଜୈନ ବିହାର ତଥା ମଠର ପାଠାଗାରଗୁଡ଼ିକରେ ରଖାଯାଉଥିଲା ।

ସଂସ୍କୃତ ଭାଷାର ସାହିତ୍ୟିକ କାର୍ଯ୍ୟଗୁଡ଼ିକ ମୁଖ୍ୟତଃ ବ୍ୟାକରଣ, ଅଭିଧାନ, ବିବରଣୀ, ଆଲଙ୍କାରିକତା ଉପରେ କାର୍ଯ୍ୟ, ପ୍ରାଚୀନ ଶାସ୍ତ୍ରର ବ୍ୟାଖ୍ୟା, ଗଦ୍ୟ, କଥା, ନାଟକ, କବିତା ଇତ୍ୟାଦି ଉପରେ ଆଧାରିତ ଥିଲା । ଏ ସବୁକ୍ଷେତ୍ରରେ ସଂରଚନାରେ ଶାସ୍ତ୍ରୀୟ ପାରମ୍ପରିକତା ଅବଲମ୍ବନ କରାଯାଉଥିଲା । ନୂତନ ଶୈଳୀ ସମ୍ପର୍କରେ ପରୀକ୍ଷା ନିରୀକ୍ଷା ସୀମିତ ଥିଲା । ଏହାଫଳରେ ଭାଷାଗତ ପ୍ରବୀଣତା ହାସଲ ଉପରେ ପ୍ରାଥମିକ ଗୁରୁତ୍ୱ ଆରୋପିତ ହେଲା

ଏବଂ କିଛି ମାତ୍ରାରେ ମାନସିକ ସ୍ଥିତି ବର୍ଣ୍ଣନା ଲାଗି ଶ୍ରମ କରାଗଲା । ରାଜାମାନଙ୍କୁ ସାହିତ୍ୟ କୃତିଗୁଡ଼ିକର ଲେଖକ ଭାବେ ବର୍ଣ୍ଣନା କରାଗଲା । ଅବଶ୍ୟ କେତେକ କ୍ଷେତ୍ରରେ ରାଜାମାନେ ମଧ୍ୟ ସାହିତ୍ୟ ରଚନା କରୁଥିଲେ । ଶିକ୍ଷାର ଅବଧାରଣା ନିଶ୍ଚିତରୂପେ ସୃଜନଶୀଳ ସାହିତ୍ୟର ଊର୍ଦ୍ଧ୍ୱକୁ ଯାଇସାରିଥିଲା । ଉଦାହରଣ ସ୍ୱରୂପ, ଚାଲୁକ୍ୟ ରାଜା ସୋମେଶ୍ୱରଙ୍କର 'ମନସୋଲସା' ଏକ ଜ୍ଞାନକୋଷ ତୁଲ୍ୟ ରଚନା ଥିଲା ।

କେତେକ ରଚନାର ପ୍ରତିରଚନା ତାମିଲରେ ଉପଲବ୍ଧ ଥିଲା । ସେହି କ୍ଷେତ୍ରରେ ସାହିତ୍ୟିକ ରଚନାର ନମୁନା ସଂସ୍କୃତ ସାହିତ୍ୟରୁ ଗ୍ରହଣ କରାଯାଇଥିଲା । ଏ କାଳଖଣ୍ଡରେ ତାମିଲ ସାହିତ୍ୟରେ ସାମର୍ଥ୍ୟ ଓ ପ୍ରାଣଚଞ୍ଚଳତା ପରିଦୃଷ୍ଟ ହୁଏ (କମ୍ବନଙ୍କ ରାମାୟଣ ପରି) । ପୂର୍ବରୁ କୁହାଯାଉଥିଲା ଯେ ଭାରତର ବିଭିନ୍ନ ଭାଗରେ ମୌଖିକ ବା ଲିଖିତ ଭାବରେ ପ୍ରଚଳିତ ରାମାୟଣର ସମସ୍ତ ରୂପ ବାଲ୍ମିକୀ ରାମାୟଣର ଅନୁସରଣରେ ରଚିତ । ପରବର୍ତ୍ତୀ ଅଧ୍ୟୟନରୁ ଜଣାପଡ଼ିଲା ଯେ ସ୍ଥାନ ଏବଂ ଭାଷା ଆଧାରରେ ଦର୍ଶକମାନଙ୍କ ଆଗ୍ରହ ଦୃଷ୍ଟେ ଏସବୁ ରଚନାରେ ଲକ୍ଷଣୀୟ ବିବିଧତା ରହିଛି । ଭିନ୍ନ ଭିନ୍ନ ଦର୍ଶକମାନଙ୍କ ଲାଗି ଭିନ୍ନ ଲେଖକ ପ୍ରତୀକାତ୍ମକ ଅର୍ଥର ଆଧାରରେ ଭିନ୍ନ ପ୍ରକାରର ବର୍ଣ୍ଣନା କରିଛନ୍ତି ଏବଂ ସ୍ଥଳବିଶେଷରେ ନୂତନ ଘଟଣା ଓ ଆବେଦନ ସଂଯୋଜିତ ହୋଇଛି । ଉଦାହରଣ ସ୍ୱରୂପ, କମ୍ବନଙ୍କ ରାମାୟଣରେ ରାବଣର ବ୍ୟକ୍ତିତ୍ୱ ବାଲ୍ମିକୀଙ୍କ ରାମାୟଣର ରାବଣଠାରୁ ଅଧିକ ସମ୍ବେଦନଶୀଳ ।

ଅଭିଲେଖଗୁଡ଼ିକର ଭାଷା ବ୍ୟାପକ ଐତିହାସିକ ପରିବର୍ତ୍ତନ ସମ୍ପର୍କରେ ସୂତ୍ର ପ୍ରଦାନ କରିଥାଏ । ଅନୁଦାନର ବିବରଣୀ ଲେଖିବାବେଳେ ଅଭିଲେଖରେ କ୍ରମଶଃ ଦୁଇଟି ଭାଷା ବ୍ୟବହାର କରାଗଲା । ଅଭିଲେଖରେ ପ୍ରାକୃତର ବ୍ୟାପକ ବ୍ୟବହାର ଚତୁର୍ଥ ଶତାବ୍ଦୀ ବେଳକୁ ସଂସ୍କୃତର ବ୍ୟବହାର ଲାଗି ପଥ ପରିଷ୍କାର କଲା । ମାତ୍ର ଦ୍ୱିଭାଷିକ ବିବରଣୀ ରଚନା ଆଉ କେତେ ଶତାବ୍ଦୀ ପରେ ଆରମ୍ଭ ହେଲା । ତାମିଲ ଭାଷାଭାଷୀ ଅଞ୍ଚଳରେ ସଂସ୍କୃତର ପ୍ରଚଳନ ଏକ ଦ୍ୱିଭାଷିକ ସଂସ୍କୃତ-ତାମିଲ ଅଭିଲେଖରେ ଅଙ୍କିତ ହୋଇଅଛି । ରାଜବଂଶର ଅଭ୍ୟୁଦୟର କିମ୍ବଦନ୍ତୀ, ବଂଶାବଳୀ, ଉପାଧି, ଶୁଭକାମନା ସମ୍ପର୍କୀୟ ଅନୁଚ୍ଛେଦଗୁଡ଼ିକ ସଂସ୍କୃତରେ ଲେଖାଯାଇଛି । ରାଜକୀୟ ବଂଶାବଳୀ ଅନେକ ସମୟରେ କାଳ୍ପନିକ ହୋଇଥାଏ, କାରଣ ଏହା ମାଧ୍ୟମରେ ଅନୁଦାନ ଦେଇଥିବା ବ୍ୟକ୍ତିଙ୍କର ବୈଧତା ସିଦ୍ଧ ହୁଏ । କିନ୍ତୁ ପ୍ରକୃତ ଅନୁଦାନର ରୂପରେଖ ତାମିଲ୍‌ରେ ରଚିତ ହୋଇଥାଏ ଯେପରିକି ସ୍ଥାନୀୟ ଲୋକେ ସେଗୁଡ଼ିକୁ ଭଲରେ ବୁଝିପାରିବେ । ଏଥିରେ ଦାନ କରାଯାଇଥିବା ଜମି ବା ଗ୍ରାମ, ଏହାର ସୀମା, ଅଂଶଗ୍ରହଣ କରିଥିବା ସ୍ଥାନୀୟ କର୍ତ୍ତୃପକ୍ଷ, ଅନୁଦାନ ଗ୍ରହୀତାର ଅଧିକାର ଏବଂ ଦାୟିତ୍ୱ,

ତା'ର ଟିକସ ଏବଂ ଦେ'ଣା, ଅନୁଦାନର ସାକ୍ଷୀ ଏବଂ ସ୍ଥାନୀୟ ପ୍ରସଙ୍ଗ ବିଷୟରେ ସୂଚନା ଦିଆଯାଇଥାଏ । ଉଭୟ ଭାଷାର ଗୋଟାଏ ଉଦ୍ଦେଶ୍ୟ ଥିଲା, ମାତ୍ର ବିଷୟବସ୍ତୁ ଲକ୍ଷଣୀୟ ଭାବେ ଭିନ୍ନ ହେଉଥିଲା । ନଥିପତ୍ରର ବୈଧତା ପାଇଁ ଉଭୟ ଭାଗ ଗୁରୁତ୍ୱପୂର୍ଣ୍ଣ ଥିଲା । ଜମିର ବର୍ଣ୍ଣନା ତାମିଲ ଭାଷାରେ ହୋଇଥିବାରୁ ଜମିର ଅବସ୍ଥିତି ଓ ଗ୍ରହୀତାର ଅଧିକାର ନେଇ କୌଣସି ଦ୍ୱନ୍ଦ୍ୱ ରହୁ ନ ଥିଲା ।

ଶିକ୍ଷିତ ବ୍ରାହ୍ମଣମାନେ ନିଯୁକ୍ତି ସନ୍ଧାନ କରିବା ଏବଂ ଉପମହାଦେଶର ବିଭିନ୍ନ ଭାଗକୁ ଯାତ୍ରା କରିବା ସହିତ ସଂସ୍କୃତର ବ୍ୟାପକ ବ୍ୟବହାର ପ୍ରଶ୍ନ ଜଡ଼ିତ ଥିଲା । ସେମାନେ ଯେଉଁଠି ସଫଳ ହେଉଥିଲେ, ସେଠାରେ ସେମାନଙ୍କୁ ନିଯୁକ୍ତି ଏବଂ ଜମି ଅନୁଦାନ ପ୍ରାପ୍ତ ହେଉଥିଲା । ଏହି କାରଣରୁ ସେମାନଙ୍କୁ ହୁଏତ କୌଣସି ଆଭ୍ୟନ୍ତରୀଣ ଅଞ୍ଚଳକୁ ଯିବାକୁ ପଡ଼ିଥିବ ଯେଉଁ ଜାଗା ପାଇଁ ସଂସ୍କୃତ ଏକ ନୂତନ ଭାଷା ହୋଇଥିବ । ତେଣୁ ଅନୁଦାନ ଗ୍ରହୀତାଙ୍କୁ ଦ୍ୱିଭାଷୀ ହେବାକୁ ପଡ଼ିଥିବ । ଅଭିଲେଖଗୁଡ଼ିକର ଦୁଇଟି ଭାଷା ମଧ୍ୟରୁ ଗୋଟିଏ ଥିଲା ସଂସ୍କୃତ ଏବଂ ଅନ୍ୟଟି ତାମିଲ ବା କନ୍ନଡ଼ ଭଳି ସ୍ଥାନୀୟ ଭାଷା ।

ଅନୁଦାନର ସଂସ୍କୃତ ଦିଗଟି ଏକ ରାଜନୈତିକ ଇସ୍ତାହାର ସଦୃଶ ଥିଲା । ରାଜକୀୟ ଅଧିପତ୍ୟର ପ୍ରସାର କରାଇବା, ରାଜାଙ୍କ ମାନ୍ୟତା ଓ ଉପାଧିକୁ ବୈଧତା ପ୍ରଦାନ କରିବା ଏବଂ ପ୍ରାଚୀନ ବୀର ତଥା ପୂର୍ବବର୍ତ୍ତୀ ଶାସକମାନଙ୍କ ସହ ସେମାନଙ୍କର ସଂଯୋଗ ପ୍ରଦର୍ଶନ କରାଇବା ଥିଲା ଏହାର ପଛରେ ଥିବା ରାଜନୈତିକ ଅଭିଳାଷ । ଇତିହାସକୁ ହାତମୁଠାରେ ରଖିବା ଗୁରୁତ୍ୱପୂର୍ଣ୍ଣ ହୋଇଉଠିଥିଲା । ପାରମ୍ପରିକ ଇତିହାସର ଧାରକ ଅର୍ଥାତ୍ ସୂତ ବା ଚାରଣମାନଙ୍କର ରଚନାକୁ ଆତ୍ମସାତ୍ କରି ତଥା ସେଗୁଡ଼ିକୁ ଏକ ନୂତନ ରୂପରେ ସମ୍ପାଦନ କରି ଶାସ୍ତ୍ରର ଲେଖକ ଅତୀତକୁ ଇଚ୍ଛାମତେ ବ୍ୟବହାର କରିପାରୁଥିଲେ ଏବଂ ଶାସକଙ୍କର ମାନ୍ୟତା ମଧ୍ୟ ନିୟନ୍ତ୍ରଣରେ ରଖିପାରୁଥିଲେ । ଅତୀତର ବିବରଣୀ ରଖୁଛନ୍ତି ବୋଲି ଦାବି କରୁଥିବା ପୁରାଣମାନ ବର୍ତ୍ତମାନ ବ୍ରାହ୍ମଣମାନଙ୍କ ଦ୍ୱାରା ସଂସ୍କୃତ ଭାଷାରେ ରଚିତ ହେଲେ । ଅବଶ୍ୟ ଉପଚାର ଦୃଷ୍ଟିକୋଣରୁ ମୂଳ ଲେଖକର ଭୂମିକା ତୁଲାଉଥିବା ଚାରଣମାନେ ତଥାପି ଏହାକୁ ଆବୃତ୍ତି କରୁଛନ୍ତି ବୋଲି କୁହାଯାଉଥିଲା ।

ଏହି ରାଜନୈତିକ ଇସ୍ତାହାରର ଦର୍ଶକ ଥିଲେ ରାଜନ୍ୟଗଣ ଏବଂ ଦରବାର । ଯେଉଁ ରୂପରେ ଅତୀତର ଉପସ୍ଥାପନା କରାଯାଉଥିଲା ଏବଂ ବର୍ତ୍ତମାନ ସହ ତା'ର ଯୋଗସୂତ୍ର ପ୍ରଦର୍ଶନ କରାଯାଉଥିଲା, ତାହା ଏକ ନିର୍ଦ୍ଦିଷ୍ଟ ଭାଷା ବା ଅଞ୍ଚଳ କ୍ଷେତ୍ରରେ ସୀମିତ ନ ଥିଲା । ବାଣଭଟ୍ଟଙ୍କ 'ହର୍ଷଚରିତ' ମାଧ୍ୟମରେ ଆରମ୍ଭ ହୋଇଥିବା ଐତିହାସିକ ଜୀବନୀ ବା ଚରିତ ସାହିତ୍ୟ ବିଭିନ୍ନ ଦରବାରରେ ଏକ ଫେସନରେ ପରିଣତ ହୋଇଯାଇଥିଲା । ବିହ୍ଲଣ ଭାଗ୍ୟ

ଏବଂ ନିଯୁକ୍ତି ଅନୁସନ୍ଧାନରେ କାଶ୍ମୀରରୁ ବିଭିନ୍ନ ସ୍ଥାନ ଭ୍ରମଣ କଲେ । ଶେଷରେ ସେ ଉତ୍ତର ଚାଲୁକ୍ୟମାନଙ୍କ ଦରବାରରେ ଏକ ପଦବୀ ହାସଲ କରି ଷଷ୍ଠ ବିକ୍ରମାଦିତ୍ୟଙ୍କ ଜୀବନୀ 'ବିକ୍ରମଦେବ-ଚରିତ' ରଚନା କଲେ । ଏହି କାବ୍ୟ ମଧ୍ୟ ଜଣେ ରାଜାଙ୍କ ସପକ୍ଷରେ ରଚିତ ଯିଏ ନିଜ ଜ୍ୟେଷ୍ଠ ଭ୍ରାତାଙ୍କୁ ଗାଦିଚ୍ୟୁତ କରି ସିଂହାସନରେ ଆସୀନ ହୋଇଥିଲେ ।

ଏହି ସମୟରେ ଇତିହାସର ସୂତ୍ର ବୋଲି କୁହାଯାଉଥିବା ଅଭିଲେଖଗୁଡ଼ିକୁ ବାଦ୍ ଦେଲେ, 'ବଂଶାବଳୀ' ମାଧ୍ୟମରେ କେତେକ ରାଜବଂଶର ବିଶଦ ଇତିହାସ ରଚନା ଲାଗି ପ୍ରଚେଷ୍ଟା କରାଗଲା । ଐତିହାସିକ ବୈଧତା ହାସଲ କରିବାର ଅଭିଳାଷ କେତେ ବ୍ୟାପକ ହୋଇଥିଲା, ତାହା କ୍ଷୁଦ୍ର ରାଜବଂଶର କ୍ଷୁଦ୍ର ବଂଶାବଳୀରୁ ପ୍ରମାଣିତ ହୁଏ । ଏକାଦଶ ଶତାବ୍ଦୀରେ ମାଲବାରର ଏକ ଅନାମଧେୟ ରାଜବଂଶକୁ ନେଇ ଅତୁଳଙ୍କ ଦ୍ୱାରା ରଚିତ 'ମୁସକ୍ ବଂଶ କାବ୍ୟ' ଏହାର ଉଦାହରଣ । ଏହା ହିମାଳୟ ଅଞ୍ଚଳର ଚମ୍ବା ହେଉ ଅଥବା ମାଲବାରରେ ରଚିତ ହୋଇଥାଉ, ଏପ୍ରକାରର ବଂଶାବଳୀର ଢାଞ୍ଚା ଏକା ପ୍ରକାରର ଥିଲା । ଏହା ଶାସକ ବଂଶର ବଂଶାବଳୀ ବା ସଂପୃକ୍ତ ଅଞ୍ଚଳର ଇତିହାସ ରୂପେ ରଚିତ ହେଉଥିଲା । ବସ୍ତୁତଃ କେତେକ କିମ୍ବଦନ୍ତୀ ଏକା ପ୍ରକାରର ଥିଲା । ବଂଶାବଳୀର ରଚନା କିମ୍ବଦନ୍ତୀ ଆଧାରରେ ଆରମ୍ଭ କରାଯାଉଥିଲା, କାରଣ ଏହା ମାଧ୍ୟମରେ ସଂପୃକ୍ତ ବଂଶର ପୂର୍ବପୁରୁଷମାନଙ୍କର ଏକ ବିଶ୍ୱାସଯୋଗ୍ୟ ବଂଶ ଇତିହାସ ନିର୍ମାଣ ସମ୍ଭବ ହେଉଥିଲା । ରାଜ୍ୟ ପ୍ରତିଷ୍ଠା ବିଚ୍ଛେଦର ଏକ ବିନ୍ଦୁ ଯାହା ସହିତ କେତେକ ସ୍ୱତନ୍ତ୍ର ପରିବର୍ତ୍ତନ ଦେଖିବାକୁ ମିଳିଥିଲା : କୃଷି ନିମନ୍ତେ ଅଧିକରୁ ଅଧିକ ଅଞ୍ଚଳ ଉନ୍ମୋଚିତ ହେଲା; ଏକ ରାଜକୀୟ ମନ୍ଦିର ସମ୍ବଳିତ ରାଜଧାନୀ ପ୍ରତିଷ୍ଠା କରାଗଲା; ରାସ୍ତା ବ୍ୟବସ୍ଥା ମାଧ୍ୟମରେ ରାଜଧାନୀକୁ ଅନ୍ୟାନ୍ୟ ଅଞ୍ଚଳ ସହ ଯୋଗାଯୋଗ ନିଶ୍ଚିତ କରାଗଲା; ପ୍ରଶାସକୀୟ ଆଧିପତ୍ୟ ଏବଂ ସୈନ୍ୟବାହିନୀର ଉପସ୍ଥିତି ସୂଚିତ ହେଲା; ରାଜକୀୟ କାର୍ଯ୍ୟାବଳୀର ପ୍ରଶାସନିକ ସ୍ୱରୂପ ସୂଚାଇବା ଲାଗି ଅଭିଲେଖମାନ ଜାରି କରାଗଲା ! ଏଥିସହିତ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀକୁ କାଳାନୁକ୍ରମିକ ବିବରଣୀରେ ଲିପିବଦ୍ଧ କରାଗଲା । କହ୍ଲଣଙ୍କ ଦ୍ୱାରା ରଚିତ କାଶ୍ମୀରର ଇତିହାସ 'ରାଜତରଙ୍ଗିଣୀ'କୁ ସ୍ୱତନ୍ତ୍ର ମାନ୍ୟତାର ସହ ବର୍ଣ୍ଣନା କରାଯାଏ, ଯାହା ପ୍ରକୃତରେ ବଂଶାବଳୀ ଆକାରରେ ରଚିତ । ଅବଶ୍ୟ ଏହା ଏକ ଅସାଧାରଣ କୃତି ହିସାବରେ ସ୍ୱୀକୃତ ଏବଂ ଗୃହୀତ । ଏହିସବୁ ପୁସ୍ତକଗୁଡ଼ିକର ରଚୟିତାମାନେ ରାଜବଂଶଗୁଡ଼ିକୁ ଐତିହାସିକ ପୂର୍ବ ସ୍ଥିତି ସହ ସଂଯୋଜିତ କରାଇ ଜାତିଭିତ୍ତିକ ସମାଜରେ ସେମାନଙ୍କର ମାନ୍ୟତାକୁ ପୁନଃପ୍ରତିଷ୍ଠା କରୁଥିଲେ । ଏହାଫଳରେ ଦକ୍ଷିଣ-ପୂର୍ବ ଏସିଆ ସମେତ ସାରା ଉପମହାଦେଶରେ ଅଞ୍ଚଳୋତ୍ତର ସଂସ୍କୃତ ଆଧାରିତ ବ୍ୟବସ୍ଥାର ସ୍ରଷ୍ଟା ହିସାବରେ ସେମାନଙ୍କର ଭୂମିକା ସ୍ପଷ୍ଟ ହୋଇଉଠିଲା । ଦକ୍ଷିଣ-ପୂର୍ବ ଏସିଆରୁ ଉପଲବ୍ଧ ସଂସ୍କୃତ ଅଭିଲେଖ ପ୍ରାୟ

ସମାନ ସମୟର । ଏଗୁଡ଼ିକ ଧୀରେ ଧୀରେ ଦ୍ୱି-ଭାଷୀ ହୋଇଉଠିଲା ଏବଂ ସ୍ଥାନୀୟ ଭାଷା ଦ୍ୱିତୀୟ ଭାଷାର ଭୂମିକା ତୁଲାଇଲା ।

ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ବିବରଣୀମାନ ଅନେକ ସମୟରେ ଆଞ୍ଚଳିକ ଭାଷାରେ ରଚିତ ହେବାରୁ ଦ୍ୱିଭାଷାବାଦର ଗୁରୁତ୍ୱ ହ୍ରାସ ପାଇଲା । ଦରବାରର ଭାଷା ଏବଂ ସ୍ଥାନୀୟ ପ୍ରଶାସନର ଭାଷା ମଧ୍ୟରେ ଥିବା ପାର୍ଥକ୍ୟ ଦେଖିବା ମାଧ୍ୟମରେ ଏହା ସମ୍ଭବ ହୋଇଥିବ । ଯେଉଁ କ୍ଷେତ୍ରରେ ସ୍ଥାନୀୟ ପ୍ରଶାସକମାନେ ଶାସକ ହୋଇଉଠିଲେ, ସେମାନେ ସମ୍ଭବତଃ ନିଜ ସହିତ ନିଜର ଭାଷାକୁ ଧରି ଆସିଲେ । ନୂତନ ବଂଶ ଦ୍ୱାରା କୁଳଦେବତାଙ୍କୁ ଗୋଷ୍ଠୀ ଦେବତା ଭାବେ ଅଧିଷ୍ଠିତ କରାଇବାର କଥାଟି ଏହା ସହ ସମାନ୍ତର । ଦୁଃସାହସିକ ଅଭିଯାନ ମାଧ୍ୟମରେ ପ୍ରତିଷ୍ଠିତ ହୋଇଥିବା ରାଜ୍ୟଗୁଡ଼ିକରେ ମଧ୍ୟ ଆଞ୍ଚଳିକ ଭାଷା ବ୍ୟବହୃତ ହେଉଥିଲା ଏବଂ ଯଦି ଏହା ସେମାନଙ୍କର ମାନ୍ୟତା ପରିବର୍ତ୍ତନକୁ ବୁଝାଇବାରେ ସକ୍ଷମ ହେଉଥିଲା, ତେବେ ହୁଏତ ସଂସ୍କୃତ ଭାଷା ଆଉ ଆବଶ୍ୟକ ପଡୁ ନ ଥିଲା । ଅଭିଲେଖର ସଂସ୍କୃତ ଭାଗରେ ଥିବା ବ୍ୟାପକ ଆଳଂକାରିକ ଉପାଦାନ ସ୍ଥାନୀୟ ଭାଷାରେ ପ୍ରକାଶିତ ହେଲେ ମଧ୍ୟ ସମାନ ବାର୍ତ୍ତା ବହନ କରୁଥିଲା । ଅଲ୍‌ୱାର୍ ଏବଂ ନୟନାର୍‌ମାନଙ୍କ ଶ୍ଳୋକ ଗାୟନ କରୁଥିବା ବ୍ୟକ୍ତିମାନଙ୍କୁ ଦେବୋତ୍ତର ଜମି ପ୍ରଦାନ ସମ୍ପର୍କୀୟ ବିବରଣୀ ଏକାଦଶ ଶତାବ୍ଦୀରୁ ଉପଲବ୍ଧ । ଏହା ଥିଲା ତାମିଲ୍ ପ୍ରତି ପୃଷ୍ଠପୋଷକତାର ବିସ୍ତାର ।

ଏହି ସମୟ ବେଳକୁ ବୈଦିକ କର୍ମକାଣ୍ଡର ପାଳନର ବହୁଳତା ସମ୍ପର୍କରେ କମ୍ ସୂଚନା ମିଳିଲା । ବୈଷ୍ଣବଧର୍ମ ଏବଂ ଶୈବଧର୍ମର ଅଭିବୃଦ୍ଧି ଫଳରେ ଭିନ୍ନ କର୍ମକାଣ୍ଡ ଏବଂ ଆଞ୍ଚଳିକ ଭାଷାର ଆବଶ୍ୟକତା ପଡ଼ିଲା, ଏପରିକି ଧାର୍ମିକ ସଂପ୍ରଦାୟର କିଛି ସାହିତ୍ୟ ସଂସ୍କୃତରେ ରଚିତ ହୋଇଥିଲା । ଏହାଫଳରେ ଶାସ୍ତ୍ରର ମାନ୍ୟତା ବୃଦ୍ଧି ପାଉଥିଲା ଏବଂ ଏକ ଭବ୍ୟ ପାଠକଗୋଷ୍ଠୀ ସୃଷ୍ଟି ହେଉଥିଲେ । ବାଣିଜ୍ୟ ଭଳି ଅନ୍ୟାନ୍ୟ ବୃତ୍ତିରେ ଲିପ୍ତ ଥିବା ବ୍ରାହ୍ମଣମାନେ ବୈଦିକ କର୍ମକାଣ୍ଡରେ ବ୍ୟବହୃତ ସଂସ୍କୃତରେ ଏତେ ପାରଙ୍ଗମ ନ ଥିଲେ । ଆଞ୍ଚଳିକ ଆଧିପତ୍ୟ ଅଧିକ ଆତ୍ମବିଶ୍ୱାସର ସହିତ ସାବ୍ୟସ୍ତ ହେଉଥିବା କଥା ଏଥିରୁ ପ୍ରମାଣିତ ହୁଏ । ବିରୋଧାଭାସ ସ୍ୱରୂପ ଅସ୍ମିତାର ଆଞ୍ଚଳିକ ବିବିଧତା ଏବଂ ଭାଷା ସମଗ୍ର ଉପମହାଦେଶ ଲାଗି ଏକ ସାଧାରଣ ପରିସ୍ଥିତି ସୃଷ୍ଟି କଲା ।

ଦ୍ରାବିଡ଼ୀୟ ଭାଷା ଭିତ୍ତିରୁ ଉଦ୍‌ଭୂତ କନ୍ନଡ଼ ଏବଂ ତେଲୁଗୁ ପରି ଆଞ୍ଚଳିକ ଭାଷା ବ୍ୟାପକ ଭାବେ ବ୍ୟବହୃତ ହେଲା ଏବଂ ସଂସ୍କୃତ ସମେତ ଦ୍ୱିଭାଷାବାଦ ଫଳରେ କତିପୟ ଶବ୍ଦ ସମୂହ ଆହରଣ କରାଗଲା । ଭାଷାର ସମସାମୟିକ ବ୍ୟବହାର ଫଳରେ ଏହି ଆହରଣର ସ୍ମୃତି ମଳିନ ହୋଇ ଆସିଲା । ତେଲୁଗୁ ଭାଷା ରୂପ ପରିଗ୍ରହ କଲା ଏବଂ ଆନ୍ଧ୍ର ଅଞ୍ଚଳରେ

ଅଧିଷ୍ଠିତ ହେଲା ଏବଂ ଏକାଦଶ ଶତାବ୍ଦୀଠାରୁ ଏହି ଭାଷାରେ ଗ୍ରନ୍ଥ ରଚନା ଆରମ୍ଭ ହେଲା । କର୍ଣ୍ଣାଟକରେ କନ୍ନଡ଼ ଭାଷାର ଅଭ୍ୟୁଦୟ ଆଉ ଟିକେ ପୂର୍ବରୁ ଷଷ୍ଠ ଶତାବ୍ଦୀରେ ଘଟିଥିଲା ଏବଂ ଏଥିରେ ନବମ ଶତାବ୍ଦୀ ବେଳକୁ ଶାସ୍ତ୍ର ରଚନା ଆରମ୍ଭ ହୋଇଯାଇଥିଲା । କନ୍ନଡ଼କୁ ଉଭୟ ରାଜକୀୟ ପୃଷ୍ଠପୋଷକତା ଏବଂ ପ୍ରଭାବଶାଳୀ ଶିକ୍ଷିତ ଜୈନମାନଙ୍କର ସମର୍ଥନ ମିଳୁଥିଲା । ବସ୍ତୁତଃ ଏହା ଦ୍ୱାଦଶ ଶତାବ୍ଦୀର ବୀର ଶୈବ ବା ଲିଙ୍ଗାୟତ ଆନ୍ଦୋଳନର ଭାଷାରେ ପରିଣତ ହେଲା, ଯାହାର ଏବେ ବି ଧାର୍ମିକ ଗୁରୁତ୍ୱ ଏବଂ ସାମାଜିକ ଅସ୍ତିତ୍ୱ ରହିଛି । ଲିଙ୍ଗାୟତମାନଙ୍କ ଦ୍ୱାରା କନ୍ନଡ଼ରେ ରଚିତ ଅନେକ ବଚନ ବା ପଦ୍ୟର ଲେଖକଗଣ ନିମ୍ନଜାତିର ଥିଲେ । ଉଭୟ ଭାଷା ଏବଂ ବାର୍ତ୍ତାର ଲୋକପ୍ରିୟ ଆବେଦନକୁ ଏହା ଏକ ନିଶ୍ଚିତତା ପ୍ରଦାନ କରୁଥିଲା । ତାମିଲ ଏବଂ ସଂସ୍କୃତର ଆଧାରରେ କେରଳର ଭାଷା ମାଲୟାଲମ ଆଉ ଟିକେ ବିଳମ୍ବରେ ବିକଶିତ ହେଲା ଏବଂ ଦ୍ୱିତୀୟ ସହସ୍ରାବ୍ଦର ଆଦ୍ୟ ଭାଗ ବେଳକୁ ଏଥିରେ ଗ୍ରନ୍ଥ ରଚନା ସମ୍ଭବ ହେଲା ।

ବର୍ତ୍ତମାନ ପଶ୍ଚିମ ଦାକ୍ଷିଣାତ୍ୟରେ ଚଳୁଥିବା ମରାଠୀ ଭାଷା ସ୍ଥାନୀୟ ପ୍ରାକୃତ ଭାଷାରୁ ବିକଶିତ ହୋଇଥିଲା ଏବଂ ଏହାର ସଂସ୍କୃତ ସହିତ ଘନିଷ୍ଠ ସମ୍ପର୍କ ରହିଥିଲା । ଏହା ଯାଦବ ଶାସକମାନଙ୍କଠାରୁ ପ୍ରୋତ୍ସାହନ ଲାଭ କଲା । ଏକ ଲୋକପ୍ରିୟ ଭକ୍ତି ଆନ୍ଦୋଳନର ଭାଷା ରୂପେ ଏହାର ବିକାଶ ବ୍ୟାପକ ହେଲା ଏବଂ ଏହା ଖୁବ୍‌ଶୀଘ୍ର ପଶ୍ଚିମ ଦାକ୍ଷିଣାତ୍ୟରେ ପ୍ରତିଷ୍ଠା ଲାଭ କଲା । ଏହି ଦୃଷ୍ଟିରୁ ଏହା ଅଲୱାର ଓ ନୟନାର୍‌ଙ୍କ ସମକକ୍ଷ । ମରାଠୀ ଭାଷାରେ କେବଳ ଯେ କବିତା ରଚିତ ହେଲା ତାହା ନୁହେଁ, ଗୀତା ଭଳି ପୁରୁଣା ଧର୍ମଶାସ୍ତ୍ରକୁ ମଧ୍ୟ ସାଧାରଣ ଲୋକେ ବୁଝିପାରିବା ଭଳି ଭାଷାରେ ଉପସ୍ଥାପନ କରାଗଲା । ଏପ୍ରକାରର ଉପସ୍ଥାପନାରେ ସ୍ୱାଭାବିକ ଭାବେ ପୁରୁଣା ଶାସ୍ତ୍ରର ବ୍ୟାଖ୍ୟା ଏବଂ ତା'ର ଧାର୍ମିକ ଅନୁଚିନ୍ତନର ଆଲୋଚନା କଲାବେଳେ ନୂତନତ୍ୱ ପରିଲକ୍ଷିତ ହେଲା ।

ଏହି ଭାଷାଗୁଡ଼ିକର ସାହିତ୍ୟିକ ସ୍ୱରୂପ ପ୍ରାଥମିକ ପର୍ଯ୍ୟାୟରେ ଉଚ୍ଚାଙ୍ଗ ସଂସ୍କୃତିର ଧାରକ ବୋଲି ମନେକରାଯାଉଥିବା ସଂସ୍କୃତ ଭାଷାର ରଚନାଗୁଡ଼ିକର ଅନୁବାଦ ଏବଂ ଉପଯୋଜନ (adaptation) ଦ୍ୱାରା ଗଠିତ ହୋଇଥିଲା । ମାତ୍ର ଉକ୍ତ ଅନୁବାଦଗୁଡ଼ିକରେ ସ୍ଥାନୀୟ ଉପାଦାନଗୁଡ଼ିକର ମିଶ୍ରଣ ଫଳରେ ବର୍ଣ୍ଣନାଗୁଡ଼ିକ ଭିନ୍ନ ଭିନ୍ନ ହୋଇଥିଲା । ତେଣୁ ମୂଳ ରଚନା ସହିତ ତାହା ସମ୍ପୂର୍ଣ୍ଣ ସମାନ ହେଉ ନ ଥିଲା । ଉପଯୋଜନ ଫଳରେ ଆଞ୍ଚଳିକ ଭାଷାରେ ନୂତନ ପାଠ ଏବଂ ରୂପର ଉଦ୍‌ଭବ ହେଲା ଯାହାଫଳରେ ଭାଷା ବୌଦ୍ଧିକ ବିମର୍ଶର ଏକ ମାଧ୍ୟମରେ ପରିଣତ ହେଲା । ସଂସ୍କୃତ ମୁଖ୍ୟତଃ ବ୍ରାହ୍ମଣ୍ୟ କାର୍ଯ୍ୟକଳାପର ଭାଷା ଥିଲା, ଯଦିଓ ଏ ସମୟରେ ଏହା ବୌଦ୍ଧ ଏବଂ ଜୈନମାନଙ୍କ ଦ୍ୱାରା ବ୍ୟାପକଭାବେ

ବ୍ୟବହୃତ ହେଲା । ଏକ ମର୍ଯ୍ୟାଦାବନ୍ତ ଭାଷାରୂପେ ସାମାଜିକ ଆକାଂକ୍ଷା ସମ୍ପନ୍ନ ବିଚ୍ଛିନ୍ନତାବାଦୀ ଆନ୍ଦୋଳନଗୁଡ଼ିକରେ ମଧ୍ୟ ସଂସ୍କୃତର ଆବେଦନ ଗ୍ରାହ୍ୟ ହେଲା ।

## ଧର୍ମ ଓ ବିଚାରଧାରା

କାଳଖଣ୍ଡର ଶେଷ ଆଡ଼କୁ ବୌଦ୍ଧଧର୍ମ ପୂର୍ବ ଭାରତକୁ ବାଦ୍ ଦେଇ ଅନ୍ୟଆଡ଼େ କମ୍ ଦୃଶ୍ୟମାନ ହେଉଥାଏ । ବୁଦ୍ଧଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ ଚିତ୍ରଣ କରି ବୈଷ୍ଣବ ଧର୍ମରେ ମିଶାଇ ଦିଆଯାଇଥାଏ । ତେବେ ଗଣ କଳ୍ପନାରେ ଏହି ଅବତାର ଏତେ ବେଶି ଗୁରୁତ୍ୱ ଲାଭ କରିପାରି ନ ଥିଲା । କର୍ଣ୍ଣାଟକ ଏବଂ ପଶ୍ଚିମ ଭାରତରେ ଅନୁଗାମୀଙ୍କ ଯୋଗୁଁ ଜୈନଧର୍ମ ତିଷ୍ଠି ରହିଥାଏ । କର୍ଣ୍ଣାଟକରେ ଜୈନ ସନ୍ନ୍ୟାସୀମାନଙ୍କୁ ଆଶାନୁରୂପ ଦେବୋତ୍ତର ଅନୁଦାନ ମିଳୁଥାଏ । ରୟତମାନେ ଜୈନ ମଠ ଜମି ଚାଷ କରୁଥାନ୍ତି; ସ୍ଥଳବିଶେଷରେ ଜୈନ ସନ୍ନ୍ୟାସୀମାନେ ଅନ୍ୟାନ୍ୟ ମଠକୁ ଦାନ କରିବାରେ ମଧ୍ୟ ସମର୍ଥ ହେଉଥାନ୍ତି । ଜୈନ ଅଧିକାରୀ (ଯେଉଁମାନଙ୍କ ମଧ୍ୟରୁ କେହି କେହି ସେନାଧ୍ୟକ୍ଷ ଥିଲେ)ମାନଙ୍କ ପରି ଜୈନ ବଣିକମାନେ ମଧ୍ୟ ବଡ଼ ଧରଣର ଦାନ କରୁଥିଲେ । ଜୈନମାନଙ୍କର ଯପନୀୟ ସଂପ୍ରଦାୟ ବହୁ ପ୍ରତିଷ୍ଠିତ ଦିଗମ୍ବର ସଂପ୍ରଦାୟ ତୁଳନାରେ କମ୍ କଠୋର ହୋଇଥିବାରୁ ବେଶି ଲୋକପ୍ରିୟ ଥିଲେ । ଯପନୀୟମାନେ ସନ୍ନ୍ୟାସିନୀମାନଙ୍କ ପାଇଁ ମଠ ପ୍ରତିଷ୍ଠାକୁ ସମର୍ଥନ କରୁଥିଲେ, ଏପରିକି ବରିଷ୍ଠ ସନ୍ନ୍ୟାସିନୀମାନେ ସନ୍ନ୍ୟାସୀମାନଙ୍କୁ ଶିକ୍ଷା ଦେବା କଥାକୁ ସେମାନେ ଅନୁମୋଦନ କରୁଥିଲେ । ସ୍ଥଳବିଶେଷରେ ଶୈବ ଏବଂ ଜୈନମାନଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହେଉଥିଲା ।

ଜୈନଧର୍ମ ଏବଂ ବୌଦ୍ଧଧର୍ମର ଅବକ୍ଷୟ କିଛି ମାତ୍ରାରେ ଧାର୍ମିକ ଭକ୍ତିବାଦୀ ଆନ୍ଦୋଳନର ଲୋକପ୍ରିୟତା ଯୋଗୁଁ ଘଟିଲା । ପୂର୍ବବର୍ତ୍ତୀ କବିମାନଙ୍କ ଦ୍ୱାରା ରଚିତ ସ୍ତୋତ୍ରସବୁ ସଂକଳିତ ହୋଇସାରିଥିଲା ଏବଂ ସେମାନଙ୍କର ଆସ୍ତିକବାଦର ପ୍ରବଳ ଆବେଦନ ଯୋଗୁଁ ନୂତନ ରଚନା ଲାଗି ପ୍ରେରଣା ସୃଷ୍ଟି ହେଉଥିଲା । ଅନେକ ଦାର୍ଶନିକ ଅନୁଚିନ୍ତନରେ ଉପନିଷଦରେ ଆସ୍ତିକତାର ମୂଳ ନିହିତ ଅଛି ବୋଲି ସାବ୍ୟସ୍ତ କରାଯାଉଥିଲା । ଏହା ଥିଲା ଗୋଟିଏ ଦୃଷ୍ଟିକୋଣରୁ ବୈଦିକ ବ୍ରାହ୍ମଣ୍ୟବାଦ ଏବଂ ଭକ୍ତିବାଦକୁ ନିକଟତର କରାଇବାର ଏକ ପ୍ରଚେଷ୍ଟା, ଯଦିଓ ଉଭୟ ମଧ୍ୟରେ ଥିବା ପାର୍ଥକ୍ୟ ଲୋପ କରିବା ଅସମ୍ଭବ ଥିଲା । କତିପୟ ବୈଷ୍ଣବ ଆଚାର୍ଯ୍ୟ ଏବଂ ଶୈବମଠ ଅଲୱାର୍ ଏବଂ ନୟନାରମାନଙ୍କ ସଂବେଗ ବଞ୍ଚାଇ ରଖିଥିଲେ । ତ୍ରୟୋଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ସଂପ୍ରଦାୟବାଦୀ ଆନ୍ଦୋଳନ

(sectarian movement) ମାଧ୍ୟମରେ ଅଣବ୍ରାହ୍ମଣ ଜାତିର ଅଭ୍ୟୁଦୟ ଘଟିଲା । ଏମାନଙ୍କ ମଧ୍ୟରେ ଅନେକ ଶୂଦ୍ର ଜାତିର ବୋଲି ପରିଗଣିତ ହେଉଥିଲେ । ଏହି ଜାତିର ଲୋକମାନେ ଯେଉଁ ମାନ୍ୟତା ଲାଭ କରୁଥିଲେ ତାହା ସେମାନଙ୍କ ଦ୍ୱାରା ସ୍ୱତନ୍ତ୍ରଭାବେ ଉପସ୍ଥାପିତ ହୋଇଥିଲା । ଅସ୍ପୃଶ୍ୟମାନେ ଏଥିରୁ ବାଦ୍ ପଡ଼ି ନ ଥିଲେ ମଧ୍ୟ ସେମାନଙ୍କର ଉପସ୍ଥିତି କମ୍ ଦୃଶ୍ୟମାନ ଥିଲା ।

ଭକ୍ତି ଆନ୍ଦୋଳନ ଥିଲା ଏକ ପ୍ରକାରର ଉପାସନା । ଏହାର ଦେବତାମାନେ ବୈଦିକ ବ୍ରାହ୍ମଣ୍ୟବାଦୀ ଦେବତାଙ୍କଠାରୁ ଅଲଗା ଥିଲେ । ଉପାସନା କାର୍ଯ୍ୟ ବହୁବିଧ ଜାତିଙ୍କ ଲାଗି ଉନ୍ମୁକ୍ତ ଥିଲା । ତଥାପି ଅନେକ ଅନୁଗାମୀ ସମ୍ପନ୍ନ ଚରମ ସଂପ୍ରଦାୟମାନଙ୍କ ତୁଳନାରେ ଏହି ପରିବର୍ତ୍ତନ ରଢ଼ିବାଦୀ ଓ ରକ୍ଷଣଶୀଳ ମନେହେଉଥିଲା । ସମ୍ଭବତଃ ଗୋଟିଏ ଅନ୍ୟଟିର ପ୍ରତିଦ୍ୱନ୍ଦ୍ୱୀ ହିସାବରେ କାର୍ଯ୍ୟ କରୁଥିଲା । ପରସ୍ପରଠାରୁ କମ୍ ବା ଅଧିକ ସ୍ୱତନ୍ତ୍ର ଜ୍ଞାନସମ୍ପନ୍ନ ତାନ୍ତ୍ରିକ ଏବଂ ଶାକ୍ତ ତଥା କାପାଳିକ, କାଳମୁଖ ଏବଂ ପାଶୁପତ ପ୍ରଭୃତି ବିଭିନ୍ନ ସଂପ୍ରଦାୟମାନ ଥିଲେ, ଯେଉଁମାନେ ଏ ସମୟ ବେଳକୁ ଉପମହାଦେଶର ବିଭିନ୍ନ ଭାଗରେ ଅନୁଗାମୀ ହାସଲ କରିଚାଲିଥିଲେ । ସେମାନଙ୍କ ମଧ୍ୟରୁ କେହି କେହି ଶ୍ମଶାନର ମୃତ ଶରୀରର ଅବଶେଷକୁ ନେଇ କିମ୍ବା ଯୌନକ୍ରିୟାକୁ କର୍ମକାଣ୍ଡରେ ପରିଣତ କରି ଅସ୍ୱାଭାବିକ ବିଧିବିଧାନ ପାଳନ କରୁଥିଲେ । ଏସବୁ ବ୍ୟବସ୍ଥା ରଢ଼ିରୁ ମୁକ୍ତି ଚାହୁଁଥିବା ଏବଂ ସମ୍ଭାବ୍ୟ ଯାଦୁକରୀ ଶକ୍ତି ପ୍ରତି ଆକୃଷ୍ଟ ଥିବା ଲୋକମାନଙ୍କୁ ଦେଖାଇବା ଲାଗି କରାଯାଉଥିଲା । ଏସବୁ ବ୍ୟକ୍ତିମାନଙ୍କ ଲାଗି ଆବେଦନ ସୃଷ୍ଟି କରିବା ବ୍ୟତିରେକ ଏହା ଥିଲା ସାମାଜିକ ସଂଘାତର ଏକ ପ୍ରତିଫଳନ । ସମାଜ ପ୍ରତି ସର୍ବନିମ୍ନ କୃତଜ୍ଞତା ପ୍ରକଟ ନ କରିବା ଏମାନଙ୍କର କର୍ମକାଣ୍ଡ ପାଇଁ ଏକ ଆବଶ୍ୟକତା ହୋଇପଡ଼ିଥିଲା । ଏ ଧରଣର କର୍ମକାଣ୍ଡ ଉପମହାଦେଶର ଅନ୍ୟାନ୍ୟ ଭାଗରେ ଅଭ୍ୟାସ କରାଯାଉଥିଲା ଏବଂ ଏମାନଙ୍କର ଏକ ଆଭ୍ୟନ୍ତରୀଣ ସଂଗଠନ ଓ ବାର୍ତ୍ତା ରହିଥିଲା ।

ପ୍ରତିଷ୍ଠିତ ସାମାଜିକ ମୂଲ୍ୟବୋଧଠାରୁ ଇଚ୍ଛାକୃତ ବିକ୍ଷେପଣକୁ ପ୍ରତିବାଦର ଏକ ସ୍ୱରୂପ ରୂପେ ଦେଖିହେବ । ଏମାନଙ୍କର ଚରମ ରଢ଼ି ମୁକ୍ତଭାବ ଯୋଗୁଁ ପ୍ରତ୍ୟାଶିତ ପ୍ରଚାର ସମ୍ଭବ ହେଉଥିଲା । କିନ୍ତୁ ଏହି କାର୍ଯ୍ୟମାନ ଯାଦୁକରୀ ଧାର୍ମିକ କର୍ମକାଣ୍ଡ ହିସାବରେ ପରିଗଣିତ ହେଉଥିଲା । କାଳମୁଖମାନେ ଦେହରେ ମୁର୍ଦ୍ଦାର ପୋଡ଼ା ପାଉଁଶ ବୋଳି ହେଉଥିଲେ ଏବଂ ମଣିଷ ଖପୁରିରେ ଖାଦ୍ୟ ଖାଉଥିଲେ । ସେମାନେ ସାଧାରଣତଃ ଏକ ମଦ୍ୟପାତ୍ର ଏବଂ ଗଦା ଧରି ଯିବାଆସିବା କରିବା ଦେଖାଯାଉଥିଲା । ସେମାନଙ୍କର ଅସ୍ୱାଭାବିକ ବ୍ୟବହାରକୁ ନେଇ ନାନାଦି ଗୁଜବ ପ୍ରଚାରିତ ହେଉଥିଲା । ଯେଉଁମାନଙ୍କୁ ରକ୍ଷଣଶୀଳ ବ୍ୟବସ୍ଥାର ଅନୁମୋଦନ ମିଳୁ ନ ଥିଲା, ସେମାନଙ୍କୁ ନେଇ ଏ ପ୍ରକାରର ଗୁଜବ ବ୍ୟାପୁଥିଲା । କେତେକଙ୍କ

ଲାଗି ରକ୍ଷଣଶୀଳତା ଦ୍ୱାରା ଆକ୍ରାନ୍ତ ଚିନ୍ତା ଓ ଜ୍ଞାନର ସୀମିତତା ବିରୁଦ୍ଧରେ ଗଢ଼ି ବର୍ଦ୍ଧିତ ଭାବଧାରା ଏକ ଯଥାଯଥ ପ୍ରତିବାଦ ସ୍ୱରୂପ ଥିଲା । ଉଦାହରଣ ସ୍ୱରୂପ, ଯାଦୁବିଦ୍ୟାରେ ଆଗ୍ରହ କେବଳ ଏକ ଉତ୍ତେଜନାବାଦ ନ ଥିଲା । ବରଂ ଏହା ଥିଲା ଜ୍ଞାନର ରକ୍ଷକମାନଙ୍କ ଦ୍ୱାରା ଅନୁମୋଦିତ ସୀମା ଡେଇଁ ବସ୍ତୁ ସହ ପରୀକ୍ଷା ନିରୀକ୍ଷା କରିବା ଏବଂ ଅନୁସନ୍ଧାନ ଜାରି ରଖିବାର କୌତୂହଳ । ଯାଦୁବିଦ୍ୟାର ପ୍ରାରମ୍ଭିକ ଅବସ୍ଥାରେ ଧାତୁକୁ ସୁନାରେ ପରିଣତ କରିବାର ରସାୟନ ବିଦ୍ୟା ଓ ରୂପାନ୍ତରୀକରଣ ଇତ୍ୟାଦି ଜଡ଼ିତ ଥିଲା । ତଥାପି ଉକ୍ତ ସଂପ୍ରଦାୟର ଅନୁଗାମୀମାନେ କେତେକ କ୍ଷେତ୍ରରେ ଘଟଣା କ୍ରମରେ ଏହି ଧରଣର କର୍ମକାଣ୍ଡ ସହ ଜଡ଼ିତ ହେବା ବାଦ୍ ଅନ୍ୟ ସମୟରେ ସାଧାରଣ ଜୀବନଯାପନ କରୁଥିଲେ । ସେମାନଙ୍କ ଲାଗି ଏସବୁ ଥିଲା ସମ୍ଭବତଃ ଏକ ବିରେଚନ (catharsis) ପ୍ରକ୍ରିୟା ।

ଶ୍ରମଣୀୟ ଧାରା ବ୍ୟତିରେକ ଧାର୍ମିକ ବିଶ୍ୱାସ ଏବଂ ଅଭ୍ୟାସ କ୍ଷେତ୍ରରେ ତିନୋଟି ବ୍ୟାପକ ଧାରା କ୍ରମଶଃ ରୂପ ପରିଗ୍ରହ କରୁଥିଲା । ଅନେକ ସମୟରେ ବୈଦିକ ବ୍ରାହ୍ମଣ୍ୟବାଦ ଦାର୍ଶନିକମାନଙ୍କର ବ୍ରହ୍ମବିଦ୍ୟା ବିଷୟକ ଆଲୋଚନାକୁ ଆଚ୍ଛନ୍ନ କରି ରଖୁଥିଲା । ଅବଶ୍ୟ ଏହା ମୁଖ୍ୟତଃ ବ୍ରାହ୍ମଣ ତଥା କତିପୟ ବୌଦ୍ଧ ଏବଂ ଜୈନ ବିଦ୍ୱାନ ସମନ୍ୱିତ ଏକ ସଂଖ୍ୟାଲଘୁ ଗୋଷ୍ଠୀ ଭିତରେ ସୀମିତ ରହୁଥିଲା । ଧନାଢ଼୍ୟ ଶିକ୍ଷଣ କେନ୍ଦ୍ର ପ୍ରତିଷ୍ଠା ଏବଂ ସଂସ୍କୃତ ଭାଷାରେ ବ୍ରହ୍ମବିଦ୍ୟା ବିଷୟକ ବିମର୍ଶ ରଚନା ଭଳି କାର୍ଯ୍ୟ ଏହା ମାଧ୍ୟମରେ ପ୍ରୋତ୍ସାହନ ଲାଭ କରୁଥିଲା । ଏହାର ପ୍ରଭାବ ସୀମାବଦ୍ଧ ଥିଲା । ସାଧାରଣ ଲୋକ ସ୍ତରରେ ଏହାର ଧାର୍ମିକ ପ୍ରଭାବ ବହୁତ କମ୍ ଥିଲା । ଦ୍ୱିତୀୟ ଲୋକପ୍ରିୟ ଧାରାଟି ହେଲା ପୌରାଣିକ ଧର୍ମ । ଏ ଧାରାର ବୈଷ୍ଣବ ଧର୍ମ ଏବଂ ଶୈବ ଧର୍ମ ଭକ୍ତିବାଦ ମାଧ୍ୟମରେ ବ୍ୟାପକ ଲୋକପ୍ରିୟତା ହାସଲ କଲା । ଏହା କୃଷକ, କାରିଗର ଏବଂ ସେହିଭଳି ଅନ୍ୟାନ୍ୟ ବର୍ଗର ଲୋକମାନଙ୍କୁ ବିପୁଳ ସଂଖ୍ୟାରେ ଆକୃଷ୍ଟ କଲା । ଫଳରେ ବିଭିନ୍ନ ଉତ୍ସ ସମ୍ଭୂତ ବହୁବିଧ ଧାର୍ମିକ ପଦ୍ଧତି ମଧ୍ୟରେ ସମନ୍ୱୟ ସାଧିତ ହେଲା । ଧର୍ମ ପାଳନ କରୁଥିବା ଏକ ନିର୍ଦ୍ଦିଷ୍ଟ ସାମାଜିକ ଗୋଷ୍ଠୀ ମାଧ୍ୟମରେ ଏହି ଆତ୍ମୀକରଣ ସମ୍ଭବ ହେଲା । ତୃତୀୟ ଧାରାଟି ହେଲା, ବିକ୍ଷିପ୍ତଭାବେ ପ୍ରସାରିତ ବିଭିନ୍ନ ଧାର୍ମିକ ପଦ୍ଧତି । ଏହାକୁ କେହି କେହି ତାନ୍ତ୍ରିକ ଧାରା ବୋଲି କହନ୍ତି । ଏହାକୁ ସ୍ୱାଧୀନ ଭାବେ ଅଭ୍ୟାସ କରାଯାଉଥିଲା ଏବଂ ଔପଚାରିକ ଶାକ୍ତ ଧର୍ମଧାରାର ଏକ ଅଙ୍ଗରୂପେ ଦେଖାଯାଉଥିଲା । ପୌରାଣିକ ଧର୍ମରେ ଏହା ଏକ ସଂଯୋଜନ ହେଲା ଏବଂ ବୌଦ୍ଧଧର୍ମର କେତେକ ବିଭାବକୁ ମଧ୍ୟ ପ୍ରଭାବିତ କଲା । ଉପରୋକ୍ତ ତିନି ଧର୍ମଧାରା ନିଜ ନିଜ ଭିତରେ ଆବଦ୍ଧ ନ ଥିଲେ । ବରଂ ସେମାନଙ୍କ ମଧ୍ୟରେ ସହାବସ୍ଥାନ ଥିବା ଯୋଗୁଁ ଗୋଟିଏ ଅନ୍ୟଟିର ଉପାଦାନ ଆହରଣ କରିପାରୁଥିଲେ । ଉପର ବର୍ଣ୍ଣିତ ଦ୍ୱିତୀୟ ଏବଂ ତୃତୀୟ ଧାରାର

ବିଶ୍ୱାସ ଏବଂ ଅଭ୍ୟାସରେ ଅନ୍ତତଃପକ୍ଷେ ଏକ ଆଭ୍ୟନ୍ତରୀଣ ନମନୀୟତା ରହିଥିଲା । ଏହା ହେଲା ଭାରତୀୟ ଧର୍ମର ଗୁଣବତ୍ତା । ଅଲୱାର ଏବଂ ନୟନାରମାନଙ୍କ କ୍ଷେତ୍ରରେ ପୂର୍ବରୁ ବୌଦ୍ଧ ଏବଂ ଜୈନମାନେ ସମ୍ବୋଧନ କରିଥିବା କେତେକ ସାମାଜିକ ପ୍ରସଙ୍ଗର ପ୍ରତିଧ୍ୱନି ପରିଦୃଷ୍ଟ ହେଉଥିଲା । ଏହି କାରଣରୁ ପରବର୍ତ୍ତୀ ସମୟରେ ସେମାନଙ୍କର ଅନେକ ଅନୁଗାମୀ ସୃଷ୍ଟି ହୋଇଥିଲେ ।

ସମସ୍ତ ପ୍ରତିବାଦ କେବଳ ସାମାଜିକ ଧାରାରୁ ବିଚ୍ୟୁତି ମାଧ୍ୟମରେ ପ୍ରଦର୍ଶିତ ହେଉଥିଲା ତାହା ନୁହେଁ । ଅନ୍ୟାନ୍ୟ ଶୈବ ସଂପ୍ରଦାୟମାନ ସାମାଜିକ ଅନୁଷ୍ଠାନଗୁଡ଼ିକ ସହିତ ଘନିଷ୍ଠଭାବେ ଅନୁବନ୍ଧିତ ଥିଲେ । ଏମାନଙ୍କ ମଧ୍ୟରୁ ଦ୍ୱାଦଶ ଶତାବ୍ଦୀରେ ସାମାଜିକ ସଂସ୍କାର ସପକ୍ଷରେ ଯୁକ୍ତି ଦର୍ଶାଇ ଆବିର୍ଭୂତ ହୋଇଥିବା ଲିଙ୍ଗାୟତ ବା ବୀରଶୈବ ସଂପ୍ରଦାୟମାନେ ବେଶ୍ ପରିଚିତ । ସେମାନେ ସମ୍ଭବତଃ ସମସାମୟିକ ଧାର୍ମିକ ଚିନ୍ତନ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏହାର ପ୍ରତିଷ୍ଠାତା ବାସବାନ୍ନା ଜୈନଧର୍ମ ତ୍ୟାଗ କରିଥିଲେ ଏବଂ ଦାକ୍ଷିଣାତ୍ୟର କଲ୍ୟାଣୀସ୍ଥିତ କାଳଚୁରି ଦରବାର ସହିତ ସଂପୃକ୍ତ ଥିଲେ । ତାଙ୍କର ବକ୍ତବ୍ୟରେ ରହିଥିବା ବିଦ୍ରୁପ ବ୍ୟଞ୍ଜିତ ସ୍ୱର ସେ କହୁଥିବା କଥାକୁ ତୀକ୍ଷ୍ଣତା ପ୍ରଦାନ କରୁଥିଲା । ନିମ୍ନରେ ତାଙ୍କ ରଚନାର ଏକ ଉଦାହରଣ ଦିଆଗଲା :

*"ବଳୀଗୃହକୁ ନିଆଯାଉଥିବା ମେଣ୍ଢା ଯେଉଁ ପତ୍ରମାଳାରେ ସଜ୍ଜିତ ହୋଇଥାଏ ତାହାକୁ ସେ ନିଜେ ଭକ୍ଷଣ କରେ... ସାପର ପାଟିରେ ଫସିଯାଇଥିବା ବେଙ୍ଗ ଉଡ଼ିଯାଉଥିବା ଜନ୍ତୁକୁ ଗିଳିଦେବାକୁ ଇଚ୍ଛା କରେ । ଆମର ଜୀବନ ସେହିଭଳି । ମରଣୋନ୍ମୁଖୀ ମଣିଷ କ୍ଷୀର ଏବଂ ଘିଅ ପିଏ... ସେମାନେ [ଲୋକ] ଯେତେବେଳେ ପଥର ଉପରେ ଖୋଦିତ କୁଣ୍ଡଳୀକୃତ ସାପକୁ ଦେଖନ୍ତି, ତା ମୁହଁରେ କ୍ଷୀର ଢାଳନ୍ତି : ଯଦି ଗୋଟିଏ ଜୀଅନ୍ତା ସାପ ଆସେ ତେବେ ମାର ମାର ବୋଲି ଚିତ୍କାର କରନ୍ତି । ଖାଇବାକୁ ଦେଲେ ଦେବତାଙ୍କର ଯେଉଁ ସେବକ ଖାଇପାରନ୍ତା, ତାକୁ ଦୂର୍ ଦୂର୍ କହି ତଡ଼ିଦିଅନ୍ତି । ମାତ୍ର ଦେବତାଙ୍କର ପ୍ରତିମୂର୍ତ୍ତି, ଯିଏ ଖାଇପାରିବ ନାହିଁ, ତାକୁ ଭୋଗଥାଳି ଅର୍ପଣ କରନ୍ତି ।"*

(Thomas De Bary (ed.),
*The Sources of Indian Tradition*, p.357)

ଲିଙ୍ଗାୟତମାନେ ଭକ୍ତି ପନ୍ଥାଠାରୁ ଭିନ୍ନ ଥିଲେ, କାରଣ ସେମାନେ ଜଣେ ଦେବତାଙ୍କୁ ଭକ୍ତି କରିବାଲାଗି ପ୍ରବଚନ ମାଧ୍ୟମକୁ ଜୋର୍ ଦେଉ ନ ଥିଲେ । ସେମାନେ ପ୍ରତ୍ୟକ୍ଷଭାବେ ଧାର୍ମିକ ଛଳନା ଉପରେ ଆକ୍ରମଣ କରୁଥିଲେ । ସେମାନଙ୍କ ଆଦ୍ୟ ପର୍ଯ୍ୟାୟ ଶିକ୍ଷାର ଅନେକ ଭାଗରେ ବ୍ରହ୍ମଣ୍ୟବାଦକୁ ପ୍ରଶ୍ନ କରାଯାଇଥିଲା । ବ୍ରାହ୍ମଣ୍ୟ ଚିନ୍ତା ଏବଂ ଅଭ୍ୟାସ ସହ ଜଡ଼ିତ

ପୁନର୍ଜନ୍ମ ତତ୍ତ୍ୱ ଏବଂ ଜାତି ବ୍ୟବସ୍ଥାକୁ ସେମାନେ ପ୍ରଶ୍ନ କରୁଥିଲେ । କେତେକ ଗୋଷ୍ଠୀର ବିଚାରଧାରା ସାମାଜିକ ଦିଗରୁ ପ୍ରଦୂଷିତ ହୋଇଥିବାରୁ ଗ୍ରହଣଯୋଗ୍ୟ ନ ଥିଲା । ଲିଙ୍ଗାୟତମାନେ ଏକ ସାମାଜିକ ବିବେକ ଉପରେ ଗୁରୁତ୍ୱ ଆରୋପ କରୁଥିଲେ ଏବଂ ଧର୍ମଶାସ୍ତ୍ର ଅନୁମୋଦନ ନ କରିଥିବା ଅନେକ ସାମାଜିକ ଅଭ୍ୟାସକୁ ଉତ୍ସାହ ପ୍ରଦାନ କରୁଥିଲେ । ଯୌବନପ୍ରାପ୍ତି ପରେ ବିବାହ ଏବଂ ବିଧବା ବିବାହ ହେବ ଏହାର ଉଦାହରଣ । ଯଦିଓ ନାରୀମାନଙ୍କୁ ଅଧିକ ମାନ୍ୟତା ଦେବା ସପକ୍ଷରେ ସେତେବେଳେ ଯୁକ୍ତି କରାଯାଉଥିଲା, ତଥାପି ଜଣେ ନାରୀ ପୂଜକ ହେବା ଉପରେ ପ୍ରତିବନ୍ଧକ ରହିଥିଲା । ବ୍ରାହ୍ମଣ-ଜମିଦାରବାଦ ଫଳରେ ଜମିଦାରଙ୍କୁ କର ଦେବା ଏବଂ ରାଜ୍ୟକୁ ଟିକସ ଦେବାଲାଗି କୃଷକମାନଙ୍କ ଉପରେ ଚାପ ପକାଯାଉଥିଲା । ଲିଙ୍ଗାୟତମାନେ ଯେ ବ୍ରାହ୍ମଣମାନଙ୍କ ଆକ୍ରମଣର ଶିକାର ହେଉଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା । ଅଣ-ବ୍ରାହ୍ମଣ ଗୋଷ୍ଠୀମାନଙ୍କ ଉପରେ ଏହା ଏକ ଆବେଦନ ଥିଲା ଏବଂ ଏହା ଶ୍ରମଣମାନଙ୍କ ଚିନ୍ତାଧାରା ତୁଲ୍ୟ ମନେହେଲା । ଶିବ ଏକ ଲିଙ୍ଗ ଆକାରରେ ପୂଜା ପାଉଥିଲେ । ତେଣୁ ଏହି ସଂପ୍ରଦାୟର ପ୍ରତ୍ୟେକ ସଭ୍ୟ ଏକ କ୍ଷୁଦ୍ରାକୃତି ଲିଙ୍ଗ ନିଜ ସଙ୍ଗରେ ବହନ କରୁଥିଲେ । ସେମାନେ ଶବଦାହ ପରିବର୍ତ୍ତେ ତାକୁ ପୋତିବା ଆରମ୍ଭ କଲେ (ଯାହା ସନ୍ନ୍ୟାସୀମାନଙ୍କ କ୍ଷେତ୍ରରେ କରାଯାଏ) । ଏହା ପୁନଶ୍ଚ ବ୍ରାହ୍ମଣ୍ୟ କର୍ମକାଣ୍ଡର ବିରୁଦ୍ଧାଚରଣ କଲା । ସେମାନଙ୍କର ଉଦାରବାଦୀ ସାମାଜିକ ମନୋଭାବ ଫଳରେ ସେମାନଙ୍କୁ ନୀଚ ଜାତିର ଲୋକମାନଙ୍କର ସମର୍ଥନ ପ୍ରାପ୍ତ ହେଲା । ତେବେ ଖୋଦ୍ ଲିଙ୍ଗାୟତମାନେ କ୍ରମେ ଏକ ଜାତିରେ ପରିଣତ ହୋଇଉଠିଲେ ।

ଅସ୍ପୃଶ୍ୟମାନଙ୍କ ଭଳି ଯେଉଁ ନୀଚ ଜାତିର ଲୋକମାନଙ୍କୁ ମନ୍ଦିରରେ ପୂଜା ଅର୍ଚ୍ଚନା ବାରଣ କରାଗଲା, ସେମାନେ ନିଜ ପାଇଁ ଉପାସନାର ସ୍ଥଳୀ ଓ ସ୍ୱରୂପ ସନ୍ଧାନ କଲେ । ଯେଉଁମାନେ ନିମ୍ନ ଜାତିର ଥିଲେ, ସେମାନଙ୍କର ଜାତିଗତ ମାନ୍ୟତାରେ ଉନ୍ନତି ଆସିବା ମାତ୍ରେ ସେମାନେ ନିର୍ଦ୍ଦିଷ୍ଟ ସଂପ୍ରଦାୟର କର୍ମକାଣ୍ଡ ଏବଂ କିମ୍ବଦନ୍ତୀକୁ ଆଦରି ନେଲେ । କେତେକ କ୍ଷେତ୍ରରେ ସେହି ସ୍ଥାନୀୟ ଦେବାଦେବୀଙ୍କର ପୂଜାର୍ଚ୍ଚନା କରାଗଲା, ଯେଉଁମାନେ ପ୍ରାରମ୍ଭିକ ପର୍ଯ୍ୟାୟରେ ପୌରାଣିକ ବ୍ୟବସ୍ଥାରେ ଦେବତା ରୂପେ ଗୃହୀତ ହୋଇ ନ ଥିଲେ । ଏମାନଙ୍କ ମଧ୍ୟରୁ ତ୍ରୟୋଦଶ ଶତାବ୍ଦୀରେ ଲୋକପ୍ରିୟ ହୋଇଥିବା ପଶ୍ଚିମ ଭାରତର ପଣ୍ଢରପୁର ସ୍ଥିତ ପାଣ୍ଡୁରଙ୍ଗ ବା ବିଠଲ୍ ଅନ୍ୟତମ । ମହାରାଷ୍ଟ୍ର ଏବଂ କର୍ଣ୍ଣାଟକର ସୀମାବର୍ତ୍ତୀ ଅଞ୍ଚଳରେ ପ୍ରଚଳିତ ବୀର ଉପାସନା ପଦ୍ଧତିରୁ ହୁଏତ ଏହାର ଅଭ୍ୟୁଦୟ ହୋଇଥିବ । ବିଠଲ ବୀର-ପ୍ରସ୍ତରର ସମତୁଲ ଦେଖାଯାଆନ୍ତି । ବୈଷ୍ଣବ ପନ୍ଥାକୁ ସମ୍ମାନ ଜଣାଇ ବିଠଲଙ୍କୁ ବିଷ୍ଣୁଙ୍କ ସହ ଏକାତ୍ମ କରି ପ୍ରଦର୍ଶନ କରାଯାଇଛି । ଦାକ୍ଷିଣାତ୍ୟରେ ପଣ୍ଢରପୁର ଭକ୍ତି ଆନ୍ଦୋଳନର ଏକ

କେନ୍ଦ୍ରରେ ପରିଣତ ହେଲା । ପରବର୍ତ୍ତୀ ସମୟରେ ଏଠାକୁ ନାମଦେବ, ଜନାବାଈ, ସେନ ଏବଂ ନରହରି (ବୃତ୍ତିରେ ଦରଜୀ, ଚାକରାଣୀ, ବାରିକ ଏବଂ ବଣିଆ) ପ୍ରମୁଖ କବି ଏବଂ ପ୍ରବଚକମାନେ ଆସିଲେ । ସେମାନେ ମରାଠୀ ଭାଷାରେ ଗୀତ ରଚନା କଲେ ଏବଂ ତାଙ୍କ ଚତୁର୍ଦ୍ଦିଗରେ ସ୍ଥାନୀୟ ଲୋକମାନଙ୍କର ଭିଡ଼ ଲାଗିଲା । ଏହି ଧର୍ମପନ୍ଥାର କେନ୍ଦ୍ରଗୁଡ଼ିକ ତୀର୍ଥସ୍ଥାନ ଏବଂ ବଜାର କେନ୍ଦ୍ର ରୂପେ ମଧ୍ୟ ସୁପରିଚିତ ହେଲା ।

ଆହୁରି ସ୍ଥାନୀୟ ସ୍ତରରେ ଗ୍ରାମୀଣ ଦେବାଦେବୀମାନେ ଥିଲେ । ସେମାନଙ୍କ ମଧ୍ୟରୁ ତାମିଲ୍‌ନାଡୁର ଆୟନାର ଖୁବ୍ ପ୍ରସିଦ୍ଧ । ଗ୍ରାମ ଉପକଣ୍ଠରେ ଅବସ୍ଥିତ ତାଙ୍କ ଲାଗି ଉଦ୍ଦିଷ୍ଟ ଦେବାଳୟରେ ବିଭିନ୍ନ ଆକୃତିର ମାଟିଘୋଡ଼ା ଦେଖିବାକୁ ମିଳିଥାଏ । ଦେବାଳୟଟି ଆଡ଼ମ୍ବରହୀନ ମନେହୋଇପାରେ; ମାତ୍ର ଘୋଡ଼ାମାନଙ୍କର ଉପସ୍ଥିତି ତାହାକୁ ବେଶ୍ ଆକର୍ଷଣୀୟ କରିଥାଏ । ବର୍ତ୍ତମାନ ସେମାନେ ଗ୍ରାମୀଣ ତାମିଲନାଡୁର ଲକ୍ଷଣୀୟ ବିଭବ; ଅନେକ ସ୍ଥାନରେ ଶିବ ଏବଂ ବିଷ୍ଣୁଙ୍କ ମୋହିନୀ ଅବତାରଙ୍କର ପୁତ୍ର ରୂପେ ଆୟନାରଙ୍କର ପୂଜା ହେଉଅଛି । ଭାରତର ବିଭିନ୍ନ ଭାଗରେ ସ୍ଥାନୀୟ ଦେବତା ଏବଂ ଅନ୍ୟାନ୍ୟ ଉପଦେବତାମାନଙ୍କର ପୂଜା ହୋଇଥାଏ । ବେଳେବେଳେ ଏହା ପୌରାଣିକ ହିନ୍ଦୁତ୍ୱ ସହ ସମାନ୍ତର ମନେହୁଏ । ପୁଣି ବେଳେବେଳେ ଏହା ସହ ସମ୍ମିଳିତ ହୋଇଥିଲା ପରି ଲାଗେ । ଯେଉଁ କ୍ଷେତ୍ରରେ ଉଭୟ ସମ୍ମିଳିତ ହୋଇଥାନ୍ତି, ସେ କ୍ଷେତ୍ରରେ ତାହା ଅଭିଜାତମାନଙ୍କର ଧାର୍ମିକ ପନ୍ଥା ଏବଂ ଲୋକପ୍ରିୟ ପନ୍ଥା ମଧ୍ୟରେ ଏକ ପାରସ୍ପରିକ ବିନିମୟ ହେଲାପରି ମନେହୁଏ ! ଏହା ସେ ସମୟର ଦାର୍ଶନିକ ଭାବନାରାଜିର ବିପରୀତ ରୂପେ ପ୍ରତିଭାତ ହୁଏ ।

ଦର୍ଶନ ଚର୍ଚ୍ଚାରେ ବ୍ରାହ୍ମଣମାନଙ୍କର ଏକାଧିପତ୍ୟ ଥିଲା । ବ୍ୟତିକ୍ରମ ସ୍ୱରୂପ କେତେକ କେନ୍ଦ୍ରରେ ପୁଣି ଅବ୍ରାହ୍ମଣ ବେଲାଲମାନଙ୍କର ଗୁରୁତ୍ୱ ଥିଲା । କେତେକ ଶୈବ ମଠରେ ବେଲାଳମାନେ ନିଜ ପନ୍ଥାର ଦାର୍ଶନିକ ବିଚାରଧାରାକୁ ବ୍ୟାଖ୍ୟା କରୁଥିଲେ । ପୁଣି ଜୈନ ଏବଂ ବୌଦ୍ଧମାନେ ମଧ୍ୟ ବିତର୍କରେ ଭାଗ ନେଉଥିଲେ । ସାରା ଉପମହାଦେଶରେ ବିଭିନ୍ନ ମଠ ଏବଂ ମହାବିଦ୍ୟାଳୟମାନଙ୍କରେ ବିତର୍କ ଚାଲୁଥିଲା । ସେମାନଙ୍କ ମଧ୍ୟରେ ଯୋଗାଯୋଗର ଭାଷା ଥିଲା : ସଂସ୍କୃତ । ମାତ୍ର ବୃହତ୍ତର ସମାଜ ଉପରେ ସେମାନଙ୍କର ବୌଦ୍ଧିକ ପ୍ରଭାବ ପ୍ରତିବନ୍ଧିତ ହେଉଥିଲା । ଆଦ୍ୟ ବୌଦ୍ଧ ଧର୍ମାବଲମ୍ବୀମାନେ ସହର ନିକଟବର୍ତ୍ତୀ ଉପବନରେ ସର୍ବସାଧାରଣରେ ବିତର୍କ କରୁଥିଲେ । ମାତ୍ର ସଂସ୍କୃତର ଏହି ବିମର୍ଶରେ କେବଳ ପ୍ରତିଷ୍ଠିତ ବିଦ୍ୱାନମାନେ ଅଂଶଗ୍ରହଣ କରୁଥିଲେ, ଯଦିଓ ବିବାଦ ଏବଂ ବିତର୍କରେ ଉପମହାଦେଶର ବିଭିନ୍ନ ଭାଗର ବିଦ୍ୱାନଗଣ ଉପସ୍ଥିତ ରହୁଥିଲେ । ଏହାଫଳରେ ବିଦ୍ୱାନ

ଗୋଷ୍ଠୀ ମଧ୍ୟରେ ସୂକ୍ଷ୍ମ ସୁସଂଯୋଜିତ ଦାର୍ଶନିକ ଅବଧାରଣାମାନ ରୂପ ପରିଗ୍ରହ କରୁଥିଲା । ଶଙ୍କରାଚାର୍ଯ୍ୟଙ୍କ ଅନୁଚିନ୍ତାମାନ କ୍ରମେ ବିକଶିତ ଏବଂ ମାର୍ଜିତ ହେଉଥାଏ । ଅନ୍ୟ ଗୁରୁମାନଙ୍କର ତତ୍ତ୍ୱ ସବୁକୁ ନେଇ ମଧ୍ୟ ଆଲୋଚନା ଚାଲିଥାଏ । ସେଥିରୁ କେତେକ ଶଙ୍କରଙ୍କ ଅନୁଚିନ୍ତା ବିରୋଧୀ ତତ୍ତ୍ୱ ମଧ୍ୟ ଥାଏ । ଏକାଦଶ ଶତାବ୍ଦୀର ବୈଷ୍ଣବ ଦାର୍ଶନିକ ରାମାନୁଜ ଥିଲେ ଶଙ୍କରଙ୍କର ଅନ୍ୟତମ ପ୍ରମୁଖ ସମାଲୋଚକ ।

ରାମାନୁଜ ଜଣେ ତାମିଲ୍ ବ୍ରାହ୍ମଣ ଥିଲେ ଯିଏ ନିଜ ଜୀବନର ଗୁରୁତ୍ୱପୂର୍ଣ୍ଣ ଅଂଶ ପ୍ରସିଦ୍ଧ ଶ୍ରୀରଙ୍ଗମ ମନ୍ଦିର (ତିରୁଚିରାପଲ୍ଲୀ)ରେ ଶିକ୍ଷାଦାନ କରି କଟାଇଥିଲେ । ବସ୍ତୁତଃ ସେ ଶ୍ରୀବୈଷ୍ଣବ ଆନ୍ଦୋଳନର ପୁରୋଧା ହିସାବରେ ସମ୍ମାନିତ ହେଉଥିଲେ । ପୁନର୍ଜନ୍ମରୁ ମୁକ୍ତି ପାଇବାର ଏକମାତ୍ର ବାଟ ରୂପେ ଜ୍ଞାନକୁ ସ୍ୱୀକାର କରିବାର ଶଙ୍କର ମାର୍ଗ ସହିତ ସେ ସହମତ ନ ଥିଲେ । ରାମାନୁଜଙ୍କ ମତରେ, ଏହା ଅନେକ ମାର୍ଗ ମଧ୍ୟରୁ ଗୋଟିଏ ମାର୍ଗ କେବଳ । ଏହା ଶୁଦ୍ଧ ଭକ୍ତି ଭଳି ପ୍ରଭାବଶାଳୀ ଏବଂ ବିଶ୍ୱସନୀୟ ନୁହେଁ । ଭକ୍ତି ପନ୍ଥାରେ ପ୍ରେମମୟ ଏବଂ କ୍ଷମାଶୀଳ ଆରାଧ୍ୟ ଦେବତାଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣରୂପେ ସମର୍ପଣ କରିଦେବାକୁ ପଡ଼େ । ଯଦିଓ ଏହି ସମ୍ପର୍କକୁ ଦାର୍ଶନିକ ଭାବଧାରାରେ ବ୍ୟକ୍ତ କରାଯାଇଛି, ତଥାପି ଏହାକୁ ମୂଳତଃ ବ୍ୟକ୍ତିକ ସ୍ତରରେ ଦେଖାଯାଏ । ତାଙ୍କର କେତେଜଣ ଅନୁଗାମୀଙ୍କ ମତରେ, ଜଣେ ଦେବତାଙ୍କ ନିକଟରେ କ୍ଷମା ଯାଚନା କରିବା ଉଚିତ । ମାତ୍ର ଅନ୍ୟମାନେ ବିଶ୍ୱାସ କରନ୍ତି ଯେ କେଉଁମାନେ ମୁକ୍ତି ପାଇବେ ତାହା ପ୍ରଭୁ ନିଜେ ସ୍ଥିର କରନ୍ତି । କୌତୂହଳର ବିଷୟ ହେଲା, ଏହା ୟୁରୋପର ପ୍ରତିବାଦୀ (Protestant) ଦାର୍ଶନିକ କାଲଭିନ୍‌ଙ୍କ ମତବାଦ ସହ ପାଖାପାଖି ମିଶିଯାଏ । ପୁନର୍ଜନ୍ମରୁ ମୁକ୍ତି ପାଇଁ ଆତ୍ମା ବ୍ରହ୍ମରେ ଲୀନ ହେବା କଥାଟି ରାମାନୁଜ ଉପନିଷଦୀୟ ଅନୁଚିନ୍ତାରୁ ଆହରଣ କରିଥିବା ମନେହୁଏ । ଏହି ସମ୍ପର୍କରେ ବ୍ୟକ୍ତି ଉପରେ ଗୁରୁତ୍ୱ ପ୍ରଦାନ ଭକ୍ତିର ଏକ ପ୍ରମୁଖ ବିଭାବ ଯେଉଁଥିରେ 'ଶ୍ରମଣୀୟ' ଭାବଧାରାର ଛାପ ଦେଖିବାକୁ ମିଳେ । ଏହି କାରଣରୁ ରାମାନୁଜ ଭକ୍ତି ଆନ୍ଦୋଳନ ଏବଂ ବ୍ରାହ୍ମଣ୍ୟ ବ୍ରହ୍ମବିଦ୍ୟା ମଧ୍ୟରେ ଏକ ପ୍ରଭାବଶାଳୀ ସେତୁର ଭୂମିକା ତୁଲାଇଥିଲେ । ମନେହୁଏ, ସେ ଯେପରି ଦୁଇଟି ଖିଅକୁ ନେଇ କିଛି ବୁଣିବାକୁ ଚେଷ୍ଟା କରିଥିଲେ ।

ତ୍ରୟୋଦଶ ଶତାବ୍ଦୀର ତତ୍ତ୍ୱଜ୍ଞ ମାଧବ ପୁନଶ୍ଚ ଭକ୍ତି ଏବଂ ବ୍ରାହ୍ମଣ୍ୟ ବ୍ରହ୍ମବିଦ୍ୟା ମଧ୍ୟରେ ସମନ୍ୱୟ ଲାଗି ଚେଷ୍ଟା କଲେ । ସେ ମଧ୍ୟ ଜଣେ ବୈଷ୍ଣବ ଥିଲେ । ତାଙ୍କ ଅନୁଚିନ୍ତା ମୁତାବକ ବିଷ୍ଣୁ ଏପରି ଜଣେ ଦେବତା, ଯିଏ ଶୁଦ୍ଧ ଆତ୍ମମାନଙ୍କୁ ନିର୍ବାଚିତ କରି ଆଶୀର୍ବାଦ ପ୍ରଦାନ ପୂର୍ବକ ମୁକ୍ତି ଦିଅନ୍ତି । ତେବେ ଏହି ଚୟନ ପ୍ରକ୍ରିୟା ରାମାନୁଜଙ୍କ ଅନୁଗାମୀମାନେ ବିଶ୍ୱାସ କଲାପରି ମନୋମୁଖୀ ନୁହେଁ । ମାଧବଙ୍କ କେତେକ ଅବଧାରଣାରୁ ସେ ମାଲଓ୍ୱାରର

ଖ୍ରିଷ୍ଟିଆନ୍ ଗୀର୍ଜାର ଶିକ୍ଷା ସହିତ ପରିଚିତ ଥିଲା ପରି ମନେହୁଏ । ତାଙ୍କ ଅନୁସାରେ ବିଷ୍ଣୁ ତାଙ୍କର ପୁତ୍ର ବାୟୁ ଦେବତାଙ୍କ ମାଧ୍ୟମରେ ଭକ୍ତ ଉପରେ ଆଶିଷ ସଂପାତ କରିଥାନ୍ତି । ଏହି ଧାରଣା ବ୍ରାହ୍ମଣ୍ୟ କିମ୍ବା ପୌରାଣିକ ବିଶ୍ୱାସ ପ୍ରସୂତ ନୁହେଁ । ବରଂ ଏହା ଖ୍ରୀଷ୍ଟଧର୍ମର ପବିତ୍ର ଆତ୍ମା ବିଷୟକ ଅବଧାରଣା ଆଧାରିତ ।

ଯଦିଓ ରାମାନୁଜ ଉଚ୍ଚ ଜାତିଙ୍କ ଲାଗି ସ୍ୱତନ୍ତ୍ର ସୁବିଧା ବ୍ୟବସ୍ଥାକୁ ଅନୁମୋଦନ କରୁଥିଲେ, ତଥାପି ମନ୍ଦିରରେ ପୂଜା ଅର୍ଚ୍ଚନା ଲାଗି କେତେକ ଶୂଦ୍ର ଗୋଷ୍ଠୀର ଲୋକମାନଙ୍କୁ ଅନୁମତି ନ ଦେବାର ପ୍ରଥାକୁ ସେ ବିରୋଧ ମଧ୍ୟ କରୁଥିଲେ । ସମସ୍ତ ଶୂଦ୍ରଙ୍କ ଲାଗି ମନ୍ଦିରର ଦ୍ୱାର ଖୋଲିଦେବା ପାଇଁ ତାଙ୍କର ଯୁକ୍ତି ବିଶେଷ ସଫଳ ହୋଇପାରି ନ ଥିଲା । ଭକ୍ତି ଆନ୍ଦୋଳନର କ୍ରମବର୍ଦ୍ଧିଷ୍ଣୁ ଶକ୍ତି ଏବଂ ରାମାନୁଜ, ମାଧବ ପ୍ରଭୃତି ତତ୍ତ୍ୱଜ୍ଞମାନଙ୍କର ସମନ୍ୱୟର ପ୍ରଚେଷ୍ଟା ଫଳରେ ରକ୍ଷଣଶୀଳମାନେ ବୁଝାମଣାର ଆବଶ୍ୟକତା ଅନୁଭବ କଲେ । ଯଦିଓ ସମସ୍ତ ଶୂଦ୍ରଙ୍କ ଲାଗି ମନ୍ଦିରର ଦ୍ୱାର ଖୋଲି ଦିଆଗଲା ନାହିଁ, ତଥାପି ବହୁସଂଖ୍ୟକ ଗୌଣ ପନ୍ଥାର ଦେବାଦେବୀ ଏବଂ କର୍ମକାଣ୍ଡକୁ ଗ୍ରହଣ କରାଗଲା । ଜାତିଭିତ୍ତିକ ସମାଜରେ ସାମାଜିକ ଏବଂ ଧାର୍ମିକ ଜୀବନର କେନ୍ଦ୍ର ହିସାବରେ ମନ୍ଦିରର ଗୁରୁତ୍ୱ ବଜାୟ ରଖିବା ଲାଗି ଏସବୁ ଜରୁରୀ ଥିଲା । ନୂତନ ଉପାସନାସ୍ଥଳୀ ଏବଂ ମୂର୍ତ୍ତିଗୁଡ଼ିକୁ ସ୍ଥାନ ଦେବାଲାଗି ମନ୍ଦିରର କ୍ଷେତ୍ର ପ୍ରଶସ୍ତ କରିବାକୁ ପଡ଼ିଲା । ଅର୍ଥନୈତିକ ସମୃଦ୍ଧି ଫଳରେ ବଡ଼ ଏବଂ ଅଧିକ ଅଳଙ୍କୃତ ଢାଞ୍ଚାମାନ ଗଢ଼ାହେଲା । ନିଜର ସମକକ୍ଷ ତଥା ପ୍ରଜାମାନଙ୍କ ଦୃଷ୍ଟିରେ ମାନ୍ୟତା ବଢ଼ାଇବା ପାଇଁ ଅପେକ୍ଷାକୃତ କ୍ଷୁଦ୍ର ରାଜବଂଶଗୁଡ଼ିକ ମଧ୍ୟ ଆକର୍ଷଣୀୟ ଧାର୍ମିକ କୀର୍ତ୍ତିମାନ ପ୍ରତିଷ୍ଠା କଲେ ।

## ଧାର୍ମିକ କୀର୍ତ୍ତି

ଦୁର୍ଭାଗ୍ୟକୁ ଏହି କାଳଖଣ୍ଡର ଘରୋଇ ଭବନମାନ ରହିନାହିଁ । ମାତ୍ର ତିଷ୍ଠିରହିଛି ମନ୍ଦିରସବୁ । ସେଥିରୁ ସାରା ଉପଦ୍ୱୀପରେ ଦୁଇଟି ଶୈଳୀ ଥିବା କଥା ପରିଲକ୍ଷିତ ହୁଏ । ଦାକ୍ଷିଣାତ୍ୟରେ ଥିବା ମନ୍ଦିରମାନ 'ବେସରା ଶୈଳୀ'ରେ ନିର୍ମିତ । ଆଇହୋଲ୍‌ର ଦୁର୍ଗା ମନ୍ଦିର ବା ପଟ୍ଟଡ଼କଲର ବିରୁପାକ୍ଷ ମନ୍ଦିର ହେଲା ଏହି ଶୈଳୀର ଉଦାହରଣ । ଦକ୍ଷିଣ ଭାରତରେ 'ଦ୍ରାବିଡ଼ ଶୈଳୀ' ଅତ୍ୟନ୍ତ ସାଧାରଣ, ତେବେ ଅଞ୍ଚଳ ଭିତ୍ତିରେ ଭିନ୍ନ ଭିନ୍ନ । ଉଦାହରଣ ସ୍ୱରୂପ, କେରଳର ମନ୍ଦିର ସ୍ଥାପତ୍ୟ ସ୍ୱତନ୍ତ୍ର ଭାବେ କେରଳୀ । ଶୈଳୀରେ ପରିବର୍ତ୍ତନର କାରଣ ହେଲା ପଥର ପରିବର୍ତ୍ତେ କାଠରେ ହୋଇଥିବା ନିର୍ମାଣ କାର୍ଯ୍ୟ ।

ଅନେକ ମନ୍ଦିର ବୃତ୍ତାକାରରେ ନିର୍ମିତ ହେଉଥିଲା ଏବଂ ବୃତ୍ତାକାର ଗର୍ଭଗୃହ ସମକୈନ୍ଦ୍ରିକ କ୍ଷେତ୍ର ଦ୍ୱାରା ପରିବୃତ୍ତ ହେଉଥିଲା । ଅନେକ ସାଧାରଣ ବିଭାବ ସତ୍ତ୍ୱେ ଆଞ୍ଚଳିକ ସ୍ଥାପତ୍ୟର ପ୍ରଭାବ ପ୍ରତିଭାତ ହେଉଥିଲା ।

ଆଦ୍ୟ ଚୋଳ ଯୁଗର ମନ୍ଦିରଗୁଡ଼ିକ ତଥାପି ଛୋଟ ଥିଲା ଏବଂ ସରଳତା ହେତୁ ଚମତ୍କାର ଥିଲା । ଏହାର ଏକ ଉଦାହରଣ ହେଲା : ପୂର୍ବରୁ ପଥର କଟାହୋଇ ନିର୍ମିତ, ଗୁମ୍ଫା ଆଡ଼କୁ ମୁହଁକରି ଅବାଧ ଭାବେ ଦଣ୍ଡାୟମାନ ଏବଂ ପାହାଡ଼ ପାର୍ଶ୍ୱରୁ ଧାନକ୍ଷେତର ଭୂଚିତ୍ରକୁ ଭ୍ରୂକ୍ଷେପ ନ କରି ଠିଆ ହୋଇଥିବା ନର୍ତ୍ତମଲାଇର ନବମ ଶତାବ୍ଦୀର ମନ୍ଦିର । ଏକାଦଶ ଶତାବ୍ଦୀଠାରୁ ଚୋଳ ରାଜାମାନେ ସେମାନଙ୍କର ଚମତ୍କାର ରାଜକୀୟ ମନ୍ଦିରମାନ ନିର୍ମାଣ କରିବା ଆରମ୍ଭ କଲେ । ବିଭିନ୍ନ ଉପାଦାନର ସନ୍ତୁଳିତ ଅନୁପାତ ମନ୍ଦିରର ଢାଞ୍ଚାକୁ ଏକ ନାନ୍ଦନିକ ଗୁଣବତ୍ତାରେ ମଣ୍ଡିତ କରୁଥିଲା । ଦେବାଳୟର କେନ୍ଦ୍ରୀୟ ଗୃହକୁ ସହଜରେ ଠାବ କରିହେଉଥିଲା । ପିରାମିଡ୍ ଆକୃତିର ଏହି ଗୃହର ଉପରିଭାଗ ଏକ ଉଚ୍ଚ ଶିଖର ମଣ୍ଡିତ ହେଉଥିଲା । ଏହା ନିକଟରେ ପହଞ୍ଚିବା ପାଇଁ ଗୋଟିଏ ବା ଦୁଇଟି ଦୀର୍ଘ କକ୍ଷ ଅତିକ୍ରମ କରିବାକୁ ପଡୁଥିଲା । ଦୀର୍ଘ କକ୍ଷର ସଂଖ୍ୟା ମନ୍ଦିରର ଆକାର ଉପରେ ନିର୍ଭରଶୀଳ ଥିଲା । ଏହାର ଚତୁଃପାର୍ଶ୍ୱସ୍ଥ ବେଢ଼ା ଅନେକ କାନ୍ଥର ବଳୟ ବେଷ୍ଟିତ ଥିଲା । ତାଞ୍ଜାଭୁର ବା ଗଙ୍ଗାଇକୋଣ୍ଡଚୋଳପୁରମ୍‌ରେ ଥିବା ପରି ଏହି କାନ୍ଥକୁ ଧରିରଖିବା ଲାଗି ଅନେକ ସ୍ତମ୍ଭର ବ୍ୟବସ୍ଥା କରାଯାଇଥିଲା । ପ୍ରବେଶପଥ ବା ଗୋପୁରମ୍‌ରେ 'ଶିଖର' ଶୈଳୀ ପ୍ରତିଫଳିତ ବୃହଦାକାର ତୋରଣମାନ ଥିଲା । ମଦୁରାଇ ଏବଂ ଶ୍ରୀରଙ୍ଗମ୍‌ର ମନ୍ଦିରଗୁଡ଼ିକ ପରି ଶିଖରକୁ ବଳି ନ ପଡ଼ିବା ପର୍ଯ୍ୟନ୍ତ ତୋରଣଗୁଡ଼ିକୁ ଉଚ୍ଚ କରାଯାଉଥିଲା । ଦାକ୍ଷିଣାତ୍ୟର ମନ୍ଦିରଗୁଡ଼ିକରେ ସଂଲଗ୍ନ କକ୍ଷମାନ ବଡ଼ ହେଉଥିଲା । ସମ୍ଭବତଃ ବୌଦ୍ଧ ଚୈତ୍ୟର ଦୀର୍ଘ କକ୍ଷଗୁଡ଼ିକୁ ଅନୁକରଣ କରି ଏ ପ୍ରକାର ବ୍ୟବସ୍ଥା କରାଯାଉଥିଲା । ସମବେତ ଉପାସନା ପୌରାଣିକ ହିନ୍ଦୁଧର୍ମର ଏକ ବିଭାବ ନ ଥିଲା । ମାତ୍ର ପୁରାଣ ଆବୃତ୍ତିର ଲୋକପ୍ରିୟତା ବୃଦ୍ଧି ପାଇବା ଫଳରେ ଏବଂ ମହାକାବ୍ୟମାନେ ପବିତ୍ର ଗ୍ରନ୍ଥ ରୂପେ ଗୃହୀତ ହେବା ଫଳରେ ସମବେତ ଉପାସନା ପ୍ରତି ଅଧିକ ଦର୍ଶକ ଆକୃଷ୍ଟ ହୋଇଥିବେ ବୋଲି ଅନୁମାନ କରାଯାଏ ।

ଖୋପରେ ବା ଉପର କାରୁକାର୍ଯ୍ୟରେ ବିଶେଷ ସଜ୍ଜୀକରଣ ପାଇଁ ତଥା ସ୍ତମ୍ଭ ବା ରେଲିଂକୁ ଧରି ରଖିଥିବା ସ୍ତମ୍ଭର ଅଳଂକରଣ ପାଇଁ ମନ୍ଦିରରେ ପଥର ଭାସ୍କର୍ଯ୍ୟ ସଂଯୋଜିତ ହୋଇଥିଲା । ତେବେ ବ୍ରୋଞ୍ଜ ସ୍ଥାପତ୍ୟରେ ଚୋଳ କାରିଗରମାନେ ଚମତ୍କାରିତା ଦେଖାଉଥିଲେ । ଅନ୍ୟ ସ୍ଥାନଗୁଡ଼ିକର ଶ୍ରେଷ୍ଠ ମୂର୍ତ୍ତିଗୁଡ଼ିକୁ ଟପିଗଲା ଭଳି ମୂର୍ତ୍ତି ନିର୍ମାଣ କରି ସେମାନେ ଏ କ୍ଷେତ୍ରରେ ଯଥେଷ୍ଟ କୁଶଳତା ପ୍ରଦର୍ଶନ କରୁଥିଲେ । ମୂର୍ତ୍ତିଗୁଡ଼ିକ ମଧ୍ୟରେ

ଥିଲା ଦେବତା, ଦାତା ଏବଂ ଭକ୍ତି ଆନ୍ଦୋଳନର କବିମାନଙ୍କର ପ୍ରତିମୂର୍ତ୍ତି । 'ଲଷ୍ଟ ୱାକ୍ସ' (Lost wax) ବା ମହମ ଛାଞ୍ଚ ପ୍ରକ୍ରିୟାରେ ନିର୍ମିତ ଏହି ମୂର୍ତ୍ତିଗୁଡ଼ିକୁ ମନ୍ଦିରର ଗର୍ଭଗୃହରେ ରଖାଯାଉଥିଲା ଏବଂ କେତେକ ମୂର୍ତ୍ତିକୁ ସ୍ୱତନ୍ତ୍ର ଉତ୍ସବବେଳେ ଶୋଭାଯାତ୍ରାରେ ବାହାର କରାଯାଉଥିଲା । ଶିବ ନଟରାଜ ମୂର୍ତ୍ତି ବହୁଳ ସଂଖ୍ୟାରେ ନିର୍ମିତ ହେଉଥିଲା । ତେବେ ଶିବ, ପାର୍ବତୀ ଏବଂ ତାଙ୍କର ପୁତ୍ର ସ୍କନ୍ଦଙ୍କର ମୂର୍ତ୍ତି ଭଳି ଏହାର ଆଦ୍ୟ ମୂର୍ତ୍ତିର ନମୁନାଗୁଡ଼ିକ ତଟସ୍ଥ କରିଦେଲା ଭଳି ସୁନ୍ଦର ଥିଲେ । ବୈଶିଷ୍ଟ୍ୟର ପ୍ରତୀକଗୁଡ଼ିକ ଅତୁଳନୀୟ ସୂକ୍ଷ୍ମତାର ସହ ସଂଯୋଜିତ ହେଉଥିଲା ଏବଂ ଦେବତାଙ୍କର ସ୍ଥାନୀୟ, ଅଞ୍ଚଳୋତ୍ତର ମହାଜାଗତିକ ସ୍ତରର ପ୍ରତିନିଧିତ୍ୱ କରିବାପାଇଁ ବହୁଳ ସଂଖ୍ୟକ ପ୍ରତୀକର ଆବଶ୍ୟକତା ପଡୁଥିଲା । ଅନ୍ୟ ସବୁ କଥାକୁ ବାଦ୍‌ଦେଇ କେବଳ ଏହି ପ୍ରତିମୂର୍ତ୍ତିଗୁଡ଼ିକୁ ଦେଖିଲେ ମଧ୍ୟ ଦକ୍ଷିଣର କାରିଗରମାନଙ୍କର ସ୍ଥାପତ୍ୟଗତ ପ୍ରତିଭାର ପରିଚୟ ମିଳେ ।

ଦାକ୍ଷିଣାତ୍ୟର ମନ୍ଦିରଗୁଡ଼ିକରେ ଚାଲୁକ୍ୟ ଶୈଳୀର ଆଦ୍ୟ ପରମ୍ପରା ସଂରକ୍ଷିତ ହୋଇଥିଲା । ଧୀରେ ଧୀରେ ଏହି ପରମ୍ପରାକୁ ଅଧିକ ବିଭୂଷିତ କରାଗଲା । ଏପରି ବିଭୂଷଣ ପ୍ରବଣତା ଦେଖାଦେବାର କାରଣ ଥିଲା ବାଲିଗରଡ଼ା (sandstone) ପଥର ପରିବର୍ତ୍ତେ ଏକପ୍ରକାର ଅପେକ୍ଷାକୃତ ନରମ ପଥର (soapstone)ର ବ୍ୟାପକ ବ୍ୟବହାର । ଉତ୍ତର ଚାଲୁକ୍ୟ ଏବଂ ହୟଶାଳମାନେ ମନ୍ଦିର ନିର୍ମାଣ କଲାବେଳେ ଉଭୟ ଉତ୍ତର ବା ନଗର ଶୈଳୀ ଏବଂ ଦକ୍ଷିଣ ବା ଦ୍ରାବିଡ଼ ଶୈଳୀରେ ଯାହା ସାଧାରଣ, ତାହା ତୁଳନାରେ ଭିତ୍ତି-ଯୋଜନା (Ground-plan) ଏବଂ ଉଚ୍ଚତାରେ ପରିବର୍ତ୍ତନ ଆଣିଲେ । ଏଗୁଡ଼ିକର ଚମତ୍କାର ଉଦାହରଣ ହେଲା ହଲେବିଦ୍ (ପୁରୁଣା ଦ୍ୱାରସମୁଦ୍ର), ବେଲୁର୍ ଏବଂ ସୋମନାଥପୁରଠାରେ ଅବସ୍ଥିତ ହୟଶାଳ ମନ୍ଦିର । କେତେକ ମନ୍ଦିରର ଭିତ୍ତି ଯୋଜନା ଏବେ ଆୟତାକାର ହେବା ପରିବର୍ତ୍ତେ ତାରକା ବା ବହୁଭୁଜ ଆକାର ସମ୍ପନ୍ନ ହେଲା । ସମୁଦାୟ ସ୍ଥାପତ୍ୟଟି ଏକ ଉତ୍‌ଥିତ ଆଧାର ଉପରେ ଅବସ୍ଥାପିତ ହେଉଥିଲା । ଚୋଳ ମନ୍ଦିରଗୁଡ଼ିକୁ ଯେଉଁ ଗୁରୁତ୍ୱ ଦିଆଯାଉଥିଲା, ମୀନାର ଏବଂ ପ୍ରବେଶପଥଗୁଡ଼ିକୁ ସେହି ଗୁରୁତ୍ୱ ଦିଆ ନ ଯିବାରୁ କେବଳ ଉଚ୍ଚତା ଯୋଗୁଁ ଏହା ଚେପ୍‌ଟା ଲାଗୁଥିଲା । ଏହି ପ୍ରଭାବକୁ ଏଡ଼ାଇବା ପାଇଁ ମନ୍ଦିର କାନ୍ଥର ସଂକୀର୍ଣ୍ଣ ଆନୁଭୂମିକ ଅଂଶ ପଶୁ, ପୁଷ୍ପ, ସଙ୍ଗୀତଜ୍ଞ, ନର୍ତ୍ତକ, ଯୁଦ୍ଧ ଦୃଶ୍ୟ ଏବଂ ଧାର୍ମିକ ସାହିତ୍ୟର ପ୍ରସିଦ୍ଧ ଘଟଣାବଳୀର କାରୁକାର୍ଯ୍ୟ ମଣ୍ଡିତ ହୋଇଛି । ଏକ ଆୟତାକାର ଯୋଜନା ତୁଳନାରେ ତାରକାକୃତି ଯୋଜନାରେ ଭାସ୍କର୍ଯ୍ୟ ଏବଂ ଉପରିଭାଗର କାରୁକାର୍ଯ୍ୟ ପାଇଁ ଅଧିକ ଖାଲି ସ୍ଥାନ ଉପଲବ୍‌ଧ ହେଲା । ହୟଶାଳ ମନ୍ଦିରଗୁଡ଼ିକର ସବୁଠାରୁ କୌତୂହଳ ଉଦ୍ଦୀପକ ବିଭାବ ହେଲା ପ୍ରଶସ୍ତ ଏବଂ ଗୋଲାକାର

ସ୍ତମ୍ଭ ଯାହା କୁନ୍ଦର ଆଭାସ ଦିଏ । ତା'ର ନିର୍ମାଣ ପଛରେ ନିଶ୍ଚୟ ଲକ୍ଷଣୀୟ କୌଶଳ ରହିଥିଲା ।

ସ୍ଥାପତ୍ୟ ଏବଂ ଭାସ୍କର୍ଯ୍ୟ ଶିଳ୍ପୀ/କାରିଗରଙ୍କ ନାମ ଅନୁସାରେ ଅଥବା ନିର୍ମାଣ ବା ଭାସ୍କରମାନଙ୍କ ସଂଘର ନାମାନୁସାରେ ନିର୍ମିତ ହେଉଥିଲା । ଭାରତର ଅନ୍ୟାନ୍ୟ ଭାଗରେ ମଧ୍ୟ ଅନେକ ଭବନର ନିର୍ମାଣରେ ଏହା ଏକ ବିଭବ ଥିଲା । ଫଳରେ କତିପୟ ନିର୍ମାତାଙ୍କୁ ସେମାନଙ୍କର ପୃଷ୍ଠପୋଷକ ଏବଂ ନିର୍ମାଣ ସହ ସଂଯୋଜିତ କରି ଦେଖିବା ସମ୍ଭବ ହୁଏ । ଅତି ସମ୍ମାନିତ ସ୍ଥପତି ଏବଂ ମୂର୍ତ୍ତିକାରଙ୍କ ନାମର ଉଲ୍ଲେଖରୁ ଜଣାଯାଏ ଯେ ବାସ୍ତୁକଳାକାର ଏବଂ ଶିଳ୍ପୀ ଅଜ୍ଞାତ ସ୍ତରରେ ରହିଯାଉ ନ ଥିଲେ । ଏହାର ଏକ ପ୍ରକୃଷ୍ଟ ଉଦାହରଣ ହେବେ କୋକସ । ଯାହା ଆଗରୁ ଗୋଟାଏ କଳା ନାମରେ ପରିଚିତ ଥିଲା, ତାହା ଚାହିଦା ବଢ଼ିବାରୁ ଭାଗ ହେଲା; ତହିଁରେ ବିଶେଷଜ୍ଞତା ଓ ବୃତ୍ତିନିପୁଣତା ଦେଖିବାକୁ ମିଳିଲା । ଫଳରେ ଏହା ଶୈଳୀ ଓ ଉଦ୍ୟମଶୀଳତା ଦୃଷ୍ଟିରୁ ବ୍ୟକ୍ତିକତାକୁ ପ୍ରୋତ୍ସାହିତ କଲା । ଭବନ ନିର୍ମାଣର ଅଧୀକ୍ଷକ ରୂପରେ ଏଥିରେ ସୂତ୍ରଧାରର ଭୂମିକା ଥିଲା ଖୁବ୍ ମହତ୍ତ୍ୱପୂର୍ଣ୍ଣ । ସ୍ଥପତିମାନେ ସାଧାରଣତଃ ଜଣେ ଜଣେ କୁଶଳ ନିର୍ମାତ୍ରା ଅଥବା ଶିଳ୍ପୀ ଥିଲେ । ଜ୍ଞାନୀ ଏବଂ ବିଶେଷଜ୍ଞ ରୂପରେ ସେମାନଙ୍କର ସମାଜରେ ଖୁବ୍ ସମ୍ମାନ ଥିଲା । ସ୍ଥପତିକୁ ବିଶ୍ୱକର୍ମା କୁଳବଂଶଜ ବୋଲି କୁହାଯାଉଥିଲା । କେତେକ ସ୍ଥପତିଙ୍କୁ ଭୂମି ଅନୁଦାନ ଦିଆଯାଇଥିଲା । ସେମାନଙ୍କ ବଂଶଜମାନେ ସ୍ଥପତି କାର୍ଯ୍ୟ ଛାଡ଼ି ଅନ୍ୟ ବୃତ୍ତି ଆପଣାଇଥିବାର ବି ଅନେକ ଉଦାହରଣ ରହିଥିଲା । ଭବନ-ନିର୍ମାଣ ସମ୍ବନ୍ଧିତ ବସ୍ତୁଶାସ୍ତ୍ରୀୟ ପୁସ୍ତକମାନ ମଧ୍ୟ ଉପଲବ୍ଧ ହେଉଥିଲା । ଏହି ପୁସ୍ତକରେ ନିର୍ମାଣର ଦିଗ ବିଷୟରେ ଆବଶ୍ୟକ ନିର୍ଦ୍ଦେଶମାନ ରହୁଥିଲା । ବସ୍ତୁଶାସ୍ତ୍ରଗୁଡ଼ିକ ମଧ୍ୟରୁ କେତେକ ରଚନାରେ ଅବଶ୍ୟ ଟେକନିକୀ କୌଶଳ କଥା ରହିଥିଲା । ମାତ୍ର ଅନ୍ୟଗୁଡ଼ିକରେ ମନଇଚ୍ଛା କଥା ସବୁ ଲେଖାଯାଇଥିଲା । ଏସବୁକୁ ବାଦ୍ ଦେଲେ ଆହୁରି କିଛି ଉପଯୋଗୀ ସଂହିତାରେ କେବଳ ଭବନ-ନିର୍ମାଣର କୌଶଳ କଥା ନ ଥିଲା, ତା' ସହିତ ପ୍ରତିମା ନିର୍ମାଣ ପଦ୍ଧତି ସମ୍ବନ୍ଧରେ ମଧ୍ୟ ଯଥାଯଥ ନିର୍ଦ୍ଦେଶ ରହିଥିଲା । ନିର୍ଦ୍ଦେଶ ଏତେ ସୁସ୍ପଷ୍ଟ ଥିଲା ଯେ, କନିଷ୍ଠା ଆଙ୍ଗୁଳିର ନଖର ଆକୃତି ପରିମାଣ କଥା ବି ରହିଥିଲା । ଶିଳ୍ପଶାସ୍ତ୍ରଗୁଡ଼ିକ ସାଧାରଣତଃ ସଂସ୍କୃତ ଭାଷାରେ ଲିଖିତ ହେଉଥିଲା । ଏଥିରୁ ସେତେବେଳେ ଶିଳ୍ପ ବୃତ୍ତିର ଉନ୍ନତ ସ୍ଥିତି ରହିଥିବା କଥା ଅନୁମାନ କରିହୁଏ ।

ମନ୍ଦିରରେ ଅଧିକ ପରିମାଣରେ ପ୍ରତୀକ ତତ୍ତ୍ୱମାନ ନିହିତ ଥିଲା । ଉଭୟ ରାଜା ଏବଂ ଦେବତାଙ୍କର ଭବ୍ୟତାର ସ୍ମାରକ ଥିଲା ମନ୍ଦିର । ଏହାବ୍ୟତୀତ, ଶୈଳୀର ବିବିଧତା ଯୋଗୁଁ ସ୍ଥାପତ୍ୟ, ଏକ ଆଞ୍ଚଳିକ ରୂପ ପ୍ରାପ୍ତ ହେଲା । ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷା ଓ

ସାହିତ୍ୟ ପରି ଏହି ସ୍ଥାପତ୍ୟ ରୂପର ବୈଶିଷ୍ଟ୍ୟ ରହିଥିଲା । ପୁଣି, ଶୈଳୀ ସିନା ସ୍ଥାନୀୟ ବା ଆଞ୍ଚଳିକ ଥିଲା, ମାତ୍ର ମନ୍ଦିରର ଆଧାର-ଯୋଜନା ଏବଂ ଉପରିଭାଗର ନିର୍ମାଣରେ ଯେଉଁ ବୈଶିଷ୍ଟ୍ୟ ରହିଥିଲା, ତାକୁ ସମଗ୍ର ଉପମହାଦେଶରେ ଚିହ୍ନି ହେଉଥିଲା । ଚୋଳମାନଙ୍କର ରାଜନୈତିକ ଉତ୍‌ଥାନକୁ ଦାକ୍ଷିଣାତ୍ୟର ପଶ୍ଚିମ ଓ ଉତ୍ତର ଭାଗରେ ଥିବା ଶକ୍ତିମାନେ ସହ୍ୟ କରିପାରୁ ନ ଥିଲେ । ମାତ୍ର ଏଥିରୁ ଆଉ ଏକ କଥା ସୁସ୍ପଷ୍ଟ ହୁଏ ଯେ ଉପମହାଦେଶରେ ଶକ୍ତିର କେନ୍ଦ୍ର ଗୋଟାଏ କ୍ଷେତ୍ରରେ ସୀମିତ ନ ଥିଲା । ବରଂ, ଶକ୍ତିର କେନ୍ଦ୍ର ବାରମ୍ବାର ବଦଳୁଥିଲା । ଦକ୍ଷିଣର ଶାସ୍ତ୍ରୀୟତା ଅନେକ ନୂତନ ବିଚାର ଏବଂ ପ୍ରୟୋଗକୁ ଜନ୍ମ ଦେଇଥିଲା, ସ୍ଥାନୀୟ ନାଗରିକ ଉତ୍ତରଦାୟିତ୍ୱର ବିକାଶ, ଏକ ଅନୁଷ୍ଠାନ ରୂପରେ ମନ୍ଦିରର ବହୁବିଧ ଭୂମିକା, ଶଙ୍କରାଚାର୍ଯ୍ୟ ଏବଂ ରାମାନୁଜଙ୍କର ଦର୍ଶନ ଏବଂ ଭକ୍ତି ଆନ୍ଦୋଳନର ନୂଆ ନୂଆ ଧାର୍ମିକ ସ୍ୱରୂପ ହେଲେ ତତ୍କାଳୀନ ପରିବର୍ତ୍ତନର ଗୋଟାଏ ଗୋଟାଏ ପ୍ରମୁଖ ଅଙ୍ଗ । ଏକା ମାତ୍ରାରେ ମହତ୍ତ୍ୱପୂର୍ଣ୍ଣ ଥିଲା ବାଣିଜ୍ୟିକ ଗତିବିଧି । ୟୁରେସିଆର ବାଣିଜ୍ୟିକ କାରବାରରେ ଭାରତୀୟମାନଙ୍କର ବ୍ୟାପକ ସଂପୃକ୍ତି ରହିଥିଲା । ତେଣୁ, ବିଭିନ୍ନ ଦୃଷ୍ଟିରୁ, ଏହି କାଳଖଣ୍ଡ ଥିଲା ଦକ୍ଷିଣ ଭାରତର ଅଭିବୃଦ୍ଧିର ସମୟ । ଉପମହାଦେଶର ସାଂସ୍କୃତିକ ସ୍ୱରୂପଗୁଡ଼ିକୁ ଏହି ସମୟରେ ଯେ ଏକ ନିଶ୍ଚିତ ଧାରା ମିଳିଥିଲା, ତାହା ଏହିସବୁ ଉଦାହରଣରୁ ସୁସ୍ପଷ୍ଟ ହୁଏ ।

•

# 12

# ଉତ୍ତର ଭାରତର ରାଜନୀତି

## (700 – 1200 ଖ୍ରୀଷ୍ଟାବ୍ଦ ପ୍ରାୟ)

### ଉତ୍ତର ସମତଳ କ୍ଷେତ୍ର ପାଇଁ ସଂଘର୍ଷ

ପ୍ରାୟ 700 ରୁ 1200 ଖ୍ରୀଷ୍ଟାବ୍ଦର କାଳଖଣ୍ଡରେ ଯେଉଁ ରାଜ୍ୟଗୁଡ଼ିକର ଅଭ୍ୟୁଦୟ ହେଲା, ସେଗୁଡ଼ିକର ମୂଳ ପୂର୍ବରୁ ପ୍ରତିଷ୍ଠିତ ହୋଇ ରହିଥିବା ପ୍ରମୁଖ କ୍ଷେତ୍ରରେ ସୁଦୃଢ଼ ହୋଇ ରହିଥିଲା । ତେଣୁ ଉକ୍ତ ରାଜ୍ୟଗୁଡ଼ିକ ମଧ୍ୟରେ ଅନେକ ଆଞ୍ଚଳିକ ସମାନତା ଦେଖାଯାଉଥିଲା । ମାତ୍ର ରାଜ୍ୟଗୁଡ଼ିକର ସୁଦୂର ସୀମାନ୍ତରେ ଅନେକ ପରିବର୍ତ୍ତନ ହେଉଥିଲା, ଯଦିଓ ସୁଦୃଢ଼ ରାଜ୍ୟ ଗଠନ ପାଇଁ ଆକାଂକ୍ଷା ସେମାନଙ୍କଠାରେ କେବେ କମ୍ ନ ଥିଲା । ସେଥିପାଇଁ ଯେଉଁ ରାଜ୍ୟଗୁଡ଼ିକ ନିଜକୁ ଶକ୍ତିଶାଳୀ ମନେକରୁଥିଲେ, ସେମାନେ ମୂଲ୍ୟବାନ କ୍ଷେତ୍ର ଉପରେ ନିଜ ନିଜର ଅଧିକାର ସାବ୍ୟସ୍ତ କରିବାଲାଗି ପ୍ରବଳ ପ୍ରତିଯୋଗିତା କରୁଥିଲେ । ଏହାର ଏକ ଜ୍ୱଳନ୍ତ ଉଦାହରଣ ହେବ 'କନୌଜ ପାଇଁ ତ୍ରିପକ୍ଷୀୟ ସଂଘର୍ଷ' । ଏହି ଜଟିଳତାର ଅନ୍ୟ ଏକ ଦିଗ ହେଲା ଯେ, ଉପଦ୍ୱୀପର ପଶ୍ଚିମ ଓ ପୂର୍ବ ସୀମାନ୍ତରେ ଉତ୍ତର ଓ ଦକ୍ଷିଣ ମଧ୍ୟରେ ରହିଥିବା ପ୍ରଭେଦକୁ ଏହା ପ୍ରାୟ ଶେଷ କରିଦେଲା । ଆଞ୍ଚଳିକ ରାଜ୍ୟଗୁଡ଼ିକ ଭିତରେ ମଧ୍ୟ ଏହିପ୍ରକାର ବୈଶିଷ୍ଟ୍ୟ ଦେଖିବାକୁ ମିଳିଥିଲା । ତେଣୁ ରାଜ୍ୟଗୁଡ଼ିକ ସମ୍ବନ୍ଧରେ କୌଣସି ସାଧାରଣ ଅବଧାରଣା ଦେଲାବେଳେ ସର୍ବଦା ଏହିସବୁ ସ୍ଥାନୀୟ ପରିସ୍ଥିତି ଓ ପରିବେଶକୁ ଧ୍ୟାନରେ ରଖିବାକୁ ହେବ ।

ନୂତନ ରାଜ୍ୟଗୁଡ଼ିକର ଗଠନଶୈଳୀ ପୂର୍ବର ରାଜ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ବିଜିତ ରାଜ୍ୟମାନଙ୍କୁ ଆଗରୁ କେବଳ କରଦ ରାଜ୍ୟ ଭାବରେ ରଖାଯାଇଥିଲା, ଯାହାକୁ ପୁନଃସ୍ଥାପିତ କରିବାର ଆବଶ୍ୟକତା ରହିଥିଲା । ଏହା ପଛରେ କାରଣ ହେଲା ଯେ, ଯୁଦ୍ଧରେ ଜୟଲାଭ କଲା ପରେ ବିଜିତ ରାଜ୍ୟକୁ ବିଜୟୀ ରାଜା ରାଜ୍ୟରେ ସଂଲଗ୍ନ ନ କରି ଅନେକ ସମୟରେ

କେବଳ କରଦ ସ୍ଥିତିରେ ରଖି ଚାଲିଆସୁଥିଲେ । ଏହାଛଡ଼ା, ବଡ଼ ବଡ଼ ଜମିମାଲିକମାନଙ୍କୁ ସାମାଜିକ ମର୍ଯ୍ୟାଦା ଦେଇ ସନ୍ତୁଷ୍ଟ ରଖିବା ଜରୁରି ଥିଲା । ସେମାନଙ୍କୁ ସମାଜର କେଉଁ ସ୍ତରରେ ସ୍ଥାନିତ କରାଯିବ, ତାହା ନିର୍ଦ୍ଧାରଣ କରିବାର ଆବଶ୍ୟକତା ରହିଥିଲା । ପୁଣି ପ୍ରଶାସନିକ ପରିବର୍ତ୍ତନ ନିମନ୍ତେ ରାଜସ୍ୱ ଓ ଆୟର ପୁନର୍ମୂଲ୍ୟାଙ୍କନର ଦରକାର ଥିଲା । ଅନେକ ରାଜ୍ୟରେ ଏକ ନୂତନ ରାଜନୈତିକ ବ୍ୟବସ୍ଥା ଭାବରେ ଭୂମିଦାନର ଧାରା ବୃଦ୍ଧି ପାଇଲା; ଅଧିକ ସଂଖ୍ୟାରେ ଭୂମିଦାନ କରାଗଲା ଓ ବଡ଼ ବଡ଼ ଭୂମିଖଣ୍ଡକୁ ଦାନରେ ଦିଆଗଲା । ଏହି ପରିବର୍ତ୍ତନ ଦୁଇଟି ପର୍ଯ୍ୟାୟରେ ସଂଘଟିତ ହେଲା : ପ୍ରଥମେ ଅଷ୍ଟମରୁ ଦଶମ ଶତାବ୍ଦୀରେ ଆଗଭଳି ଭୂମିଦାନ କରାଗଲା ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ଅର୍ଥାତ୍ ଏହାର ପରବର୍ତ୍ତୀ ସମୟରେ ଏହା ଏତେ ବ୍ୟାପକ ଭାବରେ କାର୍ଯ୍ୟକାରୀ ହେଲା ଯେ ପରିବର୍ତ୍ତନ ଖୁବ୍ ଲକ୍ଷଣୀୟ ହେଲା । ଭୂମିଦାନର ସର୍ତ୍ତାବଳୀ ଅନେକାଂଶରେ ଉପଦ୍ୱୀପର ସର୍ତ୍ତାବଳୀ ଭଳି ଥିଲା, ଯଦିଓ ଉଭୟ କ୍ଷେତ୍ରର ସର୍ତ୍ତାବଳୀ ଏକା ନ ଥିଲା । ଅନେକ ଭୂମିଦାନରେ 'ଯାବଦ୍ ଚନ୍ଦ୍ରାର୍କେ' ବୋଲି ଉଲ୍ଲେଖ ରହୁଥିଲା, ଯାହାର ଅର୍ଥ ହେଲା ସ୍ଥାୟୀ ରୂପରେ ଭୂମିକୁ ଦାନ କରାଗଲା ଏବଂ ଗ୍ରହିତାଙ୍କର ବଂଶଜ ଓ ଉତ୍ତରାଧିକାରୀ ମଧ ତାକୁ ଭୋଗ କରିପାରିବେ । ମାତ୍ର ଏହାକୁ ସର୍ବଦା ଅକ୍ଷରେ ଅକ୍ଷରେ ପାଳନ କରାଯାଉ ନଥିଲା । କେତେକ କ୍ଷେତ୍ରରେ ଗ୍ରହିତାଙ୍କଠାରୁ ଦାନ ପ୍ରତ୍ୟାହାର କରିନେବାର ମଧ ବିଧି ରହିଥିଲା ।

କେତେକ ନୂତନ ରାଜ୍ୟକୁ ଆରବ, ମଧ-ଏସିଆର ତୁର୍କ ତଥା ଚୀନୀମାନଙ୍କଠାରୁ ଏବଂ ତିବ୍ବତଠାରୁ ବିପଦର ସମ୍ମୁଖୀନ ହେବାକୁ ପଡୁଥିଲା । ଆରବର ଲେଖକମାନେ ଏହି ରାଜ୍ୟଗୁଡ଼ିକର ବିଶଦ ଚର୍ଚ୍ଚା କରିଛନ୍ତି । ସେମାନେ ଅଲ୍-ବଲ୍ଲହରା (ରାଷ୍ଟ୍ରକୂଟ ରାଜା), ଅଲ୍-ଜୁର୍ଜ (ଗୁର୍ଜର-ପ୍ରତିହାର ରାଜା) ଓ ଧର୍ମ (ପାଳ ରାଜା)କୁ ବିପଦର ସମ୍ମୁଖୀନ ହେଉଥିବା ରାଜା ଭାବରେ ଉଲ୍ଲେଖ କରିଛନ୍ତି । ଉତ୍ତର ସମତଳ କ୍ଷେତ୍ରରେ ନିଜ ନିଜର ନିୟନ୍ତ୍ରଣ ସ୍ଥାପିତ କରିବା ଉଦ୍ଦେଶ୍ୟରେ ଏହି ରାଜ୍ୟମାନେ ମୁଖ୍ୟ ରୂପରେ ସଂଘର୍ଷରତ ଥିଲେ । ପରିଶେଷରେ କନୌଜ ନଗରୀ ଉପରେ ଅଧିକାର ସାବ୍ୟସ୍ତ କରିବା ନିମନ୍ତେ ସଂଘର୍ଷ ଉଗ୍ର ପ୍ରତିଯୋଗିତାର ରୂପ ନେଲା । ଏହି ରାଜ୍ୟଗୁଡ଼ିକର କୂଟନୀତିକୁ ଏକରକମର ରାଜନୀତିକ ଚେସଖେଳ ସହିତ ତୁଳନା କରିବା ଅଧିକ ଯଥାର୍ଥ ହେବ । ଚେସଖେଳର ବାଜିରେ ମଣ୍ଡଳର ମର୍ଯ୍ୟାଦା ପ୍ରଶ୍ନ ଜଡ଼ିତ ଥିଲା । ମଣ୍ଡଳ ଅର୍ଥାତ୍ ଶତ୍ରୁ ଓ ମିତ୍ରଙ୍କର ମଣ୍ଡଳୀ । ଏଥିରେ ପଡ଼ୋଶୀ ରାଜ୍ୟ ସ୍ୱାଭାବିକ ଶତ୍ରୁ ହୋଇପାରେ, ଅଥଚ ପଡ଼ୋଶୀ ତୁଳନାରେ ଦୂରସ୍ଥ ରାଜ୍ୟର ରାଜା ବନ୍ଧୁ ହୋଇପାରନ୍ତି । ରାଜନୀତିକ ବାସ୍ତବିକତାର ଆଧାରରେ ଏହି ସିଦ୍ଧାନ୍ତ କାର୍ଯ୍ୟକାରୀ ହେଉଥିଲା । ସିଦ୍ଧାନ୍ତକୁ ଖୁବ୍ ବିସ୍ତୃତ ଭାବରେ ତତ୍କାଳୀନ କେତେକ ରଚନାରେ ବ୍ୟାଖ୍ୟା କରାଯାଇଥିଲା । ପ୍ରଥମେ କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ଏହି ନୀତିର

ଅବତାରଣା ଦେଖିବାକୁ ମିଳିଥିଲା । ପରେ ଆହୁରି ଅନେକ ରଚନାରେ, ଯଥା- ବିଷ୍ଣୁଧର୍ମୋତ୍ତରଣରେ ମଧ୍ୟ ଏହାର ବିଶଦ ଚର୍ଚ୍ଚା କରାଯାଇଥିଲା ।

ଗାଙ୍ଗେୟ ସମତଳ ଭୂମିରେ ନଗରୀୟ କେନ୍ଦ୍ର ପାଟଳିପୁତ୍ରରୁ କନୌଜକୁ ପରିବର୍ତ୍ତନ ହେଲା । ତାହାରି ମଧ୍ୟରେ ସବୁ କାର୍ଯ୍ୟ କେନ୍ଦ୍ରିତ ରହୁଥିଲା । ଏହା ଉତ୍ତର-ପଶ୍ଚିମର ନିକଟତର ଥିଲା । ଏହାହିଁ ଥିଲା ଅନୁପ୍ରବେଶର ଶେଷସୀମା । କନୌଜଠାରୁ ପୂର୍ବ ଗାଙ୍ଗେୟ ସମତଳ ଭୂମି ଏବଂ ଦକ୍ଷିଣକୁ ବିଭିନ୍ନ ରାସ୍ତା ଭାଗ ଭାଗ ହୋଇ ଯାଉଥିଲା । ଗୁପ୍ତଯୁଗ ପରବର୍ତ୍ତୀ ସମୟର ରାଜନୀତିରେ ଏହାର ବିଶେଷ ଗୁରୁତ୍ୱ ହର୍ଷ ଓ ଯଶୋବର୍ମନଙ୍କ ଦ୍ୱାରା ଦୃଢ଼ୀଭୂତ ହୋଇଥିଲା । ଏ ଦୁହେଁ ଏହି ସହରକୁ ଉତ୍ତର ଭାରତର ସମତଳ ଅଞ୍ଚଳର ରାଷ୍ଟ୍ରଶକ୍ତିର ପ୍ରତୀକ ଭାବେ ପ୍ରତିଷ୍ଠା କଲେ । ପରବର୍ତ୍ତୀ କାଳରେ ଅଷ୍ଟମ ଶତାବ୍ଦୀରେ କାଶ୍ମୀରରୁ ଲଳିତାଦିତ୍ୟ କନୌଜକୁ ଅଧିକାର କରିବାକୁ ପ୍ରୟାସ କଲେ । ଏଥିସହିତ ଏହା ପଶ୍ଚିମ ଗାଙ୍ଗେୟ ସମତଳ ଭୂମିର ପ୍ରଧାନ କୃଷିକେନ୍ଦ୍ର ହୋଇଥିବାରୁ ବ୍ରାହ୍ମଣମାନଙ୍କୁ ଏଠାରେ ଅଧିକ ଦାନ ଦେବାର ପ୍ରଥା ଥିଲା । ପରବର୍ତ୍ତୀ କିଛି ଶତାବ୍ଦୀ ଧରି କନୌଜର ଯେଉଁ ବ୍ରାହ୍ମଣମାନେ ଅନ୍ୟ ସ୍ଥାନକୁ ଜୀବିକାର୍ଜ୍ଜନର ଲକ୍ଷ୍ୟ ରଖିଆସିଥିଲେ, ନିଜର ଧାର୍ମିକ କ୍ରିୟାକର୍ମ ଓ ଜ୍ଞାନପାଇଁ ସେମାନେ ବହୁତ ସମ୍ମାନ ପାଉଥିଲେ । ଅଷ୍ଟମରୁ ଦଶମ ଶତାବ୍ଦୀ ମଧ୍ୟରେ ରାଷ୍ଟ୍ରକୂଟ, ପ୍ରତିହାର ଏବଂ ପାଳ ରାଜାମାନେ ଏହି ବିତ୍ତବଶାଳୀ ନଗର କନୌଜକୁ ଅଧିକାର କରିବାକୁ ସେମାନଙ୍କର ସାମଗ୍ରିକ ଅଭିଯାନ ଜାରି ରଖିଲେ । କନୌଜକୁ ନେଇ ସଂଘର୍ଷ ସୃଷ୍ଟିର ଅନ୍ୟ ଏକ କାରଣ ଥିଲା ପୂର୍ବରୁ ଥିବା ଏକକ ରାଜ୍ୟର ପ୍ରତିଷ୍ଠାର ପ୍ରାଧାନ୍ୟକୁ ଏଠାରେ ପୁନଃପ୍ରତିଷ୍ଠିତ କରାଇବା । ଏହାର ଅବସ୍ଥିତିର ବିଶେଷତା ପାଇଁ ପୂର୍ବରୁ ଗୁରୁତ୍ୱ ଲାଭ କରିଥିବା କନୌଜକୁ ସମକାଳର ରାଜନୀତିର କେନ୍ଦ୍ର କରିବା ଥିଲା ଏହାକୁ ବାଣ୍ଟିବାର ଅନ୍ୟ କାରଣ । ବହୁ ଆଞ୍ଚଳିକ ଶକ୍ତିଶାଳୀ ରାଜ୍ୟର ଉତ୍‌ଥାନ ସହିତ କନୌଜର ପ୍ରାଧାନ୍ୟ କ୍ରମଶଃ କମିବାରେ ଲାଗିଲା । ପରବର୍ତ୍ତୀ କାଳରେ ଏହାର ସମ୍ପୂର୍ଣ୍ଣ ପତନ ପୂର୍ବରୁ ଏକାଦଶ ଓ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଏହା ଗହଦବଳ (Gahadavala) ରାଜ୍ୟର ଏକ ଅଂଶ ଥିଲା ।

'କନୌଜ ପାଇଁ ଏହି ତ୍ରିପାକ୍ଷିକ ସଂଘର୍ଷ'କୁ କେବଳ ଦକ୍ଷିଣ ଏସିଆ ରାଜନୀତି ପରିପ୍ରେକ୍ଷୀରେ ନୁହେଁ, ବରଂ ଭାରତୀୟ ରାଜ୍ୟ ଓ ଉପମହାଦେଶର ବାହାରେ ଥିବା ଦେଶ ମଧ୍ୟରେ ଥିବା ସମ୍ପର୍କର ପରିପ୍ରେକ୍ଷୀରେ ବିଚାର କରାଯିବା ଉଚିତ । ଏହି ପରିସ୍ଥିତିରେ ମଧ୍ୟ-ଏସିଆରେ ଚୀନ୍‌ର ଉପସ୍ଥିତି ଦେଖାଗଲା, କାରଣ ଅନେକ କାରଣରୁ ଉତ୍ତର ଭାରତର କ୍ଷମତାଯୁଦ୍ଧରେ ଚୀନ୍‌ର ଆଗ୍ରହ ରହିଥିଲା । ଏଥିମଧ୍ୟରୁ ଗୋଟିଏ କାରଣ ହେଲା, ଉତ୍ତର

ଭାରତର ରାଜନୀତିରେ ସାମୟିକଭାବେ ଚୀନ୍‌ର କୂଟନୈତିକ ଅନୁପ୍ରବେଶ ଫଳରେ ଭାରତୀୟ ରାଜ୍ୟମାନେ ଚୀନ୍ ସମ୍ରାଟଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବେ ବୋଲି ଭୁଲ ଧାରଣା ଥିଲା । ହର୍ଷଙ୍କର ମୃତ୍ୟୁ ପରେ ସେମାନେ ଭାରତର ରାଜନୀତିରେ ହସ୍ତକ୍ଷେପ କରି ଦାବି କଲେ ଯେ କାଶ୍ମୀର ରାଜାମାନେ ତାଙ୍କଠାରୁ ସାହାଯ୍ୟ ଚାହିଁଥିଲେ । ମଧ୍ୟ-ଏସିଆରେ ଆରବର ଉପସ୍ଥିତିକୁ ଚୀନ୍ ଭୟ କରୁଥିଲା ଓ ଏହା ତୁର୍କମାନଙ୍କ ଉପରେ ଚାପ ପକାଇ ମଧ୍ୟ-ଏସିଆରେ ଏକ ଜନଆନ୍ଦୋଳନ ସୃଷ୍ଟି ହୋଇପାରେ ବୋଲି ଆଶଙ୍କା କରୁଥିଲା । ଚୀନ୍‌ମାନେ ଭାରତ ମହାସାଗର ଉପରେ ମଧ୍ୟ ଦୃଷ୍ଟି ପକାଇବାକୁ ଆରମ୍ଭ କଲେ, ଦକ୍ଷିଣ ଚୀନ୍‌ରୁ ବଙ୍ଗୋପସାଗର ବାଟ ଦେଇ ବାଣିଜ୍ୟପଥ ସଂଯୋଗ କଲେ ଓ ଦକ୍ଷିଣ ଭାରତ ଓ ଆହୁରି ପଶ୍ଚିମରେ ଥିବା ବନ୍ଦର ଆଡ଼କୁ ବାଣିଜ୍ୟକୁ ପ୍ରସାରିତ କରିବାକୁ ଚେଷ୍ଟା କଲେ ।

ଅନ୍ୟ ଦିଗରୁ ତିବ୍ବତ ହିମାଳୟ ସୀମାରେ ତା'ର ଉପସ୍ଥିତି ଜାରି ରଖିଥିଲା ଓ କେତେକ ଅଞ୍ଚଳକୁ ଅଧିକାର କରିଛି ବୋଲି ଦାବି କରୁଥିଲା । ହିମାଳୟର ବିସ୍ତୃତ ଅଞ୍ଚଳରେ ଭୌଟା (Bhauttas) ବା ତିବ୍ବତୀୟମାନଙ୍କର ଉପସ୍ଥିତି ସମ୍ପର୍କରେ ଅନେକ ସୂଚନା ଭାରତ ଇତିହାସରେ ଅଛି । ଏହିପରି ଭାବରେ ଅନ୍ୟ ଅଞ୍ଚଳର ରାଜନୀତି କେବଳ ଯେ ଉତ୍ତର ଭାରତ ଉପରେ ପ୍ରଭାବ ପକାଇଥିଲା ତାହା ନୁହେଁ, ବରଂ ଏହି ଅଞ୍ଚଳରେ ରାଜ୍ୟଗୁଡ଼ିକ ପ୍ରତି ଭୟ ସୃଷ୍ଟି କରୁଥିଲା । ତଥାପି ରାଜନୈତିକ ଆଗ୍ରହର କେନ୍ଦ୍ରସ୍ଥଳ ଉତ୍ତର ଭାରତର ମଧ୍ୟଭାଗରେ ଥିବାପରି ମନେହେଉଥିଲା ।

ପଶ୍ଚିମ ଭାରତରେ ଆରବୀୟମାନଙ୍କର ଉପସ୍ଥିତି କ୍ରମଶଃ ବଢ଼ିବାକୁ ଲାଗିଲା । 712 ଖ୍ରୀଷ୍ଟାବ୍ଦରେ ସେମାନେ ସିନ୍ଧୁ ଜୟ କଲେ । ଏସିଆ, ଆଫ୍ରିକା ଓ ୟୁରୋପରେ ଆରବୀୟମାନଙ୍କର ରାଜ୍ୟ ବିସ୍ତାରର ଏହା ପୂର୍ବର ଶେଷ ସୀମା ଥିଲା । ସିନ୍ଧୁ ଉପତ୍ୟକାର ନିମ୍ନଭାଗକୁ ଜୟ କରିବାରେ ଯେଉଁ ରାଜନୀତି ଜଡ଼ିତ ଥିଲା, ତାହା 'ଖଲିଫା' (Caliphate) ପାଇଁ ବିବାଦ ଓ ମୁସଲମାନ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ରାଜନୀତି ମଧ୍ୟରେ ଛନ୍ଦି ହୋଇଯାଇଥିଲା । ମନେହୁଏ, ଭାରତରେ ରାଜ୍ୟ ଅଧିକାର ଅପେକ୍ଷା ବାଣିଜ୍ୟ ଅଧିକାର କରିବା ଆରବୀୟମାନଙ୍କର ପ୍ରମୁଖ ଲକ୍ଷ୍ୟ ଥିଲା । ଏକଥା ସେମାନଙ୍କ ଦ୍ୱାରା ଅଧିକୃତ ସ୍ଥାନ ଓ ପରବର୍ତ୍ତୀ ବ୍ୟବସ୍ଥାରୁ ଅନୁମିତ ହୁଏ । ଉଦାହରଣ ସ୍ୱରୂପ, ସିନ୍ଧୁ ଅଞ୍ଚଳ କୃଷି ଦୃଷ୍ଟିରୁ ଏକ ଉନ୍ନତ ଅଞ୍ଚଳ ନଥିଲା, କିନ୍ତୁ ବ୍ୟବସାୟ ବାଣିଜ୍ୟ ଦୃଷ୍ଟିରୁ ଖୁବ୍ ଅର୍ଥକାରୀ ଥିଲା । ଆରବୀୟମାନଙ୍କର ବିଜୟ ଅଭିଯାନକୁ ଅନେକ ଶାସକ ପ୍ରତିରୋଧ କରିଥିଲେ । ମାତ୍ର ଏହି ପ୍ରତିରୋଧ ଆରବୀୟମାନଙ୍କୁ ଭାରତ ଉପମହାଦେଶରୁ ସ୍ଥାୟୀଭାବେ ଦୂରରେ ରଖିବାପାଇଁ ଏକ ସଙ୍ଗଠିତ ଉଦ୍ୟମ ନଥିଲା । ରାଷ୍ଟ୍ରକୂଟମାନେ ଉପକୂଳ ଅଞ୍ଚଳର ଶାସନ

ବ୍ୟବସ୍ଥାର ଉଚ୍ଚପଦରେ ଆରବୀୟମାନଙ୍କୁ ସ୍ଥାପନ କରିଥିଲେ । ଗୁଜୁରାଟର ଚାଲୁକ୍ୟ ରାଜାମାନେ ମଧ୍ୟ ପରବର୍ତ୍ତୀ ସମୟରେ ସେମାନଙ୍କୁ ସମାନ ସ୍ୱୀକୃତି ଦେଇଥିଲେ । କାରଣ ବ୍ୟବସାୟୀ ହିସାବରେ ଆରବୀୟମାନେ ବହୁତ ଲାଭ କରିବାରେ ସକ୍ଷମ ଥିଲେ । ବାସ୍ତବରେ ପଶ୍ଚିମ ସୀମାନ୍ତରେ ଏକ ଆରବ ସାମ୍ରାଜ୍ୟ ଯେ ଗଢ଼ିଉଠିଥିଲା ତାହା ଭାରତୀୟ ଶାସକମାନଙ୍କ ଦୃଷ୍ଟିକୁ ଆସି ନଥିଲା, କାରଣ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ବାଣିଜ୍ୟ । ବ୍ୟବସାୟ ବାଣିଜ୍ୟ ପ୍ରତି ଅଧିକ ଗୁରୁତ୍ୱ ଦେଉଥିବା ରାଷ୍ଟ୍ରକୂଟମାନେ କନୌଜ ପ୍ରତି ବେଶୀ ଧ୍ୟାନ ଦେଇପାରି ନଥିଲେ । ଦୁଇ ଦୁଇଥର ଏହାକୁ ଅଧିକାର କରିଥିଲେ ମଧ୍ୟ ଅନ୍ୟମାନଙ୍କ ପରି ଏହାକୁ ଦୀର୍ଘସମୟ ଧରି ନିଜ ଅକ୍ତିଆରରେ ରଖିପାରି ନଥିଲେ ।

ଡେକାନ୍ ବା ଦାକ୍ଷିଣାତ୍ୟରେ ଥିବା ରାଷ୍ଟ୍ରକୂଟ, ପଶ୍ଚିମ ଭାରତରେ ଥିବା ପ୍ରତିହାର ଓ ପୂର୍ବ ଭାରତର ପାଳ ରାଜା ଏହି ସଂଘର୍ଷରେ ଜଡ଼ିତ ଥିଲେ । ଯେହେତୁ ସେମାନେ ପରସ୍ପରର ସମକକ୍ଷ ଥିଲେ, ଏହି ଯୁଦ୍ଧ ସେମାନଙ୍କୁ କ୍ରମଶଃ ଦୁର୍ବଳ କରି ନିଃଶେଷ କରିଦେଲା । ଏହାପରେ ସାମନ୍ତମାନେ ସେମାନଙ୍କଠାରୁ ଦୂରେଇଯାଇ ଛୋଟ ଛୋଟ ରାଜ୍ୟ ଗଢ଼ିଲେ । ସୀମାନ୍ତ ଅଞ୍ଚଳରେ ରାଜନୈତିକ ଭଉଁରୀ ଭିତରକୁ କାଶ୍ମୀର, ଗାନ୍ଧାର ଏବଂ ପଞ୍ଜାବ ଟାଣିହୋଇ ଆସିଲେ । କନୌଜ ଗାଙ୍ଗେୟ ସମତଳ ଭୂମିକୁ ନିୟନ୍ତ୍ରଣ କଲା । ଫଳରେ ହିନ୍ଦୁକୁଶ ଗିରିପଥ ପରିବର୍ତ୍ତେ ନଦୀର ଜଳବିଭାଜିକା ଉତ୍ତରର ସୀମାନ୍ତ ଭାବରେ ପରିଗଣିତ ହେଲା ।

ଦାକ୍ଷିଣାତ୍ୟରେ ଗଢ଼ିଉଠିଥିବା ରାଜ୍ୟଗୁଡ଼ିକ ଅନେକ ସମୟରେ ଦକ୍ଷିଣ ଓ ଉତ୍ତରର ବା ଉଭୟର ରାଜନୀତିରେ ଅଂଶଗ୍ରହଣ କରୁଥିଲେ କିମ୍ବା ଉଭୟର ଯୋଗସୂତ୍ରକାରୀ ରୂପେ କାର୍ଯ୍ୟ କରୁଥିଲେ । ସାତବାହନମାନେ ପ୍ରଥମେ ଗୋଟିଏ ପଟରୁ ଅପର ପଟକୁ ଭାବ ଓ ଦ୍ରବ୍ୟର ଆଦାନ ପ୍ରଦାନ ଆରମ୍ଭ କରିଥିଲେ । ବକଟକମାନେ ଗୁପ୍ତମାନଙ୍କ ମାଧ୍ୟମରେ ଉତ୍ତରାଞ୍ଚଳ ସହିତ ଘନିଷ୍ଠତା ରକ୍ଷା କରିବାକୁ ପ୍ରସ୍ତୁତି କରୁଥିଲେ । ଚାଲୁକ୍ୟମାନେ ଉତ୍ତରର ଦାକ୍ଷିଣାତ୍ୟ ଉପରେ ହେଉଥିବା ଆକ୍ରମଣକୁ ପ୍ରତିହତ କରୁଥିଲେ ଓ ସେଠାକାର ରାଜନୀତିରେ ସକ୍ରିୟ ଥିଲେ । ଯଦି ରାଷ୍ଟ୍ରକୂଟମାନେ ଚାଲୁକ୍ୟଙ୍କ ପରି ନିଜର ଅଭିଳାଷକୁ ଦାକ୍ଷିଣାତ୍ୟରେ ସୀମିତ ରଖିଥାନ୍ତେ, ସେମାନେ ଏକ ଅଧିକ ଶକ୍ତିଶାଳୀ ରାଜ୍ୟ ସ୍ଥାପନ କରିପାରିଥାନ୍ତେ । କିନ୍ତୁ ଦାକ୍ଷିଣାତ୍ୟ ସହିତ ଉତ୍ତରାଞ୍ଚଳ ଉପରେ ପ୍ରାଧାନ୍ୟ ବିସ୍ତାର କରିବାକୁ ସେମାନଙ୍କର ଇଚ୍ଛା ଥିଲା । ଯେତେବେଳେ ସେମାନେ କ୍ଷମତାକୁ ଆସିଲେ ସେତେବେଳେ ଦାକ୍ଷିଣାତ୍ୟ ଓ ଉତ୍ତରାଞ୍ଚଳ ମଧ୍ୟରେ ଉତ୍ତମ ଯୋଗାଯୋଗ ସ୍ଥାପନ ହୋଇସାରିଥିଲା । ତେଣୁ ଉଭୟ ଦିଗପ୍ରତି ରାଷ୍ଟ୍ରକୂଟମାନଙ୍କର ରାଜନୈତିକ ଆକର୍ଷଣ ସମାନ ଭାବରେ ରହିଥିଲା । କିନ୍ତୁ ଏହାଦ୍ୱାରା ସେମାନେ ଅନେକ ପରିମାଣରେ ନିୟନ୍ତ୍ରଣ ହରାଇଥିଲେ । ଯାହାହେଉ, ଆରବ ସୂତ୍ରରୁ

ଜଣାଯାଏ ଯେ ଉପରୋକ୍ତ ତିନି ଶକ୍ତି ମଧ୍ୟରୁ ରାଷ୍ଟ୍ରକୂଟମାନେ ହିଁ ସବୁଠାରୁ ଅଧିକ ଶକ୍ତିଶାଳୀ ଥିଲେ ।

ଉପଦ୍ୱୀପର ରାଜନୀତିରେ ରାଷ୍ଟ୍ରକୂଟମାନଙ୍କର ଭୂମିକା ବିଷୟରେ ଆଲୋଚନା ହୋଇସାରିଛି । ଦନ୍ତିଦୁର୍ଗ ଚାଲୁକ୍ୟ ବଂଶର ଜଣେ କରଦ ରାଜା ଥିଲେ । ସେ ଅଷ୍ଟମ ଶତାବ୍ଦୀରେ ନିଜର ସ୍ୱାଧୀନତା ଘୋଷଣା କଲେ ଓ ରାଜା ପଦବୀ ଗ୍ରହଣ କଲେ । ନବମ ଶତାବ୍ଦୀରେ ଅମୋଘବର୍ଷ ଓ ଦଶମ ଶତାବ୍ଦୀରେ ତୃତୀୟ କୃଷ୍ଣ ରାଜ୍ୟର ଆଭ୍ୟନ୍ତରୀଣ ସମସ୍ୟା ଓ କନୌଜ ଅଧିକାରର ଆକାଂକ୍ଷା ସତ୍ତ୍ୱେ ରାଜ୍ୟରେ ସ୍ଥିରତା ଆଣିପାରିଥିଲେ । ପଶ୍ଚିମ ଉପକୂଳରେ ଆରବୀୟମାନଙ୍କର ଅନୁପ୍ରବେଶକୁ ପ୍ରତିହତ କରିବାପରେ ରାଷ୍ଟ୍ରକୂଟମାନେ ଉଭୟଙ୍କ ଭିତରେ ଥିବା ଶତ୍ରୁ ମନୋଭାବକୁ ପରସ୍ପରର ସୁବିଧା ପାଇଁ ବାଣିଜ୍ୟିକ ସମ୍ପର୍କରେ ରୂପାନ୍ତରଣ କଲେ । ତେଣୁ ସେମାନେ ନିଜର ରାଜନୈତିକ ଆକାଂକ୍ଷା ଚରିତାର୍ଥ କରିବାପାଇଁ ଆବଶ୍ୟକ ଧନସମ୍ପଦର ଅଧିକାରୀ ହେଲେ । ପଶ୍ଚିମ ଦେଶକୁ ମୂଲ୍ୟବାନ ସାଗୁଆନ କାଠ ଓ ସୂତାବସ୍ତ୍ର ରପ୍ତାନୀ ହେଲା ଓ ସେଠାରୁ ଭାରତକୁ ଘୋଡ଼ା ଆମଦାନୀ କରାଯାଇ ଆଭ୍ୟନ୍ତରୀଣ ରାଜ୍ୟଗୁଡ଼ିକରେ ଅଧିକ ଲାଭରେ ବିକ୍ରୟ କରାଗଲା ।

ଐତିହାସିକମାନେ ପ୍ରତିହାରମାନଙ୍କର ଅନିଶ୍ଚିତ ସାମାଜିକ ଉତ୍ସ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । ସେମାନେ ପ୍ରତିହାରମାନଙ୍କୁ କେତେବେଳେ ହୁନ୍‌ମାନଙ୍କ ସହ ଚିହ୍ନିତ କରିଛନ୍ତି, ତ କେତେବେଳେ ରାଜସ୍ଥାନର ଗୁର୍ଜର ଜାତିର ପଶୁପାଳକଙ୍କଠାରୁ ଉଦ୍ଭବ ବୋଲି କହିଛନ୍ତି । ପ୍ରତିହାରମାନଙ୍କର ଶତ୍ରୁ ରାଷ୍ଟ୍ରକୂଟମାନେ ସେମାନଙ୍କୁ ଆକ୍ଷରିକ 'ପ୍ରତିହାର' ଅର୍ଥରେ ଦ୍ୱାରପାଳ ବୋଲି ଦାବି କରୁଥିଲେ । ସେମାନଙ୍କର ଉଦ୍ଭବକୁ ନୀଚ ଦେଖାଇବା ପାଇଁ ଅପମାନସୂଚକ ଭାବେ ରାଷ୍ଟ୍ରକୂଟମାନେ ଏହା କହୁଥିଲେ । ବିଭିନ୍ନ ସମୟରେ ପ୍ରଶାସନିକ ପଦପଦବୀରେ ରହି ସେମାନେ କ୍ରମଶଃ କ୍ଷମତାକୁ ଆସିଥିଲେ । ପ୍ରତିହାରମାନେ ଭାଟ ବା କବି ପରମ୍ପରାରୁ ରାଜପୁତ୍ ମର୍ଯ୍ୟାଦା ପାଇଥିଲେ । ଅଷ୍ଟମ ଶତାବ୍ଦୀରେ ପ୍ରଥମ ପ୍ରତିହାର ରାଜା ନାଗଭଟ୍ଟ ଖୁବ୍ ପ୍ରତିଷ୍ଠିତ ଥିଲେ । ସେ ମ୍ଳେଚ୍ଛମାନଙ୍କର ଭୟଙ୍କର ଶତ୍ରୁ ଥିଲେ । ସମାଜରେ ଜାତି ବ୍ୟବସ୍ଥା ବାହାରେ ମ୍ଳେଚ୍ଛମାନଙ୍କର ସ୍ଥାନ ଥିଲା । ସେମାନେ ପ୍ରକୃତରେ କିଏ ତାହାର ସୂଚନା ନାହିଁ । ସମ୍ଭବତଃ ସିନ୍ଧୁ ଅଞ୍ଚଳରେ ଥିବା ଆରବମାନଙ୍କ ପ୍ରତି ଏହା ଉଦ୍ଦିଷ୍ଟ ଥିଲା କିମ୍ବା ଯେଉଁମାନେ ପୂର୍ବରୁ କୌଣସି ଶାସନ ଅଧିକାରଭୁକ୍ତ ହୋଇ ନଥିଲେ ଓ ବାସହୀନ ଭାବରେ ପରିଗଣିତ ହେଉଥିଲେ ସେମାନଙ୍କୁ ଏହିପରି କୁହାଯାଉଥିଲା । ଜୈନ ଗ୍ରନ୍ଥ କୁଭଲ୍ୟାମାଳା (Kuvalyamala)ରେ ପ୍ରତିହାର ରାଜାମାନଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ନବମ ଶତାବ୍ଦୀର ଭୋଜରାଜା କଥା ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲା । ପ୍ରତିହାର ଦରବାର କବି ରାଜଶେଖରଙ୍କର ପୃଷ୍ଠପୋଷକତା କରିଥିଲା । ପ୍ରତିବଦଳରେ

ଜବି ପ୍ରତିହାରମାନଙ୍କୁ ସୂର୍ଯ୍ୟବଂଶୀ ରାଜା ଓ ରାମାୟଣର ନାୟକ ରାମଚନ୍ଦ୍ରଙ୍କର ଦାୟାଦ ଭାବରେ ପ୍ରତିଷ୍ଠା ଦେଇଥିଲେ । ପ୍ରତିହାରମାନେ ମାଉଣ୍ଟଆବୁ ନିକଟସ୍ଥ ଭିନ୍‌ମଲ (Bhinmal)ରୁ ତାଙ୍କର ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ରାଜପୁତ୍‌ମାନଙ୍କର ଚାରୋଟି ମୂଳ ଅଂଶ ମଧ୍ୟରେ ଥିବା ଅଗ୍ନିଯଜ୍ଞ ପ୍ରଥା ଏହି ମାଉଣ୍ଟଆବୁରେ ପାଳିତ ହେଉଥିବା ଅନୁମିତ ହୁଏ । ସଫଳତାର ସହିତ ଆରବୀୟମାନଙ୍କୁ ପ୍ରତିହତ କରିବା ପରେ ପ୍ରତିହାରମାନେ ପୂର୍ବଦିଗକୁ ଦୃଷ୍ଟିନିକ୍ଷେପ କରିଥିଲେ । ପ୍ରଥମ ସହସ୍ରାବ୍ଦୀର ଶେଷବେଳକୁ ରାଜସ୍ଥାନ ଓ ମାଳୱାରର ଏକ ବିସ୍ତୃତ ଅଞ୍ଚଳରେ ଶାସନ କରିବା ସହିତ କନୌଜର କିଛି ଅଂଶ ମଧ୍ୟ ସେମାନେ ଅଧିକାର କରିଥିଲେ । କନୌଜ ସଂଘର୍ଷରେ ଜଡ଼ିତ ଥିବା ତୃତୀୟ ଶକ୍ତି ଥିଲେ ପାଳ ରାଜବଂଶ । ସେମାନେ ଗାଙ୍ଗେୟ ଉପତ୍ୟକାର ପୂର୍ବଭାଗକୁ ନିୟନ୍ତ୍ରଣ କରୁଥିଲେ । ଗୁପ୍ତ ଯୁଗରେ ଏହିଠାରେ ଭୂମିଦାନ ପରମ୍ପରା ଆରମ୍ଭ ହୋଇଥିଲା । ଅନେକ ସମୟରେ ଧର୍ମୀୟ ଅନୁଷ୍ଠାନକୁ ଦାନ ଦେବା ପାଇଁ ଭୂମି କିଣାଯାଉଥିଲା । ପରିତ୍ୟକ୍ତ ଅଞ୍ଚଳରେ କୃଷିଭିତ୍ତିକ ବସତି ସ୍ଥାପନ ଦ୍ୱାରା ଏହି ଧାରା ଦ୍ରୁତଗତିରେ ବଢ଼ିଚାଲିଲା । ଦାନଗ୍ରହୀତା ବ୍ରାହ୍ମଣମାନେ ଏହି ବସତି ସ୍ଥାପନ କାର୍ଯ୍ୟ କରୁଥିଲେ । ଏହି ଜମି ସବୁ ଉର୍ବର ଏବଂ ନିମ୍ନ ଅଞ୍ଚଳରେ ଥିଲା । ତାହା ଗାଙ୍ଗେୟ ତ୍ରିକୋଣ ଭୂମିରେ ଥିବା ଉପନଦୀ ଓ ପୂର୍ବାଞ୍ଚଳର ଅନ୍ୟାନ୍ୟ ନଦୀଦ୍ୱାରା ଜଳସେଚିତ ହେଉଥିବାରୁ ଧାନଚାଷ ପାଇଁ ଉପଯୁକ୍ତ ଥିଲା । ଏହି ନୂତନ ବସତିଗୁଡ଼ିକରେ କନୌଜରୁ ଆସିଥିବା ସମ୍ମାନାସ୍ପଦ ବ୍ରାହ୍ମଣମାନଙ୍କୁ ସ୍ଥାନ ଦିଆଗଲା । ଏଠାରେ ବ୍ରାହ୍ମଣମାନଙ୍କ ସହିତ ସ୍ଥାନୀୟ ପୁରୋହିତମାନଙ୍କୁ ମଧ୍ୟ ରଖାଗଲା । ଏହି ଭୂମିଦାନ ଦାନପତ୍ର ତମ୍ବାପଟାରେ ଲିପିବଦ୍ଧ ହେଉଥିଲା । ଆଇନସଙ୍ଗତ ଏବଂ ସହଜରେ ପୁନରୁଦ୍ଧାର କରାଯାଇ ପାରୁଥିବା ଏହି ଦାନପତ୍ରଗୁଡ଼ିକ ନୂଆକରି ଗଢ଼ିଉଠୁଥିବା ଅଞ୍ଚଳ ପାଇଁ ଅତି ଆବଶ୍ୟକ ଥିଲା ।

ଏହା ସହିତ ପାଳମାନେ ଦକ୍ଷିଣ-ପୂର୍ବ ଏସିଆରେ ଯଥେଷ୍ଟ ବାଣିଜ୍ୟିକ କାରବାର ହେତୁ ବେଶ୍ ଆୟ କରିଥିଲେ । ଦକ୍ଷିଣ-ପୂର୍ବ ଏସିଆ ସହିତ ଆରବୀୟମାନଙ୍କର ବାଣିଜ୍ୟ ପୂର୍ବ-ଆଫ୍ରିକା ପଥରେ ଚୀନାମାନଙ୍କର ବାଣିଜ୍ୟ ସହିତ ପ୍ରସାର ଲାଭ କଲା । ଉଭୟେ ବଙ୍ଗୋପସାଗରରେ ବନ୍ଦରର ଉପଯୋଗ କରୁଥିଲେ । ବୌଦ୍ଧଧର୍ମ ଯୋଗୁଁ ପୂର୍ବ-ଭାରତ ଏବଂ ଜାଭା ଓ ସୁମାତ୍ରା ମଧ୍ୟରେ ଯୋଗସୂତ୍ର ସ୍ଥାପନ ହେଲା । ବିହାରର ବିକ୍ରମଶୀଳା, ଔଦନ୍ତପୁରୀ ଓ ଆଧୁନିକ ପାହାଡ଼ପୁର (ବାଂଲାଦେଶ)ର ସୋମପୁରୀଠାରେ ପାଳମାନଙ୍କର ପୃଷ୍ଠପୋଷକତାରେ ବୌଦ୍ଧ ମଠଗୁଡ଼ିକ ନିର୍ମିତ ହେଲା । ନାଳନ୍ଦାକୁ ମଧ୍ୟ ସେମାନଙ୍କର କ୍ରମାଗତ ସାହାଯ୍ୟ ଜାରି ରହିଲା । ଆଗକୁ ଆଗକୁ ବୌଦ୍ଧ ରାଜ୍ୟଗୁଡ଼ିକରେ ବ୍ୟବସାୟ ବାଣିଜ୍ୟକୁ ଦୃଷ୍ଟିରେ ରଖି ସେମାନେ ଏହା କରିଥିଲେ । ସୁମାତ୍ରାରେ ଶ୍ରୀବିଜୟର ରାଜା

ନାଳନ୍ଦାକୁ ପ୍ରଭୂତ ଦାନ ଦେଇଥିଲେ । ବୌଦ୍ଧପୀଠ ଭାବରେ ବଙ୍ଗଳାର ପୂର୍ବାଞ୍ଚଳରେ ସ୍ଥିତ ଲାଲମୟୀ ଓ ମୈନାମତି ପରି ସ୍ଥାନଗୁଡ଼ିକର ମଧ୍ୟ ଗୁରୁତ୍ୱ ଥିଲା ।

ଅଷ୍ଟମ ଶତାବ୍ଦୀରେ ଗୋପାଳ ନାମକ ଜଣେ ପାଳ ଶାସକ ଅସ୍ୱାଭାବିକ ଭାବରେ ପ୍ରଥମେ ରାଜା ହେଲେ ଓ ପ୍ରସିଦ୍ଧି ଅର୍ଜନ୍ କଲେ । ଗୋପାଳ ଉତ୍ତରାଧିକାର ସୂତ୍ରରେ ରାଜା ନ ହୋଇ ନିର୍ବାଚିତ ହୋଇ ରାଜା ହୋଇଥିବାରୁ ବହୁତ ପ୍ରସିଦ୍ଧି ଅର୍ଜନ କରିଥିଲେ । ତାଙ୍କ ପୁତ୍ର ଏହି ନିର୍ବାଚନ ବ୍ୟବସ୍ଥାକୁ ଅବ୍ୟାହତ ରଖିବାରୁ ରାଜ୍ୟରେ ଅରାଜକତା ଲୋପ ପାଇଲା । ଷୋଡ଼ଶ ଶତାବ୍ଦୀର ତିବ୍ବତୀୟ ବୌଦ୍ଧସନ୍ୟାସୀ ତାରାନାଥ ତାଙ୍କର ବୌଦ୍ଧ ଇତିହାସରେ ଏହି ଘଟଣାର ଉଲ୍ଲେଖ କରି କହିଛନ୍ତି ଯେ, ବଙ୍ଗଳାରେ ରାଜା ନ ଥିବାରୁ ସେ ରାଜ୍ୟରେ ବହୁ ଅସୁବିଧା ରହିଥିଲା । ଯଦିଓ ସ୍ଥାନୀୟ ନେତାମାନେ ଜଣେ ରାଜାଙ୍କୁ ବାଛିବା ପାଇଁ ସର୍ବଦା ଏକତ୍ରିତ ହେଉଥିଲେ, ପ୍ରତ୍ୟେକଥର ନିର୍ବାଚିତ ବ୍ୟକ୍ତି ଜଣକ ନିର୍ବାଚନ ପର ରାତିରେ ଗୋଟେ ଦାନବୀ ହାତରେ ମୃତ୍ୟୁବରଣ କରୁଥିଲା । ଶେଷରେ ଯେତେବେଳେ ଗୋପାଳ ନିର୍ବାଚିତ ହେଲେ ତାଙ୍କୁ ଦେବୀ ଚଣ୍ଡୀ (ଶିବଙ୍କର ପତ୍ନୀ) ନିଜକୁ ରକ୍ଷା କରିବାପାଇଁ ଗୋଟିଏ ଗଦା ପ୍ରଦାନ କଲେ । ସେ ଦାନବୀକୁ ମାରିବାପାଇଁ ତାହା ବ୍ୟବହାର କଲେ ଓ ନିଜେ ବଞ୍ଚିଗଲେ । ପ୍ରଚଳିତ ଏହି କିମ୍ବଦନ୍ତୀ ଅନୁସାରେ ଗୋପାଳ ନିଜକୁ ରକ୍ଷା କରିବାର କ୍ଷମତା ହେତୁ ନିର୍ବାଚିତ ହେଲେ । ଏହି ଘଟଣାରୁ ଚଣ୍ଡୀ ସଂସ୍କୃତିର ପ୍ରତିଷ୍ଠା ହୋଇଥିଲା ଯାହାକୁ ଗୋପାଳ ହୁଏତ ସମର୍ଥନ କରିଥିଲେ । ଏଥିରୁ ଅନୁମିତ ହୁଏ ଯେ, ଗୋପାଳଙ୍କର କୌଣସି ପୂର୍ବପୁରୁଷ ନଥିଲେ । ତଥାପି ରାଜ୍ୟ ଅଧିକାରରେ ସେ ସଫଳ ହୋଇଥିଲେ । ପରବର୍ତ୍ତୀ ସମୟରେ ଏଭଳି କିମ୍ବଦନ୍ତୀ ଏକ ସାଧାରଣ କଥା ହେଲା ।

ପରବର୍ତ୍ତୀ ରାଜା ଧର୍ମପାଳ ପାଳରାଜ୍ୟକୁ ଉତ୍ତର ଭାରତର ରାଜନୀତିରେ ଏକ ଶକ୍ତିଶାଳୀ ରାଜ୍ୟ ଭାବରେ ଗଢ଼ିଥିଲେ । ନିଜର ଶାସନ ଆରମ୍ଭ କାଳରେ ଯଦିଓ ଧର୍ମପାଳ ରାଷ୍ଟ୍ରକୂଟଙ୍କ ହାତରେ ପରାଜୟ ସ୍ୱୀକାର କରିଥିଲେ, ତଥାପି ତାଙ୍କ ଶାସନ କାଳର ଶେଷଭାଗରେ ପାଳଶକ୍ତି ପୂର୍ବ-ଭାରତରେ ପ୍ରାଧାନ୍ୟ ଲାଭ କରିଥିଲା । ଅଷ୍ଟମ ଶତାବ୍ଦୀର ଶେଷଭାଗରେ ଧର୍ମପାଳ କନୌଜ ବିରୁଦ୍ଧରେ ସଫଳ ସାମରିକ ଅଭିଯାନ କରିଥିଲେ । ଫଳରେ ପ୍ରତିହାରମାନଙ୍କ ପୃଷ୍ଠପୋଷକତାରେ ସେଠାରେ ଶାସନ କରୁଥିବା ରାଜାଙ୍କୁ ସିଂହାସନ ତ୍ୟାଗ କରିବାକୁ ପଡ଼ିଲା; ଧର୍ମପାଳ ସାର୍ବଭୌମତ୍ୱ ଦାବି କଲେ । ଏହାଦ୍ୱାରା ରାଷ୍ଟ୍ରକୂଟ ଓ ପ୍ରତିହାରମାନେ ଅପମାନିତ ହେଲେ । କିନ୍ତୁ ଧର୍ମପାଳ ନିଜ ସ୍ଥିତିରେ ଦୃଢ଼ ଥିଲେ । ପରେ ଦେବପାଳ ପାଳ ରାଜ୍ୟକୁ ପୂର୍ବ ଦିଗରେ କାମରୂପ (ଆସାମ) ପର୍ଯ୍ୟନ୍ତ ପ୍ରସାରିତ କଲେ । ଆସାମ ମଧ୍ୟଦେଇ ଉତ୍ତର-ପୂର୍ବକୁ ଏବଂ ମିଆଁମାରର କେନ୍ଦ୍ରସ୍ଥଳକୁ ବାଣିଜ୍ୟପଥ ଓ ତାହା ସହିତ ପୂର୍ବାଞ୍ଚଳର ନଦୀଗର୍ଭରୁ ପ୍ରାପ୍ତ ସୁନା ଓ ଦକ୍ଷିଣ-ପୂର୍ବ ଏସିଆର ବାଣିଜ୍ୟରୁ ମିଳିଥିବା

ସମ୍ପଦ ପାଳମାନଙ୍କୁ ସଂବୃଦ୍ଧ କରାଇଥିଲା ବୋଲି ବିଶ୍ୱାସ କରାଯାଏ । ପରବର୍ତ୍ତୀ ରାଜା ରାମପାଳ ପାଳମାନଙ୍କ ରାଜ୍ୟବିସ୍ତାରକୁ ପ୍ରତିରୋଧ କରି ସଂଘଟିତ ହୋଇଥିବା କୈବର୍ତ୍ତ ବିଦ୍ରୋହର ସମ୍ମୁଖୀନ ହେଲେ । ବିଦ୍ରୋହ ଦମନ କରିବା ସକାଶେ ରାମପାଳ ସାମନ୍ତ ତଥା ଅନ୍ୟ ଅଧୀନସ୍ଥ ଶାସକମାନଙ୍କୁ ଉପହାର ପ୍ରଦାନର କୂଟନୀତି ପ୍ରୟୋଗ କଲେ । ତା ସହିତ ସେନାର ବି ଉପଯୋଗ କଲେ । ସାମନ୍ତ ଓ ବନବାସୀ ସର୍ଦ୍ଦାରମାନଙ୍କର ସହଯୋଗ ପାଇବା ପାଇଁ ପ୍ରଚୁର ଉପହାର ଦେବା ତାଙ୍କ କୂଟନୀତିର ଅଙ୍ଗ ହୋଇଥିଲା । ଏହି କୂଟନୈତିକ ବ୍ୟବସ୍ଥାର ସନ୍ଧ୍ୟାକର ନନ୍ଦୀନ ରାମପାଳଙ୍କ ଜୀବନୀଗ୍ରନ୍ଥ ରାମଚରିତରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଉକ୍ତ ଜୀବନୀରେ ଏହି ଘଟଣାର ବିଶଦ ବର୍ଣ୍ଣନା ରାମପାଳ ଓ ତାଙ୍କ ଅଧୀନସ୍ଥ କରଦରାଜାଙ୍କ ମଧ୍ୟରେ ଥିବା ସୂକ୍ଷ୍ମ ସମ୍ପର୍କର ବିବରଣୀ ପ୍ରଦାନ କରେ । କୈବର୍ତ୍ତମାନଙ୍କର ବିଦ୍ରୋହକୁ କୃଷକ ବିଦ୍ରୋହ ଭାବରେ ଦେଖାଯାଇଥିଲା । କାରଣ ପାରମ୍ପରିକଭାବେ କୈବର୍ତ୍ତମାନେ ସେତେବେଳେ ନିମ୍ନ ଜାତିର କୃଷକ ଓ ମତ୍ସ୍ୟଜୀବୀ ଥିଲେ । ଏହି ବର୍ଣ୍ଣନାରୁ ଅନୁମିତ ହୁଏ ଯେ ଉପରୋକ୍ତ ବିଦ୍ରୋହ କ୍ଷୁଦ୍ର ଜମିମାଲିକମାନେ କୃଷକମାନଙ୍କୁ ପ୍ରବର୍ତ୍ତାଇ କରାଇଥିଲେ ।

ପାଳରାଜାମାନେ ତିବ୍ବତ ପ୍ରତି ଯଦିଓ ସର୍ବଦା ସତର୍କ ରହୁଥିଲେ, ବନ୍ଧୁତାପୂର୍ଣ୍ଣ ସମ୍ପର୍କ ସେମାନଙ୍କର ଉତ୍ତର ସୀମାକୁ ନିରାପଦ ରଖୁଥିଲା । ପାଳ ଏବଂ ଏକାଦଶ ଶତାବ୍ଦୀରୁ ପରବର୍ତ୍ତୀ ସେଣ ରାଜବଂଶ ଧର୍ମୀୟ ଅନୁଷ୍ଠାନମାନଙ୍କୁ ପୃଷ୍ଠପୋଷକତା ପ୍ରଦାନ କରୁଥିଲେ । ଫଳରେ ପୂର୍ବ ଭାରତରେ ବୌଦ୍ଧମାନଙ୍କର ବହୁଳ ଉପସ୍ଥିତି ଦେଖାଗଲା । ପୂର୍ବ ଭାରତର ବୌଦ୍ଧଧର୍ମରେ ତାନ୍ତ୍ରିକ ପରମ୍ପରାର ପ୍ରଭାବ ତିବ୍ବତର ବୌଦ୍ଧଧର୍ମ ସହିତ ସଂଯୁକ୍ତ ଥିଲା । ପରବର୍ତ୍ତୀ ସେଣ ବଂଶର ରାଜତ୍ୱର ଶେଷଆଡ଼କୁ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରୁ ବୌଦ୍ଧମାନଙ୍କ ପ୍ରତି ଦିଆଯାଇଥିବା ପୃଷ୍ଠପୋଷକତାରେ ହ୍ରାସ ଘଟିଲା । ତେଣୁ ବୌଦ୍ଧଧର୍ମ ଓ ତାନ୍ତ୍ରିକ ଉପାସନା ମଧ୍ୟରେ ଥିବା ପ୍ରଭେଦ କ୍ଷୀଣ ହୋଇଗଲା ।

ଇତିମଧ୍ୟରେ ପ୍ରତିହାରମାନେ ସ୍ଥିତି ମଜବୁତ୍ କରିସାରିଥିଲେ ଓ ନୂତନ ସାମରିକ ଅଭିଯାନ ଆରମ୍ଭ କରିଥିଲେ । ପାଳମାନଙ୍କଠାରୁ ରାଷ୍ଟ୍ରକୂଟମାନେ ଜିଣିନେଇଥିବା କନୌଜକୁ ପ୍ରତିହାରମାନେ ଅଧିକାର କଲେ । ଅନ୍ୟ ଦୁଇ ଶକ୍ତିକୁ ସେମାନଙ୍କର ରାଜ୍ୟକୁ ଫେରାଇଦେଲେ । ପ୍ରତିହାରମାନଙ୍କ ମଧ୍ୟରେ ସବୁଠାରୁ ପ୍ରସିଦ୍ଧ ରାଜା ଭୋଜ ଆରବୀୟମାନଙ୍କ ବିସ୍ତାରକୁ ପ୍ରତିହତ କରିଥିଲେ । ଦାକ୍ଷିଣାତ୍ୟକୁ ନିଜ ନିୟନ୍ତ୍ରଣରେ ରଖିବାର ତାଙ୍କର ଖୁବ୍ ଇଚ୍ଛା ଥିଲା, କିନ୍ତୁ ଗୋଟିଏପଟେ ଆରବୀୟମାନଙ୍କୁ ଓ ଅନ୍ୟପଟେ ପାଳମାନଙ୍କୁ ଦମନ କରିବାରେ ତାଙ୍କର ସବୁ ଶକ୍ତି ନିୟୋଜିତ ହେବାରୁ ଏହା ସମ୍ଭବ ହୋଇପାରି ନଥିଲା ।

ରାଷ୍ଟ୍ରକୂଟମାନେ ସୁଯୋଗ ଅପେକ୍ଷାରେ ଥିଲେ । ଶେଷଥର ପାଇଁ 916 ମସିହାରେ ସଫଳତାର ସହିତ ସେମାନେ କନୌଜ ଆକ୍ରମଣ କଲେ । ପ୍ରତିହାର ଓ ରାଷ୍ଟ୍ରକୂଟମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଉଭୟଙ୍କର ବିନାଶର କାରଣ ହେଲା । ଆରବ ପରିବ୍ରାଜକ ମସୁଦି ଦଶମ ଶତାବ୍ଦୀର ପ୍ରାରମ୍ଭରେ କନୌଜ ପରିଦର୍ଶନ କରିବାକୁ ଆସିଥିଲେ । ତାଙ୍କ ବର୍ଣ୍ଣନା ଅନୁସାରେ କନୌଜର ରାଜା ଥିଲେ ଦାକ୍ଷିଣାତ୍ୟ ରାଜାଙ୍କର ସ୍ୱାଭାବିକ ଶତ୍ରୁ । ତାଙ୍କର ବିଶାଳ ସେନାବାହିନୀ ଥିଲା ଓ ସେ କ୍ଷୁଦ୍ର ରାଜାମାନଙ୍କ ଦ୍ୱାରା ଘେରି ହୋଇ ରହୁଥିଲେ । ସେମାନେ ସବୁବେଳେ ଯୁଦ୍ଧପାଇଁ ପ୍ରସ୍ତୁତ ଥିଲେ । ଶହେ ବର୍ଷ ପରେ ପ୍ରତିହାରମାନେ ଉତ୍ତର ଭାରତରେ ଏକ ଶକ୍ତି ଭାବରେ ଆଉ ରହିଲେ ନାହିଁ । ତୁର୍କୀ ସେନା 1018 ରେ କନୌଜ ଆକ୍ରମଣ କଲେ, ଯାହା ବାସ୍ତବରେ ପ୍ରତିହାର ଶାସନର ଅନ୍ତ ଘଟାଇଥିଲା । ପଶ୍ଚିମ ଦାକ୍ଷିଣାତ୍ୟରେ ଉତ୍ତର ଚାଲୁକ୍ୟର ରାଜାମାନେ ରାଷ୍ଟ୍ରକୂଟମାନଙ୍କୁ ଗାଦିଚ୍ୟୁତ କରିଥିଲେ ।

ପ୍ରତିହାରମାନଙ୍କର ପତନ ପାଳମାନଙ୍କୁ ଉତ୍ତର ଭାରତ ବ୍ୟାପାରରେ ଭାଗ ନେବାପାଇଁ ସୁଯୋଗ ସୃଷ୍ଟିକଲା । ଏକାଦଶ ଶତାବ୍ଦୀ ପ୍ରାରମ୍ଭରେ ତୁର୍କୀମାନେ ଉତ୍ତର ପଶ୍ଚିମ ଭାରତ ଆକ୍ରମଣ କରି ସ୍ଥାନୀୟ ରାଜାମାନଙ୍କ ଉପରେ ଅଧିକାର ସାବ୍ୟସ୍ତ କଲେ । ପାଳମାନେ ବାରାଣସୀରେ ପହଞ୍ଚିଲେ, କିନ୍ତୁ ଚୋଳ ରାଜା ରାଜେନ୍ଦ୍ରଙ୍କ ଦ୍ୱାରା ସେମାନଙ୍କର ରାଜ୍ୟ ବିସ୍ତାର ବାଧାପ୍ରାପ୍ତ ହେଲା । ତାଙ୍କର ଉତ୍ତର ଭାରତକୁ ସଫଳ ଅଭିଯାନ ଯୋଗୁଁ ବଙ୍ଗଳାର ସ୍ୱାଧୀନତା ପ୍ରତି ବିପଦ ଦେଖାଦେଲା । ତେଣୁ ପାଳମାନେ ପଶ୍ଚିମ ଅଭିଯାନ ପରିତ୍ୟାଗ କଲେ । ରାଜା ମହିପାଳ ଚୋଳ ସେନାମାନଙ୍କର ବଙ୍ଗଳା ଆକ୍ରମଣକୁ ମୁକାବିଲା କରିବାପାଇଁ ତୁରନ୍ତ ପ୍ରତ୍ୟାବର୍ତ୍ତନ କଲେ । ରାଜେନ୍ଦ୍ରଙ୍କର ପ୍ରଭାବଶାଳୀ ଅଭିଯାନର ଦୁଇଟି ଉଦ୍ଦେଶ୍ୟ ଥିଲା । ପ୍ରଥମଟି ହେଲା, ସାମରିକ ଗୌରବ ପ୍ରତିଷ୍ଠା ଏବଂ ଦ୍ୱିତୀୟଟି ହେଲା ରାଜନୈତିକ ସ୍ଥିତି ଜାହିର କରିବା । ଏହାସହିତ ଦକ୍ଷିଣ-ପୂର୍ବ ଏସିଆରେ ଏକଚାଟିଆ ବାଣିଜ୍ୟ ଓ ଚୀନ୍ ସହିତ ସାମୁଦ୍ରିକ ବାଣିଜ୍ୟରେ ସ୍ଥାପକର ପ୍ରଚେଷ୍ଟା ଯୋଡ଼ିହୋଇଗଲା । ରାଜା ମହିପାଳଙ୍କର ମୃତ୍ୟୁ ପରେ ପାଳ ରାଜବଂଶର ପତନ ଘଟିଥିଲା ଓ ସେଣ ରାଜବଂଶର ଉତ୍‌ଥାନ ସମ୍ଭବ ହେଲା ।

ପ୍ରାୟତଃ ଏକାସମୟରେ ତିନୋଟି ପରସ୍ପର ବିରୋଧୀ ଶକ୍ତି ପାଳ, ପ୍ରତିହାର ଓ ରାଷ୍ଟ୍ରକୂଟଙ୍କର ପତନରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନଥିଲା । ସେମାନଙ୍କର ଶକ୍ତି ସମାନ ଥିଲା ଓ ସେମାନେ ସୁସଂଗଠିତ ସେନାବାହିନୀ ଉପରେ ନିର୍ଭର କରୁଥିଲେ । ବିଭିନ୍ନ ଶିଳାଲେଖରେ ଛୋଟ ଛୋଟ ରାଜ୍ୟଜୟର କଥା ଯେପରି ଆଳଙ୍କାରିକଭାବେ ବର୍ଣ୍ଣନା

କରାଯାଇଥିଲା ତାହା ଥିଲା ରାଜାମାନଙ୍କ ଗୌରବଗାଥା, ନାମଫଳକର ପୁନରାବୃତ୍ତି ଏକପ୍ରକାର ଭାଷାରେ ଲିଖିତ । ଏହି ବର୍ଣ୍ଣନାଗୁଡ଼ିକ ଯେ କେବଳ ସାହିତ୍ୟିକ କଳ୍ପନା ନ ହୋଇ ଐତିହାସିକ ଦଲିଲ, ଏକଥା କହିବାକୁ ହେଲେ ଅଧିକ ପ୍ରମାଣର ଆବଶ୍ୟକତା ରହିବ ।

ଯଦି ଏହି ଲେଖାଗୁଡ଼ିକରେ ସତ୍ୟତା ଥାଏ, ତାହେଲେ କ୍ରମାଗତ ଅଭିଯାନ ପାଇଁ ବିରାଟ ସେନାବାହିନୀ ପ୍ରସ୍ତୁତ ରଖିବାକୁ କୃଷକମାନଙ୍କ ଉପରେ କରର ଅଧିକ ଚାପ ପଡ଼ିଥିବ । କାରଣ ସେମାନଙ୍କର ସେନାବାହିନୀକୁ ସମ୍ଭାଳିବା ପାଇଁ ଅତିରିକ୍ତ କରର ବୋଝ ଏକା କିସମର, ପ୍ରତ୍ୟେକ ରାଜ୍ୟର ସମସ୍ୟା ଏକାଭଳି । କନୌଜ ଅଧିକାର ପାଇଁ ନିଜ ଭିତରେ କ୍ରମାଗତ ଯୁଦ୍ଧ ଯୋଗୁଁ ସାମନ୍ତମାନଙ୍କଠାରୁ ସେମାନଙ୍କର ଦୃଷ୍ଟି ଦୂରେଇ ଯାଇଥିଲା । ତେଣୁ କିଛି ସ୍ଥାନୀୟ ରାଜା ଏହାର ସୁଯୋଗ ନେଇ ନିଜର ସ୍ୱାଧୀନତା ଘୋଷଣା କରିବାରେ ସକ୍ଷମ ହୋଇଥିଲେ । ସେମାନେ ଯେହେତୁ ଆନୁଗତ୍ୟ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ, କନୌଜକୁ କେନ୍ଦ୍ରରେ କରି ଉତ୍ତର ଭାରତରେ ଏକଶାସନାଧୀନ ଏକ ରାଜ୍ୟର ସମ୍ଭାବନା ଧ୍ୱଂସ ପାଇଗଲା । ଏହାବ୍ୟତୀତ, ଉତ୍ତର-ପଶ୍ଚିମ ଏବଂ ଦକ୍ଷିଣରୁ କ୍ରମାଗତ ଆକ୍ରମଣ ମଧ୍ୟ ଏକ ଶକ୍ତିଶାଳୀ ରାଷ୍ଟ୍ର ଗଠନର ପ୍ରକ୍ରିୟାକୁ ପ୍ରତିହତ କରିଥିଲା ।

## ଗାଙ୍ଗେୟ କେନ୍ଦ୍ରାଞ୍ଚଳ ବାହାରର ରାଜ୍ୟ ସମୂହ

ପୂର୍ବରୁ ଥିବା ତିନିଗୋଟି ମୁଖ୍ୟ ରାଜ୍ୟ ସୀମାନ୍ତରେ ସେହି ସମୟରେ କ୍ଷୁଦ୍ର ସ୍ୱାଧୀନ ରାଜ୍ୟସବୁ ଗଢ଼ିଉଠିଲା । ସମୟକ୍ରମେ କେତେକ କେନ୍ଦ୍ରାଞ୍ଚଳଠାରୁ ଦୂରରେ ନିଜ ନିଜର ଶକ୍ତି ପ୍ରତିଷ୍ଠା କଲେ । ସେଗୁଡ଼ିକ ମଧ୍ୟରେ ଚାଲୁକ୍ୟ ଓ ବାଘେଲାମାନଙ୍କ ଦ୍ୱାରା ପଶ୍ଚିମ ଭାରତର ଶାସିତ ଅଞ୍ଚଳ ମୁଖ୍ୟ ଥିଲା । କେତେକ କ୍ଷୁଦ୍ର ରାଜ୍ୟରେ ଆରବ ଓ ଅନ୍ୟମାନେ ଥିଲେ । ପାର୍ବତ୍ୟାଞ୍ଚଳରେ ଥିବା କାଶ୍ମୀର, ନେପାଳ ଓ ଅନ୍ୟ ରାଜ୍ୟଗୁଡ଼ିକ କ୍ଷୁଦ୍ର ଥିଲା । ଉତ୍ତର-ପୂର୍ବାଞ୍ଚଳର ଆସାମରେ ଥିବା କାମରୂପ, ପୂର୍ବଭାଗରେ ଉତ୍କଳ ଓ କଳିଙ୍ଗକୁ କେନ୍ଦ୍ରକରି କେତେକ ରାଜ୍ୟ ରହିଥିଲା । ଭାରତର କେନ୍ଦ୍ରାଞ୍ଚଳ, ଗାଙ୍ଗେୟ ଉପତ୍ୟକାର ପଶ୍ଚିମାଞ୍ଚଳରେ ଓ ରାଜସ୍ଥାନରେ ରାଜପୁତ୍‌ମାନେ ଶାସନ କରୁଥିଲେ ।

ଆରବମାନଙ୍କର ଅଭିଯାନ ସିନ୍ଧୁ ଉପତ୍ୟକାର ନିମ୍ନଭାଗରେ ପ୍ରତିହତ ହେବାପରେ ଉପମହାଦେଶର ପଶ୍ଚିମଭାଗରେ ଆରବମାନେ ଛୋଟ ଛୋଟ ରାଜ୍ୟ ସ୍ଥାପନ କଲେ । ସିନ୍ଧୁ ଏବଂ ପଞ୍ଜାବର ନିମ୍ନଭାଗ ଖଲିଫାଙ୍କ ଦ୍ୱାରା ନିଯୁକ୍ତ ରାଜ୍ୟପାଳମାନଙ୍କ ଶାସନାଧୀନ ଥିଲା । ନବମ ଶତାବ୍ଦୀରେ ସିନ୍ଧୁ ଅଞ୍ଚଳର ମନ୍‌ସୁରା ଓ ମୁଲ୍‌ତାନର ଆରବ ଶାସକମାନେ ନିଜର ସ୍ୱାଧୀନତା ଘୋଷଣା କଲେ ଓ ରାଜବଂଶ ସ୍ଥାପନ କଲେ । ଆରବ ଶାସକମାନଙ୍କର

ସିନ୍ଧୁ ଅଧିକାରର କିଛି ଅଂଶ 'ଚାଚନାମା'ରେ ବର୍ଣ୍ଣିତ ଅଛି । ରାଜନୈତିକ ଘଟଣା ବ୍ୟତୀତ ଏଥିରେ ସ୍ଥାନ ପାଇଥିବା ସବୁଠାରୁ କୌତୂହଳର ବିଷୟ ହେଲା ତତ୍କାଳୀନ ଧର୍ମୀୟ କାର୍ଯ୍ୟକଳାପ । ସେଇ ସମୟରେ ସିନ୍ଧୁର ଅଧିବାସୀମାନେ ବ୍ରାହ୍ମଣ୍ୟ ଧର୍ମ କିମ୍ବା ଶ୍ରମଣ ଧର୍ମର ଅନୁଗାମୀ ଥିଲେ ଓ ସିନ୍ଧୁ ଉପତ୍ୟକାର ନିମ୍ନଭାଗରେ ବୌଦ୍ଧ ଓ ଜୈନମାନଙ୍କର ଉପସ୍ଥିତି ବହୁଳଭାବେ ଦେଖାଗଲା । ଯେହେତୁ ଆରବମାନଙ୍କର ବ୍ୟବସାୟ-ବାଣିଜ୍ୟ ବୃଦ୍ଧି ପାଇଁ ଅଧିକ ଆଗ୍ରହ ଥିଲା, ସେମାନେ ଇସଲାମ ବ୍ୟତୀତ ଅନ୍ୟ ଧର୍ମ ପ୍ରତି ବିମୁଖ ନଥିଲେ । ସେମାନେ ପରବର୍ତ୍ତୀ ଅବସ୍ଥାରେ ମୋଟ ଉପରେ ସେସବୁକୁ ଗ୍ରହଣଯୋଗ୍ୟ ମଧ୍ୟ କରିନେଇଥିଲେ । ସେହି ଅଞ୍ଚଳରେ ମଠ ଓ ସ୍ତୂପ ମାଧ୍ୟମରେ ବୌଦ୍ଧଧର୍ମ ଲୋକମାନଙ୍କ ମଧ୍ୟରେ ପ୍ରସାରିତ ହେଉଥିଲା । ମନ୍‌ସୁରା ଓ ମୁଲତାନ ସିହା ସଂପ୍ରଦାୟ ଓ ଇସ୍‌ଲାମୀୟ କାର୍ଯ୍ୟର ପ୍ରଭାବଶାଳୀ କେନ୍ଦ୍ର ହେଲା । ସେମାନେ ବାଣିଜ୍ୟ-ବ୍ୟବସାୟର ବିରୋଧୀ ନଥିଲେ । କିନ୍ତୁ ସେମାନେ ରକ୍ଷଣଶୀଳ ଇସ୍‌ଲାମ ଧର୍ମଠାରୁ ଅଲଗା ହୋଇଥିବାରୁ ମୌଳବାଦୀ ସୁନ୍ନିମାନେ ସେମାନଙ୍କୁ ଘୃଣା କରୁଥିଲେ । ଏହି ଅଞ୍ଚଳ ଅତ୍ୟନ୍ତ ଶୁଷ୍କ ଥିଲା । ସେଠାରେ ମଝିରେ ମଝିରେ ଖଣ୍ଡେ ଖଣ୍ଡେ ମରୁଭୂମି ଥିଲା । ହରପ୍ପା ସମୟର ବିସ୍ତୀର୍ଣ୍ଣ ତୃଣଭୂମିଠାରୁ ତାହା ସମ୍ପୂର୍ଣ୍ଣ ଅଲଗା ଦିଶୁଥିଲା । ପଣ୍ୟଦ୍ରବ୍ୟ ପରିବହନ ଉଦ୍ଦେଶ୍ୟରେ ଓଟଟଣା ଗାଡ଼ିଗୁଡ଼ିକ ପାଇଁ ଏହି ଅଞ୍ଚଳରେ ସଂଯୋଜିତ ରାସ୍ତା ଥିଲା । ଜଣାଯାଏ ଯେ, ଦଶମ ଶତାବ୍ଦୀର ମୁଲତାନ୍‌ରେ ଥିବା ସୂର୍ଯ୍ୟମନ୍ଦିର ଭଙ୍ଗାଯାଇ ମସ୍‌ଜିଦ୍‌ରେ ପରିଣତ କରାଯାଇଥିଲା । କିନ୍ତୁ ଏକ ବିବାଦୀୟ ମତାନୁସାରେ ସେଠାରେ ଗୋଟିଏ ମନ୍ଦିର ମଧ୍ୟ ରହିଥିଲା । ମନ୍ଦିର ଧ୍ୱଂସ ହୋଇଥିବାର ଦାବି କେତେକ ସ୍ଥଳରେ ବାସ୍ତବ ନା ଏକ ମନଗଢ଼ା କଥା ? ତାହା ମଧ୍ୟ ଏକ ବିଚାର୍ଯ୍ୟ ପ୍ରଶ୍ନ ।

ଏହିପରି ଘଟଣାର ପ୍ରତିବାଦରେ ଓ ଏହି ଅଞ୍ଚଳରେ ଇସ୍‌ଲାମୀୟ ଧର୍ମ ପ୍ରଚାର ବିରୁଦ୍ଧରେ ବ୍ରାହ୍ମଣମାନେ ସ୍ୱର ଉତ୍ତୋଳନ କଲେ । ବିଶେଷକରି ବର୍ଣ୍ଣାଶ୍ରମ ବ୍ୟବସ୍ଥାରେ ଯେଉଁମାନେ ମ୍ଳେଚ୍ଛମାନଙ୍କ ସହିତ ବାସକରି ସେମାନଙ୍କ ରୀତିନୀତି ସହିତ ମିଳିତ ହେଉଥିଲେ ସେମାନଙ୍କୁ ବିରୋଧ କରାଯାଉଥିଲା । ଯେଉଁ ସ୍ୱତନ୍ତ୍ର ରୀତିନୀତିଗୁଡ଼ିକ ସ୍ୱାଭାବିକ ଭାବରେ ବାରଣ ଥିଲା, ସେମାନେ ତା'ର ବିରୁଦ୍ଧାଚରଣ କଲେ, ଯଥା- ଖାଦ୍ୟ, ସହବାସ, ଅପବିତ୍ର ଆଚରଣ, ଯାହାଫଳରେ ଜାତିଚ୍ୟୁତ ହେବାର ସମ୍ଭାବନା ଥିଲା । ଏହା ମୁଖ୍ୟତଃ ଉଚ୍ଚ ବଂଶର ଦ୍ୱିଜ (ବ୍ରାହ୍ମଣ)ମାନଙ୍କ ପ୍ରତି ପ୍ରଯୁଜ୍ୟ ଥିଲା । ଏ ବିଷୟରେ 'ଦେବଲ ସ୍ମୃତି'ରେ ପୂର୍ବରୁ କୁହାଯାଇଥିବା ଧର୍ମଶାସ୍ତ୍ରର ପୁନରାବୃତ୍ତି କରି କୁହାଯାଇଥିଲା ଯେ, ଯଦି କୌଣସି ବ୍ୟକ୍ତିକୁ ବର୍ଣ୍ଣାଶ୍ରମ ନିୟମର ବିରୁଦ୍ଧ କାର୍ଯ୍ୟ କରିବାକୁ ବାଧ୍ୟ କରାଯାଏ, ତେବେ ସେ ପ୍ରାୟଶ୍ଚିତ୍ତ

ଦ୍ୱାରା ପୁନର୍ବାର ତା'ର ମୂଳ ବର୍ଣ୍ଣ ଗ୍ରହଣ କରିପାରେ । ବିଶେଷ ପରିସ୍ଥିତିରେ ଏହାକୁ କୋହଳ ମଧ୍ୟ କରାଯାଉଥିଲା ।

ସ୍ୱାଧୀନ ରାଜ୍ୟ ସୃଷ୍ଟିର ପ୍ରଭାବରେ ଅନ୍ୟ ସାମନ୍ତମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ହେବାର ପ୍ରବୃତ୍ତି ଦେଖାଦେଲା । ସେମାନେ ନିଜକୁ ସ୍ୱାଧୀନ ସମ୍ରାଟ ଭାବରେ ଘୋଷଣା କଲେ । ଏହି ପ୍ରବୃତ୍ତି ସାଂସ୍କୃତିକ ଜୀବନରେ ମଧ୍ୟ ପ୍ରତିଫଳିତ ହେଲା । ସେମାନେ ଆଞ୍ଚଳିକ ଓ ରାଜବଂଶ ଇତିହାସରେ ପ୍ରଥମେ ସ୍ଥାନୀୟ ସଂସ୍କୃତି ପ୍ରତି ଅଧିକ ଦୃଷ୍ଟି ଦେଲେ ଓ ତାହାର ପୃଷ୍ଠପୋଷକତା କଲେ । କିନ୍ତୁ ମୁଖ୍ୟଧାରା ଭାବରେ ସଂସ୍କୃତ ପରମ୍ପରା ପ୍ରତି ସଚେତନତା ଥିଲା ଓ ଏହା ଉତ୍କର୍ଷତାର ଉତ୍ସ ବୋଲି ବିଶ୍ୱାସ ଥିଲା । ରାଜସଭାଗୁଡ଼ିକ ପ୍ରସିଦ୍ଧ ଲେଖକ ଓ କବିମାନଙ୍କୁ ଆକୃଷ୍ଟ କରିବାପାଇଁ ପରସ୍ପର ଭିତରେ ପ୍ରତିଯୋଗିତା କରୁଥିଲେ ଓ କୁଶଳୀ ଶିଳ୍ପୀମାନଙ୍କୁ ସ୍ଥାୟୀ କୀର୍ତ୍ତି ଭାବରେ ମନ୍ଦିର ନିର୍ମାଣ କରିବାକୁ ନିମନ୍ତ୍ରଣ କରୁଥିଲେ । କେତେକ ରାଜବଂଶ ନିର୍ଦ୍ଦିଷ୍ଟ ରାଜାଙ୍କ ରାଜତ୍ୱ କାଳରେ ଖ୍ୟାତି ଅର୍ଜନ କଲେ । ଉଦାହରଣ ସ୍ୱରୂପ, ଦ୍ୱାଦଶ ଶତାବ୍ଦୀରେ ଗୁଜରାଟରେ ଶାସନ କରୁଥିବା ଚାଲୁକ୍ୟ ରାଜା କୁମାରପାଳଙ୍କ ସମ୍ପର୍କରେ ସବିଶେଷ ବର୍ଣ୍ଣନା କରାଯାଇଛି । ତାଙ୍କ ଅମାତ୍ୟ ହେମଚନ୍ଦ୍ର ଜଣେ ବିଖ୍ୟାତ ପଣ୍ଡିତ ଥିଲେ । କୁହାଯାଏ, ସେ ରାଜାଙ୍କୁ ଆଶ୍ଚର୍ଯ୍ୟ ଚକିତ କରି ଶିବଙ୍କ ଦର୍ଶନ କରାଇଲେ ଓ ତାଙ୍କୁ ଜୈନଧର୍ମରେ ଦୀକ୍ଷିତ କଲେ । ହେମଚନ୍ଦ୍ରଙ୍କ ପରି କୁମାରପାଳ ଜୈନ ପଣ୍ଡିତ ମଣ୍ଡଳୀ ମଧ୍ୟରେ ଜଣେ କିମ୍ବଦନ୍ତୀ ପୁରୁଷ ଭାବରେ ପରିଚିତ ଥିଲେ । ଚାଲୁକ୍ୟମାନଙ୍କ ପରେ ବାଘେଲାଙ୍କ ପରି ସାମନ୍ତରାଜାମାନେ ଅନେକ ସମୟରେ ଭୂତପୂର୍ବ ଅଧିପତିଙ୍କ ସହ ବଂଶାନୁକ୍ରମିକ ସମ୍ପର୍କ ସ୍ଥାପନ କରିବାକୁ ପ୍ରୟାସ କଲେ ।

ହିମାଳୟ ପାଦଦେଶରେ ଅଳ୍ପ ଉଚ୍ଚତାରେ ଥିବା ଉପତ୍ୟକାଗୁଡ଼ିକ ଅତ୍ୟନ୍ତ ଉର୍ବର ଥିଲା । ସମତଳ ଅଞ୍ଚଳରୁ ଅନେକ ସମୟରେ ଦୁଃସାହସିକ ଅଭିଯାନ ଦ୍ୱାରା ଛୋଟ ଛୋଟ ରାଜ୍ୟସବୁ ସେଠାରେ ଗଢ଼ି ଉଠିଥିଲା । ଏହି ଅଞ୍ଚଳ କୃଷି ପାଇଁ ଅତ୍ୟନ୍ତ ଉପଯୋଗୀ ଥିଲା ଏବଂ ଉପର ଅଞ୍ଚଳରେ ଥିବା ଚାରଣଭୂମିକୁ ଏହି ପଥ ଦେଇ ଯିବା ସୁବିଧାଜନକ ଥିଲା । ତିବ୍ବତ ଓ ମଧ୍ୟ-ଏସିଆରୁ ପଣ୍ୟଦ୍ରବ୍ୟ ଆଣି ବ୍ୟବସାୟ-ବାଣିଜ୍ୟ କରିବା ସମ୍ଭବ ଥିଲା । ପଶୁପାଳକମାନେ ସେମାନଙ୍କର ସୁବିଧା ପାଇଁ ଋତୁ ଅନୁସାରେ ସ୍ଥାନ ପରିବର୍ତ୍ତନ କରୁଥିଲେ । ସେମାନଙ୍କ ମାଧ୍ୟମରେ ଜିନିଷପତ୍ର ବିନିମୟ କରାଯାଉଥିଲା । ସେମାନେ ଗ୍ରୀଷ୍ମଋତୁରେ ଉପର ଅଞ୍ଚଳକୁ ଯାଉଥିଲେ ଓ ଶୀତ ସମୟରେ ନିମ୍ନ ଅଞ୍ଚଳକୁ ଫେରି ଆସୁଥିଲେ । ଏହି ସ୍ଥାନ ପରିବର୍ତ୍ତନ ଦ୍ୱାରା ବିଭିନ୍ନ ଉଚ୍ଚତାରେ ଥିବା ପାର୍ବତ୍ୟ ଅଞ୍ଚଳଗୁଡ଼ିକ ସହିତ ବ୍ୟବସାୟ ବାଣିଜ୍ୟ ହୋଇପାରୁଥିଲା, ଯାହାକୁ ଅନୁଲମ୍ବ ଅର୍ଥବ୍ୟବସ୍ଥା କୁହାଯାଉଥିଲା । ନବମ ଶତାବ୍ଦୀ

ଓ ତା'ର ପାଖାପାଖି ସମୟରେ ବହୁ ପାର୍ବତ୍ୟ ରାଜ୍ୟ ସ୍ଥାପିତ ହେଲା । ସମତଳ ଅଞ୍ଚଳରୁ ବାରମ୍ବାର ଆକ୍ରମଣ ଓ ନିଜ ନିଜ ଭିତରେ ଯୁଦ୍ଧ ସତ୍ତ୍ୱେ ଏହି ରାଜ୍ୟ ମଧ୍ୟରୁ ଅନେକ ସ୍ୱାଧୀନ ନ ହେଲେ ସୁଦ୍ଧା ଶତାବ୍ଦୀ ଶତାବ୍ଦୀ ଧରି ନିଜର ପରିଚୟ ବଜାୟ ରଖିଥିଲେ । ଚମ୍ପକ (ଚାମ୍ବ), ଦୁର୍ଗର (ଜାମ୍ମୁ), କୁଲୁତା (କୁଲୁ), କୁମାୟୁନ ଓ ଗଡ଼ୱାଲ୍ ପରି ରାଜ୍ୟଗୁଡ଼ିକ ସମତଳ ଭୂମି ସହିତ ସଂଘର୍ଷଠାରୁ ପ୍ରାୟତଃ ଦୂରରେ ଥିଲେ । ବହୁ ଦୂରରେ ଓ ପ୍ରତିକୂଳ ପାର୍ବତ୍ୟ ଅଞ୍ଚଳରେ ଲଦାଖ ନାମକ ରାଜ୍ୟଟିଏ ଗଢ଼ିଉଠିଥିବା କଥା ବଂଶାବଳୀ ଇତିହାସ ଧାରାରେ ବର୍ଣ୍ଣିତ । ଲଦାଖ ସାଂସ୍କୃତିକ ଦିଗରୁ ତିବ୍ବତ ଓ କାଶ୍ମୀର ସହିତ ସମ୍ପର୍କିତ ।

ଗୋଟିଏ କ୍ଷୁଦ୍ର ରାଜ୍ୟକୁ ଅଧିକାର କରି ଏକ ବଡ଼ ରାଜ୍ୟ ଗଢ଼ିଉଠିଥିବା କଥା ସ୍ଥାନୀୟ ଇତିହାସରେ ଦୃଷ୍ଟିଗୋଚର ହୁଏ । ଉଦାହରଣ ସ୍ୱରୂପ, ଚମ୍ବା । ଏହାର ଇତିହାସରେ ପ୍ରାରମ୍ଭ ପୁରାଣକୁ ଯୋଡ଼ି ଦିଆଯାଇଛି । ଏଥିରେ ସ୍ଥାନୀୟ ଓ ପୌରାଣିକ କାହାଣୀର ଅବତାରଣା କରାଯାଇଛି । ଏହି ରାଜ୍ୟର ପ୍ରତିଷ୍ଠା ପୁରାଣରେ ଥିବା ପ୍ରାଚୀନ ବୀରମାନଙ୍କ ସହ ସଂଯୁକ୍ତ ଓ ପରବର୍ତ୍ତୀ ଇତିହାସରେ ସ୍ଥାନୀୟ ରାଜବଂଶର ବର୍ଣ୍ଣନା ଦେଖିବାକୁ ମିଳେ । ବହୁ ପରିବର୍ତ୍ତିତ ପ୍ରକ୍ରିୟା ଦେଇ ଗତିକରି ଏହା ରାଜ୍ୟ ପାହ୍ୟାକୁ ଉନ୍ନୀତ ହୋଇଥିଲା । ସମ୍ବଳ ବୃଦ୍ଧି ପାଇଁ ସଂଲଗ୍ନ ଉପତ୍ୟକାରେ କୃଷିଭିତ୍ତିକ ବସତି ସ୍ଥାପନ କରାଗଲା ଓ ଜମି ଦାନ ଦିଆଗଲା । ଅନେକ ନୂତନ ଜାତିର ସୃଷ୍ଟି ହେଲା । ଅଧିକ ଜଟିଳ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ ହେଲା । କେନ୍ଦ୍ର ଜାଗା ସ୍ଥିର କରି ରାଜଧାନୀ ପ୍ରତିଷ୍ଠିତ ହେଲା । ନୂତନ କରି ନାଗର ଶୈଳୀରେ ମନ୍ଦିର ପ୍ରତିଷ୍ଠା ହେଲା, ଯାହା ସମତଳ ଭୂମିରେ ସୁପରିଚିତ ଥିଲା, କିନ୍ତୁ ପାର୍ବତ୍ୟାଞ୍ଚଳରେ ଆଗରୁ ନଥିଲା । ପୌରାଣିକ ହିନ୍ଦୁ ଦେବଦେବୀମାନଙ୍କୁ ସେଠାରେ ଯଥେଷ୍ଟ ରାଜପୃଷ୍ଠପୋଷକତା ମିଳିଲା । ଏଥିଯୋଗୁଁ ବାହାରୁ ଆସିଥିବା ପଣ୍ଡିତ, ବ୍ରାହ୍ମଣ, ପୁରୋହିତ, କୁଶଳୀ ଶିଳ୍ପୀ ଓ ମିସ୍ତ୍ରୀମାନଙ୍କ ପରି ବୃତ୍ତିରେ ନିପୁଣ ଓ ପ୍ରଶାସନିକ ଅନୁଭୂତି ସମ୍ପନ୍ନ ବ୍ୟକ୍ତିମାନଙ୍କୁ କାର୍ଯ୍ୟରେ ନିଯୁକ୍ତି ଦିଆଗଲା । ଏହିସବୁ ଲକ୍ଷଣ ସମତଳ ଅଞ୍ଚଳରେ ରାଜ୍ୟ ସୃଷ୍ଟି ପ୍ରକ୍ରିୟାର ଅଂଶବିଶେଷ ଥିଲା, କିନ୍ତୁ ପାର୍ବତ୍ୟ ଅଞ୍ଚଳରେ ଏହି ପରିବର୍ତ୍ତନ ବୋଧହୁଏ ଅଧିକ ସୁସ୍ପଷ୍ଟ ହୋଇଥିଲା ।

ପାର୍ବତ୍ୟାଞ୍ଚଳରେ ସୋପାନ ଆକାରର କୃଷିକ୍ଷେତ୍ରଗୁଡ଼ିକ ପାହାଡ଼ ପାଖ ଦେଇ ଯାଇଥିବା କ୍ଷୁଦ୍ର ନାଳ ଦ୍ୱାରା ସ୍ୱତନ୍ତ୍ରଭାବେ ଜଳସେଚିତ ହେଉଥିଲା । ମାତ୍ର କୃଷିକ୍ଷେତ୍ରଗୁଡ଼ିକର ଯତ୍ନନେବା ଓ ନାଳଗୁଡ଼ିକୁ ସଫା ରଖିବା ପାଇଁ କଠିନ ଶ୍ରମର ଆବଶ୍ୟକତା ପଡ଼ିଲା । ସ୍ୱେଚ୍ଛାରେ ଶ୍ରମିକମାନେ ମିଳୁ ନ ଥିବାରୁ କୃଷକମାନଙ୍କ ପାଇଁ ଅଧିକୃତ ଜମି ବ୍ୟତୀତ ଅନ୍ୟ କ୍ଷେତ୍ରରେ କିଛି ପରିମାଣରେ ବେଠିର ଆବଶ୍ୟକତା ପଡୁଥିଲା । ପାର୍ବତ୍ୟାଞ୍ଚଳ ଓ ସମତଳ

ଅଞ୍ଚଳର ସଂସ୍କୃତି ପ୍ରାଥମିକ ସ୍ତରରେ ଭିନ୍ନ ଥିଲା । ହେଲେ ସମୟକ୍ରମେ ଆଦାନ ପ୍ରଦାନ ପ୍ରକ୍ରିୟାରେ ପାର୍ବତ୍ୟାଞ୍ଚଳରେ ନୂତନ ସଂସ୍କୃତିର ଏକ ଧାରା ପ୍ରତିଷ୍ଠିତ ହେଲା । ବୈବାହିକ କର୍ମ, ଉତ୍ତରାଧିକାର ନିୟମ, କର୍ମକାଣ୍ଡ ତଥା କିମ୍ବଦନ୍ତୀ ପୂର୍ବବତ୍ ରହିଲା । ଏଥିପାଇଁ ଶାସ୍ତ୍ରର ନିୟମକୁ ଉପେକ୍ଷା କରିବାକୁ ପଡ଼ିଲା । ଉଦାହରଣ ସ୍ୱରୂପ, ବହୁପତି ବିବାହ ପ୍ରଥା ହିମାଳୟ ସୀମାନ୍ତର ବହୁ ଅଞ୍ଚଳରେ ପ୍ରଚଳିତ ଥିଲା । ଏହା ପଛରେ କାରଣ ହେଲା, ଉତ୍ତରାଧିକାର ଓ ଜମିଜମା ଅଧିକାର ବଦଳି ନଥିଲା ।

ଅଷ୍ଟମ ଶତାବ୍ଦୀରେ କାରକୋଟା ରାଜବଂଶର ଲଳିତାଦିତ୍ୟଙ୍କ ସମୟରେ କାଶ୍ମୀର ପ୍ରାଧାନ୍ୟ ଲାଭ କଲା । କାଳକ୍ରମେ ରାଜ୍ୟଜୟ ଓ ସମ୍ପ୍ରସାରଣ ନୀତି ବଳରେ ଏହା ଉତ୍ତର ପଶ୍ଚିମ ଭାରତର ଅଂଶବିଶେଷ ଓ ପଞ୍ଜାବକୁ ନିଜ ନିୟନ୍ତ୍ରଣକୁ ଆଣିଥିଲା । କିନ୍ତୁ ଗାଙ୍ଗେୟ ସମତଳ କ୍ଷେତ୍ରରେ ଆଧିପତ୍ୟ ଜାହିର କରିବା ତା' ପାଇଁ ସମ୍ଭବପର ହୋଇ ନ ଥିଲା, କାରଣ ତାହା ବହୁ ଦୂରରେ ଥିଲା । ପଞ୍ଜାବ ସେତେବେଳକୁ ଖାଦ୍ୟଶସ୍ୟ ଉତ୍ପାଦନରେ ଏତେ ଅଗ୍ରଣୀ ନ ଥିଲା, ଯାହା ପରେ ହୋଇଥିଲା । ଏହା ଗାନ୍ଧାର ସହିତ ନିବିଡ଼ ସମ୍ପର୍କ ରକ୍ଷାକରି ଚାଲିଲା । ଉତ୍ତର-ପଶ୍ଚିମରେ ଶାସନ କରୁଥିବା ଶାହିୟ ରାଜବଂଶ ମଧ୍ୟ-ଏସିଆ ଓ ତୁର୍କମାନଙ୍କ ସହିତ ସଂଯୋଗ ରକ୍ଷା କରୁଥିଲା । (ଭାରତୀୟ ଶାସ୍ତ୍ରରେ ସେମାନଙ୍କୁ ତୁରସ୍କ କୁହାଯାଉଥିଲା) କାଶ୍ମୀର ସେନାବାହିନୀରେ ତୁର୍କମାନଙ୍କୁ ଭଡ଼ାରେ ନିଯୁକ୍ତି ଦିଆଯାଉଥିଲା । ସେହି ସମୟରୁ ତୁରସ୍କମାନଙ୍କ ପ୍ରଥମେ ପରିଚୟ ମିଳେ । ଅଷ୍ଟମ ଶତାବ୍ଦୀରେ କାଶ୍ମୀର ଶାସକ ଲଳିତାଦିତ୍ୟ ଗାଙ୍ଗେୟ ସମତଳ କ୍ଷେତ୍ର ଆଡ଼କୁ ନିଜର ସେନା ପରିଚାଳନା କରି ଆରବ ସୈନ୍ୟବାହିନୀକୁ ପଞ୍ଜାବ ଅଧିକାର କରିବାରେ ପ୍ରତିହତ କରିଥିଲେ । ପରବର୍ତ୍ତୀ ଶତାବ୍ଦୀରେ କାଶ୍ମୀର ରାଜାମାନେ ପାର୍ବତ୍ୟ ଅଞ୍ଚଳରେ ତଥା ଝେଲମ ଉପତ୍ୟକାରେ ସେମାନଙ୍କ ସ୍ଥିତି ମଜବୁତ୍ କଲେ । ପଞ୍ଜାବକୁ ସ୍ୱ-ଆତ୍ମରକ୍ଷା କରିବାପାଇଁ ତା ନିଜ ହାତରେ ଛାଡ଼ିଦେଲେ । ତାନ୍ତ୍ରିକ ଶୈବଧର୍ମ ଓ ସୌନ୍ଦର୍ଯ୍ୟ ତତ୍ତ୍ୱର ଚର୍ଚ୍ଚା ଦ୍ୱାରା କାଶ୍ମୀରରେ ଏକ ମାର୍ଜିତ ସାହିତ୍ୟିକ ସଂସ୍କୃତି ଗଢ଼ିଉଠିଲା । ତା' ସହିତ ବୌଦ୍ଧ କେନ୍ଦ୍ରଗୁଡ଼ିକରେ ପୂର୍ବରୁ ପ୍ରତିଷ୍ଠିତ ଦାର୍ଶନିକ ପରମ୍ପରା ସବୁ ବଜାୟ ରହିଲା ।

ଦ୍ୱାଦଶ ଶତାବ୍ଦୀରେ କାଶ୍ମୀରର ଚିତ୍ତାକର୍ଷକ ଇତିହାସ 'ରାଜତରଙ୍ଗିଣୀ' କଲ୍ହଣଙ୍କ ଦ୍ୱାରା ରଚିତ ହୋଇଥିଲା । ଏଥିରେ ନିର୍ମାଣ କାର୍ଯ୍ୟର ଚମତ୍କାର ବର୍ଣ୍ଣନା ରହିଛି । ଅମାତ୍ୟ ସୂୟ୍ୟ (Suyya) ନିର୍ମାଣ କାର୍ଯ୍ୟର ତଦାରଖ କରୁଥିଲେ । କରକୋଟାର ପରବର୍ତ୍ତୀ ରାଜବଂଶର ରାଜା ଅବନ୍ତୀ ବର୍ମନର ଶାସନକାଳରେ ଏହା ହୋଇଥିଲା । ଭୂସ୍ଖଳନ ଓ ମୃତ୍ତିକା କ୍ଷରଣ ଦ୍ୱାରା ଝେଲମ ନଦୀରେ ଗୋଡ଼ି ଓ ପଥର ବହୁ ପରିମାଣରେ ଜମା ହେବା

ଯୋଗୁଁ ଜଳପ୍ରବାହ ବାଧାପ୍ରାପ୍ତ ହେଲା । ତାହା ପରେ ସଫା କରାଗଲା, କିନ୍ତୁ ଆଜି ମଧ୍ୟ ଏପରି ପ୍ରତିବନ୍ଧକ ପାର୍ବତ୍ୟାଞ୍ଚଳରୁ ଆସିଥିବା ନଦୀଗୁଡ଼ିକରେ ନିୟମିତ ଦେଖିବାକୁ ମିଳେ । ଭୂସ୍ଖଳନ ରୋକିବା ପାଇଁ ବାଡ଼ ତିଆରି ହେଲା, ଯେଉଁଠାରେ ସମ୍ଭବ ବନ୍ଧ ନିର୍ମାଣ କରାଗଲା । ଯେଉଁ ହ୍ରଦଗୁଡ଼ିକ ବନ୍ୟା ସୃଷ୍ଟି କରୁଥିଲେ, ସେସବୁରୁ ଜଳ ନିଷ୍କାସନ କରାଗଲା । କୁହାଯାଏ ଯେ, ସୂୟ୍ୟ ଝେଲମ୍ ଓ ସିନ୍ଧୁ ନଦୀର ପ୍ରବାହକୁ କିଛି ପରିମାଣରେ ପରିବର୍ତ୍ତନ କରିପାରିଲେ । ଏହାଫଳରେ ପୁନର୍ବାର କୃଷିକ୍ଷେତ୍ର ଜଳସେଚିତ ହୋଇପାରିଲା । ଏହା ଥିଲା ଅତ୍ୟନ୍ତ କଠିନ କାରିଗରୀ କାର୍ଯ୍ୟ । କାରଣ କାଶ୍ମୀରର ପାର୍ବତ୍ୟାଞ୍ଚଳରୁ ସମତଳ ଭୂମିକୁ ବହୁଥିବା ନଦୀଗୁଡ଼ିକର ବେଗ ଅତି ଦ୍ରୁତ ଓ ଅନିୟନ୍ତ୍ରିତ । କଲ୍ହଣଙ୍କର ବର୍ଣ୍ଣନାରେ ଯେ ଅତିଶୟୋକ୍ତି ନ ଥିଲା, ଏହାର ପ୍ରମାଣ ପରବର୍ତ୍ତୀ ଅବସ୍ଥାରେ କାଶ୍ମୀରର ଅର୍ଥନୈତିକ ସମୃଦ୍ଧିରୁ ଜଣାପଡ଼େ । ଯେହେତୁ ସମତଳ ଅଞ୍ଚଳର ଉର୍ବର କ୍ଷେତ୍ର ଅଧିକାର କରିବାର ସମ୍ଭାବନା କମ୍ ଥିଲା, ଅନ୍ୟ ରାଜ୍ୟଗୁଡ଼ିକ ପରି ଉପତ୍ୟକାର ବହୁ ଅଞ୍ଚଳକୁ କୃଷିକ୍ଷେତ୍ରରେ ପରିବର୍ତ୍ତନ କରିବା ଥିଲା କାଶ୍ମୀର ପକ୍ଷରେ ଏକ ଦୃଢ଼ ପଦକ୍ଷେପ । କିନ୍ତୁ ଏହା ଅନ୍ୟ ପ୍ରକାର ସମସ୍ୟା ସୃଷ୍ଟି କଲା ।

ଦଶମ ଶତାବ୍ଦୀରେ ଦୁଇଜଣ ରାଣୀ ବହୁ ବିରୋଧ ସତ୍ତ୍ୱେ ଅଭିଭାବକ ରୂପରେ ଶାସନ କରିଥିଲେ ଓ ରାଜକାର୍ଯ୍ୟକୁ ନିୟନ୍ତ୍ରଣ କରିବାରେ ସଫଳ ହୋଇଥିଲେ । ଏହି ସମୟରେ ସେମାନଙ୍କର ପ୍ରଗାଢ଼ ପ୍ରଚେଷ୍ଟା ଫଳରେ ଏଭଳି ଏକ ନୂତନ ବ୍ୟବସ୍ଥା ଗଢ଼ିଉଠିଲା ଯାହା ଦୀର୍ଘ ଏକଶତ ବର୍ଷ ଧରି କାଶ୍ମୀର ରାଜନୀତିରେ ପ୍ରଭାବ ବିସ୍ତାର କଲା । ତାହା ହେଲା ସେନାବାହିନୀର ରାଜତନ୍ତ୍ର ପ୍ରତି ଅବିଚଳିତ ଆନୁଗତ୍ୟ ଓ ଉଚ୍ଚାଭିଳାଷ । ସେଠାରେ ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ଦଳ ଥିଲେ– ତନ୍ତ୍ରୀ (Tantrins) ଏବଂ ଏକାଙ୍ଗ (Ekangas), ଯେଉଁମାନେ ନିଜ ମଧ୍ୟରୁ ପର୍ଯ୍ୟାୟକ୍ରମେ ଶାସକ ତିଆରି କରୁଥିଲେ । ରାଣୀ ସୁଗନ୍ଧା ସଫଳତାର ସହ ତନ୍ତ୍ରୀମାନଙ୍କ ବିରୁଦ୍ଧରେ ଏକାଙ୍ଗମାନଙ୍କୁ ଲଗାଇଲେ, କିନ୍ତୁ ସେମାନଙ୍କୁ ନିଜ ନିୟନ୍ତ୍ରଣରେ ରଖିପାରିଲେ ନାହିଁ । ଫଳରେ ୨14 ରେ ପରାଜୟ ସ୍ୱୀକାର କଲେ । ତାଙ୍କର ପରାଜୟ ତନ୍ତ୍ରୀମାନଙ୍କ ପାଇଁ ଅସୀମ ଶକ୍ତିର କାରଣ ହେଲା । ପରବର୍ତ୍ତୀ ଶାସକମାନଙ୍କ ମଧ୍ୟରୁ କେହି ସେମାନଙ୍କ ସହ ମୁକାବିଲା କରିବା ଅବସ୍ଥାରେ ନଥିଲେ । ଶେଷରେ ପ୍ରଭାବଶାଳୀ ଜମିମାଲିକ ଡାମରମାନଙ୍କୁ ତନ୍ତ୍ରୀମାନଙ୍କର ଶକ୍ତିକୁ ଧ୍ୱଂସ କରିବାପାଇଁ ଡକାଗଲା । ସେମାନେ ସଫଳତା ସହିତ ଏହା କରି ଏପରି ଆଧିପତ୍ୟ ବିସ୍ତାର କଲେ ଯେ, କାଶ୍ମୀରର ଶାସକମାନେ ଏହି ଜମିମାଲିକମାନଙ୍କର ଶକ୍ତିକୁ ଖର୍ବ କରିବାପାଇଁ ନୂଆ ସମସ୍ୟାର ସମ୍ମୁଖୀନ ହେଲେ । ରାଣୀ ଦିଦାଙ୍କ ଶାସନକାଳର ରାଜନୈତିକ ଘଟଣାବଳୀରୁ ଏହା ସ୍ପଷ୍ଟ ଜଣାଯାଏ । ରାଣୀମାନେ ଅଭିଭାବକ ବା ରାଜପ୍ରତିନିଧି ଭାବରେ ନିଯୁକ୍ତ ହେବା ବିଷୟ ପୂର୍ବରୁ ଅଜଣା ନୁହେଁ । ଯେପରି ବକଟକ ରାଜତ୍ୱ କାଳରେ ପ୍ରଭାବତୀ ଗୁପ୍ତ ରାଜକାର୍ଯ୍ୟ କରିଥିଲେ । ସେମାନେ

ରାଜ୍ୟ ଶାସନ ସମ୍ବନ୍ଧୀୟ କାର୍ଯ୍ୟ ତୁଲାଉଥିଲେ । ପଶ୍ଚିମ ଦାକ୍ଷିଣାତ୍ୟରେ ଚାଲୁକ୍ୟବଂଶୀୟ କେତେକ ରାଣୀ ମଧ୍ୟ ଏହା କରିଥିଲେ । ଅନ୍ୟମାନଙ୍କଠାରୁ ସୁଗନ୍ଧା ଓ ଦିଦାଙ୍କ କଥା ଅଲଗା ଥିଲା । ରାଜସଭାର ଗୁପ୍ତ କାର୍ଯ୍ୟ ଓ ରାଜନୈତିକ ଗୋଷ୍ଠୀବିବାଦ ସହିତ ଜଡ଼ିତ ଥିବାରୁ ସେମାନେ ଶକ୍ତିଶାଳୀ ହୋଇପାରିଥିଲେ ।

ଡାମରମାନେ (Damras) ମୂଳତଃ କୃଷକ ଥିଲେ । ସେମାନେ ଉପତ୍ୟକାର ଉନ୍ନତି ବିଧାନ କରି କୃଷିର ବିକାଶ କରିଥିଲେ ଓ ପ୍ରତିବର୍ଷ ଉଦ୍‌ବୃତ୍ତ ଶସ୍ୟ ଗଚ୍ଛିତ ରଖି ଅଧିକ ଜମି ଦଖଲ କରି ଜମିମାଲିକ ହୋଇପାରିଥିଲେ । କଲ୍‌ହଣଙ୍କ ଉପଦେଶ ଅନୁସାରେ ରାଜ୍ୟ କୃଷକମାନଙ୍କ ପାଖରେ ଗୋଟିଏ ବର୍ଷର ଉତ୍ପାଦିତ ଶସ୍ୟଠାରୁ ଅଧିକା ରଖିବାକୁ ଦେବା ଉଚିତ ନୁହେଁ । ଯଦି ଏହାଠାରୁ ଅଧିକ ଥାଏ, ତାହା ରାଜ୍ୟ ନେଇଯିବା ଉଚିତ, ନଚେତ୍ କୃଷକମାନେ ଏହାକୁ ଆଧାର କରି ଅଧିକ ଶକ୍ତିଶାଳୀ ହେବେ । କଲ୍‌ହଣଙ୍କ ବର୍ଣ୍ଣନାରେ କାୟସ୍ଥ କର୍ମଚାରୀ ଓ ଡାମରମାନଙ୍କ ପ୍ରତି ମଧ୍ୟ କଠୋର ମନୋଭାବର ପରିଚୟ ମିଳେ । ଏଥିରେ ଡାମରମାନଙ୍କୁ ଅଶିଷ୍ଟ ଓ ଅସଭ୍ୟ ଭାବରେ ବର୍ଣ୍ଣନା କରାଯାଇଛି । ଥରେ ସେମାନେ କ୍ଷମତା ପାଇବା ପରେ ସମତଳ ଅଞ୍ଚଳରୁ ରାଜପୁତ୍ ଓ ଭଡ଼ା ସୈନିକ ଆଣି ସେମାନଙ୍କର ଶକ୍ତି ବୃଦ୍ଧି କରିଥିଲେ । ସେ ମାନେ କ୍ଷତ୍ରିୟମାନଙ୍କ ଜୀବନଶୈଳୀକୁ ଅନୁକରଣ କଲେ । ସେମାନଙ୍କ କେତେକ କାର୍ଯ୍ୟ, ଯଥା- ସତୀପ୍ରଥାକୁ କଲ୍‌ହଣ ଅନୁମୋଦନ କରି ନଥିଲେ । ଅଷ୍ଟମରୁ ଏକାଦଶ ଶତାବ୍ଦୀ ମଧ୍ୟରେ କାଶ୍ମୀର ଯଥେଷ୍ଟ ଧନସମ୍ପଦର ଅଧିକାରୀ ହେଲା । ଏହା ଅନେକାଂଶରେ କୃଷିର ଉନ୍ନତି ଯୋଗୁ ଓ ସମପରିମାଣରେ ଉତ୍ତର ଭାରତ ସମତଳ ଅଞ୍ଚଳ ତଥା ମଧ୍ୟ-ଏସିଆ ସହିତ ବ୍ୟବସାୟ ବାଣିଜ୍ୟ ସମ୍ପର୍କ ହେତୁ ସମ୍ଭବ ହେଲା । ଏହି ସମ୍ପଦର କିଛି ଅଂଶ ସୂର୍ଯ୍ୟମନ୍ଦିର ପରି ବହୁ ମନ୍ଦିର ଓ ସୌଧ ନିର୍ମାଣରେ ବ୍ୟବହୃତ ହେଲା । ଏହି ସମୟରେ ମନ୍ଦିରରେ ଗଚ୍ଛିତ ଥିବା ଧନ ବହୁ ଲୋଭୀ ହିନ୍ଦୁ ରାଜାଙ୍କୁ ଆକୃଷ୍ଟ କଲା । ସେମାନଙ୍କ ମଧ୍ୟରୁ କେତେକ ଏହି ମନ୍ଦିର ଲୁଟ୍ କଲେ ଓ ମୂଲ୍ୟବାନ ଧାତୁ ନିର୍ମିତ ମୂର୍ତ୍ତି ଉଠାଇନେଲେ । କଲ୍‌ହଣଙ୍କ ମତରେ ସେମାନେ ପ୍ରଜାମାନଙ୍କ ଉପରେ ଅଧିକ କର ବସାଇ ନିଷ୍ପେଷିତ କରୁଥିଲେ ଓ ଯେଉଁ ରାଜକର୍ମଚାରୀମାନେ କର ଆଦାୟ କରୁଥିଲେ ସେମାନଙ୍କୁ ପ୍ରଜାମାନଙ୍କୁ ଯନ୍ତ୍ରଣା ଦେବାକୁ ମଧ୍ୟ ନିର୍ଦ୍ଦେଶ ଦେଉଥିଲେ ।

ନବମ ଶତାବ୍ଦୀର ପ୍ରଥମରେ କାବୁଲ ଉପତ୍ୟକା ଓ ଗାନ୍ଧାର ତୁର୍କ ବଂଶର ଶାହିୟମାନଙ୍କଦ୍ୱାରା ଶାସିତ ହେଉଥିଲା । ଜଣେ ବ୍ରାହ୍ମଣ ମନ୍ତ୍ରୀ ସିଂହାସନ ଜବରଦଖଲ କରି ହିନ୍ଦୁ ଶାହିୟ ବଂଶର ପ୍ରତିଷ୍ଠା କଲେ । ଆଫଗାନର କ୍ଷୁଦ୍ର ରାଜାମାନଙ୍କ ଦ୍ୱାରା ଚାପର ବଶବର୍ତ୍ତୀ ହୋଇ ସେ ପୂର୍ବ ଦିଗକୁ ଚାଲିଗଲେ । ପରିଶେଷରେ ଅଟକ ଅଞ୍ଚଳରେ ତାଙ୍କ

ଶକ୍ତି ପ୍ରତିଷ୍ଠା ହେଲା । ଏହି ଅଞ୍ଚଳ ସିନ୍ଧୁ ଓ କାବୁଲ ନଦୀର ସଙ୍ଗମସ୍ଥଳ ନିକଟରେ ଅବସ୍ଥିତ ଥିଲା । ଏହି ଅଞ୍ଚଳରେ କୃଷି ଉତ୍ପାଦନ ଅଳ୍ପ ଥିଲା । ଏହାର ରାଜସ୍ୱ ମରୁଭୂମିର ବ୍ୟବସାୟୀ, ଯାତ୍ରୀ ଓ ପଶୁପାଳକମାନଙ୍କଠାରୁ ହିଁ ଆଦାୟ ହେଉଥିଲା । ଏହା ବୌଦ୍ଧ, ଜୋରାଷ୍ଟ୍ରିୟାନ, ପୌରାଣିକ ହିନ୍ଦୁ ଏବଂ ନିକଟରେ ଇସ୍‌ଲାମ ଧର୍ମକୁ ପ୍ରୋତ୍ସାହନ ଦେଲା । ଏହା ମଧ୍ୟଏସିଆର ସମନ ଧର୍ମ ଓ ସଂସ୍କୃତି ସମ୍ବନ୍ଧୀୟ କାର୍ଯ୍ୟକଳାପର ପୃଷ୍ଠପୋଷକତା କରୁଥିଲା । ଏହି ରାଜ୍ୟ ଉତ୍ତର ଭାରତ ଓ ଆଫଗାନିସ୍ତାନ ମଧ୍ୟରେ ଯୁଦ୍ଧ ପ୍ରତିରୋଧ ପାଇଁ ଭୂମିକା ଗ୍ରହଣ କରିଥିଲା । ଜଣେ ହିନ୍ଦୁ ଶାହିୟ ରାଜା ଜୟପାଳ ଏହି ରାଜ୍ୟକୁ ସଂଗଠିତ କରିଥିଲେ ଓ ନିଜକୁ ପଞ୍ଜାବ ସମତଳ ଅଞ୍ଚଳର ମାଲିକ ଭାବେ ପ୍ରତିଷ୍ଠା କରିଥିଲେ । ସମୟକ୍ରମେ ଏକାଦଶ ଶତାବ୍ଦୀରେ ଉତ୍ତର ଭାରତରେ ଗଜନୀର ଶାସକଙ୍କର ପ୍ରବେଶ ସମୟରେ ସେନାବାହିନୀର ସେ ସମ୍ମୁଖୀନ ହୋଇଥିଲେ ।

ହିମାଳୟ ପାର୍ବତ୍ୟ ପ୍ରଦେଶରେ ନେପାଳ ରାଜ୍ୟ ସ୍ୱାଧୀନ ଥିଲା । ତାହା ନବମ ଶତାବ୍ଦୀରେ ତିବ୍ବତର ଆଧିପତ୍ୟର ଅନ୍ତ ଘଟାଇଥିଲା । ୫୮୯ ଖ୍ରୀଷ୍ଟାବ୍ଦରେ ନେଭାର ଯୁଗ ଏହି ସ୍ମୃତି ବହନ କରେ । ଏହା କେବଳ ରାଜନୈତିକ ସ୍ୱାଧୀନତା ନଥିଲା, ବରଂ ଆର୍ଥନୀତିକ ପ୍ରଗତିରେ ଏହାର ସୁଫଳ ଦେଖିବାକୁ ମିଳିଲା । ଭାରତ ଓ ତିବ୍ବତର ସଂଯୋଗ ପଥରେ ନେପାଳ ଥିବାରୁ ଉଭୟ ଚୀନା ଓ ତିବ୍ବତର ଭାରତ ସହିତ ଏହି ପଥ ମଧ୍ୟଦେଇ ବାଣିଜ୍ୟ ଚାଲିଥିଲା । କାଠମାଣ୍ଡୁ ଓ ପାଟନ (Patan) ପରି ନୂଆ ସହର ବାଣିଜ୍ୟିକ ସଂବୃଦ୍ଧି ଫଳରେ ଗଢ଼ିଉଠିଲା । ଲଳିତପୁରା ତାନ୍ତ୍ରିକ ବୌଦ୍ଧଶିକ୍ଷାର କେନ୍ଦ୍ର ହେଲା ଓ ଅନେକ ପଣ୍ଡିତଙ୍କୁ ଆକୃଷ୍ଟ କଲା । ଆଞ୍ଚଳିକ ଭାଷାର ସ୍ୱତନ୍ତ୍ରତା ଥିଲେ ସୁଦ୍ଧା ରାଜବଂଶର ଇତିହାସ ସଂସ୍କୃତରେ ବଂଶାବଳୀ ଧାରାରେ ଲେଖା ହୋଇଥିଲା । ନେପାଳର ରାଜାମାନେ ଶକ୍ତିଶାଳୀ ଜମିମାଲିକମାନଙ୍କୁ ଭୟ କରୁଥିଲେ । ଏମାନେ ପରବର୍ତ୍ତୀ ସମୟରେ ରାଣା ନାମରେ ପରିଚିତ ହେଲେ । ଅନ୍ୟ ରାଜ୍ୟ ପରି ନେପାଳର ରାଜନୀତିରେ ଜମିଦାର ଓ ରାଜାଙ୍କ ମଧ୍ୟରେ ଏକ ଅନିଶ୍ଚିତ ଭାରସାମ୍ୟ ଲାଗି ରହିଥିଲା ।

ଆହୁରି ଅଧିକ ପୂର୍ବକୁ, ଆସାମରେ ପର୍ବତମାଳା ନିକଟବର୍ତ୍ତୀ ସମତଳ ଭୂମିରେ କାମରୂପ ରାଜ୍ୟ ରହିଥିଲା । ଏହା ପୂର୍ବ ତିବ୍ବତ ଓ ଚୀନ୍ ସହିତ ପୂର୍ବ ଭାରତର ଯୋଗସୂତ୍ର ରଖିଥିବାରୁ ସମତଳ ଅଞ୍ଚଳରେ ବାଣିଜ୍ୟ ପାଇଁ ଓ ପାର୍ବତ୍ୟାଞ୍ଚଳରେ ଗ୍ରୀଷ୍ମ ଓ ଶୀତଋତୁ ଅନୁସାରେ ଋତୁପ୍ରବାସ ପାଇଁ ବାଟ ଫିଟାଇଥିଲା । ଆସାମରେ ବ୍ରହ୍ମପୁତ୍ର ନଦୀର ପଟୁମାଟି ଦ୍ୱାରା ଉର୍ବର ସମତଳ ଅଞ୍ଚଳରେ ଧାନଚାଷ ହେଉଥିଲା, ଯଦିଓ ମଝିମଝିରେ ବନ୍ୟାପ୍ଲାବିତ ହୋଇ ତାହା କ୍ଷତିଗ୍ରସ୍ତ ହେଉଥିଲା । ବର୍ମନମାନେ ଏହି ଉପତ୍ୟକାର କିଛି ଅଂଶକୁ ଅଧିକାର

କରିଥିଲେ । ନବମ ଶତାବ୍ଦୀରେ ସେମାନଙ୍କ ମଧ୍ୟରେ ହର୍ଜର ବର୍ମନ ଖୁବ୍ ବିଖ୍ୟାତ ହୋଇଥିଲେ । ସମ୍ରାଟୋଚିତ ଉପାଧି ଧାରଣ କରି ସେ ନିଜକୁ ପାଳମାନଙ୍କଠାରୁ ସ୍ୱାଧୀନ ବୋଲି ଘୋଷଣା କଲେ । କୃଷିକୁ ଉତ୍ସାହିତ କରିବାପାଇଁ ରାଜ୍ୟ ପ୍ରଶାସନ ପକ୍ଷରୁ ବନ୍ଧମାନ ନିର୍ମିତ ହେଲା । ପରବର୍ତ୍ତୀ ଅବସ୍ଥାରେ ଶାଳସ୍ତମ୍ଭ ରାଜାମାନଙ୍କର ଶାସନ ସମୟରେ ମଧ୍ୟ ଏହା କାର୍ଯ୍ୟକାରୀ ହୋଇଥିଲା । 1205 ମସିହାର ଏକ ଅଭିଲେଖରୁ ତୁରସ୍କଙ୍କର ହତ୍ୟାର ବିବରଣୀ ମିଳେ । ଏଥିରୁ ତୁର୍କମାନଙ୍କ ଏହି ଅଞ୍ଚଳ ଉପରେ ଅଧିକାର ପାଇଁ ପ୍ରୟାସ ହୋଇଥିବା କଥା ଅନୁମାନ କରାଯାଇପାରେ । ଠିକ୍ ସେହି ତ୍ରୟୋଦଶ ଶତାବ୍ଦୀରେ ଆହୋମ (Ahoms)ମାନେ କାମରୂପର ବହୁ ଅଂଶ ଜୟ କଲେ । ସେମାନେ 'ଶାନ' ଜାତିର ଥିଲେ ଓ ଦକ୍ଷିଣ-ପୂର୍ବ ଆସାମର ପାର୍ବତ୍ୟାଞ୍ଚଳରୁ ଆସିଥିଲେ । ସେମାନେ ହିଁ ପରିଶେଷରେ ଆସାମର ନାମକରଣ କଲେ । 'ଆହୋମ'ରୁ ଆସାମ ଶବ୍ଦ ଆସିଲା । ବୁରୁଂଜି ପାଞ୍ଜିରେ ଦୀର୍ଘ ବଂଶାନୁଚରିତ ଲିପିବଦ୍ଧ କରିବାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ଯାହା ସେମାନଙ୍କ ଇତିହାସକୁ ପୁନର୍ଗଠନ କରିବାରେ ସାହାଯ୍ୟ କଲା ।

ଅଷ୍ଟମ ଶତାବ୍ଦୀର ଶେଷଭାଗକୁ ଉପଦ୍ୱୀପର ପୂର୍ବରେ ଅବସ୍ଥିତ ଓଡ଼ିଶାରେ ଶୈଳୋଦ୍‌ଭବ ବଂଶର ଉଦ୍‌ଭବ ହେଲା । ସେମାନଙ୍କର ସମ୍ବନ୍ଧ ପୁଲିନ୍ଦ ସଂପ୍ରଦାୟ ସହିତ ରହିଥିଲା । ସେମାନେ ଜାତିଭିତ୍ତିକ ସମାଜର ବାହାରେ ଥିଲେ ବୋଲି ବିଶ୍ୱାସ କରାଯାଏ । ପରବର୍ତ୍ତୀ ଜଣେ ରାଜାଙ୍କର ଅଶ୍ୱମେଧ ଯଜ୍ଞରୁ ସେମାନେ ଜାତି ପ୍ରଥାଗତ ସମାଜରେ ମିଶିଥିବାର ପ୍ରମାଣ ମିଳେ । ଦଶମ ଶତାବ୍ଦୀରେ ସୋମବଂଶୀ ରାଜାମାନଙ୍କ ଦ୍ୱାରା ବୌଦ୍ଧଧର୍ମର ପୃଷ୍ଠପୋଷକତା କରୁଥିବା ଭୌମକରମାନେ ବିତାଡ଼ିତ ହେଲେ । ପରବର୍ତ୍ତୀ କାଳରେ ଗଙ୍ଗ ରାଜାମାନେ କଳିଙ୍ଗ ବିଜୟ କରି ଆନ୍ଧ୍ରରେ ଥିବା ସେମାନଙ୍କର ମୂଳରାଜ୍ୟକୁ ବିସ୍ତାର କରିଥିଲେ । ଗଜପତି ରାଜବଂଶ ସ୍ଥାପନା ସହିତ ପୂର୍ବର ଆଞ୍ଚଳିକ ସଂସ୍କୃତି ବହୁଭାବରେ ଜଡ଼ିତ ।

## ରାଜପୁତ

ନବମ ଓ ଦଶମ ଶତାବ୍ଦୀ ମଧ୍ୟରେ କେତେକ ରାଜପୁତ ବଂଶ ବିଭିନ୍ନ ରାଜ୍ୟ ଶାସନ କରି ସ୍ୱାଧୀନ ରାଜବଂଶ ସ୍ଥାପନା କରିଥିଲେ । ସେମାନଙ୍କର ଉତ୍ପତ୍ତି ବହୁ ବିବାଦୀୟ । କେହି କେହି ଯୁକ୍ତି କରନ୍ତି ସେମାନେ ମଧ୍ୟ-ଏସିଆରୁ ଆସିଥିବା ଗୋଷ୍ଠୀର ଉତ୍ତରାଧିକାରୀ । ସେମାନେ ହୁନ୍ ହୋଇପାରନ୍ତି କିମ୍ବା ଗୁର୍ଜର ହୋଇପାରନ୍ତି, କିନ୍ତୁ ବର୍ତ୍ତମାନ ଏହି ଯୁକ୍ତି ସାଧାରଣଭାବେ ସନ୍ଦେହାତ୍ମକ ।

ରାଜପୁତମାନଙ୍କର ପରିଚୟ ସମ୍ପର୍କରେ ସାମ୍ପ୍ରତିକ ଆଲୋଚନା ଏହି ସମୟର ଐତିହାସିକ ପରିବର୍ତ୍ତନ ପ୍ରକ୍ରିୟା ସହ ଜଡ଼ିତ । ବିଶେଷତଃ ବିଭିନ୍ନ ପୃଷ୍ଠଭୂମିରୁ ଆସି ପରିବାରଗୁଡ଼ିକ ବିସ୍ତୃତ ଅଞ୍ଚଳରେ ବାସ କରୁଥିଲେ । ରାଜକୀୟ ସ୍ତରକୁ ସେମାନଙ୍କର ଉନ୍ନୀତ ହେବା କଥା ଅଧିକ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ଭିତରୁ କେତେକ ବ୍ରାହ୍ମଣ ବୋଲି ନିଜକୁ ଚିହ୍ନିତ କରନ୍ତି । ସେମାନେ ହୁଏତ ତତ୍କାଳୀନ ରାଜାଙ୍କଠାରୁ ଜମି ଦାନ ପାଇଥିଲେ । ଏହାଦ୍ୱାରା ସେମାନେ ବ୍ରାହ୍ମକ୍ଷତ୍ର ପଦବୀ ହାସଲ କରିବାକୁ ସମର୍ଥ ହୋଇଥିଲେ । ଏହା ସେହି ସମୟର ଏକ ଜଣାଶୁଣା ପଦବୀ ଥିଲା । ବ୍ରାହ୍ମଣ ଓ କ୍ଷତ୍ରିୟ ବଂଶଜମାନେ କିମ୍ବା ବ୍ରାହ୍ମଣ ହୋଇ ଯେଉଁମାନେ କ୍ଷତ୍ରିୟର କାର୍ଯ୍ୟ କରୁଥିଲେ, ସେମାନେ ଏହି ପଦବୀ ପାଉଥିଲେ । ପୂର୍ବରୁ ଏହିପରି ରାଜବଂଶମାନଙ୍କର କଥା ଜଣାଥିଲା । ଜଣେ ଉଚ୍ଚ ସ୍ତରର ଶାସକ ଖୁବ୍ ସହଜରେ ତା'ଠାରୁ ଉପର ସ୍ତରକୁ ଯାଇପାରୁଥିଲା । ପୂର୍ବରୁ ଏହିପରି ଘଟୁଥିଲା । ଅନ୍ୟମାନେ ବନବାସୀମାନଙ୍କୁ ଜୟ କରୁଥିଲେ । ବନବାସୀ ସର୍ଦ୍ଦାରମାନେ କ୍ଷତ୍ରିୟ ପାହ୍ୟା ପାଇଯାଉଥିଲେ କିମ୍ବା ନିଜ ଗୋଷ୍ଠୀକୁ କ୍ଷତ୍ରିୟ ପଦ ସୃଷ୍ଟି କରିବାକୁ ସାହାଯ୍ୟ କରୁଥିଲେ । ଅନ୍ୟମାନେ ହୁଏତ ରାଜସ୍ଥାନର ବିଭିନ୍ନ କୁଳର ଅଥବା ମୁଖ୍ୟ ଶାସକବଂଶର ଉତ୍ତରାଧିକାରୀ ଥିଲେ । କିନ୍ତୁ ଏ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ନାହିଁ । କିଛି କ୍ଷତ୍ରିୟଙ୍କର ଜାତି ବାହାରେ ଅନେକ ଗୋଷ୍ଠୀ ସହିତ ସମ୍ପର୍କ ଥିଲା – ଅନେକ ସମୟରେ ସେମାନଙ୍କୁ ଆଦିବାସୀ ସମ୍ପ୍ରଦାୟ ବୋଲି କୁହାଯାଉଛି – ଯେପରିକି ପୁଲିନ୍ଦ, ଭୀଲ୍, ଶବର, ମୀନ, ମେଦ ଏବଂ ଅହିର ଇତ୍ୟାଦି । ଏହି ଗୋଷ୍ଠୀମାନେ ପୂର୍ବକଥିତ କ୍ଷତ୍ରିୟମାନଙ୍କୁ ସେମାନଙ୍କର ପଦମର୍ଯ୍ୟାଦା ଲାଭ କରିବାରେ ସାହାଯ୍ୟ କରିଥିଲେ କିମ୍ବା ସେମାନଙ୍କ ସହିତ ଆତ୍ମୀୟ ସମ୍ପର୍କ ରଖିଥିଲେ ।

ପରବର୍ତ୍ତୀ ସମୟରେ ସେମାନଙ୍କର ଉତ୍ପତ୍ତି ରାଜକୀୟ ପରିବାର ସହିତ ଯୋଡ଼ାଯିବା ହେତୁ ସେମାନଙ୍କର କ୍ଷତ୍ରିୟ ପାହ୍ୟା ସ୍ୱୀକୃତ ହେଲା । ପୁରାଣ ପରମ୍ପରା ଅନୁସାରେ ନିଜକୁ କ୍ଷତ୍ରିୟ ଭାବରେ ଦାବି ଉପସ୍ଥାପନ କରିବାପାଇଁ ସେମାନଙ୍କର ଯେଉଁ ବଂଶଲତିକା ଦିଆଯାଇଛି, ତାହା ସେମାନଙ୍କୁ ସୂର୍ଯ୍ୟବଂଶ କିମ୍ବା ଚନ୍ଦ୍ରବଂଶ ସହିତ ସଂଲଗ୍ନ କରିଥାଏ । ପୁରାଣରେ ଏଭଳି ଉଲ୍ଲେଖ ନଥିବାରୁ ସେମାନେ ନୂତନ କ୍ଷତ୍ରିୟ ଭାବରେ ପରିଗଣିତ ହେଲେ । ଏହି ବଂଶ ପରମ୍ପରା ମହାକାବ୍ୟର ନାୟକମାନଙ୍କ ସହିତ ସେମାନଙ୍କର ସଂଯୋଗକୁ ପୁନଃସ୍ଥାପନ କଲା । ଯେଉଁ ରାଜାମାନେ ସୂର୍ଯ୍ୟବଂଶୀ ଥିଲେ ବା ସୂର୍ଯ୍ୟବଂଶୀ ବୋଲି ଦାବି କରୁଥିଲେ ସେମାନେ ରାମଙ୍କ ବଂଶଧର ବୋଲି ନିଜର ପରିଚୟ ଦେଲେ ଓ କ୍ରମଶଃ ସେମାନଙ୍କର ଶତ୍ରୁମାନଙ୍କୁ ରାବଣ ବୋଲି ଆଖ୍ୟା ଦିଆଗଲା । ପୂର୍ବବର୍ତ୍ତୀ ସମୟର ରାଜବଂଶମାନେ ଜାତି ପରିଚୟ ନିର୍ବିଶେଷରେ ଶାସନ କରୁଥିଲେ । ସେମାନଙ୍କର ମହତ ଗୁଣ ଓ ନେତୃତ୍ୱ

ନେବାର କ୍ଷମତା ହେତୁ ସେମାନଙ୍କୁ ସମସ୍ତେ ଗ୍ରହଣ କରିଥିଲେ । କିନ୍ତୁ ପରେ ଯେଉଁମାନେ ଶାସନ କଲେ ସେମାନେ ନିଜକୁ କ୍ଷତ୍ରିୟ ବୋଲି କହିଲେ ।

ଚାରଣକବି ପରମ୍ପରା ଅନୁସାରେ ସେତେବେଳେ ଛତିଶ ପ୍ରକାର ରାଜପୁତ ବଂଶ ଥିଲେ । କିନ୍ତୁ ଏହି ତାଲିକା ଭିନ୍ନ ଭିନ୍ନ ସୂତ୍ରରେ ଅଲଗା ଅଲଗା ହୋଇପାରେ । ରାଜପୁତଙ୍କ ମଧ୍ୟରେ ଚାରି ଗୋଷ୍ଠୀ ବିଶେଷ ପାହ୍ୟା ଦାବି କରୁଥିଲେ । ସେମାନେ ହେଲେ ପ୍ରଥମରେ ପ୍ରତିହାର ବା ପରିହାର, ଦ୍ୱିତୀୟରେ ଚାହମନ ବା ଚୌହାନ, ତୃତୀୟରେ ପରମାର ବା ପାଞ୍ଚାର, ଚତୁର୍ଥରେ ଚାଲୁକ୍ୟ (ଦାକ୍ଷିଣାତ୍ୟର ଚାଲୁକ୍ୟମାନଙ୍କଠାରୁ ଭିନ୍ନ) ବା ସୋଲାଙ୍କୀ । ଏମାନେ ସମସ୍ତେ ରାଜସ୍ଥାନର ମାଉଣ୍ଟଆବୁ ନିକଟରୁ ଗୋଟିଏ ପବିତ୍ର ଅଗ୍ନିକୁଣ୍ଡରୁ ଜାତ ପୌରାଣିକ ଚରିତ୍ରର ବଂଶଧର ବୋଲି ଦାବି କରନ୍ତି । ଏଇ କାହାଣୀ ହୁଏତ ରାଜପୁତମାନଙ୍କର ଉତ୍‌ଥାନର ବହୁକାଳ ପରେ ଆବିଷ୍କୃତ । କୁହାଯାଏ ଋଷି ବଶିଷ୍ଠଙ୍କର କାମଧେନୁ ନାମରେ ଏକ ଗାଈ ଥିଲା, ଯିଏ ସବୁ ଅଭୀଷ୍ଟ ପୂରଣ କରୁଥିଲା । ତାକୁ ବିଶ୍ୱାମିତ୍ର ନାମକ ଅନ୍ୟ ଜଣେ ଋଷି ଅପହରଣ କରିନେଲେ । ବଶିଷ୍ଠ ମାଉଣ୍ଟଆବୁ ନିକଟରେ ଏକ ଯଜ୍ଞ କଲେ । ସେଇ ଅଗ୍ନିରୁ ଜଣେ ଶକ୍ତିଶାଳୀ ପୁରୁଷ ଆବିର୍ଭୂତ ହେଲେ ଓ ସେ ଗାଈଟିକୁ ବଶିଷ୍ଠଙ୍କ ନିକଟକୁ ଫେରାଇ ଆଣିଥିଲେ । କୃତଜ୍ଞତା ସ୍ୱରୂପ ବଶିଷ୍ଠ ତାଙ୍କୁ 'ପରମାର' ଉପାଧି ପ୍ରଦାନ କଲେ (ଯାହାର ଅର୍ଥ ଶତ୍ରୁ ବିନାଶକାରୀ) । ତାଙ୍କଠାରୁ ଏହି ପରମାର ରାଜବଂଶର ଉତ୍ପତ୍ତି ହୋଇଅଛି । ଅନ୍ୟ ବଂଶଗୁଡ଼ିକର ଭିନ୍ନ ଭିନ୍ନ କିମ୍ବଦନ୍ତୀ ଅଛି । କ୍ରମଶଃ ଏଇ ଚାରି ଜାତି ଅଗ୍ନିକୂଳରୁ ଜାତ ବୋଲି ପରିଚିତ ହେଲେ ।

ପାରମ୍ପରିକ ଭାବରେ ଏହି ଅଗ୍ନି କର୍ମକାଣ୍ଡକୁ ପବିତ୍ରତାର ପ୍ରତୀକ ଭାବେ ନିଆଯାଇଥିଲା । ଅଗ୍ନିକୂଳ କାହାଣୀ ଏଥିସହିତ ସମ୍ପର୍କିତ ଜାତିର ବିବାଦୀୟ ଉତ୍ପତ୍ତି ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାର କାହାଣୀ ବହୁ ପୁରାଣରେ ବର୍ଣ୍ଣିତ । ସେଥିରୁ କେତେକ କାହାଣୀରେ ରହିଛି ଯେ ବିଶ୍ୱାମିତ୍ର କ୍ଷତ୍ରିୟ ଥିଲେ ଓ କଠୋର ତପସ୍ୟା କରି ଋଷି ହେବାପାଇଁ ପ୍ରୟାସ କରୁଥିଲେ । ତପସ୍ୟା ବ୍ରାହ୍ମଣ ପରମ୍ପରାରେ ପ୍ରଚଳିତ ଥିଲା । ପୁନଶ୍ଚ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଯୋଗସୂତ୍ର ଥିବାର ସୂଚନା ମିଳେ । ଏହି ପୌରାଣିକ କାହାଣୀ ଯୋଗୁଁ ମାଉଣ୍ଟଆବୁ ପ୍ରସିଦ୍ଧି ପାଇଲା । ପରବର୍ତ୍ତୀ ଅବସ୍ଥାରେ ଏହା ଜୈନମାନଙ୍କର ଏକ ପବିତ୍ର ପୀଠ ଭାବରେ ପରିଚତ ହେଲା ।

ଅଗ୍ନିକୂଳ ସମ୍ଭୂତ ବୋଲି ଦାବି କରୁଥିବା ଚାରୋଟି ବଂଶ ଆରମ୍ଭରୁ ରାଜପୁତ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିଲେ । ପ୍ରାଚୀନ ପ୍ରତିହାର ରାଜ୍ୟର ଧ୍ୱଂସାବଶେଷରୁ ଜଣାପଡ଼େ ଯେ, ସେମାନେ ନିଜର ରାଜ୍ୟ ପ୍ରତିଷ୍ଠା କରିଥିଲେ । ନୂତନ ପ୍ରତିହାରମାନେ ଦକ୍ଷିଣ

ରାଜସ୍ଥାନରେ ଶାସନ କଲେ । ଚାହମନ ବା ଚୌହାନମାନଙ୍କର କେନ୍ଦ୍ର ଥିଲା ଦିଲ୍ଲୀର ଦକ୍ଷିଣ-ପୂର୍ବରେ ଥିବା ଶାକମ୍ଭରୀ, ଯାହା ପ୍ରାଥମିକ ସ୍ତରରେ ମୁଖ୍ୟ ପ୍ରତିହାର ରାଜବଂଶର ଅଧୀନରେ ଥିଲା । କିନ୍ତୁ ପରେ ଏମାନଙ୍କର ବିଭିନ୍ନ ଶାଖା ରାଜସ୍ଥାନର ନାଡୋଲ୍, ରନ୍ଥମ୍ଭୋର, ଜାଲୋର ଓ ସଞ୍ଚୋର ଅଧିକାର କଲେ । ଚାଲୁକ୍ୟ ବା ସୋଲାଙ୍କୀ ଶକ୍ତି ଗୁଜରାଟ ଏବଂ କାଥିୟାୱାଡ଼ରେ କେନ୍ଦ୍ରୀଭୂତ ହେଲା । ପରମାରମାନେ ଇନ୍ଦୋର ନିକଟସ୍ଥ ଧରରେ ରାଜଧାନୀ ପ୍ରତିଷ୍ଠା କରି ମାଲ୍ୱା ଅଧିକାର କଲେ । ସେମାନେ ରାଷ୍ଟ୍ରକୂଟମାନଙ୍କୁ ଅଧିପତି ଭାବରେ ଗ୍ରହଣ କରି ଶାସନ ଆରମ୍ଭ କଲେ । କିନ୍ତୁ ଦଶମ ଶତାବ୍ଦୀ ଶେଷରେ ସେମାନଙ୍କଠାରୁ ଅଲଗା ହେଲେ ଓ ପରବର୍ତ୍ତୀ ଶତାବ୍ଦୀରେ ଭୋଜ ପାରମାରଙ୍କର ଶାସନକାଳରେ ନିଜର ଶକ୍ତି ପ୍ରତିଷ୍ଠା କଲେ ।

ଚନ୍ଦ୍ର ଏବଂ ସୂର୍ଯ୍ୟବଂଶର ଉତ୍ତରାଧିକାରୀ ଭାବେ ରାଜପୁତ ବୋଲି ଦାବି କରୁଥିବା ଅନ୍ୟ ରାଜାମାନେ ପଶ୍ଚିମ ଏବଂ ମଧ୍ୟଭାରତର ବିଭିନ୍ନ ଅଞ୍ଚଳରେ ନିଜକୁ ସ୍ଥାନୀୟ ରାଜାଭାବେ ପ୍ରତିଷ୍ଠା କଲେ । ସେମାନଙ୍କ ମଧ୍ୟରେ ଥିଲେ ଚନ୍ଦେଲ ବା ଚାଣ୍ଡେଲାମାନେ । ଦଶମ ଶତାବ୍ଦୀରେ ବୁନ୍ଦେଲଖଣ୍ଡରେ ସେମାନେ ଖଜୁରାହୋକୁ କେନ୍ଦ୍ର କରିଥିଲେ । ସେମାନଙ୍କର କ୍ଷେତ୍ର ଜେଜକଭୁକ୍ତି ନାମରେ ବିଖ୍ୟାତ ଥିଲା । ମେୱାରର ଗୁହିଲାମାନେ ଆରବମାନଙ୍କ ବିରୁଦ୍ଧରେ ପ୍ରଥମେ ଯୁଦ୍ଧ କରିଥିଲେ । ସେମାନେ ନିଜର ବ୍ରାହ୍ମଣ ପରିଚୟକୁ ତ୍ୟାଗକରି ସୂର୍ଯ୍ୟବଂଶୀ କ୍ଷତ୍ରିୟକୁ ପରିବର୍ତ୍ତିତ ହୋଇଥିଲେ । ତୋମରମାନେ ପୂର୍ବରୁ ପ୍ରତିହାରମାନଙ୍କ ଅଧୀନରେ ଥିଲେ । ଧିଲ୍ଲିକା (ଆଧୁନିକ ଦିଲ୍ଲୀ) ନିକଟସ୍ଥ ହରିୟାନା ଅଞ୍ଚଳରେ ସେମାନେ ଶାସନ କରୁଥିଲେ । ସେମାନେ 736 ରେ ଏହି ନଗରୀ ପ୍ରତିଷ୍ଠା କରିଥିଲେ । ସେମାନେ ଦ୍ୱାଦଶ ଶତାବ୍ଦୀରେ ଚୌହାନମାନଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ । ଅନ୍ୟ ଏକ ଗୋଷ୍ଠୀ ଅର୍ଥାତ୍ ଜବଲପୁର ନିକଟବର୍ତ୍ତୀ ତ୍ରିପୁରୀର କାଲଚୁରୀମାନେ, ପ୍ରତିହାରମାନଙ୍କର ଅଧୀନରେ ଆରମ୍ଭରେ ରହିଥିଲେ । ରାଜା କର୍ଣ୍ଣଙ୍କ ମାଧ୍ୟମରେ ସେମାନେ ଏକାଦଶ ଶତାବ୍ଦୀରେ ସ୍ୱାଧୀନତା ଓ ସମ୍ମାନ ଅର୍ଜନ କରିଥିଲେ ।

ପ୍ରତ୍ୟକ୍ଷଭାବରେ ଶାସନ କରାଯାଉଥିବା ଭୂଭାଗ ଉପରେ ପ୍ରତ୍ୟେକ ରାଜ୍ୟର ଦୃଷ୍ଟିନିବଦ୍ଧ ରହୁଥିଲା । ରାଜବଂଶର ଶାଖା ବୋଲି ଦାବି କରୁଥିବା ଗୋଷ୍ଠୀ ପ୍ରତିବେଶୀ ଅଞ୍ଚଳମାନଙ୍କରେ ଦ୍ରୁତ ଗତିରେ ବୃଦ୍ଧି ପାଇବାକୁ ଲାଗିଲେ । ନିଜ ସମ୍ପର୍କୀୟ ଗୋଷ୍ଠୀକୁ ଶାସନ ପରିଚାଳନା ନିମିତ୍ତ ଜମି ବଣ୍ଟନ କରିବାରୁ ଏହା ସମ୍ଭବ ହୋଇଥିଲା । ଏହା ରାଜବଂଶର ଶାସନ ପାଇଁ ଏକ ଶକ୍ତିଶାଳୀ ଭିତିଭୂମି ସ୍ଥାପନ କଲା । କିନ୍ତୁ ଏହି ବ୍ୟବସ୍ଥା ଯୋଗୁଁ ଅନ୍ୟମାନେ ମଧ୍ୟ ସମାନ ଦାବିକରି ସେହି ସ୍ଥାନ ଦଖଲ କରିବାକୁ ପ୍ରୟାସ କଲେ । ବଂଶ ସମ୍ପର୍କକୁ ବୃଦ୍ଧି କରିବାର ମାଧ୍ୟମ ଥିଲା ବୈବାହିକ ସମ୍ପର୍କ । ସେତେବେଳେ ଏହା ଥିଲା ଏକ ସାଧାରଣ

ପ୍ରଥା । ନବମ ଶତାବ୍ଦୀର ରାଜ୍ୟର ସୀମା ଚଉରାଶିଟି ଗ୍ରାମକୁ ନେଇ ନିର୍ଦ୍ଧାରିତ ଥିଲା । ଗ୍ରାମଗୁଡ଼ିକରୁ କର ଓ ଶୁଳ୍କ ଆଦାୟ ହେଉଥିଲା । ଗ୍ରାମଗୁଡ଼ିକ ବନ୍ଦୋବସ୍ତ ପ୍ରଣାଳୀ ମାଧ୍ୟମରେ ଯୁକ୍ତ ଥିଲେ । ପ୍ରତ୍ୟେକ ଗ୍ରାମର ସୁରକ୍ଷିତ ଅଞ୍ଚଳଗୁଡ଼ିକ ଶାସନ ଓ ସ୍ଥାନୀୟ ଉତ୍ପାଦନର ବଜାର ଭାବରେ କାର୍ଯ୍ୟ କରୁଥିଲା । ଜମି ଅନୁଦାନ କିମ୍ବା ବଳପୂର୍ବକ ରାଜ୍ୟ ଅଧିଗ୍ରହଣ ପରେ ତା'ର ବଣ୍ଟନ ଉପରେ ଆବଶ୍ୟକୀୟ ପାହ୍ୟା ପାଇବା ନିର୍ଭର କରୁଥିଲା ।

ଗୋଟିଏ ବଂଶର ଶାଖା ସୃଷ୍ଟି ହେବା ଫଳରେ ଅନ୍ୟ ସମସ୍ୟା ରହିଥିଲା । ଯଦିଓ ସେମାନେ ମୂଳ ବଂଶର ନାମ ଗ୍ରହଣ କରୁଥିଲେ, ପ୍ରତ୍ୟେକ ସ୍ଥଳରେ ସେମାନେ ଯେ ତାଙ୍କର ପ୍ରକୃତ ବଂଶଧର ତାହା ନିଶ୍ଚିତ ନଥିଲା । ଅଧିକାଂଶ ସ୍ଥାନରେ ବିଭାଜିତ ବଂଶର ଧାରା କିଛି ସମ୍ପର୍କ ନଥିବା ପରିବାର ସହିତ ସୁବିଧା ସୁଯୋଗ ମାଧ୍ୟମରେ ଏକତ୍ରିତ ହୋଇ ମୂଳ ବଂଶର ଗୋଟାଏ ଅଂଶ ଭାବରେ ପରିଗଣିତ ହୋଇଥିଲେ । ଜନ୍ମଗତ ବଂଶାନୁକ୍ରମ ଆଧାରରେ ଯେ ବଂଶ ପ୍ରତିଷ୍ଠା ହେବ, ତା'ର କୌଣସି ନିଶ୍ଚିତତା ନଥିଲା । କିନ୍ତୁ ମୂଳ ବଂଶ ଓ ଶାଖା ପରସ୍ପର ସହିତ ସମ୍ପର୍କ ରକ୍ଷା କରୁଥିଲେ । ମହାଭାରତ ଓ ବିଷ୍ଣୁପୁରାଣରେ ପ୍ରଦତ୍ତ ମୂଳ ଚନ୍ଦ୍ରବଂଶର ପ୍ରଥମ ବିଭାଜିତ ଶାଖାର ଚିତ୍ର ଅନୁଧ୍ୟାନ କରି ଏଭଳି ବିଚାର ରଖାଯାଇ ପାରିବ । ଏହି ବଂଶ ବିସ୍ତାରିତ ହୋଇ ବହୁ ବିଭାଜିତ ଶାଖାକୁ ନିଜ ସହିତ ମିଶାଇଲେ । ସେମାନେ ସମସ୍ତେ ତାଙ୍କର ମୂଳ ଏକା ଓ ସେମାନେ ପରସ୍ପରର ସମ୍ପର୍କୀୟ ବୋଲି ଦାବି କଲେ । କିନ୍ତୁ ବଂଶାନୁକ୍ରମ ଓ ସେମାନଙ୍କର ନାମର ପ୍ରକୃତି ଓ ପ୍ରଚଳିତ କଥାସବୁକୁ ଗଭୀର ଭାବରେ ଦେଖିଲେ ସେମାନଙ୍କ ସମ୍ପର୍କକୁ ନେଇ ସନ୍ଦେହ ଜାତ ହୁଏ । ରାଜପୁତଙ୍କ ମଧ୍ୟରେ ବିଭିନ୍ନ ଶାଖାର ଜନ୍ମ ଉପାଖ୍ୟାନ ଓ ପୂର୍ବଜମାନଙ୍କର ଆଭିଜାତ୍ୟ ସମ୍ପର୍କରେ ସ୍ଥାନ ଓ କାଳ ଅନୁଯାୟୀ ଭିନ୍ନତା ଦେଖାଯାଏ । ଯେଉଁ ଉଚ୍ଚ ପଦାଧିକାରୀମାନେ ସେମାନଙ୍କର କାର୍ଯ୍ୟ ପାଇଁ ସ୍ଥାୟୀ ଅନୁଦାନ ପାଉଥିଲେ ସେମାନେ ଶାସକ ପରିବାର ସହ ବଂଶଗତ ସମ୍ପର୍କ ଥିବା ଦାବି କଲେ ଓ ଏହାକୁ କ୍ଷମତା ସାବ୍ୟସ୍ତ କରିବାର ଏକ ଗ୍ରହଣଯୋଗ୍ୟ ଉପାୟ ମନେକଲେ ।

କ୍ଷତ୍ରିୟ ଜାତିରେ ପରିଗଣିତ ହେବାପାଇଁ ଆଗ୍ରହ ସହିତ କ୍ଷତ୍ରିୟ ପାହ୍ୟାର ଆଉ ଏକ ଅତିରିକ୍ତ ସ୍ତର ଆବଶ୍ୟକ ବୋଲି ସେମାନେ ମନେକଲେ । ତାହା ହେଲା ରାଜାଙ୍କ ସହିତ ଆତ୍ମୀୟତାର ସମ୍ପର୍କ ଦାବିକରି ରାଜପୁତ୍ର ବା ରାଜପୁତ ବୋଲାଇବା । ଉଭୟଙ୍କ ମଧ୍ୟରେ ସ୍ପଷ୍ଟଭାବରେ କିଛି ଭିନ୍ନତା ବାରି ହେଉଥିଲା । ଯେଉଁ ଅଞ୍ଚଳରେ ରାଜତନ୍ତ୍ରର ଦୀର୍ଘ ଇତିହାସ ନଥିଲା କିମ୍ବା କୃଷିଭିତ୍ତିକ ଅର୍ଥବ୍ୟବସ୍ଥା ନଥିଲା, ସେହି ଅଞ୍ଚଳରେ ମୁଖ୍ୟତଃ ଏହି କ୍ଷତ୍ରିୟ ପାହ୍ୟା ବିସ୍ତୃତ ଭାବରେ ପ୍ରସାର ଲାଭ କରିଥିଲା । ପରିଣାମ ସ୍ୱରୂପ, ଏହା ରାଜସ୍ଥାନ ଏବଂ ମଧ୍ୟଭାରତର ଅନେକ ସ୍ଥାନରେ ଗୃହୀତ ହେଲା । ପ୍ରଥମରୁ ରାଜପୁତ ରାଜ୍ୟମାନଙ୍କରେ

ସମ୍ପଦର ନିୟନ୍ତ୍ରଣ କେନ୍ଦ୍ରୀଭୂତ ହୋଇ ନଥିଲା । ଅଗ୍ନିକୁଳ କାହାଣୀର ବର୍ଣ୍ଣନା ଅନୁସାରେ ଅସୁରମାନଙ୍କଠାରୁ ଧନସମ୍ପଦ ଉଦ୍ଧାର କରିବା ଯୁଦ୍ଧର ମୁଖ୍ୟ ଉଦ୍ଦେଶ୍ୟ ନଥିଲା । ପ୍ରମୁଖ ଉଦ୍ଦେଶ୍ୟ ଥିଲା ଋଷିଙ୍କର କାମଧେନୁ ଫେରାଇ ଆଣିବା । ଫଳରେ ଭୂମି ଅନୁଦାନ, ବ୍ରାହ୍ମଣମାନଙ୍କର ସ୍ଥାୟୀ ବସବାସ, କୃଷିଭିତ୍ତିକ ରାଜସ୍ୱ ଓ ବାଣିଜ୍ୟ ବ୍ୟବସ୍ଥା ପ୍ରଭୃତି ପ୍ରଚଳିତ ହେଲା । ସଂସ୍କୃତ ସଂସ୍କୃତିର ଧାରା ରାଜସଭା ଦ୍ୱାରା ସମର୍ଥନ ପାଇ ଆନୁଷ୍ଠାନିକ ଭାବରେ ସ୍ୱୀକୃତ ହେଲା । ଅପେକ୍ଷାକୃତ ବିଚ୍ଛିନ୍ନ ଭାବରେ ଥିବା ଓ ପରେ ରାଜ୍ୟରେ ପରିଣତ ହୋଇଥିବା ଅଞ୍ଚଳଗୁଡ଼ିକରେ ବିଶେଷଭାବରେ ଏହି ବ୍ୟବସ୍ଥା ପରିଲକ୍ଷିତ ହେଲା ।

## ନୂତନ ବସତିର ସୃଷ୍ଟି

ନୂତନ ବସତି ସୃଷ୍ଟି କରିବା କିମ୍ବା ସ୍ଥାୟୀ ବସତି ଉପରେ ନିୟନ୍ତ୍ରଣ ବିସ୍ତାର କରିବା ଆର୍ଥିକ ଓ ରାଜନୈତିକ ଦୃଷ୍ଟିରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଥିରେ ଅନ୍ୟ ଭୂଖଣ୍ଡକୁ ଆୟତ୍ତକୁ ଆଣିବା ମଧ୍ୟ ସାମିଲ ଥିଲା । ତାହା ଅନ୍ୟ ରାଜ୍ୟ ହେଉ, ଆଟବିକ ରାଜ୍ୟ ହେଉ ବା ବନବାସୀ ସର୍ଦ୍ଦାରଙ୍କର ରାଜ୍ୟ ହେଉ । ଯୁଦ୍ଧ ବା ସାମରିକ ଅଭିଯାନ ମାଧ୍ୟମରେ ରାଜ୍ୟ ଅଧିଗ୍ରହଣ କରିବା ଓ ଲୁଣ୍ଠିତ ସମ୍ପତ୍ତି ଆଦାୟ କରି ରାଜସ୍ୱ ବଢ଼ାଇବା ସର୍ବଦା ଆବଶ୍ୟକ ଥିଲା । ସର୍ଦ୍ଦାରମାନଙ୍କୁ ପରାଜିତ କରି ଅଧୀନକୁ ଅଣାଯାଉଥିଲା ଓ ସେମାନଙ୍କୁ ବିଜେତାଙ୍କ ସାମାଜିକ ଚଳଣି ଅନୁକରଣ କରିବାକୁ ପ୍ରୋତ୍ସାହିତ କରାଯାଉଥିଲା । ଅନେକ ସମୟରେ ଏହା ପରସ୍ପର ଆଦାନ ପ୍ରଦାନ ଦ୍ୱାରା ହେଉଥିଲା ବା ସମୟେ ସମୟେ ବଳପ୍ରୟୋଗ କରି ହେଉଥିଲା । ସେମାନଙ୍କୁ ଜାତିବ୍ୟବସ୍ଥାରେ ମିଶାଇବା ପାଇଁ ଚେଷ୍ଟା କରାଯାଉଥିଲା । ସର୍ଦ୍ଦାରମାନଙ୍କ ପରିବାରକୁ କ୍ଷତ୍ରିୟ ପାହ୍ୟା ପ୍ରଦାନ କରାଯାଉଥିଲା । ପ୍ରଭାବଶାଳୀ ବ୍ୟକ୍ତିଙ୍କ ସହ ବୈବାହିକ ବନ୍ଧନ ମାଧ୍ୟମରେ କୌଳିକ ସମ୍ପର୍କ ରକ୍ଷା କରାଯାଉଥିଲା । ଅନ୍ୟମାନେ ବିଭିନ୍ନ ପ୍ରକାର ଶୂଦ୍ର ବର୍ଣ୍ଣର ଅନ୍ତର୍ଭୁକ୍ତ ହେଉଥିଲେ । ଭୂତପୂର୍ବ ସର୍ଦ୍ଦାରମାନଙ୍କୁ ଶାସନ-ବ୍ୟବସ୍ଥାର ବିଭିନ୍ନ ପାହ୍ୟାରେ ଅବସ୍ଥାପିତ କରିବାଦ୍ୱାରା ଅନ୍ୟମାନଙ୍କର ବୃତ୍ତିଗତ ପରିବର୍ତ୍ତନ ଦେଖାଦେଲା । ସେମାନେ ନୂଆକରି ପ୍ରସ୍ତୁତ ହୋଇଥିବା କ୍ଷେତ୍ରରେ ଚାଷକରି କୃଷକ ବୋଲାଇଲେ ଓ ସେମାନଙ୍କ ମଧ୍ୟରୁ କେତେକ କୁଶଳ କାରିଗର ହେଲେ । ରାଜପୁତ୍ ଜାତିର ପରିଚୟ ସେମାନଙ୍କର କୁଳଦେବୀଙ୍କ ସହିତ ଯୋଡ଼ା ହୋଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବହୁ ସମାଜର ପରସ୍ପର ଘନିଷ୍ଠ ସମ୍ପର୍କ ସେମାନଙ୍କର ଧର୍ମବିଶ୍ୱାସ ଓ ପରମ୍ପରାରୁ ଲକ୍ଷ୍ୟ କରାଯାଏ । ବିଭିନ୍ନ ରାଜବଂଶ ବା ଶାସନ କେନ୍ଦ୍ର ପ୍ରବର୍ତ୍ତନ କରିଥିବା ବିଧି କିମ୍ବା ପୌରାଣିକ ଧର୍ମଧାରା ଆଧାରରେ ଏସବୁ ପ୍ରଚଳିତ ହୋଇଥିଲା ।

ବହୁ ପୁରାତନ କାଳରୁ ଜନରୁ ଜାତି ବା ବଂଶପରମ୍ପରାରୁ ଜାତିପ୍ରଥାର ବିବର୍ତ୍ତନ ଭିତରେ ଭାରତୀୟ ସମାଜ ଓ ସଂସ୍କୃତି ଗଢ଼ିଉଠିଥିଲା । ଉପଲବ୍ଧ ହେଉଥିବା ବିଭିନ୍ନ ସୂତ୍ର ଓ ବିସ୍ତୃତ ତଥ୍ୟରୁ ଜଣାପଡ଼େ ଯେ ଏହି ଧାରା ଉପରୋକ୍ତ ସମୟରେ ସହଜରେ ପ୍ରଚଳିତ ଥିଲା । ପୁରାତନ କାଳରୁ ବନ ବା ଅରଣ୍ୟଠାରୁ ଗ୍ରାମ ବା ଜନବସତିର ପାର୍ଥକ୍ୟ ସ୍ପଷ୍ଟଭାବେ ଜଣାପଡୁଥିଲା । କିମ୍ବଦନ୍ତୀ ଅନୁଯାୟୀ, ଅଜଣା ଅରଣ୍ୟସବୁ ରାକ୍ଷସମାନଙ୍କ କବଳରେ ଥିଲା । ଯେତେବେଳେ ଏହି ଅରଣ୍ୟ ଅଞ୍ଚଳକୁ କାଠ ଏବଂ ହାତୀ ଆଦି ପ୍ରାକୃତିକ ସମ୍ପଦ ସଂଗ୍ରହ ନିମିତ୍ତ ଉପଯୋଗ କରାଗଲା, କିମ୍ବା କୃଷି ପାଇଁ ପ୍ରସ୍ତୁତ କରାଗଲା, କ୍ରମଶଃ 'ରାକ୍ଷସମାନଙ୍କର' ଭୟ ଦୂର ହେବାକୁ ଲାଗିଲା । ଏହାଦ୍ୱାରା ରାଜ୍ୟ ଶାସନ ଅରଣ୍ୟ-ଅଧିବାସୀମାନଙ୍କର ନିକଟତର ହେଲା । ଅରଣ୍ୟ ଅଧିବାସୀମାନେ ମୁଖ୍ୟତଃ ଶିକାରୀ, ଯାଯାବର, ଚାଷୀ ଓ ପଶୁପାଳକ ଥିଲେ । ଯେତେବେଳେ ସ୍ଥାୟୀ ବସତିରୁ ଲୋକମାନେ ଅରଣ୍ୟ ସମ୍ପଦ ଅଧିକାର ପାଇଁ ସେଠାରେ ପହଞ୍ଚିଲେ, ସେତେବେଳେ ଅରଣ୍ୟବାସୀଙ୍କୁ ନିଜର ଅଧୀନସ୍ଥ କଲେ କିମ୍ବା ପରିବର୍ତ୍ତନ କରାଇଲେ । ପଞ୍ଚମ ଓ ଷଷ୍ଠ ଶତାବ୍ଦୀର ଅଭିଲେଖଗୁଡ଼ିକରୁ ଏହାର ବିସ୍ତୃତ ପ୍ରମାଣ ମିଳେ । ସେତେବେଳେ ବନବାସୀ ସର୍ଦ୍ଦାରଙ୍କୁ 'ବ୍ୟାଘ୍ରରାଜ' କୁହାଯାଉଥିଲା । ସେମାନେ ରାଜବଂଶଗୁଡ଼ିକର ପ୍ରତିଷ୍ଠାତା ହେଲେ । ଅନେକ ରାଜବଂଶ ସେମାନଙ୍କର ପ୍ରତିଷ୍ଠାତା ବ୍ରାହ୍ମଣ ଥିଲେ ବୋଲି ମଧ ଦାବି କରିଥିଲେ ଏବଂ ସେମାନଙ୍କର କ୍ଷମତା ଅରଣ୍ୟ ରାଜ୍ୟଗୁଡ଼ିକର ବିଜୟ ମାଧମରେ ପ୍ରତିଷ୍ଠିତ ହୋଇଥିଲା । ଏଣିକି ସେମାନେ ପୁଷ୍କରିଣୀ ତିଆରି କଲେ । ଜଳସେଚନ ପାଇଁ ପାହାଡ଼ର ଛୋଟ ଛୋଟ ନଦୀରେ ବନ୍ଧ ବାନ୍ଧିବା, ମନ୍ଦିରର ଅନୁରକ୍ଷଣ କରିବା ଓ ନିଜକୁ କ୍ଷତ୍ରିୟ ବୋଲି ଦାବି କରିବା ସହିତ ସେମାନେ ବ୍ରାହ୍ମଣମାନଙ୍କୁ ଦେବକାର୍ଯ୍ୟରେ ନିୟୋଜିତ କଲେ । ତତ୍କାଳୀନ ସମୟର ସାହିତ୍ୟରେ ପ୍ରାୟତଃ ଏସବୁ ପରିବର୍ତ୍ତନର ପ୍ରତିଫଳନ ଦେଖିବାକୁ ମିଳେ ।

ରାଜବଂଶର ପ୍ରତିଷ୍ଠା ପ୍ରାୟତଃ ଏକ ସୁପରିଚିତ ପ୍ରଣାଳୀରେ ହେଉଥିଲା । ସାମନ୍ତ ନିଜ ଶାସକ ବିରୁଦ୍ଧରେ ବିଦ୍ରୋହ କରି ସଫଳତାର ସହିତ ନିଜକୁ ସ୍ୱାଧୀନ ଘୋଷଣା କରୁଥିଲା । ବିଭିନ୍ନ ପରିସ୍ଥିତିରୁ ସାମନ୍ତ ପାହ୍ୟାର ସୃଷ୍ଟି ହେଉଥିଲା । ପ୍ରଥମତଃ ଶାସକ ପରାଜିତ ରାଜା ବା ସର୍ଦ୍ଦାରଙ୍କୁ କରଦ ପାହ୍ୟାରେ ପୁନର୍ନିଯୁକ୍ତି ଦେଇ ସାମନ୍ତ ସୃଷ୍ଟି କରୁଥିଲେ । ଦ୍ୱିତୀୟ ପରିସ୍ଥିତିରେ ଶାସକଙ୍କଠାରୁ ଜମି ଦାନ ପାଇ ନୂଆ ବଂଶ ପରମ୍ପରା ସୃଷ୍ଟି ହେଉଥିଲା । ଏହାଦ୍ୱାରା ବିସ୍ତୃତ ଅଞ୍ଚଳକୁ ନିୟନ୍ତ୍ରଣ କରିବା ଓ ପ୍ରତିଷ୍ଠିତ ପରିବାର ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରିବା ସହଜ ହେଉଥିଲା । ତୃତୀୟ ପରିସ୍ଥିତିରେ, ଶାସନ କ୍ଷମତା ଅଧିକାର ଭୋଗ କରିଆସୁଥିବା କୌଣସି ଶ୍ରେଣୀ ସ୍ୱାଧୀନତା ଘୋଷଣା କରି ସାମନ୍ତ ସୃଷ୍ଟି କରୁଥିଲେ । କ୍ଷମତାକୁ ଆସିବାର ଗୋଟାଏ ସ୍ୱୀକୃତ ମାଧମ ଥିଲା ପ୍ରଶାସନିକ ପଦବୀ ଉପରେ ନିୟନ୍ତ୍ରଣ ।

ଏହାଦ୍ୱାରା କରଦ ରାଜାମାନେ ପରିବର୍ତ୍ତିତ ହେଉ ନଥିଲେ । କିନ୍ତୁ ଶାସନ ବ୍ୟବସ୍ଥାରେ ନିଯୁକ୍ତି ତାଙ୍କ ପାହ୍ୟାର ସୂଚନା ଦେଉଥିଲା । ଏହି ପଦ୍ଧତିରେ ବିଭିନ୍ନ ଶ୍ରେଣୀ ଅନୁସାରେ ନିଯୁକ୍ତ ବ୍ୟକ୍ତିମାନଙ୍କୁ ରଖାଯାଉଥିଲା । ପଦ୍ଧତିର କାର୍ଯ୍ୟକାରିତା ଶାସନର ନିୟନ୍ତ୍ରଣ ଓ କ୍ଷମତାର ସୁବ୍ୟବହାର ଉପରେ ନିର୍ଭର କରୁଥିଲା । ଏହାର ଅନ୍ୟତମ ଦିଗଟି ଥିଲା ବିଭିନ୍ନ ରାଜୋଚିତ ଆଚରଣର ସୂକ୍ଷ୍ମ ଅନୁଶୀଳନ ଓ ରାଜସଭା ପାଇଁ ପ୍ରଯୋଜନ ସାଙ୍କେତିକ ଭାଷାର ପ୍ରୟୋଗ ।

ଅଧିକ ସଂଖ୍ୟାରେ ଜମି ଦାନ ରାଜସ୍ୱ ହାନିର କାରଣ ହେଲା । କିଛି ପରିମାଣରେ ଶାସକୀୟ ବିକେନ୍ଦ୍ରୀକରଣ ଘଟିଲା । ବିକ୍ଷିପ୍ତଭାବେ ଥିବା ଭୂମି ଦାନ ପାଇଥିବା ବ୍ୟକ୍ତିମାନେ ଅଲଗା ହେବା ପର୍ଯ୍ୟନ୍ତ ସେମାନଙ୍କଠାରୁ ସମ୍ଭବତଃ କ୍ଷତିପୂରଣ ଭରଣା କରାଯାଉଥିଲା । କିଛି ଅଞ୍ଚଳରେ ଜମି ଦାନର ଉଦ୍ଦେଶ୍ୟ ଥିଲା କୃଷି ଭିତ୍ତିଭୂମିର ବିକାଶ । ଏହା ଚାଷ ନିମିତ୍ତ ବ୍ୟବହୃତ ଜମିରେ କୃଷି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଅଥବା କୃଷି ପାଇଁ ନୂତନ ଅଞ୍ଚଳ ସୃଷ୍ଟି କରିବା ଦ୍ୱାରା ସଂଘଟିତ ହେଉଥିଲା । ଜମିମାଲିକମାନଙ୍କ ଉଦ୍ୟମରେ ଜଳସେଚନ ବ୍ୟବସ୍ଥା ଗଢ଼ିଉଠିଲା । ଯେଉଁଠାରେ ଏହା ବୃହତ୍ ଓ ଜଟିଳ ଥିଲା, ସେଠାରେ ରାଜ୍ୟ ସାହାଯ୍ୟ କରୁଥିଲା । ଏକ ବିଡ଼ମ୍ବନା ହେଲା ଯେ ରାଜ୍ୟରେ ଜଳସେଚନ ଉପକରଣ ଓ ବ୍ୟବସ୍ଥାର ପରିଚାଳନା ସହିତ ରାଜନୈତିକ ନିୟନ୍ତ୍ରଣ ଓ ଉତ୍ପୀଡ଼ନ କଥା ମଧ୍ୟ ଜଡ଼ିତ ହେଲା । ଉତ୍ପାଦନରେ ବୃଦ୍ଧି ଯୋଗୁଁ ବିନିମୟ କେନ୍ଦ୍ର ଓ ବାଣିଜ୍ୟର ଅଭିବୃଦ୍ଧି ଘଟିଲା । ଏହା ବ୍ୟବସାୟ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କଲା । ଜଙ୍ଗଲ ଅଞ୍ଚଳରେ ଜମିଦାନ ପାଇଥିବା ବ୍ୟକ୍ତିମାନେ ଏ ଦିଗରେ ଅନ୍ୟମାନଙ୍କଠାରୁ ଅନେକ ଆଗୁଆ ଥିଲେ । ସେମାନେ ବିଭିନ୍ନ ସ୍ଥାନରେ ରାଜାଙ୍କର ଅନୁଚର ଭାବରେ ମଧ୍ୟ କାର୍ଯ୍ୟ କରୁଥିଲେ । ରାଜାଙ୍କ ଅନୁଦାନରେ ନିର୍ମିତ ବୃହତ୍ ମନ୍ଦିରଗୁଡ଼ିକ ରାଜକୀୟ କ୍ଷମତା ପ୍ରଚାରର ଆଉ ଏକ ମାଧ୍ୟମ ସିଦ୍ଧ ହେଲା ।

ଗ୍ରାମକୁ ଏବଂ ଗ୍ରାମର ପଶୁସମ୍ପଦକୁ ରକ୍ଷା କରିବାର ଦାୟିତ୍ୱ ଗ୍ରାମବାସୀମାନଙ୍କୁ ଦିଆଯାଇଥିଲା । ବିଭିନ୍ନ ସ୍ଥାନରେ ସ୍ଥାନୀୟ ବୀରମାନଙ୍କ ନାଁରେ ନିର୍ମିତ ସ୍ମୃତିଫଳକ ସବୁ ଶାସନଗତ ବିକେନ୍ଦ୍ରିକରଣର ସୂଚନା ଦେଉଥିଲା । ଦୃଷ୍ଟାନ୍ତ ସ୍ୱରୂପ, ସୌରାଷ୍ଟ୍ର ବା କାଥିଆୱାଡ଼ରେ ସ୍ଥାନୀୟ ବୀରଙ୍କ ଉପରେ ବହୁଳ ଭାବରେ ନିର୍ଭର କରାଯାଉ । ଯେଉଁଠାରେ ଯୁଦ୍ଧ ହେଉଥିଲା, ସେଠାରେ ମୃତ ଯୋଦ୍ଧାମାନଙ୍କର ସ୍ମରଣରେ ହୁଏତ ଏକତ୍ର ଭାବରେ ବହୁ ସ୍ମୃତିଫଳକ ନିର୍ମାଣ କରାଯାଉଥିଲା । କୃଷିଭିତ୍ତିକ ସମାଜ ସହିତ ସମ୍ଭବତଃ ପଶୁପାଳକମାନଙ୍କର ସମ୍ପୃକ୍ତି ପଶୁମାନଙ୍କ ଉପରେ ଅତର୍କିତ ଆକ୍ରମଣର ସୂଚନା ଦିଏ । ଦ୍ୱାଦଶ ଶତାବ୍ଦୀରୁ ରାଜସ୍ଥାନ ଏବଂ ଗୁଜରାଟର ଅନେକ ଅଞ୍ଚଳରେ ବୀରମାନଙ୍କ ସ୍ମୃତିଫଳକ ଓ ସତୀ ସ୍ମାରକୀ ନିର୍ମାଣ ଏକ ସାଧାରଣ ଘଟଣା ଥିଲା । ବୀରଗଲ ବା ବୀର ସ୍ମୃତିଫଳକ

ମଧ୍ୟରୁ ଅନେକଗୁଡ଼ିକର ଯୁଦ୍ଧସହ ସମ୍ପର୍କ ରହିଥିଲା । ପଥରର ଏଇ ସ୍ମୃତିଫଳକଗୁଡ଼ିକରେ ସ୍ୱାଭାବିକ ଶୈଳୀରେ ବୀରମାନଙ୍କର ଗୁଣ କିମ୍ବା କେଉଁ ଘଟଣାରେ ତାଙ୍କର ମୃତ୍ୟୁ ହୋଇଥିଲା ତାହା ଲେଖାଯାଉଥିଲା । ଶୈଳୀ ଦୃଷ୍ଟିରୁ ସେଗୁଡ଼ିକ ଉପମହାଦେଶର ସ୍ମୃତିଫଳକ ଠାରୁ ଭିନ୍ନ ଥିଲା । କେତେଗୁଡ଼ିଏ ବୀରଗଲ ଚାରିଖୁଣ୍ଟ ବିଶିଷ୍ଟ ବର୍ଗାକୃତି ଆକାରର ଥିଲା । ଅନ୍ୟ କେତେକ ଉର୍ଦ୍ଧ୍ୱମୁଖୀ ସ୍ଲାବ ବା ମେନହୀର ଥିଲା ଯାହାକୁ ଗୁଜରାଟରେ ପାଲୟା କହନ୍ତି । କେଉଁଠି କେଉଁଠି ଓଟର ମୂର୍ତ୍ତି କୌଣସି ଓଟ-ବ୍ୟବସାୟୀଙ୍କ ଉପରେ ଆକ୍ରମଣର ସୂଚନା ପ୍ରଦାନ କରେ । ରାଜସ୍ଥାନରେ ଅଭିଲେଖଗୁଡ଼ିକରେ ଅନେକ ସମୟରେ ନାମ ଲେଖାଯାଉଥିଲା ଓ ଅନ୍ୟ କେତେକରେ ଘଟଣାର ତାରିଖ ମଧ୍ୟ ରହିଥିଲା । ଉପମହାଦେଶର ବହୁ ସ୍ଥାନରେ ଏଭଳି ସ୍ମୃତିଫଳକ ନିର୍ମିତ ହୋଇଥିବାର ଦେଖାଯାଏ । ଏଗୁଡ଼ିକ ଅରଣ୍ୟ ଅଞ୍ଚଳରେ ମିଳୁଥିବା ସ୍ମୃତିଫଳକଗୁଡ଼ିକର ଅନୁକରଣରେ ଗଢ଼ିଉଠିଥିଲା । ଏହି 'ମେନହୀର' ବା ଉର୍ଦ୍ଧ୍ୱମୁଖୀ ପ୍ରସ୍ତର ସ୍ତମ୍ଭଗୁଡ଼ିକର ନିର୍ମାଣ ମହାପାଷାଣିକ ସମାଜରେ ପ୍ରଚଳିତ ଥିଲା ବୋଲି ଅନୁମାନ କରାଯାଏ ।

ବୀରଗଲ ବା ବୀରମାନଙ୍କର ସ୍ମୃତିସ୍ତମ୍ଭ ସହିତ ଜଡ଼ିତ ଥିଲା ସତୀଙ୍କର ସ୍ମୃତି । ଚୂଡ଼ି ଥିବା ଡାହାଣ ହାତର ପ୍ରତୀକ ବିବାହିତ ଅବସ୍ଥାରେ ସତୀତ୍ୱକୁ ସୂଚିତ କରୁଥିଲା । ପାପୁଲିରେ କିଛି ସୂକ୍ଷ୍ମ ଚିହ୍ନ ସହିତ ଥିବା ଗୋଟିଏ ଲେମ୍ବୁ ଅନିଷ୍ଟକାରୀ ଜିନିଷକୁ ଦୂରରେ ରଖିବାର ପ୍ରତୀକ । ବୀର ସ୍ମୃତିଫଳକରେ ସୂର୍ଯ୍ୟ ଓ ଚନ୍ଦ୍ରର ଚିହ୍ନ ଥିଲା, ଯାହା ଚିରନ୍ତନତାର ପ୍ରତୀକ । ପ୍ରଥମରେ ଜଣେ କ୍ଷତ୍ରିୟ ବୀର ଯୁଦ୍ଧକ୍ଷେତ୍ରରେ ମୃତ୍ୟୁବରଣ କଲେ, ଉକ୍ତ କ୍ଷତ୍ରିୟ ବୀରଙ୍କ ପତ୍ନୀ ସତୀ ଭାବରେ ମୃତ୍ୟୁବରଣ କରିବାର ପ୍ରଥା ଥିଲା । ପରବର୍ତ୍ତୀ ସମୟରେ ଏହି ପ୍ରଥା ଅନ୍ୟ ଜାତିର ଲୋକେ ଗ୍ରହଣ କଲେ ଓ ତାହା ବ୍ୟାପକ ସ୍ୱୀକୃତି ଲାଭ କଲା । ଶେଷରେ ସତୀଙ୍କୁ ଦେବୀ କୁହାଗଲା । ସେଇ ସମୟରୁ ସୌରାଷ୍ଟ୍ରର ଓ୍ୱଧବାନ ନାମକ ସ୍ଥାନରେ ବୀର ସ୍ମୃତିଫଳକ ପରିବେଷ୍ଟିତ ଏକ ପ୍ରାଙ୍ଗଣରେ ସତୀ ସ୍ମୃତିସ୍ତମ୍ଭ ଦେବୀ ଭାବରେ ପୂଜିତ ହେଉଛି ।

ବୀର ସ୍ମୃତିସ୍ତମ୍ଭ ଓ ସତୀସ୍ତମ୍ଭ ପ୍ରଧାନତଃ ସ୍ମାରକ ଭାବରେ ରହିଥିଲା । ତାହା ରାଜସ୍ୱ ଆୟ ଓ ସମାଜରେ ଉଚ୍ଚସ୍ଥାନ ପାଇବାର ଅଭିଳାଷର ମଧ୍ୟ ପରିଚାୟକ ଥିଲା । ବୀର ଓ ସତୀମାନଙ୍କର ପରିବାର ଶାସକମାନଙ୍କଠାରୁ କିଛି ଲାଭ ଉଠାଇବା ଓ ଉଚ୍ଚ ବର୍ଣ୍ଣରେ ପରିଗଣିତ ହେବାର ସୁଯୋଗ ନେଉଥିଲେ । ବୀରମାନେ ନିଜ ଗ୍ରାମ ଓ ଗ୍ରାମବାସୀଙ୍କୁ ସୁରକ୍ଷା ଦେବାକୁ ଯାଇ କିମ୍ବା ଦସ୍ୟୁମାନଙ୍କଠାରୁ ନିଜକୁ ରକ୍ଷା କରିବାକୁ ଯାଇ ବା ଯୁଦ୍ଧରେ ମୃତ୍ୟୁବରଣ କରୁଥିଲେ । କିନ୍ତୁ ସତୀମାନଙ୍କର ମୃତ୍ୟୁ ଉଦ୍ଦେଶ୍ୟମୂଳକ ଥିଲା । ସମାଜରେ ଉଚ୍ଚବର୍ଗର ନାରୀଙ୍କଠାରୁ ଏହା ଆଶା କରାଯାଉଥିଲା । ସତୀ ହେବା ଏକ ସ୍ୱତଃପ୍ରବୃତ୍ତ କାର୍ଯ୍ୟ ଥିଲା ନା ବଞ୍ଚିଥିବା ପରିବାରବର୍ଗଙ୍କ ଦ୍ୱାରା ପାର୍ଥିବ ଲାଭ ସକାଶେ ତାକୁ ସମାହିତ

କରାଯାଉଥିଲା, ତାହା ବିତର୍କିତ । ଅଧିକାଂଶ ବୀର ସ୍ମୃତିସ୍ତମ୍ଭ ଯେଉଁଠାରେ ଗଢ଼ା ହୋଇଥିଲା ସେହିଠାରେ ହିଁ ଥିଲା । ଆଉ କେତେକ ସୁନ୍ଦର ବେଢ଼ାରେ ପୁନଃ ସ୍ଥାପିତ ହୋଇଥିଲା । ଏହାଦ୍ୱାରା ସ୍ମରଣୀୟ ବ୍ୟକ୍ତିଙ୍କର ଗୌରବ ବୃଦ୍ଧି ପାଉଥିଲା । କେତେକ ବୀର ସ୍ତମ୍ଭ ପୂଜାସ୍ଥଳର ରୂପ ନେଲା । ମନ୍ଦିର ଓ ପୂଜାର ଉଦ୍ଦେଶ୍ୟ ଥିଲା ଦାନ-ଅନୁଦାନ ଓ ଉପହାର ପ୍ରାପ୍ତି । ପୁଣି ଏହାଦ୍ୱାରା ବ୍ୟକ୍ତିକୁ ଦେବରୂପ ଦିଆଯାଇ ପାରୁଥିଲା ।

## ମଧ୍ୟ-ଏସୀୟ ହସ୍ତକ୍ଷେପ

ଉତ୍ତର-ପଶ୍ଚିମ ସୀମାପାରିରୁ ଉତ୍ତର ଭାରତ ଉପରେ ଆକ୍ରମଣ କିଛିଦିନ ପାଇଁ ସ୍ଥଗିତ ରହିଲା । ଭାରତୀୟ ସମାଜରେ ଶ୍ରଦ୍ଧାସ୍ପଦ ଜାତି ହେବାପରେ ହୁନ୍‌ମାନଙ୍କର ଆକ୍ରମଣର ପ୍ରଭାବ କ୍ରମଶଃ ଫିକା ହୋଇଥିଲା । ଆରବମାନଙ୍କର ଅନୁପ୍ରବେଶ ରହିତ ହେଲା । କିଛି ସମୟ ପାଇଁ ଉତ୍ତର ଭାରତର ଯୁଦ୍ଧ ଏବଂ ଅଭିଯାନ କେବଳ ଆଭ୍ୟନ୍ତରୀଣ ଥିଲା । ବିରାମହୀନ ଅନ୍ତର୍ଯୁଦ୍ଧ ପ୍ରତ୍ୟେକ ରାଜବଂଶର ସଞ୍ଚିତ ଅର୍ଥ ଓ ଶକ୍ତିକୁ ଗ୍ରାସ କଲା । ବିଜୟ ସାମାଜିକ ପ୍ରତିଷ୍ଠା ପ୍ରତିପାଦନ କରିବା ନିମିତ୍ତ ଉଦ୍ଦିଷ୍ଟ ଥିଲା । ମଧ୍ୟଯୁଗୀୟ ବଡ଼ ଜମିଦାର ନିମନ୍ତେ କ୍ଷମତାରୁ ମୁକ୍ତ ହୋଇ ସ୍ୱାଧୀନତା ବଜାୟ ରଖିବା ପାଇଁ ସାମରିକ କ୍ଷମତାର ଆବଶ୍ୟକତା ପଡ଼ିଲା । ସେମାନେ ସ୍ଥାନୀୟ ଘଟଣା ସହ ଜଡ଼ିତ ରହିବା ଯୋଗୁଁ ବାହାର ଜଗତ ସହ ସମ୍ପର୍କ ଅଧିକ ସଂକୁଚିତ ହେଲା । ସ୍ଥାନୀୟ ଘଟଣା ରାଜନୀତିରେ ପ୍ରାଧାନ୍ୟ ଲାଭ କଲା । ସେ ଯାହାହେଉ, ଏକାଦଶ ଶତାବ୍ଦୀରେ ଏହି ଧାରାରେ ବ୍ୟାଘାତ ଘଟିଲା । ଉପମହାଦେଶରେ ଅଭିଯାନଗୁଡ଼ିକ ମଧ୍ୟରେ ପୂର୍ବ ଉପକୂଳ ଅଞ୍ଚଳରେ ରାଜେନ୍ଦ୍ର ଚୋଳଙ୍କର ଅଭିଯାନ ଥିଲା ସବୁଠାରୁ ଭୟଙ୍କର । ଚୋଳ ସେନାବାହିନୀ ଉତ୍ତରରେ ଗଙ୍ଗା ପର୍ଯ୍ୟନ୍ତ ମାଡ଼ିଯାଇଥିଲେ । ଉପମହାଦେଶ ବାହାରୁ ଗଜନୀର ମାମୁଦ ଉତ୍ତର-ପଶ୍ଚିମ ଭାରତରେ ଆକ୍ରମଣ ଆରମ୍ଭ କଲେ । ଏ ଦୁହେଁ ପରସ୍ପର ପାଇଁ ଅପରିଚିତ ଥିଲେ । ଏଣିକି ଆଗ ଅପେକ୍ଷା ଅଧିକ ଖବର ସରବରାହ ହେଲା । ମାମୁଦଙ୍କ ଆକ୍ରମଣ ଦୁଇ ଦଶନ୍ଧି ଧରି ଚାଲିଥିଲା । ଦକ୍ଷିଣ ଭାରତର ଅନେକ ସ୍ଥାନର ଅଭିଲେଖରୁ ଜଣାଯାଏ ଯେ, ସେଠାରେ ବ୍ୟବସାୟ-ବାଣିଜ୍ୟ ଯଥାବତ୍ ଚାଲିଥିଲା । ତେଣୁ ଯୋଗାଯୋଗର ସୁବିଧା ବଢ଼ିଲା ।

ପାରସ୍ୟ-ବିଜୟ ଆରବମାନଙ୍କୁ ସୁଦୂର ଉତ୍ତରକୁ ନେଇଗଲା । ଏହି କ୍ଷେତ୍ର ଆମୁଦରିଆ ଭାବେ ପରିଚିତ ଥିଲା । ତୁର୍କମାନଙ୍କୁ ଦମନ କରିବାପାଇଁ ସେମାନେ (ଆରବମାନେ) ସୀମାନ୍ତରେ ବସତିମାନ ପ୍ରତିଷ୍ଠା କଲେ । ଏହି କିସମର ବସତି ସ୍ଥାପନ ତୁର୍କମାନଙ୍କୁ ଇସ୍‌ଲାମ ଧର୍ମକୁ ଧର୍ମାନ୍ତରିତ କରିବାରେ ସହାୟତା କଲା । ଯଦିଓ ଉକ୍ତ

କ୍ଷେତ୍ରରେ ଆରବମାନଙ୍କର କ୍ଷମତା ହ୍ରାସ ପାଇଥିଲା । ଆରମ୍ଭରୁ ଧର୍ମାନ୍ତରଣ ପ୍ରକ୍ରିୟା ଖୁବ୍ ମନ୍ଥର ଥିଲା । କାରଣ ତୁର୍କମାନେ ବୌଦ୍ଧଧର୍ମ ଓ ବିଭିନ୍ନ ପ୍ରକାର ମଧ୍ୟ-ଏସୀୟ ସମନ୍ ଧର୍ମକୁ ସମର୍ଥନ କରୁଥିଲେ । ଇସ୍‌ଲାମ ଧର୍ମକୁ ଧର୍ମାନ୍ତରଣ ଏବଂ ବିଶେଷକରି ସୁନ୍ନୀ ଇସ୍‌ଲାମକୁ ଧର୍ମାନ୍ତରଣ ଅବ୍ୟାହତ ଥିଲା । ସେ ସମୟରେ ଆରବମାନେ ପଶ୍ଚିମ ଏସିଆରେ ଇସ୍‌ଲାମୀୟ ଶକ୍ତି ସାହାଯ୍ୟରେ ନୂଆ ଶକ୍ତିଶାଳୀ ରାଜ୍ୟ ଗଢ଼ିବାପାଇଁ ଚେଷ୍ଟା କରୁଥିଲେ । ଦୁଇଟି ଆଦର୍ଶକୁ ନେଇ ମଧ୍ୟ-ଏସିଆର ରାଜନୀତି ଓ ଧର୍ମୀୟ ଇତିହାସ ପ୍ରଭାବିତ ହୋଇଥିଲା । ତୁର୍କମାନେ ଇସ୍‌ଲାମ ଶକ୍ତିକୁ ଆଦର୍ଶ ବୋଲି ଗ୍ରହଣ କରିବା ଓ ସେଥିପାଇଁ ଅନ୍ୟମାନେ ସେମାନଙ୍କୁ ବିରୋଧ କରିବା । ମୁସ୍‌ଲିମ୍ ଜଗତରେ ତୁର୍କମାନେ ପୂର୍ବାଞ୍ଚଳରେ କ୍ରମେ ନିଜର ଆଧିପତ୍ୟ ବିସ୍ତାର କଲେ । ରେଶମ ମାର୍ଗରେ (Silk route) ଥିବା ମରୁଦ୍ୟାନ ସହରର ବ୍ୟବସାୟୀ ଗୋଷ୍ଠୀର ଇସ୍‌ଲାମକୁ ଧର୍ମାନ୍ତରୀକରଣ କରିବା ଦ୍ୱାରା ଇସ୍‌ଲାମ ଧର୍ମକୁ ପୃଷ୍ଠପୋଷକତା ମିଳିଲା । ଯଦିଓ କିଛି ଅଞ୍ଚଳରେ ବୌଦ୍ଧଧର୍ମ ଗୌଣ ସ୍ଥିତିରେ ରହିଥିଲା, ତଥାପି ପୂର୍ବକାଳର ବୌଦ୍ଧଧର୍ମ ପରି ଇସ୍‌ଲାମ ଏଣିକି ତା'ର ଭୂମିକା ନିର୍ବାହ କଲା । ଅଧିକନ୍ତୁ, ଇରାନରୁ ନିର୍ବାସିତ କିଛି ଜୋରାଷ୍ଟ୍ରୀୟାନ ଚୀନ୍ ସୀମାନ୍ତରେ ବସତି ସ୍ଥାପନ କଲେ । ସେମାନଙ୍କର ଜୀବିକା ନିଃସନ୍ଦେହରେ ବାଣିଜ୍ୟ ଥିଲା । ମଧ୍ୟ-ଏସିଆରେ ଇହୁଦୀ-ବ୍ୟବସାୟୀଙ୍କର ଆଗମନର ମଧ୍ୟ ପ୍ରମାଣ ରହିଛି । ସେମାନେ ନବମ ଶତାବ୍ଦୀରେ ଭୂମଧ୍ୟସାଗରୀୟ ବାଣିଜ୍ୟରେ ପ୍ରଥମେ ଖ୍ୟାତ ଥିଲେ । ସେତେବେଳେ ସେମାନଙ୍କ ଯୋଗୁଁ ଦକ୍ଷିଣ ଭାରତ ସହ ବାଣିଜ୍ୟିକ ସମ୍ପର୍କରେ ଉନ୍ନତି ଘଟିଥିଲା ।

କହିବାକୁ ଗଲେ, ଆରମ୍ଭରୁ ତୁର୍କ ଶାସକମାନଙ୍କ ଅଧୀନରେ ବେଶ୍ କିଛି ସଂଖ୍ୟକ କ୍ଷୁଦ୍ର ରାଜ୍ୟର ଅଭ୍ୟୁଦୟ ଘଟିଲା । ସେଗୁଡ଼ିକ ମଧ୍ୟରୁ ଗଜନୀରୁ ଶାସିତ ହେଉଥିବା ରାଜ୍ୟ ମାମୁଦଙ୍କ ସମୟରେ ପ୍ରସିଦ୍ଧି ଅର୍ଜନ କରିଥିଲା । ଆଫଗାନିସ୍ଥାନର ଗୋଟିଏ କ୍ଷୁଦ୍ର ରାଜ୍ୟ ଗଜନୀ 977 ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ହେଲା । ସେତେବେଳେ ଜଣେ ଅଭିଜାତ ବଂଶଜ ତୁର୍କ ବ୍ୟକ୍ତି ମଧ୍ୟ-ଏସିଆକୁ ଲାଗିଥିବା କିଛି ଅଞ୍ଚଳ ସହିତ ଶାହିୟ ରାଜ୍ୟର ସିନ୍ଧୁ-ଅବବାହିକା ଅଞ୍ଚଳ ଅଧିକାର କଲେ । ତାଙ୍କ ପୁତ୍ର ମାମୁଦ ଇସ୍‌ଲାମ ଜଗତ ଓ ମଧ୍ୟ-ଏସିଆର, ରାଜନୀତିରେ ଗଜନୀକୁ ଏକ ଶକ୍ତିକେନ୍ଦ୍ର ରୂପେ ପରିଣତ କରିବାକୁ ସ୍ଥିର କଲେ । ଇସ୍‌ଲାମର ସର୍ବଶ୍ରେଷ୍ଠ ବ୍ୟକ୍ତି ଭାବରେ ନିଜକୁ ପ୍ରତିଷ୍ଠିତ କରିବାର ତାଙ୍କର ଇଚ୍ଛା ଥିଲା ଓ ସେଥିରେ ସେ ସଫଳ ମଧ୍ୟ ହୋଇଥିଲେ । ତାଙ୍କ ପାଇଁ ଭାରତ ଥିଲା ଏକ ସୁନ୍ଦର ଦେଶ । ଏହା ହିନ୍ଦୁକୁଶର ଅନୁର୍ବର ପର୍ବତମାଳାରୁ ଦେଖିଲେ ଖୁବ୍ ବିତ୍ତଶାଳୀ ଓ ଆକର୍ଷଣୀୟ ମନେହେଉଥିଲା । ହିନ୍ଦୁ ମନ୍ଦିରଗୁଡ଼ିକ ଉପରେ ଆକ୍ରମଣ କରି ସେ ପ୍ରଚୁର ଧନସମ୍ପତ୍ତି ଲୁଣ୍ଠନ କରିଥିଲେ । ସେ

ଜଣେ ହିନ୍ଦୁ-ମୂର୍ତ୍ତି ବିଧ୍ୱଂସୀ ଭାବରେ ପରିଚିତ ଥିଲେ । ତାଙ୍କର ଏହି କାର୍ଯ୍ୟରେ ସଫଳତାକୁ ନେଇ ଅଧିକ ଅନୁସନ୍ଧାନର ଆବଶ୍ୟକତା ରହିଛି ।

ପଶୁପାଳକ ସମାଜ କୃଷିଭିତ୍ତିକ ସମାଜ ପରି ଭାରତ ଇତିହାସରେ ବହୁ ସମୟରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି ଓ ଏହି ଦୁଇ ସମାଜର ପାରସ୍ପରିକ ସମ୍ପୃକ୍ତି ଐତିହାସିକ ପରିବର୍ତ୍ତନକୁ ପ୍ରୋତ୍ସାହିତ କରିଛି । ମଧ୍ୟ-ଏସିଆ ପରି ଆଫଗାନିସ୍ତାନରେ ରାଜନୈତିକ ଆକାଂକ୍ଷା ଓ ବହୁପ୍ରକାର ଦ୍ରବ୍ୟର ବିନିମୟରେ ହେଉଥିବା ଲାଭ ପ୍ରତି ଲୋଭ ପଶୁପାଳକମାନଙ୍କୁ ବ୍ୟବସାୟ ବାଣିଜ୍ୟ ଆଡ଼କୁ ଆକର୍ଷିତ କଲା । ଏହା ପଶୁପାଳକ ସମାଜକୁ ସାମରିକ ଶକ୍ତିରେ ମଧ୍ୟ ରୂପାନ୍ତରିତ କଲା । ଉତ୍ତର ଭାରତରେ ମଧ୍ୟ-ଏସିଆର ହସ୍ତକ୍ଷେପ ପଛରେ ଏହା ଏକ କାରଣ ହେବ । ତୁର୍କମାନେ ଆସିଲା ପରେ ଏହାର ପୁନରାବୃତ୍ତି ହେଲା । ଶତାବ୍ଦୀ ଶତାବ୍ଦୀ ଧରି ଚାଲିଥିବା ବ୍ୟବସାୟ ବାଣିଜ୍ୟ ଏହି ଦୁଇ ଅଞ୍ଚଳ ଭିତରେ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନ କରୁଥିଲା । ବୌଦ୍ଧଧର୍ମ ଭଳି କିଛି ପୁରାତନ ସାଂସ୍କୃତିକ ପରମ୍ପରା ଉଭୟଙ୍କ ମଧ୍ୟରେ ପ୍ରଚଳିତ ଥିଲା । ମାତ୍ର ତୁର୍କମାନେ ଇସ୍‌ଲାମ ଧର୍ମ ଗ୍ରହଣ କଲାପରେ ଉକ୍ତ ପରମ୍ପରାରୁ ଓହରିଗଲେ । ତା ସତ୍ତ୍ୱେ ଉଭୟ ତୁର୍କ ଓ ଭାରତୀୟ ପରସ୍ପର ପାଇଁ ଅପରିଚିତ ନଥିଲେ ।

ଭାରତକୁ ଆସିଥିବା ପରିଦର୍ଶକମାନେ ପ୍ରତିହାରମାନଙ୍କର ବିରାଟ ସେନାବାହିନୀର କଥା ଲେଖିଛନ୍ତି ଓ ରାଷ୍ଟ୍ରକୂଟମାନଙ୍କୁ ପୃଥିବୀର ପ୍ରସିଦ୍ଧ ସମ୍ରାଟମାନଙ୍କ ମଧ୍ୟରେ ସ୍ଥାନ ଦେଇଛନ୍ତି । ଏପରି ବର୍ଣ୍ଣନା ହୁଏତ ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳରୁ ଆସୁଥିବା ବାହାର ଶକ୍ତି ମନରେ ଉତ୍ତେଜନା ସୃଷ୍ଟି କରିଥାଇପାରେ । ସେହି ସମୟରେ ଆଫଗାନିସ୍ଥାନର ରାଜନୀତି ଭାରତ ଅପେକ୍ଷା ମଧ୍ୟ-ଏସିଆ ସହିତ ଅଧିକ ନିବିଡ଼ ଥିଲା । ମାମୁଦଙ୍କ ପରିପ୍ରେକ୍ଷୀରେ ବିଚାର କଲେ ଆକ୍ରମଣ କେବଳ ଧନସମ୍ପଦ ଲୁଣ୍ଠନ କରିବା ଉଦ୍ଦେଶ୍ୟରେ ହେଉଥିଲା । ତା'ର କୌଣସି ଦୀର୍ଘସ୍ଥାୟୀ ମହତ୍ତ୍ୱ ନଥିଲା । ଅନ୍ୟ ଦିଗରେ ଆରବମାନଙ୍କ ଭାରତ ଅଭିଯାନ ଭାରତରେ ସ୍ଥାୟୀ ବସବାସ କରିବା ସହିତ ସ୍ଥାନୀୟ ଅର୍ଥନୀତିରେ ଅଂଶଗ୍ରହଣ କରିବା ଅଭିପ୍ରାୟରେ ହୋଇଥିଲା । ତୁର୍କ ଏବଂ ଆରବମାନଙ୍କ ପ୍ରତି ଭାରତୀୟମାନଙ୍କର ମନୋଭାବ ସମାନ ନଥିଲା । ଉଭୟଙ୍କ ପ୍ରତି ବୈରଭାବ ଓ ସହନଶୀଳତାର ପରିମାଣ ସମାନ ନଥିଲା । ବାହାରୁ ଆସିଥିବା ଲୋକମାନଙ୍କ ଯୋଗୁଁ ସମାଜର ଢାଞ୍ଚାରେ ପୂର୍ବରୁ ମଧ୍ୟ ଏହିପରି ପରିବର୍ତ୍ତନମାନ ଘଟିଥିବ ।

ଚୀନ୍ ଏବଂ ଭୂମଧ୍ୟସାଗର ଅଞ୍ଚଳ ଭିତରେ କ୍ରମାଗତ ବାଣିଜ୍ୟ ବ୍ୟବସାୟ ଚାଲିବା ଯୋଗୁଁ ଉତ୍ତର ଭାରତ ଅପେକ୍ଷା ତୁର୍କୀସ୍ତାନ ଓ ଖ୍ୱାରଜ୍‌ମ୍ (Khwarazm)ରେ ରାଜନୈତିକ କ୍ଷମତା ପାଇବାପାଇଁ ଆଗ୍ରହ ବୃଦ୍ଧି ହେଲା । ଇରାନ ଓ ମଧ୍ୟ-ଏସିଆର କିଛି ଅଂଶ ଗଜନୀ

ଶାସନର ଅନ୍ତର୍ଭୁକ୍ତ ଥିଲା ଓ ପୂର୍ବାଞ୍ଚଳରେ ଏକ ଇସ୍‌ଲାମୀୟ ଶକ୍ତି ଭାବରେ ତାହା ପରିଗଣିତ ହେଉଥିଲା । ଭାରତ ଆକ୍ରମଣ ପରେ ମାମୁଦ ଅଧିକ କ୍ଷୀପ୍ରଗତିରେ ମଧ୍ୟ-ଏସିଆ ଅଭିଯାନ କଲେ । ଧାର୍ମିକ ପରମ୍ପରା ଓ ପ୍ରତିମୂର୍ତ୍ତି ଧ୍ୱଂସ କରିବା ଭିନ୍ନ ଗଜନୀ କୋଷାଗାରକୁ ସମୃଦ୍ଧ କରିବାପାଇଁ ଭାରତର ସହରଗୁଡ଼ିକୁ ସେ ଲୁଣ୍ଠନ କରୁଥିଲେ ।

ଏହି ଲୁଣ୍ଠନ ପ୍ରାୟ ସେ ପ୍ରତିବର୍ଷ କରୁଥିଲେ । ଖ୍ରୀ 1000 ରେ ସେ ଶାହିୟ ରାଜା ଜୟପାଳଙ୍କୁ ପରାସ୍ତ କଲେ । ତା ପରବର୍ଷ ଗଜନୀର ଦକ୍ଷିଣକୁ ସେଇସ୍ତାନ (Seistan)ରେ ସେ ସାମରିକ କାର୍ଯ୍ୟକଳାପ ଚଳାଇଥିଲେ । ସିନ୍ଧର ପ୍ରବେଶପଥ ତଥା ମଧ୍ୟ-ସିନ୍ଧୁ ସମତଳ ଭୂମିର ଗୁରୁତ୍ୱପୂର୍ଣ୍ଣ ସହର ମୁଲତାନ ଉପରେ 1004–1006 ଖ୍ରୀଷ୍ଟାବ୍ଦ ମଧ୍ୟରେ ବାରମ୍ବାର ଆକ୍ରମଣ ହୋଇଥିଲା । ପାରସ୍ୟ ଉପସାଗର ଓ ପଶ୍ଚିମ ଭାରତ ସହିତ ଲାଭଜନକ ବ୍ୟବସାୟ-ବାଣିଜ୍ୟ ପାଇଁ ମୁଲତାନ କେନ୍ଦ୍ରସ୍ଥଳ ଥିଲା । ବ୍ୟବସାୟୀମାନଙ୍କ ଦ୍ୱାରା ରକ୍ଷଣାବେକ୍ଷଣ କରାଯାଉଥିବା ବିଖ୍ୟାତ ସୂର୍ଯ୍ୟମନ୍ଦିରରେ ବହୁ ଧନ ଗଚ୍ଛିତ ଥିବା ମାମୁଦ ଦେଖିପାରିଥିଲେ । ସେଇ ସହରର ଧନୀ ସିୟା ମୁସଲମାନଙ୍କ ଦ୍ୱାରା ପରିଚାଳିତ ମସ୍‌ଜିଦକୁ ମଧ୍ୟ ମାମୁଦ ଅପବିତ୍ର କରିବାକୁ ଚାହୁଁଥିଲେ । କାରଣ ସେ ଜଣେ କଠୋରବାଦୀ ସୁନ୍ନୀ ମୁସଲିମ୍ ଥିଲେ । ସେ ସିୟା ଓ ଇସ୍‌ମାଇଲମାନଙ୍କୁ ଧର୍ମବିରୋଧୀ ବୋଲି ଭାବୁଥିଲେ । ତାଙ୍କର ଧ୍ୱଂସର ଇତିହାସ ହିସାବକୁ ନେଲେ, ସେ 50,000 ବିଧର୍ମୀ ଓ ସମାନ ସଂଖ୍ୟକ ଅନ୍ୟ ମତାବଲମ୍ବୀ ମୁସ୍‌ଲିମଙ୍କୁ ହତ୍ୟା କରିଥିବାର ପ୍ରମାଣ ମିଳେ । ଅବଶ୍ୟ ଏଇ ସଂଖ୍ୟାରେ ଅତିଶୟୋକ୍ତି ଥାଇପାରେ ।

1008 ଖ୍ରୀଷ୍ଟାବ୍ଦରେ ମାମୁଦ ପୁନର୍ବାର ପଞ୍ଜାବ ଆକ୍ରମଣ କଲେ ଓ ପ୍ରଚୁର ଧନସମ୍ପଦ ନେଇ ଗଜନୀ ଫେରିଲେ । ତା' ପରବର୍ଷ ସେ ଘୁର (ଗଜନୀ ଓ ଆଫଗାନିସ୍ତାନର ହେରାତ୍ ମଧ୍ୟବର୍ତ୍ତୀ ଅଞ୍ଚଳ) ଶାସକଙ୍କ ସହିତ ଯୁଦ୍ଧରେ ଲିପ୍ତ ରହିଲେ । ତାଙ୍କର ସୈନ୍ୟବାହିନୀ ନିଶ୍ଚୟ କ୍ଷୀପ୍ର ଓ କୁଶଳୀ ଥିଲେ । ତା' ନ ହୋଇଥିଲେ ପ୍ରତିବର୍ଷ ଏହିପରି ବାରମ୍ବାର ଆକ୍ରମଣ କରି ସେ ସଫଳ ହୋଇ ନ ଥାନ୍ତେ । ଯୋଜନା ମୁତାବକ ତାଙ୍କର ସୈନ୍ୟଦଳ ଭାରତରେ ଫସଲ କାଟିବା ଋତୁରେ ଓ ବର୍ଷାକାଳର ବହୁ ପୂର୍ବରୁ ପ୍ରବେଶ କରୁଥିଲେ । ଏହାଦ୍ୱାରା ଖାଦ୍ୟ ଯୋଗାଣ ବ୍ୟବସ୍ଥା ଉପରେ ନିର୍ଭରଶୀଳତା ହ୍ରାସ ପାଇଲା ଓ ସୈନ୍ୟସାମନ୍ତଙ୍କର ଗତିବେଗ ବୃଦ୍ଧି ପାଇଲା । ମାମୁଦଙ୍କର ଲକ୍ଷ୍ୟ ଥିଲା ଧନସମ୍ପଦପୂର୍ଣ୍ଣ ମନ୍ଦିର । ଏହି ଲୁଣ୍ଠନ ତାଙ୍କୁ ଯଥେଷ୍ଟ ଧନସମ୍ପଦ ଦେଲା ଓ ତାଙ୍କୁ ଜଣେ ମୂର୍ତ୍ତି ବିଧ୍ୱଂସୀ ଭାବେ ପରିଚିତ କଲା । ହିନ୍ଦୁ ଶାସକମାନଙ୍କ ଦ୍ୱାରା ମଧ୍ୟ କେବେ କେବେ ମନ୍ଦିର ଧ୍ୱଂସ ହେଉଥିଲା । ମାତ୍ର ମାମୁଦ୍‌ଙ୍କର ମନ୍ଦିର ଧ୍ୱଂସ ଏକ ନିୟମିତ ଘଟଣା ଥିଲା ଓ ପୂର୍ବାପେକ୍ଷା ଏହା ଅଧିକ ମାରାତ୍ମକ ଥିଲା ।

ମନ୍ଦିରଗୁଡ଼ିକ ରାଜକୀୟ ଅନୁଦାନ ଦ୍ୱାରା ନିର୍ମିତ ହେଉଥିଲା । ସେଗୁଡ଼ି ନ ଓ ଭୂସମ୍ପତ୍ତିରୁ ରାଜସ୍ୱ ଆଦାୟ କରି ପରିଚାଳିତ ହେଉଥିଲା । ଅନ୍ୟ ସମାଜର ଧର୍ମୀୟ ସୌଧ, ଗୀର୍ଜା ଓ ମସ୍‌ଜିଦ ପରି ମନ୍ଦିରଗୁଡ଼ିକରେ ମଧ୍ୟ ବିଭିନ୍ନ ପ୍ରକାର କାର୍ଯ୍ୟ ହେଉଥିଲା । ଧର୍ମ ଓ ଭକ୍ତିସ୍ଥଳ ଭାବରେ ମୁଖ୍ୟତଃ ମନ୍ଦିରଗୁଡ଼ିକ କାର୍ଯ୍ୟ କରୁଥିଲା । ବିଶେଷକରି ଏହା ଏକ ନିର୍ଦ୍ଦିଷ୍ଟ ଧାର୍ମିକ ସମ୍ପ୍ରଦାୟ ବା ଦେବଦେବୀଙ୍କ ପାଇଁ ନିର୍ମିତ ହେଉଥିଲା । ପ୍ରାୟତଃ ଏଠି ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ ହେଉଥିଲା । ଏହା ପୃଷ୍ଟପୋଷକଙ୍କର କ୍ଷମତାର ପରିଚାୟକ ଥିଲା । ମନ୍ଦିର ଥିଲା ଉଦାର ପୃଷ୍ଟପୋଷକତାର ପ୍ରତୀକ । ଯେଉଁମାନେ ଏହା ପରିଦର୍ଶନ କରୁଥିଲେ, ସେମାନଙ୍କ ଉପରେ ମଧ୍ୟ ଏହି ବିଚାରକୁ ଲଦି ଦିଆଯାଉଥିଲା । ସେଥିପାଇଁ ବେଳେବେଳେ ମନ୍ଦିର ଧ୍ୱଂସ ହେବାଦ୍ୱାରା ବିଜୟ ଇତିହାସ ଲିପିବଦ୍ଧ ହେଉଥିଲା । ଯେତେବେଳେ ରାଷ୍ଟ୍ରକୂଟ ରାଜା ଇନ୍ଦ୍ର ତୃତୀୟ ଦଶମ ଶତାବ୍ଦୀରେ ପ୍ରତିହାରମାନଙ୍କୁ ପରାଜିତ କରିଥିଲେ, ସେତେବେଳେ କଳ୍ପରେ ଥିବା ଗୋଟିଏ ପ୍ରତିହାର ମନ୍ଦିରକୁ ଧ୍ୱଂସ କରି ସେ ନିଜର ବିଜୟ ପ୍ରତିଷ୍ଠା କରିଥିଲେ । ଚାଲୁକ୍ୟମାନେ ଜୈନମାନଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ । ମାଲୱାର ପରମାର ରାଜା ସୁଭଟବର୍ମା ଚାଲୁକ୍ୟମାନଙ୍କୁ ପରାଜିତ କରିବା ପରେ ଉକ୍ତ ମନ୍ଦିରକୁ ତଥା ଆରବମାନଙ୍କ ମସ୍‌ଜିଦ୍‌କୁ ଧ୍ୱଂସ କରିଥିଲେ । ଜୈନ ଓ ଆରବମାନେ ଉଭୟେ କିଛି ପରିମାଣରେ ବ୍ୟବସାୟୀ ଥିଲେ । ଏଣୁ ସେମାନେ ରାଜକୀୟ ପୃଷ୍ଟପୋଷକତା ଲାଭ କରୁଥିଲେ, ଯାହାକୁ ପରମାର ରାଜା ଧ୍ୱଂସ କଲେ ।

ଭୂସମ୍ପତ୍ତି ଓ ଦାନରୁ ମିଳୁଥିବା କର, ଧନୀ ବ୍ୟକ୍ତିମାନେ ଦେଇଥିବା ସୁନା ତଥା ମୂଲ୍ୟବାନ ପଥର ଓ ହଜାର ହଜାର ତୀର୍ଥଯାତ୍ରୀଙ୍କ ଦାନରୁ ମିଳୁଥିବା ଅର୍ଥକୁ ମନ୍ଦିରଗୁଡ଼ିକ ନିୟନ୍ତ୍ରଣ କରୁଥିଲେ । ଏହିସବୁ ମିଶିଲେ ବେଶ୍ ମୋଟା ଆକାରର ଅର୍ଥ ପ୍ରାପ୍ତ ହେଉଥିଲା । କେତେକ ମନ୍ଦିର ଏହାକୁ ବ୍ୟବସାୟରେ ଲଗାଉଥିଲେ ଓ ତାହାର ଲାଭାଂଶ ମନ୍ଦିର କୋଷାଗାରକୁ ଆସୁଥିଲା । ଏହା ଲୋଭୀ ରାଜାମାନଙ୍କର ନଜରକୁ ଆସିଥିଲା । ଏହି ସମୟର କାଶ୍ମୀର ରାଜାମାନେ ମଧ୍ୟ ମନ୍ଦିର ଲୁଣ୍ଠନ କରିଥିବାର କଥା କହ୍ଲଣ ଲେଖିଥିଲେ । ତାଙ୍କ ମଧ୍ୟରୁ ଜଣେ ରାଜା ହର୍ଷଦେବ ଏହି କାର୍ଯ୍ୟ ପରିଚାଳନା ପାଇଁ ଜଣେ ସ୍ୱତନ୍ତ୍ର ଅଧିକାରୀ ନିଯୁକ୍ତ କରିଥିଲେ । କହ୍ଲଣ ତାଙ୍କ ଉଦ୍ଦେଶ୍ୟରେ 'ତୁରୁସ୍କ' (Turushka) ଶବ୍ଦ ପ୍ରୟୋଗ କରିଥିଲେ । ହିନ୍ଦୁ ଶାସକମାନେ ଯେ ମନ୍ଦିର ଲୁଣ୍ଠନ ଓ ଧ୍ୱଂସ କରୁଥିଲେ ଏଥିରୁ ତାହାର ପ୍ରମାଣ ମିଳେ । ଏହିପରି କାର୍ଯ୍ୟକଳାପ କେବଳ ତୁରସ୍କମାନଙ୍କର ବୋଲି ମନେ କରାଯାଉଥିଲା । ମାମୁଦଙ୍କର ଆକ୍ରମଣକୁ ହୁଏତ ନିନ୍ଦା କରାଯାଇପାରେ, କିନ୍ତୁ ଏହା ଅସ୍ୱାଭାବିକ ନଥିଲା । ସୋମନାଥ ମନ୍ଦିରର ଇତିହାସରୁ ଏହାଠ ପ୍ରମାଣ ମିଳେ । ପରବର୍ତ୍ତୀ ସମୟରେ ମାମୁଦ ମଧ୍ୟ ସୋମନାଥକୁ ଲୁଣ୍ଠନ କରିଥିଲେ ।

ସୁନା ପ୍ରତି ମାମୁଦଙ୍କର ଲୋଭର ସୀମା ନଥିଲା । ତେଣୁ ମନ୍ଦିର ପ୍ରଧାନ ସହରଗୁଡ଼ିକ, ଯଥା- ମଥୁରା, ଥାନେଶ୍ୱର, କନୌଜ ଏବଂ ପରିଶେଷରେ ସୋମନାଥ ଉପରେ ସେ ଆକ୍ରମଣ କଲେ । ସୋମନାଥ ମନ୍ଦିରରେ ପ୍ରଚୁର ଧନସମ୍ପଦ ଗଚ୍ଛିତ ଥିଲା । ତେଣୁ ମାମୁଦ ଏହାକୁ ନିଶ୍ଚୟ ଆକ୍ରମଣ କରିଥିବେ । ଧନସମ୍ପଦ ଆହରଣ ସହିତ ଧର୍ମୀୟ କାର୍ଯ୍ୟ ମଧ ମିଶିଥିଲା । କିଛି ଇସ୍‌ଲାମ ଧର୍ମାବଲମ୍ବୀଙ୍କ ପାଇଁ ପ୍ରତିମୂର୍ତ୍ତି ଧ୍ୱଂସ କରିବା ଏକ ଗୌରବାବହ କାର୍ଯ୍ୟ ଥିଲା । ମନ୍ଦିରକୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କଠାରୁ ଆଦାୟ ହେଉଥିବା କରରୁ ସୋମନାଥ ମନ୍ଦିରର ବିପୁଳ ଆୟ ହେଉଥିଲା । ସ୍ଥାନୀୟ ଅଭିଲେଖରୁ ମିଳିଥିବା ସୂଚନା ଅନୁସାରେ କିଛି ଅବିବେକୀ ଆଞ୍ଚଳିକ ରାଜା ତୀର୍ଥଯାତ୍ରୀଙ୍କଠାରୁ ବଳପୂର୍ବକ କର ଆଦାୟ କରୁଥିଲେ । ଚାଲୁକ୍ୟ ଶାସକମାନଙ୍କ ପାଇଁ ଏହାକୁ ପ୍ରତିହତ କରିବା ମୁଣ୍ଡବ୍ୟଥାର କାରଣ ହୋଇଥିଲା । ଆରବମାନଙ୍କ ସୂତ୍ରରୁ ଜଣାଯାଏ ଯେ ମନ୍ଦିରଗୁଡ଼ିକ ବ୍ୟବସାୟ ବାଣିଜ୍ୟରେ ଧନ ବିନିଯୋଗ କରି ବହୁ ଲାଭ କରୁଥିଲେ । ବାଣିଜ୍ୟ ବନ୍ଦର ବୀରାବଲ (Virabal) ସହିତ ସୋମନାଥ ସଂଲଗ୍ନ ଥିଲା । ଏହି ବ୍ୟବସାୟରେ ଘୋଡ଼ା ଆମଦାନୀ ସବୁଠାରୁ ଲାଭଜନକ ଥିଲା । ଏଥିରେ ଉଭୟ ଦଳ ଲାଭବାନ ହେଉଥିଲେ, ଯେଉଁମାନେ ଆମଦାନି କରୁଥିଲେ ଏବଂ ଯେଉଁମାନେ ସେମାନଙ୍କଠୁ ନେଇ ଅନ୍ୟ ସ୍ଥାନରେ ବିକ୍ରି କରୁଥିଲେ । ଆରବ ବ୍ୟବସାୟୀଙ୍କର ଘୋଡ଼ା ଆମଦାନୀକୁ ହ୍ରାସ କରିବାପାଇଁ ହୁଏତ ମାମୁଦ ସୋମନାଥ ମନ୍ଦିର ଆକ୍ରମଣର ପରିକଳ୍ପନା କରିଥିଲେ । ଅଭିଲେଖରେ ଲିଖିତ ସୂତ୍ରରୁ ଜଣାଯାଏ ଯେ ଏହାଫଳରେ ଗଜନୀର ବ୍ୟବସାୟୀମାନଙ୍କୁ, ଯେଉଁମାନେ ଉତ୍ତର ପଶ୍ଚିମ ଭାରତ ଅଞ୍ଚଳକୁ ଘୋଡ଼ା ଆମଦାନୀ କରୁଥିଲେ, ବହୁ ଲାଭ ମିଳିଥିଲା ।

1026 ଖ୍ରୀଷ୍ଟାବ୍ଦରେ ମାମୁଦ ସୋମନାଥ ମନ୍ଦିର ଆକ୍ରମଣ କରି ତାକୁ ନଷ୍ଟ କଲେ ଓ ପ୍ରତିମାକୁ ମଧ ଭାଙ୍ଗିଦେଲେ । ଏହି ଘଟଣାର ତୁର୍କୀ-ପାର୍ସିଆ ଓ ଆରବମାନଙ୍କ ସୂତ୍ରରେ ଉଲ୍ଲିଖିତ । ମାମୁଦଙ୍କ ଅଭିଯାନରେ ସମସାମୟିକ କିଛି ଇତିହାସ ଲେଖକ ମଧ ସହଯୋଗୀ ହୋଇଥିଲେ ବୋଲି ଦାବି କରୁଥିଲେ । ଏଇ କାହାଣୀ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଇତିହାସରେ କ୍ରମାଗତଭାବେ ବାରମ୍ବାର କୁହାଯାଇଥିଲା । ଆଲ୍‌ବେରୁନୀ ଏହି ସମ୍ପର୍କରେ ସଠିକ ମତାମତ ପ୍ରଦାନ କରନ୍ତି । ତାଙ୍କ ମତରେ ସେଠାରେ ଗୋଟିଏ ଲିଙ୍ଗ ପୂଜା ପାଉଥିଲା । ମନ୍ଦିରଟି ଶହେ ବର୍ଷର ପୁରୁଣା କୃତି ଥିଲା । ତାହା ସମୁଦ୍ରକୂଳରେ ଗୋଟିଏ ଦୁର୍ଗ ମଧରେ ଅବସ୍ଥିତ ଥିଲା । ବୀରାବଲ ବନ୍ଦରର ଚୀନ୍ ଓ ଜାଞ୍ଜିବାର ସହିତ ସାମୁଦ୍ରିକ ସମ୍ପର୍କ ଥିବା ହେତୁ ନାବିକମାନେ ଏହାକୁ ଗଭୀର ଭକ୍ତି କରୁଥିଲେ । ଅନ୍ୟ ବିବରଣୀରେ କିନ୍ତୁ ଏ ମୂର୍ତ୍ତି ସମ୍ପର୍କରେ ସହମତି ନଥିଲା । ପୂର୍ବର ବର୍ଣ୍ଣନା ଏହାକୁ ଦକ୍ଷିଣ ଆରବର ଇସ୍‌ଲାମ ପୂର୍ବବର୍ତ୍ତୀ ଦେବୀ

ମନାତ (Manat) ଭାବରେ ଚିତ୍ରଣ କରାଯାଇଛି । ଧର୍ମ ପ୍ରବର୍ତ୍ତକ ମହମ୍ମଦ ଏହାକୁ ଧ୍ୱଂସ କରିବାକୁ ତଥା ପ୍ରତିମାକୁ ଭାଙ୍ଗିଦେବାକୁ ଚାହିଁଥିଲେ । କିନ୍ତୁ ଅନ୍ୟମାନେ ଏହାକୁ ଲିଙ୍ଗ ବୋଲି ଉଲ୍ଲେଖ କରିଛନ୍ତି । ପୁଣି ଅନେକ ମତ ଦିଅନ୍ତି ଯେ ଏହା ଗୋଟିଏ ରତ୍ନଖଚିତ ମାନବ ଆକାର ବିଶିଷ୍ଟ ପ୍ରତିମା ଥିଲା । କ୍ରମଶଃ ଏହି ମନ୍ଦିର ଓ ପ୍ରତିମାକୁ କେନ୍ଦ୍ରକରି ଭିନ୍ନ ଭିନ୍ନ ପୌରାଣିକ ଉପାଖ୍ୟାନ ଗଢ଼ିଉଠିଲା । ତ୍ରୟୋଦଶ ଶତାବ୍ଦୀର ଏକ ଆରବ ସୂତ୍ର ଏ ସମ୍ପର୍କରେ ଭିନ୍ନ ମତପୋଷଣ କରେ । ତା'ର ବର୍ଣ୍ଣନା ଅନୁଯାୟୀ ଏହି ମନ୍ଦିର ଓ ପ୍ରତିମାକୁ ନେଇ ବହୁ କଳ୍ପ କାହାଣୀ ରଚିତ । ପାଠକଙ୍କ ଉପରେ ଗଭୀର ପ୍ରଭାବ ପକାଇବା ପାଇଁ ଏପରି କରାଯାଇଥିବା ମନେହୁଏ । ବର୍ଣ୍ଣନାକୁ ତଳେ ଉଦ୍ଧାର କରାଗଲା :

*''ସୋମନାଥ ସମୁଦ୍ରକୂଳରେ ତରଙ୍ଗ ବିଧୌତ ଭାରତର ଗୋଟିଏ ପ୍ରସିଦ୍ଧ ସହର ଥିଲା ! ସେଠାରେ ଗୋଟିଏ ମନ୍ଦିରରେ ସୋମନାଥ ପ୍ରତିମା ପୂଜା ପାଉଥିଲା । ଅତି ଆଶ୍ଚର୍ଯ୍ୟ ଭାବରେ ତାହା ନିମ୍ନରୁ ବା ଉର୍ଦ୍ଧ୍ୱରୁ ବିନା ଆଶ୍ରୟରେ ମନ୍ଦିରର ମଧ୍ୟଭାଗରେ ସ୍ଥାପିତ ଥିଲା । ଏହାକୁ ହିନ୍ଦୁମାନେ ଖୁବ୍ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ମୁସଲମାନ ହେଉ ବା କାଫିର ଯେ କେହି ଏଇ ମୂର୍ତ୍ତିକୁ ଶୂନ୍ୟରେ ଭାସମାନ ଅବସ୍ଥାରେ ଦର୍ଶନ କରୁଥିଲେ ସେ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ । ହିନ୍ଦୁମାନେ ଚନ୍ଦ୍ରଗ୍ରହଣ ସମୟରେ ଏହି ସ୍ଥାନକୁ ତୀର୍ଥଯାତ୍ରା କରୁଥିଲେ ଏବଂ ଲକ୍ଷ ଲକ୍ଷ ସଂଖ୍ୟାରେ ସମବେତ ହେଉଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ ତାଙ୍କର ଆତ୍ମା ମୃତ୍ୟୁ ପରେ ମରଶରୀରରୁ ଅଲଗା ହୋଇ ସେଠାରେ ମିଳିତ ହେବ ଓ ସେହି ଦେବତାଙ୍କ ମୂର୍ତ୍ତି ଇଚ୍ଛାନୁସାରେ ଜନ୍ମାନ୍ତରବାଦ ଅନ୍ୟ ଶରୀରରେ ତାହାକୁ ସ୍ଥାପନ କରିବେ । ସମୁଦ୍ରର ଜୁଆର ଓ ଭଟ୍ଟାକୁ ଦେବତାଙ୍କ ଅର୍ଘ୍ୟ ମନେ କରାଯାଉଥିଲା । ସବୁଠାରୁ ମୂଲ୍ୟବାନ ଦ୍ରବ୍ୟ ସେଠାକୁ ସମର୍ପଣ ପାଇଁ ଅଣାଯାଉଥିଲା । ଦଶହଜାର ଗ୍ରାମର ଦାନ ଏହି ମନ୍ଦିର କାର୍ଯ୍ୟରେ ବିନିଯୋଗ ହେଉଥିଲା । ସେଠାରେ ଗୋଟିଏ ନଦୀ ଥିଲା (ଗଙ୍ଗାନଦୀ) ଯାହାକୁ ପବିତ୍ର ମନେ କରାଯାଉଥିଲା । ସେହି ନଦୀ ଓ ସୋମନାଥ ମଧ୍ୟରେ ଦୂରତା ଦୁଇଶହ ଫର୍ଲଙ୍ଗ ଥିଲା । ପୂଜକମାନେ ସେହି ନଦୀରୁ ପ୍ରତିଦିନ ସୋମନାଥଙ୍କୁ ଜଳ ଆଣୁଥିଲେ । ସେଥିରେ ମନ୍ଦିର ଧୋଇ ପରିଷ୍କାର କରୁଥିଲେ । ଦେବତାଙ୍କୁ ପୂଜାର୍ଚ୍ଚନା କରିବାକୁ ଓ ଦର୍ଶନାର୍ଥୀମାନଙ୍କୁ ସହାୟତା କରିବାକୁ ଏକହଜାର ବ୍ରାହ୍ମଣ ନିଯୁକ୍ତ ହୋଇଥିଲେ । ପାଞ୍ଚଶହ ନୃତ୍ୟାଙ୍ଗନା ଦ୍ୱାର ନିକଟରେ ସଙ୍ଗୀତ ଓ ନୃତ୍ୟ ପରିବେଷଣ କରୁଥିଲେ । ମନ୍ଦିରର ଆୟରେ ଏସବୁ ଆୟୋଜନ କରାଯାଉଥିଲା । ଏହି ସୌଧ ଛପନଗୋଟି ଶାଗୁଆନ ଖମ୍ବ ଉପରେ ନିର୍ମିତ ହୋଇଥିଲା । ଖମ୍ବଗୁଡ଼ିକରେ ସୀସାର ଆବରଣ ଥିଲା । ମୂର୍ତ୍ତି ଆରାଧନାସ୍ଥଳ ଅନ୍ଧକାର ଥିଲା । କିନ୍ତୁ ମୂଲ୍ୟବାନ ରତ୍ନନିର୍ମିତ ଦୀପ ଦ୍ୱାରା ତାହା ଆଲୋକିତ ହେଉଥିଲା । ଏହା ନିକଟରେ ଦୁଇଶହ ମାଉଣ୍ଡ (Mound) ଓଜନର ସ୍ୱର୍ଣ୍ଣଶିକୁଳି ରହିଥିଲା । ଯେତେବେଳେ*

ରାତିର ଗୋଟିଏ ପ୍ରହର ଶେଷ ହେଉଥିଲା, ଏହି ଶିକୁଳିକୁ ଘଣ୍ଟା ପରି ଦୋହଲାଇ ପୂଜାର୍ଚ୍ଚନା କରିବାପାଇଁ ନୂଆ ବ୍ରାହ୍ମଣମାନଙ୍କୁ ଉଠାଯାଉଥିଲା । ଯେତେବେଳେ ସୁଲତାନ ଭାରତ ବିରୁଦ୍ଧରେ ଧର୍ମଯୁଦ୍ଧରେ ଅବତୀର୍ଣ୍ଣ ହେଲେ ସେ ସୋମନାଥ ଅଧିକାର କରିବାକୁ ଓ ତାକୁ ଧ୍ୱଂସ କରିବାକୁ ବହୁ ପରିଶ୍ରମ କରିଥିଲେ । ସେ ଆଶା କରିଥିଲେ ହିନ୍ଦୁମାନେ ମୁସଲମାନରେ ପରିଣତ ହେବେ । ସେ ସେଠାରେ (1025 ଖ୍ରୀଷ୍ଟାବ୍ଦ, ଡିସେମ୍ବର) ମଧ୍ୟଭାଗରେ ପହଞ୍ଚିଲେ । ଭାରତୀୟମାନେ ତାଙ୍କର ଗତିରୋଧରେ ବିଫଳ ହେଲେ । ସେମାନେ କାନ୍ଦି କାନ୍ଦି ସାହାଯ୍ୟ ନିମିତ୍ତ ମନ୍ଦିର ମଧ୍ୟକୁ ଗଲେ । ସେଠାରୁ ବାହାରି ସମସ୍ତେ ଯୁଦ୍ଧ କରିଥିଲେ ଓ ମୃତ୍ୟୁବରଣ କରିଥିଲେ । ଏହି ମୃତ୍ୟୁ ସଂଖ୍ୟା ପ୍ରାୟ ୫୦,୦୦୦ ବୋଲି ଅନୁମାନ କରାଯାଏ । ରାଜା ପ୍ରତିମୂର୍ତ୍ତିକୁ ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁରହିଲେ । ସେ ନଷ୍ଟ ହୋଇଥିବା ଦ୍ରବ୍ୟକୁ ସଂଗ୍ରହ କରିବାକୁ ଆଦେଶ ଦେଲେ ଓ ଧନରତ୍ନକୁ ନିଜ ଦଖଲକୁ ନେଲେ । ସେଠାରେ ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ବହୁତ ପ୍ରତିମା ଓ ବହୁ ରତ୍ନଖଚିତ ପାତ୍ର ଥିଲା । ସେଗୁଡ଼ିକୁ ଭାରତର ବହୁ ପ୍ରସିଦ୍ଧ ବ୍ୟକ୍ତିମାନେ ଦାନ କରିଥିଲେ । ମନ୍ଦିରରେ ଥିବା ଆସବାବପତ୍ର ଓ ମୂର୍ତ୍ତିଗୁଡ଼ିକର ମୂଲ୍ୟ କୋଡ଼ିଏ ହଜାର ଦିନାରରୁ ଅଧିକ ଥିଲା । ରାଜା ତାଙ୍କ ଅନୁଗତମାନଙ୍କୁ ସେଇ ପ୍ରତିମୂର୍ତ୍ତିର ଚମତ୍କାରିତା ସମ୍ପର୍କରେ କିପରି ବିନା ସାହାଯ୍ୟରେ ଶୂନ୍ୟରେ ଥିଲା – ସେ ବିଷୟରେ ପଚାରିଥିଲେ । କେହି କେହି କହିଲେ ଲୁକ୍କାୟିତ ଭାବରେ ସହାୟତା ଦିଆଯାଉଅଛି । ରାଜା ଜଣେ ବ୍ୟକ୍ତିକୁ ସେଠାକୁ ଯାଇ ତା'ର ଚତୁର୍ଦ୍ଦିଗ ସ୍ପର୍ଶକରି ଦେଖିବାକୁ ଆଦେଶ ଦେଲେ । ତା'ର ଚତୁର୍ଦ୍ଦିଗ, ଉପର ଏବଂ ତଳ ଗୋଟିଏ ବର୍ଚ୍ଛା ଦ୍ୱାରା ତନଖି କରିବାକୁ ଆଦେଶ ଦେଲେ । ତାଙ୍କ ସେବକମାନଙ୍କ ମଧ୍ୟରେ ଜଣେ ମତ ଦେଲେ ଯେ ସିଂହାସନ ଉପରେ ଖିଲାଣ ଏକପ୍ରକାର ପ୍ରସ୍ତରରେ ନିର୍ମିତ ଓ ପ୍ରତିମୂର୍ତ୍ତିଟି ଲୌହ ନିର୍ମିତ । କୌଣସି ବିଚକ୍ଷଣ ଶିଳ୍ପୀ ଅତି କୁଶଳତାର ସହିତ ଚୁମ୍ବକଟିକୁ ଏପରି ସ୍ଥାପନ କରିଛି ଯେ ତାହା କୌଣସି ଦିଗରୁ ପ୍ରତିମୂର୍ତ୍ତି ଉପରେ ଅଧିକ ବଳ ପ୍ରୟୋଗ କରିବ ନାହିଁ । ତେଣୁ ପ୍ରତିମୂର୍ତ୍ତିଟି ଶୂନ୍ୟରେ ମଧ୍ୟଭାଗରେ ରହିପାରିଛି । କେହି କେହି ଏହାକୁ ସମର୍ଥନ କଲେ ଓ କେହି କେହି ଭିନ୍ନ ମତ ଦେଲେ । ସୁଲତାନଙ୍କଠାରୁ ଆଦେଶ ଆଣି ଏହାର ସତ୍ୟାସତ୍ୟ ପାଇଁ ପଥରକୁ କାଢ଼ିବାକୁ ଚେଷ୍ଟା କରାଗଲା । ଊର୍ଦ୍ଧ୍ୱରୁ ଦୁଇଟି ପଥର ଘୁଞ୍ଚେଇଦବାରୁ ପ୍ରତିମୂର୍ତ୍ତିଟି ଗୋଟିଏ ଦିଗକୁ ଢଳିଗଲା । ଅଧିକ ପଥର ଘୁଞ୍ଚାଇବାରୁ ଅଧିକ ଢଳିଲା । ଅବଶେଷରେ ତାହା ଭୂମି ଉପରେ ପତିତ ହେଲା ।"

Al Kazwini, in H.M. Eliot and J. Dawson (Ed.)
*The History of India As Told by Its Own Historian*,
Vol. I, pp.97ff

ଏଭଳି ବର୍ଣ୍ଣନାରେ ଅନେକ କଳ୍ପନା ପ୍ରସୂତ କଥା ରହିଥାଏ । ଏହି ଐତିହାସିକ ପୃଷ୍ଠଭୂମିରେ ମାମୁଦଙ୍କୁ ଜଣେ ଲୁଣ୍ଠନକାରୀ ଓ ମୂର୍ତ୍ତିବିଧ୍ୱଂସୀ ଭାବରେ ନ ଦେଖି ଭାରତରେ ଇସ୍‌ଲାମ ଧର୍ମର ପ୍ରତିଷ୍ଠାତା ଭାବରେ ଦେଖାଯାଇଛି । ସୋମନାଥ ଲୁଣ୍ଠନର ଐତିହାସିକ ଅଧ୍ୟୟନର ଏକ ସ୍ୱତନ୍ତ୍ର ଇତିହାସ ଅଛି । ପ୍ରଚଳିତ ମତାନୁସାରେ ମାମୁଦଙ୍କର ସୋମନାଥ ଲୁଣ୍ଠନ ହିନ୍ଦୁମାନଙ୍କ ଉପରେ ଗଭୀର ମାନସିକ ଆଘାତ ଦେଇଥିଲା । ତାହା ହିନ୍ଦୁ-ମୁସଲିମ୍ ବିରୋଧଭାବ ବୃଦ୍ଧିର କାରଣ ହୋଇଥିଲା, ଯାହା ଆଜି ମଧ୍ୟ ଦେଖାଯାଏ । ସାଂପ୍ରତିକ ସମୟରେ ବା ନିକଟ ଅତୀତରେ ସୋମନାଥ ଲୁଣ୍ଠନ ସମ୍ପର୍କରେ ଏକ ଜୈନ ଗ୍ରନ୍ଥରେ ସାମାନ୍ୟ ସୂଚନା ବ୍ୟତୀତ ଅନ୍ୟ ସ୍ଥାନୀୟ ସୂତ୍ରଗୁଡ଼ିକରୁ ବିଶେଷ କିଛି ଜଣାଯାଏ ନାହିଁ । ସେ ସମ୍ପର୍କରେ କୌଣସି ଆଲୋଚନା ନ ଥିବାରୁ ସେତେବେଳର ହିନ୍ଦୁମାନଙ୍କର ପ୍ରତିକ୍ରିୟା ଜଣାପଡ଼େ ନାହିଁ । ଜୈନ ସୂତ୍ରରୁ ଜଣାଯାଏ ଯେ ଚାଲୁକ୍ୟ ରାଜା କୁମାରପାଳଙ୍କ ଦ୍ୱାରା ଏହି ମନ୍ଦିରର ପୁନର୍ନିର୍ମାଣ ହୋଇଥିଲା । ସମ୍ଭବତଃ ସ୍ଥାନୀୟ ଅଧିକାରୀମାନଙ୍କର ରକ୍ଷଣାବେକ୍ଷଣର ଅବହେଳା ହେତୁ ହେଉ କିମ୍ବା କାଳର ପ୍ରାକୃତିକ ଅବକ୍ଷୟ ହେତୁ ହେଉ ଏହା ଭାଙ୍ଗିପଡ଼ିଥିଲା ।

ଆକ୍ରମଣର ଦୁଇଶତ ବର୍ଷ ପରେ ଅର୍ଥାତ୍ ତ୍ରୟୋଦଶ ଶତାବ୍ଦୀରେ ବର୍ତ୍ତମାନ ନିର୍ମିତ ହୋଇଥିବା ମନ୍ଦିର ନିକଟବର୍ତ୍ତୀ ସ୍ଥାନରେ ସୋମନାଥରେ ବ୍ୟବସାୟ ବାଣିଜ୍ୟ କରୁଥିବା ପାରସ୍ୟ ହର୍ମୁଜର ଜଣେ ଧନୀ ଜାହାଜ ବ୍ୟବସାୟୀଙ୍କୁ ଏକ ମସ୍‌ଜିଦ ସ୍ଥାପନ କରିବା ପାଇଁ ତଥା ତା'ର ରକ୍ଷଣାବେକ୍ଷଣ ପାଇଁ ଜମିଜମା ଓ ସମ୍ପତ୍ତି କ୍ରୟ କରିବାପାଇଁ ସୋମନାଥ ସହର ଅଧିକାରୀଙ୍କଠାରୁ ଅନୁମତି ମିଳିଥିଲା । ଚାଲୁକ୍ୟ-ବାଘେଲା ଶାସନ ପକ୍ଷରୁ ଓ ସ୍ଥାନୀୟ ଠାକୁର ଓ ରଣକ (Ranakas) ବର୍ଗର ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ତଥା ଶୈବ ମନ୍ଦିର ପୁରୋହିତମାନଙ୍କଠାରୁ ଉକ୍ତ ବ୍ୟବସାୟୀଙ୍କୁ ସାହାଯ୍ୟ ସହଯୋଗ ମିଳିଥିଲା । ଶୈବ ପୁରୋହିତମାନେ ଏହି ବୁଝାମଣାରେ ଅଂଶଗ୍ରହଣ କରିବା ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । କାରଣ ମନ୍ଦିର ଭୂ-ସମ୍ପତ୍ତି ସହିତ ଆଖପାଖ ମନ୍ଦିରର ସମ୍ପତ୍ତି ମଧ୍ୟ ତାଙ୍କ କାର୍ଯ୍ୟ ପରିସରର ଅନ୍ତର୍ଭୁକ୍ତ ଥିଲା । ସୋମନାଥ ମନ୍ଦିର ଉପରେ ମାମୁଦଙ୍କର ଆକ୍ରମଣର ପ୍ରଭାବ ଚିରସ୍ଥାୟୀ ହୋଇ ନଥିଲା । ଖୁବ୍ ଶୀଘ୍ର ମନ୍ଦିର ପୁରୋହିତ ଓ ସ୍ଥାନୀୟ ବାଘେଲା ଶାସକ ଏବଂ ପାରସ୍ୟ ଓ ଆରବରୁ ଆସୁଥିବା ବଣିକମାନଙ୍କ ମଧ୍ୟରେ ବ୍ୟବସାୟ ବାଣିଜ୍ୟ ଆରମ୍ଭ ହୋଇଥିଲା । ଏହି ଆକ୍ରମଣ ସମ୍ପର୍କରେ ହିନ୍ଦୁ ଗ୍ରନ୍ଥ ନୀରବ । ବରଂ ଆଧୁନିକ ଐତିହାସିକମାନେ ଏ ନେଇ ମତାମତ ଦେଇଛନ୍ତି । କୌଣସି ମତାମତ ନ ମିଳିବା ରହସ୍ୟମୟ । ଆକ୍ରମଣ ଯୋଗୁଁ ହିନ୍ଦୁମାନେ କେମିତି ମାନସିକ ଆଘାତ ପାଇଥିଲେ, ତା'ର ଚର୍ଚ୍ଚା ଭାରତରେ ନୁହେଁ, ବରଂ ବ୍ରିଟେନ୍‌ରେ 1843 ମସିହାରେ ହାଉସ୍ ଅଫ୍ କମନ୍‌ସରେ ଗୋଟିଏ ତର୍କ ପ୍ରସଙ୍ଗରେ ଉଠିଥିଲା । ବ୍ରିଟେନ ପାର୍ଲାମେଣ୍ଟରେ ଯେତେବେଳେ ସଦସ୍ୟମାନେ କହିଥିଲେ ଯେ ସୋମନାଥ

ଉପରେ ମାମୁଦର ଆକ୍ରମଣ ଏକ ଯନ୍ତ୍ରଣାଦାୟକ ଅନୁଭୂତି ଥିଲା ଓ ପ୍ରାୟ 1000 ବର୍ଷ ଧରି ହିନ୍ଦୁମାନଙ୍କ ଉପରେ ତାହା ଗଭୀର ରେଖାପାତ କରିଥିଲା, ତା' ପରଠାରୁ ଚର୍ଚ୍ଚା ବଢ଼ିଲା ।

ମାମୁଦ ତାଙ୍କ ମୂର୍ତ୍ତିବିଧ୍ୱଂସୀ କାର୍ଯ୍ୟ ପାଇଁ ବାଗଦାଦର ଖଲିଫାଙ୍କଠାରୁ ପଦବୀ ପ୍ରାପ୍ତ ହୋଇଥିଲେ ଓ ଇସ୍‌ଲାମ ଧର୍ମର ଜଣେ ବୀର ଭାବରେ ସ୍ୱୀକୃତି ପାଇଥିଲେ । ଆଲ୍‌ବେରୁନୀଙ୍କ ମତରେ ମାମୁଦ୍ ମନ୍ଦିର ଲୁଣ୍ଠନ କରିବା ସହିତ ସ୍ଥାନୀୟ ଅର୍ଥବ୍ୟବସ୍ଥାକୁ ଧ୍ୱସ୍ତବିଧ୍ୱସ୍ତ କରିଥିଲେ । ବାରମ୍ବାର ଯୁଦ୍ଧ ଅଭିଯାନ ସହିତ ମଝିରେ ମଝିରେ ଅନେକ ପରିମାଣରେ ଅସ୍ଥିରତା ସୃଷ୍ଟି କରିବା ସେହି ସମୟରେ ଏକ ସାଧାରଣ କଥା ଥିଲା ।

ମାମୁଦ 1030 ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କଲେ । ଏହାପରେ ତାଙ୍କ ଆକ୍ରମଣର ଅନ୍ତ ଘଟିଥିଲା । ଭାରତର ଲୁଣ୍ଠିତ ଧନ କେବଳ ମାତ୍ର ତାଙ୍କର ଶକ୍ତି ପ୍ରଦର୍ଶନ ପାଇଁ ବିନିଯୋଗ ହେଉ ନଥିଲା, ବରଂ ତାଙ୍କର ନିଷ୍ଠୁର କାର୍ଯ୍ୟକଳାପ ସତ୍ତ୍ୱେ ସେ ସଂସ୍କୃତିର ପୃଷ୍ଠପୋଷକତା ମଧ୍ୟ କରୁଥିଲେ । ପାରସ୍ୟର ବିଭିନ୍ନ ଗ୍ରନ୍ଥାଗାରରୁ ଜୋରଜବରଦସ୍ତ ବହୁ ପୁସ୍ତକ ଆଣି ସେ ମଧ୍ୟ-ଏସିଆରେ ଗୋଟିଏ ଗ୍ରନ୍ଥାଗାର ସ୍ଥାପନ କରିଥିଲେ । ସେ ଗଜନୀରେ ସମସାମୟିକ ଇସ୍‌ଲାମୀୟ ସ୍ଥାପତ୍ୟକଳାର ସୂକ୍ଷ୍ମ କାରୁକାର୍ଯ୍ୟ ଖଚିତ ଏକ ମସ୍‌ଜିଦ ନିର୍ମାଣ କରିଥିଲେ । ପାରସ୍ୟର ସାଂସ୍କୃତିକ ପରମ୍ପରାର ମହତ୍ତ୍ୱ ସେ ବୁଝିଥିଲେ ଓ ତାଙ୍କ ସଭାରେ ତାହାକୁ ପ୍ରୋତ୍ସାହିତ କରୁଥିଲେ । ଇସ୍‌ଲାମ ପୂର୍ବବର୍ତ୍ତୀ ରାଜା ଓ ବୀରମାନଙ୍କୁ ନେଇ 'ସାହନାମା' ମହାକାବ୍ୟ ରଚନା କରିଥିବା ପାର୍ସୀ କବି ଫିର୍ଦ୍ଦୁସୀଙ୍କୁ ସେ ଗଜନୀକୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ମାମୁଦଙ୍କର କୃପଣତା ହେତୁ ଫିର୍ଦ୍ଦୁସୀ ଗଜନୀ ପରିତ୍ୟାଗ କରିଥିଲେ । ଖ୍ୱାର୍ଜମ ଆକ୍ରମଣ ସମୟରେ ମାମୁଦ ନିଜ ସହିତ୍ ଆଲବେରୁନୀ ନାମକ ଜଣେ ବିଦ୍ୱାନ୍‌ଙ୍କୁ ଆଣିଥିଲେ । ମଧ୍ୟ-ଏସିଆର ସମ୍ଭବତଃ ସେ ଥିଲେ ସବୁଠାରୁ ବଡ଼ ବିଦ୍ୱାନ । ଭାରତରେ 10 ବର୍ଷ ରହିବାପାଇଁ ତାଙ୍କୁ ଆଦେଶ ଥିଲା । ଭାରତକୁ ଯେତେ ପରିଦର୍ଶକ ଆସିଥିଲେ ସେମାନଙ୍କ ମଧ୍ୟରୁ ତାଙ୍କ ପୁସ୍ତକ 'ତହକୀକ୍-ଇ-ହିନ୍ଦ୍'ରେ ହିଁ ଭାରତର ଧର୍ମ, ସାମାଜିକ ବ୍ୟବସ୍ଥା, ଜ୍ଞାନ ପଦ୍ଧତି ଓ ସର୍ବୋପରି ଭାରତୀୟ ସମାଜ ବ୍ୟବସ୍ଥାର ପର୍ଯ୍ୟବେକ୍ଷଣ ସମ୍ଭବତଃ ଅଧିକ ଅନ୍ତର୍ଦୃଷ୍ଟିପୂର୍ଣ୍ଣ ଥିଲା ।

ଐତିହାସିକ ରଚନାରେ ରାଜନୈତିକ ଘଟଣାବଳୀକୁ ପ୍ରାଧାନ୍ୟ ଦିଆଯିବା ଫଳରେ ବିଭିନ୍ନ ସମାଜରେ ପାରସ୍ପରିକ ସହଯୋଗିତାରୁ ହୋଇଥିବା ଦୀର୍ଘସ୍ଥାୟୀ କାର୍ଯ୍ୟକଳାପ ସମ୍ବନ୍ଧରେ ଅନେକ କଥା ଲୁଚିଯାଇଥିଲା । ବାଗଦାଦର ଖଲିଫାଙ୍କ ରାଜସଭାରେ ଭାରତୀୟ ଗଣିତଜ୍ଞ, ଜ୍ୟୋତିର୍ବିଦ୍ ଓ ଚିକିତ୍ସାଶାସ୍ତ୍ର ନିପୁଣ ବ୍ୟକ୍ତିମାନେ ଥିଲେ । ଆରବ ବିଜ୍ଞାନରେ ସେମାନେ ଭାରତୀୟ ସଂଖ୍ୟା ଦଶମିକର ଧାରଣାକୁ ପରିଚିତ କରାଇଥିଲେ । ତେଣିକି

ତାହାର ବ୍ୟବହାର ୟୁରୋପକୁ ଯାଇଥିଲା । ଭାରତୀୟ ଚିକିତ୍ସାବିଦ୍ୟାର ଜ୍ଞାନ ଓ ଆରବର ପଣ୍ଡିତମାନଙ୍କ ଦ୍ୱାରା ଗ୍ରୀକ୍ ଚିକିତ୍ସା ପଦ୍ଧତିର ପୁନରୁଦ୍ଧାର ଯୋଗୁଁ ଏକ ନୂତନ ଚିକିତ୍ସା ବିଜ୍ଞାନର ଧାରା ସୃଷ୍ଟିହେଲା । ପୃଥିବୀର ବିଭିନ୍ନ ଅଞ୍ଚଳରେ ବିସ୍ତୃତ ଦାର୍ଶନିକ ଆଲୋଚନା ମାଧ୍ୟମରେ ଏହି ଜ୍ଞାନର ବିନିମୟ ଘଟିଲା । ମୂର୍ତ୍ତି-ଧ୍ୱଂସ ଓ ଲୁଣ୍ଠନ ବ୍ୟତୀତ ମାମୁଦ ଓ ତାଙ୍କ ଉତ୍ତରାଧିକାରୀମାନଙ୍କର ଉତ୍ତର-ପଶ୍ଚିମ ଭାରତ ନିୟନ୍ତ୍ରଣ କରିବା ପଛରେ ଅନ୍ୟ ଏକ କାରଣ ଥିଲା । ଏହା ଥିଲା – ଭାରତ ଓ ଆଫଗାନିସ୍ଥାନ, ଇରାନ ଓ ମଧ୍ୟ-ଏସିଆ ମଧ୍ୟରେ ବାଣିଜ୍ୟ ବ୍ୟବସ୍ଥାକୁ ଅଧିକାର କରିବା । ଏଥିପାଇଁ ମାମୁଦ ଇସ୍‌ଲାମ ଧର୍ମବିଶ୍ୱାସର କେତେକ ବିପରୀତ କାର୍ଯ୍ୟ ମଧ୍ୟ କରିଥିଲେ । ଲାହୋରରେ ମୁଦ୍ରିତ ହେଉଥିବା ତାଙ୍କ ମୁଦ୍ରାରେ ଆରବୀ ଓ ସଂସ୍କୃତ ଉଭୟ ଭାଷାରେ ଲେଖା ଖୋଦିତ ହୋଇଥିଲା । କୋରାନ୍‌ର ପ୍ରାରମ୍ଭରୁ ଥିବା ପ୍ରାର୍ଥନା ଏଠି ଲେଖା ହୋଇଥିଲା ଓ ସଂସ୍କୃତରେ ତା'ର ଅନୁବାଦ କରାଯାଇଥିଲା : ପୃଥିବୀରେ ଜଣେ ଭଗବାନ ଅଛନ୍ତି ଏବଂ ମହମ୍ମଦ ତାଙ୍କର ଅବତାର । ଏହି ଚିନ୍ତାଧାରାକୁ ରକ୍ଷଣଶୀଳ ଇସ୍‌ଲାମ ଧର୍ମାବଲମ୍ବୀମାନେ ଗ୍ରହଣ କରୁ ନଥିଲେ । ସେମାନେ ମହମ୍ମଦଙ୍କୁ କେବଳ ପୈଗମ୍ବର ଅର୍ଥାତ୍ ଆଲ୍ଲାଙ୍କର ଦୂତ ଭାବରେ ଗ୍ରହଣ କରିଥିଲେ । ତାଙ୍କ ଉତ୍ତରାଧିକାରୀମାନଙ୍କ ମୁଦ୍ରାରେ ଲକ୍ଷ୍ମୀଙ୍କର ଆକୃତିର ଅନୁକରଣ ରହିଥିଲା । ସ୍ଥାନୀୟ ମୁଦ୍ରାର ପ୍ରଭାବରେ ଏହା ହୋଇଥିଲା ।

ମାମୁଦଙ୍କ ଆକ୍ରମଣ ଭାରତୀୟ ଶାସକମାନଙ୍କୁ ପଶ୍ଚିମ ଓ ମଧ୍ୟ-ଏସିଆର ପରିବର୍ତ୍ତିତ ରାଜନୀତି ସମ୍ପର୍କରେ ସଚେତନ କରିପାରି ନଥିଲା । ତୁର୍କମାନେ ଏହି ସମୟରେ ଏକ ନିରବଚ୍ଛିନ୍ନ ଐତିହାସିକ ଧାରାର ଅଂଶ ଭାବରେ ପରିଗଣିତ ହେଲେ । ପୂର୍ବରୁ ସାମରିକ ଅଭିଯାନ ଯୋଗୁଁ ସେମାନେ ବିରକ୍ତିକର ପରିସ୍ଥିତିର ଏକ ଉତ୍ସ ଭାବରେ ପରିଗଣିତ ହେଉଥିଲେ । ଆକ୍ରମଣର ଶିକାର ରାଜପୁତ୍ ଶାସକମାନଙ୍କୁ ନେଇ ଗୋଟିଏ ସ୍ଥାୟୀ ରାଷ୍ଟ୍ରୀୟ ସଂଘ ଗଢ଼ାଗଲା । ପ୍ରଥମରୁ ଶାହିୟ ରାଜ୍ୟକୁ କିଛି ସାହାଯ୍ୟ ଦିଆଗଲା । ପରେ 1043 ମସିହାରେ ଗଜନୀ ଦ୍ୱାରା ପରାଜିତ ହୋଇ ହରାଇଥିବା କିଛି ଅଞ୍ଚଳକୁ ଜୟକରି ଫେରାଇ ଆଣିବାର ଉଦ୍ୟମ ହେଲା । ଗଜନୀର ବାରମ୍ବାର ଆକ୍ରମଣ ଯୋଗୁଁ ପଞ୍ଜାବ ଅଞ୍ଚଳକୁ ଅଧିକାର କରିବାପାଇଁ ବହୁ ଦାବିଦାର ବାହାରିଲେ । କାରଣ ଏହା ଗାଙ୍ଗେୟ ସମତଳ ଅଞ୍ଚଳକୁ ଆକ୍ରମଣ କରିବାପାଇଁ ଭିତ୍ତିଭୂମି ଯୋଗାଉଥିଲା । ସ୍ଥାନୀୟ ଶାସକମାନେ ସେମାନଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱରେ ଲିପ୍ତ ହେଲେ ଏବଂ 100 ବର୍ଷ ପରେ ଗଜନୀ ଓ ଘୋରୀମାନଙ୍କ ମଧ୍ୟରେ ଯୁଦ୍ଧ ହେତୁ ତାହା ବନ୍ଦ ହେଲା । ମହମ୍ମଦ ଘୋରୀଙ୍କର ନେତୃତ୍ୱରେ ଦ୍ୱାଦଶ ଶତାବ୍ଦୀରେ ଯେତେବେଳେ ତୃତୀୟଥର ପାଇଁ ଆକ୍ରମଣ ହେଲା, ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳର ରାଜ୍ୟଗୁଡ଼ିକ ଏହାର ମୁକାବିଲା ପାଇଁ ପ୍ରସ୍ତୁତ ନଥିଲେ ।

ଭାରତର ଅନ୍ୟ ସ୍ଥାନମାନଙ୍କରେ ସ୍ଥାନୀୟ ରାଜନୀତି ମୁଖ୍ୟ ଚର୍ଚ୍ଚାର ବିଷୟ ଥିଲା । ମାମୁଦ କନୌଜ ଆକ୍ରମଣ କରିଥିଲେ ସୁଦ୍ଧା ଗାଙ୍ଗେୟ ସମତଳ ଅଞ୍ଚଳ ପଞ୍ଜାବ ପରି ଆକ୍ରମଣର ଆଘାତ ଅନୁଭବ କରି ନଥିଲା । କନୌଜର ଖୁବ୍‌ଶୀଘ୍ର ପୁନରୁଦ୍ଧାର ହୋଇଥିଲା ଓ ତାହା ସ୍ଥାନୀୟ ଗହଦବଲ (Gahadavala) ରାଜବଂଶର ନିୟନ୍ତ୍ରଣକୁ ଆସିଲା । ବିହାର କର୍ଣ୍ଣାଟକ-କ୍ଷତ୍ରିୟ ରାଜବଂଶ ଦ୍ୱାରା ଶାସିତ ହେଉଥିଲା । ସେ ସମୟର ଅଭିଲେଖରୁ ପ୍ରମାଣ ମିଳେ ଯେ ଉପମହାଦେଶର ବିଭିନ୍ନ ଅଞ୍ଚଳର ବହୁ ଅଧିକାରୀ ପୂର୍ବ ଭାରତରେ ନିଯୁକ୍ତି ପାଇଥିଲେ । କେହି କେହି କ୍ଷୁଦ୍ର ରାଜ୍ୟ ମଧ୍ୟ ସ୍ଥାପନା କରିଥିଲେ । ବଙ୍ଗଳା ସେନ ବଂଶର ଅଧିକାରରେ କିଛିଦିନ ପାଇଁ ବିକାଶ ଲାଭ କରିଥିଲେ । କିନ୍ତୁ ପରିଶେଷରେ ଏହା ତୁର୍କୀ ସୈନ୍ୟବାହିନୀର କବଳକୁ ଆସିଥିଲା ।

ଏକାଦଶ ଓ ଦ୍ୱାଦଶ ଶତାବ୍ଦୀରେ ରାଜପୁତ୍‌ମାନେ ପରସ୍ପର ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ଥିଲେ । ରାଜ୍ୟ ଅଧିକାର କରିବା ଏକ ବିପଦପୂର୍ଣ୍ଣ କାର୍ଯ୍ୟ ଥିଲା । ପୁଣି ରାଜ୍ୟ ଅଧିକାର ପାଇଁ ପ୍ରତିଯୋଗିତାର ଶେଷ ନଥିଲା । ଯୁଦ୍ଧ ଥିଲା ଏକ ସାଧାରଣ ଘଟଣା । ଏହା ରାଜପୁତ୍ ସମାଜର ପୁରୁଷପ୍ରାଧାନ୍ୟ ବିଚାରକୁ ବୃଦ୍ଧି କଲା । ପରମାରମାନେ ମାଳୱାରେ ସେମାନଙ୍କର ନିୟନ୍ତ୍ରଣକୁ ଅଧିକ ଜୋର୍ ଦେଲେ । ଚାଲୁକ୍ୟ ବା ସୋଲାଙ୍କୀମାନେ ଅନହିଲପତ୍ତନ (Anahilapattana)କୁ ରାଜଧାନୀ କରି ଗୁଜରାଟରେ ରହିଲେ । ଚାଣ୍ଡେଲାମାନେ ନିଜକୁ ପରମାର ଓ କାଲଚୁରିମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ବ୍ୟସ୍ତ ରଖିଲେ ଏବଂ ଚୌହାନମାନେ ଦ୍ୱାଦଶ ଶତାବ୍ଦୀରେ ସେମାନଙ୍କୁ ଆକ୍ରମଣ କଲେ । ମେୱାର ଏବଂ ଦକ୍ଷିଣ ରାଜସ୍ଥାନରେ ଗୁହିଲାମାନଙ୍କର ଆଧିପତ୍ୟ ଥିଲା । କଚ୍ଛପଘଟ (Kachachhapa-ghatas)ମାନେ ଗୋଆଲିଅର ଏବଂ ଆଖପାଖ ଅଞ୍ଚଳରେ ଶାସନ କଲେ ।

ଦିଲ୍ଲୀ ଅଞ୍ଚଳରେ ତୋମର ରାଜ୍ୟ ଅଧିକାର କରିଥିବା ଚୌହାନମାନଙ୍କର କ୍ଷମତା ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସ୍ଥିର ଥିଲା । ଚୌହାନ ବଂଶର ଶେଷ ରାଜା ତୃତୀୟ ପୃଥ୍ୱୀରାଜ ଜଣେ ରୋମାଣ୍ଟିକ ବୀର ଥିଲେ । କନୌଜ ରାଜାଙ୍କର କନ୍ୟାଙ୍କୁ ପ୍ରେମ ନିବେଦନ କରି ସେଥିରେ ସେ ଜୟୀ ହୋଇଥିଲେ । କିଛି ଶତାବ୍ଦୀ ପରେ ଚାରଣକବି ଚାନ୍ଦ ବର୍ଦାଇ (Chand Bardai) 'ପୃଥ୍ୱୀରାଜରାସୋ' ନାମକ ଏକ ଦୀର୍ଘ ମହାକାବ୍ୟ ରଚନା କରିଥିଲେ । ସେଥିରେ ବହୁ ଘଟଣା ମଧ୍ୟରେ ଏହି କାହାଣୀର ମଧ୍ୟ ମହାକାବ୍ୟାତ୍ମକ ଢଙ୍ଗରେ ବର୍ଣ୍ଣନା ରହିଅଛି । କନୌଜ ରାଜାଙ୍କ କନ୍ୟାର ବିବାହ କରିବାର ଥିଲା । ରାଜକନ୍ୟାର ବିବାହ ପାଇଁ ଏକ ସ୍ୱୟମ୍ବର ସଭା ଆୟୋଜିତ ହୋଇଥିଲା । ସେଠାରେ ବହୁ ଯୋଗ୍ୟ ପ୍ରାର୍ଥୀ ଯୋଗ ଦେଇଥିଲେ । ତାଙ୍କ ପିତା ଆଶା କରିଥିଲେ ଯେ ସଭାରେ ତାଙ୍କ କନ୍ୟା ସେମାନଙ୍କ ମଧ୍ୟରୁ ଜଣକୁ ବରଣ କରିବେ । କିନ୍ତୁ ରାଜକନ୍ୟା ବୀର ପୃଥ୍ୱୀରାଜଙ୍କଠାରେ ନିଜ ହୃଦୟକୁ ସମର୍ପଣ

କରିସାରିଥିଲେ । ଦୁର୍ଭାଗ୍ୟବଶତଃ ପୃଥ୍ୱୀରାଜ ତାଙ୍କ ପିତାଙ୍କର ଶତ୍ରୁ ଥିଲେ । ତେଣୁ କନୌଜର ସ୍ୱୟମ୍ବର ସଭାକୁ ତାଙ୍କୁ ନିମନ୍ତ୍ରଣ କରାଯାଇ ନଥିଲା, ବରଂ ତାଙ୍କୁ ଅପମାନିତ କରିବାପାଇଁ ତାଙ୍କର ଗୋଟିଏ ପ୍ରତିମୂର୍ତ୍ତି ସଭାର ଦ୍ୱାରଦେଶରେ ଦ୍ୱାରପାଳ ବେଶରେ ସ୍ଥାପିତ କରାଯାଇଥିଲା । ସମସ୍ତଙ୍କୁ ଆଶ୍ଚର୍ଯ୍ୟଚକିତ କରି କନୌଜର ରାଜକନ୍ୟା ସମବେତ ରାଜପୁତ୍ରମାନଙ୍କୁ ପ୍ରତ୍ୟାଖ୍ୟାନ କରି ସେହି ପ୍ରତିମୂର୍ତ୍ତି ଗଳାରେ ବରଣମାଳା ପ୍ରଦାନ କଲେ । ସଭାସଦ୍‌ଗଣ ଘଟଣା କ'ଣ ଜାଣିବା ପୂର୍ବରୁ ନିକଟରେ ଲୁଚିରହିଥିବା ପୃଥ୍ୱୀରାଜ ରାଜକନ୍ୟାଙ୍କୁ ଘୋଡ଼ାରେ ବସାଇ ରାଜକନ୍ୟାଙ୍କୁ ନିଜ ରାଜ୍ୟକୁ ନେଇଗଲେ ଓ ବିବାହ କଲେ । କିନ୍ତୁ ସେମାନେ ସୁଖରେ ରହିପାରିଲେ ନାହିଁ । ଉତ୍ତର ପଶ୍ଚିମରୁ ମହମ୍ମଦ ଘୋରୀଙ୍କ ଆକ୍ରମଣ ଦ୍ୱାରା ତାଙ୍କର ଏହି ସୁଖ ଧୂଳିସାତ୍ ହୋଇଥିଲା ଓ ପରେ ସେ ମୃତ୍ୟୁବରଣ କରିଥିଲେ ।

## ତୁର୍କ ଶାସନର ଆଗମନ

ମହମ୍ମଦ ଘୋରୀ ଗୋମଲ ଗିରିପଥ ଦେଇ ସିନ୍ଧୁ ସମତଳ ଅଞ୍ଚଳରେ ପ୍ରବେଶ କଲେ । ସେ ଲୁଟତରାଜ କରିବା ଅପେକ୍ଷା ଗୋଟିଏ ସମ୍ପ୍ରସାରିତ ରାଜ୍ୟର ସନ୍ଧାନ କରୁଥିଲେ । 1182 ଖ୍ରୀଷ୍ଟାବ୍ଦ ବେଳକୁ ସିନ୍ଧୁର ଶାସକମାନେ ତାଙ୍କର ସାର୍ବଭୌମତ୍ୱ ସ୍ୱୀକାର କଲେ । ଉପର ସିନ୍ଧୁ ସମତଳ ଅଞ୍ଚଳ ଓ ପଞ୍ଜାବ ଅଧିକାର ଫଳରେ ତାଙ୍କର ରାଜସ୍ୱ ବୃଦ୍ଧି ପାଇଲା । ଯାହାକୁ ସେ ଆଫଗାନସ୍ତାନରେ ସହଜରେ ଆଦାୟ କରିପାରିଲେ ।

ସାମରିକ ଅଭିଯାନ କରି ମହମ୍ମଦ ଲାହୋର ଅଧିକାର କଲେ ଓ ଭାରତରେ ଅଧିକ ରାଜ୍ୟଜୟ କରିବାର ସ୍ୱପ୍ନ ଦେଖିଲେ । ପଶ୍ଚିମ ଗାଙ୍ଗେୟ ସମତଳ ଭୂମି ଓ ଜଳ ବିଭାଜିକାକୁ ନିୟନ୍ତ୍ରଣ କରୁଥିବା ରାଜପୁତ୍ ରାଜ୍ୟକୁ ସେ ଆକ୍ରମଣ କଲେ, ଯାହା ସୀମା ଭାବରେ କାର୍ଯ୍ୟ କଲା । ରାଜପୁତ୍‌ମାନେ ସେମାନଙ୍କର ପାରସ୍ପରିକ ଈର୍ଷା ଓ ପ୍ରତିଦ୍ୱନ୍ଦ୍ୱିତା ନ ଭୁଲିଲେ ମଧ୍ୟ ଯଥାସମ୍ଭବ ଏକଜୁଟ ହେଲେ । ପୃଥ୍ୱୀରାଜ 1191 ଖ୍ରୀଷ୍ଟାବ୍ଦରେ ଦିଲ୍ଲୀର ଉତ୍ତରରେ ତରାଇ (Terain) ଠାରେ ପ୍ରଥମ ଯୁଦ୍ଧରେ ମହମ୍ମଦ ଘୋରୀଙ୍କୁ ପରାସ୍ତ କଲେ । ମହମ୍ମଦ ନିଜର ଶକ୍ତି ଦୃଢ଼ୀଭୂତ କଲେ । 1192 ରେ ସେହି ସ୍ଥାନରେ ଦ୍ୱିତୀୟଥର ଯୁଦ୍ଧ ହେଲା । ପୃଥ୍ୱୀରାଜ ପରାସ୍ତ ହେଲେ ଓ ମହମ୍ମଦ ଦିଲ୍ଲୀ ଅଧିକାର କଲେ । ପରେ ସେ ଚାପ ପ୍ରୟୋଗ କରି ସେନାପତି କୁତବୁଦ୍ଦିନ ଆଇବାକଙ୍କ ସାହାଯ୍ୟରେ ରାଜପୁତ୍ ରାଜ୍ୟଗୁଡ଼ିକର ରାଜ୍‌ଧାନୀ ଦଖଲ କରିବା ଉପରେ ଜୋର୍ ଦେଲେ । ଆଉ ଜଣେ ସେନାପତି ମହମ୍ମଦ ବକ୍ତିୟାର ଖିଲଜୀ ପୂର୍ବଦିଗକୁ ଅଗ୍ରସର ହେଲେ ଓ ବଙ୍ଗଳାର ସେନ (Sena) ରାଜାଙ୍କୁ ପରାସ୍ତ କଲେ । 1206 ଖ୍ରୀଷ୍ଟାବ୍ଦରେ ମହମ୍ମଦଙ୍କୁ ହତ୍ୟା କରାଯାଇଥିଲେ ମଧ୍ୟ ଭାରତରେ

ତୁର୍କୀ ଶାସନର ଅବସାନ ହୋଇ ନଥିଲା । ମହମ୍ମଦ ଭାରତରେ ତାଙ୍କର ଦଖଲକୁ ସ୍ଥାୟୀ ରଖିବାପାଇଁ ବଦ୍ଧପରିକର ଥିଲେ । ତାଙ୍କର ଉତ୍ତରାଧିକାରୀମାନେ ମଧ୍ୟ ଉତ୍ତର ଭାରତରେ ଶାସନ କରିବାକୁ ସମାନ ଆକାଂକ୍ଷା ରଖିଥିଲେ ।

ଘୋରୀ ସୈନ୍ୟବାହିନୀର ସଫଳତାର ଅନେକ କାରଣ ଥିଲା । ପୂର୍ବରୁ ହଠାତ୍ ଆକ୍ରମଣ କରି ଅନ୍ତର୍ହିତ ହେବା ରାଜନୈତିକ ବିପଦ ଅପେକ୍ଷା କ୍ରୋଧର ଉଦ୍ରେକ କରୁଥିଲା । ଏହି ପ୍ରକାରର କାର୍ଯ୍ୟ ପ୍ରାୟତଃ ସୀମା ଆଖପାଖିରେ ସଂଘଟିତ ହେଉଥିଲା । ଘୋରୀଙ୍କ ଆକ୍ରମଣର ଉଦ୍ଦେଶ୍ୟ ଅନେକ ଦିନଯାଏଁ ଭାରତୀୟ ଶାସକମାନେ ବୁଝିପାରି ନଥିଲେ । ସେମାନେ ଏହାକୁ ପୂର୍ବ ଆକ୍ରମଣର ଏକ ଧାରା ଭାବରେ ଭାବିଥିଲେ । କିନ୍ତୁ ବାସ୍ତବରେ ତାହା ନଥିଲା । ଘୋରୀ ରାଜ୍ୟ ପ୍ରତିଷ୍ଠା କରିବାର ସମ୍ଭାବନା ଖୋଜୁଥିଲେ । ଘୋରୀଙ୍କର ସୈନ୍ୟବାହିନୀ ସୀମାପାରି ଭାରତୀୟ ଅଞ୍ଚଳରେ ଥିବା ସୈନ୍ୟ ଓ ଅଶ୍ୱବାହିନୀ ସହିତ ସମ୍ପର୍କ ସ୍ଥାପନ କରୁଥିଲେ । ତାଙ୍କ ସୈନ୍ୟମାନେ ଲୁଣ୍ଠନର ସମ୍ଭାବନାକୁ ଦେଖି ଖୁବ୍ ଆକର୍ଷିତ ହେଉଥିଲେ । ଏହା ଶୃଙ୍ଖଳିତ ସୈନ୍ୟଚାଳନାର ଧାରଣା ଉଦ୍ରେକ କରୁ ନଥିଲା । ପୂର୍ବ ଶାସକମାନେ, ଅର୍ଥାତ୍ ଯାହା ଦିଲ୍ଲୀ ସୁଲତାନ ବୋଲାଇଲା ଓ ତାଙ୍କ ଅନୁଗାମୀମାନେ, ସମ୍ଭ୍ରାନ୍ତଶ୍ରେଣୀ ଓ ଅନ୍ୟମାନେ ଥିଲେ ଧନରତ୍ନ ସନ୍ଧାନୀ ଆଫଗାନ । ମଧ୍ୟ-ଏସିଆର କିଛି ତୁର୍କ ଯେଉଁମାନେ ଆଫଗାନିସ୍ତାନରେ ସ୍ଥାୟୀଭାବେ ବସତି ସ୍ଥାପନ କରିଥିଲେ ସେମାନେ ମଧ୍ୟ ଏଥିରେ ସାମିଲ ଥିଲେ । ଯେଉଁ ସୈନ୍ୟଦଳ ସାହାଯ୍ୟରେ ସେମାନେ ଭାରତ ଆକ୍ରମଣ କରିଥିଲେ ସେଥିରେ ତୁର୍କ, ପାର୍ସୀ ଓ ଆଫଗାନ ସୈନ୍ୟ ସହିତ ଭଡ଼ାଟିଆ ସୈନ୍ୟ ମଧ୍ୟ ଥିଲେ, ଯେଉଁମାନଙ୍କ ମଧ୍ୟରୁ କିଛି ସଂଖ୍ୟାରେ ଭାରତୀୟ ଥିଲେ । ଯଦି କାଶ୍ମୀରର ରାଜାମାନେ ଭଡ଼ାରେ ତୁର୍କମାନଙ୍କୁ ସୈନ୍ୟ ଭାବରେ ନିଯୁକ୍ତି ଦେଉଥିଲେ, ଗଜନୀର ମାମୁଦ ତାଙ୍କ ସେନାବାହିନୀରେ ଭାରତୀୟ ସୈନ୍ୟ ଓ ଅଧିକାରୀକୁ ନିଯୁକ୍ତ କରି ରଖିଥିଲେ । ମାମୁଦ୍‌ଙ୍କ ସେନାପତିମାନଙ୍କ ମଧ୍ୟରୁ ଜଣେ ଥିଲେ ଭାରତୀୟ ଯାହାଙ୍କର ଯୁଦ୍ଧ କରିବାର କୌଶଳକୁ ଉଚ୍ଚକୋଟୀର ବୋଲି ମାମୁଦ୍ ଭାବୁଥିଲେ । ଗଜନୀଙ୍କ ସେନାବାହିନୀରେ ଥିବା ଭାରତୀୟ ସୈନିକମାନେ ରାଜଧାନୀର ଗୋଟିଏ ବିଶେଷ ଅଞ୍ଚଳରେ ରହିବାକୁ ସ୍ଥାନ ପାଇଥିଲେ । ସେମାନଙ୍କୁ ସର୍ବଦା ତାଲିମ ଦିଆଯାଉଥିଲା । ଏହି ଭଡ଼ାଟିଆ ସୈନ୍ୟମାନଙ୍କର ଖୁବ୍ ଚାହିଦା ରହିଥିଲା । ସବୁଆଡୁ ସେମାନଙ୍କୁ ଆକୃଷ୍ଟ କରିବାକୁ ପ୍ରୟାସ କରାଯାଉଥିଲା ।

ମଧ୍ୟ-ଏସିଆର ଉତ୍କୃଷ୍ଟ ଅଶ୍ୱ ବଳରେ ତୁର୍କୀର ଅଶ୍ୱବାହିନୀ ଶକ୍ତିଶାଳୀ ହୋଇଥିଲା । ସେମାନଙ୍କୁ ନିଜ ସୁରକ୍ଷିତ ଆସ୍ଥାନରୁ ଯୋଜନାବଦ୍ଧ ଭାବେ ହେଉଥିବା ଯୁଦ୍ଧରେ ବ୍ୟବହାର କରାଯାଉଥିଲା । ମନେହୁଏ, ଭାରତୀୟ ସେନାପତିମାନେ ଅଶ୍ୱାରୋହୀ ସୈନ୍ୟଦଳକୁ

ଠିକ୍‌ଭାବରେ କାର୍ଯ୍ୟରେ ଲଗାଇବା ସମ୍ପର୍କରେ ଦ୍ୱିଧାଗ୍ରସ୍ତ ଥିଲେ । ସେମାନଙ୍କ ଗଜାରୋହୀମାନଙ୍କ ଉପରେ ଅଧିକ ବିଶ୍ୱାସ ଥିଲା । ମାତ୍ର ଏମାନେ ମଧ୍ୟ-ଏସିଆର କ୍ଷୀପ୍ର ଅଶ୍ୱାରୋହୀମାନଙ୍କୁ ଯୁଦ୍ଧରେ ମୁକାବିଲା କରିପାରୁ ନଥିଲେ । ଘୋଡ଼ସଓ୍ୱାର ତୀରନ୍ଦାଜମାନଙ୍କ ପାଇଁ ଘୋଡ଼ା ଜିନ୍‌ରୁ ଝୁଲୁଥିବା ଧାତୁ ନିର୍ମିତ ଜଡ଼ାରେ ଠିଆହେବା ଖୁବ୍ ସହଜ ଥିଲା । ତେଣୁ ସେମାନେ ଅଧିକ କାର୍ଯ୍ୟକ୍ଷମ ହୋଇପାରୁଥିଲେ । ଭାରତୀୟ ଘୋଡ଼ସଓ୍ୱାରମାନେ ଜିନ୍‌ର ବ୍ୟବହାର ଜାଣିଥିଲେ ଓ ଅଶ୍ୱାରୋହୀର କଳାକୌଶଳ ସହ ପରିଚିତ ଥିଲେ । ହେଲେ ଅଶ୍ୱାରୋହୀ ସୈନ୍ୟବାହିନୀକୁ ବିଶେଷଭାବେ ବ୍ୟବହାର କରାଯାଉ ନଥିଲା । ଘୋଡ଼ସଓ୍ୱାର ତୀରନ୍ଦାଜମାନେ ଓଜନଦାର ମାଲ ମସଲା ନେଇପାରୁଥିଲେ, ଯାହା ସେମାନଙ୍କୁ ଭାରତୀୟ ଯୋଦ୍ଧାମାନଙ୍କର ତରବାରୀରୁ ରକ୍ଷା କରିପାରୁଥିଲା । ଭାରତୀୟମାନେ ବର୍ଚ୍ଛା ଏବଂ ତୀର ଅପେକ୍ଷା ତରବାରୀ ଅଧିକ ବ୍ୟବହାର କରୁଥିଲେ । ତୁର୍କମାନେ ମଧ୍ୟ-ଏସିଆର ରଣକୌଶଳ ଅନୁସାରେ ଯୁଦ୍ଧ କରୁଥିଲେ । ସେମାନେ ଦ୍ରୁତଗତିସମ୍ପନ୍ନ ଥିଲେ ଓ ହାଲ୍‌କା ଅସ୍ତ୍ରଶସ୍ତ୍ର ନେଉଥିଲେ । ତାହା ସେମାନଙ୍କୁ ସହଜ ଓ ସୁବିଧାରେ ସୈନ୍ୟଚାଳନା କରିବାପାଇଁ ସୁଯୋଗ ଦେଉଥିଲା । ଭାରତୀୟ ଯୋଦ୍ଧାମାନେ ଏକତ୍ରିତ ହୋଇ ଯୁଦ୍ଧ କରିବାକୁ ପସନ୍ଦ କରୁଥିଲେ । ତାହାଦ୍ୱାରା ଆଗକୁ ଯିବାପାଇଁ ସେମାନଙ୍କର ଶକ୍ତି ଅଧିକ ହେବ ବୋଲି ସେମାନେ ଭାବୁଥିଲେ । ତୁର୍କମାନେ ସାମରିକ କୌଶଳର ସୁବିଧା ଥିବା ଦୁର୍ଗକୁ ଅଧିକାର କରିବାପାଇଁ ସର୍ବଦା ଚେଷ୍ଟା କରୁଥିଲେ । ସେହି ଦୁର୍ଗଗୁଡ଼ିକ ପ୍ରାୟତଃ ସ୍ଥାନୀୟ ଶାସନର କେନ୍ଦ୍ର ଥିଲା । ଏହିସବୁ କାରଣରୁ ଭାରତୀୟ ସୈନ୍ୟବାହିନୀ ପ୍ରତିରକ୍ଷାମୂଳକ ଅବସ୍ଥାରେ ରହିବାକୁ ବାଧ ହେଉଥିଲେ । ଶ୍ରେଣୀବଦ୍ଧ ଭାବେ ଆସୁଥିବା ସୈନ୍ୟମାନଙ୍କୁ ଆକ୍ରମଣ କରିବା ଗରିଲା ଯୁଦ୍ଧର ଗୋଟାଏ ଉପାୟ ହୋଇପାରେ । କିନ୍ତୁ ଏହା ସଫଳତାର ସହ କାର୍ଯ୍ୟକାରୀ ହେବାର ଦେଖାଯାଇ ନଥିଲା ।

କୁହାଯାଏ, ଗଜନବୀ ଓ ଘୋରୀ ସୈନ୍ୟମାନେ ବିଧର୍ମୀଙ୍କ ସହ ଯୁଦ୍ଧକରି ଯୁଦ୍ଧକ୍ଷେତ୍ରରେ ମୃତ୍ୟୁବରଣ କଲେ ସେମାନଙ୍କୁ ଇସଲାମ ପାଇଁ ସହିଦ ହେବାର ସମ୍ମାନ ମିଳୁଥିଲା । କିନ୍ତୁ ପ୍ରକୃତ କାରଣ ଥିଲା ଲୁଣ୍ଠନ । ଭାରତୀୟ ସେନାପତିମାନଙ୍କ ପାଇଁ ଯୁଦ୍ଧ ଏକ କ୍ରୀଡ଼ା ଥିଲା ଯାହାକୁ ତା'ର ନିୟମରେ ଖେଳାଯାଉଥିଲା । କବି ଏବଂ ଭାଟମାନେ ଯୁଦ୍ଧରେ ରାଜାଙ୍କର ବୀରତ୍ୱକୁ ଅମର କରିବାପାଇଁ ଗୀତରେ ଯୁଦ୍ଧର ନୀତିନିୟମ ତଥା କର୍ତ୍ତବ୍ୟର କଥା ଲେଖୁଥିଲେ । କ୍ଷୁଦ୍ର ଯୁଦ୍ଧ ଅଭିଯାନରେ ବୀରତ୍ୱ ଓ ସାହସିକତାର ପ୍ରୟୋଗ ଯୁଦ୍ଧର କ୍ଳାନ୍ତିକୁ ଦୂରେଇ ପାରୁଥିଲା । କିନ୍ତୁ ଘୋରୀମାନଙ୍କ ବିରୁଦ୍ଧରେ ଯୁଦ୍ଧ ଅଭିଯାନ ସମ୍ପୂର୍ଣ୍ଣ ଭାବରେ ଭିନ୍ନ ପ୍ରକାର ଥିଲା । ପ୍ରଥମ ଅବସ୍ଥାରେ ଏହା ଜାଣିହେଉ ନଥିଲା । ସମ୍ମାନ ଓ ଅନୁରକ୍ତିର

ଧାରଣାକୁ ଯୁଦ୍ଧରେ ଉପଯୋଗିତାର ଊର୍ଦ୍ଧ୍ୱରେ ରଖାଯାଇଥିଲା । କ୍ରମଶଃ ଆକ୍ରମଣ ପାଇଁ ଜ୍ୟୋତିଷଶାସ୍ତ୍ର ଦ୍ୱାରା ସ୍ଥିର ହୋଇଥିବା ଶୁଭ ମୁହୂର୍ତ୍ତକୁ ଯୁଦ୍ଧର ଯୋଜନା ଓ କୌଶଳ ଅପେକ୍ଷା ଅଧିକ ପ୍ରାଧାନ୍ୟ ଦିଆଗଲା । ସାହସିକତା ଅପେକ୍ଷା ଅତିଶୟୋକ୍ତି ମହତ୍ତ୍ୱ ଲାଭ କଲା, ଯେପରିକି ବୀର ନାୟକ ଗୋଟିଏ ସମୟରେ ଏକହଜାର ଯୋଦ୍ଧାକୁ ପରାସ୍ତ କରିପାରେ । ଏହା ରାଜସଭାର ସାହିତ୍ୟରେ ଆଲଂକାରିକ ଭାବରେ ଲିପିବଦ୍ଧ ହେବାକୁ ଲାଗିଲା ।

ଭାରତୀୟ ସେନା ସଂଗଠନଗୁଡ଼ିକରେ ଅନେକ ଦୁର୍ବଳତା ରହିଥିଲା । ପ୍ରତ୍ୟେକ ସେନାବାହିନୀରେ କିଛି ନିୟମିତ ସୈନ୍ୟ ଥିଲେ । କିନ୍ତୁ ଅନେକ ସୈନ୍ୟଙ୍କୁ ସ୍ଥାନୀୟ ଅଞ୍ଚଳରୁ ଜୋର ଜବରଦସ୍ତ ଭର୍ତ୍ତି କରାଯାଇଥିଲା । ଆଉ କେତେକଙ୍କୁ ସାମନ୍ତମାନେ ମୁଖ୍ୟ ଶାସକଙ୍କ ପ୍ରତି ଆନୁଗତ୍ୟ କାରଣରୁ ପ୍ରେରଣ କରୁଥିଲେ । ସେହି ସମୟରେ ସେନାବାହିନୀର ଏକ ମୁଖ୍ୟ ଅଂଶ ଥିଲେ ଭଡ଼ାଟିଆ ସୈନ୍ୟ । ଏହିପ୍ରକାର ସୈନ୍ୟଦଳକୁ ସଂଗଠିତ ଭାବେ ଯୁଦ୍ଧ କରିବାପାଇଁ ତାଲିମ ଦିଆଯାଇ ପାରୁ ନଥିଲା । ସୈନ୍ୟମାନଙ୍କର ଏହି ବିକ୍ଷିପ୍ତ ଚରିତ୍ର ସେମାନଙ୍କୁ ନିର୍ବିଚାର ଭାବରେ ଲୁଟତରାଜ କରିବାକୁ ଯେପରି ଅନୁମତି ପ୍ରଦାନ କରିଥିଲା । ଗ୍ରାମବାସୀମାନେ ଅତ୍ୟାଚାରିତ ହେଉଥିଲେ ଓ ସୈନ୍ୟବାହିନୀଙ୍କ ଅଭିଯାନବେଳେ ଲୁଣ୍ଠିତ ହେଉଥିଲେ । ଫସଲ ଅମଳବେଳେ ଏହି ଅଭିଯାନ ସଂଘଟିତ ହେଲେ ଅତ୍ୟାଚାରର ମାତ୍ରା ଅଧିକ ହେଉଥିଲା । କୃଷକ ଓ ବ୍ୟବସାୟୀମାନଙ୍କ ପାଇଁ ଯୁଦ୍ଧ ଏକ ଦୁଃସ୍ୱପ୍ନ ଥିଲା ଯାହା ନିୟମିତ ଭାବରେ ବଞ୍ଚିବାପାଇଁ ଖାଦ୍ୟପଦାର୍ଥ ସଂଗ୍ରହରେ ବାଧା ସୃଷ୍ଟି କରୁଥିଲା । ବସବାସ କରୁଥିବା ସ୍ଥାନ ଓ ଚାଷଜମି ଅବ୍ୟବହୃତ ହୋଇ ପଡ଼ିରହୁଥିଲା । କାରଣ ଏହା ଶତ୍ରୁମାନଙ୍କ ରାଜ୍ୟର ଅଂଶବିଶେଷ ଥିଲା । ତେଣୁ ଚାଣ୍ଡେଲା ଶାସକଙ୍କୁ ପରାଜୟ କରିବା ପରେ ଶତ୍ରୁ ରାଜ୍ୟର କୃଷି ଜମିକୁ ପଡ଼ିଆ ପକେଇ ଦେଇଥିଲେ ପୃଥ୍ୱୀରାଜ ଚୌହାନ । ବୃଥା ଅହଂକାର ରାଜାଙ୍କର ଯେମିତି ଭୂଷଣରେ ପରିଣତ ହୋଇଥିଲା ।

ଐତିହାସିକମାନେ ଅନେକ ସମୟରେ ମତ ଦିଅନ୍ତି ଯେ ଭାରତୀୟ ଶାସକମାନେ ସେମାନଙ୍କ ପଛୁଆ ବୁଦ୍ଧି ଯୋଗୁ ଉତ୍ତର-ପଶ୍ଚିମ ପଥ ଦେଇ ଶହ ଶହ ବର୍ଷ ଧରି ଆକ୍ରମଣର ଏକତ୍ର ମୁକାବିଲା କରିପାରି ନଥିଲେ । ବାରମ୍ବାର ଆକ୍ରମଣକାରୀମାନେ ଏଇ ପଥ ଦେଇ ଆସିଥିଲେ । ତଥାପି ସେମାନଙ୍କୁ ପ୍ରତିହତ କରାଯାଇ ନଥିଲା । ଖାମଖିଆଲି ଭାବରେ ସେହି ଅଞ୍ଚଳରେ ପ୍ରତିରକ୍ଷା ସ୍ଥାନୀୟ ଶାସକମାନଙ୍କ ହାତରେ ଥିଲା । ଗିରିପଥଗୁଡ଼ିକରେ ଦୁର୍ଗ ନିର୍ମାଣ କରିବା ସମ୍ଭବପର ନଥିଲା । ବୋଧହୁଏ ପ୍ରତିରକ୍ଷାର ଆବଶ୍ୟକତାକୁ ଭାରତରେ ବିଶେଷ ପ୍ରାଧାନ୍ୟ ଦିଆଯାଉ ନଥିଲା । ଏହି ଅଞ୍ଚଳକୁ ପ୍ରାକୃତିକ ସୀମା ବୋଲି ବିଚାର କରାଯାଉଥିଲା । ପ୍ରକାରାନ୍ତରେ ଗମନାଗମନ ପାଇଁ ଏହା ପଶୁପାଳକ ଓ ଯାଯାବରମାନଙ୍କ

ସକାଶେ ଏକମାତ୍ର ଗିରିପଥ ଥିଲା । ତେଣୁ ଏହା ସେମାନଙ୍କ ପାଇଁ ମୁକ୍ତ ରହିବା ଉଚିତ ମନେ କରାଯାଉଥିଲା । ଯେଉଁ ସ୍ଥାନୀୟ ରାଜା ଏବଂ ସର୍ଦ୍ଦାରମାନେ ଏହି ରାସ୍ତା ନିୟନ୍ତ୍ରଣ କରୁଥିଲେ ସେମାନେ ବ୍ୟବସାୟ ବାଣିଜ୍ୟରେ ବେଶ୍ ଆୟ କରୁଥିଲେ । ଯେଉଁମାନେ ଏହି ଗିରିପଥ ଦେଇ ଆସୁଥିଲେ ସେମାନଙ୍କ ସହିତ ତାଙ୍କର ଆତ୍ମୀୟତା ବଢ଼ିଥିଲା । ଅଳ୍ପ ପରିଚୟର ବନ୍ଧୁତା ଅନେକ ସମୟରେ ଶତ୍ରୁତାରେ ପରିଣତ ହେଉଥିଲା । ପାହାଡ଼ ପର୍ବତ ସୀମାର ସୁରକ୍ଷା କରିପାରି ନଥିଲା । ଏହାର ପ୍ରମାଣ ବହୁ ସମୟରେ ସୀମା ବାହାରୁ ପଞ୍ଜାବ ଆକ୍ରମଣ ଓ ଅଧିକାର କିମ୍ବା ଆଫଗାନିସ୍ତାନ ଓ ମଧ୍ୟ-ଏସିଆର ରାଜନୀତିରେ ଅଂଶଗ୍ରହଣ । ଏହି ନିବିଡ଼ତା ସୀମାନ୍ତ ଅଞ୍ଚଳ ଓ ମଧ୍ୟ-ଏସିଆର ରାଜନୈତିକ ବିକାଶକୁ ଲକ୍ଷ୍ୟରେ ନ ରଖି ବରଂ ତା'ର ବିରୁଦ୍ଧରେ କାର୍ଯ୍ୟ କଲା ।

ପୃଥିବୀର ବହୁ ସ୍ଥାନରେ ବାହ୍ୟ ଲୋକଙ୍କ ଆକ୍ରମଣ କଥା ବେଶ୍ ଜଣାଶୁଣା । ହୁନ୍‌ମାନେ ରୋମ୍ ଆକ୍ରମଣ କରିଥିଲେ । ଆରବମାନେ ସ୍ପେନ୍ ଆକ୍ରମଣ କରିଥିଲେ । ସ୍ପାନିସ୍ ଓ ପର୍ତ୍ତୁଗୀଜ୍‌ମାନେ ଲାଟିନ୍ ଆମେରିକା ଜୟ କରିଥିଲେ । ଆକ୍ରମଣର ସମ୍ଭାବନାକୁ ପୃଷ୍ଠଭୂମିରେ ସ୍ୱୀକୃତି ମିଳୁଥିଲା । ଆକ୍ରମଣ କରୁଥିବା ଦେଶ ଓ ସମାଜ ପାଇଁ ଆକ୍ରମଣକାରୀମାନେ ଅଜଣା ଓ ବିଦେଶୀ ଥିଲେ । କିନ୍ତୁ ତୁର୍କମାନେ ପାଖ ଲୋକ ଥିଲେ । ସେମାନେ ଘୋଡ଼ାବେପାର ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ବ୍ୟବସାୟ ମାଧ୍ୟମରେ ଭାରତରେ ପରିଚିତ ଥିଲେ । ଭାରତୀୟ ସୈନ୍ୟବାହିନୀରେ କିଛି ତୁର୍କ ମଧ୍ୟ ଭଡ଼ାଟିଆ ସୈନିକ ଥିଲେ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ଇସ୍‌ଲାମ ଧର୍ମର ଉତ୍‌ଥାନ ପରେ ମଧ୍ୟ ଓ ପଶ୍ଚିମ ଏସିଆରେ ଐତିହାସିକ ରୂପରେଖ ବଦଳି ଯାଇଥିଲା । ଉତ୍ତର ଭାରତରେ ଶାସକମାନଙ୍କ ପରିପ୍ରେକ୍ଷୀରେ ସୀମା ଏବଂ ସୀମା ବାହାରେ ଏକ ବୃହତ୍ତର ପରିଧିରେ ଏହାକୁ ବୁଝିବା ପାଇଁ ଦୂରଦୃଷ୍ଟିର ଲୋଡ଼ା ଥିଲା । ଏହା ଭାରତୀୟମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଭାବରେ ବିବେଚିତ ହେଉ ନଥିଲା । ଏସିଆର ବିଭିନ୍ନ ଭାଗକୁ ବିଭିନ୍ନ କାର୍ଯ୍ୟରେ ଯାଉଥିବା ଭାରତୀୟମାନେ ସେମାନଙ୍କର ଅନୁଭୂତି ସମ୍ପର୍କରେ କିଛି ଲେଖି ନଥିଲେ । ଅନ୍ୟ ଦେଶର ରାଜନୀତି ସମ୍ପର୍କରେ ସେମାନେ ନୀରବ ଥିଲେ । ସେମାନଙ୍କ ପାଇଁ ଏହି ବାହ୍ୟ ଅଞ୍ଚଳ ଯେପରି ଅପ୍ରାସଙ୍ଗିକ ଥିଲା । ତେଣୁ ରାଜନୈତିକ ଚିତ୍ର ସଂକୀର୍ଣ୍ଣ ଓ ପକ୍ଷପାତିତାଯୁକ୍ତ ହୋଇଗଲା । ଚୀନ୍ ଓ ଆରବରେ ଏହା ସମ୍ପୂର୍ଣ୍ଣ ଭାବରେ ଭିନ୍ନ ଓ ବିପରୀତ ଥିଲା । ଏଇ ଉଭୟ ଦେଶ ପରିବ୍ରାଜକ ଓ ବ୍ୟବସାୟୀମାନଙ୍କ ବିବରଣୀ ମାଧ୍ୟମରେ ସୁଦୂର ରାଜ୍ୟ ସମ୍ପର୍କରେ ଅବଗତ ଥିଲେ । ଆରବମାନଙ୍କର ଅନ୍ୟ ଦେଶର ଭୌଗୋଳିକ ସ୍ଥିତି ସମ୍ପର୍କରେ ଜାଣିବାର ଅଭିରୁଚି ଥିଲା । ଚୀନାମାନେ ତାଙ୍କର ପଡ଼ୋଶୀ ଦେଶ ଓ ମଧ୍ୟ-ଏସିଆର ଘଟଣା ସମ୍ପର୍କରେ ଜାଣିବାପାଇଁ ବିଶେଷ ଆଗ୍ରହୀ ଥିଲେ ।

ଆଲ୍‌ବେରୁନୀ ପୃଥିବୀର ବୃହତ୍ତର ଉପଲବ୍ଧି ଲିପିବଦ୍ଧ ନ ହୋଇଥିବା ସମ୍ପର୍କରେ ଅନ୍ୟ କାରଣ ତାଙ୍କ ପୁସ୍ତକର ପ୍ରଥମ ପରିଚ୍ଛେଦରେ ଲିପିବଦ୍ଧ କରିଛନ୍ତି । ଜଣେ ହୁଏତ ତା ସହିତ ସମ୍ମତ ହୋଇପାରେ ବା ନ ହୋଇପାରେ । ସେ ଲେଖିଥିଲେ :

*''ହିନ୍ଦୁମାନେ ବିଶ୍ୱାସ କରୁଥିଲେ ଯେ ତାଙ୍କ ଦେଶ ପରି ଅନ୍ୟ କୌଣସି ଦେଶ ନାହିଁ, ତାଙ୍କ ଜାତି ପରି ଅନ୍ୟ ଜାତି ନାହିଁ... । ସେମାନେ ଯାହା ଜାଣିଥିଲେ ତା'ର ବିନିମୟ ପାଇଁ ସ୍ୱଭାବତଃ ସେମାନେ କୃପଣ ଥିଲେ । ବିଦେଶୀ ବ୍ୟକ୍ତି ତ ଦୂରର କଥା, ସେମାନେ ନିଜ ଲୋକଙ୍କ ମଧ୍ୟରେ ବି ଅନ୍ୟ ଜାତିର ଲୋକଙ୍କୁ ନ ନେବାପାଇଁ ଯଥାସମ୍ଭବ ଯତ୍ନଶୀଳ ଥିଲେ ।''* –(E.C. Sachau (ed. and tr.), *Alberuni's India*, pp,22.3)

ଭାରତୀୟ ଜ୍ଞାନର ଧାରା ସମ୍ପର୍କରେ ସେ କଠୋର ମତ ପୋଷଣ କରି କହିଛନ୍ତି :

*''ସେମାନେ ପୂର୍ଣ୍ଣତଃ ଅସ୍ତବ୍ୟସ୍ତ ଥିଲେ । ସେମାନେ ଏକପ୍ରକାର ଦ୍ୱନ୍ଦ୍ୱ ଓ ଅସ୍ପଷ୍ଟତା ମଧ୍ୟରେ ଥିଲେ । ପରିଶେଷରେ ସେମାନେ ସାଧାରଣ ଲୋକଙ୍କ ନିର୍ବୋଧ ଧାରଣା ସହ ଯୋଡ଼ି ହୋଇଯାଇଥିଲେ । ...ସେମାନଙ୍କର ଗଣିତ ଓ ଜ୍ୟୋତିଷଶାସ୍ତ୍ରରେ ଯେମିତି ମୁକ୍ତାର ଶାମୁକା ସହିତ ଖଟା ଖଜୁରିକୋଳି, ମୁକ୍ତା ସହିତ ଗୋବର, ଦାମୀ ସ୍ଫଟିକ ସହିତ ସାଧାରଣ ବାଲିଗରଡ଼ା ମିଶେଇ ଦିଆଯାଇଥିଲା । ଏହି ଉଭୟ ପ୍ରକାର ଜିନିଷ ସେମାନଙ୍କ ଦୃଷ୍ଟିରେ ସମାନ ଥିଲା । କାରଣ ସେମାନେ ଯୁକ୍ତିଭିତ୍ତିକ ବୈଜ୍ଞାନିକ ସିଦ୍ଧାନ୍ତରେ ପହଞ୍ଚିବାର ସ୍ତରକୁ ଉନ୍ନୀତ ହୋଇପାରି ନଥିଲେ ।''*

– E.C. Sachau (ed. and tr.), *Alberuni's India*, p.25

ଆଲବେରୁନୀ ହୁଏତ ଭାରତରେ ଗଣିତ ଓ ଜ୍ୟୋତିର୍ବିଜ୍ଞାନର ପ୍ରଭାବଶାଳୀ ଅଗ୍ରଗତିକୁ ଲକ୍ଷ୍ୟ କରିପାରିଥିଲେ । ଏହି ଅଗ୍ରଗତିକୁ ଗଭୀର ଭାବରେ ପ୍ରଶଂସା ମଧ୍ୟ କରିଥିଲେ । ମାତ୍ର ରାଜସଭା ଦ୍ୱାରା ଜ୍ୟୋତିଷଶାସ୍ତ୍ର ଓ ଭବିଷ୍ୟବାଣୀ ଆଦିକୁ ପୃଷ୍ଠପୋଷକତା କରିବାର ଅସମୀଚିନତାକୁ ଦେଖି ଉପହାସ କରୁଥିଲେ ।

ମହମ୍ମଦଙ୍କ ମୃତ୍ୟୁ ପରେ ଆଫଗାନିସ୍ତାନରେ ଘୋରୀ ରାଜ୍ୟ ବେଶୀଦିନ ତିଷ୍ଠିପାରି ନଥିଲା । ଠିକ୍ ସେହି ସମୟରେ ଆଫଗାନିସ୍ତାନ ସୀମାନ୍ତବର୍ତ୍ତୀ ଭାରତୀୟ ଅଞ୍ଚଳ ଗୋଟାଏ ନୂତନ ରାଜନୈତିକ ପରିଚୟର କେନ୍ଦ୍ର ଭାବରେ ଦେଖାଦେଲା । ତାହା ଥିଲା ତୁର୍କ ଓ ଆଫଗାନ ସୁଲତାନମାନଙ୍କର ଶାସନାଧୀନ ଦିଲ୍ଲୀ ଅଞ୍ଚଳ । ମହମ୍ମଦ ଘୋରୀ ତାଙ୍କ ଅଧିକାରରେ ଥିବା ଭାରତୀୟ ଅଞ୍ଚଳ କୁତବୁଦ୍ଦିନ ଆଇବାକ୍‌ଙ୍କ ଜିମାରେ ଛାଡ଼ି ଯାଇଥିଲେ । କୁତବୁଦ୍ଦିନ ତାଙ୍କ ମାଲିକଙ୍କ ମୃତ୍ୟୁ ପରେ ଭାରତୀୟ ପ୍ରଦେଶଗୁଡ଼ିକୁ ଶାସନ କରିଥିଲେ ଓ

ମାମଲୁକ ବା ଦାସବଂଶ (Slave dynasty) ପ୍ରତିଷ୍ଠା କରିଥିଲେ । କାରଣ ତାଙ୍କର କର୍ମଜୀବନ ଜଣେ ଦାସ ଭାବରେ ଆରମ୍ଭ ହୋଇଥିଲା । ଚୌହାନ ନିୟନ୍ତ୍ରଣରୁ ଦିଲ୍ଲୀକୁ ମୁକ୍ତକରି କୁତବୁଦ୍ଦିନ ନିଜକୁ ସେଠାରେ ପ୍ରତିଷ୍ଠିତ କରିଥିଲେ । ପ୍ରତିବେଶୀ ରାଜ୍ୟ ରାଜସ୍ଥାନକୁ ଜୟକରି ମିଶାଇବାକୁ ବାରମ୍ବାର ସେ ଚେଷ୍ଟା କରିଥିଲେ । କାରଣ ସେ ତା'ର ଗୁରୁତ୍ୱ ଉପଲବ୍ଧି କରିଥିଲେ । କିନ୍ତୁ ସେଥିରେ ସେ ସଫଳ ହୋଇପାରି ନଥିଲେ ।

## ନୂତନ ରାଜନୀତି ସମ୍ବନ୍ଧରେ ଏକ ଦୃଷ୍ଟିକୋଣ

ଆରବ, ତୁର୍କ ଓ ଆଫଗାନମାନଙ୍କର ଆଗମନ ହେତୁ ଭାରତୀୟମାନଙ୍କର ଜାତୀୟ ଓ ସାଂସ୍କୃତିକ ପରିଚୟର ପୁନର୍ଲିଖନ ହେଲା । ଆଜି ଆମେ ସେମାନଙ୍କୁ 'ମୁସଲିମ୍' ଆଖ୍ୟା ଦେଇ ସାମୂହିକ ଭାବରେ ଏକ ପରିଚୟ ପ୍ରଦାନ କରୁଛୁ ଏବଂ ସେମାନଙ୍କୁ ଆତିଥ୍ୟ ଦେଇଥିବା ଭାରତୀୟମାନଙ୍କୁ ସାମୂହିକ ଭାବରେ 'ହିନ୍ଦୁ' ଆଖ୍ୟା ପ୍ରଦାନ କରୁଛୁ । କିନ୍ତୁ ଇସ୍‌ଲାମ ସମ୍ପର୍କରେ ପ୍ରଥମ ପର୍ଯ୍ୟାୟରେ ଐତିହାସିକ ଦୃଷ୍ଟିକୋଣରୁ ଏହିପ୍ରକାର ଆଖ୍ୟା ଦେବା ନିର୍ଭୁଲ ନୁହେଁ । ସେ ସମୟରେ ବ୍ୟବହୃତ ହେଉଥିବା ପଦ ଓ ସଂକେତ ବଳରେ ଐତିହାସିକତା ଦୃଷ୍ଟିରୁ ସେମାନଙ୍କୁ ଚିହ୍ନିବା ପାଇଁ ଅଧିକ ପ୍ରଯୁଜ୍ୟ । ସେମାନଙ୍କୁ ଆଜି ଆମେ ଯେପରି ଭାବରେ ଜାଣୁ ଏହା ସେମାନଙ୍କ ବିଷୟରେ ଅଲଗା ଧାରଣା ସୃଷ୍ଟିକରେ । ଯଥା- ଆଜି ଆମେ ଧରିନେଉ ଯେ, ଗୋଟିଏ ବିଶାଳ ଧର୍ମୀୟ ଗୋଷ୍ଠୀର ସେମାନେ ସମସ୍ତେ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମଦ୍ୱାରା ପରିଚିତ ହେଉଥିଲେ । ଦୁଇ ଗୋଷ୍ଠୀ ମଧ୍ୟରେ ଧର୍ମ ଓ ସଂସ୍କୃତି ସମାନ ନଥିଲା । ଧର୍ମୀୟ ବିଶ୍ୱାସ ଓ ଚାଲିଚଳଣି ଦିଗରୁ ମଧ୍ୟ ପ୍ରତ୍ୟେକ ବିଭାଗରେ ବିଭିନ୍ନ ସମ୍ପ୍ରଦାୟର ଉପଲବ୍ଧିରେ ଖୁବ୍ ପାର୍ଥକ୍ୟ ଥିଲା । ଆଜି ଆମେ ଯେଉଁ ଧର୍ମୀୟ ଛାପ ବ୍ୟବହାର କରୁଛୁ ତା' ତୁଳନାରେ ଲୋକେ ଅଧିକ ସେମାନଙ୍କର ଜାତି, ଜୀବିକା, ଭାଷା ଓ ସ୍ଥାନ ଓ ଧର୍ମ ସମ୍ପ୍ରଦାୟ ଆଧାରରେ ବହୁଳ ଭାବରେ ପରିଚିତ ହେଉଥିଲେ ।

ଧର୍ମୀୟ ଅର୍ଥରେ ଆମେ ଯେଉଁମାନଙ୍କୁ ହିନ୍ଦୁ ସମୁଦାୟ ରୂପରେ ପରିଭାଷିତ କରୁ, ସେମାନେ ବସ୍ତୁତଃ ଭିନ୍ନ ଭିନ୍ନ ସମୂହ ଥିଲେ । ଯଥା- ବୈଷ୍ଣବ, ଶୈବ, ଭାଗବତ, ପାଶୁପତ, କାପାଳିକ ଏହିପରି ଅନେକ । ବୌଦ୍ଧ ଓ ଜୈନମାନେ ଥିଲେ ସ୍ୱତନ୍ତ୍ର ଯଦିଓ ସେମାନଙ୍କର ବିଶ୍ୱାସ ଓ ପରମ୍ପରା ମଧ୍ୟରେ ଅନେକ କିଛି ସାମ୍ୟ ରହିଥିଲା । ଶ୍ରମଣ ସମ୍ପ୍ରଦାୟ ଓ ପୌରାଣିକ ଧର୍ମ ମଧ୍ୟରେ ବିରୋଧାଭାସ ସେହି ସମୟର ସାହିତ୍ୟରେ ସ୍ପଷ୍ଟ । ଉଦାହରଣ ସ୍ୱରୂପ, କୃଷ୍ଣ ମିଶ୍ରଙ୍କ ପ୍ରସିଦ୍ଧ ନାଟକ 'ପ୍ରବୋଧ ଚନ୍ଦ୍ରୋଦୟ'ରେ ବିଭିନ୍ନ ଶ୍ରମଣ ସଂପ୍ରଦାୟ ପ୍ରତି ତୀକ୍ଷ୍ଣ ବିଦ୍ରୂପ କରାଯାଇଛି । ଆଲ୍‌ବେରୁନୀ ମଧ୍ୟ ସ୍ପଷ୍ଟଭାବରେ କହିଛନ୍ତି ଯେ :

*''ହିନ୍ଦୁ ଓ ବିଦେଶୀମାନଙ୍କ ମଧ୍ୟରେ ରହିଥିବା ପ୍ରତିଦ୍ୱନ୍ଦ୍ୱୀ ଭାବ ଅନ୍ୟ ଏକ ପରିସ୍ଥିତିରେ ବୃଦ୍ଧି ପାଇଥିଲା । ତଥାକଥିତ ଶ୍ରମଣମାନେ ବ୍ରାହ୍ମଣମାନଙ୍କୁ ଅନ୍ତରରେ ଘୃଣା କରୁଥିଲେ ମଧ୍ୟ ଅନ୍ୟମାନଙ୍କ ଅପେକ୍ଷା ସେମାନଙ୍କର ନିକଟତର ଥିଲେ ।''*

E.C. Sachau (ed. and tr.), *Alberuni's India*, p.21

ଆଜି ଆମେ ଯାହାକୁ ମୁସଲିମ୍ ସମାଜ ବୋଲି କହୁ ତାହା ମଧ୍ୟ ସିୟା, ସୁନ୍ନୀ, ଇସ୍‌ମାଇଲୀ, ସୁଫୀ ଓ ବୋରା ଭାବରେ ବିଭକ୍ତ ଥିଲା । ପୁଣି, ଦକ୍ଷିଣ ଭାରତର ନବାୟାତ ଓ ମାପିଲା ବି ଅଛନ୍ତି । ସୁନ୍ନୀ ଓ ସିୟାଙ୍କ ମଧ୍ୟରେ ବୈରଭାବ ସିୟାମାନଙ୍କ ଉପରେ ଗଜନୀର ମାମୁଦଙ୍କ ଆକ୍ରମଣ କାଳରୁ ଜଣାପଡ଼େ । ଭାରତରେ ଲୋକବିଶ୍ୱାସ ଏବଂ ରୀତିନୀତିରେ ଆଞ୍ଚଳିକ ପ୍ରଭେଦ ରହିଥିଲା । ଧର୍ମାନ୍ତର ପରେ ମଧ୍ୟ କେତେକ ସ୍ଥାନୀୟତା ରହିଯାଇଥିଲା । ଉଚ୍ଚ ପାହ୍ୟାରେ ଥିବା ବ୍ୟକ୍ତିମାନଙ୍କ ପାଇଁ ଧର୍ମାନ୍ତରଣର କାରଣ ଥିଲା ରାଜନୈତିକ ଆକାଂକ୍ଷା । କିନ୍ତୁ ସମୂହ ଧର୍ମାନ୍ତରଣ ଜାତି ମାଧ୍ୟମରେ ହେଉଥିଲା । ଗୋଟିଏ ଜାତି ବା ଜାତିର ଏକ ବର୍ଗ ହୁଏତ ବିଶ୍ୱାସ କଲେ ଯେ ଏହି ଧର୍ମାନ୍ତରଣ ମାଧ୍ୟମରେ ତାଙ୍କର ସାମାଜିକ ଉନ୍ନତି ଘଟିବ । ତା' ସତ୍ତ୍ୱେ, ବୈବାହିକ ରୀତିନୀତ, ଉତ୍ତରାଧିକାର ଓ ଜାତିର ସାମାଜିକ ଚଳଣିରେ ଅନେକ କିଛି ପୂର୍ବବତ୍ ରହିଲା । ଏସବୁ ନିୟମ ବ୍ୟବସ୍ଥା କିଛି କିଛି ମାତ୍ରାରେ ପାରମ୍ପରିକ ଓ ପରିବେଶ ଆଧାରରେ ପ୍ରତିଷ୍ଠିତ ଥିଲା । ତେଣୁ ନୂତନ ଧର୍ମ ଗ୍ରହଣ ପରେ ସୁଦ୍ଧା ବିଭିନ୍ନ ଆଦର୍ଶଗତ ଚଳଣିକୁ ଗ୍ରହଣ କରିବା ସମୟସାପେକ୍ଷ ହେଲା । ସ୍ପଷ୍ଟଭାବରେ ଦେଖିବାକୁ ଗଲେ, ଅନେକ ବିଶ୍ୱାସର ବଶବର୍ତ୍ତୀ ହୋଇ ଧର୍ମ ପରିବର୍ତ୍ତନ କରୁଥିଲେ । କିଛି ଲୋକ ଭୟଭୀତ ହୋଇ ଅନ୍ୟ ଧର୍ମ ଗ୍ରହଣ କରୁଥିଲେ । ପୁଣି ଏକଥା ମଧ୍ୟ ସତ ଯେ ଭୟ ଯୋଗୁଁ ଖୁବ୍ କମ୍ ସଂଖ୍ୟାରେ ଲୋକ ଧର୍ମାନ୍ତରଣ କରୁଥିଲେ । କିନ୍ତୁ ଯେତେବେଳେ ଗୋଟାଏ ଜାତି ଧର୍ମାନ୍ତର ଗ୍ରହଣ କରୁଥିଲା, ସେତେବେଳେ ଏହା ଥିଲା ସାମୂହିକ । ଏହି ପ୍ରସଙ୍ଗରେ ବିଚାର କଲାବେଳେ ତତ୍‌କାଳୀନ ରାଜବିବରଣୀ ବା ଅନ୍ୟ ସମୟର ବିବରଣୀକୁ ପୂର୍ଣ୍ଣତଃ ସତ ବୋଲି ଗ୍ରହଣ ନ କରି ବିଶ୍ଳେଷଣାତ୍ମକ ଢଙ୍ଗରେ ଐତିହାସିକ ମୂଲ୍ୟାଙ୍କନ ହେବା କଥା ।

'ହିନ୍ଦୁ' କହିଲେ ପ୍ରଥମେ ଗୋଟାଏ ଭୌଗୋଳିକ ପରିଚୟକୁ ବୁଝାଯାଉଥିଲା । ପରେ ଏହା ଧାର୍ମିକ ଅର୍ଥ ଗ୍ରହଣ କଲା । ସବୁ ଜାତି, ଅଜାତି ଓ ବହୁ ସମ୍ପ୍ରଦାୟ 'ହିନ୍ଦୁ' ନାମରେ ଗୋଟିଏ ପରିଚୟ ପାଇବା ଅନେକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବ, ଅନ୍ୟ କେତେକଙ୍କୁ ବିରୋଧାତ୍ମକ ମନେହେବ । କାରଣ ଏହା ବ୍ରାହ୍ମଣ, ଶୂଦ୍ର ଓ ଅସ୍ପୃଶ୍ୟ – ସମସ୍ତଙ୍କୁ 'ହିନ୍ଦୁ' ନାମକ ସମାଜର ସମାନ ସଭ୍ୟ ଭାବରେ ଧାର୍ମିକ ପରିଚୟ ପ୍ରଦାନ କରେ । ଉପମହାଦେଶରେ

ପ୍ରଚଳିତ ଥିବା ଅନ୍ୟ ଧର୍ମଗୁଡ଼ିକଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ଥିଲା । ତେଣୁ ପ୍ରଚଳିତ ଅର୍ଥରେ 'ହିନ୍ଦୁ' ଶବ୍ଦ ବ୍ୟବହୃତ ହେବାପାଇଁ ବହୁ ସମୟ ଲାଗିଥିଲା । ହିନ୍ଦୁମାନେ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ନିଜ ପାଇଁ ଏହି ନାମ ବ୍ୟବହାର କରୁ ନ ଥିଲେ, ପରେ କେବେ କ୍ୱଚିତ ବ୍ୟବହାର କରିଥିଲେ ।

ଠିକ୍ ସେହିଭଳି ହିନ୍ଦୁମାନେ ବହିରାଗତ ଲୋକମାନଙ୍କୁ ମଧ୍ୟ ସର୍ବଦା 'ମୁସଲିମ୍', 'ମୁସଲମାନ' କିମ୍ବା 'ମହମ୍ମଦାନ' ବୋଲି କହି ନଥିଲେ । ସେମାନଙ୍କୁ ତାଙ୍କର ଉତ୍ସ ଅନୁଯାୟୀ ବିଭିନ୍ନ ପ୍ରକାର ନାମରେ ବର୍ଣ୍ଣନା କରାଯାଉଥିଲା । ସଂସ୍କୃତ ଅଭିଲେଖରେ ଆରବମାନଙ୍କୁ ତାଜିକ ଭାବରେ ନାମିତ କରାଯାଇଛି । ସେମାନଙ୍କୁ ତୁର୍କମାନଙ୍କ (ମଧ୍ୟ-ଏସିଆର ଲୋକଙ୍କୁ ତୁରସ୍କ କୁହାଯାଉଥିଲା) ଠାରୁ ଭିନ୍ନ ଭାବରେ ଉଲ୍ଲେଖ କରାଯାଇଛି । ତାଜିକ ନାମର ବ୍ୟବହାର ଆଶ୍ଚର୍ଯ୍ୟଜନକ ମନେହୁଏ ନାହିଁ । କାରଣ ପୂର୍ବରୁ ଇରାନୀମାନଙ୍କୁ ତୁର୍କଙ୍କଠାରୁ ଭିନ୍ନ ଭାବରେ ଚିହ୍ନିତ କରିବାକୁ ଏହା କୁହାଯାଉଥିଲା । ଭାରତରେ ମଧ୍ୟ ଆରବମାନଙ୍କୁ ତୁର୍କମାନଙ୍କଠାରୁ ଭିନ୍ନ ଭାବରେ ଦେଖାଇବା ପାଇଁ ଏହା ବ୍ୟବହୃତ ହେଉଥିଲା । ଆରବ କିମ୍ବା ତାଜିକ ନାମ ଅଧିକ ଭାବରେ ଗ୍ରହଣଯୋଗ୍ୟ ଥିଲା । କାରଣ ସେମାନେ ଭାରତରେ ବ୍ୟବସାୟୀ ଭାବରେ ସ୍ଥାୟୀଭାବରେ ବାସ କରୁଥିଲେ ଓ ରାଷ୍ଟ୍ରକୂଟ ରାଜ୍ୟ ପରି ଅନେକ ସ୍ଥାନରେ ଉଚ୍ଚ ଶାସନର ସ୍ଥାନ ଅଧିକାର କରିଥିଲେ । ତୁରସ୍କମାନେ ସେମାନଙ୍କ ବିଚାରରେ ନୀଚ ଥିଲେ । ସେମାନେ ପ୍ରଥମେ ଆକ୍ରମଣକାରୀ ଭାବରେ ଆସିଥିଲେ ଓ ପରେ ଭଡ଼ାଟିଆ ସୈନିକ ଭାବରେ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ କାଳରେ ତୁରସ୍କ ଓ ସେହିପରି ଅନ୍ୟ ନାମରେ ସେମାନେ ପରିଚିତ ହୋଇଥିଲେ । ତୁର୍କ ଓ ଆଫଗାନମାନଙ୍କୁ ଶକ ଓ ଯବନ ବୋଲି କୁହାଯାଉଥିଲା । ଶକ ଅପେକ୍ଷା ଯବନ ନାମର ବହୁଳ ବ୍ୟବହାର ହେଉଥିଲା । ତୁରସ୍କ ଓ କୁଶାଣ ମଧ୍ୟରେ ଅସ୍ପଷ୍ଟତା ଥିବା ଲକ୍ଷ୍ୟ କରାଯାଉଥିଲା । ଉତ୍ତର-ପଶ୍ଚିମର ତୁର୍କୀ ସାହି ଶାସକମାନେ କୁଶାଣମାନଙ୍କର ବଂଶଧର ବୋଲି ଦାବି କରନ୍ତି । ଏଥିରୁ ସୂଚନା ମିଳେ ଯେ ସେମାନେ ଗୋଟିଏ ଐତିହାସିକ ଧାରାର ପ୍ରତିନିଧିତ୍ୱ କରୁଥିଲେ ଓ ମଧ୍ୟ-ଏସିଆ ସହିତ ସମ୍ପର୍କିତ ଥିଲେ । ଯବନ ନାମ ମୂଳତଃ ଗ୍ରୀକ୍‌ମାନଙ୍କ ପାଇଁ ପ୍ରଯୁଜ୍ୟ ଥିଲା । ପରେ ଯେଉଁମାନେ ପଶ୍ଚିମରୁ ଆସିଥିଲେ ସମସ୍ତଙ୍କୁ ଯବନ କୁହାଗଲା । ତାହା ଏପର୍ଯ୍ୟନ୍ତ ମଧ୍ୟ ଗଡ଼ିଆସୁଥିଲା । ସାଂସ୍କୃତିକ ଦୃଷ୍ଟିକୋଣରୁ ଭିନ୍ନ ଓ ବିପରୀତଧର୍ମୀ ଲୋକଙ୍କୁ ସାଧାରଣ ଭାବରେ ମ୍ଳେଚ୍ଛ କୁହାଯାଉଥିଲା । ସେମାନେ ବହୁ ପ୍ରକାରର ଥିଲେ ଓ ଜାତିଭିତ୍ତିକ ସମାଜ ବାହାରର ଲୋକ ଥିଲେ । ସେମାନେ ରାଜା ହୁଅନ୍ତୁ ବା ଅସ୍ପୃଶ୍ୟ ହୁଅନ୍ତୁ, ସେମାନଙ୍କର ସାମାଜିକ ସ୍ତର ଯାହା ହେଉନା କାହିଁକି, ସେମାନେ ମ୍ଳେଚ୍ଛ । ଦିଲ୍ଲୀର ଜଣେ ବ୍ୟବସାୟୀଙ୍କ ଦ୍ୱାରା ଖୋଦିତ ଗୋଟିଏ ସଂସ୍କୃତ ଅଭିଲେଖରେ ସୁଲତାନଙ୍କର ପ୍ରଶସ୍ତି ଗାନ କରାଯାଇଥିବା

ଓ ତାଙ୍କୁ ମ୍ଲେଛ ଆଖ୍ୟା ଦିଆଯାଇଥିଲା । ଏହି ନାମ ଦ୍ୱାରା ଅସମ୍ମାନ ବା ନିନ୍ଦା କରାଯାଉ ନଥିଲା, କେବଳ ସମାଜରେ ତାଙ୍କର ସ୍ଥିତି ଓ ପରିଚୟ ପ୍ରକାଶ କରାଯାଉଥିଲା । ବରାହମିହିରଙ୍କ ଦ୍ୱାରା ବର୍ଣ୍ଣିତ ଗ୍ରୀକ୍ ଜ୍ୟୋତିର୍ବିଜ୍ଞାନୀଙ୍କର ସୂଚନା ଏଠାରେ ଦିଆଯାଇପାରେ । ତାଙ୍କ ଭାଷାରେ ସେମାନେ ଥିଲେ ଋଷି । ସେମାନେ ମ୍ଲେଛ ହୋଇଥିଲେ ବି ଜ୍ୟୋତିର୍ବିଜ୍ଞାନର ଜ୍ଞାନ ହେତୁ ସେ ତାଙ୍କୁ ସେହିପରି ସମ୍ବୋଧନ କରିଥିଲେ । ତେଣୁ ପ୍ରସଙ୍ଗ ଅନୁଯାୟୀ କୌଣସି ନିର୍ଦ୍ଦିଷ୍ଟ ଶବ୍ଦର ବ୍ୟବହାର କରାଯିବା କଥା ।

ନାମକରଣର ଐତିହାସିକ ନିରବଚ୍ଛିନ୍ନତା ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ, ଉପମହାଦେଶରେ ଯେଉଁମାନେ ସ୍ଥାୟୀ ଭାବରେ ରହିଛନ୍ତି ସେମାନଙ୍କୁ ସର୍ବଦା ବିଦେଶୀ ବୋଲି ମନେ କରାଯାଉ ନଥିଲା । ପ୍ରାକ୍-ଇସଲାମ୍ ସମୟରୁ ଆରବମାନେ ଭାରତର ପଶ୍ଚିମ ଉପକୂଳରେ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଇସଲାମ୍ ସମୟରେ ଏହା ଅଧିକ କ୍ରିୟାଶୀଳ ହେଲା । ଭାରତ-ଇରାନ ସୀମାନ୍ତ ଅଞ୍ଚଳରେ, ଆଫଗାନିସ୍ତାନରେ ଓ ମଧ୍ୟ-ଏସିଆରେ ବହୁ ଶତାବ୍ଦୀ ଧରି ପଶୁପାଳକ, ବ୍ୟବସାୟୀ, ସୈନିକ, ବୌଦ୍ଧ ଧର୍ମଯାଜକ ଏବଂ ପରେ ମୁସଲିମ୍‌ମାନେ କ୍ରମାଗତ ଭାବରେ ଯୋଗାଯୋଗ ରକ୍ଷା କରିଥିଲେ । ତେଣୁ ଉକ୍ତ ଅଞ୍ଚଳରୁ ଆସିଥିବା ଲୋକମାନେ ଇତିହାସ ସମର୍ଥିତ ନାମ ଗ୍ରହଣ କରିଥିଲେ । ଆରବ, ତୁର୍କ, ଆଫଗାନ ଏବଂ ପରେ ମୋଗଲମାନେ ଏହି ଉପମହାଦେଶରେ ସ୍ଥାୟୀଭାବେ ବସବାସ କଲେ ଓ ସ୍ଥାନୀୟ ଅଞ୍ଚଳରେ ବିବାହ କଲେ । ଏହା ସେମାନଙ୍କୁ ପରବର୍ତ୍ତୀ ଉପନିବେଶବାଦୀ ୟୁରୋପୀୟମାନଙ୍କଠାରୁ ଭିନ୍ନ ଭାବରେ ପରିଚିତ କରିଥିଲା । କାରଣ ଔପନିବେଶକ ୟୁରୋପୀୟମାନେ ଏଠାରୁ ଧନରତ୍ନ ସଂଗ୍ରହ କରି ତାକୁ ନେଇ ନିଜ ଦେଶକୁ ଫେରିଯାଉଥିଲେ ।

ଭାରତୀୟ ଇତିହାସର ପରବର୍ତ୍ତୀକାଳୀନ ଅଧ୍ୟୟନ ଏକାତ୍ମ ସମୁଦାୟ (Monolithic communities)ର ସିଦ୍ଧାନ୍ତ ତଥା ରାଜନୈତିକ କ୍ଷମତାଧାରୀ ବର୍ଗର ପ୍ରବୃତ୍ତି ଦ୍ୱାରା ପ୍ରଭାବିତ ହୋଇଥିଲା । କିନ୍ତୁ ବହୁସଂଖ୍ୟକ ଲୋକଙ୍କ ସ୍ତରରେ ସମାଜର ବ୍ୟାପକ ଅଧ୍ୟୟନରୁ ଭିନ୍ନ ଏକ ଚିତ୍ର ପରିଦୃଷ୍ଟ ହୁଏ । ଏହି ଚିତ୍ରରେ ସମାଜର ବିଭିନ୍ନ ଗୋଷ୍ଠୀ ଓ ସେମାନଙ୍କ ଆବଶ୍ୟକତା ମଧ୍ୟରେ ଏକ ସୂକ୍ଷ୍ମତର ତାଳମେଳ ରହିଥାଏ । ପ୍ରଥମ ସହସ୍ରାବ୍ଦୀର ଶେଷବେଳକୁ ଭାରତୀୟ ସମାଜର ସାମାଜିକ ସ୍ୱରୂପ ବଦଳିଲା । ଅର୍ଥବ୍ୟବସ୍ଥାର ଗତିରୂପ ବଦଳିଲା । ଧର୍ମୀୟ ବିଶ୍ୱାସ ଓ ବ୍ୟବସ୍ଥାର ବାଗ ଓ ଦିଗ ବହୁଧାରାରେ ପରିଣତ ହେଲା । ସଂସ୍କୃତ ପରମ୍ପରାର ସଂସ୍କୃତି ନିଜସ୍ୱ ଶୈଳୀରେ ପ୍ରଭାବ ବିସ୍ତାର କରୁଥିଲା ସତ । ହେଲେ ତା' ସହିତ ଆଞ୍ଚଳିକ ସଂସ୍କୃତିର ବିବିଧ ଧାରା ମଧ୍ୟ ପକ୍ଷ ମେଲିବାକୁ ଅପେକ୍ଷାରତ ଥିଲା ।

# 13

# ଉତ୍ତର ଭାରତ : ବିତରଣାତ୍ମକ ରାଜନୈତିକ ଅବସ୍ଥା ଓ ଆଞ୍ଚଳିକ ସଂସ୍କୃତି

### (ପ୍ରାୟ 800 – 1300 ଖ୍ରୀଷ୍ଟାବ୍ଦ)

## ଐତିହାସିକ ପରିବର୍ତ୍ତନର ସିଦ୍ଧାନ୍ତ

ଶହେ ବର୍ଷ ପୂର୍ବେ ଐତିହାସିକମାନେ ଗୁପ୍ତୋତ୍ତର କାଳକୁ ଗୁପ୍ତ ରାଜନୈତିକ ପରିଦୃଶ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ ବୋଲି ଅବଧାରଣା ଦେଉଥିଲେ । ଉପନିବେଶବାଦୀ ଇତିହାସତତ୍ତ୍ୱ ଅନୁଯାୟୀ ଏହା ଥିଲା ଗୁପ୍ତକାଳୀନ 'ସୁବର୍ଣ୍ଣ ଯୁଗ'ର ଠିକ୍ ଓଲଟା, ଅର୍ଥାତ୍ 'ଅନ୍ଧକାର ଯୁଗ' । ଏହି ଯୁଗରେ ରାଜ୍ୟଗୁଡ଼ିକ ବିଭାଜିତ ହୋଇ ଅନେକ ସାନ ସାନ ରାଜ୍ୟରେ ପରିଣତ ହୋଇଥିଲେ, ଯାହାର କିଛି ମହତ୍ତ୍ୱ ନଥିଲା । ପୁଣି ରାଜନୈତିକ ଅନିଶ୍ଚିତତା ମଧ୍ୟ ରହିଥିଲା । ଫଳରେ ଗୁପ୍ତଯୁଗ ଓ ଦିଲ୍ଲୀ ସୁଲତାନ ଯୁଗ ମଧ୍ୟରେ ଏହା ଏକ ଦୀର୍ଘ ବିରାମର ଅବଧି ହୋଇ ରହିଲା ବୋଲି କୁହାଯାଉଥିଲା । ଏହି ଧାରଣାକୁ ଆଧାର କରି ସିଦ୍ଧାନ୍ତ ଦିଆଗଲା ଯେ, ବିନା ସାମ୍ରାଜ୍ୟରେ ଭାରତକୁ ରାଜନୈତିକ ଅରାଜକତାର ସମ୍ମୁଖୀନ ହେବାକୁ ପଡ଼େ । ମାତ୍ର ଯେତେବେଳେ ଏହି ସମୟର ଆଞ୍ଚଳିକ ଇତିହାସକୁ ନେଇ ଗବେଷଣା ଆରମ୍ଭ ହେଲା, ଜଣାଗଲା ଯେ ଉକ୍ତ କାଳଖଣ୍ଡରେ ଅନେକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ପରିବର୍ତ୍ତନ ସଂଘଟିତ ହୋଇଛି । ଆଞ୍ଚଳିକ ତଥ୍ୟ ସାମଗ୍ରୀକୁ ଅଧ୍ୟୟନ କଲାରୁ ବିଭିନ୍ନ ଅଞ୍ଚଳ ମଧ୍ୟରେ ରହିଥିବା ଅନ୍ତଃସମ୍ବନ୍ଧ ସ୍ପଷ୍ଟ ରୂପରେ ପରିଲକ୍ଷିତ ହେଲା । ଏଣିକି ଗାଙ୍ଗେୟ ସମତଳରେ କେନ୍ଦ୍ରିତ ନ ହୋଇ ଦୃଷ୍ଟି ଉପଦ୍ୱୀପର ଅନ୍ୟାନ୍ୟ କ୍ଷେତ୍ରକୁ ମଧ୍ୟ ବିସ୍ତାରିତ ହେଲା । ଐତିହାସିକ ପ୍ରଶ୍ନମାନ ପରିବର୍ତ୍ତନର ସ୍ୱରୂପ ଓ ଆକାର ଉପରେ କେନ୍ଦ୍ରିତ ହେଲେ ।

ବିଗତ ଅର୍ଦ୍ଧ-ଶତାବ୍ଦୀ ମଧ୍ୟରେ ଏହି କାଳଖଣ୍ଡ (୫00 ରୁ 1300 ଖ୍ରୀଷ୍ଟାବ୍ଦ) ବହୁ ଐତିହାସିକଙ୍କର ଧ୍ୟାନ ଆକର୍ଷଣ କରିଛି । ଏହାର ଗୋଟାଏ କାରଣ ହେଲା, ଆଞ୍ଚଳିକ ଇତିହାସର ଆକର୍ଷଣ । ମାତ୍ର ତା'ଠାରୁ ପ୍ରମୁଖ କାରଣ ହେଲା ସାମନ୍ତବାଦକୁ (Feudalism) ନେଇ ବିତର୍କ । ଇତିହାସର ଏହି ଉଲ୍ଲିଖିତ କାଳଖଣ୍ଡରେ ଭାରତରେ ସାମନ୍ତବାଦ ରହିଥିଲା ନା ନାହିଁ । ଏହି ପ୍ରସଙ୍ଗକୁ ନେଇ ରହିଥିବା ବିତର୍କ ସ୍ୱାଭାବିକ ଢଙ୍ଗରେ ଐତିହାସିକମାନଙ୍କୁ କାଳଖଣ୍ଡ ପ୍ରତି ଆକୃଷ୍ଟ କଲା । ନୂଆ ହୋଇ ଗଠିତ ହେଉଥିବା ରାଜ୍ୟ ଓ ସମାଜର ଗଠନଶୈଳୀକୁ ବ୍ୟାଖ୍ୟା କରିବା ସକାଶେ ନିକଟ ଅତୀତରେ ବିକଳ୍ପ ସିଦ୍ଧାନ୍ତମାନ ବାହାରିଲା । ଦକ୍ଷିଣ ଭାରତର ସନ୍ଦର୍ଭରେ ତାକୁ ଦେଖାଗଲା, ଚର୍ଚ୍ଚା ହେଲା । ମାତ୍ର ତହିଁରେ ଏଭଳି କିଛି ସମସ୍ୟା ପରିଲକ୍ଷିତ ହେଲା, ଯେଉଁଥିପାଇଁ ତା'ର ପ୍ରୟୋଗକୁ ନେଇ ପ୍ରଶ୍ନଚିହ୍ନ ଉଠିଲା । କାଳଖଣ୍ଡର ବ୍ୟାପକ ଇତିହାସ ଉପରେ ତା'ର ଏକକାଳୀନ ପ୍ରୟୋଗ ଅହେତୁକ ମନେହେଲା ।

କାଳଖଣ୍ଡରେ ଯାହା ସବୁ ପରିବର୍ତ୍ତନ ସଂଘଟିତ ହେଲା, ତା'ର ବ୍ୟାଖ୍ୟା କରିବା ଆଗରୁ ପ୍ରଥମ ଦୁଇଟି ସିଦ୍ଧାନ୍ତର ବୈଶିଷ୍ଟ୍ୟଗୁଡ଼ିକୁ ସଂକ୍ଷେପରେ ଚର୍ଚ୍ଚା କରିବା ହୁଏତ ପ୍ରାସଙ୍ଗିକ ହେବ । ସିଦ୍ଧାନ୍ତ ଦୁଇଟିକୁ ମୁହାଁମୁହିଁ ରଖି ରାଜନୈତିକ ବ୍ୟବସ୍ଥା, ସାମାଜିକ ପରିବର୍ତ୍ତନ ତଥା ଧର୍ମ ଅନୁଷ୍ଠାନଗୁଡ଼ିକର ଐତିହାସିକ ଭୂମିକାକୁ ବିବିଧ ପ୍ରକାରରେ ଗବେଷଣା କରାଯାଇଛି । ପ୍ରାକ୍-ଗୁପ୍ତଯୁଗ ତୁଳନାରେ ଏହି ଯୁଗ ପାଇଁ ଯେହେତୁ ପୁରାତାତ୍ତ୍ୱିକ ଓ ପୋଥିଗତ ସ୍ରୋତସାମଗ୍ରୀର ପରିମାଣ ଢେର୍ ଅଧିକ, ଗବେଷଣା ବିଶେଷ ଉପାଦେୟ ସିଦ୍ଧ ହୋଇଛି ।

ଭାରତରେ ସାମନ୍ତବାଦୀ ସମାଜ ବା ସାମନ୍ତୀ ଉତ୍ପାଦନ ପ୍ରଣାଳୀ (Feudal mode of Production) ରହିଥିଲା ବୋଲି ଅନେକ ଗବେଷକ ତର୍କ ଦିଅନ୍ତି । ତା'ର ଏକ ସାରାଂଶ ଦେବା ହୁଏତ ବିଧେୟ ହେବ । 'ଫ୍ୟୁଡାଲ' ବା 'ସାମନ୍ତୀ' (feudal) ଶବ୍ଦର ବ୍ୟାପକ ପ୍ରୟୋଗ ଯୋଗୁଁ ବିବିଧ କିସମର ଅର୍ଥ ବାହାରୁଛି । ଖାସ୍‌କରି ସବୁ କିସମର ସମାଜ ଓ ନାନା କିସମର ସନ୍ଦର୍ଭରେ ଶବ୍ଦଟିର ଉପଯୋଗ ହେବା ଯୋଗୁଁ ଏହା ଦେଖିବାକୁ ମିଳୁଛି । କାଳଖଣ୍ଡର ଭାରତ ଇତିହାସ ସମ୍ବନ୍ଧୀୟ ବ୍ୟାଖ୍ୟା ଲାଗି ଉକ୍ତ ଅବଧାରଣାକୁ ବ୍ୟବହାର କରୁଥିବା ଐତିହାସିକମାନଙ୍କ ମଧ୍ୟରେ ଏକ ମୋଟାମୋଟି ସହମତି ମଧ୍ୟ ଦେଖାଯାଉଛି । ମାତ୍ର ତା' ସହିତ ଅବଧାରଣାକୁ ନେଇ ସେମାନଙ୍କ ମଧ୍ୟରେ ରହିଥିବା ଅସହମତିର ମାତ୍ରା ମଧ୍ୟ କିଛି ଊଣା ନୁହେଁ ବୋଲି ସିଦ୍ଧ ହେଉଛି ।

କାଳଖଣ୍ଡର ଏକ ବୈଶିଷ୍ଟ୍ୟ ହେଲା ଯେ ଏହି ଅବଧିରେ ରାଜାମାନେ ଖୁବ୍ ଭୂମିଦାନ ଦେଲେ, ଯାହାର ପ୍ରଭୂତ ସାକ୍ଷ୍ୟ-ପ୍ରମାଣ ଗଚ୍ଛିତ ଅଛି । ଏହାର ଅର୍ଥ ହେଲା, ପ୍ରଶାସନ

ହାତରୁ ଭୂ-ରାଜସ୍ୱ ଆଦାୟ କରିବାର ଅଧିକାର ତିରୋହିତ ହେବା । ଶକ୍ତିଶାଳୀ ରାଜାମାନେ ଉକ୍ତ ଅଧିକାରକୁ କମ୍ ଶକ୍ତିଶାଳୀ ରାଜାମାନଙ୍କ ଉପରେ ନ୍ୟସ୍ତ କରି ଏକ ରକମର ନିବେଶ କାର୍ଯ୍ୟ କରୁଥିଲେ । ବ୍ରାହ୍ମଣ କିମ୍ବା ଅଧିକାରୀମାନଙ୍କ ହାତରେ ଭୂମିଦାନ କରିବା ଅର୍ଥ ଜମିର ମାଲିକ ସୃଷ୍ଟି କରବା କିମ୍ବା ଗ୍ରାମ ସ୍ଥାପନା କରିବା । ସେ କ୍ଷେତ୍ରରେ ଦାନଗ୍ରହିତା ଭୂ-ରାଜସ୍ୱ ଆଦାୟର ଅଧିକାର ପାଇଲେ ଏବଂ ନିଜେ ଖଜଣା ଦେବାରୁ ନିବୃତ୍ତି ପାଇଲେ । ଅର୍ଥାତ୍ ମାଫିଦାର ହେଲେ । ଜମିରୁ ଆଦାୟ ହେଉଥିବା ରାଜସ୍ୱକୁ ଦାନ ଦେବା ସକାଶେ ଭୂମିଦାନ କରାଯାଉଥିଲା । ସମୟକ୍ରମେ ଅନେକ କ୍ଷେତ୍ରରେ ଉଭୟ ଭୂମି ଓ ତହିଁରୁ ଲବ୍ଧ ରାଜସ୍ୱକୁ ଦାନ ଦିଆଯାଉଥିଲା । ଉଭୟ ସ୍ଥିତିରେ ଗ୍ରହିତା କର ଓ ଶ୍ରମ-କର ବା ବେଠି-ବେଗାରି ନାଁରେ କୃଷକ କରୁଥିବା ଉତ୍ପାଦନର ଅଧିଶେଷକୁ ହସ୍ତଗତ କରିନେଉଥିଲା । ଅଧିଶେଷକୁ ହସ୍ତଗତ କରିବା ଲାଗି ରହିଥିବା ପ୍ରାପ୍ତ ଅଧିକାରକୁ ପ୍ରୟୋଗ କରୁଥିଲା । ଅଧିକାର ମଧ୍ୟରେ ବଳ ପ୍ରୟୋଗ କିମ୍ବା ବଳ ପ୍ରୟୋଗର ଧମକ ମଧ୍ୟ ସାମିଲ ଥିଲା । ଦାନରେ ପ୍ରାପ୍ତ ଭୂମି କିମ୍ବା ଗ୍ରାମର ସଞ୍ଚାଳନ ପାଇଁ ଗ୍ରହିତାକୁ କେତେକ ଅଧିକାର ମିଳିଥିଲା ଓ କର୍ତ୍ତବ୍ୟ ନିର୍ବାହ କରିବାକୁ ପଡୁଥିଲା । ଏହାର ଏକ ବିଶେଷ ସୂଚୀ ରହିଥିଲା । ସୂଚୀରେ ପୂର୍ବୋକ୍ତ କରର ଉଲ୍ଲେଖ ରହୁଥିଲା, ଯାହାକୁ ଗ୍ରହିତା ଆଦାୟ କରିପାରୁଥିଲା । ବ୍ୟବହାରିକ ଦୃଷ୍ଟିରେ ମଧ୍ୟବର୍ତ୍ତୀ ଭୂମି ଅଧିକାରୀ ବା ଭୂ-ସ୍ୱାମୀଙ୍କର ଜମି ଉପରେ ପ୍ରତ୍ୟକ୍ଷ ନିୟନ୍ତ୍ରଣ ରହିଥିଲା । ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଧାରା ଚାଲିଲା । ବର୍ଣ୍ଣିତ ସମୟରେ ନଗରୀୟ ସଭ୍ୟତା ଓ ବାଣିଜ୍ୟର ମଧ୍ୟ କ୍ରମପତନ ହେଲା । ନଗରୀୟ ସ୍ଥଳୀଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଖନନରୁ ଏହା ସୁସ୍ପଷ୍ଟ ହୁଏ । ନୌବାଣିଜ୍ୟରୁ ପ୍ରାପ୍ତ ଲାଭର ମାତ୍ରା ଊଣା ହେବା ଯୋଗୁଁ ନୌବାଣିଜ୍ୟ ହ୍ରାସ ପାଇଲା; ନଗରୀୟ କେନ୍ଦ୍ରଗୁଡ଼ିକର ମଧ୍ୟ ଅଧୋପତନ ହେଲା । ପୁଣି କେତେକ ପର୍ଯ୍ୟାବରଣଜନିତ ପରିବର୍ତ୍ତନ ଯୋଗୁଁ ବିଭିନ୍ନ କ୍ଷେତ୍ରରେ କୃଷି ଉତ୍ପାଦନ ହ୍ରାସ ପାଇଲା । ବାଣିଜ୍ୟରେ ଅଧୋପତନ ହେବା ଫଳରେ ମୁଦ୍ରାର ଉପଲବ୍ଧତାରେ ମଧ୍ୟ ଘୋର ଅଭାବ ଦେଖିବାକୁ ମିଳିଲା । ଏହି କାରଣରୁ ପ୍ରଶାସନିକ ଅଧିକାରୀମାନେ ବେତନ ପାଇଲେ ନାହିଁ । ତା' ସ୍ଥାନରେ ସେମାନଙ୍କୁ ଭୂମିଦାନ ଦିଆଗଲା । ଦାନରେ ମିଳିଥିବା ଭୂମିରୁ ରାଜସ୍ୱ ଅସୁଲ କରି ସେମାନେ ନିଜର ବେତନ ସଂଗ୍ରହ କରିନେଲେ । ସପ୍ତମ ଶତାବ୍ଦୀ ପରେ ଏଭଳି ଉଦାହରଣର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ସାମନ୍ତମାନଙ୍କର (feudatories) ଅର୍ଥାତ୍ ଦାନଭୋକ୍ତାମାନଙ୍କର ସଂଖ୍ୟା ବଢ଼ିଲା । ଯେହେତୁ ସେମାନେ ସମସ୍ତେ ସମସ୍ତରର ନଥିଲେ, ସେମାନଙ୍କ ମଧ୍ୟରେ ଅନୁକ୍ରମ (hierarchy) ମଧ୍ୟ ବୃଦ୍ଧି ପାଇଲା । ରାଜନୈତିକ କ୍ଷମତାରେ ସମସ୍ତଙ୍କର ସମାନ ପ୍ରବେଶ ନଥିଲା ବୋଲି କ୍ଷମତାର ବିକେନ୍ଦ୍ରୀକରଣ ହେଲା ଏବଂ ସାର୍ବଭୌମତ୍ୱ ବିଖଣ୍ଡିତ ହେଲା ।

ପୁରାଣରେ କଳିଯୁଗର ସଂକଟ କଥା କୁହାଯାଇଛି । ଏହି ସଂକଟ ବେଳାରେ ରାଜାମାନେ ସେମାନଙ୍କର ସତ୍ତା ହରାଇବେ ଏବଂ ନୂତନ କ୍ଷତ୍ରିୟ ବୀରମାନଙ୍କ ହାତକୁ କ୍ଷମତା ଆସିବ ବୋଲି ଭବିଷ୍ୟବାଣୀ ରହିଛି । ନ୍ୟାୟସଙ୍ଗତ ଶାସନ ଯାଇ ତା' ସ୍ଥାନରେ 'ତଳ' ଜାତିର ଲୋକ କ୍ଷମତା ଧାରଣ କରିବେ, ଉଚ୍ଚ ଜାତିର କାର୍ଯ୍ୟ କରିବେ; କ୍ଷମତାଧାରୀ ଅତ୍ୟାଚାରିତ ହେବେ । ପରିବାର ଓ ସମ୍ପତ୍ତି ଅସୁରକ୍ଷାର ଶିକାର ହେବ ବୋଲି ମଧ୍ୟ ପୁରାଣରେ ସତର୍କ କରିଦିଆଯାଇଛି । ଏହି ଅରାଜକତାକୁ ନିଃଶେଷକରି ଧର୍ମ ସଂସ୍ଥାପନ ପାଇଁ କଳ୍କି ବେଶରେ ବିଷ୍ଣୁ ଅବତାର ଗ୍ରହଣ କରିବେ । ଶତାବ୍ଦୀର ଆରମ୍ଭ କାଳରେ ସଂଘଟିତ ପ୍ରଭାବଶାଳୀ ସାମାଜିକ ପରିବର୍ତ୍ତନକୁ ଏହା ଇଙ୍ଗିତ କରୁଛି ବୋଲି ମନେକରାଯାଏ ।

ଭାରତରେ ସାମନ୍ତବାଦ ଥିଲା ବୋଲି ଯେଉଁ ବିଦ୍ୱାନମାନେ ତର୍କ ଦିଅନ୍ତି, ସେମାନଙ୍କ ମତରେ ଏଠାରେ କୃଷକମାନଙ୍କର ଗତିଶୀଳତା ଉପରେ କଟକଣା ରହିଥିଲା । ଏହାର ଫଳସ୍ୱରୂପ, କୃଷକ ରାଜ୍ୟର (tax) କର-ଦାତା ନ ରହି ଭୂ-ସ୍ୱାମୀ ଦାନଗ୍ରହିତାର (rent) ଖଜଣାଦାତାରେ ପରିଣତ ହେଲେ । କୃଷକଠାରୁ ଭିଷ୍ଟି ବା ବେଗାରି ଅସୁଲ କରାଯାଉଥିଲା । ଦାନଗ୍ରହିତା ସେମାନଙ୍କ (କୃଷକ) ଉପରେ ବେନିୟମ କର ମଧ୍ୟ ଲାଗୁ କରିପାରୁଥିଲେ । ପୁଣି ଭୂମି ବ୍ୟତୀତ ଗ୍ରହିତା ଆର୍ଥିକ ଓ ନ୍ୟାୟିକ ଅଧିକାର ମଧ୍ୟ ଲାଭ କରିଥିଲେ, ଯଦ୍ୱାରା କୃଷକ ଉପରେ ଦେୟର ପରିମାଣ ବୃଦ୍ଧି ପାଇଲା । ଏହା କୃଷିଦାସତା (serfdom) ନା ଅନ୍ୟ କିଛି – ତାକୁ ନେଇ ବିଦ୍ୱାନମାନଙ୍କ ମଧ୍ୟରେ ମତୈକ୍ୟ ନାହିଁ । ଗ୍ରାମଗୁଡ଼ିକ ମଧ୍ୟରେ ଆତ୍ମନିର୍ଭରଶୀଳତାର ପ୍ରବୃତ୍ତି ବୃଦ୍ଧି ପାଇଲା ଓ ଗ୍ରାମଗୁଡ଼ିକ ପରସ୍ପରଠାରୁ ବିଚ୍ଛେଦ ହୋଇ ନିରୋଳାରେ ରହିଲେ । ତତ୍କାଳୀନ କେତେକ ଘଟଣାକୁ କୃଷକ ବିଦ୍ରୋହ ରୂପରେ ବିଶ୍ଳେଷଣ କରାଯାଉଛି । ମାତ୍ର ସେତେବେଳେ ବାରମ୍ବାର ଓ ବଡ଼ ଧରଣର ବିଦ୍ରୋହ ନ ହେବା ପଛରେ ବଡ଼ କାରଣ ଥିଲା ଭକ୍ତି ବିଚାରଧାରା ବା ଭକ୍ତିବାଦ । ଏହା ଯୋଗୁଁ ଲୋକଙ୍କର ଦୃଷ୍ଟି ନିଜ ଦାରିଦ୍ର୍ୟ ଆଡ଼କୁ ଯାଉ ନ ଥିଲା । ଦାରିଦ୍ର୍ୟକୁ ନେଇ ଲୋକଙ୍କ ମନରେ ବିଶେଷ କ୍ଷୋଭ ଉତ୍ପନ୍ନ ହେଉ ନ ଥିଲା । ବିଦ୍ୱାନ୍‌ମାନେ ଆହୁରି ମଧ୍ୟ କହନ୍ତି ଯେ, ଲୋକଙ୍କ ଅଧିକ ଆସ୍ଥା ଥିଲା ଭାଗ୍ୟ ଉପରେ, ଯାହାଫଳରେ ସେତେବେଳେ ଜ୍ୟୋତିଷବିଦ୍ୟା ଖୁବ୍ ଲୋକପ୍ରିୟତା ଅର୍ଜନ କଲା ।

ଏହି ମଡେଲରେ ଅନୁବନ୍ଧାତ୍ମକ ସମ୍ବନ୍ଧ ରାଜା ଓ ସାମନ୍ତ ବା feudatory ମଧ୍ୟରେ ସୀମିତ ରହିଥିଲା । ସାମନ୍ତକୁ ରାଜା ଓ ପ୍ରଜା ମଧ୍ୟରେ ଏକ ମଧ୍ୟସ୍ଥି ରୂପରେ ଦେଖିହେବ । ଅଧିପତି ରାଜାଙ୍କ ପ୍ରତି ରହିଥିବା ଅନୁରକ୍ତି ଯୋଗୁଁ ସାମନ୍ତମାନେ ସୈନ୍ୟବଳ ରଖିବାର ବିଧି ଥିଲା । ଆବଶ୍ୟକତା ଅନୁଯାୟୀ ଏହି ସୈନ୍ୟବଳ ରାଜାଙ୍କ କାମରେ ଲାଗିପାରୁଥିଲା । ଅନୁରକ୍ତିର ଅଭାବକୁ ଏକ ଅକ୍ଷମଣୀୟ ଅପରାଧ ବୋଲି ମନେକରାଯାଉଥିଲା । ସାମନ୍ତକୁ

କଦାଚିତ ନିଜ କନ୍ୟାକୁ ରାଜାଙ୍କ ସହିତ ବିବାହ ଦେବାକୁ ନିର୍ଦ୍ଦେଶ ମିଳୁଥିଲା । ରାଜାଙ୍କ ଦ୍ୱାରା ପ୍ରଚଳନ କରାଯାଇଥିବା ମୁଦ୍ରାକୁ ସେ ନିଜ ଅଧିକାରଭୁକ୍ତ କ୍ଷେତ୍ରରେ ପ୍ରଚଳିତ କରୁଥିଲେ । ସେ ଜାରି କରୁଥିବା ଅନୁଶାସନ ଓ ଦାନପତ୍ରରେ ଅଧିପତି ରାଜାଙ୍କ ନାମୋଲ୍ଲେଖ ରହୁଥିଲା । କେତେକ ବିଶେଷ ସମାରୋହରେ ସାମନ୍ତର ଅଧିପତିଙ୍କ ଦରବାରରେ ଉପସ୍ଥିତ ରହିବା ଏକ କର୍ତ୍ତବ୍ୟ ସଦୃଶ ଥିଲା । ଉପାଧି ତଥା ପ୍ରତିଷ୍ଠାସୂଚକ ପ୍ରତୀକଗୁଡ଼ିକର ଉପଯୋଗ କରିବା ପାଇଁ ତାଙ୍କୁ ଅନୁମତି ପ୍ରାପ୍ତ ହେଉଥିଲା । ଏହି ପ୍ରତୀକଗୁଡ଼ିକ ମଧ୍ୟରେ ପ୍ରମୁଖ ଥିଲା ସିଂହାସନ, ପାଲିଙ୍କିରେ ବିଜେ ହେବା, ରାଜକୀୟ ଶୋଭାଯାତ୍ରାରେ ଗଜାରୁଢ଼ ହେବା, ଚାମର ଧାରଣ କରିବା ଓ ପଞ୍ଚବାଦ୍ୟର ଆୟୋଜନ କରିବା । ସାମନ୍ତ ପାଖରେ ଥିବା ବଳକା ଧନସମ୍ପତ୍ତି ରାଜଦରବାରର ଅନୁକରଣ କରିବାରେ, ବିଶେଷକରି ପ୍ରାସାଦ ନିର୍ମାଣରେ ଓ ଧନାଢ଼୍ୟ ମନ୍ଦିର ଗଢ଼ିବାରେ ବ୍ୟୟ ହେଉଥିଲା ।

କେତେକ ଶକ୍ତିଶାଳୀ ସାମନ୍ତ ଭୂମିଦାନ କରିବାର ଅଧିକାର ପାଇଥିଲେ । ଭୂମିଦାନ ପାଇଁ ସେମାନେ ରାଜାଙ୍କ ପାଖରୁ ଅନୁମତି ଲୋଡ଼ୁ ନଥିଲେ, ଯଦିଓ ଅନୁଦାନ ପତ୍ରରେ ଅଧିପତିଙ୍କ ମଧ୍ୟ ନାମୋଲ୍ଲେଖ ରହୁଥିଲା । ଏହାକୁ ଉପ-ସାମନ୍ତୀକରଣର (Sub-infeudation) ଭାରତୀୟ ପ୍ରତିରୂପ ବୋଲି କୁହାଯାଇଛି । ଏହି ଧରଣର ଶକ୍ତିଶାଳୀ ସାମନ୍ତମାନଙ୍କର ନିଜସ୍ୱ ଉପ-ସାମନ୍ତ ଥିଲେ, ଯାହା ଅନୁକ୍ରମ ପ୍ରକ୍ରିୟାକୁ ସୁଦୃଢ଼ କରୁଥିଲା । ଏହି ବ୍ୟବସ୍ଥାର ଆରମ୍ଭ ପୂର୍ବରୁ ଗୁପ୍ତଯୁଗରେ ଦେଖିବାକୁ ମିଳିଥିଲା । ଜଣେ ଗୁପ୍ତରାଜାଙ୍କର ସାମନ୍ତ ଥିଲେ ସୁରଶ୍ମିଚନ୍ଦ୍ର, ଯିଏ ମାତୃବିଷ୍ଣୁଙ୍କୁ ଉପ-ସାମନ୍ତ ପଦରେ ନିଯୁକ୍ତ କରି ରଖିଥିଲେ । କ୍ରମଶଃ ଏହି ପ୍ରବୃତ୍ତି ବୃଦ୍ଧି ପାଇଲା । ସାମନ୍ତମାନେ ଧାରଣ କରୁଥିବା ପଦବୀରୁ ବର୍ଦ୍ଧିତ ଅନୁକ୍ରମକୁ ଦେଖିହୁଏ । ବଡ଼ ବଡ଼ ସାମନ୍ତମାନେ 'ମହାସାମନ୍ତ', 'ମହାମଣ୍ଡଳେଶ୍ୱର' ଆଦି ଉପାଧି ଧାରଣ କରୁଥିଲେ ଏବଂ ଅପେକ୍ଷାକୃତ ସାନ ସାନ ସାମନ୍ତମାନେ 'ରାଜା', 'ସାମନ୍ତ', 'ରଣକ' ଓ 'ଠାକୁର' ଆଦି ପଦବୀରେ ସନ୍ତୁଷ୍ଟ ରହୁଥିଲେ । ଲକ୍ଷ୍ୟ କରିବା କଥା ଯେ, ଉକ୍ତ ଉପାଧିଗୁଡ଼ିକ ପୂର୍ବରୁ ପ୍ରଚଳିତ ଥିଲା । ଗୁପ୍ତୋତ୍ତର କାଳରେ ସେଗୁଡ଼ିକର ଉଦ୍ଭାବନ ହୋଇ ନ ଥିଲା । ମାତ୍ର ପରିବର୍ତ୍ତିତ ସନ୍ଦର୍ଭରେ ସେଗୁଡ଼ିକର ଅର୍ଥ ବଦଳି ଯାଇଥିଲା । ପୂର୍ବରୁ 'ସାମନ୍ତ'ର ଅର୍ଥ ଥିଲା ପଡ଼ୋଶୀ । ମାତ୍ର ତା'ର ଅର୍ଥ ବଦଳିଯାଇ ଏବେ ହେଲା ଅଧୀନସ୍ଥ ଶାସକ କିମ୍ବା ସର୍ଦ୍ଦାର ଅଥବା ଗ୍ରହିତା ।

ଏହି ନିକଟ ଅତୀତରେ ଭିନ୍ନ ଏକ ଦୃଷ୍ଟିଭଙ୍ଗୀରୁ ଉକ୍ତ ପରିବର୍ତ୍ତନକୁ ବିଶ୍ଳେଷଣ କରିବାପାଇଁ ପ୍ରୟାସ କରାଯାଇଛି । କେତେକ ଐତିହାସିକ ସାମନ୍ତବାଦୀ ସମାଜ ପରିବର୍ତ୍ତେ ଭାରତରେ ଏକ ସଂଘଟକ (integrative) ରାଜ୍ୟ ବ୍ୟବସ୍ଥା ରହିଥିଲା ବୋଲି ମତ ଦେଇଛନ୍ତି । ସେମାନଙ୍କ ଯୁକ୍ତି ଅନୁଯାୟୀ, ଗୁପ୍ତୋତ୍ତର ଯୁଗରେ ରାଜ୍ୟର ଗଠନ ପୂର୍ବ ତୁଳନାରେ ଏକ

ସମ୍ପୂର୍ଣ୍ଣ ଭିନ୍ନ ପ୍ରକ୍ରିୟାରେ ହୋଇଥିଲା । ଫଳରେ ତା' ଦ୍ୱାରା ଏକ ପୃଥକ ଧରଣର ଅର୍ଥବ୍ୟବସ୍ଥା ଓ ସମାଜର ସୃଷ୍ଟି ହେଲା । ଏହାକୁ ଭିନ୍ନ ଭିନ୍ନ ମାର୍ଗରେ ପରିଲକ୍ଷିତ କରିହେବ । ନୂତନ ନାମରେ କ୍ଷେତ୍ରଗୁଡ଼ିକର ବିକାଶ ହେଲା ଏବଂ ଶାସକ ବଂଶ କେବଳ କୁଳ ନାମରେ ନୁହେଁ, ତା' ସହିତ ପ୍ରାଦେଶିକ ନାମରେ ମଧ୍ୟ ପରିଚିତ ହେଲେ । କୃଷିକ୍ଷେତ୍ରର ବିସ୍ତାର ହେବାଫଳରେ ସ୍ଥାୟୀରୂପେ ବସତି ସ୍ଥାପନ କରିଥିବା ସମାଜଗୁଡ଼ିକ ବଣଜଙ୍ଗଲରେ ରହୁଥିବା ସମାଜର ସଂସର୍ଗରେ ଆସିଲେ । ଲକ୍ଷ୍ୟ କରିବା କଥା ଯେ ସ୍ଥାୟୀ ବସତି ସ୍ଥାପନ କରିଥିବା ସମାଜ ଥିଲେ ଜାତି-ବିଭାଜିତ ଏବଂ ବଣଜଙ୍ଗଲର ସମାଜ ଥିଲା ଜାତି-ଅପରିଚିତ । ଶାସକବର୍ଗ ବଣୁଆ ସମାଜକୁ ବସତି ସ୍ଥାପନ କରିଥିବା ସମାଜର ନିକଟତର କରିବାକୁ ପ୍ରୟାସ କରୁଥିଲେ । ପାରସ୍ପରିକ ରାଜନୈତିକ ନିର୍ଭରଶୀଳତା ପ୍ରକ୍ରିୟାରେ ଉଦୟ ଲାଭ କରୁଥିବା ରାଜ୍ୟ ଏବଂ ସର୍ଦ୍ଦାରତନ୍ତ୍ର ମଧ୍ୟରେ ସମ୍ବନ୍ଧ ସ୍ଥାପିତ ହେଲା । ଏହି ପରିବର୍ତ୍ତନକୁ କ୍ଷମତାର ବିକେନ୍ଦ୍ରୀକରଣ ନ କହି, ଯାହା ସାମନ୍ତବାଦରେ ଦେଖିବାକୁ ମିଳିଥାଏ, ସାନ ସାନ ରାଜ୍ୟର ଉଦୟ ବୋଲି କୁହାଯାଇଛି । ଏହି ସାନ ରାଜ୍ୟଗୁଡ଼ିକ ସ୍ଥାନୀୟ ସୂତ୍ରରେ କ୍ଷମତା ଲାଭ କଲେ ଏବଂ ସତ୍ତାର କେନ୍ଦ୍ରସ୍ଥଳୀ ରୂପେ ବିକଶିତ ହେଲେ ।

ଏହାକୁ ରାଜ୍ୟ ବ୍ୟବସ୍ଥାର ଆନୁଭୂମିକ (horizontal) ବିସ୍ତାର ରୂପେ ଦେଖିହେବ । ଏଥିରେ ରାଜ୍ୟ ଗଠନ ପୂର୍ବର ଅର୍ଥାତ୍ ପ୍ରାକ୍-ରାଜ୍ୟ ବ୍ୟବସ୍ଥା (Pre-State Politics)ରେ ରୂପାନ୍ତରଣ ହେଲା; ରାଜ୍ୟ ସ୍ଥାନୀୟ ରାଜନୀତିରେ ଆଉ ସୀମିତ ହୋଇ ରହିଲା ନାହିଁ । ପ୍ରାକ୍-ରାଜ୍ୟ ବ୍ୟବସ୍ଥାରେ ରାଜତନ୍ତ୍ରର ପ୍ରତିଷ୍ଠା ହେଲା । କ୍ଷମତାର କେନ୍ଦ୍ରମାନ ସୃଷ୍ଟିହେବା ପ୍ରକ୍ରିୟାରେ ମୁଖ୍ୟ ରାଜବଂଶର ଅଧୀନସ୍ଥ ଥିବା ଓ ଶାଖା-ରାଜବଂଶର କର୍ତ୍ତୃତ୍ୱାଧୀନ ଥିବା ବସତିକୁ ସ୍ୱାଧୀନ କରାଯାଉଥିଲା । ଏହି ଶାଖା-ରାଜବଂଶକୁ ଅନେକ ସମୟରେ ସାମନ୍ତ ଉପାଧିରେ ଅଭିହିତ କରାଯାଉଥିଲା । ଯେହେତୁ ସାମନ୍ତମାନଙ୍କର ଅନୁକ୍ରମ ବା ସୋପାନର ବିଧିକୁ ପାଳନ କରିବାର ନିୟମ ଥିଲା, ରାଜଦରବାରରେ ଭିନ୍ନ ଭିନ୍ନ ସାମନ୍ତଙ୍କର ପ୍ରବେଶ ଅଲଗା ଅଲଗା ସୀମା ପର୍ଯ୍ୟନ୍ତ ହେଉଥିଲା । ସେମାନଙ୍କର କ୍ଷମତାର ଉତ୍ସ ଥିଲା ରାଜବଂଶର କେନ୍ଦ୍ର । ଭୂମି ଅନୁଦାନ ପତ୍ରରେ ଉଭୟ ଅଧିକାର ଓ କର୍ତ୍ତବ୍ୟର ଉଲ୍ଲେଖ ରହୁଥିଲା । ଶାସକମାନେ ପ୍ରଶାସନ ମାଧ୍ୟମରେ ରାଜତ୍ୱ କରୁଥିଲେ । ବଂଶଗତ ସମ୍ବନ୍ଧର ଏକ ତନ୍ତ୍ର ପ୍ରଶାସନକୁ କାର୍ଯ୍ୟକାରୀ ଓ ନିୟନ୍ତ୍ରଣ କରୁଥିଲା ।

ସ୍ଥାୟୀଭାବେ ବସତି ସ୍ଥାପନ କରି ନ ଥିବା ଅନେକ ଲୋକଙ୍କୁ କୃଷି କାର୍ଯ୍ୟ କରିବାକୁ ଦିଆଗଲା ଏବଂ ସେହି ମାଧ୍ୟମରେ କୃଷିର ବିସ୍ତାର କରାଗଲା । କୃଷିଭିତ୍ତିକ ଏହି ପରିବର୍ତ୍ତନ ମୁଖ୍ୟତଃ ଉପାନ୍ତ କ୍ଷେତ୍ରରେ ଦେଖିବାକୁ ମିଳିଲା । ଧୀରେ ଧୀରେ ବାଣିଜ୍ୟ ତନ୍ତ୍ରର ବିକାଶ

ହେଲା, ଯାହା ବାଣିଜ୍ୟ କର ବୃଦ୍ଧିକୁ ଇଙ୍ଗିତ କଲା । ଜାତି ଆଧାରିତ ସମାଜକୁ ସ୍ୱୀକୃତି ମିଳିଲା, କାରଣ ଲୋକ ଜାତିରେ ରୂପାନ୍ତରିତ ହେଲେ । ଏହି ପ୍ରକ୍ରିୟାରେ ବିଭିନ୍ନ ଗୋଷ୍ଠୀ ଏକ ନିର୍ଦ୍ଧାରିତ ବ୍ୟବସ୍ଥାର ଅଙ୍ଗ ହେଲେ । ଧାର୍ମିକ ଅନୁଷ୍ଠାନଗୁଡ଼ିକ ମଧ୍ୟ ଦାନର ଭୋକ୍ତା ହେଲେ । ସେଗୁଡ଼ିକର ତନ୍ତ୍ର ସାମନ୍ତମାନଙ୍କୁ ପ୍ରାପ୍ତ ଭୂମିଦାନ ଭଳି ଥିଲା । ଧର୍ମସ୍ଥଳୀଗୁଡ଼ିକ ନାନା କିସମର ଭୂମିକା ନିର୍ବାହ କରୁଥିଲେ । ରାଜଦରବାରରୁ ଭୂମିଦାନ ପାଇ ଧର୍ମସ୍ଥଳୀଗୁଡ଼ିକରେ ରାଜନୈତିକ ଓ ଆର୍ଥିକ ସମ୍ବନ୍ଧ ସ୍ଥାପିତ ହେଲା । ଯେଉଁଠି ମନ୍ଦିରର ପୃଷ୍ଠଭୂମି ଉପରେ ନିୟନ୍ତ୍ରଣ ଥିଲା, ସେଠାରେ ମନ୍ଦିର ନଗରୀୟ କେନ୍ଦ୍ରର ମୁଖ୍ୟ ଆଧାର ହେଲା । ସ୍ଥାନୀୟ ଉପାସନା ବିଧିଗୁଡ଼ିକ ହିନ୍ଦୁ ସଂପ୍ରଦାୟରେ ସମନ୍ୱିତ ହେଲେ । ପୃଷ୍ଠପୋଷକତା ମିଳିଲା । ପୃଷ୍ଠପୋଷକଙ୍କ ମଧ୍ୟରେ ରାଜବଂଶର ଲୋକ ମଧ୍ୟ ରହିଥିଲେ । ଏହିସବୁ ଉପାସନା ବିଧିକୁ ପ୍ରମୁଖତା ଦେଉଥିବା ମନ୍ଦିରଗୁଡ଼ିକ ରାଜନୈତିକ ଓ ଧାର୍ମିକ କାର୍ଯ୍ୟରେ ସମରୂପରେ ଜଡ଼ିତ ହେଲେ ।

ରାଜପୁତ୍‌ର ମର୍ଯ୍ୟାଦା ପ୍ରତିଷ୍ଠା ଓ ରାଜପୁତ୍ ରାଜ୍ୟର ଗଠନ ପ୍ରକ୍ରିୟାକୁ ପର୍ଯ୍ୟାଲୋଚନା କଲାବେଳେ ଏହି ସିଦ୍ଧାନ୍ତକୁ ସାମାନ୍ୟ ବିସ୍ତାରରେ ବ୍ୟବହାର କରାଯାଏ । ଯେଉଁଠି ରାଜପୁତ୍‌ମାନେ ବଂଶଗତ ସମ୍ବନ୍ଧ ଦାବି କରୁଥିଲେ ଏବଂ କୁଟୁମ୍ବ ତନ୍ତ୍ରକୁ ଅବ୍ୟାହତ ରଖିଥିଲେ, ସେଠାରେ ମଧ୍ୟ ସେମାନେ ସର୍ବଦା କୌଟମ୍ବିକତା ସହିତ ଯୋଡ଼ିହୋଇ ନ ଥିଲେ । ହୁଏତ ସେମାନେ ଭିନ୍ନ ଭିନ୍ନ ପୃଷ୍ଠଭୂମିରୁ ଆସିଥିଲେ । ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସେମାନେ ରାଜନୈତିକ କ୍ଷମତା ଲାଭ କରୁଥିଲେ ଏବଂ ସେଠାକାର ଭୂମି ଓ ବାଣିଜ୍ୟ ଉପରେ ନିୟନ୍ତ୍ରଣ ଜାହିର କରି ଆର୍ଥିକ ସଂସାଧନର ମାଲିକରେ ପରିଣତ ହେଉଥିଲେ । ବ୍ରାହ୍ମଣ ତଥା ମନ୍ଦିରଗୁଡ଼ିକୁ ସେମାନେ ଭୂମିଦାନ କରିବାରୁ ସେମାନଙ୍କ ବୈଧତା ବୃଦ୍ଧି ପାଇଲା । ସୈନିକ ସହାୟତା ଓ ଅନ୍ୟ ବଂଶଗୁଡ଼ିକର ସହଯୋଗ ଲାଭକରି ସେମାନେ ଖାସ୍ ବଂଶଗୁଡ଼ିକର ଶାସକବର୍ଗ ହେଲେ । ଅନୁକ୍ରମରେ ଥିବା ଅନ୍ୟାନ୍ୟ ଅଭିଜନ, ଯଥା- ରାଜା, ରଣକ ଏବଂ ଠାକୁରମାନଙ୍କ ମାଧ୍ୟମରେ ସେମାନେ ନିଜର ପ୍ରଭୁତ୍ୱ ବଜାୟ ରଖିଲେ ।

ଏହି ସିଦ୍ଧାନ୍ତ ରାଜପୁତ୍‌ବର୍ଗର ପ୍ରତିଷ୍ଠା ସନ୍ଦର୍ଭରେ ଅଧିକ ଉପଯୁକ୍ତ ମନେହୁଏ । ମାତ୍ର ସିଦ୍ଧାନ୍ତଟିକୁ ଚର୍ଚ୍ଚିତ କାଳଖଣ୍ଡର ମୋଟ ଇତିହାସ ଉପରେ ଲାଗୁ କରାଯାଇ ନାହିଁ । ସର୍ବତ୍ର ବଂଶ ବା ଶାଖା-ବଂଶ ଦେଖିବାକୁ ମିଳି ନଥିଲା । ଭୂମିଦାନ ଦେଲାବେଳେ ଆଞ୍ଚଳିକ ବିବିଧତା କଥା ରହିଥିଲା । ଶବ୍ଦାବଳୀର ପରିବର୍ତ୍ତନ, ଅଧିକାର ତଥା କର୍ତ୍ତବ୍ୟରେ ଅଦଳବଦଳ ଏବଂ ସେଗୁଡ଼ିକର ପରିଣାମକୁ ଉଭୟ ସମୟ ଓ କ୍ଷେତ୍ର ପରିପ୍ରେକ୍ଷୀରେ ଦେଖାଯିବା କଥା । ଭୂମିଦାନ ଅନେକ ସମୟରେ ଦୁଇଟି ପ୍ରତିଯୋଗୀ ପକ୍ଷ ମଧ୍ୟରେ ସନ୍ତୁଳନ ରକ୍ଷା କରିବା

ଉଦ୍ଦେଶ୍ୟରେ ଦିଆଯାଇଥାଇପାରେ । ପଦମର୍ଯ୍ୟାଦାର ସୋପାନୀକରଣ ସମ୍ଭବତଃ ଅସନ୍ତୋଷର କାରଣ ହେଉଥିଲା । ସାମନ୍ତମାନଙ୍କ ମଧ୍ୟରେ କେଉଁଭଳି ଭାବେ ସନ୍ତୁଳନ ରଖାଯାଉଥିଲା, ତା'ର ଏକ ବର୍ଣ୍ଣନ ମଣ୍ଡଳ ସିଦ୍ଧାନ୍ତରେ ରହିଛି । ସିଦ୍ଧାନ୍ତ ଅନୁଯାୟୀ ରାଜାମାନଙ୍କର ଏକ ମଣ୍ଡଳରେ ସର୍ବୋଚ୍ଚତା ପାଇବା ପାଇଁ ଆଶାୟୀ ରୂପରେ ଚାରିକଡ଼େ ମିତ୍ର ଓ ଶତ୍ରୁ ବେଢ଼ି ରହିଥାନ୍ତି । ରାଜନୀତି ବିସ୍ତାରିତ ମଣ୍ଡଳ ଭିତରେ ଥିବା ଶତ୍ରୁ ଓ ମିତ୍ର ସହିତ ସଂଶ୍ଲିଷ୍ଟ ଥାଏ । ମୋଟ କଥା ହେଲା ଯେ, ସଂଘଟକ ରାଜ୍ୟବ୍ୟବସ୍ଥାର ଅବଧାରଣା ସାମନ୍ତବାଦଠାରୁ ଭିନ୍ନ । ଅନ୍ୟପକ୍ଷରେ, ସାମନ୍ତବାଦର ଅବଧାରଣା ଭଳି ଏହା ତତ୍କାଳୀନ ସମାଜର ଚରିତ୍ରକୁ ତର୍ଜମା କରିବାରେ ପ୍ରଭୂତ ଭୂମିକା ନିର୍ବାହ କରେ ଏବଂ ବୈକଳ୍ପିକ ବିଶ୍ଳେଷଣ ପାଇଁ ବାଟ ଦେଖାଏ ।

ଭାରତରେ ସଂସାଧନର ସଂଗଠନ ଓ ଜାତି ତଥା ରୀତିନୀତିକୁ ନେଇ ବିବିଧତା ରହିଛି । ଏହି କାରଣରୁ ଗୋଟାଏ କିସମର ବ୍ୟାଖ୍ୟାକୁ ସବୁଠାରେ ଲାଗୁ କଲେ ସମସ୍ୟା ସୃଷ୍ଟି ହୁଏ । ଆଜି ମଧ୍ୟ ଅନେକଗୁଡ଼ିଏ ପ୍ରଶ୍ନ ରହିଛି, ଯାହାକୁ ଭଲଭାବେ ଅନୁଧ୍ୟାନ କରାଯାଇ ପାରିନାହିଁ । ଉଦାହରଣ ସ୍ୱରୂପ, ଯଦି କ୍ଷେତ୍ରବିଶେଷର ବିଶ୍ଳେଷଣରେ ମାଟି, ଫସଲ, କୃଷି ସମ୍ବନ୍ଧୀୟ ଟେକ୍‌ନୋଲୋଜି, ଜଳସେଚନ ତଥା ଜମିମାଲିକର ସ୍ୱରୂପ ଓ ମହତ୍ତ୍ୱ ସମ୍ବନ୍ଧିତ ପାର୍ଥକ୍ୟକୁ ଧ୍ୟାନ ଦିଆଯାଏ, କୃଷିର ବିବେଚନାରୁ ଅଧିକ ଯଥାର୍ଥ ତଥ୍ୟ ପ୍ରାପ୍ତ ହେବ । ଉଦାହରଣ ସ୍ୱରୂପ, ପଞ୍ଜାବ ଏବଂ ଉତ୍ତର-ପଶ୍ଚିମ କ୍ଷେତ୍ରରେ ଭୂମି-ଦାନର ସାକ୍ଷ୍ୟ ମିଳେ ନାହିଁ । ପୁଣି ପଞ୍ଜାବରେ ଏକ ବ୍ୟବସାୟୀ ଜାତି ଥିଲା ପ୍ରଭୁତ୍ୱପୂର୍ଣ୍ଣ ଜାତି । ସେଠାରେ ବଂଶଗତ ସମ୍ବନ୍ଧ ଆଧାରରେ ରାଜ୍ୟ ଗଠିତ ହୋଇଥିବାର ମଧ୍ୟ ପ୍ରମାଣ ମିଳେ ନାହିଁ । ଅନ୍ୟ କ୍ଷେତ୍ର ସହ ଏହାର ଏକ ତୁଳନାତ୍ମକ ଅଧ୍ୟୟନ ହେଲେ ଉତ୍ତର-ପଶ୍ଚିମ ଅଞ୍ଚଳ ଏବଂ ଭୂମିଦାନ ବ୍ୟବସ୍ଥା ସମ୍ବନ୍ଧରେ ଅନେକ ନୂଆ ତଥ୍ୟ ମିଳିପାରିବ । ଯଦି ଜାତିଗତ ଅନୁକ୍ରମର ଧାରାରେ ଆଞ୍ଚଳିକ ବିବିଧତା ରହିଥିଲା, ତେବେ ସେବା-ସମ୍ବନ୍ଧର ଗଠନଶୈଳୀ ମଧ୍ୟ ସମାଜର ଉପର ସ୍ତରରେ ବିବିଧତାପୂର୍ଣ୍ଣ ହୋଇଥିବ ।

ଏହି ଯୁଗର ରାଜନୀତି ଓ କ୍ରିୟାକଳାପ ଯୋଗୁଁ ସମାଜ ଓ ଅର୍ଥବ୍ୟବସ୍ଥାର ପୁନର୍ବିନ୍ୟାସ ସମ୍ଭବ ହେଲା ବୋଲି ସିଦ୍ଧ ହୋଇସାରିଛି । ଏହାକୁ କେଉଁଭଳିଭାବେ ବ୍ୟାଖ୍ୟା କରାଯିବ ଏବଂ ଏଥିରେ କ'ଣ ସବୁ ଛାପ ଦିଆଯିବ, ତାକୁ ନେଇ ଅବଶ୍ୟ ତର୍କ ଶେଷ ହୋଇନାହିଁ । ଏହିସବୁ ପରିବର୍ତ୍ତନର ଅଧ୍ୟୟନ ଯେତେବେଳେ ଆରମ୍ଭ ହୋଇଥିଲା, ସେତେବେଳେ ମନେକରାଯାଉଥିଲା ଯେ, ଏହା ୟୁରୋପର ପ୍ରତିରୂପ । ମାତ୍ର ପରେ ଅଧ୍ୟୟନରୁ ନୂଆ ଦିଗ ସବୁ ଉଦ୍ଭାସିତ ହେଲା । ଏଥିରୁ କେତେକ ପ୍ରବୃତ୍ତିକୁ ସାମନ୍ତୀ ଉତ୍ପାଦନ ପଦ୍ଧତିରୁ ସ୍ପଷ୍ଟ

ହେଉଥିବା ତୁଳନା ମାଧ୍ୟମରେ ଭଲଭାବେ ବୁଝାଯାଇ ପାରିବ । ଅନ୍ୟ ପ୍ରବୃତ୍ତିଗୁଡ଼ିକ ଭିନ୍ନ ପରିପ୍ରେକ୍ଷୀରେ ସୁସ୍ପଷ୍ଟ ହୁଏ । ସବୁଠାରୁ ବଡ଼ କଥା ହେଲା, ବିବିଧତା ରହିଛି । ଦ୍ୱିତୀୟତଃ, ବିବିଧତା କେବଳ ତତ୍କାଳୀନ ଆର୍ଥିକ ପରିସ୍ଥିତିର ସଂରଚନାରେ ଦେଖାଯିବ ନାହିଁ, ବରଂ ସମାଜକୁ ସଂଗଠିତ କରୁଥିବା ଏକ ବ୍ୟବସ୍ଥା ରୂପରେ ତଥା ଜାତି ବ୍ୟବସ୍ଥାର ହସ୍ତକ୍ଷେପ ରୂପରେ ତାହା ପ୍ରତିଫଳିତ ହେବ । ଏହାଫଳରେ କେତେକଙ୍କୁ ବିଶେଷାଧିକାର ମିଳିଥିବ ଓ ଅନ୍ୟ କେତେକ ସ୍ୱ-ଅଧିକାର ହରାଇଥିବେ ବୋଲି ଅନୁମାନ କରିହୁଏ ।

ଏହି ସମୟରେ ବିକଶିତ ହୋଇଥିବା ବିକାଶର ସ୍ୱରୂପ ବିଭିନ୍ନ କିସମର ଥିଲା ସତ, ତା' ସତ୍ତ୍ୱେ ତା'ର ଦୁଇଟି ପର୍ଯ୍ୟାୟକୁ ପ୍ରମୁଖ ବୋଲି କୁହାଯାଏ । ଐତିହାସିକ ଦାମୋଦର କୋଶାମ୍ବୀ ବିକାଶର ଯେଉଁସବୁ ଚରିତ୍ରକୁ ଚିହ୍ନିତ କରିଥିଲେ, ତାହା ଏହି ପ୍ରମୁଖ ପର୍ଯ୍ୟାୟରେ ଥିବା ଚରିତ୍ରଠାରୁ ଭିନ୍ନ ବୋଲି ମନେକରାଗଲା । ପ୍ରଥମ ପର୍ଯ୍ୟାୟରେ ନୂତନ କ୍ଷେତ୍ରମାନ ସ୍ଥାପନା ହେଲା, ମଧ୍ୟସ୍ଥୀ ଓ କ୍ଷତ୍ରିୟମାନଙ୍କର କର୍ତ୍ତୃତ୍ୱ ସୃଷ୍ଟି ହେଲା ଏବଂ ଆଗ ତୁଳନାରେ ଅଲଗା ଧାର୍ମିକ ଆଚରଣ ଦେଖିବାକୁ ମିଳିଲା । ପରବର୍ତ୍ତୀ ପର୍ଯ୍ୟାୟରେ ନୂତନ ବ୍ୟବସ୍ଥାର ସ୍ଥାପନା ହେଲା । ପ୍ରଥମ ପର୍ଯ୍ୟାୟରୁ ପରବର୍ତ୍ତୀ ପର୍ଯ୍ୟାୟକୁ ଯେଉଁ ପରିବର୍ତ୍ତନ, ତହିଁରେ ଭୂମି-ଦାନର ମାତ୍ରା ବୃଦ୍ଧି ହେଲା, ବାଣିଜ୍ୟର ପୁନରୁତ୍ଥାନ ହେଲା, ଅର୍ଦ୍ଧାଧିକ ଲୋକଙ୍କର ଜାତି ବ୍ୟବସ୍ଥାରେ ସମାବେଶ ଦେଖିବାକୁ ମିଳିଲା ତଥା ନୂତନ ଧାର୍ମିକ ସଂପ୍ରଦାୟଗୁଡ଼ିକର ଗଠନ ହେବାର ଦେଖାଗଲା । ଏସବୁଥିରେ ପ୍ରଥମ ପର୍ଯ୍ୟାୟ ତୁଳନାରେ ଦ୍ୱିତୀୟ ପର୍ଯ୍ୟାୟ ବେଳକୁ ଅଭିବୃଦ୍ଧି ହେଲା ଅଥବା ସଂଶୋଧନ ହେଲା । ଉଦାହରଣ ସ୍ୱରୂପ, ସାମନ୍ତୀ ସମାଜର ବାଣିଜ୍ୟରେ ଯଦି ହ୍ରାସ ହେଲା, ପରେ ଦ୍ୱିତୀୟ ପର୍ଯ୍ୟାୟରେ ବାଣିଜ୍ୟରେ ଅଭିବୃଦ୍ଧି ଘଟିଲା । ସମାଜର ସାମନ୍ତୀ ଧାରାରେ ଏହା ନିଶ୍ଚୟ କିଛିଟା ପ୍ରଭାବ ପକାଇଥିବ ବୋଲି ଅନୁମାନ କରାଯାଏ । ସେମିତି ଆଞ୍ଚଳିକ କ୍ଷେତ୍ର ବାହାରକୁ ବାଣିଜ୍ୟର ବିସ୍ତାର ହେବା ଫଳରେ ସଂଘଟକ ରାଜ୍ୟବ୍ୟବସ୍ଥାରେ ତା'ର ହସ୍ତକ୍ଷେପ ଅନୁଭୂତ ହୋଇଥିବ । ମନେହୁଏ, ପ୍ରଥମ ପର୍ଯ୍ୟାୟର ପରିବର୍ତ୍ତନରେ କ୍ଷମତାଧାରୀ ବର୍ଗର ପ୍ରମୁଖ ଭୂମିକା ରହିଥିଲା । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟର ପରିବର୍ତ୍ତନରେ ମଧ୍ୟସ୍ଥୀ ବର୍ଗର ଅଧିକ ଭୂମିକା ଦେଖିବାକୁ ମିଳିଲା । ଏହି ମଧ୍ୟବର୍ତ୍ତୀ ବର୍ଗ ହେଲେ ସ୍ଥାନୀୟତାର ପ୍ରତିନିଧି । ପ୍ରଥମେ ରାଜ୍ୟ ମୁଖ୍ୟତଃ ଭୂମିଦାନ ଦେବାପାଇଁ ତଥା ଅର୍ଥବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାପାଇଁ ପ୍ରାଥମିକ ପଦକ୍ଷେପମାନ ନେଉଥିଲା । ହେଲେ ଦ୍ୱିତୀୟ ପର୍ଯ୍ୟାୟରେ ମଧ୍ୟସ୍ଥୀ ବର୍ଗ ଉକ୍ତ ଭୂମିକା ସମ୍ପାଦନ କଲେ ।

ବ୍ୟାଖ୍ୟାର ସିଦ୍ଧାନ୍ତରେ ଏହା ଅନସ୍ୱୀକୃତ ଯେ ଗୁପ୍ତୋତ୍ତର ଯୁଗରେ ରାଜ୍ୟର ସଂରଚନା ପ୍ରାକ୍-ଗୁପ୍ତକାଳୀନ ସଂରଚନାଠାରୁ ପୃଥକ୍ ଥିଲା । ଏବେ ଏମିତି କେତେକ ଅଞ୍ଚଳରେ ରାଜ୍ୟ ଗଠନ ହେଲା, ଯେଉଁଠି ପ୍ରଥମେ ଆଦୌ ରାଜ୍ୟବ୍ୟବସ୍ଥା ନ ଥିଲା । ଅବଶ୍ୟ ତନ୍ମଧ୍ୟରୁ

କେତେକ ରାଜ୍ୟ ସ୍ଥାପିତ ରାଜ୍ୟଗୁଡ଼ିକରୁ କିଛି କିଛି କ୍ଷେତ୍ର ଅଧିକାର କରିନେଇ ଜନ୍ମ ନେଇଥିଲେ । ଏଣିକି ରାଜ୍ୟର ବୈଶିଷ୍ଟ୍ୟ ହେଲା ବିତରଣାତ୍ମକ ରାଜନୈତିକ ବ୍ୟବସ୍ଥା (distributive political economy) । ଅର୍ଥାତ୍ ଏହି ବ୍ୟବସ୍ଥାରେ କ୍ଷମତା, ଶକ୍ତି ଏବଂ ସମ୍ବଳକୁ ଏକ ଅନୁକ୍ରମରେ ବିତରିତ ହେବାର ଦେଖାଗଲା । କେବଳ ପ୍ରତ୍ୟକ୍ଷ ସମ୍ବନ୍ଧର ଆଧାରରେ ସେସବୁ ଆଉ ଭାଗବଣ୍ଟା ହେଲା ନାହିଁ । ପରିବର୍ତ୍ତନର ଏକ ପ୍ରମୁଖ ପ୍ରସ୍ଥାନ-ବିନ୍ଦୁ ହେଲା ବ୍ୟାପକ ଭୂମି ଅନୁଦାନ । ତାକୁ ଏଣିକି ସମ୍ପତ୍ତି ରୂପରେ ସମାଜରେ ଗଣିବାର ଦେଖାଗଲା । ତହିଁରେ ଅନ୍ୟମାନଙ୍କର ଅଧିକାରକୁ ନିଷ୍ପ୍ରଭ କରିଦେବାକୁ ନିରନ୍ତର ପ୍ରୟାସ କରାଗଲା । ରାଜାଙ୍କର ଦେବତ୍ୱ ଉପରେ ଏଣିକି ଅଧିକରୁ ଅଧିକ ଗୁରୁତ୍ୱ ଦିଆଗଲା । ଏହାକୁ ରାଜାଙ୍କର ପ୍ରଭାବ ହ୍ରାସ ହେବାର ଦ୍ୟୋତକ ରୂପେ ଦେଖାଯାଏ । ରାଜାଙ୍କର ସମାନାନ୍ତର ଆଉ ଅନେକ କ୍ଷମତା କେନ୍ଦ୍ରର ଉତ୍ପତ୍ତି ଦେଖିବାକୁ ମିଳିଲା । ସେଗୁଡ଼ିକ ହେଲା– ଗ୍ରହିତା, କରଦ ରାଜା ଏବଂ ମନ୍ଦିର । ସମାଜର ସୋପାନୀକରଣ ଯୋଗୁଁ ସମାନ ଭାବରେ କ୍ଷମତାର ବିତରଣ ହୋଇପାରୁ ନ ଥିଲା । କରଦ ସମ୍ବନ୍ଧ ଏବଂ ବଂଶଗତ ସମ୍ବନ୍ଧର ଦାବି ରୂପରେ ଏହାର ଅଭିବ୍ୟକ୍ତି ହେଉଥିଲା । କ୍ଷତ୍ରିୟ ମର୍ଯ୍ୟାଦା ପାଇଁ ଦାବିର ପରିମାଣ ଅଧିକ ଥିଲା, ଯାହା ଜାତି ବ୍ୟବସ୍ଥାରେ ବୃଦ୍ଧି ପାଉଥିବା ଅସମତାକୁ ଚିହ୍ନିତ କରେ । ଆଞ୍ଚଳିକ ପରିଚୟରୁ ଅସମତା ଓ ଭେଦକୁ ଚିହ୍ନି ହେଉଥିଲା । ମାତ୍ର ଅସମାନତାର ମୁଖ୍ୟ ସ୍ରୋତ ଥିଲା ଭୂମିଦାନର ପଦ୍ଧତି, ଯାହା ଭୂ-ସ୍ୱାମୀର ହସ୍ତକ୍ଷେପ ତଥା କୃଷକର ଉତ୍ପୀଡ଼ନ ରୂପରେ ପ୍ରତିଫଳିତ ହେଉଥିଲା । ଏହା ବ୍ୟତୀତ ଭୂମିଦାନ ସାଂସ୍କୃତିକ ସଂସ୍କୃତିର ପ୍ରସାର ଓ ବିବିଧତା ବଦଳରେ ସମରୂପତା ଆଣିବାପାଇଁ ମଧ୍ୟ ପ୍ରୟାସ କରୁଥିଲା ।

## ବିତରଣାତ୍ମକ ରାଜ୍ୟବ୍ୟବସ୍ଥା

ପରିବର୍ତ୍ତନର ସ୍ୱରୂପକୁ ନେଇ ଯେତେବେଳେ ତର୍କ ଆରମ୍ଭ ହେଲା, ତହିଁରୁ ଅନେକ ବିଷୟର ଉଦ୍‌ଗମ ହେଲା, ଯାହାକୁ ଟିକିନିଖିଭାବେ ତର୍ଜମା କରାଯିବା ଉଚିତ । ବିଶେଷକରି ରାଜ୍ୟର ବହୁଳତା ସନ୍ଦର୍ଭରେ ଏହି ତର୍ଜମାର ଖୁବ୍ ଆବଶ୍ୟକତା ରହିଛି । ଗ୍ରହିତାମାନଙ୍କୁ ଭୂମିଦାନ ଦିଆଗଲା । ଅଧିକାରୀବର୍ଗ ନିଜ ନିଜ ବେତନ ଅନୁପାତରେ ଦାନଜମିରୁ ରାଜସ୍ୱ ଅସୁଲି ସକାଶେ କ୍ଷମତା ଲାଭ କଲେ । ଅର୍ଥାତ୍ ବେତନରେ ମୁଦ୍ରା ପାଇବା ପରିବର୍ତ୍ତେ ସେମାନେ ଭୂମି ଅଧିକାରୀ ହେଲେ । ଏହା ରାଜ୍ୟର ସାର୍ବଭୌମତ୍ୱକୁ ହ୍ରାସ କଲା । ରାଜ୍ୟର କେନ୍ଦ୍ରୀୟ ଅମଲାତାନ୍ତ୍ରିକ ପ୍ରଣାଳୀ ମଧ୍ୟ ତା'ର ମହତ୍ତ୍ୱ ହରାଇଲା । ଏହି ଅବଧାରଣା ଅନେକ ନୂଆ ପ୍ରଶ୍ନକୁ ଜନ୍ମଦିଏ । ଭୂମିଦାନ ପ୍ରଣାଳୀକୁ ଆରମ୍ଭ କରିବା ପଛରେ କାରଣ ହୁଏତ

ରାଜାଙ୍କର କ୍ଷମତାର ପତନ ହୋଇଥିବ । ଅଥବା ଆଧିପତ୍ୟ ଲାଭ କରିବା ସକାଶେ ଆଶାୟୀ ଅନେକ ସଂଖ୍ୟକ ରାଜା ମୁଖ୍ୟ ରାଜାଙ୍କର ସମତୁଲ ହେବାରୁ ମଧ୍ୟ ଏହା ହୋଇଥାଇପାରେ । ବ୍ରାହ୍ମଣମାନଙ୍କୁ ଭୂମିଦାନ ମିଳିଥିବା ଯୋଗୁଁ ଏଣିକି ବ୍ରାହ୍ମଣମାନେ ଭୂମିଦାତା ରାଜାଙ୍କୁ ବୈଧତା ପ୍ରଦାନ କରୁଥିଲେ । ବ୍ରାହ୍ମଣମାନେ ଆବଶ୍ୟକୀୟ କର୍ମକାଣ୍ଡ ସମ୍ପାଦନ କରି ରାଜା ଏବଂ ଅନ୍ୟମାନଙ୍କର ରିଷ୍ଟ ଖଣ୍ଡନ କରିପାରିବେ ବୋଲି ଭବିଷ୍ୟବାଣୀ କରୁଥିଲେ । ତା'ଠାରୁ ବଳି ମହତ୍ତ୍ୱପୂର୍ଣ୍ଣ ଥିଲା, ବ୍ରାହ୍ମଣମାନଙ୍କର ଅନାବାଦି ଜମିକୁ ଆବାଦ କରିବାର ସାମର୍ଥ୍ୟ । ସେମାନେ ଭୂମିଦାନରେ ମିଳିଥିବା ଜମିକୁ ଆବାଦ କରୁଥିଲେ । ଏହାଫଳରେ ମଧ୍ୟବର୍ତ୍ତୀ ଭୂ-ସ୍ୱାମୀ (landed intermediary) ଭାବରେ ସେମାନେ ଏକ ସମ୍ପନ୍ନ ବର୍ଗରେ ପରିଣତ ହେଲେ । କେତେକ ବ୍ରାହ୍ମଣ କ୍ଷତ୍ରିୟବତ୍ ଆଚରଣ କରି 'ବ୍ରହ୍ମ-କ୍ଷତ୍ର' ବଂଶ ମଧ୍ୟ ସ୍ଥାପିତ କଲେ । ଯେଉଁ ଅଧିକାରୀମାନେ ବେତନ ସ୍ଥାନରେ ଭୂମିଦାନ ପାଇଲେ, ସେମାନେ ପ୍ରଶାସନିକ କାର୍ଯ୍ୟ ଅପେକ୍ଷା ପ୍ରାପ୍ତ ଜମିଦାରୀରେ ଅଧିକ ମନୋନିବେଶ କଲେ । ଗ୍ରହିତାଙ୍କ ହାତରେ ପ୍ରଶାସନିକ କ୍ଷମତା ରହିଥିବାରୁ ଦାନରୁ ପ୍ରାପ୍ତ ଭୂମି ଅଧିକ ଉତ୍ପାଦନକ୍ଷମ ସିଦ୍ଧ ହେଲା ।

ସେବା ପାଇଁ ଦିଆଯାଇଥିବା ଜମି ଅନୁଦାନକୁ ଦାତା ଦ୍ୱାରା ରଦ୍ଦ ମଧ୍ୟ କରାଯାଇ ପାରୁଥିଲା । ବିଶେଷକରି ସାମରିକ ସେବାପାଇଁ ଉଦ୍ଦିଷ୍ଟ ଜମି ଅନୁଦାନ କ୍ଷେତ୍ରରେ ଏହା ଦେଖିବାକୁ ମିଳୁଥିଲା । ମାତ୍ର ଅବଶୋଷର ବିଷୟ ଯେ ଭୂମିଦାନ ରଦ୍ଦ ହେବାର ଏଭଳି ବହୁତ ପ୍ରମାଣ ଆମ ପାଖରେ ନାହିଁ । ଫଳରେ ସମ୍ପତ୍ତିର ପରିଭାଷା ଓ ଅଧିକାର ପରିପ୍ରେକ୍ଷୀରେ ତଥ୍ୟ କମ୍ ଥିବାର ଜଣାପଡ଼େ । ଜମିର ମାଲିକାନା ଓ ଉପଯୋଗକାରୀର ଅଧିକାର ମଧ୍ୟରେ ରହିଥିବା ପାର୍ଥକ୍ୟକୁ ସ୍ୱୀକାର କରାଯାଏ । ମାତ୍ର ସବୁ ସରକାରୀ ଅଧିକାର ନା ପ୍ରାପ୍ତ ହେଉଥିଲା ନା କାର୍ଯ୍ୟକାରୀ ହେଉଥିଲା । ଯେଉଁ ଅଧିକାର ଲିଖିତ ଥିବା ସତ୍ତ୍ୱେ କାର୍ଯ୍ୟକାରୀ ହେଉ ନ ଥିଲା, ତାହା ଗବେଷଣାରେ ଏବେ ଅଧିକ ଆଗ୍ରହ ସୃଷ୍ଟି କରେ । ଏହି ଧରଣର ଜମିର ମାଲିକାନାକୁ ନେଇ ବିବାଦ ଉପୁଜିଲେ ରାଜାଙ୍କ ଦାନପତ୍ରକୁ ଚୂଡ଼ାନ୍ତ ପ୍ରମାଣ ବୋଲି ମନେ କରାଯାଉଥିଲା । ଯେଉଁଠି ଦାନକୁ ରଦ୍ଦ କରିବାର ପରମ୍ପରା ନ ଥିଲା, ସେଇଠି 'ଯାବତ୍ ଚନ୍ଦ୍ରାର୍କେ' ଦାନ କାର୍ଯ୍ୟକାରୀ ହେବ ବୋଲି ଉଲ୍ଲେଖ ରହୁଥିଲା । ଏହି ସ୍ଥିତିରେ ଦାନରେ ଉତ୍ତରାଧିକାର କଥା ଅନ୍ତର୍ନିହିତ ଥିଲା । ଦାନ ସମ୍ପତ୍ତିକୁ ଗ୍ରହିତା ଆଉ କାହାକୁ ଦାନ କରିବାରେ ମଧ୍ୟ କୌଣସି ଅସୁବିଧା ନ ଥିଲା ।

ଅନ୍ୟ ଯେଉଁ ଏକ ପ୍ରଶ୍ନ ଗବେଷକମାନଙ୍କର ଦୃଷ୍ଟି ଆକର୍ଷଣ କରେ ତାହା ହେଲା କୃଷିର ବିସ୍ତାରରେ ରାଜ୍ୟର ଭୂମିକା । ପୂର୍ବରୁ ମୌର୍ଯ୍ୟ କାଳରେ ରାଜ୍ୟ ଅନାବାଦି ଜମିରେ କୃଷକମାନଙ୍କୁ ବସତି ସ୍ଥାପନ କରିବାକୁ ପ୍ରୋତ୍ସାହିତ କରୁଥିଲା । ନବ ବିକଶିତ କୃଷି ଜମିରେ

ମଧ୍ୟ ବସତି ପାଇଁ ପ୍ରୋତ୍ସାହନ ଦିଆଯାଉଥିଲା । ଅଥବା ଯୁଦ୍ଧବନ୍ଦୀମାନଙ୍କ ହାତରେ ଜମିରେ କୃଷିକାର୍ଯ୍ୟ କରାଯାଉଥିଲା । ଉକ୍ତ ଜମି ପ୍ରଶାସନର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରହୁଥିଲା ; ମାତ୍ର ଗୁପ୍ତୋତ୍ତର କାଳରେ ଏହି ବ୍ୟବସ୍ଥାରେ କ୍ରମ ପରିବର୍ତ୍ତନ ଦେଖିବାକୁ ମିଳିଲା । ଭୂମିଦାନର ମାତ୍ରା ବୃଦ୍ଧି କରି ବ୍ୟବସ୍ଥାକୁ ପୁନର୍ଗଠିତ କରାଗଲା । କୃଷି ସଂପ୍ରସାରଣ ପାଇଁ ନୂଆ ବ୍ୟବସ୍ଥା ଖୋଜାହେଲା । ଦାନର ଉଦ୍ଦେଶ୍ୟ ଦ୍ୱାରା ଦାନ ଜମିର ସ୍ଥାନ ନିର୍ଦ୍ଧାରିତ ହେଉଥିଲା । ଦାନ ପଛରେ ଉଦ୍ଦେଶ୍ୟ ଭିନ୍ନ ଭିନ୍ନ ହୋଇପାରେ, ଯଥା- ବ୍ରାହ୍ମଣମାନଙ୍କୁ ପୁରସ୍କୃତ କରିବା ହୋଇପାରେ; ପ୍ରଥମରୁ କୃଷି ହେଉଥିବା ଜମିରେ ଗହନ କୃଷି କରିବା ହୋଇପାରେ; ଜଙ୍ଗଲ ଜମିକୁ କୃଷିଯୋଗ୍ୟ କରିବା ହୋଇପାରେ; ପୁଣି କେବେ କେବେ ବନବାସୀମାନଙ୍କୁ କୃଷିରେ ନିୟୋଜିତ କରିବା ବି ହୋଇପାରେ । ପ୍ରଶ୍ନ ଉଠେ, କାହିଁକି କିଛି ଲୋକଙ୍କୁ ବସତି ସ୍ଥାପନ କରିବାକୁ ବା କୃଷି କରିବାକୁ ବାଧ୍ୟ କରାଯାଉଥିଲା ? କ'ଣ ତା' ପାଇଁ ଲୋକ ମିଳୁ ନ ଥିଲେ ? ସେଥିପାଇଁ କ'ଣ ଗ୍ରହିତାମାନଙ୍କୁ ଭୂମିଦାନ କରି ସେମାନଙ୍କ ମାଧ୍ୟମରେ କାର୍ଯ୍ୟଟିକୁ ପୂରା କରାଯାଉଥିଲା ? କ'ଣ ଲୋକସଂଖ୍ୟାରେ ଅଭିବୃଦ୍ଧି ଘଟିଥିଲା, ଯାହା କୃଷି ଉତ୍ପାଦନର ଅଭିବୃଦ୍ଧି ଯୋଗୁଁ ସନ୍ତୁଳିତ ହେଉଥିଲା ? ଏହି କାରଣରୁ କ'ଣ କୃଷକମାନଙ୍କର ବିଶେଷ ଦେଶାନ୍ତରଣ ହେଉ ନ ଥିଲା ? କୃଷକ ବିଭିନ୍ନ ଉପାୟରେ ଜମି ସହିତ ଅନୁବନ୍ଧିତ ହୋଇ ରହିଥିଲା ବୋଲି ଦେଶାନ୍ତରଣର ମାତ୍ରା ସୀମିତ ଥିଲା କି ? ଏହି କାରଣରୁ ଖଜଣା ଓ କରର ବୋଝ ଅଧିକ ହେବାସତ୍ତ୍ୱେ କ'ଣ କୃଷକ ଦେଶାନ୍ତରଣ କରିପାରୁ ନ ଥିଲା ?

ମଧ୍ୟସ୍ଥୀମାନଙ୍କର ସଂଖ୍ୟା ବୃଦ୍ଧି ହେବା ଫଳରେ ଜମିରୁ ଆଦାୟ ହେଉଥିବା ଅର୍ଥର ବ୍ୟାପକ ବିତରଣ ହେବାକୁ ଲାଗିଲା । ଏହି କାରଣରୁ ରାଜାଙ୍କର ଶକ୍ତି ହ୍ରାସ ହେଲା । ମଧ୍ୟସ୍ଥୀ ତୁଳନାରେ ସେ ଊଣା ସ୍ଥିତିରେ ରହିଲେ । ମଧ୍ୟସ୍ଥୀର କର୍ତ୍ତବ୍ୟ ନିର୍ବାହ ଉପରେ ରାଜାଙ୍କର ସ୍ଥିତି ନିର୍ଭର କରୁଥିଲା । କୃଷକମାନଙ୍କୁ ଶୋଷଣ କରି ମଧ୍ୟସ୍ଥୀମାନେ ସମ୍ପନ୍ନତା ଲାଭ କରିଥିଲେ । ଭୂମିମାଲିକମାନେ କୃଷକର ଏକତୃତୀୟାଂଶ ପ୍ରାୟ ଆୟକୁ କର ରୂପରେ ଶୋଷଣ କରି ନେଉଥିଲେ । ଏହା ବାହାରେ ମଧ୍ୟସ୍ଥୀ ପୁଣି କୃଷକ ପାଖରୁ ଅତିରିକ୍ତ କର ମଧ୍ୟ ଅସୁଲ କରୁଥିଲେ । ଉକ୍ତ କରକୁ ବିନିଯୋଗ କରି ମଧ୍ୟସ୍ଥୀ ପୋଖରୀ, କୂଅ ଓ ରହଟ (ପାର୍ସିଆନ ହ୍ୱିଲ) ତିଆରି କରୁଥିଲେ, ଯାହା ଜଳସେଚନ ପାଇଁ ଉପଯୋଗୀ ହେଉଥିଲା । ଅତିରିକ୍ତ କରରେ ବେଠି ମଧ୍ୟ ସାମିଲ ଥିଲା । କୃଷକମାନଙ୍କୁ ବେଠି-ବେଗାରି ଖଟେଇ ବୃହତ୍ ଜଳସେଚନ ବ୍ୟବସ୍ଥାମାନ ସମ୍ପନ୍ନ କରାଯାଉଥିଲା । ଏକାଦଶ ଶତାବ୍ଦୀରେ ପରମାର ରାଜା ଭୋଜ (ମଧ୍ୟପ୍ରଦେଶର ଭୋପାଳ ନିକଟବର୍ତ୍ତୀ କ୍ଷେତ୍ରରେ) ଏକ ବିଶାଳ ଜଳାଶୟ ନିର୍ମାଣ କରିଥିଲେ । ଏଥିପାଇଁ ବେଠି ଓ ଅତିରିକ୍ତ କର ଅସୁଲି ହୋଇଥିବ ବୋଲି ଅନୁମାନ କରାଯାଏ । ପଶ୍ଚିମ ଭାରତରେ ଯେତେବେଳେ ସୁଦର୍ଶନ ହ୍ରଦର ମରାମତି କରାଗଲା, ତା'

ପାଇଁ ଅତିରିକ୍ତ କର ଅସୁଲ ହୋଇ ନ ଥିଲା ବୋଲି ଉଲ୍ଲେଖ ରହିଛି । ଏଥିରୁ ମନେହୁଏ ଯେ ଏଭଳି ବ୍ୟାପକ ନିର୍ମାଣ କାର୍ଯ୍ୟ ପାଇଁ ଅତିରିକ୍ତ କର ଅସୁଲି ଏକ ନୂଆ କଥା ନ ଥିଲା ।

ଭୂମିଗ୍ରହିତାମାନେ ହିଁ ରାଜସ୍ୱ ଅସୁଲି କରୁଥିଲେ । କାଳକ୍ରମେ ସେମାନଙ୍କୁ ନ୍ୟାୟିକ ଅଧିକାର ମଧ୍ୟ ପ୍ରାପ୍ତ ହେଲା । ଏହି ଅଧିକାରକୁ ଉପଯୋଗ କରି ସେମାନେ ରାଜସ୍ୱ ଅସୁଲି ଜନିତ ବିବାଦବେଳେ ନିଜର କର୍ତ୍ତୃତ୍ୱ ଜାହିର କରୁଥିଲେ । ଅର୍ଥାତ୍ ଗ୍ରହିତାମାନେ ଉଭୟ ରାଜନୈତିକ ଓ ପ୍ରଶାସନିକ କାର୍ଯ୍ୟ କରୁଥିଲେ । ଏହା ସତ୍ତ୍ୱେ ରାଜାଙ୍କ ଦ୍ୱାରା ନିଯୁକ୍ତ ପ୍ରଶାସକର ଆବଶ୍ୟକତା ଉଣା ହୋଇ ନ ଥିଲା । ଏକଥା ବିଭିନ୍ନ ସରକାରୀ କାର୍ଯ୍ୟକୁ ନେଇ ରହିଥିବା ଉଲ୍ଲେଖରୁ ଜଣାପଡ଼େ । ମାତ୍ର ସୈଦ୍ଧାନ୍ତିକ ରୂପରେ ରାଜା ନିଯୁକ୍ତ ପ୍ରଶାସକର ସଂଖ୍ୟା ହ୍ରାସ ପାଇଲା । କେତେକ ସ୍ଥଳରେ ରାଜାଙ୍କ ଦ୍ୱାରା ନିଯୁକ୍ତ ଅଧିକାରୀଙ୍କୁ ଗ୍ରହିତାଙ୍କ ଅଧିକାର କ୍ଷେତ୍ରରେ ପ୍ରବେଶ ପାଇଁ ଅନୁମତି ମଧ୍ୟ ନ ଥିଲା । ଯେଉଁ କ୍ଷେତ୍ରକୁ କୌଣସି ଗ୍ରହିତାଙ୍କୁ ଦାନରେ ଦିଆଯାଇ ନ ଥିଲା, ତାହା ରାଜାଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ଥିଲା । ଏଭଳି କ୍ଷେତ୍ର ବି କିଛି କମ୍ ବିସ୍ତୃତ ନ ଥିଲା । ଅବଶ୍ୟ ପ୍ରତ୍ୟେକ ରାଜ୍ୟରେ ତା'ର ମୋଟ ପରିମାଣ ଭିନ୍ନ ଭିନ୍ନ ଥିଲା ।

ବ୍ରାହ୍ମଣମାନଙ୍କୁ ଭୂମିଦାନ ଦେବା ପଛରେ ଉଦ୍ଦେଶ୍ୟ ଥିଲା ରାଜାଙ୍କର ଧାର୍ମିକ ଗୁଣକୁ ପ୍ରଦର୍ଶିତ କରିବା ଅଥବା ରିଷ୍ଟ ଖଣ୍ଡନ କରିବା । ଏହି କିସମର ଦାନ ଯୋଗୁଁ କିଛି ମାତ୍ରାରେ ଗ୍ରାମାଞ୍ଚଳରେ ବୈଦିକ କର୍ମକର୍ମାଣିର ପୁନରୁତ୍ଥାନ ହେଲା । ମୁଖ୍ୟତଃ ବୈଦିକ ପୂଜାପଦ୍ଧତିରେ ଅଭିଜ୍ଞ ବ୍ରାହ୍ମଣମାନଙ୍କୁ ଦାନ ଦିଆଯାଉଥିଲା । ଦାନ ଦେଉଥିବା ରାଜା ବର୍ଣ୍ଣ ବ୍ୟବସ୍ଥାକୁ ଅନୁରକ୍ଷଣ କରୁଥିଲେ ବୋଲି ଦାବି କରୁଥିଲେ । ଅବଶ୍ୟ ଯେଉଁ କ୍ଷେତ୍ରରେ ପୂର୍ବରୁ ସମତାବାଦୀ ବ୍ୟବସ୍ଥା ରହିଥିଲା ଏବଂ ତା'ର ସ୍ମୃତି ଲିଭି ନ ଥିଲା, ସେହି କ୍ଷେତ୍ରରେ ଲୋକେ ରାଜାଙ୍କର ଏହି ଧରଣର ଦାବିକୁ ପସନ୍ଦ କରୁ ନ ଥିଲେ । ବ୍ରାହ୍ମଣମାନେ ରାଜାଙ୍କ ପକ୍ଷରୁ ଯଜ୍ଞ କର୍ମ କରୁଥିଲେ । ଯଜ୍ଞରୁ ପ୍ରାପ୍ତ ପୁଣ୍ୟର ଏକଷଷ୍ଠାଂଶ ରାଜାଙ୍କୁ ମିଳିବ ବୋଲି ସିଦ୍ଧାନ୍ତ ରହିଥିଲା । ରାଜା ବ୍ରାହ୍ମଣମାନଙ୍କର ପୃଷ୍ଠପୋଷକତା କରିବାରେ ହେଳା କରୁ ନ ଥିଲେ, କାରଣ ପ୍ରତିବଦଳରେ ବ୍ରାହ୍ମଣମାନେ ରାଜାଙ୍କର ପ୍ରଶସ୍ତି ଗାନ କରୁଥିଲେ । ଅନେକ ସମୟରେ ବ୍ରାହ୍ମଣ ରଚିତ ରାଜପ୍ରଶସ୍ତିରେ କପୋଳକଳ୍ପିତ ଉଦ୍ଧରଣମାନ ଦିଆଯାଉଥିଲା, ଯାହାଫଳରେ ରାଜାଙ୍କର କ୍ଷତ୍ରିୟ ହେବାର ଦାବିକୁ ବଳ ମିଳୁଥିଲା । କ୍ଷତ୍ରିୟ ହେବା ଦାବି କରି ମଧ୍ୟସ୍ଥୀମାନେ ରାଜପଦ ଲାଭ କରିବାର ମହତ୍ତ୍ୱାକାଂକ୍ଷା ପାଳୁଥିଲେ । ବ୍ରାହ୍ମଣ ଭୂ-ସ୍ୱାମୀମାନେ କୃଷି କାର୍ଯ୍ୟ କରିବାପାଇଁ କୃଷକମାନଙ୍କୁ ନିଯୁକ୍ତ କରୁଥିଲେ, କାରଣ କୃଷି ସମ୍ବନ୍ଧିତ ଅନେକ କାର୍ଯ୍ୟ ଯଥା- ହଳଚାଳନା ଆଦି ବ୍ରାହ୍ମଣମାନଙ୍କ ପାଇଁ ଜାତିବର୍ଜିତ ଥିଲା । ଦାନରେ ମିଳିଥିବା

ଜମିଗୁଡ଼ିକର ଆକାର ଏତେ ଅଧିକ ଥିଲା ଯେ ତା' ପାଇଁ ବିଭିନ୍ନ କିସମର ରୟତ ଚାଷୀଙ୍କୁ ନିଯୁକ୍ତ କରିବାକୁ ପଡୁଥିଲା ।

ସାମନ୍ତମାନଙ୍କ ପାଇଁ ସାମରିକ ଉପଲବ୍ଧି ଓ ବୀରୋଚିତ କାର୍ଯ୍ୟ ଖୁବ୍ ପ୍ରମୁଖ ଥିଲା । କ୍ଷତ୍ରିୟ ମର୍ଯ୍ୟାଦା ଦାବି କରିବା ସକାଶେ ଯୋଦ୍ଧା ହେବାର ସିଦ୍ଧାନ୍ତ ଉପଯୋଗୀ ସିଦ୍ଧ ହେଉଥିଲା । ଯୋଦ୍ଧାର ଛବିକୁ ବଳବତ୍ତର ରଖିବାପାଇଁ ତଥା ସୈନ୍ୟଦଳର ମହତ୍ତ୍ୱକୁ ତିଷ୍ଠେଇ ରଖିବାପାଇଁ ବାରମ୍ବାର ସୈନ୍ୟ ଅଭିଯାନର ଆବଶ୍ୟକତା ପଡୁଥିଲା । କେତେକାଂଶରେ ଧନସମ୍ପତ୍ତି ଲୁଣ୍ଠନ ଆଳରେ ଯୁଦ୍ଧ ଅଭିଯାନ ଚାଲୁଥିଲା । ମାତ୍ର ଯେଉଁଠି ଲୁଣ୍ଠନକୁ କାରଣ ରୂପେ ଦର୍ଶାଯାଇ ପାରୁ ନ ଥିଲା, ସେଠାରେ ଅସମ୍ମାନର ପ୍ରତିଶୋଧ ନେବା ଆଳରେ ଅଭିଯାନ କରାଯାଉଥିଲା । ଯୁଦ୍ଧ ଏକ ବିରାଟ ତମାସାରେ ପରିଣତ ହୋଇଯାଇଥିଲା । ଏକ ଚାଣ୍ଡେଲା ଅଭିଲେଖରେ ଯୁଦ୍ଧକୁ ଯଜ୍ଞ ସହ ତୁଳନା କରାଯାଇଛି । ଚାଣ୍ଡେଲା ରାଜ୍ୟରେ ଯୁଦ୍ଧରେ ବୀରଗତି ପ୍ରାପ୍ତ ସୈନିକଙ୍କର ପରିବାରବର୍ଗକୁ ଭରଣପୋଷଣ ପାଇଁ ଜମିଦାନ କରାଯାଉଥିଲା । ସୈନ୍ୟବାହିନୀରେ ଯୋଗ ଦେବାପାଇଁ ଏହା ଲୋକଙ୍କୁ ପ୍ରୋତ୍ସାହିତ କରୁଥିଲା ।

ଯେହେତୁ ଗ୍ରହିତାମାନେ ବିଶେଷାଧିକାର ଲାଭ କଲେ, ତେଣୁ ଗ୍ରାମର ସ୍ୱାୟତ୍ତତା ସ୍ୱାଭାବିକ ଭାବରେ ବାଧାଗ୍ରସ୍ତ ହେଲା । ମାତ୍ର ଦେଶ-କାଳ ଅନୁସାରେ ସମ୍ବନ୍ଧରେ ପାର୍ଥକ୍ୟ ଦେଖିବାକୁ ମିଳୁଥିଲା । ଗ୍ରାମ ଓ ଗ୍ରହିତା ମଧ୍ୟରେ ମଧ୍ୟସ୍ଥତା କରିବାର ଭାର ରହିଥିଲା ଗ୍ରାମର ମୁଖିଆ ବା ପ୍ରଧାନ ହାତରେ । ଗ୍ରାମ-ପ୍ରଧାନ ନିଜେ ଥିଲେ ଜଣେ ଭୂ-ସ୍ୱାମୀ । ତାଙ୍କୁ 'ମହତ୍ତର', 'ପଟ୍ଟକିଲ' ଆଦି ସଂଜ୍ଞାରେ ଚିହ୍ନିତ କରାଯାଉଥିଲା । ତାହା ମେହେଟା, ମେହେତୋ, ପଟେଲ ଏବଂ ପାଟିଲ ଆଦି ନାମରେ ଏବେ ବି ପ୍ରଚଳିତ । ଗୋଟାଏ ଉଦ୍ଧରଣ ମିଳିଛି, ଯେଉଁଥିରେ ଏକ ଚୌହାନ ଗାଁରେ ଠାକୁର (ମୁଖ୍ୟ) ଗ୍ରାମ୍ୟ ମନ୍ଦିର ପାଇଁ ନୂତନ କର ଧାର୍ଯ୍ୟ କରିବା ସକାଶେ ଗ୍ରାମ୍ୟସଭାଠାରୁ ସ୍ୱୀକୃତି ନେଇଛନ୍ତି । ଅବଶ୍ୟ ଏକ ନିୟମ ଭାବରେ ଏହାର ଖୁବ୍ ଚଳଣି ନ ଥିବ । ଗାଁରେ ଏକ ଛୋଟ ସମିତି ଏସବୁ ନିଷ୍ପତ୍ତି ନେଉଥିଲା । ସମିତିରେ ପଞ୍ଚକୁଳର ପ୍ରତିନିଧି ସମେତ ଆଉ କେତେକଣ ସାଧାରଣ ପ୍ରତିନିଧି ରହିଥିଲେ । ଏହି ଧରଣର ସମିତି ଉଭୟ ଗାଁ ଓ ସହରରେ ପ୍ରଶାସନିକ ସମିତି ରୂପେ କାର୍ଯ୍ୟ କରୁଥିଲା । ସମିତି ରାଜ୍ୟର ରାଜସ୍ୱ ସଂଗ୍ରହ କରୁଥିଲା; ଧାର୍ମିକ ଓ ସାଧାରଣ ଭୂମିଦାନ କରୁଥିଲା; ଧାର୍ମିକ ଓ ସାଧାରଣ ଦାନପତ୍ରର ହିସାବ ରଖୁଥିଲା; ବିକ୍ରିବଟାବେଳେ ନିରୀକ୍ଷକର କାର୍ଯ୍ୟ କରୁଥିଲା; ବାଣିଜ୍ୟର ତଦାରଖ କରୁଥିଲା ତଥା ବିବାଦ ଉପୁଜିଲେ ନ୍ୟାୟଦାତାର ଭୂମିକା ନିର୍ବାହ କରୁଥିଲା । ଏହି ସମିତିକୁ ପଞ୍ଚାୟତର ପୂର୍ବସୂରୀ ରୂପେ ଦେଖିହେବ ! ଜାତି ବା

ସ୍ଥାନୀୟତା ଆଧାରରେ ପଞ୍ଚାୟତର ପ୍ରତିନିଧିମାନେ ନିଯୁକ୍ତ ହେଉଥିଲେ । ବୃତ୍ତିନିପୁଣ ଜାତିଗୁଡ଼ିକରେ ଜାତି ପଞ୍ଚାୟତ ରହିଥିଲା । ତା'ର କାର୍ଯ୍ୟଧାରାରେ ଅନେକ ଗଣତାନ୍ତ୍ରିକ ଉପାଦାନ ଦେଖିବାକୁ ମିଳୁଥିଲା, କାରଣ ବୃତ୍ତିନିପୁଣ ଜାତି (Professional Caste) ପଞ୍ଚାୟତର ସଭ୍ୟମାନଙ୍କ ମଧ୍ୟରେ ଅପେକ୍ଷାକୃତ ଭାବେ ସମାନତା ରହିଥିଲା । ଅବଶ୍ୟ ଏହି ରୀତି ଖୁବ୍ ସୀମିତ ଥିଲା, କାରଣ ଜାତି ବ୍ୟବସ୍ଥାର ମୂଳଭିତ୍ତି ହେଲା ଅନୁକ୍ରମ । ସ୍ଥାପିତ ସମାଜଗୁଡ଼ିକ ଅନୁକ୍ରମକୁ ସ୍ୱୀକାର କରିବାରେ ଅଭ୍ୟସ୍ତ ହୋଇସାରିଥିଲେ । ମାତ୍ର ଯେଉଁ ସମାଜଗୁଡ଼ିକ ନୂଆକରି ଜାତି ବ୍ୟବସ୍ଥାରେ ସାମିଲ ହେଉଥିଲେ ଏବଂ ଯେଉଁ ସମାଜଗୁଡ଼ିକ ପୂର୍ବରୁ ସମାନତା ଭାବକୁ ଅଙ୍ଗେ ଅଙ୍ଗେ ଅନୁଭବ କରିଥିଲେ, ସେମାନେ କ'ଣ ସ୍ଥାପିତ ସମାଜ ଭଳି ଜାତି ବ୍ୟବସ୍ଥାକୁ ସ୍ୱୀକାର କରି ନେଇଥିଲେ ?

ଏହି ବ୍ୟବସ୍ଥାକୁ ସାମନ୍ତବାଦର ଆଖ୍ୟା ଦିଆଯିବ ନା ନାହିଁ, ସେ ନେଇ ଆଲୋଚନା କଲାବେଳେ ଅନେକ ପ୍ରସଙ୍ଗ ଚର୍ଚ୍ଚାକୁ ଆସନ୍ତି । ଭେସେଲେଜର ସମ୍ବନ୍ଧ (ties of vassalage), ଜାଗିରର ସୃଷ୍ଟି (creation of fief), କୃଷିଦାସତାର ଅସ୍ତିତ୍ୱ, ଏସବୁ ୟୁରୋପୀୟ ସାମନ୍ତବାଦର ବୈଶିଷ୍ଟ୍ୟ ଭାବେ ରହିଥିଲା । କେବଳ ଆର୍ଥିକ ସମ୍ବନ୍ଧ କାହିଁକି, ଏକ ନିର୍ଦ୍ଦିଷ୍ଟ ଧରଣର ନ୍ୟାୟ ବ୍ୟବସ୍ଥା ମଧ୍ୟ ଏଥିରେ ସମାବିଷ୍ଟ ଥିଲା । ସାମନ୍ତମାନଙ୍କର ସଂଖ୍ୟା ବୃଦ୍ଧି ହେବା ଯୋଗୁଁ ଗୋଟାଏ ବିନ୍ଦୁରେ କ୍ଷମତା କେନ୍ଦ୍ରୀଭୂତ ହୋଇ ଆଉ ରହିଲା ନାହିଁ । ଦାନ ଥିଲା ରାଜା ଓ ଗ୍ରହିତା ମଧ୍ୟରେ ଏକ ଚୁକ୍ତି ସଦୃଶ । ମାତ୍ର ତାହା 'ଭେସେଲେଜ' ବା ଓଡ଼ିଆରେ କହିଲେ, 'ଅନୁରକ୍ତ ସାମନ୍ତୀକରଣ' ପାଇଁ ସର୍ତ୍ତ ପ୍ରସ୍ତୁତ କରୁ ନ ଥିଲା । ଅଧିକାଂଶ କ୍ଷେତ୍ରରେ ଧାର୍ମିକ ଉଦ୍ଦେଶ୍ୟରେ ଦିଆଯାଉଥିବା ଦାନର ସଂଖ୍ୟା ଅନ୍ୟ ଉଦ୍ଦେଶ୍ୟରେ ଦିଆଯାଉଥିବା ଦାନ ତୁଳନାରେ ଅଧିକ ଥିଲା । ବ୍ରାହ୍ମଣକୁ ଦିଆଯାଉଥିବା ଦାନ ପାଇଁ 'ହୋମେଜ' (homage) ବା 'ଅନୁରକ୍ତିର ଶପଥ' ନେବାର ଆବଶ୍ୟକତା ପଡୁ ନଥିଲା । ଏହାର ବିପରୀତ, ୟୁରୋପରେ 'ହୋମେଜ' ଥିଲା ଏକ ବଡ଼ ଆବଶ୍ୟକତା । ଭାରତରେ 'ହୋମେଜ'ର ଦରକାର ନ ପଡ଼ିବା ପଛରେ କାରଣ ହେଲା ଯେ, ଏଠାରେ ରାଜା ଓ ବ୍ରାହ୍ମଣ ମଧ୍ୟରେ ଏକ ପାରସ୍ପରିକ ପରିପୂରକତାର ସମ୍ବନ୍ଧ ରହିଥିଲା । ଅଧିପତି (suzerain) ଓ 'ଭେସାଲ' ବା ଅନୁରକ୍ତ ସାମନ୍ତ ମଧ୍ୟରେ ଥିବା ସମ୍ବନ୍ଧରେ ଜାଗିର (fief)ର ଏକ ସ୍ୱତନ୍ତ୍ର ଅର୍ଥ ରହିଥିଲା । ତା'ର ସମ୍ବନ୍ଧ କ୍ଷେତ୍ରରେ ନ୍ୟସ୍ତ କ୍ଷମତା ଓ ସମ୍ଭାବିତ ବଂଶାନୁଗତ ଅଧିକାର ସହିତ ରହିଥିଲା । ଏହି କ୍ଷମତା ଓ ଅଧିକାରକୁ ମନଇଚ୍ଛା ବ୍ୟବହାର କରି ଭୂମିଦାନ ଦେବା ସମ୍ଭବ ନ ଥିଲା । ଏପରିକି ସେବା କରୁଥିବା ବ୍ୟକ୍ତିକୁ ମନଇଚ୍ଛା ଭୂମିଦାନ ଦିଆଯାଇପାରୁ ନ ଥିଲା । ବେଠି-ବେଗାରି ପରି ବ୍ୟବସ୍ଥା କୃଷକକୁ ବନ୍ଧନରେ ରଖୁଥିଲା ଓ ଦେଶାନ୍ତରଣ ପାଇଁ ଅବସର ଦେଉ ନ ଥିଲା । ହେଲେ ଏହି ବ୍ୟବସ୍ଥାକୁ କୃଷିଦାସତା (serfdom)ରୁ

ଭିନ୍ନ ବୋଲି ସ୍ୱୀକାର କରିବାକୁ ହେବ । କୃଷିଦାସତାରେ ଭୂ-ସ୍ୱାମୀ ଓ କୃଷକ ମଧ୍ୟରେ ଏକ ଚୁକ୍ତିଗତ ସମ୍ବନ୍ଧ ରହୁଥିଲା, ଯାହାରି ଆଧାରରେ ଭୂସ୍ୱାମୀର ଜମିରେ କୃଷିଦାସକୁ କୃଷି କରିବାପାଇଁ ବାଧ୍ୟ କରାଯାଉଥିଲା । ଅନ୍ୟପକ୍ଷରେ, ବେଗାରି ସର୍ବଦା କୃଷିରେ ଶ୍ରମ କରିବାକୁ ବାଧ୍ୟତାମୂଳକ କରୁ ନ ଥିଲା । କୃଷକ ଉପରେ ଧାର୍ଯ୍ୟ କରକୁ 'ପୀଡ଼ା' ବୋଲି କୁହାଯାଉଥିଲା, ଯାହା କରର ଅନ୍ୟ ସମାର୍ଥବୋଧକ ଶବ୍ଦ, ଯଥା- ବଳି, ଭାଗ, ଶୁଳ୍କକ ଓ କର ଠାରୁ ପୃଥକ୍ ଥିଲା । 'ପୀଡ଼ା' ହେଲା ଏକ ବୋଝ । କିନ୍ତୁ ତା'ଠାରୁ ବିସ୍ମୟକର ହେଲା ଯେ ବୋଝ ପ୍ରଦାନ କରୁଥିବା ଗୋଷ୍ଠୀ ମଧ୍ୟ ଏହାକୁ ପୀଡ଼ା ବୋଲି କହୁଥିଲେ । କୃଷକ ପାଇଁ ଆଉ ଏକ ବନ୍ଧନ ହେଲା ତା'ର ଜମି ଅଥବା ଶ୍ରମକୁ ବନ୍ଧକ କରି ରଖିବା । ଖଜଣା ବା କର ଦେଇ ନ ପାରି କୃଷକ କରୁଥିବା ଋଣ ଉପରେ ପୀଡ଼ା ଅସୁଲି ହେଉଥିଲା । ବନ୍ଧୁଆ ବା ଗୋତି ଶ୍ରମିକକୁ (bonded labour) ପିଢ଼ି ପିଢ଼ି ଧରି ସେହି ସ୍ଥିତିରେ ରହିବାକୁ ପଡୁଥିଲା ।

ଅତିରିକ୍ତ କର ଅସୁଲି ଯୋଗୁଁ ସଂସାଧନରେ ଅଭିବୃଦ୍ଧି ଘଟିଥିବ, ଯାହାର ପ୍ରଭାବ କୃଷିଭିତ୍ତିକ କାରିଗରୀ ଓ ଜଳସେଚନ ବ୍ୟବସ୍ଥା ଉପରେ ପଡ଼ିଥିବ । ଅନେକ ପୋଥି ଅଛି, ଡହିଁରେ ଉତ୍ପାଦକତା, ମୃତ୍ତିକା ଏବଂ କୃଷିଜାତ ଫସଲ କଥା ଆଲୋଚନା କରାଯାଇଛି । କୂଅ, ବନ୍ଧ ଏବଂ ଜଳ ଉତ୍ତୋଳନ ବ୍ୟବସ୍ଥା ରୂପରେ ଜଳସେଚନ ବ୍ୟବସ୍ଥାର ସଂପ୍ରସାରଣ ଘଟିଥିଲା । ଉଦାହରଣ ସ୍ୱରୂପ, ଅରଘଟ୍ଟ ଥିଲା ଏକ ଜଳ-ଚକ (water-wheel) । ଏହି କାଳର ଶେଷଆଡ଼କୁ ପାର୍ସିଆନ ହ୍ୱିଲ (Persian wheel)ର ପ୍ରୟୋଗ ଆରମ୍ଭ ହେଲା । ଏଥିରେ 'ଗିଅର୍' ବ୍ୟବସ୍ଥା ରହିଥିଲା । ପାର୍ସିଆନ ହ୍ୱିଲ ପ୍ରୟୋଗ କରି କୃଷିଜମିକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଯାଉଥିଲା । ଏଭଳି ହ୍ୱିଲର ତିଆରିରେ ଭୂମିମାଲିକ ସ୍ୱ-ପାଣ୍ଠିରୁ ଖର୍ଚ୍ଚ କରିଥିବ ଏବଂ ରୟତ ଚାଷୀଠାରୁ ବର୍ଷ ଶେଷରେ ଅଧିକ ଖଜଣା ମଧ୍ୟ ଆଦାୟ କରୁଥିବ । ଜଳସେଚନ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିବା ବଡ଼ ବଡ଼ ପାଣିଟାଙ୍କିର ନିର୍ମାଣରେ ବିବିଧ କିସମର ଲୋକ ସଂପୃକ୍ତ ରହୁଥିବାର ଉଲ୍ଲେଖ ରହିଛି ।

ଏହି ଯୁଗରେ ଜମି ଥିଲା ଏକ ମହତ୍ତ୍ୱପୂର୍ଣ୍ଣ ଆର୍ଥିକ ସମ୍ପତ୍ତି, ଜମିର ଭାଗବଣ୍ଟାକୁ ନେଇ ତଥା ଜମି ଉପରେ ଉତ୍ତରାଧିକାରକୁ ନେଇ ନାନା ସମସ୍ୟା ରହୁଥିଲା । ତେଣୁ ସେ ନେଇ ସମକାଳୀନ ଧର୍ମ-ଶାସ୍ତ୍ର ଏବଂ ତା'ର ଟୀକାମାନଙ୍କରେ ଅନେକ ଉଲ୍ଲେଖ ରହିଛି । ଜମିର ସୀମାନ୍ତକୁ ନେଇ ରହିଥିବା ବିବାଦ, ଆବାଦୀ ଓ ଅନାବାଦୀ କୃଷିଜମି ଓ ତା'ର ଆନିକଟ ଆଦିକୁ ନେଇ ରହିଥିବା ସମସ୍ୟାଗୁଡ଼ିକ ଉପରେ ପୋଥିପାଠରେ ଅନେକ ଆଲୋଚନା ରହିଛି । ଏହି ଧରଣର ବିବାଦରେ ଅଭିବୃଦ୍ଧି ଘଟିବା ଅର୍ଥ ଜମିର ଚାହିଦା ବଢ଼ିବା ଅଥବା ଜନସଂଖ୍ୟା ବୃଦ୍ଧି ହେବା । କୃଷିଯୋଗ୍ୟ ଅଥଚ ଚାଷ କରାଯାଉ ନ ଥିବା ଜମିର ଶ୍ରେଣୀବିଭାଗରୁ ଜମିର ଗହନ ଉପଯୋଗ ସମ୍ବନ୍ଧରେ ଜାଣିହୁଏ । ଏହି ଧରଣର

କେତେକ ଜମିକୁ ବର୍ଷେ ଅଥବା ଦୁଇବର୍ଷ ପାଇଁ ପଡ଼ିଆ ରଖାଯାଉଥିଲା । ପାଞ୍ଚବର୍ଷ ପର୍ଯ୍ୟନ୍ତ ପଡ଼ିଆ ଥିବା ଜମିକୁ ପୁନର୍ବାର ଜଙ୍ଗଲ ଶ୍ରେଣୀଭୁକ୍ତ ବୋଲି ମନେ କରାଯାଉଥିଲା ।

## ରାଜା ଓ ରାଜନୀତି

ରାଜବଂଶର ଆରମ୍ଭ ସବୁଠି ଏକା କିସମର ନ ଥିଲା । କେତେକ ରାଜବଂଶ ଲୁଣ୍ଠନ ଓ ଦିଗ୍‌ବିଜୟ କରି ପ୍ରତିଷ୍ଠିତ ହୋଇଥିଲେ; ଆଉ କେତେକ ରାଜବଂଶ ମଧ୍ୟସ୍ଥୀ ରୂପରେ ରହି ଅଧିପତିଙ୍କର କ୍ଷମତାକୁ ଉପେକ୍ଷା କରି ପ୍ରତିଷ୍ଠା ପାଇଥିଲେ; ପୁଣି ଆଉ କେତେକ ରାଜବଂଶ ଭୂମିଦାନ ପାଇ ବା ଅଧିକାରୀର କାର୍ଯ୍ୟଭାର ସମ୍ଭାଳିବା ପ୍ରକ୍ରିୟାରେ ନିଜକୁ ରାବଂଶର ମର୍ଯ୍ୟାଦା ଦେଇଥିଲେ । ପ୍ରାରମ୍ଭରେ ମହତ୍ତ୍ୱପୂର୍ଣ୍ଣ ରାଜକୋଷୀୟ ତଥା ସାମରିକ ଚୁକ୍ତି ଉପରେ କ୍ଷମତା-ସମ୍ବନ୍ଧ ନିର୍ଭର କରୁଥିଲା ।

ସାଧାରଣତଃ ଯେଉଁ ରାଜାର ଯେତେ କମ୍ ଶକ୍ତି, ସେହି ରାଜା ସେତେ ଅଧିକ ଆଡ଼ମ୍ବରପୂର୍ଣ୍ଣ ଉପାଧି ଧାରଣ କରୁଥିଲେ । ଉପାଧି ମଧ୍ୟରେ ପ୍ରମୁଖ ଥିଲା : ମହାରାଜାଧିରାଜ, ପରମେଶ୍ୱର, ପରମଭଟ୍ଟାରକ ଆଦି । ପ୍ରାୟ କ୍ଷେତ୍ରରେ ଉପାଧିଗୁଡ଼ିକର ଉତ୍ସ ଥିଲା ପ୍ରଶସ୍ତି । ଚୌହାନ ରାଜା ତୃତୀୟ ପୃଥ୍ୱୀରାଜଙ୍କୁ 'ଭାରତେଶ୍ୱର' ବୋଲି ଉପାଧି ଦିଆଯାଇଥିଲା । ଦ୍ୱାଦଶ ଶତାବ୍ଦୀରେ କନୌଜର ଜଣେ ରାଜା ନିଜକୁ ପରମୋଦାସ, ରାଜାଧିରାଜ, ସର୍ବୋଚ୍ଚ ସ୍ୱାମୀ, ସକଳେଶ୍ୱର (ଅଶ୍ୱ, ହସ୍ତୀ ଓ ମନୁଷ୍ୟ ଈଶ୍ୱର) ଏବଂ ତ୍ରିଭୁବନପତି ବୋଲି ବର୍ଣ୍ଣନା କରିଛନ୍ତି । ଏସବୁ ଉକ୍ତିକୁ ରାଜାଙ୍କର ରାଜ୍ୟର ଭୂଗୋଳ ଆଧାରରେ ନିଆଯାଉ ନ ଥିଲା । ବରଂ ରାଜପଦ ଓ ତା'ର ଆଡ଼ମ୍ବରର ସୂଚକ ଭାବରେ ନିଆଯାଉଥିଲା । ରାଜାଙ୍କର ସାନ ସାନ କୃତିକୁ ଖୁବ୍ ବଡ଼ ମହାନ କାର୍ଯ୍ୟ ରୂପେ ଚିତ୍ରିତ କରାଯାଉଥିଲା । ଅତି ଶସ୍ତା ସ୍ତରର ଚାଟୁକାରିତା ରାଜଦରବାରର ଶୈଳୀରେ ପରିଣତ ହୋଇଥିଲା । ଅବଶ୍ୟ କେତେକ ବୁଦ୍ଧିମାନ ରାଜା ଶସ୍ତା ଚାଟୁକାରିତା ବଦଳରେ ସୂକ୍ଷ୍ମ ପ୍ରଶସ୍ତିକୁ ପସନ୍ଦ କରୁଥିଲେ ।

ପୂର୍ବରୁ ରାଜା ଓ ବ୍ରାହ୍ମଣ ମଧ୍ୟରେ ପରସ୍ପର ନିର୍ଭରଶୀଳତା ଓ ପ୍ରତିଯୋଗିତାର ସମ୍ବନ୍ଧ ରହିଥିଲା । ମାତ୍ର କାଳକ୍ରମେ ଏହା କେବଳ ନିର୍ଭରଶୀଳତା ହୋଇ ରହିଗଲା, କାରଣ ବ୍ରାହ୍ମଣ ନିର୍ଭରଶୀଳତାର ସମ୍ବନ୍ଧରେ ଲାଭବାନ ହେଲା । ରାଜାଙ୍କୁ ରାଜା ରୂପରେ ଅଭିଷିକ୍ତ ବା ଶକ୍ତିସମ୍ପନ୍ନ କରିବା ଉଦ୍ଦେଶ୍ୟରେ ଯାହା ସବୁ କର୍ମକାଣ୍ଡ ଥିଲା, ତା'ର ଗୋଟାଏ ଲକ୍ଷ୍ୟ ଥିଲା କ୍ଷମତା ପାଇଁ ପ୍ରତିଯୋଗିତାକୁ ସନ୍ତୁଳିତ କରିବା । ଭୂମିଦାନ ଯୋଗୁଁ ସଂରକ୍ଷକ ଓ ସଂରକ୍ଷିତ ମଧ୍ୟରେ ଥିବା ସମ୍ବନ୍ଧରେ ଉନ୍ନତି ଦେଖିବାକୁ ମିଳିଲା । ରାଜାଙ୍କୁ ବ୍ରାହ୍ମଣ କ୍ଷତ୍ରିୟ ରୂପରେ ବୈଧତା ପ୍ରଦାନ କରୁଥିଲା ଏବଂ ପ୍ରତିବଦଳରେ ରାଜାଙ୍କ ପାଖରୁ ଭୂମି ରୂପରେ

ବ୍ରାହ୍ମଣଙ୍କୁ ସମ୍ପତ୍ତି ପ୍ରାପ୍ତ ହେଉଥିଲା । ଏହା ପ୍ରଥମ ସହସ୍ରାବ୍ଦୀ (ଖ୍ରୀ.ପୂ.)ର ପୂର୍ବାର୍ଦ୍ଧରେ ରାଜ୍ୟ-ଗଠନ ସମୟର ସ୍ଥିତିକୁ ମନେପକାଏ । ସେତେବେଳେ ସର୍ଦ୍ଦାର ରୂପରେ ରାଜା ଓ ପୁରୋହିତ ରୂପରେ ବ୍ରାହ୍ମଣ ମଧ୍ୟରେ କ୍ଷମତା ପାଇଁ ପ୍ରତିଯୋଗିତା ଦେଖିବାକୁ ମିଳୁଥିଲା । ଏହାର ହଜାରେ ବର୍ଷ ପରେ ଯେତେବେଳେ ଅଧିକ ଜଟିଳ ପ୍ରକ୍ରିୟାରେ ରାଜ୍ୟ ଗଠନ ଚାଲିଥିଲା, ସେହି ପ୍ରତିଯୋଗିତାପୂର୍ଣ୍ଣ ସମ୍ବନ୍ଧର ପ୍ରତିଫଳନ ଦେଖିବାକୁ ମିଳିଲା । ମାତ୍ର ପୂର୍ବବର୍ତ୍ତୀ ବ୍ୟବସ୍ଥା ଏବେ ଓଲଟି ଯାଇଥିଲା ଯେମିତି ! ପୂର୍ବ ସମୟରେ ସମ୍ପତ୍ତି ଚଳମାନ ଥିଲା । ପ୍ରାୟତଃ ତାହା ଉତ୍ତରାଧିକାରରେ ପ୍ରାପ୍ତ ହେଉ ନ ଥିଲା । ମାତ୍ର ଅଧୁନା ସମ୍ପତ୍ତି ହେଲା ଜମି, ଯାହା ଅଚଳ ସମ୍ପତ୍ତି ବୋଲି ମାନ୍ୟତା ପାଇଥିଲା । ତା' ସହିତ ତାକୁ ସ୍ଥାୟୀ ଓ ଉତ୍ତରାଧିକାରଯୋଗ୍ୟ ବୋଲି ମଧ୍ୟ ଗଣାଯାଉଥିଲା । ଏହାବ୍ୟତୀତ ଏତେବେଳକୁ ରାଜାମାନଙ୍କ ମଧ୍ୟରେ ପୃଷ୍ଠପୋଷକତା ପ୍ରଦାନ କରିବାପାଇଁ ଏକ ରକମର ପ୍ରତିଯୋଗିତା ଆରମ୍ଭ ହୋଇଯାଇଥିଲା । କାରଣ ଅଧିକ ଭୂମିଦାନ କରୁଥିବା ବଦାନ୍ୟ ରାଜାଙ୍କୁ ଅଧିକ ପ୍ରଶସ୍ତି ଶୁଣିବାର ଅବକାଶ ମିଳୁଥିଲା ।[1]

ଜମି ଯେଉଁ ମାତ୍ରାରେ ସମ୍ପତ୍ତି ହେଲା, ସେହି ମାତ୍ରାରେ ସନ୍ତୁଳନର ରାଜନୀତିକୁ ଏହା ପରିବର୍ତ୍ତନ କରିଦେଲା । ଜମି ସମ୍ପତ୍ତିର ରୂପ ନେବା ଯୋଗୁଁ ବ୍ରାହ୍ମଣମାନେ ମଧ୍ୟ କ୍ଷତ୍ରିୟର କର୍ତ୍ତୃତ୍ୱ ହାସଲ କରିବାକୁ ଅବସର ପାଇଲେ ଏବଂ ସେହି ପ୍ରକ୍ରିୟାରେ ସେମାନେ ରାଜବଂଶ ପ୍ରତିଷ୍ଠା କଲେ । ଶାଖା ବଂଶ କୌଟୁମ୍ବିକତା ସହିତ ଯୋଡ଼ି ନ ହେଲେ ସୁଦ୍ଧା, ତାହା କୌଟୁମ୍ବିକାର କଳ୍ପନାକୁ ବଞ୍ଚେଇ ରଖିଲା । ଉକ୍ତ କଳ୍ପନାରେ ଧର୍ମଶାସ୍ତ୍ରର ନିୟମକୁ ପାଳନ କରିବାକୁ ଚେଷ୍ଟା କରାଗଲା । ଫଳରେ ଜାତିର ମହତ୍ତ୍ୱ ଆହୁରି ବୃଦ୍ଧି ପାଇଲା । ପୂର୍ବବର୍ତ୍ତୀ ସମୟରେ ଶ୍ରମଣ ସଂପ୍ରଦାୟମାନଙ୍କର ଲୋକପ୍ରିୟତା ଯୋଗୁଁ ଜାତି ବ୍ୟବସ୍ଥାକୁ ସମାଲୋଚନା କରିବାର ଅନେକ ଦୃଷ୍ଟାନ୍ତ ରହିଥିଲା, କାରଣ ଶ୍ରମଣ ସଂପ୍ରଦାୟ ଅ-ଗଡ଼ିବାଦୀ ବିଚାରକୁ ମହତ୍ତ୍ୱ ଦେଉଥିଲେ । ମାତ୍ର ବର୍ତ୍ତମାନ କଳ୍ପନା ଅଧିକ ସୁସ୍ପଷ୍ଟ ଥିଲା ଏବଂ ନିୟମକୁ ବସ୍ତୁତଃ ଉପେକ୍ଷା କରାଯାଉଥିଲା । ଏହାର ପ୍ରମାଣ ହେଲା ବ୍ରାହ୍ମଣମାନଙ୍କର ରାଜପଦ ଲାଭ କରବା ଓ ବାଣିଜ୍ୟ-ବ୍ୟବସାୟରେ ହାତ ଦେବା । ଏସବୁ ସତ୍ତ୍ୱେ ଧର୍ମଶାସ୍ତ୍ରୀୟ ନିୟମ ସୈଦ୍ଧାନ୍ତିକ ରୂପରେ ଜାରି ରହିଲା ।

ପୂର୍ବରୁ ବଂଶର ନାମରେ ରାଜ୍ୟଗୁଡ଼ିକର ନାମକରଣ କରାଯାଉଥିଲା । ମାତ୍ର ଏଣୁ ଏଣିକି କ୍ଷେତ୍ର ନାମରେ ରାଜ୍ୟକୁ ନାମିତ କରିବାର ପରମ୍ପରା ବୃଦ୍ଧି ପାଇଲା । ବିଶେଷକରି ଯେଉଁଠି ଛୋଟ ରାଜ୍ୟଟି ପୂର୍ବରୁ ଏକ ବଡ଼ ରାଜ୍ୟର ଅଂଶ ହୋଇ ରହିଥିଲା ଅଥବା ନୂତନ କେତେକ କ୍ଷେତ୍ରକୁ ନେଇ ନୂଆ ରାଜ୍ୟର ସ୍ଥାପନା ହୋଇଥିଲା, ସେଇଠି କ୍ଷେତ୍ରର ନାଁକୁ

ପ୍ରାଧାନ୍ୟ ଦିଆଗଲା । 'ଭୁକ୍ତି ' ଓ 'ବିଷୟ' ଆଦି ପ୍ରଶାସନିକ ଖଣ୍ଡର ନାଁକୁ ନୂଆ ରାଜ୍ୟରେ ବି ପ୍ରଚଳିତ କରାଗଲା । ପ୍ରଭୁତ୍ୱ ତଥା ସନ୍ଧି-ସମ୍ବନ୍ଧ ଆଧାରରେ କ୍ଷେତ୍ରଗୁଡ଼ିକର ପୁନର୍ବିନ୍ୟାସ ଆରମ୍ଭ ହେଲା । ପ୍ରଶାସନିକ ସଂରଚନା ପ୍ରଦେଶ ତଥା ବଂଶ ମଧ୍ୟରେ ସମ୍ବନ୍ଧକୁ ପ୍ରତିବିମ୍ବିତ କରେ ବୋଲି ଯୁକ୍ତି ଦର୍ଶାଗଲା । ଯଦିଓ ପ୍ରଶାସନିକ ବ୍ୟବସ୍ଥା ନିୟମନିଷ୍ଠ ଥିଲା ବୋଲି କୁହାଯାଇଛି, ପ୍ରକୃତରେ ତାହା ଖୁବ୍ ନିୟମନିଷ୍ଠ ହୋଇ ନ ଥିବ ବୋଲି ମନେହୁଏ । ଉଦାହରଣ ସ୍ୱରୂପ, କେତେକ ରାଜପୁତ ଶାସିତ କ୍ଷେତ୍ରରେ ଚୌରାଶୀ ଚୌରାଶୀ ଖଣ୍ଡ ଗାଁର ଗୋଟାଏ ଗୋଟାଏ ପ୍ରାଦେଶିକ ୟୁନିଟ ଥିବା କଥା କୁହାଯାଇଛି । ଏହାକୁ 'ଚୌରାଶୀ' କୁହାଯାଉଥିଲା । ପ୍ରତ୍ୟେକ ଚୌରାଶୀରେ ଗୋଟାଏ ଗଡ଼ ରହିଥିଲା । ଗଡ଼ ହିଁ ଥିଲା ଉକ୍ତ ଚୌରାଶୀର ମୁଖ୍ୟ କେନ୍ଦ୍ର । ଯେଉଁମାନେ କ୍ଷମତାଧାରୀ ଥିଲେ, ସେମାନେ କୌଣସି ନା କୌଣସି ଜଣେ ରାଜପୁତ ରାଜାଙ୍କ ପ୍ରତି ନିଜର ନିଷ୍ଠା ଓ ଅନୁରକ୍ତି ପ୍ରକାଶ କରୁଥିଲେ । ରାଜପୁତ ପରିବାର ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହେଉଥିଲା, ଯାହା ରାଜପୁତମାନଙ୍କୁ ଏକ ସ୍ୱତନ୍ତ୍ର ସାମାଜିକ ବର୍ଗ ଭାବରେ ଚିହ୍ନିତ କଲା । ବ୍ୟାପକ ସ୍ତରରେ କୁଳରୁ ଜାତିକୁ ରୂପାନ୍ତରଣ ଶୀଘ୍ର ହୋଇ ନ ଥିଲା । ଯେଉଁମାନେ ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ ଥିଲେ, ସେମାନେ କୁଳଗତ ପରିଚୟକୁ ବଜାୟ ରଖିବାକୁ ଚାହୁଁଥିଲେ । ଫଳରେ ସେମାନଙ୍କର ଜାତିରେ ପରିଣତ ହେବାର ପ୍ରକ୍ରିୟା ବାଧାପ୍ରାପ୍ତ ହେଉଥିଲା । ଏହି କାରଣରୁ ଉଭୟ ବ୍ରାହ୍ମଣ ଓ ଶୂଦ୍ର ଗୋଟାଏ ସଂଜ୍ଞା ବହନ କରିଥିବାର ଉଦାହରଣ ମଧ୍ୟ ରହିଛି । ଯଥା- ଆଭୀର ବ୍ରାହ୍ମଣ ଓ ଆଭୀର ଶୂଦ୍ର ।

ଦାନରେ ପ୍ରଦାନ କରାଯାଇଥିବା ଜମିର ଆକାର ଯଦି ବଡ଼ ହୁଏ, ତେବେ ତାହା କ୍ଷମତା ଅଧିକାର କରିବାପାଇଁ ଆଧାରର କାମ କରୁଥିଲା । ଏଥିରୁ ଏକଥା ମଧ୍ୟ ସିଦ୍ଧ ହୁଏ ଯେ କ୍ଷମତା ଅଧିକାର ପାଇଁ ଦ୍ୱାର ଅପେକ୍ଷାକୃତ ଉନ୍ମୁକ୍ତ ଥିଲା । ତଥାପି କୁଳସମ୍ବନ୍ଧ ମାଧ୍ୟମରେ ଏଣିକି ବ୍ୟାପକ କ୍ଷମତା ବିତରଣ ହେଲା ଏବଂ ତା' ଦ୍ୱାରା ସମାଜ ପରିବର୍ତ୍ତନ ସମ୍ଭବ ହେଲା ବୋଲି ଯୁକ୍ତି କରିବା ଯଥେଷ୍ଟ ହେବ ନାହିଁ । କ୍ଷମତା ଅଧିକାରର ବାସ୍ତବିକତା ସମ୍ବଳ ଓ ଶ୍ରମର ନିୟନ୍ତ୍ରଣ ଉପରେ ନିର୍ଭର କରୁଥିଲା । କ୍ଷମତା ଅଧିକାରକୁ ସ୍ଥାୟିତ୍ୱ ଦେବାପାଇଁ ଦେବତ୍ୱ ଦାବି କରାଯାଉଥିଲା ଏବଂ ଅନ୍ୟାନ୍ୟ ବୈଧୀକରଣର ଉପାୟ କରାଯାଉଥିଲା । ତା' ସତ୍ତ୍ୱେ ଶ୍ରମ ଓ ସମ୍ବଳ ଉପରେ ନିୟନ୍ତ୍ରଣ ବିନା କ୍ଷମତା ହାସଲ କରିବା ସମ୍ଭବ ନ ଥିଲା । ଯେଉଁମାନେ ଶ୍ରମ କରୁଥିଲେ ଏବଂ ଯେଉଁମାନେ ଶ୍ରମ ଭୋଗ କରୁଥିଲେ ସେମାନଙ୍କ ମଧ୍ୟରେ ରହିଥିବା ଚୁକ୍ତିଗତ ସମ୍ବନ୍ଧକୁ ମଧ୍ୟ ଏଠାରେ ପରିଭାଷିତ କରାଯିବା କଥା । ଏହି ସନ୍ଦର୍ଭରେ ସାମାଜିକ ସମ୍ବନ୍ଧର ଅନୁକ୍ରମକୁ ଦେଖିବାକୁ ହେବ । ବର୍ଣ୍ଣ ଅପେକ୍ଷା ଜାତିର ସୂଚୀ ତିଆରିରେ ଏହି ଅନୁକ୍ରମ ଅଧିକ ଉପଯୋଗୀ ସିଦ୍ଧ ହେଲା, କାରଣ ଆଞ୍ଚଳିକ ତାରତମ୍ୟ ଯୋଗୁଁ ବର୍ଣ୍ଣର

ଏକ ସମରୂପୀ ଢାଞ୍ଚା ତିଆରି କରିବା କାଠିକର ଥିଲା । ଜାତିଗତ ପାହ୍ୟା ଉପରେ ଆଧାରିତ ସେବା-ସମ୍ବନ୍ଧ ଏବଂ ପାହ୍ୟାରେ ଅନ୍ତର୍ନିହିତ ଅନୁକ୍ରମରେ ପ୍ରତ୍ୟେକ ଜାତିର କର୍ତ୍ତବ୍ୟକୁ ନିର୍ଦ୍ଧାରିତ କରିଦିଆଯାଇଥିଲା । ଭୂ-ସମ୍ପତ୍ତିର ଅଧିକାରୀ ପରିବାର ପାଖରେ ସମ୍ଭବତଃ ଉକ୍ତ କର୍ତ୍ତବ୍ୟକୁ ନିର୍ଦ୍ଧାରଣ କରିବାର କ୍ଷମତା ରହିଥିବ । ଯେଉଁଠାରେ ଏହି ବ୍ୟବସ୍ଥା ପ୍ରଚଳିତ ଥିଲା, ସେଠାରେ କୃଷକ ଖୁବ୍ ବନ୍ଧନରେ ରହିଥିଲା । ପୂର୍ବବର୍ତ୍ତୀ କାଳରେ କୃଷକ ବନ୍ଧନରୁ ମୁକ୍ତି ପାଇଁ ଦେଶାନ୍ତରଣର ଆଶ୍ରା ନେଉଥିଲା । ମାତ୍ର ଏବେ ତାହା ଆଉ ସମ୍ଭବ ନ ଥିଲା, କାରଣ ଇଚ୍ଛାନୁସାରେ ଅନାବାଦୀ ଜମିକୁ ସଫାକରି କୃଷିଯୋଗ୍ୟ କରିବାପାଇଁ ଅନୁମତି ମିଳିବା ସହଜ ନ ଥିଲା । ପ୍ରଭୁତ୍ୱଶାଳୀ ଭୂ-ସ୍ୱାମୀ ହେବାପାଇଁ ଅନେକ ସଂଖ୍ୟକ ସେବକ ବା କୃଷିସେବାକାରୀର ଦରକାର ପଡୁଥିଲା । ମନ୍ଦିର ପରି ସଂସ୍ଥାଗତ ଭୂ-ସ୍ୱାମୀଠାରେ ମଧ୍ୟ ଏହି ଧରଣର ସେବା-ସମ୍ବନ୍ଧର ଆବଶ୍ୟକତା ଥିଲା । ବର୍ଣ୍ଣ ପାହ୍ୟା ଗୃହୀତ ହେବାପରେ ବିଶେଷାଧିକାର ପ୍ରାପ୍ତ ଜାତି ଓ ଅନ୍ୟ ଜାତି ମଧ୍ୟରେ ତାରତମ୍ୟ ବୃଦ୍ଧି ପାଇଲା । ବିଶେଷାଧିକାର ପ୍ରାପ୍ତ ବ୍ୟକ୍ତି ଯଦି ମୁକ୍ତ ଥିଲା, ତେବେ ଅନ୍ୟମାନେ ଥିଲେ ଅନୁବନ୍ଧିତ ।

ଏହି ପ୍ରକ୍ରିୟା ଭୂମି ଉପରେ ନିୟନ୍ତ୍ରଣ ରଖିଥିବା ଗୋଷ୍ଠୀ ଓ ଭୂମିରେ କାମ କରୁଥିବା ଗୋଷ୍ଠୀ ମଧ୍ୟରେ ରହିଥିବା ତାରତମ୍ୟକୁ ଏତେ ତୀବ୍ର କଲା ଯେ, ତାହା ପୂର୍ବ ତୁଳନାରେ ସମାଜକୁ ଶୀଘ୍ର ବଦଳେଇଦେଲା । ପ୍ରଥମ ବର୍ଗ ଉପରେ ଏହାର ପ୍ରଭାବକୁ ନେଇ ନାନା ଅଧ୍ୟୟନ ହୋଇଛି ଏବଂ ତହିଁରେ ବୋଧଗତ ପାର୍ଥକ୍ୟ ଦେଖିବାକୁ ମିଳିଛି । ଅନ୍ୟପକ୍ଷରେ, ଉତ୍ପାଦନକାରୀର ଅଧିକାର ଓ ସର୍ତ୍ତକୁ ନେଇ ଅସ୍ପଷ୍ଟତା ଦୂର ହୋଇ ନାହିଁ । ଅବଶ୍ୟ ଭାରତୀୟ ସମାଜରେ ସାମନ୍ତୀକରଣ ବିଷୟକ ସିଦ୍ଧାନ୍ତରେ ନେଇ ନାନା ପ୍ରଶ୍ନ ଉଠିଛି । ଏଠାରେ ଗ୍ରହିତା ଜଣେ ସାମନ୍ତ ପ୍ରଭୁ ଥିଲା ନା ନାହିଁ ସେ ପଛ କଥା । ମାତ୍ର ଏହି ଅଧିକାର ଓ ସର୍ତ୍ତ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଥିଲା । ଶ୍ରମର ସ୍ୱରୂପ ଏବଂ ସମାଜ ତଥା ଅର୍ଥବ୍ୟବସ୍ଥାର ଅନ୍ୟାନ୍ୟ ଦିଗ ସହିତ ତା'ର ସମ୍ବନ୍ଧକୁ ନେଇ ଆହୁରି ବିସ୍ତାରରେ ଗବେଷଣାର ଆବଶ୍ୟକତା ରହିଛି । କୃଷକ ତା'ର ଅଭିଯୋଗକୁ ନ୍ୟାୟାଳୟରେ ଆଗତ କରିପାରୁଥିଲା ନା ନାହିଁ ସେ ନେଇ ଏକ ସରଳ ପ୍ରଶ୍ନର ଉଲ୍ଲେଖ ରହିଛି । ରାଜା ଯେତେବେଳେ ଗ୍ରାମୀଣ କ୍ଷେତ୍ରକୁ ଗସ୍ତ କରୁଥିଲେ, ସେତେବେଳେ ସେ ସାଧାରଣ ପ୍ରଜାଠାରୁ ଅଭିଯୋଗ ଶୁଣୁଥିଲେ ବୋଲି ଉଲ୍ଲେଖ ରହିଛି । ମାତ୍ର ଏଭଳି ଗସ୍ତର କୌଣସି ନିୟମିତତା ନ ଥିଲା । ପୁଣି କେତେକ ଲୋକକଥାରେ କୃଷକ ଅଭିଯୋଗ କରିବାଲାଗି ଖୁବ୍ ଉତ୍ସୁକ ବୋଲି ଉଲ୍ଲେଖ ରହିଛି । ଏହାର ଅର୍ଥ ହେବ, ଯଦିଓ ଅଧିକାଂଶ କ୍ଷେତ୍ରରେ ଏହା ଏକ ଇଚ୍ଛା ମାତ୍ର ହୋଇ ରହିଥିଲା, କୃଷକ ଚାହୁଁଥିଲା ତାକୁ ସେହି ସୁଯୋଗ ମିଳୁ ।

ଭୂମିଦାନ ଯୋଗୁଁ ରାଜସତ୍ତାର ବିକେନ୍ଦ୍ରୀକରଣ ହେଲା ନା ଶାଖା-ରାଜବଂଶ ଭାବେ ପରିଚିତ ପରିବାରବର୍ଗଙ୍କୁ ସତ୍ତାର କିଛି ପ୍ରାପ୍ତ ହେଲା ସେ ଭିନ୍ନ କଥା । ମାତ୍ର ଏହା କୃଷି ଅର୍ଥବ୍ୟବସ୍ଥାକୁ ପୁନଃରଚନା କରିବାରେ ସଫଳ ହେଲା । ଭୂମି-ଦାନ ଯୋଗୁଁ କୃଷି ଉତ୍ପାଦନ ସଂପ୍ରସାରିତ ହେଲା, କାରଣ ତା' ଦ୍ୱାରା ଜଳସେଚନ ପରି ପ୍ରାଦ୍ୟୋଗିକୀ ସହାୟତା ପ୍ରାପ୍ତ ହେଲା । ପୁଣି ଉଦ୍ଦିଷ୍ଟ ଗ୍ରହିତାର ପ୍ରତ୍ୟକ୍ଷ ଦେଖାରେଖା ମଧ୍ୟ ଉତ୍ପାଦନ ବୃଦ୍ଧିରେ ସାହାଯ୍ୟ କଲା । କୃଷିର କେମିତି ଉନ୍ନତି ହୋଇପାରେ, ସେ ନେଇ ଯାହା ପାଖରେ ଜ୍ଞାନ ଥିଲା, ଯଥା- ପ୍ରଶାସନିକ ଅଧିକାରୀ ଓ ବ୍ରାହ୍ମଣ, ତା' ହାତରେ କୃଷି ଅର୍ଥବ୍ୟବସ୍ଥାର ନିୟନ୍ତ୍ରଣ ରହିଲା । ଅନ୍ୟପକ୍ଷରେ, ବ୍ରାହ୍ମଣଠାରୁ କୃଷି କିମ୍ବା ତା'ର ପ୍ରାଦ୍ୟୋଗିକୀ ନିରୀକ୍ଷଣ କଦାଚିତ ଆଶା କରାଯାଇ ନ ପାରେ । ସେ ଯାହାହେଉ, 'କୃଷି ପରାଶର' ଅଥବା ବରାହମିହିର କୃତ 'ବୃହତ୍‌ସଂହିତା'ର କିଛି ଅଂଶ ଆଦି କୃଷି ସମ୍ବନ୍ଧିତ ପୋଥିରୁ ଜଣାଯାଏ ଯେ, କୃଷିକର୍ମ ସମ୍ବନ୍ଧୀୟ ଜ୍ଞାନର ବିଶାରଦ ରୂପରେ ମଧ୍ୟ ବ୍ରାହ୍ମଣ ପ୍ରତିଷ୍ଠା ଲାଭ କରିଥିଲା । ଯେତେବେଳେ ନୂତନ କ୍ଷେତ୍ରରେ କୃଷିକାର୍ଯ୍ୟ ଆରମ୍ଭ କରିବାକୁ ପଡ଼ିଥିବ ବା ପୁରୁଣା କ୍ଷେତ୍ରରେ କୃଷି ଉତ୍ପାଦନ ବୃଦ୍ଧି କରିବାର ଦରକାର ପଡ଼ିଥିବ, ସେଠାକାର ବ୍ରାହ୍ମଣ ବାସିନ୍ଦା ପାଇଁ ପାଖରେ କୃଷି ସମ୍ବନ୍ଧୀୟ ସଂହିତାର ଏକ ପ୍ରତି ରଖିବା ପ୍ରାଥମିକ ଆବଶ୍ୟକତା ହୋଇଥିବ ବୋଲି ଅନୁମାନ କରାଯାଏ ।

ଭୂମିଦାନ ଉପରେ ଧ୍ୟାନ କେନ୍ଦ୍ରିତ ହେବା କାରଣରୁ ବନାଞ୍ଚଳରେ ଅପେକ୍ଷାକୃତ ଶୁଖା ଅଞ୍ଚଳରେ ପ୍ରସାରିତ ପଶୁଚାରଣ ଯଥେଷ୍ଟ ଧ୍ୟାନ ଆକର୍ଷଣ କରିପାରେ ନାହିଁ । ଅବଶ୍ୟ ପୂର୍ବବର୍ତ୍ତୀ କାଳ ତୁଳନାରେ ପଶୁ ଚାରଣର ମହତ୍ତ୍ୱ ହ୍ରାସ ପାଇଥିଲା । ତା' ସତ୍ତ୍ୱେ, ଦୁଇଟି କୃଷିକ୍ଷେତ୍ର ମଧ୍ୟବର୍ତ୍ତୀ ଅଞ୍ଚଳରେ ଏବଂ କେତେକ ପାର୍ବତ୍ୟାଞ୍ଚଳରେ ପଶୁଚାରଣ ଥିଲା ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ । ଗ୍ରାମାଞ୍ଚଳରେ ହଳ କରିବାପାଇଁ, ଜମି ନିର୍ମାଣ ପାଇଁ, ଜଳଚକ୍ରକୁ ବଳ ଦେବାପାଇଁ ତଥା ଆଖୁରୁ ରସ କାଢ଼ିବାପାଇଁ ଗୋଧନର ବିଶେଷ ଆବଶ୍ୟକତା ରହିଥିଲା । ଆରମ୍ଭରେ ବନବାସୀ ଆଦିବାସୀଙ୍କ ଭଳି ଥିଲେ ପଶୁଚାରକ କୁଳମାନେ । ସେମାନେ କୃଷକ ଭାବେ ବସତି ସ୍ଥାପନ କରିବା ଉତ୍ତାରୁ ଜାତିରେ ରୂପାନ୍ତରିତ ହେଲେ ।

ଭୂମିଦାନ ଆର୍ଥିକ ପରିବର୍ତ୍ତନକୁ ସାହାଯ୍ୟ କଲା । ଏଥିପାଇଁ ରାଜ୍ୟର ମଧ୍ୟ ସହମତି ଓ ସହଯୋଗ ରହିଥିଲା । ଯେଉଁଠି ରାଜ୍ୟ ସ୍ୱୟଂ ରାଜସ୍ୱ ଆଦାୟ କରୁ ନ ଥିଲା, ସେଠାରେ ଗ୍ରହିତା ମାଧ୍ୟମରେ ପରିବର୍ତ୍ତନ ଆସିଲା । ଗ୍ରହିତାମାନେ ଆଗରୁ ରହିଥିବା କୃଷକମାନଙ୍କୁ ନିଜ ସ୍ୱାର୍ଥରେ ସଂଗଠିତ କଲେ । ପୋଡୁଚାଷୀମାନଙ୍କୁ ସ୍ଥାୟୀ ଚାଷୀରେ ରୂପାନ୍ତରିତ କରାଗଲା । ଏଣିକି ଚାଷୀର ସମାଜକୁ ଗ୍ରହିତାର ସମାଜ ଆଧାରରେ ପରିବର୍ତ୍ତନ କରାଗଲା ।

ଦାନପତ୍ରରେ ସର୍ତ୍ତ ଅନୁଯାୟୀ, ରାଜ୍ୟ ଗ୍ରହିତାକୁ ପ୍ରଶାସନିକ, ରାଜକୋଷୀୟ (fiscal) ତଥା ନ୍ୟାୟିକ ଅଧିକାର ଦେଇପାରୁଥିଲା । ଭୂମିଦାନ ସହିତ ଯେତେବେଳେ ଏସବୁ ଅଧିକାର ପ୍ରାପ୍ତ ହେଲା, ଗ୍ରହିତାର କ୍ଷମତା ବୃଦ୍ଧି ପାଇଲା । ଏସବୁ ମିଶି ହେଲେ କ୍ଷମତାର ନାଭିକେନ୍ଦ୍ର । ଜାତିରେ ରୂପାନ୍ତରଣ ହେବାଫଳରେ ଅନେକ ନୂଆ ଜାତିର ସୃଷ୍ଟି ହେଲା ଏବଂ ଜାତି ଅନୁକ୍ରମରେ କିଛିଟା ଅଦଳବଦଳ ମଧ୍ୟ କରିବାକୁ ପଡ଼ିଲା । ପୂର୍ବକାଳୀନ ପୋଥି ଅନୁସାରେ, ନିଜ ପ୍ରଜାଙ୍କର ରକ୍ଷା ନିମନ୍ତେ ତଥା ଆଇନ ବ୍ୟବସ୍ଥାକୁ ଲାଗୁ କରିବା ସକାଶେ ରାଜାଙ୍କର ଦଣ୍ଡ ଧାରଣ କରିବା ନିୟମ ଥିଲା । ମାତ୍ର ଏବେ କୁହାଗଲା ଯେ, ନିୟମ ଜାତି, କ୍ଷେତ୍ର ଓ ବୃତ୍ତି ଅନୁସାରେ ବଦଳିପାରେ । ନୂଆକରି ସୃଷ୍ଟି ହୋଇଥିବା ଜାତିଗୁଡ଼ିକ ପୂର୍ବରୁ ପ୍ରଚଳିତ କେତେକ ପାରମ୍ପରିକ ନିୟମକୁ ମଧ୍ୟ ପାଳନ କରୁଥିଲେ ।

## ଏକ ନୂତନ ସନ୍ଦର୍ଭରେ ନଗରବାଦ

ଗୁପ୍ତୋତ୍ତର ଯୁଗର ଆରମ୍ଭରେ ଉତ୍ତର ଭାରତର କେତେକ କ୍ଷେତ୍ରରେ ବାଣିଜ୍ୟିକ ଗତିବିଧି ହ୍ରାସ ପାଇଥିଲା । ଅବଶ୍ୟ ଜମିର ଉତ୍ପାଦନ ଅନ୍ୟ ରୂପରେ ଆର୍ଥିକ ବିନିମୟକୁ ଜାରି ରଖିଥିଲା । ନଗରୀୟ ସ୍ଥଳୀଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାପଡ଼େ ଯେ ଗୁପ୍ତକାଳୀନ ଭୌତିକ ସଭ୍ୟତା କୁଶାଣକାଳୀନ ସଭ୍ୟତା ତୁଳନାରେ କମ୍ ମାନର ଥିଲା । ହୁଏତ କେତେକ ସ୍ଥଳୀରେ, ଯେଉଁଠି ପ୍ରତ୍ନତାତ୍ତ୍ୱିକ ଖନନ ସମ୍ପନ୍ନ ହୋଇଛି, ତହିଁରୁ କେତେକ ସ୍ଥାନରେ ବ୍ୟାପକ ଦେଶାନ୍ତରଣ ହୋଇଥିଲା । ତେଣୁ, ସେତେବେଳେ ବିନଗରୀକରଣ (de-urbanization) ହୋଇଥିଲା ବୋଲି ସ୍ଥିରନିର୍ଣ୍ଣିତ ହେବାପାଇଁ ଆନୁଭୂମିକ (horizontal) ଖନନ ଅଧିକ ଉପଯୋଗୀ ସିଦ୍ଧ ହେବ । ବିନଗରୀକରଣ ପଛରେ କାରଣ ରୂପେ ବନ୍ୟା ଓ ପର୍ଯ୍ୟାବରଣଗତ ପରିବର୍ତ୍ତନକୁ ଚିହ୍ନିତ କରାଯାଏ । ପ୍ରଥମ ସହସ୍ରାବ୍ଦୀର ମଧ୍ୟକାଳରେ ପର୍ଯ୍ୟାବରଣଗତ ପରିବର୍ତ୍ତନ ହୋଇଥିବାର ସମ୍ଭାବନା ଦେଖାଯାଏ । ଅବଶ୍ୟ ଏ ନେଇ କୌଣସି ଠୋସ ପ୍ରମାଣ ଆମ ପାଖରେ ନାହିଁ । ଚୀନ୍‌ର ବୌଦ୍ଧ ସନ୍ନ୍ୟାସୀ ହୁଏନ୍‌ସାଂ ତାଙ୍କ ବିବରଣୀରେ ସେ କେତେକ ଅପେକ୍ଷାକୃତ ଜନଶୂନ୍ୟ ସହର ମଧ୍ୟ ଦେଇ ଯାତ୍ରା କରିଥିବାର ଉଲ୍ଲେଖ କରିଛନ୍ତି । ପୁରୁଣା ବାଣିଜ୍ୟ ମାର୍ଗର କଡ଼େ କଡ଼େ ଭବ୍ୟ ଭବନ ଆଉ ଦେଖିବାକୁ ମିଳୁ ନ ଥିଲା । କେତେକ ଅଞ୍ଚଳରେ ବାଣିଜ୍ୟର ପତନ ଏହା ପଛରେ କାରଣ ହୋଇଥିବ । ବାଣିଜ୍ୟପଥ ପରିବର୍ତ୍ତନ ହେବା ଫଳରେ ପଥପାର୍ଶ୍ୱସ୍ଥିତ ନଗରୀଗୁଡ଼ିକ ମହତ୍ତ୍ୱ ହରାଇଲେ; ବଜାରର ସ୍ଥାନ ବଦଳିଗଲା । ଖାଲି ନଗରୀଗୁଡ଼ିକ ସହିତ କେତେକ ସ୍ଥାନରେ ନୂତନ ନଗରୀଗୁଡ଼ିକୁ ମଧ୍ୟ ଦେଖିବାକୁ ମିଳିଲା । ଏହାର ଅର୍ଥ ହେଲା, ଉପମହାଦ୍ୱୀପର ସର୍ବତ୍ର

ସମଭାବରେ ବାଣିଜ୍ୟର ପତନ ଘଟି ନ ଥିଲା । କେତେକ ସ୍ଥାନରେ ଯଦି ପତନ ହେଲା, ତେବେ ଆଉ କେତେକ ସ୍ଥାନରେ ତାହା ନୂଆକରି ଗଢ଼ିଉଠିଲା । ତା'ଛଡ଼ା, ରାଜ୍ୟର ରାଜଧାନୀରେ ନିଶ୍ଚିତରୂପେ ରାଜଦରବାରମାନ ରହିବେ ବୋଲି କଥା ନ ଥିଲା । ଯୁଦ୍ଧ ଅଭିଯାନ ବେଳେବେଳେ ଦୀର୍ଘଦିନ ଧରି ଚାଲୁଥିଲା । ସୀମାନ୍ତ ଅଞ୍ଚଳରେ ରାଜାଙ୍କର ଯାତ୍ରା ବି କେବେ କେବେ ଦୀର୍ଘଦିନ ଧରି ଅବ୍ୟାହତ ରହୁଥିଲା । ସେତେବେଳେ ସେନାଛାଉଣୀରେ ରାଜଦରବାର ବସୁଥିଲା । ରାଜଦରବାର ଉଠିଗଲେ ସହରଟି ଖାଲି ପଡୁଥିଲା ।

ବିନିମୟ ପାଇଁ ଉତ୍ପାଦିତ ସାମଗ୍ରୀର ପରିମାଣ ଯଥେଷ୍ଟ ନ ହେବାରୁ ନଗରର ପତନ ହୋଇଥିଲା । ଉତ୍ପାଦିତ ସାମଗ୍ରୀ ମଧ୍ୟରେ କାରିଗର ଦ୍ୱାରା ନିର୍ମିତ ସାମଗ୍ରୀ ଅଥବା ଆଖୁ, କପା ଓ ନୀଳ ଆଦି କୃଷିଜାତ ସାମଗ୍ରୀ ରହିଥିଲା । ଏହିସବୁ ସାମଗ୍ରୀ ଗ୍ରାମାଞ୍ଚଳର ବଜାର ପାଇଁ ମଧ୍ୟ ଉପଯୋଗୀ ଥିଲା । ପୁରୁଣା ବଦଳରେ ନୂତନ ସହର ବସିବା ଯୋଗୁଁ ନୂତନ କ୍ଷେତ୍ରକୁ ବାଣିଜ୍ୟ ସ୍ଥାନାନ୍ତରିତ ହେଲା । ଛୋଟ ଛୋଟ ରାଜ୍ୟର ଦରବାର ସହିତ ସଂଯୋଜିତ ପ୍ରଶାସନିକ କେନ୍ଦ୍ର ବ୍ୟବସାୟକୁ ପ୍ରୋତ୍ସାହିତ କଲେ ଏବଂ ନିଜେ ବାଣିଜ୍ୟ କେନ୍ଦ୍ର ରୂପେ ବିକଶିତ ହେଲେ । ହୁଏନ୍‌ସାଂ ଥାନେଶ୍ୱର, କନୌଜ ଏବଂ ବାରାଣାସୀକୁ ବାଣିଜ୍ୟ କେନ୍ଦ୍ର ରୂପେ ଅଭିହିତ କରିଛନ୍ତି । ଥାନେଶ୍ୱର ଓ କନୌଜ ପୂର୍ବରୁ ପ୍ରଶାସନିକ କେନ୍ଦ୍ର ହୋଇ ରହିଥିଲା । କୃଷିଜାତ ସାମଗ୍ରୀର ଉତ୍ପାଦନ ବୃଦ୍ଧି ପାଇବାରୁ ଅନେକ ବଜାର ଗ୍ରାମାଞ୍ଚଳରେ ବିକଶିତ ହେଲା । ଏସବୁ ବଜାରର ଅବସ୍ଥିତି ଯୋଗୁଁ ବାଣିଜ୍ୟର ବିଶେଷ ପତନ ହୋଇ ନ ଥିବ ବୋଲି ଅନୁମାନ କରାଯାଏ, ଯଦିଓ ପୂର୍ବର ନଗରୀୟ କେନ୍ଦ୍ରରୁ ଯାଇ ଉତ୍ପାଦିତ ସାମଗ୍ରୀ ନୂତନ କେନ୍ଦ୍ରରେ ବିନିମୟ ପାଇଁ ଠୁଳ ହୋଇଥିବ ।

ବାଣିଜ୍ୟିକ ପତନ ସତ୍ତ୍ୱେ ବନ୍ଦର ଓ ତଟୀୟ ନଗରୀଗୁଡ଼ିକ ବିଶେଷ ପ୍ରଭାବିତ ହୋଇ ନ ଥିବ । ଏହି ପ୍ରକାରର ନଗରୀଗୁଡ଼ିକ ମଧ୍ୟରେ ସିନ୍ଧୁ ଅବବାହିକା ସ୍ଥିତ ଦେବଲ, ଗୁଜରାଟର ବେରାବଲ (ସୋମନାଥର ବନ୍ଦର) ଓ କାମ୍ବେ, ଦକ୍ଷିଣରେ ସ୍ଥିତ ଥାନା ଓ ସପୋରା ଏବଂ ଗଙ୍ଗା ଅବବାହିକାର ବନ୍ଦରମାନ ଉଲ୍ଲେଖନୀୟ । ଜାହାଜରେ ଯାଉଥିବା ସାମଗ୍ରୀମାନ ହୁଏତ ଭାରତରେ ଉତ୍ପାଦିତ ହେଉଥିଲା ଅଥବା ଭାରତୀୟ ବଣିକ ଦ୍ୱାରା ପୂର୍ବଦିଗରୁ କିଣାହୋଇ ଆସୁଥିଲା । ଆମଦାନି ହେଉଥିବା ବସ୍ତୁ ମଧ୍ୟରେ ଅନ୍ୟତମ ଥିଲା : ଚୀନ୍‌ରୁ ଆସୁଥିବା ରେଶମ ଓ ଚୀନାମାଟି ତିଆରି ବାସନ । ପ୍ରତିବଦଳରେ ଚୀନ୍ ଭାରତରୁ ସୂତାବସ୍ତ୍ର, ହାତୀଦାନ୍ତର ଉପକରଣ, ଗଣ୍ଡାର, ସିଂହ ଏବଂ ନାନା କିସମର ମୂଲ୍ୟବାନ ପଥର ଓ ମଣିପଥର ଆମଦାନି କରୁଥିଲା । ପଶ୍ଚିମ ଦିଗକୁ ରପ୍ତାନୀ ହେଉଥିବା ସାମଗ୍ରୀ ମଧ୍ୟରେ ମୁଖ୍ୟତଃ ଗୋଲମରିଚ, ମସଲା ଏବଂ କପଡ଼ା ଅନ୍ତର୍ଭୁକ୍ତ ଥିଲା । ଏସବୁ ସାମଗ୍ରୀ

ପୂର୍ବକାଳରୁ ଭାରତରୁ ରପ୍ତାନୀ ହୋଇଆସୁଥିଲା । କପା ଉତ୍ପାଦନରେ ଉନ୍ନତ କିସମର ପ୍ରାଦ୍ୟୋଗିକୀ ବ୍ୟବହାର ହୋଇଥିଲା ବୋଲି ଉଲ୍ଲେଖ ମିଳେ । ପୂର୍ବାଞ୍ଚଳର ବାଣିଜ୍ୟ ଉପରେ ସେମାନେ ନିରନ୍ତର ହସ୍ତକ୍ଷେପ କଲେ ଏବଂ ପଶ୍ଚିମର ଦେଶଗୁଡ଼ିକ ସହିତ ଚାଲିଥିବା ଭାରତର ବାଣିଜ୍ୟରେ ପ୍ରତ୍ୟକ୍ଷଭାବେ ଭାଗ ନେଲେ । ସେତେବେଳେ ଭାରତ, ଦକ୍ଷିଣ-ପୂର୍ବ ଏସିଆ ଏବଂ ଚୀନ୍ ମଧ୍ୟରେ ରହିଥିବା ବାଣିଜ୍ୟ ଉପରେ ଭାରତୀୟ ମଧ୍ୟସ୍ଥୀମାନେ ନିୟନ୍ତ୍ରଣ ରଖିଥିଲେ । ଆରବର ବଣିକମାନେ ସିଧା ଉତ୍ପାଦନ ସ୍ଥଳଗୁଡ଼ିକୁ ଯାଇ ମଧ୍ୟସ୍ଥୀମାନଙ୍କୁ ହଟେଇବାକୁ ପ୍ରୟାସ କରୁଥିଲେ । ଏହି ସମୟରେ ମଧ୍ୟ-ଏସିଆ ସହିତ ସ୍ଥଳପଥରେ ଉତ୍ତର ଭାରତର ମଧ୍ୟ ବାଣିଜ୍ୟ କାରବାର ଚାଲିଥିଲା । ମାତ୍ର ତୁର୍କ ଓ ମଙ୍ଗୋଲମାନଙ୍କ ଗତିବିଧି ଯୋଗୁଁ ଏହା ସୁବିଧାଜନକ ନ ଥିଲା ।

ଦଶମ ଶତାବ୍ଦୀ ପରଠାରୁ ବ୍ୟବସାୟିକ ବିନିମୟର ଅନେକ ଉଲ୍ଲେଖ ଦେଖିବାକୁ ମିଳେ । କେତେକ 'ଶ୍ରେଣୀ' (guilds)ର ମଧ୍ୟ ବର୍ଣ୍ଣନା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, ସ୍ୱର୍ଣ୍ଣକାର ଶ୍ରେଣୀ, କାରଭାନ (caravan) ବା ମାଲ ପରିବହନକାରୀ ସଂଗଠକ ଶ୍ରେଣୀ, ତୈଳ ଉତ୍ପାଦନକାରୀ ଶ୍ରେଣୀ, ପଥର କାରିଗର ଶ୍ରେଣୀ ଆଦିର ଉଲ୍ଲେଖ ମିଳେ । ମାତ୍ର ଏହି ଶ୍ରେଣୀଗୁଡ଼ିକ ବାଣିଜ୍ୟ କେନ୍ଦ୍ରରେ ନ ଥିଲେ; ରାଜ୍ୟର ରାଜଧାନୀରେ ସ୍ଥାପିତ ହୋଇ ରହିଥିଲେ । କେତେକ ନୂତନ ବସ୍ତୁର ମଧ୍ୟ ବଜାରରେ ନାମ ଶୁଣିବାକୁ ମିଳିଲା । ସମ୍ଭବତଃ ବାଣିଜ୍ୟ ମାର୍ଗରେ ମଧ୍ୟ ପରିବର୍ତ୍ତନ ହେଲା । ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ହେଲା ଯେ, ଏହି ସମୟରେ ଅନେକ ସଂଖ୍ୟାରେ ଘୋଡ଼ାର ଆମଦାନି ହେଲା । ଯୁଦ୍ଧର ସଂଖ୍ୟା ବୃଦ୍ଧି ହେବାରୁ ଅଧିକ ସଂଖ୍ୟକ ଘୋଡ଼ାର ଆବଶ୍ୟକତା ପଡ଼ିଲା । ଅଶ୍ୱାରୋହୀ ସେନା ଉପରେ ରାଜ୍ୟମାନେ ଅଧିକରୁ ଅଧିକ ମାତ୍ରାରେ ନିର୍ଭରଶୀଳ ହେଲେ । ଧାତୁ ତିଆରି ଷ୍ଟିରପ (stirrup – ଯେଉଁଠି ଅଶ୍ୱରୋହୀ ପାଦ ରଖେ), ଉନ୍ନତମାନର ସାଜସାମାନ ଏବଂ ଘୋଡ଼ାର ପାଦରେ ନାଲର ବ୍ୟବହାର ଯୋଗୁଁ ଅଶ୍ୱାରୋହୀ ସେନା ପୂର୍ବ ତୁଳନାରେ ଅଧିକ ଦୁର୍ଦ୍ଧର୍ଷ ସିଦ୍ଧ ହେଲା । ଏଣୁ ଏଣିକି ଘୋଡ଼ା ହେଲା ବାଣିଜ୍ୟର ଏକ ପ୍ରମୁଖ ଉପାଦାନ । ଏହା କେବଳ ଉତ୍ତର-ପଶ୍ଚିମ କ୍ଷେତ୍ରରେ ନୁହେଁ, ବରଂ ପଶ୍ଚିମ ଉପକୂଳ ଓ ଦକ୍ଷିଣ ଭାରତରେ ମଧ୍ୟ ଦେଖିବାକୁ ମିଳିଲା । ଉତ୍ତର ଭାରତର ଅଶ୍ୱ-ବଣିକଙ୍କ ମଧ୍ୟରେ କେତେକ ବ୍ରାହ୍ମଣ ମଧ୍ୟ ରହିଥିଲେ । ଭାରତୀୟ ଅଶ୍ୱ-ବଣିକମାନେ ଭାରତ-ଇରାନ ସୀମାନ୍ତ ଅଞ୍ଚଳ, ଉତ୍ତର-ପଶ୍ଚିମ ଏବଂ ମଧ୍ୟ-ଏସିଆର ଗଜନୀ ଆଦି ସ୍ଥାନର ବଣିକମାନଙ୍କ ସହିତ ବାଣିଜ୍ୟ କାରବାର କରୁଥିଲେ । ଭାରତର ବାଣିଜ୍ୟ କେନ୍ଦ୍ରମାନ ସୈନ୍ଧବ ଗାଙ୍ଗେୟ ଜଳବିଭାଜିକା ସ୍ଥିତ ପୃଥୁଦକ ବା ପିହୋଆ ଓ ପଶ୍ଚିମ ଗାଙ୍ଗେୟ ସମତଳର ବିଭିନ୍ନ ସ୍ଥାନରେ ତଥା ବେରାବଲ ଓ କାମ୍ବେରେ

ଅବସ୍ଥିତ ଥିଲେ । ପୂର୍ବଭାରତର ନୂତନ ବାଣିଜ୍ୟ କେନ୍ଦ୍ରମାନ ମଧ୍ୟ ଆର୍ଥିକ ଦୃଷ୍ଟିରୁ ଲାଭକାରୀ ସିଦ୍ଧ ହେଲେ ।

ପିହୋଆର କିଛି ବ୍ରାହ୍ମଣ ଅଶ୍ୱ-ବଣିକର କାର୍ଯ୍ୟ କରୁଥିଲେ । ସେମାନେ ଧର୍ମଶାସ୍ତ୍ରର ନିୟମକୁ ଉଲ୍ଲଂଘନ କରି ପଶୁଧନର ବାଣିଜ୍ୟ କାରବାରରେ ଲିପ୍ତ ରହୁଥିଲେ । ସମ୍ଭ୍ରାନ୍ତ ବର୍ଗର ଗରାଖକୁ ଘୋଡ଼ା ବିକ୍ରି କରିବା ଥିଲା ଖୁବ୍ ଏକ ଲାଭକାରୀ ବ୍ୟବସାୟ । ପିହୋଆରେ ବାଣିଜ୍ୟ କରୁଥିବା ଅନ୍ୟମାନଙ୍କ ନାମରୁ ମନେହୁଏ ସେମାନେ ଅବ୍ରାହ୍ମଣ ଥିଲେ । ଘୋଡ଼ାର ବ୍ୟାପାର ଏକ ସମିତି ଦ୍ୱାରା ପରିଚାଳିତ ହେଉଥିଲା । କନୌଜ ଏବଂ ପିହୋଆରେ ମନ୍ଦିରମାନଙ୍କୁ ଅନେକ ଦାନ ଦିଆଯାଇଥିବାର ଉଲ୍ଲେଖ ଅଛି । ସମ୍ଭବତଃ ଏହି ସମିତି ତା'ର ଲାଭକାରୀ ବ୍ୟବସାୟ ଉକ୍ତ ଦାନ ଦେଉଥିଲା । ଘୋଡ଼ା ବ୍ୟବସାୟର କେନ୍ଦ୍ର ପଶୁମେଳାରୁ ଆରମ୍ଭ ହେଉଥିଲା । ମେଳାରେ ଘୋଡ଼ାକୁ ଖୁବ୍ ଆକର୍ଷଣୀୟ ବସ୍ତୁ ଭାବେ ଦେଖାଯାଉଥିଲା । ମେଳାରୁ ଯାଇ ଏକ ବିସ୍ତାରିତ ବଜାରରେ ଘୋଡ଼ାର ବିକ୍ରି ହେଉଥିଲା । ପିହୋଆର ଅବସ୍ଥିତି ଥିଲା ଗାଙ୍ଗେୟ ସମତଳର ପ୍ରବେଶଦ୍ୱାରରେ । ଏହା ଦକ୍ଷିଣ-ପଶ୍ଚିମରେ ରାଜସ୍ଥାନ ଓ ଦକ୍ଷିଣରେ ଦାକ୍ଷିଣାତ୍ୟକୁ ଯାଇଥିବା ମାର୍ଗ ସହିତ ସଂଯୋଜିତ ଥିଲା । ଦକ୍ଷିଣକୁ ଯାଇଥିବା ମାର୍ଗ ଯୋଗୁଁ ଦାକ୍ଷିଣାତ୍ୟ ଆଉ ବିଚ୍ଛିନ୍ନ ହୋଇ ରହୁ ନ ଥିଲା । ଏହିସବୁ ମାର୍ଗରେ ସ୍ଥିତ ବିପଣନ କେନ୍ଦ୍ର ଜାତି ବ୍ୟବସ୍ଥାକୁ ସଂକ୍ରମିତ କରିବାରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ନିକଟବର୍ତ୍ତୀ ବନାଞ୍ଚଳରେ ବାସ କରୁଥିବା ସମାଜରେ ମଧ୍ୟ ଜାତିର ବୀଜ ବପନ ହେଲା । ବାଣଭଟ୍ଟଙ୍କର 'ହର୍ଷଚରିତ'ରେ ବିନ୍ଧ୍ୟାୟନ ପର୍ବତରେ ଏକ ଶବର ବସତିର ଉଲ୍ଲେଖ ରହିଛି । ତହିଁରେ ଜାତି ବିଚାର କିଭଳି ପର୍ଯ୍ୟାୟକ୍ରମେ ଅନୁପ୍ରବେଶ କଲା, ତାକୁ ଭଲଭାବେ ନିରୀକ୍ଷଣ କରିହୁଏ, ଯଦିଓ କାବ୍ୟଟି ପୂର୍ବରୁ ଅର୍ଥାତ୍ ସପ୍ତମ ଶତାବ୍ଦୀରେ ଲିଖିତ ।

ବିଭିନ୍ନ କାରଣରୁ ବାଣିଜ୍ୟରେ ଅଭିବୃଦ୍ଧି ଘଟିଥିଲା । ତନ୍ମଧ୍ୟରେ ଅନ୍ୟତମ ପ୍ରମୁଖ କାରଣ ଥିଲା ଆରବ ବଣିକମାନଙ୍କର ଭାରତୀୟ ବାଣିଜ୍ୟ ଉତ୍ପାଦନ ସାମଗ୍ରୀରେ ଆଗ୍ରହ ଏବଂ ଭାରତୀୟ ବଣିକମାନଙ୍କର ଦକ୍ଷିଣ-ପୂର୍ବ ଏସିଆରୁ ସାମଗ୍ରୀ ଆଣି ବିକ୍ରି କରିବାରେ ଆଗ୍ରହ । ଆରମ୍ଭରେ ପଶ୍ଚିମ-ଭାରତ ଜୟ କରିବାପାଇଁ ଆରବମାନେ ଯେଉଁ ଆଗ୍ରହ ଦେଖାଇଥିଲେ ତା' ପଛରେ ମୁଖ୍ୟ ଉଦ୍ଦେଶ୍ୟ ରାଜ୍ୟ ଶାସନ ନ ଥିଲା । ବରଂ ବନ୍ଦର ଓ ବାଣିଜ୍ୟ କେନ୍ଦ୍ରଗୁଡ଼ିକର ପୃଷ୍ଠଦେଶ ଉପରେ ନିୟନ୍ତ୍ରଣ ପାଇବାକୁ ସେମାନେ ଉଦ୍ୟମ କରୁଥିଲେ । ଗୁଜରାଟ ପରି ପ୍ରଦେଶରେ ଯେତେବେଳେ ବାଣିଜ୍ୟ ଏକ ସମ୍ଭାବ୍ୟ ଆର୍ଥିକ ବିକଳ୍ପ ହେଲା, ଧନାଢ୍ୟ ଜମି ମାଲିକମାନଙ୍କ ଉପରେ ଆଉ ବିଶେଷ ନିର୍ଭର କରିବାକୁ ପଡ଼ିଲା ନାହିଁ । ମାତ୍ର ଅନ୍ୟ ଅଞ୍ଚଳମାନଙ୍କରେ ପୂର୍ବର ପ୍ରକ୍ରିୟା ଏକ ରକମର ପୁନଃସ୍ଥାପନ ହେଲା, ଯାହା ସହରର ବିକାଶରେ ସାହାଯ୍ୟ କଲା । କୃଷି ଅର୍ଥବ୍ୟବସ୍ଥାର ଅଭିବୃଦ୍ଧି ହେବା

ଫଳରେ ବାଣିଜ୍ୟରେ ନିବେଶ କରିବାପାଇଁ ଅର୍ଥ ଉପଲବ୍ଧ ହେଲା । ଅଭିବୃଦ୍ଧି ରାଜ୍ୟର ପ୍ରତ୍ୟକ୍ଷ ସହଯୋଗ ମିଳିବା କାରଣରୁ ହେଉ ବା ଜମିମାଲିକମାନଙ୍କର ଉଦ୍ୟମ ଯୋଗୁଁ ହେଉ, କୃଷି ଉତ୍ପାଦନର ଅଧିକାଂଶ ବଳକା ଭାଗ ଉତ୍ପାଦନକାରୀ ମଜୁରିଆ ହାତକୁ ନ ଯାଇ ଯେଉଁମାନେ ପ୍ରକୃତ ଉତ୍ପାଦକ ପାଖରୁ ଖଜଣା ଓ ଶ୍ରମ-ମଜୁରୀ ବା ବେଗାରୀ ଆଦାୟ କରୁଥିଲେ ସେମାନଙ୍କ ହାତକୁ ଗଲା । ଏସବୁକୁ ବାଦ୍ ଦେଲେ, ଉତ୍ପାଦନର ବିକ୍ରି ଓ ବିନିମୟ ଉପରେ ନାନାଦି କର ଅସୁଲି ହେଉଥିଲା । ପୁଣି ଜଳସେଚନ ଓ ଉତ୍ପାଦନ ପାଇଁ ବ୍ୟବହୃତ ସାମଗ୍ରୀ ଆଦିର ବ୍ୟବହାର ପାଇଁ ଉତ୍ପାଦକ ପାଖରୁ କର ଅସୁଲି କରାଯାଉଥିଲା । ଏସବୁ କର ବାଣିଜ୍ୟରେ ନିବେଶ କରାଗଲା । ଗ୍ରାମାଞ୍ଚଳରେ ଧନାଢ଼୍ୟ ଜମିମାଲିକମାନେ ବିନିମୟ କେନ୍ଦ୍ରମାନ ସ୍ଥାପନ କରିବାକୁ ଚାହୁଁଥିଲେ । ଏହାଫଳରେ ଆଞ୍ଚଳିକ ସ୍ତରରେ ଉତ୍ପାଦିତ ହେଉଥିବା ବସ୍ତୁ ପାଇଁ ଚାହିଦା ବୃଦ୍ଧି ପାଇଲା । ଅତ୍ୟାବଶ୍ୟକ ସାମଗ୍ରୀ ପାଇଁ, ଯଥା- ଲୁଣ ଓ ଧାତୁ, ଏହିଭଳି ଚାହିଦା ଆଗରୁ ରହିଥିଲା । ବର୍ତ୍ତମାନ ଅନ୍ୟାନ୍ୟ ବସ୍ତୁର ମଧ୍ୟ ଚାହିଦା ବୃଦ୍ଧି ପାଇଲା ।

ବସ୍ତୁର ଚାହିଦା ବୃଦ୍ଧି ପାଇବାରୁ ଗ୍ରାମାଞ୍ଚଳରେ ହାଟମାନ ବସିବା ଆରମ୍ଭ ହେଲା । ହାଟ ହେଲା ଗ୍ରାମାଞ୍ଚଳର ଏକ ବିପଣନ କେନ୍ଦ୍ର । ଏଭଳି କେତେକ କେନ୍ଦ୍ର ସମୟକ୍ରମେ ସହରରେ ପରିଣତ ହେଲେ । ଦେଶରେ ଉପଲବ୍ଧ ସାମଗ୍ରୀର ବ୍ୟବସାୟ ଏହି ସହରଗୁଡ଼ିକ ଜରିଆରେ ଚାଲିଲା । ଉତ୍ପାଦିତ ବସ୍ତୁର ବିତରଣ ଦ୍ୱାରା ସେଠାରେ ବ୍ୟବସାୟ ନିର୍ଦ୍ଧାରିତ ହେଉଥିଲା । ଉଦାହରଣ ସ୍ୱରୂପ, ଆଖୁ ବା ଗୁଡ଼ର ବିପଣନ ପାଇଁ ଏକ ନିର୍ଦ୍ଦିଷ୍ଟ ସ୍ଥାନର ଆବଶ୍ୟକତା ଥିଲା । ସେହିଭଳି କପାର ବିକ୍ରିବଟା ପାଇଁ ଜାଗା ରହିବା କଥା । ଯେଉଁ ସ୍ଥାନରେ ରାଜ୍ୟ ପ୍ରଶାସନ କର ଓ ବାଣିଜ୍ୟ ଶୁଳ୍କ ଆଦି ଆଦାୟ କରୁଥିଲା, ସେହି ସ୍ଥାନ ମଧ୍ୟ ସହରରେ ପରିଣତ ହେଉଥିଲା । ଏଭଳି ଆଦାୟ କେନ୍ଦ୍ରକୁ ମଣ୍ଡପିକ କୁହାଯାଉଥିଲା । ମନ୍ଦିର ଓ ତୀର୍ଥସ୍ଥଳୀ ମଧ୍ୟ ନଗରୀକରଣକୁ ପ୍ରୋତ୍ସାହିତ କରୁଥିଲେ । ଉଦାହରଣ ସ୍ୱରୂପ, ସୋମନାଥ ମନ୍ଦିର ଥିଲା ବେରାବଲ ବନ୍ଦର ନିକଟବର୍ତ୍ତୀ ଏକ ସ୍ଥାନ, ଯାହା ସମୟକ୍ରମେ ନଗରରେ ପରିଣତ ହୋଇଥିଲା । ଅନେକ ସମୟରେ ବ୍ୟବସାୟୀମାନେ ମନ୍ଦିର ଓ ଧର୍ମପୀଠଗୁଡ଼ିକୁ ନିର୍ମାଣ ଅଥବା ରକ୍ଷଣାବେକ୍ଷଣ କରୁଥିଲେ । ପିହୋଆ ବନ୍ଦରକୁ କେନ୍ଦ୍ରକରି ବାଣିଜ୍ୟ କରୁଥିବା ବଣିକମାନେ ସ୍ଥାନୀୟ ଧର୍ମସ୍ଥଳୀଗୁଡ଼ିକୁ ପାଣ୍ଠି ଦାନ କରିଥିବାର ଉଲ୍ଲେଖ ରହିଛି ।

ଅନେକ ସମୟରେ ରାଜାଙ୍କର କ୍ରିୟାକଳାପ ମଧ୍ୟ ବଜାର ସ୍ଥାପନାରେ ସହାୟକ ହେଉଥିଲା । ନବମ ଶତାବ୍ଦୀର ଏକ ଅନୁଶାସନରେ ରାଜସ୍ଥାନର ଜଣେ ପ୍ରତିହାର ରାଜା ଯୋଧପୁର ନିକଟରେ ବଜାରଟିଏ ବସାଇଥିବାର ବର୍ଣ୍ଣନା କରିଛନ୍ତି । ଆଗରୁ ଆଭୀର

ପଶୁଚାରକମାନଙ୍କର ଅଧୀନରେ ଏହି ସ୍ଥାନଟି ରହିଥିଲା । ଏଠାରେ କ୍ୟାମ୍ପ କରି ସେମାନେ ସମଗ୍ର ଅଞ୍ଚଳରେ ଲୁଟତରାଜ କରୁଥିଲେ । କାରଣ ପ୍ରଶାସନ ଓ ପୋଲିସ ପାଇଁ ସ୍ଥାନଟି ଅପହଞ୍ଚ ଥିଲା । ଆଭୀର ପଶୁଚାରକ ଗୋଷ୍ଠୀର ଲୁଟ କରିବା ଥିଲା ଏକ ପ୍ରମୁଖ କାର୍ଯ୍ୟ । ରାଜା ଦୃଢ଼ତାର ସହିତ ଅନେକ ଆଭୀର ଗ୍ରାମକୁ ଜାଳିପୋଡ଼ି ନଷ୍ଟ କରିଦେଲେ, ସେମାନଙ୍କର ପଶୁଧନକୁ ହରଣ କରିନେଲେ ଏବଂ ସେଠାରେ ଆଖୁ ଓ ଫଳଚାଷ କରାଇଲେ । ଏହି ପ୍ରକ୍ରିୟାରେ ରୋହିଂସାକୂପ ଗ୍ରାମକୁ ଏକ ବଜାରରେ ପରିଣତ କରାଗଲା ଏବଂ ସେଠାରେ ବ୍ୟବସାୟୀମାନଙ୍କର ଏକ ବସ୍ତି ସ୍ଥାପନା କରାଗଲା । ପୁଣି ଜୈନ ସାଧୁ ଓ ବଣିକମାନଙ୍କ ପ୍ରଚେଷ୍ଟାରେ ସେଠାରେ ଏକ ଜୈନ ମନ୍ଦିରର ନିର୍ମାଣ ହେଲା; ରକ୍ଷଣାବେକ୍ଷଣ ଦାୟିତ୍ୱ ରହିଲା ଜୈନମାନଙ୍କ ହାତରେ । କେବେ କେବେ ରାଜଦରବାର ମଧ୍ୟ ନୂଆ ସହରର ବିକାଶରେ ସହାୟକ ହେଲା । ରାଜଦରବାରର ଦରକାର ମାର୍ଜିତ ରୁଚିସମ୍ପନ୍ନ ନଗରୀୟ ସଂସ୍କୃତି । ମାତ୍ର ଯେଉଁଠି ରାଜାଙ୍କର ଅସ୍ଥାୟୀ କ୍ୟାମ୍ପ ପଡୁଥିଲା, ସେଠାରେ ଏସବୁ ରୁଚିପୂର୍ଣ୍ଣ ସାମଗ୍ରୀ ମିଳୁ ନ ଥିଲା । ଫଳରେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ନିୟମିତ ଅନ୍ତରାଳରେ ରାଜାଙ୍କର କ୍ୟାମ୍ପ ପଡ଼ିଲେ, ସେଠାରେ ହାଟ ବସୁଥିଲା ଓ ନଗରୀୟ ତନ୍ତ୍ର ସବୁର ବିକାଶ ଦେଖିବାକୁ ମିଳୁଥିଲା । ନଗର/ସହର ପାଇଁ ଯେଉଁସବୁ ଶବ୍ଦ ପୂର୍ବରୁ ପ୍ରଚଳିତ ଥିଲା, ତା'ର ବ୍ୟବହାର ଏହି ସମୟରେ ମଧ୍ୟ ଅବ୍ୟାହତ ରହିଲା । 'ପୁର', 'ନଗର', 'ପଟ୍ଟନ' ଓ ବଡ଼ ଆକାରର ନଗର ପାଇଁ 'ମହାନଗର' ଶବ୍ଦର ବ୍ୟବହାର ହେଉଥିଲା ।

ପଶୁପାଳକଠାରୁ ଆରମ୍ଭକରି ଜାହାଜ-ମାଲିକଯାଏଁ ସମସ୍ତେ ଥିଲେ ବାଣିଜ୍ୟର ସଂବାହକ । ସେମାନେ ଉପମହାଦେଶ (ଭାରତ)ର ବିଭିନ୍ନ ଅଞ୍ଚଳକୁ ଯାତ୍ରା କରୁଥିଲେ । ଜିନିଷପତ୍ରର ପରିବହନ ନିମନ୍ତେ ସେମାନଙ୍କୁ ବହୁଳଭାବେ ଉପଯୋଗ କରାଯାଉଥିଲା । ଓଟପାଳକମାନେ ମରୁପ୍ରାନ୍ତର ଓ ଶୁଷ୍କ ଅଞ୍ଚଳରେ ଜିନିଷ ନେବା ଆଣିବା କରୁଥିଲେ । ସେମାନେ ପଶୁପାଳକ ସହିତ କ୍ଷୁଦ୍ର ଆକାରରେ ବ୍ୟବସାୟ ମଧ୍ୟ କରୁଥିଲେ । କେବେ କେବେ ଜଟିଳ ବାଣିଜ୍ୟ କାରବାରରେ ମଧ୍ୟ ସେମାନଙ୍କର ସଂପୃକ୍ତି ରହୁଥିଲା । ଗୋପାଳକମାନେ ଶଗଡ଼ ପାଇଁ ବଳଦ ଯୋଗାଉଥିଲେ । ସମତଳ ଅଞ୍ଚଳରେ ଜିନିଷପତ୍ର ନେବା ଆଣିବା ପାଇଁ ଶଗଡ଼ର ବହୁଳ ବ୍ୟବହାର ହେଉଥିଲା । ଉଠାଣିଆ ମାଳ ଅଞ୍ଚଳରେ ଗଧକୁ ଭାରବାହୀ ପଶୁ ରୂପେ ବ୍ୟବହାର କରାଯାଉଥିଲା । ମାତ୍ର ଏସବୁ ହେଲା ମାଲ ପରିବହନର ଅସ୍ଥାୟୀ ବନ୍ଦୋବସ୍ତ । ନିୟମିତ ରୂପେ ମାଲ ପରିବହନ ପାଇଁ ସୌଦାଗରମାନେ ଘୋଡ଼ାର ଏବଂ ମରୁକ୍ଷେତ୍ରରେ ଓଟର ଉପଯୋଗ କରୁଥିଲେ । 'କାରାଭାନ'ର ରକ୍ଷଣାବେକ୍ଷଣ ଦାୟିତ୍ୱ ରହୁଥିଲା ସାର୍ଥବାହମାନଙ୍କ ହାତରେ । ସୌଦାଗରକୁ 'ଶ୍ରେଷ୍ଠୀ' କୁହାଯାଉଥିଲା । ତା'ର ଅପଭ୍ରଂଶ 'ସେଠୀ' ଶବ୍ଦର ଉପଯୋଗ ଆଜି ମଧ୍ୟ ରହିଛି । ଧନୀ ସୌଦାଗରମାନେ,

ଯେଉଁମାନେ ଜାହାଜର ମାଲିକ ଥିଲେ, ସେମାନଙ୍କୁ 'ନୌବିତ୍ତକ' ବୋଲି କୁହାଯାଉଥିଲା । ଆରବିକ ଭାଷାରେ ଏହାର ଅପଭ୍ରଂଶ ଥିଲା 'ନାଖୁଦା' । ଏଥିରୁ ମନେହୁଏ ନୌବାଣିଜ୍ୟର ମଧ୍ୟ ଯଥେଷ୍ଟ ପ୍ରସାର ଘଟିଥିଲା । ତ୍ରୟୋଦଶ ଶତାବ୍ଦୀରେ କେତେଜଣ ଧନାଢ଼୍ୟ ସୌଦାଗର, ଯଥା- ବସ୍ତୁପାଳ ଓ ଜଗଡ୍ଡୁ, ସାଗରପାରି ବେପାରରେ ଖୁବ୍ ଧନ ଅର୍ଜନ କରିଥିଲେ ଏବଂ ସେଥିପାଇଁ ସେମାନଙ୍କୁ ଖୁବ୍ ପ୍ରଶଂସା କରାଯାଇଥିଲା । ଚାଲୁକ୍ୟ ରାଜଧାନୀ ଅନହିଲ-ପାଟଣାରେ ଥିବା ନଗର ସମିତିରେ ସେମାନଙ୍କୁ ସମ୍ମାନୀୟ ସଦସ୍ୟ ରୂପେ ସ୍ଥାନ ମିଳିଥିଲା । ପଶ୍ଚିମ ଭାରତ ସ୍ଥିତ ଜୈନପୀଠଗୁଡ଼ିକ କେତେକ ସୌଦାଗରଙ୍କଠାରୁ ପ୍ରଚୁର ଅନୁଦାନ ଲାଭ କରିଥିବାର ପ୍ରମାଣ ରହିଛି ।

ଟଙ୍କା ଋଣ ଦେଇ ସୁଧ ଅସୁଲି କରିବାର କାମକୁ କୁସିଦା ବୋଲି କୁହାଯାଉଥିଲା । ଏହି କୁସିଦା କାର୍ଯ୍ୟକୁ ବିତ୍ତଦାତା ଓ ସାହୁକାରମାନେ ଭାରି ପେଶାଦାର ଢଙ୍ଗରେ ପରିଚାଳନା କରୁଥିଲେ । ସାଧାରଣତଃ ସୁଧର ପରିମାଣ ଥିଲା 15 ପ୍ରତିଶତ । ମାତ୍ର ରାଷ୍ଟ୍ରକୂଟ ରାଜ୍ୟ ତଥା ଆହୁରି କେତେକ ରାଜ୍ୟରେ 25 ପ୍ରତିଶତ ସୁଧ ମଧ୍ୟ ନିଆଯିବାର ଉଲ୍ଲେଖ ରହିଛି । ବସ୍ତୁ ଅନୁସାରେ ସୁଧର ମାତ୍ରା ବଦଳୁଥିବାର ଦେଖାଯାଏ । ବସ୍ତୁକୁ କେଉଁ ପଦ୍ଧତିରେ ପରିବହନ କରାହେବ ଏବଂ ତାହା କେତେଦୂର ପର୍ଯ୍ୟନ୍ତ ଯିବ, ସେହି ଅନୁସାରେ ସୁଧ ନିର୍ଦ୍ଧାରଣ ହେଉଥିଲା । ଉଭୟ ଚକ୍ରବୃଦ୍ଧି ସୁଧ ଓ ବସ୍ତୁ-ସୁଧ (interest in kind)ର ଉଲ୍ଲେଖ ରହିଛି । ବସ୍ତୁ ଆକାରରେ ଯେଉଁଠି ସୁଧ ଦେବାକୁ ପଡୁଥିଲା, ସେଠାରେ ଜିନିଷପତ୍ର ବା ଶ୍ରମକୁ ସୁଧ ରୂପେ ଅସୁଲି କରାଯାଉଥିଲା । ସୁଧ ଦର ସନ୍ଦର୍ଭରେ ଜାତିର ବିଚାରକୁ ମନେହୁଏ ନିୟମବଦ୍ଧ କରିଦିଆଯାଇଥିଲା । ଯେଉଁ ମୂଳଧନ ଉପରେ ବ୍ରାହ୍ମଣଠାରୁ ଦୁଇ ପ୍ରତିଶତ ସୁଧ ନିଆଯାଉଥିଲା, ସେହି ମୂଳଧନ ଉପରେ ଶୂଦ୍ରକୁ ଦେବାକୁ ପଡୁଥିଲା ପାଞ୍ଚ ପ୍ରତିଶତ ବା ତା'ଠାରୁ ଅଧିକ ।

ସପ୍ତମରୁ ଦଶମ ଶତାବ୍ଦୀ ମଧ୍ୟରେ ମୁଦ୍ରାର ଅଭାବକୁ ଦର୍ଶାଇ ଭାରତରେ ସାମନ୍ତୀ ଅର୍ଥବ୍ୟବସ୍ଥା ରହିଥିଲା ବୋଲି କେତେକ ଗବେଷକ ମତପ୍ରକାଶ କରନ୍ତି । ଗୁପ୍ତୋତ୍ତର କାଳରେ ବିଶେଷକରି ଉନ୍ନତ ମାନର ସ୍ୱର୍ଣ୍ଣମୁଦ୍ରାର ପ୍ରଚଳନ ବନ୍ଦ ହୋଇଥିବାରୁ ଏଭଳି ତର୍କ ଦିଆଯାଏ । ଏକଥା ସତ ଯେ ଏହି କାଳରେ ସ୍ୱର୍ଣ୍ଣମୁଦ୍ରାର ବିଶେଷ ପ୍ରଚଳନ ନ ଥିଲା । ମାତ୍ର ସାଙ୍ଗରେ ଏକଥା ବି ସତ ଯେ, ମୁଦ୍ରାରେ ଅନେକ ଆଞ୍ଚଳିକ ବିବିଧତା ଦେଖିବାକୁ ମିଳିଥିଲା । ବିଭିନ୍ନ ଅର୍ଥବ୍ୟବସ୍ଥାରେ ମୁଦ୍ରାର ହସ୍ତକ୍ଷେପରେ ମଧ୍ୟ ବିବିଧତା ରହିଥିଲା । ପୋଥିମାନଙ୍କରେ ନବମ ଶତାବ୍ଦୀରୁ ଆରମ୍ଭକରି ବିଭିନ୍ନ କିସମର ମୁଦ୍ରାର ଉଲ୍ଲେଖ ଦେଖିବାକୁ ମିଳେ । ଅବଶ୍ୟ କେଉଁ ମୁଦ୍ରା କେତେ ପରିମାଣରେ ପ୍ରଚଳିତ ହେବ, ସେ ନେଇ ଭିନ୍ନତା ରହିଥିଲା । ଯେଉଁ ମୁଦ୍ରାର ଉଲ୍ଲେଖ ରହିଛି, ସେଗୁଡ଼ିକ ହେଲା : ଦ୍ରମ୍ମ, ଦୀନାର, ନିଷ୍କ, ରପକ, ଗଦ୍ୟାନକ,

ବିଂଶତିକ, କାର୍ଷପଣ, ଗଧୈୟା ଓ ଟଙ୍କା । ମୌଦ୍ରିକ ସଉଦାର ଉଲ୍ଲେଖର ଅର୍ଥ ହେବ ଖୁଚୁରା ପଇସାର ପ୍ରଚଳନ ରହିଥିଲା । ମାତ୍ର ପ୍ରଶ୍ନ ହେଲା, ମୌଦ୍ରିକରଣ (monetization)ର ପରିମାଣ କେତେ ଥିଲା । ପଞ୍ଜାବ, ହରିଆଣା, ଉତ୍ତର-ପଶ୍ଚିମ କ୍ଷେତ୍ର ଓ ସିନ୍ଧୁ ପ୍ରଦେଶରେ ପଇସାର ପ୍ରଚଳନ କମ୍ ନ ଥିଲା । ଆଶ୍ଚର୍ଯ୍ୟର କଥା ହେଲା ଯେ, ଏହି ଅଞ୍ଚଳରେ ଭୂମିଦାନର ପରିମାଣ ନାହିଁ ବରାବର । ଅର୍ଥାତ୍ ଯେଉଁଠି ମୁଦ୍ରାର ଯଥୋଚିତ ପ୍ରଚଳନ ଥିଲା ସେଇଠି ଭୂମିଦାନର ଅନେକ ଉଦାହରଣ ନ ଥିଲା ।

ପଞ୍ଚମ ଶତାବ୍ଦୀରୁ ଇଣ୍ଡୋ-ସସାନୀ ମୁଦ୍ରାର (Indo-Sassanian coin) ବହୁଳ ପ୍ରସାର ଦେଖିବାକୁ ମିଳିଲା । ଗଧୈୟା ମୁଦ୍ରା ଥିଲା କମ୍ ମୂଲ୍ୟର । ମାତ୍ର ଗୁପ୍ତୋତ୍ତର କାଳରେ ମଧ୍ୟ ଏହାର ପ୍ରଚଳନ ରହିଥିଲା । ଅଷ୍ଟମରୁ ଏକାଦଶ ଶତାବ୍ଦୀ ମଧ୍ୟରେ 'ଦ୍ରମ୍ମ' ମୁଦ୍ରାର ଉଲ୍ଲେଖ ଦେଖିବାକୁ ମିଳେ ! ଏହା ଥିଲା ରୁପା ଓ ତମ୍ବା ମିଶ୍ରିତ ମୁଦ୍ରା, ଯାହା ଗୁର୍ଜ୍ଜର-ପ୍ରତିହାର ରାଜତ୍ୱ ସମୟରେ ବିଶେଷ ଭାବେ ପ୍ରଚଳିତ ଥିଲା । ଦ୍ୱୈତ ଧାତୁର ଏହି ମୁଦ୍ରା ସିନ୍ଧୁପ୍ରଦେଶ, ଉତ୍ତର-ପଶ୍ଚିମ କ୍ଷେତ୍ର ଓ କାଶ୍ମୀରରେ ଚଳୁଥିଲା । ପଶ୍ଚିମ ଭାରତର ତଟୀୟ କ୍ଷେତ୍ରରୁ ମିଳିଥିବା ଏକ ଦଶମ ଶତାବ୍ଦୀର ଅନୁଶାସନରେ ଗଦ୍ୟାନକ ସ୍ୱର୍ଣ୍ଣମୁଦ୍ରାର ଉଲ୍ଲେଖ ରହିଛି । ବାଣିଜ୍ୟ ସାମଗ୍ରୀକୁ ଆମଦାନି କରି ଆଣୁଥିବା ପ୍ରତ୍ୟେକ ଜାହାଜକୁ କର ରୂପରେ ଏକ ଗଦ୍ୟାନକ ମୁଦ୍ରା ଦେବାକୁ ପଡ଼ିବ ବୋଲି କୁହାଯାଇଛି । ଏହି କର ମନ୍ଦିର ଓ ତା'ର ପୂଜକମାନଙ୍କର ପ୍ରାପ୍ୟ ବୋଲି ମଧ୍ୟ ଉଲ୍ଲେଖ ରହିଛି । ପଶ୍ଚିମ ଉପକୂଳର ବାଣିଜ୍ୟ କେନ୍ଦ୍ରଗୁଡ଼ିକରେ ଉମୟଦମାନେ (Ummayads) ପ୍ରଚଳିତ କରିଥିବା ସ୍ୱର୍ଣ୍ଣମୁଦ୍ରାର ବ୍ୟବହାର ରହିଥିଲା । ଏକାଦଶ ଶତାବ୍ଦୀରୁ 'ଷଣ୍ଢ ଓ ଅଶ୍ୱାରୋହୀ' ମାର୍କା ମୁଦ୍ରାକୁ ଉତ୍ତର ଓ ପଶ୍ଚିମ ଭାରତରେ ପ୍ରଚଳିତ ଥିବାର ଦେଖାଯାଏ । ଅନ୍ଧ କେତେକ ମୁଦ୍ରା ଥିଲା ସୁନାରେ ତିଆରି । ପୂର୍ବ ଭାରତରେ ହରିକେଳ ରୌପ୍ୟମୁଦ୍ରାର ବହୁଳ ପ୍ରଚଳନ ରହିଥିଲା । ସ୍ୱର୍ଣ୍ଣ ଭସ୍ମ ଓ ରୌପ୍ୟ ଭସ୍ମକୁ ମୁଣିରେ ଭର୍ତ୍ତିକରି ମୁଣିକୁ ମୁଦ୍ରା ରୂପରେ ବ୍ୟବହାର କରାଯାଉଥିଲା, ଯଦିଓ ଟଙ୍କା ବା ପଇସା ତୁଳନାରେ ଏହା ସୁବିଧାଜନକ ବ୍ୟବସ୍ଥା ନ ଥିଲା । ଛୋଟ ପରିମାଣର ବିନିମୟ ପାଇଁ ତମ୍ବାର ପଇସା ଏବଂ କଉଡ଼ିକୁ ଆଞ୍ଚଳିକ ସ୍ତରରେ ବ୍ୟବହାର କରାଯାଉଥିଲା । କେତେକ କ୍ଷେତ୍ରରେ ମୁଦ୍ରାରେ ବ୍ୟବହୃତ ଧାତବ ଉପାଦାନକୁ ହ୍ରାସ କରିଦିଆଯାଇଥିଲା ।

ଉତ୍ତର-ପଶ୍ଚିମରେ ଏବଂ ସିନ୍ଧୁ ପ୍ରଦେଶରେ ଖୁଚୁରା ପଇସାର ମୁଦ୍ରଣ କରାଯାଉଥିଲା । ଉକ୍ତ ମୁଦ୍ରିତ ପଇସାର ଉତ୍ତର ଭାରତରେ ମଧ୍ୟ ଚଳଣି ଥିଲା । ମନେହୁଏ, ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଗାଙ୍ଗେୟ କ୍ଷେତ୍ରରେ ମୁଦ୍ରାର ଅଭାବ ପରିଲକ୍ଷିତ ହେଉଥିଲା । ସପ୍ତମ ଶତାବ୍ଦୀରୁ ଦଶମ ଶତାବ୍ଦୀ ମଧ୍ୟରେ ମୁଦ୍ରାର ପ୍ରଚଳନକୁ ନେଇ ଅଧିକ ବିସ୍ତାରରେ ଆଞ୍ଚଳିକ ସ୍ତରରେ ଅଧ୍ୟୟନ ହେବା କଥା । ଅଧ୍ୟୟନରେ ମୁଦ୍ରଣ ପ୍ରକ୍ରିୟା, ମୁଦ୍ରାର ଓଜନ,

ମୁଦ୍ରାରେ ବ୍ୟବହୃତ ଧାତୁସାମଗ୍ରୀ, ମୁଦ୍ରାର ଡିଜାଇନ ଓ ସଂକେତକୁ ଧ୍ୟାନ ଦିଆଯିବା କଥା । ଯଦି ମୁଦ୍ରାର ଅଭାବ ଯୋଗୁଁ ସାମନ୍ତୀ ଅବସ୍ଥା ସୃଷ୍ଟି ହୋଇଥିଲା, ତେବେ ଦଶମ ଶତାବ୍ଦୀରୁ ଯେତେବେଳେ ମୁଦ୍ରାର ବ୍ୟାପକ ବ୍ୟବହାର ହେଲା, ଖାସ୍‌କରି ଉତ୍ତର ଭାରତର ଅନେକ ଅଞ୍ଚଳରେ, ସେତେବେଳେ କାହିଁକି ଅବସ୍ଥାରେ ବିଶେଷ ପରିବର୍ତ୍ତନ ଦେଖିବାକୁ ମିଳିଲା ନାହିଁ ।

ପୂର୍ବ ଭାରତରେ ସେନମାନେ ମୁଦ୍ରା ଆକାରରେ ରାଜସ୍ୱ ନିରୂପଣ କରିବାର ଏକ ବ୍ୟବସ୍ଥା ଲାଗୁ କରିଥିଲେ । ତ୍ରୟୋଦଶ ଶତାବ୍ଦୀରେ ପଶ୍ଚିମ ଭାରତରୁ ପ୍ରାପ୍ତ ଏକ ଭୂମି ସମ୍ବନ୍ଧିତ ଅଧ୍ୟାଦେଶ ଅନୁସାରେ ରାଜସ୍ୱ ରୂପରେ ତିନି ସହସ୍ର ଦ୍ରମ୍ମ ମୁଦ୍ରା ଲୋଡ଼ା ପଡ଼ିଥିଲା । ଏହା ବାହାରେ ଆଉ ସବୁ ଅତିରିକ୍ତ କର ମଧ୍ୟ ରହିଥିଲା । ଏହି ଧରଣର ଏକ ଅଷ୍ଟମ ଶତାବ୍ଦୀର ଚୁକ୍ତି ଅନୁଯାୟୀ, ଧାତୁ ନିର୍ମିତ ମୁଦ୍ରା ବଜାରରେ ଉପଲବ୍ଧ ରହିଛି । ଧୀରେ ଧୀରେ ସ୍ୱର୍ଣ୍ଣମୁଦ୍ରାର ପୁନଃପ୍ରଚଳନ ଦେଖିବାକୁ ମିଳିଲା । ବିଳାସପୂର୍ଣ୍ଣ ସାମଗ୍ରୀର କିଣାବିକା ପାଇଁ ଉଚ୍ଚ ମୂଲ୍ୟର ମୁଦ୍ରାର ଆବଶ୍ୟକତା ରହୁଥିଲା । ତେଣୁ ତାକୁ ପୂରଣ କରିବାପାଇଁ ସ୍ୱର୍ଣ୍ଣମୁଦ୍ରାକୁ ପୁନଃସ୍ଥାପିତ କରାଗଲା । ଆରବ ସୂତ୍ରସାମଗ୍ରୀରୁ ଜଣାପଡ଼େ ଯେ, ଭାରତୀୟ ସୌଦାଗରମାନେ ଅଶ୍ୱ କିଣିବା ପାଇଁ ଉଚ୍ଚ ମୂଲ୍ୟର ମୁଦ୍ରା ପ୍ରଦାନ କରୁଥିଲେ । ଏହି ମୁଦ୍ରାର ମୂଲ୍ୟ ଦିରହାମ ବା ଆରବ ମୁଦ୍ରା ଆଧାରରେ ନିରୂପଣ କରାଯାଉଥିଲା । ସମ୍ଭବତଃ, ସେଠାରେ କେବଳ ଆରବ ମୁଦ୍ରାରେ ମୂଲ୍ୟାଙ୍କନ କରାଯାଉଥିଲା । ହେଲେ ଏକଥା ବି ହୋଇପାରେ ଯେ ଉଚ୍ଚ ମୂଲ୍ୟର ଆରବ ମୁଦ୍ରାର ଭାରତୀୟ ସୌଦାଗରମାନଙ୍କ ମଧ୍ୟରେ ବ୍ୟବହାର ରହିଥିଲା ।

ଏହି କାଳର ଉତ୍ତରାର୍ଦ୍ଧରେ ବ୍ୟବସାୟୀମାନେ ଅଧିକ ସଂବୃଦ୍ଧ ହେବାରୁ ତତ୍କାଳୀନ ସମାଜରେ ବାଣିଜ୍ୟିକ ଅର୍ଥବ୍ୟବସ୍ଥାର ବ୍ୟାପକ ଉପସ୍ଥିତିକୁ ସ୍ୱୀକୃତି ମିଳିଲା ।‌ କେତେକ ବ୍ୟବସାୟୀଙ୍କୁ ଖାଲି ପଡ଼ିଥିବା ସହରଗୁଡ଼ିକର ପୁନରୁତ୍ଥାନ କରିବେ ବୋଲି ଆଶା କରି ଅନୁଦାନ ଦିଆଗଲା । ଅନ୍ୟ କେତେକ ବ୍ୟବସାୟୀଙ୍କୁ 'ପଞ୍ଚ-କୁଳ'ରେ ନିଯୁକ୍ତି ଦିଆଗଲା । 'ପଞ୍ଚ-କୁଳ' ଏକ ସମିତି ରୂପରେ ସହରଗୁଡ଼ିକର ପ୍ରଶାସନିକ କାର୍ଯ୍ୟ ତଦାରଖ କରୁଥିଲା । କଦାଚିତ୍ ପ୍ରମୁଖ ଗ୍ରାମଗୁଡ଼ିକର ପ୍ରଶାସନ ମଧ୍ୟ ପଞ୍ଚକୁଳର ଦାୟିତ୍ୱରେ ସମ୍ପନ୍ନ ହେଉଥିଲା । ବ୍ୟବସାୟୀମାନେ ମଧ୍ୟ ଅନୁଦାନ ଦେଉଥିଲେ, ଯାହାକୁ ସେମାନେ ଅଭିଲେଖରେ ଲିପିବଦ୍ଧ କରାଉଥିଲେ । ଅଭିଲେଖରେ ରାଜା ଓ ବ୍ୟବସାୟୀଙ୍କର ପରିବାରର ପ୍ରଶସ୍ତି କଥା ରହିଥିଲା । ଏହି ଲଘୁ ବଂଶାବଳୀ ତତ୍କାଳୀନ ସାମାଜିକ ଇତିହାସ ଲେଖନରେ ଉପଯୋଗୀ ତଥ୍ୟ-ପ୍ରମାଣ ରୂପେ ବ୍ୟବହୃତ ହୁଏ । ଅଭିଲେଖର ଉଦ୍ଦେଶ୍ୟ ଥିଲା ସଂପୃକ୍ତ ବ୍ୟବସାୟୀର ପ୍ରତିଷ୍ଠାକୁ ଦର୍ଶାଇବା । ତା' ସହିତ ଭିନ୍ନ ଭିନ୍ନ ଅଞ୍ଚଳକୁ ସଂପ୍ରସାରିତ ହୋଇଥିବା ବ୍ୟବସାୟୀ ପରିବାରକୁ

ଏହା ବଂଶ-ସୂଚନା ମଧ୍ୟ ପ୍ରଦାନ କରୁଥିଲା, କାରଣ ବ୍ୟବସାୟ ଏଣୁ ଏଣିକି କେବଳ ସ୍ଥାନୀୟ ସ୍ତରରେ ସୀମିତ ନ ରହି ଖୁବ୍ ବିସ୍ତାରିତ ହୋଇସାରିଥିଲା । ବାହାଘର ଠିକଣା କଲାବେଳେ ତଥା ଉତ୍ତରାଧିକାର ସାବ୍ୟସ୍ତ କଲାବେଳେ ପରିବାରର ପ୍ରତିଷ୍ଠା ଓ ଜାତି ପାହ୍ୟା ସମ୍ପର୍କିତ ସୂଚନାର ଖୁବ୍ ଆବଶ୍ୟକତା ପଡୁଥିଲା । ବ୍ରାହ୍ମଣ ଓ ଚାରଣକବିମାନେ ନିଜ ନିଜ ପାଖରେ କେତୋଟି ନିର୍ଦ୍ଦିଷ୍ଟ ବଂଶର ବଂଶାବଳୀ ଇତିହାସ ସାଇତି ରଖୁଥିଲେ । ଏହି ପରମ୍ପରା ଆଗକୁ ସୁଲତାନ ଯୁଗ ପର୍ଯ୍ୟନ୍ତ ଚାଲିଥିଲା । ଦିଲ୍ଲୀ ଆଖପାଖରେ ମିଳୁଥିବା ଅଭିଲେଖରୁ ଏହାର ସାକ୍ଷ୍ୟ ମିଳେ । ରାଜ୍ୟ ବ୍ୟବସ୍ଥାରେ ବାଣିଜ୍ୟର ମହତ୍ତ୍ୱ ଦର୍ଶାଇବାକୁ ଯେଉଁସବୁ ଅଭିବ୍ୟକ୍ତି ରହିଥିଲା, ତନ୍ମଧ୍ୟରୁ ଏହି ଅଭିଲେଖ ଲେଖନକୁ ଅନ୍ୟତମ ରୂପେ ଦେଖାଯାଇପାରେ ।

ରାଜସ୍ଥାନର ବ୍ୟାପାରୀ ଏବଂ ପଶ୍ଚିମ ଭାରତର ସହରଗୁଡ଼ିକ ମଧ୍ୟରେ ଖୁବ୍ ନିକଟ ସମ୍ପର୍କ ଦେଖିବାକୁ ମିଳୁଥିଲା । ମାଉଣ୍ଟଆବୁରେ ମିଳିଥିବା ଅଭିଲେଖରେ ଓସୱାଲ ଓ ଶ୍ରୀମାଳମାନଙ୍କର ଉଲ୍ଲେଖ ରହିଛି । ପଶ୍ଚିମ ଭାରତରେ ଜୈନ ପରିବାରର କେତେକ ବ୍ୟକ୍ତି ବରିଷ୍ଠ ପଦପଦବୀରେ ଚାକିରି କରୁଥିବାର ସାକ୍ଷ୍ୟ ମିଳେ । ବାଣିଜ୍ୟ ଓ ପ୍ରଶାସନ କିଭଳି ପରସ୍ପରକୁ ଅତିକ୍ରମଣ କରିଥିଲେ, ତା'ର ଏହା ହେବ ଏକ ମନୋରମ ଦୃଷ୍ଟାନ୍ତ । ଜୈନ ପରମ୍ପରାରେ ସାକ୍ଷରତାକୁ ପ୍ରାଥମିକତା ମିଳୁଥିଲା । ବିତ୍ତୀୟ ସଂସ୍ଥାର ପରିଚାଳନାକୁ ନେଇ ରହିଥିବା ସେମାନଙ୍କର ଅଭିଜ୍ଞତା ଉଚ୍ଚ ସରକାରୀ ସେବାରେ ନିଯୁକ୍ତି ପାଇଁ ସେମାନଙ୍କୁ ସାହାଯ୍ୟ କଲା । ଅନେକ ସମୟରେ ଚାଲୁକ୍ୟମାନେ ଜୈନମାନଙ୍କୁ ମନ୍ତ୍ରୀ ପଦବୀରେ ରଖୁଥିଲେ । କେତେକ ମନ୍ତ୍ରୀ ଗୁଜରାଟର ଇତିହାସରେ ଶାସକମାନଙ୍କ ତୁଳନାରେ ଅଧିକ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ କରିଛନ୍ତି । ଏହିଭଳି ଏକ ଉଦାହରଣ ହେଲେ ହେମଚନ୍ଦ୍ର । ସେ କେବଳ ଜଣେ ଅନନ୍ୟ ବିଦ୍ୱାନ ନ ଥିଲେ, ତା' ସହିତ ସମର୍ଥ ପ୍ରଶାସକ ରୂପେ ମଧ୍ୟ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ ।

ଏହି କାଳର ଶେଷଖଣ୍ଡରେ ଉଭୟ ସ୍ଥଳ ଓ ସମୁଦ୍ର ପଥରେ ୟୁରୋପୀୟ ବାଣିଜ୍ୟ ଗତିବିଧି ଦେଖିବାକୁ ମିଳିଲା । ଏହା ମଧ୍ୟ-ଏସିଆ ଓ ଭାରତ ମହାସାଗର ମଧ୍ୟଦେଇ ପୂର୍ବ-ଭୂମଧ୍ୟସାଗରୀୟ କ୍ଷେତ୍ର ଓ ବାଇଜାଣ୍ଟିଅମ (Byzantium) ଭଳି ସୁଦୂରବର୍ତ୍ତୀ ଅଞ୍ଚଳକୁ ପୂର୍ବ-ଏସିଆ ସହିତ ସଂଯୋଜିତ କଲା । ଉଭୟ କ୍ଷେତ୍ର ମଧ୍ୟରେ ଆର୍ଥିକ ହିତର ଅନ୍ତଃସମ୍ବନ୍ଧ ଥିଲା, ବିନିମୟ ପାଇଁ ସାମଗ୍ରୀ ରହିଥିଲା ତଥା ବଜାରକୁ ହସ୍ତଗତ କରିବା ନିମନ୍ତେ ପ୍ରତିସ୍ପର୍ଦ୍ଧା ଊଣା ନ ଥିଲା । ଆରବ ବଣିକମାନେ ନୌବାଣିଜ୍ୟର ମାର୍ଗଗୁଡ଼ିକୁ କରଗତ କରିବାପାଇଁ ଅଗ୍ରସର ହେଉଥିଲେ ଏବଂ ଅନ୍ୟମାନେ ସ୍ଥଳପଥର ବାଣିଜ୍ୟ ପରିପଥ (circuits)ଗୁଡ଼ିକରେ

ବ୍ୟବସାୟିକ କାରବାର କରୁଥିଲେ । ଏହି ସ୍ଥିତିରେ ଯେଉଁ କାମଟି ଭାରତୀୟ ବଣିକମାନେ ସୁଚାରୁରୂପେ କରିପାରୁଥିଲେ ତାହା ଥିଲା ପାରମ୍ପରିକ ମଧ୍ୟସ୍ଥୀର କାମ ।

## ନୂତନ ସାମାଜିକ ପ୍ରବୃତ୍ତି

ଜାତିବ୍ୟବସ୍ଥାର ସ୍ଥାପିତ ଅନୁକ୍ରମରେ ଅନେକ ନୂତନ ଗୋଷ୍ଠୀ ସାମିଲ ହେଲେ । ସବୁଠାରୁ ଅଧିକ ପରିଦୃଶ୍ୟମାନ ଗୋଷ୍ଠୀ ଥିଲେ ନୂତନ କ୍ଷତ୍ରିୟ ଜାତିମାନେ । ଯେଉଁମାନେ ରାଜନୈତିକ କର୍ତ୍ତୃତ୍ୱ ହାସଲ କରିଥିଲେ ସେମାନଙ୍କ ଦ୍ୱାରା ଏହି କ୍ଷତ୍ରିୟମାନଙ୍କ ପାଇଁ ଉନ୍ମୁକ୍ତ ଥିଲା, କାରଣ ଏମାନେ ବଂଶାବଳୀ ମାଧ୍ୟମରେ ଜାତି ମର୍ଯ୍ୟାଦା ଦାବି କରୁଥିଲେ ଏବଂ ଉପଯୁକ୍ତ ବୈବାହିକ ସମ୍ବନ୍ଧ ସ୍ଥାପନ କରିପାରିଥିଲେ । ଯେଉଁମାନେ ସ୍ଥାପିତ କ୍ଷତ୍ରିୟ ଜାତି ସହିତ ନିଜକୁ ସମ୍ବନ୍ଧିତ ବୋଲି ଦାବି କରୁଥିଲେ, ସେମାନଙ୍କୁ ବାଦ୍ ଦେଲେ, ଆହୁରି ଅନେକ ଲୋକ ନିଜକୁ କ୍ଷତ୍ରିୟ କରିନେଲେ, କାରଣ ସେମାନେ ଥିଲେ ଭୂମି ଅନୁଦାନ ପାଇଥିବା ଗ୍ରହିତା, ସାମନ୍ତ । ଏହିସବୁ ନୂତନ କ୍ଷତ୍ରିୟ ବର୍ଗର ଲୋକେ ଅଭିଜାତ ବର୍ଗରେ ପରିଣତ ହେଲେ । ମାତ୍ର ନିଜ ସାଙ୍ଗରେ ସେମାନେ କେତେକ ପୂର୍ବ ଆଚରଣକୁ ମଧ୍ୟ ନେଇ ଆସିଥିଲେ । ଏହିସବୁ ରୀତି, ଆଚରଣମାନ ଜାତି ସମାଜରେ ଅନ୍ତତଃ ଉପରଠାଉରିଆ ଭାବେ ମିଶିଗଲା । ବରଂ କହିଲେ ଭଲହେବ, ସେଗୁଡ଼ିକୁ ଜାତି ସମାଜ ସହିତ ସାମଞ୍ଜସ୍ୟ ରଖିବାକୁ ପଡ଼ିଲା । ଉପର ଜାତିର ଆଚାର ବ୍ୟବହାରକୁ ତଥାକଥିତ 'ତଳ' ଜାତିର ଲୋକ ଅନୁକରଣ କଲେ ଏବଂ ଉପଯୁକ୍ତ ଜାତି ମର୍ଯ୍ୟାଦା ଦାବି କଲେ । ଫଳରେ ନୂତନ ଶାସକବର୍ଗ ପ୍ରଭୁତ୍ୱ ଓ ଅଧୀନସ୍ଥ ଭାବର ଏକ ଅନୁକ୍ରମକୁ ଲାଗୁ କରିବାକୁ ବାଧ୍ୟ ହେଲେ । ପରିବର୍ତ୍ତିତ ଭୂମି ସମ୍ବନ୍ଧ ଏବଂ ନୂତନ କ୍ଷମତା କେନ୍ଦ୍ରକୁ ଆଧାର କରି ଏହି ଅନୁକ୍ରମର ସ୍ଥାପନା ହୋଇଥିଲା । ଏହି ଯୁଗର ଶେଷବେଳକୁ ଯେଉଁମାନେ ଭୂମି ଅନୁଦାନ ପାଇଥିଲେ ଏବଂ ଗ୍ରହିତା ହୋଇଥିଲେ, ସେମାନଙ୍କୁ ରାଉତ, ରଣକ ଓ ଠାକୁର ଆଦି ସଂଜ୍ଞା ଦିଆଯାଇଥିଲା ।

ସମାନ୍ତର ରୀତିରେ ଏହି ସମୟରେ ଶୂଦ୍ର ଜାତିର ମଧ୍ୟ ବ୍ୟାପକ କାୟା ବିସ୍ତାର ଦେଖିବାକୁ ମିଳିଲା । ପଶୁଚାରକ ଓ ବନବାସୀ ଲୋକ ଜାତି ସମାଜରେ ମିଶିଲେ । ବିଶେଷକରି କୃଷକ ଜାତିରେ ସେମାନଙ୍କର ପ୍ରବେଶ ହେଉଥିଲା । କାରିଗରୀରେ ବିଶେଷ ଜ୍ଞାନ ଥିବା ଲୋକମାନେ ନିଜ ନିଜର ସଂଘ ଗଠନ କଲେ । ଉଭୟ ଗ୍ରାମାଞ୍ଚଳରେ ଏବଂ ସହରରେ ବ୍ୟବସାୟିକ ବସ୍ତୁର ଚାହିଦା ବୃଦ୍ଧି ପାଇବାରୁ ଏଭଳି ସଂଘର କ୍ରମାଗତ ସଂଖ୍ୟା ବୃଦ୍ଧି ହେଲା । କ୍ରମଶଃ ଏହି ସଂଘମାନେ ଜାତି ପରିଚୟ ପାଇବାଲାଗି ଆଧାର ଯୋଗାଇଲେ । ବୈଶ୍ୟ ଓ ଶୂଦ୍ର ମଧ୍ୟରେ ପାର୍ଥକ୍ୟକୁ ଦର୍ଶାଇବା ଲାଗି ବିଶେଷ ଉଦ୍ଧରଣ ମିଳେ ନାହିଁ । ପୁଣି

କେତେକ ଅଞ୍ଚଳରେ ବୈଶ୍ୟ ଗୋଷ୍ଠୀ ମୋଟାମୋଟି ଦେଖିବାକୁ ବି ମିଳୁ ନ ଥିଲା । ଦକ୍ଷିଣରେ ବେଲାଳ ପରି ଅନେକ ଧନୀ କୃଷକବର୍ଗ ଶୂଦ୍ର ଗୋଷ୍ଠୀରେ ରହିଲେ । ସେଠାରେ କ୍ଷତ୍ରିୟ ଓ ବୈଶ୍ୟବର୍ଗ ପ୍ରାୟ ନ ଥିଲେ । ତେଣୁ ଉଚ୍ଚଜାତିର ପାହ୍ୟା ପାଇବା ପାଇଁ ଲୋକ ଖୁବ୍ ଆକାଂକ୍ଷା ରଖିଲେ ନାହିଁ । ଏହାର ବିପରୀତ, ଉତ୍ତର ଭାରତରେ ଧନାଢ଼୍ୟ ଭୂମିମାଲିକମାନେ ଉଚ୍ଚ କ୍ଷତ୍ରିୟ ମର୍ଯ୍ୟାଦା ପାଇବା ଲାଗି ଖୁବ୍ ପ୍ରୟାସ କରୁଥିଲେ । ଶୂଦ୍ର ଜାତିର ତାଲିକା ଏତେମାତ୍ରାରେ ବୃଦ୍ଧି ପାଇଲା ଯେ ନୂଆ ବର୍ଗମାନ ସୃଷ୍ଟି କରିବାକୁ ପଡ଼ିଲା । ସଂକର ଜାତିକୁ ବାଦ୍ ଦେଲେ ଅନ୍ୟ ଶୂଦ୍ରମାନଙ୍କୁ ଦୁଇଭାଗରେ ଦେଖାଗଲା – ସତ ଶୂଦ୍ର ବା ସ୍ୱଚ୍ଛ ଶୂଦ୍ର ଓ ଅ-ସତ ଶୂଦ୍ର ବା ଅ-ସ୍ୱଚ୍ଛ ଶୂଦ୍ର । ଏହାର ଅର୍ଥ ଅନେକ ନୂଆ ଗୋଷ୍ଠୀ ଶୂଦ୍ର ବର୍ଗରେ ସାମିଲ ହେଉଥିଲେ ଏବଂ ତନ୍ମଧ୍ୟରୁ କେତେକ ଗୋଷ୍ଠୀ ଉଚ୍ଚ-ସ୍ତରକୁ ଉନ୍ନୀତ ହେଉଥିଲେ । ଯେଉଁମାନେ ତଳ ସ୍ତରରେ ନିଯୁକ୍ତ ହେଉଥିଲେ, ସେମାନଙ୍କୁ ଅଲଗା ଗୋଷ୍ଠୀରେ ରଖିବାର ଆବଶ୍ୟକତା ପଡୁଥିଲା ।

ବଣିକମାନେ ଗୋଷ୍ଠୀବଦ୍ଧ ହୋଇ ସେମାନଙ୍କର ପେଷାର ମହତ୍ତ୍ୱ ବୃଦ୍ଧି କରୁଥିଲେ । ପୂର୍ବରୁ ରହିଥିବା ଶ୍ରେଣୀ ବା ଯାହାକୁ ଇଂରାଜୀରେ ଗିଲ୍ଡ (Guild) କୁହାଯାଏ, ତାହା ଏବେ ମଧ୍ୟ ଅବ୍ୟାହତ ରହିଲା । ଏକ ସ୍ରୋତସାମଗ୍ରୀ ଅନୁଯାୟୀ, ଶ୍ରେଣୀ ଥିଲା ଗୋଟାଏ ପେଷାରେ ନିୟୋଜିତ ଥିବା ଲୋକଙ୍କର ଗୋଷ୍ଠୀ । ଶ୍ରେଣୀର ସଭ୍ୟମାନେ ଗୋଟିଏ ଜାତିର ହୋଇପାରନ୍ତି ଅବା ଭିନ୍ନ ଭିନ୍ନ ଜାତିର ବି ହୋଇପାରନ୍ତି । ଯଦି ସେମାନେ ଭିନ୍ନ ଭିନ୍ନ ଜାତିର, ତେବେ ଜାତିଗୁଡ଼ିକ ଥିଲେ ଗୋଟାଏ ସ୍ତରର ବା ବର୍ଣ୍ଣର । ଯେଉଁମାନଙ୍କର ଜାତି ସମ୍ବନ୍ଧ ଥିଲା, ସେମାନଙ୍କୁ ଶ୍ରେଣୀରେ ସ୍ଥାନ ମିଳିବାର ପରମ୍ପରା ରହିଥିଲା । ଶ୍ରେଣୀ ପରି ଗୋଷ୍ଠୀ ରହିବା ଯୋଗୁଁ ବଣିକମାନେ ସେମାନଙ୍କର ବାଣିଜ୍ୟ କିଛିଟା ସ୍ୱାୟତ୍ତତାର ସହିତ କରିପାରୁଥିଲେ । ଯେତେବେଳ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ବାଣିଜ୍ୟ ଶୁଳ୍କ ଆଦାୟରେ ସମସ୍ୟା ସୃଷ୍ଟି କରୁ ନ ଥିଲା, ସେତେବେଳ ପର୍ଯ୍ୟନ୍ତ ରାଜାମାନେ ବ୍ୟବସ୍ଥାରେ ହସ୍ତକ୍ଷେପ କରୁ ନ ଥିଲେ । ସମ୍ଭବତଃ ଏହି ବ୍ୟବସ୍ଥା ଯୋଗୁଁ ପ୍ରଶାସନ ଅଧିକ ଶୁଳ୍କ ଆଦାୟ କରିପାରିଲା । କେତେକ ପ୍ରଭାବଶାଳୀ ବଣିକଙ୍କୁ ମହାଜନ ବର୍ଗରେ ରଖାଯାଉଥିଲା । ସେମାନଙ୍କୁ ମନ୍ଦିର ପରିଚାଳନା ଆଦି ବିଭିନ୍ନ ପରିଚାଳନା କମିଟିରେ ନିଯୁକ୍ତ କରାଯାଉଥିଲା । ଜାତି ନିର୍ବିଶେଷରେ ସେମାନଙ୍କୁ ସର୍ବତ୍ର ସ୍ୱାଗତ କରାଯାଉଥିଲା, କାରଣ ଉଦାର ହସ୍ତରେ ସେମାନେ ଦାନ ଦେଉଥିଲେ ।

ବ୍ରାହ୍ମଣମାନଙ୍କ ମଧ୍ୟରେ ବି ବିଭିନ୍ନ ସ୍ତର ରହିଥିଲା । ସବୁଠାରୁ ଅଧିକ ସମ୍ମାନନୀୟ ଥିଲେ ବିଦ୍ୱାନ ଶ୍ରୋତ୍ରୀୟ ବ୍ରାହ୍ମଣ । ସେମାନେ ଧନାଢ଼୍ୟ ବ୍ରାହ୍ମଣ ବସତି ବା ଅଗ୍ରହାରରେ

ରହୁଥିଲେ । ସେମାନଙ୍କ ମୂଳ ସ୍ଥାନ ଅନୁସାରେ ସେମାନଙ୍କର ନାମକରଣ ହେଉଥିଲା । ମୂଳସ୍ଥାନ ମଧ୍ୟରେ ଅନ୍ୟତମ ଥିଲା : କନୌଜ, ଉତ୍କଳ, ଗୌଡ଼ ଓ ମୈଥିଳ । ପ୍ରଚୁର ଅନୁଦାନ ଲାଭକରି ସେମାନେ ବୈଦିକ ଶିକ୍ଷା ଓଁ ସଂସ୍କୃତ ଜ୍ଞାନର କେନ୍ଦ୍ରମାନ ପ୍ରତିଷ୍ଠା କରୁଥିଲେ । ଅନେକ ଶ୍ରୋତ୍ରୀୟ ବ୍ରାହ୍ମଣ ସ୍ୱ-ସ୍ୱ ଅଗ୍ରହାରରୁ ଦେଶାନ୍ତରଣ କରି ସୁଦୂରବର୍ତ୍ତୀ ରାଜଦରବାରମାନଙ୍କରେ ନିଯୁକ୍ତି ଲୋଡୁଥିଲେ । ଉଦାହରଣ ସ୍ୱରୂପ, ବିଲ୍ହଣଙ୍କର ପରିବାର କନୌଜରୁ କାଶ୍ମୀରକୁ ଦେଶାନ୍ତରଣ କରିଥିଲେ । ଉତ୍ତର ଓ ପଶ୍ଚିମ ଭାରତରେ ଅନେକ ଦିନ ପର୍ଯ୍ୟନ୍ତ ପରିଭ୍ରମଣ କରିବା ପରେ ଶେଷରେ ସେ ଦକ୍ଷିଣର ଚାଲୁକ୍ୟ ରାଜଦରବାରରେ ପ୍ରତିଷ୍ଠା ପାଇଥିଲେ । ଏହି ଧରଣର ନିଯୁକ୍ତିବେଳେ ବ୍ରାହ୍ମଣକୁ ଅନୁଦାନ ଦିଆଯାଉଥିଲା । ନିଯୁକ୍ତି ଦେବା ଫଳରେ ସଂସ୍କୃତିର ସ୍ଥାପନା ଓ ସଂପ୍ରସାରଣ ସହଜ ହେଉଥିଲା । ରାଜସଭାରେ ବ୍ରାହ୍ମଣ ପଣ୍ଡିତମାନଙ୍କର ବୌଦ୍ଧ ଓ ଜୈନ ବିଦ୍ୱାନମାନଙ୍କ ସହ ତର୍କବିତର୍କ ହେଉଥିଲା । ଜୈନ ପଣ୍ଡିତମାନଙ୍କ ଅନୁସାରେ, ଏହି ବିତର୍କର ପରିଣାମ ସ୍ୱରୂପ ଚାଲୁକ୍ୟ ରାଜା କୁମାରପାଳ ଜୈନଧର୍ମରେ ଦୀକ୍ଷିତ ହୋଇଥିଲେ । ମାତ୍ର ଶୈବ ପଣ୍ଡିତମାନେ ଜୈନମାନଙ୍କର ଏହି ଦାବିକୁ ଗ୍ରହଣ କରନ୍ତି ନାହିଁ । ଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କୁ ବାଦ୍ ଦେଲେ, ଅନ୍ୟ ବ୍ରାହ୍ମଣମାନଙ୍କୁ କମ୍ ପାହ୍ୟାର ବୋଲି ମନେ କରାଯାଉଥିଲା । କମ୍ ପାହ୍ୟାର ବ୍ରାହ୍ମଣମାନଙ୍କ ମଧ୍ୟରେ ଥିଲେ ଅଶ୍ୱ-ବେପାରୀ ବ୍ରାହ୍ମଣ, ସାନ ସାନ ମନ୍ଦିରର ପୂଜକ ଓ ଗ୍ରାମାଞ୍ଚଳରେ କର୍ମକାଣ୍ଡ ସମ୍ପାଦନ କରୁଥିବା ବ୍ରାହ୍ମଣ । ସମ୍ଭବତଃ କଠୋର ସଂସ୍କୃତ ବିଦ୍ୟା ଆହରଣରୁ କେତେକ ବ୍ରାହ୍ମଣ ନିଜକୁ ନିବୃତ୍ତ ରଖିଥିଲେ ଏବଂ ଆଉ କେତେକ ବ୍ରାହ୍ମଣ ଥିଲେ ସ୍ଥାନୀୟ ଧାର୍ମିକ ସଂପ୍ରଦାୟର ପୂଜକ ଗୋଷ୍ଠୀର, ଯାହା ପୌରାଣିକ ହିନ୍ଦୁଧର୍ମରେ ମିଶିଯାଇଥିଲା ।

କେବେ କେବେ ମଧ୍ୟବର୍ତ୍ତୀ ଜାତିମାନେ ସମାଜରେ ଉଚ୍ଚ ପାହ୍ୟା ଦାବି କରୁଥିଲେ । କାୟସ୍ଥମାନେ ଥିଲେ ଏହି କିସମର ଏକ ଜାତି । ଲିଖନକାର ଭାବରେ ସେମାନେ ପ୍ରଶାସନ ପାଇଁ ଦସ୍ତାବିଜ ଲେଖୁଥିଲେ ଏବଂ ରେକର୍ଡ଼ ରକ୍ଷା କରୁଥିଲେ । ସେମାନଙ୍କୁ କମ୍ ମର୍ଯ୍ୟାଦାବାନ କ୍ଷତ୍ରିୟ ଗୋଷ୍ଠୀରେ ରଖାଯିବ ନା ବ୍ରାହ୍ମଣ ଓ ଶୂଦ୍ରରୁ ଜନ୍ମ ନେଇଥିବା ସଂକର ଗୋଷ୍ଠୀରେ ରଖାଯିବ, ସେ ନେଇ ବିବାଦ ଅସମାଧିତ ଥିଲା । ଉଭୟ ସ୍ଥିତିରେ ସେମାନଙ୍କୁ ଟଳ ମର୍ଯ୍ୟାଦା ହିଁ ପ୍ରାପ୍ତ ହେଉଥିଲା । ମାତ୍ର ସମୟକ୍ରମେ ସେମାନଙ୍କର ରାଜାମାନଙ୍କ ସହିତ ସମ୍ପର୍କ ସ୍ଥାପିତ ହେଲା, ଯାହାଫଳରେ ସେମାନଙ୍କର ସାମାଜିକ ମର୍ଯ୍ୟାଦା ବୃଦ୍ଧି ପାଇଲା । ଯେଉଁ କାୟସ୍ଥମାନେ ଭୂମିଦାନ ଲାଭ କଲେ ଏବଂ ଅନ୍ୟକୁ ଅନୁଦାନ ଦେଲେ, ସେମାନେ ଅଭିଜାତ ବର୍ଗରେ ସ୍ଥାନ ପାଇଲେ । ଚାଣ୍ଡେଲ ବା ଚନ୍ଦେଲ, କାଳାଚୁରି ଏବଂ ଗଙ୍ଗମାନେ କାୟସ୍ଥମାନଙ୍କୁ ମନ୍ତ୍ରୀ ପରିଷଦରେ ନିଯୁକ୍ତି ଦେଇଥିବାର ଉଦାହରଣ ରହିଛି ।

କେତେକ ଜାତି ସେମାନଙ୍କର ପୂର୍ବପୁରୁଷ ଉଚ୍ଚ ବଂଶଜ ଥିଲେ ବୋଲି ଦାବି କରୁଥିଲେ । ମାତ୍ର ଆର୍ଥିକ କାରଣରୁ ଅଥବା କର୍ମକାଣ୍ଡ ପାଳନ କରି ନ ପାରିବାରୁ କୁଆଡ଼େ ସେମାନଙ୍କ ଜାତିମର୍ଯ୍ୟାଦା ହ୍ରାସ ପାଇଥିଲା । ଉତ୍ତର ଭାରତରେ ଏକ ପ୍ରତିଷ୍ଠିତ ବଣିକ ଜାତି କ୍ଷତ୍ରିକୁ ଏହି ବର୍ଗରେ ନିଆଯାଇ ପାରିବ । କ୍ଷତ୍ରିମାନେ ଆଜିକାଲି କ୍ଷତ୍ରିୟ ମର୍ଯ୍ୟାଦା ଦାବି କରୁଛନ୍ତି । ସେମାନଙ୍କ ମତରେ ବାଣିଜ୍ୟ କାରବାର କରିବାରୁ ସେମାନଙ୍କୁ ଜାତି ଅନୁକ୍ରମରେ ତଳେ ରଖିଦିଆଯାଇଛି । ଗୁର୍ଜର, ଜାଠ ଓ ଅହୀରମାନେ ମଧ୍ୟ ନିଜକୁ କ୍ଷତ୍ରିୟ ବଂଶୋଦ୍ଭବ ବୋଲି କହିଥାନ୍ତି । ମାତ୍ର ସାଙ୍ଗରେ ଏକଥା ମଧ୍ୟ ସ୍ୱୀକାର କରନ୍ତି ଯେ ସେମାନେ ଉଚ୍ଚ ଜାତିର ମର୍ଯ୍ୟାଦା ହରାଇଛନ୍ତି । ଜାତିଭିତ୍ତିକ ସମାଜର ଆରମ୍ଭ ଦିନରୁ ନୂତନ ଜାତିଗୁଡ଼ିକର ଅଭ୍ୟୁଦୟ ହେଲା ଏକ ସାଧାରଣ କଥା । ମାତ୍ର ଏହି ପ୍ରକ୍ରିୟା ପ୍ରାରମ୍ଭିକ କୃଷି-ସମୁଦାୟ ମଧ୍ୟରେ ଏତେ କ୍ଷିପ୍ର ନ ଥିଲା, କାରଣ ସେତେବେଳେ ଜାତି ବହିର୍ଭୂତ ଗୋଷ୍ଠୀକୁ ଜାତିରେ ପରିଣତ କରିବାପାଇଁ ବିଶେଷ ଚାପ ନ ଥିଲା । କୃଷି ଅର୍ଥବ୍ୟବସ୍ଥାର ପୁନଃରଚନା, ତୀବ୍ର ବ୍ୟବସାୟିକ ଗତିବିଧି ଏବଂ କେତେକ ଉଚ୍ଚଜାତିର ସଂପ୍ରସାରଣ ଆଦି ଜାତିରେ ଦୀକ୍ଷିତ ହେବାର ପ୍ରକ୍ରିୟାକୁ କ୍ଷିପ୍ରତର କଲା । ଉଚ୍ଚ ଜାତିର ସମାଜରେ ଯେଉଁ ନମନୀୟତା, ତାହା ସବା ତଳ ସ୍ତରରେ ଦେଖିବାକୁ ମିଳୁ ନ ଥିଲା । ଯେଉଁମାନଙ୍କୁ ଜାତିଭିତ୍ତିକ ସମାଜର ବାହାରେ ରଖାଯାଇଥିଲା, ସେମାନଙ୍କୁ ମଧ୍ୟ ନମନୀୟତାର ଆଭାସ ଦିଆଯାଉ ନ ଥିଲା । ଜାତିକୁ ନେଇ କିଛି ଗଡ଼ିଚ୍ଛାଦୀ ବିଚାର ବିରୁଦ୍ଧରେ ପ୍ରତିବାଦ ହେଲା, ମାତ୍ର ତାହା ଉଚ୍ଚ ଜାତି ସ୍ତରରେ ହିଁ ସୀମିତ ରହିଗଲା ।

ଉଚ୍ଚ ମର୍ଯ୍ୟାଦାସମ୍ପନ୍ନ ମହିଳାମାନେ ସମାଜରେ ପ୍ରଚଳିତ ପିତୃସତ୍ତାତ୍ମକ ନୀତିନିୟମକୁ ପାଳନ କରିବେ ବୋଲି ଆଶା କରାଯାଉଥିଲା । ତଳ ଜାତିର ମହିଳାମାନେ ପାରମ୍ପରିକ ଜାତି ନିୟମକୁ ମାନି ଚଳୁଥିଲେ । ଏହା କେତେକାଂଶରେ ସେମାନଙ୍କୁ ପିତୃସତ୍ତାତ୍ମକ ଚାପରୁ ନିବୃତ୍ତି ଦେଉଥିଲା । ଜାତିଗୁଡ଼ିକ ମଧ୍ୟରେ କୁଳ ସମ୍ବନ୍ଧ ଓ ସ୍ତ୍ରୀ-ପୁରୁଷ ସମ୍ବନ୍ଧକୁ ନେଇ ପାର୍ଥକ୍ୟ ରହିଥିଲା । ଏହି ପାର୍ଥକ୍ୟ ଆଞ୍ଚଳିକ ଆଧାରରେ ବି ସୁଦୃଶ୍ୟ ହେଉଥିଲା । ମନେହୁଏ, ଜାତି ସୋପାନରେ ଗୋଷ୍ଠୀମାନେ ଦୀକ୍ଷିତ ହେବାର ଆଦିପର୍ବରେ ପୂର୍ବ ଜାତିର କିଛି କିଛି ପାରମ୍ପରିକ ଆଚରଣ ନେଇ ଆସିଥିଲେ । ଧୀରେ ଧୀରେ ଉକ୍ତ ଆଚରଣ ଓ ପରମ୍ପରାଗୁଡ଼ିକୁ ସେହି ନିର୍ଦ୍ଦିଷ୍ଟ ଜାତିରେ ସ୍ଥାନିତ କରାଗଲା । ହୁଏତ ଜାତି ଆଧାରିତ ସମାଜର ପାଖାପାଖି ଅବସ୍ଥାନ କଲାପରେ ଜାତି ନିୟମକୁ ଅଧିକ ନିଷ୍ଠାର ସହ ପାଳନ କରାଯାଉଥିଲା । ସେଥିପାଇଁ କ୍ଷତ୍ରିୟ ନାରୀକୁ ଯୁଦ୍ଧକ୍ଷେତ୍ରରେ ଅଥବା ଲୁଣ୍ଠନବେଳେ ପତିର ମୃତ୍ୟୁ ହେଲେ ସତୀ ହେବାପାଇଁ ପ୍ରୋତ୍ସାହିତ କରାଯାଉଥିଲା । ଏଭଳି ପ୍ରୋତ୍ସାହନ ଯୋଗୁଁ ନିୟୋଗ ଓ ବିଧବା ବିବାହ ଆଦି ପରମ୍ପରାକୁ ଉତ୍ସାହ ମିଳୁ ନ ଥିଲା । ନିୟୋଗ, ବିଧବା ବିବାହ ଏବଂ ଅନ୍ୟ କିସମର

ବିବାହ ପ୍ରଥାକୁ ଧର୍ମଶାସ୍ତ୍ରରେ ନିମ୍ନ କୋଟୀର କାର୍ଯ୍ୟ ବୋଲି ସମାଲୋଚନା କରାଯାଉଥିଲା । ମାତ୍ର ଶୂଦ୍ରମାନେ ଏହାକୁ ମାନୁ ନ ଥିଲେ । ପଶ୍ଚିମ ଭାରତର କେତେକ ଗୋଷ୍ଠୀରେ ସମ୍ବନ୍ଧୀୟ ଭାଇ-ଭଉଣୀ (cross-causin) ମଧ୍ୟରେ ବିବାହକୁ ଅନୁମୋଦନ ମିଳିଥିଲା । ମାତ୍ର ଦକ୍ଷିଣ ଭାରତରେ ଏଭଳି ଉଦାହରଣର ସଂଖ୍ୟା ଖୁବ୍ ଅଧିକ ଥିଲା । ହିମାଳୟ ସୀମାନ୍ତରେ ବସତି ସ୍ଥାପନ କରିଥିବା ସମାଜରେ ଏକାଧିକ ଭାଇ ମିଶି ଜଣେ ପତ୍ନୀକୁ ବିବାହ କରୁଥିଲେ, ଯାହାକୁ ଇଂରାଜୀରେ fraternal polyandry ବା 'ବହୁଭ୍ରାତୃପତିକ ବିବାହ' ବୋଲି କୁହାଯାଏ । ଅବଶ୍ୟ ସେଠାକାର ବୌଦ୍ଧମାନଙ୍କ ମଧ୍ୟରେ ଏହି ପରମ୍ପରାର ବହୁଳ ପ୍ରଚଳନ ରହିଥିଲା ।

ସେ ଯାହାହେଉ ଉଚ୍ଚଜାତିର ମଡେଲର ଛାପ ସୁସ୍ପଷ୍ଟ ଥିଲା । ଉଚ୍ଚଜାତି ମାନ୍ୟତା ଦାବି କରିବା ପ୍ରକ୍ରିୟାରେ ପିତୃସତ୍ତାତ୍ମକ ଆବଶ୍ୟକତା ଉପରେ ଜୋର୍ ଦିଆଯାଉଥିଲା । ବିଶେଷକରି ଉଚ୍ଚଜାତିର ବିବାହ ନିୟମ ଓ ଉତ୍ତରାଧିକାର ନିୟମ ପାଳନବେଳେ ତାକୁ ଲାଗୁ କରାଯାଉଥିଲା । ଜାତି ସୋପାନରେ ମିଳିତ ହେବା ସମୟରେ ଗୋଷ୍ଠୀମାନେ ଅନେକ ସମସ୍ୟାର ସମ୍ମୁଖୀନ ହୋଇଥିବେ । ଏହି ଗୋଷ୍ଠୀରେ ମଧ୍ୟଭାରତର ବନବାସୀ ସର୍ଦ୍ଦାର, ବଂଶ ସ୍ଥାପନରେ ସହଯୋଗ କରିଥିବା ଭିଲମାନେ (ଯାହାଙ୍କର ସମ୍ବନ୍ଧ ରାଜସ୍ଥାନର ଗୁହିଲାମାନଙ୍କ ସହ ରହିଥିଲା) ଓ ଚାଣ୍ଡେଲା ବା ଚନ୍ଦେଲମାନଙ୍କ ସହ ସମ୍ପର୍କିତ ଗୋଣ୍ଡ ବା ଗଣ୍ଡମାନେ ରହିଥିଲେ । ଏମାନେ ସମସ୍ତେ ଏକ ଅଧିକ ସମତାବାଦୀ ସମାଜର ଅନୁଭବକୁ ହୃଦୟଙ୍ଗମ କରିଥିଲେ । ଏହି ବ୍ୟବସ୍ଥାର ଲାଭ ସେମାନଙ୍କ ମହିଳାମାନଙ୍କୁ ମଧ୍ୟ ପ୍ରାପ୍ତ ହେଉଥିଲା । ତେଣୁ ସେମାନଙ୍କ ପାଇଁ ନୂତନ ସାମାଜିକ ନିୟମକୁ ପରିପାଳନ କରିବା ଖୁବ୍ ଅସୁବିଧାଜନକ ହୋଇଥିବ ବୋଲି ଅନୁମାନ କରାଯାଏ ।

ଅସ୍ପୃଶ୍ୟମାନଙ୍କ ପାଇଁ ନିଜ ଜାତିମର୍ଯ୍ୟାଦା ବୃଦ୍ଧି କରିବା ନିମନ୍ତେ ଆଦୌ ଅବସର ନ ଥିଲା । ସେମାନଙ୍କ ସ୍ପର୍ଶ ପରି ଦୃଶ୍ୟ ମଧ୍ୟ ବ୍ରାହ୍ମଣ ପାଇଁ ବର୍ଜିତ ଥିଲା । ବ୍ରାହ୍ମଣର ଦୃଷ୍ଟିରେ ପଡ଼ିଲେ ବ୍ରାହ୍ମଣକୁ ସ୍ନାନ, ଶୌଚ ହେବାକୁ ପଡୁଥିଲା । ଅସ୍ପୃଶ୍ୟମାନଙ୍କୁ ମ୍ଳେଚ୍ଛ କୁହାଯାଉଥିଲା । ଏହାର ଅର୍ଥ ହେଲା ସେମାନଙ୍କୁ ଜାତି ସମାଜରେ ସାମିଲ କରାଯାଇ ପାରିବ ନାହିଁ ଏବଂ ସେମାନଙ୍କର ଭାଷା ଓ ରୀତିନୀତି ଅନ୍ୟମାନଙ୍କଠାରୁ ପୃଥକ୍ । ଏହି ବର୍ଗରେ ଅସ୍ପୃଶ୍ୟମାନଙ୍କର ବଂଶଜ ରହିଥିଲେ । ତା' ବାହାରେ ଅନେକ ଆଦିବାସୀ ଓ ବିଦେଶୀ ମଧ୍ୟ ରହିଥିଲେ । ଏମାନେ ସମସ୍ତେ ଜାତି ପରିଚୟର ହକ୍‌ଦାର ନ ଥିଲେ । କେଉଁ ନିର୍ଦ୍ଦିଷ୍ଟ ଆଧାରରେ ଜାତି ଅଧିକାର ନିର୍ଦ୍ଧାରିତ ହେଉଥିଲା, ତାହା ସୁସ୍ପଷ୍ଟ ନୁହେଁ । ନିଶ୍ଚିତ ରୂପେ ଲାଭଦାୟକ ପେଷା ସହିତ ଶ୍ରମର ଆବଶ୍ୟକତା ଦ୍ୱାରା ଏହି ବ୍ୟବସ୍ଥା

ପ୍ରଭାବିତ ହୋଇଥିଲା । ଶ୍ରମର ଆବଶ୍ୟକତା ଦୃଷ୍ଟିରୁ ଦେଖିଲେ, ଦାରିଦ୍ର୍ୟ ଓ ନିମ୍ନ କର୍ମକାଣ୍ଡୀ ମର୍ଯ୍ୟାଦା ଭୋଗ କରୁଥିବା ଏକ ସ୍ଥାୟୀ ମଜୁରିଆ ବର୍ଗ ଅନେକଙ୍କ ପାଇଁ ଖୁବ୍ ଉପଯୋଗୀ ଥିଲା । କାରଣ ସେମାନେ ଶ୍ରମ ଉପରେ ନିର୍ଭର କରୁଥିଲେ । ଜନ୍ମ ହିଁ ବ୍ୟକ୍ତିର ଜାତି ମର୍ଯ୍ୟାଦା ସ୍ଥିର କରେ ବୋଲି ବାରମ୍ବାର କହି ଅସ୍ପୃଶ୍ୟତାକୁ ସ୍ଥାୟୀଭାବେ ତଳେ ରଖି ଦିଆଗଲା ।

ଉପରୋକ୍ତ ଆଧାରରେ ଦେଖିଲେ ଅସ୍ପଶ୍ୟର ସ୍ଥିତି ଥିଲା ଅପରିବର୍ତ୍ତନୀୟ । ଗ୍ରାମୀଣ କ୍ଷେତ୍ରରେ ଅସ୍ପୃଶ୍ୟମାନେ ପ୍ରାୟତଃ ଜମିହୀନ ମଜୁରିଆ ଭାବେ ରହିଥିଲେ । ସେମାନଙ୍କୁ ଯେକୌଣସି କାମ ଦିଆଯାଇ ପାରୁଥିଲା । ସହରୀ କ୍ଷେତ୍ରରେ ସେମାନେ ସଫାଇବାଲାର କାମ କରୁଥିଲେ ତଥା ଶ୍ମଶାନର ରକ୍ଷଣାବେକ୍ଷଣ କରୁଥିଲେ । ମୃତ ଶରୀରର ପାଖାପାଖି ରହି ସେମାନେ ଆପାଦମସ୍ତକ ଅଶୁଦ୍ଧ ସିଦ୍ଧ ହେଉଥିଲେ । ଅଶୁଦ୍ଧତାର ଅତ୍ୟନ୍ତ ନିକଟତର ହେବା କାରଣରୁ ସେମାନଙ୍କୁ ଜନବସତି ବାହାରେ ରହିବାକୁ ପଡୁଥିଲା । ଏପରିକି ବୌଦ୍ଧ ଓ ଜୈନମାନେ ଅନ୍ତରରେ ଅଶୁଦ୍ଧତାକୁ ଅସ୍ପୃଶ୍ୟମାନଙ୍କ ସହ ଯୋଡ଼ି ଦେଖୁଥିଲେ, ଯଦିଓ ସେମାନେ ମଣିଷ ମଣିଷ ଭିତରେ ସାମାଜିକ ଭେଦଭାବ ନାହିଁ ବୋଲି ତର୍କ କରୁଥିଲେ । କେତେକ ସଂପ୍ରଦାୟ ଯଥା- ତାନ୍ତ୍ରିକ ଓ ଅଘୋରୀମାନେ, ଶ୍ମଶାନରେ ପୂଜାପାଠ କରୁଥିଲେ ଏବଂ ସମସ୍ତ ଜାତି ନିୟମକୁ ଉଲ୍ଲଂଘନ କରୁଥିଲେ । ହେଲେ ଏହି ସଂପ୍ରଦାୟମାନେ ସାମାଜିକ ନିୟମକୁ ପରିବର୍ତ୍ତନ କରିବା ସପକ୍ଷରେ ନ ଥିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ପାରମ୍ପରିକ ପୂଜାବିଧିକୁ ତଥା ଗଡ଼ିବାଦୀ ଧର୍ମକର୍ମକୁ ଉପେକ୍ଷା କରିବା ।

ସମାଜର କେତେକ ସ୍ତରରେ ଘଟୁଥିବା ପରିବର୍ତ୍ତନକୁ ଦୃଷ୍ଟିରେ ରଖି ସାମାଜିକ ନିୟମରେ ପରିବର୍ତ୍ତନ ଆଣିବାର ଆବଶ୍ୟକତା ରହିଥିଲା । ହେଲେ ଖୋଲାଖୋଲି ଏଭଳି ସଂସ୍କାର ପାଇଁ କେହି ଆଗଭର ହେଉ ନ ଥିଲେ । ପୂର୍ବବର୍ତ୍ତୀ ଧର୍ମଶାସ୍ତ୍ରର ଟୀକା ରୂପରେ ସଂଶୋଧନ ଅଣାଯାଇପାରିଥାନ୍ତା । ଯେଉଁ ଟୀକାର ବାରମ୍ବାର ଉଲ୍ଲେଖ କରାଯାଉଥିଲା, ତହିଁରେ ରହିଥିଲା ମେଦାତିଥିଙ୍କର ଟୀକା । ଦଶମ ଶତାବ୍ଦୀରେ ଏହା ଲିଖିତ ହୋଇଥିଲା । ମନୁଙ୍କର ସଂହିତାକୁ ନେଇ ଏହା ଥିଲା ସବୁଠାରୁ ଅଧିକ ପ୍ରାମାଣିକ ଟୀକା । ଅନ୍ୟ ଏକ ଟୀକା ଥିଲା କୁଲ୍ଲୁକଙ୍କର, ଯାହାର ରଚନାକାଳ ଥିଲା ତ୍ରୟୋଦଶ ଶତାବ୍ଦୀ । ପରିବର୍ତ୍ତିତ ପରିସ୍ଥିତିରେ ଏହିସବୁ ଟୀକାରେ ଭିନ୍ନ ପ୍ରକାର ଆଚାର ବ୍ୟବହାର ଓ ପୁରୁଣା ନିୟମ ମଧ୍ୟରେ ସାମଞ୍ଜସ୍ୟ ସ୍ଥାପନ କରିବାକୁ ପ୍ରୟାସ କରାଯାଇଥିଲା । ନୂତନ ଆଚାର ବ୍ୟବହାରର ସମ୍ବନ୍ଧ ନୂତନ ଜାତିର ପାରମ୍ପରିକ ରୀତିନୀତି ସହିତ ରହିଥିଲା । ଧନାଢ୍ୟ ବଣିକ ତଥା ଭୂମିମାଲିକର ପାହ୍ୟାରେ ଉତ୍‌ଥାନକୁ ବି ଏହା ଚିହ୍ନିତ କରୁଥିଲା । ଧର୍ମଶାସ୍ତ୍ରର ଢାଞ୍ଚା ଭିତରେ ରହି ବଡ଼ ପରିବର୍ତ୍ତନ ଆଣିବା ସମ୍ଭବ ନ ଥିଲା । ତେଣୁ ସମସାମୟିକ ସ୍ଥିତିରେ ସାନ ବଡ଼ ଅଦଳବଦଳକୁ ପ୍ରାସଙ୍ଗିକ କରିବା ସକାଶେ ମହତ୍ତ୍ୱ ଦିଆଯାଉଥିଲା ।

ଦୁଇଟି ପ୍ରଣାଳୀର ପାରିବାରିକ ଆଇନକୁ ଉଚ୍ଚ ଜାତିରେ ଭିତ୍ତି ମନେ କରାଯାଉଥିଲା । ଗୋଟାଏ ହେଲା 'ଦୟାଭାଗ' ଓ ଅନ୍ୟଟି ହେଲା 'ମିତାକ୍ଷରା' ନିୟମ । ଏହି ଦୁଇଟି ପ୍ରଣାଳୀର ଆଜିପର୍ଯ୍ୟନ୍ତ ପ୍ରମୁଖତା ରହିଆସିଥିଲା । ଉଭୟ ପ୍ରଣାଳୀରେ ପରିବାରର ପୁରୁଷମାନେ ମୌଥ ଭାବରେ ସମ୍ପତ୍ତି ଅଧିକାର କରିପାରିବେ ବୋଲି କୁହାଯାଇଥିଲା । 'ଦୟାଭାଗ' ନିୟମ ବ୍ୟବସ୍ଥାର ପୂର୍ବ ଭାରତରେ ପ୍ରଚଳନ ରହିଥିଲା । ତା ଅନୁସାରେ, ପିତାଙ୍କର ମୃତ୍ୟୁ ପରେ ପୁତ୍ରମାନେ ସମ୍ପତ୍ତି ଉପରେ ଅଧିକାର ଦାବି କରିବେ ଏବଂ ତାକୁ ଭାଗ କରିପାରିବେ । 'ମିତାକ୍ଷରା' ନିୟମ ଅନୁସାରେ ପିତାଙ୍କର ଜୀବିତାବସ୍ଥାରେ ମଧ୍ୟ ପୁତ୍ରମାନେ ଏହି ଦାବି କରିପାରୁଥିଲେ । ଏହା ନିଃସନ୍ଦେହ ଯେ, ନିୟମ ପାଳନବେଳେ ଆଞ୍ଚଳିକ ପାର୍ଥକ୍ୟ ଓ ଜାତି ପାର୍ଥକ୍ୟ ରହିଥିଲା । ଅର୍ଥାତ୍ ସବୁ ଅଞ୍ଚଳରେ ଏବଂ ସବୁ ଜାତିରେ ନିୟମମାନ ସମରୂପରେ ପାଳିତ ହେଉ ନ ଥିଲା । ଯେଉଁଠି ସମ୍ବନ୍ଧୀୟ ଭାଇଭଉଣୀ ବିବାହର ପ୍ରଥା ରହିଥିଲା ବା ମାତୃବଂଶିକ (matrilineal) ପରମ୍ପରା ରହିଥିଲା, ସେଠାରେ କନ୍ୟାର ଉତ୍ତରାଧିକାରତ୍ୱକୁ ସ୍ପଷ୍ଟରୂପେ ଉଲ୍ଲେଖ କରାଯାଇଥିଲା । କେତେକ ଅଭିଲେଖରେ ମଧ୍ୟ ଏହାର ଉଦ୍ଧରଣ ମିଳେ । କେତେକ ଅଞ୍ଚଳରେ ଅଚଳ ସମ୍ପତ୍ତିକୁ ମଧ୍ୟ 'ସ୍ତ୍ରୀଧନ' ରୂପେ ଦିଆଯାଉଥିଲା । ରାଜସ୍ଥାନ ଓ ଗାଙ୍ଗେୟ ସମତଳରେ ରାଜା ଓ ସାମନ୍ତମାନଙ୍କର ପତ୍ନୀମାନେ ଜମିକୁ ଦାନସୂତ୍ରରେ ଗ୍ରହଣ କରୁଥିଲେ ଏବଂ ତା'ର ମାଲିକାନା ନିଜ ହାତରେ ରଖୁଥିଲେ । ଏହି ଜମିର ପରିମାଣ ଊଣା ନ ଥିଲା । ସେମାନେ ତହିଁରୁ କିଛି କିଛି ଧାର୍ମିକ ଅନୁଷ୍ଠାନକୁ ମଧ୍ୟ ଦାନ କରୁଥିଲେ ।

## ବିଦ୍ୟା ଓ ସାହିତ୍ୟ

ଏହି ଯୁଗରେ କିଛିଟା ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ଦେଖିବାକୁ ମିଳିଥିଲା ସାହିତ୍ୟ କ୍ଷେତ୍ରରେ । କେତେକ ନୂତନ ସାହିତ୍ୟିକ ବିଧାର ଉଦୟ ହେଲା । ଏଥିରେ ଅତୀତକୁ ଚିତ୍ରଣ କରିବା ସକାଶେ ଇତିହାସବୋଧର ଆଭାସ ରହିଥିଲା । 'ମହାଭାରତ' ଓ 'ରାମାୟଣ' କାବ୍ୟରେ ଅନେକ ବଂଶାବଳୀକୁ ସ୍ଥାନ ମିଳିଲା । କାବ୍ୟରେ ବର୍ଣ୍ଣିତ ଯୁଦ୍ଧରେ ଉକ୍ତ ବଂଶର ସଂପୃକ୍ତି ରହିଥିଲା ବୋଲି ଉଲ୍ଲେଖ କରାଗଲା । ଏହାର ସାଦୃଶ୍ୟ ଆମକୁ ପ୍ରାରମ୍ଭିକ ପୁରାଣର ବଂଶାବଳୀରେ ଦେଖିବାକୁ ମିଳେ । ଏଥିରେ ବିଭିନ୍ନ ବାସ୍ତବିକ ଓ କାଳ୍ପନିକ ବଂଶର ବଂଶାବଳୀର ମାନଚିତ୍ର ପ୍ରସ୍ତୁତ କରାଯାଇଥିଲା । ତା' ସହିତ, ଗୁପ୍ତକାଳ ପର୍ଯ୍ୟନ୍ତ ଶାସନ କରିଥିବା ରାଜବଂଶଗୁଡ଼ିକର ସୂଚୀ ମଧ୍ୟ ଦିଆଯାଇଥିଲା । ମାତ୍ର ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର

ମଧ୍ୟଭାଗରେ ଗାଙ୍ଗେୟ ସମତଳରେ ପ୍ରଥମ ରାଜ୍ୟର ଉଦୟ ହୋଇଥିଲା । ସେହି ରାଜ୍ୟକୁ ଅତୀତରୁ ପୂର୍ବୋଦାହରଣ ନେଇ ପୁରାଣରେ ଗୌରବମଣ୍ଡିତ କରାଯାଇପାରି ନ ଥିଲା ।

ବୌଦ୍ଧ ଇତିବୃତ୍ତ (chronicle)ରେ ଅତୀତକୁ ନେଇ ଏକ ଭିନ୍ନ ଅବଧାରଣା ରହିଥିଲା । ସଂଘକୁ ଏକ ଅନୁଷ୍ଠାନ ରୂପରେ ରାଜ୍ୟ ବା ଅନ୍ୟ ଅନୁଷ୍ଠାନର ସମ୍ମୁଖରେ ରଖି ତହିଁରେ ପାଠ ରଚନା କରାଯାଇଥିଲା । ଇତିବୃତ୍ତରେ ସଂଘ ଓ ଉକ୍ତ ଅନୁଷ୍ଠାନ ମଧ୍ୟରେ ଥିବା ପାରସ୍ପରିକ ନିର୍ଭରଶୀଳତାକୁ ମଧ୍ୟ ଯଥୋଚିତ ଧ୍ୟାନ ଦିଆଯାଇଥିଲା । ଏହା ଶ୍ରୀଲଙ୍କାରୁ ପ୍ରାପ୍ତ ପାଲି ଇତିବୃତ୍ତରେ ଦେଖିବାକୁ ମିଳେ । ଶ୍ରୀଲଙ୍କାର ଇତିବୃତ୍ତ 'ଦୀପବଂଶ' ଓ 'ମହାବଂଶ' ଯଦିଓ ପୂର୍ବକାଳୀନ ରଚନା, ତହିଁରେ ମଧ୍ୟ ଏହି ଅବଧାରଣାର ଆଭାସ ସୁସ୍ପଷ୍ଟ । ଅନ୍ୟ ଇତିବୃତ୍ତ, ଯେମିତି 'ଚୁଲବଂଶ' ମଧ୍ୟ ରାଜ୍ୟ ଓ ସଂଘ ମଧ୍ୟରେ ସମ୍ପର୍କକୁ ମହତ୍ତ୍ୱ ଦେଇଛନ୍ତି । ଲଦାଖ ଓ ତା'ର ପଡ଼ୋଶୀ ଅଞ୍ଚଳରେ ବ୍ୟାପ୍ତ ଇତିବୃତ୍ତରେ ତିବ୍ବତର ଐତିହାସିକ ବିବରଣୀକୁ ଆଧାର କରି ବୌଦ୍ଧଧର୍ମ ଓ ରାଜ୍ୟର ପ୍ରତିଷ୍ଠା ଏକାସମୟରେ ହୋଇଥିଲା ବୋଲି ବର୍ଣ୍ଣନା କରାଯାଇଛି । ଏହିସବୁ ଇତିବୃତ୍ତ ଓ ସଂସ୍କୃତ ପରମ୍ପରାରେ ଲିଖିତ ଇତିବୃତ୍ତ ମଧ୍ୟରେ କେତେକ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ଗୁପ୍ତୋତ୍ତର କାଳରେ ରାଜ୍ୟ ଗଠନ ହେଲା କେତେକ ଅଞ୍ଚଳ ପାଇଁ ଏକ ଅଭିନବ ଅନୁଭବ । ଯେଉଁମାନେ ଏହି ଅନୁଭବର ଅଙ୍ଗ ଥିଲେ, ସେମାନେ ଦେଖିଲେ ଯେ ଅତୀତକୁ ଭିନ୍ନ ଭିନ୍ନ ରୂପରେ ଲିପିବଦ୍ଧ କରାଯାଉଛି ଏବଂ ବର୍ତ୍ତମାନରେ ସଂଘଟିତ ହେଉଥିବା ପରିବର୍ତ୍ତନକୁ ସେହି ଆଧାରରେ ବୈଧତା ପ୍ରଦାନ କରାଯାଉଛି । ଏହା କ୍ଷମତାଧାରୀଙ୍କ ପାଇଁ ଦିଗ୍‌ଦର୍ଶକ ସିଦ୍ଧ ହେଲା । ସେମାନେ ହୃଦୟଙ୍ଗମ କଲେ ଯେ ନିଜ କର୍ତ୍ତୃତ୍ୱକୁ ସାବ୍ୟସ୍ତ କରିବା ସକାଶେ ଅପ୍ରତ୍ୟକ୍ଷ ରୂପେ ଅତୀତର ସାହାଯ୍ୟ ନିଆଯାଇପାରେ । ଉଦାହରଣ ସ୍ୱରୂପ, 'ବିଷ୍ଣୁପୁରାଣ'ରେ ଉଲ୍ଲେଖ ଥିବା ରାଜାମାନଙ୍କର ଐତିହାସିକ ଅନୁକ୍ରମକୁ ପ୍ରସ୍ଥାନବିନ୍ଦୁ କରି ବିଭିନ୍ନ କିସମର ସମ୍ବନ୍ଧ-ସୂତ୍ର ସୃଷ୍ଟି କରାଗଲା ଏବଂ ତାହାରି ମାଧ୍ୟମରେ ଦର୍ଶାଇ ଦିଆଗଲା ଯେ ବଂଶାବଳୀରେ ଉଲ୍ଲେଖ ଥିବା ପରାକ୍ରମୀ ପୁରୁଷଙ୍କର ବଂଶଧର ହେଲେ ଆଜିର ରାଜା । ପୁରାଣରେ ଗୁପ୍ତ ଶାସନ ପରେ ନୂତନ କ୍ଷତ୍ରିୟମାନଙ୍କର ସୃଷ୍ଟି କଥା କୁହାଯାଇଥିଲା । ଏହି ରାଜାମାନେ ସେମାନଙ୍କର ଉଚ୍ଚ ବର୍ଣ୍ଣ, ପୂର୍ବଜ ପରମ୍ପରା ତଥା ଚାତୁର୍ବର୍ଣ୍ଣ ସମାଜର ରକ୍ଷା ପାଇଁ କରିଥିବା କର୍ତ୍ତବ୍ୟକୁ ଉଲ୍ଲେଖ କରିବା ନିଜର ଧର୍ମ ମନେକଲେ । ବଂଶାବଳୀ ଏକ ରୈଖିକ ତଥା ବର୍ଣ୍ଣନାତ୍ମକ ରୂପ ନେଲା ଏବଂ ରାଜବଂଶୀୟ ପରିବର୍ତ୍ତନକୁ ବଂଶାବଳୀର କାଳାବଧିରେ ସ୍ଥାନିତ କରି ଦେଖାଗଲା ।

ଗୁପ୍ତମାନଙ୍କ ପରେ ପୁରାଣରେ ରାଜବଂଶର ସୂଚୀ ଶେଷ ହୋଇଯାଏ ଏବଂ ଗୁପ୍ତୋତ୍ତରକାଳୀନ କେତେକ ରାଜବଂଶ ନିଜ ନିଜର ଇତିହାସ ଲେଖିବା ଆରମ୍ଭ କରନ୍ତି । ଏହି ଇତିହାସକୁ ରାଜ-ଅଭିଲେଖରେ ଜୀବନ-ଚରିତ ଅଥବା କ୍ଷେତ୍ରୀୟ ରାଜ୍ୟର ଇତିବୃତ୍ତ ରୂପରେ ଦେଖିବାକୁ ମିଳିଥାଏ । ଅଭିଲେଖରେ ପ୍ରଥମେ ରାଜାଙ୍କର ଇଷ୍ଟଦେବର ସ୍ତୁତି ରହିଥାଏ ଏବଂ ତା'ପରେ କିମ୍ବଦନ୍ତୀର ଉଲ୍ଲେଖ ଥାଏ ଯେଉଁଥିରେ ରାଜାଙ୍କୁ ପ୍ରତିଷ୍ଠା ଦେବାପାଇଁ ରାଜବଂଶର ମର୍ଯ୍ୟାଦା ଦର୍ଶାଯାଇଥାଏ । ଆରମ୍ଭରେ ରାଜାମାନେ ନିଜକୁ ପୌରାଣିକ ବଂଶାବଳୀ ଅଥବା ମହାକାବ୍ୟର ପ୍ରାଚୀନ ବୀରପୁରୁଷଙ୍କର ବଂଶଜ ବୋଲି ଦାବି କରୁଥିଲେ । ଏହା ସେମାନଙ୍କୁ ସୂର୍ଯ୍ୟବଂଶର ବା ଚନ୍ଦ୍ରବଂଶର ବୋଲି ସ୍ଥାପିତ କରୁଥିଲା । କେବେ କେବେ ଅନ୍ୟ ବଂଶର ମଧ୍ୟ ଉଦ୍ଧରଣ ରହୁଥିଲା, ଯାହାକୁ ସୂର୍ଯ୍ୟ ବା ଚନ୍ଦ୍ର ବଂଶର ସମକକ୍ଷ ବୋଲି କୁହାଯାଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ପୂର୍ବଜ ରାଜାଙ୍କର କେତୋଟି ଉଲ୍ଲେଖନୀୟ ଉପଲବ୍‌ଧିକୁ ଉଦ୍ଧାର କରାଯାଉଥିଲା । ପରିଶେଷରେ ଅଭିଲେଖରେ ସିଂହାସନାରୂଢ଼ ରାଜାଙ୍କର ବିସ୍ତୃତ ବର୍ଣ୍ଣନା ରହୁଥିଲା ।

ଭୂମିଦାନ ସମ୍ପର୍କିତ ଅଭିଲେଖରେ ମଧ୍ୟ ରାଜାଙ୍କର ଯୁଦ୍ଧଜୟ ଓ ଜାତିବ୍ୟବସ୍ଥାର ସୁରକ୍ଷା ପାଇଁ ନେଇଥିବା ପଦକ୍ଷେପର ବିସ୍ତୃତ ସୂଚୀ ପ୍ରଦାନ କରାଯାଉଥିଲା । ଅନେକ ସମୟରେ ଏହି ବର୍ଣ୍ଣନା ଥିଲା ଅତିଶୟୋକ୍ତିପୂର୍ଣ୍ଣ । ଗତାନୁଗତିକ ବର୍ଣ୍ଣନା ପରେ ଅନୁଦାନର ବିଭିନ୍ନ ବ୍ୟବହାରିକ ଓ ନ୍ୟାୟିକ ଦିଗର ଉଲ୍ଲେଖ ରହୁଥିଲା : ଗ୍ରହିତାର ପରିଚୟ, ଯୋଗ୍ୟତା ଓ ଉପଲବ୍‌ଧି, ଅନୁଦତ୍ତ କ୍ଷେତ୍ର, ଅନୁଦାନ ସମ୍ବନ୍ଧୀୟ ଅଧିକାର ଓ କର୍ତ୍ତବ୍ୟ, ଯଦି ଅନୁଦାନ ନିଷ୍କର, ତା'ର ଉଲ୍ଲେଖ, ଅନୁଦାନରୁ ଅସୁଲି ହେବାକୁ ଥିବା କର ଓ ଶୁଳ୍କ ଓ ସେ ନେଇ ଗ୍ରହିତାକୁ ମିଳିଥିବା ଅଧିକାର, ଆଦି । ଦାନପତ୍ରରେ ଶେଷ ଅଧ୍ୟାୟରେ ସାକ୍ଷୀମାନଙ୍କର ସୂଚୀ, ଦାନପତ୍ରର ଲେଖକ ଓ ଅଭିଲେଖକର ନାମ ରହୁଥିଲା । ଯଦି ଅନୁଦାନ ଚିରକାଳ ପାଇଁ ଉଦ୍ଦିଷ୍ଟ, ତେବେ ତାକୁ ଉଲ୍ଲଂଘନ କଲେ ଶାପ୍ୟ ଦିଆଯାଉଥିଲା, ଯାହାର ଉଲ୍ଲେଖ ଦାନପତ୍ରରେ ରହିଥିଲା । ଦାନପତ୍ର ଥିଲା ଏକ ବିଧିସମ୍ମତ ଦସ୍ତାବିଜ । ତାହା ପୂର୍ଣ୍ଣତଃ ତ୍ରୁଟିମୁକ୍ତ ହେବା ଜରୁରି ଥିଲା । ତେଣିକି ତାହା ଅଭିଲେଖ ରୂପରେ କୌଣସି ମନ୍ଦିର ବା ଅନ୍ୟ ସ୍ଥାୟୀ ଭବନରେ ଖୋଦିତ ହୋଇ ରହୁ କିମ୍ବା ତମ୍ବାପତ୍ରରେ ଅଭିଲିଖିତ କରି ତାକୁ ରଖାଯାଉ ।

ଅଭିଲେଖ ସଦୃଶ ଅନ୍ୟ ଏକ ରଚନା ହେଲା 'ଚରିତ', ଯାହାକୁ ରାଜାଙ୍କର ପ୍ରଶସ୍ତି ରୂପେ ଲେଖାଯାଉଥିଲା । 'ଚରିତ' ଲିଖନର ପ୍ରକୃତ ଉଦ୍ଦେଶ୍ୟକୁ ବୁଝିବାପାଇଁ କିଛିଟା ମର୍ମୋଦ୍‌ଘାଟନ (decoding)ର ଆବଶ୍ୟକତା ରହିଥିଲା । ଚରିତର ପ୍ରଧାନ ବିନ୍ଦୁ ଥିଲା

କ୍ଷମତା ଅଧିକାରର କଥାକୁ ବ୍ୟାଖ୍ୟା କରିବା । ଏହି ବ୍ୟାଖ୍ୟା ଏକ ପୋଥିର ରୂପ ଧାରଣ କରୁଥିଲା । ବାଣଙ୍କର 'ହର୍ଷଚରିତ'ରେ ହର୍ଷଙ୍କର କ୍ଷମତା ଦଖଲର ବର୍ଣ୍ଣନା ରହିଥିଲା । ହର୍ଷ ରାଜଗାଦିକୁ ଜୋର୍‌କରି ଦଖଲ କରିଥିଲେ ବୋଲି କୁହାଯାଏ । ତାହା ଯଦି ସତ, ତେବେ ଜ୍ୟେଷ୍ଠାଧିକାର ନିୟମକୁ ସେ ଉଲ୍ଲଂଘନ କରିଥିଲେ । ବିଲ୍‌ହଣ କୃତ 'ବିକ୍ରମାଙ୍କଦେବ ଚରିତ'ରେ କୁହାଯାଇଛି ଯେ, ସ୍ୱୟଂ ଭଗବାନ ଶିବ କୁଆଡ଼େ ରାଜାଙ୍କୁ ତାଙ୍କ ସିଂହାସନାରୂଢ଼ ବଡ଼ଭାଇଙ୍କ ସ୍ଥାନ ନେବାକୁ ପରାମର୍ଶ ଦେଇଥିଲେ । ସନ୍ଧ୍ୟାକର ନନ୍ଦୀନ୍‌ଙ୍କ ରଚିତ 'ରାମଚରିତ' ହେଲା ପାଳ ରାଜା ରାମପାଳଙ୍କ ଜୀବନ ଚରିତ । ରାଜ୍ୟରେ କୈବର୍ତ୍ତମାନେ ବିଦ୍ରୋହ କଲାରୁ କିଭଳି ସେମାନଙ୍କୁ ରାଜା ଦମନ କରି ନିଜର କ୍ଷମତାର ପୁନଃପ୍ରତିଷ୍ଠା କରିଥିଲେ, ତା'ର ବିବରଣୀ ରହିଛି ପୁସ୍ତକରେ । କେତେକ ଜୀନବଚରିତ ଓ ଅଭିଲେଖରେ ରାଜାଙ୍କୁ ଶିବ ଅଥବା ବିଷ୍ଣୁଙ୍କର ଅବତାର ବୋଲି ବର୍ଣ୍ଣନା କରାଯାଇଛି । ଦେବତାଙ୍କଠାରୁ ରାଜାଙ୍କୁ ସିଧା ପରାମର୍ଶ ମିଳୁଥିଲା ବୋଲି କେଉଁ କେଉଁ ପୁସ୍ତକରେ କୁହାଯାଇଛି । ଏସବୁ ମୂଳରେ ଉଦ୍ଦେଶ୍ୟ ଥିଲା ରାଜାଙ୍କର ପ୍ରଭୁସତ୍ତାକୁ ବିଧିସମ୍ମତ ବୋଲି ପ୍ରଚାର କରିବା । କାଳର ଏକ ୟୁନିଟ ରୂପରେ ରାଜାଙ୍କର ଜୀବନକାଳର ଅଂଶକୁ କାଳଚକ୍ରରୁ ପୃଥକ୍ କରି ଦିଆଯାଉଥିଲା ଏବଂ ତହିଁରେ ଧର୍ମ ବାହାରର ଉପାଦାନକୁ ରୈଖିକ ରୂପରେ ସମାବିଷ୍ଟ କରାଯାଉଥିଲା ।

ଅଭିଲେଖରେ ଲେଖାର ଯେଉଁ ମଡେଲ ଥିଲା, ତା'ର ବିସ୍ତୃତ ରୂପକୁ କେତେକ ଇତିବୃତ୍ତରେ ଦେଖିବାକୁ ମିଳେ । କାଶ୍ମୀରର ଇତିହାସ 'ରାଜତରଙ୍ଗିଣୀ' ହେଲା ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଚମ୍ପା, ନେପାଳ, ଗୁଜରାଟ ଏବଂ ଉପଦ୍ୱୀପର ଆଉ କେତେକ ରାଜ୍ୟର ଇତିହାସରେ ବି ଏହା ଦୃଷ୍ଟିଗୋଚର ହୁଏ । ଏଥିରେ ରାଜାଙ୍କର ଇତିହାସକୁ ଅଧିକ ବିସ୍ତାରରେ ଲେଖାଯାଇଛି ଏବଂ ରାଜବଂଶ ଓ ଅଞ୍ଚଳକୁ ସହଜ ଗ୍ରାହ୍ୟ ରୂପେ ବର୍ଣ୍ଣନା କରିବାକୁ ପ୍ରୟାସ କରାଯାଇଛି । ଏହିସବୁ ଲେଖନୀକୁ 'ବଂଶାବଳୀ' କୁହାଯାଉଥିଲା । ଏଥିରେ ଲେଖାର ମୁଖ୍ୟ ପ୍ରସଙ୍ଗ ହେଲା ମଠ-ବିହାର ଅଥବା ରାଜବଂଶ ଅଥବା ଅଞ୍ଚଳ । 'ସ୍କନ୍ଦପୁରାଣ' ଓ 'ମାହାତ୍ମ୍ୟ'ରେ ବର୍ଣ୍ଣିତ କିମ୍ବଦନ୍ତୀକୁ ଆଧାର କରି ମନ୍ଦିର, ସଂପ୍ରଦାୟ କିମ୍ବା ତୀର୍ଥସ୍ଥଳୀର କଳ୍ପିତ ଇତିହାସକୁ ରଚନା କରାଯାଉଥିଲା । 'ରାଜତରଙ୍ଗିଣୀ' ଥିଲା ଏକ ବ୍ୟତିକ୍ରମ, କାରଣ ଏହାର ରଚୟିତା କଲ୍‌ହଣ ବିଭିନ୍ନ ସ୍ରୋତରୁ ଇତିହାସର ପ୍ରମାଣିକ ତଥ୍ୟଗୁଡ଼ିକୁ ସଂଗ୍ରହ କରିବାକୁ ଚେଷ୍ଟା କରିଥିଲେ । ତେଣୁ ତାଙ୍କ ବର୍ଣ୍ଣନାରେ ଉଭୟ ଘଟଣା ଓ ତା'ର ବ୍ୟାଖ୍ୟା ସମାବିଷ୍ଟ ହୋଇ ରହିଛି । ବର୍ଣ୍ଣିତ ଅନେକ ଘଟଣା ଓ ସେଗୁଡ଼ିକର ତର୍ଜମା ହେଲା ଇତିହାସ ପାଇଁ ଅନ୍ତର୍ଦୃଷ୍ଟିପୂର୍ଣ୍ଣ । ଯଦିଓ 'ରାଜତରଙ୍ଗିଣୀ' ଏକ ବଂଶାବଳୀ ପରମ୍ପରାର ରଚନା, ଏହା ଏକ ଅନନ୍ୟ କିସମର ପୋଥି । ମନେହୁଏ, କଲ୍‌ହଣଙ୍କର ଅସାଧାରଣ ଇତିହାସ ଦୃଷ୍ଟି ପଛରେ ରହିଥିଲା ତାଙ୍କର ବୌଦ୍ଧ ଲେଖନ ସହ ଥିବା ନିବିଡ଼ ପରିଚିତି ।

ଅଭିଲେଖଗୁଡ଼ିକର ଏକ ବୈଶିଷ୍ଟ୍ୟ ହେଲା ଯେ, ତହିଁରେ ସଂବତର ଉଲ୍ଲେଖ ରହିଥିଲା । ଏହି ସଂବତ ବହୁଧା ପୂର୍ବବର୍ତ୍ତୀ ସମୟରୁ ଆରମ୍ଭ ହେଉଥିଲା, ଯେମିତି ଖ୍ରୀ.ପୂ. 58 ର ବିକ୍ରମ ସଂବତ (ବିକ୍ରମାବ୍ଦ), 78 ଖ୍ରୀଷ୍ଟାବ୍ଦର ଶକ ସଂବତ (ଶକାବ୍ଦ) ବା 606 ଖ୍ରୀଷ୍ଟାବ୍ଦର ହର୍ଷ ସଂବତ ବା ହର୍ଷାବ୍ଦ । କେବେ କେବେ ସମସାମୟିକ ରାଜାମାନେ ସଂବତ ବା ଅବ୍ଦର ଆରମ୍ଭ କରୁଥିଲେ । 1075 ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିବା ବ୍ରିକମ ଚାଲୁକ୍ୟ ଅବ୍ଦ ବା 1119 ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିବା ଲକ୍ଷ୍ମଣାବ୍ଦ ହେଲା ଏହାର ପ୍ରକୃଷ୍ଟ ଉଦାହରଣ । ଅବ୍ଦର ସ୍ଥାପନା ଥିଲା ରାଜାଙ୍କ ପାଇଁ ଏକ ପ୍ରତିଷ୍ଠାର କଥା । ଅବ୍ଦକୁ ଅନେକ ସମୟରେ ରାଜାଙ୍କ ନାମରେ ଅଥବା ବଂଶର ନାମରେ ସ୍ଥାପନା କରାଯାଉଥିଲା । ସ୍ଥାନୀୟ ମୌଖିକ ପରମ୍ପରାକୁ ବା କ୍ୟାଲେଣ୍ଡରର ପରମ୍ପରାକୁ ଭିତ୍ତିକରି ଅବ୍ଦ ଆରମ୍ଭ ପାଇଁ ଗଣନା କରାଯାଉଥିଲା । କଦାଚିତ ଜ୍ୟୋତିଷଶାସ୍ତ୍ରକୁ ଅଧ୍ୟୟନ କରି ମଧ୍ୟ ଅବ୍ଦର ଆରମ୍ଭ କରାଯାଉଥିଲା । ବଂଶାବଳୀ, ବଂଶ, ଅବ୍ଦ ଓ ଇତିବୃତ୍ତର ବାରମ୍ବାର ବ୍ୟବହାରରୁ ଜଣାପଡ଼େ ଯେ ରୈଖିକ ସମୟର ଐତିହାସିକ ମହତ୍ତ୍ୱକୁ ସେତେବେଳେ ଲୋକ ଉପଲବ୍ଧି କରୁଥିଲେ । ରୈଖିକ ସମୟ ଥିଲା ଆଖପାଖର ସମୟ ଯାହାକୁ ସମ୍ଭାଳି ହେବ । ତା'ଛଡ଼ା ଏହି ସମୟକୁ ମାନବିକ କ୍ରିୟାକଳାପ ବଳରେ ନିର୍ଦ୍ଧାରିତ କରାଯାଇ ପାରୁଥିଲା । ଏହା ବିଶାଳ ଚକ୍ରୀୟକାଳଠାରୁ ସ୍ପଷ୍ଟ ରୂପରେ ଭିନ୍ନ ଥିଲା । ବ୍ରହ୍ମାଣ୍ଡୀୟ କାଳଚକ୍ରର ରଚନା ଏହି ରୈଖିକ ସମୟ ଦ୍ୱାରା ସମ୍ପନ୍ନ ହେଉଥିଲା । ଚକ୍ରୀୟ କାଳ ଅନ୍ତର୍ଗତ ରୈଖିକ କାଳକୁ ଉପଯୋଗ କରାଯିବା ଦ୍ୱାରା ଚକ୍ରୀୟ କାଳ ତଥା ରୈଖିକ କାଳର ଏକ ମୋହକ ପ୍ରତିଚ୍ଛେଦନ (intersection) ସୃଷ୍ଟି ହେଉଥିଲା । ଏହି ପ୍ରତିଚ୍ଛେଦନ ସେତେବେଳେ ସୁସ୍ପଷ୍ଟ ହେଉଥିଲା, ଯେତେବେଳେ ବଂଶାବଳୀ ତଥା ରାଜବଂଶର ସୂଚୀ ରହିଥିଲା ରୈଖିକ କାଳରେ, ଅଥଚ ତାହା ବ୍ରହ୍ମାଣ୍ଡୀୟ କାଳଚକ୍ରରେ ପରିଶେଷରେ ଆଚ୍ଛାଦିତ ହୋଇ ରହିଯାଉଥିଲା ।

ଭୂମିଦାନ ଯୋଗୁଁ ବ୍ରାହ୍ମଣୀୟ ବିଦ୍ୟାର କେନ୍ଦ୍ରଗୁଡ଼ିକର ଭିତ୍ତି ପଡ଼ିଥିଲା । କେନ୍ଦ୍ରଗୁଡ଼ିକର ବିସ୍ତାର ହେବା ଫଳରେ ଅଧିକ ପୋଥି ଓ ତାଲିମର ଲୋଡ଼ା ପଡ଼ିଲା । ଅଗ୍ରହାର ଓ ମଠମାନଙ୍କର ସଂଖ୍ୟାରେ ଅଭିବୃଦ୍ଧି ଘଟିବାରୁ ବର୍ଦ୍ଧିଷ୍ଣୁ ଆବଶ୍ୟକତାକୁ ପୂରଣ କରାଯାଇ ପାରିଲା । ଏହା ତର୍କ-ଆଲୋଚନାକୁ ପ୍ରୋତ୍ସାହିତ କଲା । ବୌଦ୍ଧ ଓ ଜୈନ ମଠ-ବିହାରମାନଙ୍କରେ ମଧ୍ୟ ଅନୁରୂପ ପରିବେଶ ରହିଥିଲା । ସଂସ୍କୃତରେ ଲିଖିତ ବ୍ରାହ୍ମଣୀୟ ଓ ଅ-ସନାତନୀ ବିଦ୍ୟାର ନେଟୱାର୍କ ବା ତନ୍ତ୍ର ବିଭିନ୍ନ ଦାର୍ଶନିକ ସିଦ୍ଧାନ୍ତ ମଧ୍ୟରେ ସମ୍ବାଦ ପାଇଁ ଅନୁକୂଳ ସ୍ଥିତି ଉତ୍ପନ୍ନ କଲା । ଏହାର ଫଳସ୍ୱରୂପ, କେତେକ ସିଦ୍ଧାନ୍ତର ମିଶ୍ରଣ ହେଲା । ଅବଶ୍ୟ ପରସ୍ପର ମଧ୍ୟରେ ବିଚାର ବିନିମୟକୁ ନେଇ ବିବାଦ ବି ରହୁଥିଲା । ବୈଦିକ

ଚିନ୍ତନକୁ ବୌଦ୍ଧମାନେ ସମାଲୋଚନା କରୁଥିଲେ । ଉକ୍ତ ସମାଲୋଚନାର ପ୍ରତିକ୍ରିୟାରେ ବ୍ରାହ୍ମଣମାନେ ଯେଉଁ ବିଚାର ରଖୁଥିଲେ, ସେହି ବିଚାରକୁ ଏସବୁ ସିଦ୍ଧାନ୍ତରେ ଦେଖାଯାଇ ପାରିବ । ଏହି ଦୃଷ୍ଟିରୁ ଦେଖିଲେ, ସେତେବେଳେ ଅନେକ ବୌଦ୍ଧିକ କ୍ରିୟାକଳାପ ଚାଲିଥିଲା, ଯଦିଓ ସେସବୁ ଜ୍ଞାନୀଗଣ ମଧ୍ୟରେ ସୀମିତ ହୋଇ ରହିଥିଲା । ଅନ୍ୟାନ୍ୟ ଦାର୍ଶନିକ ସିଦ୍ଧାନ୍ତ ମଧ୍ୟରେ 'ବେଦାନ୍ତ', 'ମିମାଂଶା' ଓ 'ନ୍ୟାୟ'କୁ ପ୍ରମୁଖତା ମିଳିଥିଲା ।

ସଂସ୍କୃତରେ ବିଶ୍ଳେଷଣାତ୍ମକ ବ୍ୟାକରଣର ଏକ ବଳିଷ୍ଠ ପରମ୍ପରା ରହିଛି । କୌଣସି ବିଚାର-ସରଣୀରେ ଶବ୍ଦବିଶେଷର ବ୍ୟାଖ୍ୟା ଅନେକ ସମୟରେ ବ୍ୟାକରଣିକ ସ୍ପଷ୍ଟୀକରଣ ଦାବି କରେ । ଏହା ଅଧିକ ବ୍ୟାଖ୍ୟା ଓ ପ୍ରତିବ୍ୟାଖ୍ୟାକୁ ପ୍ରୋତ୍ସାହିତ କରେ । ଏହାର ଦ୍ୱନ୍ଦ୍ୱାତ୍ମକତାରୁ ଅନ୍ୱେଷଣର ପଦ୍ଧତି ସୁସ୍ପଷ୍ଟ ହୁଏ । ବ୍ୟାକରଣ ଓ ଶବ୍ଦର ବ୍ୟୁତ୍ପତ୍ତି ହେଲା ମୁଖ୍ୟତଃ ତର୍କସଙ୍ଗତ ଅନ୍ୱେଷଣ । ଏହାକୁ ଉଭୟ ସନାତନୀ ଓ ଅସନାତନୀମାନେ ସ୍ୱୀକାର କରୁଥିଲେ । ଉଭୟେ ଗୋଟାଏ ଭାଷାର ଉପଯୋଗ କରୁଥିଲେ ବୋଲି ଜ୍ଞାନ କ୍ଷେତ୍ରରେ ପ୍ରଚୁର ଅଭିବୃଦ୍ଧି ଘଟିଥିଲା ।

ବ୍ରାହ୍ମଣମାନେ ମୌଖିକ ପରମ୍ପରା ମାଧ୍ୟମରେ ପାଠର ଅନୁରକ୍ଷଣ ପାଇଁ ପ୍ରୟାସ କରୁଥିଲେ । ବିଶେଷକରି ବୈଦିକ ସାହିତ୍ୟର ଅନୁରକ୍ଷଣକୁ ସେମାନେ ମହତ୍ତ୍ୱ ଦେଉଥିଲେ । ମାତ୍ର ତା' ସହିତ ସାକ୍ଷରତା ଉପରେ ନିର୍ଭରଶୀଳତା ମଧ୍ୟ ବୃଦ୍ଧି ପାଉଥିଲା । ସଂସ୍କୃତ ଥିଲା ବିଦ୍ୱବଦ୍ ଜନ ଓ ସାହିତ୍ୟର ଭାଷା । ହେଲେ ଏହାର ଲୋକପ୍ରିୟ ସ୍ୱରୂପରେ ସ୍ଥାନୀୟ ପ୍ରାକୃତର ଉପାଦାନମାନ ମଧ୍ୟ ଦୃଷ୍ଟିଗୋଚର ହେଉଥିଲା । ସଂସ୍କୃତରେ ପ୍ରାକୃତର ଉପାଦାନ ଖୋଜିବା ହେବ ଭାଷାବିଜ୍ଞାନୀର ବିଷୟ । ଅବଶ୍ୟ ଏଭଳି ପ୍ରାକୃତ ମିଶ୍ରିତ ସଂସ୍କୃତର ସୃଜନଶୀଳ ସାହିତ୍ୟରେ ବିଶେଷ ଉପଯୋଗ ହେଉ ନ ଥିଲା । ତଥାପି କେତେକ ଅଞ୍ଚଳରେ ଏହା ଅପଭ୍ରଂଶ ଭାଷାର ଉତ୍ପତ୍ତିରେ ଏବଂ ପରିଶେଷରେ ଆଞ୍ଚଳିକ ଭାଷାର ଉନ୍ମେଷରେ ବିଶେଷ ସାହାଯ୍ୟ କଲା । ପ୍ରାକୃତରେ ଲିଖିତ ପ୍ରାଚୀନ ପରମ୍ପରାର ଅନ୍ତିମ ମହତ୍ତ୍ୱପୂର୍ଣ୍ଣ କୃତି ହେଲା 'ସେତୁବନ୍ଧ', ବାକପତିଙ୍କର 'ଗୌଡ଼ବାହ' ଏବଂ ରାଜଶେଖରଙ୍କର ନାଟକ 'କର୍ପୁରମଞ୍ଜରୀ' । 'ସେତୁବନ୍ଧ'ରେ ରାମଙ୍କର ଲଙ୍କା ବିଜୟର ଉଲ୍ଲେଖ ରହିଛି; 'ଗୌଡ଼ବାହ' ହେଲା କନୌଜ ରାଜା ଯଶୋବର୍ମନଙ୍କ ଜୀବନ ଚରିତ । 'ପ୍ରାକୃତ'ର ଏକ ସ୍ୱରୂପ ଭାବରେ 'ଅପଭ୍ରଂଶ'ର ଶାବ୍ଦିକ ଅର୍ଥ ହେଲା 'ପତନ' । ଏହା ପଶ୍ଚିମ ଭାରତରେ ଉତ୍ପତ୍ତି ଲାଭ କରିଥିଲା । ପ୍ରାକୃତ ଭାଷାଭାଷୀ ବର୍ଗ ଯେତେବେଳେ କେନ୍ଦ୍ରୀୟ ଅଞ୍ଚଳକୁ ସ୍ଥାନାନ୍ତରଣ କଲେ, ସେମାନଙ୍କ ସହ ସେମାନଙ୍କ ଭାଷା ମଧ୍ୟ ଚାଲିଆସିଲା । ଜୈନ ଲେଖକମାନଙ୍କର ପ୍ରାକୃତରେ ଅପଭ୍ରଂଶର ଉପାଦାନମାନ ରହିଥିଲା । ଏହାଫଳରେ ପ୍ରାଚୀନ ଓ ନୂତନ ଭାଷା

ମଧ୍ୟରେ ସମ୍ପର୍କ ସ୍ଥାପିତ ହୋଇପାରିଲା । ବିଶେଷକରି 'ଗୁଜରାଟୀ' ଏବଂ 'ମହରାଷ୍ଟ୍ରୀ'ରେ ଏହି ସମ୍ବନ୍ଧ ଅଧିକ ପରିଦୃଷ୍ଟ ହେଲା । ଗୁଜରାଟୀ ଲୋକଗୀତ ହେଲା ଆଦ୍ୟକାଳୀନ ଗୁଜରାଟୀର ମୂଳପିଣ୍ଡ । ମୁଖ୍ୟତଃ କୃଷ୍ଣପ୍ରେମର ବର୍ଣ୍ଣନା ଏହି ଲୋକଗୀତରେ ଦେଖିବାକୁ ମିଳେ । ବଙ୍ଗଳା, ଅହମିଆ, ଓଡ଼ିଆ ଏବଂ କେତେକ ହିନ୍ଦୀ ବୋଲି ପ୍ରାକୃତ ଭାଷା ପରେ ଉତ୍ପତ୍ତି ଲାଭ କରିଥିଲା । ନୂତନ ଧାର୍ମିକ ସଂପ୍ରଦାୟମାନ ଆଞ୍ଚଳିକ ଭାଷାର ବିକାଶରେ ଖୁବ୍ ସାହାଯ୍ୟ କରିଥିଲେ, କାରଣ ତହିଁରେ ସହଜବୋଧ ସାଧାରଣ ଲୋକ ବ୍ୟବହାର କରୁଥିବା ଭାଷାରେ ରଚନାମାନ ରହିଥିଲା ।

ଆଞ୍ଚଳିକ ଭାଷାଗୁଡ଼ିକରେ ସଂସ୍କୃତର ଯାହା ସବୁ ଅନୁବାଦ ହେଲା ସେସବୁ ଥିଲା ଅନୁସୃଜନ, ଆକ୍ଷରିକ ଅନୁବାଦ ନୁହେଁ । ତହିଁରେ ଆଞ୍ଚଳିକ ସଂସ୍କୃତିର ଉପାଦାନମାନ ସମାବିଷ୍ଟ ହୋଇ ରହିଥିଲା । ମହାକାବ୍ୟର ବିଷୟ ସହିତ ଲୋକ ପରିଚିତ ଥିଲେ । ତେଣୁ ସୃଜନଶୀଳ କୃତି ପାଇଁ ତାହା ସର୍ବଦା ପ୍ରେରଣା ଯୋଗାଇଲା । ମହାକାବ୍ୟର ବିଷୟ ପ୍ରସଙ୍ଗକୁ ଆଞ୍ଚଳିକ ଭାଷାର କବିମାନେ ସଂପ୍ରସାରଣ କରୁଥିଲେ; ବେଳେବେଳେ ତହିଁରେ ଆମୂଳଚୂଳ ପରିବର୍ତ୍ତନ କରାଯାଉଥିଲା । ଆଞ୍ଚଳିକ ଭାଷାକୁ ନେଇ ଲୋକଙ୍କର ଆତ୍ମବିଶ୍ୱାସ ବୃଦ୍ଧି ପାଇଲା, କାରଣ ଅଭିଲେଖରେ ଉଭୟ ସଂସ୍କୃତ ଓ ଆଞ୍ଚଳିକ ଭାଷାର ପ୍ରୟୋଗ ଆରମ୍ଭ ହେଲା । ଏହା କିଛି ମାତ୍ରାରେ ଦ୍ୱିଭାଷିକତାକୁ ଚିହ୍ନିତ କରେ । ଯଦିଓ ସଂସ୍କୃତ ଥିଲା ପ୍ରମୁଖ ଭାଷା, ରାଜସଭା ଓ ଅନ୍ୟାନ୍ୟ ସ୍ଥାନରେ ଏହା ସ୍ଥାନୀୟ ଭାଷାକୁ ଉପେକ୍ଷା କରିପାରୁ ନ ଥିଲା । ଆଞ୍ଚଳିକ ଭାଷାମାନ ଏକା ଦିନକରେ ଉତ୍ପତ୍ତି ଲାଭ କରି ନ ଥିଲେ । ସେଗୁଡ଼ିକ ପୂର୍ବରୁ ଥିଲେ ଏବଂ ଲୋକସ୍ତରରେ କଥିତ ଭାଷା ରୂପେ ପ୍ରଚଳିତ ଥିଲେ । ଯେତେବେଳେ ଉକ୍ତ ଭାଷାଭାଷୀ ଲୋକ ପ୍ରତିଷ୍ଠା ଅର୍ଜନ କଲେ, ସେମାନଙ୍କ ଭାଷା ମଧ୍ୟ ଉନ୍ନତି ଲାଭ କଲା । କାଳକ୍ରମେ ସାହିତ୍ୟ, କଳା, ବୌଦ୍ଧିକ ସମ୍ବାଦ ଏବଂ ଚାଲିଚଳଣି ଆଦି ବିବିଧ ଅଭିବ୍ୟକ୍ତିକୁ ନେଇ ସ୍ଥାନୀୟ ଅସ୍ମିତାର ନିର୍ମାଣ ହେଲା ।

ଦେଶାନ୍ତରୀ ବ୍ରାହ୍ମଣମାନେ ଅଧିକ କଷ୍ଟ ନ କରି ଶୀଘ୍ର ଦ୍ୱିଭାଷିକ ହୋଇଯାଇଥିବେ ବୋଲି ଅନୁମାନ କରିହୁଏ । ବିଶେଷକରି ଉପଦ୍ୱୀପକୁ ଦେଶାନ୍ତରଣ କରିଥିବା ବ୍ରାହ୍ମଣମାନଙ୍କ ପାଇଁ ଦ୍ୱିଭାଷିକ ହେବା ବିଶେଷ କାଠିକର ହୋଇ ନ ଥିବ । ପ୍ରଶ୍ନ ଉଠେ, କ'ଣ ଦରବାରୀ ସାହିତ୍ୟର ଜଗତ ଏମିତିରେ ଅନ୍ତଃକ୍ଷେତ୍ରୀୟ (trans-regional) ଥିଲା ? ତା'ର ବ୍ୟବହାର କେବଳ ସଂସ୍କୃତ ପର୍ଯ୍ୟନ୍ତ କ'ଣ ସୀମିତ ଥିଲା ? ପୁଣି ଭିନ୍ନ ଭିନ୍ନ ସ୍ଥାନରେ ବିଭିନ୍ନ ଭାଷାର ଅସ୍ତିତ୍ୱକୁ ସ୍ୱୀକୃତି ଦେବା ଫଳରେ ଆହୁରି ବିବିଧତା ଦେଖିବାକୁ ମିଳିଲା । ନାଟ୍ୟଶାସ୍ତ୍ରରେ ଏହିସବୁ ଭାଷାର ସୂଚୀ ଦିଆଯାଇଥିଲା । ବିବିଧତାର ପରିଘଟନକୁ ଭାଷାର କାମ ବୋଲି

ମନେ କରାଯାଉଥିଲା । ନୂତନ ରାଜ୍ୟଗୁଡ଼ିକର ରାଜସଭାରେ ସଂସ୍କୃତ ପ୍ରତି ଆକର୍ଷଣ ସୁସ୍ପଷ୍ଟ ଥିଲା, ମାତ୍ର ସମାଜର ବହୁସଂଖ୍ୟକ ଲୋକ ଧୀରେ ଧୀରେ ଅନ୍ୟାନ୍ୟ ଭାଷା ପ୍ରତି ନିଜର ଆଗ୍ରହ ଦେଖାଇଲେ । ଯେତେବେଳେ ମନ୍ଦିର ଓ ରାଜବଂଶର ଇତିବୃତ୍ତ ଆଞ୍ଚଳିକ ଭାଷାରେ ଲେଖାହେଲା, ସେତେବେଳେ ତାହା ପୃଥକ୍ ସାଂସ୍କୃତିକ ରୀତି-ନୀତିର ଦ୍ୟୋତକ ସିଦ୍ଧ ହେଲା । ନୂତନ ଭାଷା ଅନେକ ସମୟରେ ନୂତନ ବିଚାରର ସଂବାହକ ହେଲା ।

ରାଜାମାନଙ୍କୁ ଅନେକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟିକ କୃତିର ରଚୟିତା ଭାବେ ଦର୍ଶାଯାଉଥିଲା । ଯୁବରାଜଙ୍କର ପ୍ରଶିକ୍ଷଣରେ କିଛି କିଛି ବୌଦ୍ଧିକ ତତ୍ତ୍ୱକୁ ବି ସାମିଲ କରାଯାଉଥିଲା । ସାହିତ୍ୟିକ ବିଧାକୁ ଉଚ୍ଚ ସଂସ୍କୃତିର ପରିଚାୟକ ରୂପେ ଗଣାଯାଉଥିଲା । ସିଂହାସନାରୁଢ଼ ରାଜାଙ୍କୁ ସେସବୁ ଗୁଣର ଅଧିକାରୀ ବୋଲି କୁହାଗଲା । ଏହା ଥିଲା ଏକ ନୂଆ ପରମ୍ପରା, ଯାହାର ପୂର୍ବକାଳରେ ଦେଖା ନ ଥିଲା । ସଂସ୍କୃତ ମୁଖ୍ୟତଃ ମନ୍ଦିର, ମଠ ଓ ବିହାର ଆଦି ଅନୁଷ୍ଠାନରେ ଅଧ୍ୟୟନ କରାଯାଉଥିଲା । ରାଜକୁମାରୀମାନଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷକର ବ୍ୟବସ୍ଥା ରହୁଥିଲା ।

ବୃତ୍ତିନିପୁଣତା ହାସଲ କରିବାପାଇଁ ଶ୍ରେଣୀ (guild) ଥିଲା ଏକ ପ୍ରଶିକ୍ଷଣ କେନ୍ଦ୍ର । ଏହି ପଦ୍ଧତି ପୂର୍ବରୁ ଚଳିଆସୁଥିଲା । ଏହାବ୍ୟତୀତ ବିଭିନ୍ନ ବିଷୟରେ, ଯଥା- କୃଷି, ସ୍ଥାପତ୍ୟ, ଆୟୁର୍ବିଜ୍ଞାନ ଓ ଘୋଡ଼ା-ହାତୀର ଚିକିତ୍ସା ବିଜ୍ଞାନ ଆଦି ପୁସ୍ତକମାନ ସଂସ୍କୃତରେ ରଚନା କରାଗଲା । ଏହାର ଅର୍ଥ ହେଲା ସଂସ୍କୃତଜ୍ଞ ଓ ପେଷାନିପୁଣ ବ୍ୟକ୍ତିମାନଙ୍କ ମଧ୍ୟରେ ଅନେକ ପାରସ୍ପରିକ ସହଯୋଗ ରହିଥିଲା । ସାଂସାରିକ ମନେହେଉଥିବା ଏହି ବିଷୟମାନଙ୍କରେ ବିଦ୍ୱାନମାନଙ୍କୁ ପୁସ୍ତକ ରଚନା କରିବାରେ ବିଶେଷ ଆପତ୍ତି ନ ଥିଲା, କାରଣ ଆର୍ଥିକ ସଂସାଧନର ପରିଚାଳନାରେ ତଥା ଜ୍ଞାନ ଓ ତା'ର ପ୍ରୟୋଗ ସମ୍ବନ୍ଧରେ ଜିଜ୍ଞାସା ସୃଷ୍ଟି କରିବାରେ ଉକ୍ତ ବିଷୟଗୁଡ଼ିକର ମହତ୍ତ୍ୱ ରହିଥିଲା । ନିର୍ଦ୍ଧାରିତ ବିଷୟର ସମ୍ବନ୍ଧ ଥିଲା ବ୍ୟବହାରିକ ଜ୍ଞାନ ତଥା ଆବଶ୍ୟକତାର ପୂର୍ତ୍ତି । ଉଦାହରଣ ସ୍ୱରୂପ, ମନ୍ଦିର ନିର୍ମାଣ ପାଇଁ ତଥା ସେନାବାହିନୀ ପାଇଁ ପଶୁଧନର ରକ୍ଷଣାବେକ୍ଷଣର ଖୁବ୍ ଆବଶ୍ୟକତା ଥିଲା । ପୂର୍ବକାଳୀନ ରଚନା ଉପରେ ଟୀକା ପ୍ରସ୍ତୁତ କରିବା ପ୍ରକ୍ରିୟାରେ ମଧ୍ୟ ଜ୍ଞାନାର୍ଜନ କରାଯାଉଥିଲା ।

ଔଷଧୀୟ ଶାସ୍ତ୍ରର ଅଧ୍ୟୟନରେ ଟୀକାକୁ ମହତ୍ତ୍ୱ ଦିଆଯାଉଥିଲା । ଚରକଙ୍କ ରଚନା ଉପରେ ବାଗଭଟ୍ଟ ଓ ଚକ୍ରପାଣି ଦତ୍ତଙ୍କର ଦୁଇଟି ପ୍ରସିଦ୍ଧ ଟୀକା ଉପଲବ୍ଧ ଥିଲା । ଔଷଧ ବିଷୟରେ ଆଲୋଚନାବେଳେ ଆନୁଭବିକ ଜ୍ଞାନ (cmpcrical knowlcdgc)ର ଚର୍ଚ୍ଚା

ବିଶେଷ ନ ଥିଲା । ଯେଉଁଠି ଜ୍ଞାନର ପ୍ରୟୋଗ ହେଉଥିଲା, ସେଇଠି ବ୍ୟବହାରିକ ପରିଣାମ ବି ସୁସ୍ପଷ୍ଟ ହେଉଥିଲା । ଉଦାହରଣ ସ୍ୱରୂପ, ଔଷଧରେ ଲୁହା ଓ ପାରଦର ପ୍ରୟୋଗରୁ ତୁରନ୍ତ ପରିଣାମ ଜଣାପଡୁଥିଲା । ତାନ୍ତ୍ରିକମାନଙ୍କରେ ଯାଦୁରେ ଆଗ୍ରହ ଥିଲା । ଏହା ଧାତୁରେ ରାସାୟନିକ ପ୍ରୟୋଗକୁ ଉତ୍ସାହିତ କଲା । ତାନ୍ତ୍ରିକମାନଙ୍କର ମତରେ, ପାରଦକୁ ଭକ୍ଷଣ କଲେ ବ୍ୟକ୍ତି ଦୀର୍ଘାୟୁ ହୁଏ । ଏହି କାଳଖଣ୍ଡର ଉତ୍ତରାର୍ଦ୍ଧରେ ସମ୍ମୋହନ ବିଷୟକ ଜ୍ଞାନକୁ ନେଇ ଖୁବ୍ ଆଗ୍ରହ ବୃଦ୍ଧି ପାଇଲା । ବିଶେଷକରି ତାନ୍ତ୍ରିକମାନେ ଏଥିରେ ଆଗ୍ରହ ରଖୁଥିଲେ ।

ଜ୍ୟୋତିଷଶାସ୍ତ୍ର ସମ୍ବନ୍ଧରେ ମଧ୍ୟ ଆଗ୍ରହ ଦେଖିବାକୁ ମିଳିଲା । ବିଦ୍ୱାନ ସ୍ତରରେ ଏହାର ସମ୍ବନ୍ଧ ଗଣିତର ବିଶଦ ଜ୍ଞାନ ସହିତ ରହିଥିଲା । ଆର୍ଯ୍ୟଭଟ୍ଟ ଓ ତାଙ୍କ ପରେ ବିଦ୍ୱାନମାନେ ଏହାକୁ ଜାରି ରଖିଲେ । ଅଙ୍କର ଅଧ୍ୟୟନରୁ ବୀଜଗଣିତର ଉତ୍ପତ୍ତି ହେଲା । ଏହା ବସ୍ତୁନିଷ୍ଠ ବିଜ୍ଞାନର ପ୍ରବର୍ତ୍ତନରେ ସହାୟକ ହେଲା । ଗଣିତ କ୍ଷେତ୍ରରେ ବୀଜଗଣିତ ଏକ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରୂପରେ ପରିଚିତି ପାଇଲା । ଆରବର ଗଣିତଜ୍ଞମାନେ ଏଥିରେ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । ଆୟୁର୍ବିଜ୍ଞାନ ଓ ଜ୍ୟୋତିଷଶାସ୍ତ୍ରରେ ମଧ୍ୟ ସେମାନଙ୍କର ଆଗ୍ରହ ପୂର୍ବରୁ ରହିଆସିଥିଲା । ଭାରତୀୟ ବିଜ୍ଞାନରେ ଆରବର ଆଗ୍ରହର ପରିଣାମ ସ୍ୱରୂପ ସେମାନଙ୍କ ମାଧ୍ୟମରେ ଭାରତରେ ଉତ୍ପତ୍ତି ଲାଭ କରିଥିବା କେତେକ ବିଚାର ୟୁରୋପରେ ଯାଇ ପହଞ୍ଚିଲା । ଏହି କାଳଖଣ୍ଡର ଜଣେ ପ୍ରବୁଦ୍ଧ ଗଣିତଜ୍ଞ ହେଲେ ଭାସ୍କରାଚାର୍ଯ୍ୟ । ତାଙ୍କ ପୂର୍ବରୁ ଭାସ୍କର ମଧ୍ୟ ଜଣେ ଗଣିତଜ୍ଞ ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଭାସ୍କରାଚାର୍ଯ୍ୟଙ୍କର ଗଣିତ ପ୍ରଶ୍ନଗୁଡ଼ିକୁ ଅନେକ ସମୟରେ ଅସାଧାରଣ ସନ୍ଦର୍ଭରେ ସ୍ଥାନିତ କରାଯାଉଥିଲା । ତାଙ୍କର ପ୍ରସିଦ୍ଧ ରଚନା 'ଲୀଳାବତୀ'ର ଏକ ଗୂଢ଼ ପ୍ରଶ୍ନକୁ ନିମ୍ନରେ ଉଲ୍ଲେଖ କରାଗଲା :

*''ପ୍ରେମ ପରିଣୟ ପରେ ହାରଟିଏ ଛିଣ୍ଡିଗଲା,*
*ମୋତିର ଏକ ଧାର ବିଚ୍ଛୁରିତ ହେଲା ।*
*ଏକ-ଷଷ୍ଠାଂଶ ପଡ଼ିଲା ଚଟାଣରେ*
*ଏକ-ପଞ୍ଚମାଂଶ ନିପତିତ ହେଲା ଶଯ୍ୟା ଉପରେ*
*ସ୍ତ୍ରୀ ପାଖରେ ରହିଲା ଏକ-ତୃତୀୟାଂଶ*
*ଏକଦଶମାଂଶ ପଡ଼ିଲା ପ୍ରେମିକ ହାତରେ ।*
*ଯଦି ଛଅଟି ମୋତି ରହିଲା ହାରରେ*
*ମୋଟ କେତୋଟି ମୋତି ଥିଲା ହାରରେ ?''*

[Quoted in George Ifrah, The Universal History of Numbers (London, 1998), p.431]

ଏସିଆର ବିଭିନ୍ନ ପ୍ରାନ୍ତରୁ ତଥା ଉପମହାଦେଶ (ଭାରତବର୍ଷ)ର ବିଭିନ୍ନ କ୍ଷେତ୍ରରୁ ଆସିଥିବା ବୌଦ୍ଧ ପଣ୍ଡିତମାନଙ୍କର ବୌଦ୍ଧବିହାରରେ ସମାଗମ ହେଉଥିଲା । ଫଳରେ ମଠ ତୁଳନାରେ ସେଠାରେ ଅଧିକ ଉଦାରତା ଦେଖିବାକୁ ମିଳିଲା । ମୁଖ୍ୟତଃ ପୂର୍ବଭାରତରେ ଏହି ଧରଣର ଅନେକ ବିହାର ତିଷ୍ଠି ରହିଥିଲା । ନାଳନ୍ଦା ଥିଲା ତନ୍ମଧ୍ୟରେ ସବୁଠାରୁ ଅଧିକ ପ୍ରସିଦ୍ଧ । ମାତ୍ର ତୁର୍କମାନଙ୍କର ଆକ୍ରମଣ ଯୋଗୁଁ ଏହା ବନ୍ଦ ହୋଇ ପଡ଼ିଲା । ଜୈନ ବିଦ୍ୟା କେନ୍ଦ୍ରଗୁଡ଼ିକ ବ୍ରାହ୍ମଣ୍ୟ ବିଦ୍ୟାପୀଠ ତୁଳନାରେ ବୌଦ୍ଧ ବିଦ୍ୟାପୀଠର ନିକଟବର୍ତ୍ତୀ ଥିଲେ । ମୁଖ୍ୟତଃ ଗୁଜରାଟ ଓ ରାଜସ୍ଥାନରେ ଏବଂ ସ୍ୱଳ୍ପସଂଖ୍ୟାରେ କର୍ଣ୍ଣାଟକରେ ସେଗୁଡ଼ିକୁ ଦେଖିବାକୁ ମିଳୁଥିଲା ।

ଉଭୟ ବୌଦ୍ଧ ଓ ଜୈନ ବିଦ୍ୟାପୀଠରେ ଏଣିକି ସଂସ୍କୃତର ବ୍ୟାପକ ପ୍ରୟୋଗ ଦୃଷ୍ଟିଗୋଚର ହେଲା । ଜୀବନ-ଚରିତ, ଇତିବୃତ୍ତ ଏବଂ ରାଜା ଓ ରାଜସଭାର ବୃତ୍ତାନ୍ତ ରଚନାରେ ଜୈନ ପଣ୍ଡିତମାନେ ଖୁବ୍ ପାରଦର୍ଶିତା ହାସଲ କରିଥିଲେ । ପୁଣି ଧାର୍ମିକ ପ୍ରସଙ୍ଗରେ ସେମାନେ ଲେଖୁଥିଲେ ବିଭିନ୍ନ ଜୈନ ସଂପ୍ରଦାୟର କାର୍ଯ୍ୟକଳାପ ଓ ସେମାନଙ୍କ ଶିକ୍ଷାର ପ୍ରତିଫଳନ ରହିଲା ସେମାନଙ୍କ ବର୍ଣ୍ଣନାଶୈଳୀରେ । ଏହା ଜୈନ ରଚନାକୁ ଏକ ଐତିହାସିକ ରୂପ ଦେଲା । ଆଗରୁ ବୌଦ୍ଧ ପରମ୍ପରାରୁ ମଧ୍ୟ ଏକା ଧରଣର ସାହିତ୍ୟ ଉପଲବ୍ଧ ହୋଇଥିଲା । ଜୈନ ପଣ୍ଡିତମାନଙ୍କ ମଧ୍ୟରେ ଦ୍ୱାଦଶ ଶତାବ୍ଦୀର ହେମଚନ୍ଦ୍ର ଓ ଚତୁର୍ଦ୍ଦଶ ଶତାବ୍ଦୀର ମେରୁତୁଙ୍ଗ ଥିଲେ ଖୁବ୍ ପ୍ରସିଦ୍ଧ । ଉପରୋକ୍ତ ବିଧାରେ ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ ସାହିତ୍ୟିକ ଯୋଗଦାନ ଦେଖିବାକୁ ମିଳିଥିଲା । ଫଳରେ ଜୈନ ସାହିତ୍ୟିକ ପରମ୍ପରା ଅନେକ କ୍ଷେତ୍ରରେ ବୌଦ୍ଧ ପରମ୍ପରାର ସମକକ୍ଷ ହୋଇପାରିଲା । ଏହି ସନ୍ଦର୍ଭରେ 'ଦ୍ୱୟଶ୍ରୟ' କାବ୍ୟର ଉଦାହରଣ ଦିଆଯାଇପାରେ । ଏହା ଥିଲା ଏକ ପରିଷ୍କୃତ ବିଦ୍‌ବତ୍ତାପୂର୍ଣ୍ଣ କାବ୍ୟ । ଏଥିରେ ଐତିହାସିକ ତତ୍ତ୍ୱଯୁକ୍ତ ବ୍ୟାକରଣିକ ଭାଷ୍ୟର ଉତ୍କୃଷ୍ଟ ନମୁନାମାନ ପରିଦୃଷ୍ଟ ହୁଏ । ପ୍ରବନ୍ଧ ପରମ୍ପରାର କୃତି ମଧ୍ୟରେ ଅନ୍ୟତମ ଥିଲା 'ପରିଶିଷ୍ଟ ପର୍ବ' ତଥା 'ପ୍ରବନ୍ଧ ଚିନ୍ତାମଣି' । ଜୀବନୀ ଓ ସନ୍ଥଚରିତ ରଚନା ବିଧାରେ ପ୍ରମୁଖ ଥିଲା ମହାବୀରଙ୍କ ଜୀବନୀ 'ମହାବୀର ଚରିତ' । ଜୈନ ସାହିତ୍ୟର ଏକ ମନୋରମ ଦିଗ ହେଲା ରାମକଥାର ବର୍ଣ୍ଣନ, ଯାହା ଜୈନ ଦୃଷ୍ଟିକୋଣରୁ ରଚନା କରାଯାଇଥିଲା । ଜୈନ ତଥା ଅନ୍ୟ ଲେଖକଙ୍କର 'ରାମକଥା' ଓ ବାଲ୍ମିକୀ ରାମାୟଣ ମଧ୍ୟରେ ଅନେକ ପାର୍ଥକ୍ୟ ରହିଥିଲା । ରାମାୟଣର ପିତୃସତ୍ତାତ୍ମକ ତଥା ରଢ଼ିବାଦୀ ପାଠରୁ ଅନ୍ୟ ପରମ୍ପରାଗୁଡ଼ିକ ପ୍ରେରଣା ନେଉଥିଲେ । ରାମାୟଣର ମୂଳ ପାଠରେ ସେମାନେ କିଛି କିଛି ପରିବର୍ତ୍ତନ ମଧ୍ୟ କରିଥିଲେ । ଉଦାହରଣ ସ୍ୱରୂପ, ନୂଆ ପାଠରେ ସୀତାଙ୍କୁ ପୁନର୍ବାର ନିର୍ବାସନ ଭୋଗିବାକୁ ପ୍ରେରଣ କରାଗଲା ଅଥବା ତପସ୍ୟା

କରିବା ଅପରାଧରେ ଜଣେ ଶୂଦ୍ରକୁ ମୃତ୍ୟୁଦଣ୍ଡ ଭୋଗିବାକୁ ପଡ଼ିଲା, କାରଣ କେବଳ ଉଚ୍ଚ ଜାତିର ଲୋକଙ୍କୁ ତପସ୍ୟା ପାଇଁ ସେତେବେଳେ ଅନୁମତି ମିଳୁଥିଲା ।

ଜୈନ ପରମ୍ପରା ଅନୁସାରେ ପାଠର ରଚନା, ରକ୍ଷଣାବେକ୍ଷଣ ଓ ଭଣ୍ଡାରଣ କେବଳ ଜୈନ ମନ୍ଦିରରେ ସମ୍ପନ୍ନ ହେବ । ଏହାଫଳରେ, ଜୈନ ମନ୍ଦିରଗୁଡ଼ିକ ଭବ୍ୟ ପୁସ୍ତକାଳୟରେ ଓ ପାଣ୍ଡୁଲିପିର ଭଣ୍ଡାରରେ ପରିଣତ ହେଲେ । ଏହି ପରମ୍ପରା ଆଜିପର୍ଯ୍ୟନ୍ତ ଚଳିଆସିଛି । ତାଳପତ୍ରରେ ପୋଥିମାନଙ୍କୁ ଲେଖାଯାଉଥିଲା । କେବେ କେବେ ଭୂର୍ଜପତ୍ରକୁ ମଧ୍ୟ ଲେଖିବାପାଇଁ ବ୍ୟବହାର କରାଯାଉଥିଲା । ପତ୍ରରେ ଲେଖାହେଲା ପରେ ପତ୍ରଗୁଡ଼ିକୁ ଉପରୁ କଣା କରି ଗଣ୍ଠିଲିରେ ବାନ୍ଧି ରଖାଯାଉଥିଲା । ପାଣ୍ଡୁଲିପିକୁ ସୁରକ୍ଷିତ ରହିବ ବୋଲି କାଠବାକ୍ସରେ ସାଇତା ଯାଉଥିଲା । ଆଜିକାଲିକା ଭଳି ପାଣ୍ଡୁଲିପି ଓ ବାକ୍ସକୁ ରଙ୍ଗାୟିତ ବି କରାଯାଉଥିଲା । ପାଣ୍ଡୁଲିପିକୁ ଘୋଡ଼େଇ ରଖିବା ସକାଶେ ଏକ ଖାସ କିସମର କପଡ଼ାର ବ୍ୟବହାର ହେଉଥିଲା, ମାତ୍ର ତାହା ସବୁ ଅବସରରେ ନୁହେଁ । ପରେ କାଗଜର ପ୍ରବେଶ ହେଲା । ଲିପି ଓ ଲେଖନ ଶୈଳୀରେ ପ୍ରାଚୀନ ବ୍ରାହ୍ମୀ ଲିପିର ପ୍ରଭାବ ରହିଥିଲା । ପରବର୍ତ୍ତୀ ସମୟରେ ବ୍ରାହ୍ମୀ ଲିପି ନୂତନ ଶୈଳୀକୁ ଗ୍ରହଣ କରି 'ଶାରଦା' ଲିପି ଆଦି ଲିପିର ରୂପ ନେଇଥିଲା । ଏହି ନୂତନ ବ୍ରାହ୍ମୀ ଲିପି ଥିଲା ଆଧୁନିକ ଦେବନାଗରୀ ଲିପିର ନିକଟତର ।

ଗଦ୍ୟ ଓ ପଦ୍ୟ ଶୈଳୀରେ ଲିଖିତ ପ୍ରେମକଥା ପ୍ରାୟତଃ ମହାକାବ୍ୟ ତଥା ପୁରାଣର ଆଖ୍ୟାନରୁ ନିଆଯାଇଥିବା ବିଷୟର ଅଳଂକରଣ ଥିଲା । ତହିଁରେ ବର୍ଣ୍ଣନାତ୍ମକ ଉପାଦାନ ତୁଳନାରେ ଭାଷାର ଅଧିକ ଚମତ୍କାରିତା ଦେଖିବାକୁ ମିଳୁଥିଲା । ଉକ୍ତ ରଚନାଗୁଡ଼ିକର ଛନ୍ଦ ଓ ରଚନା-ବିଧାନ ଉପରେ ପ୍ରଥମେ ଭରତ 'ନାଟ୍ୟଶାସ୍ତ୍ର'ରେ ଚର୍ଚ୍ଚା କରାଯାଇଥିଲା । ତାକୁ ନେଇ ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ ଅଧ୍ୟୟନ କରିଛନ୍ତି । ଶବ୍ଦର ଲାକ୍ଷଣିକ ଅର୍ଥ ଏବଂ ଧ୍ୱନି ଏବଂ ନାଟକରେ କାବ୍ୟର ସ୍ଥାନକୁ ସେମାନେ ବିସ୍ତାରରେ ଗବେଷଣା କରିଛନ୍ତି । ନୂତନ ରାଜ୍ୟର ରାଜସଭାକୁ ଆଗଭଳି ଲେଖକ ଓ କବିମାନଙ୍କୁ ସ୍ୱାଗତ କରାଯାଉଥିଲା । ସେତେବେଳର ରାଜସଭାରେ ରୋମାଣ୍ଟିକ ଧାରାର ରଚନାକୁ ପସନ୍ଦ କରାଯାଉଥିଲା । ଏହି ଦୃଷ୍ଟିରୁ ବିଚାର କଲେ ଏକାଦଶ ଶତାବ୍ଦୀର ଗଳ୍ପ ସଂଗ୍ରହ 'କଥା ସରିତ୍ ସାଗର' ହେବ ଏକ ବ୍ୟତିକ୍ରମ । ଏହାର ରଚୟିତା (ସଂଗ୍ରହକର୍ତ୍ତା) ଥିଲେ ସୋମଦେବ । ଏଥିରେ ଉଭୟ ଲୋକପ୍ରିୟ ଓ ଦରବାରୀ ପ୍ରସଙ୍ଗର ମିଶ୍ରଣ ଦେଖିବାକୁ ମିଳେ । ତହିଁରୁ କେତେକ ଗଳ୍ପରେ ସୁଦୂର ପ୍ରଦେଶର ଯାତ୍ରା ସମ୍ପର୍କରେ ଟିପ୍ପଣୀର ଆଭାସ ମଧ୍ୟ ମିଳିଥାଏ ।

ବିଭିନ୍ନ ରାଜସଭାରେ ନାଟକକୁ ପ୍ରୋତ୍ସାହନ ଦିଆଯାଉଥିଲା । ଆଗଭଳି ଏହି ନାଟକଗୁଡ଼ିକ ନିଜର ସ୍ୱତନ୍ତ୍ରତା ବଜାୟ ରଖିଥିଲେ । ଧାର୍ମିକ ସଂପ୍ରଦାୟଗୁଡ଼ିକ ମଧ୍ୟରେ

ଯେଉଁ ପ୍ରତିଦ୍ୱନ୍ଦ୍ୱିତା ଥିଲା, ତା'ର ପ୍ରତିଫଳନ ରାଜଶେଖରଙ୍କ ନାଟକ 'କର୍ପୁରମଞ୍ଜରୀ' ଓ କୃଷ୍ଣ ମିଶ୍ରଙ୍କର ନାଟକ 'ପ୍ରବୋଧ ଚନ୍ଦ୍ରୋଦୟ'ର କଥୋପକଥନରେ ଦେଖିବାକୁ ମିଳେ । ନାଟକରେ ବୌଦ୍ଧ ଓ ଜୈନ ଭିକ୍ଷୁମାନଙ୍କ ଉପରେ ବ୍ୟଙ୍ଗ କରାଯାଇଥିଲା ଏବଂ କେତେକ ଶୈବ ସଂପ୍ରଦାୟର ଅସାମାଜିକ ଆଚରଣକୁ ସମାଲୋଚନା କରାଯାଇଥିଲା । କେତେକ ଶୈବ କର୍ମକାଣ୍ଡକୁ ମଧ ତୀବ୍ର ସମାଲୋଚନାର ଶିକାର ହୋଇଥିଲା । ସମ୍ଭବତଃ ଉଭୟ ରାଜଦରବାରରେ ଏବଂ ଲୌକିକ ସ୍ତରରେ ନୂତନ ସଂପ୍ରଦାୟଗୁଡ଼ିକ ସମ୍ବନ୍ଧରେ ସମପରିମାଣରେ ଚର୍ଚ୍ଚା ହେଉଥିଲା ।

ଗୀତିକାବ୍ୟରେ ଅଧିକ ବ୍ୟକ୍ତିକ ଆବେଗ ଦେଖିବାକୁ ମିଳୁଥିଲା । ଅବଶ୍ୟ ଅନେକ ସମୟରେ ତାହା ଅତି ସୂକ୍ଷ୍ମ ରୂପରେ ଅଭିବ୍ୟକ୍ତ ହେଉଥିଲା । ସମ୍ଭବତଃ ସେତେବେଳର ସବୁଠାରୁ ସ୍ୱତଃସ୍ଫୂର୍ତ୍ତ ସ୍ଫୁଟନ ହେଲା ଶୃଙ୍ଗାର କାବ୍ୟ । ଏହାକୁ ସେହି ସମୟଖଣ୍ଡର ବୈଶିଷ୍ଟ୍ୟ ରୂପେ ଦେଖିହେବ । ଏହାର ମୂଳ ବୋଧହୁଏ ଭର୍ତ୍ତୃହରିଙ୍କ ଏକପଦୀୟ କାବ୍ୟରେ ରହିଥିଲା । ମନେହୁଏ, ବ୍ୟକ୍ତି ଓ ତା'ର ଇଷ୍ଟଦେବ ମଧ୍ୟରେ ସମ୍ବନ୍ଧକୁ ଶୃଙ୍ଗାର ରସରେ ଲିଖିତ କାବ୍ୟ ଅଭିବ୍ୟକ୍ତ କରୁଥିଲା । ଏହା ଲୋକଙ୍କୁ ଖୁବ୍ ରୁଚିକର ମନେହେଉଥିଲା । ଦ୍ୱାଦଶ ଶତାବ୍ଦୀରେ ରଚିତ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ରାଧାଙ୍କ ପ୍ରତି କୃଷ୍ଣଙ୍କ ପ୍ରେମର ବର୍ଣ୍ଣନା କରାଯାଇଛି । ଏହି କାବ୍ୟର ବୈଶିଷ୍ଟ୍ୟ ହେଲା ତା'ର ସାଙ୍ଗୀତିକତା । ସାଙ୍ଗରେ, ତହିଁରେ ଶୃଙ୍ଗାର ରସର ମଧ ବେଶ୍ ପରିସ୍ଫୁଟନ ହୋଇଛି । ସେହିଭଳି ବିଲ୍ହଣ କୃତ 'ଚୌର ପଞ୍ଚାଶିକ' କାବ୍ୟରେ ପ୍ରାସାଦରେ ଅନୁପ୍ରବେଶ କରିଥିବା ଜଣେ ଚୋର ସହ ଜଣେ ରାଜକୁମାରୀର ପ୍ରେମ ସମ୍ବନ୍ଧର ବର୍ଣ୍ଣନା ରହିଛି । ଏଭଳି ପ୍ରସଙ୍ଗରେ ଶୃଙ୍ଗାର ରସ ରହିବା ବୋଧହୁଏ ଅନିବାର୍ଯ୍ୟ ଅଟେ ।

କାବ୍ୟ ତଥା ମନ୍ଦିରର ମୂର୍ତ୍ତିକଳାରେ ଶୃଙ୍ଗାର ରସର ଅଭିବ୍ୟକ୍ତି ସୁସ୍ପଷ୍ଟ । ବୋଧହୁଏ, ଶୃଙ୍ଗାର ରସର ଦ୍ୱାର ଖୋଲିଥିଲା ତାନ୍ତ୍ରିକ ବିଶ୍ୱାସ ଓ ଆଚରଣରେ ଥିବା କର୍ମକାଣ୍ଡ । ଅଭିଜାତବର୍ଗ ଏହି କର୍ମକାଣ୍ଡକୁ ଗ୍ରହଣ କରିନେଇଥିଲେ ବୋଲି ଶୃଙ୍ଗାରିକ ଅଭିବ୍ୟକ୍ତି ଅଗ୍ରହଣୀୟ ହେଲା ନାହିଁ । ଊନବିଂଶ ଶତାବ୍ଦୀରେ ଉପନିବେଶବାଦୀ ଲେଖକମାନେ ଶୃଙ୍ଗାର ରସର ଅଭିବ୍ୟକ୍ତିକୁ କୁରୁଚିର ସଂକ୍ରମଣ ବୋଲି ଅଭିହିତ କରିଛନ୍ତି । ଏହା କୁଆଡ଼େ କାମୁକତାର ପୋଷଣ କରୁଥିଲା ଓ ନୈତିକତାର ହନନ କରୁଥିଲା । ଏହି ଧରଣର ଉପନିବେଶବାଦୀ ଦୃଷ୍ଟିମୂଳରେ ରହିଥିଲା ନୈତିକତାର ଭିକ୍ଟୋରିଆ କାଳୀନ ପରିଭାଷା । ଖ୍ରୀଷ୍ଟିଆନ ବିଶ୍ୱାସରେ 'ମୂଳ ପାପ' (original sin)ର ଅବଧାରଣା କଥା ରହିଥିଲା, ଯାହା ଭାରତରେ ନ ଥିଲା । 'ମୂଳ ପାପ' ବୋଧର ଅନୁପସ୍ଥିତି ଯୋଗୁଁ ଭାରତରେ ଶୃଙ୍ଗାରିକତାକୁ ନେଇ ମୁକ୍ତ ମନରେ ଚିନ୍ତା କରାଯାଉଥିଲା । 'ଗୀତଗୋବିନ୍ଦ'ର ପଦରେ ହେଉ ବା ଖଜୁରାହୋର ମୂର୍ତ୍ତିକଳାରେ

ହେଉ ଶୃଙ୍ଗାରିକ ବିଷୟର ସର୍ଜନା ଖୁବ୍ ପ୍ରଭାବୋଦ୍ଦିପକ ଢଙ୍ଗରେ କରାଯାଇଛି । କେତେକ ଚିତ୍ରକୁ ଖୁବ୍ ସମ୍ବେଦନଶୀଳତାର ସହିତ ପ୍ରସ୍ତୁତ କରାଯାଇଛି; ଅନ୍ୟ କେତେକ ଚିତ୍ରଣକୁ ଦେଖିଲେ ଚିତ୍ରକାରର ଦୁଃସାହସକୁ ବେଶ୍ ଲକ୍ଷ୍ୟ କରିହୁଏ ।

## ସ୍ମାରକ ଏବଂ ତା'ର ଐତିହାସିକ ମହତ୍ତ୍ୱ

ଆଞ୍ଚଳିକ ବିବିଧତାକୁ ନୂତନ ଭାଷାଗୁଡ଼ିକର ଅଭ୍ୟୁଦୟ ରୂପରେ କେବଳ ଦେଖିବାକୁ ମିଳି ନ ଥିଲା, ତା' ସହିତ ସ୍ଥାପତ୍ୟ ତଥା କଳାର ବିଭିନ୍ନ ଶୈଳୀରେ ମଧ ଦେଖିବାକୁ ମିଳିଥିଲା । ମନ୍ଦିରଗୁଡ଼ିକ ଆଉ ଆକାରରେ ସାନ ହୋଇ ରହି ନ ଥିଲେ । ଭିନ୍ନ ଭିନ୍ନ ଅଞ୍ଚଳରେ ବିଭିନ୍ନ ଆକାରର ଭବ୍ୟ ମନ୍ଦିରମାନ ନିର୍ମିତ ହେଲା । ଯେଉଁ ସମୟରେ ତୁର୍କ ଶାସକମାନଙ୍କର ମନ୍ଦିର ଉପରେ ଆକ୍ରମଣ ଅଧିକ ହେଲା, ସେହି ସମୟରେ ସମତାଳରେ ଭବ୍ୟ ମନ୍ଦିର ସବୁର ନିର୍ମାଣ ମଧ ଚାଲିଲା । ବିସ୍ମୟର କଥା ଯେ ମନ୍ଦିର ନିର୍ମାଣବେଳେ ଆକ୍ରମଣର ଭୟ କଥା ବା ଆକ୍ରମଣରୁ ମନ୍ଦିରକୁ ସୁରକ୍ଷା ଦେବା କଥାକୁ ନେଇ କୌଣସି ତଥ୍ୟାତ୍ମକ ଉଲ୍ଲେଖ ଦେଖିବାକୁ ମିଳେ ନାହିଁ ।

ପୂର୍ବରୁ ଯେଉଁ ସ୍ଥାପତ୍ୟ କଳା ଥିଲା, ତହିଁରୁ ନୂତନ ସ୍ଥାପତ୍ୟର ଆବଶ୍ୟକତା ଓ ଯୋଜନାର ରୂପରେଖ ଜନ୍ମ ନେଇଥିଲା । ମୁଖ୍ୟ ପୂଜା-ସ୍ଥଳ ଉପରେ ଯେଉଁ ସମତଳ ଛାତ ରହିଥିଲା, ତା' ଉପରେ ଶିଖର ନିର୍ମାଣର ଶୈଳୀ ଆରମ୍ଭ ହେଲା । ଅନ୍ୟାନ୍ୟ ପୂଜା-ସ୍ଥଳ ଉପରେ ମଧ ସାନ ସାନ ଶିଖରର ନିର୍ମାଣ କରାଗଲା । କେବେ କେବେ ବଡ଼ ଶିଖରକୁ ଲାଗି ସାନ ଶିଖରକୁ ସ୍ଥାପିତ କରାଗଲା । ବଡ଼ ଶିଖରର ଉଚ୍ଚତା ଖୁବ୍ ଅଧିକ ହେଉଥିଲା । ଏହା ସାମାନ୍ୟ ଢାଲୁ ଓ 'କନ୍‌ଭେକ୍ସ' ଆକାରର ହେଉଥିଲା । ଏହାରି ଯୋଗୁଁ ମନ୍ଦିରର ଉତ୍‌ଥାପିତ ଅଂଶରେ ପରିବର୍ତ୍ତନ ସମ୍ଭବ ହେଲା ଓ ଉତ୍ତର ଭାରତୀୟ ମନ୍ଦିର ଶୈଳୀରେ, ଯାହାକୁ ନାଗର ଶୈଳୀ କୁହାଯାଏ, ନୂତନ ଶୈଳୀ ଓ ସାଜସଜ୍ଜା ପାଇଁ ସମ୍ଭାବନା ସୃଷ୍ଟିହେଲା । ମାତ୍ର ଉତ୍‌ଥାପିତ ଅଂଶରେ ଦେଖିବାକୁ ମିଳୁଥିବା ଆଞ୍ଚଳିକ ବିବିଧତା ହ୍ରାସ ପାଇଲା ନାହିଁ । ଉତ୍ତର ଭାରତର ମନ୍ଦିରଗୁଡ଼ିକ ସାମାଜିକ ଓ ନଗର ଜୀବନର ଗୋଟାଏ ଗୋଟାଏ ମୁଖ୍ୟ କେନ୍ଦ୍ର ଥିଲେ । ଅବଶ୍ୟ ଦକ୍ଷିଣ ଭାରତର ମନ୍ଦିର ତୁଳନାରେ ସେଗୁଡ଼ିକର ମୋଟ ପରିଧି କ୍ଷେତ୍ର କମ୍ ଥିଲା । ହେଲେ ଉଭୟ ଧରଣର ମନ୍ଦିରର ଅଂଶଗୁଡ଼ିକରେ ଅନେକ ସାଦୃଶ୍ୟ ରହିଥିଲା । ଅଧିଷ୍ଠାତା ଦେବଙ୍କୁ ଗର୍ଭଗୃହରେ ପ୍ରତିଷ୍ଠା କରାଯାଉଥିଲା । ତା' ଉପରେ ଶିଖର ରହିଥିଲା । ମଣ୍ଡପ ଦେଇ ଗର୍ଭଗୃହରେ ପ୍ରବେଶ କରାଯାଇ ପାରୁଥିଲା । ମଣ୍ଡପ ଥିଲା ଏକ

ପ୍ରଶସ୍ତ ଖୋଲା ଜାଗା । ସେଠାରେ ଆଲୋକ ଓ ଛାୟାର ଛଟା ସୃଷ୍ଟି କରାଯାଇଥିଲା । ମଣ୍ଡପକୁ ବିଭିନ୍ନ କାମ ପାଇଁ ଉପଯୋଗ କରାଯାଉଥିଲା ।

ଛୋଟ ଛୋଟ ଆଦ୍ୟ ମନ୍ଦିରଗୁଡ଼ିକ ମୁଖ୍ୟତଃ ପୂଜାସ୍ଥଳ ଥିଲେ । ତହିଁରେ ନୂତନ ସୁରୁଚିପୂର୍ଣ୍ଣ ତତ୍ତ୍ୱର ସମାବେଶ ପାଇଁ ପ୍ରୟୋଗମାନ କରାଯାଉଥିଲା । ପରବର୍ତ୍ତୀ ସମୟର ମନ୍ଦିରଗୁଡ଼ିକ ଅପେକ୍ଷାକୃତ ବିଶାଳ ଆକାରର ହେଲେ । ସେଠାରେ ରାଜାଙ୍କର ଦୀକ୍ଷା ଓ ବୈଧିକରଣ ଭଳି ନାନା କିସମର ଅନୁଷ୍ଠାନ ଆୟୋଜନ କରାଗଲା । ଏହାର ମୂଳରେ ଉଦ୍ଦେଶ୍ୟ ଥିଲା ଆରାଧ୍ୟ ଦେବତା, ପ୍ରତିମା ଓ ରାଜାଙ୍କ ମଧ୍ୟରେ ଏକ ସମ୍ପର୍କ ରହିଛି ବୋଲି ସମାଜରେ ଆସ୍ଥା ସୃଷ୍ଟି କରିବା । ଏଭଳି ଅନୁଷ୍ଠାନମାନ ଆୟୋଜନ କରିବାପାଇଁ ମନ୍ଦିରର ପରିଧିର ବୃଦ୍ଧି ହେବା ଜରୁରି ହୋଇପଡ଼ିଲା । ମନ୍ଦିରରେ ଥିବା ସ୍ଥାପତ୍ୟ ମଧ୍ୟରେ ରାଜାଙ୍କର ରାଜ୍ୟାଭିଷେକ ଆଦି ଅନୁଷ୍ଠାନର ଚିତ୍ରଣ ସ୍ଥାନ ପାଇଲା । ଏହା ରାଜାଙ୍କର ପ୍ରତିଷ୍ଠା ଓ ଶକ୍ତିକୁ ପ୍ରଦର୍ଶିତ କରୁଥିଲା । ପୂର୍ବର ସାନ ସାନ ମନ୍ଦିରଗୁଡ଼ିକ ଜୀର୍ଣ୍ଣ ଅବସ୍ଥାରେ ରହିଲେ । ଅଳ୍ପ କେତୋଟି ସାନ ସାନ ମନ୍ଦିର ମାତ୍ର ପୁନରୁଦ୍ଧାର ପାଇଁ ଦୃଷ୍ଟି ଆକର୍ଷଣ କରିପାରିଲେ ।

ଉତ୍ତର-ପଶ୍ଚିମ ଭାରତର ଲବଣ ପର୍ବତମାଳା (Salt Range)ରେ ଅନେକ ମନ୍ଦିରର ପୁନର୍ନିର୍ମାଣ କରାଗଲା । ନବମ ଓ ଦଶମ ଶତାବ୍ଦୀରେ ହିନ୍ଦୁ ଶାହିଯମାନେ ଏହା କରିଥିଲେ । ମଲୌଟ ମନ୍ଦିର ହେଲା ଏଭଳି ଏକ ଉଦାହରଣ । ଏହାର ସ୍ତମ୍ଭ ଓ ସାଜସଜ୍ଜାରେ ରୋମର ଓ ବାରକ (Baroque ବା ଅତ୍ୟାଳଂକୃତ) ଶୈଳୀର ପ୍ରଭାବ ଦେଖିବାକୁ ମିଳିଥାଏ । ପୂର୍ବର ଗାନ୍ଧାର ଶୈଳୀ ଓ କାଶ୍ମୀରର ମନ୍ଦିରରେ ଥିବା ଶୈଳୀରୁ ଏହା ଅଣାଯାଇ ଥାଇପାରେ । ରାଜସ୍ଥାନର ଜଗତଠାରେ ଥିବା ଅମ୍ବା ମାତା ମନ୍ଦିରରେ ଅଦ୍ଭୁତ ଆନୁପାତିକତା ଦେଖିବାକୁ ମିଳେ । ଉଦୟପୁର ନିକଟରେ ଏକଲିଙ୍ଗଜୀଠାରେ ଥିବା ପ୍ରାରମ୍ଭିକ ଶିବ ମନ୍ଦିର ଥିଲା ଖୁବ୍ ସରଳ । ଏଠାରେ ମେୱାର ରାଜାଙ୍କର ଅଧିଷ୍ଠାତା ଦେବତା ସ୍ଥାନ ପାଉଥିଲେ । ନବମ ଶତାବ୍ଦୀର ଏକ ମନ୍ଦିର ହେଲା ହର୍ଷଦମାତା ମନ୍ଦିର, ଯାହା ରାଜସ୍ଥାନର ଆବନେରୀରେ ପ୍ରତିଷ୍ଠିତ ହୋଇଥିଲା । ଏହା ଜୀର୍ଣ୍ଣ ଅବସ୍ଥାରେ ଥିଲେ ସୁଦ୍ଧା ମନ୍ଦିରର ସ୍ଥାପତ୍ୟ ଖୁବ୍ ପ୍ରଭାବୋଦ୍ଦିପକ ମନେହୁଏ । ମଧ୍ୟପ୍ରଦେଶର ଗ୍ୟାରସପୁରଠାରେ ସ୍ଥିତ ମାଳାଦେବୀ ମନ୍ଦିର ଏକ ପାହାଡ଼ର ଅଧାବାଟରେ ନିର୍ମିତ ହୋଇଥିଲା । ମନ୍ଦିରରୁ ନିକଟସ୍ଥ ଗ୍ରାମଗୁଡ଼ିକର ଦୃଶ୍ୟ ଖୁବ୍ ପରିଷ୍କାର ଦେଖାଯାଏ । ମନ୍ଦିରଟିର ବୈଶିଷ୍ଟ୍ୟ ହେଲା ଯେ ଏହାର ଅର୍ଦ୍ଧେକ ଅଂଶ ପଥର ଚଟାଣକୁ ଖୋଦନ କରି ଓ ଅନ୍ୟ ଅର୍ଦ୍ଧେକ ଅଂଶକୁ ନିର୍ମାଣ କରି ପ୍ରତିଷ୍ଠା କରାଯାଇଥିଲା । ଓଡ଼ିଶାର ଭୁବନେଶ୍ୱରସ୍ଥିତ ମୁକ୍ତେଶ୍ୱର ଓ ଗୌରୀମନ୍ଦିର ମଧ୍ୟ ଏହି କାଳର ନିର୍ମାଣ ଅଟେ । ରାଜସ୍ଥାନର ଓସିଆନଠାରେ ଥିବା ସୂର୍ଯ୍ୟମନ୍ଦିରକୁ ଅନୁଧ୍ୟାନ କଲେ ଜଣାଯାଏ

ଯେ, ମନ୍ଦିର ନିର୍ମାଣ କଳା ପୂର୍ବ ଦିଗରୁ ପଶ୍ଚିମ ଦିଗକୁ ସଂପ୍ରସାରିତ ହେଉଥିଲା । କାଶ୍ମୀରର ମାର୍ତଣ୍ଡ ସୂର୍ଯ୍ୟମନ୍ଦିର ମଧ୍ୟ ଏହି ପ୍ରକାର ଏକ ମନ୍ଦିର ଥିଲା । ଗୁଜରାଟର ମୋଢ଼େରା ମନ୍ଦିରରୁ ଏହା ଅଧିକ ପ୍ରାଚୀନ ଅଟେ । ମାର୍ତଣ୍ଡ ମନ୍ଦିରର ପ୍ରସିଦ୍ଧି ବି ଖୁବ୍ ବେଶି ବୋଲି କହିବାକୁ ହେବ । ଏହି କାଳଖଣ୍ଡରେ କୁମାୟୁଁ ଓ ଗଡ଼ୱାଲର ପାହାଡ଼ମାନଙ୍କରେ ମଧ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ଦେଖିବାକୁ ମିଳିଥିଲା ।

ଏହାର ପରବର୍ତ୍ତୀ କାଳରେ ଆହୁରି ଅନେକ ମନ୍ଦିର ନିର୍ମାଣ ହେଲା । ତନ୍ମଧ୍ୟରେ ମାଉଣ୍ଟଆବୁଠାରେ ନିର୍ମିତ ହୋଇଥିବା ଜୈନ ମନ୍ଦିର ଥିଲା ଖୁବ୍ ପ୍ରସିଦ୍ଧ । ଚାଲୁକ୍ୟ ମନ୍ତ୍ରୀ ବସ୍ତୁପାଳ ଓ ତେଜପାଳ ଥିଲେ ଧବଳ ଶଙ୍ଖମର୍ମରରେ ନିର୍ମିତ ଏହି ମନ୍ଦିରଗୁଡ଼ିକର ନିର୍ମାତା । ପଶ୍ଚିମ ଭାରତରେ ଜୈନ ସ୍ଥାପତ୍ୟର ପ୍ରତିନିଧି ରୂପରେ ମନ୍ଦିରଗୁଡ଼ିକୁ ଦେଖିହେବ । ଏଗୁଡ଼ିକ ମୂର୍ତ୍ତିକଳାରେ ଭରପୂର । ମାତ୍ର ସ୍ଥାପତ୍ୟର ପ୍ରାଚୁର୍ଯ୍ୟ ତହିଁରୁ ବି ଅଧିକ । ଖଜୁରାହୋର ଲକ୍ଷ୍ମଣ ଓ କନ୍ଦରିୟା ମହାଦେବ ମନ୍ଦିର ମଧ୍ୟ ଭାରତରେ ସ୍ଥିତ ବୁନ୍ଦେଲଖଣ୍ଡର ମନ୍ଦିରମାଳାର ସବୁଠାରୁ ଉତ୍କୃଷ୍ଟ ଉଦାହରଣ । ଏଠି ମଧ୍ୟ ଖୁବ୍ ମୂର୍ତ୍ତିକଳା ଦେଖିବାକୁ ମିଳିଥାଏ । ମନ୍ଦିରର ମୂର୍ତ୍ତିକଳାରୁ ଉଭୟ ଆକାର ଓ ରୂପର ସନ୍ତୁଳନ ଜଣାପଡ଼େ । ଏହା ମନ୍ଦିର ଦୁଇଟିର ଗଠନଶୈଳୀର ସୁରୁଚିପୂର୍ଣ୍ଣତାକୁ ଦର୍ଶାଏ । ଓଡ଼ିଶାର କୋଣାର୍କ ମନ୍ଦିର ଓ ଖଜୁରାହୋ ମନ୍ଦିରର ଶୃଙ୍ଗାରିକ ମୂର୍ତ୍ତିକଳାକୁ ଦେଖିବାରେ ଦର୍ଶକ ଏତେ ଅଧିକ ଧ୍ୟାନ ଦିଅନ୍ତି ଯେ ତହିଁରେ ଥିବା ସ୍ଥାପତ୍ୟ ଓ ମୂର୍ତ୍ତିକଳାର ଭବ୍ୟତାକୁ ଧ୍ୟାନ ଦେଇପାରନ୍ତି ନାହିଁ । ଅପେକ୍ଷାକୃତ ଅଧିକ ନାଟକୀୟ ନିର୍ମାଣ ମଧ୍ୟରେ ରହିଛି ଭୋପାଳ ନିକଟସ୍ଥ ଅପୂର୍ଣ୍ଣ ଶୈବମନ୍ଦିର । ଏକାଦଶ ଶତାବ୍ଦୀରେ ପରମାର ରାଜା ଭୋଜ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ମନ୍ଦିର ଯୋଜନାର କିଛି କିଛି ଖୋଦିତ ସ୍କେଚ ମନ୍ଦିର ଆଖପାଖରେ ଆଜି ମଧ୍ୟ ଦୃଷ୍ଟିଗୋଚର ହୁଏ । ବଡ଼ ବଡ଼ ପଥରଖଣ୍ଡକୁ ବୋହିବା ପାଇଁ ନିର୍ମାଣ ହୋଇଥିବା ପାହାଚ ତୁଲ୍ୟ ରେମ୍ପ (ramp) ଆଜି ମଧ୍ୟ ରହିଛି । ସବୁଠାରୁ ପ୍ରସିଦ୍ଧ ହେବ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ କୋଣାର୍କସ୍ଥିତ ସୂର୍ଯ୍ୟମନ୍ଦିର । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ପୁରୀର ଜଗନ୍ନାଥ ମନ୍ଦିର କାଳକ୍ରମେ ଅଧିକ ବଡ଼ ସ୍ମାରକର ସ୍ଥାନ ଗ୍ରହଣ କଲା । ମନେହୁଏ, ଉର୍ବରତାର ଉପାସନା ଓ କେତେକ ତାନ୍ତ୍ରିକ ଅବଧାରଣା ସହ ଶୃଙ୍ଗାରିକ ମୂର୍ତ୍ତିକଳାର ଘନିଷ୍ଠ ସମ୍ବନ୍ଧ ରହିଥିଲା । ଶାକ୍ତ ଉପାସନାର ନିକଟତର ଥିଲା ଯୋଗିନୀ ମନ୍ଦିର, ଯାହାର ସମୟକାଳ ଥିଲା ସାମାନ୍ୟ ପୂର୍ବକାଳୀନ । ଖଜୁରାହୋ ମନ୍ଦିର ପାଖରେ ଯୋଗିନୀ ମନ୍ଦିରଗୁଡ଼ିକ ରହିଛନ୍ତି । ଓଡ଼ିଶାର ହୀରାପୁରଠାରେ ସ୍ୱତନ୍ତ୍ର ଯୋଗିନୀପୀଠ ଦେଖିବାକୁ ମିଳେ । ଅନେକ ଯୋଗିନୀ ମନ୍ଦିରର ମଧ୍ୟ-ଭାରତରେ ସ୍ଥାପନା ହୋଇଥିଲା ।

ଗୁଜରାଟ ଓ ରାଜସ୍ଥାନର କେତେକ ଅଂଶରେ 'ବାବ' ବା ବାମ୍ପି ଦେଖିବାକୁ ମିଳେ । ବାବ ହେଲା ଏକ ପାହାଚ ଥିବା ବଡ଼ କୂଅ । ବଡ଼ ଆକାରର କୂପର ଗଭୀରତା ଖୁବ୍ ଅଧିକ ବୋଲି ତଳକୁ ଓହ୍ଲାଇବା ପାଇଁ ପାହାଚମାନ ରହିଥିଲା । ପୁଣି କୂପର ତଳ ଅଂଶ ଗେଲେରୀ ବେଷ୍ଟିତ ଥିଲା । ପାହାଚଗୁଡ଼ିକରେ ପୁରାଣର ଦୃଶ୍ୟ ଓ ପ୍ରତିମାଗୁଡ଼ିକର ଅଙ୍କନ ହୋଇଥିଲା । ପାଟନର ରାଣୀଙ୍କର ପାହାଚ-କୂପ ହେଲା ଏହାର ଏକ ଉଦାହରଣ । ମାଟିର ତଳ ଅଂଶକୁ ଖୋଦନ କରି ବାମ୍ପି ବା 'ବାବ'ର ନିର୍ମାଣ କରାଯାଉଥିଲା । କେବେ କେବେ 'ବାବ' ବହୁତଳ ବିଶିଷ୍ଟ ଥିଲା । ମାରୁପ୍ରାନ୍ତରର ଧାରରେ ସ୍ଥିତ ଅଞ୍ଚଳରେ ଜଳଯୋଗାଣ ପାଇଁ ବାବ ବା ପାହାଚ-କୂପର ଉପଯୋଗ ହେଉଥିଲା । ଖରାଦିନେ ପ୍ରଚଣ୍ଡ ଉତ୍ତାପରୁ ରକ୍ଷା ପାଇବା ପାଇଁ ମଧ ବାବସ୍ଥିତ ପାହାଚ ସାହାଯ୍ୟ କରୁଥିଲା । ଯେଉଁଠି ଜଳସ୍ତର ଖୁବ୍ ତଳେ, ସେଇଠି ଜଳସେଚନ ପାଇଁ ମଧ ଏହିସବୁ କୂପର ବ୍ୟବହାର କରାଯାଉଥିଲା ।

ମନ୍ଦିରର ନିର୍ମାଣ କାର୍ଯ୍ୟ ସୂତ୍ରଧରଙ୍କ ତତ୍ତ୍ୱାବଧାନରେ ସମ୍ପନ୍ନ ହେଉଥିଲା । ଭବ୍ୟ ମନ୍ଦିର ନିର୍ମାଣ ପାଇଁ 'ଶିଳ୍ପ-ଶାସ୍ତ୍ର'ର ବ୍ୟବହାର ଆରମ୍ଭ ହୋଇଥିଲା । ନିର୍ମାଣ କାର୍ଯ୍ୟରେ ଜଡ଼ିତ କାରିଗର, ଯଥା- କାଠମିସ୍ତ୍ରୀ, ମିସ୍ତ୍ରୀ, ପଥରକଟାଳି ଓ ଶିଳ୍ପୀକୁ ପ୍ରାୟ ସମାଜର ତଳ ବର୍ଗର ବୋଲି ଗଣ୍ୟ କରାଯାଉଥିଲା । ସେମାନଙ୍କୁ ବର୍ଣ୍ଣସଂକର ଜାତିର ମର୍ଯ୍ୟାଦା ପ୍ରଦାନ କରାଯାଉଥିଲା । ପ୍ରଶ୍ନ ଉଠେ, 'ଶିଳ୍ପଶାସ୍ତ୍ର'କୁ ଲେଖୁଥିଲା କିଏ ? ଯଦି ସୂତ୍ରଧରମାନେ ବିଧିବଦ୍ଧ ଭାବେ ସଂସ୍କୃତରେ ତାଲିମ ପାଇଥାନ୍ତେ, ତେବେ ସେମାନଙ୍କର କାରିଗରୀ ଓ ପେଷାଦାରୀ ଶିକ୍ଷାକୁ ଉଚ୍ଚ ମାନ୍ୟତା ମିଳିଥାନ୍ତା । କ'ଣ 'ଶିଳ୍ପ-ଶାସ୍ତ୍ର'କୁ ବ୍ରାହ୍ମଣମାନଙ୍କ ସହାୟତାରେ ଲେଖାଯାଉଥିଲା ? ଯେତେବେଳେ ପ୍ରତ୍ୟେକ ରାଜବଂଶ ପଥରରେ ମନ୍ଦିର ନିର୍ମାଣ ଭଳି ବିଭିନ୍ନ କାର୍ଯ୍ୟ ମାଧମରେ ନିଜ ନିଜର ଉପସ୍ଥିତି ଜାହିର କରିବାକୁ ପ୍ରୟାସ କଲେ, ମନ୍ଦିର ନିର୍ମାଣ ବିଧିର ଯେଉଁସବୁ ସ୍ଥାପିତ ନିୟମାବଳୀ ତାକୁ ପାଳନ କରିବା ଜରୁରି ମନେହେଲା । ଅନ୍ୟଥା ମନ୍ଦିର ଭବ୍ୟ ଓ ଦୀର୍ଘଜୀବୀ ହେବ ନାହିଁ । ସୂତ୍ରଧରର କାର୍ଯ୍ୟ ତତ୍ତ୍ୱାବଧାନ ପାଇଁ ଆବଶ୍ୟକତା ବୃଦ୍ଧି ପାଇଲା । ଅଭିଲେଖଗୁଡ଼ିକରେ ସୂତ୍ରଧରର ବି ନାମ ଦେଖିବାକୁ ମିଳେ । କୋକସ ହେଲା ସେହି ଧରଣର ଏକ ନାମ । ନିର୍ଦ୍ଦିଷ୍ଟ ମନ୍ଦିର ପାଇଁ ସୂତ୍ରଧରକୁ ନିଯୁକ୍ତି ଦିଆଯାଉଥିଲା । ସୂତ୍ରଧରମାନେ ବିଭିନ୍ନ ରାଜଦରବାରକୁ କାମ ପାଇଁ ଯାଉଥିଲେ, ନା ପ୍ରତ୍ୟେକ ରାଜଦରବାରର ସ୍ୱତନ୍ତ୍ର ସ୍ଥପତି ଓ ନିର୍ମାତା ଥିଲେ, ତାହା ସୁସ୍ପଷ୍ଟ ନୁହେଁ । ସ୍ଥାପତ୍ୟ ପୋଥି ଏକ ଔପଚାରିକ ରୂପ ପାଇବା ଉତ୍ତାରୁ ନିର୍ମାଣ କଳା ଓ ନିର୍ମାଣ ପଦ୍ଧତିର ଯଥେଷ୍ଟ ପ୍ରସାରଣ ହେଲା । ତା' ସହିତ ଏକଥା ମଧ ସତ ଯେ ସ୍ଥାପତ୍ୟ କଳାର ନୂଆ ନୂଆ ପ୍ରୟୋଗ ପାଇଁ ଏହା ପ୍ରତିବନ୍ଧକ ତୁଲ୍ୟ ସିଦ୍ଧ ହେଲା ।



ବୃତ୍ତାକାର ଦେବୀ ମନ୍ଦିର : ଏକ ଯୋଜନା

ଆଗଭଳି ଏହି କାଳଖଣ୍ଡରେ ମଧ୍ୟ ମୂର୍ତ୍ତିକଳାରେ ଆଞ୍ଚଳିକ ଶୈଳୀର ପ୍ରଭାବ ପ୍ରତିବିମ୍ବିତ ହୋଇଥିଲା । ପୂର୍ବଭାରତରେ ପଥର ଓ ଧାତୁର ମୂର୍ତ୍ତି ନିର୍ମାଣ ପାଇଁ ଏକ ଅଭିନବ କଳା ବିକଶିତ ହେଲା । କଳା ମୁଗୁନି ପଥରକୁ ପାଲିସ କରି ମୂର୍ତ୍ତିକାରମାନେ ତହିଁରେ ଧାତୁ ପରି ଚମକ ଆଣିପାରିଲେ । ନାଳନ୍ଦାରେ ଥିବା ବୁଦ୍ଧପ୍ରତିମାରୁ ଏହାର ପ୍ରତିମାନ ସ୍ଥାପିତ ହେଲା । ପାଳ ରାଜାମାନଙ୍କର ପ୍ରୋତ୍ସାହନରେ ହିନ୍ଦୁ ପୌରାଣିକ ଦେବାଦେବୀଙ୍କର ମୂର୍ତ୍ତି ଖୋଦନ ଯୋଗୁଁ ଏହି କଳା ଅଧିକ ବିକଶିତ ହେଲା । ପୂର୍ବ ଭାରତରେ କଂସାର ଉପଯୋଗ କରି ମୂର୍ତ୍ତିକଳାକୁ ଅଧିକ ପ୍ରୋତ୍ସାହିତ କରାଗଲା । ଯଦିଓ ଉତ୍ତର ଭାରତର ବିଭିନ୍ନ ଅଞ୍ଚଳରେ ମଧ୍ୟ ମୂର୍ତ୍ତିକଳାରେ କଂସା ଧାତୁର ଉପଯୋଗ ହେଉଥିଲା, ପୂର୍ବ ଭାରତରେ ଏହି ଉପଯୋଗ ଅଧିକ ଥିଲା । କାଶ୍ମୀର ଓ ନେପାଳରେ ମଧ୍ୟ ଏହି ଧରଣର ମୂର୍ତ୍ତିକଳା ଦେଖିବାକୁ ମିଳିଥିଲା । ଯଦି ତୁଳନା କରାଯାଏ, ଚୋଳ କାଳର କାଂସ୍ୟ ମୂର୍ତ୍ତିକଳା ଥିଲା ସର୍ବୋତ୍କୃଷ୍ଟ । ଲଳିତ କଳା (finc arts) କ୍ଷେତ୍ରରେ ଭାରତର ଯୋଗଦାନ ମୁଖ୍ୟତଃ ମୂର୍ତ୍ତିକଳାରେ ଅଧିକ ଦେଖିବାକୁ

ମିଳିଥାଏ । ଯଦି ତା'ର ସ୍ୱତନ୍ତ୍ର ରୂପ ରହିପାରିଥାନ୍ତା, ତେବେ ତା'ର ପୃଥକ୍ ଶୈଳୀ ମଧ୍ୟ ବିକଶିତ ହୋଇଥାନ୍ତା । ମାତ୍ର ସ୍ଥାପତ୍ୟର ସୌନ୍ଦର୍ଯ୍ୟକରଣ ପାଇଁ ଏହାର ବିଶେଷ ଉପଯୋଗ ହେଲା ଏବଂ ପରବର୍ତ୍ତୀ କାଳରେ ସ୍ଥାପତ୍ୟ କଳା ପରି ପତନୋନ୍ମୁଖ ହେଲା । ମୃଣ୍ମୟ ମୂର୍ତ୍ତିର କଳା ବହୁଦିନ ଧରି ଆକର୍ଷଣୀୟ ମୂର୍ତ୍ତିକଳାର ମାଧ୍ୟମ ହେଲା, ଯଦିଓ ତାକୁ ସମାଜର ଅପେକ୍ଷାକୃତ ତଳ ବର୍ଗର ଲୋକ ଉପଯୋଗ କରୁଥିଲେ ।

ଏଣିକି ପାଣ୍ଡୁଲିପିକୁ ଚିତ୍ରଣ କରିବାପାଇଁ ଚିତ୍ରକଳାର ଉପଯୋଗ ଦେଖିବାକୁ ମିଳିଲା । ପ୍ରଥମେ ପୂର୍ବ ଭାରତ, ଗୁଜରାଟ, ରାଜସ୍ଥାନ ଓ ନେପାଳରେ ଏହିପ୍ରକାର ଉଦ୍ୟମ ଆରମ୍ଭ ହେଲା । ଉଭୟ ବୌଦ୍ଧ ଓ ଜୈନ ପରମ୍ପରାରେ ପୋଥିକୁ ନକଲ କରାଯାଉଥିଲା, ଯଦ୍ୱାରା ତା'ର ଚାହିଦା ପୂରଣ ହୋଇପାରିବ । ନକଲ କରିବା ପ୍ରକ୍ରିୟାରେ ପାଣ୍ଡୁଲିପିରେ ଚିତ୍ର ଆଙ୍କିବା ମଧ୍ୟ ଏକ ପରମ୍ପରାରେ ପରିଣତ ହେଲା । ଚିତ୍ରଣରେ ମୁଖାକୃତିକୁ ସର୍ବଦା କୋଣାତ୍ମକ ଚିତ୍ରଣ କରାଯାଉଥିଲା ଏବଂ ଆଖିକୁ ବଡ଼ କରାଯାଉଥିଲା । ଏହି ପ୍ରୟୋଗ ପରବର୍ତ୍ତୀ ଶତାବ୍ଦୀରେ ଲଘୁଚିତ୍ରକଳାର ଏକ ସୁନ୍ଦର ପରମ୍ପରା ରୂପରେ ବିକଶିତ ହେଲା । ମୁଖ୍ୟତଃ ପାଣ୍ଡୁଲିପିର ଚିତ୍ରଣ ପାଇଁ ତାକୁ ଉପଯୋଗ କରାଗଲା । ଭିତ୍ତି-ଚିତ୍ର (mural painting)ର ପରିମାଣ ଊଣା ହେଲା । ବେଶି ଦେଖିବାକୁ ମିଳିଲା ଝୁଲା ଚିତ୍ର; ତହିଁରେ ଲୋକପ୍ରିୟ ବିଷୟବସ୍ତୁକୁ ପ୍ରାଧାନ୍ୟ ଦିଆଯାଉଥିଲା ।

ଏହି ସମୟରେ ମନ୍ଦିର ଅନେକ ପ୍ରକାରର ଭୂମିକା ନିର୍ବାହ କରୁଥିଲା । କାହିଁ କେଉଁଠି ମନ୍ଦିରରେ ମଠ ମଧ୍ୟ ରହିଥିଲା । ସେହି କ୍ଷେତ୍ରରେ ମନ୍ଦିର ପରିସର ବୌଦ୍ଧସ୍ତୁପ ଓ ବୌଦ୍ଧବିହାର ଭଳି କାର୍ଯ୍ୟ କରୁଥିଲା । ମନ୍ଦିର ଭୂମିଦାନ ପାଉଥିଲା ବୋଲି ଭୂମିମାଲିକର କାମ କରୁଥିଲା । ତାକୁ ଭୂମିମାଲିକର କ୍ଷମତା ମଧ୍ୟ ପ୍ରାପ୍ତ ହୋଇଥିଲା । ପୌରାଣିକ ସଂପ୍ରଦାୟର ଅନୁଷ୍ଠାନ ଥିଲା ମନ୍ଦିର । ସେହି ଆଧାରରେ ତାକୁ କେତେକ ନାଗରିକ ଭୂମିକା ମଧ୍ୟ ପାଳନ କିରବାକୁ ପଡୁଥିଲା । ଏହା ଥିଲା ରାଜଶକ୍ତି ଓ ସ୍ଥାନୀୟ ଶକ୍ତିର ପ୍ରତୀକ । ଏ କ୍ଷେତ୍ରରେ ମନ୍ଦିରର ପୃଷ୍ଠପୋଷକ ଥିଲେ ଶକ୍ତିର ଉତ୍ସ । ମନ୍ଦିର ପୁଣି ବାଣିଜ୍ୟରେ ପୁଞ୍ଜି ବିନିଯୋଗ କରୁଥିଲା ଓ ଋଣ ଦେଉଥିଲା । ଏହା ଥିଲା ଏକ ନିଯୁକ୍ତିଦାତା । ଯେଉଁଠି ମନ୍ଦିର ତୀର୍ଥସ୍ଥଳୀର କେନ୍ଦ୍ର ରୂପେ ପରିଚିତି ପାଉଥିଲା, ସେଠାରେ ଏହା ଏକ ବଜାରର ମାଲିକ ରୂପେ ମଧ୍ୟ କାର୍ଯ୍ୟ କରୁଥିଲା । ଯେଉଁମାନେ ମନ୍ଦିର ସମ୍ପତ୍ତିର ପରିଚାଳନା ଦାୟିତ୍ୱରେ ଥିଲେ, ସେମାନେ କୃଷି-କର୍ମ ଓ ସହରୀ ଜୀବନର ମୁଖ୍ୟ କେନ୍ଦ୍ର ପ୍ରମାଣିତ ହେଉଥିଲେ । ଯେଉଁଠି ମନ୍ଦିର ବାଣିଜ୍ୟରେ ପୁଞ୍ଜିନିବେଶ କରୁଥିଲା ସେହି ମନ୍ଦିରର ପୂଜକମାନଙ୍କର ପ୍ରଶାସନିକ ଓ ବାଣିଜ୍ୟିକ ସଂଗଠନଗୁଡ଼ିକ ସହିତ ଘନିଷ୍ଠ ସମ୍ବନ୍ଧ ରହୁଥିଲା ।

ପୂଜାର୍ଚ୍ଚନା ପାଇଁ ମନ୍ଦିର ଅଥବା ଧର୍ମପୀଠରେ ଏକ ସ୍ଥାୟୀ ସ୍ଥାନ ରହିଥିଲା । ଯଦି ମନ୍ଦିର ତୀର୍ଥସ୍ଥଳୀରେ ପରିଣତ ହେଉଥିଲା, ଏହି ସ୍ଥାନଟିକୁ ଖୁବ୍ ଶକ୍ତିଶାଳୀ ମନେ କରାଯାଉଥିଲା । ପୂଜାସ୍ଥଳରେ ଏକାଧିକ ଦେବାଦେବୀଙ୍କର ପୂଜା ହୋଇପାରୁଥିଲା, ଯଦିଓ ମୁଖ୍ୟ ବା ଇଷ୍ଟଦେବ ଥିଲେ ଜଣେ । ଦେବତାଙ୍କୁ ଫୁଲ, ଫଳ ଓ ଶସ୍ୟ ଅର୍ପଣ କରାଯାଉଥିଲା । ଯେଉଁମାନେ ଦେବତାଙ୍କ ମହିମାରେ ଆସ୍ଥା ରଖିଥିଲେ, ସେମାନଙ୍କ ପକ୍ଷରୁ ଏସବୁ ପ୍ରଦାନ କରାଯାଉଥିଲା । ଏଥିପାଇଁ ପୂଜାର ଆବଶ୍ୟକତା ପଡୁଥିଲା । ଦେବତା ଓ ଭକ୍ତ ମଧ୍ୟରେ ପୂଜାକୁ ଏକ ବ୍ୟକ୍ତିଗତ ବନ୍ଧନ ଭାବେ ଅଭିହିତ କରାଯାଉଥିଲା । ଆରାଧନାରେ ବ୍ରତ ବା ଉପବାସ ମଧ୍ୟ ସାମିଲ ହୋଇ ରହିଥିଲା । ଦେବତାଙ୍କ ପାଇଁ ନିଷ୍ଠାର ସୂଚକ ଥିଲା ବ୍ରତ । ତେଣୁ ବୈଦିକ ନିୟମ ଅନୁଯାୟୀ ପାଳନ କରାଯାଉଥିବା ଯଜ୍ଞ ଅନୁଷ୍ଠାନଠାରୁ ଏହା ଭିନ୍ନ ଥିଲା । ବୈଧତା ଦାବି କରିବାପାଇଁ ଏବେ ଆଉ ବୈଦିକ ଯଜ୍ଞକୁ ଯଥେଷ୍ଟ ମନେ କରାଯାଉ ନ ଥିଲା । ବଂଶାବଳୀ ଓ ମନ୍ଦିରର ସଂରକ୍ଷଣ ବା ପୃଷ୍ଠପୋଷକତାକୁ ବୈଧିକରଣ ପାଇଁ ଅଧିକ ପ୍ରତ୍ୟକ୍ଷ ମନେ କରାଗଲା ।

ଗର୍ଭଗୃହ ବା ମନ୍ଦିରର ଯେଉଁ ଅଂଶରେ ଦେବତାଙ୍କ ପ୍ରତିମା ସ୍ଥାପିତ ହୋଇଥିଲା, ତାହା ସମସ୍ତଙ୍କ ପାଇଁ ଉନ୍ମୁକ୍ତ ନ ଥିଲା । ତଥାକଥିତ ଅଶୁଦ୍ଧ ଶୂଦ୍ର ଓ ଅସ୍ପୃଶ୍ୟ ଜାତିର ଲୋକଙ୍କ ପାଇଁ ତାହା ନିଷିଦ୍ଧ ଥିଲା । ଶୂଦ୍ର ଓ ଅସ୍ପୃଶ୍ୟମାନଙ୍କର ନିଜର ସ୍ୱତନ୍ତ୍ର ପୂଜାସ୍ଥଳ ଥିଲା । ସାଧାରଣତଃ ଗ୍ରାମ ବା ସହରର ଯେଉଁ କ୍ଷେତ୍ରରେ ସେମାନଙ୍କର ବସତି ଥିଲା, ସେହିଠାରେ ସେମାନଙ୍କର ପୂଜାସ୍ଥଳ ରହିଥିଲା । ସେମାନଙ୍କ ଦେବତା ମନ୍ଦିରର ଦେବତାଙ୍କଠାରୁ ପୃଥକ୍ ଥିଲେ ଅଥବା ମନ୍ଦିର ଦେବତାଙ୍କର ପ୍ରତିରୂପ ଥିଲେ । ସେଠାରେ ଦିଆଯାଉଥିବା ପୂଜାର୍ଚ୍ଚନା, କର୍ମକାଣ୍ଡ ଓ ଭୋଗରାଗ ମଧ୍ୟ ତଦ୍ରୂପ ଥିଲା । ଏହି କାରଣରୁ ମନ୍ଦିରରେ ମଦ୍ୟର ନିଷେଧ ଥିଲା, ମାତ୍ର କେତେକ ଶୂଦ୍ର ଓ ଅସ୍ପୃଶ୍ୟ ପୂଜାସ୍ଥଳରେ ତା'ର ପ୍ରଚଳନ ମଧ୍ୟ ରହିଥିଲା । ପଶୁବଳି ମଧ୍ୟ ସେହି କିସମର ଏକ କର୍ମକାଣ୍ଡ ଥିଲା । କାଳି ମନ୍ଦିରରେ ପଶୁବଳି ଓ ମଦ୍ୟର ମଧ୍ୟ ପ୍ରବେଶ ରହିଥିଲା । ଏହା ଥିଲା ଜାତିର କଥା । ମାତ୍ର ପୂଜାସ୍ଥଳର ସ୍ଥାୟିତ୍ୱ ଅନେକ ମାତ୍ରାରେ ପରିବେଶ ଉପରେ ନିର୍ଭରଶୀଳ ଥିଲା । ସଂସ୍କୃତ ସଂସ୍କୃତିର ପ୍ରବେଶ ସତ୍ତ୍ୱେ, ଅନେକ ସଂପ୍ରଦାୟ ସେମାନଙ୍କର ପୂର୍ବର ପୂଜାସ୍ଥଳକୁ ତ୍ୟାଗ କରି ନ ଥିଲେ । ଏହିସବୁ ସ୍ଥଳ ଅବଶ୍ୟ ବିଶାଳ ବା ଅଧିକ ବୈଶିଷ୍ଟ୍ୟପୂର୍ଣ୍ଣ ନ ଥିଲା । ସେଗୁଡ଼ିକ ସ୍ଥାନୀୟ ଉପକରଣ ଓ ସ୍ଥାପତ୍ୟରେ ନିର୍ମିତ ହୋଇ ସ୍ଥାନୀୟ ପ୍ରୟୋଜନକୁ ପୂରଣ କରୁଥିଲା । ପୂଜାସ୍ଥଳର ନିର୍ମାଣ ଶୈଳୀ ମଧ୍ୟ ପରିବେଶ ଅନୁରୂପ ଥିଲା, ଯାହା ସମୟକ୍ରମେ ପୂଜାସ୍ଥଳକୁ ଭାଙ୍ଗିରୁଜି ଯିବାରେ ସାହାଯ୍ୟ କଲା ।

ମନ୍ଦିରରେ ନିୟମିତ ଦାନ ପଡୁଥିଲା । ଏହା ମନ୍ଦିରକୁ ଏକ କୋଠଘର ଓ ବିତ୍ତୀୟ କେନ୍ଦ୍ରରେ ପରିଣତ କଲା । ବ୍ରାହ୍ମଣ ତଥା ମନ୍ଦିରକୁ ଦାନ ଦେବା ଅର୍ଥ ମଧ୍ୟସ୍ଥୀ ମାଧ୍ୟମରେ ଆରାଧ୍ୟ ଦେବତାଙ୍କୁ ବିନତି କରିବା । ରାଜପୃଷ୍ଠପୋଷକତାରେ ନିର୍ମିତ ମନ୍ଦିରକୁ ରାଜ୍ୟର ଶକ୍ତି ଓ ସୁଖ-ସଂବୃଦ୍ଧିର ପ୍ରତୀକ ରୂପରେ ଦେଖାଯାଉଥିଲା । ରାଜ୍ୟ ସ୍ଥାପନାର ଯେଉଁସବୁ ଚରିତ୍ର, ଯଥା- ଉଚ୍ଚ ବଂଶାବଳୀକୁ ଆଶ୍ରୟ କରି ରାଜାଙ୍କର ଏକ ଉଚ୍ଚପଦବୀ ଗ୍ରହଣ, ବଂଶାବଳୀର ଲେଖନ, ରାଜଧାନୀର ନିର୍ମାଣ ତଥା କୃଷି ଓ ବାଣିଜ୍ୟର ବିସ୍ତାର ଆଦି, ତହିଁରେ ଶିଳ୍ପଶାସ୍ତ୍ରର ନିୟମାନୁସାରେ ଏକ ରାଜକୀୟ ମନ୍ଦିର ନିର୍ମାଣ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ପରିଚାଳନା ନିପୁଣ ଏକ ଅନୁଷ୍ଠାନ ରୂପରେ ମନ୍ଦିରର କର୍ତ୍ତୃତ୍ୱ ମନ୍ଦିର ଆଖପାଖରେ ଥିବା ବିସ୍ତୃତ ଅଞ୍ଚଳ ଉପରେ ରହିଥିଲା ।

ଏକ ଅନୁଷ୍ଠାନ ରୂପରେ ମନ୍ଦିର କେବଳ ବିଭିନ୍ନ ସ୍ତରର ପୂଜକମାନଙ୍କୁ ଏବଂ ପ୍ରଶାସନିକ ଦକ୍ଷତା ଥିବା ଅନ୍ୟ ଲୋକମାନଙ୍କୁ ନିଯୁକ୍ତ କରୁଥିଲା । ତା' ବାହାରେ, ଧାର୍ମିକ ପ୍ରବଚନ ତଥା ଧର୍ମଗ୍ରନ୍ଥ ପାଠ ପାଇଁ ଆଉମାନଙ୍କୁ ମଧ୍ୟ ମନ୍ଦିରରେ ସ୍ଥାନ ଯୋଗାଇ ଦିଆଯାଉଥିଲା । ତେଣୁ ମନ୍ଦିର ପରିସରରେ କଥାବାଚକମାନେ ରାମାୟଣ, ମହାଭାରତ ଆଦି ପୁରାଣ ପାଠ କରୁଥିଲେ । ପୁରାଣ ପାଠ ସହିତ ସେମାନେ ପୁରାଣର ଭାଷ୍ୟ ମଧ୍ୟ ଦେଉଥିଲେ । ଏତେବେଳକୁ ରାମାୟଣ ମହାଭାରତ ଆଦିକୁ ପବିତ୍ର ଗ୍ରନ୍ଥର ମର୍ଯ୍ୟାଦା ମିଳିସାରିଥିଲା । ଦେବତାଙ୍କର ଯେତେବେଳେ ସଙ୍ଗୀତ ଓ ନୃତ୍ୟ ମାଧ୍ୟମରେ ପୂଜାର୍ଚ୍ଚନା ଆରମ୍ଭ ହେଲା, ସେତେବେଳେ ମନ୍ଦିରରେ ଦେବଦାସୀ ରଖିବାର ଆବଶ୍ୟକତା ପଡ଼ିଲା । ତୀର୍ଥାଟନର ପୂଜାପାର୍ବଣ ସହିତ ନିବିଡ଼ ସମ୍ବନ୍ଧ ରହିଥିଲା । ପୂଜାପାର୍ବଣର ସଂଖ୍ୟା ଯେତେ ଅଧିକ ହେବ, ତୀର୍ଥଯାତ୍ରୀ, ଭକ୍ତ ସେତେ ଅଧିକ ମାତ୍ରାରେ ମନ୍ଦିରକୁ ଭୋଗରାଗ ଓ ଦାନ ଆଦି ଦେବେ । ସୋମନାଥ ମନ୍ଦିର ପରି କେତେକ ମନ୍ଦିରରେ ତୀର୍ଥଯାତ୍ରୀ ଯାତ୍ରୀକର ଦେଉଥିଲେ, ଯାହା ସ୍ଥାନୀୟ ରାଜାଙ୍କ ପାଇଁ ଆୟର ଏକ ସ୍ରୋତ ଥିଲା । ଅନ୍ୟ ରାଜାମାନେ ଏହି ଯାତ୍ରୀକରକୁ ତୀର୍ଥଯାତ୍ରୀଠାରୁ ବଳପୂର୍ବକ ଲୁଣ୍ଠନ କରି ନେଉଥିଲେ ବୋଲି ଅନେକ ଅଭିଯୋଗ ହେଉଥିଲା ।

ପୌରାଣିକ ହିନ୍ଦୁଧର୍ମରେ ଉପାସନା ପାଇଁ ଦେବତାଙ୍କୁ ମନ୍ଦିରର କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥାପିତ କରିବା ଏକ ଆବଶ୍ୟକତା ଥିଲା । ଯେଉଁଠି ଉପାସନା ଭକ୍ତିପୂରକ ଓ ଉପାସକ ଆରାଧ୍ୟ ଦେବତାଙ୍କର କୃପାପ୍ରାର୍ଥୀ, ସେହି କ୍ଷେତ୍ରରେ ମଧ୍ୟ ପ୍ରତିମାକୁ ଭକ୍ତି ଓ ଦାନର କେନ୍ଦ୍ର ରୂପେ ଦେଖାଯାଉଥିଲା । ଆରମ୍ଭରେ ଉପାସନା ପାଇଁ ପ୍ରତିମାର ଆବଶ୍ୟକତା ରହୁ ନ ଥିଲା, ମାତ୍ର ଧୀରେ ଧୀରେ ଏହା ଏକ ସାଧାରଣ କଥାରେ ପରିଣତ ହେଲା ।

ପ୍ରତିମାକୁ ଅଧିକରୁ ଅଧିକ ପ୍ରାଧାନ୍ୟ ମିଳିବା ଫଳରେ ପୌରାଣିକ ହିନ୍ଦୁଧର୍ମ ବୈଦିକଧର୍ମରୁ ବେଶି ବେଶି ଦୂରେଇଗଲା । ମୂର୍ତ୍ତ ରୂପ ନ ଥିବା ବସ୍ତୁକୁ ବି ଯଦି ଉପାସନା କରାଯାଏ, ତାକୁ ଆରାଧରେ ରୂପାନ୍ତରିତ କରାଯାଉଥିଲା ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ମାନବାକୃତିର ଏକ ଦେବତା ରୂପେ ପ୍ରତିଷ୍ଠିତ କରାଯାଉଥିଲା । ଅନେକ ସମୟରେ ଉକ୍ତ ମାନବାକୃତି ଦେବତାର ମୂର୍ତ୍ତିରେ ନୂଆ ଗୁଣ ସବୁ ଯୋଡ଼ି ଦିଆଯାଉଥିଲା । ଉଦାହରଣ ସ୍ୱରୂପ, ହାତ ଯୋଡ଼ିଦେଇ ଆରାଧକୁ ଦୈବୀଗୁଣସମ୍ପନ୍ନ ମନେକରାଯାଉଥିଲା । କର୍ମକାଣ୍ଡ ସମ୍ପାଦନ କରୁଥିଲେ ବ୍ରାହ୍ମଣମାନେ । ସେମାନେ ଉପାସ୍ୟର ତଥା ତା' ସହିତ ଜଡ଼ିତ ବିଧିବିଧାନର ମହତ୍ତ୍ୱକୁ ସ୍ୱୀକାର କରିନେଇଥିଲେ । ପୂର୍ବରୁ ଉପାସନା କରୁଥିବା ପୂଜକଙ୍କୁ ମଧ୍ୟ ପୂଜା କରିବାପାଇଁ ଗ୍ରହଣ କରାଯାଉଥିଲା । ସେହି ପ୍ରକ୍ରିୟାରେ ଉକ୍ତ ପୂର୍ବ ପୂଜକଙ୍କୁ ବ୍ରାହ୍ମଣର ମର୍ଯ୍ୟାଦା ପ୍ରଦାନ କରାଯାଉଥିଲା । ଶୈବ ତଥା ବୈଷ୍ଣବ ଉପାସନା ସମ୍ବନ୍ଧିତ ଗ୍ରନ୍ଥ ଥିଲା ପୁରାଣ ଓ ଆଗମ । ଏହି ଗ୍ରନ୍ଥଗୁଡ଼ିକରେ ଦେବତାଙ୍କର ପୂଜାବିଧିକୁ ବ୍ୟାଖ୍ୟା କରାଯାଇଥିଲା ଏବଂ ତା'ର ତାତ୍ପର୍ଯ୍ୟ ଦର୍ଶାଇ କିମ୍ବଦନ୍ତୀ ଗଢ଼ାଯାଇଥିଲା । 'ମହାତ୍ମ୍ୟ' ଓ 'ସ୍ଥଳ ପୁରାଣ'ରେ ଉପାସନା ସ୍ଥଳର ତଥାକଥିତ ଇତିହାସ, କିମ୍ବଦନ୍ତୀ ଓ ଦନ୍ତକଥା ଆଦି ବିସ୍ତାରରେ କୁହାଯାଇଥିଲା । କର୍ମକାଣ୍ଡ ଓ ତତ୍‌ସମ୍ବନ୍ଧୀୟ ଆଚରଣର ବିସ୍ତୃତ ବ୍ୟାଖ୍ୟା ମଧ୍ୟ ତହିଁରେ ରହିଥିଲା । ଅବଶ୍ୟ ପ୍ରତ୍ୟେକ ସଂପ୍ରଦାୟ ଏହି ଗୋଟାଏ ରୀତିରେ ହିନ୍ଦୁଧର୍ମରେ ରୂପାନ୍ତରିତ ହୋଇ ନ ଥିଲା । ସ୍ଥାନୀୟ ସମର୍ଥନ, ରାଜନୈତିକ ପ୍ରଭାବ ଏବଂ ସଂପ୍ରଦାୟକୁ ଅନ୍ତର୍ଭୁକ୍ତ କରାଯିବାରେ ଲାଭ-କ୍ଷତି ଉପରେ ସଂପ୍ରଦାୟର ମୁଖ୍ୟସ୍ରୋତରେ ସାମିଲ ହେବା ନିର୍ଭର କରୁଥିଲା ।

ଯେଉଁମାନଙ୍କର ପୃଷ୍ଠପୋଷକତାରେ ମନ୍ଦିର ନିର୍ମାଣ ହେଉଥିଲା, ସେମାନଙ୍କର ସାମାଜିକ ମର୍ଯ୍ୟାଦା ବୃଦ୍ଧି କରିବାରେ ମନ୍ଦିର ସହାୟକ ହେଉଥିଲା । ବସ୍ତୁପାଳ ଓ ତେଜପାଳ ଥିଲେ ବଣିକ ସଂପ୍ରଦାୟର । ମାଉଣ୍ଟଆବୁରେ ଜୈନ ମନ୍ଦିର ନିର୍ମାଣ ପାଇଁ ସେମାନଙ୍କ ପାଖରେ ଯଥେଷ୍ଟ ଧନ ଗଚ୍ଛିତ ଥିଲା । ଏହା ରାଜକୀୟ ପୃଷ୍ଠପୋଷକତାର ମାନଦଣ୍ଡରେ ନିର୍ମିତ ହୋଇଥିଲା । ମାତ୍ର ମନ୍ଦିର ସ୍ଥଳୀରେ ସ୍ଥାପିତ ଅଭିଲେଖରେ ଉଭୟଙ୍କର ପରିବାରର ପ୍ରଶସ୍ତି ଓ ବଣିକ ସମୁଦାୟର ମର୍ଯ୍ୟାଦା ଓ କ୍ଷମତା କଥା ବିସ୍ତାରରେ ବର୍ଣ୍ଣନା କରାଯାଇଥିଲା । ଭିନ୍ନ ଏକ ଚିହ୍ନ ମିଳେ ଚନ୍ଦେଲ ରାଜବଂଶରୁ । ଚନ୍ଦେଲ ରାଜାମାନେ ସେମାନଙ୍କ ଅଭିଲେଖରେ ଏକ ଜଟିଳ କିମ୍ବଦନ୍ତୀର ଉଦ୍ଧରଣ କରିଛନ୍ତି, ଯାହା ସେମାନଙ୍କୁ ଚନ୍ଦ୍ରବଂଶର ବୋଲି ସ୍ଥାପିତ କରେ । ମାତ୍ର ସେମାନଙ୍କ ମୂଳ ମଧ୍ୟଭାରତର ଗଣ୍ଡ ଆଦିବାସୀ ସମାଜରେ ରହିଥିଲା ବୋଲି ମଧ୍ୟ ଉଦ୍ଧରଣ ରହିଛି । କୁହାଯାଏ, ସେମାନେ ପ୍ରଥମେ ଆଦ୍ୟ ରାଜଧାନୀ ମହୋବାଠାରେ ମନିୟାଦେବ ନାମକ ଏକ ପଥର ଚଟାଣକୁ ପୂଜା କରୁଥିଲେ । ଏଥିରୁ

ଜଣାପଡ଼େ ଯେ ସ୍ଥାନୀୟ ସଂପ୍ରଦାୟରୁ ଆରମ୍ଭ କରି ପରେ ସେମାନେ ପୌରାଣିକ ସଂପ୍ରଦାୟକୁ ପୃଷ୍ଠପୋଷକତା ପ୍ରଦାନ କରିଥିଲେ । ଆଦିବାସୀ ପୂଜକ ଏହି ପରିବର୍ତ୍ତନର ସହଯାତ୍ରୀ ହୋଇ ପୌରାଣିକ ସଂପ୍ରଦାୟରେ, ଯେଉଁ ସଂପ୍ରଦାୟରେ ଆଦିବାସୀ ଅରାଧ୍ୟକୁ ସାମିଲ କରାଯାଇଥିଲା, ପୂଜକର ସ୍ଥାନ ପାଉଥିଲା । ଯଦି ଆରାଧ୍ୟ ପ୍ରତିମାଙ୍କୁ ପୌରାଣିକ ଦେବାଦେବୀର ମର୍ଯ୍ୟାଦା ଦିଆଯାଏ, ତେବେ ପୂଜକଙ୍କୁ ଉଚ୍ଚ ଜାତିର ମର୍ଯ୍ୟାଦା ପ୍ରାପ୍ତ ହେଉଥିଲା । ଏହାର ଏକ ଉତ୍କୃଷ୍ଟ ଉଦାହରଣ ହେବ ଓଡ଼ିଶାର ପୁରୀ ମନ୍ଦିରଠାରେ ସ୍ଥାପିତ ବିଷ୍ଣୁ-ଜଗନ୍ନାଥ ଓ ତା' ସହିତ ସଂପୃକ୍ତ ସଂପ୍ରଦାୟ । ତ୍ରୟୋଦଶ ଶତାବ୍ଦୀରେ ସ୍ଥାନୀୟ ରାଜା ନିଜକୁ ଦେବତାଙ୍କର ପ୍ରତିନିଧି ବୋଲି ମର୍ଯ୍ୟାଦା ଦାବି କଲେ । ଏହାଫଳରେ ଦେବତାଙ୍କର ଉପାସନା କ୍ଷେତ୍ର ରାଜାଙ୍କ ଅଧୀନ ହେଲା ଓ ଉପାସନା ସମ୍ବନ୍ଧୀୟ ବିଶ୍ୱାସ ଓ କର୍ମକାଣ୍ଡ ମୁଖ୍ୟସ୍ରୋତରେ ମିଶିଗଲା । ସାଧାରଣତଃ ଏହିପ୍ରକାର କ୍ରମିକ ପରିବର୍ତ୍ତନର ବିକାଶଧାରା ନାନା ସ୍ତର ଦେଇ ଗତିକରେ । ଉକ୍ତ ଉପାସନାର ଅନ୍ତର୍ଗତ କ୍ଷେତ୍ର ତଥା ତା'ର ଭୂଗୋଳ ତୀର୍ଥସ୍ଥଳୀର ପରିପନ୍ଥରେ ସାମିଲ ହୋଇଯାଏ । ଏହି ଧରଣର ସଂପ୍ରଦାୟ ରାଜପୃଷ୍ଠପୋଷକତା ପ୍ରାପ୍ତ ହେଲେ, ଉକ୍ତ କ୍ଷେତ୍ର ଓ ସଂପ୍ରଦାୟ ରାଜସମର୍ଥନ ପାଇଁ ଭିତ୍ତି ଯୋଗାନ୍ତି । ସଂପ୍ରଦାୟ ଭକ୍ତର ଏକ ପୃଷ୍ଠଦେଶ ପ୍ରଦାନ କରେ । କେତେକାଂଶରେ ଭୂମିଦାନର ତନ୍ତ୍ର ସହିତ ଏହାର ସାମଞ୍ଜସ୍ୟ ଦେଖିହେବ । ପଶ୍ଚିମ ଦାକ୍ଷିଣାତ୍ୟର ପଣ୍ଢରପୁରଠାରେ ବିଷ୍ଣୁଙ୍କର ଅବତାର ରୂପରେ ବିଠୋବାଙ୍କର ଉପାସନା ହୁଏ, ଯାହାକୁ ଉପରୋକ୍ତ ପ୍ରକ୍ରିୟାର ଏକ ତୁଳନୀୟ ଢାଞ୍ଚା ଭାବେ ଚିହ୍ନିତ କରିହେବ ।

ପୂର୍ବଭାରତରେ ବୌଦ୍ଧବିହାର ହେଲା ଧର୍ମ ସମ୍ବନ୍ଧୀୟ ସ୍ମାରକ ସ୍ଥାପତ୍ୟର ପ୍ରମୁଖ ଉଦାହରଣ । ଏହି ବୌଦ୍ଧବିହାରଗୁଡ଼ିକରୁ କେତେକ ପାଳ ରାଜାମାନଙ୍କ ପୃଷ୍ଠପୋଷକତାରେ ନିର୍ମିତ ହୋଇଥିଲା । ମୈନାମାଟି ଏବଂ ବିକ୍ରମଶୀଳାଠାରେ ସ୍ଥାପିତ ବିହାର ଓ ପାହାଡ଼ପୁରଠାରେ ସ୍ଥାପିତ ସୋମପୁରୀ ବିହାର ହେଲେ ଭବ୍ୟ ଶ୍ରେଣୀର । ଓଡ଼ିଶାର ରତ୍ନଗିରିଠାରେ ସ୍ଥାପିତ ବୌଦ୍ଧସ୍ଥଳୀର ମରାମତି କାମ ଏକାଦଶ ଶତାବ୍ଦୀରେ ସମ୍ପନ୍ନ ହୋଇଥିଲା । ତାନ୍ତ୍ରିକ ବୌଦ୍ଧଧର୍ମର ଏକ କେନ୍ଦ୍ର ରୂପରେ ଏହା ପ୍ରସିଦ୍ଧ ଥିଲା । ଏହି ସମୟରେ ନାଳନ୍ଦାର ବୌଦ୍ଧବିହାରଗୁଡ଼ିକର ବିସ୍ତାର କରାଗଲା । ଦକ୍ଷିଣ-ପୂର୍ବ ଏସିଆରେ ବାଣିଜ୍ୟ ବୃଦ୍ଧି ପାଇଲା । ଉକ୍ତ ବଣିକ ସମୁଦାୟର ବୌଦ୍ଧସଂଘ ସହିତ ସମ୍ବନ୍ଧ ଥିବାରୁ ବୌଦ୍ଧପୀଠଗୁଡ଼ିକର ପୁନର୍ନିର୍ମାଣ ଓ ମରାମତି ପାଇଁ ପୃଷ୍ଠପୋଷକତା ପ୍ରାପ୍ତ ହେଲା । ତା'ଛଡ଼ା ତିବ୍ବତ ସହିତ ଲାଭଜନକ ବାଣିଜ୍ୟ ବୃଦ୍ଧି ପାଇବାରୁ ମଧ୍ୟ ଉକ୍ତ ବୌଦ୍ଧସ୍ଥଳୀଗୁଡ଼ିକୁ ସହାୟତା ମିଳିବା ସହଜ ହେଲା ।

ପୂର୍ବ ଓ ଦକ୍ଷିଣ ଭାରତରେ ଥିବା ସ୍ମାରକଗୁଡ଼ିକର ସାଦୃଶ୍ୟ ଦକ୍ଷିଣ-ପୂର୍ବ ଏସିଆର କେତେକ ସ୍ଥାନରେ, ଯଥା- କାମ୍ବୋଡ଼ିଆ ଓ ଜାଭାରେ ଦେଖିବାକୁ ମିଳିଥିଲା । ପଗାନଠାରେ ଥିବା ସ୍ତୁପର ଶୈଳୀ ଓ ଦକ୍ଷିଣ ଏସୀୟ ଶୈଳୀ ମଧ୍ୟରେ କିଛି ମାତ୍ରାରେ ସାମଞ୍ଜସ୍ୟ ଦେଖିବାକୁ ମିଳେ । ମାତ୍ର ତା'ର ସମୂହୀକରଣ (clustering)ରେ ପାର୍ଥକ୍ୟ ରହିଥିଲା । ସଂସ୍କୃତ ଓ ଜାଭା ଭାଷା ମଧ୍ୟରେ ରହିଥିବା ଭାଷା ବୈଜ୍ଞାନିକ ସମ୍ବନ୍ଧକୁ ପ୍ରାଚୀନ ଜାଭା ଭାଷାରେ ଦେଖିହେବ । ହେଲେ ଏଥିରେ ସଂସ୍କୃତର ଯେମିତି ପ୍ରଭାବ ରହିଛି, ସେମିତି ଜାଭା ଭାଷାର ଶକ୍ତିଶାଳୀ ପ୍ରଭାବ ମଧ୍ୟ ସୁସ୍ପଷ୍ଟ । ଦକ୍ଷିଣ-ପଶ୍ଚିମ ଏସିଆରେ 'ରାମକଥା'ର ଅନେକ ରୂପ ମୂଳ କଥାକୁ ସ୍ଥାନୀୟ ବର୍ଣ୍ଣନାତ୍ମକ ପରମ୍ପରାରେ ଆବେଷ୍ଟିତ କରି ରଖେ । ଏହା ବହୁଳ ସାଂସ୍କୃତିକ ପରମ୍ପରାର ଦ୍ୟୋତକ ଅଟେ । ଭାରତର ଗୁଜରାଟ, କରମଣ୍ଡଳ ଉପକୂଳ ଓ ପୂର୍ବଭାରତୀୟ କ୍ଷେତ୍ର ଯେହେତୁ ଦକ୍ଷିଣ-ପୂର୍ବ ଏସୀୟ ବାଣିଜ୍ୟରେ ଆଗ୍ରହ ରଖୁଥିଲା, ସେଠାରେ ସାଂସ୍କୃତିକ ସମ୍ବନ୍ଧ ଅଧିକ ସୁସ୍ପଷ୍ଟ ହେଲା ।

ଇସ୍‌ଲାମୀ ସ୍ଥାପତ୍ୟର ପ୍ରମୁଖ ଶୈଳୀ ଥିଲା 'ଆର୍କ' (Arch) ଓ 'ଡୋମ' (Dome) ବା ଗମ୍ବୁଜ । ଭାରତ ଉପମହାଦେଶ ପାଇଁ ଏହି ଦୁଇଟିଯାକ ଥିଲେ ନୂଆ । ଉତ୍ତର-ପଶ୍ଚିମ କ୍ଷେତ୍ରରେ ଓ ଆରବ ବସତି ଥିବା ପଶ୍ଚିମ ଉପକୂଳରେ ପ୍ରଥମେ ଆର୍କ ଓ ଡୋମ ତିଆରି ପାଇଁ ଉଦ୍ୟମ ହୋଇଥିଲା । ଏହାର ଉଲ୍ଲେଖ ମିଳେ କାମ୍ବେସ୍ଥିତ ମସ୍‌ଜିଦ୍‌ରୁ, ଯାହାକୁ ପରମାର ରାଜା ଧ୍ୱଂସ କରିଦେଇଥିଲେ । ମନସୁରାସ୍ଥିତ ସିଆ ମସ୍‌ଜିଦ୍, ଯାହାକୁ ମାମୁଦ ଧ୍ୱଂସ କରିଥିଲେ, ହେଲା ଏହି ଉଦ୍ୟମର ଆଉ ଏକ ପ୍ରମାଣ । ଦିଲ୍ଲୀ ଓ ଆଜମୀରଠାରେ ସୁଲତାନ ଶାସନ ପ୍ରତିଷ୍ଠା ହେଲାବେଳେ ସ୍ଥାନୀୟ ମନ୍ଦିରକୁ ମସ୍‌ଜିଦ୍‌ରେ ରୂପାନ୍ତରିତ କରାଗଲା । ମନ୍ଦିରକୁ ଧ୍ୱଂସକରି ତା' ସ୍ଥାନରେ ମସ୍‌ଜିଦ୍ ସ୍ଥାପନ କରିବା ମୂଳରେ ନିଶ୍ଚିତରୂପେ ଉଦ୍ଦେଶ୍ୟ ଥିଲା ଯୁଦ୍ଧରେ ମିଳିଥିବା ବିଜୟକୁ ନିନାଦିତ କରିବା । ତା' ସହିତ ପବିତ୍ର ପୀଠକୁ ନିଜ ଆୟତ୍ତରେ ରଖିବା ଯେ ବିଜୟୀମାନଙ୍କର ଉଦ୍ଦେଶ୍ୟ ଥିଲା, ଏହା ଅନସ୍ୱୀକାର୍ଯ୍ୟ ।

## ଧାର୍ମିକ ପରିବର୍ତ୍ତନ

ବୌଦ୍ଧଧର୍ମ ଥିଲା ଏକ ପ୍ରଚାରବାଦୀ ଧର୍ମ । ବୌଦ୍ଧ ଭିକ୍ଷୁ ଓ ଧର୍ମଗୁରୁମାନେ ଏସିଆ ମହାଦେଶର ବିଭିନ୍ନ ପ୍ରାନ୍ତକୁ ଏହାକୁ ବିସ୍ତାରିତ କରିଥିଲେ । ପରିଣାମ ସ୍ୱରୂପ ଏସିଆର ଦୂରଦରାନ୍ତରରୁ ବୌଦ୍ଧ ସନ୍ୟାସୀମାନେ ଭାରତରେ ଥିବା ବୌଦ୍ଧବିହାରଗୁଡ଼ିକୁ ପରିଦର୍ଶନ ଉଦ୍ଦେଶ୍ୟରେ ଆସିଲେ । ସେମାନେ ବୌଦ୍ଧଗ୍ରନ୍ଥର ପାଣ୍ଡୁଲିପିମାନ ଗଚ୍ଛିତ ଥିବା ଗ୍ରନ୍ଥାଗାରଗୁଡ଼ିକୁ ପର୍ଯ୍ୟବେକ୍ଷଣ କଲେ । ଏଠାକାର ବିଚାରବିମର୍ଶର ପରିବେଶ ସେମାନଙ୍କୁ ଯଥେଷ୍ଟ ଆକୃଷ୍ଟ

କରିଥିଲା । ବୌଦ୍ଧ ସନ୍ୟାସୀମାନେ ନିଜେ ଆସିଥିବା ବା ତାଲିମ ପାଇଥିବା କ୍ଷେତ୍ରର ବୌଦ୍ଧଧର୍ମ ଓ ଅନ୍ୟାନ୍ୟ କେନ୍ଦ୍ର ମଧ୍ୟରେ ସମ୍ବନ୍ଧ ସ୍ଥାପନ କଲେ । ଉଦାହରଣ ସ୍ୱରୂପ, ପୂର୍ବଭାରତର ବୌଦ୍ଧ ସନ୍ୟାସୀ ଅତୀଶ ଏକାଦଶ ଶତାବ୍ଦୀରେ ତିବ୍ବତରେ ବୌଦ୍ଧଧର୍ମର ବିକାଶରେ ବିଶେଷ ଯୋଗଦାନ କଲେ । କୁହାଯାଏ, ସେ ତାଲିମ ପାଇଥିଲେ ସୁବର୍ଣ୍ଣଦ୍ୱୀପରେ, ଯାହାକୁ ସମ୍ଭବତଃ ଜାଭା ସହିତ ଚିହ୍ନିତ କରିହେବ । ବୌଦ୍ଧବିହାର ରାଜ୍ୟକୁ ବିଶେଷ ସାହାଯ୍ୟ କରିଥିଲା । ମାତ୍ର କାଳକ୍ରମେ ପୌରାଣିକ ହିନ୍ଦୁଧର୍ମର ସିଦ୍ଧାନ୍ତ ବୌଦ୍ଧଧର୍ମର ମୂଳକୁ ଉତ୍ପାଟିତ କଲା । ପୌରାଣିକ ସିଦ୍ଧାନ୍ତ ନୂତନ ସାମାଜିକ ଗୋଷ୍ଠୀଗୁଡ଼ିକୁ ଜାତି ଆଧାରିତ ସମାଜରେ ଦୀକ୍ଷିତ କରିବାରେ ଦକ୍ଷତା ହାସଲ କରିଥିଲା । ପର୍ଯ୍ୟାୟକ୍ରମେ ନୂତନ ଗୋଷ୍ଠୀଗୁଡ଼ିକ ହିନ୍ଦୁ ସଂପ୍ରଦାୟର ଅଂଶବିଶେଷ ହେଲେ । ଯେଉଁ କ୍ଷେତ୍ରରେ ନୂତନ ଭାବେ ରାଜ୍ୟର ବିକାଶ ହେଉଥିଲା, ସେଠାରେ ଏଭଳି ଜାତି ଓ ସଂପ୍ରଦାୟର ଯଥେଷ୍ଟ ଆବଶ୍ୟକତା ରହିଥିଲା । ବୌଦ୍ଧ ଧର୍ମାବଲମ୍ବୀ ଏବଂ କେତେକ ଶୈବ ଗୋଷ୍ଠୀ ମଧ୍ୟରେ ଦାର୍ଶନିକ ଓ ଧାର୍ମିକ ପ୍ରସଙ୍ଗକୁ ନେଇ ପ୍ରତିଦ୍ୱନ୍ଦ୍ୱିତା ଦେଖିବାକୁ ମିଳୁଥିଲା । ପୃଷ୍ଠପୋଷକତା ଲାଭ କରିବା ସକାଶେ ମଧ୍ୟ ଉଭୟ ଗୋଷ୍ଠୀ ମଧ୍ୟରେ ବିବାଦ ଲାଗି ରହୁଥିଲା । ଶ୍ରମଣମାନେ ତ୍ୟାଗ ଓ ସନ୍ୟାସ ଉପରେ ଖୁବ୍ ଗୁରୁତ୍ୱ ଦେଉଥିଲେ, ଯାହାକୁ ଅନ୍ୟମାନେ ପ୍ରଶ୍ନ କରୁଥିଲେ । କାରଣ ଜଣେ ସାଧାରଣ ବ୍ୟକ୍ତି ପାଇଁ ସନ୍ୟାସକୁ ଅଯଥାର୍ଥ ମନେ କରାଯାଉଥିଲା । ଭିକ୍ଷୁ ଜୀବନକୁ ଅନ୍ୟମାନେ ଅଳସୁଆମୀ ଓ ବିଳାସର ଜୀବନ କହି ବିଦ୍ରୂପ କରୁଥିଲେ । ଅନ୍ୟମାନେ ଯଦି ପରିଶ୍ରମ ନ କରନ୍ତି, ଭିକ୍ଷୁମାନେ ବିଳାସରେ ଜୀବନ ଅତିବାହିତ କରିପାରିବେ ନାହିଁ ବୋଲି ସମାଲୋଚନା କରାଯାଉଥିଲା । ବ୍ରାହ୍ମଣମାନେ ଦୂରଦୂରାନ୍ତର କ୍ଷେତ୍ରକୁ ଦେଶାନ୍ତରଣ କରିବାରେ ସୁଦକ୍ଷ ଥିଲେ । ସେମାନେ ସୁଦୂର ଓ ଅଜଣା କ୍ଷେତ୍ରଗୁଡ଼ିକରେ ବ୍ରାହ୍ମଣ୍ୟ ରୀତିନୀତି ଓ ମର୍ଯ୍ୟାଦାର ପ୍ରଚାର କଲେ । ଦକ୍ଷିଣ-ପୂର୍ବ ଏସିଆରେ ଭାରତର ଯେଉଁ ସମ୍ବନ୍ଧ ବିକଶିତ ହୋଇଥିଲା, ତା'ର ଆଧାର କେବଳ ବାଣିଜ୍ୟିକ ଗତିବିଧି ନ ଥିଲା । ବରଂ ତା' ସହିତ ସାଂସ୍କୃତିକ ସମ୍ବନ୍ଧ ସ୍ଥାପନ ମଧ୍ୟ ଥିଲା । ଏହି ସମ୍ବନ୍ଧ ଆରବମାନଙ୍କୁ ମଧ୍ୟ ସାହାଯ୍ୟ କଲା । ଏହାରି ବଳରେ ସେମାନେ ଦକ୍ଷିଣ-ପୂର୍ବ ଏସିଆରେ ବାଣିଜ୍ୟ କେନ୍ଦ୍ରମାନ ସ୍ଥାପନ କଲେ ଏବଂ ସେଠାକାର ବାଣିଜ୍ୟର ଅଧିକାଂଶ ଭାଗକୁ ନିଜ କର୍ତ୍ତୃତ୍ୱକୁ ଆଣିଲେ । ଜାଭା ଓ ମାଳୟ ଉପଦ୍ୱୀପରେ ଏହି ବସତିମାନ ଏକ ପ୍ରଭାବକାରୀ ସାଂସ୍କୃତିକ ମାଳା ସଦୃଶ କାମ କଲା, ଯାହାର ବଳରେ ସ୍ଥାନୀୟ ସଂସ୍କୃତି ଓ ଭାରତ ତଥା ପଶ୍ଚିମ ଏସିଆର ଆସ୍ଥା ଓ ଆଚରଣ ମଧ୍ୟରେ ସମନ୍ୱୟ ସୃଷ୍ଟି ହେଲା ।

କାଳଖଣ୍ଡର ଶେଷ ପର୍ଯ୍ୟାୟରେ ଉତ୍ତର ଭାରତରେ ବୈଷ୍ଣବ, ଶୈବ ଓ ଶାକ୍ତ-ତାନ୍ତ୍ରିକ ସଂପ୍ରଦାୟ ପ୍ରଭୁତ୍ୱ ବିସ୍ତାର କଲା । ଜୈନଧର୍ମ ପଶ୍ଚିମରେ ସୀମିତ ହୋଇ ରହିଲା

ଏବଂ ବୌଦ୍ଧଧର୍ମ, ଯାହା ପୂର୍ବଭାରତରେ ସୀମିତ ହୋଇ ରହିଥିଲା, ଅଧୋପତନ ଆଡ଼କୁ ଗତି କଲା । ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ରୂପରେ ବର୍ଣ୍ଣନା କରି ବୌଦ୍ଧଧର୍ମକୁ ବୈଷ୍ଣବ ଧର୍ମରେ ସମନ୍ୱିତ କରିବାକୁ କିଛିଟା ଉଦ୍ୟମ ହୋଇଥିଲା, ମାତ୍ର ତାହା ଖୁବ୍ ଆଗ୍ରହ ସୃଷ୍ଟି କରିପାରିଲା ନାହିଁ । ଅଣ-ବୌଦ୍ଧମାନଙ୍କ ଦ୍ୱାରା ବୁଦ୍ଧ ଉପାସନା ମୁଖ୍ୟତଃ ଔପଚାରିକ ଓ ସମ୍ମାନାସ୍ପଦ ସ୍ଥିତିରେ ରହିଗଲା । ଶ୍ରମଣ ଧର୍ମରେ ଅହିଂସା ଉପରେ ପ୍ରାଧାନ୍ୟ ରହିଲା, ମାତ୍ର ରାଜପୁତମାନେ ଶୌର୍ଯ୍ୟ ବଳ ଉପରେ ମହତ୍ତ୍ୱ ଦେଉଥିଲେ । କେତେକ ଜୈନ ମଧ୍ୟ ରଣକ୍ଷେତ୍ରରେ ନିଜ ପରାକ୍ରମର ଖୁବ୍ ପ୍ରଦର୍ଶନ କରିଥିଲେ । ପୌରାଣିକ ହିନ୍ଦୁ ଧର୍ମରେ ଯେଉଁମାନେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ, ସେମାନେ ଅହିଂସାର ବିଚାରକୁ ଭକ୍ତି ସଂପ୍ରଦାୟର ଶିକ୍ଷଣରେ ଖୋଜି ପାଇଲେ । ଭକ୍ତି ସଂପ୍ରଦାୟର ପ୍ରଚାରକମାନେ ଅହିଂସାର ବିରୋଧ ସେହି କାରଣରୁ କରୁଥିଲେ ଯେଉଁ କାରଣରୁ ମହାବୀର ଓ ଗୌତମ ବୁଦ୍ଧ ଅତୀତରେ ତା'ର ବିରୋଧ କରିଥିଲେ ।

ଏହି କାଳଖଣ୍ଡରେ ହିନ୍ଦୁଧର୍ମରେ ଅନେକ ପରିବର୍ତ୍ତନ ଦୃଷ୍ଟିଗୋଚର ହେଲା । ପରିବର୍ତ୍ତନ ସମ୍ଭବ ହେଲା, କାରଣ ରଢ଼ିବାଦୀ ବିଶ୍ୱାସ ଓ ଲୋକଙ୍କର ବ୍ୟକ୍ତିକ ଧର୍ମକୁ ନେଇ ଲୌକିକ ଦାବି ମଧ୍ୟରେ ବୁଝାମଣା ଦେଖିବାକୁ ମିଳିଲା । ମୂର୍ତ୍ତିପୂଜାର ମାତ୍ରା ବୃଦ୍ଧି ହେଲା ଏବଂ ଅନେକ ନୂତନ ମୂର୍ତ୍ତି ନାନା ରୂପରେ ପୂଜା ପାଇବାକୁ ଲାଗିଲେ । ଏସବୁ ମୂର୍ତ୍ତି ଥିଲେ ମୁଖ୍ୟତଃ ମାନବାକୃତି । କର୍ମକାଣ୍ଡ କେବଳ ଆଡ଼ମ୍ବରପୂର୍ଣ୍ଣ ଯଜ୍ଞରେ ସୀମିତ ରହିଲା ନାହିଁ । ତାହା ବ୍ୟକ୍ତିଗତ ପୂଜାର ରୂପ ନେଲା, ଯଦିଓ ପୂଜା ପାଇଁ ମାଧ୍ୟମ ହେଲା ମନ୍ଦିର ବା ଅନ୍ୟ ଉପାସନା ସ୍ଥଳ । ଏହା ନୂତନ ବିଚାର, ଆକାଂକ୍ଷା ତଥା ସମ୍ବନ୍ଧର ଏବଂ ତା' ସହିତ ଭିନ୍ନ ଐତିହାସିକ ପରିସ୍ଥିତିର ଦ୍ୟୋତକ ଥିଲା । ଦେବାଦେବୀଙ୍କୁ ନେଇ ରହିଥିବା କିମ୍ବଦନ୍ତୀମାନ ଭିନ୍ନ ଭିନ୍ନ ଆଞ୍ଚଳିକ ରୂପ ଗ୍ରହଣ କରି ଦୂରଦୂରାନ୍ତରକୁ ପ୍ରସାରିତ ହେଲା । ବାଚନିକ ପରମ୍ପରା ମଧ୍ୟ କିମ୍ବଦନ୍ତୀର ସଂପ୍ରସାରଣରେ ସାହାଯ୍ୟ କଲା । ପୌରାଣିକ ହିନ୍ଦୁଧର୍ମରେ ଯେଉଁ ସମୁଦାୟମାନେ ସାମିଲ ହୋଇଥିଲେ, ସେମାନଙ୍କର କିମ୍ବଦନ୍ତୀ ଓ ପରମ୍ପରାକୁ ଆଞ୍ଚଳିକ ଭାଷାରେ ଲିଖିତ ପୋଥିପାଠରେ ସ୍ଥାନ୍ ମିଳିଲା । ଆଞ୍ଚଳିକ ଭାଷାକୁ ଲିଖିତ ସାହିତ୍ୟର ମର୍ଯ୍ୟାଦା ମିଳିବା ଯୋଗୁଁ ଏହା ସମ୍ଭବ ହେଲା । ଅନେକ ଉପପୁରାଣ ସୃଷ୍ଟି ହେଲା, ଯେଉଁଥିରେ ସ୍ଥାନୀୟ ରୀତନୀତିକୁ କର୍ମକାଣ୍ଡ ଓ ପୌରାଣିକ ବିଶ୍ୱାସରେ ପରିଣତ କରିବାର ଯଥେଷ୍ଟ ଅବସର ମିଳିଲା । ଦେବତାମାନେ ମାନବ ରୂପରେ ଅବତରିତ ହୋଇଥାନ୍ତି ବୋଲି ଯେଉଁ ସିଦ୍ଧାନ୍ତ ରହିଛି, ତାକୁ ସମାହାରର ଏକ ପଦ୍ଧତି (method of incorporation) ରୂପରେ ଉପଯୋଗ କରାଗଲା । ଦେବତା ମାନବ ରୂପରେ ଅବତାର ଗ୍ରହଣ କରନ୍ତି ବୋଲି ରହିଥିବା

ବିଶ୍ୱାସ ଏକ ରାଜନୈତିକ ଉଦ୍ଦେଶ୍ୟ ପୂରଣ କଲା । ରାଜାମାନେ ଈଶ୍ୱରଙ୍କ ଅବତାର ବୋଲି ନିଜକୁ କହି ନିଜ ନିଜର ବୈଧୀକରଣ (legitimization) କଲେ ।

ଏହି ସମୟରେ ଦେବତାର ଅବଧାରଣା ଖୁବ୍ ଜଟିଳ ରୂପ ନେଲା । ଉଦାହରଣ ସ୍ୱରୂପ, କୃଷ୍ଣଙ୍କୁ ବିଷ୍ଣୁଙ୍କର ଅବତାର ଭାବରେ ଗ୍ରହଣ କରାଗଲା । ତା' ସହିତ ସେ ଥିଲେ ଗୋପାଳ ଦେବତା, ଯିଏ ଗୋପାଳକମାନଙ୍କ ସହ ନିଜର ଶୈଶବ ଅତିବାହିତ କରିଥିଲେ ଏବଂ ରାଧାଙ୍କର ପ୍ରେମିକ ଥିଲେ । ଭକ୍ତି ଉପାସନାର ଏହା ମୁଖ୍ୟ ଉତ୍ସ ହେଲା; ତାକୁ ନେଇ ଅନେକ କବିତା ଓ କାବ୍ୟ ରଚିତ ହେଲା ଏବଂ ଉକ୍ତ କାବ୍ୟ-କବିତାରେ ଶୃଙ୍ଗାରରସ ମଧ୍ୟ ରହିଥିଲା । ଅନ୍ୟପକ୍ଷରେ, ସେହି କୃଷ୍ଣ ପୁଣି 'ଭଗବଦ୍‌ଗୀତା'ର ଦାର୍ଶନିକ ଥିଲେ; ବିଶ୍ୱନିୟନ୍ତା ଥିଲେ; କାଳର ବାହକ ଥିଲେ; ଅଧର୍ମରୁ ଧର୍ମକୁ ରକ୍ଷା କରୁଥିଲେ ଏବଂ ଜାତି ତଥା ଆଚାର-ଧର୍ମର ପୁନରୁଦ୍‌ଘୋଷକ ଥିଲେ । 'କୃଷ୍ଣ'ର ଶାବ୍ଦିକ ଅର୍ଥ ହେଲା 'କଳା' । କୃଷ୍ଣଙ୍କୁ ତାମିଲ ମେୟନରେ 'କଳା ଗୋଚାରକ' ବୋଲି କୁହାଯାଇଛି । ବିଷ୍ଣୁଙ୍କର ଅବତାରଗୁଡ଼ିକରେ ଅନେକ ପରମ୍ପରାକୁ ପ୍ରତିଫଳିତ କରାଯାଇଛି । ଏହି କାରଣରୁ ବିଷ୍ଣୁ ଲୋକପ୍ରିୟ ମଧ୍ୟ । ମାତ୍ର ମଥୁରା ନିକଟରେ ଆଧୁନିକ ବୃନ୍ଦାବନର ଭୂଗୋଳ ଓ କୃଷ୍ଣଙ୍କର ଜୀବନ କାହାଣୀ ମଧ୍ୟରେ ଯେଉଁ ସମ୍ବନ୍ଧ, ତାକୁ ପରବର୍ତ୍ତୀ ସମୟର କୌଣସି ଧାର୍ମିକ ସଂପ୍ରଦାୟ ସ୍ଥାପିତ କରିଥିଲେ । ସମ୍ଭବତଃ ପୂର୍ବଭାରତରେ ଲୋକପ୍ରିୟତା ଅର୍ଜନ କରିଥିବା ଚୈତନ୍ୟଙ୍କର ଶିଷ୍ୟମାନେ ଏହା କରିଥିଲେ । ଠିକ୍ ସେହିଭଳି ଦ୍ୱିତୀୟ ସହସ୍ରାବ୍ଦୀର ମଧ୍ୟକାଳରେ ଲିଖିତ 'ଅଯୋଧ୍ୟା ମାହାତ୍ମ୍ୟ'ରେ ଆଜିର ଅଯୋଧ୍ୟାର ଭୂଗୋଳ ଓ ରାମଙ୍କର ଜୀବନଗାଥା ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠା କରାଗଲା । ଏହି ସମ୍ବନ୍ଧକୁ ପ୍ରତିଷ୍ଠା ଦେଲେ ରାମାନନ୍ଦୀ ସଂପ୍ରଦାୟର ଭକ୍ତମାନେ । ସେମାନେ ଅଯୋଧ୍ୟା ରୂପରେ ସାକେତକୁ ସମ୍ଭବତଃ ଚିହ୍ନିତ କରୁଥିଲେ ।

ରୁଢ଼ିବାଦ କ୍ଷୁଦ୍ର ସଂପ୍ରଦାୟ ଓ ଉପାସନାକୁ ପୂରାପୂରି ଉପେକ୍ଷା କରି ନ ଥିଲା । କେତେକଙ୍କୁ ପୂଜକମାନେ ପ୍ରୋତ୍ସାହିତ କରିଥିଲେ । କର୍ମକାଣ୍ଡକୁ ଉପାସନା ଓ ଜୀବନଧାରଣ ପାଇଁ ଉପଜୀବ୍ୟ ରୂପେ ସେହି ପୂଜକମାନେ ଗ୍ରହଣ କରୁଥିଲେ । ସ୍ଥାନୀୟ ପୂଜକମାନେ ଲୌକିକ ଧର୍ମ ପ୍ରତି ସାଧାରଣତଃ ସହାନୁଭୂତି ରଖୁଥିଲେ । ଏମିତିରେ ସୂର୍ଯ୍ୟ ଉପାସନାର ଲୋକପ୍ରିୟତା ରହିଥିଲା । ତାକୁ ରାଜପୃଷ୍ଠପୋଷକତା ମଧ୍ୟ ପ୍ରାପ୍ତ ହେଲା, ଯାହାର ଉଦାହରଣ ହେଲା ଭବ୍ୟ ସୂର୍ଯ୍ୟମନ୍ଦିରର ନିର୍ମାଣ । ଓଡ଼ିଶାର କୋଣାର୍କକୁ ବାଦ୍ ଦେଲେ ଉତ୍ତର ଓ ପଶ୍ଚିମ ଭାରତରେ ମଧ୍ୟ ସୂର୍ଯ୍ୟମନ୍ଦିର ଗଢ଼ାହେଲା । କୁହାଯାଏ, 'ମାଘ' ବା 'ଶାକଦ୍ୱୀପୀ' ବ୍ରାହ୍ମଣମାନେ ଉତ୍ତର-ପଶ୍ଚିମ ଭାରତ ଦେଇ ବିଦେଶରୁ ଭାରତକୁ ଦେଶାନ୍ତରଣ କରିବା ଉତ୍ତାରୁ ସୂର୍ଯ୍ୟ ଉପାସନାକୁ ଲୋକପ୍ରିୟତା ମିଳିଲା । ପଶ୍ଚିମ ଭାରତରେ ଜୋରାଷ୍ଟ୍ରିଆନମାନଙ୍କର ଉପସ୍ଥିତି ସୂର୍ଯ୍ୟ ଉପାସନାକୁ ଅଧିକ ପ୍ରୋତ୍ସାହନ ଦେଲା । ଅନ୍ୟ ଅଞ୍ଚଳରେ ସୂର୍ଯ୍ୟ ଉପାସନା

ପୂର୍ବବତ୍ ଚାଲିଥିଲା । ଯେଉଁ ଦେବତାମାନେ ଆଗରୁ ପ୍ରତିଷ୍ଠା ପାଇଥିଲେ ସମୟକ୍ରମେ ସେମାନଙ୍କର ମହତ୍ତ୍ୱ ବଦଳୁଥିଲା; ନୂଆ ଦେବତାମାନଙ୍କର ଆବିର୍ଭାବ ମଧ୍ୟ ଘଟୁଥିଲା । ଗଣେଶ ବା ଗଣପତିଙ୍କର ନୂଆକରି ମହତ୍ତ୍ୱ ବୃଦ୍ଧି ପାଇଲା । ମୂଳତଃ ଗଣେଶ ଏକ ଆଦିବାସୀ ଦେବତା ଥିଲେ ବୋଲି ଅନୁମାନ କରାଯାଏ । ତାଙ୍କୁ ଶିବ ଓ ପାର୍ବତୀଙ୍କର ସନ୍ତାନ ଭାବରେ ପ୍ରତିଷ୍ଠିତ କରି ଯଥେଷ୍ଟ ମର୍ଯ୍ୟାଦା ପ୍ରଦାନ କରାଗଲା । ଉର୍ବରତା ଉପାସନା ସହିତ ସମ୍ବନ୍ଧିତ ଦେବୀମାନଙ୍କର ମଧ୍ୟ ଅଧିକ ପୂଜା କରାଗଲା ।

ପୌରାଣିକ ହିନ୍ଦୁଧର୍ମ ବିଭିନ୍ନ ପୂଜାବିଧି ଓ ଦେବାଦେବୀଙ୍କୁ ନିଜ ଭିତରେ ସମାହିତ କରିନେଲା । ତା' ସହିତ କେତୋଟି ନିର୍ଦ୍ଦିଷ୍ଟ ଦାର୍ଶନିକ ସିଦ୍ଧାନ୍ତକୁ ଏହା ମହତ୍ତ୍ୱ ଦେଲା, ଯାହା ସାଂପ୍ରଦାୟିକ ପ୍ରବୃତ୍ତିକୁ ପ୍ରୋତ୍ସାହିତ କଲା । ଏହି ଉଭୟ ପ୍ରବୃତ୍ତି ପରସ୍ପର ବିରୋଧୀ ପ୍ରତୀତ ହୁଅନ୍ତି, ମାତ୍ର ସଂପ୍ରଦାୟ ମାଧ୍ୟମରେ ବିଶ୍ୱାସଧାରା ଓ ଦର୍ଶନର ଔପଚାରିକ ସଂଗଠନ ପାଇଁ ଉଦ୍ୟମ ହେବାଫଳରେ ବିରୋଧାଭାସ ଦୂର ହୋଇଗଲା । ଉକ୍ତ ସଂପ୍ରଦାୟଗୁଡ଼ିକର ସମ୍ବନ୍ଧ ଥିଲା ଶଙ୍କରାଚାର୍ଯ୍ୟ, ରାମାନୁଜ, ମାଧବ ଓ ବାସବାନ୍ନା ଆଦି ଦାର୍ଶନିକମାନଙ୍କ ସହିତ । କଦାଚିତ ଧର୍ମଗୁରୁମାନଙ୍କର ସମୂହ ମଧ୍ୟ ସଂପ୍ରଦାୟ ସହିତ ସମ୍ବନ୍ଧିତ ଥିଲେ । ସଂସ୍ଥାପକ ଦାର୍ଶନିକଙ୍କ ଦ୍ୱାରା ପ୍ରଦତ୍ତ ବ୍ୟାଖ୍ୟାକୁ କେନ୍ଦ୍ର କରି ଶ୍ରମଣୀୟ ଧର୍ମ ପରି ସଂପ୍ରଦାୟର ଇତିହାସ ଓ ବିକାଶ ଘଟୁଥିଲା । କେତେକ ସଂପ୍ରଦାୟର ଶିକ୍ଷାର ଉଦ୍ଦେଶ୍ୟ ଥିଲା ଶ୍ରମଣ ଧର୍ମର ଅବମାନନା କରିବା । ତା' ସହିତ ଏକଥା ମଧ୍ୟ ଲକ୍ଷ୍ୟ କରାଯାଇପାରେ ଯେ, ଏହି ପୌରାଣିକ ହିନ୍ଦୁଧର୍ମ ଆଧାରିତ ସଂପ୍ରଦାୟଗୁଡ଼ିକ ବିଭିନ୍ନ ରୂପରେ ଶ୍ରମଣ ଧର୍ମର ଅନୁକରଣ କରୁଥିଲେ । ସଂପ୍ରଦାୟର ଶକ୍ତି ପୃଷ୍ଠପୋଷକତା ଉପରେ ନିର୍ଭରଶୀଳ ଥିଲା । ଦାନସୂତ୍ରରେ ଅର୍ଥ ପ୍ରାପ୍ତ ହେଲେ ତାକୁ ଉପଯୋଗ କରି ସଂସ୍ଥାର ନିର୍ମାଣ ହେଉଥିଲା । ପୌରାଣିକ ହିନ୍ଦୁଧର୍ମର ବିଭିନ୍ନ ଉପାଦାନ ସାଂପ୍ରଦାୟିକ ଧର୍ମରେ ରୂପାନ୍ତରିତ ହେବା ଫଳରେ ବୌଦ୍ଧଧର୍ମ ଓ ଜୈନଧର୍ମ ପରି ପୂର୍ବରୁ ପ୍ରତିଷ୍ଠିତ ହୋଇଥିବା ସାଂପ୍ରଦାୟିକ ଧର୍ମର ଦ୍ରୁତ ଅଧୋପତନ ହେଲା ।

ସାଂପ୍ରଦାୟିକ ବିଭେଦ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଓ ଶତ୍ରୁତାକୁ ପ୍ରୋତ୍ସାହିତ କଲା । ଏକାଧିକ ସଂପ୍ରଦାୟ ରାଜଅନୁଗ୍ରହ ଦାବିକରି ଏହି ଶତ୍ରୁତାକୁ ଦୃଷ୍ଟିକୁ ଆଣିଲେ । ଉଦାହରଣ ସ୍ୱରୂପ, ଶୈବ ଓ ଜୈନ ଗ୍ରନ୍ଥରେ ଚାଲୁକ୍ୟ ରାଜା କୁମାରପାଳଙ୍କ ଧର୍ମକୁ ନେଇ ବିରୋଧାଭାସ ରହିଛି । ଶୈବ ଗ୍ରନ୍ଥ ଅନୁଯାୟୀ କୁମାରପାଳ ଶୈବ ଥିଲେ ଏବଂ ଶେଷପର୍ଯ୍ୟନ୍ତ ଜୈନଧର୍ମକୁ ଧର୍ମାନ୍ତରଣ କରି ନଥିଲେ । ଏହାର ବିପରୀତ ଜୈନଗ୍ରନ୍ଥ କହେ, କୁମାରପାଳ ଶୈବଧର୍ମରୁ ଜୈନଧର୍ମକୁ ଧର୍ମାନ୍ତରଣ କରିଥିଲେ । ଏକାଧିକ ଜୈନମନ୍ଦିର ତାଙ୍କ ଅନୁଗ୍ରହରେ ନିର୍ମିତ ହୋଇଥିବାର କୁହାଯାଏ । ମାତ୍ର ତାଙ୍କର ଉତ୍ତରାଧିକାରୀ ଅଜୟପାଳ ଜୈନବିରୋଧୀ

ଥିବାରୁ ସେଗୁଡ଼ିକୁ ଧ୍ୱଂସ କରିଦେଲେ ବୋଲି ଜୈନଗ୍ରନ୍ଥରେ କୁହାଯାଇଛି । ମାତ୍ର ଏସବୁ ବିବାଦର ମାତ୍ରା 'ଧର୍ମଯୁଦ୍ଧ' ପରି ବିଶେଷ ଭୟାନକ ନଥିଲା ।

ଅଶୋକଙ୍କ ଅନୁଶାସନରେ 'ପାଷାଣ୍ଡ' ଶବ୍ଦର ବ୍ୟବହାର ରହିଛି । ଆରମ୍ଭରେ ଏହାର ଅର୍ଥ ଥିଲା ବିଧର୍ମୀ ବା ଅନ୍ୟଧର୍ମୀ । ମାତ୍ର ପରେ ଏହାର ଅର୍ଥ ହେଲା 'ଅପଧର୍ମୀ' । ତେଣୁ ବ୍ରାହ୍ମଣମାନେ ବୌଦ୍ଧ ଓ ଜୈନମାନଙ୍କୁ ପାଷାଣ୍ଡ ବୋଲି କହିଥାନ୍ତି ଏବଂ ପ୍ରତିବଦଳରେ ବୌଦ୍ଧ ଓ ଜୈନମାନେ ବ୍ରାହ୍ମଣମାନଙ୍କୁ ପାଷାଣ୍ଡ ବୋଲି ଅଭିହିତ କରନ୍ତି । ଉଭୟ ସନ୍ଦର୍ଭରେ ଏହା ଭର୍ତ୍ସନାସୂଚକ ଥିଲା । ଏହି ଭର୍ତ୍ସନା 'ମତ୍ତବିଳାସ ପ୍ରହସନ' ତଥା 'ପ୍ରବୋଧ-ଚନ୍ଦ୍ରୋଦୟ' ପରି ଦରବାରୀ ନାଟକରେ ଖୁବ୍ ଆମୋଦଦାୟୀ ମନେହୁଏ । ମାତ୍ର କେବେ କେବେ ତାହା ଅତ୍ୟନ୍ତ ନିର୍ମମତାପୂର୍ଣ୍ଣ ମଧ୍ୟ ପ୍ରତୀତ ହୁଏ ।

ଭକ୍ତିଧର୍ମର ପ୍ରଚାର ପ୍ରସାର କରୁଥିବା ସଂପ୍ରଦାୟମାନ ଉତ୍ତର ଭାରତକୁ ସଂପ୍ରସାରିତ ହେଲେ । ଚତୁର୍ଦ୍ଦଶ ଶତାବ୍ଦୀରୁ ଭକ୍ତିଧର୍ମ ଉତ୍ତର ଭାରତର ଏକ ଜୀବନ୍ତ ଶକ୍ତି ରୂପେ ପ୍ରତିଷ୍ଠା ପାଇଲା । ଏହା କୌଣସି ଧର୍ମପ୍ରଚାର ଆନ୍ଦୋଳନ ନଥିଲା । ବରଂ ସମାନ ପରିସ୍ଥିତିରେ ଉତ୍ପତ୍ତି ଲାଭ କରିଥିବା ଏକ ସମାନ ବିଚାରର ଅଭିବ୍ୟକ୍ତି ଥିଲା । ପୂର୍ବର ଶ୍ରମଣ ଧର୍ମରୁ, ଯେମିତି ବୈଷ୍ଣବଧର୍ମ ଓ ଶୈବ ଉପାସନାରୁ ତଥା ଶାକ୍ତ ପରମ୍ପରାର ଗୁହ୍ୟ ଏବଂ ଲୋକପ୍ରିୟ ସ୍ୱରୂପରୁ, ଏହା ଧାର୍ମିକ ଅଭିବ୍ୟକ୍ତି ଆହରଣ କରିଥିଲା । ବିସ୍ତୃତ କର୍ମକାଣ୍ଡରୁ ଭକ୍ତି ଆନ୍ଦୋଳନ ନିବୃତ୍ତି ପାଇଥିଲା । ଏହା ଉପାସ୍ୟ ଦେବତାଙ୍କ ପ୍ରତି ଲୋକଙ୍କୁ ଆକୃଷ୍ଟ କରୁଥିଲା । କେତେକ ଭକ୍ତି ସଂପ୍ରଦାୟ ମୋଟାମୋଟି ଭାବେ ଅତିଶୁଦ୍ଧତାବାଦୀ (puritanical) ପ୍ରତିବାଦ ପରି ଚାଲିଥିଲେ ।

କେତେକ ଲୌକିକ ଉପାସନା ଓ ସଂପ୍ରଦାୟ ସେମାନଙ୍କର ପ୍ରତିବାଦକୁ ଅଭିନବ ଢଙ୍ଗରେ ଅଭିବ୍ୟକ୍ତ କରୁଥିଲେ । ଉଦାହରଣ ସ୍ୱରୂପ, ଶୈବ କାଳମୁଖ, କାପାଳିକ, କୌଳ ଏବଂ ପୂଜାପାଠ କରୁଥିବା କେତେକ ତାନ୍ତ୍ରିକ ଗୋଷ୍ଠୀ ଉଚ୍ଚଜାତିର ଆଚରଣର ଠିକ୍ ଓଲଟା କାର୍ଯ୍ୟ କରୁଥିଲେ । ସେମାନଙ୍କର କେତେକ ପୂଜାପାଠ ବା କର୍ମକାଣ୍ଡ ସମାଜର ସେହି ଗୋଷ୍ଠୀରେ ଉତ୍ପତ୍ତି ଲାଭ କରିଥିଲା, ଯେଉଁ ଗୋଷ୍ଠୀ ବ୍ରାହ୍ମଣମାନଙ୍କ ଦ୍ୱାରା ନିର୍ଦ୍ଧାରିତ ହିନ୍ଦୁଧର୍ମର ଧାର୍ ଧାରୁ ନ ଥିଲା । ତେଣୁ ସେମାନେ କୌଣସି ପ୍ରତିବାଦ କରୁ ନଥିଲେ, ବରଂ ନିଜ ବାଟରେ ନିଜର ଧର୍ମ ଆଚରଣ କରୁଥିଲେ । ରୁଢ଼ିବାଦୀମାନେ ବୁଝାମଣାବେଳେ ଏମାନଙ୍କୁ ହୁଏତ ଜାତି ବ୍ୟବସ୍ଥାର ବାହାରେ ରଖୁଥିଲେ ଅଥବା ଯଦି ଏଭଳି ଗୋଷ୍ଠୀ ସାମାଜିକ ସମର୍ଥନ ଓ ଅନୁଗ୍ରହ ଲାଭ କରୁଥାନ୍ତି, ସମ୍ମାନନୀୟର ମର୍ଯ୍ୟାଦା ଦେଇ ଧୀରେ ଧୀରେ ସେମାନଙ୍କର ରୂପାନ୍ତରଣ କରୁଥିଲେ ।

ତନ୍ତ୍ରକୁ ଆଧାର କରି ଗଢ଼ିଉଠିଥିଲା ତାନ୍ତ୍ରିକ ଧର୍ମ । ବସ୍ତୁତଃ ଏହା ପ୍ରତ୍ୟେକ ପ୍ରାଚୀନ ଧର୍ମକୁ ପ୍ରଭାବିତ କରିଥିଲା । ତା' ସହିତ ବୈଦିକ ବ୍ରାହ୍ମଣ୍ୟ ଧର୍ମର ବିପରୀତ ବିଶ୍ୱାସ ଓ ଆଚରଣକୁ ଏହା ପ୍ରମୁଖତା ଦେଉଥିଲା । ପ୍ରାୟ ଅଷ୍ଟମ ଶତାବ୍ଦୀରୁ ଏହା ଧୀରେ ଧୀରେ ସମଗ୍ର ଭାରତ ଉପମହାଦେଶରେ ବହୁଳଭାବେ ପାଳନ କରାଗଲା, ଯଦିଓ ଏହାର ଉତ୍ପତ୍ତି ତା' ପୂର୍ବରୁ ହୋଇସାରିଥିଲା । ପୂର୍ବ ଭାରତରେ ଏହାର ସମ୍ବନ୍ଧ ଥିଲା ତିବ୍ବତର ଧର୍ମ ଆଚରଣ ସହିତ । ମନ୍ତ୍ର, ମୁଦ୍ରା ଓ ମଣ୍ଡଳ ସହିତ ମଧ୍ୟ ଏହାର କିଛି କିଛି ସାମଞ୍ଜସ୍ୟ ରହିଥିଲା । ତାନ୍ତ୍ରିକ ଧର୍ମ ସବୁ ଜାତି ପାଇଁ ଖୋଲା ଥିଲା । ଏହାର କର୍ମକାଣ୍ଡରେ ସ୍ତ୍ରୀମାନେ ମଧ୍ୟ ସାମିଲ ହୋଇପାରୁଥିଲେ । ଏଥିରୁ ସ୍ପଷ୍ଟ ହୁଏ ଯେ, ତାନ୍ତ୍ରିକ ଧର୍ମ ରୁଢ଼ିବାଦୀ ଧାର୍ମିକ ପ୍ରବୃତ୍ତିରୁ ଊର୍ଦ୍ଧ୍ୱରେ ଥିଲା । ଏହି ଧର୍ମରେ ଦେବୀମାନଙ୍କୁ ଅଧିକ ଉପାସନା କରାଯାଉଥିଲା, ଯାହା 'ଦେବୀ ମାହାତ୍ମ୍ୟ'ରେ ସଂଗୃହିତ କିମ୍ବଦନ୍ତୀଗୁଡ଼ିକରୁ ସୁସ୍ପଷ୍ଟ ହୁଏ । ଦେବୀଙ୍କର ନିଜର ବ୍ୟକ୍ତିତ୍ୱ ଥିଲା । ଦେବତାଙ୍କର ଅନୁଗାମିନୀ ରୂପେ ନୁହେଁ, ବରଂ ନିଜର ମାହାତ୍ମ୍ୟ ଯୋଗୁଁ ତାଙ୍କୁ ଅରାଧନା କରାଯାଉଥିଲା । ସପ୍ତମାତୃକା ସେମାନଙ୍କର ପୁରୁଷ ପ୍ରତିରୂପ ସହିତ ଅଧିକ ଘନିଷ୍ଠ ଭାବରେ ସମ୍ବନ୍ଧିତ ଥିଲେ । ଆବଶ୍ୟକତାନୁସାରେ ଦେବୀମାନଙ୍କୁ ସୃଷ୍ଟି କରାଯାଇପାରୁଥିଲା । ତେଣୁ ସେମାନଙ୍କର ସଂଖ୍ୟା ଥିଲା ଅସଂଖ୍ୟ ।

ଦେବୀମାନଙ୍କୁ ପ୍ରାଧାନ୍ୟ ଦିଆଯିବା ଅର୍ଥ କଦାଚିତ୍ ଉପସ୍ତରୀୟ ଧର୍ମ (substratum religion)ର ମହତ୍ତ୍ୱ ବୃଦ୍ଧି ପାଇବା । ଏହା ଉପାଶ୍ରିତ ସମୂହ (subaltern groups)ର ଉତ୍‌ଥାନକୁ ସୂଚିତ କରୁଥିଲା । ଉପାଶ୍ରିତ ସମୂହ ନିଜର ନୂତନ ସାମାଜିକ ମର୍ଯ୍ୟାଦା ବଳରେ ଦେବୀ ଉପାସନାକୁ ପ୍ରତିଷ୍ଠିତ କରୁଥିଲେ । ଦେବୀ ଉପାସନାର ପ୍ରତୀକ ରୂପେ ଉର୍ବରତାର ପୂଜା କରାଯାଉଥିଲା, ଯାହା ଅପ୍ରତ୍ୟାଶିତ ନ ଥିଲା । ଦେବୀ ଉପାସନା ସାମାଜିକ ଆଚରଣର ସଂହିତା ସ୍ତରରେ କୌଣସି ପରିବର୍ତ୍ତନ ଆଣିପାରୁ ନ ଥିଲା । ମାତ୍ର ଏହା ପିତୃସତ୍ତାତ୍ମକ ବ୍ୟବସ୍ଥାକୁ ବିରୋଧ କରି ବିକଳ୍ପ ପ୍ରଦାନ କରୁଥିଲା । ସ୍ତ୍ରୀମାନେ ସେମାନଙ୍କର ଆଶ୍ରମ ସ୍ଥାପନ କରିପାରୁଥିଲେ ଓ ପୂଜାରିଣୀ ରୂପେ କାର୍ଯ୍ୟ କରି ଶିକ୍ଷା ଦେଇପାରୁଥିଲେ । ଏହା ବୌଦ୍ଧ ଓ ଜୈନ ଭିକ୍ଷୁଣୀମାନଙ୍କର ତଥା ଆଦ୍ୟ ଭକ୍ତି ପରମ୍ପରାର ସ୍ତ୍ରୀ କବିମାନଙ୍କର କେତେକ କାର୍ଯ୍ୟ କରିବାକୁ ସେମାନଙ୍କୁ ଅବସର ଦେଉଥିଲା । ତାନ୍ତ୍ରିକ-ଧର୍ମର ଶାକ୍ତ-ଶକ୍ତି ଉପାସନା ସହିତ ସମ୍ବନ୍ଧ ଥିଲା, ଯାହା ନାରୀର ସୃଜନଶୀଳ ଶକ୍ତିକୁ ଯେକୌଣସି କର୍ମ ପାଇଁ ଅତ୍ୟାବଶ୍ୟକ ମନେକରୁଥିଲା ।

ତାନ୍ତ୍ରିକ ସଂପ୍ରଦାୟରେ ଯେଉଁମାନେ ଯୋଗ ଦେବାକୁ ଚାହୁଁଥିଲେ, ସେମାନଙ୍କୁ ଜଣେ ଗୁରୁଙ୍କ ଦ୍ୱାରା ଦୀକ୍ଷିତ ହେବାକୁ ପଡୁଥିଲା । ତାନ୍ତ୍ରିକ ପୂଜାବିଧିରେ ପାଞ୍ଚଗୋଟି 'ମ'ର

